## ପଞ୍ଚମ ଅଧ୍ୟାୟ

### ଯୌବନରେ ଗୁରୁଭାବ


ଗୁରୁ ବା ନେତା ହେବା ମନୁଷ୍ୟର ଇଚ୍ଛାଧୀନ ନୁହେଁ : ୪୪୮

ଲୋକଗୁରୁମାନଙ୍କ ମଧ୍ୟରେ ବିରାଟ ଭାବମୁଖୀ ମୁଁତ୍ୱର ବିକାଶ ସହଜରେ ଆସି ଉପସ୍ଥିତ ହୁଏ, ସାଧାରଣ ଲୋକଙ୍କର ଏପରି ହୋଇ ନ ଥାଏ : ୪୪୯

ଠାକୁରଙ୍କ ଜୀବନରେ ଗୁରୁଭାବର ପୂର୍ଣ୍ଣ ବିକାଶ ହୋଇ ତାହା ସହଜ ଭାବରେ କେତେବେଳେ ରୂପାନ୍ତରିତ ହୋଇଥିଲା : ୪୫୦

ସାଧନାକାଳରେ ସେହି ଭାବ—ରାଣୀ ରାସମଣି ଓ ତାଙ୍କର ଜ୍ୱାଇଁ ମଥୁରଙ୍କ ସହିତ ବ୍ୟବହାର : ୪୫୦

ଠାକୁରଙ୍କର ଅପୂର୍ବ ସ୍ୱଭାବ : ୪୫୧

ଧନୀ ଓ ପଣ୍ଡିତମାନେ ଠାକୁରଙ୍କୁ ଚିହ୍ନିପାରିବା କଠିନ; ଏହାର କାରଣ : ୪୫୨

ବିବାହ ପରେ ଠାକୁରଙ୍କ ଅବସ୍ଥା । ମଥୁର ଏହା ଲକ୍ଷ୍ୟ କରି କ୍ରମଶଃ ତାଙ୍କ ପ୍ରତି ଆକୃଷ୍ଟ ହେବା । ଅନ୍ୟ ସାଧାରଣ ଲୋକଙ୍କର ଠାକୁରଙ୍କ ବିଷୟରେ ମତାମତ : ୪୫୩

ଗୁରୁଭାବରେ ଠାକୁରଙ୍କର ରାଣୀ ରାସମଣିଙ୍କୁ ଦଣ୍ଡବିଧାନ : ୪୫୫

ତାହାର ଫଳ : ୪୫୫

ଶ୍ରୀଚୈତନ୍ୟ ଓ ଈଶାଙ୍କର ଜୀବନରେ ଏପରି ଘଟଣା : ୪୫୬

ଗୁରୁଭାବର ପ୍ରେରଣାରେ ଆତ୍ମହରା ଠାକୁରଙ୍କର ଅଦ୍ଭୁତ ପ୍ରକାରରେ ଶିକ୍ଷା ପ୍ରଦାନ ଓ ରାଣୀ ରାସମଣିଙ୍କର ସୌଭାଗ୍ୟ : ୪୫୮

ଈଶ୍ୱରଙ୍କଠାରେ ତନ୍ମୟ ମନର ଲକ୍ଷଣ ସମ୍ବନ୍ଧରେ ଶାସ୍ତ୍ରମତ : ୪୫୯

ଲୋକଗୁରୁମାନଙ୍କର ଏବଂ ବିଶେଷତଃ ଶ୍ରୀରାମକୃଷ୍ଣଦେବଙ୍କର ବ୍ୟବହାର ବୁଝିବା ଏତେ କଠିନ କାହିଁକି ? : ୪୫୯


## ଷଷ୍ଠ ଅଧ୍ୟାୟ

### ଗୁରୁଭାବ ଓ ମଥୁରାନାଥ


'ବଡ଼ ଫୁଲ ଫୁଟିବାକୁ ଡେରି ହୁଏ' : ୪୬୨

ମଥୁରଙ୍କ ସହିତ ଠାକୁରଙ୍କର ଅଦ୍ଭୁତ ସମ୍ବନ୍ଧ ! ମଥୁର କିଭଳି ପ୍ରକୃତିର ଲୋକ ଥିଲେ : ୪୬୨

ଠାକୁରଙ୍କର ଗୁରୁଭାବ ବିକାଶରେ ରାଣୀ ରାସମଣି ଓ ମଥୁରବାବୁଙ୍କର ଅଜ୍ଞାତ ଭାବରେ ସହାୟତା । ବନ୍ଧୁ ବା ଶତ୍ରୁଭାବରେ ସମ୍ବନ୍ଧିତ ଯାବତୀୟ ଲୋକ ଅବତାରପୁରୁଷଙ୍କର ଶକ୍ତି ବିକାଶର ସହାୟତା କରିଥାଆନ୍ତି : ୪୬୩

ସାଧାରଣ ମାନବ ଜୀବନରେ ମଧ୍ୟ ଏପରି ହୋଇଥାଏ । କାରଣ ଏହା ସହିତ ଅବତାରପୁରୁଷଙ୍କ ଜୀବନର ବିଶେଷ ସୌସାଦୃଶ୍ୟ ଅଛି : ୪୬୫

ମଥୁରବାବୁ ଭକ୍ତ ଥିଲେ କିନ୍ତୁ ନିର୍ବୋଧ ନ ଥିଲେ : ୪୬୫

ଠାକୁରଙ୍କ ପ୍ରତି ମଥୁରବାବୁଙ୍କର ପ୍ରଥମ ଆକର୍ଷଣ କିପରି ହୋଇଥିଲା—ଏବଂ ଏହାର କ୍ରମପରିଣତି : ୪୬୬

ଭକ୍ତିର ସଂକ୍ରାମିକା ଶକ୍ତିରେ ମଥୁରବାବୁଙ୍କ ପରିବର୍ତ୍ତନ : ୪୬୭
ଆଧୁନିକ ଭାବରେ ଶିକ୍ଷିତ ମଥୁରଙ୍କର ଠାକୁରଙ୍କ ସହିତ ତର୍କ-ବିଚାର । ପ୍ରାକୃତିକ ନିୟମର ପରିବର୍ତ୍ତନ ଈଶ୍ୱରଙ୍କ ଇଚ୍ଛାରେ ହୋଇଥାଏ । ନାଲି ମନ୍ଦାର ଗଛରେ ଧଳା ମନ୍ଦାର : ୪୬୮
ଠାକୁରଙ୍କର ଅବସ୍ଥା ଦେଖି ବାଧ ହୋଇ ପ୍ରତିଦିନ ମଥୁରବାବୁଙ୍କ ଚିତ୍ତ ଆଲୋଡ଼ିତ ହେବା : ୪୬୯
ଶିବମହିମ୍ନଃ ସ୍ତୋତ୍ର ପଢୁ ପଢୁ ଠାକୁରଙ୍କର ସମାଧି ଓ ମଥୁରବାବୁ : ୪୬୯
ଠାକୁରଙ୍କ ନିକଟରେ ଅନ୍ୟମାନଙ୍କର ସହଜରେ ଆଧ୍ୟାତ୍ମିକ ଉନ୍ନତି ଲାଭ ବିଷୟରେ ଦୃଷ୍ଟାନ୍ତ : ୪୭୧
ମଥୁରବାବୁଙ୍କର ଠାକୁରଙ୍କୁ ଏକାଧାରରେ ଶିବ-ଶକ୍ତି ରୂପରେ ଦର୍ଶନ : ୪୭୨
ଏହି ଦର୍ଶନର ଫଳ : ୪୭୩
ମଥୁରବାବୁଙ୍କ ମହାଭାଗ୍ୟ ସମ୍ବନ୍ଧରେ ଶାସ୍ତ୍ରପ୍ରମାଣ : ୪୭୩
ଠାକୁରଙ୍କର ଦିନକୁ ଦିନ ଗୁରୁଭାବର ଅଧିକତର ବିକାଶ ଓ ମଥୁରବାବୁଙ୍କର ତାଙ୍କୁ ପରୀକ୍ଷା କରି ଅନୁଭବ : ୪୭୪
ମଥୁରଙ୍କର ଭକ୍ତିବୃଦ୍ଧି ଦେଖି ହାଲଦାର ପୁରୋହିତଙ୍କର ଈର୍ଷା : ୪୭୬
ବନାରସୀ ସାଲ୍‌ର ଦୁର୍ଦ୍ଦଶା : ୪୭୭
ଠାକୁରଙ୍କ ନିର୍ଲିପ୍ତତା : ୪୭୮
ହାଲଦାର ପୁରୋହିତଙ୍କର ଶେଷକଥା : ୪୭୮
ମଥୁରାନାଥ ଓ ତାଙ୍କର ପତ୍ନୀ ଜଗଦମ୍ବା ଦାସୀଙ୍କର ଠାକୁରଙ୍କ ଉପରେ ଭକ୍ତି ଓ ଠାକୁରଙ୍କର ଏହି ପରିବାର ସହିତ ବ୍ୟବହାର : ୪୭୯
ଠାକୁରଙ୍କଠାରେ ବିପରୀତ ଭାବର ଏକତ୍ର ସମାବେଶ : ୪୮୦
ଦକ୍ଷିଣେଶ୍ୱରରେ ଭଗବଦ୍‌ବିଗ୍ରହ ଭଗ୍ନ ହେବାରୁ ବିଧାନ ନେବା ପାଇଁ ପଣ୍ଡିତ ସଭାର ଆହ୍ୱାନ : ୪୮୦
ଠାକୁରଙ୍କର ମୀମାଂସା ଓ ଏବିଷୟର ଶେଷକଥା : ୪୮୧

## ସପ୍ତମ ଅଧ୍ୟାୟ

### ଗୁରୁଭାବରେ ମଥୁରଙ୍କ ପ୍ରତି କୃପା

ଜାନବଜାରରେ ମଥୁରବାବୁଙ୍କ ଘରେ ଠାକୁରଙ୍କୁ ନେଇ ଦୁର୍ଗାପୂଜାର କଥା : ୪୮୩
ଠାକୁରଙ୍କର ଭାବ-ସମାଧି ଓ ରୂପ : ୪୮୪
କାମାରପୁକୁରରେ ଠାକୁରଙ୍କର ରୂପ-ଗୁଣ ସମ୍ବନ୍ଧରେ ଲୋକଙ୍କ କଥା : ୪୮୫
ଠାକୁରଙ୍କର ରୂପ ବିଷୟରେ ଘଟଣା ଓ ତାଙ୍କର ଦୀନଭାବ : ୪୮୬
ଠାକୁରଙ୍କର ସମାଧି ଭାଙ୍ଗିବାକୁ ଜଗଦମ୍ବା ଦାସୀଙ୍କ କୌଶଳ : ୪୮୭
ଠାକୁରଙ୍କର ସମାଧିରୁ ସାଧାରଣ ଅବସ୍ଥାକୁ ଅବତରଣର ଉପାୟ ଶାସ୍ତ୍ରସମ୍ମତ : ୪୮୮
ସଖୀଭାବରେ ଠାକୁର ଦୁର୍ଗାଦେବୀଙ୍କୁ ଚାମର କରିବା : ୪୮୮
ମଥୁରବାବୁଙ୍କର ତାଙ୍କୁ ଏହି ଅବସ୍ଥାରେ ଚିହ୍ନି ନ ପାରି ପ୍ରଶ୍ନ କରିବା : ୪୮୯
ବିଜୟାଦଶମୀ : ୪୮୯

ମଥୁରବାବୁଙ୍କର ଆନନ୍ଦରେ ସେହି ବିଷୟରେ ହୋସ ନ ରହିବା : ୫୯୦
ଦେବୀମୂର୍ତ୍ତି ବିସର୍ଜନ କରିବେ ନାହିଁ ବୋଲି ମଥୁରବାବୁଙ୍କ ସଂକଳ୍ପ : ୫୯୦
ସମସ୍ତେ ବୁଝାଇଲେ ମଧ ମଥୁରଙ୍କର ଉତ୍ତର : ୫୯୧
ଠାକୁର ମଥୁରବାବୁଙ୍କୁ ବୁଝାଇବା : ୫୯୧
ଠାକୁରଙ୍କ କଥା ଓ ସ୍ପର୍ଶର ଅଦ୍ଭୁତ ଶକ୍ତି : ୫୯୨
ମଥୁରବାବୁ କିପରି ପ୍ରକୃତିସ୍ଥ ହୋଇଥିଲେ : ୫୯୨
ଠାକୁରଙ୍କୁ ପରୀକ୍ଷା କରିବାର ଫଳସ୍ୱରୂପ ମଥୁରବାବୁଙ୍କ ମନରେ ଅବିଚଳ ଭକ୍ତି-ବିଶ୍ୱାସ ଉଦୟ ହୋଇଥିଲା : ୫୯୩
ମଥୁରଙ୍କର ଭାବସମାଧିଲାଭ କରିବାର ଇଚ୍ଛା : ୫୯୩
ସେଥିପାଇଁ ଠାକୁରଙ୍କ ନିକଟରେ ପ୍ରାର୍ଥନା : ୫୯୪
ଉଦ୍ଧବ ଓ ଗୋପୀମାନଙ୍କ ଦୃଷ୍ଟାନ୍ତରେ ଠାକୁର ତାଙ୍କୁ ବୁଝାଇବା : ୫୯୪
ମଥୁରବାବୁଙ୍କର ଭାବସମାଧି ହେବା ଓ ପ୍ରାର୍ଥନା : ୫୯୫
ତ୍ୟାଗୀ ନ ହେଲେ ଭାବସମାଧି ସ୍ଥାୟୀ ହୁଏ ନାହିଁ : ୫୯୬
ଏହିବିଷୟରେ ଦୃଷ୍ଟାନ୍ତ—କାଶୀପୁରର ବଗିଚାକୁ ଆସିଥିବା ଜନୈକ ଯୁବକର କଥା : ୫୯୬
ଆଧ୍ୟାତ୍ମିକ ଭାବର ଆତିଶଯ୍ୟରେ ଉପସ୍ଥିତ ବିକାରସମୂହ ଚିହ୍ନିବାରେ ଠାକୁରଙ୍କର ଶକ୍ତି । ଗୁରୁ ଯଥାର୍ଥ ହିଁ ଭବରୋଗ-ବୈଦ୍ୟ : ୫୯୭
ସେହି ଯୁବକର ଅବସ୍ଥା ସମ୍ବନ୍ଧରେ ଠାକୁରଙ୍କ ମୀମାଂସା : ୫୯୮
ଠାକୁରେ ପିଲାଙ୍କ ପରି ମଥୁରବାବୁଙ୍କୁ ସବୁ ବିଷୟ ଖୋଲି କହିବା ଓ ମତାମତ ନେବା : ୫୯୯
ମଥୁରଙ୍କର କଲ୍ୟାଣ ଦିଗରେ ଠାକୁରଙ୍କର କେତେଦୂର ଦୃଷ୍ଟି ଥିଲା : ୬୦୦
ଏବିଷୟର ଦୃଷ୍ଟାନ୍ତ—ଫଳହାରିଣୀ ପୂଜାର ପ୍ରସାଦ ଠାକୁର ମାଗି ନେବା : ୬୦୧
ବିଶେଷ ବିଶେଷ ପର୍ବ ଦିନମାନଙ୍କରେ ଠାକୁରଙ୍କର ଭିନ୍ନ ଭିନ୍ନ ପ୍ରକାର ଭାବସମାଧିର ସ୍ୱଭାବତଃ ଉଦୟ : ୬୦୧
ଠାକୁରଙ୍କର ଏପରି ପ୍ରସାଦ ମାଗିବାରେ ଯୋଗାନନ୍ଦ ସ୍ୱାମୀଙ୍କର ଚିନ୍ତା : ୬୦୩
ଠାକୁରଙ୍କର ଏପରି କରିବାର କାରଣ-ନିର୍ଦ୍ଦେଶ : ୬୦୪
ମଥୁରଙ୍କ ସହିତ ଠାକୁରଙ୍କର ଅଦ୍ଭୁତ ସମ୍ବନ୍ଧ : ୬୦୪
ମଥୁରଙ୍କର କାମକୀଟ କଥା କହି ବାଳକଭାବାପନ୍ନ ଠାକୁରଙ୍କୁ ବୁଝାଇବା : ୬୦୫
ମଥୁରବାବୁଙ୍କ ସହିତ ଠାକୁରଙ୍କର ଭକ୍ତମାନଙ୍କର ଆଗମନ କଥା : ୬୦୬
ଠାକୁରଙ୍କର ବାଳକଭାବର ଦୃଷ୍ଟାନ୍ତ—ସୁନସୁନିଆ ଶାଗ ତୋଳିବା କଥା : ୬୦୬
ସାଂସାରିକ ବିପଦରେ ମଥୁରବାବୁ ଠାକୁରଙ୍କ ଶରଣାପନ୍ନ ହେବା : ୬୦୭
କୃପଣ ମଥୁରଙ୍କର ଠାକୁରଙ୍କ ପାଇଁ ଅଜସ୍ର ଅର୍ଥବ୍ୟୟର ଦୃଷ୍ଟାନ୍ତ : ୬୦୭
ଏହି ବିଷୟକ ଅନ୍ୟାନ୍ୟ ଦୃଷ୍ଟାନ୍ତ : ୬୦୮
ଠାକୁରଙ୍କ ଇଚ୍ଛାରେ ମଥୁରଙ୍କର ବୈଦ୍ୟନାଥରେ ଦରିଦ୍ର ସେବା : ୬୦୯
ଠାକୁରଙ୍କ ସହିତ ମଥୁରବାବୁଙ୍କର ସମ୍ବନ୍ଧ ଦୈବନିର୍ଦ୍ଦିଷ୍ଟ; ଭୋଗବାସନା ଥିଲା ବୋଲି ମଥୁରବାବୁଙ୍କର ପୁନର୍ଜନ୍ମ ସମ୍ବନ୍ଧରେ ଠାକୁରଙ୍କର ଉକ୍ତି : ୬୦୯

## ଅଷ୍ଟମ ଅଧ୍ୟାୟ

### ଗୁରୁଭାବରେ ନିଜ ଗୁରୁଗଣଙ୍କ ସହିତ ସମ୍ବନ୍ଧ


ଗୁରୁଭାବ ଅବତାରପୁରୁଷମାନଙ୍କର ନିଜସ୍ୱ ସମ୍ପତ୍ତି : ୬୧୧
ଠାକୁରଙ୍କର ଅନେକ ଗୁରୁଙ୍କ ନିକଟରୁ ଦୀକ୍ଷା ଗ୍ରହଣ : ୬୧୨
ଭୈରବୀ ବ୍ରାହ୍ମଣୀ : ୬୧୨
ବ୍ରାହ୍ମଣୀଙ୍କର ଠାକୁରଙ୍କୁ ସହାୟତା : ୬୧୨
ବ୍ରାହ୍ମଣୀଙ୍କର ବୈଷ୍ଣବ ତନ୍ତ୍ରୋକ୍ତ ଭାବର ଅଭିଜ୍ଞତା : ୬୧୩
ବ୍ରାହ୍ମଣୀଙ୍କର ରୂପଗୁଣ ଦେଖି ମଥୁରବାବୁଙ୍କର ସନ୍ଦେହ : ୬୧୪
ବ୍ରାହ୍ମଣୀଙ୍କର ପୂର୍ବ ପରିଚୟ : ୬୧୪
ବ୍ରାହ୍ମଣୀ ଉଚ୍ଚସ୍ତରର ସାଧିକା ଥିଲେ : ୬୧୫
ବ୍ରାହ୍ମଣୀଙ୍କର ଯୋଗଲବ୍ଧ ଦର୍ଶନ : ୬୧୫
ବ୍ରାହ୍ମଣୀଙ୍କର ଶିଷ୍ୟ ଚନ୍ଦ୍ରଙ୍କର କଥା : ୬୧୫
ସିଦ୍ଧି ହିଁ ଯୋଗଭ୍ରଷ୍ଟକାରୀ : ୬୧୬
ସିଦ୍ଧିଲାଭରେ ଚନ୍ଦ୍ରଙ୍କର ପତନ : ୬୧୬
ବ୍ରାହ୍ମଣୀଙ୍କ ଶିଷ୍ୟ ଗିରିଜାଙ୍କର କଥା : ୬୧୭
ଗିରିଜାଙ୍କ ସିଦ୍ଧି : ୬୧୭
ଠାକୁରଙ୍କର ଗୁରୁଭାବରେ ଚନ୍ଦ୍ର ଓ ଗିରିଜାଙ୍କର ସିଦ୍ଧି-ନାଶ ହେବା : ୬୧୮
ସିଦ୍ଧି ଈଶ୍ୱରଲାଭର ଅନ୍ତରାୟ; ଏବିଷୟରେ ଠାକୁରଙ୍କର 'ପାଦରେ ଚାଲି ନଦୀ ପାର ହେବାର ଗଳ୍ପ' : ୬୧୮
ସିଦ୍ଧି ଯୋଗୁଁ ଅହଂକାର-ବୃଦ୍ଧି ବିଷୟରେ ଠାକୁରଙ୍କର 'ହାତୀ ମାରିବା-ବଞ୍ଚାଇବା' ଗଳ୍ପ : ୬୧୯
ବ୍ରାହ୍ମଣୀଙ୍କର ନିର୍ବିକଳ୍ପ ଅଦ୍ୱୈତଭାବ ଲାଭ ହୋଇ ନ ଥିଲା; ଏହାର ପ୍ରମାଣ : ୬୨୧
ତନ୍ତ୍ରୋକ୍ତ ପଶୁ, ବୀର ଓ ଦିବ୍ୟଭାବର ନିର୍ଣ୍ଣୟ : ୬୨୨
ବୀରଭାବର ସାଧିକା 'ବ୍ରାହ୍ମଣୀ' ଦିବ୍ୟଭାବର ଅଧିକାରୀ ହେବାକୁ ସେତେବେଳେ ସମର୍ଥା ହୋଇ ନ ଥିଲେ : ୬୨୩
ଏହି ବିଷୟରେ ପ୍ରମାଣ : ୬୨୩
ଠାକୁରଙ୍କର କୃପାରେ ବ୍ରାହ୍ମଣୀଙ୍କର ନିଜ ଆଧ୍ୟାତ୍ମିକ ଅଭାବ-ବୋଧ ଓ ତପସ୍ୟା କରିବାକୁ ଯାତ୍ରା : ୬୨୪
ତୋତାପୁରୀଜୀଙ୍କ କଥା : ୬୨୫
ଠାକୁର ଓ ତୋତାପୁରୀଜୀଙ୍କ ମଧ୍ୟରେ ପରସ୍ପର ଭାବର ଆଦାନ-ପ୍ରଦାନର ବିଷୟ : ୬୨୬
ବ୍ରହ୍ମଜ୍ଞ ପୁରୁଷଙ୍କ ନିର୍ଭୀକତା ଓ ବନ୍ଧନବିମୁକ୍ତି ସମ୍ବନ୍ଧରେ ଶାସ୍ତ୍ର : ୬୨୭
ତୋତାପୁରୀଙ୍କର ଉଚ୍ଚ ଅବସ୍ଥା : ୬୨୮
ତୋତାଙ୍କର ନିର୍ଭୀକତା—ଭୈରବ ଦର୍ଶନ : ୬୨୮
ତୋତାପୁରୀଙ୍କ ଗୁରୁଙ୍କ କଥା : ୬୨୯
ନିଜ ଗୁରୁଙ୍କର ମଠ ଓ ମଣ୍ଡଳୀ ସମ୍ବନ୍ଧରେ ତୋତାପୁରୀଙ୍କ କଥା : ୬୩୦

ତୋତାପୁରୀଙ୍କର ପୂର୍ବ ପରିଚୟ : ୬୩୧
ତୋତାପୁରୀଙ୍କର ମନ : ୬୩୨
ତୋତାପୁରୀଙ୍କର ଭକ୍ତିମାର୍ଗରେ ଅନଭିଜ୍ଞତା : ୬୩୩
ଏବିଷୟରେ ପ୍ରମାଣ — 'କ୍ୟୋଁ ରୋଟି ଠୋକ୍‌ତେ ହୋ' : ୬୩୪
ତୋତାପୁରୀଙ୍କ କ୍ରୋଧତ୍ୟାଗର କଥା : ୬୩୫
ମାୟା କୃପା କରି ରାସ୍ତା ନ ଛାଡ଼ିଲେ ମାନବର ଈଶ୍ୱରଲାଭ ହୁଏ ନାହିଁ : ୬୩୬
ଏହି ବିଷୟରେ ଦୃଷ୍ଟାନ୍ତ — ରାମ, ସୀତା ଓ ଲକ୍ଷ୍ମଣଙ୍କର ବନପର୍ଯ୍ୟଟନ କଥା : ୬୩୬
ଜଗଦମ୍ବାଙ୍କର କୃପାରେ ତାଙ୍କର ଉଚ୍ଚ ଅବସ୍ଥା —
ତୋତା ସେକଥା ବୁଝି ନ ଥିଲେ : ୬୩୭
ତୋତାପୁରୀଙ୍କର ଅସୁସ୍ଥତା : ୬୩୭
ତୋତାଙ୍କର ନିଜ ମନର ସଙ୍କେତ ଅଗ୍ରାହ୍ୟ କରିବା : ୬୩୮
ତୋତାଙ୍କର ଠାକୁରଙ୍କ ନିକଟରୁ ବିଦାୟ ନ ନେଇପାରିବା ଓ ରୋଗର ବୃଦ୍ଧି : ୬୩୮
ମନକୁ ଆୟତ୍ତ କରି ନ ପାରି ତୋତାଙ୍କର ଗଙ୍ଗାରେ ଶରୀର ବିସର୍ଜନ
କରିବାକୁ ଯିବା ଓ ବିଶ୍ୱରୂପିଣୀ ଜଗଦମ୍ବାଙ୍କର ଦର୍ଶନ : ୬୩୯
ତୋତାଙ୍କର ପୂର୍ବ ସଂକଳ୍ପ ତ୍ୟାଗ : ୬୪୦
ଅସୁସ୍ଥତାରେ ତୋତାଙ୍କର ଜ୍ଞାନ — ବ୍ରହ୍ମ ଓ ବ୍ରହ୍ମଶକ୍ତି ଏକ : ୬୪୦
ତୋତାପୁରୀଙ୍କର ଜଗଦମ୍ବାଙ୍କୁ ମାନିବା ଓ ବିଦାୟଗ୍ରହଣ : ୬୪୧
ତୋତାପୁରୀଙ୍କର 'କିମିଆ' ବିଦ୍ୟାର ଅଭିଜ୍ଞତା : ୬୪୧
ଉପସଂହାର : ୬୪୨
**ପୁସ୍ତକସ୍ଥ ଘଟଣାବଳୀର ସମୟ–ନିରୂପକ ତାଲିକା ୬୪୩**



ଶ୍ରୀରାମକୃଷ୍ଣଦେବ (୧୮୩୬-୧୮୮୬)



ଶ୍ରୀଶ୍ରୀମା' ସାରଦାଦେବୀ (୧୮୫୩-୧୯୨୦)

# ଭୂମିକା

ଈଶ୍ୱରଙ୍କ କୃପାରୁ ଶ୍ରୀରାମକୃଷ୍ଣଦେବଙ୍କର ଆବିର୍ଭାବର ପ୍ରୟୋଜନ ସହିତ ତାଙ୍କର ବାଲ୍ୟଜୀବନର ସବିସ୍ତାର ବିବରଣ ପ୍ରକାଶିତ ହେଲା । ବିଭିନ୍ନ ଲୋକଙ୍କଠାରୁ ତାଙ୍କ ସମ୍ବନ୍ଧରେ ସେହି ସମୟର ଘଟଣାସମୂହ ଅସମ୍ବନ୍ଧଭାବରେ ଶ୍ରବଣ କରି ଆମମାନଙ୍କ ଚିତ୍ତରେ ଯେଉଁ ଚିତ୍ର ଅଙ୍କିତ ହୋଇଛି, ପାଠକଙ୍କୁ ତାହା ସହିତ ପରିଚିତ କରାଇବା ପାଇଁ ଆମେମାନେ ଏହାଦ୍ୱାରା ସଚେଷ୍ଟ ହୋଇଛୁ । ଶ୍ରୀରାମକୃଷ୍ଣଦେବଙ୍କର ଭଣଜା ଶ୍ରୀଯୁକ୍ତ ହୃଦୟରାମ ମୁଖୋପାଧ୍ୟାୟ ଓ ଭ୍ରାତୁଷ୍ପୁତ୍ର ଶ୍ରୀଯୁକ୍ତ ରାମଲାଲ ଚଟ୍ଟୋପାଧ୍ୟାୟ ପ୍ରଭୃତି ବ୍ୟକ୍ତିଗଣ ଆମମାନଙ୍କୁ ଘଟଣାବଳୀର ସମୟ-ନିରୂପଣରେ ଯଥାସାଧ୍ୟ ସାହାଯ୍ୟ ପ୍ରଦାନ କରିଥିଲେ ମଧ୍ୟ କିଛି କିଛି ସ୍ଥାନରେ ତାହାର ବ୍ୟତିକ୍ରମ ହେବାର ସମ୍ଭାବନା ରହିଯାଇଛି । କାରଣ, ସେମାନେ ଆମମାନଙ୍କୁ ଶ୍ରୀରାମକୃଷ୍ଣଦେବଙ୍କ ପିତା ଓ ଅଗ୍ରଜ ପ୍ରଭୃତିଙ୍କର ଜନ୍ମକୋଷ୍ଠୀଗୁଡ଼ିକ ପ୍ରଦାନ କରିପାରି ନାହାନ୍ତି; ଶ୍ରୀରାମକୃଷ୍ଣଦେବଙ୍କ ଜନ୍ମ ସମୟରେ ତାଙ୍କ ପିତାଙ୍କ ବୟସ ୬୧/୬୨ ବର୍ଷ ହୋଇଥିଲା ଓ ତାଙ୍କର ଅଗ୍ରଜ ରାମକୁମାର ତାଙ୍କ ଅପେକ୍ଷା ୩୧/୩୨ ବର୍ଷ ବଡ଼ ଥିଲେ, ଏହି ଭାବରେ ସମୟ-ନିରୂପଣ କରି କହିଥିଲେ ।

ଯାହା ହେଉ, ଶ୍ରୀରାମକୃଷ୍ଣଦେବଙ୍କ ଜନ୍ମ ସମ୍ବନ୍ଧରେ ଯେଉଁ ମସିହା ଓ ତାରିଖ ଆମେ ଏହି ଗ୍ରନ୍ଥରେ ଲିପିବଦ୍ଧ କରିଅଛୁ, ସେଥିରେ ଯେ କୌଣସି ବ୍ୟତିକ୍ରମ ନାହିଁ, ତାହା ପାଠକ 'ମହାପୁରୁଷଙ୍କ ଜନ୍ମକଥା' ନାମକ ଏହି ଗ୍ରନ୍ଥର ପଞ୍ଚମ ଅଧ୍ୟାୟ ପାଠ କରି ନିଃସଂଶୟରେ ବୁଝିପାରିବେ । ଠାକୁରଙ୍କର ସ୍ୱୀୟ ଉକ୍ତିରୁ ହିଁ ଆମେ ତାହା ନିରୂପଣ କରିବାରେ ସକ୍ଷମ ହୋଇଅଛୁ । ସୁତରାଂ ଏହି ବିଷୟ ପାଇଁ ସେ ନିଜେ ହିଁ ସ୍ୱରୂପତଃ ସର୍ବସାଧାରଣଙ୍କର କୃତଜ୍ଞତାଭାଜନ ହୋଇଛନ୍ତି । ଗ୍ରନ୍ଥସ୍ଥ ଘଟଣାବଳୀର ଅନେକାଂଶ ଆମେ ତାଙ୍କ ନିଜ ମୁହଁରୁ ଶୁଣିଥିଲୁ । ଶ୍ରୀରାମକୃଷ୍ଣଙ୍କ ଜୀବନର ଲୀଳାସମୂହ ଲିପିବଦ୍ଧ କରିବା ପ୍ରାରମ୍ଭରେ ଆମେ ତାଙ୍କର ବାଲ୍ୟ ଓ ଯୌବନର ଘଟଣାସମୂହ ଯେ ଏତେ ବିଶଦ ଏବଂ ସମ୍ବନ୍ଧଭାବରେ ଲିପିବଦ୍ଧ କରିପାରିବୁ, ଏପରି ଆଶା କରି ନ ଥିଲୁ । ସୁତରାଂ ଯିଏ ମୂକକୁ ବାଗ୍ମୀ ହେବାକୁ ଏବଂ ପଙ୍ଗୁକୁ ବିଶାଳ ଗିରି ଲଙ୍ଘନ କରିବାକୁ ସାମର୍ଥ୍ୟ ପ୍ରଦାନ କରିବାରେ ସମର୍ଥ, ଏକମାତ୍ର ତାଙ୍କ କୃପାରୁ ଏହା ସମ୍ଭବପର ହେଲା ଭାବି ଆମେ ତାଙ୍କୁ ବାରମ୍ବାର ପ୍ରଣାମ କରୁଛୁ । ଉପସଂହାରରେ ଏହା ହିଁ ବକ୍ତବ୍ୟ ଯେ, ପାଠକ ବର୍ତ୍ତମାନ ଗ୍ରନ୍ଥ ପାଠ କରିବା ପରେ 'ସାଧକଭାବ' ଓ 'ଗୁରୁଭାବ' ଗ୍ରନ୍ଥ ପାଠ କଲେ ଶ୍ରୀରାମକୃଷ୍ଣଦେବଙ୍କ ଜନ୍ମକାଳରୁ ଆରମ୍ଭ କରି ବଙ୍ଗାବ୍ଦ ୧୨୮୭ ସାଲ ବା ୧୮୮୧ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ତାଙ୍କର ଜୀବନ-ଇତିହାସ ଧାରାବାହିକଭାବରେ ଲିପିବଦ୍ଧ ଦେଖିବାକୁ ପାଇବେ । ଇତି—

ପ୍ରଣତ
ଗ୍ରନ୍ଥକାର

# ପୂର୍ବକଥା ଓ ବାଲ୍ୟଜୀବନ

## ଅବତରଣିକା

### ଧର୍ମ ହିଁ ଭାରତର ସର୍ବସ୍ୱ :

ଭାରତ ଏବଂ ଅନ୍ୟାନ୍ୟ ଦେଶମାନଙ୍କର ଆଧ୍ୟାତ୍ମିକ ଭାବ ଓ ବିଶ୍ୱାସର ତୁଳନାତ୍ମକ ଆଲୋଚନା କଲେ ଏଗୁଡ଼ିକ ମଧ୍ୟରେ ବିଶେଷ ପ୍ରଭେଦ ଉପଲବ୍ଧ ହୁଏ । ଦେଖାଯାଏ, ଈଶ୍ୱର, ଆତ୍ମା, ପରକାଳ ପ୍ରଭୃତି ଇନ୍ଦ୍ରିୟାତୀତ ବସ୍ତୁକୁ ଧ୍ରୁବସତ୍ୟଜ୍ଞାନରେ ପ୍ରତ୍ୟକ୍ଷ କରିବା ଲାଗି ଅତି ପ୍ରାଚୀନ କାଳରୁ ଭାରତ ନିଜର ସର୍ବସ୍ୱ ନିୟୋଜିତ କରିଛି ଏବଂ ଏପରି ଉପଲବ୍ଧି ବା ସାକ୍ଷାତ୍‌କାରକୁ ବ୍ୟକ୍ତିଗତ ଓ ଜାତିଗତ ସ୍ୱାର୍ଥର ଚରମ ସୀମାରୂପେ ଗ୍ରହଣ କରିଛି । ଏହାର ସମସ୍ତ ଚେଷ୍ଟା ଏକ ଅପୂର୍ବ ଆଧ୍ୟାତ୍ମିକତାରେ ଚିରକାଳ ପାଇଁ ରଞ୍ଜିତ ହୋଇରହିଛି ।

### ମହାପୁରୁଷମାନଙ୍କର ଭାରତରେ ବାରମ୍ବାର ଜନ୍ମଗ୍ରହଣ ହିଁ ଏହାର କାରଣ :

ଇନ୍ଦ୍ରିୟାତୀତ ବିଷୟ ପ୍ରତି ଏପରି ଏକାନ୍ତ ଅନୁରାଗ କେଉଁଠାରୁ ଆସି ଉପସ୍ଥିତ ହେଲା, ଏକଥାର ମୂଳ ଅନ୍ୱେଷଣ କଲେ ବୁଝାଯାଏ ଯେ, ଦିବ୍ୟଗୁଣ ଏବଂ ପ୍ରତ୍ୟକ୍ଷ-ଅନୁଭୂତି-ସମ୍ପନ୍ନ ପୁରୁଷମାନଙ୍କର ଭାରତରେ ବାରମ୍ବାର ଜନ୍ମଗ୍ରହଣ ହିଁ ଏହାର ଏକମାତ୍ର କାରଣ । ସେମାନଙ୍କର ବିଚିତ୍ର ଦର୍ଶନ ଓ ଅସାଧାରଣ ଶକ୍ତି-ପ୍ରକାଶ ବାରମ୍ବାର ପ୍ରତ୍ୟକ୍ଷ ଏବଂ ଆଲୋଚନା କରି ଭାରତ ଏସବୁଥିରେ ଦୃଢ଼ବିଶ୍ୱାସୀ ଓ ଅନୁରାଗସମ୍ପନ୍ନ ହୋଇଉଠିଥିଲା । ଭାରତର ଜାତୀୟଜୀବନ ଏଭାବରେ ବହୁ ପ୍ରାଚୀନ କାଳରୁ ଆଧ୍ୟାତ୍ମିକତାର ସୁଦୃଢ଼ ଭିତ୍ତିଭୂମି ଉପରେ ସଂସ୍ଥାପିତ ହୋଇ, ପ୍ରତ୍ୟକ୍ଷ ଧର୍ମଲାଭରୂପକ ଲକ୍ଷ୍ୟରେ ଦୃଷ୍ଟି ସ୍ଥିର ରଖି ଅଦୃଷ୍ଟପୂର୍ବ, ଅଭିନବ ସମାଜ ଏବଂ ସାମାଜିକ ପ୍ରଥାମାନ ସୃଷ୍ଟି କରିଥିଲା । ଜାତି ଏବଂ ସମାଜର ପ୍ରତ୍ୟେକ ବ୍ୟକ୍ତି ନିଜ ପ୍ରକୃତିଗତ ଗୁଣର ଅବଲମ୍ବନରେ ଦୈନନ୍ଦିନ କାର୍ଯ୍ୟକର୍ମ ଅନୁଷ୍ଠାନପୂର୍ବକ କ୍ରମଶଃ ଉନ୍ନୀତ ହୋଇ ଯେପରି ଶେଷରେ ଚରମ ଧର୍ମଲାଭ ବା ଈଶ୍ୱର-ସାକ୍ଷାତ୍‌କାର କରିପାରେ, ଭାରତର ସମାଜ ଏକମାତ୍ର ସେହି ଦିଗରେ ଲକ୍ଷ୍ୟ ରଖି ନିୟମ ଏବଂ ପ୍ରଥାମାନ ରଚନା କରିଥିଲା । ପୁରୁଷାନୁକ୍ରମେ ବହୁକାଳ ପର୍ଯ୍ୟନ୍ତ ଏସମସ୍ତ ନିୟମ ପ୍ରତିପାଳନ କରି ଆସିଥିବାରୁ ଭାରତରେ ଧର୍ମଭାବ ଏପର୍ଯ୍ୟନ୍ତ ଏତେଦୂର ସଜୀବ ରହିଛି, ଏବଂ ତପସ୍ୟା, ସଂଯମ ଓ ତୀବ୍ର ବ୍ୟାକୁଳତା ଦ୍ୱାରା ପ୍ରତ୍ୟେକ ବ୍ୟକ୍ତି ଯେ ଜଗତକାରଣ ଈଶ୍ୱରଙ୍କୁ ପ୍ରତ୍ୟକ୍ଷ କରିପାରେ ଏବଂ ତାଙ୍କ ସହିତ ନିତ୍ୟ-ଯୁକ୍ତ ହୋଇପାରେ, ଏହି କଥାରେ ଏବେ ମଧ୍ୟ ଭାରତର ପ୍ରତ୍ୟେକ ନରନାରୀ ଦୃଢ଼ବିଶ୍ୱାସୀ ହୋଇ ରହିଛନ୍ତି ।

## ଈଶ୍ୱରଙ୍କ ପ୍ରତ୍ୟକ୍ଷ ଦର୍ଶନ ଉପରେ ଭାରତର ଧର୍ମ ପ୍ରତିଷ୍ଠିତ—ଏହାର ପ୍ରମାଣ :

ଏକଥା ସହଜରେ ଅନୁମେୟ ଯେ, ଶ୍ରୀଭଗବାନଙ୍କର ଦର୍ଶନଲାଭ ଉପରେ ହିଁ ଭାରତର ଧର୍ମ ପ୍ରତିଷ୍ଠିତ । ଧର୍ମସଂସ୍ଥାପକ ଆଚାର୍ଯ୍ୟଗଣଙ୍କୁ ବୈଦିକ ଯୁଗରୁ ଆମେ ଯେଉଁସମସ୍ତ ପର୍ଯ୍ୟାୟଭୁକ୍ତ କରିଛୁ, ସେହିସମସ୍ତ ପଦର ଅର୍ଥ ଅନୁଧାବନ କଲେ ଏବିଷୟ ହୃଦୟଙ୍ଗମ ହେବ, ଯଥା—ଋଷି, ଆପ୍ତ, ଅଧିକାରୀ ବା ପ୍ରକୃତି-ଲୀନ ପୁରୁଷ ଇତ୍ୟାଦି । ଅତୀନ୍ଦ୍ରିୟ ବସ୍ତୁ ସାକ୍ଷାତ୍କାର ଲାଭ କରି ଅସାଧାରଣ ଶକ୍ତିର ପରିଚୟ ପ୍ରଦାନ କରିଥିଲେ ବୋଲି ଯେ ସେମାନେ ଏପରି ସବୁ ନାମରେ ନାମିତ ହୋଇଥିଲେ, ତାହା ନିଃସନ୍ଦେହରେ କୁହାଯିବ । ବୈଦିକ ଯୁଗର ଋଷିଗଣଙ୍କଠାରୁ ଆରମ୍ଭ କରି ପୌରାଣିକ ଯୁଗର ଅବତାର-ପ୍ରଥିତ ପୁରୁଷମାନଙ୍କର ପ୍ରତ୍ୟେକଙ୍କ ସମ୍ବନ୍ଧରେ ହିଁ ପୂର୍ବୋକ୍ତ କଥା ସମଭାବରେ କୁହାଯାଇପାରେ ।

## ଭାରତରେ ଅବତାରବିଶ୍ୱାସ ଉପସ୍ଥିତ ହେବାର କାରଣ ଓ କ୍ରମ । ସାଂଖ୍ୟଦର୍ଶନୋକ୍ତ 'କଳ୍ପନିୟାମକ ଈଶ୍ୱର' :

ଆଉମଧ ବୈଦିକ ଯୁଗର ଋଷି ହିଁ ଯେ କାଳକ୍ରମେ ପୌରାଣିକ ଯୁଗର ଈଶ୍ୱରାବତାର ବୋଲି ପରିଗଣିତ ହୋଇଥିଲେ, ଏହା ବୁଝିବାକୁ ବିଳମ୍ବ ହୁଏ ନାହିଁ । ବୈଦିକ ଯୁଗର ମନୁଷ୍ୟ କେତେଜଣ ପୁରୁଷଙ୍କୁ ଇନ୍ଦ୍ରିୟାତୀତ ବସ୍ତୁ ଦର୍ଶନ କରିବାକୁ ସମର୍ଥ ବୋଲି ବୁଝିପାରିଲେ ମଧ୍ୟ, ସେମାନଙ୍କ ମଧ୍ୟରେ ଏବିଷୟରେ ଶକ୍ତିର ତାରତମ୍ୟ ଉପଲବ୍ଧି ନ କରିପାରି ସମସ୍ତଙ୍କୁ ଏକମାତ୍ର 'ଋଷି'-ପର୍ଯ୍ୟାୟରେ ନିର୍ଦ୍ଦେଶ କରି ସେମାନେ ସନ୍ତୁଷ୍ଟ ହୋଇଥିଲେ । କିନ୍ତୁ କାଳକ୍ରମେ ମନୁଷ୍ୟର ବୁଦ୍ଧି ଓ ତୁଳନା କରିବାର ଶକ୍ତି ଯେତେ ବୃଦ୍ଧିପ୍ରାପ୍ତ ହେଲା, ସେତେ ସେ ଉପଲବ୍ଧି କଲା ଯେ—ଋଷିମାନେ ସମସ୍ତେ ସମଶକ୍ତି-ସମ୍ପନ୍ନ ନୁହନ୍ତି; ଆଧ୍ୟାତ୍ମିକ ଜଗତରେ ସେମାନଙ୍କ ମଧ୍ୟରୁ କେହି ସୂର୍ଯ୍ୟ ଭଳି, କେହି ଚନ୍ଦ୍ରଭଳି, କେହି ଉଜ୍ଜ୍ୱଳ ନକ୍ଷତ୍ରଭଳି, ଏବଂ କେହିବା ସାମାନ୍ୟ ଖଦ୍ୟୋତସଦୃଶ ଦୀପ୍ତିପ୍ରଦାନ ପୂର୍ବକ ଜ୍ୟୋତିଷ୍ମାନ ହୋଇ ରହିଛନ୍ତି । ସେତେବେଳେ ଋଷିମାନଙ୍କୁ ଶ୍ରେଣୀବଦ୍ଧ କରିବାଲାଗି ମନୁଷ୍ୟ ସଚେଷ୍ଟ ହେଲା ଓ ସେମାନଙ୍କ ମଧ୍ୟରେ କତିପୟଙ୍କୁ ସେ ଆଧ୍ୟାତ୍ମିକ ଶକ୍ତି ପ୍ରକାଶରେ ବିଶେଷ ସାମର୍ଥ୍ୟବାନ ବା ସେହି ଶକ୍ତିର ବିଶେଷ ଅଧିକାରୀ ବୋଲି ସିଦ୍ଧାନ୍ତ କଲା । ଏହିପରି ଦାର୍ଶନିକ ଯୁଗରେ କେତେଜଣ ଋଷି 'ଅଧିକାରୀ-ପୁରୁଷ'-ପର୍ଯ୍ୟାୟରେ ଅଭିହିତ ହେଲେ । ଈଶ୍ୱରଙ୍କ ଅସ୍ତିତ୍ୱରେ ସନ୍ଦିହାନ ସାଂଖ୍ୟକାର ଆଚାର୍ଯ୍ୟ କପିଳ ମଧ୍ୟ ଏପରି ପୁରୁଷମାନଙ୍କର ଅସ୍ତିତ୍ୱରେ ସନ୍ଦେହ କରିପାରି ନାହାନ୍ତି; କାରଣ, ସାକ୍ଷାତ୍ ପ୍ରତ୍ୟକ୍ଷକୁ କିଏ ବା ସନ୍ଦେହ କରିପାରିବ ? ସୁତରାଂ ଶ୍ରୀଭଗବାନ କପିଳ ଏବଂ ତାଙ୍କର ପଦାନୁଗାମୀ ସାଂଖ୍ୟାଚାର୍ଯ୍ୟଗଣଙ୍କ ଗ୍ରନ୍ଥରେ 'ଅଧିକାରୀ-ପୁରୁଷ'ମାନଙ୍କୁ

'ପ୍ରକୃତି-ଲୀନ' ପୁରୁଷ ବୋଲି ଅଭିହିତ କରାଯାଇଛି । ଏପରି ଅସାଧାରଣ ଶକ୍ତିଶାଳୀ ପୁରୁଷମାନଙ୍କର ଉତ୍ପତ୍ତି ବିଷୟରେ କାରଣ ନିର୍ଣ୍ଣୟ କରିବାକୁ ଯାଇ ସେମାନେ କହିଛନ୍ତି—

ପବିତ୍ରତା, ସଂଯମାଦି ଗୁଣରେ ଭୂଷିତ ହୋଇ ପୂର୍ଣ୍ଣଜ୍ଞାନଲାଭରେ ସମର୍ଥ ହେଲେ ମଧ୍ୟ ଏପରି ପୁରୁଷମାନଙ୍କ ମନରେ ଲୋକକଲ୍ୟାଣସାଧନ-ବାସନା ତୀବ୍ରଭାବରେ ଜାଗରିତ ଥାଏ ଏବଂ ସେଥିପାଇଁ ସେମାନେ ଅନନ୍ତମହିମାମଣ୍ଡିତ ସ୍ୱ-ସ୍ୱରୂପରେ ସମ୍ପୂର୍ଣ୍ଣ ଲୀନ ହୋଇପାରି ନ ଥାନ୍ତି; କିନ୍ତୁ ସେହି ବାସନା ବଳରେ ସର୍ବଶକ୍ତିମୟୀ ପ୍ରକୃତିର ଅଙ୍ଗରେ ଲୀନ ହୋଇ ସେମାନେ ପ୍ରକୃତିର ଶକ୍ତି-ସମୂହକୁ ନିଜର ଶକ୍ତିରୂପରେ ପ୍ରତ୍ୟକ୍ଷ କରିଥାଆନ୍ତି, ଏବଂ ଏପରି ଷଡ଼ୈଶ୍ୱର୍ଯ୍ୟସମ୍ପନ୍ନ ହୋଇ ଏକ କଳ୍ପକାଳ ପର୍ଯ୍ୟନ୍ତ ଅଶେଷ ଭାବରେ ଜନକଲ୍ୟାଣସାଧନପୂର୍ବକ ପରିଣାମରେ ସ୍ୱ-ସ୍ୱରୂପରେ ଅବସ୍ଥାନ କରନ୍ତି ।

ଶକ୍ତିର ତାରତମ୍ୟ ଅନୁସାରେ 'ପ୍ରକୃତି-ଲୀନ' ପୁରୁଷମାନଙ୍କୁ ସାଂଖ୍ୟାଚାର୍ଯ୍ୟଗଣ ଦୁଇ ଶ୍ରେଣୀରେ ଭାଗ କରିଛନ୍ତି, ଯଥା—'କଳ୍ପନିୟାମକ ଈଶ୍ୱର' ଓ 'ଈଶ୍ୱର-କୋଟି' ।

### ଭକ୍ତି-ଯୁଗର ବିରାଟ ବ୍ୟକ୍ତିତ୍ୱବାନ ଈଶ୍ୱର :

ଦାର୍ଶନିକ ଯୁଗ ଶେଷରେ ଭାରତରେ ଭକ୍ତି-ଯୁଗର ଆବିର୍ଭାବ ହୋଇଥିଲା । ବେଦାନ୍ତର ତୀବ୍ର ନିର୍ଘୋଷରେ ଭାରତ-ଭାରତୀ ସେତେବେଳେ ନିଖିଳ ବ୍ୟକ୍ତିଙ୍କର ସମଷ୍ଟିଭୂତ ଏକ ବିରାଟ ବ୍ୟକ୍ତିତ୍ୱବାନ ଈଶ୍ୱରଙ୍କଠାରେ ବିଶ୍ୱାସୀ ହୋଇ କେବଳ ଅନନ୍ୟଭକ୍ତି ସାହାଯ୍ୟରେ ତାଙ୍କର ଉପାସନାଦ୍ୱାରା ଜ୍ଞାନ ଏବଂ ଯୋଗର ପୂର୍ଣ୍ଣତାପ୍ରାପ୍ତି-ବିଷୟରେ ଶ୍ରଦ୍ଧାବାନ ହୋଇଥାଏ । ସୁତରାଂ ସାଂଖ୍ୟଦର୍ଶନୋକ୍ତ 'କଳ୍ପନିୟାମକ ଈଶ୍ୱରଙ୍କୁ' ସେତେବେଳେ ନିତ୍ୟ-ଶୁଦ୍ଧ-ବୁଦ୍ଧ-ମୁକ୍ତ-ସ୍ୱଭାବବିଶିଷ୍ଟ ବିରାଟ ବ୍ୟକ୍ତିତ୍ୱବାନ ଈଶ୍ୱରଙ୍କର ଆଂଶିକ ବା ପୂର୍ଣ୍ଣ ପ୍ରକାଶରେ ପରିଣତ କରିବାକୁ ବିଳମ୍ବ ହୋଇ ନ ଥିଲା । ଏହିଭାବରେ ହିଁ ପୌରାଣିକ ଯୁଗରେ ଅବତାର-ବିଶ୍ୱାସର ଉତ୍ପତ୍ତି ଏବଂ ବୈଦିକ ଯୁଗର ବିଶିଷ୍ଟଗୁଣଶାଳୀ ଋଷି ଈଶ୍ୱରାବତାରରେ ପରିଣତ ହୋଇଥିଲେ ବୋଲି ଅନୁମିତ ହୁଏ । ଅତଏବ, ଏଥିରୁ ସ୍ପଷ୍ଟ ବୁଝାଯାଏ, ଅସାଧାରଣ ଆଧ୍ୟାତ୍ମିକ-ଶକ୍ତିସମ୍ପନ୍ନ ପୁରୁଷମାନଙ୍କର ଆବିର୍ଭାବଦର୍ଶନରେ ହିଁ ଭାରତ କ୍ରମେ ଈଶ୍ୱରାବତାରତ୍ୱରେ ବିଶ୍ୱାସବାନ ହୋଇଥିଲା, ଏବଂ ଏପରି ମହାପୁରୁଷମାନଙ୍କର ଅତୀନ୍ଦ୍ରିୟ ଦର୍ଶନ ଓ ଅନୁଭବାଦି ଉପରେ ହିଁ ଭାରତୀୟ ଧର୍ମର ସୁଦୃଢ଼ ସୌଧ ଧୀରେ ଧୀରେ ଉତ୍ଥିତ ହୋଇ ତୁଷାରମଣ୍ଡିତ ହିମାଳୟଭଳି ଗଗନ ସ୍ପର୍ଶ କରିଥିଲା । ଭାରତ ଏହିପରି ପୁରୁଷଗଣଙ୍କୁ ମନୁଷ୍ୟଜୀବନର ସର୍ବୋଚ୍ଚ ଉଦ୍ଦେଶ୍ୟଲାଭରେ କୃତାର୍ଥ ଜ୍ଞାନ କରି 'ଆପ୍ତ'-ସଂଜ୍ଞାରେ ନିର୍ଦ୍ଦେଶ କରିଥିଲା ଏବଂ

ସେମାନଙ୍କର ବାଣୀରେ ଜ୍ଞାନର ପରାକାଷ୍ଠା ଦେଖି ତାହାକୁ 'ବେଦ' ଶବ୍ଦରେ ଅଭିହିତ କରିଥିଲା ।

## ଅବତାରବିଶ୍ୱାସର ଅନ୍ୟ କାରଣ — ଗୁରୁ ଉପାସନା :

ବିଶିଷ୍ଟ ଋଷିଗଣଙ୍କର ଈଶ୍ୱରାବତାରତ୍ୱରେ ପରିଣତିର ଅନ୍ୟ ପ୍ରଧାନ କାରଣ — ଭାରତର ଗୁରୁ-ଉପାସନା । ବେଦୋପନିଷଦର ଯୁଗରୁ ହିଁ ଭାରତ-ଭାରତୀ ବିଶେଷ ଶ୍ରଦ୍ଧାର ସହିତ ଜ୍ଞାନଦାତା ଆଚାର୍ଯ୍ୟ ଗୁରୁଙ୍କର ଉପାସନା କରୁଥିଲେ । ଏହି ପୂଜୋପାସନା ହିଁ ସେମାନଙ୍କୁ କାଳକ୍ରମେ ଦେଖାଇ ଦେଲା ଯେ, ମାନବ ଭିତରେ ଅତୀନ୍ଦ୍ରିୟ ଐଶୀ ଶକ୍ତିର ଆବିର୍ଭାବ ନ ହେଲେ ସେ କେବେହେଲେ ଗୁରୁପଦବୀ ଗ୍ରହଣରେ ସମର୍ଥ ହୁଏ ନାହିଁ । ସାଧାରଣ ମନୁଷ୍ୟ-ଜୀବନର ସ୍ୱାର୍ଥପରତା ସହ ଯଥାର୍ଥ ଗୁରୁମାନଙ୍କର ଅହେତୁକ କରୁଣାରେ ଲୋକହିତାଚରଣର ତୁଳନାତ୍ମକ ଆଲୋଚନା କରି ସେମାନେ ପ୍ରଥମେ ସେମାନଙ୍କୁ ଏକ ଭିନ୍ନ ଉଚ୍ଚ ଶ୍ରେଣୀର ମାନବଜ୍ଞାନରେ ପୂଜା କରୁଥିଲେ । ପରେ ଆସ୍ତିକ୍ୟ, ଶ୍ରଦ୍ଧା ଓ ଭକ୍ତି ସେମାନଙ୍କ ମନରେ ଘନୀଭୂତ ହୋଇ ଯଥାର୍ଥ ଗୁରୁମାନଙ୍କର ଅଲୌକିକ ଶକ୍ତିପ୍ରକାଶ ସେମାନେ ଯେତେ ପ୍ରତ୍ୟକ୍ଷ କରୁଥିଲେ, ସେତେ ଅଧିକ ସେମାନଙ୍କର ଦେବତ୍ୱରେ ସେମାନେ ଦୃଢ଼ବିଶ୍ୱାସୀ ହେଉଥିଲେ । ସେମାନେ ବୁଝିଥିଲେ ଯେ, ଭବରୋଗରୁ ମୁକ୍ତ ହେବା ପାଇଁ ସେମାନେ ଏତେ କାଳ ଧରି ଶ୍ରୀଭଗବାନଙ୍କର କରୁଣାପୂର୍ଣ୍ଣ ଦକ୍ଷିଣାମୂର୍ତ୍ତିଙ୍କ ନିକଟରେ ଯେଉଁ ସହାୟତା ପ୍ରାର୍ଥନା କରୁଥିଲେ — "ରୁଦ୍ର ଯତ୍ତେ ଦକ୍ଷିଣଂ ମୁଖଂ ତେନ ମାଂ ପାହି ନିତ୍ୟଂ" — ଗୁରୁମାନଙ୍କ ମଧ୍ୟ ଦେଇ ତାହା ହିଁ ଏବେ ସେମାନଙ୍କ ନିକଟରେ ଉପସ୍ଥିତ ହୋଇଅଛି, ଶ୍ରୀଭଗବାନଙ୍କର କରୁଣା ହିଁ ମୂର୍ତ୍ତିମତୀ ଗୁରୁଶକ୍ତିରୂପରେ ସେମାନଙ୍କ ସମ୍ମୁଖରେ ପ୍ରକାଶିତ ରହିଅଛି ।

## ବେଦ ଓ ସମାଧି-ପ୍ରସୂତ ଦର୍ଶନ ଉପରେ ଅବତାରବାଦର ଭିତ୍ତି ପ୍ରତିଷ୍ଠିତ :

ଗୁରୁ-ଉପାସନାରେ ମାନବମନ ଯେତେବେଳେ ଏତେଦୂର ଅଗ୍ରସର ହେଲା, ସେତେବେଳେ ଯେଉଁମାନଙ୍କୁ ଆଶ୍ରୟ କରି ଏହି ଶକ୍ତିର ବିଶେଷ ଲୀଳା ପ୍ରକଟିତ ହେବାକୁ ଲାଗିଲା, ସେମାନଙ୍କୁ ଶ୍ରୀଭଗବାନଙ୍କର ଜ୍ଞାନପ୍ରଦା ଦକ୍ଷିଣାମୂର୍ତ୍ତିଙ୍କ ସହିତ ଅଭିନ୍ନଭାବରେ ଦେଖିବାରେ ତାହାର ବିଳମ୍ବ ହେଲା ନାହିଁ । ଏହିପରି ଆଚାର୍ଯ୍ୟ ଉପାସନା କାଳକ୍ରମେ ଭାରତରେ ଅବତାରବାଦର ଆନୟନ ଓ ପରିପୁଷ୍ଟିରେ ସହାୟତା କରିଥିଲା ବୋଲି ପ୍ରତୀୟମାନ ହୁଏ । ଅତଏବ, ଅବତାରବାଦର ସ୍ପଷ୍ଟ ଅଭିବ୍ୟକ୍ତି ପୌରାଣିକ ଯୁଗରେ ଘଟିଲେ ମଧ୍ୟ ଏହାର ମୂଳ ଯେ ବୈଦିକ ଯୁଗ ପର୍ଯ୍ୟନ୍ତ ବ୍ୟାପ୍ତ ରହିଛି, ଏହା କହିବା ବାହୁଲ୍ୟ । ବେଦ, ଉପନିଷଦ୍ ଏବଂ ଦର୍ଶନର ଯୁଗରେ ମାନବ ଈଶ୍ୱରଙ୍କ ଗୁଣ, କର୍ମ ଓ ପ୍ରକୃତି

ସମ୍ବନ୍ଧରେ ଯେଉଁସବୁ ଅଭିଜ୍ଞତା ଲାଭ କରିଥିଲା, ପୌରାଣିକ ଯୁଗରେ ସେସମସ୍ତ ସ୍ପଷ୍ଟ ଆକାର ଧାରଣ କରି ଅବତାରବିଶ୍ୱାସରୂପେ ଅଭିବ୍ୟକ୍ତ ହେଲା । ଅଥବା, ସଂଯମ ତପସ୍ୟାଦି ସାହାଯ୍ୟରେ ଉପନିଷଦ୍ ଯୁଗରେ ମାନବ 'ନେତି ନେତି'-ମାର୍ଗରେ ଅଗ୍ରସର ହୋଇ ନିର୍ଗୁଣବ୍ରହ୍ମ-ଉପାସନାରେ ସାଫଲ୍ୟ ଲାଭପୂର୍ବକ ସମାଧିରାଜ୍ୟରୁ ବିଲୋମମାର୍ଗ ଅବଲମ୍ବନରେ ଅବତରଣ କରି ସମଗ୍ର ଜଗତକୁ ବ୍ରହ୍ମଙ୍କର ପ୍ରକାଶ ରୂପେ ଦେଖିବାକୁ ଯେତେବେଳେ ସମର୍ଥ ହେଲା, ସେତେବେଳେ ହିଁ ସଗୁଣ ବିରାଟ ବ୍ରହ୍ମ ବା ଈଶ୍ୱରଙ୍କ ପ୍ରତି ତାହାର ପ୍ରେମଭକ୍ତି ଉପସ୍ଥିତ ହେବାରୁ, ସେ ତାଙ୍କର ଉପାସନାରେ ପ୍ରବୃତ୍ତ ହେଲା ଏବଂ ସେତେବେଳେ ହିଁ ସେ ତାଙ୍କର ଗୁଣ, କର୍ମ, ସ୍ୱଭାବାଦି ସମ୍ବନ୍ଧରେ ଏକ ସ୍ଥିରସିଦ୍ଧାନ୍ତରେ ଉପନୀତ ହୋଇ, ତାଙ୍କର ବିଶେଷ ଭାବରେ ଅବତୀର୍ଣ୍ଣ ହେବାରେ ବିଶ୍ୱାସବାନ ହେଲା ।

## ଈଶ୍ୱରଙ୍କ କରୁଣା-ଉପଲବ୍ଧିରୁ ହିଁ ପୌରାଣିକ ଯୁଗରେ ଅବତାରବାଦ-ପ୍ରଚାର :

ପୂର୍ବରୁ ଉଲ୍ଲିଖିତ ହୋଇଛି ଯେ, ପୌରାଣିକ ଯୁଗରୁ ହିଁ ଭାରତରେ ଅବତାରବିଶ୍ୱାସ ବିଶେଷ ଭାବରେ ପ୍ରକଟିତ ହୋଇଥିଲା । ସେହି ଯୁଗର ଆଧ୍ୟାତ୍ମିକ ବିକାଶରେ ନାନା ଦୋଷ ଦେଖାଗଲେ ସୁଦ୍ଧା ଏକମାତ୍ର ଅବତାର-ମହିମା-ପ୍ରକାଶରେ ତାହାର ବିଶେଷତ୍ୱ ଏବଂ ମହତ୍ତ୍ୱ ସ୍ପଷ୍ଟ ହୃଦୟଙ୍ଗମ ହୋଇଥାଏ । କାରଣ, ଅବତାର-ବିଶ୍ୱାସକୁ ଆଶ୍ରୟ କରି ହିଁ ମନୁଷ୍ୟ ସଗୁଣ ବ୍ରହ୍ମଙ୍କର ନିତ୍ୟ ଲୀଳାବିଳାସ ବୁଝିବାକୁ ସମର୍ଥ ହୋଇଅଛି । ସେଥିରୁ ସେ ବୁଝିଛି ଯେ, ଜଗତକାରଣ ଈଶ୍ୱର ହିଁ ଆଧ୍ୟାତ୍ମିକ ଜଗତରେ ତାର ଏକମାତ୍ର ପଥପ୍ରଦର୍ଶକ; ଏବଂ ସେଥିରୁ ତାର ହୃଦୟଙ୍ଗମ ହୋଇଛି ଯେ, ସେ ଯେତେକାଳ ପର୍ଯ୍ୟନ୍ତ ଯେତେ ଦୁର୍ନୀତିପରାୟଣ ହେଉ ନା କାହିଁକି, ଶ୍ରୀଭଗବାନଙ୍କର ଅପାର କରୁଣା ତାଙ୍କୁ କେବେହେଲେ ଚିରଦିନ ବିନାଶପଥରେ ଅଗ୍ରସର ହେବାକୁ ଦେବ ନାହିଁ— ବରଂ ବିଗ୍ରହବତୀ ହୋଇ ତାହା ଯୁଗେ ଯୁଗେ ଆବିର୍ଭୂତ ହେବ ଏବଂ ମାନବ-ପ୍ରକୃତିର ଉପଯୋଗୀ ନିତ୍ୟନୂତନ ଆଧ୍ୟାତ୍ମିକ ପଥସମୂହ ଆବିଷ୍କାରପୂର୍ବକ ତାହା ପାଇଁ ଧର୍ମଲାଭ ସୁଗମ କରିଦେବ ।

## ଅବତାରପୁରୁଷଙ୍କର ଦିବ୍ୟସ୍ୱଭାବ ସମ୍ବନ୍ଧରେ ଶାସ୍ତ୍ରୋକ୍ତିର ସାରସଂକ୍ଷେପ :

ଅମିତଗୁଣସମ୍ପନ୍ନ ଅବତାରପୁରୁଷମାନଙ୍କର ଦିବ୍ୟଜନ୍ମକର୍ମାଦି ସମ୍ବନ୍ଧରେ ସ୍ମୃତି ଓ ପୁରାଣମାନଙ୍କରେ ଯାହା ଲିପିବଦ୍ଧ ରହିଛି, ତାହାର ସାର ଏଠାରେ ସଂକ୍ଷେପରେ ଉଲ୍ଲେଖ କଲେ ମନ୍ଦ ହେବ ନାହିଁ । ସେମାନେ କହନ୍ତି, ଅବତାରପୁରୁଷ ଈଶ୍ୱରଙ୍କ ଭଳି ନିତ୍ୟ-ଶୁଦ୍ଧ-ବୁଦ୍ଧ-ମୁକ୍ତ-ସ୍ୱଭାବବାନ । ସାଧାରଣ ଜୀବ ପରି ସେ କର୍ମବନ୍ଧନରେ କେବେହେଲେ ଆବଦ୍ଧ ହୁଅନ୍ତି ନାହିଁ । କାରଣ, ଜନ୍ମରୁ ହିଁ

ଆତ୍ମାରାମ ହୋଇଥିବାରୁ ପାର୍ଥିବ ଭୋଗସୁଖଲାଭ ପାଇଁ ସାଧାରଣ ମଣିଷଙ୍କ ପରି ସ୍ୱାର୍ଥଚେଷ୍ଟା ତାଙ୍କ ଭିତରେ କେବେହେଲେ ଉଦିତ ହୁଏ ନାହିଁ, ଶରୀରଧାରଣପୂର୍ବକ ତାଙ୍କର ସମସ୍ତ ଚେଷ୍ଟା ଅନ୍ୟମାନଙ୍କର କଲ୍ୟାଣାର୍ଥ ଅନୁଷ୍ଠିତ ହୋଇଥାଏ । ଆଉମଧ ମାୟାର ଅଜ୍ଞାନବନ୍ଧନରେ ଆଦୌ ଆବଦ୍ଧ ହୋଇ ନ ଥିବାରୁ ପୂର୍ବ ପୂର୍ବ ଜନ୍ମମାନଙ୍କରେ ଶରୀର ପରିଗ୍ରହ କରି ସେ ଯେଉଁ ସମସ୍ତ କର୍ମାନୁଷ୍ଠାନ କରିଥିଲେ, ସେସବୁର ସ୍ମୃତି ତାଙ୍କର ଲୁପ୍ତ ହୁଏ ନାହିଁ ।

### ଅବତାରପୁରୁଷଙ୍କର ଅଖଣ୍ଡ ସ୍ମୃତିଶକ୍ତି :

ପ୍ରଶ୍ନ ଉଠିପାରେ, ସେପରି ଅଖଣ୍ଡ ସ୍ମୃତି କଅଣ ତାଙ୍କର ଆଶୈଶବ ବିଦ୍ୟମାନ ଥାଏ ? ଉତ୍ତରରେ ପୁରାଣକାରମାନେ କହନ୍ତି, ଅନ୍ତରରେ ବିଦ୍ୟମାନ ଥିଲେ ସୁଦ୍ଧା ଶୈଶବରେ ତାଙ୍କଠାରେ ତାହା ପ୍ରକାଶିତ ହୋଇ ନ ଥାଏ; କିନ୍ତୁ ଦେହ ଓ ମନରୂପକ ଯନ୍ତ୍ରଦ୍ୱୟ ସର୍ବାଙ୍ଗସମ୍ପନ୍ନ ହେବାମାତ୍ରେ ସ୍ୱଳ୍ପ ବା ଅନାୟାସରେ ତାହା ତାଙ୍କଠାରେ ଉଦିତ ହୋଇଥାଏ । ତାଙ୍କର ପ୍ରତ୍ୟେକ ଚେଷ୍ଟା ସମ୍ବନ୍ଧରେ ଏହା ହିଁ ବୁଝିବାକୁ ହେବ; କାରଣ, ମନୁଷ୍ୟଶରୀର ଧାରଣ କରିଥିବାରୁ ତାଙ୍କର ସମସ୍ତ ଆଚରଣ ମନୁଷ୍ୟ ଭଳି ହୋଇଥାଏ ।

### ଅବତାରପୁରୁଷଙ୍କର ନବଧର୍ମସ୍ଥାପନ :

ଦେହ-ମନ ପୂର୍ଣ୍ଣତାପ୍ରାପ୍ତ ହେବାମାତ୍ରେ ଅବତାରପୁରୁଷ ତାଙ୍କର ବର୍ତ୍ତମାନ ଜୀବନର ଉଦ୍ଦେଶ୍ୟ ସମ୍ୟକ୍ ଭାବରେ ଅବଗତ ହୋଇଥାଆନ୍ତି । ସେ ବୁଝିପାରନ୍ତି ଯେ, ଧର୍ମସଂସ୍ଥାପନ ଲାଗି ହିଁ ତାଙ୍କର ଆଗମନ । ପୁନଶ୍ଚ ଏହି ଉଦ୍ଦେଶ୍ୟ ସଫଳ କରିବା ପାଇଁ ଯାହା କିଛି ପ୍ରୟୋଜନ, ତାହା କେଉଁଠାରୁ ଯେପରି ଅଚିନ୍ତ୍ୟ ଉପାୟରେ ତାଙ୍କ ନିକଟରେ ସ୍ୱତଃ ଆସି ଉପସ୍ଥିତ ହୁଏ । ସାଧାରଣ ମନୁଷ୍ୟଙ୍କ ନିକଟରେ ଯେଉଁ ପଥ ସର୍ବଦା ଅନ୍ଧକାରମୟ ବୋଲି ଉପଲବ୍ଧ ହୁଏ, ସେ ସେହିମାର୍ଗରେ ଉଜ୍ଜ୍ୱଳ ଆଲୋକ ଦେଖିବାକୁ ପାଇ ଅକୁତୋଭୟରେ ଅଗ୍ରସର ହୁଅନ୍ତି ଏବଂ ଉଦ୍ଦେଶ୍ୟଲାଭରେ କୃତାର୍ଥ ହୋଇ ଜନସାଧାରଣଙ୍କୁ ସେହି ପଥରେ ପ୍ରବର୍ତ୍ତିତ କରନ୍ତି । ଏହିପରି ମାୟାତୀତ ବ୍ରହ୍ମସ୍ୱରୂପ ଏବଂ ଜଗତ୍‌କାରଣ ଈଶ୍ୱରଙ୍କୁ ଉପଲବ୍ଧି କରିବାର ଅଦୃଷ୍ଟପୂର୍ବ ନୂତନ ପଥସମୂହ ତାଙ୍କ ଦ୍ୱାରା ଯୁଗେ ଯୁଗେ ପୁନଃପୁନଃ ଆବିଷ୍କୃତ ହୁଏ ।

### ଅବତାରପୁରୁଷଙ୍କ ଆବିର୍ଭାବକାଳ ସମ୍ବନ୍ଧରେ ଶାସ୍ତ୍ରୋକ୍ତି :

ଅବତାରପୁରୁଷଙ୍କର ଗୁଣ, କର୍ମ, ସ୍ୱଭାବାଦି ଏପରି ଭାବରେ ନିର୍ଣ୍ଣୟ କରିସାରି ପୁରାଣକାରମାନେ କ୍ଷାନ୍ତ ହୋଇ ନାହାନ୍ତି, କିନ୍ତୁ ତାଙ୍କର ଆବିର୍ଭାବ ସମୟ ମଧ୍ୟ ସ୍ପଷ୍ଟ ଭାବରେ ନିରୂପଣ କରିଛନ୍ତି । ସେମାନେ କହନ୍ତି, ସନାତନ

ସର୍ବଜନୀନ ଧର୍ମ ଯେତେବେଳେ କାଳପ୍ରଭାବରେ ଗ୍ଳାନିଯୁକ୍ତ ହୁଏ, ଯେତେବେଳେ ମାୟା-ପ୍ରସୂତ ଅଜ୍ଞାନର ଅନିର୍ବଚନୀୟ ପ୍ରଭାବରେ ମୁଗ୍ଧ ହୋଇ ମନୁଷ୍ୟ ଇହକାଳ ଓ ପାର୍ଥିବ ଭୋଗସୁଖଲାଭକୁ ହିଁ ସର୍ବସ୍ୱଜ୍ଞାନପୂର୍ବକ ଜୀବନ ଅତିବାହିତ କରୁଥାଏ ଏବଂ ଆତ୍ମା, ଈଶ୍ୱର, ମୁକ୍ତି ପ୍ରଭୃତି ଅତୀନ୍ଦ୍ରିୟ ନିତ୍ୟ ପଦାର୍ଥସମୂହକୁ କୌଣସି ଏକ ଭ୍ରମାନ୍ଧ ଯୁଗର ସ୍ୱପ୍ନରାଜ୍ୟର କବିକଳ୍ପନା ବୋଲି ଧାରଣା କରିବସେ —ଯେତେବେଳେ ଛଳେ-ବଳେ-କୌଶଳେ ସର୍ବପ୍ରକାର ପାର୍ଥିବ ସମ୍ପଦ ଓ ଇନ୍ଦ୍ରିୟସୁଖ ଲାଭ କରି ମଧ୍ୟ ସେ ପ୍ରାଣର ଅଭାବ ଦୂର ନ କରିପାରି ଅଶାନ୍ତିର ଅନ୍ଧତମସାବୃତ ଅକୂଳ ପ୍ରବାହରେ ନିପତିତ ହୋଇ ଯନ୍ତ୍ରଣାରେ ହାହାକାର କରିବାକୁ ଲାଗେ —ସେତେବେଳେ ହିଁ ଶ୍ରୀଭଗବାନ ସ୍ୱକୀୟ ମହିମାରେ ସନାତନ ଧର୍ମକୁ ରାହୁଗ୍ରାସମୁକ୍ତ ଚନ୍ଦ୍ରମା ସଦୃଶ ଉଜ୍ଜ୍ୱଳ କରି ଧରିରଖନ୍ତି ଏବଂ ଦୁର୍ବଳ ମାନବ ପ୍ରତି କୃପାରେ ବିଗ୍ରହବାନ ହୋଇ ତାହାର ହସ୍ତଧାରଣପୂର୍ବକ ପୁନରାୟ ଧର୍ମପଥରେ ପ୍ରତିଷ୍ଠିତ କରିଥାଆନ୍ତି । କାରଣ ନ ଥିଲେ କାର୍ଯ୍ୟର ଉତ୍ପତ୍ତି କେବେହେଲେ ସମ୍ଭବପର ନୁହେଁ —ସେହିପରି ସାର୍ବଜନୀନ ଅଭାବ ଦୂରୀକରଣର ପ୍ରୟୋଜନ ନ ଥିଲେ ଈଶ୍ୱର କେବେହେଲେ ଲୀଳାଛଳରେ ଶରୀର ପରିଗ୍ରହ କରନ୍ତି ନାହିଁ । କିନ୍ତୁ ସେପରି କୌଣସି ଅଭାବ ଯେତେବେଳେ ସମାଜର ପ୍ରତି ଅଙ୍ଗକୁ ଅଭିଭୂତ କରେ, ସେତେବେଳେ ଶ୍ରୀଭଗବାନଙ୍କର ଅସୀମ କରୁଣା ଘନୀଭୂତ ହୋଇ ତାହାଙ୍କୁ ଜଗଦ୍‌ଗୁରୁ ରୂପରେ ଆବିର୍ଭୂତ ହେବାକୁ ପ୍ରଯୁକ୍ତ କରେ । ସେପରି ଆବଶ୍ୟକତା ଦୂର କରିବାଲାଗି ଏପରି ଲୀଳାବିଗ୍ରହଙ୍କର ବାରମ୍ବାର ଆବିର୍ଭାବ ପ୍ରତ୍ୟକ୍ଷ କରି ହିଁ ଯେ ପୁରାଣକାରମାନେ ପୂର୍ବୋକ୍ତ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ, ଏକଥା କହିବା ବାହୁଲ୍ୟମାତ୍ର ।

**ବର୍ତ୍ତମାନ କାଳରେ ଅବତାରପୁରୁଷଙ୍କର ପୁନରାଗମନ :**

ଅତଏବ ଦେଖାଯାଉଛି ଯେ, ନୂତନ ଧର୍ମର ଆବିଷ୍କାରକ ଜଗତ୍‌ଗୁରୁ, ସର୍ବଜ୍ଞ ଅବତାରପୁରୁଷ ଯୁଗ-ପ୍ରୟୋଜନ ସାଧନ ନିମିତ୍ତ ଆବିର୍ଭୂତ ହୁଅନ୍ତି । ଧର୍ମକ୍ଷେତ୍ର ଭାରତ ବିଭିନ୍ନ ଯୁଗରେ ବହୁଥର ତାଙ୍କର ପଦାଙ୍କ ହୃଦୟରେ ଧାରଣ କରି ପବିତ୍ର ହୋଇଥିଲା । ଯୁଗ-ପ୍ରୟୋଜନ ଉପସ୍ଥିତ ହେଲେ ଅମିତଗୁଣସମ୍ପନ୍ନ ଅବତାରପୁରୁଷଙ୍କର ଶୁଭ ଆବିର୍ଭାବ ଏବେ ମଧ୍ୟ ଏଠାରେ ଘଟିଥାଏ । ଚାରିଶହ ବର୍ଷରୁ କିଛି ଅଧିକ କାଳ ପୂର୍ବେ ଶ୍ରୀଭଗବାନ ଶ୍ରୀକୃଷ୍ଣଚୈତନ୍ୟ ଭାରତୀଙ୍କର ଅଦୃଷ୍ଟପୂର୍ବ ମହିମାରେ ଶ୍ରୀହରିଙ୍କର ନାମସଂକୀର୍ତ୍ତନରେ ଭାରତ ଉନ୍ମତ୍ତ ହେବା କଥା ଲୋକପ୍ରସିଦ୍ଧ । ପୁଣି କଅଣ ସେହି ସମୟ ଉପସ୍ଥିତ ହୋଇଛି ? ପୁଣି କଅଣ

ବିଦେଶୀଙ୍କର ଘୃଣାସ୍ପଦ, ନଷ୍ଟଗୌରବ, ଦରିଦ୍ର ଭାରତରେ ଯୁଗ-ପ୍ରୟୋଜନ ଉପସ୍ଥିତ ହୋଇ ଶ୍ରୀଭଗବାନଙ୍କ କରୁଣାରେ ବିଷମ ଉତ୍ତେଜନା ଆନୟନପୂର୍ବକ ତାଙ୍କୁ ବର୍ତ୍ତମାନ କାଳରେ ଶରୀରଧାରଣ କରାଇଛି କି ? ହେ ପାଠକ, ଅଶେଷକଲ୍ୟାଣଗୁଣସମ୍ପନ୍ନ ଯେଉଁ ମହାପୁରୁଷଙ୍କ କଥା ଆମେ ତୁମକୁ କହିବାକୁ ଯାଉଛୁ, ତାଙ୍କର ଜୀବନ ପର୍ଯ୍ୟାଲୋଚନା କଲେ ବୁଝିହେବ ଯେ, ବାସ୍ତବରେ ସେହିପରି ଘଟଣା ହିଁ ଘଟିଛି—ଶ୍ରୀରାମଚନ୍ଦ୍ର ଓ ଶ୍ରୀକୃଷ୍ଣାଦିଙ୍କ ରୂପରେ ଯେ ପୂର୍ବ ପୂର୍ବ ଯୁଗରେ ଆବିର୍ଭୂତ ହୋଇ ସନାତନ ଧର୍ମ ସଂସ୍ଥାପିତ କରିଥିଲେ, ବର୍ତ୍ତମାନ ସମୟରେ ଯୁଗ-ପ୍ରୟୋଜନ ସାଧିତ କରିବା ଲାଗି ତାଙ୍କର ଶୁଭାଗମନ ପ୍ରତ୍ୟକ୍ଷ କରି ଭାରତ ପୁନରାୟ ଧନ୍ୟ ହୋଇଛି ।

# ପ୍ରଥମ ଅଧ୍ୟାୟ

## ଯୁଗ-ପ୍ରୟୋଜନ

### ବର୍ତ୍ତମାନ କାଳରେ ମନୁଷ୍ୟ କେତେଦୂର ଉନ୍ନତ ଓ ଶକ୍ତିଶାଳୀ ହୋଇଛି :

ଏ ଯୁଗରେ ବିଦ୍ୟା, ସମ୍ପଦ ଓ ପୁରୁଷକାରର ସହାୟତାରେ ମାନବଜୀବନ କେତେଦୂର ପ୍ରସାର ଲାଭ କରୁଅଛି, ତାହା ଅତି ସ୍ଥୂଳଦର୍ଶୀ ବ୍ୟକ୍ତିର ମଧ୍ୟ ସହଜରେ ହୃଦୟଙ୍ଗମ ହୁଏ । ମନୁଷ୍ୟ ଯେପରି ଏବେ କୌଣସି କ୍ଷେତ୍ରରେ ଗୋଟିଏ ଗଣ୍ଡିମଧ୍ୟରେ ଆବଦ୍ଧ ହୋଇ ରହିବାକୁ ଆଉ ଚାହୁଁ ନାହିଁ । ଜଳରେ ଓ ସ୍ଥଳରେ ଇଚ୍ଛା ଆନୁସାରେ ପରିଭ୍ରମଣ କରି ମଧ୍ୟ ସୁଖୀ ନ ହୋଇ ସେ ଏବେ ଅଭିନବ ଯନ୍ତ୍ର ଆବିଷ୍କାରପୂର୍ବକ ବ୍ୟୋମଚାରୀ ହୋଇଛି; ତମସାବୃତ ସମୁଦ୍ରତଳେ ଓ ଜ୍ୱାଳାମୟ ଆଗ୍ନେୟଗିରିଗର୍ଭରେ ଅବତୀର୍ଣ୍ଣ ହୋଇ ସେ ନିଜର କୌତୂହଳନିବୃତ୍ତି କରିଛି; ଚିରତୁଷାରମଣ୍ଡିତ ପର୍ବତ ଓ ସାଗରର ମେରୁସୀମାକୁ ଗମନପୂର୍ବକ ସେ ସେହି ସମସ୍ତ ପ୍ରଦେଶର ଯଥାଯଥ ରହସ୍ୟ ପ୍ରତ୍ୟକ୍ଷ କରିବାକୁ ସମର୍ଥ ହୋଇଛି; ପୃଥିବୀର କ୍ଷୁଦ୍ର ଓ ବୃହତ୍ ଯାବତୀୟ ଲତା, ଗୁଳ୍ମ ଓ ପାଦପ ମଧ୍ୟରେ ସେ ନିଜ ପରି ପ୍ରାଣସ୍ପନ୍ଦନର ପରିଚୟ ପାଇଛି ଏବଂ ସର୍ବପ୍ରକାର ପ୍ରାଣୀଜାତିକୁ ନିଜର ପ୍ରତ୍ୟକ୍ଷ ଓ ବିଚାରଚକ୍ଷୁର ଅନ୍ତର୍ଭୁକ୍ତ କରି ଜ୍ଞାନସିଦ୍ଧିରୂପକ ସ୍ୱକୀୟ ଉଦ୍ଦେଶ୍ୟରେ ଅଗ୍ରସର ହେଉଛି । ଏଭଳି ଭାବରେ କ୍ଷିତି, ଅପ୍, ତେଜ ଇତ୍ୟାଦି ପଞ୍ଚଭୂତ ଉପରେ ଆଧିପତ୍ୟ ସ୍ଥାପନପୂର୍ବକ ସେ ଏବେ ଜଡ଼ ପୃଥିବୀର ପ୍ରାୟ ସମସ୍ତ ତଥ୍ୟ ଅବଗତ ହୋଇଛି ଏବଂ ସେଥିରେ ମଧ୍ୟ ସନ୍ତୁଷ୍ଟ ନ ରହି ସୁଦୂରାବସ୍ଥିତ ଗ୍ରହ ନକ୍ଷତ୍ର ଆଦିର ସମ୍ୟକ୍ ସମ୍ବାଦ ଜାଣିବାକୁ ଉଦ୍‌ଗ୍ରୀବ ହୋଇ କ୍ରମେ ସେଥିରେ ମଧ୍ୟ କୃତକାର୍ଯ୍ୟ ହେଉଛି । ଅନ୍ତର୍ଜଗତ-ପରିଦର୍ଶନରେ ମଧ୍ୟ ତାହାର ଉଦ୍ୟମର ଅଭାବ ପରିଲକ୍ଷିତ ହେଉ ନାହିଁ । ଭୂୟୋଦର୍ଶନ ଏବଂ ଗବେଷଣା ସହାୟତାରେ ମାନବ ସେହି କ୍ଷେତ୍ରରେ ମଧ୍ୟ ନୂତନ ତତ୍ତ୍ୱସକଳ ନିତ୍ୟ ଆବିଷ୍କାର କରୁଅଛି । ଜୀବନରହସ୍ୟ ଅନୁଶୀଳନ କରିବାକୁ ଯାଇ ସେ ଏକଜାତୀୟ ପ୍ରାଣୀର ଅନ୍ୟ ଜାତିତ୍ୱରେ ପରିଣତିର ବା କ୍ରମାଭିବ୍ୟକ୍ତିର କଥା ଜାଣିପାରିଛି; ଶରୀର ଓ ମନର ସ୍ୱଭାବ ଆଲୋଚନାପୂର୍ବକ ଆଦି-ଅନ୍ତ-ଶୀଳ ସୂକ୍ଷ୍ମ ଜଡ଼ୋପାଦାନରେ ମନର ଗଠନର ତତ୍ତ୍ୱ-ନିର୍ଣ୍ଣୟରେ ସକ୍ଷମ ହୋଇଅଛି; ଜଡ଼ଜଗତ ଭଳି ଅନ୍ତର୍ଜଗତର ପ୍ରତ୍ୟେକ ଘଟଣା ଅଲଙ୍ଘ୍ୟ ନିୟମସୂତ୍ରରେ ଗ୍ରଥିତ ବୋଲି ଅବଗତ ହୋଇଛି ଏବଂ ଆତ୍ମହତ୍ୟାଦି ଅସମ୍ବନ୍ଧ ମାନସିକ ଘଟଣାସମୂହରେ ମଧ୍ୟ ସୂକ୍ଷ୍ମ ନିୟମଶୃଙ୍ଖଳର ପରିଚୟ ପାଇଅଛି । ଆଉମଧ୍ୟ ବ୍ୟକ୍ତିଗତ ଜୀବନର ଚିର ଅସ୍ତିତ୍ୱ ସମ୍ବନ୍ଧରେ କୌଣସି ପ୍ରକାରର ନିଶ୍ଚିତ ପ୍ରମାଣଲାଭରେ ସମର୍ଥ ନ ହୋଇ ସୁଦ୍ଧା, ଇତିହାସ

ଆଲୋଚନାରେ ମାନବ ତାହାର ଜାତିଗତ ଜୀବନର କ୍ରମୋନ୍ନତି ପ୍ରତ୍ୟକ୍ଷ କରିଛି । ବ୍ୟକ୍ତିଗତ ଜୀବନର ସାର୍ଥକତା ଏହିପରି ଜାତିଗତ ଜୀବନରେ ଦେଖିବାକୁ ପାଇ ସେ ବର୍ତ୍ତମାନ ଏହାର ସାଫଲ୍ୟ ନିମିତ୍ତ ବିଜ୍ଞାନ ଓ ସଂହତଚେଷ୍ଟା ସାହାଯ୍ୟରେ ଅଜ୍ଞାନ ସହିତ ଚିରସଂଗ୍ରାମରେ ନିଯୁକ୍ତ ହୋଇଛି ଏବଂ ଅନନ୍ତ ସଂଗ୍ରାମରେ ଅନନ୍ତ ଉନ୍ନତି କଳ୍ପନାପୂର୍ବକ ବହିରନ୍ତର-ରାଜ୍ୟର ଦୁର୍ଲକ୍ଷ୍ୟ ପ୍ରଦେଶସମୂହରେ ପଦାର୍ପଣ କରିବା ଲାଗି ଅନନ୍ତ ବାସନାପ୍ରବାହରେ ନିଜ ଜୀବନତରୀକୁ ଭସାଇ ଦେଇଛି ।

### ସେହି ଉନ୍ନତି ଓ ଶକ୍ତିର କେନ୍ଦ୍ର ପାଶ୍ଚାତ୍ୟରୁ ପ୍ରାଚ୍ୟରେ ଭାବବିସ୍ତାର :

ପାଶ୍ଚାତ୍ୟରେ ମାନବକୁ ଅବଲମ୍ବନ କରି ପୂର୍ବୋକ୍ତ ଜୀବନ-ପ୍ରସାର ବିଶେଷ ଭାବରେ ଉଦିତ ହେଲେ ହେଁ ଭାରତପ୍ରମୁଖ ପ୍ରାଚ୍ୟଦେଶସମୂହରେ ତାହାର ପ୍ରଭାବ କିଛି କମ୍ ପରିଲକ୍ଷିତ ହେଉ ନାହିଁ । ବିଜ୍ଞାନର ଅଦମ୍ୟ ଶକ୍ତିରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ପ୍ରଦେଶ ପ୍ରତିଦିନ ଯେତେ ନିକଟତର ହେଉଛି, ପ୍ରାଚ୍ୟ ମାନବର ପ୍ରାଚୀନ ଜୀବନସଂସ୍କାରସମୂହ ସେତିକି ପରିବର୍ତ୍ତିତ ହୋଇ ପାଶ୍ଚାତ୍ୟ ଭାବରେ ଗଠିତ ହେଉଅଛି । ପାରସ୍ୟ, ଚୀନ୍, ଜାପାନ, ଭାରତ ପ୍ରଭୃତି ଦେଶସମୂହର ବର୍ତ୍ତମାନ ଅବସ୍ଥାର ଆଲୋଚନାରେ ତାହା ସ୍ପଷ୍ଟ ବୁଝାଯାଏ । ଫଳାଫଳ ଭବିଷ୍ୟତରେ ଯାହା ହେଉନା କାହିଁକି, ପ୍ରାଚ୍ୟ ଉପରେ ପାଶ୍ଚାତ୍ୟର ଏପରି ଭାବବିସ୍ତାର ସମ୍ବନ୍ଧରେ କୌଣସି ସନ୍ଦେହ ନାହିଁ, ଏବଂ ସମଗ୍ର ପୃଥିବୀ କାଳକ୍ରମେ ପାଶ୍ଚାତ୍ୟଭାବରେ ଭାବିତ ହେବା ଅବଶ୍ୟମ୍ଭାବୀ ବୋଲି ବୋଧହୁଏ ।

### ପାଶ୍ଚାତ୍ୟ-ମାନବର ଜୀବନ ଦେଖି ଉନ୍ନତିର<br>ଭବିଷ୍ୟତ ଫଳାଫଳ ନିର୍ଣ୍ଣୟ କରିବାକୁ ହେବ :

ପୂର୍ବୋକ୍ତ ପ୍ରସାରର ଫଳାଫଳ ନିର୍ଣ୍ଣୟ କରିବାକୁ ହେଲେ ଆମମାନଙ୍କୁ ପାଶ୍ଚାତ୍ୟକୁ ହିଁ ମୁଖ୍ୟତଃ ଅବଲମ୍ବନ କରିବାକୁ ହେବ । ବିଚାର ଦ୍ୱାରା ପାଶ୍ଚାତ୍ୟ ମାନବର ଜୀବନ ବିଶ୍ଳେଷଣ କରି ଦେଖିବାକୁ ହେବ—ସେହି ପ୍ରସାରର ମୂଳ କେଉଁଠି ଏବଂ ତାହା କିପରି ସ୍ୱଭାବବିଶିଷ୍ଟ, ତାହାର ପ୍ରଭାବରେ ପାଶ୍ଚାତ୍ୟ-ଜୀବନର ପୂର୍ବତନ ଉତ୍ତମାଧମ ଭାବସକଳର କେତେଦୂର ଉନ୍ନତି ଓ ବିଲୋପ ସାଧିତ ହୋଇଛି ଏବଂ ତାହା ଫଳରେ ପାଶ୍ଚାତ୍ୟରେ ବ୍ୟକ୍ତିଗତ ମାନବମନରେ ସୁଖ ଓ ଦୁଃଖ ପୂର୍ବାପେକ୍ଷା କେତେ ଅଧିକ ବା ଅଳ୍ପ ପରିମାଣରେ ଉପସ୍ଥିତ ହୋଇଛି । ଏହିରୂପେ ବ୍ୟଷ୍ଟି ଓ ସମଷ୍ଟିଭୂତ ପାଶ୍ଚାତ୍ୟ-ଜୀବନରେ ତାହାର ଫଳାଫଳ ଥରେ ନିର୍ଣ୍ଣିତ ହେଲେ, ଦେଶକାଳଭେଦରେ ତାହା ଅନ୍ୟତ୍ର ନିର୍ଣ୍ଣୟ କରିବା କଠିନ ହେବ ନାହିଁ ।

**ପାଶ୍ଚାତ୍ୟ-ମାନବର ଉନ୍ନତିର କାରଣ ଓ ଇତିହାସ :**

ଇତିହାସ ସ୍ପଷ୍ଟରୂପେ ନିର୍ଦ୍ଦେଶ କରୁଛି ଯେ, ଦୁଃସହ ଶୀତର ପ୍ରକୋପ ଅତିପ୍ରାଚୀନ କାଳରୁ ପାଶ୍ଚାତ୍ୟ ମାନବମନରେ ଦେହ-ବୁଦ୍ଧିର ଦୃଢ଼ତା ଆନୟନ କରି ତାହାକୁ ଏକଦିଗରେ ଯେପରି ସ୍ୱାର୍ଥପର କରିତୋଳିଥିଲା, ଅପର ଦିଗରେ ସେହିପରି ସଂହତ ଚେଷ୍ଟାରେ ସ୍ୱାର୍ଥସିଦ୍ଧି—ଏକଥା ସହଜରେ ବୁଝାଇ ସେଥିରେ ସ୍ୱଜାତିପ୍ରୀତି ଆନୟନ କରିଥିଲା । ସେହି ସ୍ୱାର୍ଥପରତା ଏବଂ ସ୍ୱଜାତିପ୍ରୀତି ହିଁ ତାହାକୁ କାଳକ୍ରମେ ଅଦମ୍ୟ ଉତ୍ସାହ ସହକାରେ ଅନ୍ୟାନ୍ୟ ଜାତିକୁ ପରାଜିତ କରି ସେମାନଙ୍କର ଧନସମ୍ପଦରେ ନିଜ ଜୀବନକୁ ଭୂଷିତ କରିବାଲାଗି ପ୍ରରୋଚିତ କଲା । ତାହା ଫଳରେ ଯେତେବେଳେ ସେ ନିଜ ଜୀବନଯାତ୍ରାର କେତେକାଂଶ ସମୃଦ୍ଧ କରିପାରିଲା, ସେତେବେଳେ ତା ମଧ୍ୟରେ ଧୀରେ ଧୀରେ ଅନ୍ତର୍ଦୃଷ୍ଟିର ଆବିର୍ଭାବ ହୋଇ ତାହାକୁ କ୍ରମେ ବିଦ୍ୟା ଓ ସଦ୍‌ଗୁଣସମ୍ପନ୍ନ ହେବା ପାଇଁ ପ୍ରବୃତ୍ତ କଲା । ଏହିପରି ଭାବରେ ଜୀବନସଂଗ୍ରାମ ଭିନ୍ନ ତାହାର ଦୃଷ୍ଟି ଉଚ୍ଚ ବିଷୟସକଳ ପ୍ରତି ଆକୃଷ୍ଟ ହେବାମାତ୍ରେ ସେ ଦେଖିପାରିଲା—ଧର୍ମବିଶ୍ୱାସ ଓ ପୁରୋହିତମାନଙ୍କର ପ୍ରାଧାନ୍ୟ ସେହି ଲକ୍ଷ୍ୟରେ ଅଗ୍ରସର ହେବାର ପଥରେ ପ୍ରଧାନ ଅନ୍ତରାୟ । ସେ ଦେଖିଲା, ବିଦ୍ୟାଶିକ୍ଷା ଦ୍ୱାରା ଶ୍ରୀଭଗବାନଙ୍କର ଅପ୍ରସନ୍ନତା ଲାଭ କରି ଅନନ୍ତ ନରକଗାମୀ ହେବାକୁ ପଡ଼ିବ, କେବଳ ଏତିକି ମାତ୍ର କହି ପୁରୋହିତକୁଳ ନିଶ୍ଚିନ୍ତ ନୁହନ୍ତି; କିନ୍ତୁ ଛଳେ-ବଳେ-କୌଶଳେ ତାହାକୁ ସେହି ପଥରେ ଅଗ୍ରସର ହେବାରେ ବାଧାପ୍ରଦାନ କରିବାକୁ ବଦ୍ଧପରିକର । ସେତେବେଳେ ସ୍ୱାର୍ଥସାଧନ-ତତ୍ପର ପାଶ୍ଚାତ୍ୟ ମାନବର କର୍ତ୍ତବ୍ୟ ନିର୍ଦ୍ଧାରଣରେ ବିଳମ୍ବ ହେଲା ନାହିଁ । ସବଳ ହସ୍ତରେ ପୁରୋହିତଙ୍କୁ ଦୂରକୁ ଫିଙ୍ଗି ଦେଇ ସେ ନିଜ ଗନ୍ତବ୍ୟପଥରେ ଅଗ୍ରସର ହେଲା । ଏହି ଭାବରେ ଧର୍ମଯାଜକଙ୍କ ସହିତ ଶାସ୍ତ୍ର ଓ ଧର୍ମବିଶ୍ୱାସକୁ ଦୂରରେ ପରିହାର କରି ପାଶ୍ଚାତ୍ୟ ମାନବ ନବୀନ ପଥରେ ନିଜ ଜୀବନକୁ ପରିଚାଳିତ କଲା; ଏବଂ ପଞ୍ଚ-ଇନ୍ଦ୍ରିୟଗ୍ରାହ୍ୟତାରୂପକ ନିଶ୍ଚିତ ପ୍ରମାଣ ପ୍ରୟୋଗ ନ କରି କୌଣସି ବିଷୟ କଦାପି ବିଶ୍ୱାସ ବା ଗ୍ରହଣ କରିବ ନାହିଁ, ଏହା ହିଁ ତାହାର ମୂଳମନ୍ତ୍ର ହୋଇଉଠିଲା ।

ଇନ୍ଦ୍ରିୟ ପ୍ରତ୍ୟକ୍ଷ ଉପରେ ଦଣ୍ଡାୟମାନ ହୋଇ ବିଚାରାନୁମାନାଦିପୂର୍ବକ ବିଷୟ-ବିଶେଷର ସତ୍ୟାସତ୍ୟ ନିରୂପଣ କରିବାକୁ ହେବ, ଏହା ସ୍ଥିର କରି, ପାଶ୍ଚାତ୍ୟ ଏବେଠାରୁ ଇନ୍ଦ୍ରିୟପ୍ରତ୍ୟକ୍ଷ ବିଷୟର ଉପାସକ ହୋଇପଡ଼ିଲା ଏବଂ 'ମୁଁ'-ପ୍ରତ୍ୟୟଗୋଚର ବିଷୟୀକୁ ମଧ୍ୟ ବିଷୟସକଳ ମଧ୍ୟରେ ଅନ୍ୟତମ ମନେକରି ତାହାର ସ୍ୱଭାବାଦି ମଧ୍ୟ ପୂର୍ବୋକ୍ତପ୍ରମାଣ ପ୍ରୟୋଗ କରି ଜାଣିବାକୁ ଅଗ୍ରସର ହେଲା । ଗତ ଚାରିଶହ ବର୍ଷ ଧରି ସେ ଏହି ଭାବରେ ଜାଗତିକ ପ୍ରତ୍ୟେକ ବ୍ୟକ୍ତି ବା ବିଷୟକୁ ପଞ୍ଚେନ୍ଦ୍ରିୟସହାୟରେ ପରୀକ୍ଷାପୂର୍ବକ ଗ୍ରହଣ କରିବାକୁ ଆରମ୍ଭ କରିଛି

ଏବଂ ଏହି ସମୟ ଭିତରେ ହିଁ ବର୍ତ୍ତମାନ ଯୁଗର ଜଡ଼ବିଜ୍ଞାନ ଶୈଶବର ଜଡ଼ତା ଏବଂ ଅସହାୟତାରୁ ମୁକ୍ତ ହୋଇ ଯୌବନର ଉଦ୍ୟମ, ଆଶା, ଆନନ୍ଦ ଓ ବଳ-ଉନ୍ମତ୍ତତାରେ ପହଞ୍ଚିଛି ।

### ଆତ୍ମବିଜ୍ଞାନ ସମ୍ବନ୍ଧରେ ପାଶ୍ଚାତ୍ୟ-ମାନବର ମୂର୍ଖତା ତାହାର କାରଣ; ଏବଂ ଏଥିପାଇଁ ତାହାର ମନର ଅଶାନ୍ତି :

କିନ୍ତୁ ଜଡ଼ବିଜ୍ଞାନର ସବିଶେଷ ଉନ୍ନତି ସାଧନ କରିପାରିଲେ ମଧ୍ୟ, ପୂର୍ବୋକ୍ତ ନୀତି ଆତ୍ମବିଜ୍ଞାନସମ୍ବନ୍ଧରେ ପାଶ୍ଚାତ୍ୟକୁ ପଥ ଦେଖାଇପାରି ନାହିଁ । କାରଣ ସଂଯମ, ସ୍ୱାର୍ଥହୀନତା ଓ ଅନ୍ତର୍ମୁଖତା ହିଁ ଏହି ଆତ୍ମବିଜ୍ଞାନଲାଭର ଏକମାତ୍ର ପଥ ଏବଂ ନିରୁଦ୍ଧବୃତ୍ତି ମନ ହିଁ ଆତ୍ମୋପୋଲବ୍ଧିର ଏକମାତ୍ର ଯନ୍ତ୍ର । ଅତଏବ, ବହିର୍ମୁଖୀ ପାଶ୍ଚାତ୍ୟ ଏବିଷୟରେ ପଥହରା ହୋଇ ଦିନକୁ ଦିନ ଦେହାତ୍ମବାଦୀ ନାସ୍ତିକ ହୋଇ ଉଠିବାରେ ବିନ୍ଦୁ ମାତ୍ର ଆଶ୍ଚର୍ଯ୍ୟ ହେବାର ନାହିଁ । ସେଥିପାଇଁ ଐହିକ ଭୋଗସୁଖ ହିଁ ପାଶ୍ଚାତ୍ୟ ନିକଟରେ ଏବେ ସର୍ବସ୍ୱବୋଲି ପରିଗଣିତ ଏବଂ ତାହା ଲାଭ କରିବାକୁ ସେ ସବିଶେଷ ଯତ୍ନଶୀଳ; ଏବଂ ତାହାର ଏହି ବିଜ୍ଞାନଲବ୍ଧ ପଦାର୍ଥଜ୍ଞାନ ସେହି ବିଷୟରେ ହିଁ ପ୍ରଧାନତଃ ପ୍ରଯୁକ୍ତ ହୋଇ ତାହାକୁ ଦିନକୁ ଦିନ ସ୍ୱାର୍ଥପର ଓ ଦାମ୍ଭିକ କରିତୋଳିଛି । ଏଥିପାଇଁ ଦେଖିବାକୁ ମିଳେ, ପାଶ୍ଚାତ୍ୟରେ ଅର୍ଥଗତ ଜାତିବିଭାଗ, ବଜ୍ରନାଦୀ କରାଳ କମାଣବନ୍ଧୁକାଦି, ଅସାମାନ୍ୟ ସମୃଦ୍ଧି ପାର୍ଶ୍ୱରେ ଦାରିଦ୍ର୍ୟଜାତ ଅସୀମ ଅସନ୍ତୋଷ ଏବଂ ଭୟଙ୍କର ଧନପିପାସ ସହ ପର ଦେଶାଧିକାର ଓ ପରଜାତି-ପ୍ରପୀଡ଼ନ ଇତ୍ୟାଦି । ସେଥିପାଇଁ ପୁଣି ଦେଖିବାକୁ ମିଳେ, ଭୋଗସୁଖର ଚରମରେ ଉପସ୍ଥିତ ହୋଇ ମଧ୍ୟ ପାଶ୍ଚାତ୍ୟ ନରନାରୀଙ୍କର ଆତ୍ମାର ଅଭାବ ଦୂର ହେଉ ନାହିଁ ଏବଂ ମୃତ୍ୟୁ ପରେ ଜାତିଗତ ଅସ୍ତିତ୍ୱରେ ବିଶ୍ୱାସମାତ୍ର-ଅବଲମ୍ବନରେ ସେମାନେ କୌଣସି ପ୍ରକାରେ ସୁଖୀ ହୋଇପାରୁ ନାହାନ୍ତି । ବିଶେଷ ଅନୁସନ୍ଧାନ ଫଳରେ ପାଶ୍ଚାତ୍ୟ ଏବେ ବୁଝିଛି ଯେ, ପଞ୍ଚେନ୍ଦ୍ରିୟଜନିତ ଜ୍ଞାନ ତାହାକୁ ଦେଶକାଳାତୀତ ବସ୍ତୁତତ୍ତ୍ୱର ଆବିଷ୍କାରରେ କେବେ ହେଲେ ସମର୍ଥ କରିବ ନାହିଁ; ବିଜ୍ଞାନ ତାହାକୁ ସେହି ବସ୍ତୁର କ୍ଷଣିକ ଆଭାସମାତ୍ର ପ୍ରଦାନ କରିପାରେ ଏବଂ ତାହାକୁ ଧରିବା ବା ବୁଝିବା ତାହାର ସାଧ୍ୟାତୀତ; ତେଣୁ ସେହି ଚେଷ୍ଟାରୁ ସେ ନିବୃତ୍ତ ହେଉଛି । ଅତଏବ ଯେଉଁ ଦେବତାଙ୍କ ଶକ୍ତିରେ ସେ ଏତେକାଳ ନିଜକୁ ବଳୀୟାନ ଭାବୁଥିଲା, ଯାହାଙ୍କ ପ୍ରସାଦରୁ ତାହାର ଯାବତୀୟ ଭୋଗଶ୍ରୀ ଓ ସମ୍ପଦ, ସେହି ଦେବତାଙ୍କର ପରାଭବରେ ପାଶ୍ଚାତ୍ୟ ମାନବର ଏବେ ଆନ୍ତରିକ ହାହାକାର ଦିନକୁ ଦିନ ବର୍ଦ୍ଧିତ ହେଉଛି ଓ ସେ ନିଜକୁ ନିତାନ୍ତ ନିରୁପାୟ ମନେ କରୁଛି ।

### ପାଶ୍ଚାତ୍ୟ ଭଳି ଉନ୍ନତିଲାଭ କରିବାକୁ ହେଲେ ସ୍ୱାର୍ଥପର ଓ ଭୋଗଲୋଲୁପ ହେବାକୁ ପଡ଼ିବ :

ପାଶ୍ଚାତ୍ୟ ଜୀବନର ପୂର୍ବୋକ୍ତ ଇତିହାସ ଆଲୋଚନା କରି ଆମେ ଦେଖିବାକୁ ପାଉ ଯେ, ତାହାର ପ୍ରସାରଭିତ୍ତି ମୂଳରେ ବିଷୟପ୍ରବଣତା, ସ୍ୱାର୍ଥପରତା ଏବଂ ଧର୍ମବିଶ୍ୱାସରାହିତ୍ୟ ବିଦ୍ୟମାନ । ଅତଏବ ବ୍ୟକ୍ତିଗତ ବା ଜାତିଗତ ଜୀବନରେ ପାଶ୍ଚାତ୍ୟ ଭଳି ଫଳଲାଭ କରିବାକୁ ହେଲେ ସ୍ୱଇଚ୍ଛାରେ ବା ଅନିଚ୍ଛାରେ ଅନ୍ୟମାନଙ୍କୁ ମଧ୍ୟ ସେହି ଭିତ୍ତି ଉପରେ ହିଁ ନିଜ ଜୀବନକୁ ପ୍ରତିଷ୍ଠା କରିବାକୁ ହେବ । ସେଥିପାଇଁ ଦେଖିବାକୁ ମିଳେ, ଜାପାନୀ ପ୍ରଭୃତି ଯେଉଁସବୁ ପ୍ରାଚ୍ୟଜାତି ପାଶ୍ଚାତ୍ୟର ଭାବରେ ଜାତୀୟ ଜୀବନଗଠନରେ ତତ୍ପର ହୋଇଛନ୍ତି, ସ୍ୱଦେଶ ଓ ସ୍ୱଜାତିପ୍ରୀତି ସହିତ ସେମାନଙ୍କ ଭିତରେ ପୂର୍ବୋକ୍ତ ଦୋଷସମୂହର ଆବିର୍ଭାବ ହେଉଅଛି । ପାଶ୍ଚାତ୍ୟ ଭାବରେ ଭାବିତ ହେବାର ଏହା ହିଁ ବିଷମ ଦୋଷ । ପାଶ୍ଚାତ୍ୟ ସଂସର୍ଗରେ ଭାରତର ଜାତୀୟ ଜୀବନରେ ଯେଉଁ ଅବସ୍ଥାର ଉଦୟ ହୋଇଅଛି, ତାହାର ଅନୁଶୀଳନରେ ଆମେ ଏକଥା ସ୍ପଷ୍ଟ ବୁଝିପାରିବୁ ।

### ଭାରତର ପ୍ରାଚୀନ ଜାତୀୟ ଜୀବନର ଭିତ୍ତି :

ଏଠାରେ ପ୍ରଥମେ ପ୍ରଶ୍ନ ଉଠେ—ପାଶ୍ଚାତ୍ୟ ସଂସର୍ଗରେ ଆସିବା ପୂର୍ବରୁ 'ଜାତୀୟ ଜୀବନ' ବୋଲି କଥାଟି ଭାରତରେ ଥିଲା କି ନାହିଁ । ଉତ୍ତରରେ କହିବାକୁ ହେବ, କଥାଟି ନ ଥିଲେ ସୁଦ୍ଧା ଏକଥାର ଲକ୍ଷ୍ୟ ଯାହା, ତାହା ଯେ ଏକଭାବରେ ଥିଲା ସେବିଷୟରେ ସନ୍ଦେହ ନାହିଁ । କାରଣ, ସେତେବେଳେ ମଧ୍ୟ ସମଗ୍ର ଭାରତ ଶ୍ରୀଗୁରୁ, ଗଙ୍ଗା, ଗାୟତ୍ରୀ ଓ ଗୀତାରେ ଶ୍ରଦ୍ଧାପରାୟଣ ଥିଲା, ସେତେବେଳେ ମଧ୍ୟ ଗୋକୁଳର ପୂଜା ସର୍ବତ୍ର ଲକ୍ଷିତ ହେଉଥିଲା, ସେତେବେଳେ ମଧ୍ୟ ଭାରତର ଆବାଳବୃଦ୍ଧନରନାରୀ ରାମାୟଣ ଓ ମହାଭାରତ ଆଦି ଧର୍ମଗ୍ରନ୍ଥସକଳରୁ ଏକ ମାତ୍ର ଭାବତରଙ୍ଗ ହୃଦୟରେ ବହନ କରି ଜୀବନ ପରିଚାଳିତ କରୁଥିଲେ ଏବଂ ତାହାର ବିଭିନ୍ନ ବିଭାଗର ପଣ୍ଡିତଗଣ ସ୍ୱ ସ୍ୱମନୋଭାବ ଦେବଭାଷାରେ ପରସ୍ପର ନିକଟରେ ବ୍ୟକ୍ତ କରିବାକୁ ସମର୍ଥ ହେଉଥିଲେ । ଏହିପରି ଆହୁରି ଅନେକ ଏକତାସୂତ୍ରର ଉଲ୍ଲେଖ କରାଯାଇପାରେ ଏବଂ ଧର୍ମଭାବ ଓ ଧର୍ମାନୁଷ୍ଠାନ ଯେ ଏହି ଏକତାର ଶ୍ରେଷ୍ଠ ଅବଲମ୍ବନ ଥିଲା, ତାହା ନିଃସନ୍ଦେହରେ ବୁଝିହୁଏ ।

### ଧର୍ମରେ ପ୍ରତିଷ୍ଠିତ ଥିଲା ବୋଲି ଭୋଗସାଧନାକୁ ନେଇ ଭାରତର ସମାଜରେ କେବେହେଲେ ବିବାଦ ଉପସ୍ଥିତ ହୋଇ ନାହିଁ :

ଭାରତର ଜାତୀୟ ଜୀବନ ଏହିପରି ଧର୍ମାବଲମ୍ବନରେ ପ୍ରତିଷ୍ଠିତ ଥିଲା ବୋଲି ତାହାର ସଭ୍ୟତା ଏକ ଅପୂର୍ବ ବିଭିନ୍ନ ଉପାଦାନରେ ଗଠିତ ହୋଇଥିଲା । ଗୋଟିଏ କଥାରେ କୁହାଯାଇପାରେ ଯେ, ସଂଯମ ହିଁ ଏହି ସଭ୍ୟତାର ପ୍ରାଣସ୍ୱରୂପ

ଥିଲା । ବ୍ୟକ୍ତି ଏବଂ ଜାତି ଉଭୟଙ୍କୁ ହିଁ ଭାରତ ସଂଯମର ସହାୟତାରେ ନିଜ ନିଜ ଜୀବନ ନିୟମିତ କରିବାକୁ ଶିକ୍ଷା ପ୍ରଦାନ କରୁଥିଲା । ତ୍ୟାଗ ନିମିତ୍ତ ଭୋଗର ଗ୍ରହଣ ଏବଂ ପରଜୀବନ ନିମିତ୍ତ ଏହି ଜୀବନର ଶିକ୍ଷା—ଏକଥା ସର୍ବାବସ୍ଥାରେ ସମସ୍ତଙ୍କୁ ସ୍ମରଣ କରାଇ ବ୍ୟକ୍ତି ଓ ଜାତିର ବ୍ୟାବହାରିକ ଜୀବନକୁ ସେ ସର୍ବଦା ଉଚ୍ଚତମ ଲକ୍ଷ୍ୟରେ ପରିଚାଳିତ କରୁଥିଲା । ସେଥିପାଇଁ ତାହାର ବର୍ଣ୍ଣ ବା ଜାତିବିଭାଗ ଏତେକାଳ ପର୍ଯ୍ୟନ୍ତ କୌଣସି ଶ୍ରେଣୀର ସ୍ୱାର୍ଥରେ ଆଘାତ କରି ସେମାନଙ୍କର ବିଷମ ଅସନ୍ତୋଷର କାରଣ ହୋଇ ନାହିଁ । କାରଣ, ସମାଜର ଯେଉଁ ଶ୍ରେଣୀ ବା ସ୍ତରରେ ମାନବ ଜନ୍ମଗ୍ରହଣ କରିଛି, ସେହି ସ୍ତରର କର୍ତ୍ତବ୍ୟ ନିଷ୍କାମଭାବରେ କରିପାରିଲେ ହିଁ ସେ ଯଦି ଅନ୍ୟମାନଙ୍କ ସହିତ ସମଭାବରେ ମାନବ-ଜୀବନର ମୁଖ୍ୟ ଉଦ୍ଦେଶ୍ୟ ଜ୍ଞାନ ଓ ମୁକ୍ତିର ଅଧିକାରୀ ହୋଇପାରିବ, ସେତେବେଳେ ତାହାର ଅସନ୍ତୋଷର କାରଣ ଆଉ କଅଣ ରହିପାରେ ? ଶ୍ରେଣୀବିଶେଷର ଭୋଗସୁଖର ତାରତମ୍ୟକୁ ଅଧିକାର କରି ପାଶ୍ଚାତ୍ୟସମାଜ ଭଳି ଭାରତର ସମାଜରେ ଯେ ପ୍ରାଚୀନ କାଳରେ ବିରୋଧ ଉପସ୍ଥିତ ହୋଇ ନାହିଁ, ତାହାର କାରଣ—ଜୀବନର ଉଚ୍ଚତମ ଲକ୍ଷ୍ୟରେ ସମାଜସ୍ଥ ପ୍ରତ୍ୟେକ ବ୍ୟକ୍ତିର ସମାନ ଅଧିକାର ଥିଲା । ପ୍ରାଚୀନ ଭାରତର ଜାତୀୟ ଜୀବନ ସମ୍ବନ୍ଧରେ ପୂର୍ବୋକ୍ତ କଥାଗୁଡ଼ିକୁ ସ୍ମରଣ ରଖି ଦେଖାଯାଉ, ପାଶ୍ଚାତ୍ୟ-ସଂସର୍ଗରେ ତାହାର ଜୀବନରେ କେଉଁଭଳି ପରିବର୍ତ୍ତନମାନ ଏବେ ଉପସ୍ଥିତ ହୋଇଛି ।

### ପାଶ୍ଚାତ୍ୟର ଭାରତ-ଅଧିକାର ଓ ତାହାର ଫଳ :

ପାଶ୍ଚାତ୍ୟର ଭାରତ-ଅଧିକାର ଦିନଠାରୁ ଭାରତର ଜାତୀୟ ଧନ ବିଭାଗ ପ୍ରଣାଳୀରେ ଯେ ବିଶେଷ ଏକ ପରିବର୍ତ୍ତନ ଉପସ୍ଥିତ ହେବ, ଏହା ସ୍ୱାଭାବିକ ଏବଂ ଅବଶ୍ୟମ୍ଭାବୀ । କିନ୍ତୁ ଭାରତର ଜାତୀୟ ଜୀବନର ସେ କେବଳ ସେହି ଭାଗଟିକୁ ପରିବର୍ତ୍ତିତ କରିଦେଇ ପାଶ୍ଚାତ୍ୟପ୍ରଭାବ ନିବୃତ୍ତ ହୋଇ ନାହିଁ । ପ୍ରାଚୀନ କାଳରୁ ଯେଉଁ ସମସ୍ତ ମୂଳ ସଂସ୍କାରକୁ ନେଇ ଭାରତ-ଭାରତୀ ବ୍ୟକ୍ତି ଓ ଜାତିଗତ ଜୀବନ ପରିଚାଳିତ କରୁଥିଲେ, ସେସମସ୍ତ ମଧ୍ୟରେ ଏହି ପ୍ରଭାବ ଏକ ଅପୂର୍ବ ଭାବପରିବର୍ତ୍ତନ ଆଣିଦେଲା । ପାଶ୍ଚାତ୍ୟ ବୁଝାଇଦେଲା ତ୍ୟାଗ ପାଇଁ ଭୋଗ—ଏକଥା ପୁରୋହିତମାନଙ୍କର ସ୍ୱାର୍ଥ-ସିଦ୍ଧି ଲାଗି ଉଦ୍ଭୂତ ହୋଇଛି । ପରଜୀବନ ଓ ଆତ୍ମାର ଅସ୍ତିତ୍ୱସ୍ୱୀକାର ଏକପ୍ରକାର କବି କଳ୍ପନା । ସମାଜର ଯେଉଁ ସ୍ତରରେ ମାନବ ଜନ୍ମଗ୍ରହଣ କରିଛି, ସେହି ସ୍ତରରେ ସେ ଆମରଣ ନିବଦ୍ଧ ରହିବ—ଏହା ଅପେକ୍ଷା ଅଯୁକ୍ତିକର, ଅନ୍ୟାୟ ନିୟମ ଆଉ କଅଣ ହୋଇପାରେ ? ଭାରତ ମଧ୍ୟ କ୍ରମେ ତାହା ହିଁ ବୁଝିଲା ଏବଂ ପୂର୍ବର ତ୍ୟାଗ ଓ ସଂଯମ-ପ୍ରଧାନ ଜୀବନ-ଲକ୍ଷ୍ୟକୁ ପରିତ୍ୟାଗ କରି ଅଧିକତର ଭୋଗଲାଭ ପାଇଁ ବ୍ୟଗ୍ର ହୋଇଉଠିଲା ।

ଏହି ଭାବରେ ଭାରତରେ ପୂର୍ବ ଶିକ୍ଷାଦୀକ୍ଷା ଲୋପ ପାଇଲା ଏବଂ ନାସ୍ତିକତା, ପରାନୁକରଣପ୍ରିୟତା ଓ ଆତ୍ମବିଶ୍ୱାସହୀନତାର ସୃଷ୍ଟି ହୋଇ ତାହାକୁ ଏକ ମେରୁଦଣ୍ଡହୀନ ପ୍ରାଣୀତୁଲ୍ୟ ନିତାନ୍ତ ନିର୍ବୀର୍ଯ୍ୟ କରିତୋଳିଲା । ଭାରତ ବୁଝିଲା, ସେ ଏତେକାଳ ଧରି ଯାହାକୁ ହୃଦୟରେ ବହନ କରି ସଯତ୍ନ ଅନୁଷ୍ଠାନ କରିଆସିଛି, ତାହା ନିତାନ୍ତ ଭ୍ରମସଙ୍କୁଳ; ବିଜ୍ଞାନବଳରେ ବଳୀୟାନ ପାଶ୍ଚାତ୍ୟ ଭାରତର ସଂସ୍କାରସମୂହକୁ ଅମାର୍ଜିତ ତଥା ଅର୍ଦ୍ଧବର୍ବର ବୋଲି ଯେଉଁ ନିର୍ଦ୍ଦେଶ କରୁଛି, ତାହା ହିଁ ବୋଧହୁଏ ସତ୍ୟ । ଭୋଗଲାଳସାମୁଗ୍ଧ ଭାରତ ନିଜର ପୂର୍ବ ଇତିହାସ ଓ ପୂର୍ବଗୌରବ ବିସ୍ମୃତ ହେଲା । ସ୍ମୃତିଭ୍ରଂଶ ହେବା ଦ୍ୱାରା ତାହାର ବୁଦ୍ଧିନାଶ ଉପସ୍ଥିତ ହେଲା ଏବଂ ତାହା ତାହାର ଜାତୀୟ ଅସ୍ତିତ୍ୱର ବିଲୋପସାଧନ କରିବାର ଉପକ୍ରମ କଲା । ପୁନଶ୍ଚ ଐହିକ ଭୋଗଲାଭ ନିମିତ୍ତ ଏବେ ତାହାକୁ ପରମୁଖାପେକ୍ଷୀ ହୋଇ ରହିବା ଯୋଗୁଁ ତାହାର ଲାଭ ମଧ୍ୟ ତା ଭାଗ୍ୟରେ ସୁଦୂରପରାହତ ହେଲା । ଏହିପରି ଭାବରେ ଯୋଗ ଓ ଭୋଗ ଉଭୟ ମାର୍ଗରୁ ଭ୍ରଷ୍ଟ ହୋଇ କର୍ଣ୍ଣଧାରଶୂନ୍ୟ ତରଣୀ ସଦୃଶ ସେ ପରାନୁକରଣ କରି ବାସନାବାତ୍ୟାଭିମୁଖରେ ଯଥେଚ୍ଛ ପରିଭ୍ରମଣ କରିବାକୁ ଲାଗିଲା ।

**ପାଶ୍ଚାତ୍ୟଭାବ ସାହାଯ୍ୟରେ ନିର୍ଜୀବ ଭାରତକୁ ସଜୀବ କରିବାର ଚେଷ୍ଟା ଓ ତାହାର ଫଳ :**

ସେତେବେଳେ ଚତୁର୍ଦ୍ଦିଗରୁ ସ୍ୱର ଉଠିଲା, ଭାରତର ଜାତୀୟ ଜୀବନ ବୋଲି କେବେ କିଛି ନ ଥିଲା । ପାଶ୍ଚାତ୍ୟର କୃପାରେ ଏତେଦିନ ପରେ ତାହାର ସେହି ଜୀବନର ଉନ୍ମେଷ ହେଉଛି, କିନ୍ତୁ ତାହାର ପୂର୍ଣ୍ଣାବିର୍ଭାବ ପଥରେ ଏବେ ମଧ୍ୟ ଅନେକ ଅନ୍ତରାୟ ବିଦ୍ୟମାନ । ଭାରତର ଦୁର୍ନିବାର୍ଯ୍ୟ ଧର୍ମସଂସ୍କାର ହିଁ ତା'ର ସର୍ବନାଶ କରିଅଛି । ଏହି ଯେଉଁ ଅସଂଖ୍ୟ ଦେବଦେବୀଙ୍କର ପୂଜା—ଏହି ପୌତ୍ତଳିକତା ହିଁ ତାହାକୁ ଏତେଦିନ ଉଠିବାକୁ ଦେଇ ନାହିଁ । ତାହାର ବିନାଶ କର, ଉଚ୍ଛେଦ କର, ତେବେ ହିଁ ଭାରତ-ଭାରତୀ ସଜୀବ ହୋଇ ଉଠିବେ । ଖ୍ରୀଷ୍ଟିଆନ ଧର୍ମ ଏବଂ ତଦନୁକରଣରେ ଏକେଶ୍ୱରବାଦ ପ୍ରଚାରିତ ହେବାକୁ ଲାଗିଲା । ପାଶ୍ଚାତ୍ୟାନୁକରଣରେ ସଭା-ସମିତି ଗଠିତ ହୋଇ ନିଷ୍ପ୍ରାଣ ଭାରତକୁ ରାଜନୀତି, ସମାଜତତ୍ତ୍ୱ, ବିଧବାବିବାହ ଓ ସ୍ତ୍ରୀ-ସ୍ୱାଧୀନତାର ଉପକାରିତା ପ୍ରଭୃତି ନାନାକଥା ବୁଝାଇ ଦିଆଗଲା—କିନ୍ତୁ ତାହାର ଅଭାବବୋଧ ଓ ହାହାକାର ନିବୃତ୍ତ ନ ହୋଇ ପ୍ରତିଦିନ ବର୍ଦ୍ଧିତ ହେବାକୁ ଲାଗିଲା । କ୍ରମେକ୍ରମେ ରେଲ୍‌ୱେ, ଟେଲିଗ୍ରାଫ ଆଦି ପାଶ୍ଚାତ୍ୟ ସଭ୍ୟତାର ଯେତେ ସାଜସରଞ୍ଜାମ ଭାରତରେ ଉପସ୍ଥିତ କରାହେଲା, କିନ୍ତୁ ସବୁକିଛି ବୃଥା ଚେଷ୍ଟା ଥିଲା; କାରଣ ଯେଉଁ ଭାବପ୍ରେରଣାରେ ଭାରତ ସଜୀବ ଥିଲା ତାହାର ଅନୁସନ୍ଧାନ ଏବଂ ପୁନଃପ୍ରବର୍ତ୍ତନର ବିଶେଷ କିଛି ଚେଷ୍ଟା

ଏହାଦ୍ୱାରା ହେଲା ନାହିଁ । ଯଥାସ୍ଥାନରେ ଔଷଧ ପ୍ରୟୋଗ ହେଲା ନାହିଁ, ରୋଗ ଉପଶମ କିପରି ହେବ ? ଧର୍ମପ୍ରାଣ ଭାରତର ଧର୍ମ ସଜୀବ ନ ହେଲେ ସେ କିପରି ସଜୀବ ହେବ ? ପାଶ୍ଚାତ୍ୟର ଭାବପ୍ରସାରରେ ସେଥିରେ ଯେଉଁ ଧର୍ମଗ୍ଳାନି ଉପସ୍ଥିତ ହୋଇଛି, ନାସ୍ତିକ ପାଶ୍ଚାତ୍ୟର ତାହା ଦୂର କରିବାର ସାମର୍ଥ୍ୟ କେଉଁଠି ? ସ୍ୱୟଂ ଅସିଦ୍ଧ ହୋଇ ପାଶ୍ଚାତ୍ୟ ଅନ୍ୟକୁ କିପରି ସିଦ୍ଧ କରିପାରିବ ?

### ଭାରତର ପ୍ରାଚୀନ ଜାତୀୟ ଜୀବନର ଦୋଷ-ଗୁଣ-ବିଚାର :

ପାଶ୍ଚାତ୍ୟ ଅଧିକାର ପୂର୍ବରୁ ଭାରତର ଜାତୀୟ ଜୀବନରେ ଯେ କିଛିମାତ୍ର ଦୋଷ ନ ଥିଲା, ଏକଥା କୁହାଯାଇ ନ ପାରେ । କିନ୍ତୁ ଜାତୀୟ ଶରୀର ସଜୀବ ଥିବାରୁ ଏହି ଦୋଷ ନିବାରଣର ସ୍ୱତଃପ୍ରବୃତ୍ତ ଚେଷ୍ଟା ମଧ୍ୟ ସେଥିରେ ସର୍ବଦା ଲକ୍ଷିତ ହେଉଥିଲା । ଜାତି ଏବଂ ସମାଜ ମଧ୍ୟରେ ଏବେ ସେ ଚେଷ୍ଟାର ବିଲୋପ ଦେଖି ବୁଝିବାକୁ ହେବ, ପାଶ୍ଚାତ୍ୟଭାବ-ପ୍ରସାରରୂପକ-ଔଷଧର ପ୍ରୟୋଗ ରୋଗ ସହିତ ରୋଗୀକୁ ମଧ୍ୟ ନିଃଶେଷ କରିବାକୁ ବସିଅଛି ।

### ପାଶ୍ଚାତ୍ୟଭାବ ବିସ୍ତାରହେତୁ ଭାରତର ବର୍ତ୍ତମାନ ଧର୍ମଗ୍ଳାନି :

ଅତଏବ ଦେଖାଯାଉଛି, ପାଶ୍ଚାତ୍ୟର ଧର୍ମଗ୍ଳାନି ଭାରତରେ ମଧ୍ୟ ଅଧିକାର ବିସ୍ତାର କରିଅଛି । ବାସ୍ତବିକ ଏହି ଗ୍ଳାନି ବର୍ତ୍ତମାନ ସମୟରେ ପୃଥିବୀର ସର୍ବତ୍ର କେତେଦୂର ପ୍ରବଳ ହୋଇଛି, ତାହା ଭାବିଲେ ସ୍ତମ୍ଭିତ ହେବାକୁ ପଡ଼େ । ଧର୍ମ ବୋଲି ଯଦି କିଛି ବାସ୍ତବ ପଦାର୍ଥ ଥାଏ ଏବଂ ବିଧାତାଙ୍କ ନିର୍ଦ୍ଦେଶରେ ତାହା ଲାଭ ଯଦି ମାନବର ସାଧ୍ୟାୟତ୍ତ ହୁଏ, ତେବେ ବର୍ତ୍ତମାନ ଯୁଗର ଭୋଗପରାୟଣ ମାନବଜୀବନ ଏହାଠାରୁ ଯେ ବହୁଦୂରକୁ ବିଚ୍ୟୁତ ହୋଇପଡ଼ିଛି, ଏହା ନିଃସନ୍ଦେହ । ଏହି କାରଣରୁ ବିଜ୍ଞାନ ସାହାଯ୍ୟରେ ମାନବର ବର୍ତ୍ତମାନ ଜୀବନ-ପ୍ରସାର ମନୁଷ୍ୟକୁ ବିଚିତ୍ର ଭୋଗସାଧନଲାଭରେ ସମର୍ଥ କଲେ ମଧ୍ୟ, ତାହାକୁ ଶାନ୍ତିର ଅଧିକାରୀ କରିପାରୁ ନାହଁ । କିଏ ଏହାର ପ୍ରତିକାର କରିବ ? ପୃଥିବୀର ଏହି ଅଶାନ୍ତି ଓ ହାହାକାର କାହାର ପ୍ରାଣରେ ନିରନ୍ତର ଧ୍ୱନିତ ହୋଇ ତାହାକୁ ସର୍ବଭୋଗସାଧନ ଉପେକ୍ଷାପୂର୍ବକ ଯୁଗୋପଯୋଗୀ ନୂତନ ଧର୍ମପଥ ଆବିଷ୍କାରରେ ନିୟୋଜିତ କରିବ ? ପ୍ରାଚ୍ୟ ଓ ପାଶ୍ଚାତ୍ୟର ଧର୍ମଗ୍ଳାନି ଦୂର କରି ମାନବସମାଜକୁ ପୁନରାୟ ଶାନ୍ତିମୟ ନୂତନ ପଥରେ ଜୀବନ ପରିଚାଳିତ କରିବା ପାଇଁ କିଏ ଶିକ୍ଷା ଦେବ ?

### ଏହି ଗ୍ଳାନି ନିବାରଣ କରିବା ପାଇଁ ଈଶ୍ୱରଙ୍କର ପୁନରାୟ ଅବତୀର୍ଣ୍ଣ ହେବା :

ଶ୍ରୀମଦ୍‌ଭଗବତ୍‌ଗୀତାରେ ଭଗବାନ ପ୍ରତିଜ୍ଞା କରିଛନ୍ତି ଯେ ଜଗତରେ ଧର୍ମଗ୍ଳାନି ଉପସ୍ଥିତ ହେଲେ ସେ ନିଜ ମାୟାଶକ୍ତି ଅବଲମ୍ବନପୂର୍ବକ ଶରୀର

ଗ୍ରହଣ କରି ପ୍ରକାଶିତ ହେବେ ଓ ଏହି ଗ୍ଲାନି ଦୂର କରି ପୁନରାୟ ମାନବଙ୍କୁ ଶାନ୍ତିର ଅଧିକାରୀ କରିବେ । ବର୍ତ୍ତମାନର ଯୁଗ ପ୍ରୟୋଜନ କ'ଣ ତାଙ୍କ କରୁଣାର ଉଦ୍ରେକ କରାଇବ ନାହିଁ ? ବର୍ତ୍ତମାନର ଅଭାବବୋଧ ଓ ଅଶାନ୍ତି କ'ଣ ତାଙ୍କୁ ଶରୀରପରିଗ୍ରହ କରିବାକୁ ପ୍ରଯୁକ୍ତ କରିବ ନାହିଁ ?

ହେ ପାଠକ ! ଯୁଗ ପ୍ରୟୋଜନ ଏହି କାର୍ଯ୍ୟ ସମ୍ପନ୍ନ କରିଅଛି— ଶ୍ରୀଭଗବାନ ଜଗଦ୍‌ଗୁରୁରୂପରେ ସତରେ ପୁନରାୟ ଆବିର୍ଭୂତ ହୋଇଛନ୍ତି । ଆଶ୍ୱସ୍ତ ହୃଦୟରେ ଶ୍ରବଣ କର, ତାଙ୍କର ପୂତ ଆଶୀର୍ବାଣୀ—"ଯେତେ ମତ ସେତେ ପଥ", "ସର୍ବାନ୍ତଃକରଣରେ ଯାହାକିଛି ଅନୁଷ୍ଠାନ କରିବ, ତାହାଦ୍ୱାରା ହିଁ ତୁମେ ଶ୍ରୀଭଗବାନଙ୍କୁ ଲାଭ କରିବ ।" ମୁଗ୍ଧ ଚିତ୍ତରେ ମନନ କର—ପରାବିଦ୍ୟା ପୁନଃ ଆନୟନ ପାଇଁ ତାଙ୍କର ଅଲୌକିକ ତ୍ୟାଗ ଓ ତପସ୍ୟା !—ଆସ ତାଙ୍କର କାମଗନ୍ଧହୀନ ପୁଣ୍ୟ ଚରିତ୍ରର ଯଥାସାଧ୍ୟ ଆଲୋଚନା ଓ ଧ୍ୟାନ କରି ଆମେ ଉଭୟ ପବିତ୍ର ହେବା ।

# ଦ୍ୱିତୀୟ ଅଧ୍ୟାୟ

## କାମାରପୁକୁର ଓ ପିତୃପରିଚୟ

### ଦରିଦ୍ରଗୃହରେ ଈଶ୍ୱର ଅବତୀର୍ଣ୍ଣ ହେବାର କାରଣ :

ଈଶ୍ୱରଙ୍କ ଅବତାର ବୋଲି ଯେଉଁ ସମସ୍ତ ମହାପୁରୁଷ ଜଗତରେ ପୂଜିତ ହେଉଛନ୍ତି, ସେମାନଙ୍କ ମଧ୍ୟରୁ ଭଗବାନ ଶ୍ରୀରାମଚନ୍ଦ୍ର ଓ ଶାକ୍ୟସିଂହଙ୍କ ବ୍ୟତୀତ ଅନ୍ୟ ସମସ୍ତଙ୍କର ପାର୍ଥିବ ଜୀବନ ଦୁଃଖ-ଦାରିଦ୍ର୍ୟ, ସଂସାରର ଅସ୍ୱଚ୍ଛଳତା ଏବଂ କଠୋରତା ମଧ୍ୟରେ ଆରମ୍ଭ ହୋଇଥିବାର ଦେଖିବାକୁ ମିଳିଥାଏ । ଯଥା — କ୍ଷତ୍ରିୟରାଜକୁଳ ଅଳଙ୍କୃତ କରିଥିଲେ ମଧ୍ୟ ଭଗବାନ ଶ୍ରୀକୃଷ୍ଣ କାରାଗୃହରେ ଜନ୍ମ ହୋଇ ଆତ୍ମୀୟସ୍ୱଜନଙ୍କଠାରୁ ଦୂରରେ ନୀଚ ଗୋପକୁଳରେ ବାଲ୍ୟଜୀବନ ଅତିବାହିତ କରିଥିଲେ; ଭଗବାନ ଶ୍ରୀଈଶା ପାନ୍ଥଶାଳାର ଗୋଶାଳାରେ ଦରିଦ୍ର ପିତାମାତାଙ୍କର କୋଳ ଉଜ୍ଜ୍ୱଳ କରିଥିଲେ; ଭଗବାନ ଶ୍ରୀଶଙ୍କର ଦରିଦ୍ର ବିଧବାଙ୍କର ପୁତ୍ରରୂପେ ଅବତୀର୍ଣ୍ଣ ହୋଇଥିଲେ; ଭଗବାନ ଶ୍ରୀଚୈତନ୍ୟମହାପ୍ରଭୁ ନଗଣ୍ୟ ସାଧାରଣ ବ୍ୟକ୍ତିଙ୍କ ଗୃହରେ ଜନ୍ମ ପରିଗ୍ରହ କରିଥିଲେ; ଇସ୍‌ଲାମ ଧର୍ମର ପ୍ରବର୍ତ୍ତକ ଶ୍ରୀମତ୍ ମହମ୍ମଦଙ୍କ ଜୀବନରେ ମଧ୍ୟ ଏକଥାର ପରିଚୟ ମିଳିଥାଏ । କିନ୍ତୁ ଏପରି ହେଲେ ମଧ୍ୟ ଯେଉଁ ଦୁଃଖ-ଦାରିଦ୍ର୍ୟ ମଧ୍ୟରେ ସନ୍ତୋଷର ସରସତା ନାହିଁ, ଯେଉଁ ଅସ୍ୱଚ୍ଛଳ ସଂସାରରେ ନିଃସ୍ୱାର୍ଥତା ଓ ପ୍ରେମ ନାହିଁ, ଯେଉଁ ଦରିଦ୍ର ପିତା ମାତାଙ୍କ ହୃଦୟରେ ତ୍ୟାଗ, ପବିତ୍ରତା ଓ କଠୋର ମନୁଷ୍ୟତ୍ୱ ସହିତ କୋମଳ ଦୟାଦାକ୍ଷିଣ୍ୟାଦି ଭାବସମୂହର ମଧୁର ସାମଞ୍ଜସ୍ୟ ନାହିଁ, ସେପରି ସ୍ଥାନରେ ସେମାନେ କେବେହେଲେ ଜନ୍ମଗ୍ରହଣ କରିନାହାନ୍ତି ।

ଭାବି ଦେଖିଲେ, ପୂର୍ବୋକ୍ତ ବିଧାନର ସହିତ ସେମାନଙ୍କର ଭବିଷ୍ୟତ ଜୀବନର ଏକ ଗୂଢ଼ ସମ୍ବନ୍ଧ ପରିଲକ୍ଷିତ ହୋଇଥାଏ । କାରଣ, ଯୌବନ ଓ ପ୍ରୌଢ଼ ଅବସ୍ଥାରେ ଯେଉଁମାନଙ୍କୁ ସମାଜର ଦୁଃଖୀ, ଦରିଦ୍ର ଏବଂ ଅତ୍ୟାଚାରିତ-ଗଣଙ୍କର ନୟନାଶ୍ରୁ ପୋଛି ତାଙ୍କ ହୃଦୟରେ ଶାନ୍ତିପ୍ରଦାନ କରିବାକୁ ହେବ, ସେମାନେ ଏସମସ୍ତ ବ୍ୟକ୍ତିଙ୍କର ଅବସ୍ଥା ସହିତ ପୂର୍ବରୁ ପରିଚିତ ତଥା ସହାନୁଭୂତିସମ୍ପନ୍ନ ନ ହେଲେ ଏହି କାର୍ଯ୍ୟ ସାଧନ କିପରି କରିବେ ? କେବଳ ସେତିକି ନୁହେଁ । ଏହା ପୂର୍ବରୁ ଆମେ ଦେଖିଛୁ ସଂସାରରେ ଧର୍ମଗ୍ଳାନି-ନିବାରଣ ନିମିତ୍ତ ଅବତାରପୁରୁଷମାନଙ୍କର ଅଭ୍ୟୁଦୟ ହୋଇଥାଏ । ସେହି କାର୍ଯ୍ୟ ସମ୍ପନ୍ନ କରିବା ପାଇଁ ସେମାନଙ୍କୁ ପୂର୍ବ ପ୍ରଚାରିତ ଧର୍ମ ବିଧାନସମୂହର ଯଥାଯଥ ଅବସ୍ଥା ସହିତ ପ୍ରଥମରୁ ହିଁ ପରିଚିତ ହେବାକୁ ପଡ଼ିଥାଏ ଏବଂ ଏସମସ୍ତ ପୁରାତନ ବିଧାନଗୁଡ଼ିକର ବର୍ତ୍ତମାନ ଗ୍ଳାନିର କାରଣ ଆଲୋଚନାପୂର୍ବକ ସେମାନଙ୍କର ପୂର୍ଣ୍ଣତା ଓ ସାଫଲ୍ୟସ୍ୱରୂପ

ଦେଶକାଳୋପଯୋଗୀ ନୂତନ ବିଧାନ ଆବିଷ୍କାର କରିବାକୁ ହୋଇଥାଏ । ଏହି ପରିଚୟଲାଭର ବିଶେଷ ସୁଯୋଗ ଦରିଦ୍ରର କୁଟୀର ବ୍ୟତୀତ ଧନୀଙ୍କର ପ୍ରାସାଦ କେବେହେଲେ ପ୍ରଦାନ କରେ ନାହିଁ । କାରଣ, ସଂସାରର ସୁଖଭୋଗରୁ ବଞ୍ଚିତ ଦରିଦ୍ର ବ୍ୟକ୍ତି ହିଁ ଈଶ୍ୱର ଏବଂ ତାଙ୍କର ବିଧାନକୁ ଜୀବନର ପ୍ରଧାନ ଅବଲମ୍ବନ ରୂପରେ ସର୍ବଦା ଗ୍ରହଣ କରିଥାଆନ୍ତି । ଅତଏବ ସର୍ବତ୍ର ଧର୍ମର ଗ୍ଲାନି ଉପସ୍ଥିତ ହେଲେ ମଧ୍ୟ ପୂର୍ବରୁ ଥିବା ବିଧାନର ଯଥାଯଥ କିଞ୍ଚିତ୍ ଆଭାସ ଦରିଦ୍ରର କୁଟୀରକୁ ସେତେବେଳେ ମଧ୍ୟ ଉଜ୍ଜ୍ୱଳ କରି ରଖିଥାଏ; ଏବଂ ଏହି କାରଣରୁ ବୋଧହୁଏ, ଜଗଦ୍‌ଗୁରୁ ମହାପୁରୁଷଗଣ ଜନ୍ମ ପରିଗ୍ରହ କାଳରେ ଦରିଦ୍ର ପରିବାର ପ୍ରତି ହିଁ ଆକୃଷ୍ଟ ହୋଇ ଥାଆନ୍ତି ।

ଯେଉଁ ମହାପୁରୁଷଙ୍କ କଥା ଆମେ କହିବାକୁ ଯାଉଛୁ, ତାଙ୍କର ଜୀବନାରମ୍ଭ ମଧ୍ୟ ପୂର୍ବୋକ୍ତ ନିୟମ ବ୍ୟତିକ୍ରମ କରି ନାହିଁ ।

## ଶ୍ରୀରାମକୃଷ୍ଣଦେବଙ୍କ ଜନ୍ମଭୂମି କାମାରପୁକୁର :

ହୁଗଳି ଜିଲ୍ଲାର ଉତ୍ତର-ପଶ୍ଚିମାଂଶ ଯେଉଁଠାରେ ବାଙ୍କୁଡ଼ା ଓ ମେଦିନୀପୁର ଜିଲ୍ଲାଦ୍ୱୟ ମିଳିତ ହୋଇଛି, ସେହି ସନ୍ଧିସ୍ଥଳର ଅନତିଦୂରରେ ତିନିଖଣ୍ଡଗ୍ରାମ ତ୍ରିକୋଣମଣ୍ଡଳରେ ପରସ୍ପର ସନ୍ନିକଟରେ ଅବସ୍ଥିତ ରହିଛି । ଗ୍ରାମବାସୀଗଣଙ୍କ ନିକଟରେ ଉକ୍ତ ଗ୍ରାମ ତ୍ରୟ ଶ୍ରୀପୁର, କାମାରପୁକୁର ଓ ମୁକୁନ୍ଦପୁର ନାମରେ ପରିଚିତ ଥିଲେ ମଧ୍ୟ ଏହା ପରସ୍ପର ସହିତ ଅତ୍ୟନ୍ତ ସନ୍ନିବିଷ୍ଟ ଥିବାରୁ, ପଥିକମାନଙ୍କ ନିକଟରେ ଏହା ଗୋଟିଏ ଗ୍ରାମର ବିଭିନ୍ନ ପଲ୍ଲୀ ବୋଲି ପ୍ରତୀତ ହୋଇଥାଏ । ସେଥିପାଇଁ ଚତୁଃପାର୍ଶ୍ୱସ୍ଥ ଗ୍ରାମଗୁଡ଼ିକରେ ଏଗୁଡ଼ିକ ଏକମାତ୍ର କାମାରପୁକୁର ନାମରେ ହିଁ ପ୍ରସିଦ୍ଧି ଲାଭ କରିଛି । ସ୍ଥାନୀୟ ଜମିଦାରମାନଙ୍କର ବହୁକାଳ ସେହି ଗ୍ରାମରେ ବସବାସଥିବାରୁ ବୋଧହୁଏ କାମାରପୁକୁରର ପୂର୍ବୋକ୍ତ ସୌଭାଗ୍ୟ ଉଦୟ ହୋଇଥିଲା । ଆମେ ଯେଉଁ ସମୟର କଥା କହୁଛୁ, ସେସମୟରେ କାମାରପୁକୁର ବର୍ଦ୍ଧମାନ ମହାରାଜାଙ୍କର ଗୁରୁବଂଶୀୟମାନଙ୍କର ଲାଖରାଜ ଜମିଦାରିଭୁକ୍ତ ଥିଲା ଏବଂ ସେମାନଙ୍କର ବଂଶଧର ଶ୍ରୀଯୁକ୍ତ ଗୋପୀଲାଲ, ସୁଖଲାଲ ପ୍ରଭୃତି ଗୋସ୍ୱାମୀଗଣ[୧] ଏହି ଗ୍ରାମରେ ବାସ କରୁଥିଲେ ।

---

୧. ହୃଦୟରାମ ମୁଖୋପାଧ୍ୟାୟ ଆମମାନଙ୍କୁ ସୁଖଲାଲଙ୍କ ସ୍ଥାନରେ ଅନୁପ ଗୋସ୍ୱାମୀଙ୍କର ନାମ କହିଥିଲେ ; କିନ୍ତୁ ବୋଧହୁଏ ଏହା ସମୀଚୀନ ନୁହେଁ । ଗ୍ରାମର ବର୍ତ୍ତମାନ ଜମିଦାର ଲାହାବାବୁଙ୍କଠାରୁ ଶୁଣିଅଛୁ, ଉକ୍ତ ଗୋସ୍ୱାମୀଜୀଙ୍କର ନାମ ସୁଖଲାଲ ଥିଲା ଏବଂ ଏହାଙ୍କ ପୁତ୍ର କୃଷ୍ଣଲାଲ ଗୋସ୍ୱାମୀଙ୍କଠାରୁ ସେମାନେ ପ୍ରାୟ ପଚାଶ ବର୍ଷ ପୂର୍ବେ କାମାରପୁକୁରର ଅଧିକାଂଶ ଜମି କ୍ରୟ କରିନେଇଥିଲେ । ପୁନଶ୍ଚ ଗ୍ରାମରେ ପ୍ରବାଦ ଅଛି, ୰ଗୋପେଶ୍ୱର ନାମକ ବୃହତ ଶିବଲିଙ୍ଗ ଗୋପୀଲାଲ ଗୋସ୍ୱାମୀ ପ୍ରତିଷ୍ଠିତ କରିଥିଲେ । ଅତଏବ ଉକ୍ତ ଗୋପୀଲାଲ ଗୋସ୍ୱାମୀ ସୁଖଲାଲଙ୍କର କୌଣସି ପୂର୍ବପୁରୁଷ ଥିଲେ ବୋଲି ଅନୁମିତ ହୁଏ । ଅଥବା ଏପରି ମଧ୍ୟ ହୋଇପାରେ ଯେ, ସୁଖଲାଲଙ୍କର ଅନ୍ୟ ନାମ ଗୋପୀଲାଲ ଥିଲା ।

କାମାରପୁକୁରଠାରୁ ବର୍ଦ୍ଧମାନ ସହର ପ୍ରାୟ ବତିଶ ମାଇଲ ଉତ୍ତରରେ ଅବସ୍ଥିତ । ଉକ୍ତ ସହରରୁ ଆସିବା ନିମିତ୍ତ ସେହି ଗ୍ରାମକୁ ପକ୍କା ରାସ୍ତାଅଛି । କାମାରପୁକୁର ଆସି ସେହି ରାସ୍ତା ଶେଷ ହୋଇ ନାହିଁ; ଏହି ଗ୍ରାମକୁ ଅର୍ଦ୍ଧବେଷ୍ଟନ କରି ତାହା ଦକ୍ଷିଣ-ପଶ୍ଚିମ ଅଭିମୁଖେ ପୁରୀ ପର୍ଯ୍ୟନ୍ତ ଯାଇଅଛି । ପଦଚାରୀ ଦରିଦ୍ର ଯାତ୍ରୀ ଏବଂ ବୈରାଗ୍ୟବାନ ସାଧୁମାନେ ଅନେକେ ଶ୍ରୀଶ୍ରୀଜଗନ୍ନାଥଙ୍କ ଦର୍ଶନ ପାଇଁ ଏହି ରାସ୍ତା ଦେଇ ଗମନାଗମନ କରନ୍ତି ।

କାମାରପୁକୁରର ପ୍ରାୟ ୯/୧୦ କ୍ରୋଶ ପୂର୍ବରେ ତାରକେଶ୍ୱର ମହାଦେବଙ୍କର ପ୍ରସିଦ୍ଧ ମନ୍ଦିର ଅବସ୍ଥିତ । ଏହି ସ୍ଥାନରୁ ଦ୍ୱାରକେଶ୍ୱର ନଦ ତୀରବର୍ତ୍ତୀ ଜାହାନାବାଦ ବା ଆରାମବାଗ ମଧ୍ୟ ଦେଇ କାମାରପୁକୁରକୁ ଆସିବା ପାଇଁ ଏକ ରାସ୍ତା ଅଛି । ଏତଦ୍‌ଭିନ୍ନ ଉକ୍ତ ଗ୍ରାମର ପ୍ରାୟ ନଅକୋଶ ଦକ୍ଷିଣରେ ଅବସ୍ଥିତ ଘାଟାଲରୁ ଏବଂ ପ୍ରାୟ ତେରକୋଶ ପଶ୍ଚିମରେ ଅବସ୍ଥିତ ବନ-ବିଷ୍ଣୁପୁରରୁ ମଧ୍ୟ ଏଠାକୁ ଆସିବାର ପ୍ରଶସ୍ତ ରାସ୍ତା ଅଛି ।

### କାମାରପୁକୁର ଅଞ୍ଚଳର ପୂର୍ବ-ସମୃଦ୍ଧି ଓ ବର୍ତ୍ତମାନ ଅବସ୍ଥା :

୧୮୬୭ ଖ୍ରୀଷ୍ଟାବ୍ଦରେ ମ୍ୟାଲେରିଆଜନିତ ମହାମାରୀ ଆବିର୍ଭାବ ହେବା ପୂର୍ବରୁ କୃଷିପ୍ରଧାନ ବଙ୍ଗର ପଲ୍ଲୀଗ୍ରାମଗୁଡ଼ିକରେ କିପରି ଅପୂର୍ବ ଶାନ୍ତି ବିରାଜମାନ କରୁଥିଲା, ତାହା ବର୍ଣ୍ଣନାତୀତ । ବିଶେଷତଃ, ହୁଗୁଳି ଜିଲ୍ଲାର ଏହି ଗ୍ରାମାଞ୍ଚଳର ବିସ୍ତୀର୍ଣ୍ଣ ଧାନ୍ୟକ୍ଷେତ୍ର ମଧ୍ୟସ୍ଥିତ କ୍ଷୁଦ୍ର କ୍ଷୁଦ୍ର ଗ୍ରାମଗୁଡ଼ିକ ବିଶାଳ ହରିତ୍‌ସାଗରରେ ଭାସମାନ ଦ୍ୱୀପପୁଞ୍ଜ ସଦୃଶ ପ୍ରତୀତ ହେଉଥିଲା । ଜମିର ଉର୍ବରତା ଯୋଗୁଁ ଖାଦ୍ୟଦ୍ରବ୍ୟର ଅଭାବ ନ ଥିବାରୁ ଏବଂ ନିର୍ମଳ ବାୟୁରେ ନିତ୍ୟ ପରିଶ୍ରମ ଫଳରେ ଗ୍ରାମବାସୀମାନଙ୍କର ଦେହରେ ସ୍ୱାସ୍ଥ୍ୟ ଓ ସବଳତା ଏବଂ ମନରେ ପ୍ରୀତି ଓ ସନ୍ତୋଷ ସର୍ବଦା ପରିଲକ୍ଷିତ ହେଉଥିଲା । ବହୁ ଜନାକୀର୍ଣ୍ଣ ଗ୍ରାମଗୁଡ଼ିକରେ କୃଷି ବ୍ୟତୀତ ଛୋଟ ଛୋଟ ନାନାଦି ଶିଳ୍ପବ୍ୟବସାୟରେ ମଧ୍ୟ ଲୋକେ ନିଯୁକ୍ତ ରହୁଥିଲେ । ଉତ୍କୃଷ୍ଟ ଜିଲାପି, ମିଠାଇ ଓ ନବାତ ପ୍ରଭୃତି ପ୍ରସ୍ତୁତ କରିବାରେ କାମାରପୁକୁର ଏହି ଅଞ୍ଚଳରେ ଚିର ପ୍ରସିଦ୍ଧ ଥିଲା । ମେହଗାନି କାଠରେ ହୁକ୍‌କାର ନଳୀ ନିର୍ମାଣ କରି କଲିକତାରେ ବ୍ୟବସାୟ କରି ଏହି ଗ୍ରାମବାସୀମାନେ ଏବେ ମଧ୍ୟ ବେଶ୍ କିଛି ଅର୍ଜନ କରିଥାଆନ୍ତି । ସୁତା, ଗାମୁଛା ଓ ଲୁଗାପଟା ତିଆରି କରିବାରେ ଓ ଅନ୍ୟାନ୍ୟ ଶିଳ୍ପକାର୍ଯ୍ୟରେ ମଧ୍ୟ କାମାରପୁକୁର ଗୋଟିଏ ସମୟରେ ପ୍ରସିଦ୍ଧ ଥିଲା । ବିଷ୍ଣୁ ଚାପଡ଼ି ଆଦି କେତେକ ବିଖ୍ୟାତ ବସ୍ତ୍ର ବ୍ୟବସାୟୀ ଏହି ଗ୍ରାମରେ ବାସକରି ସେତେବେଳେ କଲିକତା ସହିତ ଅନେକ ଟଙ୍କାର କାରବାର କରୁଥିଲେ । ପ୍ରତି ଶନିବାର ଓ ମଙ୍ଗଳବାରରେ ଏବେ ମଧ୍ୟ ଏହି ଗ୍ରାମରେ ହାଟ ବସେ । ତାରାହାଟ, ବଦନଗଞ୍ଜ, ସିହଡ଼, ଦେଶଡ଼ା ପ୍ରଭୃତି ଚତୁଃପାର୍ଶ୍ୱସ୍ଥ ଗ୍ରାମମାନଙ୍କରୁ ଲୋକେ ସୂତା,

ବସ୍ତ୍ର, ଗାମୁଛା, ହାଣ୍ଡି, ମାଠିଆ କୁଲା, ଚାଙ୍ଗୁଡ଼ି, ମଶିଣା, ଚଟେଇ ପ୍ରଭୃତି ସଂସାରର ନିତ୍ୟବ୍ୟବହାର୍ଯ୍ୟ ପଣ୍ୟ ଓ କୃଷିଜାତ ଦ୍ରବ୍ୟ ସକଳ ହାଟବାରରେ କାମାରପୁକୁରକୁ ଆଣି ପରସ୍ପର ମଧ୍ୟରେ କ୍ରୟ ବିକ୍ରୟ କରିଥାଆନ୍ତି । ଏବେ ମଧ୍ୟ ଗ୍ରାମରେ ଆନନ୍ଦ ଉତ୍ସବର ଅଭାବ ପରିଲକ୍ଷିତ ହୁଏ ନାହିଁ । ଚୈତ୍ର ମାସରେ ମନସାପୂଜା ଓ ଶିବଙ୍କ ଉତ୍ସବ ଏବଂ ବୈଶାଖ ବା ଜ୍ୟୈଷ୍ଠମାସରେ ଚବିଶପ୍ରହରୀୟ ହରିବାସରରେ କାମାରପୁକୁର ମୁଖରିତ ହୋଇ ଉଠିଥାଏ । ଏତଦ୍‌ଭିନ୍ନ ଜମିଦାରଙ୍କ ଗୃହରେ ବାରମାସ ସମସ୍ତପ୍ରକାର ପାଳିପାର୍ବଣ ଏବଂ ପ୍ରତିଷ୍ଠିତ ଦେବାଳୟମାନଙ୍କରେ ନିତ୍ୟ ପୂଜାର୍ଚ୍ଚନା ସହିତ ପର୍ବପର୍ବାଣୀ ଅନୁଷ୍ଠିତ ହୋଇଥାଏ । ଅବଶ୍ୟ ଦାରିଦ୍ର୍ୟଜନିତ ଅଭାବ ବର୍ତ୍ତମାନ ସମୟରେ ଏସମସ୍ତ ଅନେକାଂଶରେ ଲୁପ୍ତ କରିଛି ।

## ଏହି ଅଞ୍ଚଳରେ ଧର୍ମଠାକୁରଙ୍କର ପୂଜା :

ଅତୀତରେ ଏଠାରେ ଧର୍ମଠାକୁରଙ୍କର ପୂଜା ବିଶେଷ ଆଡ଼ମ୍ବର ସହକାରେ ପାଳନ ହେଉଥିଲା । କିନ୍ତୁ ବର୍ତ୍ତମାନ ସେସମୟ ଆଉ ନାହିଁ । ବୌଦ୍ଧ ତ୍ରିରତ୍ନର ଅନ୍ୟତମ 'ଧର୍ମ' ବର୍ତ୍ତମାନ କୂର୍ମମୂର୍ତ୍ତିରେ ପରିଣତ ହୋଇ ଏଠାରେ ଏବଂ ଚତୁଃପାର୍ଶ୍ୱସ୍ଥ ଗ୍ରାମମାନଙ୍କରେ ନାମକୁ ମାତ୍ର ପୂଜିତ ହୋଇଥାଆନ୍ତି । ବେଳେ ବେଳେ ବ୍ରାହ୍ମଣଗଣ ମଧ୍ୟ ଏହି ମୂର୍ତ୍ତିକୁ ପୂଜା କରିବାର ଦେଖାଯାଇଥାଏ । ବିଭିନ୍ନ ଗ୍ରାମରେ ଉକ୍ତ ଧର୍ମଠାକୁରଙ୍କର ଭିନ୍ନ ଭିନ୍ନ ନାମ ଶୁଣିବାକୁ ମିଳିଥାଏ । ଯଥା, କାମାରପୁକୁରର ଧର୍ମଠାକୁରଙ୍କ ନାମ — 'ରାଜାଧିରାଜ ଧର୍ମ'; ଶ୍ରୀପୁରରେ ପ୍ରତିଷ୍ଠିତ ଉକ୍ତ ଦେବତାଙ୍କ ନାମ — 'ଯାତ୍ରାସିଦ୍ଧିରାୟ ଧର୍ମ' ଏବଂ ମୁକୁନ୍ଦପୁର ନିକଟବର୍ତ୍ତୀ ମଧୁବାଟୀନାମକ ଗ୍ରାମରେ ପ୍ରତିଷ୍ଠିତ ଧର୍ମ ଠାକୁରଙ୍କ ନାମ — 'ସନ୍ନ୍ୟାସୀରାୟ ଧର୍ମ' । କାମାରପୁକୁର ଗ୍ରାମରେ ପ୍ରତିଷ୍ଠିତ ଧର୍ମ ଠାକୁରଙ୍କ ରଥଯାତ୍ରା ମଧ୍ୟ ଅତୀତ ସମୟରେ ମହାସମାରୋହରେ ସମ୍ପନ୍ନ ହେଉଥିଲା । ନବଚୂଡ଼ା-ସମନ୍ୱିତ ସୁଦୀର୍ଘ ରଥଟି ମନ୍ଦିର ନିକଟରେ ନିତ୍ୟ ନୟନଗୋଚର ହେଉଥିଲା । କିନ୍ତୁ ଏହି ରଥଟି ଭାଙ୍ଗିଗଲା ପରେ ଆଉ ନିର୍ମିତ ହୋଇ ନାହିଁ । ଧର୍ମ ଠାକୁରଙ୍କ ମନ୍ଦିରଟି ମଧ୍ୟ ସଂସ୍କାର ଅଭାବରୁ ଭୂମିସାତ୍ ହେବା ଦେଖି ଧର୍ମପଣ୍ଡିତ ଯଜ୍ଞେଶ୍ୱର ଏବେ ମନ୍ଦିରର ଠାକୁରଙ୍କୁ ନିଜ ଘରକୁ ସ୍ଥାନାନ୍ତରିତ କରିଛନ୍ତି ।

## ହାଲଦାରପୁକୁର, ଭୂତୀର ଖାଲ, ଆମ୍ରକାନନ ପ୍ରଭୃତିର କଥା :

ବ୍ରାହ୍ମଣ, କରଣ, ତନ୍ତି, କମାର, କୁମ୍ଭାର, କେଉଟ ଓ ଡମ ପ୍ରଭୃତି ଉଚ୍ଚନୀଚ ସମସ୍ତ ପ୍ରକାର ଜାତିର ଲୋକମାନଙ୍କର କାମାରପୁକୁରରେ ବସତି ଅଛି । ଗ୍ରାମରେ ୩, ୪ଟି ବୃହତ୍ ପୁଷ୍କରିଣୀ ଅଛି । ତନ୍ମଧ୍ୟରେ ହାଲ୍‌ଦାରପୁଷ୍କରିଣୀଟି ସବୁଠାରୁ ବଡ଼ । ଏହାଛଡ଼ା କ୍ଷୁଦ୍ର କ୍ଷୁଦ୍ର ଅନେକ ପୁଷ୍କରିଣୀ ମଧ୍ୟ ଅଛି । ଏମାନଙ୍କ ମଧ୍ୟରେ କେତେକ ଶତଦଳ କମଳ, କୁମୁଦ ଆଦି ପୁଷ୍ପ ବକ୍ଷରେ ଧାରଣ କରି ଅପୂର୍ବ ଶୋଭା ବିସ୍ତାର

କରୁଅଛି । ଗ୍ରାମରେ ଇଟାରେ ତିଆରି ଗୃହ ଓ ସମାଧିର ଅଭାବ ନାହିଁ । ପୂର୍ବେ ଏହା ଆହୁରି ଅଧିକ ଥିଲା । ରାମାନନ୍ଦ ଶଙ୍ଖାରୀଙ୍କର ଭଗ୍ନ ଦେଉଳ, ଫକୀର ଦତ୍ତଙ୍କର ଜୀର୍ଣ୍ଣ ରାସମଞ୍ଚ, ଜଙ୍ଗଲରେ ପରିପୂର୍ଣ୍ଣ ଇଟାର ସ୍ତୂପ ଏବଂ ପରିତ୍ୟକ୍ତ ଦେବାଳୟସମୂହ ନାନାସ୍ଥାନରେ ବିଦ୍ୟମାନ ରହି ଏହି ବିଷୟର ଏବଂ ଗ୍ରାମର ପୂର୍ବସମୃଦ୍ଧିର ପରିଚୟ ପ୍ରଦାନ କରୁଅଛି । ଗ୍ରାମର ଐଶାନ୍ୟ ଓ ବାୟୁକୋଣରେ 'ବୁଧୁଇ ମୋଡ଼ଲ' ଓ 'ଭୂତୀର ଖାଲ' ନାମକ ଦୁଇଟି ଶ୍ମଶାନ ଅଛି । ଶେଷୋକ୍ତ ସ୍ଥାନର ପଶ୍ଚିମରେ ଗୋଚାରଣ ପ୍ରାନ୍ତର, ମାଣିକ ରାଜା-ପ୍ରତିଷ୍ଠିତ ସର୍ବସାଧାରଣଙ୍କ ଉପଭୋଗ୍ୟ ଆମ୍ରକାନନ ଓ ଆମୋଦର ନଦ ବିଦ୍ୟମାନ । ଭୂତୀର ଖାଲ (ଭୂତୀର କେନାଲ) ଦକ୍ଷିଣରେ ପ୍ରବାହିତ ହୋଇ ଗ୍ରାମର ଅନତି ଦୂରରେ ଉକ୍ତ ନଦସହିତ ସମ୍ମିଳିତ ହୋଇଅଛି ।

## ଭୂରସୁବୋର ମାଣିକରାଜା :

କାମାରପୁକୁରର ଅର୍ଦ୍ଧକ୍ରୋଶ ଉତ୍ତରରେ ଭୂରସୁବୋ ନାମକ ଗୋଟିଏ ଗ୍ରାମ ଅଛି । ଶ୍ରୀଯୁକ୍ତ ମାଣିକଚନ୍ଦ୍ର ବନ୍ଦୋପାଧ୍ୟାୟ ନାମକ ଜଣେ ବିଶେଷ ଧନାଢ଼୍ୟ ବ୍ୟକ୍ତିଙ୍କର ସେଠାରେ ବସବାସ ଥିଲା । ଚତୁଃପାର୍ଶ୍ୱସ୍ଥ ଗ୍ରାମମାନଙ୍କରେ ଏହି ବ୍ୟକ୍ତି 'ମାଣିକ ରାଜା' ନାମରେ ପରିଚିତ ଥିଲେ । ପୂର୍ବୋକ୍ତ ଆମ୍ରକାନନ ବ୍ୟତୀତ 'ସୁଖସାୟେର', 'ହାତୀ ସାୟେର' ପ୍ରଭୃତି ବୃହତ୍ ସରୋବର ଗୁଡ଼ିକ ଏବେ ମଧ ଏହାଙ୍କର କୀର୍ତ୍ତି ଘୋଷଣା କରୁଅଛି । ଶୁଣିବାକୁ ମିଳେ ଯେ, ଏହାଙ୍କ ଗୃହରେ ଏକ ଲକ୍ଷ ବ୍ରାହ୍ମଣ ଅନେକ ଥର ନିମନ୍ତ୍ରିତ ହୋଇ ଭୋଜନ କରିଥିଲେ ।

## ଗଡ଼ ମାନ୍ଦାରଣ :

କାମରପୁକୁରର ଦକ୍ଷିଣ-ପୂର୍ବ ବା ଅଗ୍ନିକୋଣରେ ମାନ୍ଦାରଣ ଗ୍ରାମ ଅବସ୍ଥିତ । ଚତୁଃପାର୍ଶ୍ୱସ୍ଥିତ ଗ୍ରାମସମୂହକୁ ଶତ୍ରୁ ଆକ୍ରମଣରୁ ରକ୍ଷା କରିବା ନିମିତ୍ତ ପୂର୍ବରୁ କୌଣସି ଗୋଟିଏ ସମୟରେ ଏଠାରେ ଗୋଟିଏ ଦୁର୍ଭେଦ୍ୟ ଦୁର୍ଗ ପ୍ରତିଷ୍ଠିତ ହୋଇଥିଲା । ପାର୍ଶ୍ୱବର୍ତ୍ତୀ କ୍ଷୁଦ୍ରକାୟ ଆମୋଦର ନଦର ଗତି କୌଶଳକ୍ରମେ ପରିବର୍ତ୍ତିତ କରାଇ ଉକ୍ତ ଗଡ଼ର ପରିଖାରେ ପରିଣତ କରାଯାଇଥିଲା ।

## ଉଚାଳନର ବଡ଼ ପୋଖରୀ ଓ ମୋଗଲମାରିର ଯୁଦ୍ଧକ୍ଷେତ୍ର :

ମାନ୍ଦାରଣ ଦୁର୍ଗର ଭଗ୍ନ ତୋରଣ, ସ୍ତୂପ ଓ ପରିଖା ଏବଂ ଏହାର ଅନତିଦୂରରେ ଶୈଳେଶ୍ୱର ମହାଦେବ ମନ୍ଦିର ଅଦ୍ୟାବଧି ବିରାଜମାନ ରହି ପଠାଣମାନଙ୍କ ରାଜତ୍ୱ ସମୟରେ ଏସ୍ଥାନର ପ୍ରସିଦ୍ଧି ସମ୍ବନ୍ଧରେ ପରିଚୟ ପ୍ରଦାନ କରୁଅଛି । ଗଡ଼ ମାନ୍ଦାରଣର ପାର୍ଶ୍ୱ ଦେଇ ବର୍ଦ୍ଧମାନକୁ ଗମନାଗମନ ନିମିତ୍ତ ପୂର୍ବୋକ୍ତ ପଥ ପ୍ରସାରିତ ହୋଇଛି । ଏହି ପଥର ଉଭୟ ପାର୍ଶ୍ୱରେ ଅନେକଗୁଡ଼ିଏ

ବୃହତ୍ ସରୋବର ଦୃଶ୍ୟଗୋଚର ହୋଇଥାଏ । ଉକ୍ତ ଗଡ଼ଠାରୁ ପ୍ରାୟ ନଅକ୍ରୋଶ (୧୮ମାଇଲ) ଉତ୍ତରରେ ଅବସ୍ଥିତ ଉଚାଳନ ନାମକ ସ୍ଥାନର ପୋଖରୀଟି ତନ୍ମଧ୍ୟରେ ସର୍ବବୃହତ । ଉକ୍ତ ମାର୍ଗର ପାର୍ଶ୍ୱରେ ଗୋଟିଏ ଭଗ୍ନ ହସ୍ତୀଶାଳ ମଧ୍ୟ ପରିଲକ୍ଷିତ ହୁଏ । ଏସମସ୍ତ ଦେଖି ବୁଝାଯାଏ, ଯୁଦ୍ଧାଦି କାର୍ଯ୍ୟ ପାଇଁ ଏହି ରାସ୍ତାଟି ନିର୍ମିତ ହୋଇଥିଲା । ମୋଗଲମାରିର ପ୍ରସିଦ୍ଧ ଯୁଦ୍ଧକ୍ଷେତ୍ର ପଥପାର୍ଶ୍ୱରେ ଅବସ୍ଥିତ ରହି ଏହି ବିଷୟରେ ସାକ୍ଷ୍ୟ ପ୍ରଦାନ କରୁଅଛି ।

### ଦେରେ ଗ୍ରାମର ଜମିଦାର ରାମାନନ୍ଦ ରାୟଙ୍କ କଥା :

କାମାରପୁକୁରର ପଶ୍ଚିମକୁ ପ୍ରାୟ ଏକକ୍ରୋଶ ଦୂରରେ ସାତବେଡ଼େ, ନାରାୟଣପୁର ଓ ଦେରେ ନାମକ ତିନୋଟି ଗ୍ରାମ ପାଖାପାଖି ଅବସ୍ଥିତ । ଏହି ଗ୍ରାମଗୁଡ଼ିକ ଏକଦା ବିଶେଷ ସମୃଦ୍ଧସମ୍ପନ୍ନ ଥିଲା । ଦେରେର ଦୀର୍ଘିକା ଓ ତତ୍ ପାର୍ଶ୍ୱବର୍ତ୍ତୀ ଦେବାଳୟ ଏବଂ ଅନ୍ୟାନ୍ୟ ନାନା ବିଷୟ ଦେଖି ଏକଥା ଅନୁମାନ କରାଯାଏ । ଆମେ ଯେଉଁ ସମୟର କଥା ଉଲ୍ଲେଖ କରୁଛୁ, ସେହି ସମୟରେ ଉକ୍ତ ଗ୍ରାମ ତ୍ରୟ ଭିନ୍ନ ଭିନ୍ନ ଜମିଦାରୀ ଅନ୍ତର୍ଭୁକ୍ତ ଥିଲା ଏବଂ ଏହାର ଜମିଦାର ରାମାନନ୍ଦ ରାୟ ସାତବେଡ଼େ ଗ୍ରାମରେ ବାସ କରୁଥିଲେ । ଏହି ଜମିଦାର ବିଶେଷ ଧନାଢ଼୍ୟ ନ ଥିଲେ ମଧ୍ୟ ବିଷମ ପ୍ରଜାପୀଡ଼କ ଥିଲେ । କୌଣସି କାରଣରୁ କାହା ଉପରେ କ୍ରୋଧିତ ହେଲେ, ସେ ସେହି ପ୍ରଜାକୁ ସର୍ବସ୍ୱାନ୍ତ କରିବାକୁ ଆଦୌ କୁଣ୍ଠିତ ହେଉ ନ ଥିଲେ । ଏହାଙ୍କର ପୁତ୍ରକନ୍ୟାଦି କେହି ହେଲେ ଜୀବିତ ନ ଥିଲେ । ଲୋକମୁଖରେ ଶୁଣାଯାଏ, ପ୍ରଜାପୀଡ଼ନ ରୂପକ ପାପକର୍ମର ଫଳସ୍ୱରୂପ ସେ ନିର୍ବଂଶ ହୋଇଥିଲେ ଏବଂ ମୃତ୍ୟୁପରେ ଏହାଙ୍କର ବିଷୟ-ସମ୍ପତ୍ତି ଅନ୍ୟର ହସ୍ତଗତ ହୋଇଥିଲା ।

### ଦେରେ ଗ୍ରାମର ମାଣିକରାମ ଚଟ୍ଟୋପାଧ୍ୟାୟ :

ପ୍ରାୟ ଦେଢ଼ଶହ ବର୍ଷ ପୂର୍ବେ ମଧ୍ୟବିତ୍ତ-ଅବସ୍ଥାସମ୍ପନ୍ନ ଧର୍ମନିଷ୍ଠ ଏକ ବ୍ରାହ୍ମଣ ପରିବାର ଦେରେ ଗ୍ରାମରେ ବାସ କରୁଥିଲେ । ଏମାନେ ସଦାଚାରୀ, କୁଳୀନ ଏବଂ ଶ୍ରୀରାମଚନ୍ଦ୍ରଙ୍କର ଉପାସକ ଥିଲେ । ଏମାନଙ୍କ ଦ୍ୱାରା ପ୍ରତିଷ୍ଠିତ ଶିବାଳୟସମନ୍ୱିତ ପୁଷ୍କରିଣୀଟି ଏବେ ମଧ୍ୟ 'ଚାଟୁଯ୍ୟେ ପୁକୁର' ନାମରେ ଖ୍ୟାତ ରହି ଏମାନଙ୍କର ପରିଚୟ ପ୍ରଦାନ କରୁଅଛି । ଉକ୍ତ ବଂଶୀୟ ଶ୍ରୀଯୁକ୍ତ ମାଣିକରାମ ଚଟ୍ଟୋପାଧ୍ୟାୟଙ୍କର ତିନୋଟି ପୁତ୍ର ଓ ଗୋଟିଏ କନ୍ୟା ଥିଲା । ତନ୍ମଧ୍ୟରେ ଜ୍ୟେଷ୍ଠ କ୍ଷୁଦିରାମ ସମ୍ଭବତଃ ୧୭୭୫ ମସିହାରେ ଜନ୍ମଗ୍ରହଣ କରିଥିଲେ । କ୍ଷୁଦିରାମଙ୍କ ପରେ କନ୍ୟା ରାମଶୀଳା ଏବଂ ନିଧିରାମ ଓ କହ୍ନେଇରାମ ନାମକ ପୁତ୍ରଦ୍ୱୟ ଜନ୍ମଲାଭ କରିଥିଲେ ।

**ତାଙ୍କ ପୁତ୍ର କ୍ଷୁଦିରାମ ଚଟ୍ଟୋପାଧ୍ୟାୟଙ୍କ କଥା :**

ଶ୍ରୀଯୁକ୍ତ କ୍ଷୁଦିରାମଙ୍କର ବୟସ ବୃଦ୍ଧି ହେବା ସହିତ ଅର୍ଥକରୀ କୌଣସି ବିଦ୍ୟାରେ ପାରଦର୍ଶିତା ଲାଭ କରିଥିଲେ କି ନାହିଁ ଜଣାଯାଏ ନାହିଁ । କିନ୍ତୁ ସତ୍ୟନିଷ୍ଠା, ସନ୍ତୋଷ, କ୍ଷମା, ତ୍ୟାଗ ପ୍ରଭୃତି ଯେଉଁ ଗୁଣସମୂହ ସଦ୍‌ବ୍ରାହ୍ମଣଙ୍କର ସ୍ୱଭାବସିଦ୍ଧ ବୋଲି ଶାସ୍ତ୍ରନିର୍ଦ୍ଦିଷ୍ଟ ଅଛି, ସେସମସ୍ତ ଗୁଣ ବିଧାତା ତାଙ୍କୁ ପ୍ରଚୁର ପରିମାଣରେ ପ୍ରଦାନ କରିଥିଲେ । ସେ ଦୀର୍ଘ ଓ ସବଳ ଥିଲେ, କିନ୍ତୁ ସ୍ଥୂଳକାୟ ନ ଥିଲେ; ସେ ଗୌରବର୍ଣ୍ଣ ଓ ପ୍ରିୟଦର୍ଶନ ଥିଲେ । ବଂଶାନୁଗତ ଭାବରେ ଶ୍ରୀରାମଚନ୍ଦ୍ରଙ୍କ ପ୍ରତି ଭକ୍ତି ତାଙ୍କଠାରେ ବିଶେଷଭାବରେ ପ୍ରକାଶିତ ହୋଇଥିଲା ଏବଂ ସେ ନିତ୍ୟକୃତ୍ୟ ସନ୍ଧ୍ୟାବନ୍ଦନାଦି ସମାପନ କରି ପ୍ରତିଦିନ ପୁଷ୍ପଚୟନପୂର୍ବକ ରଘୁବୀରଙ୍କର ପୂଜାନ୍ତେ ଜଳଗ୍ରହଣ କରୁଥିଲେ । ଶୂଦ୍ରମାନଙ୍କଠାରୁ ଦାନ ଗ୍ରହଣ ଦୂରରେ ଥାଉ, ଶୂଦ୍ରଯାଜୀ ବ୍ରାହ୍ମଣଙ୍କର ନିମନ୍ତ୍ରଣ ମଧ୍ୟ ସେ କେବେହେଲେ ଗ୍ରହଣ କରୁ ନ ଥିଲେ । ଯେଉଁ ସମସ୍ତ ବ୍ରାହ୍ମଣ ପଣଗ୍ରହଣ କରି କନ୍ୟାସମ୍ପ୍ରଦାନ କରୁଥିଲେ, ସେମାନଙ୍କଠାରୁ ମଧ୍ୟ ସେ ଜଳଗ୍ରହଣ କରୁ ନ ଥିଲେ । ଏପରି ନିଷ୍ଠା ଓ ସଦାଚାର ନିମିତ୍ତ ଗ୍ରାମବାସୀମାନେ ତାଙ୍କୁ ବିଶେଷ ଭକ୍ତି ଓ ସମ୍ମାନର ସହିତ ଦେଖୁଥିଲେ ।

**କ୍ଷୁଦିରାମଙ୍କ ଗୃହିଣୀ ଶ୍ରୀମତୀ ଚନ୍ଦ୍ରାଦେବୀ :**

ପିତାଙ୍କର ମୃତ୍ୟୁପରେ ସଂସାର ଓ ବିଷୟସମ୍ପତ୍ତିର ତତ୍ତ୍ୱାବଧାନ ଶ୍ରୀଯୁକ୍ତ କ୍ଷୁଦିରାମଙ୍କ ସ୍କନ୍ଧରେ ହିଁ ପଡ଼ିଥିଲା ଏବଂ ଧର୍ମପଥରେ ଅବିଚଳିତ ରହି ସେ ଏସମସ୍ତ କାର୍ଯ୍ୟ ଯଥାସାଧ୍ୟ ସମ୍ପନ୍ନ କରୁଥିଲେ । ଏହା ପୂର୍ବରୁ ବିବାହ କରି ସଂସାରରେ ପ୍ରବେଶ କରିଥିଲେ ମଧ୍ୟ ତାଙ୍କର ପତ୍ନୀ ଅଳ୍ପ ବୟସରେ ହିଁ ମୃତ୍ୟୁ ମୁଖରେ ପତିତ ହୋଇଥିଲେ । ସୁତରାଂ ପ୍ରାୟ ପଚିଶ ବର୍ଷ ବୟସରେ ସେ ପୁନରାୟ ଦ୍ୱିତୀୟଥର ଦାରପରିଗ୍ରହ କରିଥିଲେ । ତାଙ୍କର ଏହି ପତ୍ନୀଙ୍କର ନାମ ଶ୍ରୀମତୀ ଚନ୍ଦ୍ରମଣି ଥିଲା; ମାତ୍ର ଘର ଲୋକେ ତାଙ୍କୁ 'ଚନ୍ଦ୍ରା' ବୋଲି ସମ୍ବୋଧନ କରୁଥିଲେ । ଶ୍ରୀମତୀ ଚନ୍ଦ୍ରାଦେବୀଙ୍କର ପିତ୍ରାଳୟ ସରାଟିମାୟାପୁର ନାମକ ଗ୍ରାମରେ ଅବସ୍ଥିତ ଥିଲା । ସେ ସୁରୂପା, ସରଳା ଓ ଦେବଦ୍ୱିଜପରାୟଣା ଥିଲେ । କିନ୍ତୁ ହୃଦୟର ଅସୀମ ଶ୍ରଦ୍ଧା, ସ୍ନେହ ଓ ଭଲ ପାଇବା ହିଁ ତାଙ୍କର ବିଶେଷ ଗୁଣ ବୋଲି କୁହାଯାଇପାରେ ଏବଂ ସେଥିପାଇଁ ସେ ସଂସାରରେ ସମସ୍ତଙ୍କର ପ୍ରିୟ ହୋଇଥିଲେ । ସମ୍ଭବତଃ ଶ୍ରୀମତୀ ଚନ୍ଦ୍ରାମଣି ୧୭୯୧ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ସୁତରାଂ ୧୭୯୯ ଖ୍ରୀଷ୍ଟାବ୍ଦରେ ବିବାହ ସମୟରେ ତାଙ୍କୁ ଆଠ ବର୍ଷ ବୟସ ହୋଇଥିଲା । ସମ୍ଭବତଃ ୧୮୦୫ ଖ୍ରୀଷ୍ଟାବ୍ଦରେ ତାଙ୍କର ପ୍ରଥମ ପୁତ୍ର ରାମକୁମାର ଜନ୍ମଗ୍ରହଣ କରିଥିଲେ । ଏହାର ପ୍ରାୟ ପାଞ୍ଚବର୍ଷ ପରେ ଶ୍ରୀମତୀ କାତ୍ୟାୟନୀ ନାମ୍ନୀ କନ୍ୟା ଏବଂ ୧୮୨୬

ଖ୍ରୀଷ୍ଟାବ୍ଦରେ ଦ୍ୱିତୀୟ ପୁତ୍ର ରାମେଶ୍ୱରଙ୍କର ମୁଖାବଲୋକନ କରି ସେ ଆନନ୍ଦିତା ହୋଇଥିଲେ ।

### ଜମିଦାରଙ୍କ ସହିତ ବିବାଦରେ କ୍ଷୁଦିରାମଙ୍କ ସର୍ବସ୍ୱାନ୍ତ ହେବା :

ଧର୍ମପଥରେ ରହି ସଂସାରଯାତ୍ରା ନିର୍ବାହ କରିବା ଯେ କେତେ କଠିନ କାର୍ଯ୍ୟ, ତାହା ଶ୍ରୀଯୁକ୍ତ କ୍ଷୁଦିରାମଙ୍କର ହୃଦୟଙ୍ଗମ ହେବାକୁ ବିଳମ୍ବ ହୋଇ ନ ଥିଲା । ସମ୍ଭବତଃ ତାଙ୍କର କନ୍ୟା କାତ୍ୟାୟନୀ ଜନ୍ମ ହେବାର କିଛିଦିନ ପରେ ସେ କଠିନ ପରୀକ୍ଷାର ସମ୍ମୁଖୀନ ହୋଇଥିଲେ । ଗ୍ରାମର ଜମିଦାର ରାମାନନ୍ଦ ରାୟଙ୍କର ପ୍ରଜାପୀଡ଼ନ କଥା ଆମେ ପୂର୍ବରୁ ଉଲ୍ଲେଖ କରିଅଛୁ । ଦେରେପୁର ଗ୍ରାମର କୌଣସି ଏକ ବ୍ୟକ୍ତି ପ୍ରତି ଅସନ୍ତୁଷ୍ଟ ହୋଇ ସେ ମିଥ୍ୟାପବାଦରେ ତାଙ୍କ ନାମରେ ଅଦାଲତରେ ମକଦ୍ଦମା ରୁଜୁ କଲେ ଏବଂ ସେଥିନିମିତ୍ତ ଏକ ବିଶ୍ୱସ୍ତ ସାକ୍ଷୀର ପ୍ରୟୋଜନ ହେବାରୁ ଶ୍ରୀଯୁକ୍ତ କ୍ଷୁଦିରାମଙ୍କୁ ତାଙ୍କ ସପକ୍ଷରେ ସାକ୍ଷ୍ୟପ୍ରଦାନ କରିବାକୁ ଅନୁରୋଧ କଲେ । ଧର୍ମପରାୟଣ କ୍ଷୁଦିରାମ ଆଇନ-ଅଦାଲତକୁ ସର୍ବଦା ଭୟ-ଦୃଷ୍ଟିରେ ଦେଖୁଥିଲେ ଏବଂ ସତ୍ୟ ଘଟଣାରେ ମଧ୍ୟ ଏହାପୂର୍ବରୁ କେବେ ସେ କାହା ବିରୁଦ୍ଧରେ ଅଦାଲତର ଆଶ୍ରୟ ନେଇ ନ ଥିଲେ । ସୁତରାଂ ଜମିଦାରଙ୍କର ପୂର୍ବୋକ୍ତ ଅନୁରୋଧରେ ସେ ନିଜକୁ ଅତ୍ୟନ୍ତ ବିପନ୍ନ ବୋଧ କଲେ । କିନ୍ତୁ ମିଥ୍ୟା ସାକ୍ଷ୍ୟପ୍ରଦାନ ନ କଲେ ତାଙ୍କୁ ଜମିଦାରଙ୍କର ବିଷମ କୋପରେ ପତିତ ହେବାକୁ ପଡ଼ିବ, ଏକଥା ନିଶ୍ଚିତ ଜାଣି ମଧ୍ୟ ସେ ଏପ୍ରସଙ୍ଗରେ କୌଣସି ମତେ ସମ୍ମତ ହୋଇପାରିଲେ ନାହିଁ । ଅଗତ୍ୟା ଏସ୍ଥଳରେ ଯାହା ହେବା କଥା, ତାହା ହିଁ ହେଲା; ଜମିଦାର ତାଙ୍କ ବିରୁଦ୍ଧରେ ମଧ୍ୟ ମିଥ୍ୟା ଅପବାଦ ପ୍ରଦାନପୂର୍ବକ ମକଦ୍ଦମା ରୁଜୁ କଲେ ଏବଂ ମକଦ୍ଦମାରେ ଜୟଲାଭ କରି ତାଙ୍କର ସମସ୍ତ ପୈତୃକ ସମ୍ପତ୍ତି ନିଲାମ କରିନେଲେ । ଶ୍ରୀଯୁକ୍ତ କ୍ଷୁଦିରାମଙ୍କର ଦେରେପୁରରେ ରହିବା ପାଇଁ ବିନ୍ଦୁମାତ୍ର ସ୍ଥାନ ରହିଲା ନାହିଁ । ଗ୍ରାମବାସୀଗଣ ତାଙ୍କ ଦୁଃଖରେ ଅତ୍ୟନ୍ତ କାତର ହେଲେ ମଧ୍ୟ ଜମିଦାରଙ୍କ ଭୟରେ ତାଙ୍କୁ କୌଣସି ସାହାଯ୍ୟ କରିପାରିଲେ ନାହିଁ ।

### କ୍ଷୁଦିରାମ୍‌ଙ୍କ ଦେରେ-ଗ୍ରାମ ପରିତ୍ୟାଗ :

ଏହିପରି ପ୍ରାୟ ଚାଳିଶବର୍ଷ ବୟସରେ କ୍ଷୁଦିରାମ ସମ୍ପୂର୍ଣ୍ଣ ନିଃସ୍ୱ ହୋଇଗଲେ । ପିତୃପୁରୁଷଗଣଙ୍କର ଅଧିକାରୀସ୍ୱତ୍ୱରେ ଏବଂ ନିଜ ଉପାର୍ଜନ ଫଳରେ ସେ ଏତେକାଳ ଧରି ଯେଉଁ ସମ୍ପତ୍ତି[୧] ସଞ୍ଚୟ କରିଥିଲେ, ବାୟୁତାଡ଼ିତ ଛିନ୍ନମେଘ ପରି ତାହା ଯେପରି କେଉଁଠି ସମ୍ପୂର୍ଣ୍ଣ ବିଲୀନ ହୋଇଗଲା ! ମାତ୍ର ଏଘଟଣା ତାଙ୍କୁ ଧର୍ମପଥରୁ ବିନ୍ଦୁମାତ୍ର ବିଚଳିତ କରିବାକୁ ସକ୍ଷମ ହେଲା ନାହିଁ । ସେ

---

୧. ହୃଦୟରାମ ମୁଖୋପାଧ୍ୟାୟଙ୍କଠାରୁ ଶୁଣିଛୁ, ଦେରେପୁରରେ ଶ୍ରୀଯୁକ୍ତ କ୍ଷଦିରାମଙ୍କର ପ୍ରାୟ ଦେଢ଼ଶହ ବିଘା ଜମି ଥିଲା ।

ରଘୁବୀରଙ୍କର ଶ୍ରୀପାଦପଦ୍ମରେ ଏକାନ୍ତ ଶରଣ ଗ୍ରହଣ କଲେ ଏବଂ ସ୍ଥିରଚିତ୍ତରେ ନିଜ କର୍ତ୍ତବ୍ୟ ଅବଧାରଣପୂର୍ବକ ଦୁର୍ଜ୍ଜନକୁ ପରିତ୍ୟାଗ କରିବା ନିମିତ୍ତ ପୈତୃକ ଭିଟାମାଟି ଓ ଗ୍ରାମ ତ୍ୟାଗ କରି ଚିରଦିନ ପାଇଁ ବିଦାୟଗ୍ରହଣ କଲେ ।

## ସୁଖଲାଲ ଗୋସ୍ୱାମୀଙ୍କର ଆମନ୍ତ୍ରଣରେ କ୍ଷୁଦିରାମଙ୍କର କାମାରପୁକୁରକୁ ଆଗମନ ଓ ଅବସ୍ଥାନ :

କାମାରପୁକୁରର ଶ୍ରୀଯୁକ୍ତ ସୁଖଲାଲ ଗୋସ୍ୱାମୀଜୀଙ୍କ କଥା ଏହା ପୂର୍ବରୁ ଆମେ ଉଲ୍ଲେଖ କରିଛୁ । ସମସ୍ୱଭାବ ବିଶିଷ୍ଟ ହୋଇଥିବାରୁ ଶ୍ରୀଯୁକ୍ତ କ୍ଷୁଦିରାମଙ୍କ ସହିତ ପୂର୍ବରୁ ତାଙ୍କର ବିଶେଷ ସୌହାର୍ଦ୍ଦ୍ୟ ଥିଲା । ବନ୍ଧୁଙ୍କର ଏପରି ବିପଦ କଥା ଶୁଣି ସେ ବିଶେଷ ବିଚଳିତ ହେଲେ ଏବଂ ନିଜ ଘରର ଏକାଂଶରେ ଥିବା କେତୋଟି ଚାଳଘର ଚିରକାଳ ପାଇଁ ତାଙ୍କୁ ଛାଡ଼ିଦେଇ କାମାରପୁକୁରକୁ ଆସି ସ୍ଥାୟୀ ଭାବରେ ବାସ କରିବା ନିମିତ୍ତ ତାଙ୍କୁ ଅନୁରୋଧ କଲେ । ଶ୍ରୀଯୁକ୍ତ କ୍ଷୁଦିରାମ ଏଥିରେ ଅକୂଳରେ କୂଳ ପାଇଲେ ଏବଂ ଶ୍ରୀଭଗବାନଙ୍କର ଅଚିନ୍ତ୍ୟ ଲୀଳା ଦ୍ୱାରା ଉକ୍ତ ଅନୁରୋଧ ଉପସ୍ଥିତ ହୋଇଅଛି ଭାବି କୃତଜ୍ଞହୃଦୟରେ କାମାରପୁକୁରକୁ ଆଗମନପୂର୍ବକ ତଦବଧି ସେଠାରେ ହିଁ ବାସ କରିବାକୁ ଲାଗିଲେ । ବନ୍ଧୁପ୍ରାଣ ସୁଖଲାଲ ଏଥିରେ ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ ଧର୍ମପରାୟଣ କ୍ଷୁଦିରାମଙ୍କର ସଂସାରଯାତ୍ରାନିର୍ବାହ ନିମିତ୍ତ ପ୍ରାୟ ଅର୍ଦ୍ଧଏକର ଚାଷ ଜମି ଚିରଦିନ ପାଇଁ ତାଙ୍କୁ ପ୍ରଦାନ କଲେ ।

# ତୃତୀୟ ଅଧ୍ୟାୟ

## କାମାରପୁକୁରରେ ଧର୍ମର ସଂସାର

### କାମାରପୁକୁରକୁ ଆସି କ୍ଷୁଦିରାମଙ୍କର ବାନପ୍ରସ୍ଥୀଙ୍କ ଭଳି ଜୀବନଯାପନ କରିବାର କାରଣ :

ପ୍ରାୟ ଦଶବର୍ଷର ପୁତ୍ର ରାମକୁମାର ଓ ଚାରିବର୍ଷର କନ୍ୟା କାତ୍ୟାୟନୀଙ୍କୁ ସଙ୍ଗରେ ନେଇ ଯେଉଁଦିନ କ୍ଷୁଦିରାମ ସସ୍ତ୍ରୀକ କାମାରପୁକୁରକୁ ଆସି ପର୍ଣ୍ଣ କୁଟୀରରେ ବାସ କଲେ, ତାଙ୍କର ସେଦିନର ମନୋଭାବ ଅବର୍ଣ୍ଣନୀୟ ଥିଲା । ଈର୍ଷାଦ୍ୱେଷପୂର୍ଣ୍ଣ ସଂସାର ସେଦିନ ତାଙ୍କ ନିକଟରେ ଅନ୍ଧତମସାବୃତ ବିକଟ ଶ୍ମଶାନତୁଲ୍ୟ; ସ୍ନେହ, ଭଲପାଇବା, ଦୟା, ନ୍ୟାୟପରାୟଣତା ପ୍ରଭୃତି ସଦ୍‌ଗୁଣସମୂହ ସେଠାରେ ମଝିରେ ମଝିରେ କ୍ଷୀଣାଲୋକ ବିସ୍ତାର କରି ହୃଦୟରେ ସୁଖ ଓ ଆଶାର ଆଲୋକ ସଞ୍ଚାର କରୁଥିଲେ ହେଁ, ପରମୁହୂର୍ତ୍ତରେ ତାହା କେଉଁଆଡ଼େ ବିଲୀନ ହୋଇ ପୁନରାୟ ଯେଉଁ ଅନ୍ଧକାରକୁ ସେହି ଅନ୍ଧକାର ସେଠାରେ ବିରାଜମାନ କରୁଥିଲା । ପୂର୍ବାବସ୍ଥା ସହିତ ବର୍ତ୍ତମାନ ଅବସ୍ଥା ତୁଳନା କରି ଏପରି ନାନାକଥା ଯେ ସେମାନଙ୍କ ମନରେ ଉଦିତ ହେଉଥିଲା, ଏକଥା ବେଶ୍ ବୁଝି ହୁଏ । କାରଣ ଦୁଃଖଦୁର୍ଦ୍ଦିନରେ ପଡ଼ି ହିଁ ମନୁଷ୍ୟ ସଂସାରର ଅସାରତା ଓ ଅନିତ୍ୟତା ସମ୍ୟକ୍ ଉପଲବ୍ଧି କରିଥାଏ । ଅତଏବ ଶ୍ରୀଯୁକ୍ତ କ୍ଷୁଦିରାମଙ୍କ ପ୍ରାଣରେ ଏବେ ବୈରାଗ୍ୟ ଉଦୟ ହେବା କିଛି ବିଚିତ୍ର ନୁହେଁ । ଆହୁରି ମଧ୍ୟ, ପୂର୍ବୋକ୍ତ ଅଯାଚିତ ଓ ଅପ୍ରତ୍ୟାଶିତ ଭାବରେଁ ଆଶ୍ରୟଲାଭର କଥା ସ୍ମରଣ କରି ତାଙ୍କର ଧର୍ମପ୍ରାଣ ଅନ୍ତର ଯେ ଏବେ ଈଶ୍ୱରଙ୍କ ପ୍ରତି ଭକ୍ତି ଓ ନିର୍ଭରତାରେ ପୂର୍ଣ୍ଣ ହୋଇଥିଲା, ସେକଥା କହିବାକୁ ହେବ ନାହିଁ । ତେଣୁ ରଘୁବୀରଙ୍କଠାରେ ପୂର୍ଣ୍ଣଭାବରେ ଆତ୍ମସମର୍ପଣ କରି ପୁନରାୟ ସଂସାରର ଉନ୍ନତିସାଧନରେ ଉଦାସୀନ ହୋଇ ସେ ଯେ ଏବେ ଶ୍ରୀଭଗବାନଙ୍କ ସେବା ପୂଜାରେ ଦିନ କଟାଇବେ, ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ବାସ୍ତବିକ୍ ସଂସାରରେ ରହି ମଧ୍ୟ ସେ ଏବେଠାରୁ ଅସଂସାରୀ ହୋଇ ପ୍ରାଚୀନକାଳର ବାନପ୍ରସ୍ଥୀଙ୍କ ସଦୃଶ ଦିନ ବିତେଇବାରେ ଲାଗିଲେ ।

### ଅଦ୍ଭୁତ ଉପାୟରେ କ୍ଷୁଦିରାମଙ୍କର ୰ରଘୁବୀର–ଶିଳା ଲାଭ :

ଏହି ସମୟର ଗୋଟିଏ ଘଟଣାରେ ଶ୍ରୀଯୁକ୍ତ କ୍ଷୁଦିରାମଙ୍କର ଧର୍ମବିଶ୍ୱାସ ଅଧିକତର ଗଭୀର ଭାବ ଧାରଣ କରିଥିଲା । କାର୍ଯ୍ୟବଶତଃ ଦିନେ ତାଙ୍କୁ ଗ୍ରାମାନ୍ତର ଯିବାକୁ ପଡ଼ିଥିଲା । ସେଠାରୁ ଫେରିବା ବେଳେ ସେ ଶ୍ରାନ୍ତ ହୋଇ ପଥମଧ୍ୟରେ ଏକ ବୃକ୍ଷତଳେ କିଛି ସମୟ ବିଶ୍ରାମ କରିବାକୁ ଲାଗିଲେ । ଜନଶୂନ୍ୟ ବିସ୍ତୀର୍ଣ୍ଣ ପ୍ରାନ୍ତର ତାଙ୍କ ଚିନ୍ତା ଭାରାକ୍ରାନ୍ତ ମନରେ ଶାନ୍ତି ପ୍ରଦାନ କଲା ଓ ନିର୍ମଳ ବାୟୁ ଧୀରେ

ପ୍ରବାହିତ ହୋଇ ତାଙ୍କର ଶରୀର ସ୍ନିଗ୍ଧ କରିବାକୁ ଲାଗିଲା । ତାଙ୍କର ଶୟନର ଇଚ୍ଛା ବଳବତୀ ହେଲା ଏବଂ ଅତିଶୀଘ୍ର ସେ ନିଦ୍ରାଭିଭୂତ ହେଲେ । କିଛି ସମୟ ପରେ ସେ ସ୍ୱପ୍ନାବେଶରେ ଦେଖିଲେ, ତାଙ୍କର ଅଭୀଷ୍ଟ ଦେବ ନବଦୂର୍ବାଦଳ-ଶ୍ୟାମତନୁ ଭଗବାନ ଶ୍ରୀରାମଚନ୍ଦ୍ର ଯେପରି ଦିବ୍ୟ ବାଳକବେଶରେ ତାଙ୍କ ସମ୍ମୁଖରେ ଉପସ୍ଥିତ ହୋଇଛନ୍ତି ଏବଂ ଏକ ବିଶେଷ ସ୍ଥାନ ନିର୍ଦ୍ଦେଶ କରି କହୁଛନ୍ତି, ‘‘ମୁଁ ଏଠାରେ ଅନେକ ଦିନ ଅଯତ୍ନରେ ଅନାହାରରେ ଅଛି, ମୋତେ ତୁମେ ତୁମ ଘରକୁ ନେଇଚାଲ, ତୁମର ସେବା ଗ୍ରହଣ କରିବାକୁ ମୋର ଏକାନ୍ତ ଅଭିଳାଷ ହୋଇଛି ।’’ ଏହି କଥା ଶୁଣି କ୍ଷୁଦିରାମ ଏକାବେଳକେ ବିହ୍ୱଳ ହୋଇ ପଡ଼ିଲେ ଏବଂ ତାଙ୍କୁ ବାରମ୍ବାର ପ୍ରଣାମପୂର୍ବକ କହିଲେ, ‘‘ପ୍ରଭୁ, ମୁଁ ଭକ୍ତିହୀନ ଓ ନିତାନ୍ତ ଦରିଦ୍ର, ମୋ ଘରେ ଆପଣଙ୍କର ଉପଯୁକ୍ତ ସେବା କଦାପି ସମ୍ଭବ ନୁହେଁ, ତେଣୁ ସେବାପରାଧୀ ହୋଇ ମୋତେ ନରକଗାମୀ ହେବାକୁ ପଡ଼ିବ, ଅତଏବ ଏପରି ଅନୁରୋଧ କାହିଁକି କରୁଛନ୍ତି ?’’ ବାଳକ-ବେଶଧାରୀ ଶ୍ରୀରାମଚନ୍ଦ୍ର ସେଥିରେ ପ୍ରସନ୍ନ ମୁଖରେ ତାଙ୍କୁ ଅଭୟ ପ୍ରଦାନପୂର୍ବକ କହିଲେ, ‘‘ଭୟ ନାହିଁ, ମୁଁ ତୁମର ତ୍ରୁଟି କଦାପି ଧରିବି ନାହିଁ, ମୋତେ ନେଇ ଚାଲ ।’’ କ୍ଷୁଦିରାମ ଶ୍ରୀଭଗବାନଙ୍କର ଏହିପରି ଅଯାଚିତ କୃପାରେ ଆତ୍ମସମ୍ବରଣ କରି ନ ପାରି ପ୍ରାଣର ଆବେଗରେ କ୍ରନ୍ଦନ କରିଉଠିଲେ । ଏପରି ସମୟରେ ତାଙ୍କର ନିଦ୍ରାଭଙ୍ଗ ହେଲା ।

ନିଦରୁ ଉଠି ଶ୍ରୀଯୁକ୍ତ କ୍ଷୁଦିରାମ ଭାବିବାକୁ ଲାଗିଲେ—ଏ କି ଅଦ୍ଭୁତ ସ୍ୱପ୍ନ ! ସତରେ କ’ଣ ତାଙ୍କର ଏପରି ସୌଭାଗ୍ୟର ଉଦୟ ହେବ ? ଏହିପରି ଭାବୁ ଭାବୁ ସହସା ତାଙ୍କର ଦୃଷ୍ଟି, ନିକଟସ୍ଥ ଧାନବିଲରେ ପଡ଼ିଲା ଏବଂ ଏହି ସ୍ଥାନଟି ହିଁ ତାଙ୍କୁ ସ୍ୱପ୍ନରେ ଦୃଶ୍ୟ ହୋଇଥିଲା ବୋଲି ବୁଝିବାକୁ ବିଳମ୍ବ ହେଲା ନାହିଁ । କୌତୁହଳପରବଶ ହୋଇ ସେ ଉଠିପଡ଼ି ସେଠାରେ ପହଞ୍ଚି ଦେଖିବାକୁ ପାଇଲେ, ଏକ ସୁନ୍ଦର ଶାଳଗ୍ରାମଶିଳା ଉପରେ ଏକ ଭୁଜଙ୍ଗ ଫଣା ବିସ୍ତାର କରି ରହିଅଛି ! ସେତେବେଳେ ଶିଳା ହସ୍ତଗତ କରିବାକୁ ତାଙ୍କ ମନରେ ପ୍ରବଳ ବାସନା ଉପସ୍ଥିତ ହେଲା ଏବଂ ସେ ଦ୍ରୁତ ପଦରେ ସେଠାରେ ଉପସ୍ଥିତ ହୋଇ ଦେଖିଲେ, ଭୁଜଙ୍ଗ ଅନ୍ତର୍ହିତ ହୋଇଛି ଏବଂ ସେହି ବିବରମୁଖରେ ଶାଳଗ୍ରାମଟି ପଡ଼ି ରହିଛି । ସ୍ୱପ୍ନ ଅଳୀକ ନୁହେଁ ଭାବି ଶ୍ରୀଯୁକ୍ତ କ୍ଷୁଦିରାମଙ୍କ ହୃଦୟ ସେତେବେଳେ ଅତ୍ୟନ୍ତ ଉତ୍ସାହରେ ପୂର୍ଣ୍ଣ ହେଲା ଏବଂ ନିଜକୁ ଦେବାଦିଷ୍ଟ ଜ୍ଞାନରେ ସର୍ପଦଂଶନର ଭୟତ୍ୟାଗ କରି ‘ଜୟ ରଘୁବୀର’ ଚିତ୍କାରପୂର୍ବକ ଶିଳା ଗ୍ରହଣ କଲେ । ଅନନ୍ତର ଶାସ୍ତ୍ରଜ୍ଞ କ୍ଷୁଦିରାମ ଶିଳାର ଲକ୍ଷଣସମୂହ ନିରୀକ୍ଷଣ କରି ବୁଝିଲେ ଯେ, ବାସ୍ତବିକ୍ ଏହା ‘ରଘୁବୀର’ ନାମକ ଶିଳା । ତାପରେ ଆନନ୍ଦ ଓ ବିସ୍ମୟରେ ଅଧୀର ହୋଇ ସେ ଗୃହକୁ ପ୍ରତ୍ୟାବର୍ତ୍ତନ କଲେ ଏବଂ ଯଥାଶାସ୍ତ୍ର ସଂସ୍କାର-କାର୍ଯ୍ୟ ସମ୍ପନ୍ନ କରି ଶିଳାଟିକୁ ନିଜ

ଗୃହଦେବତା ରୂପେ ପ୍ରତିଷ୍ଠାପୂର୍ବକ ନିତ୍ୟପୂଜା କରିବାକୁ ଲାଗିଲେ । ରଘୁବୀରଙ୍କୁ ଏପରି ଅଦ୍ଭୁତ ଉପାୟରେ ପାଇବା ପୂର୍ବରୁ ଶ୍ରୀଯୁକ୍ତ କ୍ଷୁଦିରାମ ନିଜ ଅଭୀଷ୍ଟଦେବ ଶ୍ରୀରାମଚନ୍ଦ୍ରଙ୍କର ପୂଜା ବ୍ୟତୀତ, ଘଟସ୍ଥାପନପୂର୍ବକ ଶ୍ରୀଶୀତଳାଦେବୀଙ୍କୁ ନିତ୍ୟ ପୂଜା କରୁଥିଲେ ।

## ସାଂସାରିକ କଷ୍ଟମଧ୍ୟରେ କ୍ଷୁଦିରାମଙ୍କର ଅବିଚଳତା ଓ ଈଶ୍ୱରନିର୍ଭରତା :

ଗୋଟିଏ ପରେ ଗୋଟିଏ ଦୁର୍ଦ୍ଦିନ ଅତିକ୍ରାନ୍ତ ହେବାକୁ ଲାଗିଲା, କ୍ଷୁଦିରାମ ମଧ୍ୟ ସର୍ବପ୍ରକାର ଦୁଃଖକଷ୍ଟରେ ଉଦାସୀନ ରହି ଏକମାତ୍ର ଧର୍ମକୁ ଦୃଢ଼ଭାବରେ ଆଶ୍ରୟପୂର୍ବକ ହୃଷ୍ଟଚିତ୍ତରେ କାଳ କଟାଇବାକୁ ଲାଗିଲେ । କେବେ କେବେ ସଂସାରରେ ଅନ୍ନାଭାବ ହୋଇଛି, ପତିପ୍ରାଣା ଚନ୍ଦ୍ରାଦେବୀ ବ୍ୟାକୁଳ ହୃଦୟରେ ଏକଥା ସ୍ୱାମୀଙ୍କୁ ନିବେଦନ କରିଛନ୍ତି । ଶ୍ରୀଯୁକ୍ତ କ୍ଷୁଦିରାମ କିନ୍ତୁ ସେଥିରେ ବିଚଳିତ ନ ହୋଇ ତାଙ୍କୁ ଆଶ୍ୱାସନା ପ୍ରଦାନପୂର୍ବକ କହିଛନ୍ତି, ‘‘ଭୟ କ’ଣ, ଯଦି ରଘୁବୀର ଉପବାସ ରହିବେ, ତାହାହେଲେ ତାଙ୍କ ସହିତ ଆମେ ମଧ୍ୟ ଉପବାସ ରହିବା ।’’ ସରଳପ୍ରାଣା ଚନ୍ଦ୍ରାଦେବୀ ସେଥିରେ ସ୍ୱାମୀଙ୍କ ସଦୃଶ ରଘୁବୀରଙ୍କ ଉପରେ ଏକାନ୍ତ ନିର୍ଭର କରି ଗୃହକର୍ମରେ ନିଯୁକ୍ତ ହୁଅନ୍ତି—ଖାଦ୍ୟର ସଂସ୍ଥାନ ମଧ୍ୟ ସେଦିନ କୌଣସି ପ୍ରକାରେ ହୋଇଯାଏ ।

## ଲକ୍ଷ୍ମୀଜଳା ଧାନ୍ୟକ୍ଷେତ୍ର :

ଏପରି ଏକାନ୍ତ ଅନ୍ନାଭାବ କିନ୍ତୁ ଶ୍ରୀଯୁକ୍ତ କ୍ଷୁଦିରାମଙ୍କୁ ଅଧିକ ଦିନ ଭୋଗ କରିବାକୁ ପଡ଼ି ନାହିଁ । ତାଙ୍କର ବନ୍ଧୁ ଶ୍ରୀଯୁକ୍ତ ସୁଖଲାଲ ଗୋସ୍ୱାମୀ ତାଙ୍କୁ ଲକ୍ଷ୍ମୀଜଳା ନାମକ ସ୍ଥାନରେ ଯେଉଁ ଅଧଏକର ଚାଷଜମି ପ୍ରଦାନ କରିଥିଲେ, ରଘୁବୀରଙ୍କ କୃପାରୁ ସେହି ଜମିରେ ଏବେଠାରୁ ଏତେ ଧାନ ଫଳିବାକୁ ଲାଗିଲା ଯେ, ସେଥିରୁ ତାଙ୍କ କ୍ଷୁଦ୍ର ସଂସାରର ଅଭାବ ସାରା ବର୍ଷ ପାଇଁ ନିବାରିତ ହେବା ସହିତ କିଛି ଉଦ୍‌ବୃତ୍ତ ହୋଇ ଅତିଥି-ଅଭ୍ୟାଗତଙ୍କର ସେବା ମଧ୍ୟ ଚଳିଗଲା । ଚାଷୀମାନଙ୍କୁ ପାରିଶ୍ରମିକ ଦେଇ ଶ୍ରୀଯୁକ୍ତ କ୍ଷୁଦିରାମ ଉକ୍ତ ଜମିକୁ ଚାଷ କରାଉଥିଲେ; ଏବଂ କ୍ଷେତ୍ର କର୍ଷିତ ହୋଇ ବପନ କାଳ ଉପସ୍ଥିତ ହେଲେ ଶ୍ରୀରଘୁବୀରଙ୍କ ନାମ ଗ୍ରହଣପୂର୍ବକ ସ୍ୱୟଂ କିଛି ଧାନ ସେଥିରେ ପ୍ରଥମେ ରୋପଣ କରୁଥିଲେ, ପରେ କୃଷକମାନଙ୍କୁ ସେହି କାର୍ଯ୍ୟ ନିଷ୍ପନ୍ନ କରିବାକୁ କହୁଥିଲେ ।

## କ୍ଷୁଦିରାମଙ୍କ ଈଶ୍ୱରଭକ୍ତି ବୃଦ୍ଧି ଓ ଦିବ୍ୟ ଦର୍ଶନଲାଭ । ପ୍ରତିବେଶୀମାନଙ୍କର ତାହାଙ୍କ ପ୍ରତି ଶ୍ରଦ୍ଧା :

ଦିବସ, ମାସ ଅତୀତ ହୋଇ କ୍ରମେ ଦୁଇ–ତିନି ବର୍ଷ କଟିଗଲା ଏବଂ ରଘୁବୀରଙ୍କ ମୁହଁ ଚାହିଁ ପ୍ରାୟ ଆକାଶବୃତ୍ତି ଅବଲମ୍ବନ କରି ରହିଥିଲେ ମଧ୍ୟ ଶ୍ରୀଯୁକ୍ତ କ୍ଷୁଦିରାମଙ୍କ ସଂସାରରେ ମୋଟା ଅନ୍ନବସ୍ତ୍ରର ଅଭାବ ରହିଲା ନାହିଁ । କିନ୍ତୁ ଏହି ଦୁଇତିନି ବର୍ଷର କଠୋର ଶିକ୍ଷାପ୍ରଭାବରେ ତାଙ୍କ ହୃଦୟରେ ଯେଉଁ ଶାନ୍ତି, ସନ୍ତୋଷ ଓ ଈଶ୍ୱର ନିର୍ଭରତା ନିରନ୍ତର ପ୍ରବାହିତ ହେବାକୁ ଲାଗିଲା, ତାହା ସ୍ୱଳ୍ପ ଲୋକଙ୍କ ଭାଗ୍ୟରେ ଘଟିଥାଏ । ଅନ୍ତର୍ମୁଖ ଅବସ୍ଥାରେ ରହିବା ତାଙ୍କ ମନର ସ୍ୱଭାବ ହୋଇ ଉଠିଲା ଏବଂ ଏହାର ପ୍ରଭାବରେ ତାଙ୍କ ଜୀବନରେ ନାନା ଦିବ୍ୟଦର୍ଶନ ସମୟ ସମୟରେ ଉପସ୍ଥିତ ହେବାକୁ ଲାଗିଲା । ପ୍ରତିଦିନ ପ୍ରଭାତ ଓ ସାୟଂକାଳରେ ସନ୍ଧ୍ୟା କରିବାକୁ ବସି ସେ ଯେତେବେଳେ ଗାୟତ୍ରୀଦେବୀଙ୍କର ଧ୍ୟାନ ଆବୃତ୍ତିପୂର୍ବକ ତତ୍‌ଚିନ୍ତାରେ ମଗ୍ନ ହେଉଥିଲେ, ସେତେବେଳେ ତାଙ୍କର ବକ୍ଷଃସ୍ଥଳ ରକ୍ତବର୍ଣ୍ଣ ହୋଇ ଉଠୁଥିଲା ଏବଂ ତାଙ୍କର ମୁଦ୍ରିତ ନୟନ ଅବିରଳ ପ୍ରେମାଶ୍ରୁବର୍ଷଣ କରୁଥିଲା । ପ୍ରତ୍ୟୁଷରେ ଯେତେବେଳେ ସେ ଚାଙ୍ଗୁଡ଼ି ହାତରେ ଧରି ଫୁଲ ତୋଳିବାକୁ ଯାଆନ୍ତି, ସେତେବେଳେ ଦେଖୁଥିଲେ ତାଙ୍କର ଆରାଧ୍ୟା ଶୀତଳାଦେବୀ ଯେପରି ଏକ ଅଷ୍ଟମବର୍ଷୀୟା କନ୍ୟାରୂପରେ ନାଲିବସ୍ତ୍ର ଓ ନାନା ଅଳଙ୍କାର ଧାରଣପୂର୍ବକ ହସି ହସି ତାଙ୍କ ସହିତ ଯାଉଛନ୍ତି ଏବଂ ପୁଷ୍ପିତ ବୃକ୍ଷର ଶାଖାସମୂହକୁ ନୁଆଁଇ ତାଙ୍କୁ ପୁଷ୍ପଚୟନରେ ସହାୟତା କରୁଛନ୍ତି ! ଏହି ସମସ୍ତ ଦିବ୍ୟଦର୍ଶନରେ ତାଙ୍କର ଅନ୍ତର ଏବେ ସର୍ବଦା ଉଲ୍ଲାସରେ ପୂର୍ଣ୍ଣ ହୋଇ ରହୁଥିଲା ଏବଂ ତାଙ୍କ ଅନ୍ତରର ଦୃଢ଼ ବିଶ୍ୱାସ ଓ ଭକ୍ତି ମୁଖମଣ୍ଡଳରେ ପ୍ରକାଶିତ ହୋଇ ତାଙ୍କୁ ଏକ ଅପୂର୍ବ ଦିବ୍ୟାବେଶରେ ନିରନ୍ତର ପରିବୃତ୍ତ କରି ରଖୁଥିଲା । ତାଙ୍କର ସୌମ୍ୟ ଶାନ୍ତ ମୁଖଦର୍ଶନରେ ଗ୍ରାମବାସୀଗଣ ଏହା ପ୍ରାଣେ ପ୍ରାଣେ ଅନୁଭବ କରି ତାଙ୍କୁ କ୍ରମେ ଋଷିସଦୃଶ ଭକ୍ତି–ଶ୍ରଦ୍ଧା ପ୍ରଦର୍ଶନ କରିବାକୁ ଲାଗିଲେ । ତାଙ୍କର ଆଗମନ ଦେଖିଲେ ସେମାନେ ବୃଥାଳାପ ପରିତ୍ୟାଗପୂର୍ବକ ସସମ୍ଭ୍ରମରେ ଦଣ୍ଡାୟମାନ ହୋଇ ତାଙ୍କୁ ସମ୍ଭାଷଣ କରୁଥିଲେ; ତାଙ୍କର ସ୍ନାନ ସମୟରେ ସେହି ପୁଷ୍କରିଣୀରେ ସେମାନେ ସ୍ନାନ କରିବାକୁ ସଙ୍କୋଚ ବୋଧ କରି ସସମ୍ଭ୍ରମରେ ଅପେକ୍ଷା କରି ରହୁଥିଲେ; ତାଙ୍କର ଆଶୀର୍ବାଣୀ ନିଶ୍ଚିତ ଫଳଦାନ କରିବ ଭାବି ସେମାନେ ବିପଦ ଓ ସମ୍ପଦରେ ତାହାର ପ୍ରତ୍ୟାଶୀ ହୋଇ ତାଙ୍କ ନିକଟରେ ଉପସ୍ଥିତ ହେଉଥିଲେ ।

## ଶ୍ରୀମତୀ ଚନ୍ଦ୍ରାଦେବୀଙ୍କୁ ପ୍ରତିବେଶୀଗଣ ଯେଉଁ ଦୃଷ୍ଟିରେ ଦେଖୁଥିଲେ :

ସ୍ନେହ ଓ ସରଳତାର ମୂର୍ତ୍ତି ଶ୍ରୀମତୀ ଚନ୍ଦ୍ରାଦେବୀ ନିଜର ଦୟା ଓ ଭଲପାଇବାର ଗୁଣରେ ସେମାନଙ୍କୁ ମୁଗ୍ଧ କରି ସେମାନଙ୍କର ମାତୃଭକ୍ତିର ଯଥାର୍ଥ

ଅଧିକାରିଣୀ ହେଲେ । କାରଣ ସମ୍ପଦ ଓ ବିପଦ ସମୟରେ ତାଙ୍କ ପରି ହୃଦୟର ସହାନୁଭୂତି ସେମାନେ ଅନ୍ୟ କେଉଁଠାରେ ପାଉ ନ ଥିଲେ । ଦରିଦ୍ର ବ୍ୟକ୍ତି ଜାଣୁଥିଲେ, ଶ୍ରୀମତୀ ଚନ୍ଦ୍ରାଦେବୀଙ୍କ ନିକଟରେ ସେମାନେ ଯେତେବେଳେ ଉପସ୍ଥିତ ହେଲେ ମଧ୍ୟ, କେବଳ ଯେ ମୁଠାଏ ଖାଇବାକୁ ପାଇବେ ତା ନୁହେଁ; କିନ୍ତୁ ଏହା ସହିତ ଏତେ ଅକୃତ୍ରିମ ଯତ୍ନ ଓ ଭଲପାଇବା ପାଇବେ ଯେ, ସେମାନଙ୍କର ଅନ୍ତର ପରମ ପରିତୃପ୍ତିରେ ପୂର୍ଣ୍ଣ ହୋଇ ଉଠିବ । ଭିକ୍ଷୁକ ସାଧୁସନ୍ଥମାନେ ଜାଣିଥିଲେ, ଏଘରର ଦ୍ୱାର ସେମାନଙ୍କ ନିମିତ୍ତ ସର୍ବଦା ଉନ୍ମୁକ୍ତ ରହିଛି । ପ୍ରତିବେଶୀ ବାଳକ-ବାଳିକାଗଣ ଜାଣିଥିଲେ, ଚନ୍ଦ୍ରାଦେବୀଙ୍କ ନିକଟରେ ସେମାନେ ଯେଉଁ ବିଷୟରେ ଅଳି କରନ୍ତୁ ନା କାହିଁକି, ତାହା ଯେକୌଣସି ଉପାୟରେ ପୂର୍ଣ୍ଣ ହେବ ହିଁ ହେବ । ଏପରି ଭାବରେ ପ୍ରତିବେଶୀଗଣ ଆବାଳ-ବୃଦ୍ଧ-ବନିତା ସମସ୍ତେ ହିଁ ଶ୍ରୀଯୁକ୍ତ କ୍ଷୁଦିରାମଙ୍କର ପର୍ଣ୍ଣକୁଟୀରରେ ସମୟ-ଅସମୟରେ ଆସି ଉପସ୍ଥିତ ହେଉଥିଲେ ଏବଂ ଦୁଃଖ ଦାରିଦ୍ର୍ୟରେ ଥାଇ ମଧ୍ୟ ତାଙ୍କର ପର୍ଣ୍ଣକୁଟୀର ଏକ ଅପୂର୍ବ ଶାନ୍ତିର ଆଲୋକରେ ନିରନ୍ତର ଉଦ୍‌ଭାସିତ ହୋଇ ରହୁଥିଲା ।

**କ୍ଷୁଦିରାମଙ୍କ ଭଗିନୀ ଶ୍ରୀମତୀ ରାମଶୀଳାଙ୍କ କଥା :**

ଆମେ ଏହାପୂର୍ବରୁ ଉଲ୍ଲେଖ କରିଅଛୁ, ଶ୍ରୀଯୁକ୍ତ କ୍ଷୁଦିରାମଙ୍କର ରାମଶୀଳା ନାମ୍ନୀ ଏକ ଭଗିନୀ ଏବଂ ନିଧିରାମ ଓ କନାଇରାମ ବା ରାମକାନାଇ ନାମକ ଦୁଇଜଣ କନିଷ୍ଠ ଭ୍ରାତା ଥିଲେ । ଦେରେପୁର ଜମିଦାରଙ୍କ ସହିତ ବିବାଦ ଉପସ୍ଥିତ ହୋଇ ଯେତେବେଳେ ସେ ସର୍ବସ୍ୱାନ୍ତ ହେଲେ ସେତେବେଳେ ତାଙ୍କ ଭଉଣୀଙ୍କ ବୟସ ପ୍ରାୟ ପଇଁତିରିଶ ବର୍ଷ ଏବଂ ଭାଇ ଦୁହିଁଙ୍କର ବୟସ ତିରିଶ ଓ ପଚିଶ ଥିଲା । ସେତେବେଳେ ସେମାନେ ସମସ୍ତେ ବିବାହ କରି ସଂସାରରେ ପ୍ରବେଶ କରିଥିଲେ । କାମାରପୁକୁରରୁ ପ୍ରାୟ ବାର ମାଇଲ୍ ପଶ୍ଚିମରେ ଅବସ୍ଥିତ ଛିଲିମପୁରରେ ୰ଭାଗବତ ବନ୍ଦୋପାଧ୍ୟାୟଙ୍କ ସହିତ ଶ୍ରୀମତୀ ରାମଶୀଳାଙ୍କର ବିବାହ ହୋଇଥିଲା ଏବଂ ତାଙ୍କର ରାମଚାଁଦ ନାମକ ଏକ ପୁତ୍ର ଓ ହେମାଙ୍ଗିନୀ ନାମିକା ଏକ କନ୍ୟା ଥିଲା । ଉକ୍ତ ବିପଦ ସମୟରେ ରାମଚାଁଦଙ୍କ ବୟସ ପ୍ରାୟ ଏକୋଇଶ ଓ ହେମାଙ୍ଗିନୀଙ୍କୁ ଷୋହଳ ବର୍ଷ ହୋଇଥିଲା । ସେତେବେଳେ ଶ୍ରୀଯୁକ୍ତ ରାମଚାଁଦ ମେଦିନୀପୁରରେ ମୁକ୍ତାରି କାର୍ଯ୍ୟ ଆରମ୍ଭ କରିଥିଲେ । ଶ୍ରୀମତୀ ହେମାଙ୍ଗିନୀ ଦେରେପୁରରେ ମାତୁଳାଳୟରେ ଜନ୍ମ ଗ୍ରହଣ କରିଥିଲେ ଓ ଭ୍ରାତାମାନଙ୍କ ଅପେକ୍ଷା ସେ ମାତୁଳମାନଙ୍କର ଅଧିକତର ସ୍ନେହ ଲାଭ କରିଥିଲେ । ଶ୍ରୀଯୁକ୍ତ କ୍ଷୁଦିରାମ ଏହାଙ୍କୁ ନିଜର କନ୍ୟା ସଦୃଶ ପାଳନ କରି ବିବାହ କାଳ ଉପସ୍ଥିତ ହେବାରୁ କାମାରପୁକୁରରୁ ପାଞ୍ଚ ମାଇଲ ଉତ୍ତର-ପଶ୍ଚିମରେ ଥିବା ଶିହଡ଼ ଗ୍ରାମର ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ମୁଖୋପାଧ୍ୟାୟଙ୍କୁ ସ୍ୱୟଂ ସମ୍ପ୍ରଦାନ କରିଥିଲେ । ଯୌବନରେ ପଦାର୍ପଣ

କରି ସେ କ୍ରମାନ୍ୱୟରେ ରାଘବ, ରାମରତନ, ହୃଦୟରାମ ଓ ରାଜାରାମ ନାମକ ଚାରିପୁତ୍ରଙ୍କର ଜନନୀ ହୋଇଥିଲେ ।

### କ୍ଷୁଦିରାମଙ୍କ ଭ୍ରାତୃଦ୍ୱୟଙ୍କ କଥା :

ଶ୍ରୀଯୁକ୍ତ କ୍ଷୁଦିରାମଙ୍କ ଭ୍ରାତା ନିଧିରାମଙ୍କର କୌଣସି ସନ୍ତାନ ହୋଇଥିଲା କି ନାହିଁ; ତାହା ଆମେ ଜାଣି ନାହୁଁ; କିନ୍ତୁ ସର୍ବକନିଷ୍ଠ କାନାଇରାମଙ୍କର ରାମତାରକ ଓରଫ ହଳଧାରୀ ଏବଂ କାଳିଦାସ ନାମରେ ଦୁଇ ପୁତ୍ର ଥିଲେ । କାନାଇରାମ ଭକ୍ତିମାନ ଓ ଭାବୁକ ଥିଲେ । ଏକଦା ସେ କୌଣସି ଏକ ସ୍ଥାନରେ ଯାତ୍ରା ଦେଖିବାକୁ ଯାଇଥିଲେ । ଯାତ୍ରାରେ ଶ୍ରୀରାମଚନ୍ଦ୍ରଙ୍କର ବନଗମନର ଅଭିନୟ ହେଉଥିଲା । ଏହା ଶୁଣୁ ଶୁଣୁ ସେ ଏତେ ତନ୍ମୟ ହୋଇ ଯାଇଥିଲେ ଯେ, କୈକେୟୀଙ୍କର ଶ୍ରୀରାମଚନ୍ଦ୍ରଙ୍କୁ ବଣକୁ ପଠାଇବାର ମନ୍ତ୍ରଣା ଚେଷ୍ଟାଦିକୁ ସତ୍ୟଜ୍ଞାନ କରି ସେହି ଭୂମିକାର ଅଭିନେତାଙ୍କୁ ମାରିବାକୁ ଉଦ୍ୟତ ହୋଇଥିଲେ । ସେ ଯାହା ହେଉ, ପୈତୃକ ସମ୍ପତ୍ତି ହରାଇବା ପରେ ନିଧିରାମ ଓ କାନାଇରାମ ଦେରେପୁର ପରିତ୍ୟାଗ କରି ସମ୍ଭବତଃ ସେମାନଙ୍କର ନିଜ ନିଜର ଶ୍ୱଶୁରାଳୟ ଗ୍ରାମରେ ଆଶ୍ରୟ ଗ୍ରହଣ କରିଥିଲେ ।

### କ୍ଷୁଦିରାମଙ୍କ ଭଣଜା ରାମଚାଁଦ :

ଶ୍ରୀମତୀ ରାମଶୀଳାଙ୍କର ପୁତ୍ର ଶ୍ରୀଯୁକ୍ତ ରାମଚାଁଦ ବନ୍ଦୋପାଧ୍ୟାୟ ମେଦିନୀପୁରରେ ମୁକ୍ତାରି କରିବା ବିଷୟ ଆମେ ଇତିପୂର୍ବରୁ ଉଲ୍ଲେଖ କରିଅଛୁ । ବ୍ୟବସାୟ ସୂତ୍ରରେ ସେ କ୍ରମେ ମେଦିନୀପୁରରେ ବାସ କରି ବେଶ୍ କିଛି ଅର୍ଥ ଉପାର୍ଜନ କରିବାକୁ ଲାଗିଲେ । ସେତେବେଳେ ମାତୁଳମାନଙ୍କର ଦୁରବସ୍ଥା କଥା ଜାଣି ସେ ଶ୍ରୀଯୁକ୍ତ କ୍ଷୁଦିରାମଙ୍କୁ ମାସିକ ପନ୍ଦର ଟଙ୍କା ଏବଂ ନିଧିରାମ ଓ କାନାଇରାମ ପ୍ରତ୍ୟେକଙ୍କୁ ମାସିକ ଦଶଟଙ୍କା କରି ସାହାଯ୍ୟ କରିବାକୁ ଲାଗିଲେ । ଶ୍ରୀଯୁକ୍ତ କ୍ଷୁଦିରାମ ଭଣଜାଙ୍କର ସମ୍ବାଦ କିଛିଦିନ ନ ପାଇଲେ ଚିନ୍ତିତ ହୋଇ ମେଦିନୀପୁର ଚାଲିଆସୁଥିଲେ ଏବଂ ସେଠାରେ ଦୁଇ-ଚାରିଦିନ ତାଙ୍କ ଗୃହରେ ରହି କାମାରପୁକୁରକୁ ପ୍ରତ୍ୟାବର୍ତ୍ତନ କରୁଥିଲେ । ଥରେ ଏପରି ମେଦିନୀପୁର ଆଗମନ କାଳରେ ତାଙ୍କ ସମ୍ବନ୍ଧରେ ଏକ ବିଶେଷ ଘଟଣା ଆମେ ଶ୍ରବଣ କରିଅଛୁ । ଘଟଣାଟି ଶ୍ରୀଯୁକ୍ତ କ୍ଷୁଦିରାମଙ୍କର ଆନ୍ତରିକ ଦେବଭକ୍ତିର ପରିଚାୟକ ବୋଲି ଆମେ ଏଠାରେ ତାହାର ଉଲ୍ଲେଖ କରୁଅଛୁ ।

### କ୍ଷୁଦିରାମଙ୍କ ଦେବଭକ୍ତିର ପରିଚାୟକ ଘଟଣା :

କାମାରପୁକୁରର ପ୍ରାୟ ଚାଳିଶ ମାଇଲ ଦକ୍ଷିଣ-ପଶ୍ଚିମରେ ମେଦିନୀପୁର ଅବସ୍ଥିତ । ରାମଚାଁଦ ଓ ତାଙ୍କର ପରିବାରବର୍ଗଙ୍କର କୁଶଳ-ସମ୍ବାଦ ଅନେକ ଦିନ

ନ ପାଇବାରୁ ଦିନେ ଚିନ୍ତିତ ହୋଇ ଶ୍ରୀଯୁକ୍ତ କ୍ଷୁଦିରାମ ସେଠାକୁ ଯିବା ପାଇଁ ଘରୁ ପ୍ରସ୍ଥାନ କଲେ । ସେତେବେଳେ ମାଘ ବା ଫାଲ୍‌ଗୁନ ମାସ ହେବ । ଏହି ସମୟରେ ବିଲ୍ୱବୃକ୍ଷର ପତ୍ର ଝଡ଼ିପଡ଼େ ଏବଂ ଯେତେଦିନ ପର୍ଯ୍ୟନ୍ତ ବୃକ୍ଷରେ ନୂଆ ପତ୍ର ନ କଅଁଳେ, ସେତେଦିନ ଲୋକଙ୍କ ଶିବପୂଜା ପାଇଁ ବିଶେଷ କଷ୍ଟ ହୁଏ । ଶ୍ରୀଯୁକ୍ତ କ୍ଷୁଦିରାମ ଏହି କଷ୍ଟ କିଛି ଦିନ ଧରି ବିଶେଷ ଭାବରେ ଉପଲବ୍ଧି କରୁଥିଲେ ।

ଅତି ପ୍ରତ୍ୟୁଷରୁ ବହିର୍ଗତ ହୋଇ ସେ ପ୍ରାୟ ଦିନ ଦଶ ଘଟିକା ପର୍ଯ୍ୟନ୍ତ ଅବିଶ୍ରାନ୍ତ ପଥ ଚାଲି ଗୋଟିଏ ଗ୍ରାମରେ ପହଞ୍ଚିଲେ ଏବଂ ସେଠାକାର ବିଲ୍ୱବୃକ୍ଷଗୁଡ଼ିକ ନବୀନ ପତ୍ରାଭରଣରେ ଭୂଷିତ ଦେଖି ତାଙ୍କର ପ୍ରାଣ ଉଲ୍ଲସିତ ହୋଇଉଠିଲା । ସେ ମେଦିନୀପୁର ଯିବା କଥା ବିସ୍ମୃତ ହୋଇ ସେହି ଗ୍ରାମରୁ ଗୋଟିଏ ନୂତନ ଝୁଡ଼ି ଓ ଗୋଟିଏ ଗାମୁଛା କ୍ରୟ କରି ନିକଟସ୍ଥ ପୁଷ୍କରିଣୀ ଜଳରେ ତାହାକୁ ଭଲ ଭାବେ ଧୋଇଲା ପରେ ଝୁଡ଼ିଟିକୁ ନବୀନ ବିଲ୍ୱପତ୍ରରେ ପୂର୍ଣ୍ଣ କରି ଭିଜା ଗାମୁଛାଟିକୁ ତା ଉପରେ ଢାଙ୍କି ଅପରାହ୍ଣ ପ୍ରାୟ ତିନି ଘଟିକା ବେଳେ କାମାରପୁକୁରରେ ଆସି ଉପସ୍ଥିତ ହେଲେ । ଘରେ ପହଞ୍ଚି ସ୍ନାନସମାପନପୂର୍ବକ ବିଲ୍ୱପତ୍ରଗୁଡ଼ିକ ନେଇ ମହା ଆନନ୍ଦରେ ମହାଦେବ ଓ ଶୀତଳାମାତାଙ୍କୁ ବହୁକ୍ଷଣ ପର୍ଯ୍ୟନ୍ତ ପୂଜା କଲେ; ପରେ ସ୍ୱୟଂ ଭୋଜନ କଲେ । ସେତେବେଳେ ଶ୍ରୀମତୀ ଚନ୍ଦ୍ରାଦେବୀ ସମୟ ପାଇ ତାଙ୍କର ମେଦିନୀପୁର ନ ଯିବାର କାରଣ ପଚାରିଲେ ଏବଂ ତାଙ୍କଠାରୁ ଆଦ୍ୟପ୍ରାନ୍ତ ସମସ୍ତ କଥା ଶ୍ରବଣ କରି ବିଲ୍ୱପତ୍ରରେ ଦେବାର୍ଚ୍ଚନା କରିବା ଲୋଭରେ ଯେ ସେ ଏତେ ପଥ ଅତିକ୍ରମ କରିଛନ୍ତି ଜାଣି ଅତ୍ୟନ୍ତ ବିସ୍ମିତା ହେଲେ । ଶ୍ରୀଯୁକ୍ତ କ୍ଷୁଦିରାମ ପରଦିନ ପ୍ରତ୍ୟୁଷରେ ପୁନରାୟ ମେଦିନୀପୁର ଯାତ୍ରା କଲେ ।

**ରାମକୁମାର ଓ କାତ୍ୟାୟନୀଙ୍କ ବିବାହ :**

ଇତି ମଧ୍ୟରେ କାମାରପୁକୁରରେ ତାଙ୍କର ଛଅବର୍ଷ ଅତିକ୍ରାନ୍ତ ହେଲା । ତାଙ୍କର ପୁତ୍ର ରାମକୁମାର ଏବେ ଷୋଡ଼ଶ ବର୍ଷରେ ଏବଂ କନ୍ୟା କାତ୍ୟାୟନୀ ଏକାଦଶ ବର୍ଷରେ ପଦାର୍ପଣ କଲେ । କନ୍ୟା ବିବାହଯୋଗ୍ୟା ହୋଇଅଛି ଦେଖି ସେ ଏବେ ପାତ୍ର ଅନ୍ୱେଷଣରେ ପ୍ରବୃତ୍ତ ହେଲେ ଏବଂ କାମାରପୁକୁରର ଉତ୍ତରରେ ପ୍ରାୟ ଦୁଇମାଇଲ ଦୂରରେ ଅବସ୍ଥିତ ଆନୁଡ଼ ଗ୍ରାମର ଶ୍ରୀଯୁକ୍ତ କେନାରାମ ବନ୍ଦୋପାଧ୍ୟାୟଙ୍କୁ କନ୍ୟା ସମ୍ପ୍ରଦାନପୂର୍ବକ କେନାରାମଙ୍କ ଭଗିନୀ ସହିତ ନିଜ ପୁତ୍ର ରାମକୁମାରଙ୍କର ବିବାହ କାର୍ଯ୍ୟ ସମ୍ପନ୍ନ କଲେ । ରାମକୁମାର ନିକଟସ୍ଥ ଗ୍ରାମର ଚତୁଷ୍ପାଠୀରେ ବ୍ୟାକରଣ ଓ ସାହିତ୍ୟପାଠ ସମାପ୍ତ କରି ସେତେବେଳେ ସ୍ମୃତିଶାସ୍ତ୍ର ଅଧ୍ୟୟନ କରୁଥିଲେ ।

## ସୁଖଲାଲ ଗୋସ୍ୱାମୀଙ୍କର ମୃତ୍ୟୁ ଇତ୍ୟାଦି :

କ୍ରମେ ଆଉ ତିନି-ଚାରିବର୍ଷ ଅତିକ୍ରାନ୍ତ ହେଲା । ଶ୍ରୀରଘୁବୀରଙ୍କର କୃପାରେ ଏବେ ଶ୍ରୀଯୁକ୍ତ କ୍ଷୁଦିରାମଙ୍କର ସଂସାରରେ ପୂର୍ବାପେକ୍ଷା ଅନେକ ସୁବନ୍ଦୋବସ୍ତ ହୋଇଛି ଏବଂ ସେ ନିଶ୍ଚିନ୍ତ ମନରେ ଶ୍ରୀଭଗବାନଙ୍କର ଆରାଧନାରେ ନିଯୁକ୍ତ ଅଛନ୍ତି । ଘଟଣା ଭିତରେ ଏହି ଚାରି ବର୍ଷରେ ଶ୍ରୀଯୁକ୍ତ ରାମକୁମାର ସ୍ମୃତି ଅଧ୍ୟୟନ ସମାପ୍ତ କରି ସଂସାରର ଆର୍ଥିକ ଉନ୍ନତିକଳ୍ପେ ଯଥାସାଧ୍ୟ ସାହାଯ୍ୟ କରିବା ନିମିତ୍ତ ପ୍ରବୃତ୍ତ ହୋଇଥିଲେ ଏବଂ ଇତି ମଧ୍ୟରେ ଶ୍ରୀଯୁକ୍ତ କ୍ଷୁଦିରାମଙ୍କର ପରମ ବନ୍ଧୁ ସୁଖଲାଲ ଗୋସ୍ୱାମୀ ଦେହରକ୍ଷା କରିଥିଲେ । ହିତୈଷୀ ବନ୍ଧୁ ଶ୍ରୀଯୁକ୍ତ ସୁଖଲାଲଙ୍କ ମୃତ୍ୟୁରେ ସେ ଯେ ବିଶେଷ ବ୍ୟଥିତ ହୋଇଥିଲେ, ତାହା କହିବା ବାହୁଲ୍ୟ ।

## କ୍ଷୁଦିରାମଙ୍କର ସେତୁବନ୍ଧତୀର୍ଥଦର୍ଶନ ଓ ରାମେଶ୍ୱର ନାମକ ପୁତ୍ରର ଜନ୍ମ :

ରାମକୁମାର ବଡ଼ ହୋଇ ସଂସାରର ଭାର ଗ୍ରହଣ କରିବା ଦେଖି ଶ୍ରୀଯୁକ୍ତ କ୍ଷୁଦିରାମ ନିଶ୍ଚିନ୍ତ ହୋଇ ଅନ୍ୟ ବିଷୟରେ ମନ ଦେବା ପାଇଁ ଅବସର ପାଇଲେ । ତୀର୍ଥ-ଦର୍ଶନ ନିମିତ୍ତ ତା'ଙ୍କ ଅନ୍ତର ଏବେ ବ୍ୟାକୁଳ ହୋଇ ଉଠିଲା । ଅନନ୍ତର ସମ୍ଭବତଃ ୧୮୨୪ ଖ୍ରୀଷ୍ଟାବ୍ଦରେ ସେ ପଦବ୍ରଜରେ ସେତୁବନ୍ଧ ରାମେଶ୍ୱର ଦର୍ଶନରେ ବାହାରି ଦାକ୍ଷିଣାତ୍ୟ ପ୍ରଦେଶର ତୀର୍ଥସକଳ ପର୍ଯ୍ୟଟନ କରି ପ୍ରାୟ ଏକବର୍ଷ ପରେ ଗୃହକୁ ପ୍ରତ୍ୟାବର୍ତ୍ତନ କଲେ । ସେତୁବନ୍ଧରୁ ଏହି ସମୟରେ ଏକ ବାଣଲିଙ୍ଗ ସେ କାମାରପୁକୁରକୁ ଆଣି ନିତ୍ୟ ପୂଜା କରିବାକୁ ଲାଗିଲେ । ରାମେଶ୍ୱର ନାମକ ଉକ୍ତ ବାଣଲିଙ୍ଗଟି ଏବେ ମଧ୍ୟ କାମାରପୁକୁରସ୍ଥ ଗୃହରେ ରଘୁବୀର-ଶିଳା ଓ ଶୀତଳାଦେବୀଙ୍କର ଘଟ ପାର୍ଶ୍ୱରେ ଦେଖିବାକୁ ମିଳେ । ସେ ଯାହା ହେଉ, ଶ୍ରୀମତୀ ଚନ୍ଦ୍ରାଦେବୀ ବହୁକାଳ ପରେ ପୁନରାୟ ଗର୍ଭଧାରଣ କରି ୧୮୨୬ ଖ୍ରୀଷ୍ଟାବ୍ଦରେ ଏକ ପୁତ୍ର ଲାଭ କଲେ । ରାମେଶ୍ୱର ତୀର୍ଥରୁ ପ୍ରତ୍ୟାଗମନ କରି ଏହି ପୁତ୍ର ଲାଭ କରିଥିବାରୁ ଶ୍ରୀଯୁକ୍ତ କ୍ଷୁଦିରାମ ଏହାଙ୍କ ନାମ ରାମେଶ୍ୱର ରଖିଥିଲେ ।

## ରାମକୁମାରଙ୍କ ଦୈବୀଶକ୍ତି :

ଏହି ଘଟଣା ପରେ ପ୍ରାୟ ଆଠବର୍ଷକାଳ ପର୍ଯ୍ୟନ୍ତ କାମାରପୁକୁରର ଏହି ଦରିଦ୍ର ସଂସାରର ଜୀବନ-ପ୍ରବାହ ପ୍ରାୟ ସମଭାବରେ ଅତିବାହିତ ହୋଇଥିଲା । ଶ୍ରୀଯୁକ୍ତ ରାମକୁମାର ସ୍ମୃତିର ବିଧାନ ଦେଇ ଏବଂ ଶାନ୍ତି-ସ୍ୱସ୍ତ୍ୟୟନାଦି କର୍ମ କରି ଏବେ ଉପାର୍ଜନ କରୁଥିଲେ; ସୁତରାଂ ସଂସାରରେ ଏବେ ଆଉ ପୂର୍ବପରି କଷ୍ଟ ନ ଥିଲା । ଶାନ୍ତି-ସ୍ୱସ୍ତ୍ୟୟନାଦି କର୍ମରେ ରାମକୁମାର ବିଶେଷ ଦକ୍ଷ ଥିଲେ । ଶୁଣାଯାଏ, ସେ ଏବିଷୟରେ ଦୈବୀ ଶକ୍ତି ଲାଭ କରିଥିଲେ । ଶାସ୍ତ୍ର ଅଧ୍ୟୟନ ଫଳରେ ସେ

ଏହାପୂର୍ବରୁ ଆଦ୍ୟାଶକ୍ତିଙ୍କର ଉପାସନାରେ ବିଶେଷ ଶ୍ରଦ୍ଧାସମ୍ପନ୍ନ ହୋଇଥିଲେ ଏବଂ ଉପଯୁକ୍ତ ଗୁରୁଙ୍କ ନିକଟରୁ ଦେବୀମନ୍ତ୍ର ଗ୍ରହଣ କରିଥିଲେ । ଅଭୀଷ୍ଟଦେବୀଙ୍କୁ ନିତ୍ୟ ପୂଜା କରୁଥିବା ସମୟରେ ଦିନେ ତାଙ୍କର ଅପୂର୍ବ ଦର୍ଶନଲାଭ ହେଲା ଏବଂ ସେ ଅନୁଭବ କଲେ ଯେପରି ସ୍ୱୟଂ ଦେବୀ ନିଜ ଅଙ୍ଗୁଳି ଦ୍ୱାରା ତାଙ୍କର ଜିହ୍ୱାଗ୍ରରେ ଜ୍ୟୋତିଷଶାସ୍ତ୍ରରେ ସିଦ୍ଧିଲାଭ ନିମିତ୍ତ କୌଣସି ମନ୍ତ୍ର ବର୍ଣ୍ଣ ଲେଖି ଦେଉଛନ୍ତି । ତାପରଠାରୁ ରୋଗୀ ବ୍ୟକ୍ତିକୁ ଦେଖିଲା ମାତ୍ରେ ସେ ବୁଝିପାରୁଥିଲେ, ସେ ଆରୋଗ୍ୟ ଲାଭ କରିବେ କି ନାହିଁ ଏବଂ ଏହି କ୍ଷମତାପ୍ରଭାବରେ ସେ ଏବେ ଯେଉଁ ରୋଗୀ ସମ୍ବନ୍ଧରେ ଯାହା କହୁଥିଲେ, ତାହା ହିଁ ଫଳୁଥିଲା । ଏହିପରି ଭବିଷ୍ୟତ ବକ୍ତା ବୋଲି ତାଙ୍କର ଏହି ସମୟରେ ସେହି ଅଞ୍ଚଳରେ ସାମାନ୍ୟ ପ୍ରସିଦ୍ଧିଲାଭ ହୋଇଥିଲା । ଶୁଣାଯାଏ, ସେ ଏହି ସମୟରେ କଠିନ ପୀଡ଼ାଗ୍ରସ୍ତ ବ୍ୟକ୍ତିକୁ ଦେଖି ତାଙ୍କ ନିମିତ୍ତ ସ୍ୱସ୍ତ୍ୟୟନରେ ନିଯୁକ୍ତ ହେଉଥିଲେ ଏବଂ ଜୋର୍ କରି କହୁଥିଲେ, ଏହି ସ୍ୱସ୍ତୟନ-ବେଦୀରେ ଯେଉଁ ଶସ୍ୟ ନିକ୍ଷେପ କରୁଅଛି ସେଥିରେ ଅଙ୍କୁରୋଦ୍‌ଗମ ହେଲେ ହିଁ ବ୍ୟକ୍ତି ଜଣକ ଆରୋଗ୍ୟ ଲାଭ କରିବ । ଫଳସ୍ୱରୂପ ବାସ୍ତବିକ ତାହା ହିଁ ହେଉଥିଲା । ତାଙ୍କର ପୂର୍ବୋକ୍ତ କ୍ଷମତାର ଉଦାହରଣ ସ୍ୱରୂପ ତାଙ୍କର ଭ୍ରାତୁଷ୍ପୁତ୍ର ଶ୍ରୀଯୁକ୍ତ ଶିବରାମ ଚଟ୍ଟୋପାଧ୍ୟାୟ ଆମ ନିକଟରେ ନିମ୍ନଲିଖିତ ଘଟଣାଟି ଉଲ୍ଲେଖ କରିଥିଲେ—

**ଏହି ଶକ୍ତିର ପରିଚାୟକ ଘଟଣାବିଶେଷ :**

କୌଣସି କାର୍ଯ୍ୟରେ ରାମକୁମାର କଲିକତା ଆଗମନ କରି ଦିନେ ଗଙ୍ଗାରେ ସ୍ନାନ କରୁଥିଲେ । ଏହି ସମୟରେ କୌଣସି ଏକ ଧନୀ ବ୍ୟକ୍ତି ସପରିବାର ସେଠାକୁ ସ୍ନାନ କରିବାକୁ ଆସିଲେ ଏବଂ ଉକ୍ତ ବ୍ୟକ୍ତିଙ୍କର ସ୍ତ୍ରୀଙ୍କୁ ସ୍ନାନ ନିମିତ୍ତ ଶିବିକା ସହିତ ଗଙ୍ଗା ମଧ୍ୟକୁ ନିଆଗଲା, ଶିବିକା ମଧ୍ୟରେ ବସି ସେହି ଯୁବତୀ ସ୍ନାନ କରିବାକୁ ଲାଗିଲେ । ପଲ୍ଲୀଗ୍ରାମନିବାସୀ ରାମକୁମାର ସ୍ନାନକାଳରେ ସ୍ତ୍ରୀଲୋକଙ୍କର ଏପରି ଲଜ୍ଜାରକ୍ଷା କଦାପି ନୟନଗୋଚର କରି ନ ଥିଲେ । ସୁତରାଂ ବିସ୍ମିତ ହୋଇ ତାହା ଦେଖୁ ଦେଖୁ ସବାରୀ ମଧ୍ୟସ୍ଥ ଯୁବତୀଙ୍କର ମୁଖମଣ୍ଡଳ ନିମିଷକ ପାଇଁ ଦେଖିବାକୁ ପାଇଲେ ଏବଂ ପୂର୍ବୋକ୍ତ ଦୈବୀଶକ୍ତିପ୍ରଭାବରେ ତାଙ୍କର ମୃତ୍ୟୁ ବିଷୟ ଜାଣିପାରି ଦୁଃଖିତ ହୋଇ କହି ପକାଇଲେ, "ଆହା ! ଆଜି ଯାହାକୁ ଏତେ ଯତ୍ନର ସହିତ ସ୍ନାନ କରାଉଛନ୍ତି, କାଲି ତାହାଙ୍କୁ ସର୍ବଜନସମ୍ମୁଖରେ ଗଙ୍ଗାରେ ବିସର୍ଜନ ଦେବେ ।" ଧନୀ ବ୍ୟକ୍ତି ଜଣକ ଏକଥା ଶୁଣି ପାରି ଏହି ବାକ୍ୟ ପରୀକ୍ଷା କରିବା ପାଇଁ ଶ୍ରୀଯୁକ୍ତ ରାମକୁମାରଙ୍କୁ ସାଗ୍ରହରେ ଆହ୍ୱାନ କରି ନିଜ ଗୃହକୁ ନେଇଗଲେ । ତାଙ୍କର ମନୋଗତ ଅଭିପ୍ରାୟ ଥିଲା, ଘଟଣା ସତ୍ୟ ନ ହେଲେ ରାମକୁମାରଙ୍କୁ ବିଶେଷ ଭାବରେ ଅପମାନ କରିବେ । ଯୁବତୀ ସମ୍ପୂର୍ଣ୍ଣ ସୁସ୍ଥ ଥିବାରୁ

ଏପରି ଘଟଣା ଘଟିବାର କୌଣସି ଲକ୍ଷଣ ମଧ୍ୟ ସେତେବେଳେ ଦେଖାଯାଇ ନ ଥିଲା; କିନ୍ତୁ ରାମକୁମାର ଯାହା କହିଥିଲେ, ତାହା ହିଁ ହୋଇଥିଲା । ଫଳରେ ସେହି ବ୍ୟକ୍ତି ତାଙ୍କୁ ସମ୍ମାନର ସହିତ ବିଦାୟ କରିବାକୁ ବାଧ୍ୟ ହୋଇଥିଲେ ।

## ଏହି ଶକ୍ତିର ପରିଚାୟକ ରାମକୁମାରଙ୍କର ନିଜ ସ୍ତ୍ରୀସମ୍ବନ୍ଧୀୟ ଘଟଣା :

ନିଜର ସ୍ତ୍ରୀ–ଭାଗ୍ୟ ଦର୍ଶନ କରି ମଧ୍ୟ ଶ୍ରୀଯୁକ୍ତ ରାମକୁମାର ଏକ ସମୟରେ ବିଷମ ଫଳ ନିର୍ଣ୍ଣୟ କରିଥିଲେ ଏବଂ ଘଟଣା ମଧ୍ୟ କିଛି କାଳ ପରେ ସେପରି ହୋଇଥିଲା । ଆମେ ଶୁଣିଅଛୁ, ତାଙ୍କ ସ୍ତ୍ରୀ ବିଶେଷ ସୁଲକ୍ଷଣସମ୍ପନ୍ନା ଥିଲେ । ସମ୍ଭବତଃ ୧୮୨୦ ଖ୍ରୀଷ୍ଟାବ୍ଦରେ ଶ୍ରୀଯୁକ୍ତ ରାମକୁମାର ପାଣି ଗ୍ରହଣ କରି ଯେଉଁଦିନ ତାଙ୍କର ସପ୍ତମ ବର୍ଷୀୟା ପତ୍ନୀଙ୍କୁ କାମାରପୁକୁରକୁ ଆନୟନ କରିଥିଲେ, ସେହିଦିନଠାରୁ ତାଙ୍କର ଭାଗ୍ୟଚକ୍ର ଉନ୍ନତି ପଥରେ ଆରୋହଣ କରିଥିଲା । ତାଙ୍କ ପିତାଙ୍କ ଦରିଦ୍ର ସଂସାରରେ ମଧ୍ୟ ସେହିଦିନଠାରୁ ଏପରି ପରିବର୍ତ୍ତନ ଉପସ୍ଥିତ ହୋଇଥିଲା । କାରଣ ଶ୍ରୀଯୁକ୍ତ କ୍ଷୁଦିରାମଙ୍କର ମେଦିନୀପୁରବାସୀ ଭଣଜା ଶ୍ରୀଯୁକ୍ତ ରାମଚାଁଦ ବନ୍ଦୋପାଧ୍ୟାୟଙ୍କଠାରୁ ଏହି ସମୟରୁ ମାସିକ ସାହାଯ୍ୟ ଆସିବା ଆରମ୍ଭ ହୋଇଥିଲା । ଏକଥା କହିବା ବାହୁଲ୍ୟ ଯେ ସ୍ତ୍ରୀ ବା ପୁରୁଷ କୌଣସି ବ୍ୟକ୍ତିଙ୍କର ସଂସାରରେ ପ୍ରଥମ ପ୍ରବେଶ କାଳରେ ଏପରି ଶୁଭଫଳ ଉପସ୍ଥିତ ହେଲେ ହିନ୍ଦୁପରିବାରରେ ସମସ୍ତେ ତାହାକୁ ବିଶେଷ ଶ୍ରଦ୍ଧା ଓ ଭଲପାଇବାର ଚକ୍ଷୁରେ ଦେଖିଥାଆନ୍ତି । ବିଶେଷତଃ, ରାମକୁମାରଙ୍କର ବାଳିକା ପତ୍ନୀ ସେତେବେଳେ ଏହି ଦରିଦ୍ର ସଂସାରରେ ଏକମାତ୍ର ପୁତ୍ରବଧୂ । ତେଣୁ ବାଳିକା ଯେ ସମସ୍ତଙ୍କର ବିଶେଷ ଆଦରର ପାତ୍ରୀ ହେବେ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଆମେ ଶୁଣିଛୁ, ଏହିପରି ଅତିମାତ୍ରାରେ ଆଦରଯତ୍ନ ପାଇ ତାଙ୍କର ଅନେକ ସଦ୍‌ଗୁଣ ସହିତ ଅଭିମାନ ଓ ପ୍ରତିକ୍ରିୟାପରାୟଣରୂପକ ଦୋଷଦ୍ୱୟ ଉପୁଜିଥିଲା । ଏହି ଦୋଷ ସମସ୍ତଙ୍କ ଚକ୍ଷୁରେ ପଡ଼ିଥିଲେ ମଧ୍ୟ କେହି କିଛି କହିବାକୁ ବା ଏହାର ସଂଶୋଧନ କରିବାକୁ ଚେଷ୍ଟା କରୁ ନ ଥିଲେ । କାରଣ, ସମସ୍ତେ ଭାବୁଥିଲେ ସାମାନ୍ୟ ଦୋଷ ଥିଲେ ମଧ୍ୟ ଏହାଙ୍କର ଆଗମନ ସମୟରୁ ସଂସାରର କ'ଣ ଶ୍ରୀବୃଦ୍ଧି ହୋଇ ନାହିଁ ? କିଛିକାଳ ପରେ ଶ୍ରୀଯୁକ୍ତ ରାମକୁମାର ନିଜ ପ୍ରାପ୍ତଯୌବନା ସ୍ତ୍ରୀଙ୍କୁ ଦେଖି କହିଥିଲେ, "ସୁଲକ୍ଷଣା ହେଲେ ମଧ୍ୟ ଗର୍ଭଧାରଣ କଲେ ହିଁ ଏହାଙ୍କର ମୃତ୍ୟୁ ହେବ !" ପରେ ବହୁକାଳ ଗତ ହେଲେ ମଧ୍ୟ ସ୍ତ୍ରୀଙ୍କର ଗର୍ଭଧାରଣ ନ ହେବାରୁ ସେ ତାଙ୍କୁ ବନ୍ଧ୍ୟା ଭାବି ନିଶ୍ଚିନ୍ତ ହୋଇଥିଲେ । କିନ୍ତୁ ୩୫ ବର୍ଷ ବୟସରେ ତାଙ୍କର ପତ୍ନୀ ପ୍ରଥମ ଓ ଶେଷଥର ପାଇଁ ଗର୍ଭବତୀ ହୋଇ ୧୮୪୯ ଖ୍ରୀଷ୍ଟାବ୍ଦରେ ୩୬ ବର୍ଷ ବୟସରେ ଏକ ପରମ ରୂପବାନ ପୁତ୍ର ପ୍ରସବ କରି ମୃତ୍ୟୁମୁଖରେ ପତିତ

ହେଲେ । ଏହି ପୁତ୍ରର ନାମ ଅକ୍ଷୟ ରଖା ହୋଇଥିଲା । ଏହା ଅନେକ ପରର ଘଟଣା ହେଲେ ମଧ୍ୟ ପାଠକଙ୍କର ସୁବିଧା ନିମିତ୍ତ ଏଠାରେ ହିଁ ଉଲ୍ଲେଖ କଲୁ ।'

## କ୍ଷୁଦିରାମଙ୍କର ପରିବାରସ୍ଥ ସମସ୍ତଙ୍କ ବିଶେଷତ୍ୱ :

ଶ୍ରୀଯୁକ୍ତ କ୍ଷୁଦିରାମଙ୍କର ଧର୍ମର ସଂସାରରେ ସ୍ତ୍ରୀ-ପୁରୁଷ ସମସ୍ତଙ୍କର ଏକ ବିଶେଷତ୍ୱ ଥିଲା । ଅନୁଧାବନ କଲେ ସ୍ପଷ୍ଟ ବୁଝାଯାଏ, ସେମାନଙ୍କର ପ୍ରତ୍ୟେକଙ୍କର ଅନ୍ତର୍ଗତ ଏହି ବିଶେଷତ୍ୱ ଆଧ୍ୟାତ୍ମିକ ରାଜ୍ୟର ସୂକ୍ଷ୍ମ ଶକ୍ତିସମୂହର ଅଧିକାରରୁ ସର୍ବଥା ସମୁଦ୍ଭୂତ ହେଉଥିଲା । ଶ୍ରୀଯୁକ୍ତ କ୍ଷୁଦିରାମ ଓ ତାଙ୍କର ପତ୍ନୀଙ୍କ ଭିତରେ ଏପରି ବିଶେଷତ୍ୱ ଅସାଧାରଣ ଭାବରେ ପ୍ରକାଶିତ ଥିଲା ବୋଲି ବୋଧହୁଏ ତାହା ସେମାନଙ୍କର ସନ୍ତାନସନ୍ତତିମାନଙ୍କଠାରେ ଅନୁଗତ ହୋଇଥିଲା । ଶ୍ରୀଯୁକ୍ତ କ୍ଷୁଦିରାମଙ୍କ ସମ୍ବନ୍ଧରେ ଉକ୍ତ ବିଷୟର ଅନେକ କଥା ଆମେ ଏହାପୂର୍ବରୁ ପାଠକଙ୍କୁ କହିଛୁ । ଶ୍ରୀମତୀ ଚନ୍ଦ୍ରମଣିଙ୍କ ସମ୍ବନ୍ଧରେ ଏପରି ଗୋଟିଏ ବିଷୟ ଉଲ୍ଲେଖ କରିବା ଅପ୍ରାସଙ୍ଗିକ ହେବ ନାହିଁ । ଏହି ଘଟଣାରୁ ସ୍ପଷ୍ଟ ବୁଝାଯିବ, ସ୍ୱାମୀଙ୍କ ପରି ଶ୍ରୀମତୀ ଚନ୍ଦ୍ରାଦେବୀଙ୍କଠାରେ ମଧ୍ୟ ଦିବ୍ୟଦର୍ଶନଶକ୍ତି ବେଳେବେଳେ ପ୍ରକାଶିତ ହେଉଥିଲା । ଘଟଣାଟି ରାମକୁମାରଙ୍କର ବିବାହର କିଛି ପୂର୍ବରୁ ଘଟିଥିଲା । ପଞ୍ଚଦଶ ବର୍ଷୀୟ ରାମକୁମାର ସେତେବେଳେ ଚତୁଷ୍ପାଠୀରେ ଅଧ୍ୟୟନ ବ୍ୟତୀତ ଯଜମାନ ଗୃହମାନଙ୍କରେ ପୂଜାକରି ସଂସାରରେ ଯଥାସାଧ୍ୟ ସାହାଯ୍ୟ କରୁଥିଲେ ।

## ଚନ୍ଦ୍ରାଦେବୀଙ୍କର ଦିବ୍ୟଦର୍ଶନ ସମ୍ବନ୍ଧୀୟ ଘଟଣା :

ଆଶ୍ୱିନ ମାସରେ କୋଜାଗର ଲକ୍ଷ୍ମୀ ପୂଜାଦିନ ରାମକୁମାର ଭୂରସୁବୋ ନାମକ ଗ୍ରାମରେ ଯଜମାନ ଗୃହରେ ଉକ୍ତ ପୂଜା କରିବାକୁ ଯାଇଥିଲେ । ଅର୍ଦ୍ଧରାତ୍ର ଅତୀତ ହେଲେ ମଧ୍ୟ ପୁତ୍ର ଘରକୁ ନ ଫେରିବାରୁ ଶ୍ରୀମତୀ ଚନ୍ଦ୍ରାଦେବୀ ବିଶେଷ ଉତ୍କଣ୍ଠିତା ହେଲେ ଏବଂ ଘର ବାହାରେ ଆସି ପଥ ନିରୀକ୍ଷଣ କରିବାକୁ ଲାଗିଲେ । ଏହିପରି କିଛି ସମୟ ବିତିବା ପରେ ସେ ଦେଖିବାକୁ ପାଇଲେ କେହି ଜଣେ ଭୂରସୁବୋ ଆଡୁ ପ୍ରାନ୍ତରପଥ ଅତିବାହିତ କରି କାମାରପୁକୁର ଆଡ଼କୁ ଆଗମନ କରୁଛନ୍ତି । ପୁତ୍ର ଆସୁଅଛି ଭାବି ସେ ଉତ୍ସାହିତ ହୋଇ କେତେ ପାଦ ଆଗେଇ ଯାଇ ପ୍ରତୀକ୍ଷା କରିବାକୁ ଲାଗିଲେ । କିନ୍ତୁ ଆଗନ୍ତୁକ ବ୍ୟକ୍ତି ନିକଟବର୍ତ୍ତୀ ହେବାରୁ ଦେଖିଲେ ଯେ ସେ ରାମକୁମାର ନୁହେଁ, ଏକ ପରମା ସୁନ୍ଦରୀ ରମଣୀ ନାନା ଅଳଙ୍କାରରେ ଭୂଷିତା ହୋଇ ଏକାକିନୀ ଚାଲି ଚାଲି ଆସୁଛନ୍ତି । ପୁତ୍ରର ଅମଙ୍ଗଳ ଆଶଙ୍କା କରି ଶ୍ରୀମତୀ ଚନ୍ଦ୍ରାଦେବୀ ସେତେବେଳେ ବିଶେଷ ଆକୁଳିତା; ସୁତରାଂ ଭଦ୍ରବଂଶୀୟା ଯୁବତୀ ରମଣୀଙ୍କୁ ଗଭୀର ରାତ୍ରରେ ଏପରି ଏକାକୀ ଚାଲି ଚାଲି ଆସୁଥିବାର ଦେଖି ମଧ୍ୟ ସେ ବିସ୍ମିତା ହେଲେ ନାହିଁ । ତାଙ୍କ ନିକଟକୁ ଯାଇ ସରଳଭାବରେ ତାଙ୍କୁ ପଚାରିଲେ, ''ମା', ତୁମେ କେଉଁଠାରୁ ଆସୁଛ ?'' ରମଣୀ

ଉତ୍ତର ଦେଲେ, ''ମୁଁ ଭୂରସୁବୋରୁ ଆସୁଛି ।'' ଶ୍ରୀମତୀ ଚନ୍ଦ୍ରା ସେତେବେଳେ ବ୍ୟସ୍ତ ହୋଇ ତାଙ୍କୁ ପଚାରିଲେ, ''ମୋର ପୁଅ ରାମକୁମାର ସହିତ ତୁମର ଦେଖା ହୋଇଥିଲା କି ? ସେ କ'ଣ ଫେରୁଛି ?'' ଅପରିଚିତା ରମଣୀ ତାଙ୍କର ପୁତ୍ରକୁ ଚିହ୍ନିବେ କିପରି, ଏକଥା ତାଙ୍କ ମନରେ ଥରେ ମଧ୍ୟ ଉଦିତ ହେଲା ନାହିଁ । ରମଣୀ ତାଙ୍କୁ ସାନ୍ତ୍ୱନା ପ୍ରଦାନପୂର୍ବକ କହିଲେ, ''ହଁ ତୁମର ପୁତ୍ର ଯେଉଁଘରକୁ ପୂଜା କରିବାକୁ ଯାଇଛି ମୁଁ ସେହିଘରୁ ଏବେ ଆସୁଛି । ଡର ନାହିଁ, ତୁମ ପୁତ୍ର ଏବେ ହିଁ ଫେରି ଆସିବେ ।'' ଶ୍ରୀମତୀ ଚନ୍ଦ୍ରା ଏବେ ଆଶ୍ୱସ୍ତା ହୋଇ ଅନ୍ୟ ବିଷୟ ଭାବିବାର ଅବସର ପାଇଲେ । ରମଣୀଙ୍କର ଅସାମାନ୍ୟ ରୂପ, ବହୁମୂଲ୍ୟ ବସ୍ତ୍ର, ନୂତନ ଧରଣର ଅଳଙ୍କାରମାନ ଦେଖି ଏବଂ ତାଙ୍କର ମଧୁର ବଚନ ଶୁଣି କହିଲେ, ''ମା', ତୁମର ବୟସ ଅଳ୍ପ; ଏତେ ଗହଣାଗାଣ୍ଠି ପିନ୍ଧି ଏତେ ରାତିରେ କେଉଁଠାକୁ ଯାଉଛ ? ତୁମ କାନରେ ସେଇଟା କି ଗହଣା ?'' ରମଣୀ ଈଷତ୍ ହାସ୍ୟ କରି କହିଲେ, ''ସେ ଗହଣାର ନାମ କୁଣ୍ଡଳ, ମୋତେ ଏବେ ବହୁତ ଦୂରକୁ ଯିବାକୁ ହେବ ।'' ଶ୍ରୀମତୀ ଚନ୍ଦ୍ରାଦେବୀ ତାଙ୍କୁ ବିପନ୍ନା ଭାବି ସସ୍ନେହରେ କହିଲେ, ''ଚାଲ ନା, ଆମ ଘରେ ରାତିଟା ବିଶ୍ରାମ କରି କାଲି ଯେଉଁଠାକୁ ଯିବା କଥା ଯିବ ।'' ରମଣୀ କହିଲେ, ''ନା ମା, ମୋତେ ଏବେ ହିଁ ଯିବାକୁ ହେବ; ତୁମ ଘରକୁ ମୁଁ ଅନ୍ୟ ସମୟରେ ଆସିବି ।'' ରମଣୀ ଏପରି କହି ତାଙ୍କ ନିକଟରୁ ବିଦାୟ ଗ୍ରହଣ କଲେ ଏବଂ ଶ୍ରୀମତୀ ଚନ୍ଦ୍ରାଦେବୀଙ୍କ ଗୃହ ପାର୍ଶ୍ୱବର୍ତ୍ତୀ ଲାହାବାବୁଙ୍କର ଯେଉଁଠାରେ ଅନେକଗୁଡ଼ିଏ ଧାନ ଗଦା ଥିଲା, ସେହି ଆଡ଼କୁ ଚାଲିଗଲେ । ରାସ୍ତା ନ ଧରି ଲାହାବାବୁଙ୍କ ଘର ଆଡ଼େ ସେ ଯିବାର ଦେଖି ଚନ୍ଦ୍ରାଦେବୀ ବିସ୍ମିତା ହେଲେ ଏବଂ ପଥ ଭୁଲି ଯାଇଥିବେ ଭାବି ସେହି ସ୍ଥାନକୁ ଯାଇ ତାଙ୍କୁ ଖୋଜିବାକୁ ଲାଗିଲେ । ଚାରିଆଡ଼େ ବହୁତ ଖୋଜାଖୋଜି କରି ମଧ୍ୟ ତାଙ୍କୁ ଆଉ ଦେଖିପାରିଲେ ନାହିଁ । ସେତେବେଳେ ରମଣୀଙ୍କର କଥାଗୁଡ଼ିକ ସ୍ମରଣ କରୁ କରୁ ସହସା ତାଙ୍କ ହୃଦୟରେ ଭାବନାର ଉଦୟ ହେଲା ଯେ, ସ୍ୱୟଂ ଲକ୍ଷ୍ମୀଠାକୁରାଣୀଙ୍କୁ ଦର୍ଶନ କଲି ନା କ'ଣ ? ଏହାପରେ କମ୍ପିତ ହୃଦୟରେ ସ୍ୱାମୀଙ୍କ ପାଖକୁ ଯାଇ ତାଙ୍କୁ ଆଦ୍ୟପ୍ରାନ୍ତ ସମସ୍ତ କଥା ଖୋଲି କହିଲେ । ଶ୍ରୀଯୁକ୍ତ କ୍ଷୁଦିରାମ ସମସ୍ତ କଥା ଶୁଣି ''ଶ୍ରୀଲକ୍ଷ୍ମୀଦେବୀ ହିଁ ତୁମକୁ କୃପାକରି ଦର୍ଶନ ଦେଇଛନ୍ତି'' କହି ତାଙ୍କୁ ଆଶ୍ୱସ୍ତା କଲେ । ରାମକୁମାର ମଧ୍ୟ କିଛି ସମୟ ପରେ ଘରକୁ ଫେରି ମା'ଙ୍କଠାରୁ ଏସମସ୍ତ ଶୁଣି ଅତ୍ୟନ୍ତ ବିସ୍ମିତ ହେଲେ ।

### କ୍ଷୁଦିରାମଙ୍କର ଗୟାତୀର୍ଥ ଗମନ :

କ୍ରମେ ୧୮୩୫ ଖ୍ରୀଷ୍ଟାବ୍ଦ ସମାଗତ ହେଲା । ଶ୍ରୀଯୁକ୍ତ କ୍ଷୁଦିରାମଙ୍କ ଜୀବନରେ ଏହି ସମୟରେ ଏକ ବିଶେଷ ଘଟଣା ଘଟିଥିଲା । ତୀର୍ଥଦର୍ଶନରେ

ତାଙ୍କର ପ୍ରବଳ ଆକାଙ୍‌କ୍ଷା ହେବାରୁ, ପିତୃପୁରୁଷଙ୍କ ଉଦ୍ଧାରକଳ୍ପେ ସେ ଏବେ ଗୟା ଯିବାକୁ ସଂକଳ୍ପ କଲେ । ଷାଠିଏ ବର୍ଷରେ ପଦାର୍ପଣ କରି ମଧ୍ୟ ସେ ପଦବ୍ରଜରେ ଗୟାଧାମ ଯିବାକୁ ଆଦୌ ସଙ୍କୁଚିତ ହେଲେ ନାହିଁ । ତାଙ୍କର ଭଣଜା ଶ୍ରୀଯୁକ୍ତ ହୃଦୟରାମ ମୁଖୋପାଧ୍ୟାୟ ତାଙ୍କ ମାମୁଁଙ୍କର ଗୟାଧାମ ଯିବାର କାରଣ ସମ୍ବନ୍ଧରେ ଗୋଟିଏ ଅଦ୍ଭୁତ ଘଟଣା ଆମ ନିକଟରେ ଉଲ୍ଲେଖ କରିଥିଲେ ।

**କ୍ଷୁଦିରାମଙ୍କ ଗୟାଗମନ ସମ୍ବନ୍ଧରେ ହୃଦୟରାମକଥିତ ଘଟଣା :**

ନିଜର କନ୍ୟା ଶ୍ରୀମତୀ କାତ୍ୟାୟନୀ ଦେବୀଙ୍କର ବିଶେଷ ପୀଡ଼ା ଖବର ପାଇ ଶ୍ରୀଯୁକ୍ତ କ୍ଷୁଦିରାମ ଦିନେ ଆନୁଡ଼ ଗ୍ରାମକୁ ଗଲେ । ଶ୍ରୀମତୀ କାତ୍ୟାୟନୀଙ୍କର ବୟସ ସେତେବେଳେ ଅନ୍ଦାଜ ପଚିଶ ବର୍ଷ ହେବ । ପୀଡ଼ିତା କନ୍ୟାର ହାବଭାବ ଓ କଥାବାର୍ତ୍ତାରୁ ତାଙ୍କର ନିଶ୍ଚିତ ଧାରଣା ହେଲା ଯେ, ତାଙ୍କର ଶରୀରରେ କୌଣସି ପ୍ରେତାତ୍ମାର ଆବେଶ ହୋଇଅଛି । ସେତେବେଳେ ସମାହିତଚିତ୍ତରେ ଶ୍ରୀଭଗବାନଙ୍କୁ ସ୍ମରଣ କରି ସେ କନ୍ୟା-ଶରୀରରେ ପ୍ରବିଷ୍ଟ ଜୀବର ଉଦ୍ଦେଶ୍ୟରେ କହିଲେ, ''ତୁମେ ଦେବତା ବା ଉପଦେବତା ଯାହା ହୁଅ, କାହିଁକି ମୋର କନ୍ୟାକୁ ଏପରି କଷ୍ଟ ଦେଉଅଛ ? ଅବିଳମ୍ବେ ଏହାର ଶରୀର ପରିତ୍ୟାଗ କରି ଅନ୍ୟତ୍ର ଗମନ କର ।'' ତାଙ୍କର ଏକଥା ଶୁଣି ଉକ୍ତ ଜୀବ ଭୀତ ଓ ସଙ୍କୁଚିତ ହୋଇ ଶ୍ରୀମତୀ କାତ୍ୟାୟନୀଙ୍କ ଶରୀର ଅବଲମ୍ବନପୂର୍ବକ ଉତ୍ତର ଦେଲା, ''ଗୟାରେ ପିଣ୍ଡଦାନ କରିବାକୁ ପ୍ରତିଶ୍ରୁତି ଦେଇ ଯଦି ଆପଣ ମୋର ବର୍ତ୍ତମାନ କଷ୍ଟର ଅବସାନ କରିବେ, ତେବେ ମୁଁ ଆପଣଙ୍କର କନ୍ୟାର ଶରୀର ବର୍ତ୍ତମାନ ଛାଡ଼ିଦେବାକୁ ସ୍ୱୀକୃତି ପ୍ରଦାନ କରୁଛି । ଆପଣ ଯେତେବେଳେ ସେହି ଉଦ୍ଦେଶ୍ୟରେ ଗୃହରୁ ଯାତ୍ରା ଆରମ୍ଭ କରିବେ ସେହି ସମୟରୁ ଏହାଙ୍କର ଆଉ କିଛି ଅସୁସ୍ଥତା ରହିବ ନାହିଁ, ଏକଥା ମୁଁ ଆପଣଙ୍କ ନିକଟରେ ଅଙ୍ଗୀକାର କରୁଅଛି ।'' ଅନନ୍ତରେ ଶ୍ରୀଯୁକ୍ତ କ୍ଷୁଦିରାମ ଉକ୍ତ ଜୀବର ଦୁଃଖରେ ଦୁଃଖିତ ହୋଇ କହିଲେ, ''ମୁଁ ଯେତେ ଶୀଘ୍ର ପାରିବି ଗୟାଧାମ ଗମନପୂର୍ବକ ତୁମର ଅଭିଳାଷ ସମ୍ପାଦନ କରିବି ଏବଂ ପିଣ୍ଡଦାନ ପରେ ତୁମେ ଯେ ନିଶ୍ଚୟ ଉଦ୍ଧାର ହେଲ, ଏସମ୍ବନ୍ଧରେ କୌଣସି ନିଦର୍ଶନ ପାଇଲେ ବିଶେଷ ସୁଖୀ ହେବି ।'' ଏହା ଶୁଣି ପ୍ରେତ କହିଲା, ''ଏ ବିଷୟରେ ନିଶ୍ଚିତ ପ୍ରମାଣସ୍ୱରୂପ ସମ୍ମୁଖସ୍ଥ ନିମ୍ବ-ବୃକ୍ଷର ବୃହତ୍ତମ ଶାଖାଟି ମୁଁ ଭାଙ୍ଗି ଦେଇ ଯିବି, ସେଥିରୁ ଆପଣ ଜାଣିବେ ।'' ହୃଦୟରାମ କହିଲେ, ଉକ୍ତ ଘଟଣା ହିଁ ଶ୍ରୀଯୁକ୍ତ କ୍ଷୁଦିରାମଙ୍କୁ ଗୟାଧାମ ଯାତ୍ରା ନିମିତ୍ତ ପ୍ରୋତ୍ସାହିତ କରିଥିଲା ଏବଂ ଏହାର କିଛି କାଳପରେ ଉକ୍ତ ବୃକ୍ଷର ଡାଳଟି ହଠାତ୍ ଭାଙ୍ଗିଯିବାରୁ, ସମସ୍ତେ ସେହି ପ୍ରେତର ଉଦ୍ଧାର ହେବା କଥା ନିଃସଂଶୟରେ ଜାଣିପାରିଥିଲେ । ଶ୍ରୀମତୀ କାତ୍ୟାୟନୀ ଦେବୀ ମଧ୍ୟ ସେବେଠାରୁ ସମ୍ପୂର୍ଣ୍ଣ ନୀରୋଗ ହୋଇଥିଲେ । ହୃଦୟରାମ-କଥିତ

ପୂର୍ବୋକ୍ତ ଘଟଣା କେତେଦୂର ସତ୍ୟ କହିପାରିବୁ ନାହିଁ, କିନ୍ତୁ ଶ୍ରୀଯୁକ୍ତ କ୍ଷୁଦିରାମ ଯେ ଏହି ସମୟରେ ଗୟାଦର୍ଶନ ପାଇଁ ଯାତ୍ରା କରିଥିଲେ, ଏଥିରେ କୌଣସି ସନ୍ଦେହ ନାହିଁ ।

## ଗୟାଧାମରେ କ୍ଷୁଦିରାମଙ୍କର ଦେବସ୍ୱପ୍ନ :

ସମ୍ଭବତଃ ୧୮୩୫ ଖ୍ରୀଷ୍ଟାବ୍ଦରେ ଶୀତକାଳର କୌଣସି ସମୟରେ ଶ୍ରୀଯୁକ୍ତ କ୍ଷୁଦିରାମ ବାରାଣସୀ[୧] ଓ ଗୟାଧାମ ଦର୍ଶନ କରିବାକୁ ଗମନ କରିଥିଲେ । ବାରାଣସୀରେ ବିଶ୍ୱନାଥଙ୍କୁ ଦର୍ଶନ କରି ସେ ଯେତେବେଳେ ଗୟାକ୍ଷେତ୍ରରେ ପହଞ୍ଚିଲେ, ସେତେବେଳେ ଚୈତ୍ର ମାସ ଆରମ୍ଭ ହୋଇଯାଇଥିଲା । ମଧୁମାସରେ ଏହି କ୍ଷେତ୍ରରେ ପିଣ୍ଡପ୍ରଦାନରେ ପିତୃପୁରୁଷଗଣଙ୍କର ଅକ୍ଷୟ ପରିତୃପ୍ତି ହୋଇଥାଏ ଜାଣି ବୋଧହୁଏ ସେ ସେହି ମାସରେ ଗୟା ଆଗମନ କରିଥିଲେ । ପ୍ରାୟ ଏକମାସ କାଳ ସେଠାରେ ଅବସ୍ଥାନପୂର୍ବକ ସେ ଯଥାବିହିତ କ୍ଷେତ୍ରକାର୍ଯ୍ୟସକଳ ଅନୁଷ୍ଠାନ କରି ପରିଶେଷରେ ଗଦାଧରଙ୍କର ଶ୍ରୀପାଦପଦ୍ମରେ ପିଣ୍ଡ ପ୍ରଦାନ କଲେ । ଏପରି ଭାବରେ ଯଥାଶାସ୍ତ୍ର ପିତୃକାର୍ଯ୍ୟ ସମ୍ପନ୍ନ କରି ଶ୍ରୀଯୁକ୍ତ କ୍ଷୁଦିରାମଙ୍କ ବିଶ୍ୱାସୀ ହୃଦୟରେ ସେଦିନ ଯେ କେତେ ତୃପ୍ତି ଓ ଶାନ୍ତି ଉପସ୍ଥିତ ହୋଇଥିଲା, ତାହା ଅବର୍ଣ୍ଣନୀୟ । ପିତୃଋଣ ଯଥାସାଧ୍ୟ ପରିଶୋଧ କରି ସେ ଯେପରି ଆଜି ନିଶ୍ଚିନ୍ତ ହୋଇଥିଲେ ଏବଂ ଶ୍ରୀଭଗବାନ ତାଙ୍କ ପରି ଅଯୋଗ୍ୟ ବ୍ୟକ୍ତିକୁ ଏକାର୍ଯ୍ୟ ସମାପନ କରିବାକୁ ଶକ୍ତି ପ୍ରଦାନ କରିଛନ୍ତି ଭାବି ତାଙ୍କର କୃତଜ୍ଞ ଅନ୍ତର ଅଭୂତପୂର୍ବ ଦୀନତା ଓ ପ୍ରେମରେ ପୂର୍ଣ୍ଣ ହୋଇ ଉଠିଥିଲା । ଦିନରେ ତ' କଥା ହିଁ ନାହିଁ; ନିଦ୍ରା ସମୟରେ ମଧ୍ୟ ସେହି ଶାନ୍ତି ଓ ଉଲ୍ଲାସ ତାଙ୍କୁ ତ୍ୟାଗ କରି ନାହିଁ । କିଛିକ୍ଷଣ ନିଦ୍ରା ନ ଯାଉଣୁ ସେ ସ୍ୱପ୍ନରେ ଦେଖିବାକୁ ଲାଗିଲେ, ଯେପରି ସେ ଶ୍ରୀମନ୍ଦିରରେ ଗଦାଧରଙ୍କର ଶ୍ରୀପାଦପଦ୍ମସମ୍ମୁଖରେ ପୁନରାୟ ପିତୃପୁରୁଷଗଣଙ୍କର ଉଦ୍ଦେଶ୍ୟରେ ପିଣ୍ଡଦାନ କରୁଛନ୍ତି ଏବଂ ସେମାନେ ଯେପରି ଦିବ୍ୟ ଜ୍ୟୋତିର୍ମୟ ଶରୀରରେ ଏହାକୁ ସାନନ୍ଦରେ ଗ୍ରହଣପୂର୍ବକ ତାଙ୍କୁ ଆଶୀର୍ବାଦ କରୁଛନ୍ତି ! ବହୁକାଳ ପରେ ସେମାନଙ୍କର ଦର୍ଶନଲାଭ କରି ସେ ଯେପରି ଆତ୍ମସମ୍ବରଣ କରିପାରୁ ନାହାନ୍ତି; ଭକ୍ତି ଗଦ୍‌ଗଦ୍ ଚିତ୍ତରେ ରୋଦନ କରୁ କରୁ ସେମାନଙ୍କର ପାଦସ୍ପର୍ଶ କରି ପ୍ରଣାମ

---

୧. କେହି କେହି କହନ୍ତି, ଶ୍ରୀଯୁକ୍ତ କ୍ଷୁଦିରାମ ବହୁପୂର୍ବେ ଥରେ ଦେରେପୁରରୁ ତୀର୍ଥଗମନ ପୂର୍ବକ ଶ୍ରୀବୃନ୍ଦାବନ, ଅଯୋଧ୍ୟା ଓ ବାରାଣସୀ ଦର୍ଶନ କରିଆସିଥିଲେ ଏବଂ ଏହାର କିଛିକାଳ ପରେ ତାଙ୍କର ପୁତ୍ର ଓ କନ୍ୟା ଜନ୍ମଗ୍ରହଣ କରିବାରୁ ସେ ଏହି ତୀର୍ଥଯାତ୍ରା କଥା ସ୍ମରଣ କରି ସେମାନଙ୍କର ରାମକୁମାର ଓ କାତ୍ୟାୟନୀ ନାମକରଣ କରିଥିଲେ । ଶେଷଥର ସେ କେବଳ ଗୟାଧାମ ଦର୍ଶନ କରି ଗୃହକୁ ପ୍ରତ୍ୟାବର୍ତ୍ତନ କରିଥିଲେ ।

କରୁଛନ୍ତି । ପରକ୍ଷଣରେ ହିଁ ପୁଣି ଦେଖିବାକୁ ଲାଗିଲେ, ଯେମିତି ଅଦୃଷ୍ଟପୂର୍ବ ଦିବ୍ୟଜ୍ୟୋତିଃରେ ମନ୍ଦିର ପୂର୍ଣ୍ଣ ହୋଇଅଛି ଏବଂ ପିତୃପୁରୁଷଗଣ ସସମ୍ଭ୍ରମରେ, ସଂଯତଭାବରେ ଦୁଇ ପାର୍ଶ୍ୱରେ କରଯୋଡ଼ି ଦଣ୍ଡାୟମାନ ରହି ମନ୍ଦିରମଧ୍ୟରେ ବିଚିତ୍ର ସିଂହାସନରେ ସୁଖାସୀନ ଏକ ଅଦ୍ଭୁତ ପୁରୁଷଙ୍କର ଉପାସନା କରୁଛନ୍ତି । ଦେଖିଲେ, ନବଦୂର୍ବାଦଳଶ୍ୟାମ ଜ୍ୟୋତିର୍ମଣ୍ଡିତତନୁ ସେହି ପୁରୁଷ ସ୍ନିଗ୍ଧପ୍ରସନ୍ନଦୃଷ୍ଟିରେ ତାଙ୍କ ଆଡ଼େ ଅବଲୋକନପୂର୍ବକ ହାସ୍ୟମୁଖରେ ତାଙ୍କୁ ନିକଟକୁ ଯିବା ପାଇଁ ଇଙ୍ଗିତ କରୁଛନ୍ତି ! ସେ ଯେପରି ଯନ୍ତ୍ରବତ୍ ପରିଚାଳିତ ହୋଇ ତାଙ୍କ ସମ୍ମୁଖରେ ଉପସ୍ଥିତ ହେଲେ ଓ ଭକ୍ତିବିହ୍ୱଳଚିତ୍ତରେ ଦଣ୍ଡବତ ପ୍ରଣାମପୂର୍ବକ ହୃଦୟର ଆବେଗରେ ନାନାପ୍ରକାର ସ୍ତୁତି ଓ ବନ୍ଦନା କରିବାକୁ ଲାଗିଲେ । ଦେଖିଲେ, ସେହି ଦିବ୍ୟ ପୁରୁଷ ଯେପରି ସେଥିରେ ପରିତୁଷ୍ଟ ହୋଇ ବୀଣାନିସ୍ୟନ୍ଦି ମଧୁର ସ୍ୱରରେ ତାଙ୍କୁ କହିବାକୁ ଲାଗିଲେ, ''କ୍ଷୁଦିରାମ, ମୁଁ ତୁମର ଭକ୍ତିରେ ପରମ ପ୍ରସନ୍ନ ହୋଇଅଛି, ପୁତ୍ରରୂପରେ ତୁମ ଗୃହରେ ଅବତୀର୍ଣ୍ଣ ହୋଇ ମୁଁ ତୁମର ସେବା ଗ୍ରହଣ କରିବି !'' ସ୍ୱପ୍ନର ମଧ୍ୟ ଅତୀତ ଏହି କଥା ଶୁଣି ତାଙ୍କର ଯେପରି ଆନନ୍ଦର ସୀମା ରହିଲା ନାହିଁ; କିନ୍ତୁ ପରମୁହୂର୍ତ୍ତରେ ହିଁ ଚିରଦରିଦ୍ର ସେ ତାଙ୍କୁ କ'ଣ ଖାଇବାକୁ ଦେବେ, କେଉଁଠି ରଖିବେ ଇତ୍ୟାଦି ଭାବି ଗଭୀର ବିଷାଦରେ ପୂର୍ଣ୍ଣ ହୋଇ ରୋଦନ କରୁ କରୁ ତାଙ୍କୁ କହିଲେ, ''ନା, ନା ପ୍ରଭୁ, ମୋର ଏପରି ସୌଭାଗ୍ୟର ପ୍ରୟୋଜନ ନାହିଁ; କୃପା କରି ଆପଣ ଯେ ମୋତେ ଦର୍ଶନଦାନ କରି କୃତାର୍ଥ କଲେ ଓ ଏପରି ଅଭିପ୍ରାୟ ପ୍ରକାଶ କଲେ, ଏହା ହିଁ ମୋ ପକ୍ଷରେ ଯଥେଷ୍ଟ; ସତରେ ପୁତ୍ର ରୂପରେ ଜନ୍ମ ନେଲେ ମୋ ଭଳି ଦରିଦ୍ର ଆପଣଙ୍କର କି ସେବା କରିପାରିବ !'' ''ଏହି ଅମାନବ ପୁରୁଷ ଯେପରି ତାଙ୍କର ଏଭଳି କରୁଣ ବଚନ ଶ୍ରବଣ କରି ଅଧିକତର ପ୍ରସନ୍ନ ହୋଇ କହିଲେ, ''ଭୟ ନାହିଁ, କ୍ଷୁଦିରାମ, ତୁମେ ଯାହା ପ୍ରଦାନ କରିବ ତାହା ହିଁ ମୁଁ ତୃପ୍ତିର ସହିତ ଗ୍ରହଣ କରିବି; ମୋର ଅଭିଳାଷ ପୂରଣ କରିବାକୁ ଆପତ୍ତି କର ନାହିଁ ।'' ଶ୍ରୀଯୁକ୍ତ କ୍ଷୁଦିରାମ ଏକଥା ଶୁଣି ଯେପରି ଆଉ କିଛି କହିପାରିଲେ ନାହିଁ । ଆନନ୍ଦ, ଦୁଃଖ ପ୍ରଭୃତି ପରସ୍ପର ବିପରୀତ ଭାବସମୂହ ତାଙ୍କର ଅନ୍ତରରେ ଯୁଗପତ୍ ପ୍ରବାହିତ ହୋଇ ତାଙ୍କୁ ଏକାବେଳକେ ସ୍ତମ୍ଭିତ ଓ ଜ୍ଞାନଶୂନ୍ୟ କରିଦେଲା । ଏପରି ସମୟରେ ତାଙ୍କର ନିଦ୍ରାଭଙ୍ଗ ହେଲା ।

**କାମାରପୁକୁରକୁ ପ୍ରତ୍ୟାଗମନ :**

ନିଦ୍ରାଭଙ୍ଗ ହେବାପରେ ଶ୍ରୀଯୁକ୍ତ କ୍ଷୁଦିରାମ କେଉଁଠାରେ ଅଛନ୍ତି, ତାହା ଅନେକ ସମୟ ପର୍ଯ୍ୟନ୍ତ ବୁଝିପାରିଲେ ନାହିଁ । ପୂର୍ବୋକ୍ତ ସ୍ୱପ୍ନର ବାସ୍ତବତା ତାହାଙ୍କୁ

ଅଭିଭୂତ କରି ରଖିଲା । ପରେ ଧୀରେ ଧୀରେ ଯେତେବେଳେ ତାଙ୍କର ସ୍ଥୂଳ ଜଗତର ଜ୍ଞାନ ଉପସ୍ଥିତ ହେଲା, ସେ ଶଯ୍ୟା ତ୍ୟାଗ କରି ଏହି ଅଦ୍ଭୁତ ସ୍ୱପ୍ନ ସ୍ମରଣ କରି ନାନାକଥା ଭାବିବାକୁ ଲାଗିଲେ । ପରିଣାମରେ ତାଙ୍କର ବିଶ୍ୱାସପ୍ରବଣ ହୃଦୟ ସ୍ଥିରନିଶ୍ଚୟ କଲା ଯେ, ଦେବସ୍ୱପ୍ନ କେବେ ବୃଥା ହୁଏ ନାହିଁ—ନିଶ୍ଚୟ କୌଣସି ମହାପୁରୁଷ ତାଙ୍କ ଗୃହରେ ଶୀଘ୍ର ହିଁ ଜନ୍ମଗ୍ରହଣ କରିବେ—ବୃଦ୍ଧ ବୟସରେ ନିଶ୍ଚୟ ତାଙ୍କୁ ପୁନରାୟ ପୁତ୍ରମୁଖ ଅବଲୋକନ କରିବାକୁ ହେବ । ଅନନ୍ତର ସେହି ଅଦ୍ଭୁତ ସ୍ୱପ୍ନର ସଫଳତା ପରୀକ୍ଷା ନ କରି କାହା ନିକଟରେ ତଦ୍‌ବିବରଣ ପ୍ରକାଶ କରିବେ ନାହିଁ, ଏହିପରି ସଂକଳ୍ପ କଲେ ଓ କେତେଦିନ ପରେ ଗୟାଧାମରୁ ବିଦାୟ ଗ୍ରହଣ କରି ୧୮୩୬ ଖ୍ରୀଷ୍ଟାବ୍ଦ ବୈଶାଖ ମାସରେ କାମାରପୁକୁରରେ ଉପସ୍ଥିତ ହେଲେ ।

# ଚତୁର୍ଥ ଅଧ୍ୟାୟ

## ଚନ୍ଦ୍ରାଦେବୀଙ୍କର ବିଚିତ୍ର ଅନୁଭବ

### ଅବତାରପୁରୁଷଙ୍କର ଆବିର୍ଭାବକାଳରେ ସେମାନଙ୍କ ଜନକ-ଜନନୀଙ୍କର ଦିବ୍ୟ ଅନୁଭବାଦି ସମ୍ବନ୍ଧରେ ଶାସ୍ତ୍ରକଥା :

ଜଗତପାବନ ମହାପୁରୁଷଗଣଙ୍କର ଜନ୍ମପରିଗ୍ରହ କରିବା ସମୟରେ ସେମାନଙ୍କର ଜନକ-ଜନନୀଙ୍କର ଜୀବନରେ ଅସାଧାରଣ ଆଧ୍ୟାତ୍ମିକ ଅନୁଭବ ଓ ଦର୍ଶନସମୂହ ଉପସ୍ଥିତ ହେବା କଥା ପୃଥିବୀର ସମସ୍ତ ଜାତିର ଧର୍ମଗ୍ରନ୍ଥରେ ଲିପିବଦ୍ଧ ଅଛି । ଭଗବାନ ଶ୍ରୀରାମଚନ୍ଦ୍ର ଓ ଶ୍ରୀକୃଷ୍ଣ, ମାୟାଦେବୀତନୟ ବୁଦ୍ଧ, ମେରୀନନ୍ଦନ ଈଶା, ଭଗବାନ ଶ୍ରୀଶଙ୍କର, ମହାପ୍ରଭୁ ଶ୍ରୀକୃଷ୍ଣଚୈତନ୍ୟ ପ୍ରଭୃତି ଯେଉଁ ସମସ୍ତ ମହାମହିମ ପୁରୁଷପ୍ରବର ମାନବମନର ଭକ୍ତିଶ୍ରଦ୍ଧାପୂତ ପୂଜାର୍ଘ୍ୟ ଅଦ୍ୟାବଧି ପ୍ରତିନିୟତ ପ୍ରାପ୍ତ ହେଉଛନ୍ତି, ସେମାନଙ୍କର ପ୍ରତ୍ୟେକଙ୍କର ଜନକ-ଜନନୀଙ୍କ ସମ୍ବନ୍ଧରେ ହିଁ ଏପରି କଥା ଶାସ୍ତ୍ରନିବଦ୍ଧ ଦେଖିବାକୁ ମିଳିଥାଏ । ପ୍ରମାଣସ୍ୱରୂପ ନିମ୍ନଲିଖିତ କେତୋଟି କଥା ଏଠାରେ ସ୍ମରଣ କଲେ ଯଥେଷ୍ଟ ହେବ—

ଯଜ୍ଞାବଶିଷ୍ଟ ପାତ୍ରାବଶେଷ ବା ଚରୁ ଭୋଜନ କରି ଭଗବାନ ଶ୍ରୀରାମଚନ୍ଦ୍ରପ୍ରମୁଖ ଭ୍ରାତୃଚତୁଷ୍ଟୟଙ୍କର ଜନନୀମାନଙ୍କର ଗର୍ଭଧାରଣ ବିଷୟ କେବଳ ରାମାୟଣପ୍ରସିଦ୍ଧ ନୁହେଁ; ଭୂମିଷ୍ଠ ହେବା ପୂର୍ବରୁ ଓ ପରେ ସେମାନେ ଅନେକ ଥର ଉକ୍ତ ଭ୍ରାତୃଚତୁଷ୍ଟୟଙ୍କୁ ଜଗତପିତା ଭଗବାନ ଶ୍ରୀବିଷ୍ଣୁଙ୍କର ଅଂଶସମ୍ଭୂତ ଓ ଦିବ୍ୟଶକ୍ତିସମ୍ପନ୍ନ ବୋଲି ଜାଣି ପାରିଥିଲେ, ଏକଥା ମଧ୍ୟ ରାମାୟଣରେ ଲିପିବଦ୍ଧ ଅଛି ।

ଭଗବାନ ଶ୍ରୀକୃଷ୍ଣଙ୍କର ଜନକ-ଜନନୀ, ତାଙ୍କର ଗର୍ଭପ୍ରବେଶ ସମୟରେ ଏବଂ ଭୂମିଷ୍ଠ ହେବାର ଅବ୍ୟବହିତ ପରେ ତାଙ୍କୁ ଷଡ଼ୈଶ୍ୱର୍ଯ୍ୟସମ୍ପନ୍ନ ମୂର୍ତ୍ତିମାନ ଈଶ୍ୱରରୂପରେ ଅନୁଭବ କରିଥିଲେ; ଏତଦ୍‌ଭିନ୍ନ ତାଙ୍କର ଜନ୍ମଗ୍ରହଣର ପରକ୍ଷଣଠାରୁ ପ୍ରତିଦିନ ସେମାନଙ୍କର ଜୀବନରେ ନାନା ଅଦ୍ଭୁତ ଉପଲବ୍ଧିର କଥା ଶ୍ରୀମଦ୍‌ଭାଗବତ ଆଦି ପୁରାଣମାନଙ୍କରେ ଲିପିବଦ୍ଧ ଅଛି ।

ଭଗବାନ ଶ୍ରୀବୁଦ୍ଧଦେବଙ୍କର ଗର୍ଭପ୍ରବେଶ ସମୟରେ ଶ୍ରୀମତୀ ମାୟାଦେବୀ ଦର୍ଶନ କରିଥିଲେ ଯେ, ଜ୍ୟୋତିର୍ମୟ ଶ୍ୱେତହସ୍ତୀର ଆକାର ଧାରଣପୂର୍ବକ କୌଣସି ଏକ ପୁରୁଷ ଯେପରି ତାଙ୍କ ଉଦରରେ ପ୍ରବେଶ କରୁଛନ୍ତି ଏବଂ ତାଙ୍କର ସୌଭାଗ୍ୟଦର୍ଶନରେ ଇନ୍ଦ୍ରପ୍ରମୁଖ ଯାବତୀୟ ଦେବଗଣ ଯେପରି ତାହାଙ୍କୁ ବନ୍ଦନା କରୁଛନ୍ତି ।

ଭଗବାନ ଶ୍ରୀଈଶାଙ୍କର ଜନ୍ମଗ୍ରହଣ ସମୟରେ ତାଙ୍କର ଜନନୀ ଶ୍ରୀମତୀ ମେରୀ ଅନୁଭବ କରିଥିଲେ—ନିଜ ସ୍ୱାମୀ ଶ୍ରୀଯୁକ୍ତ ଯୋସେଫ୍‌ଙ୍କ ସହିତ ମିଳନ ହେବା ପୂର୍ବରୁ ହିଁ ଯେପରି ତାଙ୍କର ଗର୍ଭୋଦୟ ହୋଇଅଛି ଏବଂ ଅନନୁଭୂତପୂର୍ବ ଦିବ୍ୟାବେଶରେ ଆବିଷ୍ଟ ଓ ତନ୍ମୟ ହୋଇ ହିଁ ତାଙ୍କର ଗର୍ଭଲକ୍ଷଣ ପ୍ରକାଶ ପାଇଅଛି ।

ଭଗବାନ ଶ୍ରୀଶଙ୍କରଙ୍କର ଜନନୀ ଅନୁଭବ କରିଥିଲେ, ଦେବାଦିଦେବ ମହାଦେବଙ୍କର ଦିବ୍ୟଦର୍ଶନ ଓ ବରଦାନ ଫଳରେ ହିଁ ତାଙ୍କର ଗର୍ଭଧାରଣ ହୋଇଅଛି ।

ଭଗବାନ ଶ୍ରୀଚୈତନ୍ୟଙ୍କର ଜନନୀ ଶ୍ରୀମତୀ ଶଚୀଦେବୀଙ୍କ ଜୀବନରେ ମଧ୍ୟ ପୂର୍ବୋକ୍ତ ପ୍ରକାରର ନାନା ଦିବ୍ୟ ଅନୁଭବ ଉପସ୍ଥିତ ହେବାର କଥା ''ଶ୍ରୀଚୈତନ୍ୟ ଚରିତାମୃତ''ପ୍ରମୁଖ ଗ୍ରନ୍ଥମାନଙ୍କରେ ଲିପିବଦ୍ଧ ଅଛି ।

ହିନ୍ଦୁ, ବୌଦ୍ଧ, ଖ୍ରୀଷ୍ଟିୟାନ ପ୍ରଭୃତି ଯାବତୀୟ ଧର୍ମ ଈଶ୍ୱରଙ୍କର ସପ୍ରେମ ଉପାସନାକୁ ମୁକ୍ତିଲାଭର ସୁଗମ ପଥ ବୋଲି ମାନବ ନିକଟରେ ନିର୍ଦ୍ଦେଶ କରିଛନ୍ତି; ସେମାନେ ସମସ୍ତେ ଏବିଷୟରେ ଏକମତ ହେବାରୁ ନିରପେକ୍ଷ ବିଚାରକଙ୍କ ମନରେ ସ୍ୱତଃ ହିଁ ପ୍ରଶ୍ନର ଉଦୟ ହୋଇଥାଏ, ଏହା ମଧ୍ୟରେ ବାସ୍ତବିକ୍ କୌଣସି ସତ୍ୟତା ପ୍ରଚ୍ଛନ୍ନ ରହିଛି ନା ନାହିଁ ଏବଂ ମହାପୁରୁଷଗଣଙ୍କର ଜୀବନ ଇତିହାସରେ ବର୍ଣ୍ଣିତ ଏସମସ୍ତ ଆଖ୍ୟାୟିକାରୁ କେତେଟା ଗ୍ରହଣ ଏବଂ କେତେଟା ତ୍ୟାଗ କରିବା ବିଧେୟ ?

## ଏହି ଶାସ୍ତ୍ରକଥାର ଯୁକ୍ତି ନିର୍ଦ୍ଦେଶ :

ଅନ୍ୟପକ୍ଷରେ ଯୁକ୍ତି ମନୁଷ୍ୟକୁ ସଙ୍କେତ କରିଥାଏ ଯେ, କଥାଟିରେ କିଛି ସତ୍ୟତା ରହିଥାଇପାରେ । କାରଣ, ବର୍ତ୍ତମାନ ଯୁଗର ବିଜ୍ଞାନ ଯେତେବେଳେ ଉଚ୍ଚପ୍ରକୃତିସମ୍ପନ୍ନ ପିତାମାତାଙ୍କଠାରୁ ଉଦାର ଚରିତ୍ରବାନ ପୁତ୍ର ଉତ୍ପାଦନର ସାମର୍ଥ୍ୟ ସ୍ୱୀକାର କରିଥାଏ, ସେତେବେଳେ ଶ୍ରୀକୃଷ୍ଣ, ବୁଦ୍ଧ ଓ ଈଶା ଇତ୍ୟାଦିଙ୍କ ପରି ମହାପୁରୁଷଗଣଙ୍କର ଜନକ-ଜନନୀ ଯେ ବିଶେଷ ସଦ୍‌ଗୁଣସମ୍ପନ୍ନ ଥିଲେ, ଏକଥା ଗ୍ରହଣ କରିବାକୁ ହେବ । ଏହା ସହିତ ଏକଥା ମଧ୍ୟ ସ୍ୱୀକାର କରିବାକୁ ହେବ ଯେ, ଏସମସ୍ତ ପୁରୁଷୋତ୍ତମଙ୍କୁ ଜନ୍ମପ୍ରଦାନ କାଳରେ ସେମାନଙ୍କର ମନ ସାଧାରଣ ମାନବ ମନ ଅପେକ୍ଷା ଅନେକ ଉଚ୍ଚ ଭୂମିରେ ଅବସ୍ଥାନ କରିଥିଲା ଏବଂ ଏହିଭାବରେ ଉଚ୍ଚ ଭୂମିରେ ଅବସ୍ଥାନ ଯୋଗୁଁ ହିଁ ସେମାନେ ଏସମୟରେ ଅସାଧାରଣ ଦର୍ଶନ ଓ ଅନୁଭବ ଇତ୍ୟାଦିର ଅଧିକାରୀ ହୋଇଥିଲେ ।

### ସହଜରେ ବିଶ୍ୱାସଗମ୍ୟ ନ ହେଲେ ମଧ୍ୟ ଏହି ସମସ୍ତ କଥା ମିଥ୍ୟା ଭାବରେ ତ୍ୟାଜ୍ୟ ନୁହେଁ :

ପୁରାଣ ଇତିହାସ ଏବିଷୟରେ ନାନା ଦୃଷ୍ଟାନ୍ତ ଉଲ୍ଲେଖ କରିଥିଲେ ମଧ୍ୟ ଏବଂ ଯୁକ୍ତି ଦ୍ୱାରା ଏହାର ସମାଧାନ ହୋଇଥିଲେ ମଧ୍ୟ, ମାନବ ମନ ଏଥିରେ ସଂପୂର୍ଣ୍ଣ ବିଶ୍ୱାସୀ ହୋଇପାରେ ନାହିଁ । କାରଣ, ତାହା ସର୍ବୋପରି ନିଜ ପ୍ରତ୍ୟକ୍ଷ ଉପରେ ହିଁ ବିଶ୍ୱାସ ସ୍ଥାପନ କରେ ଏବଂ ସେଥି ନିମିତ୍ତ ଆତ୍ମା, ଈଶ୍ୱର, ମୁକ୍ତି, ପରକାଳ ପ୍ରଭୃତି ବିଷୟଗୁଡ଼ିକରେ ମଧ୍ୟ ଅପରୋକ୍ଷ ଅନୁଭୂତି ପୂର୍ବରୁ କେବେହେଲେ ନିଃସନ୍ଦେହରେ ବିଶ୍ୱାସ କରିପାରେ ନାହିଁ । ଏପରି ହେଲେ ମଧ୍ୟ ନିରପେକ୍ଷ ବିଚାର-ବୁଦ୍ଧି ଅସାଧାରଣ ବା ଅଲୌକିକ ବୋଲି କୌଣସି ବିଷୟକୁ ତ୍ୟାଜ୍ୟ ମନେ କରେ ନାହିଁ— କିନ୍ତୁ ସ୍ୱୟଂ ସାକ୍ଷୀସ୍ୱରୂପ ରହି ସ୍ଥିର ଭାବରେ ସେହି ବିଷୟରେ ସ୍ୱପକ୍ଷ ଓ ବିପକ୍ଷ ପ୍ରମାଣସମୂହ ସଂଗ୍ରହରେ ଅଗ୍ରସର ହୁଏ ଏବଂ ଉପଯୁକ୍ତ ସମୟରେ ତାହା ମିଥ୍ୟା ବୋଲି ତ୍ୟାଗ ଅଥବା ସତ୍ୟ ବୋଲି ଗ୍ରହଣ କରିଥାଏ ।

ସେ ଯାହାହେଉ, ଯେଉଁ ମହାପୁରୁଷଙ୍କର ଜୀବନ ଇତିହାସ ଆମେ ଲେଖିବାକୁ ବସିଅଛୁ, ତାଙ୍କ ଜନ୍ମକାଳରେ ତାଙ୍କର ପିତା-ମାତାଙ୍କ ଜୀବନରେ ମଧ୍ୟ ନାନା ଦିବ୍ୟଦର୍ଶନ ଓ ଅନୁଭବସମୂହ ଉପସ୍ଥିତ ହୋଇଥିଲା, ଏକଥା ଆମେ ଅତି ବିଶ୍ୱସ୍ତ ସୂତ୍ରରୁ ଅବଗତ ହୋଇଅଛୁ । ସୁତରାଂ ସେହି ସମସ୍ତ କଥା ଲିପିବଦ୍ଧ କରିବା ବ୍ୟତୀତ ଆମର ଗତ୍ୟନ୍ତର ନାହିଁ । ପୂର୍ବ ଅଧ୍ୟାୟରେ ଶ୍ରୀଯୁକ୍ତ କ୍ଷୁଦିରାମଙ୍କ ସମ୍ବନ୍ଧରେ ଏପରି କେତୋଟି କଥା ପାଠକମାନଙ୍କୁ କହିଅଛୁ । ବର୍ତ୍ତମାନ ଅଧ୍ୟାୟରେ ଶ୍ରୀମତୀ ଚନ୍ଦ୍ରମଣିଙ୍କ ସମ୍ବନ୍ଧରେ ଏହିପରି ସମସ୍ତ କଥା ଏଠାରେ ଲିପିବଦ୍ଧ କରାଗଲା ।

### ଗୟାରୁ ଫେରି କ୍ଷୁଦିରାମଙ୍କ ଚନ୍ଦ୍ରାଦେବୀଙ୍କଠାରେ ଭାବପରିବର୍ତ୍ତନର ଦର୍ଶନ :

ଏହା ପୂର୍ବରୁ କୁହାଯାଇଛି ଯେ, ଶ୍ରୀଯୁକ୍ତ କ୍ଷୁଦିରାମ ଗୟାଧାମରେ ଯେଉଁ ଅଦ୍ଭୁତ ସ୍ୱପ୍ନ ଦର୍ଶନ କରିଥିଲେ, ଗୃହକୁ ଫେରି ସେକଥା କାହାକୁ ନ କହି ନୀରବରେ ଏହାର ଫଳାଫଳ ଲକ୍ଷ୍ୟ କରୁଥିଲେ । ଏବିଷୟରେ ଅନୁସନ୍ଧାନ କରିବାକୁ ଯାଇ ଶ୍ରୀମତୀ ଚନ୍ଦ୍ରାଦେବୀଙ୍କର ସ୍ୱଭାବରେ ଅଦ୍ଭୁତ ପରିବର୍ତ୍ତନ ପ୍ରଥମେ ତାଙ୍କର ଦୃଷ୍ଟିଗୋଚର ହୋଇଥିଲା । ସେ ଦେଖିଥିଲେ, ମାନବୀ ଚନ୍ଦ୍ରା ଏବେ ଯେପରି ସତକୁ ସତ ଦେବୀତ୍ୱ ପଦବୀରେ ଆରୂଢ଼ା ହୋଇଅଛନ୍ତି ! କେଉଁଠୁ ଏକ ସାର୍ବଜନୀନ ପ୍ରେମ ଆସି ତାଙ୍କର ହୃଦୟ ଅଧିକାର କରି ସଂସାରର ବାସନାମୟ କୋଳାହଳଠାରୁ ତାଙ୍କୁ ଯେପରି ଅନେକ ଉଚ୍ଚରେ ତୋଳି ରଖିଛି । ନିଜର ସଂସାରର ଚିନ୍ତା ଅପେକ୍ଷା ଶ୍ରୀମତୀ ଚନ୍ଦ୍ରାଙ୍କ ମନରେ ଏବେ ଅଭାବଗ୍ରସ୍ତ ପ୍ରତିବେଶୀମାନଙ୍କର ସଂସାର ଚିନ୍ତା ପ୍ରବଳ ହୋଇଅଛି । ନିଜ ସଂସାରର କର୍ତ୍ତବ୍ୟ ପାଳନ କରୁ କରୁ

ସେ ବାରମ୍ବାର ଧାଇଁ ଯାଇ ସେମାନଙ୍କର ତତ୍ତ୍ୱାବଧାନ କରି ଆସୁଛନ୍ତି ଏବଂ ଆହାର୍ଯ୍ୟ ଓ ନିତ୍ୟପ୍ରୟୋଜନୀୟ ଜିନିଷପତ୍ରରେ ଯାହାଙ୍କର ଯେଉଁ ଜିନିଷର ଅଭାବ ଦେଖନ୍ତି, ନିଜ ଗୃହରୁ ତାହା ଲୁଚାଇ ନେଇ ତତ୍‌କ୍ଷଣାତ୍ ସେମାନଙ୍କୁ ଦେଇ ଆସନ୍ତି । ପୁଣି ରଘୁବୀରଙ୍କର ସେବା ସମାପନ କରି ସ୍ୱାମୀପୁତ୍ରାଦିଙ୍କୁ ଭୋଜନ କରାଇ ସାରି ବେଳ ତୃତୀୟ ପ୍ରହରରେ ସ୍ୱୟଂ ଭୋଜନରେ ବସିବା ପୂର୍ବରୁ ଶ୍ରୀମତୀ ଚନ୍ଦ୍ରା ପୁନର୍ବାର ସେମାନଙ୍କ ପ୍ରତ୍ୟେକଙ୍କ ଗୃହକୁ ଯାଇ ସମ୍ବାଦ ନେଇ ଜାଣନ୍ତି, ସେମାନଙ୍କର ସମସ୍ତଙ୍କର ଭୋଜନ ହୋଇଛି କି ନାହିଁ । ଯଦି କୌଣସି ଦିନ ଦେଖନ୍ତି କୌଣସି କାରଣରୁ କାହାକୁ ଆହାର ଜୁଟି ନାହିଁ, ତାହେଲେ ସେ ତତ୍‌କ୍ଷଣାତ୍ ତାଙ୍କୁ ସାଦରେ ଗୃହକୁ ଆନୟନ ପୂର୍ବକ ନିଜର ଅନ୍ନ ଦେଇ ସ୍ୱୟଂ ହୃଷ୍ଟ ଚିତ୍ତରେ ସାମାନ୍ୟ ଜଳଯୋଗମାତ୍ର କରି ଦିନ କଟାଇ ଦିଅନ୍ତି ।

### ଚନ୍ଦ୍ରାଦେବୀଙ୍କର ଅପତ୍ୟ ସ୍ନେହର ପ୍ରସାର ଦର୍ଶନ :

ଶ୍ରୀମତୀ ଚନ୍ଦ୍ରା ପ୍ରତିବେଶୀ ବାଳକବାଳିକାମାନଙ୍କୁ ଚିରକାଳ ଅପତ୍ୟ ଦୃଷ୍ଟିରେ ଭଲ ପାଉଥିଲେ । କ୍ଷୁଦିରାମ ଦେଖିଲେ, ତାଙ୍କର ସେହି ଅପତ୍ୟସ୍ନେହ ଏବେ ଯେପରି ଦେବତାମାନଙ୍କ ଉପରେ ମଧ୍ୟ ପ୍ରସାରିତ ହୋଇଅଛି । କୁଳଦେବତା ରଘୁବୀରଙ୍କୁ ସେ ଏବେ ନିଜର ପୁତ୍ରମାନଙ୍କ ମଧ୍ୟରୁ ଅନ୍ୟତମ ଭାବରେ ଦେଖୁଛନ୍ତି ଏବଂ ଶୀତଳାଦେବୀ ଓ ରାମେଶ୍ୱର ବାଣଲିଙ୍ଗ ମଧ୍ୟ ଯେପରି ତାଙ୍କର ହୃଦୟରେ ସେହି ସ୍ଥାନ ଅଧିକାର କରିଛନ୍ତି । ଏହି ସମସ୍ତ ଦେବତାଗଣଙ୍କର ସେବା ପୂଜା କାଳରେ ତାଙ୍କ ଅନ୍ତର ଏହାପୂର୍ବରୁ ଶ୍ରଦ୍ଧାପୂର୍ଣ୍ଣ ଭୟରେ ସର୍ବଦା ତ୍ରସ୍ତ ରହୁଥିଲା; କିନ୍ତୁ ଏବେ ମାତୃସ୍ନେହ ଆସି ସେ ଭୟକୁ ଅନ୍ତର୍ହିତ କରିଛି । ଦେବତାମାନଙ୍କୁ ଏବେ ଯେପରି ତାଙ୍କର କୌଣସି ଭୟ ନାହିଁ, ସଙ୍କୋଚ ନାହିଁ, ଲୁଚାଇବାକୁ ଏବଂ ମାଗିବାକୁ ଯେପରି କିଛି ନାହିଁ ! କେବଳ ଅଛି ସେମାନଙ୍କୁ ନିଜର ଜ୍ଞାନ କରିବା, ସେମାନଙ୍କୁ ସୁଖୀ କରିବା ନିମିତ୍ତ ସର୍ବସ୍ୱପ୍ରଦାନର ଇଚ୍ଛା ଏବଂ ସେମାନଙ୍କ ସହିତ ଚିରସମ୍ବନ୍ଧ ହେବାର ଅନନ୍ତ ଉଲ୍ଲାସ ।

### ତାହା ଦର୍ଶନକରି କ୍ଷୁଦିରାମଙ୍କର ଚିନ୍ତା ଓ ସଂକଳ୍ପ :

କ୍ଷୁଦିରାମ ବୁଝିଲେ, ଏପରି ନିଃସଙ୍କୋଚ ଦେବଭକ୍ତି ଓ ନିର୍ଭର-ପ୍ରସୂତ ଉଲ୍ଲାସ ହିଁ ସରଳହୃଦୟା ଚନ୍ଦ୍ରାଙ୍କୁ ଏବେ ଅଧିକତର ଉଦାରସ୍ୱଭାବା କରିଅଛି । ଏହାର ପ୍ରଭାବରେ ସେ ଏବେ କାହାକୁ ଅବିଶ୍ୱାସ କରିବାକୁ ବା ପର ବୋଲି ଭାବିପାରୁ ନାହାନ୍ତି । କିନ୍ତୁ ସ୍ୱାର୍ଥପର ପୃଥିବୀର ଲୋକ ତାଙ୍କର ଏହି ଅପୂର୍ବ ଉଦାରତାର କଥା କ'ଣ ଯଥାଯଥ ଭାବେ ଗ୍ରହଣ କରିବେ ?—କେବେ ନୁହେଁ । ତାଙ୍କୁ ଅଳ୍ପବୁଦ୍ଧି ବା 'ପାଗଳୀ' କହିବେ, ଅଥବା ତାଙ୍କ ପ୍ରତି କଠୋରତର ଭାଷା

ପ୍ରୟୋଗ କରିବେ । ଏପରି ଭାବି ଶ୍ରୀଯୁକ୍ତ କ୍ଷୁଦିରାମ ତାଙ୍କୁ ସତର୍କ କରାଇବା ପାଇଁ ସୁଯୋଗ ଖୋଜିବାକୁ ଲାଗିଲେ ।

## ଚନ୍ଦ୍ରାଦେବୀଙ୍କର ଦେବ–ସ୍ୱପ୍ନ :

ଏପରି ସମୟ ଆସିବାକୁ ବିଳମ୍ବ ମଧ୍ୟ ହେଲା ନାହିଁ । ସରଳପ୍ରାଣା ଚନ୍ଦ୍ରା ସ୍ୱାମୀଙ୍କ ନିକଟରେ ନିଜର ଚିନ୍ତା କେବେ ଗୋପନ କରିପାରୁ ନ ଥିଲେ । ସମବୟସ୍କାମାନଙ୍କ ନିକଟରେ ସେ ଅନେକ ସମୟରେ ମନର ସମସ୍ତ କଥା କହିପକାନ୍ତି, ସୁତରାଂ ପୃଥିବୀର ସମସ୍ତଙ୍କ ଅପେକ୍ଷା ଯାହାଙ୍କ ସହିତ ତାଙ୍କର ନିକଟ ସମ୍ବନ୍ଧ ଈଶ୍ୱର ସ୍ଥାପନ କରି ଦେଇଛନ୍ତି, ତାଙ୍କ ନିକଟରେ ଏସମସ୍ତ ଗୋପନ କରିବେ କିପରି ? ଅତଏବ ଗୟା ଦର୍ଶନ କରି ଶ୍ରୀଯୁକ୍ତ କ୍ଷୁଦିରାମ ଘରକୁ ଫେରିବା ମାତ୍ରେ ତାଙ୍କର ଅନୁପସ୍ଥିତ କାଳରେ ଯାହା କିଛି ଘଟିଥିଲା, ସେ ଦେଖିଥିଲେ, ଅଥବା ଅନୁଭବ କରିଥିଲେ — ସେ ସମସ୍ତ କଥା ସୁବିଧା ପାଇବା ମାତ୍ରେ କିଛିଦିନ ପର୍ଯ୍ୟନ୍ତ ଚନ୍ଦ୍ରାଦେବୀ ତାଙ୍କୁ କହିବାକୁ ଲାଗିଲେ । ଏହି ଅବସରରେ ଦିନେ କହିଲେ, ‘‘ଦେଖ, ତୁମେ ଯେବେ ଗୟା ଯାଇଥିଲ, ଦିନେ ରାତିରେ ମୁଁ ଏକ ଅଦ୍ଭୁତ ସ୍ୱପ୍ନ ଦେଖିଥିଲି । ଦେଖିଲି, ଯେପରି ଏକ ଜ୍ୟୋତିର୍ମୟ ଦେବତା ମୋର ଶଯ୍ୟା ଅଧିକାର କରି ଶୟନ କରିଛନ୍ତି । ପ୍ରଥମେ ଭାବିଲି ତୁମେ, କିନ୍ତୁ ପରେ ବୁଝିଲି ଯେ, କୌଣସି ମନୁଷ୍ୟର ଏପରି ରୂପ ସମ୍ଭବପର ନୁହେଁ । ସେ ଯା ହେଉ, ଏପରି ଦେଖିବା ପରେ ନିଦ୍ରାଭଙ୍ଗ ହେଲା । ତଥାପି ମନେହେଲା ସେ ଯେପରି ଶଯ୍ୟାରେ ଶୋଇଛନ୍ତି । ପରକ୍ଷଣରେ ମନେହେଲା, ମନୁଷ୍ୟ ନିକଟକୁ ଦେବତା କଣ କେବେ ଏହିପରି ଆସିଥାନ୍ତି ? ସେତେବେଳେ ପୁଣି ମନେ ହେଲା, କେହି ଦୁଷ୍ଟ ଲୋକ କୌଣସି ମନ୍ଦ ଅଭିସନ୍ଧିରେ ଘରେ ପଶିଅଛି ଏବଂ ତା'ର ପାଦଶବ୍ଦରେ ମୁଁ ଏପରି ସ୍ୱପ୍ନ ଦେଖିଛି । ଏପରି କଥା ମନରେ ଆସିବାରୁ ବହୁତ ଭୟ ହେଲା । ତତ୍କ୍ଷଣାତ୍ ଉଠିପଡ଼ି ଦୀପ ଜାଳି ଦେଖିଲି ଯେ, କେହି କେଉଁଠି ନାହାନ୍ତି, ଗୃହଦ୍ୱାର ଯେପରି ବନ୍ଦ ରହିବା କଥା ସେପରି ରହିଛି । ତଥାପି ଭୟରେ ସେ ରାତିରେ ଆଉ ନିଦ ହେଲା ନାହିଁ । ଭାବିଲି, କିଏ ବୋଧେ କୌଶଳ କ୍ରମେ ଅର୍ଗଳ ଖୋଲି ଘର ମଧ୍ୟରେ ପ୍ରବେଶ କରିଥିଲା ଏବଂ ମୋତେ ଚେଇଁଥିବା ଦେଖି ଘରୁ ପଳାଇ ପୁନରାୟ ଅର୍ଗଳ ବନ୍ଦ କରିଦେଇଛି । ସକାଳ ନ ହେଉଣୁ ଧନୀ କମାରୁଣୀ ଓ ଧର୍ମଦାସ ଲାହାଙ୍କ କନ୍ୟା ପ୍ରସନ୍ନକୁ ଡକାଇଲି ଏବଂ ସେମାନଙ୍କୁ ସମସ୍ତ କଥା କହି, ପଚାରିଲି, ‘‘ତୁମେମାନେ ଏଥିରୁ କ'ଣ ବୁଝିଲ କହିଲ, ସତରେ କ'ଣ କେହି ଜଣେ ଆମ ଘରେ ପ୍ରବେଶ କରିଥିଲା ? ଗ୍ରାମରେ କାହା ସହିତ ମୋର ତ ବିରୋଧ ନାହିଁ, କେବଳ ମଧୁ ଯୁଗୀ ସହିତ ସେଦିନ ସାମାନ୍ୟ କଥାରେ ପାଟିତୁଣ୍ଡ ହୋଇଥିଲା — ସେ କ'ଣ ଏହାକୁ ଆଳ କରି ଏପରି ଘର ମଧ୍ୟରେ ପ୍ରବେଶ

କରିଥିଲା ?'' ସେତେବେଳେ ଦୁଇଜଣ ହସି ହସି ମୋତେ ବହୁତ ତିରସ୍କାର କଲେ । କହିଲେ, 'ବୁଢ଼ୀ ହୋଇ ତୁ କ'ଣ ପାଗଳୀ ହୋଇ ଗଲୁନା କ'ଣ, ସ୍ୱପ୍ନ ଦେଖି ଏପରି କହୁଛୁ ! ଅନ୍ୟ ଲୋକ ଏକଥା ଶୁଣିଲେ କ'ଣ କହିବେ କହିଲୁ ? ତୋ ନାଁରେ ଏକଦମ୍ ଅପବାଦ ରଟାଇଦେବେ । ପୁଣି ଯଦି ଏକଥା କାହାକୁ କହିବୁ ମଜା ଦେଖିବୁ !' ସେମାନେ ଏପରି କହିବାରୁ ଭାବିଲି, ତେବେ ବୋଧେ ସ୍ୱପ୍ନ ଦେଖିଥିଲି, ଆହୁରି ଭାବିଲି ଯେ ଏକଥା କାହାକୁ କହିବି ନାହିଁ, ତୁମେ ଫେରି ଆସିଲେ ତୁମକୁ କହିବି ।

### ଶିବମନ୍ଦିରରେ ଚନ୍ଦ୍ରାଦେବୀଙ୍କର ଦିବ୍ୟଦର୍ଶନ ଓ ଅନୁଭବ :

''ଅନ୍ୟ ଏକ ଦିନ ଯୁଗୀଙ୍କର ଶିବମନ୍ଦିର ସମ୍ମୁଖରେ ଛିଡ଼ା ହୋଇ ଧନୀ ସହିତ କଥା କହୁଛି, ଏପରି ସମୟରେ ଦେଖିବାକୁ ପାଇଲି ଯେ, ମହାଦେବଙ୍କର ଶ୍ରୀଅଙ୍ଗରୁ ଦିବ୍ୟଜ୍ୟୋତି ନିର୍ଗତ ହୋଇ ମନ୍ଦିରକୁ ପୂର୍ଣ୍ଣ କରିଅଛି ଏବଂ ପବନ ପରି ତରଙ୍ଗାକାରରେ ତାହା ମୋ ଆଡ଼କୁ ମାଡ଼ି ଆସୁଛି । ଆଶ୍ଚର୍ଯ୍ୟ ହୋଇ ଧନୀକୁ ଏକଥା କହିବାକୁ ଯାଉଛି, ଏପରି ସମୟରେ ସହସା ତାହା ମୋ ନିକଟକୁ ଆସି ମୋତେ ଯେପରି ଘେରି ପକାଇଲା ଓ ମୋ ମଧ୍ୟରେ ପ୍ରବଳ ବେଗରେ ପ୍ରବେଶ କରିବାକୁ ଲାଗିଲା । ଭୟ ଓ ବିସ୍ମୟରେ ସ୍ତମ୍ଭିତା ହୋଇ ମୁଁ ଏକାବେଳକେ ମୂର୍ଚ୍ଛିତା ହୋଇ ତଳେ ପଡ଼ିଗଲି । ପରେ ଧନୀର ସେବା ଶୁଶ୍ରୁଷାରେ ଚେତା ଫେରିବାରୁ ତାକୁ ସମସ୍ତ କଥା କହିଲି । ସେ ଶୁଣି ପ୍ରଥମେ ଅବାକ୍ ହୋଇଗଲା ଓ ପରେ କହିଲା, 'ତୋର ବାୟୁରୋଗ ହୋଇଅଛି ।' ମୋର କିନ୍ତୁ ସେବେଠାରୁ ମନେହେଉଛି ଯେ ସେହି ଜ୍ୟୋତି ଯେପରି ମୋର ଉଦରରେ ପ୍ରବିଷ୍ଟ ହୋଇ ରହିଛି ଏବଂ ମୋର ଯେପରି ଗର୍ଭସଞ୍ଚାରର ଉପକ୍ରମ ହୋଇଅଛି ! ଏକଥା ମଧ୍ଯ ଧନୀ ଓ ପ୍ରସନ୍ନଙ୍କୁ କହିଥିଲି । ସେମାନେ ଶୁଣି ମୋତେ 'ନିର୍ବୋଧ', 'ପାଗଳୀ' ଇତ୍ୟାଦି କେତେ କ'ଣ କହି ଗାଳି କଲେ ଏବଂ କହିଲେ ଏହା ତୋର ମନର ଭ୍ରମ ହୋଇପାରେ, ନଚେତ୍ ବାୟୁଗୁଳ୍ମ ନାମକ ଏକ ପ୍ରକାରର ବ୍ୟାଧି ହେବାରୁ ଏପରି ଅନୁଭବ ହେଉଛି । ଏହିପରି ନାନାକଥା କହି ଏହି ଅନୁଭବ କଥା ଅନ୍ୟ କାହାକୁ କହିବାକୁ ମୋତେ ନିଷେଧ କଲେ । ତୁମ ଛଡ଼ା ଏକଥା ଆଉ କାହାକୁ କହିବି ନାହିଁ ବୋଲି ନିଶ୍ଚୟ କରି ଏତେ ଦିନ ପର୍ଯ୍ୟନ୍ତ ଚୁପ୍ ରହିଛି । ଆଚ୍ଛା ! ତୁମର କ'ଣ ମନେ ହୁଏ ? ଏପରି ଦର୍ଶନ କ'ଣ ମୋର ଦେବତାଙ୍କ କୃପାରୁ ହୋଇଛି, କିମ୍ବା ବାୟୁରୋଗରୁ ହୋଇଛି ? ଏବେ କିନ୍ତୁ ମୋର ମନେ ହେଉଛି, ଯେପରି ମୋର ଗର୍ଭସଞ୍ଚାର ହୋଇଛି ।''

## ଏହି ସମସ୍ତ କଥା ଅନ୍ୟ କାହାକୁ ନ କହିବାକୁ ଚନ୍ଦ୍ରାଦେବୀଙ୍କୁ କ୍ଷୁଦିରାମଙ୍କର ସତର୍କ କରାଇବା :

ଶ୍ରୀଯୁକ୍ତ କ୍ଷୁଦିରାମ ଗୟାରେ ନିଜର ସ୍ୱପ୍ନର କଥା ସ୍ମରଣ କରୁ କରୁ ଶ୍ରୀମତୀ ଚନ୍ଦ୍ରାଙ୍କର ସମସ୍ତ କଥା ଶୁଣିଲେ । ହୁଏତ ତାହା ରୋଗଜନିତ ନ ହୋଇପାରେ, ଏହିପରି ନାନାକଥା କହି ତାଙ୍କୁ ବୁଝାଇଲେ ଏବଂ କହିଲେ, ‘‘ଏବେଠାରୁ ଏପରି ଦର୍ଶନ ଓ ଅନୁଭବର କଥା ମୋ ଛଡ଼ା ଅନ୍ୟ କାହାକୁ କହିବ ନାହିଁ । ଶ୍ରୀଶ୍ରୀରଘୁବୀର କୃପା କରି ଯାହା ଦେଖାଇବେ ତାହା କଲ୍ୟାଣ ନିମିତ୍ତ, ଏକଥା ମନେ ରଖି ନିଶ୍ଚିନ୍ତରେ ରହିବ । ଗୟାଧାମରେ ଅବସ୍ଥାନ ସମୟରେ, ଶ୍ରୀଶ୍ରୀଗଦାଧର ମୋତେ ମଧ୍ୟ ଅଲୌକିକ ଉପାୟରେ ଜଣାଇଛନ୍ତି ଯେ, ଆମମାନଙ୍କୁ ପୁନରାୟ ପୁତ୍ରମୁଖ ଦର୍ଶନ କରିବାକୁ ହେବ ।’’ ଶ୍ରୀମତୀ ଚନ୍ଦ୍ରାଦେବୀ ଦେବପ୍ରତିମ ସ୍ୱାମୀଙ୍କର ଏପରି କଥାଶୁଣି ଆଶ୍ୱସ୍ତା ହେଲେ ଏବଂ ତାଙ୍କର ଆଜ୍ଞାନୁବର୍ତ୍ତିନୀ ହୋଇ ସେବେଠାରୁ ପୂର୍ଣ୍ଣ ଭାବରେ ଶ୍ରୀଶ୍ରୀରଘୁବୀରଙ୍କର ମୁଖାପେକ୍ଷିଣୀ ହୋଇ ରହିଲେ । ଦିନପରେ ଦିନ ଗଡ଼ି ବ୍ରାହ୍ମଣ ଦମ୍ପତିଙ୍କର ପୂର୍ବୋକ୍ତ କଥୋପକଥନ ପରେ କ୍ରମେ କ୍ରମେ ତିନି ଚାରିମାସ ଅତୀତ ହେଲା । ସେତେବେଳେ ସମସ୍ତେ ନିଃସନ୍ଦେହରେ ବୁଝିଲେ ଯେ, ପଇଁଚାଳିଶି ବର୍ଷ ବୟସରେ କ୍ଷୁଦିରାମଙ୍କ ଗୃହିଣୀ ଶ୍ରୀମତୀ ଚନ୍ଦ୍ରାଦେବୀ ପୁନରାୟ ସତରେ ଗର୍ଭବତୀ ହୋଇଛନ୍ତି । ଗର୍ଭଧାରଣ କାଳରେ ରମଣୀଙ୍କର ରୂପଲାବଣ୍ୟ ସର୍ବଦିଗରୁ ବର୍ଦ୍ଧିତ ହେବାର ଦେଖାଯାଏ । ଚନ୍ଦ୍ରାଦେବୀଙ୍କର ମଧ୍ୟ ତାହା ହିଁ ହୋଇଥିଲା । ଧନୀ ପ୍ରଭୃତି ତାଙ୍କର ପ୍ରତିବେଶୀମାନେ କହିବାକୁ ଲାଗିଲେ ଯେ, ଏଥର ଗର୍ଭଧାରଣ କରି ସେ ଅନ୍ୟଥର ଅପେକ୍ଷା ଅଧିକ ରୂପଲାବଣ୍ୟଶାଳିନୀ ହୋଇଛନ୍ତି । ସେମାନଙ୍କ ମଧ୍ୟରେ କେହି କେହି ଏହାଦେଖି କହୁଥିଲେ, ‘‘ବୃଦ୍ଧାବସ୍ଥାରେ ଗର୍ଭବତୀ ହୋଇ ସ୍ତ୍ରୀଲୋକଟିର ଏପରି ରୂପ ! ବୋଧହୁଏ ବ୍ରାହ୍ମଣୀ ଏଥର ପ୍ରସବ ସମୟରେ ମୃତ୍ୟୁ ମୁଖରେ ପତିତ ହେବ ।’’

## ଚନ୍ଦ୍ରାଦେବୀଙ୍କର ପୁନରାୟ ଗର୍ଭଧାରଣ ଓ ଏହି ସମୟରେ ତାଙ୍କର ଦିବ୍ୟ ଦର୍ଶନସମୂହ :

ସେ ଯାହା ହେଉନା କାହିଁକି, ଗର୍ଭବତୀ ହୋଇ ଶ୍ରୀମତୀ ଚନ୍ଦ୍ରାଙ୍କର ଦିବ୍ୟଦର୍ଶନ ଓ ଅନୁଭବସକଳ ଦିନକୁ ଦିନ ବର୍ଦ୍ଧିତ ହେବାକୁ ଲାଗିଲା । ଶୁଣାଯାଏ, ଏହି ସମୟରେ ସେ ପ୍ରାୟ ପ୍ରତିଦିନ ଦେବଦେବୀଙ୍କର ଦର୍ଶନଲାଭ କରୁଥିଲେ । କେବେ କେବେ ସେ ଅନୁଭବ କରୁଥିଲେ, ସେମାନଙ୍କ ଶ୍ରୀଅଙ୍ଗ ନିଃସୃତ ପୁଣ୍ୟ –ସୁବାସରେ ଗୃହ ପୂର୍ଣ୍ଣ ହୋଇଛି; କେତେବେଳେ ଅବା ଦୈବବାଣୀ ଶ୍ରବଣ କରି

ବିସ୍ମିତା ହୋଇଯାଉଥିଲେ । ଆହୁରି ମଧ୍ୟ ଶୁଣାଯାଏ ଯେ, ଏସମୟରେ ତାଙ୍କର ସମସ୍ତ ଦେବଦେବୀଙ୍କ ପ୍ରତି ମାତୃସ୍ନେହ ଉଦ୍‌ବେଳିତ ହୋଇ ଉଠିଥିଲା । ଶୁଣିବାକୁ ମିଳେ, ସେ ପ୍ରାୟ ପ୍ରତିଦିନ ଏସମସ୍ତ ଦର୍ଶନ ଓ ଅନୁଭବ କଥା ନିଜ ସ୍ୱାମୀଙ୍କ ନିକଟରେ ପ୍ରକାଶ କରି ତାଙ୍କର ଏପରି କାହିଁକି ହେଉଛି ବୋଲି ପ୍ରଶ୍ନ କରୁଥିଲେ । ଶ୍ରୀଯୁକ୍ତ କ୍ଷୁଦିରାମ ନାନାପ୍ରକାର ବୁଝାଇ ଏଥି ନିମିତ୍ତ ଶଙ୍କାକୁଳ ହେବାକୁ ତାଙ୍କୁ ନିଷେଧ କରୁଥିଲେ । ଏସମୟରେ ଗୋଟିଏ ଦିନର ଘଟଣା ଆମେ ଯେପରି ଶୁଣିଛୁ, ଏଠାରେ ବିବୃତ କରୁଛୁ । ତାଙ୍କ ସ୍ୱାମୀଙ୍କ ନିକଟରେ ସେଦିନ ଶ୍ରୀମତୀ ଚନ୍ଦ୍ରା ଭୟ ଚକିତା ହୋଇ କହିଥିଲେ, ଦେଖ, ଶିବମନ୍ଦିର ସମ୍ମୁଖରେ ଜ୍ୟୋତିଦର୍ଶନ ଦିନଠାରୁ କେତେ ଯେ ଦେବଦେବୀଙ୍କର ଦର୍ଶନ ପାଉଛି, ତାହାର ଶେଷ ନାହିଁ । ସେମାନଙ୍କ ମଧ୍ୟରେ ମୁଁ ଅନେକଙ୍କର ମୂର୍ତ୍ତି ଏହା ପୂର୍ବରୁ କେବେ ଛବିରେ ମଧ୍ୟ ଦେଖି ନାହିଁ । ଆଜି ଦେଖିଲି, ହଂସ ଉପରେ ବସି ଜଣେ ଦେବତା ଆସି ଉପସ୍ଥିତ ହେଲେ । ଏହା ଦେଖି ମୋର ଭୟ ହେଲା; ତାଙ୍କର ମୁଖମଣ୍ଡଳ ରୌଦ୍ରତାପରେ ରକ୍ତବର୍ଣ୍ଣ ହୋଇଥିବା ଦେଖି ମନ କଷ୍ଟ ହେଲା । କହିଲି, "ବାପାରେ ହଂସାସୀନ ଠାକୁର, ରୌଦ୍ରତାପରେ ତୋର ମୁହଁ ଯେ ଶୁଷ୍କ ହୋଇଯାଇଛି; ତେଣୁ ଘରେ ପଖାଳ ଅଛି, କିଛି ଖାଇ ଦେଇ ଥଣ୍ଡା ହୋଇ ଯାଆ !" ସେ ଏହିକଥା ଶୁଣି ହସି ଦେଇ ପବନରେ ମିଳାଇଗଲେ ! ଆଉ ଦେଖିପାରିଲି ନାହିଁ । ଏପରି କେତେ ମୂର୍ତ୍ତି ଦେଖୁଛି ! ପୂଜା ବା ଧ୍ୟାନ କରି ନୁହେଁ—ସହଜ ଅବସ୍ଥାରେ ଯେତେବେଳେ ସେତେବେଳେ ଦେଖିଥାଏ । କେତେବେଳେ ପୁଣି ଦେଖେ, ସେମାନେ ଯେପରି ମଣିଷ ପରି ସମ୍ମୁଖରେ ଆସୁ ଆସୁ ବାୟୁରେ ମିଳାଇ ଯାଉଛନ୍ତି । କାହିଁକି ଏପରି ଦେଖୁଛି, କୁହ ଦେଖି ? ମୋର କ'ଣ କିଛି ରୋଗ ହେଲା କି ? ବେଳେବେଳେ ଭାବେ ମୋତେ ଗୋସାଇଁ[୧] ଧରିଲେ ନା କ'ଣ ? ଶ୍ରୀଯୁକ୍ତ କ୍ଷୁଦିରାମ ସେତେବେଳେ ତାଙ୍କୁ ନିଜର ଗୟାଧାମର ସ୍ୱପ୍ନଦର୍ଶନ ବିଷୟ କହି ବୁଝାଇବାକୁ ଲାଗିଲେ ଯେ, ଅଶେଷ ସୌଭାଗ୍ୟ ଫଳରେ ସେ ଏଥର ପୁରୁଷୋତ୍ତମଙ୍କୁ ଗର୍ଭରେ ଧାରଣ କରିଛନ୍ତି ଏବଂ ତାଙ୍କର ପୁଣ୍ୟ ସଂସ୍ପର୍ଶ ଯୋଗୁଁ ତାଙ୍କର ଏପରି ଦିବ୍ୟଦର୍ଶନ ହେଉଅଛି । ସ୍ୱାମୀଙ୍କ

---

୧. ଶ୍ରୀଯୁକ୍ତ ସୁଖଲାଲ ଗୋସ୍ୱାମୀଙ୍କ ମୃତ୍ୟୁ ପରେ ନାନା ଦୈବ ଉତ୍ପାତ ଉପସ୍ଥିତ ହେବାରୁ ପଲ୍ଲୀବାସୀଗଣଙ୍କ ମନରେ ଧାରଣା ହୋଇଥିଲା ଯେ, ଉକ୍ତ ଗୋସ୍ୱାମୀ ବା ସେମାନଙ୍କ ବଂଶର କୌଣସି ବ୍ୟକ୍ତି ମରିବା ପରେ ପ୍ରେତ ହୋଇ ଗୋସ୍ୱାମୀଙ୍କର ଘର ସମ୍ମୁଖରେ ଯେଉଁ ବୃହତ୍ ବକୁଳ ଗଛ ଥିଲା, ସେଥିରେ ଅବସ୍ଥାନ କରୁଛନ୍ତି । ଏହି ବିଶ୍ୱାସ ପ୍ରଭାବରୁ ଏହି ସମୟରେ କାହାର କୌଣସି ଦିବ୍ୟଦର୍ଶନ ହେଲେ ଲୋକେ କହୁଥିଲେ, ଏହାକୁ 'ଗୋସାଇଁ ଧରିଛନ୍ତି ।' ସେଥିପାଇଁ ସରଳହୃଦୟା ଚନ୍ଦ୍ରାଦେବୀ ଏହି ସମୟରେ ଏପରି କହିଥିଲେ ।

ଉପରେ ଅସୀମ ବିଶ୍ୱାସଶାଳିନୀ ଚନ୍ଦ୍ରାଙ୍କର ହୃଦୟ ଏସମସ୍ତ କଥା ଶୁଣି ଦିବ୍ୟ ଭକ୍ତିରେ ପୂର୍ଣ୍ଣ ହେଲା ଓ ସେ ନୂତନ ବଳରେ ବଳଶାଳିନୀ ହୋଇ ନିଶ୍ଚିନ୍ତା ହେଲେ ।

ଏପରି ଦିନ ପରେ ଦିନ ଗଡ଼ି ଚାଲିଲା ଏବଂ ଶ୍ରୀଯୁକ୍ତ କ୍ଷୁଦିରାମ ଏବଂ ତାଙ୍କର ପୂତସ୍ୱଭାବା ଗୃହିଣୀ ଶ୍ରୀଶ୍ରୀରଘୁବୀରଙ୍କର ଏକାନ୍ତ ଶରଣାଗତ ରହି ଯାହାଙ୍କର ଶୁଭାଗମନରେ ସେମାନଙ୍କର ଜୀବନ ଐଶୀ ଭକ୍ତିରେ ପୂର୍ଣ୍ଣ ହୋଇଛି, ସେହି ମହାପୁରୁଷ-ପୁତ୍ରଙ୍କର ମୁଖଦର୍ଶନ ଆଶାରେ କାଳ ଅତିବାହିତ କରିବାକୁ ଲାଗିଲେ ।

# ପଞ୍ଚମ ଅଧ୍ୟାୟ

## ମହାପୁରୁଷଙ୍କ ଜନ୍ମକଥା

ଶରତ, ହେମନ୍ତ ଓ ଶୀତ ଅତୀତ ହୋଇ କ୍ରମେ ଋତୁରାଜ ବସନ୍ତ ଉପସ୍ଥିତ ହେଲା । ଶୀତ ଓ ଗ୍ରୀଷ୍ମର ସୁଖସମ୍ମିଳନରେ ମଧୁମୟ ଫାଲ୍‌ଗୁନ ସ୍ଥାବରଜଙ୍ଗମ ଭିତରେ ନବୀନ ପ୍ରାଣ ସଞ୍ଚାରିତ କରି ଆଜି ମାସର ଷଷ୍ଠ ଦିବସରେ ଉପନୀତ ହୋଇଛି । ଜୀବ ଜଗତରେ ଏକ ବିଶେଷ ଉତ୍ସାହ, ଆନନ୍ଦ ଓ ପ୍ରେମର ପ୍ରେରଣା ସର୍ବତ୍ର ପରିଲକ୍ଷିତ ହେଉଅଛି । ଶାସ୍ତ୍ରରେ ଅଛି, ବ୍ରହ୍ମାନନ୍ଦର ଗୋଟିଏ କଣା ସମସ୍ତଙ୍କ ମଧ୍ୟରେ ନିହିତ ଥାଇ ସେମାନଙ୍କୁ ସରସ କରି ରଖିଛି — ଏହି ଦିବ୍ୟୋଜ୍ଜ୍ୱଳ ଆନନ୍ଦକଣା କିଞ୍ଚିତ୍ ଅଧିକ ମାତ୍ରାରେ ପାଇ କ'ଣ ଏହି କାଳ ସଂସାରର ସର୍ବତ୍ର ଏପରି ଉଲ୍ଲାସ ଆନୟନ କରିଥାଏ ?

**ଚନ୍ଦ୍ରାଦେବୀଙ୍କର ଆଶଙ୍କା ଓ ସ୍ୱାମୀଙ୍କ କଥାରେ ଆଶ୍ୱାସ ପ୍ରାପ୍ତି :**

ରଘୁବୀରଙ୍କର ଭୋଗ ରାନ୍ଧିଲା ବେଳେ ଆସନ୍ନ ପ୍ରସବା ଶ୍ରୀମତୀ ଚନ୍ଦ୍ରାଦେବୀ ଆଜି ପ୍ରାଣରେ ଦିବ୍ୟ ଉଲ୍ଲାସ ଅନୁଭବ କରୁଥିଲେ, କିନ୍ତୁ ଶରୀର ନିତାନ୍ତ ଅବସନ୍ନ ବୋଧ ହେଲା । ହଠାତ୍ ତାଙ୍କର ମନେହେଲା, ଶରୀରର ଯେପରି ଅବସ୍ଥା ସେଥିରେ କେତେବେଳେ କ'ଣ ହେବ; ଏବେ ଯଦି ପ୍ରସବ ସମୟ ଉପସ୍ଥିତ ହୁଏ ତାହେଲେ ଘରେ ଦ୍ୱିତୀୟ ଲୋକ କେହି ନାହାନ୍ତି, ଯିଏ ଆଜିର ଠାକୁର ପୂଜା କରିବ । ତା'ହେଲେ ଉପାୟ କ'ଣ ? ଏଥିରେ ଭୟଭୀତା ହୋଇ ସ୍ୱାମୀଙ୍କ ନିକଟରେ ଏକଥା ନିବେଦନ କଲେ । ଶ୍ରୀଯୁକ୍ତ କ୍ଷୁଦିରାମ ତାଙ୍କୁ ଆଶ୍ୱାସ ପ୍ରଦାନପୂର୍ବକ କହିଲେ, ''ଭୟ କର ନାହିଁ, ତୁମର ଗର୍ଭରେ ଯିଏ ଶୁଭାଗମନ କରିଛନ୍ତି ସେ ରଘୁବୀରଙ୍କର ପୂଜାସେବାରେ ବିଘ୍ନ ଉପୁଜାଇ କେବେହେଲେ ସଂସାରରେ ପ୍ରବେଶ କରିବେ ନାହିଁ— ଏହା ମୋର ଧ୍ରୁବ ବିଶ୍ୱାସ; ଅତଏବ ନିଶ୍ଚିନ୍ତ ରହି ଆଜି ତୁମେ ଠାକୁର ସେବା କରିଚାଲ; ଆସନ୍ତା କାଲିଠାରୁ ମୁଁ ଏହାର ଭିନ୍ନ ବନ୍ଦୋବସ୍ତ କରି ରଖିଛି ଏବଂ ଧନୀକୁ ମଧ୍ୟ କହିଛି, ସେ ଆଜିଠାରୁ ରାତିରେ ଏଠାରେ ଶୟନ କରିବ ।'' ଶ୍ରୀମତୀ ଚନ୍ଦ୍ରାଦେବୀ ସ୍ୱାମୀଙ୍କର ଏପରି କଥାରେ ଶରୀରରେ ନୂତନ ବଳସଞ୍ଚାର ଅନୁଭବ କଲେ ଏବଂ ହୃଷ୍ଟଚିତ୍ତରେ ପୁନରାୟ ଗୃହକର୍ମରେ ବ୍ୟାପୃତ ହେଲେ । ଘଟଣା ମଧ୍ୟ ସେହି ପ୍ରକାରର ହେଲା — ରଘୁବୀରଙ୍କର ମଧ୍ୟାହ୍ନ-ଭୋଗ ଏବଂ ସନ୍ଧ୍ୟାଶୀତଳାଦି କର୍ମ ସେଦିନ ନିର୍ବିଘ୍ନରେ ସମ୍ପାଦିତ ହେଲା । ରାତ୍ରି ଆହାରାଦି ସମାପନ କରି ଶ୍ରୀଯୁକ୍ତ କ୍ଷୁଦିରାମ ଓ ରାମକୁମାର ଶୟନ କକ୍ଷରେ ପ୍ରବେଶ କଲେ ଏବଂ ଧନୀ ଆସି ଚନ୍ଦ୍ରାଦେବୀଙ୍କ ସହ ଅନ୍ୟ ଗୋଟିଏ କୋଠରୀରେ ଶୟନ କଲେ । ରଘୁବୀରଙ୍କ ଘର ବ୍ୟତୀତ

ଗୃହରେ ରହିବା ପାଇଁ ୨ଖଣ୍ଡ ଚାଳଘର ଓ ଗୋଟିଏ ରନ୍ଧନଶାଳା ଥିଲା, ଆଉ ଗୋଟିଏ କ୍ଷୁଦ୍ର ଚାଳଘରର ଏକ ପାର୍ଶ୍ୱରେ ଧାନ କୁଟିବା ନିମିତ୍ତ ଗୋଟିଏ ଢିଙ୍କି ଏବଂ ଧାନ ସିଝାଇବା ପାଇଁ ଗୋଟିଏ ଚୁଲି ଥିଲା । ସ୍ଥାନାଭାବ ଯୋଗୁଁ ଶେଷୋକ୍ତ ଚାଳଘରଟି ଶ୍ରୀମତୀ ଚନ୍ଦ୍ରାଙ୍କର ସୂତିକାଗୃହରୂପରେ ନିର୍ଦ୍ଦିଷ୍ଟ ହୋଇଥିଲା ।

## ଗଦାଧରଙ୍କ ଜନ୍ମ :

ରାତି ପାହିବାର ପ୍ରାୟ ଅର୍ଦ୍ଧଦଣ୍ଡ ଅବଶିଷ୍ଟ ଅଛି, ଏପରି ସମୟରେ ଚନ୍ଦ୍ରାଦେବୀଙ୍କର ପ୍ରସବ ପୀଡ଼ା ଉପସ୍ଥିତ ହେଲା । ଧନୀ ସାହାଯ୍ୟରେ ସେ ପୂର୍ବୋକ୍ତ ଢିଙ୍କିଶାଳକୁ ଯାଇ ଶୟନ କଲେ ଏବଂ କିଛି କ୍ଷଣ ପରେ ଏକ ପୁତ୍ର-ସନ୍ତାନ ପ୍ରସବ କଲେ । ଶ୍ରୀମତୀ ଚନ୍ଦ୍ରାଙ୍କ ନିମିତ୍ତ ଧନୀ ତତ୍‌କାଳୋପଯୋଗୀ ବ୍ୟବସ୍ଥା କରି ନବଜାତକକୁ ସାହାଯ୍ୟ କରିବାକୁ ଯାଇ ଦେଖିଲା, ଏହାପୂର୍ବରୁ ତାକୁ ଯେଉଁଠି ରଖିଥିଲା, ସେହି ସ୍ଥାନରୁ ସେ ଅନ୍ତର୍ହିତ ହୋଇଯାଇଛି ! ଭୟଭୀତ ହୋଇ ଧନୀ ଦୀପ ଆଲୋକ ତେଜି ଅନୁସନ୍ଧାନ କରି ଦେଖିଲା, ରକ୍ତକ୍ଳେଦମୟ ପିଚ୍ଛିଳ ଭୂମିରେ ଗଡ଼ିଯାଇ ଧାନ ସିଝାଇବା ଚୁଲି ଭିତରେ ପ୍ରବେଶ କରି ସେ ବିଭୂତିଭୂଷିତାଙ୍ଗ ହୋଇ ପଡ଼ିରହିଛି, ଅଥଚ କୌଣସି ଶବ୍ଦ କରୁ ନାହିଁ । ଧନୀ ତାକୁ ଯତ୍ନରେ ଉଠାଇ ନେଲା ଏବଂ ପରିଷ୍କାର କରି ଦୀପାଲୋକରେ ଦେଖିଲା — ଅଦ୍ଭୁତ, ପ୍ରିୟଦର୍ଶନ ବାଳକ ଯେପରି ଛଅମାସର ପିଲା ପରି ବଡ଼ । ପ୍ରତିବେଶୀ ଲାହାବାବୁଙ୍କ ଘରୁ ସେତେବେଳେ ପ୍ରସନ୍ନପ୍ରମୁଖ ଚନ୍ଦ୍ରାଦେବୀଙ୍କର ସମବୟସୀ ଦୁଇ ଚାରିଜଣ ସମ୍ବାଦ ପାଇ ସେଠାରେ ଉପସ୍ଥିତ ହେବାରୁ ଧନୀ ସେମାନଙ୍କ ନିକଟରେ ଏସମ୍ବାଦ ଜଣାଇଲା । ଏହା ସହିତ ପୂତଗମ୍ଭୀର ବ୍ରାହ୍ମମୁହୂର୍ତ୍ତରେ ଶ୍ରୀଯୁକ୍ତ କ୍ଷୁଦିରାମଙ୍କର ତପସ୍ୱୀ ଦରିଦ୍ର କୁଟୀର ଶୁଭ ଶଙ୍ଖନାଦରେ ପୂର୍ଣ୍ଣ ହୋଇ ମହାପୁରୁଷଙ୍କର ଶୁଭାଗମନବାର୍ତ୍ତା ସଂସାରରେ ପ୍ରଚାର କଲା ।

## ଗଦାଧରଙ୍କ ଶୁଭ ଜନ୍ମମୁହୂର୍ତ୍ତ ସମ୍ବନ୍ଧରେ ଜ୍ୟୋତିଷ-ଶାସ୍ତ୍ରର କଥା :

ଅନନ୍ତର ଶାସ୍ତ୍ରଜ୍ଞ କ୍ଷୁଦିରାମ ନବାଗତ ବାଳକର ଜନ୍ମଲଗ୍ନ ନିରୂପଣ କରିବାକୁ ଯାଇ ଦେଖିଲେ, ଜାତକ ବିଶେଷ ଶୁଭକ୍ଷଣରେ ସଂସାରରେ ପ୍ରବେଶ କରିଅଛି । ଦେଖିଲେ — ଉକ୍ତ ଦିନ ସନ ୧୨୪୨ ସାଲ ଅଥବା ୧୭୫୭ ଶକାବ୍ଦ ଫାଲ୍‌ଗୁନ ଛଅଦିନ, ଇଂରାଜୀ ୧୮୩୬ ଖ୍ରୀଷ୍ଟାବ୍ଦର ଫେବ୍ରୁଆରୀ ୧୮, ଶୁକ୍ଳପକ୍ଷ, ବୁଧବାର । ରାତ୍ରି ଏକତିରିଶ ଦଣ୍ଡ ଅତୀତ ହୋଇ ଅର୍ଦ୍ଧଦଣ୍ଡ ମାତ୍ର ଅବଶିଷ୍ଟ ରହିଥିବା ବେଳେ ବାଳକ ଭୂମିଷ୍ଠ ହୋଇଥିଲେ । ଶୁଭ ଦ୍ୱିତୀୟା ତିଥି ଏସମୟରେ ପୂର୍ବଭାଦ୍ରପଦ ନକ୍ଷତ୍ର ସହିତ ସଂଯୁକ୍ତ ହୋଇ ଭୂମଣ୍ଡଳରେ ସିଦ୍ଧିଯୋଗ ଆନୟନ କରିଥିଲା । ବାଳକର ଜନ୍ମ ଲଗ୍ନରେ ରବି, ଚନ୍ଦ୍ର ଓ ବୁଧ ଏକତ୍ର ମିଳିତ ରହିଛି ଏବଂ ଶୁକ୍ର ମଙ୍ଗଳ ଓ ଶନି ତୁଙ୍ଗସ୍ଥାନ ଅଧିକାରପୂର୍ବକ ତାଙ୍କର ଅସାଧାରଣ ଜୀବନର ପରିଚାୟକ

ହୋଇ ରହିଅଛି । ପୁନଶ୍ଚ ମହାମୁନି ପରାଶରଙ୍କ ମତ ଅବଲମ୍ବନପୂର୍ବକ ଦେଖିଲେ ରାହୁ ଓ କେତୁ ଗ୍ରହଦ୍ବୟଙ୍କୁ ତାଙ୍କର ଜନ୍ମ ସମୟରେ ତୁଙ୍ଗସ୍ଥ ଦେଖିବାକୁ ମିଳେ । ତଦୁପରି, ବୃହସ୍ପତି ତୁଙ୍ଗାଭିଳାଷିରୂପେ ବର୍ତ୍ତମାନ ରହି ବାଳକର ଅଦୃଷ୍ଟ ଉପରେ ବିଶେଷ ଶୁଭପ୍ରଭାବ ବିସ୍ତାର କରି ରହିଅଛି ।

### ଗଦାଧରଙ୍କ ରାଶ୍ୟାଶ୍ରିତ ନାମ :

ଅନନ୍ତର ବିଶିଷ୍ଟ ଜ୍ୟୋତିର୍ବିଦ୍‌ଗଣ ନବଜାତକ ବାଳକର ଜନ୍ମକ୍ଷଣ ପରୀକ୍ଷା ପୂର୍ବକ ମତ ଦେଲେ, ''ଜାତକ ଯେପରି ଉଚ୍ଚଲଗ୍ନରେ ଜନ୍ମଗ୍ରହଣ କରିଅଛି, ସେ ସମ୍ବନ୍ଧରେ ଜ୍ୟୋତିଷଶାସ୍ତ୍ର ନିଃସନ୍ଦେହରେ ଜଣାଇଦିଏ ଯେ, ଏପରି ବ୍ୟକ୍ତି ଧର୍ମବିତ୍ ଓ ମାନନୀୟ ହେବେ ଏବଂ ସର୍ବଦା ପୁଣ୍ୟକର୍ମର ଅନୁଷ୍ଠାନରେ ରତ ରହିବେ । ବହୁ ଶିଷ୍ୟପରିବୃତ ହୋଇ ଉକ୍ତ ବ୍ୟକ୍ତି ଦେବମନ୍ଦିରରେ ବାସ କରିବେ ଏବଂ ନବୀନ ଧର୍ମ ସମ୍ପ୍ରଦାୟ ପ୍ରବର୍ତ୍ତିତ କରି ନାରାୟଣ ଅଂଶସମ୍ଭୁତ ମହାପୁରୁଷ ବୋଲି ଜଗତରେ ପ୍ରସିଦ୍ଧିଲାଭପୂର୍ବକ ସର୍ବତ୍ର ସବୁଲୋକଙ୍କ ପୂଜ୍ୟ ହେବେ ।''[୧] ଶ୍ରୀଯୁକ୍ତ କ୍ଷୁଦିରାମଙ୍କର ମନ ଏହାଦ୍ବାରା ବିସ୍ମୟପୂର୍ଣ୍ଣ ହେଲା । ସେ କୃତଜ୍ଞ ହୃଦୟରେ ଭାବିବାକୁ ଲାଗିଲେ, ଗୟାଧାମରେ ସେ ଯେଉଁ ଦେବସ୍ବପ୍ନ ସନ୍ଦର୍ଶନ କରିଥିଲେ, ତାହା ସତ୍ୟ ସତ୍ୟ ହିଁ ପୂର୍ଣ୍ଣ ହେଲା । ଏହାପରେ ଜାତକର୍ମ ସମାପନପୂର୍ବକ ବାଳକର ରାଶ୍ୟାଶ୍ରିତ ନାମ ଶ୍ରୀଯୁକ୍ତ ଶମ୍ଭୁଚନ୍ଦ୍ର ସ୍ଥିର କଲେ ଏବଂ ଗୟାଧାମରେ ଅବସ୍ଥାନ ସମୟରେ ନିଜର ବିଚିତ୍ର ସ୍ବପ୍ନର କଥା ସ୍ମରଣ କରି ତାହାଙ୍କୁ ସର୍ବଜନସମ୍ମୁଖରେ ଶ୍ରୀଯୁକ୍ତ ଗଦାଧର ନାମରେ ଅଭିହିତ କରିବାକୁ ମନସ୍ଥ କଲେ ।

### ଗଦାଧରଙ୍କ ଜନ୍ମକୁଣ୍ଡଳୀ :

ପାଠକମାନଙ୍କ ନିମନ୍ତେ ଶ୍ରୀରାମକୃଷ୍ଣଦେବଙ୍କର ବିଚିତ୍ର ଜନ୍ମକୁଣ୍ଡଳୀ ସହିତ ତାଙ୍କର କୋଷ୍ଠୀର କିୟଦଂଶ ନିମ୍ନରେ ପ୍ରଦାନ କରାଯାଉଛି ।[୨] ଜ୍ୟୋତିଷଶାସ୍ତ୍ରାଭିଜ୍ଞ

---

୧. ଧର୍ମସ୍ଥାନାଧିପେ ତୁଙ୍ଗେ ଧର୍ମସ୍ଥେ ତୁଙ୍ଗଖେଚରେ ।
ଗୁରୁଣା ଦୃଷ୍ଟିସଂଯୋଗେ ଲଗ୍ନେଶେ ଧର୍ମସଂସ୍ଥିତେ ।।
କେନ୍ଦ୍ରସ୍ଥାନଗତେ ସୌମ୍ୟେ ଗୁରୌ ଚୈବ ତୁ କୋଣଭେ ।
ସ୍ଥିରଲଗ୍ନେ ଯଦା ଜନ୍ମ-ସମ୍ପ୍ରଦାୟପ୍ରଭୁଃ ହି ସଃ ।।
ଧର୍ମବିନ୍ମାନନୀୟସ୍ତୁ ପୁଣ୍ୟକର୍ମରତଃ ସଦା ।
ଦେବମନ୍ଦିରବାସୀ ଚ ବହୁଶିଷ୍ୟସମନ୍ବିତଃ ।।
ମହାପୁରୁଷସଂଜ୍ଞୋଽୟଂ ନାରାୟଣାଂଶସମ୍ଭବଃ ।
ସର୍ବତ୍ର ଜନପୂଜ୍ୟଶ୍ଚ ଭବିଷ୍ୟତି ନ ସଂଶୟଃ ।।
ଇତି ଭୃଗୁସଂହିତାୟାଂ ସମ୍ପ୍ରଦାୟପ୍ରଭୁଯୋଗଃ ତତ୍‌ଫଲଞ୍ଚ ।

ଶ୍ରୀଯୁକ୍ତ ନାରାୟଣଚନ୍ଦ୍ର ଜ୍ୟୋତିର୍ଭୂଷଣ-କୃତ ଠାକୁରଙ୍କର ଜନ୍ମକୋଷ୍ଠିରୁ ଏହା ଉଦ୍ଧୃତ କରାହେଲା ।

୨. ଠାକୁରଙ୍କର ଜନ୍ମକାଳ ସମ୍ବନ୍ଧରେ କେତୋଟି କଥା ଏଠାରେ ପାଠକମାନଙ୍କୁ ଜଣାଇବା ଆବଶ୍ୟକ ବିବେଚନା କରି ଏଠାରେ ପ୍ରକାଶ କରାଯାଉଛି । ଦକ୍ଷିଣେଶ୍ୱରରେ ଶ୍ରୀରାମକୃଷ୍ଣଦେବଙ୍କ

ନିକଟକୁ ଯାତାୟାତ କରିବା ସମୟରେ ଆମେ ଅନେକେ ତାଙ୍କ କହିବା ଅନୁସାରେ ଶୁଣିଥିଲୁ, 'ତାଙ୍କର ଯଥାର୍ଥ ଜନ୍ମପତ୍ରିକା ହଜିଯାଇଛି ଏବଂ ତା ପରିବର୍ତ୍ତେ ବହୁକାଳ ପରେ ଯେଉଁ ଜନ୍ମପତ୍ରିକା କରାଯାଇଛି, ତାହା ଭ୍ରମପ୍ରମାଦପୂର୍ଣ୍ଣ ।' ତାଙ୍କ ନିକଟରୁ ଆମେ ବହୁବାର ଶୁଣିଅଛୁ ଯେ, ତାଙ୍କର ଜନ୍ମ 'ଫାଲଗୁନ ଶୁକ୍ଳ ପକ୍ଷ ଦ୍ୱିତୀୟା ତିଥିରେ ହୋଇଥିଲା, ସେହି ଦିନ ବୁଧବାର ଥିଲା ।' ତାଙ୍କର କୁମ୍ଭରାଶି ଏବଂ 'ଜନ୍ମଲଗ୍ନରେ ରବି, ଚନ୍ଦ୍ର ଓ ବୁଧ ଥିଲା ।' 'ଲୀଳାପ୍ରସଙ୍ଗ' ଲେଖିବା ସମୟରେ ତାଙ୍କର ଜୀବନର ଘଟଣାବଳୀର ଯଥାଯଥ ମସିହା-ତାରିଖ- ନିର୍ଣ୍ଣୟ ନିମିତ୍ତ ଆମେ ଶେଷୋକ୍ତ ଜନ୍ମପତ୍ରିକାଟି ଆଣି ଦେଖୁ ଯେ ଏଥିରେ ତାଙ୍କର ଜନ୍ମକାଳ ସମ୍ବନ୍ଧରେ ଏପରି ଲେଖାଅଛି—'ଶକ ୧୭୫୬।୧୦।୯।୫୯।୧୨ ଫାଲ୍‌ଗୁନସ୍ୟ ଦଶମଦିବସେ ବୁଧବାସରେ ଗୌରପକ୍ଷେ ଦ୍ୱିତୀୟାୟାଂ ତିଥୌ ପୂର୍ବଭାଦ୍ରପଦନକ୍ଷତ୍ରେ' ତାଙ୍କର ଜନ୍ମ ହୋଇଥିଲା । ଏହି ବର୍ଷର ପଞ୍ଜିକା ଅଣାଇବାରୁ ଦେଖାଗଲା, ଉକ୍ତ କୋଷ୍ଠୀରେ ଉଲ୍ଲିଖିତ ବର୍ଷର ଏହି ଦିବସରେ କୃଷ୍ଣପକ୍ଷ ନବମୀ ତିଥି ଏବଂ ଶୁକ୍ରବାର ପଡ଼ିଛି । ସୁତରାଂ ଉକ୍ତ ଜନ୍ମପତ୍ରିକାଖଣ୍ଡିକ ଠାକୁର କାହିଁକି ଭ୍ରମପୂର୍ଣ୍ଣ କହୁଥିଲେ, ତାହା ବୁଝିପାରି ଏହା ପରିତ୍ୟାଗପୂର୍ବକ ପୁରାତନ ପଞ୍ଜିକାଗୁଡ଼ିକ ଅନୁସନ୍ଧାନ କରିବାକୁ ଲାଗିଲୁ ଯେ, କେଉଁ ଶକରେ ଫାଲ୍‌ଗୁନ ମାସର ଶୁକ୍ଳା ଦ୍ୱିତୀୟାରେ ବୁଧବାର ଏବଂ ରବି, ଚନ୍ଦ୍ର ଓ ବୁଧ କୁମ୍ଭରାଶିରେ ଏକତ୍ର ମିଳିତ ହୋଇଅଛି । ଅନୁସନ୍ଧାନ ଫଳରେ ଏପରି ଦୁଇଟି ଦିନ ପ୍ରାପ୍ତ ହେଲା, ଗୋଟିଏ ୧୭୫୪ ଶକରେ ଏବଂ ଦ୍ୱିତୀୟଟି ୧୭୫୭ ଶକରେ । ତନ୍ମଧ୍ୟରୁ ପ୍ରଥମଟିକୁ ଆମେ ତ୍ୟାଗ କଲୁ । କାରଣ୧୭୫୪ ଶକ ଠାକୁରଙ୍କର ଜନ୍ମକାଳ ବୋଲି ନିର୍ଣ୍ଣୟ କଲେ, ତାହାଙ୍କ ମୁହଁରୁ ତାଙ୍କର ବୟସ ସମ୍ବନ୍ଧରେ ଯାହା ଶୁଣିଅଛୁ, ତାହା ଅପେକ୍ଷା ୩ ବର୍ଷ ୨ ମାସ ବଢ଼ାଇ ତାଙ୍କର ଆୟୁ ଗଣନା କରିବାକୁ ହେବ । ପକ୍ଷାନ୍ତରେ, ୧୭୫୭ ଶକକୁ ତାଙ୍କର ଜନ୍ମକାଳ ବୋଲି ନିର୍ଣ୍ଣୟ କଲେ, ତାହାଙ୍କର ଜୀବନକାଳରେ ଦକ୍ଷିଣେଶ୍ୱରରେ ଭକ୍ତଗଣ ତାଙ୍କର ଯେଉଁ ଜନ୍ମୋତ୍ସବ କରୁଥିଲେ ଓ ସେସମୟରେ ସେ ନିଜ ବୟସ ସମ୍ବନ୍ଧରେ ଯେପରି ନିର୍ଣ୍ଣୟ କରୁଥିଲେ, ତାହା ବୃଦ୍ଧିକରି ତାଙ୍କର ପରମାୟୁ ଗଣନା କରିବାକୁ ହୁଏ ନାହିଁ । କେବଳ ତାହା ନୁହେଁ, ଆମେମାନେ ବିଶେଷସୂତ୍ରରୁ ଶୁଣିଅଛୁ, ଠାକୁରଙ୍କର ବିବାହ କାଳରେ ତାଙ୍କର ବୟସ ୨୪ ବର୍ଷ ଏବଂ ଶ୍ରୀଶ୍ରୀ ମାତାଠାକୁରାଣୀଙ୍କର ବୟସ ୫ ବର୍ଷ ମାତ୍ର ଥିଲା—ଏହି ବିଷୟରେ ମଧ୍ୟ କୌଣସି ବ୍ୟତିକ୍ରମ କରିବାକୁ ହୁଏ ନାହିଁ । ତତ୍‌ଭିନ୍ନ, ଠାକୁରଙ୍କର ଦେହରକ୍ଷା ପରେ ସମବେତ ଭକ୍ତଗଣଙ୍କ ଦ୍ୱାରା କାଶୀପୁର-ଶ୍ମଶାନର ମୃତ୍ୟୁ-ନିର୍ଣ୍ଣାୟକ(ରେଜିଷ୍ଟର) ପୁସ୍ତକରେ ତାଙ୍କର ବୟସ ୫୧ ବର୍ଷ ଲେଖା ହୋଇଥିଲା—ସେଥିରେ ମଧ୍ୟ କୌଣସି ପରିବର୍ତ୍ତନ ଆବଶ୍ୟକ ହୁଏ ନାହିଁ । ଏହି ସମସ୍ତ କାରଣରୁ ଆମେମାନେ ଠାକୁରଙ୍କର ଜନ୍ମକାଳ ୧୭୫୭ ଶକକୁ ହିଁ ଅବଧାରିତ କଲୁ ।

କେବଳ ଏହା କରି ଆମେମାନେ କ୍ଷାନ୍ତ ହୋଇ ନାହୁଁ । କିନ୍ତୁ କଲିକତା, ବହୁବଜାର, ୨ ନମ୍ବର ରାସବିହାରୀ ଠାକୁର ଲେନ୍-ନିବାସୀ ଶ୍ରୀଯୁକ୍ତ ଶଶୀଭୂଷଣ ଭଟ୍ଟାଚାର୍ଯ୍ୟଙ୍କର ନଷ୍ଟ କୋଷ୍ଠୀ-ଉଦ୍ଧାରର ଅସାଧାରଣ କ୍ଷମତା କଥା ଜାଣିପାରି ତାଙ୍କ ପାଖକୁ ଶ୍ରୀଶ୍ରୀମାତାଠାକୁରାଣୀଙ୍କର ଜନ୍ମକୁଣ୍ଡଳୀ ପ୍ରେରଣ କରିଥିଲୁ ଏବଂ ତତ୍‌ଦୃଷ୍ଟେ ଗଣନା କରି ଠାକୁରଙ୍କର ଜନ୍ମକୁଣ୍ଡଳୀ ନିର୍ଣ୍ଣୟ କରିଦେବା ପାଇଁ ଅନୁରୋଧ କରିଥିଲୁ । ସେ ମଧ୍ୟ ଏହି ବିଷୟରେ ଗଣନାପୂର୍ବକ ୧୭୫୭ ଶକକୁ ହିଁ ଠାକୁରଙ୍କର ଜନ୍ମକାଳ ବୋଲି ସ୍ଥିର କରିଥିଲେ ।

ଏହିପରି ୧୭୫୭ ଶକାବ୍ଦ ବା ୧୮୩୬ ଖ୍ରୀଷ୍ଟାବ୍ଦରେ ଠାକୁରଙ୍କ ଜନ୍ମ ହୋଇଥିଲା, ଏବିଷୟରେ ଦୃଢ଼ନିଶ୍ଚୟ ହୋଇ ଆମେ ଶ୍ରଦ୍ଧାସ୍ପଦ ପଣ୍ଡିତ ଶ୍ରୀଯୁକ୍ତ ନାରାୟଣ ଚନ୍ଦ୍ର ଜ୍ୟୋତିର୍ଭୂଷଣ ମହାଶୟଙ୍କୁ ତଦନୁସାରେ ଠାକୁରଙ୍କର ଜନ୍ମକୋଷ୍ଠୀ ଗଣନା କରିବାକୁ ଅନୁରୋଧ କରିଥିଲୁ ଏବଂ ସେ ବହୁ ପରିଶ୍ରମ ସ୍ୱୀକାର ପୂର୍ବକ ତାହା ସମ୍ପନ୍ନ କରି ଆମକୁ କୃତଜ୍ଞତାପାଶରେ ଆବଦ୍ଧ କରିଛନ୍ତି ।

ଠାକୁରଙ୍କର ବ୍ରାହ୍ମମୁହୂର୍ତ୍ତରେ ଜନ୍ମ କଥା ଆମେ କେବଳ କୋଷ୍ଠି ଗଣନାରେ ସ୍ଥିର କରି ନାହୁଁ; ତାଙ୍କର ପରିବାରବର୍ଗଙ୍କଠାରୁ ଶୁଣିଥିବା ଘଟଣାରୁ ମଧ୍ୟ ନିର୍ଣ୍ଣୟ କରିଅଛୁ । ସେମାନେ

ପାଠକ ତାହା ଦେଖି ବୁଝିପାରିବେ ଯେ, ଏହା ଭଗବାନ ଶ୍ରୀରାମଚନ୍ଦ୍ର, ଶ୍ରୀକୃଷ୍ଣ, ଶ୍ରୀଶଙ୍କର ଓ ଶ୍ରୀକୃଷ୍ଣଚୈତନ୍ୟାଦି ଅବତାର-ପ୍ରଥିତ ପୁରୁଷସକଳଙ୍କ ଅପେକ୍ଷା କୌଣସି ଭାବରେ କମ୍ ନୁହେଁ ।

---

କହନ୍ତି, ଠାକୁର ଜନ୍ମଗ୍ରହଣ କରିବା ଅବ୍ୟବହିତ ପରେ ସୂତିକାଗୃହରେ ଥିବା ଧାନସିଝା ଚୁଲି ଭିତରେ ପଡ଼ି ଭସ୍ମାଚ୍ଛାଦିତ ହୋଇଥିଲେ । ସଦ୍ୟୋଜାତ ଶିଶୁର ଏପରି ଅବସ୍ଥା ହେବା ଅନ୍ଧକାରରେ ଜଣାପଡ଼ି ନ ଥିଲା । ପରେ ଆଲୋକ ଆଣି ଖୋଜା ଖୋଜି କରିବା ପରେ ଉକ୍ତ ଚୁଲି ଭିତରୁ ତାଙ୍କୁ ବାହାର କରାଯାଇଥିଲା ।

ଯାହାହେଉ, ୧୭୫୭ ଶକାବ୍ଦରେ ଫାଲଗୁନ ଦ୍ୱିତୀୟାରେ ଠାକୁରଙ୍କର ଜନ୍ମ ଯେପରି ଅଦ୍ଭୁତ ଲଗ୍ନରେ ହୋଇଥିଲା, ତାହା ଶ୍ରୀଯୁକ୍ତ ନାରାୟଣ ଚନ୍ଦ୍ର ଜ୍ୟୋତିର୍ଭୂଷଣ-କୃତ ତାଙ୍କର କୋଷ୍ଠି ଦେଖିଲେ ସମ୍ୟକ୍ ଉପଲବ୍ଧି ହୁଏ । ତତ୍‌ସହ ଠାକୁରଙ୍କର ଅଲୌକିକ ଜୀବନର ଘଟଣା -ସମୂହ କୋଷ୍ଠି ସହିତ ମିଳାଇ ସ୍ପଷ୍ଟ ବୁଝାଯାଏ ଯେ, ଭାରତର ଜ୍ୟୋତିଷଶାସ୍ତ୍ର ଯଥାର୍ଥରେ ହିଁ ସତ୍ୟ ଉପରେ ପ୍ରତିଷ୍ଠିତ ।

ପରିଶେଷରେ ଏଠାରେ କହିବାର କଥା ଯେ, ଠାକୁରଙ୍କର ଭ୍ରମପୂର୍ଣ୍ଣ ପୁରାତନ କୋଷ୍ଠି, ଶ୍ରୀଯୁକ୍ତ ନାରାୟଣଚନ୍ଦ୍ର ଜ୍ୟୋତିର୍ଭୂଷଣକୃତ ତାଙ୍କର ବିଶୁଦ୍ଧ କୋଷ୍ଠି ଏବଂ ଶ୍ରୀଯୁକ୍ତ ଶଶିଭୂଷଣ ଭଟ୍ଟାଚାର୍ଯ୍ୟ, ଶ୍ରୀଶ୍ରୀମାତା ଠାକୁରାଣୀଙ୍କର ଜନ୍ମ କୁଣ୍ଡଳୀ ସାହାଯ୍ୟରେ ଗଣନାପୂର୍ବକ ଠାକୁରଙ୍କର ଯେଉଁ ଜନ୍ମକୁଣ୍ଡଳୀ ପ୍ରସ୍ତୁତ କରିଥିଲେ ସେ ସମସ୍ତ ଜନ୍ମକୁଣ୍ଡଳୀ ବେଲୁଡ଼ ମଠରେ ସଯତ୍ନେ ସୁରକ୍ଷିତ ରହିଅଛି ।




| ଦିବା—୨୮।୨୮।୧୫ | | |
|---|---|---|
| ୪ | ୨୪ | ୨୦ |
| ୧ | ୫୧ | ୪୯ |
| ୪୬ | ୨୬ | ୫୯ |
| ୪୪ | କିଂ | ୬ |
| ଜାତାହଃ | | |

| ଦିବା—୨୮।୩୧ | | |
|---|---|---|
| ୫ | ୨୫ | ୨୧ |
| ୨ | ୫୧ | ୪୧ |
| ୪୫ | ୪୧ | ୪୮ |
| ୧୬ | ୨ | ୭ |
| ପରାହଃ | | |

ଚାନ୍ଦ୍ରଫାଲ୍‌ଗୁନସ୍ୟ ଶୁକ୍ଳପକ୍ଷୀୟ-ଦ୍ୱିତୀୟା ଜନ୍ମତିଥିଃ ।
ପୂର୍ବଭାଦ୍ରପଦ ନକ୍ଷତ୍ର-ମାନଂ ୬୦।୧୫।୦

"ଶୁଭମସ୍ତୁ । ଶକ-ନରପତେରତୀତାବ୍ଦାଦୟଃ ୧୭୫୭/୧୦/୫/୫୯/୨୮/୨୯ ସନ ୧୨୪୨ ସାଲ, ୬ ଫାଲଗୁନ, ବୁଧବାର, ରାତ୍ରି ଅବସାନେ (ଅର୍ଦ୍ଧଦଣ୍ଡ ରାତ୍ରି ଅବଶିଷ୍ଟ ଥାଇ) କୁମ୍ଭ ଲଗ୍ନରେ ପ୍ରଥମ ନବାଂଶରେ ଜନ୍ମ । କୁମ୍ଭରାଶି,ପୂର୍ବଭାଦ୍ରପଦ ନକ୍ଷତ୍ରର ପ୍ରଥମ ପାଦରେ ଜନ୍ମ । ରାତ୍ରିଜାତ ଦଣ୍ଡାଦିଃ ୩୧/୦/୧୪, ସୂର୍ଯ୍ୟୋଦୟାଦିଷ୍ଟ ଦଣ୍ଡାଦିଃ ୫୯/୨୮/୨୯, ଅକ୍ଷାଂଶ ୨୨/୩୪, ପଲଭା ୫/୧/୫/୧୦ ।

ତସ୍ୟ ଭୋଗ୍ୟଦଣ୍ଡାଦିଃ ୫୨/୧୨/୩୧
ଭୁକ୍ତ-ଦଣ୍ଡାଦିଃ ୮/୨/୨୯

**ଗଦାଧରଙ୍କ ଜନ୍ମପତ୍ରିକାର କିୟଦଂଶ :**

(ଶକାବ୍ଦ ୧୭୫୭), ଏତ୍‌ଚ୍ଛକୀୟ ସୌର-ଫାଲଗୁନସ୍ୟ ଷଷ୍ଠ-ଦିବସେ, ବୁଧବାସରେ, ଶୁକ୍ଳପକ୍ଷୀୟ-ଦ୍ୱିତୀୟାୟାଂ ତିଥୌ, ପୂର୍ବଭାଦ୍ରପଦ-ନକ୍ଷତ୍ରସ୍ୟ ପ୍ରଥମ ଚରଣେ ସିଦ୍ଧିଯୋଗେ, ବାଳବକରଣେ ଏବଂ ପଞ୍ଚାଙ୍ଗ-ସଂଶୁଦ୍ଧୌ, ରାତ୍ରି ଚତୁର୍ଦ୍ଦଶ-ବିପଲାଧିକୈକ ତ୍ରିଂଶଦଣ୍ଡ-ସମୟେ ଅୟନାଂଶୋଭବ-ଶୁଭ-କୁମ୍ଭଲଗ୍ନେ (ଲଗ୍ନ ସ୍ଫୁଟ-ରାଶ୍ୟାଦି ୧୦/୩/୧୯/୫୩/୨୦), ଶନୈଶ୍ଚରସ୍ୟ କ୍ଷେତ୍ରେ, ସୂର୍ଯ୍ୟସ୍ୟ ହୋରାୟାଂ ସୂର୍ଯ୍ୟସୁତସ୍ୟ ଦ୍ରେକ୍କାଣେ, ଶୁକ୍ରସ୍ୟ ନବାଂଶେ, ବୃହସ୍ପତେର୍ଦ୍ୱାଦଶାଂଶେ, କୁଜସ୍ୟ ତ୍ରିଶାଂଶେ ଏବଂ ଷଡ୍‌ବର୍ଗ ପରିଶୋଧିତେ ପୂର୍ବଭାଦ୍ରପଦ ନକ୍ଷତ୍ରାଶ୍ରିତ କୁମ୍ଭରାଶିସ୍ଥିତେ ଚନ୍ଦ୍ରେ ବୁଧସ୍ୟ ଯାମାର୍ଦ୍ଧେ, ଜୀବସ୍ୟ ଦଣ୍ଡେ, କୋଣସ୍ଥେ ଗୁରୌ କେନ୍ଦ୍ରସ୍ଥେ ବୁଧେ ଚନ୍ଦ୍ରେ ଚ ଲଗ୍ନସ୍ଥେ ଚନ୍ଦ୍ରେ, ତ୍ରିଗ୍ରହଯୋଗେ, ଧର୍ମକର୍ମାଧିପୟୋଃ ଶୁକ୍ର ଭୌମୟୋଃ ତୁଙ୍ଗସ୍ଥିତୟୋଃ, ବର୍ଗୋତ୍ତମସ୍ଥେ ଲଗ୍ନାଧିପେ ଶନୌ ଚ ତୁଙ୍ଗେ, ପରାଶର ମତେନ ତୁ ରାହୁକେତୋସ୍ତୁଙ୍ଗସ୍ଥୟୋଃ (ଯତଃ ଉକ୍ତଂ, 'ରାହୋସ୍ତୁ ବୃଷଭଂ କେତୋ ବୃଶ୍ଚିକଂ ତୁଙ୍ଗସଜ୍ଞିତମ୍' ଇତ୍ୟାଦି ପ୍ରମାଣାତ୍) ଅତଏବ ଉଚ୍ଚସ୍ଥେ ଗ୍ରହପଞ୍ଚକେ, ଅସାଧାରଣ ପୁଣ୍ୟ ଭାଗ୍ୟଯୋଗେ, ଶୁକ୍ଳପକ୍ଷେ ନିଶି-ଜନ୍ମହେତୋଃ ବିଂଶୋତ୍ତରୀ ଦଶାଧିକାରେ ଜନ୍ମ, ଏତେନ ବୃହସ୍ପତେର୍ଦଶାୟାଂ, ତଥା ଦେଶଭେଦେନ ଦଶାଧିକାର ନିୟମାଚ୍ଚ ଅଷ୍ଟୋତ୍ତରୀୟ-ରାହୋଦଶାୟାଂ ଅଶେଷଗୁଣାଲଙ୍କୃତ ସ୍ୱଧର୍ମନିଷ୍ଠ -କ୍ଷୁଦିରାମ ଚଟ୍ଟୋପାଧ୍ୟାୟ ମହୋଦୟସ୍ୟ(ସହଧର୍ମିଣୀ ଦୟାବତୀ ଚନ୍ଦ୍ରମଣି-ଦେବୀ ମହୋଦୟାୟାଃ ଗର୍ଭେ) ଶୁଭ ତୃତୀୟପୁତ୍ରଃ ସମଜନି । ତସ୍ୟ ରାଶ୍ୟାଶ୍ରିତଂ ନାମ ଶମ୍ଭୁରାମ ଦେବଶର୍ମା । ପ୍ରସିଦ୍ଧ ନାମ ଗଦାଧର ଚଟ୍ଟୋପାଧ୍ୟାୟଃ । ସାଧନା ସିଦ୍ଧିପ୍ରାପ୍ତ-ଜଗତ୍ ବିଖ୍ୟାତ ନାମ ଶ୍ରୀରାମକୃଷ୍ଣପରମହଂସ ମହୋଦୟଃ ।''[୧]

ଅନନ୍ତର ପ୍ରିୟଦର୍ଶନ ପୁତ୍ରର ମୁଖଦର୍ଶନ ଏବଂ ତାଙ୍କର ଅସାଧାରଣ ଭାଗ୍ୟ ବିଷୟ ଶ୍ରବଣ କରି ଶ୍ରୀଯୁକ୍ତ କ୍ଷୁଦିରାମ ଓ ଶ୍ରୀମତୀ ଚନ୍ଦ୍ରମଣି ନିଜକୁ କୃତାର୍ଥ ଜ୍ଞାନ କରି ଯଥା ସମୟରେ ତାଙ୍କର ନିଷ୍କ୍ରମଣ ଓ ନାମକରଣାଦି ସମ୍ପନ୍ନ କରି ଅଶେଷ ଯତ୍ନର ସହିତ ତାଙ୍କର ଲାଳନପାଳନରେ ମନୋନିବେଶ କଲେ ।

---

୧. ଶ୍ରୀଯୁକ୍ତ ନାରାୟଣ ଚନ୍ଦ୍ର ଜ୍ୟୋତିର୍ଭୂଷଣ-କୃତ ଠାକୁରଙ୍କର ଜନ୍ମକୋଷ୍ଠୀରୁ ପୂର୍ବୋକ୍ତାଂଶ ଉଦ୍ଧୃତ ହେଲା ।

# ଷଷ୍ଠ ଅଧ୍ୟାୟ

## ବାଲ୍ୟକଥା ଓ ପିତୃବିୟୋଗ

### ରାମଚାଁଦଙ୍କର ଗାଭୀ ପ୍ରଦାନ :

ଶାସ୍ତ୍ରରେ ଅଛି, ଶ୍ରୀରାମ, ଶ୍ରୀକୃଷ୍ଣ ପ୍ରଭୃତି ଅବତାରପୁରୁଷମାନଙ୍କର ଜନକ-ଜନନୀ, ତାଙ୍କର ଜନ୍ମଗ୍ରହଣ କରିବା ପୂର୍ବରୁ ଓ ପରେ ନାନା ପ୍ରକାର ଦିବ୍ୟଦର୍ଶନ ଲାଭ କରି ସେମାନେ ଦେବରକ୍ଷିତ ବୋଲି ହୃଦୟଙ୍ଗମ କଲେ ମଧ୍ୟ ପରକ୍ଷଣରେ ଅପତ୍ୟସ୍ନେହର ବଶବର୍ତ୍ତୀ ହୋଇ ସେ କଥା ଭୁଲିଯାଉଥିଲେ ଏବଂ ସେମାନଙ୍କର ଲାଳନପାଳନ ଓ ରକ୍ଷଣାବେକ୍ଷଣ ନିମିତ୍ତ ସର୍ବଦା ଚିନ୍ତିତ ରହୁଥିଲେ । ଶ୍ରୀଯୁକ୍ତ କ୍ଷୁଦିରାମ ଓ ତାଙ୍କର ଗୃହିଣୀ ଶ୍ରୀମତୀ ଚନ୍ଦ୍ରାଦେବୀଙ୍କ ସମ୍ବନ୍ଧରେ ମଧ୍ୟ ଏପରି ଘଟିଥିଲା । ସେମାନେ ଏବେ ପ୍ରିୟଦର୍ଶନ ବାଳକର ମୁଖକମଳ ଦେଖି, ଗୟାକ୍ଷେତ୍ରର ଦେବସ୍ୱପ୍ନ, ଶିବ-ମନ୍ଦିରର ଦିବ୍ୟଦର୍ଶନ ପ୍ରଭୃତି କଥା ଅନେକାଂଶରେ ଭୁଲିଗଲେ ଏବଂ ପୁତ୍ରର ଯଥାଯଥ ପାଳନ-ରକ୍ଷଣ ନିମିତ୍ତ ଚିନ୍ତିତ ରହି ନାନା ଉପାୟ ଉଦ୍ଭାବନ କରିବାକୁ ଲାଗିଲେ । ଉପାର୍ଜନକ୍ଷମ ଭଣଜା ମେଦିନୀପୁରସ୍ଥିତ ଶ୍ରୀଯୁକ୍ତ ରାମଚାଁଦଙ୍କ ନିକଟକୁ ପୁତ୍ରର ଜନ୍ମସମ୍ବାଦ ପ୍ରେରିତ ହେଲା । ମାତୁଳଙ୍କର ଦରିଦ୍ର ସଂସାରରେ ଦୁଗ୍ଧ ଅଭାବ ହେବାର ସମ୍ଭାବନା ଭାବି ସେ ଗୋଟିଏ ଦୁଧିଆଳୀ ଗାଈ ପ୍ରେରଣ କରି ଶ୍ରୀଯୁକ୍ତ କ୍ଷୁଦିରାମଙ୍କର ଏହି ଚିନ୍ତା ନିବାରଣ କଲେ । ସେହିପରି ନବଜାତ ଶିଶୁ ପାଇଁ ଯେତେବେଳେ ଯେଉଁ ଜିନିଷ ପ୍ରୟୋଜନ ହେଉଥିଲା, ସେତେବେଳେ ହିଁ ସେସବୁ ନାନା ଅଭାବନୀୟ ଉପାୟରେ ପୂର୍ଣ୍ଣ ହେଲେ ମଧ୍ୟ ଶ୍ରୀଯୁକ୍ତ କ୍ଷୁଦିରାମ ଓ ଶ୍ରୀମତୀ ଚନ୍ଦ୍ରାଦେବୀଙ୍କର ଚିନ୍ତାର ବିରାମ ହେଲା ନାହିଁ । ଏପରି ଦିନ ପରେ ଦିନ ଗଡ଼ି ଚାଲିଲା ।

### ଗଦାଧରଙ୍କ ମୋହିନୀଶକ୍ତି :

ଅନ୍ୟପକ୍ଷରେ ନବଜାତ ଶିଶୁଟିର ଚିତ୍ତାକର୍ଷଣ-ଶକ୍ତି ଦିନକୁ ଦିନ ବର୍ଦ୍ଧିତ ହୋଇ ପିତାମାତାଙ୍କ ଉପରେ ସ୍ୱୀୟ ପ୍ରଭାବ ବିସ୍ତାର କରି କ୍ଷାନ୍ତ ରହିଲା ନାହିଁ, ପରନ୍ତୁ ପରିବାରସ୍ଥ ସମସ୍ତଙ୍କ ଉପରେ, ଏପରିକି ପଲ୍ଲୀବାସିନୀ ରମଣୀଗଣଙ୍କ ଉପରେ ମଧ୍ୟ ନିଜର ଆଧିପତ୍ୟ ଧୀରେ ଧୀରେ ସ୍ଥାପନ କରିବାକୁ ଲାଗିଲା । ପଲ୍ଲୀ ରମଣୀଗଣ ଅବସର ସମୟରେ ଶ୍ରୀମତୀ ଚନ୍ଦ୍ରାଙ୍କୁ ଏବେ ପ୍ରତିଦିନ ଦେଖିବାକୁ ଆସୁଥିଲେ ଏବଂ ଏହାର କାରଣ ପଚାରିଲେ କହୁଥିଲେ, 'ତୁମର ପୁତ୍ରକୁ ପ୍ରତିଦିନ ଦେଖିବାକୁ ଇଚ୍ଛା ହୁଏ, କ'ଣ କରିବୁ କୁହ; ତେଣୁ ସବୁଦିନ ଆସିବାକୁ ହୁଏ !' ନିକଟବର୍ତ୍ତୀ ଗ୍ରାମଗୁଡିକରୁ ଆତ୍ମୀୟା ରମଣୀଗଣ ମଧ୍ୟ ଏହି କାରଣରୁ ଶ୍ରୀଯୁକ୍ତ କ୍ଷୁଦିରାମଙ୍କ ଦରିଦ୍ର କୁଟୀରକୁ ଏବେ ପୂର୍ବାପେକ୍ଷା ଅଧିକ ଆସିବାକୁ ଲାଗିଲେ ।

ଏପରି ସମସ୍ତଙ୍କର ଆଦରଯତ୍ନରେ ପାଳିତ ହୋଇ ନବାଗତ ଶିଶୁ କ୍ରମେ ପାଞ୍ଚମାସ ଅତିକ୍ରମ କଲା ଏବଂ ତା'ର ଅନ୍ନପ୍ରାଶନ ସମୟ ଉପସ୍ଥିତ ହେଲା ।

**ଅନ୍ନପ୍ରାଶନ ସମୟରେ ଧର୍ମଦାସ ଲାହାଙ୍କର ସାହାଯ୍ୟ :**

ପୁତ୍ରର ଅନ୍ନପ୍ରାଶନ କାର୍ଯ୍ୟ ଶ୍ରୀଯୁକ୍ତ କ୍ଷୁଦିରାମ ନିଜର ଅବସ୍ଥାନୁସାରେ ବ୍ୟବସ୍ଥା କରିବେ ବୋଲି ପ୍ରଥମେ ସ୍ଥିର କରିଥିଲେ । ସେ ଭାବିଥିଲେ, ଶାସ୍ତ୍ରବିହିତ କ୍ରିୟା ସମାପନପୂର୍ବକ ରଘୁବୀରଙ୍କର ପ୍ରସାଦୀ ଅନ୍ନ ପୁତ୍ରର ମୁଖରେ ପ୍ରଦାନ କରି ସେହି କାର୍ଯ୍ୟ ଶେଷ କରିବେ ଏବଂ ତଦୁପଲକ୍ଷେ ଦୁଇ ଚାରି ଜଣ ନିକଟ ଆତ୍ମୀୟଙ୍କୁ ହିଁ ନିମନ୍ତ୍ରଣ କରିବେ — ମାତ୍ର ଘଟଣା ଅନ୍ୟ ପ୍ରକାରର ହେଲା । ତାଙ୍କର ପରମ ବନ୍ଧୁ ଗ୍ରାମର ଜମିଦାର ଶ୍ରୀଯୁକ୍ତ ଧର୍ମଦାସ ଲାହାଙ୍କର ଗୁପ୍ତ ପ୍ରେରଣାରେ ଗ୍ରାମର ପ୍ରବୀଣ ବ୍ରାହ୍ମଣ ସଜ୍ଜନଗଣ ଆସି, ପୁତ୍ରର ଅନ୍ନପ୍ରାଶନ ଦିବସରେ ସେମାନଙ୍କୁ ଭୋଜନ କରାଇବାକୁ ତାଙ୍କୁ ଅନୁରୋଧ କଲେ । ସେମାନଙ୍କର ଏପରି ଅନୁରୋଧରେ ଶ୍ରୀଯୁକ୍ତ କ୍ଷୁଦିରାମ ନିଜକୁ ବିଶେଷ ବିପନ୍ନ ମନେ କଲେ । କାରଣ, ଗ୍ରାମର ସମସ୍ତେ ତାଙ୍କୁ ବିଶେଷ ଶ୍ରଦ୍ଧା-ଭକ୍ତି କରୁଥିଲେ, ତେଣୁ ସେମାନଙ୍କ ମଧ୍ୟରୁ କାହାକୁ ଛାଡ଼ି କାହାକୁ ଆମନ୍ତ୍ରଣ କରିବେ ତାହା ସେ ଭାବିପାରିଲେ ନାହିଁ । ସମସ୍ତଙ୍କୁ ଆମନ୍ତ୍ରଣ କରିବାର ତାଙ୍କର ସାମର୍ଥ୍ୟ କେଉଁଠି ? ସୁତରାଂ 'ଯାହା ରଘୁବୀର କରିବେ' ଭାବି ସେ ଶ୍ରୀଯୁକ୍ତ ଧର୍ମଦାସଙ୍କ ସହିତ ପରାମର୍ଶ କରି ଏବିଷୟ ସ୍ଥିର କରିବାକୁ ଆସିଲେ ଏବଂ ବନ୍ଧୁଙ୍କର ଅଭିପ୍ରାୟ ବୁଝିପାରି ତାଙ୍କ ଉପରେ ଉକ୍ତ କାର୍ଯ୍ୟଭାର ପ୍ରଦାନପୂର୍ବକ ସ୍ୱଗୃହ ପ୍ରତ୍ୟାବର୍ତ୍ତନ କଲେ । ଶ୍ରୀଯୁକ୍ତ ଧର୍ମଦାସ ମଧ୍ୟ ହୃଷ୍ଟ ଚିତ୍ତରେ ଅନେକାଂଶ ନିଜେ ବ୍ୟୟକରି ସମସ୍ତ ବିଷୟର ବନ୍ଦୋବସ୍ତ କରି ଉକ୍ତ କାର୍ଯ୍ୟ ସୁସମ୍ପନ୍ନ କରି ଦେଲେ । ଆମେ ଶୁଣିଛୁ, ଗଦାଧରଙ୍କ ଅନ୍ନପ୍ରାଶନ ଉପଲକ୍ଷେ ଗ୍ରାମର ବ୍ରାହ୍ମଣ ଓ ବ୍ରାହ୍ମଣେତର ସମସ୍ତ ଜାତି ଶ୍ରୀଯୁକ୍ତ କ୍ଷୁଦିରାମଙ୍କ କୁଟୀରକୁ ଆସି ରଘୁବୀରଙ୍କର ପ୍ରସାଦ ଭୋଜନରେ ପରିତୃପ୍ତ ହୋଇଥିଲେ ଏବଂ ତାହା ସହିତ ଅନେକ ଦରିଦ୍ର ଭିକ୍ଷୁକ ମଧ୍ୟ ସେହିପରି ପରିତୃପ୍ତି ଲାଭ କରି ତାଙ୍କ ତନୟର ଦୀର୍ଘଜୀବନ ଓ ମଙ୍ଗଳ କାମନା କରିଥିଲେ ।

**ଚନ୍ଦ୍ରାଦେବୀଙ୍କର ଦିବ୍ୟଦର୍ଶନଶକ୍ତିର ବର୍ତ୍ତମାନ ପ୍ରକାଶ :**

ଦିନ ଗଡ଼ିବା ସହିତ ଗଦାଧରଙ୍କ ବାଲ୍ୟ ସ୍ୱଭାବ ମଧୁରତର ହୋଇ ଚନ୍ଦ୍ରାଦେବୀଙ୍କ ହୃଦୟକୁ ଆନନ୍ଦ ଓ ଭୟର ପୁଣ୍ୟ-ପ୍ରୟାଗରେ ପରିଣତ କଲା । ପୁତ୍ର ଜନ୍ମ ହେବା ପୂର୍ବରୁ ଯିଏ ଦେବତାମାନଙ୍କ ପାଖରେ କୌଣସି ବିଷୟ ପ୍ରାର୍ଥନା କରିବା ପାଇଁ ବ୍ୟଗ୍ର ହେଉ ନ ଥିଲେ ସେ ହିଁ ଏବେ ପ୍ରତିଦିନ ପୁତ୍ରର କଲ୍ୟାଣକାମନାରେ ଶତ ସହସ୍ରବାର ଜ୍ଞାତ ଓ ଅଜ୍ଞାତସାରରେ ତାଙ୍କର ମାତୃହୃଦୟର ସକରୁଣ ନିବେଦନ ସେମାନଙ୍କ ଚରଣରେ ଅର୍ପଣ କରି ମଧ୍ୟ ସମ୍ପୂର୍ଣ୍ଣ ନିଶ୍ଚିନ୍ତା ହୋଇପାରୁ ନ

ଥିଲେ । ଏପରି ଭାବରେ ପୁତ୍ରର କଲ୍ୟାଣ ଓ ରକ୍ଷଣାବେକ୍ଷଣ ଶ୍ରୀମତୀ ଚନ୍ଦ୍ରାଙ୍କର ଧ୍ୟାନ-ଜ୍ଞାନ ହୋଇ ତାଙ୍କର ଏହା ପୂର୍ବରୁ ହୋଇଥିବା ଦିବ୍ୟଦର୍ଶନଶକ୍ତିକୁ ଯେ ଏବେ ଘୋଡ଼ାଇ ଦେବ, ଏକଥା ସହଜରେ ବୁଝି ହୁଏ । ତଥାପି ଏହି ଶକ୍ତିର ସାମାନ୍ୟ ପ୍ରକାଶ ତାଙ୍କଠାରେ ଏବେ ମଧ୍ୟ ବେଳେବେଳେ ଉପସ୍ଥିତ ହୋଇ ତାଙ୍କୁ କେତେବେଳେ ବିସ୍ମୟରେ ଓ କେତେବେଳେ ପୁତ୍ରର ଭବିଷ୍ୟତ ଅମଙ୍ଗଳ-ଆଶଙ୍କାରେ ପୂର୍ଣ୍ଣ କରୁଥିଲା । ଏବିଷୟରେ ଗୋଟିଏ ଘଟଣା ଯାହା ଅତି ବିଶ୍ୱସ୍ତ ସୂତ୍ରରୁ ଆମେ ଶୁଣିଛୁ, ଏଠାରେ ବର୍ଣ୍ଣନା କଲେ ପାଠକ ପୂର୍ବୋକ୍ତ କଥା ସହଜରେ ବୁଝିପାରିବେ । ଘଟଣା ଏପରି ହୋଇଥିଲା—

**ଏହି ବିଷୟକ ଘଟଣା—ଗଦାଧରଙ୍କୁ ଦୀର୍ଘକାୟ ଦେଖିବା :**

ଗଦାଧରଙ୍କ ବୟସ ସେତେବେଳେ ସାତ/ଆଠ ମାସ ହେବ । ଶ୍ରୀମତୀ ଚନ୍ଦ୍ରା ଦିନେ ସକାଳେ ତାଙ୍କୁ ସ୍ତନ୍ୟପାନ କରାଉଥିଲେ । କିଛି ସମୟ ପରେ ପୁତ୍ରକୁ ନିଦ୍ରିତ ଦେଖି ମଶାଙ୍କ ଦଂଶନରୁ ରକ୍ଷା କରିବା ପାଇଁ ସେ ତାଙ୍କୁ ମଶାରୀ ଭିତରେ ଶୁଆଇ ଦେଇ ଘର ବାହାରେ ଯାଇ ଗୃହକର୍ମରେ ମନୋନିବେଶ କଲେ । କିଛି ସମୟ ପରେ ପ୍ରୟୋଜନବଶତଃ ହଠାତ୍ ପ୍ରବେଶ କରି ସେ ଦେଖିଲେ, ସେହି ଘରେ ମଶାରୀ ଭିତରେ ପୁତ୍ର ନାହିଁ, ସେହି ସ୍ଥାନରେ ଏକ ଦୀର୍ଘକାୟ ଅପରିଚିତ ପୁରୁଷ ମଶାରୀ ଅଧିକାର କରି ଶୟନ କରିଛି । ବିଷମ ଆଶଙ୍କାରେ ଚନ୍ଦ୍ରା ଚିତ୍କାର କରିଉଠିଲେ ଏବଂ ଦ୍ରୁତପଦରେ ଗୃହ ବାହାରକୁ ଆସି ସ୍ୱାମୀଙ୍କୁ ଆହ୍ୱାନ କରିବାକୁ ଲାଗିଲେ । ସେ ଆସିବା ମାତ୍ରେ ତାଙ୍କୁ ଏକଥା କହୁ କହୁ ଉଭୟେ ପୁନରାୟ ଗୃହରେ ପ୍ରବେଶପୂର୍ବକ ଦେଖିଲେ କେହି କେଉଁଠି ନାହିଁ, ବାଳକ ଯେପରି ନିଦ୍ରା ଯାଇଥିଲା ସେପରି ନିଦରେ ଶୋଇଛି । ଶ୍ରୀମତୀ ଚନ୍ଦ୍ରାଙ୍କର ସେଥିରେ ମଧ୍ୟ ଭୟ ଦୂର ହେଲା ନାହିଁ । ସେ ବାରମ୍ବାର କହିବାକୁ ଲାଗିଲେ, ''ନିଶ୍ଚୟ କୌଣସି ଉପଦେବତାଙ୍କ ଦ୍ୱାରା ଏପରି ହୋଇଛି । କାରଣ ମୁଁ ସ୍ପଷ୍ଟ ଦେଖିଛି ପୁତ୍ର ଜାଗାରେ ଏକ ଦୀର୍ଘାକାର ପୁରୁଷ ଶୟନ କରିଥିଲେ, ମୋର କିଛି ମାତ୍ର ଭ୍ରମ ହୋଇ ନାହିଁ ଏବଂ ହଠାତ୍ ଏପରି ଭ୍ରମ ହେବାର କୌଣସି କାରଣ ମଧ୍ୟ ନାହିଁ; ତେଣୁ ଶୀଘ୍ର ଜଣେ ବିଜ୍ଞ ଗୁଣିଆ ଅଣାଇ ସନ୍ତାନକୁ ଦେଖାଅ, ନ ହେଲେ କିଏ ଜାଣେ, ଏହି ଘଟଣାରେ ପୁତ୍ରର କୌଣସି ଅନିଷ୍ଟ ହେବ କି ନାହିଁ !'' ଶ୍ରୀଯୁକ୍ତ କ୍ଷୁଦିରାମ ସେଥିରେ ତାଙ୍କୁ ଆଶ୍ୱାସନା ପ୍ରଦାନପୂର୍ବକ କହିଲେ, ''ଯେଉଁ ପୁତ୍ରର ଜନ୍ମ ପୂର୍ବରୁ ଆମେ ନାନା ଦିବ୍ୟଦର୍ଶନ ଲାଭରେ ଧନ୍ୟ ହୋଇଛେ ତାହା ସମ୍ବନ୍ଧରେ ଏବେ ମଧ୍ୟ କିଛି ଦେଖାଯିବା ବିଚିତ୍ର ନୁହେଁ; ଅତଏବ ଏହା ଉପଦେବତାକୃତ—ଏକଥା ତୁମେ ମନରେ କଦାପି ସ୍ଥାନ ଦିଅ ନାହିଁ, ବିଶେଷତଃ ଗୃହରେ ରଘୁବୀର ସ୍ୱୟଂ ବିଦ୍ୟମାନ; ଉପଦେବତାସକଳ ଏଠାରେ ପୁତ୍ରର ଅନିଷ୍ଟ କରିବାକୁ କିପରି ସକ୍ଷମ ହେବେ ?

ତେଣୁ ନିଶ୍ଚିନ୍ତ ରୁହ, ଏବଂ ଏକଥା ଅନ୍ୟ କାହାକୁ ମଧ୍ୟ କୁହ ନାହିଁ । ଜାଣିବ ରଘୁବୀର ସନ୍ତାନକୁ ସର୍ବଦା ରକ୍ଷା କରୁଛନ୍ତି ।'' ଶ୍ରୀମତୀ ଚନ୍ଦ୍ରା ସ୍ୱାମୀଙ୍କର ଏପରି ବାକ୍ୟରେ ସେତେବେଳେ ଆଶ୍ୱସ୍ତା ହେଲେ, କିନ୍ତୁ ପୁତ୍ରର ଅମଙ୍ଗଳ-ଆଶଙ୍କାର ଛାୟା ତାଙ୍କ ମନରୁ ସମ୍ପୂର୍ଣ୍ଣରୂପେ ଅପସୃତ ହେଲା ନାହିଁ । ସେ କୃତାଞ୍ଜଳିପୁଟରେ ତାଙ୍କର ପ୍ରାଣର ବେଦନା ସେଦିନ ବହୁକ୍ଷଣ ପର୍ଯ୍ୟନ୍ତ କୁଳଦେବତା ରଘୁବୀରଙ୍କୁ ନିବେଦନ କଲେ ।

### ଗଦାଧରଙ୍କ କନିଷ୍ଠା ଭଗ୍ନୀ ସର୍ବମଙ୍ଗଳା :

ଏହିପରି ଆନନ୍ଦରେ, ଆବେଗରେ, ଉତ୍ସାହରେ ଓ ଆଶଙ୍କାରେ ଶ୍ରୀଯୁକ୍ତ ଗଦାଧରଙ୍କର ଜନକ-ଜନନୀଙ୍କର ଦିନ କଟିବାକୁ ଲାଗିଲା ଏବଂ ବାଳକ ପ୍ରଥମ ଦିନରୁ ତାଙ୍କର ଓ ଅନ୍ୟ ସମସ୍ତଙ୍କ ମନରେ ଯେଉଁ ମଧୁର ଆଧିପତ୍ୟ ବିସ୍ତାର କରିଥିଲା ତାହା ଦିନକୁ ଦିନ ଦୃଢ଼ ଓ ଘନୀଭୂତ ହେବାକୁ ଲାଗିଲା । କ୍ରମେ ଚାରି-ପାଞ୍ଚ ବର୍ଷ ଅତୀତ ହେଲା; ଘଟଣା ଚକ୍ରରେ ଏହି କାଳ ମଧ୍ୟରେ କୌଣସି ଏକ ସମୟରେ ଶ୍ରୀଯୁକ୍ତ କ୍ଷୁଦିରାମଙ୍କର ସର୍ବମଙ୍ଗଳା ନାମ୍ନୀ କନିଷ୍ଠ କନ୍ୟା ଜନ୍ମଗ୍ରହଣ କରିଥିଲା ।

### ଗଦାଧରଙ୍କ ବିଦ୍ୟାରମ୍ଭ :

ବୟୋବୃଦ୍ଧି ସହିତ ବାଳକ ଗଦାଧରଙ୍କ ଅଦ୍ଭୁତ ମେଧା ଓ ପ୍ରତିଭାର ବିକାଶ ଶ୍ରୀଯୁକ୍ତ କ୍ଷୁଦିରାମ ଏହି କାଳରେ ବିସ୍ମୟ ଓ ଆନନ୍ଦରେ ଅବଲୋକନ କରିଥିଲେ । କାରଣ ଚଞ୍ଚଳ ବାଳକକୁ କୋଳ କରି ସେ ଯେତେବେଳେ ନିଜର ପୂର୍ବ ପୁରୁଷମାନଙ୍କର ନାମାବଳୀ, ଦେବଦେବୀଙ୍କର କ୍ଷୁଦ୍ର କ୍ଷୁଦ୍ର ସ୍ତୋତ୍ର ଓ ପ୍ରଣାମାଦି, ଅଥବା ରାମାୟଣ, ମହାଭାରତରୁ କୌଣସି ବିଚିତ୍ର ଉପାଖ୍ୟାନ ତାଙ୍କୁ ଶୁଣାନ୍ତି, ସେତେବେଳେ ଦେଖୁଥିଲେ ଯେ, ଥରେ ମାତ୍ର ଶୁଣି ହିଁ ସେ ଏସମସ୍ତର ଅଧିକାଂଶ ଆୟତ୍ତ କରିଅଛି ! ପୁଣି ବହୁଦିନ ପରେ ତାଙ୍କୁ ପଚାରି ଦେଖୁଥିଲେ, ସେ ଏସମସ୍ତ ସମଭାବରେ ଆବୃତ୍ତି କରିବାକୁ ସକ୍ଷମ । ଏହା ସହିତ ସେ ଏବିଷୟର ମଧ୍ୟ ପରିଚୟ ପାଇଥିଲେ ଯେ, ବାଳକର ମନ କେତେଗୁଡ଼ିଏ ବିଷୟକୁ ଯେପରି ଆଗ୍ରହର ସହିତ ଗ୍ରହଣ ଓ ଧାରଣା କରେ, ଅନ୍ୟ କେତେଗୁଡ଼ିଏ ବିଷୟ ପ୍ରତି ସେପରି ଉଦାସୀନ ରହୁଛି—ସହସ୍ର ଚେଷ୍ଟା ସତ୍ତ୍ୱେ ସେସବୁ ପ୍ରତି ତା'ର ଅନୁରାଗ ସୃଷ୍ଟି ହେଉ ନାହିଁ । ଗଣିତଶାସ୍ତ୍ରର ପଣିକିଆ ପ୍ରଭୃତି ଶିଖାଇବାକୁ ଯାଇ ସେ ଏବିଷୟରେ ଆଭାସ ପାଇ ଭାବିଥିଲେ, ଚପଳମତି ବାଳକକୁ ଏତେ କମ୍ ବୟସରେ ଏସମସ୍ତ ଶିଖାଇବା ପାଇଁ ପୀଡ଼ନ କରିବାର ଆବଶ୍ୟକତା ନାହିଁ । କିନ୍ତୁ ସେ ଅତ୍ୟଧିକ ଚଞ୍ଚଳ ହେଉଥିବା ଦେଖି ପଞ୍ଚମ ବର୍ଷରେ ହିଁ ସେ ତାଙ୍କର ଯଥାବିଧି ବିଦ୍ୟାରମ୍ଭ କରାଇ ଦେଲେ ଏବଂ ତାଙ୍କୁ ପାଠଶାଳାକୁ ପଠାଇବାକୁ ଲାଗିଲେ ।

ବାଳକ ଏଥିରେ ତା'ର ସମବୟସ୍କ ସଙ୍ଗୀମାନଙ୍କ ସହିତ ପରିଚିତ ହୋଇ ଅତ୍ୟନ୍ତ ସୁଖୀ ହେଲା ଏବଂ ସପ୍ରେମ ବ୍ୟବହାରରେ ଖୁବ୍ ଶୀଘ୍ର ସଙ୍ଗୀମାନଙ୍କର ଏବଂ ଶିକ୍ଷକଙ୍କର ଅତ୍ୟନ୍ତ ପ୍ରିୟଭାଜନ ହୋଇଉଠିଲା ।

## ଲାହାବାବୁଙ୍କ ପାଠଶାଳା :

ଗ୍ରାମର ଜମିଦାର ଲାହାବାବୁଙ୍କର ଘର ସାମନାରେ ଥିବା ବିସ୍ତୃତ ନାଟମଣ୍ଡପରେ ପାଠଶାଳାର ଅଧିବେଶନ ହେଉଥିଲା ଏବଂ ପ୍ରଧାନତଃ ତାଙ୍କର ବ୍ୟୟରେ ହିଁ ଜଣେ ଗୁରୁଜୀ ନିଯୁକ୍ତ ହୋଇ ତାଙ୍କର ଏବଂ ନିକଟସ୍ଥ ଗୃହସ୍ଥମାନଙ୍କର ବାଳକଗଣଙ୍କୁ ଅଧ୍ୟାପନା କରାଉଥିଲେ । ଫଳସ୍ୱରୂପ ପାଠଶାଳାଟି ଲାହାବାବୁମାନେ ହିଁ ଏକ ପ୍ରକାର ପଲ୍ଲୀବାଳକମାନଙ୍କର କଲ୍ୟାଣାର୍ଥେ ପ୍ରତିଷ୍ଠିତ କରିଥିଲେ । ଏହା ଶ୍ରୀଯୁକ୍ତ କ୍ଷୁଦିରାମଙ୍କ ଗୃହର ଅନତି ଦୂରର ଅବସ୍ଥିତ ଥିଲା । ସକାଳ ଓ ଅପରାହ୍ଣ ଦୁଇବେଳା ପାଠଶାଳା ଖୋଲା ହେଉଥିଲା । ଛାତ୍ରମାନେ ସକାଳେ ଆସି ଦୁଇ-ତିନି ଘଣ୍ଟା ପାଠପଢ଼ି ସ୍ନାନାହାର ନିମନ୍ତେ ଯିଏ ଯାହାର ଗୃହକୁ ଚାଲିଯାଉଥିଲେ ଏବଂ ଅପରାହ୍ଣ ତିନି-ଚାରି ଘଟିକା ସମୟରେ ପୁନରାୟ ସମବେତ ହୋଇ ସଂଧ୍ୟାର ପୂର୍ବ ପର୍ଯ୍ୟନ୍ତ ପାଠାଭ୍ୟାସ କରି ଗୃହକୁ ପ୍ରତ୍ୟାଗମନ କରୁଥିଲେ । ଗଦାଧରଙ୍କ ପରି ଅଳ୍ପ ବୟସ ଛାତ୍ରମାନଙ୍କୁ ଅବଶ୍ୟ ଏତେ ଅଧିକ ସମୟ ପାଠାଭ୍ୟାସ କରିବାକୁ ହେଉ ନ ଥିଲା, କିନ୍ତୁ ସେଠାରେ ଉପସ୍ଥିତ ରହିବାକୁ ହେଉଥିଲା । ସୁତରାଂ ପାଠ ସମୟରେ ପାଠ ଅଭ୍ୟାସ କରିସାରିବା ପରେ ସେମାନେ ସେଠାରେ ବସି ରହୁଥିଲେ ଓ କେତେବେଳେ ସାଙ୍ଗସାଥୀଙ୍କ ସହିତ ମିଶି ସେସ୍ଥାନ ସନ୍ନିକଟରେ କ୍ରୀଡ଼ାରତ ରହୁଥିଲେ । ପାଠଶାଳାର ପୁରୁଣା ଛାତ୍ରମାନେ ନୂଆକରି ଆସିଥିବା ଛାତ୍ରମାନଙ୍କୁ ପାଠ ବତାଇ ଦେଉଥିଲେ ଏବଂ ସେମାନେ ପୁରାତନ ପାଠ ପ୍ରତିଦିନ ଅଭ୍ୟାସ କରୁଛନ୍ତି କି ନାହିଁ ତାହାର ତତ୍ତ୍ୱାବଧାନ କରୁଥିଲେ ।

ଏହିପରି ଜଣେ ମାତ୍ର ଶିକ୍ଷକ ଥିଲେ ମଧ୍ୟ ପାଠଶାଳାର କାର୍ଯ୍ୟ ସୁଚାରୁ ରୂପେ ଚାଲିଯାଉଥିଲା । ଗଦାଧର ଯେତେବେଳେ ପାଠଶାଳାରେ ପ୍ରଥମେ ପ୍ରବେଶ କଲେ, ସେତେବେଳେ ଶ୍ରୀଯୁକ୍ତ ଯଦୁନାଥ ସରକାର ସେଠାରେ ଶିକ୍ଷକ ରୂପେ ନିଯୁକ୍ତ ଥିଲେ । ଏହାର କିଛିଦିନ ପରେ ସେ ନାନା କାରଣବଶତଃ ଅବସର ଗ୍ରହଣ କଲେ ଏବଂ ତାଙ୍କ ପରେ ଶ୍ରୀଯୁକ୍ତ ରାଜେନ୍ଦ୍ରନାଥ ସରକାର ନାମକ ଜଣେ ବ୍ୟକ୍ତି ପାଠଶାଳାର କାର୍ଯ୍ୟଭାର ଗ୍ରହଣ କଲେ ।

## ବାଳକର ବିଚିତ୍ର ଚରିତ୍ର ସମ୍ବନ୍ଧରେ କ୍ଷୁଦିରାମଙ୍କର ଅଭିଜ୍ଞତା :

ବାଳକର ଜନ୍ମ ପୂର୍ବରୁ ତା'ର ମହତ୍ ଜୀବନର ପରିଚାୟକ ସ୍ୱରୂପ ଶ୍ରୀଯୁକ୍ତ କ୍ଷୁଦିରାମ ଯେଉଁ ସମସ୍ତ ଅଦ୍ଭୁତ ସ୍ୱପ୍ନ ଓ ଦର୍ଶନ ଇତ୍ୟାଦି ଲାଭ କରିଥିଲେ, ସେ ସମସ୍ତ ତାଙ୍କ ମନରେ ଚିରକାଳ ପାଇଁ ଦୃଢ଼ଭାବେ ଅଙ୍କିତ ହୋଇ ରହିଯାଇଥିଲା । ତେଣୁ

ବାଳକସୁଲଭ ଚପଳତାରେ କୌଣସି ଅଶିଷ୍ଟ ଆଚରଣ କରିବା ଦେଖିଲେ ମଧ୍ୟ ସେ ତାହାକୁ ମୃଦୁ ବାକ୍ୟରେ ନିଷେଧ କରିବା ବ୍ୟତୀତ କଠୋର ଭାବରେ ଦମନ କରିବାକୁ ସକ୍ଷମ ହେଉ ନ ଥିଲେ । କାରଣ, ସମସ୍ତଙ୍କର ପ୍ରିୟପାତ୍ର ହୋଇଥିବାରୁ ବା ନିଜର ସ୍ୱଭାବ ଗୁଣ ଯୋଗୁଁ ହେଉ, ତାହାଠାରେ ସେ ବେଳେବେଳେ ଅନାଶ୍ରବତାର ପରିଚୟ ପାଉଥିଲେ । କିନ୍ତୁ ଏଥିପାଇଁ ଅନ୍ୟ ପିତାମାତାଙ୍କ ପରି ସେ ତାଙ୍କୁ କେବେ ତାଡ଼ନା କରିବା ଦୂରେ ଥାଉ, ବରଂ ସେ ଭାବୁଥିଲେ, ତାହା ହିଁ ବାଳକକୁ ଭବିଷ୍ୟତରେ ବିଶେଷରୂପେ ଉନ୍ନତ କରାଇବ । ଏପରି ଭାବିବାର ଯଥେଷ୍ଟ କାରଣ ମଧ୍ୟ ଥିଲା । କାରଣ, ସେ ଲକ୍ଷ୍ୟ କରୁଥିଲେ, ଚଞ୍ଚଳ ବାଳକ ବେଳେବେଳେ ପାଠଶାଳା ନ ଯାଇ ସାଙ୍ଗମାନଙ୍କ ସହିତ ଗ୍ରାମ ବାହାରେ କ୍ରୀଡ଼ାରତ ରହିଲେ ମଧ୍ୟ ଅଥବା କାହାକୁ ନ କହି ନିକଟବର୍ତ୍ତୀ କୌଣସି ସ୍ଥାନରେ ଯାତ୍ରା ଶୁଣିବାକୁ ଗଲେ ମଧ୍ୟ ସେ ଯେତେବେଳେ ଯାହା କରିବାକୁ ଚାହୁଁଥିଲେ, ତାହା ସମ୍ପନ୍ନ ନ କରି କ୍ଷାନ୍ତ ହେଉ ନ ଥିଲେ; ମିଥ୍ୟାର ଆଶ୍ରୟ ନେଇ ନିଜକୃତ କୌଣସି କର୍ମ କେବେ ଲୁଚାଇବାର ଚେଷ୍ଟା କରୁ ନ ଥିଲେ ଏବଂ ସର୍ବୋପରି ତାଙ୍କର ପ୍ରେମିକ ହୃଦୟ କଦାପି କାହାର ଅନିଷ୍ଟସାଧନ କରିବାକୁ ପ୍ରବୃତ୍ତ ହେଉ ନ ଥିଲା । ଏପରି ହେଲେ ମଧ୍ୟ ଗୋଟିଏ ବିଷୟ ପାଇଁ କ୍ଷୁଦିରାମ କିଛିଟା ଚିନ୍ତିତ ରହୁଥିଲେ । ସେ ଦେଖୁଥିଲେ ଯେ, ବାଳକର ହୃଦୟସ୍ପର୍ଶ କରେ ଏପରି ଭାବରେ କୌଣସି କଥା କହି ନ ପାରିଲେ ଏହା ବିଧି ବା ନିଷେଧ ଯାହା ହେଉନା କାହିଁକି, ବାଳକ କୌଣସି ପ୍ରକାରରେ ତାହା ଗ୍ରହଣ କରିବା ଦୂରେ ଥାଉ ସର୍ବଦା ତା'ର ବିପରୀତ ଆଚରଣ କରିଥାଏ । ଏହା ତା'ର ସମସ୍ତ ବିଷୟର କାରଣ ଜାଣିବାର ପରିଚାୟକ ହେଲେ ମଧ୍ୟ ସଂସାରରେ ସର୍ବତ୍ର ବିପରୀତ ରୀତିର ଅନୁଷ୍ଠାନ ଦେଖି ସେ ଭାବୁଥିଲେ, କେହି ହେଲେ ବାଳକକୁ ସେହି ପ୍ରକାରରେ ସମସ୍ତ ବିଷୟର କାରଣ ବତାଇ ତା'ର କୌତୁହଳ ପରିତୃପ୍ତ କରିବ ନାହିଁ ଏବଂ ସେଥିନିମିତ୍ତ ଅନେକ ସମୟରେ ସେ ସଦ୍‌ବିଧିସକଳ ମାନ୍ୟ ନ କରି ଚାଲିବାର ସମ୍ଭାବନା ରହିଛି । ଏହି ସମୟରେ ଗୋଟିଏ ଛୋଟ ଘଟଣାରେ ଶ୍ରୀଯୁକ୍ତ କ୍ଷୁଦିରାମଙ୍କ ମନରେ ବାଳକ ସମ୍ବନ୍ଧରେ ପୂର୍ବୋକ୍ତ ଚିନ୍ତାସକଳ ଉଦିତ ହୋଇଥିଲା ଏବଂ ଏବେଠାରୁ ସେ ବାଳକମନର ଏପରି ପ୍ରକୃତି ବୁଝି ତାକୁ ସତର୍କଭାବରେ ଶିକ୍ଷା ପ୍ରଦାନ କରିବାକୁ ଆରମ୍ଭ କରିଥିଲେ । ଘଟଣାଟି ଏହିପରି —

**ଉକ୍ତ ବିଷୟକ ଘଟଣା :**

ଶ୍ରୀଯୁକ୍ତ କ୍ଷୁଦିରାମଙ୍କ ଘର ପାଖରେ ହାଲଦାର ପୋଖରୀ ନାମକ ଏକ ବୃହତ୍ ପୁଷ୍କରିଣୀ ଥିଲା । ଗ୍ରାମର ସମସ୍ତ ଲୋକ ଏହାର ସ୍ୱଚ୍ଛ ଜଳରେ ସ୍ନାନ, ପାନ ଓ ରନ୍ଧନ ଇତ୍ୟାଦି କାର୍ଯ୍ୟ କରୁଥିଲେ । ଗାଧୋଇବା ପାଇଁ ମହିଳା ଓ

ପୁରୁଷମାନଙ୍କ ନିମିତ୍ତ ଦୁଇଟି ପୃଥକ ଘାଟ ଥିଲା । ଗଦାଧର ପରି କିଶୋରବୟସ୍କ ପିଲାମାନେ ସ୍ନାନାର୍ଥେ ମହିଳାମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ଘାଟକୁ ଅନେକ ସମୟରେ ଯାଉଥିଲେ । ଦୁଇ ଚାରିଜଣ ସମବୟସ୍କ ପିଲାଙ୍କ ସହିତ ଗଦାଧର ଦିନେ ଉକ୍ତ ଘାଟରେ ସ୍ନାନ କରିବାକୁ ଆସି ଜଳରେ ଲମ୍ଫ ଦେଇ ସନ୍ତରଣ କରିବା ଦ୍ୱାରା ବିଷମ ଗଣ୍ଡଗୋଳ ଆରମ୍ଭ କଲେ । ଏହା ଦ୍ୱାରା ସ୍ନାନ ପାଇଁ ଆସିଥିବା ମହିଳାମାନଙ୍କର ଅସୁବିଧା ହେଲା । ସନ୍ଧ୍ୟା–ଆହ୍ନିକ କରୁଥିବା ବୟସ୍କାମାନଙ୍କ ଉପରେ ପାଣିଛିଟା ପଡ଼ିବା ଠିକ୍ ନୁହେଁ ବୋଲି ସେମାନେ ଯେତେ ବାରଣ କଲେ ମଧ୍ୟ ବାଳକମାନଙ୍କୁ ଶାନ୍ତ କରାଇପାରିଲେ ନାହିଁ । ସେମାନଙ୍କ ମଧ୍ୟରୁ ଜଣେ ବିରକ୍ତ ହୋଇ ସେମାନଙ୍କୁ ତିରସ୍କାର କରି କହିଲେ, ‘‘ତୁମେ ପୁରୁଷମାନଙ୍କ ନିମିତ୍ତ ନିର୍ଦ୍ଦିଷ୍ଟ ଘାଟକୁ ନ ଯାଇ ଏଠାକୁ କାହିଁକି ଆସିଛ ? ଏହି ଘାଟରେ ମହିଳାମାନେ ସ୍ନାନପରେ ସେମାନଙ୍କର ପରିଧେୟ ବସନାଦି ଧୌତ କରନ୍ତି । ଜାଣି ନାହଁ, ସ୍ତ୍ରୀଲୋକମାନଙ୍କୁ ନଗ୍ନ ଅବସ୍ଥାରେ ଦେଖିବା ଅନୁଚିତ୍ ?’’ ଗଦାଧର ତାଙ୍କୁ ପଚାରିଲେ, ‘‘କାହିଁକି ଦେଖିବା ଅନୁଚିତ୍ ?’’ ସେଥିରେ ସେ ବାଳକ ବୁଝିପାରିବ, ଏପରି କୌଣସି କାରଣ ନିର୍ଦ୍ଦେଶ ନ କରି ତାହାକୁ ଅଧିକତର ତିରସ୍କାର କରିବାକୁ ଲାଗିଲେ । ସେମାନେ ବିରକ୍ତ ହୋଇଛନ୍ତି ଏବଂ ଗୃହରେ ପିତାମାତାଙ୍କୁ କହିଦେବେ, ଏକଥା ଭାବି ବାଳକମାନେ ଅନେକାଂଶରେ ନିରସ୍ତ ହେଲେ । ଗଦାଧର କିନ୍ତୁ ସେଥିରେ ମନେ ମନେ ଅନ୍ୟପ୍ରକାରର ସଂକଳ୍ପ କଲେ । ଦୁଇ–ତିନି ଦିନ ରମଣୀମାନଙ୍କର ସ୍ନାନ ସମୟରେ ପୋଖରୀ ହୁଡ଼ାରେ ଥିବା ଗଛ ଆଢୁଆଳରେ ଲୁକ୍କାୟିତ ରହି ସେମାନଙ୍କୁ ଲକ୍ଷ୍ୟ କରିବାକୁ ଲାଗିଲେ । ଅନନ୍ତର ପୂର୍ବୋକ୍ତ ରମଣୀଙ୍କ ସହିତ ସାକ୍ଷାତ ହେବାରୁ ତାହାଙ୍କୁ କହିଲେ, ‘‘ପଅରଦିନ ଚାରିଜଣ ରମଣୀଙ୍କୁ, ଗତକାଲି ଛଅଜଣ ଏବଂ ଆଜି ଆଠଜଣ ରମଣୀଙ୍କୁ ସ୍ନାନ ସମୟରେ ଦେଖିଛି, କାହିଁ ମୋର ତ କିଛି ହେଲା ନାହିଁ ।’’ ବୟସ୍କା ସ୍ତ୍ରୀଲୋକଟି ଶ୍ରୀମତୀ ଚନ୍ଦ୍ରାଦେବୀଙ୍କ ନିକଟରେ ହସି ହସି ଏକଥା କହିଲେ । ଶ୍ରୀମତୀ ଚନ୍ଦ୍ରା ଅବସର କାଳରେ ଗଦାଧରଙ୍କୁ ନିକଟରେ ପାଇ ମିଷ୍ଟ ବାକ୍ୟରେ ବୁଝାଇ କହିଲେ, ‘‘ଏମିତି କଲେ ତୋ’ର କିଛି ହୁଏ ନାହିଁ, କିନ୍ତୁ ସ୍ତ୍ରୀଲୋକମାନେ ନିଜକୁ ବିଶେଷ ଅପମାନିତା ମନେ କରନ୍ତି, ସେମାନେ ମୋ ପରି, ସେମାନଙ୍କୁ ଅପମାନ କଲେ ମୋତେ ହିଁ ଅପମାନ କରିବା ହେବ । ଅତଏବ କେବେ ସେମାନଙ୍କର ସମ୍ମାନର ହାନି କରିବୁ ନାହିଁ । ସେମାନଙ୍କ ଓ ମୋ ମନରେ ଏପରି କଷ୍ଟ ଦେବା କ’ଣ ଭଲ ?’’ ଗଦାଧର ଏକଥା ବୁଝିପାରି ସେହି ଦିନଠାରୁ ଆଉ ଏପରି ଆଚରଣ କରି ନ ଥିଲେ ।

## ଗଦାଧରଙ୍କ ଶିକ୍ଷାର ଉନ୍ନତି ଓ ପ୍ରସାର :

ସେ ଯାହାହେଉ, ପାଠଶାଳା ଯାଇ ଗଦାଧରଙ୍କ ଶିକ୍ଷା କିଛି ମନ୍ଦ ଅଗ୍ରସର ହେଉ ନ ଥିଲା । ସେ ଅଳ୍ପ ସମୟ ମଧ୍ୟରେ ସାମାନ୍ୟ ଭାବରେ ପଢ଼ିବାକୁ ଓ ଲେଖିବାକୁ ସମର୍ଥ ହେଲେ । କିନ୍ତୁ ଗଣିତ ଉପରେ ସବୁ ସମୟରେ ବୀତସ୍ପୃହ ଥିଲେ । ଅନ୍ୟ ଦିଗରେ ବାଳକଟିର ଅନୁକରଣ ଓ ଉଦ୍ଭାବନୀ–ଶକ୍ତି ଦିନକୁ ଦିନ ବିଭିନ୍ନ ନୂତନ ଦିଗରେ ପ୍ରସାରିତ ହେବାକୁ ଲାଗିଲା । ଗ୍ରାମର କୁମ୍ଭାରମାନଙ୍କୁ ଦେବଦେବୀଙ୍କର ମୂର୍ତ୍ତି ଗଠନ କରିବାକୁ ଦେଖି ବାଳକ ସେମାନଙ୍କ ନିକଟକୁ ଯାତାୟାତ ଓ ଜିଜ୍ଞାସା କରି ଗୃହରେ ଏହି ବିଦ୍ୟା ଅଭ୍ୟାସ କରିବାକୁ ଲାଗିଲେ । ଏହା ତାହାର ଏକ କ୍ରୀଡ଼ା ମଧ୍ୟରେ ପରିଗଣିତ ହେଲା । ପଟ୍ଟଚିତ୍ର ଆଙ୍କୁଥିବା ବ୍ୟବସାୟୀମାନଙ୍କ ସହିତ ମିଶି ସେ ମଧ୍ୟ ସେପରି ଚିତ୍ର ଅଙ୍କନ ଆରମ୍ଭ କଲେ । ଗ୍ରାମରେ କେଉଁଠାରେ ପୁରାଣକଥା ଅଥବା ଯାତ୍ରା ଗାନ ହେଉଥିଲେ ସେଠାକୁ ଯାଇ ଶାସ୍ତ୍ର ଉପାଖ୍ୟାନ ସମସ୍ତ ଶିଖିବାକୁ ଲାଗିଲେ ଏବଂ ଶ୍ରୋତୃମଣ୍ଡଳୀଙ୍କ ନିକଟରେ କିପରି ଭାବରେ ପ୍ରକାଶ କଲେ ସେମାନଙ୍କର ପ୍ରୀତିକର ହେବ ତାହା ତନ୍ନ ତନ୍ନ କରି ଲକ୍ଷ୍ୟ କରିବାକୁ ଲାଗିଲେ । ବାଳକଟିର ଅପୂର୍ବ ସ୍ମୃତି ଓ ମେଧା ତାକୁ ଏସମସ୍ତ ବିଷୟରେ ବିଶେଷ ସହାୟକ ହେଲା ।

ଆହୁରି ମଧ୍ୟ ସଦା ପ୍ରଫୁଲ୍ଲିତ ବାଳକଟିର ରଙ୍ଗରସପ୍ରିୟତା, ତା'ର ଅଦ୍ଭୁତ ଅନୁକରଣଶକ୍ତି ଦ୍ୱାରା ପ୍ରବୃଦ୍ଧ ହୋଇ ଏକ ଦିଗରେ ଯେପରି ତାହାକୁ ନରନାରୀଙ୍କର ବିଶେଷ ଭାବ ଭଙ୍ଗୀ ଅଭିନୟ କରିବାକୁ ଏହି ବୟସରୁ ପ୍ରବୃତ୍ତ କଲା, ଅନ୍ୟ ଦିଗରେ ସେପରି ତାହାର ମନର ସ୍ୱାଭାବିକ ସରଳତା ଓ ଦେବଭକ୍ତି, ପିତାମାତାଙ୍କର ଦୈନନ୍ଦିନ ଅନୁଷ୍ଠାନସମୂହର ଦୃଷ୍ଟାନ୍ତରେ ଦ୍ରୁତପଦରେ ଉନ୍ନତି ପଥରେ ଅଗ୍ରସର ହେବାକୁ ଲାଗିଲା । ବାଳକ ବୟଃପ୍ରାପ୍ତ ହୋଇ ଚିରଜୀବନ ଏକଥା ଯେପରି କୃତଜ୍ଞ ହୃଦୟରେ ସ୍ମରଣ ଓ ସ୍ୱୀକାର କରିଅଛି, ସେ ସମସ୍ତ ଦକ୍ଷିଣେଶ୍ୱରଠାରେ ଆମ ନିକଟରେ ପ୍ରକାଶିତ କଥାଗୁଡ଼ିକରୁ ପାଠକମାନେ ଜାଣିପାରିବେ—''ମୋର ମା' ମୂର୍ତ୍ତିମତୀ ସରଳତାସ୍ୱରୂପା ଥିଲେ । ସଂସାରର କୌଣସି ବିଷୟ ବୁଝୁ ନ ଥିଲେ; ଟଙ୍କାପଇସା ଗଣି ପାରୁ ନ ଥିଲେ । କାହାକୁ କେଉଁକଥା କୁହାଯାଏ ନାହିଁ, ଏହା ଜାଣି ନ ପାରି ନିଜ ଅନ୍ତରର କଥା ସମସ୍ତଙ୍କୁ କହିଦେଉଥିଲେ । ସେଥିପାଇଁ ସମସ୍ତେ ତାକୁ 'ବାଲୁରି' ବୋଲି କହୁଥିଲେ । ସେ ସମସ୍ତଙ୍କୁ ଖୁଆଇବାକୁ ଖୁବ୍ ଭଲ ପାଉଥିଲେ । ମୋର ଜନକ କେବେ ହେଲେ ଶୂଦ୍ରଙ୍କଠାରୁ ଦାନ ଗ୍ରହଣ କରି ନାହାନ୍ତି; ପୂଜା, ଜପ, ଧ୍ୟାନରେ ବହୁତ ସମୟ ବିତାଇଥାଆନ୍ତି । ପ୍ରତିଦିନ ସନ୍ଧ୍ୟା କରିବା ସମୟରେ 'ଆୟାହି ବରଦେ ଦେବୀ' ଇତ୍ୟାଦି ଗାୟତ୍ରୀର ଆବାହନ ଉଚ୍ଚାରଣ କରୁ କରୁ ତାଙ୍କର ବକ୍ଷସ୍ଥଳ ସ୍ଫୀତ ଓ ରକ୍ତିମ ହୋଇଉଠୁଥିଲା ଏବଂ ନୟନରୁ ଅଶ୍ରୁଧାରା ଭାସିଯାଉଥିଲା; ପୁଣି, ପୂଜା

ସମୟ ବ୍ୟତୀତ ସେ ରଘୁବୀରଙ୍କୁ ସଜାଇବା ପାଇଁ ଛୁଞ୍ଚି-ସୂତା ନେଇ ଫୁଲମାଳା ଗୁନ୍ଥିବାରେ ସମୟ ଅତିବାହିତ କରୁଥିଲେ । ମିଥ୍ୟା ସାକ୍ଷ୍ୟ ଦେବାର ଭୟରେ ସେ ପୈତୃକ ଭିଟାମାଟି ତ୍ୟାଗ କରିଥିଲେ । ଗ୍ରାମବାସୀ ତାଙ୍କୁ ଋଷି ଜ୍ଞାନରେ ଶ୍ରଦ୍ଧା ଓ ଭକ୍ତି କରୁଥିଲେ ।''

**ବାଳକର ସାହସ :**

ଦିନକୁ ଦିନ ଗଦାଧରଙ୍କଠାରେ ଅସୀମ ସାହସର ପରିଚୟ ମଧ୍ୟ ମିଳିବାକୁ ଲାଗିଲା । ବୟସ୍କ ବ୍ୟକ୍ତିମାନେ ମଧ୍ୟ ଯେଉଁଠାରେ ଭୂତ-ପ୍ରେତ ଇତ୍ୟାଦି ଭୟରେ ଡରି ଥର ହର ହେଉଥିଲେ, ସେ ସେଠାକୁ ନିର୍ଭୟରେ ଯାଉଥିଲେ । ତାଙ୍କର ପିଉସୀ ଶ୍ରୀମତୀ ରାମଶୀଳାଙ୍କଠାରେ ବେଳେବେଳେ ଶୀତଳାଦେବୀଙ୍କର ଭାବାବେଶ ହେଉଥିଲା । ଏସମୟରେ ସେ ଏକ ଭିନ୍ନ ମଣିଷ ପରି ହୋଇଯାଉଥିଲେ । କାମାରପୁକୁରରେ ଭାଇଙ୍କ ଘରେ ଥିବାବେଳେ ଦିନେ ତାଙ୍କର ହଠାତ୍ ଏପରି ଭାବାନ୍ତର ଉପସ୍ଥିତ ହୋଇ ପରିବାରସ୍ଥ ସମସ୍ତଙ୍କ ମନରେ ଭୟ ଓ ଭକ୍ତିର ଉଦୟ କରିଥିଲା । ତାଙ୍କର ଏପରି ଅବସ୍ଥା ଶ୍ରଦ୍ଧା ସହିତ ଦେଖିଲେ ମଧ୍ୟ ଗଦାଧର ଆଦୌ ଶଙ୍କିତ ହେଲେ ନାହିଁ । ସେ ତାଙ୍କ ନିକଟରେ ଅବସ୍ଥାନ ପୂର୍ବକ ତନ୍ନ ତନ୍ନ କରି ତାଙ୍କର ଭାବାନ୍ତର ଲକ୍ଷ୍ୟ କରି ପରେ କହିଥିଲେ, ''ପିଉସୀ ମା'ଙ୍କ ଦେହରେ ଯିଏ ଅଛି, ସେ ଯଦି ମୋ ଦେହରେ ପଶନ୍ତା ଭଲ ହୁଅନ୍ତା ।''

**ଗଦାଧରଙ୍କ ଅନ୍ୟମାନଙ୍କ ସହିତ ମିଶିପାରିବାର ଶକ୍ତି :**

କାମାରପୁକୁରର ଅର୍ଦ୍ଧକ୍ରୋଶ ଉତ୍ତରରେ ଅବସ୍ଥିତ ଭୂରସୁବୋ ବା ଭୂରଶୋଭା ଗ୍ରାମର ବିଶିଷ୍ଟ ଦାତା ଓ ଭକ୍ତ ଜମିଦାର ମାଣିକରାଜାଙ୍କ କଥା ଏହାପୂର୍ବରୁ ଉଲ୍ଲେଖ ହୋଇଅଛି । ଶ୍ରୀଯୁକ୍ତ କ୍ଷୁଦିରାମଙ୍କର ଧର୍ମପରାୟଣତାରେ ଆକୃଷ୍ଟ ହୋଇ ସେ ତାଙ୍କ ସହିତ ବିଶେଷ ସୌହାର୍ଦ୍ଦ୍ୟସୂତ୍ରରେ ବାନ୍ଧି ହୋଇ ଯାଇଥିଲେ । ଛଅବର୍ଷର ବାଳକ ଗଦାଧର ପିତାଙ୍କ ସହିତ ଦିନେ ମାଣିକରାଜାଙ୍କ ଘରକୁ ଯାଇ ସେଠାରେ ସମସ୍ତଙ୍କ ପ୍ରତି ଏପରି ଚିରପରିଚିତ ନିଃସଙ୍କୋଚ ଓ ମଧୁର ବ୍ୟବହାର କରିଥିଲେ ଯେ, ସେଦିନଠାରୁ ସେ ସେମାନଙ୍କର ପ୍ରିୟ ହୋଇ ଉଠିଥିଲେ । ମାଣିକରାଜାଙ୍କର ଭ୍ରାତା ଶ୍ରୀଯୁକ୍ତ ରାମଜୟ ବନ୍ଦୋପାଧ୍ୟାୟ ସେଦିନ ବାଳକକୁ ଦେଖି ମୁଗ୍ଧ ହୋଇ ଶ୍ରୀଯୁକ୍ତ କ୍ଷୁଦିରାମଙ୍କୁ କହିଥିଲେ, ''ସଖା, ତୁମର ଏହି ପୁତ୍ରଟି ସାମାନ୍ୟ ନୁହେଁ, ଏହାଠାରେ ଦେବ-ଅଂଶ ବିଶେଷଭାବରେ ବିଦ୍ୟମାନ ଥିବା ଜଣାପଡୁଛି ! ତୁମେ ପୁଣି ଯେବେ ଆସିବ, ଏହାକୁ ସାଙ୍ଗରେ ଆଣିବ, କାରଣ ତାକୁ ଦେଖିଲେ ପରମ ଆନନ୍ଦ ଜାତ ହେଉଛି ।'' ଏହାପରେ ଶ୍ରୀଯୁକ୍ତ କ୍ଷୁଦିରାମ ବିଭିନ୍ନ କାରଣବଶତଃ ତାଙ୍କ ଘରକୁ କିଛିଦିନ ଧରି ଯାଇପାରି ନ ଥିଲେ । ମାଣିକରାଜା ନିଜ ପରିବାରର ଜଣେ ରମଣୀଙ୍କୁ ପଠାଇ ଗଦାଧର ଯଦି ସୁସ୍ଥ ଥାଏ ତାକୁ କିଛି ସମୟ ପାଇଁ

ଭୂରସୁବୋକୁ ନେବା ପାଇଁ କହିଥିଲେ । ଗଦାଧର ପିତାଙ୍କର ଅନୁମତିପ୍ରାପ୍ତ ହୋଇ ମହାଆନନ୍ଦରେ ଉକ୍ତ ରମଣୀଙ୍କ ସହିତ ଭୂରସୁବୋ ଗଲେ ଏବଂ ସମସ୍ତ ଦିବସ ସେଠାରେ କଟାଇ ସନ୍ଧ୍ୟା ସୁଦ୍ଧା ନାନାବିଧ ମିଷ୍ଟାନ୍ନ ଏବଂ କିଛି ଅଳଙ୍କାର ଉପହାରସ୍ୱରୂପ ପାଇ ନିଜ ଗୃହକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ଗଦାଧର କ୍ରମେ ଉକ୍ତ-ବ୍ରାହ୍ମଣ-ପରିବାରର ଏତେ ପ୍ରିୟପାତ୍ର ହୋଇଉଠିଥିଲେ ଯେ, ଶ୍ରୀଯୁକ୍ତ କ୍ଷୁଦିରାମଙ୍କ ଭୂରସୁବୋ ଗ୍ରାମକୁ ଯିବାର କିଛିଦିନ ବିଳମ୍ବ ହେଲେ ସେମାନେ ଲୋକ ପଠାଇ ଗଦାଧରଙ୍କୁ ନେଇ ଯାଉଥିଲେ ।

### ଗଦାଧରଙ୍କ ଭାବୁକତାର ଅସାଧାରଣ ପରିଣାମ :

ଏପରି ଦିବସ, ପକ୍ଷ, ମାସ ଅତୀତ ହୋଇ ଗଦାଧର ସାତବର୍ଷ ବୟସରେ ପଦାର୍ପଣ କଲେ ଏବଂ ତାଙ୍କଠାରେ ଶୈଶବର ମାଧୁର୍ଯ୍ୟ ଘନୀଭୂତ ହୋଇ ତାଙ୍କୁ ଦିନକୁ ଦିନ ସମସ୍ତଙ୍କର ଅଧିକତର ପ୍ରିୟପାତ୍ର କରିଥିଲା । ପଲ୍ଲୀବାସିନୀ ରମଣୀଗଣ ଗୃହରେ ସୁଖାଦ୍ୟ ପ୍ରସ୍ତୁତ କଲେ ସେଥିରୁ କିଛି କିପରି ତାଙ୍କୁ ଭୋଜନ କରାଇବେ ସେ ବିଷୟ ପ୍ରଥମେ ଚିନ୍ତା କରୁଥିଲେ । ଗଦାଧରଙ୍କ ସମବୟସ୍କ ସାଙ୍ଗମାନେ ମଧ୍ୟ ନିଜ ଭୋଜନର ଅଂଶ ତାଙ୍କ ସହିତ ବାଣ୍ଟି ଭୋଜନ କରି ଅଧିକ ପରିତୃପ୍ତ ବୋଧ କରୁଥିଲେ ଏବଂ ପଡ଼ୋଶୀମାନେ ସମସ୍ତେ ତାଙ୍କ ମଧୁର ବଚନ, ସଙ୍ଗୀତ ଓ ବ୍ୟବହାରରେ ମୁଗ୍ଧ ହୋଇ ତାଙ୍କ ବାଳକସୁଲଭ ଦୌରାତ୍ମ୍ୟସକଳ ହୃଷ୍ଟ ଚିତ୍ତରେ ସହ୍ୟ କରୁଥିଲେ । ଏହି ସମୟର ଗୋଟିଏ ଘଟଣାରେ ବାଳକ ତା'ର ପିତା-ମାତା ତଥା ବନ୍ଧୁବର୍ଗଙ୍କୁ ବିଶେଷ ଚିନ୍ତିତ କରିଥିଲା । ଈଶ୍ୱରଙ୍କ କୃପାରୁ ଗଦାଧର ସୁସ୍ଥ ସବଳ ଶରୀର ନେଇ ସଂସାରରେ ପ୍ରବିଷ୍ଟ ହୋଇଥିଲେ ଏବଂ ଜନ୍ମରୁ ଏପର୍ଯ୍ୟନ୍ତ ତାଙ୍କର କୌଣସି ରୋଗବ୍ୟାଧି ହୋଇ ନ ଥିଲା । ତେଣୁ ବାଳକ ଗଗନଚାରୀ ବିହଙ୍ଗ ସଦୃଶ ଅପୂର୍ବ ସ୍ୱାଧୀନତା ସହିତ ପ୍ରସନ୍ନ ଚିତ୍ତରେ ଦିନ କାଟୁଥିଲା । ଶରୀରବୋଧରାହିତ୍ୟ ହିଁ ପୂର୍ଣ୍ଣ ସ୍ୱାସ୍ଥ୍ୟର ଲକ୍ଷଣ ବୋଲି ପ୍ରସିଦ୍ଧ ଭେଷଜବିଦ୍ ବ୍ୟକ୍ତିଗଣ ମତ ଦେଇଥାନ୍ତି । ପିଲାଟି ଜନ୍ମ ସମୟରୁ ସେହିପରି ସ୍ୱାସ୍ଥ୍ୟବାନ ଥିଲା । ତଦୁପରି ତା'ର ସ୍ୱାଭାବିକ ଏକାଗ୍ର ଚିତ୍ତ ଯେତେବେଳେ କୌଣସି ବିଷୟରେ ନିବିଷ୍ଟ ହେଉଥିଲା, ସେତେବେଳେ ତା'ର ବାହ୍ୟିକ ଜ୍ଞାନ ହ୍ରାସ ହୋଇ ତାହାକୁ ଯେପରି ଭାବମୟ କରି ଦେଉଥିଲା । ମୁକ୍ତ ପବନ, ସବୁଜ ପ୍ରାନ୍ତର, ନଦୀର ଅବିରାମ ପ୍ରବାହ, ବିହଙ୍ଗର କଳରବ ଏବଂ ସର୍ବୋପରି ସୁନୀଳ ଅମ୍ବର ଏବଂ ତନ୍ମଧ୍ୟଗତ ପ୍ରତିକ୍ଷଣ-ପରିବର୍ତ୍ତନଶୀଳ ମେଘମାଳାର ମାୟାରାଜ୍ୟ ପ୍ରଭୃତି ଯେତେବେଳେ ଯାହା ତାକୁ ଆକୃଷ୍ଟ କରୁଥିଲା, ସେହିକ୍ଷଣି ସେଥିରେ ବାଳକ ଆତ୍ମହରା ହୋଇ ଭାବ ରାଜ୍ୟରେ କୌଣସି ଏକ ସୁଦୂର ନିଭୃତ ପ୍ରଦେଶରେ ପ୍ରବିଷ୍ଟ ହେଉଥିଲା ! ବର୍ତ୍ତମାନର ଘଟଣାଟି ମଧ୍ୟ ତା'ର ଭାବପ୍ରବଣତାରୁ ସୃଷ୍ଟି

ହୋଇଥିଲା ।[୧] ପ୍ରାନ୍ତର ମଧ୍ୟରେ ଯଥେଚ୍ଛ ପରିଭ୍ରମଣ କରୁ କରୁ ବାଳକ ଶୁଭ୍ର ମେଘମାଳା କ୍ରୋଡ଼ରେ ବକଦଳଙ୍କର ଶ୍ୱେତପକ୍ଷ ବିସ୍ତାରପୂର୍ବକ ସ୍ୱାଧୀନ ପରିଭ୍ରମଣ ଦେଖି ଏତେଦୂର ତନ୍ମୟ ହୋଇଥିଲା ଯେ, ତା'ର ନିଜ ଶରୀରର ଓ ଜାଗତିକ ଅନ୍ୟ ସମସ୍ତ ପଦାର୍ଥର ବୋଧ ସମ୍ପୂର୍ଣ୍ଣ ଲୋପ ପାଇଥିଲା ଏବଂ ଚେତନାଶୂନ୍ୟ ହୋଇ ସେ ପ୍ରାନ୍ତର ମଧ୍ୟରେ ପଡ଼ିଯାଇଥିଲା । ସମବୟସ୍କଗଣ ତା'ର ଏପରି ଅବସ୍ଥା ଦେଖି ଭୟାକୁଳ ହୋଇ ତା'ର ପିତାମାତାଙ୍କୁ ଏସମ୍ବାଦ ଦେଲେ ଏବଂ ତାକୁ ଧରାଧରି କରି ପ୍ରାନ୍ତରରୁ ଗୃହକୁ ଉଠାଇ ଆଣିଥିଲେ । ଚେତନାଲାଭର କିଛି ସମୟ ପରେ ହିଁ କିନ୍ତୁ ସେ ପୂର୍ବପରି ସୁସ୍ଥ ବୋଧ କରିଥିଲା । ଏଥିରେ ଅତିମାତ୍ରାରେ ଚିନ୍ତିତ ହୋଇ ଶ୍ରୀଯୁକ୍ତ କ୍ଷୁଦିରାମ ଓ ଶ୍ରୀମତୀ ଚନ୍ଦ୍ରାଦେବୀ ଏହାର ପୁନରାବୃତ୍ତି ନ ହେବା ପାଇଁ ବିଭିନ୍ନ ଉପାୟ ଅବଲମ୍ବନ କରିଥିଲେ, ଏକଥା କହିବା ବାହୁଲ୍ୟ । ଫଳରେ ସେମାନେ ବାଳକର ମୂର୍ଚ୍ଛାରୋଗ ବାହାରିଛି ବୋଲି ନାନାପ୍ରକାରର ଔଷଧ ଆଦି ପ୍ରୟୋଗସହିତ ଶାନ୍ତିସ୍ୱସ୍ତ୍ୟୟନାଦିରେ ମନୋନିବେଶ କଲେ । କିନ୍ତୁ ବାଳକ ଗଦାଧର ସେମାନଙ୍କୁ ଏଘଟଣା ସମ୍ବନ୍ଧରେ ବାରମ୍ବାର କହୁଥିଲେ, ତାଙ୍କର ମନ ଏକ ଅଭିନବ ଅଦୃଷ୍ଟପୂର୍ବ ଭାବରେ ସେତେବେଳେ ଲୀନ ହୋଇଥିଲା ବୋଲି ତାହାର ଏପରି ଅବସ୍ଥା ହୋଇଥିଲା ଏବଂ ବାହାରେ ଅନ୍ୟରୂପ ଦେଖାଗଲେ ମଧ୍ୟ ତାଙ୍କ ଅନ୍ତରରେ ସଂଜ୍ଞା ଥିଲା ଏବଂ ଏକ ଅପୂର୍ବ ଆନନ୍ଦର ବୋଧ ହେଉଥିଲା । ଯାହା ହେଉ, ତାଙ୍କର ଏପରି ଅବସ୍ଥା ଆଉ ନ ହେବାରୁ ଓ ସ୍ୱାସ୍ଥ୍ୟରେ କୌଣସି ବ୍ୟତିକ୍ରମ ନ ଦେଖିବାରୁ ଶ୍ରୀଯୁକ୍ତ କ୍ଷୁଦିରାମ ଧରିନେଲେ ଯେ, ଏହା କୌଣସି ପ୍ରକାରର ବାୟୁ ଦୋଷରୁ ସାମୟିକ ଭାବରେ ଉପସ୍ଥିତ ହୋଇଥିଲା; କିନ୍ତୁ ଶ୍ରୀମତୀ ଚନ୍ଦ୍ରା ସ୍ଥିର ନିଶ୍ଚୟ କରିଥିଲେ ଯେ କୌଣସି ଉପଦେବତାର ନଜର ପଡ଼ି ପୁଅର ଏପରି ଅବସ୍ଥା ହୋଇଛି । ଏହି ଘଟଣାପରେ ତାଙ୍କୁ କିଛିଦିନ ପାଠଶାଳାକୁ ପଠାଯାଇ ନ ଥିଲା । ପାଠଶାଳା ନ ଯିବାରୁ ବାଳକଟି ପ୍ରତିବେଶୀମାନଙ୍କ ଘରେ ଏବଂ ଗ୍ରାମର ସବୁ ସ୍ଥାନରେ ଯଥେଚ୍ଛ ପରିଭ୍ରମଣ କରି ପୂର୍ବ ଅପେକ୍ଷା ଅଧିକତର କ୍ରୀଡ଼ା କୌତୁକପରାୟଣ ହୋଇଉଠିଲେ ।

### ରାମଚାଁଦଙ୍କ ଗୃହରେ ଦୁର୍ଗାପୂଜା :

ଏହିପରି ବାଳକର ବୟସ ସାଢ଼େ ସାତବର୍ଷ ଅତୀତ ହୋଇ କ୍ରମେ ୧୮୪୩ ଖ୍ରୀଷ୍ଟାବ୍ଦର ଶାରଦୀୟା ଦୁର୍ଗାପୂଜାର ସମୟ ଉପସ୍ଥିତ ହେଲା । ଶ୍ରୀଯୁକ୍ତ କ୍ଷୁଦିରାମଙ୍କର କୃତୀ ଭଣଜା ରାମଚାଁଦ ବନ୍ଦ୍ୟୋପାଧ୍ୟାୟଙ୍କର ବିଷୟ ଏହା ପୂର୍ବରୁ ଉଲ୍ଲେଖ କରାଯାଇଅଛି । କର୍ମସ୍ଥଳ ମେଦିନୀପୁରରେ ବର୍ଷର ଅଧିକାଂଶ ସମୟ ଅତିବାହିତ କରୁଥିଲେ ହେଁ ସେଲାମପୁର ନାମକ ଗ୍ରାମ ତାଙ୍କର ପୈତୃକ

---

୧. ଠାକୁର ଏହି ଘଟଣା ସମ୍ବନ୍ଧରେ ନିଜେ ଯେପରି କହିଛନ୍ତି ସେଥିପାଇଁ 'ସାଧକଭାବ, ଦ୍ୱିତୀୟ ଅଧ୍ୟାୟ' ଦ୍ରଷ୍ଟବ୍ୟ ।

ବାସସ୍ଥାନ ଥିଲା ଏବଂ ଏହି ଗ୍ରାମରେ ତାଙ୍କର ପରିବାରବର୍ଗ ବାସ କରୁଥିଲେ । ଶ୍ରୀଯୁକ୍ତ ରାମଚାଁଦ ପ୍ରତିବର୍ଷ ତାଙ୍କ ଗ୍ରାମରେ ଶାରଦୀୟା ମହାପୂଜା ଅନୁଷ୍ଠାନରେ ଅନେକ ଅର୍ଥ ବ୍ୟୟ କରୁଥିଲେ । ହୃଦୟରାମଙ୍କଠାରୁ ଶୁଣାଯାଏ, ପୂଜା ସମୟରେ ରାମଚାଁଦଙ୍କର ସେଲାମପୁରସ୍ଥ ଭବନ ଆଠ ଦିନ ପର୍ଯ୍ୟନ୍ତ ବାଦ୍ୟଗୀତରେ ମୁଖରିତ ରହୁଥିଲା ଏବଂ ଏସମୟରେ ବ୍ରାହ୍ମଣଭୋଜନ, ପଣ୍ଡିତବିଦାୟ, ଦରିଦ୍ରଭୋଜନ ଓ ସେମାନଙ୍କୁ ବସ୍ତ୍ରଦାନ ପ୍ରଭୃତି କାର୍ଯ୍ୟରେ ସେଠାରେ ଆନନ୍ଦର ସ୍ରୋତ ନିରନ୍ତର ପ୍ରବାହିତ ହେଉଥିଲା । ଏହା ଉପଲକ୍ଷେ ଶ୍ରୀଯୁକ୍ତ ରାମଚାଁଦ ତାଙ୍କର ପରମ ଶ୍ରଦ୍ଧାସ୍ପଦ ମାତୁଳଙ୍କୁ ନିଜ ଗୃହକୁ ନେଇଯାଇ ତାଙ୍କ ସହିତ କିଛି ଦିନ ଆନନ୍ଦରେ ଅତିବାହିତ କରୁଥିଲେ । ଏହିବର୍ଷ ମଧ୍ୟ ଶ୍ରୀଯୁକ୍ତ କ୍ଷୁଦିରାମ ଓ ତାଙ୍କର ପରିବାରବର୍ଗ ପୂର୍ବପରି ରାମଚାଁଦଙ୍କର ସାଦର ନିମନ୍ତ୍ରଣ ଯଥାସମୟରେ ପ୍ରାପ୍ତ ହୋଇଥିଲେ ।

### କ୍ଷୁଦିରାମ ଓ ରାମକୁମାରଙ୍କର ରାମଚାଁଦଙ୍କ ଗୃହକୁ ଗମନ :

ଶ୍ରୀଯୁକ୍ତ କ୍ଷୁଦିରାମଙ୍କ ବୟସ ସେତେବେଳେ ପ୍ରାୟ ୬୮ବର୍ଷ ଅତିକ୍ରମ କରିବା ଉପରେ । କିଛିଦିନ ପୂର୍ବରୁ ମଝିରେ ମଝିରେ ଅଜୀର୍ଣ୍ଣ ଓ ଗ୍ରହଣୀ ରୋଗରେ ଆକ୍ରାନ୍ତ ହୋଇ ତାଙ୍କର ସୁଦୃଢ଼ ଶରୀର ବର୍ତ୍ତମାନ ବଳହୀନ ହୋଇପଡ଼ିଥିଲା । ତେଣୁ ସେ ତାଙ୍କର ଅତିପ୍ରିୟ ଭଣଜାର ସାଦର ଆମନ୍ତ୍ରଣରେ ତାଙ୍କ ଘରକୁ ଯିବାର ପ୍ରବଳ ଇଚ୍ଛାସତ୍ତ୍ୱେ, ଦ୍ୱିଧାଗ୍ରସ୍ତ ଥିଲେ । ନିଜର ଦରିଦ୍ର କୁଟୀର ଏବଂ ପରିବାରବର୍ଗଙ୍କୁ, ବିଶେଷ କରି ଗଦାଧରଙ୍କୁ କେତେଦିନ ପାଇଁ ଛାଡ଼ିଯିବାକୁ ତାଙ୍କର ଅନ୍ତର ମଧ୍ୟରୁ ଏକ କାରଣଶୂନ୍ୟ ପ୍ରବଳ ଅନିଚ୍ଛା ଅନୁଭବ କରିବାକୁ ଲାଗିଲେ । ପୁଣି ଭାବିଲେ, ତାଙ୍କ ଶରୀର ଯେପରି ଦୁର୍ବଳ ହୋଇପଡୁଛି, ଯଦି ସେ ଏବର୍ଷ ସେଠାକୁ ନ ଯାଆନ୍ତି ତାହାହେଲେ ଆଉ ପୁଣି କେବେ ଯାଇ ପାରିବେ କି ନାହିଁ ତାହା କିଏ କହିବ ? ତେଣୁ ସ୍ଥିର କଲେ, ସେ ଗଦାଧରଙ୍କୁ ସଙ୍ଗରେ ନେଇ ଯିବେ । ପର ମୁହୂର୍ତ୍ତରେ ଭାବିଲେ ଯଦି ଗଦାଧର ଏକୁଟିଆ ଯାଏ ତେବେ ଶ୍ରୀମତୀ ଚନ୍ଦ୍ରା ବିଶେଷ ଉଦ୍‌ବିଗ୍ନା ହେବେ । ଅଗତ୍ୟା ଜ୍ୟେଷ୍ଠ ପୁତ୍ର ରାମକୁମାରଙ୍କୁ ସଙ୍ଗରେ ନେଇ ପୂଜାର କେତେଦିନ ରାମଚାଁଦଙ୍କ ସହିତ ରହି ଫେରି ଆସିବେ । ଏହା ସ୍ଥିର କରି ରଘୁବୀରଙ୍କୁ ପ୍ରଣାମପୂର୍ବକ ସମସ୍ତଙ୍କଠାରୁ ବିଦାୟ ନେଇ ଏବଂ ଯିବା ସମୟରେ ଗଦାଧରଙ୍କ ମୁଖ ଚୁମ୍ବନ କରି ସେ ପୂଜାର କିଛିଦିନ ପୂର୍ବରୁ ସେଲାମପୁର ଯାତ୍ରାକଲେ । ରାମଚାଁଦ ପୁଜନୀୟ ମାତୁଳ ଓ ଭ୍ରାତା ରାମକୁମାରଙ୍କୁ ନିକଟରେ ପାଇ ବିଶେଷ ଆନନ୍ଦିତ ହେଲେ ।

### କ୍ଷୁଦିରାମଙ୍କ ବ୍ୟାଧି ଓ ଦେହତ୍ୟାଗ :

ସେଠାରେ ପହଞ୍ଚିବା ପରେ ପରେ ଶ୍ରୀଯୁକ୍ତ କ୍ଷୁଦିରାମଙ୍କର ଗ୍ରହଣୀ ରୋଗ ପୁନରାୟ ଦେଖାଦେବାରୁ ତାଙ୍କର ଚିକିତ୍ସା କରାଗଲା । ଷଷ୍ଠୀ, ସପ୍ତମୀ ଓ ଅଷ୍ଟମୀ

ତିନିଦିନ ମହା ଆନନ୍ଦରେ କଟିଗଲା, ମାତ୍ର ନବମୀ ଦିନ ଆନନ୍ଦ ମଧ୍ୟରେ ନିରାନନ୍ଦ ଉପସ୍ଥିତ ହେଲା । ଶ୍ରୀଯୁକ୍ତ କ୍ଷୁଦିରାମଙ୍କର ବ୍ୟାଧି ପ୍ରବଳଭାବ ଧାରଣ କଲା । ରାମଚାଁଦ ଉପଯୁକ୍ତ ବୈଦ୍ୟଗଣଙ୍କୁ ଆଣି ଭଗିନୀ ହେମାଙ୍ଗିନୀ ଓ ରାମକୁମାରଙ୍କ ସାହାଯ୍ୟରେ ତାଙ୍କର ସେବା ସଯତ୍ନରେ କରିବାକୁ ଲାଗିଲେ । ମାତ୍ର ଯେତେ ଯାହା କଲେ ମଧ୍ୟ ରୋଗ ଉପଶମର କୌଣସି ଲକ୍ଷଣ ଦେଖାଗଲା ନାହିଁ । ନବମୀ ଦିନଟି କୌଣସି ପ୍ରକାର କଟିଯାଇ ହିନ୍ଦୁମାନଙ୍କର ପବିତ୍ର ସମ୍ମିଳନୀର ଦିନ ବିଜୟାଦଶମୀ ସମାଗତ ହେଲା । ଶ୍ରୀଯୁକ୍ତ କ୍ଷୁଦିରାମ ଏପରି ଦୁର୍ବଳ ହୋଇ ପଡ଼ିଲେ ଯେ, ତାଙ୍କ ପକ୍ଷରେ କଥା କହିବା ମଧ୍ୟ ଅତ୍ୟନ୍ତ କଷ୍ଟକର ହେଲା ।

କ୍ରମେ ଅପରାହ୍ଣ ସମାଗତ ହେଲା । ରାମଚାଁଦ ପ୍ରତିମା ବିସର୍ଜନପୂର୍ବକ ଶୀଘ୍ର ମାତୁଳଙ୍କ ନିକଟରେ ଉପସ୍ଥିତ ହୋଇ ଦେଖିଲେ, ତାଙ୍କର ଅନ୍ତିମକାଳ ଉପସ୍ଥିତପ୍ରାୟ । ସେ ପଚାରି ବୁଝିଲେ, ଶ୍ରୀଯୁକ୍ତ କ୍ଷୁଦିରାମ ଅନେକ ସମୟ ଧରି ନିର୍ବାକ ଓ ଚେତାଶୂନ୍ୟ ହୋଇ ପଡ଼ିରହିଛନ୍ତି । ସେତେବେଳେ ରାମଚାଁଦ କାନ୍ଦି କାନ୍ଦି ତାଙ୍କୁ କହିଲେ, ''ମାମୁଁ ତୁମେ ଯେ ସର୍ବଦା 'ରଘୁବୀର, ରଘୁବୀର' କହୁଥାଅ ଏବେ ସେପରି କହୁ ନାହଁ କାହିଁକି ?'' ଏହି ନାମ ଶ୍ରବଣ କରିବା ମାତ୍ରେ ହଠାତ୍ ଶ୍ରୀଯୁକ୍ତ କ୍ଷୁଦିରାମଙ୍କର ଚେତା ଫେରି ଆସିଲା । ସେ ଥରି ଥରି କ୍ଷୀଣ କଣ୍ଠରେ ଧୀରେ ଧୀରେ କହିଲେ, ''କିଏ, ରାମଚାଁଦ ? ପ୍ରତିମା ବିସର୍ଜନ କରି ଆସିଲ ? ତେବେ ମୋତେ ଟିକେ ବସାଇଦିଅ ।'' ତେଣୁ ରାମଚାଁଦ, ହେମାଙ୍ଗିନୀ ଓ ରାମକୁମାର ତାଙ୍କୁ ଧରାଧରି କରି ଅତି ସତର୍କତାର ସହିତ ବିଛଣାରେ ବସାଇ ଦେଲା ମାତ୍ରେ ସେ ଗୁରୁଗମ୍ଭୀର ସ୍ୱରରେ ତିନିଥର ରଘୁବୀରଙ୍କର ନାମ ଉଚ୍ଚାରଣପୂର୍ବକ ଶରୀର ତ୍ୟାଗ କଲେ । ବିନ୍ଦୁ ସିନ୍ଧୁରେ ମିଳିତ ହେଲା—ରଘୁବୀର, ଭକ୍ତଙ୍କର ପୃଥକ୍ ଜୀବନବିନ୍ଦୁଟିକୁ ନିଜର ଅନନ୍ତ ଜୀବନରେ ସମ୍ମିଳିତ କରି ତାଙ୍କୁ ଅମର ଓ ପୂର୍ଣ୍ଣ ଶାନ୍ତିର ଅଧିକାରୀ କରିଦେଲେ । ପରେ ଗଭୀର ରାତ୍ରରେ ଉଚ୍ଚ ସଂକୀର୍ତ୍ତନରେ ଗ୍ରାମଟି ମୁଖରିତ ହେଲା ଏବଂ ଶ୍ରୀଯୁକ୍ତ କ୍ଷୁଦିରାମଙ୍କର ମରଶରୀରର ସଂସ୍କାର କାର୍ଯ୍ୟ ନଦୀକୂଳରେ ସମ୍ପାଦିତ ହେଲା । ପରଦିନ ଉକ୍ତ ସମ୍ବାଦ ପହଞ୍ଚିବା ମାତ୍ରେ କାମାରପୁକୁରର ଆନନ୍ଦଧାମ ନିରାନନ୍ଦରେ ପୂର୍ଣ୍ଣ ହେଲା ।

ଅନନ୍ତର ଅଶୌଚାନ୍ତେ ଶ୍ରୀଯୁକ୍ତ ରାମକୁମାର ଶାସ୍ତ୍ରବିଧାନାନୁସାରେ ବୃଷୋତ୍ସର୍ଗ ଏବଂ ଅନେକ ବ୍ରାହ୍ମଣଭୋଜନ କରାଇ ପିତାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ସମ୍ପୂର୍ଣ୍ଣ କଲେ । ଶୁଣାଯାଏ, ଶ୍ରୀଯୁକ୍ତ ରାମଚାଁଦ ମାମୁଁଙ୍କର ଶ୍ରାଦ୍ଧକ୍ରିୟା ନିମିତ୍ତ ପାଞ୍ଚଶତ ଟଙ୍କା ସାହାଯ୍ୟ କରିଥିଲେ ।

# ସପ୍ତମ ଅଧ୍ୟାୟ

## ଗଦାଧରଙ୍କର କିଶୋର ଅବସ୍ଥା

### କ୍ଷୁଦିରାମଙ୍କ ମୃତ୍ୟୁ ଯୋଗୁଁ ତାଙ୍କ ପରିବାରବର୍ଗଙ୍କ ଜୀବନରେ ଯେଉଁ ସମସ୍ତ ପରିବର୍ତ୍ତନ ଉପସ୍ଥିତ ହେଲା :

ଶ୍ରୀଯୁକ୍ତ କ୍ଷୁଦିରାମଙ୍କର ଦେହାନ୍ତରେ ତାଙ୍କର ପରିବାରବର୍ଗଙ୍କ ଜୀବନରେ ବିଶେଷ ପରିବର୍ତ୍ତନ ଉପସ୍ଥିତ ହେଲା । ବିଧାତାଙ୍କ ବିଧାନରେ ଶ୍ରୀମତୀ ଚନ୍ଦ୍ରା ଦୀର୍ଘ ୪୪ବର୍ଷ ଧରି ସୁଖ-ଦୁଃଖରେ ତାଙ୍କୁ ଜୀବନସାଥୀ ରୂପେ ପାଇଥିଲେ, ତେଣୁ ତାଙ୍କୁ ହରାଇ ସେ ଯେ ଜଗତକୁ ଶୂନ୍ୟ ଦେଖିବେ ଏବଂ ପ୍ରାଣରେ ଏକ ଚିରସ୍ଥାୟୀ ଅଭାବ ପ୍ରତିକ୍ଷଣ ଅନୁଭବ କରିବେ, ଏକଥା କହିବା ଅନାବଶ୍ୟକ । ସୁତରାଂ ଶ୍ରୀଶ୍ରୀ ରଘୁବୀରଙ୍କର ପାଦପଦ୍ମରେ ଶରଣଗ୍ରହଣରେ ଚିର ଅଭ୍ୟସ୍ତ ତାଙ୍କ ମନର ଗତି ଏବେ ସଂସାର ଛାଡ଼ି ସେହି ଦିଗରେ ନିରନ୍ତର ପ୍ରବାହିତ ହେଲା । କିନ୍ତୁ ମନ ଛାଡ଼ିଲେ କ'ଣ ହେବ ? ଯେପର୍ଯ୍ୟନ୍ତ କାଳ ନ ପୁରିଛି ସେତେଦିନ ସଂସାର ତାଙ୍କୁ ଛାଡ଼ିବ କିପରି ? ସାତବର୍ଷର ପୁତ୍ର ଗଦାଧର ଓ ଚାରିବର୍ଷର କନ୍ୟା ସର୍ବମଙ୍ଗଳାର ଚିନ୍ତା ତାଙ୍କ ଅନ୍ତରରେ ଉଦ୍ରେକ ହୋଇ ପୁନଶ୍ଚ ସଂସାର ତାଙ୍କୁ ଦୈନନ୍ଦିନ ଜୀବନର ସୁଖ-ଦୁଃଖ ମଧ୍ୟକୁ ଧୀରେ ଧୀରେ ଫେରାଇ ଆଣିବାକୁ ଲାଗିଲା । ସୁତରାଂ ରଘୁବୀରଙ୍କ ସେବା ସହିତ କନିଷ୍ଠ ପୁତ୍ରକନ୍ୟାଙ୍କର ପାଳନରେ ନିଯୁକ୍ତା ଶ୍ରୀମତୀ ଚନ୍ଦ୍ରାଙ୍କର ଦୁଃଖର ଦିନଗୁଡ଼ିକ କୌଣସି ପ୍ରକାରରେ କଟିବାକୁ ଲାଗିଲା ।

ଅନ୍ୟଦିଗରେ ପିତୃବତ୍ସଳ ରାମକୁମାରଙ୍କ କାନ୍ଧରେ ଏବେ ସଂସାରର ସମସ୍ତ ଭାର ପଡ଼ିବାରୁ ତାଙ୍କୁ ବୃଥା ଶୋକାନଳରେ କାଳକ୍ଷେପଣ କରିବାକୁ ଅବସର ମିଳିଲା ନାହିଁ । ଶୋକାତୁରା ଜନନୀ ଏବଂ ତରୁଣ ବୟସ୍କ ଭ୍ରାତା ଓ ଭଉଣୀ ଯେପରି କୌଣସି ପ୍ରକାରର ଅଭାବଗ୍ରସ୍ତ ହୋଇ କଷ୍ଟ ନ ପାଆନ୍ତି, ଅଷ୍ଟାଦଶ ବର୍ଷୀୟ ମଧ୍ୟମ ଭ୍ରାତା ରାମେଶ୍ୱର ଯେପରି ସ୍ମୃତି ଓ ଜ୍ୟୋତିଷ ଶାସ୍ତ୍ର ଅଧ୍ୟୟନ ଶେଷ କରି ଉପାର୍ଜନକ୍ଷମ ହୋଇ ସଂସାରରେ ସାହାଯ୍ୟ କରିପାରେ ଏବଂ ସେ ସ୍ୱୟଂ ପୂର୍ବାପେକ୍ଷା କିପରି ଅଧିକ ଆୟ କରି ସଂସାରର ଉନ୍ନତି ସାଧନ କରିବେ—ଏ ସମସ୍ତ ବିଷୟରେ ବିଶେଷ ଚିନ୍ତା ଓ କାର୍ଯ୍ୟରେ ବ୍ୟାପୃତ ରହି ତାଙ୍କର ଦିନ କଟିବାକୁ ଲାଗିଲା । ତାଙ୍କର କର୍ମକୁଶଳା ଗୃହିଣୀ ମଧ୍ୟ ଚନ୍ଦ୍ରାଦେବୀଙ୍କର ଅବସ୍ଥା ହୃଦୟଙ୍ଗମ କରି ପରିବାରବର୍ଗଙ୍କ ନିମନ୍ତେ ଆହାରାଦି ଓ ଅନ୍ୟାନ୍ୟ ଗୃହକର୍ମର ଅଧିକାଂଶ ଭାର ଗ୍ରହଣ କଲେ ।

### ଏହି ଘଟଣାରେ ଗଦାଧରଙ୍କର ମନର ଅବସ୍ଥା :

ପଣ୍ଡିତ ବ୍ୟକ୍ତିମାନେ କହନ୍ତି ଶୈଶବରେ ମାତୃବିୟୋଗ, କିଶୋରାବସ୍ଥାରେ ପିତୃବିୟୋଗ ଓ ଯୌବନକାଳରେ ସ୍ତ୍ରୀ ବିୟୋଗ ଜୀବନରେ ଯେତେ ଅଭାବ ପହଞ୍ଚାଇଥାଏ ସେତେ ବୋଧହୁଏ ଅନ୍ୟ କୌଣସି ଘଟଣାରେ ହୋଇ ନ ଥାଏ । ମାତାଙ୍କର ଆଦରଯତ୍ନ ହିଁ ଶୈଶବର ପ୍ରଧାନ ଅବଲମ୍ବନ ଥାଏ, ସେଥିପାଇଁ ଏସମୟରେ ପିତୃବିୟୋଗର ଅଭାବ ଶିଶୁକୁ ଉପଲବ୍ଧି ହୋଇ ନ ଥାଏ । କିନ୍ତୁ ବୁଦ୍ଧିର ଉନ୍ମେଷ ସହିତ କୈଶୋରରେ ଉପସ୍ଥିତ ହୋଇ ସେହି ଶିଶୁ ପିତାଙ୍କର ଯେଉଁ ଅମୂଲ୍ୟ ସ୍ନେହର ପରିଚୟ ଲାଭ କରିଥାଏ, ସ୍ନେହମୟୀ ଜନନୀ ଯେଉଁ ସବୁ ଅଭାବ ପୂର୍ଣ୍ଣ କରିବାରେ ଅସମର୍ଥା, ପିତାଙ୍କ ଦ୍ୱାରା ସେହି ସମସ୍ତ ଅଭାବ ମୋଚିତ ହୋଇ ତାହାର ହୃଦୟ ସେତେବେଳେ ତାଙ୍କ ପ୍ରତି ଆକୃଷ୍ଟ ହେବାକୁ ଆରମ୍ଭ କରେ । ସୁତରାଂ ସେ ସମୟରେ ପିତୃବିୟୋଗ ଉପସ୍ଥିତ ହେଲେ ତାହାର ଜୀବନରେ ଅଭାବବୋଧର ପରିସୀମା ରହେ ନାହିଁ । ପିତୃବିୟୋଗ ଯୋଗୁଁ ଗଦାଧରଙ୍କର ଏପରି ହୋଇଥିଲା । ପ୍ରତିଦିନ ନାନା ପ୍ରକାରର ଛୋଟ ଛୋଟ ଘଟଣା ତାଙ୍କୁ ପିତାଙ୍କର ଅଭାବ ସ୍ମରଣ କରାଇ ତାଙ୍କ ଅନ୍ତରରେ ବିଷାଦର ଗାଢ଼ କାଳିମା ଆଚ୍ଛାଦିତ କରୁଥିଲା । କିନ୍ତୁ ତାଙ୍କ ହୃଦୟ ଓ ବୁଦ୍ଧି ଏହି ବୟସରୁ ଅନ୍ୟମାନଙ୍କ ଅପେକ୍ଷା ଅଧିକ ପରିପକ୍ୱ ହୋଇଥିବାରୁ ମା'ଙ୍କ ମୁହଁକୁ ଚାହିଁ ସେ ଏକଥା କେବେ ହେଲେ ବାହାରେ ପ୍ରକାଶ କରୁ ନ ଥିଲେ । ସମସ୍ତେ ଦେଖୁଥିଲେ, ବାଳକ ପୂର୍ବପରି ସର୍ବଦା ଆନନ୍ଦରେ ହସ–କୌତୁକରେ ସମୟ ଅତିବାହିତ କରୁଛି । ଭୂତିର ଖାଲର ଶ୍ମଶାନ, ମାଣିକରାଜାଙ୍କର ଆମ୍ବ ବଗିଚା, ପ୍ରଭୃତି ଜନଶୂନ୍ୟ ସ୍ଥାନମାନଙ୍କରେ କେବେ କେବେ ତାଙ୍କୁ ଏକାକୀ ବୁଲୁଥିବାର ଦେଖିଲେ ହେଁ ବାଳସୁଲଭ ଚପଳତା ବ୍ୟତୀତ ଅନ୍ୟ କୌଣସି କାରଣରୁ ସେ ସେଠାରେ ଉପସ୍ଥିତ ହୋଇଛନ୍ତି, ଏକଥା କାହାରି ମନରେ ଆସୁ ନ ଥିଲା । ବାଳକ କିନ୍ତୁ ଏବେଠାରୁ ଚିନ୍ତାଶୀଳ ଓ ନିର୍ଜନ ପ୍ରିୟ ହୋଇ ସଂସାରର ସମସ୍ତ ବ୍ୟକ୍ତିଙ୍କୁ ଚିନ୍ତାର ବିଷୟ କରି ସେମାନଙ୍କର ଆଚରଣ ତନ୍ନ ତନ୍ନ କରି ଲକ୍ଷ୍ୟ କରିବାକୁ ଲାଗିଲେ ।

### ଚନ୍ଦ୍ରାଦେବୀଙ୍କ ପ୍ରତି ଗଦାଧରଙ୍କ ବର୍ତ୍ତମାନ ଆଚରଣ :

ସମଭାବାପନ୍ନ ଅଭାବବୋଧରେ ମନୁଷ୍ୟ ପରସ୍ପର ପ୍ରତି ଆକୃଷ୍ଟ ହୋଇଥାଆନ୍ତି । ବୋଧହୁଏ ସେଥିପାଇଁ ବାଳକ ତା'ର ମା'ଙ୍କ ପ୍ରତି ଏହି ସମୟରେ ଏକ ବିଶେଷ ଆକର୍ଷଣ ଅନୁଭବ କଲା । ସେ ପୂର୍ବାପେକ୍ଷା ଏବେ ତାଙ୍କ ନିକଟରେ ବେଶୀ ସମୟ ରହି ଦେବତାଙ୍କ ସେବାରେ ଓ ଗୃହକର୍ମରେ ମା'ଙ୍କୁ ଯଥାସାଧ୍ୟ ସାହାଯ୍ୟ କରି ଆନନ୍ଦ ଅନୁଭବ କରିବାକୁ ଲାଗିଲା । ସେ ପାଖରେ ରହିଥିଲେ ମା' ତାଙ୍କର ନିଜ ଜୀବନର ଅଭାବବୋଧ ଅନେକାଂଶରେ ଭୁଲି ରହନ୍ତି, ଏକଥା

ଲକ୍ଷ୍ୟ କରିବାକୁ ପିଲାଟିକୁ ବେଶୀ ସମୟ ଲାଗି ନ ଥିଲା । ମାତାଙ୍କ ପ୍ରତି ଏବେ ପିଲାଟିର ଆଚରଣ କିଛିଟା ଭିନ୍ନ ଆକାର ଧାରଣ କରିଥିଲା । କାରଣ, ପିତାଙ୍କର ମୃତ୍ୟୁପରେ ସେ କୌଣସି ଜିନିଷ ଲାଭ ପାଇଁ ଚନ୍ଦ୍ରାଦେବୀଙ୍କ ପାଖରେ ପୂର୍ବପରି ଅଳି କରୁ ନ ଥିଲା, ସେ ବୁଝିପାରିଥିଲା, ଯଦି ତା'ର ମା' ସେ ମାଗିଥିବା ପଦାର୍ଥ ଦେଇ ନ ପାରିବେ ତେବେ ତାଙ୍କର ଶୋକ ବର୍ଦ୍ଧିତ ହୋଇ ତାଙ୍କୁ ବିଶେଷ କଷ୍ଟ ହେବ । ଫଳରେ ପିତୃବିୟୋଗ ପରେ ମା'ଙ୍କୁ ସର୍ବଦା ରକ୍ଷା କରିବାର ଭାବ ତାଙ୍କ ହୃଦୟରେ ଜାଗରିତ ହୋଇଉଠିଲା ।

### ଗଦାଧରଙ୍କର ଏହି ସମୟରେ ଚେଷ୍ଟା ଓ ସାଧୁମାନଙ୍କ ସହିତ ମିଳନ :

ପୂର୍ବପରି ଗଦାଧର ପାଠଶାଳା ଯାଇ ବିଦ୍ୟାଭ୍ୟାସ କରିବାକୁ ଲାଗିଲେ, କିନ୍ତୁ ପୁରାଣ-କଥା ଓ ଯାତ୍ରାସଙ୍ଗୀତ ଶ୍ରବଣ କରିବା ଏବଂ ଦେବଦେବୀଙ୍କର ମୂର୍ତ୍ତି ଗଢ଼ିବା ତାଙ୍କ ପାଇଁ ବର୍ତ୍ତମାନ ଅଧିକତର ପ୍ରିୟ ହୋଇଉଠିଲା । ଏସମସ୍ତ ବିଷୟରେ ନିଯୁକ୍ତ ରହିଲେ ପିତାଙ୍କର ଅଭାବବୋଧ ଅନେକାଂଶରେ ବିସ୍ମୃତ ହୋଇଯାଏ ବୋଲି ବୋଧହୁଏ ସେ ଏବେ ଏଗୁଡ଼ିକ ବିଶେଷ ରୂପରେ ଅବଲମ୍ବନ କରିଥିଲେ । ବାଳକର ଅସାଧାରଣ ସ୍ୱଭାବ ତାକୁ ଏସମୟରେ ଅନ୍ୟ ଏକ ଅଭିନବ ବିଷୟରେ ପ୍ରବୃତ୍ତ କରିଥିଲା । ଗ୍ରାମର ଅଗ୍ନିକୋଣରେ ପୁରୀ ଯିବାର ରାସ୍ତା ଉପରେ ଜମିଦାର ଲାହାବାବୁ ଯାତ୍ରୀମାନଙ୍କ ସୁବିଧା ପାଇଁ ଗୋଟିଏ ପାନ୍ଥନିବାସ ପ୍ରତିଷ୍ଠା କରିଥିଲେ । ଶ୍ରୀଜଗନ୍ନାଥ ଦର୍ଶନ ପାଇଁ ଯିବା ସମୟରେ ଏବଂ ସେଠାରୁ ଫେରିବା ସମୟରେ ସାଧୁ-ବୈରାଗୀମାନେ ଅନେକ ସମୟ ଏହି ପାନ୍ଥନିବାସରେ ଆଶ୍ରୟ ଗ୍ରହଣପୂର୍ବକ ଗ୍ରାମକୁ ପ୍ରବେଶ କରି ଭିକ୍ଷା ସଂଗ୍ରହ କରୁଥିଲେ । ଗଦାଧର ସଂସାରର ଅନିତ୍ୟତା କଥା ଏହା ପୂର୍ବରୁ ଶ୍ରବଣ କରିଥିଲେ ଏବଂ ପିତାଙ୍କର ମୃତ୍ୟୁପରେ ଏବିଷୟରେ ସାକ୍ଷାତ ପରିଚୟ ମଧ୍ୟ ଲାଭ କରିଥିଲେ । ସାଧୁ-ବୈରାଗୀମାନେ ଅନିତ୍ୟ ସଂସାର ପରିତ୍ୟାଗପୂର୍ବକ ଶ୍ରୀଭଗବାନଙ୍କର ଦର୍ଶନାକାଂକ୍ଷୀ ହୋଇ କାଳଯାପନ କରନ୍ତି ଏବଂ ସାଧୁସଙ୍ଗ ମାନବକୁ ଚରମ ଶାନ୍ତି ପ୍ରଦାନରେ କୃତାର୍ଥ କରେ, ପୁରାଣରୁ ଏକଥା ଜାଣି ବାଳକ ସାଧୁମାନଙ୍କ ସହିତ ପରିଚିତ ହେବା ଆଶାରେ ଉକ୍ତ ପାନ୍ଥନିବାସକୁ ଏବେଠାରୁ ବେଳେ ବେଳେ ଯିବାଆସିବା କରିବାକୁ ଲାଗିଲା । ପ୍ରାତଃ ଓ ସନ୍ଧ୍ୟା ସମୟରେ ଧୁନିମଧ୍ୟଗତ ପବିତ୍ର ଉଜ୍ଜ୍ୱଳ ଅଗ୍ନି ସମ୍ମୁଖରେ ସେମାନେ କିପରି ଭଗବାନଙ୍କ ଧ୍ୟାନରେ ନିମଗ୍ନ ହୁଅନ୍ତି; ଭିକ୍ଷାଲବ୍ଧ ସାମାନ୍ୟ ଆହାର ନିଜର ଇଷ୍ଟ ଦେବତାଙ୍କୁ ନିବେଦନପୂର୍ବକ ସେମାନେ କିପରି ସନ୍ତୁଷ୍ଟ ଚିତ୍ତରେ ପ୍ରସାଦ ଗ୍ରହଣ କରନ୍ତି; ବ୍ୟାଧିର ପ୍ରବଳ ପ୍ରକୋପରେ ପଡ଼ି ମଧ୍ୟ କିପରି ଭାବରେ ସେମାନେ ଶ୍ରୀଭଗବାନଙ୍କର ମୁଖାପେକ୍ଷୀ ହୋଇ ଏହାକୁ ଅକାତରେ ସହ୍ୟ କରିବାକୁ ଚେଷ୍ଟା କରନ୍ତି; ନିଜର ବିଶେଷ ପ୍ରୟୋଜନସିଦ୍ଧି ନିମିତ୍ତ

ସେମାନେ ଯେପରି କାହାକୁ ଉଦ୍‌ବିଗ୍ନ କରିବାକୁ ପରାଙ୍‌ମୁଖ ହୋଇଥାଆନ୍ତି ଏବଂ ସାଧୁମାନଙ୍କ ପରି ବେଶଭୂଷାକାରୀ ଭଣ୍ଡ ବ୍ୟକ୍ତିଗଣ କେଉଁ ଭାବରେ ସର୍ବପ୍ରକାର ସଦାଚାରର ବିପରୀତ ଆଚରଣ କରି ସ୍ୱାର୍ଥସୁଖସାଧନ ନିମିତ୍ତ ଜୀବନ ଧାରଣ କରନ୍ତି—ଏ ସମସ୍ତ ବିଷୟ ବାଳକର ଏବେ ଅବସରକାଳରେ ଲକ୍ଷ୍ୟ କରିବାର ବିଷୟ ହେଲା । କ୍ରମେ ସେ ଯଥାର୍ଥ ସାଧୁଗଣଙ୍କୁ ଦେଖିଲେ ରନ୍ଧନାଦି ନିମିତ୍ତ କାଷ୍ଠ ସଂଗ୍ରହ, ପାନୀୟଜଳ ଆନୟନ ପ୍ରଭୃତି କ୍ଷୁଦ୍ର କ୍ଷୁଦ୍ର କାର୍ଯ୍ୟରେ ସାହାଯ୍ୟ କରି ସେମାନଙ୍କ ସହିତ ଘନିଷ୍ଠ ଭାବରେ ମିଶିବାକୁ ଲାଗିଲେ । ସେମାନେ ମଧ ପ୍ରିୟଦର୍ଶନ ବାଳକର ମଧୁର ଆଚରଣରେ ପରିତୃପ୍ତ ହୋଇ ତାକୁ ଭଗବାନଙ୍କର ଭଜନ ଶିଖାଇ, ନାନାଭାବରେ ସଦୁପଦେଶ ପ୍ରଦାନ କରି ଏବଂ ପ୍ରସାଦୀ ଭିକ୍ଷାନ୍ନରୁ କିୟଦଂଶ ତାକୁ ଦେଇ ତା ସହିତ ଏକତ୍ର ଭୋଜନ କରି ଆନନ୍ଦ ଅନୁଭବ କରିବାକୁ ଲାଗିଲେ । ପାନ୍ଥନିବାସରେ ଅବଶ୍ୟ ଯେଉଁ ସକଳ ସାଧୁ ଅଧିକ ଦିନ ବାସ କରୁଥିଲେ, ସେମାନଙ୍କ ସହିତ ହିଁ ବାଳକ ଏପରି ଭାବରେ ମିଶିବାକୁ ସମର୍ଥ ହେଉଥିଲା ।

### ସାଧୁମାନଙ୍କ ସହିତ ମିଳନରେ ଚନ୍ଦ୍ରାଦେବୀଙ୍କର ଆଶଙ୍କା ଓ ତାହାର ନିବାରଣ :

ଗଦାଧରଙ୍କ ଆଠବର୍ଷ ବୟସ ହୋଇଥିବା ସମୟରେ କେତେଜଣ ସାଧୁ ଅତ୍ୟଧିକ ପଥଶ୍ରମ ନିବାରଣ ପାଇଁ ଅଥବା ଅନ୍ୟ କୌଣସି କାରଣରୁ ଲାହାବାବୁଙ୍କର ପାନ୍ଥନିବାସରେ ଏପରି ଅଧିକ ଦିନ ଅବସ୍ଥାନ କରିଥିଲେ । ବାଳକ ସେମାନଙ୍କ ସହିତ ପୂର୍ବୋକ୍ତ ଭାବରେ ମିଶି ଅତିଶୀଘ୍ର ସେମାନଙ୍କର ପ୍ରିୟ ହୋଇଉଠିଲା । ସେମାନଙ୍କ ସହିତ ତାହାର ଏପରି ଭାବରେ ମିଶିବା ପ୍ରଥମେ କେହି ଜାଣି ପାରି ନ ଥିଲେ । କିନ୍ତୁ ପିଲାଟି ଯେତେବେଳେ ସେମାନଙ୍କ ସହିତ ଘନିଷ୍ଠ ଭାବରେ ମିଶି ଅଧିକ ସମୟ ବିତାଇବାକୁ ଲାଗିଲା, ସେତେବେଳେ ଏକଥା କାହାକୁ ଅଛପା ରହିଲା ନାହିଁ । କାରଣ, ସେ ଦିନେ ଦିନେ ସେମାନଙ୍କ ପାଖରେ ପ୍ରଚୁର ଆହାର କରି ଫେରୁଥିବାରୁ ଘରେ ଆଉ କିଛି ଖାଉ ନ ଥିଲା ଏବଂ ଚନ୍ଦ୍ରାଦେବୀ ଏହାର କାରଣ ପଚାରିଲେ ସେ ସମସ୍ତ କଥା କହି ଦେଉଥିଲା । ଶ୍ରୀମତୀ ଚନ୍ଦ୍ରା ଏଥିରେ ପ୍ରଥମେ ପ୍ରଥମେ ଉଦ୍‌ବିଗ୍ନ ହେଉ ନ ଥିଲେ । ବାଳକ ପ୍ରତି ସାଧୁଗଣଙ୍କର ପ୍ରସନ୍ନତା ଆଶୀର୍ବାଦସ୍ୱରୂପ ଗ୍ରହଣ କରି ସେ ତା ହାତରେ ସେହି ସାଧୁସନ୍ଥମାନଙ୍କ ନିମନ୍ତେ ପ୍ରଚୁର ଖାଦ୍ୟ-ଦ୍ରବ୍ୟ ପଠାଇବାକୁ ଲାଗିଲେ । କିନ୍ତୁ ବାଳକ ଯେତେବେଳେ ପରେ କେବେକେବେ ବିଭୂତିଭୂଷିତାଙ୍ଗ ହୋଇ, କେଉଁଦିନ ତିଳକ ଧାରଣ କରି, ଅଥବା କେବେକେବେ ନିଜର ପରିଧେୟ ବସ୍ତ୍ର ଛିନ୍ନ କରି ସାଧୁମାନଙ୍କ ପରି କୌପୀନ ଏବଂ ବହିର୍ବାସ ପରିଧାନ କରି ଗୃହକୁ ଫେରି 'ମା,

ସାଧୁମାନେ ମୋତେ କିପରି ସଜାଇ ଦେଇଛନ୍ତି ଦେଖ', କହି ତାଙ୍କ ସମ୍ମୁଖରେ ଉପସ୍ଥିତ ହେବାକୁ ଲାଗିଲା, ସେତେବେଳେ ଚନ୍ଦ୍ରାଦେବୀଙ୍କର ମନ ଅତ୍ୟନ୍ତ ଉଦ୍‌ବିଗ୍ନ ହେଲା । ସେ ଭାବିଲେ, ସାଧୁମାନେ ତାଙ୍କର ପୁତ୍ରକୁ ଭୁଲାଇ କେବେ ତାଙ୍କ ସହିତ ନେଇଯିବେ ନାହିଁ ତ ? ଏହି ଆଶଙ୍କା କଥା ଦିନେ ଗଦାଧରଙ୍କୁ କହି କ୍ରନ୍ଦନ କରିବାକୁ ଲାଗିଲେ । ବାଳକ ଗଦାଧର ତାଙ୍କୁ ନାନାପ୍ରକାର ଆଶ୍ୱାସନା ଦେଲେ ମଧ୍ୟ ସେ ଆଦୌ ଶାନ୍ତ ହେଲେ ନାହିଁ । ତେଣୁ ସେ ସାଧୁମାନଙ୍କ ନିକଟକୁ ଯିବେ ନାହିଁ ବୋଲି ମନେ ମନେ ସଂକଳ୍ପ କଲେ ଓ ମା'ଙ୍କୁ ଏକଥା କହି ନିଶ୍ଚିନ୍ତା କଲେ । ପରେ ଉକ୍ତ ସଂକଳ୍ପକୁ କାର୍ଯ୍ୟରେ ପରିଣତ କରିବା ପୂର୍ବରୁ ଗଦାଧର ଶେଷଥର ପାଇଁ ବିଦାୟ ନେବା ପାଇଁ ସାଧୁମାନଙ୍କ ନିକଟରେ ଉପସ୍ଥିତ ହେଲେ । ଏପରି କରିବାର କାରଣ ସାଧୁମାନେ ଜାଣିବାକୁ ଚାହିଁବାରୁ ସେ ମା'ଙ୍କର ଆଶଙ୍କା ବିଷୟ ସେମାନଙ୍କ ନିକଟରେ ନିବେଦନ କଲେ । ସାଧୁମାନେ ଗଦାଧର ସହିତ ଶ୍ରୀମତୀ ଚନ୍ଦ୍ରାଦେବୀଙ୍କ ନିକଟକୁ ଆସି ତାଙ୍କୁ ବିଶେଷଭାବରେ ବୁଝାଇ କହିଲେ ଯେ, ଗଦାଧରଙ୍କୁ ଏହି ଭାବରେ ସାଙ୍ଗରେ ନେଇଯିବା ସଂକଳ୍ପ ସେମାନଙ୍କର ମନରେ କେବେ ଉଦିତ ହୋଇ ନାହିଁ ଏବଂ ପିତାମାତାଙ୍କର ବିନାନୁମତିରେ ଏପରି ଅଳ୍ପ ବୟସର ବାଳକକୁ ସାଙ୍ଗରେ ନେଇଯିବାକୁ, ସେମାନେ ଅପହରଣରୂପକ ସାଧୁନିନ୍ଦିତ ବିଷମ ଅପରାଧ ବୋଲି ଜ୍ଞାନ କରିଥାନ୍ତି । ଚନ୍ଦ୍ରାଦେବୀଙ୍କମନରେ ଏଥର ଆଉ କୌଣସି ଆଶଙ୍କାର ଛାୟା ମଧ୍ୟ ରହିଲା ନାହିଁ ଏବଂ ସାଧୁମାନଙ୍କ ପ୍ରାର୍ଥନାରେ ସେ ବାଳକକୁ ସେମାନଙ୍କ ନିକଟକୁ ପୂର୍ବଭଳି ଯିବା ପାଇଁ ଅନୁମତି ପ୍ରଦାନ କଲେ ।

### ଗଦାଧରଙ୍କ ଦ୍ୱିତୀୟଥର ଭାବସମାଧି :

ଏହି ସମୟରେ ଅନ୍ୟ ଏକ ଘଟଣାରେ ଶ୍ରୀମତୀ ଚନ୍ଦ୍ରା ଗଦାଧର ପାଇଁ ଅତ୍ୟନ୍ତ ଚିନ୍ତିତା ହୋଇଥିଲେ । ଏଘଟଣାଟି ସହସା ଉପସ୍ଥିତ ହୋଇଅଛି ବୋଲି ସମସ୍ତେ ଭାବିଲେ ମଧ୍ୟ ବୁଝାଯାଏ, ବାଳକର ଭାବପ୍ରବଣତା ଏବଂ ଚିନ୍ତାଶୀଳତା ପ୍ରବୃଦ୍ଧ ହୋଇ ଏପରି ହୋଇଥିଲା । କାମାରପୁକୁରରୁ ପ୍ରାୟ ଏକ କ୍ରୋଶ ଉତ୍ତର୍‌ରେ ଅବସ୍ଥିତ ଆନୁଡ଼ ନାମକ ଗ୍ରାମର ସୁପ୍ରସିଦ୍ଧା ଦେବୀ ବିଶାଳାକ୍ଷୀଙ୍କୁ ଦିନେ ଦର୍ଶନ କରିବାକୁ ଯାଇ ସେ ବାଟରେ ଚେତାଶୂନ୍ୟ ହୋଇଗଲେ । ଧର୍ମଦାସ ଲାହାଙ୍କର ପୂତସ୍ୱଭାବା କନ୍ୟା ଶ୍ରୀମତୀ ପ୍ରସନ୍ନମୟୀ ସେଦିନ ପିଲାଟିର ଭାବାବେଶରୁ ଏପରି ହୋଇଅଛି ବୋଲି ବୁଝିପାରିଥିଲେ । ଚନ୍ଦ୍ରାଦେବୀ କିନ୍ତୁ ଏଥିରେ ବିଶ୍ୱାସ ନ କରି ତାହା ବାୟୁରୋଗ ବା ଅନ୍ୟ କୌଣସି କାରଣରୁ ହୋଇଛି ବୋଲି ବିଶେଷ ଚିନ୍ତିତା ହୋଇଥିଲେ ।[୧] ବାଳକ କିନ୍ତୁ ଏଥର ମଧ୍ୟ ପୂର୍ବ ପରି କହିଥିଲେ ଯେ, ଦେବୀଙ୍କର

---

୧. ଏହି ଘଟଣାର ସବିସ୍ତାର ବୃତ୍ତାନ୍ତ ପାଇଁ 'ସାଧକଭାବ—୨ୟ ଅଧ୍ୟାୟ' ଦ୍ରଷ୍ଟବ୍ୟ ।

ଚିନ୍ତା କରୁ କରୁ ତାଙ୍କର ଶ୍ରୀପାଦପଦ୍ମରେ ମନ ଲୟ ହୋଇଯିବାରୁ ତାଙ୍କର ଏପରି ଅବସ୍ଥା ହୋଇଥିଲା ।

### ଗଦାଧରଙ୍କ ସଙ୍ଗାତ ଗୟାବିଷ୍ଣୁ :

ଏହିପରି ଦୁଇବର୍ଷରୁ ଅଧିକ ସମୟ ଗତ ହେଲା ଏବଂ ବାଳକ ଗଦାଧର ପିତାଙ୍କର ଅଭାବ ଭୁଲି ନିଜର ଦୈନନ୍ଦିନ ଜୀବନର ସୁଖ-ଦୁଃଖରେ ବ୍ୟାପୃତ ରହିବାରେ ଅଭ୍ୟସ୍ତ ହେଲା । ଗଦାଧରଙ୍କ ପିତାଙ୍କର ବନ୍ଧୁ ଧର୍ମଦାସ ଲାହାଙ୍କ କଥା ଏହାପୂର୍ବରୁ କୁହାଯାଇଅଛି । ତାଙ୍କର ପୁତ୍ର ଗୟାବିଷ୍ଣୁ ସହିତ ଗଦାଧରଙ୍କ ଏହି ସମୟରେ ବନ୍ଧୁତ୍ୱ ହୋଇଥିଲା । ଏକାଠି ପାଠ ପଢ଼ି ଓ ବୁଲାବୁଲି କରି ବାଳକଦ୍ୱୟ ପରସ୍ପର ପ୍ରତି ଆକୃଷ୍ଟ ହୋଇ ପରସ୍ପରକୁ ସଙ୍ଗାତ ବୋଲି ସମ୍ବୋଧନ କଲେ ଏବଂ ପ୍ରତିଦିନ ଅନେକ ସମୟ ଏକତ୍ର କଟାଇବାକୁ ଲାଗିଲେ ଏବଂ ପଲ୍ଲୀବାସିନୀ ରମଣୀଗଣ ଗଦାଧରଙ୍କୁ ପୂର୍ବଭଳି ସ୍ନେହରେ ଗୃହରେ ଆହ୍ୱାନ ଓ ଭୋଜନ କରାଇବା କାଳରେ ସେ ବର୍ତ୍ତମାନ ନିଜ ସଙ୍ଗାତକୁ ସଙ୍ଗରେ ନେବାକୁ କେବେ ଭୁଲୁ ନ ଥିଲେ । ବାଳକର ଧାତ୍ରୀ କମାରକନ୍ୟା ଧନୀ ମିଷ୍ଟାନ୍ନ-ମୋଦକାଦି ସଯତ୍ନରେ ପ୍ରସ୍ତୁତ କରି ତାଙ୍କୁ ଦେଲେ ସେ ସଙ୍ଗାତକୁ ତାହାର ଅଂଶ ପ୍ରଦାନ ନ କରି ଭୋଜନ କରୁ ନ ଥିଲେ । ଶ୍ରୀଯୁକ୍ତ ଧର୍ମଦାସ ଏବଂ ଗଦାଧରଙ୍କର ଅଭିଭାବକମାନେ ବାଳକ ଦ୍ୱୟଙ୍କ ମଧ୍ୟରେ ଏପରି ବନ୍ଧୁତା ଦେଖି ଆନନ୍ଦିତ ହୋଇଥିଲେ ।

### ଗଦାଧରଙ୍କ ଉପନୟନ ସମୟର ଘଟଣା :

ସେ ଯାହାହେଉ, ଗଦାଧର ନଅବର୍ଷ ଉତ୍ତୀର୍ଣ୍ଣ ହେବାକୁ ଯାଉଛି ଦେଖି ରାମକୁମାର ଏବେ ତାହାର ଉପନୟନର ବନ୍ଦୋବସ୍ତ କରିବାକୁ ଲାଗିଲେ । କମାରକନ୍ୟା ଧନୀ ଏହାପୂର୍ବରୁ ଥରେ ଗଦାଧରଙ୍କୁ ଅନୁରୋଧ କରିଥିଲା, ସେ ଯେପରି ଉପନୟନ କାଳରେ ତାଙ୍କ ନିକଟରୁ ପ୍ରଥମ ଭିକ୍ଷା ଗ୍ରହଣ କରି ତାକୁ ମାତୃସମ୍ବୋଧନରେ କୃତାର୍ଥ କରେ । ଗଦାଧର ଧନୀର ଅକୃତ୍ରିମ ସ୍ନେହରେ ମୁଗ୍ଧ ହୋଇ ତା'ର ଅଭିଳାଷ ପୂର୍ଣ୍ଣ କରିବା ନିମନ୍ତେ ପ୍ରତିଶ୍ରୁତି ଦେଇଥିଲେ । ଦରିଦ୍ରା ଧନୀ ବାଳକ କଥାରେ ବିଶ୍ୱାସ କରି ସେବେଠାରୁ ଯଥାସାଧ୍ୟ ଅର୍ଥ ସଂଗ୍ରହ ଓ ସଞ୍ଚୟ କରି ଅତ୍ୟନ୍ତ ଆଗ୍ରହର ସହିତ ଉପନୟନର ସମୟକୁ ଅପେକ୍ଷା କରି ରହିଥିଲା । ଉପନୟନ ସମୟ ଉପସ୍ଥିତ ହେବାରୁ ଗଦାଧର ଉପରୋକ୍ତ ବିଷୟ ନିଜ ଅଗ୍ରଜଙ୍କୁ କହିଲେ । ମାତ୍ର ତାଙ୍କ ବଂଶରେ ଏପରି ପ୍ରଥା ନ ଥିବାରୁ ଶ୍ରୀଯୁକ୍ତ ରାମକୁମାର ଏଥିରେ ଆପତ୍ତି କଲେ । ବାଳକ ମଧ୍ୟ ନିଜର ଅଙ୍ଗୀକାର ବିଷୟରେ ସ୍ମରଣ କରି ଜିଦ୍ ଧରି ବସିଲେ । ସେ କହିଲେ, ଏପରି ନ କଲେ ତାକୁ ସତ୍ୟଭଙ୍ଗ ଅପରାଧରେ ଅପରାଧୀ ହେବାକୁ ପଡ଼ିବ ଏବଂ ମିଥ୍ୟାବାଦୀ ବ୍ୟକ୍ତି ବ୍ରାହ୍ମଣୋଚିତ ଯଜ୍ଞସୂତ୍ରଧାରଣ କରିବାକୁ ଅଧିକାରୀ ହୁଏ ନାହିଁ । ଉପନୟନ କାଳ ସନ୍ନିକଟ

ଦେଖି ଏହାପୂର୍ବରୁ ହିଁ ସକଳ ବିଷୟରେ ଆୟୋଜନ କରାହୋଇଥିଲା, ବାଳକର ପୂର୍ବୋକ୍ତ ଜିଦ୍ ଯୋଗୁଁ ଏକର୍ମ ପଣ୍ଡ ହେବାର ଉପକ୍ରମ ହେଲା । କ୍ରମେ ଏକଥା ଶ୍ରୀଯୁକ୍ତ ଧର୍ମଦାସ ଲାହାଙ୍କର କାନରେ ପଡ଼ିଲା । ଉଭୟ ପକ୍ଷର ମତାନ୍ତର ଦୂର କରିବାକୁ ଧର୍ମଦାସ ଯତ୍ନଶୀଳ ହୋଇ ରାମକୁମାରଙ୍କୁ କହିଲେ, ଏପରି ଅନୁଷ୍ଠାନ ତାଙ୍କର ବଂଶରେ ନ ଥିଲେ ମଧ୍ୟ ଏହାପୂର୍ବରୁ ଏହା ବହୁ ସଦ୍‌ବ୍ରାହ୍ମଣପରିବାରରେ ଦେଖାଯାଇଛି । ଅତଏବ ଏଥିରେ ଯେହେତୁ ସେମାନଙ୍କୁ ନିନ୍ଦିତ ହେବାକୁ ପଡ଼ିବ ନାହିଁ, ସେଥିପାଇଁ ବାଳକର ସନ୍ତୋଷ ଓ ଶାନ୍ତି ନିମିତ୍ତ ଏପରି କଲେ ଦୋଷ ନାହିଁ । ପ୍ରବୀଣ ପିତୃତୁଲ୍ୟ ଧର୍ମଦାସଙ୍କର କଥାରେ ରାମକୁମାର ପ୍ରଭୃତି ଏବିଷୟରେ ଆଉ ଆପତ୍ତି କଲେ ନାହିଁ ଏବଂ ଗଦାଧର ହୃଷ୍ଟଚିତ୍ତରେ ଯଥାବିଧାନରେ ଉପବୀତ ଧାରଣ କରି ସନ୍ଧ୍ୟାପୂଜାଦି ବ୍ରାହ୍ମଣୋଚିତ କାର୍ଯ୍ୟରେ ମନୋନିବେଶ କଲେ । କମାରକନ୍ୟା ଧନୀ ମଧ୍ୟ ବାଳକ ସହିତ ଏପରି ଭାବରେ ସମ୍ବନ୍ଧ ଯୁକ୍ତ ହୋଇ ନିଜର ଜୀବନ ଧନ୍ୟ ମନେ କରିବାକୁ ଲାଗିଲା । ଏହାର ଅଳ୍ପଦିନ ପରେ ବାଳକ ଦଶମ ବର୍ଷରେ ପଦାର୍ପଣ କଲା ।

### ଗଦାଧରଙ୍କ ପଣ୍ଡିତ ସଭାରେ ପ୍ରଶ୍ନ ସମାଧାନ :

ଉପନୟନ ହେବାର କିଛିଦିନ ପରେ ଗୋଟିଏ ଘଟଣାରେ ଗଦାଧରଙ୍କ ଅସାଧାରଣ ଦିବ୍ୟ ପ୍ରତିଭାର ପରିଚୟ ପାଇ ଗ୍ରାମବାସୀଗଣ ଅତ୍ୟନ୍ତ ବିସ୍ମିତ ହୋଇଥିଲେ ।[୧] ଗ୍ରାମର ଜମିଦାର ଲାହାବାବୁଙ୍କର ଗୃହରେ କୌଣସି ବିଶେଷ ଶ୍ରାଦ୍ଧ ଦିବସରେ ଏକ ମହତୀ ପଣ୍ଡିତସଭା ଆହୂତ ହୋଇଥିଲା ଏବଂ ପଣ୍ଡିତଗଣ କୌଣସି ଧର୍ମ-ବିଷୟକ ଏକ ଜଟିଳ ପ୍ରଶ୍ନ ସମ୍ବନ୍ଧରେ ବାଦାନୁବାଦ କରି ସୁମୀମାଂସାରେ ଉପନୀତ ହୋଇ ପାରୁ ନ ଥିଲେ । ବାଳକ ଗଦାଧର ଏହି ସମୟରେ ସେଠାରେ ଉପସ୍ଥିତ ହୋଇ ସେହି ବିଷୟରେ ଏପରି ସୁମୀମାଂସା କରି ଦେଇଥିଲେ ଯେ ପଣ୍ଡିତଗଣ ତତ୍‌ଶ୍ରବଣରେ ତାଙ୍କର ଭୂୟସୀ ପ୍ରଶଂସା କରି ତାଙ୍କୁ ଆଶୀର୍ବାଦ କରିଥିଲେ ।

### ଗଦାଧରଙ୍କ ଧର୍ମପ୍ରବୃତ୍ତିର ପରିଣତି ଓ ତୃତୀୟଥର ଭାବସମାଧି :

ସେ ଯାହାହେଉ ଉପନୟନ ହେବା ପରେ ଗଦାଧରଙ୍କ ଭାବପ୍ରବଣ ହୃଦୟ ନିଜ ପ୍ରକୃତିର ଅନୁକୂଳ ଅନ୍ୟ ଏକ ବିଷୟ ଅବଲମ୍ବନର ଅବସର ପାଇ ଆନନ୍ଦିତ ହୋଇଥିଲା । ପିତାଙ୍କୁ ସ୍ୱପ୍ନରେ ଦର୍ଶନ ଦେଇଥିବା ଜୀବନ୍ତ ବିଗ୍ରହ ରଘୁବୀର କାମାରପୁକୁର ଗୃହରେ କିପରି ଉପସ୍ଥିତ ହୋଇଥିଲେ, ତାଙ୍କର ଶୁଭାଗମନର ଦିନଠାରୁ ଲକ୍ଷ୍ମୀଜଳାର କ୍ଷୁଦ୍ର ଜମିଖଣ୍ଡିକରୁ ପ୍ରଚୁର ଧାନ ଫଳିବାରୁ କିପରି ସଂସାରର ଅଭାବ ଦୂରୀଭୂତ ହୋଇଥିଲା ଏବଂ ଏହା ଦ୍ୱାରା କରୁଣାମୟୀ ଚନ୍ଦ୍ରାଦେବୀ ଅତିଥି-

୧. ଏହି ଘଟଣାର ବିସ୍ତୃତ ବିବରଣୀ ପାଇଁ 'ଗୁରୁଭାବ, ପୂର୍ବାର୍ଦ୍ଧ-୪ର୍ଥ ଅଧ୍ୟାୟ ଦ୍ରଷ୍ଟବ୍ୟ ।

ଅଭ୍ୟାଗତମାନଙ୍କୁ ମଧ୍ୟ ନିତ୍ୟ ଅନ୍ନଦାନରେ ସମର୍ଥ ହୋଇଥିଲେ — ଇତ୍ୟାଦି କଥା ଶ୍ରବଣ କରି ବାଳକ ପୂର୍ବରୁ ହିଁ ଉକ୍ତ ଗୃହଦେବତାଙ୍କୁ ବିଶେଷ ଭକ୍ତି ଓ ଶ୍ରଦ୍ଧା ଚକ୍ଷୁରେ ଦେଖୁଥିଲେ । ସେହି ଦେବତାଙ୍କୁ ସ୍ପର୍ଶ ଓ ପୂଜା କରିବାର ଅଧିକାର ଏବେଠାରୁ ପ୍ରାପ୍ତ ହୋଇ ବାଳକର ହୃଦୟ ନବାନୁରାଗରେ ପୂର୍ଣ୍ଣ ହେଲା । ସନ୍ଧ୍ୟା-ବନ୍ଦନାଦି ସମାପ୍ତ କରି ସେ ଏବେ ପ୍ରତିଦିନ ତାଙ୍କର ପୂଜା ଓ ଧ୍ୟାନରେ ବହୁତ ସମୟ ଅତିବାହିତ କରିବାକୁ ଲାଗିଲେ ଏବଂ ଯାହା ଦ୍ୱାରା ସେ ପ୍ରସନ୍ନ ହୋଇ ପିତାଙ୍କ ପରି ତାଙ୍କୁ ମଧ୍ୟ ବେଳେବେଳେ ଦର୍ଶନ ତଥା ଆଦେଶ ପ୍ରଦାନପୂର୍ବକ କୃତାର୍ଥ କରିବେ, ସେଥିପାଇଁ ନିଷ୍ଠା ଓ ଭକ୍ତିର ସହିତ ତାଙ୍କର ସେବା କରିବାକୁ ଲାଗିଲେ । ରାମେଶ୍ୱର-ଶିବ ଓ ଶୀତଳା ମାତା ମଧ୍ୟ ବାଳକର ଏହି ସେବାର ଅନ୍ତର୍ଭୁକ୍ତ ହେଲେ । ଏପରି ସେବା ପୂଜାର ଫଳ ମଧ୍ୟ ଉପସ୍ଥିତ ହେବାକୁ ବିଳମ୍ବ ହେଲା ନାହିଁ । ବାଳକର ପବିତ୍ର ହୃଦୟ ଏଥିରେ ଏକାଗ୍ର ହୋଇ ଅଳ୍ପ ସମୟ ମଧ୍ୟରେ ତାଙ୍କୁ ଭାବସମାଧି ବା ସବିକଳ୍ପ ସମାଧିର ଅଧିକାରୀ କଲା ଏବଂ ଏହି ସମାଧି ସମୟରେ ତାହାର ଜୀବନରେ ନାନା ପ୍ରକାର ଦିବ୍ୟଦର୍ଶନ ମଧ୍ୟ ବେଳେବେଳେ ଉପସ୍ଥିତ ହେବାକୁ ଲାଗିଲା । ଏପରି ସମାଧି ଓ ଦର୍ଶନର ବିକାଶ ଏହି ବର୍ଷର ଶିବରାତ୍ରି ଦିନ ତାହାର ଜୀବନରେ ଉପସ୍ଥିତ ହୋଇଥିଲା ।[୧] ବାଳକ ସେ ଦିନ ଯଥାରୀତି ଉପବାସ ରହି ବିଶେଷ ନିଷ୍ଠା ସହିତ ଦେବାଦିଦେବ ମହାଦେବଙ୍କର ପୂଜା କରୁଥିଲା । ତା'ର ବନ୍ଧୁ ଗୟାବିଷ୍ଣୁ ଓ ଅନ୍ୟ କେତେଜଣ ସମବୟସ୍କ ମଧ୍ୟ ସେଦିନ ଏହି ଉପଲକ୍ଷେ ଉପବାସୀ ଥିଲେ ଏବଂ ପ୍ରତିବେଶୀ ଗୃହସ୍ଥ ସୀତାନାଥ ପାଇନ୍‌ଙ୍କ ଘରେ ଶିବଙ୍କର ମହିମାସୂଚକ ଯାତ୍ରାର ଅଭିନୟ ହେବା ଜାଣି ସେମାନେ ତାହା ଦେଖି ରାତ୍ରିଜାଗରଣ କରିବାକୁ ମନସ୍ଥ କଲେ । ପ୍ରଥମ ପ୍ରହର ପୂଜା ସମାପ୍ତ କରି ଗଦାଧର ଯେତେବେଳେ ତନ୍ମୟ ହୋଇ ବସିଥିଲେ, ସେତେବେଳେ ସହସା ତାଙ୍କର ସମବୟସ୍କ ସାଙ୍ଗମାନେ ଆସି ତାଙ୍କୁ ସମ୍ବାଦ ଦେଲେ, ପାଇନ୍‌ଙ୍କର ଘରଠାରେ ତାଙ୍କୁ ଶିବ ସାଜି କେତୋଟି କଥା କହିବାକୁ ହେବ । ଏହାର କାରଣ ହେଲା, ଯାତ୍ରାରେ ଯିଏ ଶିବଙ୍କର ଭୂମିକାରେ ଅଭିନୟ କରିବାର ଥିଲା ସେ ହଠାତ୍ ପୀଡ଼ିତ ହେବାରୁ ଏହି ଭୂମିକା ନିର୍ବାହ କରିବାକୁ ଅସମର୍ଥ ହୋଇଛି । ବାଳକ ଏଥିରେ ପୂଜାରେ ବ୍ୟାଘାତ ହେବ ବୋଲି ଆପତ୍ତି କଲେ ମଧ୍ୟ ସେମାନେ କୌଣସି ପ୍ରକାରେ ଛାଡ଼ିଲେ ନାହିଁ । କହିଲେ, ଶିବଙ୍କ ଭୂମିକା ଗ୍ରହଣ କଲେ ତାଙ୍କୁ ପ୍ରତିମୁହୂର୍ତ୍ତରେ ଶିବଙ୍କ ଚିନ୍ତା ହିଁ କରିବାକୁ ହେବ, ତେଣୁ ଏହା ପୂଜା ଅପେକ୍ଷା କୌଣସି ଅଂଶରେ ନ୍ୟୁନ ନୁହେଁ । ଅଧିକନ୍ତୁ ଏପରି ନ କଲେ କେତେ ଲୋକଙ୍କର ଆନନ୍ଦର ହାନି ହେବ ତାହା ଭାବି ଦେଖିବା ଉଚିତ୍; ସେମାନେ ସମସ୍ତେ ଉପବାସୀ ରହିଛନ୍ତି ଏବଂ ଏପରି ରାତ୍ରିଜାଗରଣ ଦ୍ୱାରା ବ୍ରତ ପୂର୍ଣ୍ଣ କରିବାକୁ ମନସ୍ଥ କରିଛନ୍ତି । ଗଦାଧର ଅଗତ୍ୟା ସମ୍ମତି ପ୍ରଦାନ

---

୧. 'ସାଧକଭାବ' — ଦ୍ୱିତୀୟ ଅଧ୍ୟାୟ ଦ୍ରଷ୍ଟବ୍ୟ ।

କରି ଶିବଙ୍କର ଭୂମିକା ଗ୍ରହଣ କରି ଯାତ୍ରାରେ ଅବତୀର୍ଣ୍ଣ ହୋଇଥିଲେ । କିନ୍ତୁ ଜଟା, ରୁଦ୍ରାକ୍ଷ ଓ ବିଭୂତି-ଭୂଷିତ ହୋଇ ସେ ଶିବଙ୍କର ଚିନ୍ତାରେ ଏତେଦୂର ତନ୍ମୟ ହୋଇଗଲେ ଯେ, ତାଙ୍କର କୌଣସି ପ୍ରକାରର ବାହ୍ୟସଂଜ୍ଞା ରହିଲା ନାହିଁ । ପରେ ବହୁସମୟ ଅତୀତ ହେଲେ ମଧ୍ୟ ତା'ର ଚେତା ନ ଫେରିବାରୁ ସେହି ରାତ୍ରିରେ ଯାତ୍ରା ବନ୍ଦ କରିବାକୁ ହେଲା ।

### ଗଦାଧରଙ୍କ ପୁନଃପୁନଃ ଭାବସମାଧି :

ଏବେଠାରୁ ଗଦାଧରଙ୍କ ଏପରି ସମାଧି ବେଳେବେଳେ ଉପସ୍ଥିତ ହେବାକୁ ଲାଗିଲା । ଧ୍ୟାନ ସମୟରେ ଓ ଦେବଦେବୀଙ୍କର ମହିମାସୂଚକ ଗୀତ ଶୁଣୁ ଶୁଣୁ ସେ ଏବେଠାରୁ ତନ୍ମୟ ହୋଇ ଯାଉଥିଲେ ଏବଂ ତାଙ୍କର ଚିତ୍ତ ସ୍ୱଳ୍ପ ବା ଅଧିକ ସମୟ ପାଇଁ ନିଜ ଅଭ୍ୟନ୍ତରରେ ପ୍ରବିଷ୍ଟ ହୋଇ ବହିର୍ବିଷୟ ଗ୍ରହଣରେ ବିରତ ରହୁଥିଲା । ଏପରି ତନ୍ମୟତା ଯେଉଁଦିନ ପ୍ରଗାଢ଼ ହେଉଥିଲା, ସେଦିନ ତାଙ୍କର ବାହ୍ୟଜ୍ଞାନ ଏକାବେଳକେ ଲୁପ୍ତ ହୋଇ ସେ କିଛି ସମୟ ଜଡ଼ବତ୍ ଅବସ୍ଥାନ କରୁଥିଲେ । ସେହି ଅବସ୍ଥାନିବୃତ୍ତି ପରେ ତାଙ୍କୁ ପଚାରିଲେ ସେ କହୁଥିଲେ, ଯେଉଁ ଦେବ ଅଥବା ଦେବୀଙ୍କ ଧ୍ୟାନ ବା ସଙ୍ଗୀତ ଇତ୍ୟାଦି ଶ୍ରବଣ କରୁଥିଲେ, ତାଙ୍କ ସମ୍ବନ୍ଧରେ ଅନ୍ତର ମଧ୍ୟରେ କୌଣସି ଦିବ୍ୟଦର୍ଶନ ଲାଭ କରି ସେ ଆନନ୍ଦିତ ହୋଇଛନ୍ତି । ଚନ୍ଦ୍ରାଦେବୀପ୍ରମୁଖ ପରିବାରର ସମସ୍ତେ ଏଥିରେ ଅନେକ ଦିନ ପର୍ଯ୍ୟନ୍ତ ଭୟଭୀତ ହୋଇଥିଲେ, କିନ୍ତୁ ଏଥିରେ ବାଳକର ସ୍ୱାସ୍ଥ୍ୟର କିଛିମାତ୍ର ଅବନତି ନ ହେବା ଦେଖି ଏବଂ ତାକୁ ସର୍ବକର୍ମକୁଶଳ ତଥା ଆନନ୍ଦରେ ସମୟ କଟାଇବା ଦେଖି ସେମାନଙ୍କର ଏଆଶଙ୍କା କ୍ରମେ ଦୂରୀଭୂତ ହୋଇଥିଲା । ବାରମ୍ବାର ଏପରି ଅବସ୍ଥା ହେବାରୁ ବାଳକ ମଧ୍ୟ କ୍ରମେ ଏଥିରେ ଅଭ୍ୟସ୍ତ ହୋଇ ଏହା ତା'ର ଇଚ୍ଛାଧୀନ ହୋଇଗଲା ଏବଂ ଏହାର ପ୍ରଭାବରେ ସୂକ୍ଷ୍ମ ବିଷୟ ପ୍ରତି ତା'ର ଦୃଷ୍ଟି ପ୍ରସାରିତ ଓ ଦେବଦେବୀ ସମ୍ବନ୍ଧୀୟ ନାନା ତତ୍ତ୍ୱ ଉପଲବ୍ଧି ହେବାରୁ ଏଥିରେ ସେ ଆନନ୍ଦିତ ହେବା ବ୍ୟତୀତ ଶଙ୍କିତ ହେଉ ନ ଥିଲା । ସେ ଯାହା ହେଉ, ପିଲାଟିର ଧର୍ମ ପ୍ରବୃତ୍ତି ଏବେଠାରୁ ବିଶେଷ ଭାବରେ ବର୍ଦ୍ଧିତ ହେଲା ଏବଂ ସେ ହରିବାସର, ଶିବଙ୍କର ଓ ମା' ମନସାଙ୍କର କୀର୍ତ୍ତନ ପୂଜା ପ୍ରଭୃତି ଗ୍ରାମରେ ଯେଉଁଠାରେ ଯେଉଁ ଧର୍ମାନୁଷ୍ଠାନ ହେଉଥିଲା, ସେଠାରେ ଉପସ୍ଥିତ ରହି ସର୍ବାନ୍ତଃକରଣରେ ଯୋଗଦାନ କରିବାକୁ ଲାଗିଲା । ବାଳକର ମହତ ଉଦାର ଧର୍ମପ୍ରକୃତି ତାକୁ ବିଭିନ୍ନ ଦେବଦେବୀଙ୍କର ଉପାସକମାନଙ୍କ ପ୍ରତି ବିଦ୍ୱେଷଶୂନ୍ୟ କରି ସେମାନଙ୍କୁ ବର୍ତ୍ତମାନଠାରୁ ଆପଣାର କରିନେଲା । ଗ୍ରାମର ପ୍ରଚଳିତ ପ୍ରଥା ଯେ ତାକୁ ଏବିଷୟରେ ସହାୟତା କରିଥିଲା, ଏଥିରେ ସନ୍ଦେହର ଅବକାଶ ନାହିଁ । କାରଣ ଗ୍ରାମରେ ବିଷ୍ଣୁଉପାସକ, ଶିବଭକ୍ତ, ଧର୍ମପୂଜକ ପ୍ରଭୃତି ସମସ୍ତ ସମ୍ପ୍ରଦାୟର ବ୍ୟକ୍ତିଗଣ ଅନ୍ୟ ସମସ୍ତ ଗ୍ରାମମାନଙ୍କ ପରି

ନ ହୋଇ ଏଠାରେ ପରସ୍ପର ପ୍ରତି ଦ୍ୱେଷଶୂନ୍ୟ ହୋଇ ବିଶେଷ ସଦ୍‌ଭାବସହିତ ବସବାସ କରୁଥିଲେ ।

**ଗଦାଧରଙ୍କ ବିଦ୍ୟାର୍ଜନରେ ଉଦାସୀନତାର କାରଣ :**

ଏପରି ଧର୍ମ ପ୍ରବୃତ୍ତି ବର୍ଦ୍ଧିତ ହେଲେ ମଧ୍ୟ ଗଦାଧରଙ୍କର ବିଦ୍ୟାଭ୍ୟାସରେ ଅନୁରାଗ ସେତେ ପ୍ରବୃଦ୍ଧ ହେଲା ନାହିଁ । ପଣ୍ଡିତ ଓ ଭଟ୍ଟାଚାର୍ଯ୍ୟାଦି ଉପାଧିଭୂଷିତ ବ୍ୟକ୍ତିମାନଙ୍କର ଐହିକ ଭୋଗସୁଖ ଓ ଧନଲାଳସା ଦେଖି ସେ ସେମାନଙ୍କ ପରି ବିଦ୍ୟାର୍ଜନରେ ଦିନକୁ ଦିନ ଉଦାସୀନ ହୋଇଯାଇଥିଲେ । କାରଣ, ବାଳକର ସୂକ୍ଷ୍ମଦୃଷ୍ଟି ଏବେ ସମସ୍ତଙ୍କର କାର୍ଯ୍ୟର ଉଦ୍ଦେଶ୍ୟ ନିରୂପଣରେ ପ୍ରଥମରୁ ହିଁ ଅଗ୍ରସର ହେଉଥିଲା ଏବଂ ତାଙ୍କର ପିତାଙ୍କର ବୈରାଗ୍ୟ, ଈଶ୍ୱରଭକ୍ତି, ସତ୍ୟ, ସଦାଚାର ଓ ଧର୍ମପରାୟଣତାଦି ଗୁଣଗୁଡ଼ିକୁ ଆଦର୍ଶରୂପେ ସମ୍ମୁଖରେ ରଖି ସେମାନଙ୍କର ଆଚରଣର ମୂଲ୍ୟ ନିରୂପଣରେ ପ୍ରବୃତ୍ତ କରୁଥିଲା । ଏପରି ବିଚାର ଦ୍ୱାରା ସେ ସଂସାରରେ ସମସ୍ତ ବ୍ୟକ୍ତିଙ୍କର ଅନ୍ୟ ପ୍ରକାରର ଉଦ୍ଦେଶ୍ୟ ଦେଖି ବିସ୍ମିତ ହେଉଥିଲା । ଆହୁରି ମଧ୍ୟ ଅନିତ୍ୟ ସଂସାରକୁ ନିତ୍ୟରୂପେ ଗ୍ରହଣ କରି ସେମାନେ ସର୍ବଦା ଦୁଃଖରେ ମୁହ୍ୟମାନ ହେବା ଦେଖି ସେ ବିଶେଷ ବିମର୍ଷ ମଧ୍ୟ ହେଉଥିଲା । ଏପରି ଦେଖି ଶୁଣି ନିଜ ଜୀବନ ଭିନ୍ନ ଭାବରେ ପରିଚାଳିତ କରିବାକୁ ତାହାର ମନରେ ସଂକଳ୍ପ ଉଦୟ ହେବା ବିଚିତ୍ର ନୁହେଁ । ପାଠକମାନେ ହୁଏତ ପୂର୍ବୋକ୍ତ ବିଷୟ ଶୁଣି କହିବେ, ଏକାଦଶ ବା ଦ୍ୱାଦଶବର୍ଷୀୟ ବାଳକର ସୂକ୍ଷ୍ମଦୃଷ୍ଟି ଓ ବିଚାର-ଶକ୍ତିର ଏତେଦୂର ବିକାଶ କ'ଣ ସମ୍ଭବ ହୋଇପାରେ ? ଉତ୍ତରରେ କୁହାଯାଇପାରେ, ସାଧାରଣ ପିଲାମାନଙ୍କର ଏପରି ନ ହେବା ସ୍ୱାଭାବିକ, କିନ୍ତୁ ଗଦାଧର ସାଧାରଣ ସ୍ତରର ପିଲା ନ ଥିଲେ । ଅସାଧାରଣ ପ୍ରତିଭା, ମେଧା ଓ ମାନସିକ ସଂସ୍କାରସମୂହ ନେଇ ସେ ଜନ୍ମଗ୍ରହଣ କରିଥିଲେ । ସୁତରାଂ ଅଳ୍ପ ବୟସ ହେଲେ ମଧ୍ୟ ତାଙ୍କ ପକ୍ଷରେ ଏପରି କାର୍ଯ୍ୟ ବିଚିତ୍ର ନୁହେଁ । ସେଥିପାଇଁ ଏହି ପ୍ରକାର ହେବା ଆମ ନିକଟରେ ଯେପରି ପ୍ରତୀୟମାନ ହେଉ ନା କାହିଁକି, ଆମେ ଅନୁସନ୍ଧାନରୁ ଘଟଣା ଯେପରି ଜାଣିଅଛୁ; ସତ୍ୟର ଅନୁରୋଧରେ ଆମମାନଙ୍କୁ ସେପରି ଉପସ୍ଥାପନା କରିବାକୁ ହେବ ।

**ଗଦାଧରଙ୍କ ଶିକ୍ଷା ବର୍ତ୍ତମାନ କେତେଦୂର ଅଗ୍ରସର ହୋଇଥିଲା :**

ସେ ଯାହାହେଉ, ପ୍ରଚଳିତ ବିଦ୍ୟାଭ୍ୟାସରେ କ୍ରମଶଃ ଉଦାସୀନ ହେଲେ ମଧ୍ୟ ଗଦାଧର ପୂର୍ବପରି ନିୟମିତରୂପେ ପାଠଶାଳାକୁ ଯାଉଥିଲା ଏବଂ ମାତୃଭାଷାରେ ଲିଖିତ-ମୁଦ୍ରିତ ଗ୍ରନ୍ଥସମୂହ ପଢ଼ିବାରେ ଓ ଲେଖିବାରେ ବିଶେଷ ରୂପେ ଦକ୍ଷ ହୋଇ ଉଠିଥିଲେ । ବିଶେଷତଃ ରାମାୟଣ, ମହାଭାରତ ଇତ୍ୟାଦି ଧର୍ମଗ୍ରନ୍ଥଗୁଡ଼ିକ ସେ ଏବେ ଭକ୍ତି ସହକାରେ ଏପରି ସୁନ୍ଦରଭାବରେ ପାଠ କରୁଥିଲେ

ଯେ, ଲୋକମାନେ ତାହା ଶୁଣି ମୁଗ୍ଧ ହୋଇଯାଉଥିଲେ । ଗ୍ରାମର ସରଳଚିତ୍ତ ଅଜ୍ଞ ବ୍ୟକ୍ତିଗଣ ସେଥିପାଇଁ ଏସମସ୍ତ ଗ୍ରନ୍ଥ ତାଙ୍କ ମୁହଁରୁ ଶୁଣିବାକୁ ବିଶେଷ ଆଗ୍ରହ ପ୍ରକାଶ କରୁଥିଲେ । ବାଳକ ମଧ୍ୟ ସେମାନଙ୍କର ତୃପ୍ତିସମ୍ପାଦନରେ କେବେହେଲେ ପରାଙ୍‌ମୁଖ ହେଉ ନ ଥିଲେ । ସେପରି ସୀତାନାଥ ପାଇନ୍, ମଧୁ ଯୁଗୀ ପ୍ରଭୃତି ଅନେକ ସେଥିପାଇଁ ତାଙ୍କୁ ନିଜ ନିଜ ଗୃହକୁ ଆହ୍ୱାନ କରି ନେଇଯାଉଥିଲେ ଏବଂ ସ୍ତ୍ରୀ-ପୁରୁଷ ସମସ୍ତେ ମିଳିତ ହୋଇ ତାଙ୍କ ମୁହଁରୁ ପ୍ରହ୍ଲାଦଚରିତ, ଧ୍ରୁବୋପାଖ୍ୟାନ ଅଥବା ରାମାୟଣ-ମହାଭାରତ ଇତ୍ୟାଦିରୁ ଅନ୍ୟ କୌଣସି ଉପାଖ୍ୟାନ ଭକ୍ତିର ସହିତ ଶ୍ରବଣ କରୁଥିଲେ ।

ରାମାୟଣ-ମହାଭାରତାଦି ବ୍ୟତୀତ କାମାରପୁକୁରର ଏହି ଅଞ୍ଚଳରେ ପ୍ରସିଦ୍ଧ ଦେବଦେବୀଙ୍କର ପ୍ରକଟ କାହାଣୀସମୂହ ଗ୍ରାମ୍ୟ କବିମାନଙ୍କ ଦ୍ୱାରା ସରଳ ପଦ୍ୟରେ ଲିପିବଦ୍ଧ ହୋଇ ପ୍ରଚଳିତ ରହିଛି । ସେହିପରି ତାରକେଶ୍ୱର ମହାଦେବଙ୍କର ପ୍ରକଟିତ ହେବା କଥା, ଯୋଗାଦ୍ୟାର ପାଲା, ବନ-ବିଷ୍ଣୁପୁରର ମଦନମୋହନଜୀଉଙ୍କର ଉପାଖ୍ୟାନ ପ୍ରଭୃତି ଅନେକ ଦେବଦେବୀଙ୍କର ଅଲୌକିକ ଚରିତ୍ର ଏବଂ ସାଧୁ-ଭକ୍ତମାନଙ୍କ ନିକଟରେ ସ୍ୱ-ସ୍ୱରୂପ ପ୍ରକାଶ କରିବାର ବୃତ୍ତାନ୍ତ ସମୟ ସମୟରେ ଗଦାଧରଙ୍କ ଶ୍ରବଣଗୋଚର ହେଉଥିଲା । ବାଳକ ନିଜ ଶ୍ରୁତିଧରତ୍ୱଗୁଣରେ ସେହିସବୁ ଶୁଣି ଆୟତ୍ତ କରି ରଖୁଥିଲେ ଏବଂ ସେହି ପ୍ରକାର ଉପାଖ୍ୟାନର ମୁଦ୍ରିତ ଗ୍ରନ୍ଥ ବା ପୋଥି ପାଇଲେ କେବେ କେବେ ତାହା ସ୍ୱହସ୍ତରେ ଲେଖି ରଖୁଥିଲେ । ଗଦାଧରଙ୍କ ସ୍ୱହସ୍ତଲିଖିତ ରାମକୃଷ୍ଣାୟଣ ପୋଥି, ଯୋଗାଦ୍ୟାର ପାଲା, ସୁବାହୁର ପାଲା ପ୍ରଭୃତି ଆମେ କାମାରପୁକୁରର ଘରେ ଅନୁସନ୍ଧାନ କରି ଦେଖିବାକୁ ପାଇ ସେ ବିଷୟରେ ଜାଣିପାରିଥିଲୁ । ଏସମସ୍ତ ଉପାଖ୍ୟାନଗୁଡ଼ିକ ମଧ୍ୟ ବାଳକ ଗ୍ରାମର ସରଳଚିତ୍ତ ନରନାରୀଙ୍କ ଅନୁରୋଧରେ ସେମାନଙ୍କ ନିକଟରେ ଏହି ସମୟରେ ବହୁବାର ଅଧ୍ୟୟନ ଓ ଆବୃତ୍ତି କରୁଥିଲେ, ଏଥିରେ ସନ୍ଦେହ ନାହିଁ ।

ଗଣିତ ଶାସ୍ତ୍ରରେ ବାଳକର ଉଦାସୀନତା କଥା ଆମେ ଏହା ପୂର୍ବରୁ ଉଲ୍ଲେଖ କରିଅଛୁ । କିନ୍ତୁ ପାଠଶାଳାକୁ ଯାଇ ସେ ଏବିଷୟରେ ମଧ୍ୟ ଉନ୍ନତି ସାଧନ କରିଥିଲା । ଆମେ ଶୁଣିଛୁ, ସେ ପଣିକିଆ ଏବଂ ପାଟୀଗଣିତରେ ଗୁଣନ-ହରଣ ପର୍ଯ୍ୟନ୍ତ ତାଙ୍କର ଶିକ୍ଷା ଅଗ୍ରସର ହୋଇଥିଲା । କିନ୍ତୁ ଦଶମବର୍ଷରେ ଉପନୀତ ହୋଇ ଧ୍ୟାନର ପରିଣତିସ୍ୱରୂପ ଯେତେବେଳେ ତାଙ୍କର ପୂର୍ବୋକ୍ତ ଭାବରେ ସମାଧି ଉପସ୍ଥିତ ହେବାକୁ ଲାଗିଲା, ସେତେବେଳେ ତାଙ୍କର ଅଗ୍ରଜ ରାମକୁମାରପ୍ରମୁଖ ଘରର ଅନ୍ୟମାନେ ତାର ବାୟୁରୋଗ ହୋଇଅଛି ଭାବି ତାକୁ ଯେତେବେଳେ ଇଚ୍ଛା ପାଠଶାଳା ଯିବାକୁ ଏବଂ ଯାହା ଇଚ୍ଛା ଶିଖିବାକୁ ସ୍ୱାଧୀନତା ପ୍ରଦାନ କରିଥିଲେ । ସୁତରାଂ ଏହାପରେ କୌଣସି ବିଷୟରେ ତାହାର ଶିକ୍ଷା ଅଗ୍ରସର

ହେଉ ନାହିଁ ଦେଖିଲେ ମଧ୍ୟ ଶିକ୍ଷକ ସେଥିପାଇଁ ତାକୁ କେବେ ବାଧ୍ୟ କରୁ ନ' ଥିଲେ । ଫଳରେ ଗଦାଧରଙ୍କ ପାଠଶାଳାର ଶିକ୍ଷା ଯେ ଏବେଠାରୁ ବିଶେଷ ଅଗ୍ରସର ହେଲା ନାହିଁ, ଏକଥା କହିବାକୁ ହେବ ନାହିଁ ।

**ରାମେଶ୍ୱର ଓ ସର୍ବମଙ୍ଗଳାଙ୍କ ବିବାହ :**

ଏପରି ଭାବରେ ଦୁଇବର୍ଷ କାଳ ଅତୀତ ହେଲା ଏବଂ ଗଦାଧର କ୍ରମେ ଦ୍ୱାଦଶ ବର୍ଷରେ ଉପନୀତ ହେଲେ । ତାଙ୍କ ମଧ୍ୟମ ଭ୍ରାତା ରାମେଶ୍ୱର ଏବେ ବାଇଶି ବର୍ଷରେ ଏବଂ କନିଷ୍ଠା ଭଉଣୀ ସର୍ବମଙ୍ଗଳା ନବମ ବର୍ଷରେ ପଦାର୍ପଣ କଲେ । ରାମେଶ୍ୱର ବିବାହଯୋଗ୍ୟ ହୋଇଥିବା ଦେଖି ଶ୍ରୀଯୁକ୍ତ ରାମକୁମାର କାମାରପୁକୁର ନିକଟବର୍ତ୍ତୀ ଗୌରହାଟି ନାମକ ଗ୍ରାମର ଶ୍ରୀଯୁକ୍ତ ରାମସଦୟ ବନ୍ଦୋପାଧ୍ୟାୟଙ୍କର ଭଗିନୀ ସହିତ ତାଙ୍କର ବିବାହ ସ୍ଥିର କଲେ ଏବଂ ରାମସଦୟଙ୍କୁ ନିଜ ଭଗିନୀ ସର୍ବମଙ୍ଗଳା ସହିତ ପରିଣୟସୂତ୍ରରେ ଆବଦ୍ଧ କଲେ । ଏହିପରି ରାମେଶ୍ୱରଙ୍କ ଅଦଳବଦଳ ବିବାହ ସ୍ଥିର ହେବାରୁ କନ୍ୟାପକ୍ଷୀୟଗଣଙ୍କୁ ଯୌତୁକ ଦେବା ପାଇଁ ଶ୍ରୀଯୁକ୍ତ ରାମକୁମାରଙ୍କୁ ବ୍ୟସ୍ତ ହେବାକୁ ପଡ଼ିଲା ନାହିଁ । ରାମକୁମାରଙ୍କର ପାରିବାରିକ ଜୀବନରେ ଏସମୟରେ ଅନ୍ୟ ଏକ ବିଶେଷ ଘଟଣା ମଧ୍ୟ ଉପସ୍ଥିତ ହୋଇଥିଲା । ଯୌବନ ଅବସାନରେ ମଧ୍ୟ ତାଙ୍କ ସହଧର୍ମିଣୀ ଗର୍ଭଧାରଣ ନ କରିବାରୁ ସମସ୍ତେ ତାହାଙ୍କୁ ବନ୍ଧ୍ୟା ବୋଲି ଭାବିଥିଲେ । ସେ ଏବେ ଗର୍ଭବତୀ ହେବା ଦେଖି ପରିବାରବର୍ଗଙ୍କ ମନରେ ଆନନ୍ଦ ଓ ଶଙ୍କା ଉଭୟ ଉଦୟ ହେଲା । କାରଣ, ଗର୍ଭଧାରଣ କଲେ ହିଁ ତାଙ୍କ ପତ୍ନୀଙ୍କର ମୃତ୍ୟୁହେବ, —ଏକଥା ସେମାନେ ଏହାପୂର୍ବରୁ ରାମକୁମାରଙ୍କ ନିକଟରୁ ଶୁଣିଥିଲେ ।

**ଗର୍ଭବତୀ ହୋଇ ରାମକୁମାରଙ୍କ ପତ୍ନୀର ସ୍ୱଭାବରେ ପରିବର୍ତ୍ତନ :**

ସେ ଯାହାହେଉ, ସ୍ତ୍ରୀଙ୍କର ଗର୍ଭଧାରଣ ସମୟରୁ ଶ୍ରୀଯୁକ୍ତ ରାମକୁମାରଙ୍କର ଭାଗ୍ୟଚକ୍ରରେ ବିଶେଷ ପରିବର୍ତ୍ତନ ଆସି ଉପସ୍ଥିତ ହେଲା । ଯେଉଁ ସମସ୍ତ ଉପାୟରେ ସେ ଏତେଦିନ ବେଶ୍ କିଛି ଅର୍ଜନ କରୁଥିଲେ, ସେସବୁଥିରୁ ଏବେ ପୂର୍ବପରି ଆଉ ଅର୍ଥାଗମ ହେଉ ନ ଥିଲା ଏବଂ ତାଙ୍କର ଶାରୀରିକ ସ୍ୱାସ୍ଥ୍ୟ ମଧ୍ୟ ଏବେଠାରୁ ଭଗ୍ନ ହେବାରୁ ସେ ଆଉ ପୂର୍ବପରି କର୍ମଠ ରହିଲେ ନାହିଁ । ତାଙ୍କ ସ୍ତ୍ରୀଙ୍କର ଆଚରଣ ମଧ୍ୟ ଏବେ ଯେପରି ଭିନ୍ନାକାର ଧାରଣ କଲା । ତାଙ୍କର ପୂଜ୍ୟ ପିତାଙ୍କ ସମୟରୁ ସଂସାରରେ ନିୟମ ଥିଲା ଯେ, ଅନୁପବୀତ ବାଳକ ଓ ପୀଡ଼ିତ ବ୍ୟକ୍ତିଙ୍କ ବ୍ୟତୀତ ଅନ୍ୟ କେହି ରଘୁବୀରଙ୍କର ପୂଜା ପୂର୍ବରୁ ଜଳ ଗ୍ରହଣ କରିବେ ନାହିଁ । ତାଙ୍କର ପତ୍ନୀ ଏବେ ସେହି ନିୟମ ଭଙ୍ଗ କରିବାକୁ ଲାଗିଲେ ଏବଂ ଅମଙ୍ଗଳ ଆଶଙ୍କା କରି ଘରେ ଅନ୍ୟମାନେ ଏଥିରେ ପ୍ରତିବାଦ କଲେ ମଧ୍ୟ ସେ ସେମାନଙ୍କ କଥାରେ କର୍ଣ୍ଣପାତ କରୁ ନ ଥିଲେ । ଛୋଟ ଛୋଟ ବିଷୟକୁ ନେଇ

ସେ ପରିବାରର ସମସ୍ତଙ୍କ ସହିତ ବିବାଦ ଓ ମନୋମାଳିନ୍ୟ ସୃଷ୍ଟି କରିବାକୁ ଲାଗିଲେ ଏବଂ ଶ୍ରୀମତୀ ଚନ୍ଦ୍ରାଦେବୀ କିମ୍ବା ନିଜ ସ୍ୱାମୀ ରାମକୁମାରଙ୍କର କଥାରେ ମଧ୍ୟ ଏପରି ବିପରୀତ ଆଚରଣ କରିବାରୁ କ୍ଷାନ୍ତ ହେଲେ ନାହିଁ । ଗର୍ଭାବସ୍ଥାରେ ସ୍ତ୍ରୀ–ଲୋକଙ୍କର ସ୍ୱଭାବରେ ପରିବର୍ତ୍ତନ ହୁଏ ଭାବି ସେମାନେ ଏସମସ୍ତ ଆଚରଣ ବିରୁଦ୍ଧରେ ଆଉ କିଛି ନ କହିଲେ ମଧ୍ୟ କାମାରପୁକୁରର ଧର୍ମର ସଂସାରରେ ଏବେ ଶାନ୍ତି ପରିବର୍ତ୍ତେ ଅନେକ ସମୟରେ ଅଶାନ୍ତିର ଉଦୟ ହେବାକୁ ଲାଗିଲା ।

**ରାମକୁମାରଙ୍କ ସାଂସାରିକ ଅବସ୍ଥାରେ ପରିବର୍ତ୍ତନ :**

ଅନ୍ୟପକ୍ଷରେ ରାମକୁମାରଙ୍କର ମଧ୍ୟମ ଭ୍ରାତା ରାମେଶ୍ୱର ଏବେ କୃତବିଦ୍ୟ ହେଲେ ମଧ୍ୟ ବିଶେଷ ଉପାର୍ଜ୍ଜନ କରିବାକୁ ସକ୍ଷମ ହେଲେ ନାହିଁ । ସୁତରାଂ ପରିବାରବର୍ଗଙ୍କର ସଂଖ୍ୟାବୃଦ୍ଧି ସହିତ ଆୟର ହ୍ରାସ ହୋଇ ସଂସାରରେ ପୂର୍ବପରି ସ୍ୱଚ୍ଛଳତା ରହିଲା ନାହିଁ । ଶ୍ରୀଯୁକ୍ତ ରାମକୁମାର ଏଥିରେ ଚିନ୍ତିତ ହୋଇ ନାନା ଉପାୟ ଚିନ୍ତା କରି ମଧ୍ୟ ଏହାର ପ୍ରତିକାର କରିବାକୁ ସମର୍ଥ ହେଲେ ନାହିଁ । କେହି ଯେପରି ସେହି ସମସ୍ତ ଉପାୟ ବିରୁଦ୍ଧରେ ଦଣ୍ଡାୟମାନ ହୋଇ ସେଗୁଡ଼ିକୁ ଫଳବାନ ହେବାକୁ ଦେଲା ନାହିଁ ! ଏପରି ଚିନ୍ତା ଉପରେ ଚିନ୍ତା ଆସି ରାମକୁମାରଙ୍କ ଜୀବନ ଭାରାକ୍ରାନ୍ତ କରି ତୋଳିଲା ଏବଂ ଦିନ, ପକ୍ଷ, ମାସ ଅତୀତ ହୋଇ କ୍ରମେ ତାଙ୍କ ସ୍ତ୍ରୀଙ୍କର ପ୍ରସବ ସମୟ ନିକଟବର୍ତ୍ତୀ ହେବାର ଦେଖି ସେ ନିଜର ପୂର୍ବଦର୍ଶନ ସ୍ମରଣପୂର୍ବକ ଅଧିକତର ବିଷଣ୍ଣ ହେବାକୁ ଲାଗିଲେ ।

**ପୁତ୍ରପ୍ରସବାନ୍ତେ ରାମକୁମାରଙ୍କ ପତ୍ନୀଙ୍କର ମୃତ୍ୟୁ :**

କ୍ରମେ ସେହି କାଳ ସତରେ ଉପସ୍ଥିତ ହେଲା ଏବଂ ଶ୍ରୀଯୁକ୍ତ ରାମକୁମାରଙ୍କର ସହଧର୍ମିଣୀ ୧୮୪୯ ଖ୍ରୀଷ୍ଟାବ୍ଦର କୌଣସି ସମୟରେ ଏକ ପରମ ରୂପବାନ ପୁତ୍ର ପ୍ରସବାନ୍ତେ ତା'ର ମୁଖ ନିରୀକ୍ଷଣ କରୁ କରୁ ସୂତିକାଗୃହରେ ହିଁ ସ୍ୱର୍ଗାରୋହଣ କଲେ । ରାମକୁମାରଙ୍କର ଦରିଦ୍ର ସଂସାରରେ ଏଘଟଣାରେ ଶୋକର ନିବିଡ଼ ଯବନିକା ପୁନରାୟ ନିପତିତ ହେଲା ।

# ଅଷ୍ଟମ ଅଧ୍ୟାୟ

## ଯୌବନର ପ୍ରାରମ୍ଭରେ

### ରାମକୁମାରଙ୍କ କଲିକତାରେ ଟୋଲ ଖୋଲିବା :

ପତ୍ନୀଙ୍କର ପରଲୋକ ହେଲା, କିନ୍ତୁ ରାମକୁମାରଙ୍କର ଦୁଃଖଦୁର୍ଦ୍ଦିନର ଅବସାନ ହେଲା ନାହିଁ । ଉପାର୍ଜନ କମି ଯିବାରୁ ଅର୍ଥ ଅଭାବରେ ତାଙ୍କ ସାଂସାରିକ ଅବସ୍ଥାର ଦିନକୁ ଦିନ ଅବନତି ହେବାକୁ ଲାଗିଲା । ଲକ୍ଷ୍ମୀଜଳାର ଜମିଖଣ୍ଡିକରେ ଧାନ ଫସଲ ପର୍ଯ୍ୟାପ୍ତ ପରିମାଣରେ ଉତ୍ପନ୍ନ ହେଉଥିଲେ ମଧ୍ୟ ବସ୍ତ୍ରାଦି ଅନ୍ୟାନ୍ୟ ନିତ୍ୟପ୍ରୟୋଜନୀୟ ପଦାର୍ଥଗୁଡ଼ିକର ଅଭାବ ସଂସାରରେ ପ୍ରତିଦିନ ବଢ଼ିବାକୁ ଲାଗିଲା । ତଦୁପରି ତାଙ୍କର ବୃଦ୍ଧାମାତା ଓ ମାତୃହୀନ ଶିଶୁ ପୁତ୍ର ଅକ୍ଷୟ ନିମିତ୍ତ ଏବେ ପ୍ରତିଦିନ କ୍ଷୀର ପ୍ରୟୋଜନ । ସୁତରାଂ ଋଣ କରି ଏସବୁ ପ୍ରୟୋଜନର ବ୍ୟବସ୍ଥା କରିବାକୁ ପଡ଼ିଲା ଏବଂ ଋଣଭାର ପ୍ରତିଦିନ ବୃଦ୍ଧି ବ୍ୟତୀତ ହ୍ରାସ ହେଲା ନାହିଁ । ଅଶେଷ ଚିନ୍ତା ଓ ନାନା ଉପାୟ ଅବଲମ୍ବନ କରି ମଧ୍ୟ ରାମକୁମାର ତାହା ପ୍ରତିରୋଧ କରିବାକୁ ଅସମର୍ଥ ହେଲେ । ସେତେବେଳେ ବନ୍ଧୁମାନଙ୍କ ପରାମର୍ଶରେ ଅନ୍ୟତ୍ର ଗମନ କଲେ ଆୟବୃଦ୍ଧିର ସମ୍ଭାବନା ହୋଇପାରେ ଭାବି ସେ ସେଥି ନିମନ୍ତେ ପ୍ରସ୍ତୁତ ହେବାକୁ ଲାଗିଲେ । ତାଙ୍କର ଶୋକ ସନ୍ତପ୍ତ ମନ ମଧ୍ୟ ଏଥିରେ ସମ୍ମତି ପ୍ରଦାନ କଲା । କାରଣ, ପ୍ରାୟ ତିରିଶ ବର୍ଷ କାଳ ଯାହାକୁ ଜୀବନସଙ୍ଗିନୀ କରି ସଂସାର ଗଢ଼ିଥିଲେ, ତାଙ୍କର ସ୍ମୃତି ଯେଉଁ ଗୃହରେ ସର୍ବତ୍ର ବିଜଡ଼ିତ ରହିଅଛି, ସେହି ଗୃହରୁ ଦୂରରେ ରହିଲେ ଶାନ୍ତି ଲାଭର ସମ୍ଭାବନା ହୋଇପାରେ । ସୁତରାଂ କଲିକତା କିମ୍ବା ବର୍ଦ୍ଧମାନ କେଉଁଠାକୁ ଗଲେ ଅଧିକ ଅର୍ଥାଗମର ସମ୍ଭାବନା ସେ ବିଷୟରେ ପରାମର୍ଶ ଚାଲିଲା । ପରିଶେଷରେ ସ୍ଥିର ହେଲା ଯେ ପ୍ରଥମୋକ୍ତ ସ୍ଥାନକୁ ଯିବା ହିଁ ଉଚିତ୍ ହେବ କାରଣ, ସିହଡ଼ ଗ୍ରାମର ମହେଶଚନ୍ଦ୍ର ଚଟ୍ଟୋପାଧ୍ୟାୟ, ଦେଶଡ଼ାର ରାମଧନ ଘୋଷ ପ୍ରଭୃତି ତାଙ୍କର ପରିଚିତ ଅନେକ ବ୍ୟକ୍ତି କଲିକତା ଯାଇ ଭଲ ଉପାର୍ଜନ କରି ନିଜ ନିଜ ସଂସାରର ଶ୍ରୀବୃଦ୍ଧି ସାଧନ କରିଛନ୍ତି— ଏକଥା ତାଙ୍କର ବନ୍ଧୁମାନେ ତାଙ୍କୁ କହିବାକୁ ଲାଗିଲେ । ସେହି ସମସ୍ତ ବ୍ୟକ୍ତିମାନେ ଯେ ତାଙ୍କଠାରୁ ବିଦ୍ୟା, ବୁଦ୍ଧି ଓ ଚରିତ୍ରବଳରେ ଅନେକାଂଶରେ ହୀନ, ଏକଥା ମଧ୍ୟ ତାଙ୍କର ବନ୍ଧୁମାନେ ତାଙ୍କୁ କହିବାକୁ ଭୁଲିଲେ ନାହିଁ । ସୁତରାଂ ପତ୍ନୀବିୟୋଗର ସ୍ୱଳ୍ପକାଳ ପରେ ଶ୍ରୀଯୁକ୍ତ ରାମକୁମାର ରାମେଶ୍ୱରଙ୍କ ଉପରେ ସଂସାରର ଭାର ଅର୍ପଣ କରି କଲିକତା ଆସିଲେ ଏବଂ ଝାମାପୁକୁର ନାମକ ଏକ ପଡ଼ାରେ ଟୋଲ୍ ଖୋଲି ଛାତ୍ରଗଣଙ୍କୁ ଅଧ୍ୟୟନ କରିବାକୁ ନିଯୁକ୍ତ ହେଲେ ।

## ରାମକୁମାରଙ୍କ ପତ୍ନୀଙ୍କ ମୃତ୍ୟୁରେ ପାରିବାରିକ ପରିବର୍ତ୍ତନ :

ରାମକୁମାରଙ୍କର ପତ୍ନୀଙ୍କ ମୃତ୍ୟୁରେ କାମାରପୁକୁରର ପାରିବାରିକ ଜୀବନରେ ଅନେକ ପରିବର୍ତ୍ତନ ଦେଖାଗଲା । ଶ୍ରୀମତୀ ଚନ୍ଦ୍ରା ସେହି ଘଟଣାରେ ଗୃହକର୍ମର ସମସ୍ତ ଭାର ପୁନରାୟ ଗ୍ରହଣ କରିବାକୁ ବାଧ୍ୟ ହେଲେ । ରାମକୁମାରଙ୍କ ପୁତ୍ର ଅକ୍ଷୟର ଲାଳନପାଳନ ଦାୟିତ୍ୱ ମଧ୍ୟ ତାଙ୍କ କାନ୍ଧରେ ପଡ଼ିଲା । ତାଙ୍କର ମଧ୍ୟମ ପୁତ୍ର ରାମେଶ୍ୱରଙ୍କ ପତ୍ନୀ ତାଙ୍କୁ ଏସମସ୍ତ କାର୍ଯ୍ୟରେ ଯଥାସାଧ୍ୟ ସାହାଯ୍ୟ କରିବାକୁ ଲାଗିଲେ; ମାତ୍ର ସେ ସେତେବେଳେ ଛୋଟ ବାଳିକା, ତାଠାରୁ ବିଶେଷ ସାହାଯ୍ୟ ମିଳିବାର ସମ୍ଭାବନା ନ ଥିଲା । ତେଣୁ ରଘୁବୀରଙ୍କର ସେବା, ଅକ୍ଷୟର ଲାଳନ ପାଳନ, ଏବଂ ରନ୍ଧନାଦି ଗୃହକର୍ମ ପ୍ରଭୃତି ସବୁକିଛି ଏବେ ତାଙ୍କୁ ହିଁ କରିବାକୁ ପଡୁଥିଲା । ଏସମସ୍ତ କର୍ମ ସମ୍ପୂର୍ଣ୍ଣ କରିବାକୁ ତାଙ୍କର ସମସ୍ତ ଦିନ କଟିଯାଉଥିଲା, ବିଶ୍ରାମ ନିମିତ୍ତ ତିଳାର୍ଦ୍ଧ ଅବସର ରହୁ ନ ଥିଲା । ଅଠାବନ ବର୍ଷ ବୟସରେ ସଂସାରର ସମସ୍ତ ଭାର ଏପରି କାନ୍ଧରେ ବହନ କରିବା ସୁଖକର ନ ହେଲେ ମଧ୍ୟ ଶ୍ରୀଶ୍ରୀରଘୁବୀରଙ୍କର ଏପରି ଇଚ୍ଛା ବୁଝି ଚନ୍ଦ୍ରାଦେବୀ ବିନା ଅଭିଯୋଗରେ ଏସମସ୍ତ ନିର୍ବାହ କରିବାକୁ ଲାଗିଲେ ।

## ରାମେଶ୍ୱରଙ୍କ କଥା :

ଅନ୍ୟ ଦିଗରେ ସଂସାରର ଆୟବ୍ୟୟର ଭାର ଶ୍ରୀଯୁକ୍ତ ରାମେଶ୍ୱରଙ୍କ ଉପରେ ଏବେଠାରୁ ପଡ଼ିବାରୁ ସେ କିପରି ଉପାର୍ଜନ କରି ପରିବାରବର୍ଗଙ୍କୁ ସୁଖୀ କରି ପାରିବେ ସେ ବିଷୟରେ ଚିନ୍ତିତ ରହିଲେ, କିନ୍ତୁ କୃତବିଦ୍ୟ ହେଲେ ମଧ୍ୟ ସେ କଦାପି ବିଶେଷ ଉପାର୍ଜ୍ଜନକ୍ଷମ ହୋଇଥିଲେ ବୋଲି ଆମେ ଶୁଣି ନାହୁଁ । ତଦୁପରି ପରିବ୍ରାଜକ ସାଧୁ ଓ ସାଧକଗଣଙ୍କୁ ଦେଖିଲେ ସେ ସେମାନଙ୍କ ସହିତ ଅନେକ ସମୟ ଅତିବାହିତ କରୁଥିଲେ ଏବଂ ସେମାନଙ୍କର କୌଣସି ଅଭାବ ଦେଖିଲେ ତାହା ମୋଚନ କରିବା ପାଇଁ ଅନେକ ସମୟରେ ଅତିରିକ୍ତ ବ୍ୟୟ କରିବାକୁ କୁଣ୍ଠିତ ହେଉ ନ ଥିଲେ । ତେଣୁ ଆୟବୃଦ୍ଧି ହେଲେ ମଧ୍ୟ ତାଙ୍କ ଦ୍ୱାରା ସଂସାରର ଋଣ-ପରିଶୋଧ କିମ୍ବା ବିଶେଷ ସ୍ୱଚ୍ଛଳତା ସମ୍ପାଦିତ ହୋଇପାରିଲା ନାହିଁ । କାରଣ, ସଂସାରୀ ହେଲେ ମଧ୍ୟ ସେ ସଞ୍ଚୟୀ ହୋଇପାରି ନ ଥିଲେ ଏବଂ ଅନେକ ସମୟରେ ଆୟ ଅପେକ୍ଷା ଅଧିକ ବ୍ୟୟ କରି ଏବଂ 'ରଘୁବୀର କୌଣସି ମତେ ଚଳାଇ ଦେବେ' ଭାବି ସେ କାଳାତିପାତ କରିବାକୁ ଲାଗିଲେ ।

## ଗଦାଧରଙ୍କ ସମ୍ବନ୍ଧରେ ରାମେଶ୍ୱରଙ୍କ ଚିନ୍ତା :

କନିଷ୍ଠ ଭ୍ରାତା ଗଦାଧରଙ୍କୁ ପ୍ରାଣର ସହିତ ଭଲ ପାଉଥିଲେ ମଧ୍ୟ ଶ୍ରୀଯୁକ୍ତ ରାମେଶ୍ୱର ତାଙ୍କର ଶିକ୍ଷାଦି ଅଗ୍ରସର ହେଉଅଛି କି ନାହିଁ, ସେବିଷୟ କଦାପି

ଲକ୍ଷ୍ୟ କରୁ ନ ଥିଲେ । କାରଣ, ଏପରି କରିବା ତାଙ୍କର ପ୍ରକୃତି ବିରୁଦ୍ଧ ଥିଲା; ତଦୁପରି ଅର୍ଥ ଚିନ୍ତାରେ ତାଙ୍କୁ ବିଭିନ୍ନ ସ୍ଥାନକୁ ଯିବା ଆସିବା କରିବାକୁ ପଡୁଥିଲା । ତେଣୁ ଏବିଷୟରେ ଦୃଷ୍ଟିଦେବାକୁ ତାଙ୍କର ଇଚ୍ଛା ଓ ସମୟ ଉଭୟ ବସ୍ତୁର ଅଭାବ ହୋଇଥିଲା । ପୁନଶ୍ଚ ଏତେ ଅଳ୍ପ ବୟସରେ ବାଳକର ଧର୍ମପ୍ରବୃତ୍ତିର ଅଦ୍ଭୁତ ପରିଣତି ଦେଖି ତାଙ୍କର ଦୃଢ଼ ଧାରଣା ହୋଇଥିଲା ଯେ, ତାହାର ପ୍ରକୃତି ତାକୁ ସୁପଥ ବିନା କେବେ ମଧ୍ୟ କୁପଥରେ ପରିଚାଳିତ କରିବ ନାହିଁ । ପଲ୍ଲୀର ନରନାରୀମାନେ ତାଙ୍କ ଉପରେ ପ୍ରଗାଢ଼ ବିଶ୍ୱାସ ସ୍ଥାପନ କରିବା ଏବଂ ତାଙ୍କୁ ପରମାତ୍ମୀୟ ବୋଧରେ ଭଲ ପାଇଥିବାର ଦେଖି ତାଙ୍କର ସେହି ଧାରଣା ବଦ୍ଧମୂଳ ହୋଇଯାଇଥିଲା । କାରଣ, ସେ ବୁଝିଥିଲେ ବିଶେଷ ସତ୍ ଓ ଉଦାରଚରିତ୍ର ନ ହେଲେ କେହି କେବେହେଲେ ସଂସାରରେ ସମସ୍ତ ବ୍ୟକ୍ତିଙ୍କର ଚିତ୍ତାକର୍ଷଣ କରି ସେମାନଙ୍କର ପ୍ରଶଂସାଭାଜନ ହୋଇପାରେ ନାହିଁ । ସେଥିପାଇଁ ବାଳକର ଉଜ୍ଜ୍ୱଳ ଭବିଷ୍ୟତ କଳ୍ପନାପୂର୍ବକ ତାଙ୍କର ହୃଦୟ ଆନନ୍ଦିତ ହୋଇଉଠୁଥିଲା ଓ ସେ ସର୍ବଦା ନିଶ୍ଚିନ୍ତ ରହୁଥିଲେ । ସୁତରାଂ ରାମକୁମାରଙ୍କ କଲିକତା ଗମନ କାଳରେ ଗଦାଧର ତ୍ରୟୋଦଶ ବର୍ଷରେ ପଦାର୍ପଣ କରି ଏକ ପ୍ରକାର ଅଭିଭାବକଶୂନ୍ୟ ହୋଇ ପଡ଼ିଲେ ଏବଂ ତାହାର ଉନ୍ନତ ପ୍ରକୃତି ତାକୁ ଯେଉଁଦିଗକୁ ଟାଣିଲା, ସେ ଏବେ ଅବାଧରେ ସେହି ପଥରେ ହିଁ ଚାଲିବାକୁ ଲାଗିଲେ ।

**ଗଦାଧରଙ୍କ ମନର ବର୍ତ୍ତମାନ ଅବସ୍ଥା ଓ କାର୍ଯ୍ୟକଳାପ :**

ଆମେ ଏହାପୂର୍ବରୁ ଦେଖିଅଛୁ ଗଦାଧରଙ୍କ ସୂକ୍ଷ୍ମଦୃଷ୍ଟି ତାଙ୍କୁ ଏତେ ଅଳ୍ପ ବୟସରେ ହିଁ ପ୍ରତ୍ୟେକ ବ୍ୟକ୍ତିଙ୍କର ଓ କାର୍ଯ୍ୟର ଉଦ୍ଦେଶ୍ୟ ଲକ୍ଷ୍ୟ କରିବାକୁ ଶିଖାଇଥିଲା । ସୁତରାଂ ଅର୍ଥଲାଭରେ ସହାୟକ ହେବ ବୋଲି ପାଠଶାଳାରେ ବିଦ୍ୟାଭ୍ୟାସ ଏବଂ ଟୋଲରେ ଉପାଧି ଭୂଷିତ ହେବାକୁ ଲୋକମାନେ ସଚେଷ୍ଟ ହୁଅନ୍ତି, ଏହା ବୁଝିବାକୁ ତାଙ୍କର ବିଳମ୍ବ ହୋଇ ନ ଥିଲା । ପୁଣି, ଅଶେଷ କଷ୍ଟ ସ୍ୱୀକାରପୂର୍ବକ ସେହି ଅର୍ଥ ଉପାର୍ଜ୍ଜନ ଓ ତଦ୍ୱାରା ସାଂସାରିକ ଭୋଗସୁଖ ଲାଭ କରି ଲୋକେ ତାହାର ପିତାଙ୍କ ସଦୃଶ ସତ୍ୟନିଷ୍ଠ, ଚରିତ୍ରବଳ ଏବଂ ଧର୍ମଲାଭରେ ସକ୍ଷମ ହୁଅନ୍ତି ନାହିଁ, ଏହା ମଧ୍ୟ ସେ ଦିନକୁ ଦିନ ଦେଖିବାକୁ ପାଉଥିଲେ । ଗ୍ରାମର କିଛି କିଛି ପରିବାରସ୍ଥ ବ୍ୟକ୍ତିଗଣ ସ୍ୱାର୍ଥସୁଖରେ ଅନ୍ଧହୋଇ ବିଷୟ ସମ୍ପତ୍ତି ପାଇଁ ପରସ୍ପର ସହିତ ବିବାଦ ଓ ମାଲିମକଦ୍ଦମା ଉତ୍‌ଥାପନପୂର୍ବକ ଗୃହ ଓ ବିଲ ଆଦିରେ ଦଉଡ଼ି ପକାଇ 'ଏହି ପଟ ମୋର, ସେହିପଟ ତାର' ଇତ୍ୟାଦି ନିରୂପଣ କରି କିଛି ଦିନ ସେହି ବିଷୟ ଭୋଗ କରୁ ନ କରୁ ଶମନ ସଦନ ଚାଲିଗଲେ— ଏହିପରି ଦୃଷ୍ଟାନ୍ତଗୁଡ଼ିକ ଅବଲୋକନ କରି ବାଳକ ବିଶେଷରୂପେ ବୁଝିଥିଲା ଯେ, ଅର୍ଥ ଓ ଭୋଗଲାଳସା ମାନବ ଜୀବନରେ ଅନେକ ଅନର୍ଥ ଉପସ୍ଥିତ କରେ ।

ସୁତରାଂ ଅର୍ଥକରୀ ବିଦ୍ୟାର୍ଜ୍ଜନରେ ସେ ଯେ ଏବେ ଦିନକୁ ଦିନ ଉଦାସୀନ ରହିବେ ଏବଂ ପିତାଙ୍କ ପରି, 'ମୋଟାଭାତ-ମୋଟାଲୁଗା'ରେ ସନ୍ତୁଷ୍ଟ ରହି ଈଶ୍ୱରଙ୍କର ପ୍ରୀତିଲାଭକୁ ମନୁଷ୍ୟ ଜୀବନର ଉଦ୍ଦେଶ୍ୟ ବୋଲି ବୁଝିବେ, ଏହା ବିଚିତ୍ର ନୁହେଁ । ସେଥିପାଇଁ ସମବୟସ୍କଗଣଙ୍କ ପ୍ରତି ଶ୍ରଦ୍ଧା ଯୋଗୁଁ ଗଦାଧର ପ୍ରାୟ ପ୍ରତିଦିନ ପାଠଶାଳାକୁ କୌଣସି ନା କୌଣସି ସମୟରେ ଗଲେ ମଧ୍ୟ ରଘୁବୀରଙ୍କର ସେବାପୂଜା ଓ ଗୃହକର୍ମରେ ସାହାଯ୍ୟଦାନପୂର୍ବକ ମାତାଙ୍କର ପରିଶ୍ରମ ଲାଘବ କରିବାରେ ଏବେଠାରୁ ତାଙ୍କର ଅଧିକ ସମୟ ଅତିବାହିତ ହେବାକୁ ଲାଗିଲା । ଏସମସ୍ତ କାର୍ଯ୍ୟରେ ବ୍ୟାପୃତ ହୋଇ ଦିନ ତୃତୀୟ ପ୍ରହର ପର୍ଯ୍ୟନ୍ତ ପ୍ରାୟତଃ ତାଙ୍କୁ ଏବେ ଗୃହରେ ରହିବାକୁ ପଡୁଥିଲା ।

**ପଲ୍ଲୀରମଣୀଗଣଙ୍କ ନିକଟରେ ଗଦାଧରଙ୍କ ପାଠ ଓ ସଂକୀର୍ତ୍ତନାଦି :**

ଗଦାଧର ଏହିପରି ଘରେ ଅଧିକ ସମୟ ଅତିବାହିତ କରିବାରୁ ପଲ୍ଲୀରମଣୀଗଣ ତାଙ୍କ ସହିତ ମିଳିତ ହେବା ପାଇଁ ବିଶେଷ ସୁଯୋଗ ପାଉଥିଲେ । କାରଣ, ଗୃହକର୍ମ ସମାପନ କରି ସେମାନେ ଅନେକେ ଅବସର ସମୟରେ ଶ୍ରୀମତୀ ଚନ୍ଦ୍ରାଙ୍କ ନିକଟକୁ ଆସୁଥିଲେ ଏବଂ ବାଳକକୁ ସେଠାରେ ଦେଖିଲେ କେତେବେଳେ ଗୀତ ଗାଇବା ପାଇଁ ଓ କେତେବେଳେ ଧର୍ମ ଉପାଖ୍ୟାନମାନ ପାଠ କରିବାକୁ ଅନୁରୋଧ କରୁଥିଲେ । ବାଳକ ମଧ୍ୟ ସେମାନଙ୍କର ଅନୁରୋଧ ଯଥାସାଧ୍ୟ ପାଳନ କରିବାକୁ ଯତ୍ନଶୀଳ ହେଉଥିଲେ । ଚନ୍ଦ୍ରାଦେବୀଙ୍କୁ ଗୃହକର୍ମରେ ସାହାଯ୍ୟ କରୁଥିବାରୁ ତାଙ୍କର ସମୟ ଅଭାବ ଦେଖିଲେ ସେମାନେ ସମସ୍ତେ ମିଶି ଶ୍ରୀମତୀ ଚନ୍ଦ୍ରାଙ୍କର ଗୃହକର୍ମ କରିଦେଇ ତା' ମୁହଁରୁ ପୁରାଣକଥା ଓ ସଙ୍ଗୀତାଦି ଶୁଣିବା ପାଇଁ ସମୟ ବାହାର କରି ନେଉଥିଲେ । ଏହିପରି ସେମାନଙ୍କ ନିକଟରେ କିଛି ସମୟ ପାଠ ଓ ସଙ୍ଗୀତଗାନ କରିବା ଗଦାଧରଙ୍କ ନିତ୍ୟ କର୍ମ ମଧ୍ୟରେ ଅନ୍ୟତମ ହୋଇଉଠିଲା । ରମଣୀଗଣ ମଧ୍ୟ ସେଥିରେ ଏତେ ଆନନ୍ଦ ଅନୁଭବ କରୁଥିଲେ ଯେ, ଏସବୁ ଅଧିକ ସମୟ ଶୁଣିବା ଆଶାରେ ଏବେଠାରୁ ନିଜ ନିଜ ଗୃହ କର୍ମ ଶୀଘ୍ର ଶୀଘ୍ର ସମାପ୍ତ କରି ଚନ୍ଦ୍ରାଦେବୀଙ୍କ ନିକଟକୁ ଆସିବାକୁ ଲାଗିଲେ ।

ଗଦାଧର ଏମାନଙ୍କ ନିକଟରେ କେବଳ ପୁରାଣପାଠ କରୁଥିଲେ ତାହା ନୁହେଁ କିନ୍ତୁ ଅନ୍ୟ ନାନା ଉପାୟରେ ଏମାନଙ୍କୁ ଆନନ୍ଦ ଦେଉଥିଲେ । ଗ୍ରାମରେ ଏହି ସମୟରେ ତିନିଦଳ ଯାତ୍ରା, ଏକ ଦଳ ବାଉଲ, ଜଣେ ଦୁଇଜଣ କବି ଥିଲେ । ଏତଦ୍ ଭିନ୍ନ ବହୁ ବୈଷ୍ଣବ ଏଠାରେ ବାସ କରୁଥିବାରୁ ଅନେକେ ଗୃହରେ ହିଁ ପ୍ରତିଦିନ ସନ୍ଧ୍ୟାକାଳରେ ଭାଗବତପାଠ ଓ ସଂକୀର୍ତ୍ତନାଦି କରୁଥିଲେ । ବାଲ୍ୟକାଳରୁ ଏସମସ୍ତ ଶୁଣିଥିବାରୁ ଏବଂ ନିଜ ପ୍ରତିଭା ଯୋଗୁଁ ଗଦାଧରଙ୍କ ଏସମସ୍ତ ପାଲା, ଗୀତ ଓ ସଂକୀର୍ତ୍ତନ ଆୟତ୍ତ ଥିଲା । ତେଣୁ ରମଣୀଗଣଙ୍କର ଆନନ୍ଦବର୍ଦ୍ଧନ ପାଇଁ

ସେ କେଉଁଦିନ ଯାତ୍ରାର ପାଲା, କେଉଁଦିନ ବାଉଲ୍ ଗୀତାବଳୀ, କେଉଁଦିନ କବି ଏବଂ ଅନ୍ୟ କେଉଁଦିନ ଅବା ସଂକୀର୍ତ୍ତନ ଆରମ୍ଭ କରୁଥିଲେ । ଯାତ୍ରାପାଲା ବୋଲିବା ବେଳେ ସେ ଭିନ୍ନ ଭିନ୍ନ ସ୍ୱରରେ ବିଭିନ୍ନ ଭୂମିକାରେ କଥାଗୁଡ଼ିକ ଉଚ୍ଚାରଣପୂର୍ବକ ଏକାକୀ ସବୁ ଚରିତ୍ର ଅଭିନୟ କରୁଥିଲେ । ପୁଣି ନିଜ ଜନନୀ ବା ରମଣୀଗଣଙ୍କ ଭିତରେ କାହାକୁ କେଉଁଦିନ ବିମର୍ଷ ଦେଖିଲେ ସେ ସେହି ସମସ୍ତ ଯାତ୍ରାର ବିଦୂଷକ-ପାଲା ଅଥବା ସମସ୍ତଙ୍କ ପରିଚିତ ଗ୍ରାମର କୌଣସି ବ୍ୟକ୍ତିର ବିଚିତ୍ର ଆଚରଣ ଓ ହାବଭାବର ଏତେ ସ୍ୱାଭାବିକ ନକଲ କରୁଥିଲେ ଯେ, ସେମାନଙ୍କ ମଧ୍ୟରେ ହାସ୍ୟ ଓ କୌତୁକର ତରଙ୍ଗ ଛୁଟୁଥିଲା ।

**ପଲ୍ଲୀରମଣୀମାନଙ୍କର ଗଦାଧରଙ୍କ ପ୍ରତି ଭକ୍ତି ଓ ବିଶ୍ୱାସ :**

ସେ ଯାହା ହେଉ, ଗଦାଧର ଏହି ଭାବରେ ଏମାନଙ୍କ ହୃଦୟରେ କ୍ରମେ ଅପୂର୍ବ ପ୍ରଭାବ ବିସ୍ତାର କରିଥିଲେ । ବାଳକର ଜନ୍ମଗ୍ରହଣ ସମୟରେ ତାଙ୍କର ମାତା-ପିତା ଯେଉଁ ସମସ୍ତ ଅଦ୍ଭୁତ ସ୍ୱପ୍ନ ଓ ଦିବ୍ୟଦର୍ଶନ ଲାଭ କରିଥିଲେ, ସେସବୁ କଥା ସେମାନେ ଏହାପୂର୍ବରୁ ଶୁଣିଥିଲେ । ପୁନଶ୍ଚ ଦେବଦେବୀଙ୍କର ଭାବାବେଶ ଯୋଗୁଁ ସମୟ ସମୟରେ ତାଙ୍କର ଯେପରି ଅଦୃଷ୍ଟପୂର୍ବ ଅବସ୍ଥାନ୍ତର ଉପସ୍ଥିତ ହୁଏ, ତାହା ମଧ୍ୟ ସେମାନେ ସ୍ୱଚକ୍ଷୁରେ ଦର୍ଶନ କରିଥିଲେ । ତେଣୁ ତାହାର ଜ୍ୱଳନ୍ତ ଦେବଭକ୍ତି, ତନ୍ମୟ ହୋଇ ପୁରାଣପାଠ, ମଧୁର କଣ୍ଠରେ ସଙ୍ଗୀତ ଗାନ ଓ ସେମାନଙ୍କ ପ୍ରତି ଆତ୍ମୀୟ ପରି ସରଳ ଉଦାର ଆଚରଣ, ସେମାନଙ୍କର କୋମଳ ହୃଦୟରେ ଏପରି ଅପୂର୍ବ ଭକ୍ତି-ଭଲପାଇବାର ଉଦୟ କରିବ, ଏହା କିଛି ବିଚିତ୍ର ନୁହେଁ । ଆମେ ଶୁଣିଛୁ, ଧର୍ମଦାସ ଲାହାଙ୍କର କନ୍ୟା ପ୍ରସନ୍ନମୟୀପ୍ରମୁଖ ବର୍ଷୀୟସୀ ରମଣୀଗଣ ବାଳକ ମଧ୍ୟରେ ବାଳଗୋପାଳଙ୍କର ଦିବ୍ୟ ପ୍ରକାଶ ଅନୁଭବ କରି ତାକୁ ପୁତ୍ରଠାରୁ ଅଧିକ ସ୍ନେହ କରୁଥିଲେ ଏବଂ ତାଙ୍କ ଅପେକ୍ଷା ସ୍ୱଳ୍ପବୟସ୍କା ରମଣୀଗଣ ତାଙ୍କୁ ଭଗବାନ ଶ୍ରୀକୃଷ୍ଣଙ୍କର ଅଂଶସମ୍ଭୂତ ବୋଲି ବିଶ୍ୱାସ କରି ତା'ସହିତ ସଖ୍ୟଭାବରେ ବ୍ୟବହାର କରୁଥିଲେ । ରମଣୀଗଣଙ୍କ ମଧ୍ୟରୁ ଅନେକେ ହିଁ ବୈଷ୍ଣବବଂଶରେ ଜନ୍ମଗ୍ରହଣ କରିଥିଲେ ଏବଂ ସରଳ ବିଶ୍ୱାସ ହିଁ ସେମାନଙ୍କର ଧର୍ମଜୀବନର ପ୍ରଧାନ ଅଙ୍ଗ ଥିଲା; ସୁତରାଂ ଅଶେଷଗୁଣସମ୍ପନ୍ନ ପ୍ରିୟଦର୍ଶନ ବାଳକକୁ ଦେବତା ବୋଲି ବିଶ୍ୱାସ କରିବା ସେମାନଙ୍କ ପକ୍ଷରେ କିଛି ବିଚିତ୍ର ନ ଥିଲା । ସେ ଯାହାହେଉ, ଏହି ପ୍ରକାର ବିଶ୍ୱାସରେ ସେମାନେ ଏବେ ଗଦାଧର ସହିତ ମିଶି ତାଙ୍କୁ ନିଃସଙ୍କୋଚରେ ନିଜ ନିଜର ମନକଥା ଖୋଲି କହୁଥିଲେ ଏବଂ ଅନେକ ବିଷୟରେ ତା'ର ପରାମର୍ଶ ଗ୍ରହଣ କରି ତାହା କାର୍ଯ୍ୟରେ ପରିଣତ କରିବାକୁ ଚେଷ୍ଟା କରୁଥିଲେ । ଗଦାଧର

ମଧ୍ୟ ସେମାନଙ୍କ ସହିତ ଏପରିଭାବରେ ମିଶିଯାଉଥିଲେ ଯେ, ଅନେକ ସମୟରେ ସେ ସେମାନଙ୍କ ପରି ଜଣେ ରମଣୀ ବୋଲି ମନେ ହେଉଥିଲା ।[୧]

### ରମଣୀ ବେଶରେ ଗଦାଧର :

ଗଦାଧର କେବେ କେବେ ରମଣୀଙ୍କର ବେଶଭୂଷା ଧାରଣ କରି ସେମାନଙ୍କ ନିକଟରେ ବିଶେଷ ବିଶେଷ ନାରୀଚରିତ୍ରର ଅଭିନୟ କରୁଥିଲେ । ସେହିପରି ଶ୍ରୀମତୀ ରାଧାରାଣୀଙ୍କର ଅଥବା ତାଙ୍କର ପ୍ରଧାନ ସଖୀ ବୃନ୍ଦାଙ୍କର ଭୂମିକା ଗ୍ରହଣ କରିବା ସମୟରେ ସେମାନେ ତାଙ୍କୁ ଅନେକ ସମୟରେ ରମଣୀ ବେଶଭୂଷାରେ ସଜ୍ଜିତ ହେବାକୁ ଅନୁରୋଧ କରୁଥିଲେ । ବାଳକ ମଧ୍ୟ ସେମାନଙ୍କର ସେହି ଅନୁରୋଧ ରକ୍ଷା କରୁଥିଲା । ସେହି ସମୟରେ ତାଙ୍କର ହାବଭାବ, କଥାବାର୍ତ୍ତା, ଚାଲିଚଳନ ପ୍ରଭୃତି ଅବିକଳ ନାରୀ ସଦୃଶ ହେଉଥିଲା । ରମଣୀଗଣ ଏହା ଦେଖି କହୁଥିଲେ, ନାରୀବେଶ ଧାରଣ କଲେ ଗଦାଧରଙ୍କୁ ପୁରୁଷ ବୋଲି କେହି ମଧ୍ୟ ଚିହ୍ନି ପାରିବେ ନାହିଁ । ଏଥିରୁ ବୁଝିହୁଏ, ବାଳକ ନାରୀମାନଙ୍କର ପ୍ରତ୍ୟେକ କାର୍ଯ୍ୟ କେତେ ତନ୍ନ ତନ୍ନ କରି ଏହାପୂର୍ବରୁ ଲକ୍ଷ୍ୟ କରିଥିଲା । କୌତୁକପ୍ରିୟ ବାଳକ ଏହି ସମୟରେ କେବେ କେବେ ରମଣୀ ପରି ବେଶଭୂଷା ହୋଇ କାଖରେ କଳସୀ ଧାରଣପୂର୍ବକ ପୁରୁଷମାନଙ୍କ ସମ୍ମୁଖ ଦେଇ ହାଲଦାର ପୋଖରୀରୁ ଜଳ ଆଣିବା ପାଇଁ ଗମନ କରିଥିଲେ ମଧ୍ୟ କେହି ତାଙ୍କୁ ଏହି ବେଶରେ ଚିହ୍ନିପାରି ନ ଥିଲେ ।

### ସୀତାନାଥ ପାଇନଙ୍କ ପରିବାରବର୍ଗଙ୍କ ସହିତ ଗଦାଧରଙ୍କ ସୌହୃଦ୍ୟ :

ଗ୍ରାମର ଧନୀ ଗୃହସ୍ଥ ସୀତାନାଥ ପାଇନଙ୍କ କଥା ଆମେ ଏହା ପୂର୍ବରୁ ଉଲ୍ଲେଖ କରିଅଛୁ । ସୀତାନାଥଙ୍କର ସାତପୁତ୍ର ଓ ଆଠକନ୍ୟା ଥିଲେ ଏବଂ କନ୍ୟାଗଣ ବିବାହ ପରେ ମଧ୍ୟ ସୀତାନାଥଙ୍କ ଘରେ ଏକାନ୍ତରେ ଅବସ୍ଥାନ କରୁଥିଲେ । ଶୁଣାଯାଏ, ସୀତାନାଥଙ୍କର ବହୁ କୁଟୁମ୍ବ ପାଇଁ ରନ୍ଧନ କାର୍ଯ୍ୟରେ ଏତେ ମସଲାର ଆବଶ୍ୟକ ହେଉଥିଲା ଯେ ପ୍ରତିଦିନ ଦଶଟି ଶିଳରେ ମସଲା ବଟା ହେଉଥିଲା ! ତଦ୍‌ଭିନ୍ନ ସୀତାନାଥଙ୍କର ଦୂର ସମ୍ପର୍କୀୟ ଆତ୍ମୀୟବର୍ଗଙ୍କ ମଧ୍ୟରୁ ଅନେକେ ତାଙ୍କ ଘର ପାଖରେ ଘର କରି ବାସ କରୁଥିଲେ । ସେଥିପାଇଁ କାମାରପୁକୁରର ଏହି ଅଂଶ ବଣିକ ପଲ୍ଲୀ ନାମରେ ପ୍ରସିଦ୍ଧ ଥିଲା । ଏହା କ୍ଷୁଦିରାମଙ୍କ ଘର ସନ୍ନିକଟରେ ଥିବାରୁ ଅନେକ ବଣିକ ରମଣୀଗଣ ସମୟ ପାଇଲେ ଚନ୍ଦ୍ରାଦେବୀଙ୍କ ନିକଟକୁ ଆସୁଥିଲେ, ବିଶେଷ କରି ସୀତାନାଥଙ୍କ ସ୍ତ୍ରୀ ଓ କନ୍ୟାଗଣ; ସୁତରାଂ ଗଦାଧର ସହିତ ଏମାନଙ୍କର ଏବେ ବିଶେଷ ସୌହାର୍ଦ୍ଦ୍ୟ ଗଢ଼ିଉଠିଥିଲା । ସେମାନେ ବାଳକକୁ

---

୧. ସଂପୂର୍ଣ୍ଣରୂପେ ରମଣୀମାନଙ୍କ ପରି ହେବାର ବାସନା ଗଦାଧରଙ୍କ ପ୍ରାଣରେ ଏହି ସମୟରେ କେତେ ପ୍ରବଳ ହୋଇଥିଲା, ତାହା 'ସାଧକଭାବ' — ଚତୁର୍ଦ୍ଦଶ ଅଧ୍ୟାୟରେ ଲିପିବଦ୍ଧ ବିଷୟରୁ ପାଠକ ସବିଶେଷ ଜାଣିପାରିବେ ।

ଅନେକ ସମୟରେ ନିଜ ଘରକୁ ନେଇ ଯାଉଥିଲେ ଏବଂ ରମଣୀ ରୂପରେ ସଜ୍ଜିତ ହୋଇ ପୂର୍ବୋକ୍ତଭାବରେ ଅଭିନୟାଦି କରିବାକୁ ଅନୁରୋଧ କରୁଥିଲେ । ଅଭିଭାବକଗଣଙ୍କ ନିଷେଧ ଯୋଗୁଁ ସେମାନଙ୍କର ପୁତ୍ରବଧୂମାନଙ୍କ ମଧ୍ୟରୁ ଅନେକେ ନିଜ ଗୃହ ବ୍ୟତୀତ ଅନ୍ୟତ୍ର ଯାଇପାରୁ ନ ଥିଲେ ଏବଂ ସେଥିପାଇଁ ଗଦାଧରଙ୍କର ପାଠ ଓ ସଙ୍ଗୀତାଦି ଶ୍ରବଣ କରିବା ସେମାନଙ୍କ ଭାଗ୍ୟରେ ଜୁଟୁ ନ ଥିଲା ବୋଲି ବୋଧହୁଏ ସେମାନେ ବାଳକକୁ ଏହି ପ୍ରକାରରେ ନିଜ ଭବନ ଆସିବାକୁ ନିମନ୍ତ୍ରଣ କରୁଥିଲେ । ସେହିପରି ବଣିକପଲ୍ଲୀ ଭିତରେ ଏପରି ଅନେକ ରମଣୀ ଯେଉଁମାନେ ଚନ୍ଦ୍ରାଦେବୀଙ୍କ ନିକଟକୁ ଯାଉ ନ ଥିଲେ ମଧ୍ୟ ଗଦାଧରଙ୍କ ଭକ୍ତ ହୋଇଉଠିଥିଲେ, ସେମାନେ ସୀତାନାଥଙ୍କ ଭବନରେ ଗଦାଧର ଉପସ୍ଥିତ ହେଲେ ଲୋକମୁଖରେ ସମ୍ବାଦ ପାଇ ସେଠାକୁ ଆଗମନପୂର୍ବକ ତାହାଙ୍କ ପାଠଶ୍ରବଣ ଓ ଅଭିନୟାଦି ଦର୍ଶନରେ ଆନନ୍ଦ ଉପଭୋଗ କରୁଥିଲେ । ଗୃହକର୍ତ୍ତା ସୀତାନାଥ ଗଦାଧରଙ୍କୁ ବିଶେଷ ରୂପରେ ଭଲ ପାଉଥିଲେ ଏବଂ ବଣିକପଲ୍ଲୀର ଅନ୍ୟାନ୍ୟ ପୁରୁଷମାନେ ମଧ୍ୟ ତାଙ୍କର ସଦ୍‌ଗୁଣ ସହିତ ପରିଚିତ ଥିଲେ । ସେଥିପାଇଁ ସେମାନଙ୍କର ରମଣୀଗଣ ତାଙ୍କ ନିକଟରୁ ଏହି ପ୍ରକାରର ସଙ୍ଗୀତ-ସଂକୀର୍ତ୍ତନାଦି ଶ୍ରବଣ କରନ୍ତି ଜାଣି ମଧ୍ୟ ସେମାନେ ସେଥିରେ ଆପତ୍ତି କରୁ ନ ଥିଲେ ।

ବଣିକ ପଲ୍ଲୀର ଦୁର୍ଗାଦାସ ପାଇନ ନାମକ ଜଣେ ବ୍ୟକ୍ତି କେବଳ ସେହି ବିଷୟରେ ଆପତ୍ତି କରୁଥିଲେ ଏବଂ ଗଦାଧରଙ୍କୁ ସ୍ୱୟଂ ଶ୍ରଦ୍ଧା ଓ ଭକ୍ତି କରୁଥିଲେ ମଧ୍ୟ ଅନ୍ଦର ମହଲର ପର୍ଦ୍ଦାପ୍ରଥା କାହାପାଇଁ ମଧ୍ୟ କଦାପି ଶିଥିଳ ହେବାକୁ ଦେଉ ନ ଥିଲେ । ତାଙ୍କର ଅନ୍ତଃପୁରର କଥା କେହି ଜାଣିବାକୁ ସକ୍ଷମ ନୁହଁନ୍ତି ଏବଂ ତାଙ୍କ ଘରର ରମଣୀଗଣଙ୍କୁ କେହି କେବେ ଅବଲୋକନ କରି ନାହାନ୍ତି ବୋଲି କହି ସେ ସୀତାନାଥପ୍ରମୁଖ ତାଙ୍କ ଆତ୍ମୀୟବର୍ଗଙ୍କ ନିକଟରେ ବେଳେବେଳେ ଅହଙ୍କାର ମଧ୍ୟ କରୁଥିଲେ । ସୀତାନାଥପ୍ରମୁଖ ବ୍ୟକ୍ତିଗଣ ତାଙ୍କପରି କଠୋର ପର୍ଦ୍ଦାପ୍ରଥାର ପକ୍ଷପାତୀ ନ ଥିଲେ ବୋଲି ସେ ସେମାନଙ୍କୁ ହୀନ ଜ୍ଞାନ କରୁଥିଲେ ।

**ଦୁର୍ଗାଦାସ ପାଇନଙ୍କର ଅହଂକାର ଚୂର୍ଣ୍ଣ ହେବା :**

ଦୁର୍ଗାଦାସ ଦିନେ ତାଙ୍କର କୌଣସି ଆତ୍ମୀୟଙ୍କ ନିକଟରେ ଏହିପରି ଅହଙ୍କାର କରୁଥିଲେ । ଗଦାଧର ସେଠାରେ ଉପସ୍ଥିତ ଥିବାରୁ ସେହି ବିଷୟ ଶ୍ରବଣକରି କହିଲେ ''ପର୍ଦ୍ଦାପ୍ରଥା ଦ୍ୱାରା ରମଣୀଗଣଙ୍କୁ କେବେ କ'ଣ ରକ୍ଷା କରି ହୁଏ ? ସତ୍‌ଶିକ୍ଷା ଓ ଦେବଭକ୍ତି-ପ୍ରଭାବରେ ହିଁ ସେମାନେ ସୁରକ୍ଷିତା ହୁଅନ୍ତି; ଇଚ୍ଛା କଲେ ମୁଁ ତୁମର ଅନ୍ଦର ମହଲର ସମସ୍ତଙ୍କୁ ଦେଖିପାରିବି ଓ ସମସ୍ତ କଥା ଜାଣିପାରିବି ।'' ଦୁର୍ଗାଦାସ ଏଥିରେ ଅଧିକତର ଅହଂକୃତ ହୋଇ କହିଲେ, ''କିପରି ଜାଣିପାରିବ, ଜାଣ ତ ଦେଖି ?'' ଗଦାଧର ମଧ୍ୟ ଉତ୍ତରରେ 'ଆଚ୍ଛା

ଦେଖାଯିବ' କହି ସେଦିନ ଚାଲିଆସିଲେ । ପରେ ଦିନେ ଅପରାହ୍ଣରେ କାହାକୁ କିଛି ନ କହି ବାଳକ ଗୋଟିଏ ମୋଟା, ମଇଳା ଶାଢ଼ୀ ଓ ରୁପାର ବଳା ପ୍ରଭୃତି ପିନ୍ଧି ଦରିଦ୍ର ତନ୍ତୁବାୟ-ରମଣୀଙ୍କ ପରି ବେଶଧାରଣପୂର୍ବକ ଗୋଟିଏ ଟାଙ୍ଗୁଡ଼ି କାଖରେ ଧରି ଅବଗୁଣ୍ଠନରେ ମୁଖ ଆବୃତ କରି ସନ୍ଧ୍ୟା ପୂର୍ବରୁ ହାଟ ଆଡୁ ଆସି ଦୁର୍ଗାଦାସଙ୍କର ଭବନ-ସମ୍ମୁଖରେ ଉପସ୍ଥିତ ହେଲା । ଦୁର୍ଗାଦାସ ବନ୍ଧୁବର୍ଗଙ୍କ ସହିତ ସେତେବେଳେ ବୈଠକଖାନାରେ ବସିଥିଲେ । ରମଣୀ ବେଶଧାରୀ ଗଦାଧର ନିଜକୁ ଜଣେ ତନ୍ତୁବାୟ-ରମଣୀ, ଗ୍ରାମାନ୍ତରରୁ ଆସି ହାଟରେ ସୂତା ବିକ୍ରି କରି ଫେରିବାବେଳେ ସଙ୍ଗିନୀଗଣ ଛାଡ଼ି ଚାଲିଯାଇଥିବାରୁ ବିପନ୍ନା ବୋଲି ନିଜର ପରିଚୟ ପ୍ରଦାନ କଲେ ଏବଂ ରାତ୍ରୀ ଯାପନ କରିବାକୁ ଆଶ୍ରୟ ପ୍ରାର୍ଥନା କଲେ । ଦୁର୍ଗାଦାସ ଏଥିରେ ତାଙ୍କର କେଉଁ ଗ୍ରାମରେ ବାସ ଇତ୍ୟାଦି ଗୋଟିଏ-ଦୁଇଟି ପ୍ରଶ୍ନ ପଚାରି ଉତ୍ତର ଶୁଣିବା ପରେ କହିଲେ, ''ହେଉ, ଅନ୍ଦର ମହଲରେ ସ୍ତ୍ରୀ ଲୋକଙ୍କ ପାଖକୁ ଯାଇ ଆଶ୍ରୟ ନିଅ ।'' ଗଦାଧର ତାଙ୍କୁ ପ୍ରଣାମ କରି କୃତଜ୍ଞତା ଜଣାଇ ଅନ୍ଦର ମହଲରେ ପ୍ରବେଶ କଲେ ଏବଂ ସେଠାରେ ରମଣୀମାନଙ୍କୁ ପୂର୍ବପରି ଆତ୍ମ ପରିଚୟ ପ୍ରଦାନ କରି ନାନା ପ୍ରକାର ବାକ୍ୟାଳାପରେ ପରିତୁଷ୍ଟା କଲେ । ତା'ର ଅଳ୍ପ ବୟସ ଦେଖି ଓ ମଧୁର ବାକ୍ୟରେ ପ୍ରସନ୍ନ ହୋଇ ଦୁର୍ଗାଦାସଙ୍କର ଅନ୍ତଃପୁରଚାରିଣୀଗଣ ତାଙ୍କୁ ରହିବାକୁ କହିଲେ ଓ ତାଙ୍କର ବିଶ୍ରାମର ସ୍ଥାନ ନିର୍ଦ୍ଦିଷ୍ଟ କରି ଜଳଯୋଗ ନିମନ୍ତେ ମୁଢ଼ି-ଉଖୁଡ଼ା ପ୍ରଭୃତି ଦେଲେ । ଏହାପରେ ଗଦାଧର ନିର୍ଦ୍ଦିଷ୍ଟ ସ୍ଥାନରେ ବସି ତାହା ଭକ୍ଷଣ କରୁ କରୁ ଅନ୍ଦର ମହଲର ସମସ୍ତ ଘର ଓ ପ୍ରତ୍ୟେକ ରମଣୀଙ୍କୁ ତନ୍ନ ତନ୍ନ କରି ଲକ୍ଷ୍ୟ କରିବା ସହ ସେମାନଙ୍କର ପରସ୍ପର ମଧ୍ୟରେ ହେଉଥିବା ବାକ୍ୟାଳାପ ଶ୍ରବଣ କରିବାକୁ ଲାଗିଲେ । ସେମାନଙ୍କର ବାକ୍ୟାଳାପରେ ମଝିରେ ମଝିରେ ଯୋଗଦାନ ଏବଂ ପ୍ରଶ୍ନ ପଚାରିବାକୁ ମଧ୍ୟ ଭୁଲିଲେ ନାହିଁ । ଏପରି ପ୍ରାୟ ଏକ ପ୍ରହର ରାତ୍ରି ଅତୀତ ହେଲା । ଏଣେ ଏତେ ରାତି ହେଲେ ସୁଦ୍ଧା ଗଦାଧର ଘରକୁ ନ ଫେରିବାରୁ ଚନ୍ଦ୍ରାଦେବୀ ରାମେଶ୍ୱରଙ୍କୁ ତାଙ୍କର ଅନୁସନ୍ଧାନରେ ପଠାଇଲେ ଏବଂ ବଣିକପଲ୍ଲୀକୁ ସେ ପ୍ରାୟ ଯାଇଥାଏ ବୋଲି ଜାଣି ସେଠାରେ ତାଙ୍କୁ ଅନ୍ୱେଷଣ କରିବାକୁ କହିଲେ । ତେଣୁ ରାମେଶ୍ୱର ପ୍ରଥମେ ସୀତାନାଥଙ୍କ ଘରେ ପହଞ୍ଚି ଜାଣିଲେ, ବାଳକ ସେଠାକୁ ଆସି ନାହିଁ । ଏହାପରେ ଦୁର୍ଗାଦାସଙ୍କ ଘର ନିକଟରେ ପହଞ୍ଚି ତାଙ୍କର ନାମ ନେଇ ଉଚ୍ଚସ୍ୱରରେ ଡାକିବାକୁ ଲାଗିଲେ । ତାଙ୍କର ସ୍ୱର ଶୁଣି ପାରି ଗଦାଧର ରାତି ଅଧିକ ହୋଇଥିବା ବୁଝି ଦୁର୍ଗାଦାସଙ୍କର ଅନ୍ଦରମହଲରୁ ''ଭାଇ ଯାଉଛି'' ଉତ୍ତର ଦେଇ ଦ୍ରୁତ ପଦରେ ତାଙ୍କ ନିକଟରେ ଉପସ୍ଥିତ ହେଲେ । ଦୁର୍ଗାଦାସ ସମସ୍ତ କଥା ବୁଝିପାରିଲେ ଏବଂ ତାଙ୍କୁ ଓ ତାଙ୍କର ପରିବାରବର୍ଗଙ୍କୁ ପ୍ରତାରଣା କରିବାକୁ ସେ ସକ୍ଷମ ହୋଇଛି ଭାବି ପ୍ରଥମେ ଅପ୍ରତିଭ ଓ କିଛିଟା ରୁଷ୍ଟ ହେଲେ ମଧ୍ୟ ପରକ୍ଷଣରେ ତାଙ୍କର

ଦରିଦ୍ର ତନ୍ତୁବାୟ-ରମଣୀ ବେଶ ଓ ଚାଲିଚଳନର ଅନୁକରଣ କେତେଦୂର ସ୍ୱାଭାବିକ ହୋଇଛି ଭାବି ହସିବାକୁ ଲାଗିଲେ । ସୀତାନାଥପ୍ରମୁଖ ଦୁର୍ଗାଦାସଙ୍କର ଆତ୍ମୀୟମାନେ ପରଦିନ ଏକଥା ଜାଣିପାରି ଗଦାଧରଙ୍କ ଦ୍ୱାରା ତାଙ୍କର ଅହଂକାର ଚୂର୍ଣ୍ଣ ହୋଇଅଛି ବୋଲି ଆନନ୍ଦ କରିବାକୁ ଲାଗିଲେ । ଏହାପରଠାରୁ ସୀତାନାଥଙ୍କ ଘରେ ଗଦାଧର ପହଞ୍ଚିଲେ ଦୁର୍ଗାଦାସଙ୍କର ଅନ୍ତଃପୁରବାସିନୀଗଣ ମଧ୍ୟ ତାଙ୍କ ନିକଟକୁ ଆସିବାକୁ ଲାଗିଲେ ।

**ବଣିକପଲ୍ଲୀର ରମଣୀମାନଙ୍କର ଗଦାଧରଙ୍କ ପ୍ରତି ଭକ୍ତି-ବିଶ୍ୱାସ :**

ସୀତାନାଥଙ୍କର ପରିବାରବର୍ଗ ଏବଂ ବଣିକପଲ୍ଲୀର ଅନ୍ୟାନ୍ୟ ରମଣୀଗଣ କ୍ରମେ ଗଦାଧରଙ୍କ ପ୍ରତି ବିଶେଷ ଅନୁରକ୍ତ ହୋଇ ଉଠିଥିଲେ । ବାଳକ ତାଙ୍କ ଘରକୁ କିଛି ଦିନ ନ ଆସିଲେ ତାଙ୍କୁ ସେମାନେ ଡକାଇ ପଠାଉଥିଲେ । ସୀତାନାଥଙ୍କ ଘରେ ପାଠ ଓ ସଙ୍ଗୀତାଦି ଗାନ କରିବା ସମୟରେ ଗଦାଧରଙ୍କର କେବେ କେବେ ଭାବାବେଶ ହେଉଥିଲା । ତାହା ଦେଖି ରମଣୀଗଣଙ୍କର ତାଙ୍କ ପ୍ରତି ଭକ୍ତି ବିଶେଷ ବର୍ଦ୍ଧିତ ହୋଇ ଉଠିଥିଲା । ଆମେ ଶୁଣିଅଛୁ ଏପରି ଭାବସମାଧି କାଳରେ ସେମାନଙ୍କ ମଧ୍ୟରେ ଅନେକେ ବାଳକକୁ ଭଗବାନ ଶ୍ରୀଗୌରାଙ୍ଗ ବା ଶ୍ରୀକୃଷ୍ଣଙ୍କର ଜୀବନ୍ତ ବିଗ୍ରହଜ୍ଞାନରେ ପୂଜା କରୁଥିଲେ ଏବଂ ଅଭିନୟ କାଳରେ ତାଙ୍କର ସହାୟତା ହେବ ବୋଲି ସେମାନେ ଗୋଟିଏ ସୁବର୍ଣ୍ଣ ନିର୍ମିତ ମୁରଲୀ ଏବଂ ସ୍ତ୍ରୀ ଓ ପୁରୁଷ-ଚରିତ୍ରର ଅଭିନୟ-ଉପଯୋଗୀ ନାନାପ୍ରକାରର ପରିଚ୍ଛଦ ପ୍ରସ୍ତୁତ କରାଇଥିଲେ ।

ଧର୍ମପ୍ରବଣ, ପୂତସ୍ୱଭାବ, ତୀକ୍ଷ୍ଣବୁଦ୍ଧି ଓ ପ୍ରତ୍ୟୁତ୍ପନ୍ନମତି ଏବଂ ସପ୍ରେମ, ସରଳ ଓ ଅମାୟିକ ବ୍ୟବହାରରେ ଗଦାଧର ପଲ୍ଲୀରମଣୀମାନଙ୍କ ଉପରେ ଏହି ସମୟରେ ଯେପରି ପ୍ରଭାବ ବିସ୍ତାର କରିଥିଲେ, ତାହାର ବିବରଣ ଆମେ ସେମାନଙ୍କ ମଧ୍ୟରୁ କେତେକଙ୍କ ନିକଟରୁ ସମୟ ସମୟରେ ଶୁଣିଥିଲୁ । ୧୮୯୩ ଖ୍ରୀଷ୍ଟାବ୍ଦ ବୈଶାଖର ପ୍ରାରମ୍ଭରେ ସ୍ୱାମୀ ରାମକୃଷ୍ଣାନନ୍ଦପ୍ରମୁଖ ଆମେ କେତେଜଣ କାମାରପୁକୁର ଦର୍ଶନରେ ଗମନ କରି ସୀତାନାଥ ପାଇନଙ୍କର କନ୍ୟା ଶ୍ରୀମତୀ ରୁକ୍ମଣୀଙ୍କ ସହିତ ସାକ୍ଷାତ କରିଥିଲୁ । ତାଙ୍କର ବୟସ ସେତେବେଳେ ଅନ୍ଦାଜ ଷାଠିଏ ବର୍ଷ ହୋଇଥିଲା । ଶ୍ରୀଯୁକ୍ତ ଗଦାଧରଙ୍କ ପୂର୍ବୋକ୍ତ ପ୍ରଭାବ ସମ୍ବନ୍ଧରେ ଆମକୁ ସେ ଯାହା କହିଥିଲେ, ତାହା ଏଠାରେ ଉଲ୍ଲେଖ କରାଗଲେ ପାଠକଗଣଙ୍କର ଏବିଷୟରେ ସ୍ପଷ୍ଟ ଉପଲବ୍ଧି ହେବ । ଶ୍ରୀମତୀ ରୁକ୍ମିଣୀ କହିଥିଲେ—

**ଗଦାଧରଙ୍କ ସମ୍ବନ୍ଧରେ ଶ୍ରୀମତୀ ରୁକ୍ମିଣୀଙ୍କର କଥା :**

‘‘ଆମର ଘର ଏଠାରୁ କିଛି ଦୂର ଉତ୍ତରରେ—ଏଠାରୁ ଦେଖାଯାଉଛି । ଆଜିକାଲି ଆମ ଗୃହର ଭଗ୍ନାବସ୍ଥା, ପରିବାରବର୍ଗ ଏକ ପ୍ରକାର ନାହାନ୍ତି ବୋଲି

କହିବାକୁ ହେବ । କିନ୍ତୁ ମୋର ବୟସ ଯେତେବେଳେ ସତର-ଅଠର ବର୍ଷ ଥିଲା, ସେତେବେଳେ ଘରଟି ଦେଖିଲେ ଲକ୍ଷ୍ମୀମନ୍ତ ଘର ବୋଲି ବୋଧ ହେଉଥିଲା । ମୋର ପିତାଙ୍କ ନାମ ୰ ସୀତାନାଥ ପାଇନ; ଖୁଡୁତା ଓ ଜ୍ୟେଷ୍ଠ ପିତାଙ୍କର ସମସ୍ତଙ୍କୁ ମିଶାଇ ଆମେ ସତର-ଅଠରଜଣ ଭଉଣୀ ଥିଲୁ ଏବଂ ବୟସରେ ପରସ୍ପର ଦୁଇ-ପାଞ୍ଚବର୍ଷ ଛୋଟ ବଡ଼ ହେଲେ ମଧ୍ୟ ସେସମୟରେ ସମସ୍ତେ ଯୌବନରେ ପଦାର୍ପଣ କରିଥିଲୁ । ଗଦାଧର ବାଲ୍ୟକାଳରୁ ଆମ ସହିତ ଏକାଠି ଖେଳକୁଦ କରୁଥିଲେ । ସେଥିପାଇଁ ଆମମାନଙ୍କ ସହିତ ତାଙ୍କର ଖୁବ୍ ସଦ୍‌ଭାବ ଥିଲା । ଆମେ ଯୌବନରେ ପଦାର୍ପଣ କରିଥିଲେ ମଧ୍ୟ ସେ ଆମ ଘରକୁ ଆସୁଥିଲେ ଏବଂ ସେହିପରି ସେ ବଡ଼ହେବା ପରେ ମଧ୍ୟ ଆମଘରର ଅନ୍ଦର-ମହଲକୁ ଯିବା ଆସିବା କରୁଥିଲେ । ବାପା ତାଙ୍କୁ ଅତ୍ୟନ୍ତ ଭଲ ପାଉଥିଲେ — ନିଜ ଇଷ୍ଟପରି ଦେଖୁଥିଲେ ଓ ଭକ୍ତିଶ୍ରଦ୍ଧା କରୁଥିଲେ । ପଡ଼ାରେ କେହି କେହି ତାଙ୍କୁ କହୁଥିଲେ, 'ତୁମ ଘରେ ଏତେଜଣ ଯୁବତୀ କନ୍ୟା ଅଛନ୍ତି, ଗଦାଧର ମଧ୍ୟ ଏବେ ବଡ଼ ହୋଇଛି, ତାକୁ ଏବେ ମଧ୍ୟ ଘର ଭିତରକୁ ଯିବାକୁ ଦେଉଛ କାହିଁକି ?' ବାପା ସେଥିରେ କହୁଥିଲେ, 'ତୁମେମାନେ ନିଶ୍ଚିନ୍ତ ରୁହ, ମୁଁ ଗଦାଧରକୁ ଖୁବ୍ ଚିହ୍ନିଛି ।' ସେମାନେ ସାହସ କରି ଆଉ କିଛି କହିପାରୁ ନ ଥିଲେ । ଗଦାଧର ଗୃହ ଭିତରେ ଆସି ଆମକୁ କେତେ ପୁରାଣକଥା କହୁଥିଲେ, କେତେ ରଙ୍ଗ ପରିହାସ କରୁଥିଲେ । ଆମେ ପ୍ରାୟ ପ୍ରତିଦିନ ଏସମସ୍ତ ଶୁଣୁ ଶୁଣୁ ଆନନ୍ଦରେ ଗୃହକର୍ମ କରୁଥିଲୁ । ସେ ଯେତେବେଳେ ଆମ ନିକଟରେ ଥାଆନ୍ତି, ସେତେବେଳେ କେତେ ଆନନ୍ଦରେ ଯେ ସମୟ କଟିଯାଉଥିଲା ତାହା ମୁହଁରେ ଆଉ କଅଣ କହିବି ! ଯେଉଁ ଦିନ ସେ ନ ଆସନ୍ତି, ସେ ଦିନ ତାଙ୍କର ଦେହ ଅସୁସ୍ଥ ହୋଇଛି ଭାବି ଆମମାନଙ୍କର ମନ ଛଟପଟ ହେଉଥିଲା । ସେଦିନ ଯେତେକ୍ଷଣ ଆମମାନଙ୍କ ମଧ୍ୟରୁ କେହି ପାଣି ଆଣିବା ବା ଅନ୍ୟ କୌଣସି କାମର ବାହାନାରେ ବ୍ରାହ୍ମଣୀ ମା'ଙ୍କ (ଚନ୍ଦ୍ରାଦେବୀଙ୍କ) ସହିତ ଦେଖା କରି ତାଙ୍କ ସମ୍ବାଦ ନେଇ ନ ଆସୁଥିଲେ ସେତେକ୍ଷଣ ଆମର କାହାରି ପ୍ରାଣରେ ଶାନ୍ତି ରହୁ ନ ଥିଲା । ତାଙ୍କର ପ୍ରତ୍ୟେକ କଥା ଆମକୁ ଅମୃତ ପରି ବୋଧ ହେଉଥିଲା । ସେଥିପାଇଁ ସେ ଯେଉଁଦିନ ଆମ ଘରକୁ ନ ଆସନ୍ତି, ସେଦିନ ତାଙ୍କ କଥା କହି ଆମେ ଦିନ କଟାଉଥିଲୁ ।''

**ପଲ୍ଲୀର ପୁରୁଷମାନଙ୍କର ଗଦାଧରଙ୍କ ପ୍ରତି ଅନୁରକ୍ତି :**

କେବଳ ରମଣୀଗଣଙ୍କ ସହିତ ଏପରି ମିଳିତ ହୋଇ ଗଦାଧର କ୍ଷାନ୍ତ ନ ଥିଲେ । କିନ୍ତୁ ତାଙ୍କର ସର୍ବତୋମୁଖୀ ଉଦ୍ଭାବନୀ ଶକ୍ତି ଏବଂ ସମସ୍ତଙ୍କ ସହିତ ପ୍ରେମପୂର୍ଣ୍ଣ ଆଚରଣ ତାଙ୍କୁ ଗ୍ରାମର ଆବାଳ-ବୃଦ୍ଧ-ବନିତା ସମସ୍ତଙ୍କ ସହିତ ମିଳିତ କରାଇଥିଲା । ପ୍ରତିଦିନ ସନ୍ଧ୍ୟା ସମୟରେ ଗ୍ରାମର ବୃଦ୍ଧ ଓ ଯୁବକବୃନ୍ଦ ଯେଉଁ ସବୁ

ସ୍ଥାନରେ ମିଳିତ ହୋଇ ଭାଗବତ ଆଦି ପୁରାଣପାଠ ବା ସଙ୍ଗୀତ-ସଂକୀର୍ତ୍ତନ ଆଦିରେ ଆନନ୍ଦ ଉପଭୋଗ କରୁଥିଲେ, ସେସମସ୍ତ ସ୍ଥାନରେ ହିଁ ତାହାର ଯାତାୟାତ ଥିଲା । ବାଳକ ଏସମସ୍ତ ସ୍ଥାନର ଯେଉଁଠାରେ ଯେଉଁଦିନ ଉପସ୍ଥିତ ରହୁଥିଲା, ସେଠାରେ ସେଦିନ ଆନନ୍ଦର ବନ୍ୟା ପ୍ରବାହିତ ହେଉଥିଲା । କାରଣ, ତାପରି ପାଠ ଓ ଧର୍ମତତ୍ତ୍ୱଗୁଡ଼ିକର ଭକ୍ତିପୂର୍ଣ୍ଣ ବ୍ୟାଖ୍ୟା ଆଉ କେହି କରିବାକୁ ସକ୍ଷମ ନ ଥିଲେ । ସଂକୀର୍ତ୍ତନ ସମୟରେ ତା'ପରି ଭାବୋନ୍ମତ୍ତତା, ନୂଆ ନୂଆ ଭାବପୂର୍ଣ୍ଣ ପାଳିଧରିବା ଶକ୍ତି ଏବଂ ମଧୁର କଣ୍ଠ ଓ ରମଣୀୟ ନୃତ୍ୟ ଆଉ କାହାଠାରେ ନ ଥିଲା । ଆହୁରି ମଧ୍ୟ ରଙ୍ଗ ପରିହାସଛଳରେ ତା'ପରି ଢଙ୍ଗ କରିବା, ନରନାରୀଙ୍କର ସମସ୍ତ ପ୍ରକାର ଆଚରଣ ଅନୁକରଣ କରିବା ଏବଂ ନୂଆ ନୂଆ ଗଳ୍ପ ଓ ଗାନ ଯଥାସ୍ଥଳରେ ଅପୂର୍ବଭାବରେ ଯୋଡ଼ି ଦେଇ ସମସ୍ତଙ୍କର ମନୋରଞ୍ଜନ କରିବାକୁ ଅନ୍ୟ କେହି ସମର୍ଥ ହେଉ ନ ଥିଲେ । ସୁତରାଂ ଯୁବକ ଓ ବୃଦ୍ଧମାନେ ସମସ୍ତେ ହିଁ ତାଙ୍କ ପ୍ରତି ବିଶେଷ ଅନୁରକ୍ତ ହୋଇଥିଲେ ଏବଂ ପ୍ରତିଦିନ ସନ୍ଧ୍ୟା ସମୟରେ ତାଙ୍କର ଆଗମନର ପ୍ରତୀକ୍ଷା କରୁଥିଲେ । ବାଳକ ମଧ୍ୟ ସେଥିପାଇଁ କେଉଁଦିନ ଗୋଟିଏ ସ୍ଥାନରେ, କେଉଁଦିନ ଅନ୍ୟ ସ୍ଥାନରେ ସେମାନଙ୍କ ସହିତ ସମଭାବରେ ମିଳିତ ହୋଇ ସେମାନଙ୍କର ଆନନ୍ଦବର୍ଦ୍ଧନ କରୁଥିଲା ।

ଆହୁରି ମଧ୍ୟ ଏହି ବୟସରେ ବାଳକ ପରିଣତ ବୟସ୍କଙ୍କ ସଦୃଶ ବୁଦ୍ଧି ଧାରଣ କରିଥିବାରୁ ସେମାନଙ୍କ ମଧ୍ୟରୁ ଅନେକ ନିଜ ନିଜ ସାଂସାରିକ ସମସ୍ୟାଗୁଡ଼ିକର ସମାଧାନ ନିମିତ୍ତ ତାଙ୍କର ପରାମର୍ଶ ଗ୍ରହଣ କରୁଥିଲେ । ଧାର୍ମିକ ବ୍ୟକ୍ତିଗଣ ତାର ପୂତ ସ୍ୱଭାବରେ ଆକୃଷ୍ଟ ହୋଇ ଏବଂ ଭଗବତ୍‌ନାମ କୀର୍ତ୍ତନରେ ତାଙ୍କର ଭାବସମାଧି ହେଉଥିବା ଦେଖି ତାଙ୍କର ପରାମର୍ଶ ଗ୍ରହଣପୂର୍ବକ ନିଜର ଗନ୍ତବ୍ୟ ପଥରେ ଅଗ୍ରସର ହେଉଥିଲେ ।[୧] କେବଳ ଭଣ୍ଡ ଓ ଧୂର୍ତ୍ତମାନେ ତାଙ୍କୁ ପସନ୍ଦ କରୁ ନ ଥିଲେ । କାରଣ, ଗଦାଧରଙ୍କ ତୀକ୍ଷ୍ଣ ବୁଦ୍ଧି ସେମାନଙ୍କ ଉପରର ମୋହନୀୟ ଆବରଣ ଭେଦକରି ଗୋପନୀୟ ଉଦ୍ଦେଶ୍ୟଗୁଡ଼ିକ ଧରି ନେଉଥିଲା ଏବଂ ସତ୍ୟନିଷ୍ଠ ସ୍ପଷ୍ଟବାଦୀ ବାଳକ ଅନେକ ସମୟରେ ଏସବୁ ସମସ୍ତଙ୍କ ଆଗରେ କହି ସେମାନଙ୍କୁ ଅପଦସ୍ଥ କରୁଥିଲେ । କେବଳ ସେତିକି ନୁହେଁ, ରଙ୍ଗପ୍ରିୟ ଗଦାଧର ଅନେକ ସମୟରେ ଅନ୍ୟମାନଙ୍କ ନିକଟରେ ସେମାନଙ୍କର କପଟାଚରଣର ଅନୁକରଣ କରୁଥିଲେ । ଏଥିପାଇଁ ମନେ ମନେ କ୍ରୋଧିତ ହେଲେ ମଧ୍ୟ ସମସ୍ତଙ୍କର ପ୍ରିୟ ତଥା ନିର୍ଭୀକ ବାଳକର ସେମାନେ କିଛି କରିପାରୁ ନ ଥିଲେ । ଫଳରେ ଅନେକ ସମୟରେ ଶରଣାଗତ ହୋଇ ସେମାନଙ୍କୁ ଗଦାଧର ନିକଟରୁ ଅବ୍ୟାହତି ଲାଭ

---

୧. ଶୁଣାଯାଏ, ଶ୍ରୀନିବାସ ଶଙ୍ଖାରୀପ୍ରମୁଖ କେତେଜଣ ଯୁବକ ଶ୍ରୀଯୁକ୍ତ ଗଦାଧରଙ୍କୁ ଏବେଠାରୁ ଦେବତା ଜ୍ଞାନରେ ଭକ୍ତି ଓ ପୂଜା କରୁଥିଲେ ।

କରିବାକୁ ହେଉଥିଲା । କାରଣ ଶରଣାଗତ ଉପରେ ବାଳକର ଅଶେଷ କରୁଣା ସର୍ବଦା ପରିଲକ୍ଷିତ ହେଉଥିଲା ।

## ଗଦାଧରଙ୍କ ଅର୍ଥକରୀ ବିଦ୍ୟାର୍ଜନରେ ଉଦାସୀନତାର କାରଣ :

ଆମେ ଏହାପୂର୍ବରୁ କହିଅଛୁ, ଗଦାଧର ଏବେ ମଧ୍ୟ ପ୍ରତିଦିନ କୌଣସି ନା କୌଣସି ସମୟରେ ପାଠଶାଳାରେ ଉପସ୍ଥିତ ହେଉଥିଲେ ଏବଂ ସମବୟସ୍କମାନଙ୍କ ପ୍ରତି ପ୍ରେମ ହିଁ ତାଙ୍କର ଏପରି କରିବାର କାରଣ ଥିଲା । ବାସ୍ତବିକ୍ ଚତୁର୍ଦ୍ଦଶ ବର୍ଷରେ ପଦାର୍ପଣ କରିବା ପରଠାରୁ ବାଳକର ଭକ୍ତି ଓ ଭାବୁକତା ଏତେ ମାତ୍ରାରେ ପ୍ରବୃଦ୍ଧ ହୋଇ ଉଠିଥିଲା ଯେ, ପାଠଶାଳାର ଅର୍ଥକରୀ ଶିକ୍ଷା ତାଙ୍କ ପକ୍ଷରେ ସମ୍ପୂର୍ଣ୍ଣ ନିଷ୍ପ୍ରୟୋଜନ ବୋଲି ତା'ର ଉପଲବ୍ଧି ହୋଇଥିଲା । ସେ ଏବେଠାରୁ ଅନୁଭବ କରୁଥିଲା, ତା'ର ଜୀବନ ଅନ୍ୟ କାର୍ଯ୍ୟ ନିମନ୍ତେ ସୃଷ୍ଟ ହୋଇଅଛି ଏବଂ ଧର୍ମସାକ୍ଷାତ୍କାର କରିବାକୁ ତାକୁ ନିଜର ସର୍ବଶକ୍ତି ନିୟୋଜିତ କରିବାକୁ ହେବ । ଏବିଷୟର ଅସ୍ପଷ୍ଟ ଛାୟା ତା'ର ମନରେ ଅନେକ ସମୟରେ ଉଦିତ ହେଉଥିଲା, କିନ୍ତୁ ଏହା ଏବେ ମଧ୍ୟ ପୂର୍ଣ୍ଣ ଆକାର ନ ନେଇଥିବାରୁ ସେ ଏହାକୁ ସବୁ ସମୟରେ ବୁଝିବାକୁ ସକ୍ଷମ ହେଉ ନ ଥିଲା । କିନ୍ତୁ ନିଜ ଜୀବନ ଭବିଷ୍ୟତରେ କିପରି ଭାବରେ ପରିଚାଳିତ କରିବ, ଏକଥା ତା'ର ମନରେ ଯେତେବେଳେ ଉଦିତ ହେଉଥିଲା, ତା'ର ବିଚାରଶୀଳ ବୁଦ୍ଧି ତାକୁ ତତ୍କ୍ଷଣାତ୍ ଈଶ୍ୱରଙ୍କ ପ୍ରତି ଏକାନ୍ତ ନିର୍ଭରତା ଦିଗରେ ଇଙ୍ଗିତ କରି ତା'ର କଳ୍ପନାପଟରେ ଗୈରିକ ବସନ, ପବିତ୍ର ଅଗ୍ନି, ଭିକ୍ଷାଲବ୍ଧ ଭୋଜନ ଏବଂ ନିଃସଙ୍ଗ ବିଚରଣର ଛବି ଉଜ୍ଜ୍ୱଳ ବର୍ଣ୍ଣରେ ଅଙ୍କିତ କରୁଥିଲା । ତା'ର ପ୍ରେମପୂର୍ଣ୍ଣ ହୃଦୟ କିନ୍ତୁ ତାକୁ ପରମୁହୂର୍ତ୍ତରେ ମାତା ଓ ଭ୍ରାତାମାନଙ୍କର ସାଂସାରିକ ଅବସ୍ଥା କଥା ସ୍ମରଣ କରାଇ ତାହାକୁ ସେହି ପଥରେ ଗମନର ଅଭିଳାଷ ପରିତ୍ୟାଗ କରିବାକୁ ଏବଂ ନିଜର ପିତାଙ୍କ ସଦୃଶ ଈଶ୍ୱର ନିର୍ଭରଶୀଳ ହୋଇ ସଂସାରରେ ରହି ସେମାନଙ୍କୁ ଯଥାସାଧ୍ୟ ସାହାଯ୍ୟ କରିବାକୁ ପ୍ରୋତ୍ସାହିତ କରୁଥିଲା । ଏହିପରି ବୁଦ୍ଧି ଓ ହୃଦୟ ତାକୁ ଭିନ୍ନ ପଥ ନିର୍ଦ୍ଦେଶ କରୁଥିବାରୁ ସେ 'ଯାହା ରଘୁବୀର କରିବେ' ଭାବି ଈଶ୍ୱରଙ୍କର ଆଦେଶ ଲାଭ ନିମିତ୍ତ ପ୍ରତୀକ୍ଷା କରି ରହୁଥିଲା । କାରଣ, ବାଳକର ପ୍ରେମପୂର୍ଣ୍ଣ ହୃଦୟ ଏକାନ୍ତ ଆପଣାର ବୋଲି ତାଙ୍କୁ ହିଁ ଏହା ପୂର୍ବରୁ ଅବଲମ୍ବନ କରିଥିଲା । ସୁତରାଂ ଯଥାସମୟରେ ସେ ହିଁ ଏହି ପ୍ରଶ୍ନର ସମାଧାନ କରିଦେବେ ଭାବି ସେ ଏବେ ଅନେକ ସମୟରେ ନିଜକୁ ଶାନ୍ତ କରୁଥିଲା । ଏପରି ବୁଦ୍ଧି ଓ ହୃଦୟର ଦ୍ୱନ୍ଦ୍ୱସ୍ଥଳରେ ତା'ର ବିଶୁଦ୍ଧ ହୃଦୟ ହିଁ ପରିଶେଷରେ ଜୟଲାଭ କରୁଥିଲା ଏବଂ ହୃଦୟର ପ୍ରେରଣାରେ ହିଁ ସେ ଏବେ ସମସ୍ତ କର୍ମ ସମ୍ପାଦନ କରୁଥିଲା ।

## ଗଦାଧରଙ୍କ ହୃଦୟର ପ୍ରେରଣା :

ଅସାଧାରଣ ସହାନୁଭୂତିସମ୍ପନ୍ନ ଗଦାଧରଙ୍କ ବିଶୁଦ୍ଧ ହୃଦୟ ତାଙ୍କୁ ଏବେଠାରୁ ଅନ୍ୟ ଏକ ବିଷୟରେ ମଧ୍ୟ ସମୟ ସମୟରେ ଉପଲବ୍ଧି କରାଉଥିଲା । ପୁରାଣପାଠ ଓ ସଂକୀର୍ତ୍ତନାଦି ସହାୟରେ ତାହା ତାଙ୍କୁ ଗ୍ରାମର ନରନାରୀମାନଙ୍କ ସହିତ ଏହାପୂର୍ବରୁ ଘନିଷ୍ଠଭାବରେ ସମ୍ବନ୍ଧ କରି ସେମାନଙ୍କୁ ଏତେ ଆପଣାର ଜ୍ଞାନ କରିବାକୁ ଶିଖାଇଥିଲା ଯେ, ସେମାନଙ୍କର ଜୀବନର ସୁଖ–ଦୁଃଖାଦି ଏବେଠାରୁ ସେ ସର୍ବତୋଭାବରେ ନିଜର ବୋଲି ଅନୁଭବ କରୁଥିଲେ । ସୁତରାଂ ତାଙ୍କର ବିଚାରଶୀଳ ବୁଦ୍ଧି ତାଙ୍କୁ ଏସମୟରେ ଯେତେବେଳେ ବି ସଂସାର–ପରିତ୍ୟାଗ ପାଇଁ ଇଙ୍ଗିତ କରୁଥିଲା, ତାହାର ହୃଦୟ ତାଙ୍କୁ ସେତେବେଳେ ସେହି ସମସ୍ତ ନରନାରୀଙ୍କର ସରଳ ପ୍ରେମପୂର୍ଣ୍ଣ ଆଚରଣର ଏବଂ ତା ପ୍ରତି ଅସୀମ ବିଶ୍ୱାସର କଥା ସ୍ମରଣ କରାଇ ତାଙ୍କୁ ଏପରି ଭାବରେ ନିଜର ଜୀବନ ନିୟୋଜିତ କରିବାକୁ କହୁଥିଲା, ଯାହାଦେଖି ସେମାନେ ସମସ୍ତେ ନିଜ ନିଜ ଜୀବନ ପରିଚାଳିତ କରିବାର ଉଚ୍ଚାଦର୍ଶଲାଭରେ କୃତାର୍ଥ ହୋଇପାରିବେ ଏବଂ ତାହା ସହିତ ସେମାନଙ୍କର ବର୍ତ୍ତମାନ ସମ୍ବନ୍ଧ ଯେପରି ସୁଗଭୀର ପାରମାର୍ଥିକ ସମ୍ବନ୍ଧରେ ପରିଣତ ହୋଇ ଚିରକାଳ ନିମିତ୍ତ ଅବିନଶ୍ୱର ହୋଇପାରେ । ବାଳକର ସ୍ୱାର୍ଥଗନ୍ଧଶୂନ୍ୟ ହୃଦୟ ତାହାକୁ ସେହି ବିଷୟର ସ୍ପଷ୍ଟ ଆଭାସ ପ୍ରଦାନପୂର୍ବକ କହୁଥିଲା, ''ନିଜ ପାଇଁ ସଂସାର ତ୍ୟାଗ କରିବା—ତାହା ତ' ସ୍ୱାର୍ଥପରତା; ତେଣୁ ଯାହା ଦ୍ୱାରା ଏମାନେ ସମସ୍ତେ ଉପକୃତ ହେବେ, ଏପରି କିଛି କର ।''

## ଗଦାଧରଙ୍କ ପାଠଶାଳା ପରିତ୍ୟାଗ ଓ ସମବୟସ୍କଙ୍କ ସହ ଅଭିନୟ :

ପାଠଶାଳା ଏବଂ ପରେ ଟୋଲରେ ବିଦ୍ୟାଭାସ ସମ୍ବନ୍ଧରେ କିନ୍ତୁ ଗଦାଧରଙ୍କ ହୃଦୟ ଓ ବୁଦ୍ଧି ଏବେ ମୁକ୍ତକଣ୍ଠରେ ଗୋଟିଏ କଥା ହିଁ କହୁଥିଲା, ମାତ୍ର ସହସା ପାଠଶାଳା ପରିତ୍ୟାଗ କଲେ ସମବୟସ୍କଗଣ ତାହାର ସଙ୍ଗଲାଭରୁ ଅନେକାଂଶରେ ବଞ୍ଚିତ ହେବେ ବୋଲି ସେ ଏପରି କାର୍ଯ୍ୟ କେବେ କରିପାରୁ ନ ଥିଲେ । କାରଣ, ଗୟାବିଷ୍ଣୁପ୍ରମୁଖ ସମବୟସ୍କ ବାଳକମାନେ ସମସ୍ତେ ତାଙ୍କୁ ପ୍ରାଣର ସହିତ ଭଲ ପାଉଥିଲେ ଏବଂ ତାଙ୍କର ଅସାଧାରଣ ବୁଦ୍ଧି ଓ ଅସୀମ ସାହସ ତାଙ୍କୁ ଏଠାରେ ମଧ୍ୟ ଦଳପତିପଦରେ ପ୍ରତିଷ୍ଠିତ କରାଇଥିଲା । ଏହି ସମୟର ଗୋଟିଏ ଘଟଣାରେ ବାଳକ ଅର୍ଥକରୀ ବିଦ୍ୟାଭ୍ୟାସ ପରିତ୍ୟାଗ କରିବାର ସୁଯୋଗ ଲାଭ କରିଥିଲା । ଗଦାଧରଙ୍କ ଅଭିନୟ କରିବାର ଶକ୍ତି ଦେଖି ତାଙ୍କର କେତେଜଣ ସମବୟସ୍କ ସାଥୀ ଏବେ ଗୋଟିଏ ଯାତ୍ରା ଦଳ ଗଢ଼ିବାକୁ ଦିନେ ପ୍ରସ୍ତାବ ଉଠାଇଲେ ଏବଂ ସେମାନଙ୍କୁ ସେହି ବିଷୟରେ ଶିକ୍ଷାଦାନ କରିବାର ଦାୟିତ୍ୱ ନେବାକୁ ଗଦାଧରଙ୍କୁ ଅନୁରୋଧ

କରିବାକୁ ଲାଗିଲେ । ଗଦାଧର ମଧ୍ୟ ସେହି ବିଷୟରେ ସମ୍ମତ ହେଲେ; କିନ୍ତୁ ଅଭିଭାବକମାନେ ଜାଣି ପାରିଲେ ଏଥିରେ ବାଧା ଉପସ୍ଥିତ ହେବାର ସମ୍ଭାବନା ଅଛି ଜାଣି କେଉଁଠାରେ ସେମାନେ ସେହି ବିଷୟରେ ଶିକ୍ଷାଲାଭ କରିବେ, ତଦ୍‌ବିଷୟରେ ବାଳକମାନେ ଚିନ୍ତିତ ହୋଇ ପଡ଼ିଲେ । ଗଦାଧରଙ୍କ ଉଦ୍ଭାବନୀ ଶକ୍ତି ସେତେବେଳେ ସେମାନଙ୍କୁ ମାଣିକରାଜାଙ୍କର ଆମ୍ରକାନନ ଦେଖାଇ ଦେଲା ଏବଂ ସ୍ଥିର ହେଲା ଯେ ପାଠଶାଳାରୁ ପଳାୟନ କରି ସେମାନେ ପ୍ରତିଦିନ ସମସ୍ତେ ନିର୍ଦ୍ଦିଷ୍ଟ ସମୟରେ ସେହି ସ୍ଥାନରେ ଉପସ୍ଥିତ ହେବେ ।

ସଂକଳ୍ପ ଶୀଘ୍ର କାର୍ଯ୍ୟରେ ପରିଣତ ହେଲା ଏବଂ ଗଦାଧରଙ୍କ ଶିକ୍ଷାରେ ବାଳକଗଣ ସ୍ୱଳ୍ପ ସମୟ ମଧ୍ୟରେ ନିଜ ନିଜ ଭୂମିକା ତଥା ସଙ୍ଗୀତଗୁଡ଼ିକ କଣ୍ଠସ୍ଥ କରି ଶ୍ରୀରାମଚନ୍ଦ୍ର ଓ ଶ୍ରୀକୃଷ୍ଣ-ବିଷୟକ ଯାତ୍ରାଭିନୟରେ ଆମ୍ରକାନନ ମୁଖରିତ କରି ତୋଳିଲେ । ଅବଶ୍ୟ ଏସମସ୍ତ ଯାତ୍ରାଭିନୟର ସକଳ ଅଙ୍ଗ ଗଦାଧରଙ୍କୁ ନିଜ ଉଦ୍‌ଭାବନୀ ଶକ୍ତିବଳରେ ସମ୍ପୂର୍ଣ୍ଣ କରିନେବାକୁ ପଡୁଥିଲା ଏବଂ ସେଗୁଡ଼ିକର ପ୍ରଧାନ ଚରିତ୍ରର ଭୂମିକା ତାଙ୍କୁ ହିଁ ଗ୍ରହଣ କରିବାକୁ ହେଉଥିଲା । ଯାହା ହେଉ, ଯାତ୍ରାଦଳ କିଛି ମନ୍ଦ ହୋଇ ନାହିଁ ଦେଖି ବାଳକମାନେ ପରମ ଆନନ୍ଦ ଲାଭ କରିଥିଲେ । ଶୁଣାଯାଏ, ଆମ୍ରକାନନରେ ଅଭିନୟ ସମୟରେ ମଧ୍ୟ ଗଦାଧରଙ୍କର ସମୟ ସମୟରେ ଭାବ ସମାଧି ଉପସ୍ଥିତ ହେଉଥିଲା ।

### ଗଦାଧରଙ୍କ ଚିତ୍ରବିଦ୍ୟା ଓ ମୂର୍ତ୍ତିଗଠନରେ ଉନ୍ନତି :

ସଂକୀର୍ତ୍ତନ ଓ ଯାତ୍ରାଭିନୟରେ ଗଦାଧରଙ୍କ ଅନେକ ସମୟ ଅତିବାହିତ ହେଉଥିବାରୁ ତାଙ୍କର ଚିତ୍ରବିଦ୍ୟା ଏବେ ଆଉ ଅଧିକ ଅଗ୍ରସର ହୋଇ ପାରି ନ ଥିଲା । ତେବେ ଶୁଣାଯାଏ, ଗୌରହାଟି ଗ୍ରାମରେ ନିଜର କନିଷ୍ଠା ଭଗିନୀ ସର୍ବମଙ୍ଗଳାକୁ ବାଳକ ଏହି ସମୟରେ ଦିନେ ଦେଖିବାକୁ ଯାଇଥିଲା ଏବଂ ଘରେ ପ୍ରବେଶ କରି ଦେଖିବାକୁ ପାଇଥିଲେ, ତାହାର ଭଗିନୀ ପ୍ରସନ୍ନମୁଖରେ ତା'ର ସ୍ୱାମୀଙ୍କର ସେବା କରୁଅଛି । ଏହା ଦେଖି ସେ ଅଳ୍ପଦିନ ପରେ ତା'ର ଭଉଣୀ ସ୍ୱାମୀଙ୍କର ସେବା କରୁଥିବା ଭାବର ଗୋଟିଏ ଚିତ୍ର ଅଙ୍କନ କରିଥିଲା । ଆମେ ଶୁଣିଅଛୁ ପରିବାରର ସମସ୍ତେ ଉକ୍ତ ଚିତ୍ରିତ ପ୍ରତିମୂର୍ତ୍ତିଦ୍ୱୟ ସହିତ ଶ୍ରୀମତୀ ସର୍ବମଙ୍ଗଳା ଓ ତା' ସ୍ୱାମୀଙ୍କର ନିକଟ-ସାଦୃଶ୍ୟ ଦେଖି ବିସ୍ମିତ ହୋଇଥିଲେ ।

ଦେବଦେବୀଙ୍କର ମୂର୍ତ୍ତିଗଠନ କରିବାରେ ଗଦାଧର ବିଶେଷ ପାରଦର୍ଶୀ ହୋଇ ଉଠିଥିଲେ । କାରଣ, ତାଙ୍କର ଧର୍ମପ୍ରବଣ ପ୍ରକୃତି ତାଙ୍କୁ ସେହି ସମସ୍ତ

ମୂର୍ତ୍ତିଗଠନପୂର୍ବକ ସମବୟସ୍କମାନଙ୍କ ଗହଣରେ ଯଥାବିଧି ପୂଜା କରିବାକୁ ଅନେକ ସମୟରେ ପ୍ରଯୁକ୍ତ କରୁଥିଲା ।

ସେ ଯାହା ହେଉ, ପାଠଶାଳା ପରିତ୍ୟାଗ କରି ଗଦାଧର ନିଜର ହୃଦୟର ପ୍ରେରଣାରେ ପୂର୍ବୋକ୍ତ କାର୍ଯ୍ୟଗୁଡ଼ିକରେ ନିଯୁକ୍ତ ରହି ଏବଂ ଚନ୍ଦ୍ରାଦେବୀଙ୍କୁ ଗୃହକର୍ମରେ ସାହାଯ୍ୟ କରି କାଳ କାଟିବାରେ ଲାଗିଲେ । ମାତୃହୀନ ଶିଶୁ ଅକ୍ଷୟ ମଧ୍ୟ ତାଙ୍କର ହୃଦୟ ଅଧିକାର କରି ତାଙ୍କୁ ଅନେକ ସମୟ ନିଯୁକ୍ତ ରଖୁଥିଲା । କାରଣ ଚନ୍ଦ୍ରାଦେବୀଙ୍କୁ ଗୃହକର୍ମରେ ସମୟ ଦେବା ପାଇଁ ଶିଶୁକୁ କୋଳରେ ଧାରଣ କରିବା ଏବଂ ନାନା ପ୍ରକାରର ଖେଳରେ ଭୁଲାଇ ରଖିବା ଏବେ ତାଙ୍କର ନିତ୍ୟକର୍ମ ମଧ୍ୟରେ ଅନ୍ୟତମ ହୋଇଉଠିଥିଲା । ଏହି ପ୍ରକାରରେ ତିନିବର୍ଷରୁ ଅଧିକ କାଳ ଅତୀତ ହୋଇ ଗଦାଧର କ୍ରମେ ସପ୍ତଦଶ ବର୍ଷରେ ପଦାର୍ପଣ କରିଥିଲେ । ଏହି ତିନି ବର୍ଷ ପରିଶ୍ରମ ଫଳରେ ଶ୍ରୀଯୁକ୍ତ ରାମକୁମାରଙ୍କ କଲିକତାର ଚତୁଷ୍ପାଠୀରେ ଛାତ୍ରସଂଖ୍ୟା ବୃଦ୍ଧି ପାଇ ତାଙ୍କର ଉପାର୍ଜ୍ଜନ ପୂର୍ବାପେକ୍ଷା ଭଲ ହେଉଥିଲା ।

### ଗଦାଧରଙ୍କ ସମ୍ବନ୍ଧରେ ରାମକୁମାରଙ୍କର ଚିନ୍ତା ଓ ତାଙ୍କୁ କଲିକତା ଆନୟନ :

କଲିକତାରେ ଅଧିକାଂଶ ସମୟ ଅତିବାହିତ କଲେ ମଧ୍ୟ ଶ୍ରୀଯୁକ୍ତ ରାମକୁମାର ବର୍ଷଶେଷରେ ଥରେ କିଛିଦିନ ପାଇଁ କାମାରପୁକୁରକୁ ଆଗମନପୂର୍ବକ ଜନନୀ ଓ ଭ୍ରାତୃବୃନ୍ଦଙ୍କର ତତ୍ତ୍ୱାବଧାନ କରୁଥିଲେ । ସେହି ସମୟରେ ଗଦାଧରଙ୍କ ବିଦ୍ୟାର୍ଜନରେ ଉଦାସୀନତା ଲକ୍ଷ୍ୟ କରି ସେ ଏବେ ଚିନ୍ତିତ ହୋଇଥିଲେ । ସେ କିପରି ଭାବରେ ବର୍ତ୍ତମାନ ସମୟ ବିତାଉଛି, ରାମକୁମାର ସେହି ବିଷୟରେ ସବିଶେଷ ଅନୁସନ୍ଧାନ କଲେ ଏବଂ ମାତା ଓ ମଧ୍ୟମଭ୍ରାତା ରାମେଶ୍ୱରଙ୍କ ସହିତ ପରାମର୍ଶ କରି ତାଙ୍କୁ କଲିକତାରେ ନିଜ ପାଖରେ ରଖିବା ଠିକ୍ ହେବ ବୋଲି ସ୍ଥିର କଲେ । ଛାତ୍ରସଂଖ୍ୟା ବୃଦ୍ଧି ସହିତ ସେଠାରେ ଟୋଲର ଗୃହକର୍ମ ମଧ୍ୟ ଅନେକ ବଢ଼ି ଯାଇଥିଲା; ତେଣୁ ଏଥିରେ ତାଙ୍କୁ ସାହାଯ୍ୟ କରିବା ପାଇଁ ଜଣେ ଲୋକର ଅଭାବ ମଧ୍ୟ ସେ ସେହି ସମୟରେ ବୋଧ କରୁଥିଲେ । ଅତଏବ ସ୍ଥିର ହେଲା ଯେ, ଗଦାଧର କଲିକତା ଆସି ସେହି ସମସ୍ତ ବିଷୟରେ ତାଙ୍କୁ କିଛି କିଛି ସାହାଯ୍ୟ କରିବ ଏବଂ ଅନ୍ୟାନ୍ୟ ଛାତ୍ରମାନଙ୍କ ପରି ତାଙ୍କରି ନିକଟରେ ବିଦ୍ୟାଭ୍ୟାସ କରିବ । ଗଦାଧର ନିକଟରେ ସେହି ବିଷୟ କହିବାରୁ ପିତୃତୁଲ୍ୟ ଅଗ୍ରଜଙ୍କୁ ସାହାଯ୍ୟ କରିବାକୁ ହେବ ଜାଣି ସେ କଲିକତା ଯିବାକୁ କିଛିମାତ୍ର ଆପତ୍ତି କଲେ ନାହିଁ । ଅନନ୍ତର ଶୁଭଦିନରେ ଶୁଭକ୍ଷଣରେ ଶ୍ରୀଯୁକ୍ତ ରାମକୁମାର ଓ ଗଦାଧର ରଘୁବୀରଙ୍କୁ

ପ୍ରଣାମପୂର୍ବକ ଚନ୍ଦ୍ରାଦେବୀଙ୍କର ପଦଧୂଳି ମସ୍ତକରେ ଧାରଣ କରି କଲିକତା ଯାତ୍ରା କଲେ । କାମାରପୁକୁରର ଆନନ୍ଦର ହାଟ କିଛି ଦିନ ପାଇଁ ଭାଙ୍ଗିଗଲା ଏବଂ ଶ୍ରୀମତୀ ଚନ୍ଦ୍ରା ଓ ଗଦାଧର ପ୍ରତି ଅନୁରକ୍ତ ନରନାରୀମାନେ ତାଙ୍କର ମଧୁମୟ ସ୍ମୃତି ଓ ଉଜ୍ଜ୍ୱଳ ଭବିଷ୍ୟତ ବିଷୟ ଚିନ୍ତାକରି କୌଣସି ପ୍ରକାରରେ କାଳ କଟାଇବାକୁ ଲାଗିଲେ । କଲିକତା ଆଗମନ ପରେ ଶ୍ରୀଯୁକ୍ତ ଗଦାଧର ଯେଉଁସବୁ ଅଲୌକିକ କର୍ମ କରିଥିଲେ, ସେସମସ୍ତ ପାଠକମାନେ ଶ୍ରୀରାମକୃଷ୍ଣଲୀଳାପ୍ରସଙ୍ଗର 'ସାଧକଭାବ' ନାମକ ଗ୍ରନ୍ଥରେ ଲିପିବଦ୍ଧ ହୋଇଥିବାର ଦେଖିବାକୁ ପାଇବେ ।

**ଶ୍ରୀରାମକୃଷ୍ଣଲୀଳାପ୍ରସଙ୍ଗର ପୂର୍ବକଥା ଓ**
**ବାଲ୍ୟଜୀବନ ପର୍ବ ସମ୍ପୂର୍ଣ୍ଣ ।**

# ଗ୍ରନ୍ଥ–ପରିଚୟ

ଈଶ୍ୱରଙ୍କ ଇଚ୍ଛାରେ ଶ୍ରୀଶ୍ରୀରାମକୃଷ୍ଣଦେବଙ୍କର ଅଲୌକିକ ସାଧକଭାବର ଆଲୋଚନା ସମ୍ପୂର୍ଣ୍ଣ ହେଲା । ଏଥିରେ ଆମେ ତାଙ୍କର ଅଦୃଷ୍ଟପୂର୍ବ ସାଧନାନୁରାଗ ଏବଂ ସାଧନତତ୍ତ୍ୱର ଦାର୍ଶନିକ ଆଲୋଚନା କରି କ୍ଷାନ୍ତ ହୋଇ ନାହୁଁ, କିନ୍ତୁ ସପ୍ତଦଶ ବର୍ଷ ବୟସରୁ ଚାଳିଶବର୍ଷ ବୟସ ପର୍ଯ୍ୟନ୍ତ ଠାକୁରଙ୍କ ଜୀବନର ସମସ୍ତ ପ୍ରଧାନ ଘଟଣାବଳୀର ସମୟ ନିରୂପଣପୂର୍ବକ ଧାରାବାହିକ ଭାବରେ ପାଠକଙ୍କୁ କହିବାକୁ ଚେଷ୍ଟା କରିଅଛୁ । ଅତଏବ ସାଧକଭାବକୁ ଠାକୁରଙ୍କର ସାଧକଜୀବନର ଏବଂ ସ୍ୱାମୀ ବିବେକାନନ୍ଦପ୍ରମୁଖ ତାଙ୍କର ଶିଷ୍ୟବର୍ଗ ତାଙ୍କର ଶ୍ରୀପଦପ୍ରାନ୍ତରେ ଉପସ୍ଥିତ ହେବାର ପୂର୍ବକାଳ ପର୍ଯ୍ୟନ୍ତ ଜୀବନର ଇତିହାସ କୁହାଯାଇପାରେ ।

ବର୍ତ୍ତମାନ ଗ୍ରନ୍ଥ ଲେଖିବାକୁ ବସି ଆମେ ଠାକୁରଙ୍କ ଜୀବନର ସମସ୍ତ ଘଟଣାର ସମୟ ନିରୂପଣ କରିପାରିବୁ କି ନାହିଁ ସେ ବିଷୟରେ ବିଶେଷ ସନ୍ଦିହାନ ଥିଲୁ । ଠାକୁର ତାଙ୍କର ସାଧକ–ଜୀବନର କଥା ଆମମାନଙ୍କ ମଧ୍ୟରୁ ଅନେକଙ୍କ ନିକଟରେ କହିଥିଲେ ମଧ୍ୟ, ଏସବୁର ସମୟ ନିରୂପଣ କରି ଧାରାବାହିକଭାବରେ କାହା ନିକଟରେ କହି ନାହାନ୍ତି । ସେଥିପାଇଁ ତାଙ୍କର ଭକ୍ତମାନଙ୍କ ମନରେ ତାଙ୍କ ଜୀବନର ସେହି ସମୟର କଥାସକଳ ଦୁର୍ବୋଧ୍ୟ ଓ ଜଟିଳ ହୋଇ ରହିଅଛି; ମାତ୍ର ଅନୁସନ୍ଧାନ ଫଳରେ ଆମେ ତାଙ୍କ କୃପାରୁ ଏବେ ଅନେକ ଘଟଣାର ଯଥାର୍ଥ ସମୟନିରୂପଣ କରିବାରେ ସମର୍ଥ ହୋଇଅଛୁ ।

ଠାକୁରଙ୍କର ଜନ୍ମ ମସିହା ନେଇ ଏତେକାଳ ପର୍ଯ୍ୟନ୍ତ ବିବାଦ ଚାଲିଆସୁଥିଲା । କାରଣ, ଠାକୁର ଆମମାନଙ୍କୁ ନିଜ ମୁଖରେ କହିଥିଲେ, ତାଙ୍କର ଯଥାର୍ଥ ଜନ୍ମପତ୍ରିକାଟି ହଜିଯାଇଥିଲା ଏବଂ ପରେ ଯେଉଁଟି କରା ହୋଇଥିଲା, ତାହା ଭ୍ରମପ୍ରମାଦପୂର୍ଣ୍ଣ । ଏକଶତବର୍ଷରୁ ଅଧିକକାଳର ସମସ୍ତ ପଞ୍ଜିକା ସନ୍ଧାନପୂର୍ବକ ଆମେ ଏବେ ସେହି ବିରୋଧର ମୀମାଂସା କରିବାକୁ ମଧ୍ୟ ସକ୍ଷମ ହୋଇଅଛୁ ଏବଂ ଏଥିପାଇଁ ଠାକୁରଙ୍କର ଜୀବନର ଘଟଣାସମୂହର ସମୟ ନିରୂପଣ କରିବା ଆମ ପକ୍ଷରେ ସୁସାଧ୍ୟ ହୋଇଅଛି । ଠାକୁରଙ୍କର ଷୋଡ଼ଶୀପୂଜା ସମ୍ବନ୍ଧରେ ସତ୍ୟ ଘଟଣା ଏତେଦିନ ପର୍ଯ୍ୟନ୍ତ କେହି ଜାଣି ନ ଥିଲେ । ବର୍ତ୍ତମାନ ଗ୍ରନ୍ଥପାଠରେ ପାଠକଙ୍କର ଏଘଟଣା ବୁଝିବା ସହଜ ହେବ ।

ପରିଶେଷରେ, ଶ୍ରୀଶ୍ରୀଠାକୁରଙ୍କର ଆଶୀର୍ବାଦ ପ୍ରାପ୍ତ ହୋଇ ଗ୍ରନ୍ଥଟି ଲୋକକଲ୍ୟାଣ ସାଧନ କରୁ, ଏହା ହିଁ କେବଳ ତାଙ୍କର ଶ୍ରୀଚରଣରେ ପ୍ରାର୍ଥନା । ଇତି —

ପ୍ରଣତ
**ଗ୍ରନ୍ଥକାର**

# ଅବତରଣିକା

## ସାଧକଭାବ ଆଲୋଚନାର ପ୍ରୟୋଜନ

### ଆଚାର୍ଯ୍ୟମାନଙ୍କର ସାଧକଭାବ ଲିପିବଦ୍ଧ ମିଳେ ନାହିଁ :

ଜଗତର ଆଧ୍ୟାତ୍ମିକ ଇତିହାସ ପାଠକଲେ ଦେଖିବାକୁ ମିଳେ, ଲୋକଗୁରୁ ବୁଦ୍ଧ ଓ ଶ୍ରୀଚୈତନ୍ୟଙ୍କ ବ୍ୟତୀତ ଅବତାର ପୁରୁଷମାନଙ୍କର ଜୀବନର ସାଧକଭାବର କାର୍ଯ୍ୟ-କଳାପ ବିସ୍ତୃତ ଲିପିବଦ୍ଧ ନାହିଁ । ଯେଉଁ ଉଦ୍ଦାମ ଅନୁରାଗ ଓ ଉତ୍ସାହ ହୃଦୟରେ ପୋଷଣ କରି ସେମାନେ ଜୀବନରେ ସତ୍ୟଲାଭ ନିମିତ୍ତ ଅଗ୍ରସର ହୋଇଥିଲେ, ଯେଉଁ ଆଶା-ନିରାଶା, ଭୟ-ବିସ୍ମୟ, ଆନନ୍ଦ-ବ୍ୟାକୁଳତାର ତରଙ୍ଗରେ ପଡ଼ି ସେମାନେ କେତେବେଳେ ଉଲ୍ଲସିତ ଏବଂ କେତେବେଳେ ମୁହ୍ୟମାନ ହୋଇଥିଲେ — ଅଥଚ ନିଜ ଗନ୍ତବ୍ୟଲକ୍ଷ୍ୟରେ ଦୃଷ୍ଟି ସ୍ଥିର ରଖିବାରେ କେବେ ବିସ୍ମୃତ ହୋଇ ନ ଥିଲେ, ତଦ୍‌ବିଷୟର ବିଶଦ ଆଲୋଚନା ସେମାନଙ୍କର ଜୀବନ ଇତିହାସରେ ମିଳେ ନାହିଁ । ଅଥବା, ଜୀବନର ଶେଷଭାଗରେ ଅନୁଷ୍ଠିତ ବିଚିତ୍ର କାର୍ଯ୍ୟକଳାପ ସହିତ ସେମାନଙ୍କର ବାଲ୍ୟାଦି କାଳର ଶିକ୍ଷା, ଉଦ୍ୟମ ଓ କାର୍ଯ୍ୟକଳାପର ଏକ ସ୍ୱାଭାବିକ ପୂର୍ବାପର କାର୍ଯ୍ୟକାରଣସମ୍ବନ୍ଧ ଖୋଜି ମିଳେ ନାହିଁ । ଦୃଷ୍ଟାନ୍ତସ୍ୱରୂପ କୁହାଯାଇପାରେ—

ବୃନ୍ଦାବନର ଗୋପୀଜନବଲ୍ଲଭ ଶ୍ରୀକୃଷ୍ଣ କିପରି ଧର୍ମପ୍ରତିଷ୍ଠାପକ ଦ୍ୱାରକାନାଥ ଶ୍ରୀକୃଷ୍ଣରେ ପରିଣତ ହେଲେ, ତାହା ପରିଷ୍କାର ବୁଝାଯାଏ ନାହିଁ । ଈଶାଙ୍କର ମହତ୍ ଉଦାର ଜୀବନର ତିରିଶ ବର୍ଷ ବୟସ ପୂର୍ବର କଥା ଗୋଟିଏ ଦୁଇଟି ମାତ୍ର ଜାଣିବାକୁ ମିଳେ । ଆଚାର୍ଯ୍ୟ ଶଙ୍କରଙ୍କର ଦିଗ୍‌ବିଜୟ କାହାଣୀମାତ୍ର ହିଁ ସବିସ୍ତାର ଲିପିବଦ୍ଧ । ଅନ୍ୟତ୍ର ସର୍ବତ୍ର ହିଁ ଠିକ୍ ଏହିପରି ।

### ସେମାନେ କୌଣସି ସମୟରେ ଅସମ୍ପୂର୍ଣ୍ଣ ଥିଲେ, ଏକଥା ଭକ୍ତ ଭାବିବାକୁ ଚାହେଁ ନାହିଁ :

ଏହାର କାରଣ ଖୋଜି ପାଇବା କଠିନ । ଭକ୍ତମାନଙ୍କର ଭକ୍ତିର ଆତିଶଯ୍ୟରେ ବୋଧହୁଏ ଏସମସ୍ତ କଥା ଲିପିବଦ୍ଧ ହୋଇ ନାହିଁ । ମନୁଷ୍ୟର ଅସମ୍ପୂର୍ଣ୍ଣତା ଦେବଚରିତ୍ରରେ ଆରୋପ କରିବାକୁ ସଙ୍କୁଚିତ ହୋଇ ବୋଧହୁଏ ସେମାନେ ଏସମସ୍ତ କଥା ଲୋକଲୋଚନର ଅନ୍ତରାଳରେ ରଖିବା ଯୁକ୍ତିଯୁକ୍ତ ବିବେଚନା କରଛନ୍ତି କିମ୍ବା ହୋଇପାରେ—ମହାପୁରୁଷ ଚରିତ୍ରର ସର୍ବାଙ୍ଗସମ୍ପୂର୍ଣ୍ଣ

ମହାନ ଭାବସମୂହ ସାଧାରଣ ଲୋକଙ୍କ ସମ୍ମୁଖରେ ଉଚ୍ଚାଦର୍ଶର ରୂପ ଧାରଣ କରି ସେମାନଙ୍କର ଯେଉଁ ପ୍ରକାର କଲ୍ୟାଣ ସାଧିତ କରିବ, ସେହି ସମସ୍ତ ଭାବରେ ଉପନୀତ ହେବାକୁ ସେମାନେ ଯେଉଁ ଅଲୌକିକ ଉଦ୍ୟମ କରିଅଛନ୍ତି, ତାହା ସେହିପରି କଲ୍ୟାଣ ସାଧନ କରିବ ନାହିଁ ଭାବି, ଏସବୁ ବିବରଣ ଲିପିବଦ୍ଧ କରିବା ସେମାନେ ଅନାବଶ୍ୟକ ବୋଧ କରିଛନ୍ତି ।

ଭକ୍ତ ନିଜର ଠାକୁରଙ୍କୁ ସର୍ବଦା ପୂର୍ଣ୍ଣ ଦେଖିବାକୁ ଚାହେଁ । ନରଶରୀର ଧାରଣ କରିଛନ୍ତି ବୋଲି ତାଙ୍କଠାରେ ଯେ ନରସୁଲଭ ଦୁର୍ବଳତା, ଦୃଷ୍ଟି ଓ ଶକ୍ତିହୀନତା କୌଣସି ସମୟରେ କିଛିମାତ୍ର ବିଦ୍ୟମାନ ଥିଲା, ତାହା ସ୍ୱୀକାର କରିବାକୁ ଭକ୍ତ ଚାହାନ୍ତି ନାହିଁ । ବାଳଗୋପାଳଙ୍କର ମୁଖଗହ୍ୱରରେ ସେମାନେ ବିଶ୍ୱବ୍ରହ୍ମାଣ୍ଡ ପ୍ରତିଷ୍ଠିତ ଦେଖିବାକୁ ସର୍ବଦା ପ୍ରୟାସୀ ହୁଅନ୍ତି ଏବଂ ବାଳକର ଅସମ୍ବନ୍ଧ ଚେଷ୍ଟାଗୁଡ଼ିକ ଭିତରେ ପରିଣତ ବୟସ୍କର ବୁଦ୍ଧି ଓ ବହୁଦର୍ଶିତାର ପରିଚୟ ପାଇବାର କେବଳ ପ୍ରତ୍ୟାଶା ରଖନ୍ତି ନାହିଁ, କିନ୍ତୁ ସର୍ବଜ୍ଞତା, ସର୍ବଶକ୍ତିମତ୍ତା ଏବଂ ବିଶ୍ୱଜନୀନ ଉଦାରତା ଓ ପ୍ରେମର ସମ୍ପୂର୍ଣ୍ଣ ପ୍ରତିକୃତି ଦେଖିବା ନିମିତ୍ତ ଉଦ୍‌ଗ୍ରୀବ ହୋଇ ଉଠନ୍ତି । ଅତଏବ, ନିଜ ଐଶ୍ୱରିକ ସ୍ୱରୂପରେ ସର୍ବସାଧାରଣଙ୍କୁ ଧରା ନ ଦେବା ପାଇଁ ହିଁ ଅବତାରପୁରୁଷମାନେ ସାଧନଭଜନ ଇତ୍ୟାଦି ମାନସିକ ଚେଷ୍ଟା ଏବଂ ଆହାର, ନିଦ୍ରା, କ୍ଳାନ୍ତି, ବ୍ୟାଧି, ଦେହତ୍ୟାଗ ପ୍ରଭୃତି ଶାରୀରିକ ଅବସ୍ଥାଗୁଡ଼ିକର ମିଥ୍ୟା ଛଳନା କରିଥାଆନ୍ତି, ଏପରି ସିଦ୍ଧାନ୍ତ କରିବା ସେମାନଙ୍କ ପକ୍ଷରେ ଆଦୌ ବିଚିତ୍ର ନୁହେଁ । ଆମମାନଙ୍କ ସମୟରେ ଆମେ ସ୍ୱଚକ୍ଷୁରେ ଦେଖିଅଛୁ, କେତେ ବିଶିଷ୍ଟ ଭକ୍ତ ଠାକୁରଙ୍କର ଶାରୀରିକ ବ୍ୟାଧି ସମ୍ବନ୍ଧରେ ସେହି ପ୍ରକାରର ମିଥ୍ୟା ଛଳନା ବୋଲି ଧାରଣା କରିଥିଲେ ।

**ଏପରି ଭାବିଲେ ଭକ୍ତର ଭକ୍ତି ହାନି ହୁଏ, ଏକଥା ଯୁକ୍ତିଯୁକ୍ତ ନୁହେଁ :**

ନିଜର ଦୁର୍ବଳତା ଯୋଗୁଁ ଭକ୍ତ ଏପରି ସିଦ୍ଧାନ୍ତରେ ଉପନୀତ ହୁଅନ୍ତି । ବିପରୀତ ସିଦ୍ଧାନ୍ତ କଲେ ତାଙ୍କର ଭକ୍ତିର ହାନି ହୁଏ ବୋଲି ବୋଧହୁଏ ସେ ନରସୁଲଭ ଚେଷ୍ଟା ଓ ଉଦ୍ଦେଶ୍ୟ ଆଦି ଅବତାରପୁରୁଷଙ୍କଠାରେ ଆରୋପ କରିବାକୁ ଚାହାନ୍ତି ନାହିଁ । ଅତଏବ, ସେମାନଙ୍କ ବିରୁଦ୍ଧରେ ଆମର କିଛି କହିବାର ନାହିଁ । ତେବେ ଏକଥା ଠିକ୍ ଯେ, ଭକ୍ତିର ଅପରିଣତ ଅବସ୍ଥାରେ ହିଁ ଭକ୍ତଠାରେ ଏପରି ଦୁର୍ବଳତା ପରିଲକ୍ଷିତ ହୁଏ । ଭକ୍ତିର ପ୍ରଥମ ଅବସ୍ଥାରୁ ଭକ୍ତ ଭଗବାନଙ୍କୁ ଐଶ୍ୱର୍ଯ୍ୟବିରହିତ କରି ଚିନ୍ତା କରିପାରନ୍ତି ନାହିଁ । ଭକ୍ତି ପରିପକ୍ୱ ହେଲେ ଏବଂ ଈଶ୍ୱରଙ୍କ ପ୍ରତି ଅନୁରାଗ କ୍ରମେ ଗଭୀର ଭାବ ଧାରଣ କଲେ, ସେହିପରି ଐଶ୍ୱର୍ଯ୍ୟ-ଚିନ୍ତା ଭକ୍ତିପଥର ଅନ୍ତରାୟ ବୋଲି ବୋଧ ହେଉଥାଏ, ଫଳରେ ଭକ୍ତ ସେତେବେଳେ ଏହାକୁ ଯତ୍ନର ସହିତ ଦୂରକୁ ପରିହାର କରନ୍ତି । ସମଗ୍ର ଭକ୍ତିଶାସ୍ତ୍ର ଏହି କଥା ବାରମ୍ବାର କହିଛନ୍ତି ।

ଦେଖାଯାଏ, ଶ୍ରୀକୃଷ୍ଣଙ୍କର ମାତା ଯଶୋଦା ଗୋପାଳଙ୍କର ଦିବ୍ୟବିଭୂତି-ନିଚୟର ନିତ୍ୟ ପରିଚୟ ପାଇ ମଧ୍ୟ ତାହାଙ୍କୁ ନିଜ ବାଳକବୋଧରେ ହିଁ ଲାଳନପାଳନ ଓ ତାଡ଼ନାଦି କରୁଛନ୍ତି । ଗୋପୀଗଣ ଶ୍ରୀକୃଷ୍ଣଙ୍କୁ ଜଗତକାରଣ ଈଶ୍ୱର ବୋଲି ଜାଣି ମଧ୍ୟ ତାଙ୍କଠାରେ କାନ୍ତଭାବ ବ୍ୟତୀତ ଅନ୍ୟ ଭାବ ଆରୋପ କରିପାରୁ ନାହାନ୍ତି । ଏପରି ଅନ୍ୟତ୍ର ମଧ୍ୟ ଦେଖାଯାଏ ।

## ଠାକୁରଙ୍କର ଉପଦେଶ—ଐଶ୍ୱର୍ଯ୍ୟ-ଉପଲବ୍ଧିରେ 'ତୁମେ-ମୁଁ' ଭାବରେ ଭଲପାଇବା ନ ଥାଏ; କାହାର ମଧ୍ୟ ଭାବ ନଷ୍ଟ କରିବ ନାହିଁ :

ଭଗବାନଙ୍କର ଶକ୍ତିବିଶେଷର ସାକ୍ଷାତ ପରିଚାୟକ କୌଣସି ପ୍ରକାରର ଦର୍ଶନାଦିଲାଭ ନିମିତ୍ତ ଅତିଶୟ ଆଗ୍ରହ ଜଣାଇଲେ, ଠାକୁର ତାଙ୍କର ଭକ୍ତମାନଙ୍କୁ ଅନେକ ସମୟରେ କହୁଥିଲେ, ''ଆହେ, ଏପରି ଦର୍ଶନ କରିବାକୁ ଚାହିଁବା ଭଲ ନୁହେଁ; ଐଶ୍ୱର୍ଯ୍ୟ ଦେଖିଲେ ଭୟ ଆସିବ; ଖୁଆଇବା, ପିନ୍ଧାଇବା, ଭଲ ପାଇବାରେ (ଈଶ୍ୱରଙ୍କ ସହିତ) ଯେଉଁ 'ତୁମେ-ମୁଁ'ଭାବ ଅଛି ତାହା ଆଉ ରହିବ ନାହିଁ ।'' କେତେ ସମୟରେ ଆମେ ଯେ କ୍ଷୁଣ୍ଣ ମନରେ ଭାବିଛୁ, ଠାକୁର କୃପା କରି ଏପରି ଦର୍ଶନାଦି ଲାଭ କରାଇଦେବେ ନାହିଁ ବୋଲି ହିଁ ଆମମାନଙ୍କୁ ଏପରି କହି କ୍ଷାନ୍ତ କରାଉଛନ୍ତି । ସାହସର ସହିତ କୌଣସି ଭକ୍ତ ଯଦି ସେ ସମୟରେ ପ୍ରାଣର ବିଶ୍ୱାସ ସହିତ କହେ, ''ଆପଣଙ୍କ କୃପାରେ ଅସମ୍ଭବ ସମ୍ଭବ ହୋଇପାରେ, କୃପା କରି ମୋତେ ଏପରି ଦର୍ଶନାଦି କରାଇ ଦିଅନ୍ତୁ'',—ଠାକୁର ଏକଥାରେ ମଧୁର ନମ୍ର ଭାବରେ କହୁଥିଲେ, ''ମୁଁ କ'ଣ କିଛି କରି ପାରେ—ମା'ର ଯାହା ଇଚ୍ଛା ତାହା ହିଁ ହୁଏ ।'' ସେହିପରି କହିଲେ ମଧ୍ୟ ଯଦି ସେ କ୍ଷାନ୍ତ ନ ହୋଇ କହେ, ''ଆପଣଙ୍କର ଇଚ୍ଛା ହେଲେ ହିଁ ମା'ଙ୍କର ଇଚ୍ଛା ହେବ'', ଠାକୁର ସେଥିରେ ଅନେକ ସମୟ ତାହାକୁ ବୁଝାଇ କହୁଥିଲେ, ''ମୁଁ ତ ମନେକରେ ରେ, ତୁମ ସମସ୍ତଙ୍କର ସବୁ ପ୍ରକାରର ଅବସ୍ଥା, ସବୁ ପ୍ରକାରର ଦର୍ଶନ ହେଉ, କିନ୍ତୁ ତା ହୁଏ କେଉଁଠି ?'' ସେଥିରେ ମଧ୍ୟ ଭକ୍ତ ଯଦି କ୍ଷାନ୍ତ ନ ହୋଇ ଜିଦ୍ କରୁଥାଏ, ତା'ହେଲେ ଠାକୁରେ ତାଙ୍କୁ ଆଉ କିଛି ନ କହି ସ୍ନେହପୂର୍ଣ୍ଣ ଦର୍ଶନ ଓ ମୃଦୁମନ୍ଦ ହାସ୍ୟ ଦ୍ୱାରା ତା ପ୍ରତି ନିଜର ଭଲ ପାଇବାର ପରିଚୟମାତ୍ର ଦେଇ ନୀରବ ରହୁଥିଲେ; ଅଥବା କହୁଥିଲେ, ''କ'ଣ କହିବି ବାବୁ, ମା'ର ଯାହା ଇଚ୍ଛା ତାହା ହିଁ ହେବ ।'' ଏପରି ଅତ୍ୟନ୍ତ ଆଗ୍ରହ କଲେ ମଧ୍ୟ ଠାକୁରେ ତାହାର ଭ୍ରମପୂର୍ଣ୍ଣ ଦୃଢ଼ ବିଶ୍ୱାସ ଭାଙ୍ଗି ତାହାର ଭାବ ନଷ୍ଟ କରିବାକୁ ଚେଷ୍ଟା କରୁ ନ ଥିଲେ । ଠାକୁରଙ୍କର ଏପରି ବ୍ୟବହାର ଆମେ ଅନେକ ସମୟରେ ପ୍ରତ୍ୟକ୍ଷ କରିଛୁ ଏବଂ ତାଙ୍କୁ ବାରମ୍ବାର କହିବା ଶୁଣିଅଛୁ, ''କାହାର ଭାବ ନଷ୍ଟ କରିବ ନାହିଁ ରେ, କାହାର ମଧ୍ୟ ଭାବ ନଷ୍ଟ କରନ୍ତି ନାହିଁ ।''

## ଭାବନଷ୍ଟ କରିବା ସମ୍ବନ୍ଧରେ ଦୃଷ୍ଟାନ୍ତ— କାଶୀପୁର ବଗିଚାରେ ଶିବରାତ୍ରିର କଥା :

ପ୍ରବନ୍ଧୋକ୍ତ ବିଷୟ ସହିତ ସାକ୍ଷାତ୍ ସମ୍ବନ୍ଧ ନ ଥିଲେ ମଧ୍ୟ କଥାଟି ଯେତେବେଳେ ଆଲୋଚିତ ହୋଇଛି, ସେତେବେଳେ ଗୋଟିଏ ଘଟଣାର ଉଲ୍ଲେଖ କରି ପାଠକଙ୍କୁ ବୁଝାଇ ଦେବା ଭଲ । ଇଚ୍ଛା ଏବଂ ସ୍ପର୍ଶମାତ୍ରେ ଅନ୍ୟର ଶରୀର-ମନରେ ଧର୍ମଶକ୍ତି ସଞ୍ଚାରିତ କରିବାର କ୍ଷମତା ଆଧ୍ୟାତ୍ମିକ ଜୀବନରେ ଅତି ଅଳ୍ପ ସାଧକଙ୍କର ଭାଗ୍ୟରେ ଲାଭ ହୋଇଥାଏ । ସ୍ୱାମୀ ବିବେକାନନ୍ଦ ସମୟାନୁକ୍ରମେ ଏହି କ୍ଷମତାରେ ଭୂଷିତ ହୋଇ ପ୍ରଭୂତ ଲୋକକଲ୍ୟାଣ ସାଧନ କରିବେ— ଠାକୁର ଏକଥା ଆମକୁ ବାରମ୍ବାର କହିଥିଲେ । ସ୍ୱାମୀ ବିବେକାନନ୍ଦଙ୍କ ପରି ଉତ୍ତମ ଅଧିକାରୀ ସଂସାରରେ ବିରଳ—ପ୍ରଥମରୁ ଠାକୁରେ ଏହି କଥା ସମ୍ୟକ୍ ବୁଝି ବେଦାନ୍ତୋକ୍ତ ଅଦ୍ୱୈତଜ୍ଞାନର ଉପଦେଶ ଦେଇ ତାଙ୍କର ଚରିତ୍ର ଓ ଧର୍ମ-ଜୀବନ ଗୋଟିଏ ବିଶେଷ ଭାବରେ ଗଠିତ କରୁଥିଲେ । ବ୍ରାହ୍ମସମାଜର ପ୍ରଣାଳୀରେ ଦ୍ୱୈତଭାବରେ ଈଶ୍ୱର ଉପାସନାରେ ଅଭ୍ୟସ୍ତ ସ୍ୱାମୀଜୀଙ୍କ ନିକଟରେ ବେଦାନ୍ତର 'ସୋଽହଂ' ଭାବର ଉପାସନାଟି ସେତେବେଳେ ପାପ ବୋଲି ପରିଗଣିତ ହେଲେ ମଧ୍ୟ ଠାକୁର ତାହାଙ୍କୁ ତାହା ଅନୁଶୀଳନ କରାଇବାକୁ ନାନାଭାବରେ ଚେଷ୍ଟା କରୁଥିଲେ । ସ୍ୱାମୀଜୀ କହୁଥିଲେ ''ଦକ୍ଷିଣେଶ୍ୱରରେ ଉପସ୍ଥିତ ହେବା ମାତ୍ରେ ଠାକୁର ଅନ୍ୟମାନଙ୍କୁ ଯାହା ପଢ଼ିବାକୁ ନିଷେଧ କରନ୍ତି, ସେହି ସମସ୍ତ ପୁସ୍ତକ ମୋତେ ପଢ଼ିବାକୁ ଦେଉଥିଲେ । ଅନ୍ୟାନ୍ୟ ପୁସ୍ତକ ସହିତ ତାଙ୍କ କୋଠରୀରେ ଖଣ୍ଡିଏ 'ଅଷ୍ଟାବକ୍ର-ସଂହିତା' ଥିଲା । କେହି ସେହି ପୁସ୍ତକଟିକୁ ବାହାର କରି ପଢୁଥିବାର ଦେଖିଲେ ଠାକୁରେ ତାଙ୍କୁ ଏପୁସ୍ତକ ପଢ଼ିବାକୁ ନିଷେଧ କରି 'ମୁକ୍ତି ଓ ତାହାର ସାଧନ' , 'ଭଗବଦ୍‌ଗୀତା' ବା କୌଣସି ପୁରାଣଗ୍ରନ୍ଥ ପଢ଼ିବା ପାଇଁ କହୁଥିଲେ । ମୁଁ କିନ୍ତୁ ତାଙ୍କ ପାଖକୁ ଗଲେ ସେହି 'ଅଷ୍ଟାବକ୍ର-ସଂହିତା'ଟି ବାହାର କରି ପଢ଼ିବାକୁ କହୁଥିଲେ । ଅଥବା ଅଦ୍ୱୈତଭାବପୂର୍ଣ୍ଣ 'ଅଧ୍ୟାତ୍ମରାମାୟଣ'ର କୌଣସି ଅଂଶ ପାଠ କରିବା ପାଇଁ କହୁଥିଲେ । ମୁଁ ଯଦି କହେ—ସେ ବହି ପଢ଼ି କ'ଣ ହେବ ? ମୁଁ ଭଗବାନ, ଏକଥା ମନରେ ଆଣିବା ମଧ୍ୟ ପାପ । ଏହି ପାପକଥା ଏହି ପୁସ୍ତକରେ ଲେଖାଅଛି । ସେ ବହି ପୋଡ଼ି ପକାଇବା ଉଚିତ୍ ! ଠାକୁରେ ଏକଥାରେ ହସି ହସି କହୁଥିଲେ, 'ମୁଁ କ'ଣ ତୋତେ ପଢ଼ିବାକୁ କହୁଛି ? ଟିକେ ପଢ଼ି ମୋତେ ଶୁଣାଇବାକୁ କହୁଛି । କିଛିଟା ପଢ଼ି ମୋତେ ଶୁଣା ନା । ସେଥିରେ ତ ତୋତେ ମନେ କରିବାକୁ ହେବ ନାହିଁ, ତୁ ଭଗବାନ ।' ଫଳରେ ଅନୁରୋଧରେ ପଡ଼ି ଅଳ୍ପବହୁତ ପଢ଼ି ତାଙ୍କୁ ଶୁଣାଇବାକୁ ହେଉଥିଲା ।''

ସ୍ୱାମୀଜୀଙ୍କୁ ଏହି ଭାବରେ ଗଠିତ କରୁଥିଲେ ମଧ୍ୟ ଠାକୁର ତାଙ୍କର ଅନ୍ୟାନ୍ୟ ବାଳକମାନଙ୍କୁ କାହାକୁ ସାକାର ଉପାସନା, କାହାକୁ ନିରାକାର

ସଗୁଣ ଈଶ୍ୱରୋପାସନା; କାହାକୁ ଶୁଦ୍ଧା ଭକ୍ତି ଭିତର ଦେଇ, ପୁଣି କାହାକୁ ଅବା ଜ୍ଞାନମିଶ୍ରା ଭକ୍ତି ଭିତର ଦେଇ—ନାନା ଭାବରେ ଧର୍ମଜୀବନରେ ଅଗ୍ରସର କରାଇଦେଉଥିଲେ । ଏହିପରି ସ୍ୱାମୀ ବିବେକାନନ୍ଦପ୍ରମୁଖ ବାଳକଭକ୍ତଗଣ ଦକ୍ଷିଣେଶ୍ୱରରେ ଠାକୁରଙ୍କ ନିକଟରେ ଏକତ୍ର ଶୟନ-ଉପବେଶନ, ଆହାର-ବିହାର, ଧର୍ମଚର୍ଚ୍ଚା ପ୍ରଭୃତି କଲେ ମଧ୍ୟ ଠାକୁରେ ଅଧିକାରୀଭେଦରେ ସେମାନଙ୍କୁ ନାନାଭାବରେ ଗଠିତ କରୁଥିଲେ ।

୧୮୮୬ ମସିହା ମାର୍ଚ୍ଚ ମାସ । କାଶୀପୁର ବଗିଚାରେ ଠାକୁର ଗଳରୋଗରେ ଦିନକୁ ଦିନ କ୍ଷୀଣ ହୋଇ ପଡୁଛନ୍ତି । କିନ୍ତୁ ଯେପରି ପୂର୍ବାପେକ୍ଷା ଅଧିକ ଉତ୍ସାହରେ ଭକ୍ତମାନଙ୍କ ଧର୍ମଜୀବନ-ଗଠନରେ ମନୋନିବେଶ କରିଅଛନ୍ତି—ବିଶେଷତଃ ସ୍ୱାମୀ ବିବେକାନନ୍ଦଙ୍କର । ପୁଣି ସ୍ୱାମୀଜୀଙ୍କୁ ସାଧନମାର୍ଗର ଉପଦେଶ ଦେଇ ଏବଂ ତଦନୁଯାୟୀ ଅନୁଷ୍ଠାନରେ ସହାୟତା କରି ଠାକୁର କ୍ଷାନ୍ତ ରହୁ ନ ଥିଲେ । ପ୍ରତ୍ୟହ ସନ୍ଧ୍ୟାପରେ ଅନ୍ୟ ସମସ୍ତଙ୍କୁ ଚାଲିଯିବାକୁ କହି ତାଙ୍କୁ ନିକଟକୁ ଡାକି ଏକାଦିକ୍ରମେ ଦୁଇ ତିନି ଘଣ୍ଟାକାଳ ଧରି ତାଙ୍କ ସହିତ ଅନ୍ୟ ବାଳକ ଭକ୍ତମାନଙ୍କୁ ସଂସାରରେ ପୁନଶ୍ଚ ଫେରିବାକୁ ନ ଦେଇ କିପରି ଭାବରେ ପରିଚାଳିତ ଓ ଏକତ୍ର ରଖିବାକୁ ହେବ, ତଦ୍ ବିଷୟରେ ଆଲୋଚନା ଓ ଶିକ୍ଷା ପ୍ରଦାନ କରୁଥିଲେ । ଭକ୍ତମାନେ ପ୍ରାୟ ସମସ୍ତେ ହିଁ ସେତେବେଳେ ଠାକୁରଙ୍କର ଏହି ପ୍ରକାର ଆଚରଣରେ ଭାବୁଥିଲେ, ନିଜ ସଂଘ ସୁପ୍ରତିଷ୍ଠିତ କରିବା ପାଇଁ ହିଁ ଠାକୁର ଗଳାରୋଗରୂପକ ଗୋଟିଏ ମିଥ୍ୟା ଛଳନା କରୁଛନ୍ତି—ସେହି କାର୍ଯ୍ୟ ସମ୍ପାଦିତ ହେଲେ ସେ ପୁଣି ପୂର୍ବବତ୍ ସୁସ୍ଥ ହୋଇଯିବେ । ସ୍ୱାମୀ ବିବେକାନନ୍ଦ କେବଳ ଦିନକୁ ଦିନ ପ୍ରାଣେ ପ୍ରାଣେ ବୁଝୁଥିଲେ, ଠାକୁର ଯେପରି ଭକ୍ତମାନଙ୍କ ନିକଟରୁ ବହୁକାଳ ପାଇଁ ବିଦାୟ ଗ୍ରହଣ କରିବାର ସମସ୍ତ ବନ୍ଦୋବସ୍ତ କରୁଛନ୍ତି । କିନ୍ତୁ ସେ ମଧ୍ୟ ସେହି ଧାରଣା ସବୁସମୟରେ ରଖି ପାରିଥିଲେ କି ନାହିଁ ସନ୍ଦେହ ।

ସାଧନବଳରେ ସ୍ୱାମୀଜୀଙ୍କ ଭିତରେ ସେତେବେଳେ ସ୍ପର୍ଶଦ୍ୱାରା ଅନ୍ୟଠାରେ ଧର୍ମଶକ୍ତି-ସଂକ୍ରମଣ କରିବାର କ୍ଷମତା ଈଷତ୍ ଉନ୍ମେଷ ହୋଇଥିଲା । ସେ ବେଳେ ବେଳେ ନିଜ ଭିତରେ ଏପରି ଶକ୍ତିର ଉଦୟ ସ୍ପଷ୍ଟ ଅନୁଭବ କଲେ ମଧ୍ୟ, କାହାକୁ ସେହି ଭାବରେ ସ୍ପର୍ଶ କରି ଏହି ବିଷୟର ସତ୍ୟାସତ୍ୟ ଏପର୍ଯ୍ୟନ୍ତ ନିର୍ଦ୍ଧାରଣ କରି ନାହାନ୍ତି । କିନ୍ତୁ ନାନା ଭାବରେ ପ୍ରମାଣ ପାଇ ବେଦାନ୍ତର ଅଦ୍ୱୈତମତରେ ବିଶ୍ୱାସୀ ହୋଇ, ସେ ଯୁକ୍ତିତର୍କ ସହାୟରେ ଏହି ମତ ବାଳକ ଓ ଗୃହସ୍ଥ ଭକ୍ତମାନଙ୍କ ଭିତରେ ପ୍ରବିଷ୍ଟ କରାଇବାକୁ ଚେଷ୍ଟା କରୁଥିଲେ । ଏହି ବିଷୟ ନେଇ ଭକ୍ତମାନଙ୍କ ଭିତରେ ତୁମୁଳ ଆନ୍ଦୋଳନ ଓ ବେଳେବେଳେ ପ୍ରବଳ ଗଣ୍ଡଗୋଳ ଉପୁଜୁଥିଲା । କାରଣ ସ୍ୱାମୀଜୀଙ୍କର ସ୍ୱଭାବ ଥିଲା, ଯେତେବେଳେ ଯାହା ସତ୍ୟ ବୋଲି ବୁଝୁଥିଲେ, ସେତେବେଳେ ତାହା ମୁକ୍ତକଣ୍ଠରେ ସମସ୍ତଙ୍କୁ କହୁଥିଲେ ଏବଂ ଯୁକ୍ତିସହାୟରେ

ଅନ୍ୟମାନଙ୍କୁ ଗ୍ରହଣ କରାଇବାକୁ ଚେଷ୍ଟା କରୁଥିଲେ । ବ୍ୟାବହାରିକ ଜଗତରେ ସତ୍ୟ ଯେ ଅବସ୍ଥା ଓ ଅଧିକାରୀଭେଦରେ ନାନା ଆକାର ଧାରଣ କରେ— ଅପରିପକ୍ୱ ସ୍ୱାମୀଜୀ ସେତେବେଳେ ତାହା ବୁଝିପାରି ନ ଥିଲେ ।

ସେଦିନ ଫାଲ୍‌ଗୁନ ମାସର ଶିବରାତ୍ରୀ ଥିଲା । ବାଳକ ଭକ୍ତମାନଙ୍କ ମଧ୍ୟରେ ତିନି ଚାରିଜଣ ସ୍ୱାମୀଜୀଙ୍କ ସହିତ ସ୍ୱଇଚ୍ଛାରେ ବ୍ରତ ଉପବାସ କରିଥିଲେ । ପୂଜା ଏବଂ ଜାଗରଣରେ ରାତ୍ରିଯାପନ କରିବା ସେମାନଙ୍କ ଅଭିଳାଷ ଥିଲା । ଗୋଳମାଳ ଯୋଗୁଁ କାଳେ ଠାକୁରଙ୍କ ଆରାମରେ ବ୍ୟାଘାତ ହେବ, ତେଣୁ ରହୁଥିବା ଘରଠାରୁ କିଛି ଦୂରରେ ଅବସ୍ଥିତ ରନ୍ଧନଶାଳା ପାଇଁ ନିର୍ମିତ ଏକ ଗୃହରେ ପୂଜାର ଆୟୋଜନ ହୋଇଥିଲା । ସନ୍ଧ୍ୟା ପରେ ବେଶ୍ ଅସରାଏ ବର୍ଷା ହୋଇଥିଲା ଏବଂ ନବୀନ ମେଘରେ ବେଳେବେଳେ ମହାଦେବଙ୍କର ଜଟାପଟଳ ସଦୃଶ ବିଦ୍ୟୁତ୍‌ପୁଞ୍ଜର ଆବିର୍ଭାବ ଦେଖି ଭକ୍ତଗଣ ଆନନ୍ଦିତ ହେଉଥିଲେ ।

ଦଶଟା ପରେ ପ୍ରଥମ ପ୍ରହରର ପୂଜା, ଜପ ଓ ଧ୍ୟାନ ସମାପ୍ତ କରି ସ୍ୱାମୀଜୀ ପୂଜା-ଆସନରେ ବସି ବିଶ୍ରାମ ଓ କଥୋପକଥନ କରିବାକୁ ଲାଗିଲେ । ସାଙ୍ଗମାନଙ୍କ ମଧ୍ୟରୁ ଜଣେ ତାଙ୍କ ନିମିତ୍ତ ତମାଖୁ ସଜାଇବାକୁ ବାହାରକୁ ଗଲେ ଏବଂ ଅନ୍ୟ ଜଣେ କୌଣସି ପ୍ରୟୋଜନ କର୍ମ ସାରି ଆସିବା ପାଇଁ ବାସଗୃହ ଆଡ଼କୁ ଚାଲିଗଲେ । ଏପରି ସମୟରେ ସ୍ୱାମୀଜୀଙ୍କ ଭିତରେ ସହସା ପୂର୍ବୋକ୍ତ ଦିବ୍ୟ ବିଭୂତିର ତୀବ୍ର ଅନୁଭବ ଉଦୟ ହେଲା ଏବଂ ସେ ଏହାକୁ ଆଜି କାର୍ଯ୍ୟରେ ପରିଣତ କରି ଏହାର ଫଳାଫଳ ପରୀକ୍ଷା କରି ଦେଖିବା ଇଚ୍ଛାରେ ସମ୍ମୁଖୋପବିଷ୍ଟ ସ୍ୱାମୀ ଅଭେଦାନନ୍ଦଙ୍କୁ କହିଲେ, ''ମୋତେ କିଛି କ୍ଷଣ ସ୍ପର୍ଶ କରି ବସି ରୁହ ।'' ଇତିମଧ୍ୟରେ ତମାଖୁ ନେଇ ଗୃହରେ ପ୍ରବେଶ କରି ପୂର୍ବୋକ୍ତ ବାଳକ ଦେଖିଲା, ସ୍ୱାମୀଜୀ ସ୍ଥିର ଭାବରେ ଧ୍ୟାନସ୍ଥ ରହିଛନ୍ତି ଏବଂ ଅଭେଦାନନ୍ଦ ଚକ୍ଷୁ ମୁଦ୍ରିତ କରି ନିଜର ଦକ୍ଷିଣ ହସ୍ତଦ୍ୱାରା ତାଙ୍କର ଦକ୍ଷିଣ ଜାନୁ ସ୍ପର୍ଶ କରି ରହିଛନ୍ତି ଏବଂ ତାଙ୍କର ସେହି ହସ୍ତ ଘନ ଘନ କମ୍ପିତ ହେଉଅଛି । ଦୁଇ ଏକ ମିନିଟ୍ ଏପରି ଅତିବାହିତ ହେବା ପରେ ସ୍ୱାମୀଜୀ ଚକ୍ଷୁ ଉନ୍ମୀଳନ କରି କହିଲେ, ''ବାସ୍, ହୋଇଛି । କିପରି ଅନୁଭବ କଲ ?'' ଅଭେଦାନନ୍ଦ କହିଲେ, ବ୍ୟାଟେରୀ (electric battery) ଧରିଲେ ଯେମିତି ଭିତରେ କ'ଣ ଗୋଟେ ଆସୁଛି ବୋଲି ଜଣାଯାଏ ଏବଂ ହାତ ଥରେ, ତୁମକୁ ଛୁଇଁ ସେପରି ଅନୁଭବ ହେବାକୁ ଲାଗିଲା ।

ଅନ୍ୟ ବ୍ୟକ୍ତି ଜଣକ ଅଭେଦାନନ୍ଦଙ୍କୁ ପଚାରିଲେ, ''ସ୍ୱାମୀଜୀଙ୍କୁ ସ୍ପର୍ଶକରି ତୁମର ହାତ ଆପେ ଆପେ କ'ଣ ଏପରି କମ୍ପୁଥିଲା ?'' ଅଭେଦାନନ୍ଦ କହିଲେ ''ହଁ, ସ୍ଥିର କରି ରଖିବାକୁ ଚେଷ୍ଟା କରି ମଧ୍ୟ ରଖିପାରୁ ନ ଥିଲି ।''

ଏ ସମ୍ବନ୍ଧରେ ଅନ୍ୟ କୌଣସି କଥା ସେତେବେଳେ ଆଉ ହେଲା ନାହିଁ, ସ୍ୱାମୀଜୀ ତମାଖୁ ସେବନ କଲେ । ପରେ ସମସ୍ତେ ଦୁଇ-ପ୍ରହରର ପୂଜା ଓ

ଧ୍ୟାନରେ ମନୋନିବେଶ କଲେ । ଅଭେଦାନନ୍ଦ ଏହି ସମୟରେ ଗଭୀର ଧ୍ୟାନସ୍ଥ ହେଲେ । ଆମେ ତାଙ୍କୁ ଇତିପୂର୍ବେ କେବେ ଏପରି ଗଭୀର ଭାବରେ ଧ୍ୟାନସ୍ଥ ହେବା ଦେଖି ନ ଥିଲୁ । ତାଙ୍କର ପୂରା ଶରୀର କଠିନ ହୋଇ ଗ୍ରୀବା ଓ ମସ୍ତକ ବାଙ୍କି ଗଲା ଏବଂ କିଛି କ୍ଷଣ ପାଇଁ ବହିର୍ଜଗତର ସଂଜ୍ଞା ଏକାବେଳକେ ଲୁପ୍ତ ହେଲା । ଉପସ୍ଥିତ ସମସ୍ତଙ୍କର ମନେହେଲା, ସ୍ୱାମୀଜୀଙ୍କୁ ଏହାପୂର୍ବରୁ ସ୍ପର୍ଶ କରିବା ଫଳରେ ହିଁ ତାଙ୍କର ଏପରି ଗଭୀର ଧ୍ୟାନ ହୋଇଅଛି । ସ୍ୱାମୀଜୀ ମଧ୍ୟ ତାଙ୍କର ଏପରି ଅବସ୍ଥା ଲକ୍ଷ୍ୟ କରି ଜନୈକ ବନ୍ଧୁକୁ ଇଙ୍ଗିତ କରି ଏହା ଦେଖାଇଲେ ।

ରାତି ଚାରିଟାରେ ଚତୁର୍ଥ ପ୍ରହର ପୂଜା ଶେଷ ହେବା ପରେ ସ୍ୱାମୀ ରାମକୃଷ୍ଣାନନ୍ଦ ପୂଜାଗୃହରେ ଉପସ୍ଥିତ ହୋଇ ସ୍ୱାମୀଜୀଙ୍କୁ କହିଲେ, ‘‘ଠାକୁର ଡାକୁଛନ୍ତି ।’’ ଏହା ଶୁଣି ସ୍ୱାମୀଜୀ ବାସଗୃହର ଦୋତାଲା କୋଠରୀକୁ ଠାକୁରଙ୍କ ନିକଟକୁ ଚାଲିଗଲେ । ଠାକୁରଙ୍କ ସେବା କରିବା ପାଇଁ ରାମକୃଷ୍ଣାନନ୍ଦ ମଧ୍ୟ ସଙ୍ଗରେ ଗଲେ ।

ସ୍ୱାମୀଜୀଙ୍କୁ ଦେଖିବା ମାତ୍ରେ ଠାକୁର କହିଲେ, ‘‘କିରେ ? ଟିକିଏ ମାତ୍ର ସଞ୍ଚୟ ହୋଇଛି କି ନାହିଁ, ଖର୍ଚ୍ଚ ଆରମ୍ଭ କରିଦେଲୁ ? ଆଗେ ନିଜ ଭିତରେ ଭଲ କରି ସଞ୍ଚୟ କର, ସେତେବେଳେ କେଉଁ ଭାବରେ କେଉଁଠାରେ ଖର୍ଚ୍ଚ କରିବାକୁ ହେବ ତାହା ବୁଝିପାରିବୁ—ମା’ ହିଁ ବୁଝାଇଦେବେ । ତା’ ଭିତରେ ତୋର ଭାବକୁ ପୂରାଇ ତା’ର କି କ୍ଷତି କଲୁ କହତ ? ସେ ଏତେଦିନ ଗୋଟିଏ ଭାବ ଦେଇ ଯାଉଥିଲା, ସେସବୁ ନଷ୍ଟ ହୋଇଗଲା !—ଛଅ ମାସର ଗର୍ଭ ଯେପରି ନଷ୍ଟ ହେଲା ! ଯାହା ହେବାର ହୋଇଛି, ଏବେଠାରୁ ହଠାତ୍ ଏପରି ଆଉ କରିବୁ ନାହିଁ । ଯା ହେଉ, ଟୋକାଟାର ଭାଗ୍ୟ ଭଲ ।’’

ସ୍ୱାମୀଜୀ କହିଲେ, ‘‘ମୁଁ ତ ଏକାବେଳକେ ଅବାକ୍ । ପୂଜା ସମୟରେ ତଳମହଲାରେ ଆମେ ଯାହା ସବୁ କରିଛୁ, ଠାକୁର ସବୁ କିଛି ଜାଣିପାରିଛନ୍ତି ! କ’ଣ କରିବି—ତାଙ୍କର ଏପରି ଭର୍ତ୍ସନାରେ ଚୁପ୍ କରି ରହିଲି ।’’

ଫଳରେ ଦେଖାଗଲା ଅଭେଦାନନ୍ଦ ଯେଉଁ ଭାବ ସହାୟରେ ଧର୍ମଜୀବନରେ ଅଗ୍ରସର ହେଉଥିଲେ, ତାହା ତ’ ସମ୍ପୂର୍ଣ୍ଣ ରୂପେ ନଷ୍ଟ ହୋଇଗଲା, କିନ୍ତୁ ଅଦ୍ୱୈତଭାବ ଠିକ୍ ଠିକ୍ ଧରିବା ଓ ବୁଝିବା ସମୟସାପେକ୍ଷ ହେବାରୁ ବେଦାନ୍ତର ଦ୍ୱାହି ଦେଇ ସେ ବେଳେବେଳେ ସଦାଚାରବିରୋଧୀ ଅନୁଷ୍ଠାନମାନ କରିବାକୁ ଲାଗିଲେ । ଠାକୁର ତାଙ୍କୁ ଏବେଠାରୁ ଅଦ୍ୱୈତଭାବର ଉପଦେଶ ଦେଲେ ଓ ସସ୍ନେହରେ ତାଙ୍କର ଏପରି କାର୍ଯ୍ୟକଳାପର ତ୍ରୁଟି ଦେଖାଇ ଦେଉଥିଲେ । କିନ୍ତୁ ତାସତ୍ତ୍ୱେ ଅଭେଦାନନ୍ଦଙ୍କର ସେହି ଭାବ-ପ୍ରଣୋଦିତ ହୋଇ ଜୀବନର ପ୍ରତ୍ୟେକ କାର୍ଯ୍ୟାନୁଷ୍ଠାନରେ ଯଥାଯଥଭାବରେ ଅଗ୍ରସର ହେବା, ଠାକୁରଙ୍କ ଶରୀର ତ୍ୟାଗର ବହୁଦିନ ପରେ ସାଧିତ ହୋଇଥିଲା ।

### ନରଲୀଳାରେ ସମସ୍ତ କର୍ମ ସାଧାରଣ ମନୁଷ୍ୟ ପରି ହୁଏ :

ସତ୍ୟଲାଭ ଅଥବା ଜୀବନରେ ଏହାର ପୂର୍ଣ୍ଣ ଅଭିବ୍ୟକ୍ତି ନିମିତ୍ତ ଅବତାର-ପୁରୁଷକୃତ ଚେଷ୍ଟାସମୂହକୁ ମିଥ୍ୟା ଛଳନା ବୋଲି ଯେଉଁମାନେ ଗ୍ରହଣ କରନ୍ତି, ସେହି ଶ୍ରେଣୀର ଭକ୍ତମାନଙ୍କୁ ଆମର ବକ୍ତବ୍ୟ ଯେ, ଠାକୁରଙ୍କୁ ସେମାନଙ୍କ ପରି ଅଭିପ୍ରାୟ ପ୍ରକାଶ କରିବାକୁ ଆମେ କେବେ ଶୁଣି ନାହୁଁ; ବରଂ ଅନେକ ସମୟରେ ତାଙ୍କୁ କହିବାକୁ ଶୁଣିଛୁ, 'ନରଲୀଳାରେ ସମସ୍ତ କାର୍ଯ୍ୟ ସାଧାରଣ ମନୁଷ୍ୟ ପରି ହୁଏ; ମନୁଷ୍ୟଶରୀର ସ୍ୱୀକାର କରି ଭଗବାନଙ୍କୁ ମନୁଷ୍ୟ ପରି ସୁଖ-ଦୁଃଖ ଭୋଗ କରିବାକୁ ଓ ସେମାନଙ୍କ ପରି ଉଦ୍ୟମ, ଚେଷ୍ଟା ଓ ତପସ୍ୟା ଦ୍ୱାରା ସମସ୍ତ ବିଷୟରେ ପୂର୍ଣ୍ଣତ୍ୱଲାଭ କରିବାକୁ ହୁଏ ।' ଜଗତର ଆଧ୍ୟାତ୍ମିକ ଇତିହାସ ମଧ୍ୟ ଏହି କଥା କହିଛି ଏବଂ ଯୁକ୍ତି ସହାୟରେ ଏକଥା ସ୍ପଷ୍ଟ ବୁଝାଯାଏ ଯେ, ଏପରି ନ ହେଲେ ଜୀବ ପ୍ରତି କୃପାରେ ଈଶ୍ୱରକୃତ ନରଶରୀର ଧାରଣର କୌଣସି ସାର୍ଥକତା ରହେ ନାହିଁ ।

### ଦୈବ ଏବଂ ପୁରୁଷକାର ସମ୍ବନ୍ଧରେ ଠାକୁରଙ୍କର ମତ :

ଭକ୍ତମାନଙ୍କୁ ଠାକୁର ଯେଉଁସବୁ ଉପଦେଶ ଦେଉଥିଲେ, ସେସବୁ ଭିତରେ ଆମେ ଦୁଇଟି ଭାବର କଥା ଦେଖିବାକୁ ପାଇଥାଉ । ତାଙ୍କର କେତୋଟି ଉକ୍ତି ଉଲ୍ଲେଖ କଲେ ହିଁ ପାଠକ ବୁଝିପାରିବେ । ଦେଖାଯାଏ, ଏକ ଦିଗରେ ସେ ତାଙ୍କର ଭକ୍ତମାନଙ୍କୁ କହୁଛନ୍ତି, ''(ମୁଁ) ଭାତ ରାନ୍ଧିଛି, ବାଢ଼ି ଦେଇଛି, ତୁମେମାନେ ବସିଯାଅ'', ''ଛାଞ୍ଚ ତିଆରି ହୋଇଛି, ସେ ଛାଞ୍ଚରେ ନିଜ ନିଜର ମନକୁ ପକାଅ ଓ ଗଢ଼ି ନିଅ'' । ପୁଣି ଅନ୍ୟ ଦିଗରେ କହୁଛନ୍ତି, ''ଗୋଟିଏ ଗୋଟିଏ କରି ସମସ୍ତ ବାସନା ତ୍ୟାଗ କର, ତା'ହେଲେ ତ ହେବ'', ''ଝଡ଼ର ଅଇଁଠା ପତ୍ର ପରି ହୋଇ ରହ'', ''କାମିନୀକାଞ୍ଚନ ତ୍ୟାଗ କରି ଈଶ୍ୱରଙ୍କୁ ଡାକ'', ''ମୁଁ ଷୋଳଭାଗ କରିଛି, ତମେ ଗୋଟିଏ ଭାଗ କର'' ଇତ୍ୟାଦି । ଆମମାନଙ୍କର ମନେହୁଏ, ଠାକୁରଙ୍କର ସେହି ଦୁଇ ଭାବର କଥାର ଅର୍ଥ ଅନେକ ସମୟରେ ବୁଝି ନ ପାରିବାରୁ ଆମେ ଦୈବ ଓ ପୁରୁଷକାର, ନିର୍ଭର ଓ ସାଧନର କେଉଁଟା ଅବଲମ୍ବନ କରି ଜୀବନରେ ଅଗ୍ରସର ହେବୁ, ତାହା ସ୍ଥିର କରିପାରି ନାହୁଁ ।

ଦକ୍ଷିଣେଶ୍ୱରରେ ଦିନେ ଆମେ ଜନୈକ ବନ୍ଧୁଙ୍କ[୧] ସହିତ ମନୁଷ୍ୟର ସ୍ୱାଧୀନ ଇଚ୍ଛା କିଛି ଅଛି ନା ନାହିଁ, ଏହି ବିଷୟ ନେଇ ଅନେକ ସମୟ ବାଦାନୁବାଦ ପରେ ଏହାର ଯଥାର୍ଥ ମୀମାଂସା ପାଇବା ପାଇଁ ଠାକୁରଙ୍କ ନିକଟରେ ଉପସ୍ଥିତ ହେଲୁ । ଠାକୁର ବାଳକମାନଙ୍କର ବିବାଦ କିଛି ସମୟ କୌତୁହଳରେ ଶୁଣିବା ପରେ ଗମ୍ଭୀର ଭାବରେ କହିଲେ, ''ସ୍ୱାଧୀନ ଇଚ୍ଛା ଫିଚ୍ଛା କାହାର କ'ଣ କିଛି

---

୧. ସ୍ୱାମୀ ନିରଞ୍ଜନାନନ୍ଦ, ୧୯୦୪ ଖ୍ରୀଷ୍ଟାବ୍ଦରେ ହରିଦ୍ୱାରରେ ତାଙ୍କର ଶରୀର ତ୍ୟାଗ ହୋଇଥିଲା ।

ଅଛି କି ରେ ? ଈଶ୍ୱରଙ୍କ ଇଚ୍ଛାରେ ହିଁ ଚିରକାଳ ସବୁ ହେଉଛି ଓ ହେବ । ମନୁଷ୍ୟ ଏକଥା ଶେଷ କାଳରେ ବୁଝିପାରେ । ତେବେ କ'ଣ ଜାଣିଛୁ, ଯେପରି ଗାଈକୁ ଲମ୍ବା ଦଉଡ଼ିରେ ଖୁଣ୍ଟରେ ବାନ୍ଧି ରଖିଛି—ଗାଈ ଖୁଣ୍ଟରୁ ଗୋଟିଏ ହାତ ଦୂରରେ ଠିଆ ହୋଇପାରେ, ପୁଣି ଦଉଡ଼ିଟା ଯେତେ ଲମ୍ବା ସେତେଦୂରକୁ ଯାଇ ମଧ ଠିଆ ହୋଇପାରେ—ମନୁଷ୍ୟର ସ୍ୱାଧୀନ ଇଚ୍ଛା ମଧ ସେହିପରି ଜାଣିବୁ । ଗାଈ ଏତିକି ଦୂର ଭିତରେ ଯେଉଁଠି ଇଚ୍ଛା ଶୋଉ, ଠିଆ ହେଉ ବା ବୁଲୁ—ମନେ କରି ମଣିଷ ତାକୁ ବାନ୍ଧେ । ସେହିପରି ଈଶ୍ୱର ମଧ ମଣିଷକୁ କିଛିଟା ଶକ୍ତି ଦେଇ ସେହି ସୀମା ଭିତରେ ସେ ଯେପରି ଇଚ୍ଛା, ଯେତେଟା ଇଚ୍ଛା ବ୍ୟବହାର କରୁ ବୋଲି ଛାଡ଼ି ଦେଇଛନ୍ତି । ସେଥିପାଇଁ ମନୁଷ୍ୟ ମନେ କରୁଛି ଯେ ସେ ସ୍ୱାଧୀନ । କିନ୍ତୁ ଦଉଡ଼ିଟା ଖୁଣ୍ଟରେ ବନ୍ଧା ହୋଇରହିଛି । ତେବେ କ'ଣ ଜାଣ୍ଣ, ତାଙ୍କ ପାଖରେ କାତର ହୋଇ ପ୍ରାର୍ଥନା କଲେ, ସେ ଦଉଡ଼ିଟାକୁ ଢିଲା କରି ବାନ୍ଧିପାରନ୍ତି, ଆହୁରି ଲମ୍ବା କରି ଦେଇପାରନ୍ତି, ଏପରିକି ଗଳାର ବନ୍ଧନ ମଧ ଖୋଲି ଦେଇପାରନ୍ତି ।''

କଥାଗୁଡ଼ିକ ଶୁଣି ଆମେ ପଚାରିଲୁ, ''ତେବେ ମହାଶୟ, ସାଧନଭଜନ କରିବା ତ ମନୁଷ୍ୟର ହାତରେ ନାହିଁ ? ସମସ୍ତେ ତ' କହିପାରନ୍ତି—ମୁଁ ଯାହା କିଛି କରୁଛି, ସବୁକିଛି ତାଙ୍କର ଇଚ୍ଛାରେ ହିଁ କରୁଛି ?''

ଠାକୁର ଉତ୍ତର ଦେଲେ, ମୁହଁରେ କେବଳ କହିଲେ କ'ଣ ହେବ ? କଣ୍ଟା ନାହିଁ, ଖୁଞ୍ଚା ନାହିଁ, ମୁହଁରେ କହିଲେ କ'ଣ ହେବ । କଣ୍ଟାରେ ହାତ ବାଜିଲେ ହିଁ କଣ୍ଟା ଫୁଟି, 'ଉଃ' କରିବାକୁ ହେବ । ସାଧନଭଜନ କରିବାଟା ଯଦି ମନୁଷ୍ୟର ହାତରେ ଥାଆନ୍ତା, ତେବେ ତ ସମସ୍ତେ ତାହା କରିପାରନ୍ତେ—କିନ୍ତୁ ପାରନ୍ତି ନାହିଁ କାହିଁକି ? ତେବେ କ'ଣ ଜାଣିଛୁ, ଯେତେଟା ଶକ୍ତି ସେ ତୁମକୁ ଦେଇଛନ୍ତି, ସେତେଟା ଠିକ୍ ଠିକ୍ ବ୍ୟବହାର ନ କଲେ ସେ ଆଉ ଅଧିକ ଦିଅନ୍ତି ନାହିଁ । ଏଥିପାଇଁ ପୁରୁଷକାର ବା ଉଦ୍ୟମର ପ୍ରୟୋଜନ । ଦେଖ ନା ସମସ୍ତଙ୍କୁ କିଛି ନା କିଛି ଉଦ୍ୟମ କରି ଈଶ୍ୱରକୃପାର ଅଧିକାରୀ ହେବାକୁ ହୁଏ । ଏପରି କଲେ ତାଙ୍କ କୃପାରେ ଦଶ ଜନ୍ମର ଭୋଗ ଗୋଟିଏ ଜନ୍ମରେ ହିଁ କଟିଯାଏ । କିନ୍ତୁ (ତାଙ୍କ ଉପରେ ନିର୍ଭର କରି) କିଛି କିଛି ଉଦ୍ୟମ କରିବାକୁ ହୁଏ । ଏହି ବିଷୟରେ ଗୋଟିଏ ଗଳ୍ପ ଶୁଣ—

**ଉକ୍ତ ବିଷୟରେ ଶ୍ରୀବିଷ୍ଣୁ ଓ ନାରଦ–ସମ୍ବାଦ :**

''ଗୋଲୋକ–ବିହାରୀ ବିଷ୍ଣୁ ଥରେ ନାରଦଙ୍କୁ କୌଣସି କାରଣରୁ ଅଭିଶାପ ଦେଲେ ଯେ, ତାଙ୍କୁ ନରକଭୋଗ କରିବାକୁ ହେବ । ନାରଦ ଏକଥା ଭାବି ଆକୁଳ ହେଲେ । ନାନାପ୍ରକାରରେ ସ୍ତବସ୍ତୁତି କରି ତାଙ୍କୁ ପ୍ରସନ୍ନ କରି କହିଲେ—ଆଚ୍ଛା ଠାକୁର, ନରକ କେଉଁଠାରେ, କିପରି, କେତେ ପ୍ରକାରର ଅଛି,

ମୋର ଜାଣିବାକୁ ଇଚ୍ଛା ହେଉଛି, କୃପା କରି ମୋତେ କୁହନ୍ତୁ । ବିଷ୍ଣୁ ଏହାଶୁଣି ମାଟିରେ ଖଡ଼ି ଦ୍ୱାରା ସ୍ୱର୍ଗ, ନର୍କ, ପୃଥିବୀ ଯେଉଁଠାରେ ଯେପରି ଅଛି ଚିତ୍ରକରି ଦେଖାଇ କହିଲେ, 'ଏଠାରେ ସ୍ୱର୍ଗ, ଆଉ ଏଠାରେ ନର୍କ ।' ନାରଦ କହିଲେ, 'ଠିକ୍ ତ ? ତେବେ ମୋର ଏହି ନର୍କଭୋଗ ହେଲା—ଏହା କହି ସେହି ଅଙ୍କା ହୋଇଥିବା ନର୍କର ଉପରେ ଗଡ଼ି ଠାକୁରଙ୍କୁ ପ୍ରଣାମ କଲେ । ବିଷ୍ଣୁ ହସି ହସି କହିଲେ, 'ଏ କ'ଣ ? ତୁମର ନର୍କ ଭୋଗ କିପରି ହେଲା ?' ନାରଦ କହିଲେ, 'କାହିଁକି ଠାକୁର, ସ୍ୱର୍ଗ ଓ ନର୍କ ତ ତୁମର ହିଁ ସୃଜନ ! ତୁମେ ଚିତ୍ର କରି ଦେଖାଇ ଯେତେବେଳେ କହିଲ—ଏଇଟା ନର୍କ, ସେତେବେଳେ ସେହି ସ୍ଥାନଟି ସତକୁ ସତ ନର୍କ ହେଲା, ଏବଂ ମୁଁ ସେଥିରେ ଗଡ଼ିବାରୁ ମୋର ନର୍କ ଭୋଗ ହୋଇଗଲା ।' ନାରଦ କଥାଗୁଡ଼ିକ ପ୍ରାଣର ବିଶ୍ୱାସର ସହିତ କହିଲେ ! ତେଣୁ ବିଷ୍ଣୁ ମଧ୍ୟ 'ତଥାସ୍ତୁ' କହିଲେ । ନାରଦଙ୍କୁ କିନ୍ତୁ ତାଙ୍କ କଥାରେ ବିଶ୍ୱାସ କରି ସେହି ଅଙ୍କା ହୋଇଥିବା ନର୍କରେ ଗଡ଼ାଗଡ଼ି କରିବାକୁ ପଡ଼ିଲା, (ସେହି ଉଦ୍ୟମ ଟିକକ କରି) ତେବେ ଯାଇ ତାଙ୍କର ନର୍କଭୋଗ କଟିଲା ।'' —ଏପରି କୃପାରାଜ୍ୟରେ ମଧ୍ୟ ଯେଉଁ ଉଦ୍ୟମ ଏବଂ ପୁରୁଷକାରର ସ୍ଥାନ ଅଛି, ତାହା ଠାକୁର ଏହି ଗଳ୍ପଟି ମାଧ୍ୟମରେ କେବେକେବେ ଆମମାନଙ୍କୁ ବୁଝାଇ କହୁଥିଲେ ।

## ମାନବର ଅସମ୍ପୂର୍ଣ୍ଣତା ସ୍ୱୀକାର କରି ଅବତାରପୁରୁଷଙ୍କର ମୁକ୍ତିର ପଥ ଆବିଷ୍କାର କରିବା :

ନରଦେହ ଧାରଣ କରି, ନରବତ୍ ଲୀଳାରେ ଅବତାର ପୁରୁଷଗଣଙ୍କୁ ଆମମାନଙ୍କ ପରି ଅନେକାଂଶରେ ଦୃଷ୍ଟିହୀନତା, ଅଳ୍ପଜ୍ଞତା ପ୍ରଭୃତି ଅନୁଭବ କରିବାକୁ ହୁଏ । ଆମରି ପରି ଉଦ୍ୟମ କରି ସେମାନଙ୍କୁ ସେହି ସମସ୍ତରୁ ମୁକ୍ତ ହେବାର ପଥ ଆବିଷ୍କାର କରିବାକୁ ହୁଏ ଏବଂ ଯେତେଦିନ ଏପଥ ଆବିଷ୍କୃତ ନ ହୁଏ, ସେତେଦିନ ସେମାନଙ୍କ ଅନ୍ତରରେ ନିଜ ଦେବସ୍ୱରୂପର ଆଭାସ ବେଳେ ବେଳେ ଅଳ୍ପକ୍ଷଣ ପାଇଁ ଉଦିତ ହେଲେ ମଧ୍ୟ ତାହା ପୁଣି ପ୍ରଚ୍ଛନ୍ନ ହୋଇଯାଏ । ଏହିପରି 'ବହୁଜନହିତାୟ' ମାୟାର ଆବରଣ ସ୍ୱୀକାର କରି ନେଇ ସେମାନଙ୍କୁ ଆମମାନଙ୍କ ପରି ଆଲୋକ-ଅନ୍ଧାରର ରାଜ୍ୟ ଭିତରେ ପଥ ଅଣ୍ଡାଳିବାକୁ ପଡ଼ିଥାଏ । ତେବେ ସ୍ୱାର୍ଥସୁଖଚେଷ୍ଟାର ଲେଶମାତ୍ର ସେମାନଙ୍କ ଭିତରେ ନ ଥିବାରୁ ସେମାନେ ଜୀବନ ପଥରେ ଆମମାନଙ୍କ ଅପେକ୍ଷା ଅଧିକ ଆଲୋକ ଦେଖିବାକୁ ପାଆନ୍ତି ଏବଂ ଆଭ୍ୟନ୍ତରୀଣ ସମଗ୍ର ଶକ୍ତିପୁଞ୍ଜ ସହଜରେ ଏକମୁଖୀ କରି ଅଚିରେ ଜୀବନ-ସମସ୍ୟାର ସମାଧାନ କରି ଲୋକକଲ୍ୟାଣସାଧନରେ ନିଯୁକ୍ତ ହୁଅନ୍ତି ।

## ମାନବ ବୋଲି ନ ଭାବିଲେ ଅବତାରପୁରୁଷଙ୍କର ଜୀବନ ଓ ଚେଷ୍ଟାର ଅର୍ଥ ଜାଣି ହୁଏ ନାହିଁ :

ମନୁଷ୍ୟର ଅସମ୍ପୂର୍ଣ୍ଣତା ଯଥାଯଥଭାବରେ ଅଙ୍ଗୀକାର କରିଥିଲେ ବୋଲି ଦେବ-ମାନବ ଠାକୁରଙ୍କର ମାନବଭାବର ଆଲୋଚନାରେ ଆମମାନଙ୍କର ପ୍ରଭୂତ କଲ୍ୟାଣ ସାଧିତ ହୁଏ ଏବଂ ଏଥିପାଇଁ ହିଁ ଆମେ ତାଙ୍କର ମାନବଭାବସକଳ ସର୍ବଦା ଅଗ୍ରଭାଗରେ ରଖି ତାଙ୍କର ଦେବଭାବର ଆଲୋଚନା କରିବାକୁ ପାଠକକୁ ଅନୁରୋଧ କରୁଛୁ । ଆମରି ପରି ଜଣେ ବୋଲି ତାଙ୍କୁ ନ ଭାବିଲେ, ତାଙ୍କର ସାଧନକାଳର ଅଲୌକିକ ଉଦ୍ୟମ ଓ ଚେଷ୍ଟାଦିର କୌଣସି ଅର୍ଥ ଖୋଜି ପାଇବା ନାହିଁ । ମନେ ହେବ, ଯିଏ ନିତ୍ୟ ପୂର୍ଣ୍ଣ, ତାଙ୍କର ପୁଣି ସତ୍ୟଲାଭ ନିମିତ୍ତ ଚେଷ୍ଟା କାହିଁକି ? ମନେ ହେବ, ତାଙ୍କର ଜୀବନର ଚେଷ୍ଟାଗୁଡ଼ିକ ଗୋଟିଏ ଲୋକ ଦେଖାଣିଆ କଥା ମାତ୍ର । କେବଳ ସେତିକି ନୁହେଁ, ଈଶ୍ୱର-ଲାଭ ନିମିତ୍ତ ଉଚ୍ଚ ଆଦର୍ଶସମୂହ ନିଜ ଜୀବନରେ ସୁପ୍ରତିଷ୍ଠିତ କରିବା ପାଇଁ ତାଙ୍କର ଉଦ୍ୟମ, ନିଷ୍ଠା ଓ ତ୍ୟାଗ ଆମମାନଙ୍କୁ ଏପରି କରିବାକୁ ଉତ୍ସାହିତ ନ କରି, ହୃଦୟକୁ ବିଷମ ଉଦାସୀନତାରେ ପୂର୍ଣ୍ଣ କରିବ ଏବଂ ଇହଜୀବନରେ ଆମମାନଙ୍କର ଜଡ଼ତ୍ୱ ଆଉ ମୋଚନ ହେବ ନାହିଁ ।

## ବଦ୍ଧମାନବ, କେବଳ ମାନବଭାବ ବୁଝିପାରେ :

ଠାକୁରଙ୍କର କୃପାଲାଭର ପ୍ରତ୍ୟାଶୀ ହେଲେ ମଧ୍ୟ ଆମମାନଙ୍କୁ ତାଙ୍କୁ ଆମପରି ମାନବଭାବାପନ୍ନ ବୋଲି ଗ୍ରହଣ କରିବାକୁ ହେବ । କାରଣ, ଠାକୁର ଆମମାନଙ୍କର ଦୁଃଖରେ ସମବେଦନାଭାଗୀ ହୋଇ ଆମମାନଙ୍କର ଦୁଃଖ ମୋଚନରେ ଅଗ୍ରସର ହେବେ । ଅତଏବ ଯେଉଁ ଦିଗରୁ ଦେଖିଲେ ମଧ୍ୟ, ତାଙ୍କୁ ମାନବଭାବାପନ୍ନ ବୋଲି ଚିନ୍ତା କରିବା ଛଡ଼ା ଆମମାନଙ୍କର ଅନ୍ୟ ଗତି ନାହିଁ । ବାସ୍ତବିକ, ଆମେ ଯେତେଦିନ ପର୍ଯ୍ୟନ୍ତ ସର୍ବବିଧ ବନ୍ଧନରୁ ମୁକ୍ତିଲାଭ କରି ନିର୍ଗୁଣ ଦେବ-ସ୍ୱରୂପରେ ସ୍ୱୟଂ ପ୍ରତିଷ୍ଠିତ ହୋଇ ନ ପାରିବୁ, ସେତେଦିନ ପର୍ଯ୍ୟନ୍ତ ଜଗତକାରଣ ଈଶ୍ୱରଙ୍କୁ ଏବଂ ଈଶ୍ୱର ଅବତାରମାନଙ୍କୁ ମାନବଭାବାପନ୍ନ ବୋଲି ହିଁ ଆମମାନଙ୍କୁ ଭାବିବାକୁ ଓ ଗ୍ରହଣ କରିବାକୁ ହେବ । ''ଦେବୋ ଭୂତ୍ୱା ଦେବଂ ୟଜେତ୍'' କଥାଟି ବାସ୍ତବିକ୍ ସତ୍ୟ । ତୁମେ ଯଦି ସ୍ୱୟଂ ସମାଧିବଳରେ ନିର୍ବିକଳ୍ପ ଭୂମିରେ ପହଞ୍ଚି ପାରିଥାଅ, ତେବେ ହିଁ ତୁମେ ଈଶ୍ୱରଙ୍କର ଯଥାର୍ଥ ସ୍ୱରୂପର ଉପଲବ୍ଧି ଓ ଧାରଣା କରି ତାଙ୍କର ଯଥାର୍ଥ ପୂଜା କରିପାରିବ । ଆଉ ଯଦି ତାହା ନ ପାରିଥାଅ, ତେବେ ତୁମର ପୂଜା ଉକ୍ତ ଦେବଭୂମିରେ ଉଠିବାର ଓ ଯଥାର୍ଥ ପୂଜାଧିକାର ପାଇବାର ଚେଷ୍ଟାରେ ହିଁ ପର୍ଯ୍ୟବସିତ ହେବ ଏବଂ ଜଗତକାରଣ ଈଶ୍ୱରଙ୍କୁ ବିଶିଷ୍ଟ ଶକ୍ତିସମ୍ପନ୍ନ ମାନବ ବୋଲି ତୁମର ସ୍ୱତଃ ଧାରଣା ହେଉଥିବ ।

**ଏଥିପାଇଁ ମାନବ ପ୍ରତି କରୁଣାରେ ଈଶ୍ୱରଙ୍କର ମାନବଦେହ ଧାରଣ, ସୁତରାଂ ମନୁଷ୍ୟ ଭାବି ଅବତାର-ପୁରୁଷଙ୍କର ଜୀବନ ଆଲୋଚନା ହିଁ କଲ୍ୟାଣକର :**

ଦେବତ୍ୱରେ ଆରୂଢ଼ ହୋଇ ସେହିପରି ଈଶ୍ୱରଙ୍କର ମାୟାତୀତ ଦେବସ୍ୱରୂପର ଯଥାର୍ଥ ପୂଜା କରିବାକୁ ସମର୍ଥ ବ୍ୟକ୍ତି ବିରଳ । ଆମମାନଙ୍କ ପରି ଦୁର୍ବଳ ଅଧିକାରୀ ସେହି ଅବସ୍ଥାରୁ ଏବେ ମଧ ବହୁ ଦୂରରେ ଅବସ୍ଥିତ । ସେଥିପାଇଁ ଆମମାନଙ୍କ ପରି ସାଧାରଣ ବ୍ୟକ୍ତିଙ୍କ ପ୍ରତି କରୁଣାପରବଶ ହୋଇ ଆମମାନଙ୍କର ହୃଦୟର ପୂଜାଗ୍ରହଣ କରିବା ପାଇଁ ଈଶ୍ୱରଙ୍କର ମାନବଭୂମିରେ ଅବତରଣ— ମାନବୀୟ ଭାବ ଓ ଦେହ ସ୍ୱୀକାର କରି ଦେବମାନବ-ରୂପଧାରଣ । ପୂର୍ବ ପୂର୍ବ ଯୁଗାବିର୍ଭୂତ ଦେବମାନବଗଣଙ୍କ ସହିତ ତୁଳନାରେ ଠାକୁରଙ୍କର ସାଧନକାଳର ଇତିହାସ ଆଲୋଚନା କରିବାରେ ଆମର ଅନେକ ସୁବିଧା ଅଛି, କାରଣ ଠାକୁର ସ୍ୱୟଂ ତାଙ୍କ ଜୀବନର ଏହି ସମୟର କଥା ବେଳେ ବେଳେ ଆମମାନଙ୍କ ନିକଟରେ ବିସ୍ତୃତଭାବରେ ଆଲୋଚନା କରିଥିବାରୁ ସେ ସମସ୍ତର ଜ୍ୱଳନ୍ତ ଚିତ୍ର ଆମମାନଙ୍କ ମନରେ ଦୃଢ଼ଭାବରେ ଅଙ୍କିତ ହୋଇ ରହିଅଛି । ପୁଣି, ଆମେ ତାଙ୍କ ନିକଟକୁ ଯିବାର ସ୍ୱଳ୍ପକାଳ ପୂର୍ବେ ତାଙ୍କର ସାଧକଜୀବନର ବିଚିତ୍ର ଅଭିନୟ ଦକ୍ଷିଣେଶ୍ୱର କାଳୀମନ୍ଦିରର ଲୋକମାନଙ୍କର ଚକ୍ଷୁ ସମ୍ମୁଖରେ ସଂଘଟିତ ହୋଇଥିଲା ଏବଂ ଏହି ସମସ୍ତ ବ୍ୟକ୍ତିମାନଙ୍କ ମଧରୁ ଅନେକେ ସେତେବେଳେ ମଧ ସେହି ସ୍ଥାନରେ ବିଦ୍ୟମାନ ଥିଲେ । ସେମାନଙ୍କ ନିକଟରୁ ମଧ ଏହି ବିଷୟରେ କିଛି କିଛି ଶୁଣିବାକୁ ଆମେ ସୁଯୋଗ ପାଇଥିଲୁ । ସେ ଯାହାହେଉ, ଏହି ବିଷୟର ଆଲୋଚନାରେ ପ୍ରବୃତ୍ତ ହେବା ପୂର୍ବରୁ ସାଧନତତ୍ତ୍ୱର ମୂଳସୂତ୍ରଗୁଡ଼ିକୁ ଥରେ ସାଧାରଣଭାବରେ ଆମେ ଆବୃତ୍ତି କରିନେବା ଭଲ । ଅତଏବ ସେହି ବିଷୟରେ ଆମେ ଏବେ କିଛି ଆଲୋଚନା କରିବୁ ।

# ପ୍ରଥମ ଅଧ୍ୟାୟ

## ସାଧକ ଓ ସାଧନା

ଠାକୁରଙ୍କ ଜୀବନରେ ସାଧକଭାବର ଯଥାଯଥ ପରିଚୟ ପାଇବାକୁ ହେଲେ ଆମମାନଙ୍କୁ ସାଧନା କାହାକୁ କହନ୍ତି ସେବିଷୟ ପ୍ରଥମେ ବୁଝିବାକୁ ହେବ । ଅନେକେ ହୁଏତ ଏକଥାରେ କହିବେ, ଭାରତ ତ' ଚିରକାଳ କୌଣସି ନା କୌଣସି ଭାବରେ ଧର୍ମସାଧନାରେ ଲାଗିରହିଛି, ତେବେ ଏକଥା ପୁଣି ଉପସ୍ଥାପନ କରି ପୁସ୍ତକର କଳେବର ବୃଦ୍ଧିର ଆବଶ୍ୟକତା କ'ଣ ? ଆବହମାନକାଳରୁ ଭାରତ ଆଧ୍ୟାତ୍ମିକ ରାଜ୍ୟର ସତ୍ୟସମୂହ ସାକ୍ଷାତ୍ ପ୍ରତ୍ୟକ୍ଷ କରିବାକୁ ନିଜର ଜାତୀୟ ଶକ୍ତି ଯେତେଦୂର ବ୍ୟୟ କରି ଆସିଛି ଏବଂ ଏବେ ମଧ୍ୟ କରୁଛି, ପୃଥିବୀର ଅନ୍ୟ କେଉଁ ଦେଶର କେଉଁ ଜାତି ଏତେଦୂର କରିଛି ? କେଉଁ ଦେଶରେ ବ୍ରହ୍ମଜ୍ଞ ଅବତାରପୁରୁଷମାନଙ୍କର ଆବିର୍ଭାବ ଏତେ ଅଧିକ ପରିମାଣରେ ହୋଇଛି ? ଅତଏବ ସାଧନା ସହିତ ଚିରପରିଚିତ ଆମମାନଙ୍କୁ ସେହି ବିଷୟର ମୂଳସୂତ୍ରଗୁଡ଼ିକୁ ପୁନରାବୃତ୍ତି କରି କହିବା ନିଷ୍ପ୍ରୟୋଜନ ।

### ସାଧନା ସମ୍ବନ୍ଧରେ ସାଧାରଣ ମାନବର ଭ୍ରାନ୍ତଧାରଣା :

ଏକଥା ସତ୍ୟ ହେଲେ ମଧ୍ୟ ଏପରି କରିବାର ପ୍ରୟୋଜନ ଅଛି । କାରଣ, ସାଧନା ସମ୍ବନ୍ଧରେ ଅନେକସ୍ଥଳରେ ଜନସାଧାରଣଙ୍କର ଏକ କିମ୍ଭୂତକିମାକାର ଧାରଣା ରହିଥିବା ଦେଖିବାକୁ ମିଳେ । ଉଦ୍ଦେଶ୍ୟ ବା ଗନ୍ତବ୍ୟ ପ୍ରତି ଲକ୍ଷ୍ୟ ହରାଇ ସେମାନେ ଅନେକ ସମୟରେ କେବଳ ଶାରୀରିକ କଠୋରତାରେ, ଦୁଷ୍ପ୍ରାପ୍ୟ ବସ୍ତୁସମୂହର ସଂଯୋଗରେ ବିଶେଷ ସ୍ଥାନରେ ନିରର୍ଥକ କ୍ରିୟାନୁଷ୍ଠାନରେ, ଶ୍ୱାସପ୍ରଶ୍ୱାସରୋଧରେ ଏବଂ ଏପରିକି, ଅସମ୍ବନ୍ଧ ମନର ବିସଦୃଶ ଚେଷ୍ଟାଦିରେ ମଧ୍ୟ ସାଧନାର ବିଶିଷ୍ଟ ପରିଚୟ ପାଇଥାନ୍ତି । ପୁଣି ଏପରି ମଧ୍ୟ ଦେଖାଯାଏ ଯେ, କୁସଂସ୍କାର ଏବଂ କୁଅଭ୍ୟାସରେ ବିକୃତ ମନକୁ ପ୍ରକୃତିସ୍ଥ ଓ ସହଜଭାବାପନ୍ନ କରି ଆଧ୍ୟାତ୍ମିକ ପଥରେ ଚାଳିତ କରିବାକୁ ମହାପୁରୁଷଗଣ ବେଳେବେଳେ ଯେଉଁ ସମସ୍ତ କ୍ରିୟା ବା ଉପାୟର ଉପଦେଶ କରିଅଛନ୍ତି, ସେହି ସବୁକୁ ସାଧନା ବୋଲି ଧାରଣାପୂର୍ବକ ସମସ୍ତଙ୍କର ପକ୍ଷରେ ସେଗୁଡ଼ିକର ଅନୁଷ୍ଠାନ ସମଭାବରେ ପ୍ରୟୋଜନ ବୋଲି ଅନେକ ସ୍ଥଳରେ ପ୍ରଚାରିତ ହେଉଅଛି । ବୈରାଗ୍ୟବାନ ନ ହୋଇ—ସଂସାରର କ୍ଷଣସ୍ଥାୟୀ ରୂପରସାଦିର ଭୋଗନିମିତ୍ତ ସମଭାବରେ ଲାଳାୟିତ ରହି ମନ୍ତ୍ର ବା କ୍ରିୟାବିଶେଷର ସାହାଯ୍ୟରେ ଜଗତକାରଣ ଈଶ୍ୱରଙ୍କୁ ମନ୍ତ୍ରୌଷଧି ଦ୍ୱାରା ବଶୀଭୂତ ସର୍ପସଦୃଶ ନିଜ କର୍ତ୍ତୃତ୍ୱାଧୀନ କରି ହୁଏ, ଏପରି ଭ୍ରାନ୍ତ ଧାରଣାର ବଶବର୍ତ୍ତୀ ହୋଇ ଅନେକଙ୍କୁ ବୃଥାଚେଷ୍ଟାରେ କାଳକ୍ଷେପଣ

କରିବା ଦେଖାଯାଇଥାଏ । ଅତଏବ ଯୁଗଯୁଗାନ୍ତରବ୍ୟାପୀ ଅଧ୍ୟବସାୟ ଓ ଚେଷ୍ଟା ଫଳରେ ଭାରତର ଋଷିମହାପୁରୁଷଗଣ ସାଧନା ସମ୍ବନ୍ଧରେ ଯେଉଁ ସମସ୍ତ ତତ୍ତ୍ୱରେ ଉପନୀତ ହୋଇଥିଲେ, ତାହାର ସଂକ୍ଷେପ ଆଲୋଚନା ଏଠାରେ ଅପ୍ରାସଙ୍ଗିକ ହେବ ନାହିଁ ।

## ସର୍ବଭୂତରେ ବ୍ରହ୍ମଦର୍ଶନ ହିଁ ସାଧନାର ଚରମ ଫଳ :

ଠାକୁରେ କହୁଥିଲେ, ''ସର୍ବଭୂତରେ ବ୍ରହ୍ମଦର୍ଶନ ବା ଈଶ୍ୱରଦର୍ଶନ ଶେଷକାଳର କଥା'' — ସାଧନାର ଚରମ ଉନ୍ନତିରେ ହିଁ ଏହା ମନୁଷ୍ୟର ଭାଗ୍ୟରେ ଉପସ୍ଥିତ ହୁଏ । ହିନ୍ଦୁର ସର୍ବୋଚ୍ଚ ପ୍ରାମାଣ୍ୟ ଶାସ୍ତ୍ର ବେଦୋପନିଷଦ୍ ସେହି କଥା ହିଁ କହିଛନ୍ତି । ଶାସ୍ତ୍ର କହିଛନ୍ତି, ଜଗତରେ ସ୍ଥୂଳ, ସୂକ୍ଷ୍ମ, ଚେତନ-ଅଚେତନ ଯାହା କିଛି ତୁମେ ଦେଖିବାକୁ ପାଉଛ — ଇଟା, କାଠ, ମାଟି, ପଥର, ମନୁଷ୍ୟ, ପଶୁ, ବୃକ୍ଷରାଜି, ଜୀବ-ଜନ୍ତୁ ଦେବ-ଉପଦେବ — ସମସ୍ତ ହିଁ ଏକ ଅଦ୍ୱୟ ବ୍ରହ୍ମବସ୍ତୁ । ବ୍ରହ୍ମବସ୍ତୁକୁ ହିଁ ତୁମେ ନାନାରୂପରେ ନାନାଭାବରେ ଦେଖୁଅଛ, ଶୁଣୁଅଛ, ସ୍ପର୍ଶ, ଘ୍ରାଣ ଓ ଆସ୍ୱାଦ କରୁଅଛ । ସେସମସ୍ତଙ୍କୁ ନେଇ ତୁମର ସମସ୍ତ ପ୍ରକାରର ଦୈନନ୍ଦିନ ବ୍ୟବହାର ଆଜୀବନ ନିଷ୍ପନ୍ନ ହେଲେ ମଧ୍ୟ ତୁମେ ତାହା ବୁଝି ନ ପାରି ଭାବୁଛ ଭିନ୍ନ ଭିନ୍ନ ବସ୍ତୁ ଓ ବ୍ୟକ୍ତି ସହିତ ତୁମେ ବ୍ୟବହାର କରୁଅଛ । କଥାଗୁଡ଼ିକ ଶୁଣି ଆମମାନଙ୍କର ମନରେ ଯେଉଁ ସନ୍ଦେହ ପରମ୍ପରାର ଉଦୟ ହୋଇଥାଏ ଏବଂ ଏହି ସମସ୍ତ ସନ୍ଦେହ ଦୂର କରିବା ପାଇଁ ଶାସ୍ତ୍ର ଯାହା କହିଛନ୍ତି, ପ୍ରଶ୍ନୋତ୍ତରଛଳରେ ତାହାର ସାରାଂଶ ଭାବଟି ପାଠକଙ୍କୁ ଏଠାରେ କହିଲେ ଏହା ସହଜରେ ହୃଦୟଙ୍ଗମ କରିହେବ ।

ପ୍ରଶ୍ନ — ଏକଥା ଆମର ପ୍ରତ୍ୟକ୍ଷ ହେଉ ନାହିଁ କାହିଁକି ?

ଉତ୍ତର — ତୁମେମାନେ ଭ୍ରମରେ ପଡ଼ିଅଛ । ଯେପର୍ଯ୍ୟନ୍ତ ଏହି ଭ୍ରମ ଦୂରୀଭୂତ ନ ହେବ, ସେପର୍ଯ୍ୟନ୍ତ ତୁମେ କିପରି ଏହି ଭ୍ରମ ଜାଣିପାରିବ ? ଯଥାର୍ଥ ବସ୍ତୁ ଓ ଅବସ୍ଥା ସହିତ ତୁଳନା କରି ଆମେ ବାହାର ଓ ଭିତରର ଭ୍ରମ ବୁଝିପାରୁ । ପୂର୍ବୋକ୍ତ ଭ୍ରମ ବୁଝିବାକୁ ହେଲେ ତୁମମାନଙ୍କର ମଧ୍ୟ ସେହିପରି ଜ୍ଞାନର ପ୍ରୟୋଜନ ।

## ଭ୍ରମ ବା ଅଜ୍ଞାନବଶତଃ ସତ୍ୟ ପ୍ରତ୍ୟକ୍ଷ ହୁଏ ନାହିଁ । ଅଜ୍ଞାନାବସ୍ଥାରେ ରହି ଅଜ୍ଞାନର କାରଣ ବୁଝାଯାଏ ନାହିଁ :

ପ୍ରଶ୍ନ — ଆଚ୍ଛା, ଏପରି ଭ୍ରମ ହେବାର କାରଣ କ'ଣ ଏବଂ କେବେଠାରୁ ଆମର ଏହି ଭ୍ରମ ଆସି ଉପସ୍ଥିତ ହେଲା ?

ଉତ୍ତର — ଭ୍ରମର କାରଣ ସର୍ବତ୍ର ଯାହା ଦେଖିବାକୁ ମିଳେ, ଏଠାରେ ମଧ୍ୟ ତାହା — ଅଜ୍ଞାନ । ଏହି ଅଜ୍ଞାନ କେତେବେଳେ ଯେ ଆସିଲା, ତାହା କିପରି ଜାଣିବ କହ ? ଅଜ୍ଞାନ ଭିତରେ ଯେତେକ୍ଷଣ ପଡ଼ି ରହିଛ, ସେତେକ୍ଷଣ ଏହା

ଜାଣିବାର ଚେଷ୍ଟା ବୃଥା । ସ୍ୱପ୍ନ ଯେତେକ୍ଷଣ ଦେଖାଯାଏ, ସେତେକ୍ଷଣ ସତ୍ୟ ବୋଲି ପ୍ରତୀତ ହୁଏ । ନିଦ୍ରାଭଙ୍ଗରେ ଜାଗ୍ରତ ଅବସ୍ଥା ସହିତ ତୁଳନା କରି ଏହାକୁ ମିଥ୍ୟା ବୋଲି ଧାରଣା ହୋଇଥାଏ । କହିପାର—ସ୍ୱପ୍ନ ଦେଖିବା ସମୟରେ କେବେ କେବେ କୌଣସି କୌଣସି ବ୍ୟକ୍ତିଙ୍କର 'ମୁଁ ସ୍ୱପ୍ନ ଦେଖୁଛି' ଏପରି ଧାରଣା ଥିବାର ଦେଖାଯାଏ । ସେଠାରେ ମଧ୍ୟ ଜାଗ୍ରତ ଅବସ୍ଥାର ସ୍ମୃତିରୁ ହିଁ ତା ମନରେ ସେହିଭାବର ଉଦୟ ହୋଇଥାଏ । ସେହିପରି ଜାଗ୍ରତ ଅବସ୍ଥାରେ ଜଗତ୍ ପ୍ରତ୍ୟକ୍ଷ କରିବା ସମୟରେ କାହାର କାହାର ଅଦ୍ୱୟ ବ୍ରହ୍ମବସ୍ତୁର ସ୍ମୃତି ହେବାର ଦେଖାଯାଏ ।

ପ୍ରଶ୍ନ—ତେବେ ଉପାୟ ?

ଉତ୍ତର—ଏହି ଅଜ୍ଞାନ ଦୂର କରିବା ହିଁ ଏକମାତ୍ର ଉପାୟ । ଏହି ଅଜ୍ଞାନ ବା ଭ୍ରମ ଯେ ଦୂର କରାଯାଇପାରେ, ତାହା ତୁମମାନଙ୍କୁ ନିଶ୍ଚିତ ଭାବରେ କହିପାରେ । ପୂର୍ବକାଳର ଋଷିଗଣ ତାହା ଦୂର କରିବାକୁ ସମର୍ଥ ହୋଇଥିଲେ ଏବଂ କିପରି ଭାବରେ ଦୂର କରିବାକୁ ହେବ କହି ଯାଇଛନ୍ତି ।

ପ୍ରଶ୍ନ—ଆଚ୍ଛା, କିନ୍ତୁ ସେହି ଉପାୟ ଜାଣିବା ପୂର୍ବରୁ ଆହୁରି ଗୋଟିଏ ଦୁଇଟି ପ୍ରଶ୍ନ କରିବାକୁ ଇଚ୍ଛା ହେଉଛି । ଆମେ ଏତେ ଲୋକ ଯାହା ଦେଖୁଛୁ, ପ୍ରତ୍ୟକ୍ଷ କରୁଛୁ, ତାକୁ ତୁମେ ଭ୍ରମ କହୁଛ, ଆଉ ଅଳ୍ପସଂଖ୍ୟକ ଋଷିମାନେ ଯାହା ବା ଯେଉଁ ଭାବରେ ଜଗତକୁ ପ୍ରତ୍ୟକ୍ଷ କରିଛନ୍ତି, ତାହା ସତ୍ୟ କହୁଛ—ଏହା କ'ଣ ସମ୍ଭବ ହୋଇ ନ ପାରେ ଯେ, ସେମାନେ ଯାହା ପ୍ରତ୍ୟକ୍ଷ କରିଅଛନ୍ତି, ସେସବୁ ଭୁଲ ?

## ଜଗତକୁ ଋଷିମାନେ ଯେପରି ଦେଖିଛନ୍ତି ତାହା ହିଁ ସତ୍ୟ, ଏହାର କାରଣ :

ଉତ୍ତର—ବହୁସଂଖ୍ୟକ ବ୍ୟକ୍ତି ଯାହା ବିଶ୍ୱାସ କରିବେ, ତାହା ଯେ ସର୍ବଦା ସତ୍ୟ ହେବ ଏପରି କିଛି ନିୟମ ନାହିଁ । ଋଷିମାନଙ୍କର ପ୍ରତ୍ୟକ୍ଷକୁ ସତ୍ୟ କହୁଛୁ, କାରଣ ଏହି ପ୍ରତ୍ୟକ୍ଷସହାୟରେ ସେମାନେ ସର୍ବବିଧ ଦୁଃଖ ହସ୍ତରୁ ମୁକ୍ତ ହୋଇ ସର୍ବପ୍ରକାରରେ ଭୟଶୂନ୍ୟ ଓ ଚିରଶାନ୍ତିର ଅଧିକାରୀ ହୋଇଥିଲେ ଏବଂ ନିଶ୍ଚିତ ମରଣଶୀଳ ମାନବଜୀବନର ସମସ୍ତ ପ୍ରକାରର ବ୍ୟବହାର-ଚେଷ୍ଟାଦିର ଗୋଟିଏ ଉଦ୍ଦେଶ୍ୟର ମଧ୍ୟ ସନ୍ଧାନ ପାଇଥିଲେ । ତଦ୍‌ଭିନ୍ନ ଯଥାର୍ଥ ଜ୍ଞାନ ମାନବ ମନରେ ସର୍ବଦା ସହିଷ୍ଣୁତା, ସନ୍ତୋଷ, କରୁଣା, ଦୀନତା ପ୍ରଭୃତି ସଦ୍‌ଗୁଣସମୂହର ବିକାଶ କରି ଏହାକୁ ଅଦ୍ଭୁତ ଉଦାରତାସମ୍ପନ୍ନ କରିଥାଏ; ଋଷିମାନଙ୍କ ଜୀବନରେ ଏପରି ଅସାଧାରଣ ଗୁଣ ଓ ଶକ୍ତିର ପରିଚୟ ଆମେ ଶାସ୍ତ୍ରରେ ପାଇଥାଉ ଏବଂ ସେମାନଙ୍କର ପଦାନୁସରଣରେ ଚାଲି, ଯେଉଁମାନେ ସିଦ୍ଧିଲାଭ କରନ୍ତି, ସେମାନଙ୍କ ଭିତରେ ଏସବୁର ପରିଚୟ ଏବେ ମଧ୍ୟ ଦେଖିବାକୁ ପାଉ ।

**ଅନେକଙ୍କର ଏକ ପ୍ରକାରର ଭ୍ରମ ହେଲେ**
**ମଧ୍ୟ ଭ୍ରମ କଦାପି ସତ୍ୟ ହୁଏ ନାହିଁ :**

ପ୍ରଶ୍ନ—ଆଚ୍ଛା, କିନ୍ତୁ ଆମର ସମସ୍ତଙ୍କର ଭ୍ରମ ଏକ ପ୍ରକାରର ହେଲା କିପରି ? ମୁଁ ଯାହାକୁ ପଶୁ ବୋଲି ବୁଝେ, ତୁମେ ମଧ୍ୟ ତାକୁ ପଶୁ ଭିନ୍ନ ମନୁଷ୍ୟ ବୋଲି ବୁଝ ନାହିଁ; ଏପରି, ଅନ୍ୟ ସମସ୍ତ ବିଷୟରେ ମଧ୍ୟ ଦେଖାଯାଏ । ଏତେ ଲୋକଙ୍କର ଏପରି ସମସ୍ତ ବିଷୟରେ ଏକ କାଳରେ ଏକ ପ୍ରକାରର ଭୁଲ୍ ହେବା କମ୍ ଆଶ୍ଚର୍ଯ୍ୟର କଥା ନୁହେଁ ! ପାଞ୍ଚଜଣ ଗୋଟିଏ ବିଷୟରେ ଭୁଲ ଧାରଣା କଲେ ମଧ୍ୟ ଅନ୍ୟ ପାଞ୍ଚଜଣଙ୍କର ସେହି ବିଷୟରେ ସତ୍ୟଦୃଷ୍ଟି ରହିଥାଏ, ସର୍ବତ୍ର ଏହିପରି ଦେଖାଯାଏ । ଏଠାରେ କିନ୍ତୁ ଏହି ନିୟମର ସମ୍ପୂର୍ଣ୍ଣ ବ୍ୟତିକ୍ରମ ହେଉଅଛି । ଏଥିପାଇଁ ଭ୍ରମକଥା ସମ୍ଭବପର ବୋଲି ବୋଧ ହୁଏ ନାହିଁ ।

**ବିରାଟ ମନରେ ଜଗତରୂପକ କଳ୍ପନା ବିଦ୍ୟମାନ ବୋଲି**
**ହିଁ ମାନବସାଧାରଣର ଏକପ୍ରକାରର ଭ୍ରମ ହେଉଅଛି ।**
**ବିରାଟ ମନ କିନ୍ତୁ ଏଥିପାଇଁ ଭ୍ରମରେ ଆବଦ୍ଧ ନୁହେଁ :**

ଉତ୍ତର—ଅଳ୍ପସଂଖ୍ୟକ ଋଷିମାନଙ୍କୁ ଜନସାଧାରଣଙ୍କ ମଧ୍ୟରେ ଗଣନା ନ କରିବାରୁ ତୁମେ ଏଠାରେ ନିୟମର ବ୍ୟତିକ୍ରମ ଦେଖିବାକୁ ପାଉଛ । ନତୁବା ପୂର୍ବ ପ୍ରଶ୍ନରେ ହିଁ ଏବିଷୟର ଉତ୍ତର ଦିଆହୋଇଅଛି । ତେବେ ଯେତେବେଳେ ପଚାରୁଛ, ସମସ୍ତଙ୍କର ଭ୍ରମ ଏକପ୍ରକାରର କିପରି ହେଲା ? ତା'ର ଉତ୍ତରରେ ଶାସ୍ତ୍ର କହନ୍ତି—ଏକ ଅସୀମ ଅନନ୍ତ ସମଷ୍ଟି-ମନରେ ଜଗତରୂପ କଳ୍ପନାର ଉଦୟ ହୋଇଅଛି । ତୁମର, ମୋର ଏବଂ ଜନସାଧାରଣଙ୍କର ଏହି ବ୍ୟଷ୍ଟିମନ ସେହି ବିରାଟ ମନର ଅଂଶ ଓ ଅଙ୍ଗୀଭୂତ ହୋଇଥିବାରୁ ଆମମାନଙ୍କୁ ଗୋଟିଏ ପ୍ରକାରର କଳ୍ପନା ଅନୁଭବ କରିବାକୁ ହେଉଛି । ଏଥିପାଇଁ ଆମେ ପ୍ରତ୍ୟେକେ ପଶୁକୁ ପଶୁ ଭିନ୍ନ ଅନ୍ୟ କିଛି ବୋଲି ଇଚ୍ଛା ମୁତାବକ ଦେଖିବା ବା କଳ୍ପନା କରିପାରୁ ନାହୁଁ । ସେଥିପାଇଁ ପୁଣି ଯଥାର୍ଥ ଜ୍ଞାନଲାଭ କରି ଆମମାନଙ୍କ ମଧ୍ୟରେ ଜଣେ ସର୍ବପ୍ରକାର ଭ୍ରମହସ୍ତରୁ ମୁକ୍ତିଲାଭ କଲେ ମଧ୍ୟ ଅନ୍ୟ ସମସ୍ତେ ଯେପରି ଭ୍ରମରେ ପଡ଼ିଅଛନ୍ତି, ସେପରି ହିଁ ରହିଥାନ୍ତି । ଆଉ ଗୋଟିଏ କଥା, ବିରାଟ ମନରେ ଜଗତରୂପ କଳ୍ପନାର ଉଦୟ ହେଲେ ମଧ୍ୟ ସେ ଆମମାନଙ୍କ ପରି ଅଜ୍ଞାନବନ୍ଧନରେ ଜଡ଼ୀଭୂତ ହୁଅନ୍ତି ନାହିଁ । କାରଣ, ସେ ସର୍ବଦର୍ଶୀ; ଅଜ୍ଞାନପ୍ରସୂତ ଜଗତକଳ୍ପନାର ଭିତରେ ଓ ବାହାରେ ଅଦ୍ୱୟ ବ୍ରହ୍ମବସ୍ତୁକୁ ଓତଃପ୍ରୋତଭାବରେ ବିଦ୍ୟମାନ ଦେଖିବାକୁ ପାଇଥାନ୍ତି । ଏହା କରି ପାରୁ ନାହୁଁ ବୋଲି ଆମମାନଙ୍କର କଥା ସ୍ୱତନ୍ତ୍ର ହୋଇଯାଏ । ଠାକୁର ଯେପରି କହୁଥିଲେ, ''ସାପ ମୁହଁରେ ବିଷ ରହିଛି, ସାପ ସେହି ମୁହଁ ଦେଇ

ପ୍ରତିଦିନ ଆହାର କରୁଛି, କିନ୍ତୁ ସାପର ସେଥିରେ କିଛି ହେଉ ନାହିଁ । କିନ୍ତୁ ସାପ ଯାହାକୁ କାମୁଡ଼େ, ସେହି ବିଷରେ ତା'ର ତତ୍‌କ୍ଷଣାତ୍ ମୃତ୍ୟୁ ହୋଇଥାଏ !''

**ଜଗତରୂପକ କଳ୍ପନା ଦେଶକାଳର ବାହାରେ ଅବସ୍ଥିତ ।**
**ପ୍ରକୃତି ଅନାଦି :**

ଅତଏବ ଶାସ୍ତ୍ର ଅନୁଧ୍ୟାନରେ ଦେଖାଗଲା, ବିଶ୍ୱ-ମନର କଳ୍ପନାସମ୍ଭୂତ ଜଗତଟି ଏକ ପ୍ରକାରରେ ଆମମାନଙ୍କର ମଧ୍ୟ ମନଃକଳ୍ପିତ । କାରଣ, ଆମମାନଙ୍କର କ୍ଷୁଦ୍ର ବ୍ୟଷ୍ଟି-ମନ ସମଷ୍ଟିଭୂତ ବିଶ୍ୱମନ ସହିତ ଶରୀର ଓ ଅବୟବାଦି ପରି ଅବିଚ୍ଛେଦ୍ୟ ସମ୍ବନ୍ଧରେ ନିତ୍ୟ ଅବସ୍ଥିତ । ପୁଣି ସେହି ଜଗତରୂପ କଳ୍ପନା ଯେ କୌଣସି କାଳରେ ବିଶ୍ୱ-ମନରେ ନ ଥିଲା, ପରେ ଆରମ୍ଭ ହେଲା, ଏକଥା ମଧ୍ୟ କୁହାଯାଇ ପାରେ ନାହିଁ । କାରଣ ନାମ ଓ ରୂପ ବା ଦେଶ ଓ କାଳରୂପ ପଦାର୍ଥଦ୍ୱୟ — ଯାହା ନ ଥିଲେ କୌଣସି ପ୍ରକାରର ବିଚିତ୍ରତାର ସୃଷ୍ଟି ହୋଇପାରେ ନାହିଁ — ଜଗତରୂପକ କଳ୍ପନାର ହିଁ ମଧ୍ୟଗତ ବସ୍ତୁ ଅଥବା ସେହି କଳ୍ପନାର ସହିତ ଏସବୁ ଅବିଚ୍ଛେଦ୍ୟଭାବରେ ନିତ୍ୟ ବିଦ୍ୟମାନ । ସ୍ଥିର ଭାବରେ ଟିକେ ଚିନ୍ତା କରି ଦେଖିଲେ ପାଠକ ଏକଥା ବୁଝିପାରିବେ ଏବଂ ବେଦାଦି ଶାସ୍ତ୍ର କାହିଁକି ସୃଜନଶକ୍ତିର ମୂଳୀଭୂତ କାରଣ ପ୍ରକୃତି ବା ମାୟାକୁ ଅନାଦି ବା କାଳାତୀତ ବୋଲି ଶିକ୍ଷା ଦେଇଛନ୍ତି, ତାହା ମଧ୍ୟ ହୃଦୟଙ୍ଗମ ହେବ । ଜଗତଟି ଯଦି ମନଃକଳ୍ପିତ ହୁଏ ଏବଂ ଏହି କଳ୍ପନାର ଆରମ୍ଭ ଯଦି ଆମେ 'କାଳ' କହିଲେ ଯାହା ବୁଝୁ ତା ଭିତରେ ନ ହୋଇଥାଏ, ତେବେ କଥାଟା ହେଲା ଯେ, କାଳରୂପ କଳ୍ପନାର ସଙ୍ଗେ ସଙ୍ଗେ ହିଁ ଜଗତରୂପ କଳ୍ପନାଟି ତଦାଶ୍ରୟ ବିଶ୍ୱ-ମନରେ ବିଦ୍ୟମାନ ରହିଅଛି । ଆମମାନଙ୍କର କ୍ଷୁଦ୍ର ବ୍ୟଷ୍ଟି-ମନ ବହୁକାଳ ଧରି ସେହି କଳ୍ପନା ଦେଖି ଜଗତର ଅସ୍ତିତ୍ୱରେ ଦୃଢ଼ ଧାରଣା କରି ରହିଅଛି ଏବଂ ଜଗତରୂପ କଳ୍ପନାର ଅତୀତ ଅଦ୍ୱୟ ବ୍ରହ୍ମବସ୍ତୁର ସାକ୍ଷାତ ଦର୍ଶନରୁ ବହୁକାଳ ବଞ୍ଚିତ ରହି ଜଗତଟା ଯେ ମନଃକଳ୍ପିତ ବସ୍ତୁମାତ୍ର ଏକଥା ଗୋଟିଏ ସମୟରେ ଭୁଲିଯାଇ ନିଜର ଭ୍ରମ ଏବେ ବୁଝିପାରୁ ନାହିଁ । କାରଣ ପୂର୍ବରୁ କୁହାଯାଇଛି, ଯଥାର୍ଥ ବସ୍ତୁ ଓ ଅବସ୍ଥା ସହିତ ତୁଳନା କରି ହିଁ ଆମେ ବାହାରର ଓ ଭିତରର ଭ୍ରମ ଜାଣିବାକୁ ସର୍ବଦା ସକ୍ଷମ ହେଉ ।

**ଦେଶକାଳାତୀତ ଜଗତକାରଣ ସହିତ**
**ପରିଚିତ ହେବାର ଚେଷ୍ଟା ହିଁ ସାଧନା :**

ଏବେ ବୁଝାଯାଉଅଛି ଯେ, **ଜଗତ** ସମ୍ବନ୍ଧରେ ଆମମାନଙ୍କର ଧାରଣା ଓ ଅନୁଭବ ଇତ୍ୟାଦି **ବହୁକାଳ-ସଞ୍ଚିତ** ଅଭ୍ୟାସ ଫଳରେ ବର୍ତ୍ତମାନର ଆକାର ଧାରଣ କରିଅଛି ଏବଂ ତତ୍‌ସମ୍ବନ୍ଧରେ ଯଥାର୍ଥ-ଜ୍ଞାନରେ ଉପନୀତ ହେବାକୁ ହେଲେ ଆମମାନଙ୍କୁ ଏବେ ନାମ-ରୂପ, ଦେଶ-କାଳ, ମନ-ବୁଦ୍ଧି ପ୍ରଭୃତି ଜଗତ

ଅନ୍ତର୍ଗତ ସମସ୍ତ ବିଷୟର ଅତୀତ ପଦାର୍ଥ ସହିତ ପରିଚିତ ହେବାକୁ ହେବ । ସେହି ପରିଚୟ ପାଇବାର ଚେଷ୍ଟାକୁ ହିଁ ବେଦପ୍ରମୁଖ ଶାସ୍ତ୍ର 'ସାଧନା' ବୋଲି ନିର୍ଦ୍ଦେଶ କରିଛନ୍ତି; ଏବଂ ଏହି ଚେଷ୍ଟା ଜ୍ଞାତ ବା ଅଜ୍ଞାତସାରରେ ଯେଉଁ ସ୍ତ୍ରୀ ବା ପୁରୁଷଙ୍କଠାରେ ବିଦ୍ୟମାନ, ସେମାନେ ହିଁ ଭାରତରେ ସାଧକ ନାମରେ ଅଭିହିତ ହୋଇଥାଆନ୍ତି ।

## 'ନେତି, ନେତି' ଓ 'ଇତି, ଇତି' ସାଧନପଥ :

ସାଧାରଣଭାବରେ କହିବାକୁ ଗଲେ, ଜଗତର ଅତୀତ ବସ୍ତୁ ଅନୁସନ୍ଧାନର ପୂର୍ବୋକ୍ତ ଚେଷ୍ଟା ଏତେକାଳ ପର୍ଯ୍ୟନ୍ତ ଦୁଇଟି ପ୍ରଧାନ ପଥରେ ପ୍ରବାହିତ ହୋଇ ଆସିଅଛି । ପ୍ରଥମ, ଶାସ୍ତ୍ର ଯାହାକୁ 'ନେତି, ନେତି' ବା ଜ୍ଞାନମାର୍ଗ ବୋଲି ଦର୍ଶାଇଛି; ଏବଂ ଦ୍ୱିତୀୟ, ଯାହା 'ଇତି, ଇତି' ବା ଭକ୍ତିମାର୍ଗ ବୋଲି ନିର୍ଦ୍ଦିଷ୍ଟ ହୋଇଅଛି । ଜ୍ଞାନମାର୍ଗର ସାଧକ ଚରମଲକ୍ଷ୍ୟର କଥା ପ୍ରଥମରୁ ହିଁ ହୃଦୟରେ ଧାରଣା ଓ ସର୍ବଦା ସ୍ମରଣ ରଖି ଜ୍ଞାତସାରରେ ତାହା ଅଭିମୁଖରେ ଦିନକୁ ଦିନ ଅଗ୍ରସର ହୋଇଥାନ୍ତି । ଭକ୍ତିପଥର ପଥିକମାନେ ଚରମ ଅବସ୍ଥାରେ କେଉଁଠି ଉପସ୍ଥିତ ହେବେ, ସେ ବିଷୟରେ ଅନେକ ସ୍ଥଳରେ ଅଜ୍ଞ ଥାଆନ୍ତି ଏବଂ ଉଚ୍ଚରୁ ଉଚ୍ଚତର ଲକ୍ଷ୍ୟାନ୍ତର ପରିଗ୍ରହ କରୁ କରୁ ଅଗ୍ରସର ହୋଇ ପରିଶେଷରେ ଜଗତର ଅତୀତ ଅଦ୍ୱୈତବସ୍ତୁର ସାକ୍ଷାତ୍ ପରିଚୟ ଲାଭ କରିଥାଆନ୍ତି । କିନ୍ତୁ ଜଗତ ସମ୍ବନ୍ଧରେ ସାଧାରଣ ଜନଗଣଙ୍କର ଯେଉଁ ଧାରଣା ଅଛି, ତାହା ଉଭୟ ପଥର ପଥିକଗଣଙ୍କୁ ହିଁ ତ୍ୟାଗ କରିବାକୁ ହୁଏ । ଜ୍ଞାନୀ ଏହାକୁ ପ୍ରଥମରୁ ହିଁ ସର୍ବତୋଭାବରେ ପରିତ୍ୟାଗ କରିବାକୁ ଚେଷ୍ଟା କରନ୍ତି; ଏବଂ ଭକ୍ତ ଏହାର କେତେକ ଛାଡ଼ି କେତେକ ରଖି ସାଧନାରେ ପ୍ରବୃତ୍ତ ହେଲେ ମଧ୍ୟ ପରିଣାମରେ ଜ୍ଞାନୀଙ୍କ ପରି ଏହାର ସମସ୍ତ ତ୍ୟାଗ କରି 'ଏକମେବାଦ୍ୱିତୀୟମ୍' ତତ୍ତ୍ୱରେ ଉପସ୍ଥିତ ହୁଅନ୍ତି । ଜଗତ ସମ୍ବନ୍ଧରେ ଉଲ୍ଲିଖିତ ସ୍ୱାର୍ଥପର, ଏକମାତ୍ର ଭୋଗସୁଖ ଲାଭ ହିଁ ଲକ୍ଷ୍ୟବୋଲି ସାଧାରଣ ଧାରଣାର ପରିହାରକୁ ଶାସ୍ତ୍ର 'ବୈରାଗ୍ୟ' ବୋଲି କହିଛନ୍ତି ।

ନିତ୍ୟ ପରିବର୍ତ୍ତନଶୀଳ ନିଶ୍ଚିତ ମରଣଶୀଳ ମାନବଜୀବନରେ ଜଗତର ଅନିତ୍ୟତା ଜ୍ଞାନ ସହଜରେ ହିଁ ଆସି ଉପସ୍ଥିତ ହୁଏ । ସେଥିପାଇଁ ଜଗତସମ୍ବନ୍ଧୀୟ ସାଧାରଣ ଧାରଣା ତ୍ୟାଗ କରି 'ନେତି, ନେତି' ମାର୍ଗରେ ଜଗତକାରଣର ଅନୁସନ୍ଧାନ କରିବା ଭଳି ଚିନ୍ତାଧାରା ପ୍ରାଚୀନ ଯୁଗରେ ମନୁଷ୍ୟ ମନରେ ପ୍ରଥମେ ହିଁ ଉପସ୍ଥିତ ହୋଇଥିଲା ବୋଲି ବୋଧହୁଏ । ସେଥିପାଇଁ ଭକ୍ତି ଓ ଜ୍ଞାନ ଉଭୟ ମାର୍ଗ ସମକାଳରେ ପ୍ରଚଳିତ ଥିଲେ ମଧ୍ୟ ଭକ୍ତିପଥର ସମସ୍ତ ବିଭାଗର ସମ୍ପୂର୍ଣ୍ଣ ପରିପୁଷ୍ଟି ହେବା ପୂର୍ବରୁ ହିଁ ଉପନିଷଦରେ ଜ୍ଞାନମାର୍ଗର ସମ୍ୟକ ପରିପୁଷ୍ଟି ହୋଇଥିବାର ଦେଖିବାକୁ ମିଳେ ।

## 'ନେତି, ନେତି' ମାର୍ଗର ଲକ୍ଷ୍ୟ—'ମୁଁ କିଏ' ସେ ବିଷୟରେ ସନ୍ଧାନ କରିବା :

'ନେତି, ନେତି'—ନିତ୍ୟସ୍ୱରୂପ ଜଗତକାରଣ 'ଏହା ନୁହେଁ, ତାହା ନୁହେଁ' କରି ସାଧନ ପଥରେ ଅଗ୍ରସର ହୋଇ ମାନବ ସ୍ୱଳ୍ପକାଳରେ ହିଁ ଅନ୍ତର୍ମୁଖ ହୋଇ ଯାଇଥିଲା, ଉପନିଷଦ ଏହି ବିଷୟରେ ସାକ୍ଷ୍ୟ ପ୍ରଦାନ କରିଥାଏ । ମାନବ ବୁଝିଥିଲା, ବାହାରର ଅନ୍ୟ ବସ୍ତୁଗୁଡ଼ିକ ଅପେକ୍ଷା ତାହାର ନିଜ ଦେହମନ ହିଁ ତାକୁ ସର୍ବାଗ୍ରେ ଜଗତ ସହିତ ଯୁକ୍ତ କରି ରଖିଅଛି । ଅତଏବ, ଦେହ-ମନ ଅବଲମ୍ୱନରେ ଜଗତକାରଣର ଅନ୍ୱେଷଣରେ ଅଗ୍ରସର ହେଲେ ତାହାର ସନ୍ଧାନ ଶୀଘ୍ର ପାଇବାର ସମ୍ଭାବନା ଅଛି । ପୁଣି ''ହାଣ୍ଡି ମଧ୍ୟରୁ ଗୋଟିଏ ଭାତକୁ ଚିପିଲେ ଯେପରି ସମ୍ପୂର୍ଣ୍ଣ ହାଣ୍ଡିର ଭାତ ଠିକ୍ ହୋଇଛି ନା ନାହିଁ ବୁଝାଯାଏ; ସେହିପରି ନିଜ ଭିତରେ ନିତ୍ୟ-କାରଣ-ସ୍ୱରୂପର ଅନୁସନ୍ଧାନ ମିଳିଲେ ଅପର ବସ୍ତୁ ଓ ବ୍ୟକ୍ତିସମୂହଙ୍କର ଅନ୍ତରରେ ତାହାର ଅନ୍ୱେଷଣ କରି ହେବ । ଏଥିପାଇଁ ଜ୍ଞାନପଥର ପଥିକ ନିକଟରେ 'ମୁଁ କିଏ', ଏବିଷୟର ଅନୁସନ୍ଧାନ ହିଁ ଏକମାତ୍ର ଲକ୍ଷ୍ୟ ହୋଇଉଠେ ।

## ନିର୍ବିକଳ୍ପ ସମାଧି :

ପୂର୍ବେ କୁହାଯାଇଛି, ଜଗତସମ୍ୱନ୍ଧୀୟ ସାଧାରଣ ଧାରଣା ଜ୍ଞାନୀ ଓ ଭକ୍ତ ଉଭୟପ୍ରକାର ସାଧକଙ୍କୁ ହିଁ ତ୍ୟାଗ କରିବାକୁ ହୋଇଥାଏ । ସେହି ଧାରଣାର ସମ୍ପୂର୍ଣ୍ଣ ତ୍ୟାଗରେ ହିଁ ମାନବମନ ସମସ୍ତବୃତ୍ତିରହିତ ହୋଇ ସମାଧିର ଅଧିକାରୀ ହୁଏ । ସେହିପରି ସମାଧିକୁ ହିଁ ଶାସ୍ତ୍ର 'ନିର୍ବିକଳ୍ପ' ସମାଧି ଆଖ୍ୟା ପ୍ରଦାନ କରିଛନ୍ତି । ଜ୍ଞାନ ପଥର ସାଧକ 'ମୁଁ କିଏ' ଏହି ତତ୍ତ୍ୱର ଅନୁସନ୍ଧାନରେ ଅଗ୍ରସର ହୋଇ କିପରି ନିର୍ବିକଳ୍ପ ସମାଧିରେ ଉପସ୍ଥିତ ହୁଅନ୍ତି ଏବଂ ସେହି ସମୟରେ ତାଙ୍କର କେଉଁଭଳି ଅନୁଭବ ହୋଇଥାଏ, ତାହା ଆମେ ପାଠକଙ୍କୁ ଅନ୍ୟତ୍ର କହିଛୁ ।[୧] ଅତଏବ ଭକ୍ତିପଥର ପଥିକ ଏହି ସମାଧିର ଅନୁଭବରେ କିପରି ପହଞ୍ଚନ୍ତି ପାଠକଙ୍କୁ ଏବେ ସେ ବିଷୟରେ କିଞ୍ଚିତ୍ କହିବା କର୍ତ୍ତବ୍ୟ ।

ଭକ୍ତି ମାର୍ଗକୁ 'ଇତି, ଇତି'-ସାଧନ ପଥ ବୋଲି ଆମେ କହିଛୁ । କାରଣ, ଏହି ପଥର ପଥିକ ଜଗତର ଅନିତ୍ୟତା ପ୍ରତ୍ୟକ୍ଷ କଲେ ମଧ ଜଗତ୍‌କର୍ତ୍ତା ଈଶ୍ୱରଙ୍କଠାରେ ବିଶ୍ୱାସୀ ହୋଇ ତତ୍‌କୃତ ଜଗତରୂପ କାର୍ଯ୍ୟ ସତ୍ୟ ଓ ବର୍ତ୍ତମାନ ବୋଲି ବିଶ୍ୱାସ କରିଥାନ୍ତି । ଭକ୍ତ ଜଗତ ଓ ତନ୍ମଧ୍ୟଗତ ସମସ୍ତ ବସ୍ତୁ ଓ ବ୍ୟକ୍ତିଙ୍କୁ ଈଶ୍ୱରଙ୍କ ସହିତ ସମ୍ୱନ୍ଧଯୁକ୍ତ ଦେଖି ଆପଣାର କରିନିଏ । ଏହି ସମ୍ୱନ୍ଧ-ଦର୍ଶନ କରିବା ପଥରେ ଯାହା ଅନ୍ତରାୟ ବୋଲି ପ୍ରତୀତ ହୁଏ, ତାକୁ ସେ ଦୂରରୁ ପରିହାର

---

୧. ଗୁରୁଭାବ—ପୂର୍ବାର୍ଦ୍ଧ, ୨ୟ ଅଧ୍ୟାୟ ଦ୍ରଷ୍ଟବ୍ୟ ।

କରନ୍ତି । ତାହା ବ୍ୟତୀତ, ଈଶ୍ୱରଙ୍କର କୌଣସି ଏକ ରୂପ[୧] ପ୍ରତି ଅନୁରାଗରେ ଓ ଧ୍ୟାନରେ ତନ୍ମୟ ହେବା ଏବଂ ତାଙ୍କର ପ୍ରୀତି ନିମିତ୍ତ ସମସ୍ତ କାର୍ଯ୍ୟାନୁଷ୍ଠାନ କରିବା ଭକ୍ତର ପ୍ରାଥମିକ ଲକ୍ଷ୍ୟ ହୋଇଥାଏ ।

**'ଇତି, ଇତି' ପଥରେ ନିର୍ବିକଳ୍ପ ସମାଧିଲାଭର ବିବରଣ :**

ରୂପର ଧ୍ୟାନରେ ତନ୍ମୟ ହୋଇ କିପରି ଭାବରେ ଜଗତର ଅସ୍ତିତ୍ୱ ଭୁଲି ନିର୍ବିକଳ୍ପ ଅବସ୍ଥାରେ ପହଞ୍ଚିବାକୁ ହୁଏ, ଏବେ ଆମେ ତାହାର ଅନୁଶୀଳନ କରିବୁ । ପୂର୍ବରୁ କହିଛୁ, ଭକ୍ତ ଈଶ୍ୱରଙ୍କର କୌଣସି ଏକ ରୂପକୁ ନିଜର ଇଷ୍ଟ ବୋଲି ଗ୍ରହଣ କରି ତାଙ୍କର ହିଁ ଚିନ୍ତା ଓ ଧ୍ୟାନ କରିଥାନ୍ତି । ପ୍ରଥମେ ପ୍ରଥମେ ଧ୍ୟାନ କରିବା ସମୟରେ, ସେ ଏହି ଇଷ୍ଟ ମୂର୍ତ୍ତିର ସର୍ବାବୟବସମ୍ପୂର୍ଣ୍ଣ ଛବି ମାନସନୟନ ସମ୍ମୁଖରେ ଆଣିପାରନ୍ତି ନାହିଁ; କେତେବେଳେ ଏହାଙ୍କ ହସ୍ତ, କେତେବେଳେ ପଦ ଏବଂ କେତେବେଳେ ମୁଖମଣ୍ଡଳ ମାତ୍ର ତାଙ୍କ ସମ୍ମୁଖରେ ଉପସ୍ଥିତ ହୁଏ; ଏହା ମଧ୍ୟ ଦର୍ଶନମାତ୍ରେ ହିଁ ଯେପରି ଲୟ ହୋଇଯାଏ, ସମ୍ମୁଖରେ ସ୍ଥିରଭାବରେ ଅବସ୍ଥାନ କରେ ନାହିଁ । ଅଭ୍ୟାସ ଫଳରେ ଧ୍ୟାନ ଗଭୀର ହେଲେ ଏହି ମୂର୍ତ୍ତିର ସର୍ବାବୟବସମ୍ପୂର୍ଣ୍ଣ ଛବି ମାନସଚକ୍ଷୁର ସମ୍ମୁଖରେ ବେଳେବେଳେ ଉପସ୍ଥିତ ହୁଏ । ଧ୍ୟାନ କ୍ରମେ ଗଭୀରତର ହେଲେ ସେହି ଛବି, ମନ ଯେତେକ୍ଷଣ ଚଞ୍ଚଳ ନ ହୁଏ ସେତେକ୍ଷଣ ସ୍ଥିର ଭାବରେ ସମ୍ମୁଖରେ ଅବସ୍ଥାନ କରେ । ପରେ ଧ୍ୟାନର ଗଭୀରତାର ତାରତମ୍ୟରେ ଏହି ମୂର୍ତ୍ତିର ଚାଲିବା-ବୁଲିବା, ହସିବା, କଥା କହିବା ଏବଂ ପରିଶେଷରେ ତାହାଙ୍କ ସ୍ପର୍ଶ ମଧ୍ୟ ଭକ୍ତର ଉପଲବ୍ଧି ହୁଏ । ସେତେବେଳେ ସେହି ମୂର୍ତ୍ତିକୁ ସମ୍ପୂର୍ଣ୍ଣ ଜୀବନ୍ତ ବୋଲି ଦେଖିବାକୁ ମିଳିଥାଏ ଏବଂ ଭକ୍ତ ଚକ୍ଷୁ ମୁଦ୍ରିତ ବା ଉନ୍ମୀଳିତ ଯେଉଁ ପ୍ରକାରେ ଧ୍ୟାନ କରନ୍ତୁ ନା କାହିଁକି, ସେହି ମୂର୍ତ୍ତିର ସେହି ପ୍ରକାରର ଚେଷ୍ଟାଦି ସମଭାବରେ ପ୍ରତ୍ୟକ୍ଷ କରିଥାନ୍ତି । ପରେ, ''ମୋର ଇଷ୍ଟ ହିଁ ଇଚ୍ଛାନୁଯାୟୀ ନାନା ରୂପ ଧାରଣ କରିଅଛନ୍ତି'—ଏହି ବିଶ୍ୱାସ ଫଳରେ ଭକ୍ତ-ସାଧକ ନିଜ ଇଷ୍ଟମୂର୍ତ୍ତିଙ୍କ ଦ୍ୱାରା ନାନାପ୍ରକାରର ଦିବ୍ୟ ରୂପମାନଙ୍କର ସନ୍ଦର୍ଶନ ଲାଭ କରନ୍ତି । ଠାକୁର କହୁଥିଲେ, ''ଯେଉଁ ବ୍ୟକ୍ତି ଗୋଟିଏ ରୂପ ଏପରି ଜୀବନ୍ତଭାବରେ ଦର୍ଶନ କରିଛି, ତା'ପାଇଁ ଅନ୍ୟ ସବୁ ରୂପର ଦର୍ଶନ ସହଜରେ ଆସି ଉପସ୍ଥିତ ହୁଏ ।''

ଏହାପୂର୍ବରୁ ଯେଉଁ ସମସ୍ତ କଥା କୁହାଗଲା, ସେଥିରେ ଗୋଟିଏ କଥା ଆମେ ବୁଝିପାରୁ । ଏପରି ସମସ୍ତ ଜୀବନ୍ତ ମୂର୍ତ୍ତିମାନଙ୍କର ଦର୍ଶନଲାଭ ଯାହାଙ୍କ ଭାଗ୍ୟରେ ଆସିଥାଏ, ତାଙ୍କ ନିକଟରେ ଜାଗ୍ରତାବସ୍ଥାରେ ଦୃଷ୍ଟ ପଦାର୍ଥଗୁଡ଼ିକ ଭଳି

---

୧. ବ୍ରାହ୍ମ ସମାଜର ଉପାସନାକୁ ମଧ୍ୟ ଆମେମାନେ ରୂପର ଧ୍ୟାନ ମଧ୍ୟରେ ଗଣନା କରୁଛୁ । କାରଣ ଆକାରରହିତ ସର୍ବଗୁଣାନ୍ୱିତ ବ୍ୟକ୍ତିତ୍ୱର ଧ୍ୟାନ କରିବାକୁ ହେଲେ ଆକାଶ, ଜଳ, ବାୟୁ, ତେଜ ପ୍ରଭୃତି ପଦାର୍ଥଗୁଡ଼ିକ ସଦୃଶ ପଦାର୍ଥବିଶେଷ ହିଁ ମନ ମଧ୍ୟରେ ଉଦିତ ହୋଇଥାଏ ।

ଧ୍ୟାନସମୟରେ ଦୃଷ୍ଟ ଭାବରାଜ୍ୟଗତ ଏସମସ୍ତ ମୂର୍ତ୍ତିର ସମାନ ଅସ୍ତିତ୍ୱ ଅନୁଭବ ହେଉଥାଏ । ସେହିପରି ବାହ୍ୟ ଜଗତ ଓ ଭାବରାଜ୍ୟର ସମାନ ଅସ୍ତିତ୍ୱବୋଧ ଯେତେ ବୃଦ୍ଧି ପାଉଥାଏ, ସେତେ ତା'ର ମନରେ ବାହ୍ୟ ଜଗତକୁ ମନଃକଳ୍ପିତ ବୋଲି ଧାରଣା ହେଉଥାଏ । ପୁଣି ଗଭୀର ଧ୍ୟାନ ସମୟରେ ଭାବରାଜ୍ୟର ଅନୁଭବ ଭକ୍ତର ମନରେ ଏତେ ପ୍ରବଳ ହୋଇଉଠେ ଯେ, ସେହି ସମୟ ପାଇଁ ତାଙ୍କର ବାହ୍ୟଜଗତର ଅନୁଭବ କିଞ୍ଚିତ୍ ମାତ୍ର ରହେ ନାହିଁ । ଭକ୍ତର ଏହି ଅବସ୍ଥାକୁ ହିଁ ଶାସ୍ତ୍ର ସବିକଳ୍ପ ସମାଧି ନାମରେ ନାମିତ କରିଛନ୍ତି । ଏହିପ୍ରକାରର ସମାଧି ସମୟରେ ମାନସିକ ଶକ୍ତି-ପ୍ରଭାବରେ ଭକ୍ତର ମନରେ ବାହ୍ୟ ଜଗତର ବିଲୟ ହେଲେ ମଧ୍ୟ ଭାବରାଜ୍ୟର ବିଲୟ ହୁଏ ନାହିଁ । ଜଗତରେ ଦୃଷ୍ଟ ବସ୍ତୁ ଓ ବ୍ୟକ୍ତିମାନଙ୍କ ସହିତ ବ୍ୟବହାର କରି ଆମେ ଦୈନନ୍ଦିନ ଯେପରି ସୁଖଦୁଃଖ ଇତ୍ୟାଦିର ଅନୁଭବ କରିଥାଉ, ନିଜ ଇଷ୍ଟମୂର୍ତ୍ତିଙ୍କ ସହିତ ବ୍ୟବହାରରେ ଭକ୍ତ ସେତେବେଳେ ଠିକ୍ ତଦ୍ରୂପ ଅନୁଭବ କରିଥାନ୍ତି । କେବଳ ଇଷ୍ଟମୂର୍ତ୍ତିଙ୍କୁ ଆଶ୍ରୟ କରି ତାଙ୍କ ମନରେ ସେତେବେଳେ ସମସ୍ତ ସଂକଳ୍ପ-ବିକଳ୍ପର ଉଦୟ ହେଉଥାଏ । ଗୋଟିଏ ବିଷୟକୁ ମୁଖ୍ୟରୂପରେ ଅବଲମ୍ବନ କରି ଭକ୍ତର ମନରେ ସେହି ସମୟରେ ବୃତ୍ତି-ପରମ୍ପରାର ଉଦୟ ହୁଏ ବୋଲି ଶାସ୍ତ୍ର ତାଙ୍କର ଏହି ଅବସ୍ଥାକୁ ସବିକଳ୍ପ ବା ବିକଳ୍ପସଂଯୁକ୍ତ ସମାଧି ବୋଲି କହିଛନ୍ତି ।

ଏପରି ଭାବରାଜ୍ୟର ଅନ୍ତର୍ଗତ ବିଷୟବିଶେଷର ଚିନ୍ତାରେ ଭକ୍ତ ମନରେ ସ୍ଥୂଳ ବାହ୍ୟ ଜଗତର ଏବଂ ଗୋଟିଏ ଭାବର ପ୍ରାବଲ୍ୟ ଯୋଗୁଁ ଅନ୍ୟ ଭାବସମୂହର ବିଲୟ ସାଧିତ ହୁଏ । ଯେଉଁ ଭକ୍ତସାଧକ ଏତେଦୂର ଅଗ୍ରସର ହେବାକୁ ସମର୍ଥ ହୁଅନ୍ତି, ସମାଧିର ନିର୍ବିକଳ୍ପଭୂମିଲାଭ ତାଙ୍କ ନିକଟରେ ଅଧିକ ଦୂରବର୍ତ୍ତୀ ନୁହେଁ । ଦୀର୍ଘକାଳରୁ ସୁପରିଚିତ ଜଗତର ଅସ୍ତିତ୍ୱଜ୍ଞାନ ଯିଏ ଏତେଦୂର ଦୂରୀକରଣରେ ସକ୍ଷମ ହୋଇଅଛନ୍ତି, ତାଙ୍କର ମନ ଯେ ସମଧିକ ଶକ୍ତିସମ୍ପନ୍ନ ଓ ଦୃଢ଼ସଂକଳ୍ପଯୁକ୍ତ ହୋଇଅଛି, ଏହା କହିବାର ପ୍ରୟୋଜନ ନାହିଁ । ମନକୁ ସମ୍ପୂର୍ଣ୍ଣରୂପରେ ନିର୍ବିକଳ୍ପ କରିପାରିଲେ ଈଶ୍ୱରସମ୍ଭୋଗ କମ ନ ହୋଇ ବରଂ ବୃଦ୍ଧିପ୍ରାପ୍ତ ହୋଇଥାଏ, ଏକଥା ଥରେ ଧାରଣା ହେଲେ ହିଁ ତାହାର ସମଗ୍ର ମନ ଏହି ଦିଗରେ ଉତ୍ସାହ ସହକାରେ ଧାବିତ ହୁଏ ଏବଂ ଶ୍ରୀଗୁରୁ ଓ ଈଶ୍ୱର କୃପାରେ ସେ ଅଚିରେ ଭାବରାଜ୍ୟର ଚରମ ଭୂମିରେ ଆରୋହଣ କରି ଅଦ୍ୱୈତଜ୍ଞାନରେ ଅବସ୍ଥାନପୂର୍ବକ ଚିରଶାନ୍ତିର ଅଧିକାରୀ ହୁଅନ୍ତି । କିମ୍ବା କୁହାଯାଇ ପାରେ, ପ୍ରଗାଢ଼ ଇଷ୍ଟପ୍ରେମ ହିଁ ତାଙ୍କୁ ସେହି ଭୂମି ଦେଖାଇ ଦିଏ ଏବଂ ବ୍ରଜଗୋପୀମାନଙ୍କ ସଦୃଶ ଏହାର ପ୍ରେରଣାରେ ସେ ନିଜ ଇଷ୍ଟଙ୍କ ସହିତ ସେତେବେଳେ ଏକତ୍ୱ ଅନୁଭବ କରନ୍ତି ।

### ଅବତାରପୁରୁଷଙ୍କଠାରେ ଦେବ ଓ ମାନବ, ଉଭୟ ଭାବ ବିଦ୍ୟମାନ ଥିବାରୁ ସାଧନ ସମୟରେ ସେମାନଙ୍କୁ ସିଦ୍ଧସଦୃଶ ପ୍ରତୀତ ହୁଏ । ଦେବ ଓ ମାନବ, ଉଭୟ ଭାବରେ ସେମାନଙ୍କ ଜୀବନର ଆଲୋଚନା ଆବଶ୍ୟକ :

ଜ୍ଞାନୀ ଏବଂ ଭକ୍ତ ସାଧକମାନଙ୍କର ଚରମ ଲକ୍ଷ୍ୟରେ ଉପନୀତ ହେବାର ଏପରି କ୍ରମ ଶାସ୍ତ୍ର ନିର୍ଦ୍ଧାରିତ ହୋଇଅଛି । କିନ୍ତୁ ଅବତାରପୁରୁଷଗଣଙ୍କଠାରେ ଦେବ ଏବଂ ମାନବ ଉଭୟ ଭାବର ଏକତ୍ର ସମ୍ମିଳନ ଆଜୀବନ ବିଦ୍ୟମାନଥିବାରୁ ସାଧନକାଳରେ ସେମାନଙ୍କୁ ବେଳେ ବେଳେ ସିଦ୍ଧ ସଦୃଶ ଉନ୍ନତ ଓ ଶକ୍ତିସମ୍ପନ୍ନ ଦେଖିବାକୁ ମିଳିଥାଏ । ଦେବ ଏବଂ ମାନବ ଉଭୟ ଭୂମିରେ ସେମାନଙ୍କର ସ୍ୱଭାବତଃ ବିଚରଣ କରିବାର ଶକ୍ତି ଥିବାରୁ ଏପରି ହୋଇଥାଏ; କିମ୍ବା ଭିତରର ଦେବଭାବ ସେମାନଙ୍କର ସହଜ ସ୍ୱାଭାବିକ ଅବସ୍ଥା ହୋଇଥିବାରୁ, ଏହା ସେମାନଙ୍କର ମାନବଭାବର ବହିରାବରଣକୁ ବେଳେବେଳେ ଭେଦ କରି ଏପରି ସ୍ୱତଃପ୍ରକାଶିତ ହୋଇଥାଏ—ମୀମାଂସା ଯାହା ହେଉ ନା କାହିଁକି ଏପରି ଘଟଣା କିନ୍ତୁ ଅବତାରପୁରୁଷମାନଙ୍କର ଜୀବନକୁ ମାନବବୁଦ୍ଧି ନିକଟରେ ଦୁର୍ଭେଦ୍ୟ ଓ ଜଟିଳତାମୟ କରି ରଖିଅଛି । ଏହି ଜଟିଳ ରହସ୍ୟର ସତ୍ୟ ଯେ କୌଣସି କାଳରେ ଉନ୍ମୋଚିତ ହୋଇପାରିବ ତାହା ମନେ ହୁଏ ନାହିଁ । କିନ୍ତୁ ଶ୍ରଦ୍ଧାସମ୍ପନ୍ନ ହୋଇ ଏହାର ଅନୁଶୀଳନ କଲେ ମନୁଷ୍ୟର ଅଶେଷ କଲ୍ୟାଣ ସାଧିତ ହୁଏ, ଏହା ଧ୍ରୁବ ସତ୍ୟ । ପ୍ରାଚୀନ ପୌରାଣିକ ଯୁଗରେ ଅବତାରଚରିତ୍ରର ମାନବ ଭାବଟି ଘୋଡ଼ାଇ ଦେଇ ଦେବଭାବଟିର ଆଲୋଚନା କରା ହୋଇଥିଲା; ଠିକ୍ ତାହାର ବିପରୀତ ବର୍ତ୍ତମାନର ସନ୍ଦେହଶୀଳ ଯୁଗରେ ସେହି ଚରିତ୍ରର ଦେବଭାବଟି ସମ୍ପୂର୍ଣ୍ଣ ଉପେକ୍ଷିତ ହୋଇ କେବଳ ମାନବଭାବଟିର ଆଲୋଚନା ହିଁ ହେଉଅଛି । ବର୍ତ୍ତମାନକ୍ଷେତ୍ରରେ ଆମେ ସେହି ଚରିତ୍ରର ଆଲୋଚନାରେ ସେଥିରେ ଉଭୟ ଭାବ ଯେ ଏକତ୍ର ଏକାସମୟରେ ବିଦ୍ୟମାନ ଥାଏ, ଏହି କଥା ପାଠକଙ୍କୁ ବୁଝାଇବାକୁ ଚେଷ୍ଟା କରିବୁ । କହିବା ବାହୁଲ୍ୟ, ଦେବମାନବ ଠାକୁରଙ୍କର ପୁଣ୍ୟଦର୍ଶନ ଜୀବନରେ ଘଟି ନ ଥିଲେ ଅବତାରଚରିତ୍ର ଏପରି ଭାବରେ ବୁଝିବାକୁ ଆମେ କଦାପି ସମର୍ଥ ହୋଇ ନ ଥାନ୍ତୁ ।

# ଦ୍ୱିତୀୟ ଅଧ୍ୟାୟ

## ଅବତାରଜୀବନରେ ସାଧକଭାବ

### ଠାକୁରଙ୍କଠାରେ ଦେବ ଓ ମାନବ ଭାବର ମିଳନ :

ପୁଣ୍ୟଦର୍ଶନ ଠାକୁରଙ୍କର ଦିବ୍ୟସଙ୍ଗଲାଭରେ କୃତାର୍ଥ ହୋଇ ଆମେ ତାଙ୍କର ଜୀବନ ଓ ଚରିତ୍ରର ଯେତେ ଅନୁଧ୍ୟାନ କରିଅଛୁ, ସେତେ ସେଥିରେ ଦେବ ଓ ମାନବ, ଉଭୟ ଭାବର ବିଚିତ୍ର ସମ୍ମିଳନ ଦେଖି ମୋହିତ ହୋଇଅଛୁ । ମଧୁର ସାମଞ୍ଜସ୍ୟରେ ଏପରି ବିପରୀତ ଭାବସମଷ୍ଟିର ଏକତ୍ର ଏକାଧାରରେ ଅବସ୍ଥାନ ଯେ ସମ୍ଭବପର, ଏକଥା ତାଙ୍କୁ ନ ଦେଖିଥିଲେ ଆମମାନଙ୍କର କଦାପି ଧାରଣା ହୋଇ ନ ଥାନ୍ତା । ଏପରି ଦେଖିଅଛୁ ବୋଲି ହିଁ ଆମମାନଙ୍କର ଧାରଣା ସେ ଦେବମାନବ—ପୂର୍ଣ୍ଣ ଦେବତ୍ୱର ଭାବ ଓ ଶକ୍ତିସମୂହ ମାନବୀୟ ଦେହ ଓ ଭାବାବରଣରେ ପ୍ରକାଶିତ ହେଲେ ଯାହା ହୁଏ, ସେ ତାହା ହିଁ । ସେହିପରି ଦେଖିଅଛୁ ବୋଲି ବୁଝିଛୁ ଯେ, ଏହି ଉଭୟ ଭାବର କୌଣସିଟି ମଧ୍ୟ ସେ ବୃଥା ଛଳନା କରିନାହାନ୍ତି ଏବଂ ମାନବଭାବ ସେ ଲୋକହିତାୟ ଯଥାର୍ଥ ସ୍ୱୀକାର କରି ଏଥିରୁ ଦେବତ୍ୱରେ ଉଠିବାର ପଥ ଆମମାନଙ୍କୁ ଦେଖାଇ ଯାଇଛନ୍ତି । ପୁଣି, ଦେଖିଛୁ ବୋଲି ଏକଥା ବୁଝିପାରିଛୁ ଯେ, ପୂର୍ବ ଯୁଗଗୁଡ଼କରେ ସକଳ ଅବତାରପୁରୁଷଙ୍କର ଜୀବନରେ ହିଁ ସେହି ଉଭୟ ଭାବର ଏପରି ବିଚିତ୍ର ପ୍ରକାଶ ନିଶ୍ଚୟ ଆବିର୍ଭାବ ହୋଇଥିଲା ।

### ସକଳ ଅବତାରପୁରୁଷଙ୍କଠାରେ ଏହିପରି ଦେଖାଯାଏ :

ଶ୍ରଦ୍ଧାସମ୍ପନ୍ନ ହୋଇ ଅବତାରପୁରୁଷମାନଙ୍କ ମଧ୍ୟରୁ ଯାହାର ମଧ୍ୟ ଜୀବନ-କଥା ଆଲୋଚନା କରିବାକୁ ଗଲେ ଆମେ ସେହିପରି ଦେଖିବାକୁ ପାଇବା । ଦେଖିବାକୁ ପାଇବା, ସେମାନେ କେତେବେଳେ ଆମମାନଙ୍କର ଭାବ-ଭୂମିରେ ରହି ଜଗତସ୍ଥ ଯାବତୀୟ ବସ୍ତୁ ଓ ବ୍ୟକ୍ତି ସହିତ ଆମରି ପରି ବ୍ୟବହାର କରୁଛନ୍ତି—ପୁଣି କେତେବେଳେ ଉଚ୍ଚ ଭାବ-ଭୂମିରେ ବିଚରଣପୂର୍ବକ ଆମମାନଙ୍କର ଅଜ୍ଞାତ, ଅପରିଚିତ ଭାବ ଓ ଶକ୍ତିସମ୍ପନ୍ନ ଏକ ନୂତନ ରାଜ୍ୟର ସମ୍ବାଦ ଆଣି ଆମକୁ ଦେଉଛନ୍ତି ! —ସେମାନଙ୍କର ଇଚ୍ଛା ନ ଥିଲେ ମଧ୍ୟ କିଏ ଯେପରି ଏସମସ୍ତ ବିଷୟର ଯୋଗାଯୋଗ କରି ସେମାନଙ୍କୁ ଏପରି କରାଉଛି । ଆଶୈଶବ ସେମାନଙ୍କର ସେହିପରି ହୋଇଥାଏ । ତେବେ, ଶୈଶବରେ ବେଳେବେଳେ ଏହି ଶକ୍ତିର ପରିଚୟ ପାଇଲେ ମଧ୍ୟ ତାହା ଯେ ସେମାନଙ୍କର ନିଜସ୍ୱ ଶକ୍ତି ଏବଂ ତାଙ୍କର ଇଚ୍ଛାଧୀନ, ଏକଥା ସେମାନେ ଅନେକ ସମୟରେ ବୁଝିପାରି ନ ଥାନ୍ତି । ଫଳରେ ଇଚ୍ଛାମାତ୍ରେ ସେହି ଶକ୍ତିପ୍ରୟୋଗରେ ଉଚ୍ଚ ଭାବ-ଭୂମିକୁ

ଆରୋହଣପୂର୍ବକ ଦିବ୍ୟଭାବ ସହାୟରେ ଜଗତ ଅନ୍ତର୍ଗତ ସମସ୍ତ ବସ୍ତୁ ଓ ବ୍ୟକ୍ତିଙ୍କୁ ଦେଖିବା ଏବଂ ସେମାନଙ୍କ ସହିତ ତଦନୁରୂପ ବ୍ୟବହାର କରିବା ସମ୍ଭବ ହୋଇ ନ ଥାଏ । କିନ୍ତୁ ଏହି ଶକ୍ତିର ଅସ୍ତିତ୍ୱ ଜୀବନରେ ବାରମ୍ବାର ପ୍ରତ୍ୟକ୍ଷ କରି କରି ତାହା ସହିତ ସମ୍ୟକ୍‌ରୂପରେ ପରିଚିତ ହେବାର ପ୍ରବଳ ବାସନା ସେମାନଙ୍କର ମନ ମଧ୍ୟରେ ଜାଗି ଉଠିଥାଏ ଏବଂ ସେହି ବାସନା ହିଁ ସେମାନଙ୍କୁ ଅଲୌକିକ ଅନୁରାଗସମ୍ପନ୍ନ କରି ସାଧନାରେ ନିଯୁକ୍ତ କରିଥାଏ ।

## ଅବତାରପୁରୁଷଙ୍କଠାରେ ସ୍ୱାର୍ଥସୁଖର ବାସନା ନ ଥାଏ :

ସେମାନଙ୍କର ଏପରି ବାସନାରେ ସ୍ୱାର୍ଥପରତାର ଲେଶମାତ୍ର ନ ଥାଏ । ଐହିକ ବା ପାରଲୌକିକ କୌଣସିପ୍ରକାରର ଭୋଗସୁଖଲାଭର ପ୍ରେରଣା ତ ଦୂରର କଥା, ପୃଥିବୀସ୍ଥ ଅନ୍ୟ ସମସ୍ତ ବ୍ୟକ୍ତିଙ୍କର ଯାହା ହେବାର ହେଉ, ମୁଁ ମୁକ୍ତିଲାଭ କରି ଭୂମାନନ୍ଦରେ ରହେ—ଏପରି ଭାବ ମଧ୍ୟ ସେମାନଙ୍କର ସେହି ବାସନାରେ ଦେଖାଯାଏ ନାହିଁ । କେବଳ, ଯେଉଁ ଅଜ୍ଞାତ ଦିବ୍ୟଶକ୍ତିର ନିର୍ଦ୍ଦେଶାନୁସାରେ ସେମାନେ ଜନ୍ମକାଳରୁ ଅସାଧାରଣ ଦିବ୍ୟଭାବସମୂହ ଅନୁଭବ କରୁଅଛନ୍ତି ଏବଂ ସ୍ଥୂଳ ଜଗତରେ ଦୃଷ୍ଟ ବସ୍ତୁ ଓ ବ୍ୟକ୍ତିମାନଙ୍କ ପରି ଭାବରାଜ୍ୟଗତ ସମସ୍ତ ବିଷୟର ସମାନ ଅସ୍ତିତ୍ୱ ସମୟ ସମୟରେ ପ୍ରତ୍ୟକ୍ଷ କରୁଛନ୍ତି, ସେହି ଶକ୍ତି କ'ଣ ବାସ୍ତବିକ ହିଁ ଜଗତର ଅନ୍ତରାଳରେ ଅବସ୍ଥିତ ଅଥବା ସ୍ୱକପୋଳକଳ୍ପନା-ବିଜୃମ୍ଭିତ, ସେବିଷୟର ତତ୍ତ୍ୱ ଅନୁସନ୍ଧାନ ହିଁ ସେମାନଙ୍କର ଏହି ବାସନା ମୂଳରେ ପରିଲକ୍ଷିତ ହୋଇଥାଏ । କାରଣ, ଅନ୍ୟ ଜନସାଧାରଣଙ୍କର ପ୍ରତ୍ୟକ୍ଷ ଓ ଅନୁଭବ ଆଦି ସହିତ ନିଜର ପ୍ରତ୍ୟକ୍ଷସମୂହର ତୁଳନା କରି ଏକଥା ସେମାନଙ୍କର ସ୍ୱଳ୍ପ କାଳରେ ହିଁ ହୃଦୟଙ୍ଗମ ହୁଏ ଯେ, ସେମାନେ ଆଜୀବନ ଜଗତସ୍ଥ ବସ୍ତୁ ଓ ବ୍ୟକ୍ତିମାନଙ୍କୁ ଯେଉଁ ଭାବରେ ପ୍ରତ୍ୟକ୍ଷ କରୁଛନ୍ତି, ଅନ୍ୟମାନେ ସେପରି କରୁ ନାହାନ୍ତି—ଅର୍ଥାତ୍ ଭାବରାଜ୍ୟର ଉଚ୍ଚଭୂମିରୁ ଜଗତକୁ ଦେଖିବାର ସାମର୍ଥ୍ୟ ସେମାନଙ୍କର ଆଦୌ ନାହିଁ ବୋଲି କୁହାଯାଇପାରେ ।

## ସେମାନଙ୍କର କରୁଣା ଓ ପରାର୍ଥେ ସାଧନଭଜନ :

କେବଳ ସେତିକି ନୁହେଁ । ପୂର୍ବୋକ୍ତ ତୁଳନାରେ ସେମାନଙ୍କର ଆଉ ଗୋଟିଏ କଥା ମଧ୍ୟ ସଙ୍ଗେ ସଙ୍ଗେ ଧାରଣା ହୋଇଯାଏ । ସେମାନେ ବୁଝିପାରନ୍ତି ଯେ, ସାଧାରଣ ଓ ଦିବ୍ୟ ଉଭୟ ଭୂମିରୁ ଜଗତକୁ ଦୁଇ ପ୍ରକାରର ଭାବରେ ଦେଖିବାକୁ ପାଆନ୍ତି ବୋଲି ହିଁ ଦୁଇଦିନର ନଶ୍ୱର ଜୀବନରେ ଆପାତଃମନୋରମ ରୂପରସାଦି ସେମାନଙ୍କୁ ସାଧାରଣ ମନୁଷ୍ୟଙ୍କ ପରି ପ୍ରଲୋଭିତ କରିପାରି ନ ଥାଏ ଏବଂ ସର୍ବଦା ପରିବର୍ତ୍ତନଶୀଳ ସଂସାରର ନାନା ଅବସ୍ଥା ବିପର୍ଯ୍ୟୟରେ ଅଶାନ୍ତି ଓ ନୈରାଶ୍ୟର ନିବିଡ଼ ଛାୟା ସେମାନଙ୍କର ମନକୁ ଆବୃତ କରିପାରେ ନାହିଁ । ସୁତରାଂ ପୂର୍ବୋକ୍ତ

ଶକ୍ତିକୁ ସମ୍ୟକ୍ ପ୍ରକାରରେ ନିଜର କରି ନେଇ କିପରି ଭାବରେ ଇଚ୍ଛାମାତ୍ରକେ ଉଚ୍ଚ ଓ ଉଚ୍ଚତର ଭାବ-ଭୂମିରେ ସ୍ୱୟଂ ଆରୋହଣ କରି ଯେତେ କାଳ ଇଚ୍ଛା ସେଠାରେ ଅବସ୍ଥାନ କରିପାରିବେ ଏବଂ ଆପାମର ସାଧାରଣଙ୍କୁ ସେହିପରି କରିବାକୁ ଶିଖାଇ ଶାନ୍ତିର ଅଧିକାରୀ କରିବେ, ଏହି ଚିନ୍ତାରେ ହିଁ ସେମାନଙ୍କର କରୁଣାପୂର୍ଣ୍ଣ ମନ ସମ୍ପୂର୍ଣ୍ଣ ନିମଗ୍ନ ହୋଇଥାଏ । ଏଥିପାଇଁ ଦେଖାଯାଏ, ସାଧନା ଓ କରୁଣାର ଦୁଇଟି ପ୍ରବଳ ପ୍ରବାହ ସେମାନଙ୍କର ଜୀବନରେ ନିରନ୍ତର ପାଖାପାଖି ପ୍ରବାହିତ ହେଉଥାଏ । ସାଧାରଣ ମାନବଙ୍କ ସହିତ ନିଜ ଅବସ୍ଥାର ତୁଳନାରେ ଏହି କରୁଣା ସେମାନଙ୍କର ଅନ୍ତରରେ ଶତଧାରାରେ ବର୍ଦ୍ଧିତ ହୋଇପାରେ; କିନ୍ତୁ ସେହିପରି ହିଁ ଯେ ତାହାର ଉତ୍ପତ୍ତି ହୁଏ, ଏକଥା କୁହାଯାଇପାରିବ ନାହିଁ । ଏହା ସଙ୍ଗରେ ନେଇ ହିଁ ସେମାନେ ସଂସାରରେ ଜନ୍ମଗ୍ରହଣ କରିଥାଆନ୍ତି । ଠାକୁରଙ୍କର ଏହି ବିଷୟରେ ଗୋଟିଏ ଦୃଷ୍ଟାନ୍ତ ସ୍ମରଣ କରାଯାଉ—

**ଏବିଷୟରେ ଦୃଷ୍ଟାନ୍ତ—'ତିନି ବନ୍ଧୁଙ୍କର ଆନନ୍ଦକାନନଦର୍ଶନ' ସମ୍ବନ୍ଧରେ ଠାକୁରଙ୍କର ଗଳ୍ପ :**

''ତିନିଜଣ ବନ୍ଧୁ ପଡ଼ିଆକୁ ବୁଲିବାକୁ ଯାଇଥିଲେ । ବୁଲୁ ବୁଲୁ ପଡ଼ିଆର ମଝିରେ ଦେଖିଲେ ଉଚ୍ଚ ପ୍ରାଚୀରରେ ଘେରା ହୋଇଥିବା ଗୋଟିଏ ଜାଗା— ତା ମଧ୍ୟରୁ ଗୀତବାଦ୍ୟର ମଧୁର ସ୍ୱର ଆସୁଅଛି । ଏହା ଶୁଣି ସେମାନଙ୍କର ଇଚ୍ଛା ହେଲା, ତା'ଭିତରେ କ'ଣ ହେଉଛି ଦେଖିବେ । ଚାରିପାଖରେ ବୁଲି ଦେଖିଲେ, ଭିତରେ ପଶିବାକୁ ଗୋଟିଏ ହେଲେ କବାଟ ନାହିଁ । କ'ଣ କରିବେ ?—ଜଣେ କୌଣସି ପ୍ରକାରରେ ଗୋଟିଏ ସିଡ଼ି ଯୋଗାଡ଼ କରି ପ୍ରାଚୀର ଉପରକୁ ଉଠିବାକୁ ଲାଗିଲା ଓ ଅନ୍ୟ ଦୁଇଜଣ ତଳେ ଠିଆ ହୋଇ ରହିଲେ । ପ୍ରଥମ ଲୋକଟି ପ୍ରାଚୀର ଉପରକୁ ଉଠି ଭିତରର ଘଟଣା ଦେଖି ଆନନ୍ଦରେ ଅଧୀର ହୋଇ ହାଃ ହାଃ କରି ହସି ହସି ଡେଇଁ ପଡ଼ିଲା—ଭିତରେ ସେ କ'ଣ ଦେଖିଲା ତଳେ ଥିବା ଦୁଇଜଣଙ୍କୁ କହିବା ପାଇଁ ସାମାନ୍ୟ ଅପେକ୍ଷା କରିପାରିଲା ନାହିଁ । ସେମାନେ ଭାବିଲେ— କେମିତି ବନ୍ଧୁ, ଥରେ କହିଲା ନାହିଁ ଯେ, ସେ କ'ଣ ଦେଖିଲା ! —ଯାହେଉ, ଦେଖାଗଲା ଅନ୍ୟ ଜଣେ ସେହି ସିଡ଼ି ଧରି ଉପରକୁ ଉଠିବାକୁ ଲାଗିଲା । ସେ ମଧ୍ୟ ପ୍ରଥମ ଲୋକଟି ପରି ହାଃ ହାଃ କରି ହସି ଭିତରକୁ ଡେଇଁ ପଡ଼ିଲା । ତୃତୀୟ ଲୋକଟି ଏବେ କ'ଣ କରିବ—ସେ ମଧ୍ୟ ସେଇ ସିଡ଼ି ଦେଇ ଉପରକୁ ଉଠିଲା ଓ ଭିତରର ଆନନ୍ଦର ମେଳା ଦେଖିବାକୁ ପାଇଲା । ଏହା ଦେଖି ପ୍ରଥମେ ତା' ମନରେ ବହୁତ ଇଚ୍ଛା ହେଲା ସେ ମଧ୍ୟ ସେଥିରେ ଯୋଗଦେବ । କିନ୍ତୁ ପରେ ଭାବିଲା—ମୁଁ ଯଦି ଏବେ ଏଥିରେ ଯୋଗଦାନ କରେ, ତା'ହେଲେ ବାହାରେ ଅନ୍ୟ କେହି ଜାଣିପାରିବେ ନାହିଁ ଯେ ଏଠାରେ ଏପରି ଆନନ୍ଦ-ଉପଭୋଗର

ଛାଗା ଅଛି; ଏକୁଟିଆ କ'ଣ ଏହି ଆନନ୍ଦ ଉପଭୋଗ କରିବି ? ଏହା ଭାବି ସେ ଜୋର୍ କରି ମନକୁ ଫେରାଇ ଓହ୍ଲାଇ ଆସିଲା ଏବଂ ସାମନାରେ ଯାହାକୁ ଦେଖିଲା ତାକୁ ଡାକି କହିବାକୁ ଲାଗିଲା — 'ଆରେ, ସେଠାରେ ଏପରି ଆନନ୍ଦର ସ୍ଥାନ ରହିଛି, ଚାଲ ଚାଲ ସମସ୍ତେ ମିଶି ଉପଭୋଗ କରିବା !' ଏପରି ଅନେକ ଲୋକଙ୍କୁ ସଙ୍ଗରେ ନେଇ ସେ ମଧ୍ୟ ସେଥିରେ ଯୋଗ ଦେଲା ।'' ଏବେ ବୁଝ, ତୃତୀୟ ବ୍ୟକ୍ତିର ମନରେ ଦଶଜଣଙ୍କୁ ସଙ୍ଗରେ ନେଇ ଆନନ୍ଦ ଉପଭୋଗର ଇଚ୍ଛାର କାରଣ ଯେପରି ଖୋଜି ପାଇ ହୁଏ ନାହିଁ, ତଦ୍ରୂପ ଅବତାରପୁରୁଷମାନଙ୍କ ମନରେ ଲୋକକଲ୍ୟାଣସାଧନର ଇଚ୍ଛା କାହିଁକି ଯେ ବାଲ୍ୟକାଳରୁ ବିଦ୍ୟମାନ ଥାଏ, ତା'ର କାରଣ ନିର୍ଦ୍ଦେଶ କରି ହୁଏ ନାହିଁ ।

## ଅବତାରପୁରୁଷମାନଙ୍କୁ ସାଧାରଣ ମନୁଷ୍ୟଙ୍କ ପରି ସଂଯମ ଅଭ୍ୟାସ କରିବାକୁ ହୋଇଥାଏ :

ପୂର୍ବୋକ୍ତ କଥାରୁ କେହି କେହି ହୁଏତ ଭାବି ପାରନ୍ତି ଯେ ଅବତାର ପୁରୁଷମାନଙ୍କୁ ଆମମାନଙ୍କ ପରି ଦୁର୍ବାର ଇନ୍ଦ୍ରିୟଗୁଡ଼ିକ ସହିତ କେବେ ସଂଗ୍ରାମ କରିବାକୁ ପଡ଼େ ନାହିଁ; ଶାନ୍ତ ଶିଷ୍ଟ ବାଳକ ସଦୃଶ ଇନ୍ଦ୍ରିୟଗୁଡ଼ିକ ବୋଧହୁଏ ଆଜନ୍ମ ସେମାନଙ୍କର ବଶୀଭୂତ ହୋଇ ରହିଥାନ୍ତି ଏବଂ ସେଥିପାଇଁ ସଂସାରର ରୂପରସାଦିରୁ ମନକୁ ଫେରାଇ ସେମାନେ ସହଜରେ ଉଚ୍ଚ ଲକ୍ଷ୍ୟରେ ଚାଳିତ କରିପାରନ୍ତି । ଉତ୍ତରରେ ଆମେ କହିବୁ— ତା ନୁହେଁ, ଏବିଷୟରେ ମଧ୍ୟ ନରବତ୍ ନରଲୀଳା ହୋଇଥାଏ; ଏଥିରେ ମଧ୍ୟ ସେମାନଙ୍କୁ ସଂଗ୍ରାମରେ ଜୟୀ ହୋଇ ଗନ୍ତବ୍ୟପଥରେ ଅଗ୍ରସର ହେବାକୁ ପଡ଼ିଥାଏ ।

## ମନର ଅନନ୍ତ ବାସନା :

ମାନବ-ମନର ସ୍ୱଭାବ ସମ୍ବନ୍ଧରେ ଯିଏ କିଛି ମାତ୍ର ଜାଣିବାକୁ ଚେଷ୍ଟା କରିଛନ୍ତି, ସେ ଦେଖିବାକୁ ପାଇଛନ୍ତି ସ୍ଥୂଳରୁ ଆରମ୍ଭ ହୋଇ ସୂକ୍ଷ୍ମ, ସୂକ୍ଷ୍ମତର, ସୂକ୍ଷ୍ମତମ ଅନନ୍ତବାସନାସମୂହ ଏହା ମଧ୍ୟରେ ବିଦ୍ୟମାନ ରହିଅଛି, ଗୋଟିକୁ ଯଦି ତୁମେ କୌଣସି ପ୍ରକାରେ ଅତିକ୍ରମ କରିବାକୁ ସମର୍ଥ ହୋଇଛ, ଅନ୍ୟ ଗୋଟିଏ ଆସି ତୁମର ପଥରୋଧ କଲା; ତାହାକୁ ପରାଜିତ କଲେ ପୁଣି ଅନ୍ୟ ଗୋଟିଏ ଚାଲିଆସିଲା; ସ୍ଥୂଳକୁ ପରାଜିତ କଲ ତ ସୂକ୍ଷ୍ମ ଆସିଲା; ତାହାକୁ ଅପସାରଣ କଲେ ସୂକ୍ଷ୍ମତର ବାସନାସମୂହ ତୁମ ସହିତ ପ୍ରତିଦ୍ୱନ୍ଦିତାରେ ଦଣ୍ଡାୟମାନ ହେଲା । କାମ ଯଦି ତ୍ୟାଗ କଲ ତ' କାଞ୍ଚନ ଆସିଲା; ସ୍ଥୂଳଭାବରେ କାମ-କାଞ୍ଚନ ଗ୍ରହଣରେ ବିରତ ହେଲ ତ' ସୌନ୍ଦର୍ଯ୍ୟାନୁରାଗ, ଲୋକୈଷଣା, ମାନ-ଯଶ ଇତ୍ୟାଦି ସୂକ୍ଷ୍ମ ବାସନା ସମ୍ମୁଖରେ ଉପସ୍ଥିତ ହେଲା; ଅଥବା ସମସ୍ତ ମାୟିକ ସମ୍ବନ୍ଧ ଯତ୍ନପୂର୍ବକ

ପରିହାର କଲ ତ' ଆଳସ୍ୟ ବା କରୁଣା ଆକାରରେ ମୋହ ମାୟା ଆସି ତୁମର ହୃଦୟ ଅଧିକାର କଲା !

**ବାସନାତ୍ୟାଗ ସମ୍ବନ୍ଧରେ ଠାକୁରଙ୍କର ପ୍ରେରଣା :**

ମନର ଏପରି ସ୍ୱଭାବର ଉଲ୍ଲେଖ କରି ବାସନାଜାଲରୁ ଦୂରରେ ରହିବାକୁ ଠାକୁର ଆମମାନଙ୍କୁ ସର୍ବଦା ସତର୍କ କରାଉଥିଲେ । ନିଜ ଜୀବନର ଘଟଣାବଳୀ[୧] ଓ ଚିନ୍ତା ପର୍ଯ୍ୟନ୍ତ ବେଳେବେଳେ ଦୃଷ୍ଟାନ୍ତ ରୂପରେ ଉଲ୍ଲେଖ କରି ସେ ସେହି ବିଷୟ ଆମମାନଙ୍କୁ ହୃଦୟଙ୍ଗମ କରାଇ ଦେଉଥିଲେ । ପୁରୁଷଭକ୍ତମାନଙ୍କ ପରି ସ୍ତ୍ରୀଭକ୍ତମାନଙ୍କୁ ମଧ୍ୟ ସେ ସେହି କଥା ବାରମ୍ବାର କହି ସେମାନଙ୍କ ଅନ୍ତରରେ ଈଶ୍ୱରାନୁରାଗ ଉଦ୍ଦୀପିତ କରୁଥିଲେ । ତାଙ୍କର ଗୋଟିଏ ଦିନର ଏପରି ବ୍ୟବହାର ଏଠାରେ ଉଲ୍ଲେଖ କଲେ ପାଠକ ଏକଥା ବୁଝିପାରିବେ ।

ସ୍ତ୍ରୀ ବା ପୁରୁଷ ଠାକୁରଙ୍କ ନିକଟକୁ ଯେକେହି ଯାଉଥିଲେ, ସମସ୍ତେ ତାଙ୍କର ଅମାୟିକତା, ସଦ୍‌ବ୍ୟବହାର ଓ କାମଗନ୍ଧରହିତ ଅଦ୍ଭୁତ ଭଲପାଇବାର ଆକର୍ଷଣ ପ୍ରାଣେ ପ୍ରାଣେ ଅନୁଭବ କରୁଥିଲେ ଏବଂ ସୁବିଧା ମିଳିଲେ ହିଁ ପୁନର୍ବାର ତାଙ୍କର ପୁଣ୍ୟଦର୍ଶନ-ଲାଭ ନିମିତ୍ତ ବ୍ୟସ୍ତ ହୋଇ ପଡୁଥିଲେ । ସେହିପରି ସେମାନେ ଯେ ନିଜେ ହିଁ କେବଳ ତାଙ୍କ ନିକଟକୁ ପୁନଃପୁନଃ ଗମନାଗମନ କରି କ୍ଷାନ୍ତ ହେଉଥିଲେ ତାହା ନୁହେଁ, ନିଜର ପରିଚିତ ସମସ୍ତଙ୍କୁ ଠାକୁରଙ୍କ ନିକଟକୁ ନେଇ ଯାଇ ସେମାନେ ମଧ୍ୟ ଯେପରି ତାଙ୍କର ଦର୍ଶନରେ ବିମଳାନନ୍ଦ ଉପଭୋଗ କରିପାରିବେ, ସେଥିପାଇଁ ବିଶେଷ ଭାବରେ ଚେଷ୍ଟା କରୁଥିଲେ । ଆମମାନଙ୍କର ପରିଚିତା ଜନୈକା ସ୍ତ୍ରୀଭକ୍ତ ଏହିପରି ଦିନେ ତାଙ୍କର ସାବତ ଭଉଣୀ ଓ ତାଙ୍କ ସ୍ୱାମୀଙ୍କର ନିଜ ଭଉଣୀଙ୍କୁ ସଙ୍ଗରେ ନେଇ ଅପରାହ୍ଣରେ ଦକ୍ଷିଣେଶ୍ୱରରେ ଠାକୁରଙ୍କ ନିକଟରେ ଉପସ୍ଥିତ ହେଲେ । ପ୍ରଣାମ କରି ବସିବା ପରେ ଠାକୁର ସେମାନଙ୍କର ପରିଚୟ ଓ କୁଶଳ-ପ୍ରଶ୍ନାଦି କରି ଈଶ୍ୱରଙ୍କ ପ୍ରତି ଅନୁରାଗବାନ ହେବା ହିଁ ମାନବ ଜୀବନର ଏକମାତ୍ର ଲକ୍ଷ୍ୟ ହେବା ଉଚିତ୍, ଏହି ବିଷୟରେ କଥା ଆରମ୍ଭ କରି ସେମାନଙ୍କୁ କହିଲେ—

**ସେହି ବିଷୟରେ ସ୍ତ୍ରୀଭକ୍ତମାନଙ୍କୁ ଉପଦେଶ :**

ଭଗବାନଙ୍କର ଶରଣାପନ୍ନ ହେବା କ'ଣ ସହଜରେ ହୁଏ ଗୋ ? ମହାମାୟାଙ୍କର ଏପରି କାଣ୍ଡ—ସେ କ'ଣ ଏହା ହେବାକୁ ଦେବେ ? ଯାହାର ତିନି କୁଳରେ କେହି ନାହିଁ, ତାହା ଦ୍ୱାରା ଗୋଟିଏ ବିଲେଇ ପୋଷି ସଂସାର କରାଇବେ ! —ସେ ମଧ୍ୟ ବିଲେଇ ପାଇଁ ମାଛ କ୍ଷୀର ବୁଲି ବୁଲି ଯୋଗାଡ଼ କରିବ, ଆଉ କହିବ, 'ମାଛ କ୍ଷୀର ନ ହେଲେ ବିଲେଇଟା ଖାଉ ନାହିଁ, କ'ଣ କରିବି ?'

---

୧. ଗୁରୁଭାବ-ପୂର୍ବାର୍ଦ୍ଧ, ପ୍ରଥମ ଅଧ୍ୟାୟ ଏବଂ ଦ୍ୱିତୀୟ ଅଧ୍ୟାୟ, ଦ୍ରଷ୍ଟବ୍ୟ ।

"ହୁଏତ ଜଣଙ୍କର ବଡ଼ ଖାନଦାନୀ ଘର । ପତି, ପୁତ୍ର ସମସ୍ତେ ମରିଗଲେ — କେହି ରହିଲେ ନାହିଁ — କେବଳ କେତୋଟି ବିଧବା ମାତ୍ର ରହିଲେ ! ଘରର ଅବସ୍ଥା ଏପରି ଯେ କେଉଁଠି ଭାଙ୍ଗିଯାଇଛି, ଛାତ ଉପରେ ଅଶ୍ୱତ୍‌ଥ ଗଛ ଉଠିଛି ଏବଂ ତା ସହିତ ଦୁଇ ଚାରୋଟି ଲମ୍ବା ଖଡ଼ା ଗଛ ମଧ୍ୟ ଉଠିଛି, ବିଧବାମାନେ ସେଥିରୁ ଶାଗ ତୋଳି ତରକାରୀ ରାନ୍ଧୁଛନ୍ତି ଓ ସଂସାର କରୁଛନ୍ତି ! କାହିଁକି ? ଭଗବାନଙ୍କୁ ଡାକୁ ନାହାନ୍ତି କାହିଁକି ? ତାଙ୍କ ଶରଣାପନ୍ନ ହେବାକୁ ତ ସେମାନଙ୍କର ସମୟ ହୋଇଛି । ମାତ୍ର ତାହା ହେଉ ନାହିଁ ।"

ହୁଏତ କାହାର ବିବାହ ପରେ ସ୍ୱାମୀ ମରିଗଲା, ସେ ବାଲ୍ୟବିଧବା ହେଲା । ଭଗବାନଙ୍କୁ ଡାକୁ ନାହିଁ କାହିଁକି ? ତା'ନୁହେଁ — ସେ ଯାଇ ତା ଭାଇ ଘରେ ମାଲିକାଣୀ ହେଲା ! ମୁଣ୍ଡରେ ଖୋସାବାନ୍ଧି, ପଣତରେ ଚାବିନେଣ୍ଟା ବାନ୍ଧି ହାତ ହଲେଇ ମାଲିକାଣୀପଣିଆ ଦେଖାଉଛି — ସର୍ବନାଶୀକୁ ଦେଖିଲେ ପଡ଼ାଲୋକ ଡରୁଛନ୍ତି ! ଆଉ ସେ କହି ବୁଲୁଛି — 'ମୁଁ ନ ଥିଲେ ଭାଇଙ୍କର ଖାଇବା ହେବ ନାହିଁ !' — ମରୁନୁ ରାଣ୍ଡି, ତୋ'ର କ'ଣ ହେଲା ତାହା ଦେଖ — ତା ନୁହେଁ !"

ଗୋଟିଏ ମଜାର କଥା ହେଉଛି, ଆମର ପରିଚିତା ସ୍ତ୍ରୀଲୋକଟିର ଭଉଣୀଙ୍କ ନଣନ୍ଦ — ଯିଏ ଆଜି ପ୍ରଥମଥର ଠାକୁରଙ୍କର ଦର୍ଶନ ଲାଭ କଲେ, ସେ ଭାଇଙ୍କ ଘରେ ମାଲିକାଣୀ-ଭଉଣୀମାନଙ୍କର ଶ୍ରେଣୀଭୁକ୍ତା ଥିଲେ । ଠାକୁରଙ୍କୁ କେହି ସେକଥା ଏହା ପୂର୍ବରୁ କହି ନାହାନ୍ତି । କିନ୍ତୁ କଥାରେ କଥାରେ ଠାକୁର ଏହି ଦୃଷ୍ଟାନ୍ତ ଆଣି ବାସନାର ପ୍ରବଳ ପ୍ରତାପ ଓ ମାନବମନର ଅନନ୍ତ ବାସନାସ୍ତରର କଥା ବୁଝାଇବାକୁ ଲାଗିଲେ । କହିବା ବାହୁଲ୍ୟ, ଠାକୁରଙ୍କର କଥାଗୁଡ଼ିକ ସ୍ତ୍ରୀଲୋକଟିର ଅନ୍ତରରେ ପ୍ରବିଷ୍ଟ ହୋଇଥିଲା । ଏଦୃଷ୍ଟାନ୍ତଗୁଡ଼ିକ ଶୁଣି ଆମର ପରିଚିତା ସ୍ତ୍ରୀଭକ୍ତଙ୍କ ଭଉଣୀ ତାଙ୍କ ଦେହକୁ ସ୍ପର୍ଶ କରି ଧୀରେ ଧୀରେ କହିଲେ, "ଓଃ ନାନୀ, ଆଜି ହିଁ କ'ଣ ଠାକୁରଙ୍କର ମୁହଁରୁ ଏକଥା ବାହାରିବାର ଥିଲା ? — ମୋ ନଣନ୍ଦ କ'ଣ ମନେ କରିବେ !" ପରିଚିତା ଜଣକ କହିଲେ, "କ'ଣ କରାଯିବ, ତାଙ୍କ ଇଚ୍ଛା, ତାଙ୍କୁ ତ କେହି ଶିଖାଇ ଦେଇ ନାହିଁ ?"

### ଅବତାରପୁରୁଷମାନଙ୍କର ସୂକ୍ଷ୍ମବାସନା ସହିତ ସଂଗ୍ରାମ :

ମାନବପ୍ରକୃତିର ଆଲୋଚନାରେ ସ୍ପଷ୍ଟ ବୁଝାଯାଏ ଯେ, ଯାହାର ମନ ଯେତେ ଉପରକୁ ଉଠେ, ସୂକ୍ଷ୍ମ ବାସନାଗୁଡ଼ିକ ତାକୁ ସେତେ ତୀବ୍ର ଯାତନା ଅନୁଭବ କରାଏ । ଚୋରୀ, ମିଥ୍ୟା ବା ଲାମ୍ପଟ୍ୟ ଯିଏ ଅସଂଖ୍ୟବାର କରିଅଛି, ତା'ର ସେପରି କାର୍ଯ୍ୟର ପୁନରନୁଷ୍ଠାନ ସେତେ କଷ୍ଟକର ହୁଏ ନାହିଁ; କିନ୍ତୁ ଉଦାର ଉଚ୍ଚ ଅନ୍ତଃକରଣ ଏସବୁର ଚିନ୍ତା ମାତ୍ରେ ହିଁ ନିଜକୁ ଦୋଷୀ ସାବ୍ୟସ୍ତ କରି ଦାରୁଣ ଯନ୍ତ୍ରଣାରେ ମୁହ୍ୟମାନ ହୁଏ । ଅବତାରପୁରୁଷମାନଙ୍କୁ ଆଜୀବନ

ସ୍ଥୂଳଭାବରେ ବିଷୟ ଗ୍ରହଣରେ ଅନେକସ୍ଥଳରେ ବିରତ ରହିବା ଦେଖାଗଲେ ମଧ୍ୟ, ଅନ୍ତରର ସୂକ୍ଷ୍ମ ବାସନାଗୁଡ଼ିକ ସହିତ ସଂଗ୍ରାମ ଯେ ସେମାନେ ଆମମାନଙ୍କ ପରି ସମଭାବରେ ହିଁ କରିଥାଆନ୍ତି ଏବଂ ମନ ଭିତରେ ଏଗୁଡ଼ିକର ଚେହେରା ଦେଖି ଆମମାନଙ୍କ ଅପେକ୍ଷା ଶତସହସ୍ରଗୁଣ ଅଧିକ ଯନ୍ତ୍ରଣା ଅନୁଭବ କରନ୍ତି, ଏବିଷୟ ସେମାନେ ସ୍ୱୟଂ ସ୍ପଷ୍ଟଭାବରେ ସ୍ୱୀକାର କରିଛନ୍ତି । ଅତଏବ ରୂପରସାଦି ବିଷୟରୁ ଇନ୍ଦ୍ରିୟମାନଙ୍କୁ ଫେରାଇବାକୁ ସେମାନଙ୍କର ସଂଗ୍ରାମକୁ ଛଳନା ବୋଲି କିପରି କୁହାଯିବ ?

**ଅବତାରପୁରୁଷଙ୍କର ମାନବଭାବ ସମ୍ବନ୍ଧରେ ଆପତ୍ତି ଓ ମୀମାଂସା :**

ଶାସ୍ତ୍ରଦର୍ଶୀ କୌଣସି ପାଠକ ହୁଏତ ଏଠାରେ କହିବେ—"କିନ୍ତୁ ତୁମ କଥା ମାନିବି କିପରି ? ଏହି ଦେଖ, ଅଦ୍ୱୈତବାଦର ଶିରୋମଣି ଆଚାର୍ଯ୍ୟ ଶଙ୍କର ତାଙ୍କର ଗୀତାଭାଷ୍ୟର ପ୍ରାରମ୍ଭରେ ଭଗବାନ ଶ୍ରୀକୃଷ୍ଣଙ୍କର ଜନ୍ମ ଓ ନରଦେହ-ଧାରଣ ସମ୍ବନ୍ଧରେ କହିଛନ୍ତି, 'ନିତ୍ୟଶୁଦ୍ଧମୁକ୍ତସ୍ୱଭାବ, ସମସ୍ତ ଜୀବଙ୍କର ନିୟାମକ, ଜନ୍ମାଦିରହିତ ଈଶ୍ୱର ଲୋକଙ୍କୁ ଅନୁଗ୍ରହ କରିବେ ବୋଲି ନିଜ ମାୟାଶକ୍ତି ଦ୍ୱାରା ଯେପରି ଦେହବାନ ହୋଇଛନ୍ତି, ଯେପରି ଜନ୍ମିଛନ୍ତି, ଏପ୍ରକାର ପରିଲକ୍ଷିତ ହୁଅନ୍ତି ।'[୧] ସ୍ୱୟଂ ଆଚାର୍ଯ୍ୟ ଯେତେବେଳେ ଏହି କଥା କହୁଛନ୍ତି, ସେତେବେଳେ ତୁମର ପୂର୍ବୋକ୍ତ କଥା କେଉଁଠି ତିଷ୍ଠିବ ?" ଆମେ କହିବୁ, ଆଚାର୍ଯ୍ୟ ଏପରି କହିଛନ୍ତି ସତ୍ୟ, ମାତ୍ର ଆମମାନଙ୍କର ଠିଆ ହେବାର ସ୍ଥାନ ଅଛି । ଆଚାର୍ଯ୍ୟଙ୍କର ଏକଥା ବୁଝିବାକୁ ହେଲେ ଆମମାନଙ୍କୁ ସ୍ମରଣ ରଖିବାକୁ ହେବ ଯେ, ସେ ଈଶ୍ୱରଙ୍କର ଦେହଧାରଣ ବା ନାମରୂପବିଶିଷ୍ଟ ହେବାଟିକୁ ଯେପରି ଛଳନା ବୋଲି କହୁଛନ୍ତି, ସେପରି ସଙ୍ଗେ ସଙ୍ଗେ ତୁମର, ଆମର ଏବଂ ଜଗତର ପ୍ରତ୍ୟେକ ବସ୍ତୁ ଓ ବ୍ୟକ୍ତିର ନାମରୂପବିଶିଷ୍ଟ ହେବାଟାକୁ ଛଳନା କହୁଛନ୍ତି । ସମସ୍ତ ଜଗତଟିକୁ ହିଁ ସେ ବ୍ରହ୍ମବସ୍ତୁର ଉପରେ ମିଥ୍ୟା ଛଳନା କହୁଛନ୍ତି ବା ଏହାର ବାସ୍ତବ ସତ୍ତା ସ୍ୱୀକାର କରୁ ନାହାନ୍ତି ।[୨] ଅତଏବ ତାଙ୍କର ଏହି ଉଭୟ କଥା ଏକତ୍ର ଗ୍ରହଣ କଲେ ତେବେ ଯାଇ ତାଙ୍କ ଦ୍ୱାରା କୃତ ମୀମାଂସା ବୁଝିହେବ । ଅବତାରମାନଙ୍କର ଦେହଧାରଣ ଓ ସୁଖଦୁଃଖାଦି ଅନୁଭବଗୁଡ଼ିକ ମିଥ୍ୟା ଛଳନା ବୋଲି ମାନିବା ଏବଂ ଆମର ଏହି ବିଷୟଗୁଡ଼ିକୁ ସତ୍ୟ କହିବା ତାଙ୍କର ଅଭିପ୍ରାୟ ନୁହେଁ । ଆମମାନଙ୍କର ଅନୁଭବ ଓ ପ୍ରତ୍ୟକ୍ଷକୁ ସତ୍ୟ ବୋଲି କହିଲେ ଅବତାରପୁରୁଷମାନଙ୍କର ପ୍ରତ୍ୟକ୍ଷ ଆଦିକୁ

---

୧. ସ ଚ ଭଗବାନ୍ ଅଜୋଽବ୍ୟୟୋ ଭୂତାନାମୀଶ୍ୱରୋ ନିତ୍ୟଶୁଦ୍ଧମୁକ୍ତସ୍ୱଭାବୋଽପି ସନ୍ ସ୍ୱମାୟୟା ଦେହବାନିବ ଜାତ ଇବ ଲୋକାନୁଗ୍ରହଂ କୁର୍ବନ୍ ଇବ ଲକ୍ଷ୍ୟତେ ।

—ଗୀତା, ଶାଙ୍କରଭାଷ୍ୟର ଉପକ୍ରମଣିକା

୨. ଶାରୀରିକଭାଷ୍ୟରେ ଅଧ୍ୟାସ-ନିରୂପଣ ଦ୍ରଷ୍ଟବ୍ୟ ।

ମଧ୍ୟ ସତ୍ୟ ବୋଲି ଧରିବାକୁ ହେବ । ସୁତରାଂ ପୂର୍ବୋକ୍ତ କଥାରେ ଆମେ କିଛି ଅନ୍ୟାୟ କହି ନାହୁଁ ।

**ଏକଥାର ଅନ୍ୟଭାବରେ ଆଲୋଚନା :**

ବିଷୟଟି ଅନ୍ୟ ଏକ ଭାବରେ ଆଲୋଚନା କଲେ ପରିଷ୍କାର ବୁଝାଯିବ । ଅଦ୍ୱୈତଭାବ-ଭୂମି ଏବଂ ସାଧାରଣ ବା ଦ୍ୱୈତଭାବ-ଭୂମିରୁ ଅନୁଶୀଳନ କରି ଜଗତ ସମ୍ବନ୍ଧରେ ଦୁଇ ପ୍ରକାରର ଧାରଣା ଆମମାନଙ୍କ ମନରେ ଉଦୟ ହୁଏ — ଶାସ୍ତ୍ର ଏହି କଥା କହେ । ପ୍ରଥମଟିରେ ଅବସ୍ଥାନ କରି ଜଗତରୂପ ପଦାର୍ଥଟି କେତେଦୂର ସତ୍ୟ ବୁଝିବାକୁ ଗଲେ ପ୍ରତ୍ୟକ୍ଷ ବୋଧ ହୁଏ, ତାହା ନାହିଁ ବା କୌଣସି କାଳରେ ନ ଥିଲା — 'ଏକମେବାଦ୍ୱିତୀୟମ' ବ୍ରହ୍ମ ବସ୍ତୁ ଭିନ୍ନ ଅନ୍ୟ କୌଣସି ବସ୍ତୁ ନାହିଁ; ପୁଣି ଦ୍ୱିତୀୟ ବା ଦ୍ୱୈତଭାବ-ଭୂମିରେ ରହି ଜଗତକୁ ଦେଖିଲେ ତାହାକୁ ନାନା ନାମରୂପର ସମଷ୍ଟି ସତ୍ୟ ଓ ନିତ୍ୟ ବର୍ତ୍ତମାନ ବୋଲି ବୋଧ ହୁଏ, ଯେପରି ଆମମାନଙ୍କ ପରି ସାଧାରଣ ମନୁଷ୍ୟମାନଙ୍କର ସର୍ବକ୍ଷଣ ହେଉଅଛି । ଦେହସ୍ଥ ରହି ମଧ୍ୟ ବିଦେହଭାବସମ୍ପନ୍ନ ଅବତାର ଏବଂ ଜୀବନ୍ମୁକ୍ତ ପୁରୁଷମାନଙ୍କର ଅଦ୍ୱୈତଭୂମିରେ ଅବସ୍ଥାନ ଜୀବନରେ ଅନେକ ସମୟ ହେବାରୁ ନିମ୍ନସ୍ଥ ଦ୍ୱୈତଭୂମିରେ ଅବସ୍ଥାନକାଳରେ ଜଗତଟାକୁ ସ୍ୱପ୍ନତୁଲ୍ୟ ମିଥ୍ୟା ବୋଲି ଧାରଣା ହୋଇଥାଏ । କିନ୍ତୁ ଜାଗ୍ରତ ଅବସ୍ଥା ତୁଳନାରେ ସ୍ୱପ୍ନ ମିଥ୍ୟା ବୋଲି ପ୍ରତୀତ ହେଲେ ମଧ୍ୟ ସ୍ୱପ୍ନସନ୍ଦର୍ଶନକାଳରେ ଯେପରି ତାହାକୁ ସମ୍ପୂର୍ଣ୍ଣ ମିଥ୍ୟା କହି ହୁଏ ନାହିଁ, ଜୀବନ୍ମୁକ୍ତ ଓ ଅବତାରପୁରୁଷମାନଙ୍କର ମନର ଜଗତର ପ୍ରତୀତିକୁ ମଧ୍ୟ ସେହିପରି ମିଥ୍ୟା କହି ହୁଏ ନାହିଁ ।

**ଉଚ୍ଚତର ଭାବଭୂମିରୁ ଜଗତସମ୍ବନ୍ଧରେ ଭିନ୍ନ ଉପଲବ୍ଧି :**

ଜଗତରୂପକ ପଦାର୍ଥଟିକୁ ପୂର୍ବୋକ୍ତ ଦୁଇ ପ୍ରକାରର ଭୂମିରୁ ଯେପରି ଦୁଇ ଭାବରେ ଦେଖିବାକୁ ମିଳେ, ସେହିପରି ପୁଣି ଏହାର ଅନ୍ତର୍ଗତ କୌଣସି ବ୍ୟକ୍ତି ବିଶେଷଙ୍କୁ ମଧ୍ୟ ଏହିପରି ଦୁଇ ଭାବଭୂମିରୁ ଦୁଇପ୍ରକାରର ଦେଖାଯାଇଥାଏ । ଦ୍ୱୈତଭାବ-ଭୂମିରୁ ଦେଖିଲେ ସେହି ବ୍ୟକ୍ତିଙ୍କୁ ବଦ୍ଧ ମାନବ ଏବଂ ପୂର୍ଣ୍ଣ ଅଦ୍ୱୈତ-ଭୂମିରୁ ଦେଖିଲେ ତାଙ୍କୁ ନିତ୍ୟ-ଶୁଦ୍ଧ-ମୁକ୍ତ ସ୍ୱରୂପ ବ୍ରହ୍ମ ବୋଲି ବୋଧ ହୁଏ । ପୂର୍ଣ୍ଣ ଅଦ୍ୱୈତଭୂମି ଭାବରାଜ୍ୟର ସର୍ବୋଚ୍ଚ ପ୍ରଦେଶ । ସେଥିରେ ଆରୋହଣ କରିବା ପୂର୍ବରୁ ମାନବ-ମନ ଉଚ୍ଚରୁ ଉଚ୍ଚତର ନାନା ଭାବଭୂମି ଭିତର ଦେଇ ଉଠି ପରିଶେଷରେ ଗନ୍ତବ୍ୟସ୍ଥଳରେ ପହଞ୍ଚିଥାଏ । ସେହି ସକଳ ଉଚ୍ଚରୁ ଉଚ୍ଚତର ଭାବଭୂମିକୁ ଉଠିବା ସମୟରେ ଜଗତ ଏବଂ ତା'ର ଅନ୍ତର୍ଗତ ବ୍ୟକ୍ତିବିଶେଷ ଭିନ୍ନ ଭିନ୍ନ ଭାବରେ ସାଧକ ନିକଟରେ ପ୍ରତୀୟମାନ ହୋଇ ସେମାନଙ୍କ ସମ୍ବନ୍ଧରେ ତାଙ୍କର ପୂର୍ବ ଧାରଣା ନାନାରୂପରେ ପରିବର୍ତ୍ତିତ ହେଉଥାଏ । ଯଥା — ଜଗତଟିକୁ ଭାବମୟ ବୋଲି

ବୋଧହୁଏ; ଅଥବା ବ୍ୟକ୍ତିବିଶେଷଙ୍କୁ ଶରୀରଠାରୁ ପୃଥକ, ଅଦୃଷ୍ଟପୂର୍ବ ଶକ୍ତିଶାଳୀ, ମନୋମୟ ବା ଦିବ୍ୟ ଜ୍ୟୋତିର୍ମୟ ବୋଲି ବୋଧ ହେଉଥାଏ !

**ଅବତାରପୁରୁଷମାନଙ୍କର ଶକ୍ତିରେ ମାନବ ଉଚ୍ଚଭାବରେ ଉଠି ସେମାନଙ୍କୁ ମାନବଭାବ–ପରିଶୂନ୍ୟ ଦେଖେ :**

ଅବତାରପୁରୁଷମାନଙ୍କ ନିକଟରେ ଶ୍ରଦ୍ଧା ଓ ଭକ୍ତିସମ୍ପନ୍ନ ହୋଇ ଉପସ୍ଥିତ ହେଲେ ସାଧାରଣ ମାନବ ଅଜ୍ଞାତସାରରେ ପୂର୍ବୋକ୍ତ ଉଚ୍ଚରୁ ଉଚ୍ଚତର ଭାବଭୂମିରେ ଆରୁଢ଼ ହୋଇଥାଏ । ଅବଶ୍ୟ ସେମାନଙ୍କର ବିଚିତ୍ର ଶକ୍ତିପ୍ରଭାବରେ ହିଁ ତାହାର ଏପ୍ରକାରର ଆରୋହଣସାମର୍ଥ୍ୟ ଉପସ୍ଥିତ ହୁଏ । ଅତଏବ ବୁଝାଯାଉଅଛି ଯେ, ସେହି ସକଳ ଉଚ୍ଚଭୂମିରୁ ସେମାନଙ୍କୁ ଏହିପରି ବିଚିତ୍ରଭାବରେ ଦେଖିବାକୁ ପାଇ ଭକ୍ତ–ସାଧକ ସେମାନଙ୍କ ସମ୍ବନ୍ଧରେ ଧାରଣା କରି ବସନ୍ତି ଯେ, ବିଚିତ୍ରଶକ୍ତିସମ୍ପନ୍ନ ଦିବ୍ୟଭାବ ହିଁ ସେମାନଙ୍କର ଯଥାର୍ଥ ସ୍ୱରୂପ ଏବଂ ଇତରସାଧାରଣ ସେମାନଙ୍କ ଭିତରେ ଯେଉଁ ମାନବଭାବ ଦେଖିବାକୁ ପାଆନ୍ତି, ତାହା ସେମାନେ ମିଥ୍ୟା ଛଳନା କରି ସେମାନଙ୍କୁ ଦେଖାଇଥାଆନ୍ତି । ଭକ୍ତିର ଗଭୀରତା ସହିତ ଭକ୍ତ–ସାଧକର ପ୍ରଥମେ ଈଶ୍ୱରଙ୍କର ଭକ୍ତମାନଙ୍କ ସମ୍ବନ୍ଧରେ ଏବଂ ପରେ ଈଶ୍ୱରଙ୍କର ଜଗତ ସମ୍ବନ୍ଧରେ ଏପରି ଧାରଣା ହେବାର ଦେଖାଯାଇଥାଏ ।

**ଅବତାରପୁରୁଷମାନଙ୍କର ମନର କ୍ରମୋନ୍ନତି । ଜୀବ ଓ ଅବତାରଙ୍କର ଶକ୍ତିର ପ୍ରଭେଦ :**

ପୂର୍ବରୁ କୁହାଯାଇଛି, ଅବତାର ପୁରୁଷମାନଙ୍କର ଜୀବନରେ ବାଲ୍ୟକାଳରୁ ବେଳେବେଳେ ଦେଖିବାକୁ ମିଳେ ଯେ, ସେମାନେ ମନର ଉଚ୍ଚଭୂମିକୁ ଆରୋହଣ କରି ଜଗତରେ ପ୍ରତିନିୟତ ପରିଦୃଷ୍ଟ ବସ୍ତୁ ଓ ବ୍ୟକ୍ତିମାନଙ୍କ ପରି ଭାବରାଜ୍ୟରେ ଦୃଷ୍ଟ ବିଷୟଗୁଡ଼ିକର ଦୃଢ଼ ଅସ୍ତିତ୍ୱ ଅନୁଭବ କରନ୍ତି । ପରେ, ଦିନ ପରେ ଦିନ ଯେତେ ଗଡ଼ିଚାଲେ ଏବଂ ଏପରି ଦର୍ଶନ ସେମାନଙ୍କର ଜୀବନରେ ବାରମ୍ବାର ଯେତେ ଆସି ଉପସ୍ଥିତ ହେଉଥାଏ, ସେତେ ସେମାନେ ସ୍ଥୂଳ, ବାହ୍ୟ ଜଗତ ଅପେକ୍ଷା ଭାବରାଜ୍ୟର ଅସ୍ତିତ୍ୱରେ ହିଁ ସମଧିକ ବିଶ୍ୱାସବାନ ହୋଇ ପଡ଼ନ୍ତି । ପରିଶେଷରେ, ସର୍ବୋଚ୍ଚ ଅଦ୍ୱୈତଭାବଭୂମିରେ ପହଞ୍ଚି ଯେଉଁ ଏକମେବାଦ୍ୱିତୀୟମ୍ ବସ୍ତୁରୁ ନାନା ନାମରୂପମୟ ଜଗତର ବିକାଶ ହୋଇଅଛି, ତାହାର ସନ୍ଧାନ ପାଇ ସେମାନେ ସିଦ୍ଧକାମ ହୁଅନ୍ତି । ଜୀବନ୍ମୁକ୍ତ ପୁରୁଷମାନଙ୍କର ମଧ୍ୟ ଏହିପରି ହୋଇଥାଏ । ତେବେ ଅବତାରପୁରୁଷମାନେ ଅତି ସ୍ୱଳ୍ପକାଳରେ ଯେଉଁ ସତ୍ୟରେ ଉପନୀତ ହୁଅନ୍ତି, ତାହା ଉପଲବ୍ଧି କରିବାକୁ ସେମାନଙ୍କର ଆଜୀବନ ଚେଷ୍ଟାର ଆବଶ୍ୟକ ହୋଇଥାଏ । ଅଥବା, ସ୍ୱୟଂ ସ୍ୱଳ୍ପକାଳରେ ଅଦ୍ୱୈତଭୂମିରେ ଆରୋହଣ କରି ପାରିଲେ ମଧ ଅନ୍ୟକୁ ଏହି ଭୂମିରେ ଆରୋହଣ କରାଇ ଦେବାର ଶକ୍ତି

ସେମାନଙ୍କ ଭିତରେ ଅବତାରପୁରୁଷଙ୍କ ତୁଳନାରେ ଅତି ଅଳ୍ପମାତ୍ର ପ୍ରକାଶିତ ହୁଏ । ଠାକୁରଙ୍କର ଏହି ବିଷୟରେ ଶିକ୍ଷା ସ୍ମରଣ କରାଯାଉ—"ଜୀବ ଓ ଅବତାର ଭିତରେ ଶକ୍ତିର ପ୍ରକାଶ ନେଇ ହିଁ ପ୍ରଭେଦ ।"

### ଅବତାର—ଦେବମାନବ, ସର୍ବଜ୍ଞ :

ଅଦ୍ୱୈତଭୂମିରେ କିଛିକାଳ ଅବସ୍ଥାନ କରି ଜଗତକାରଣର ସାକ୍ଷାତ ପ୍ରତ୍ୟକ୍ଷରେ ପରିତୃପ୍ତ ହୋଇ ଅବତାରପୁରୁଷମାନେ ଯେତେବେଳେ ପୁନରାୟ ମନର ନିମ୍ନଭୂମିକୁ ଅବରୋହଣ କରନ୍ତି, ସେତେବେଳେ ସାଧାରଣ ଦୃଷ୍ଟିରେ ମାନବମାତ୍ର ହେଲେ ମଧ୍ୟ ସେମାନେ ଯଥାର୍ଥ ହିଁ ଅମାନବ ବା ଦେବମାନବ ପଦବୀ ପ୍ରାପ୍ତ ହୋଇଥାଆନ୍ତି । ସେତେବେଳେ ସେମାନେ ଜଗତ ଓ ତା'ର କାରଣ, ଉଭୟ ପଦାର୍ଥକୁ ସାକ୍ଷାତ୍ ପ୍ରତ୍ୟକ୍ଷ କରି ତୁଳନାତ୍ମକଭାବରେ ବାହ୍ୟ ଓ ଅନ୍ତର ଜଗତର ଛାୟାସଦୃଶ ଅସ୍ତିତ୍ୱ ସର୍ବଦା ସର୍ବତ୍ର ଅନୁଭବ କରୁଥାଆନ୍ତି । ସେତେବେଳେ ସେମାନଙ୍କ ଭିତର ଦେଇ ମନର ଅସାଧାରଣ ଉଚ୍ଚଶକ୍ତିସମୂହ ସ୍ୱତଃ ଲୋକହିତାୟ ନିତ୍ୟ ପ୍ରକାଶିତ ହେଉଥାଏ ଏବଂ ଜଗତରେ ପରିଦୃଷ୍ଟ ସମସ୍ତ ପଦାର୍ଥର ଆଦି, ମଧ୍ୟ ଓ ଅନ୍ତ ସମ୍ୟକ୍ ଅବଗତ ହୋଇ ସେମାନେ ସର୍ବଜ୍ଞତ୍ୱ ଲାଭ କରନ୍ତି । ସ୍ଥୂଳଦୃଷ୍ଟିସମ୍ପନ୍ନ ମାନବ ଆମେ ସେତେବେଳେ ହିଁ ସେମାନଙ୍କର ଅଲୌକିକ ଚରିତ୍ର ଓ ଚେଷ୍ଟା ଆଦି ପ୍ରତ୍ୟକ୍ଷପୂର୍ବକ ସେମାନଙ୍କର ଅଭୟ ଶରଣ ଗ୍ରହଣ କରିଥାଉ ଏବଂ ସେମାନଙ୍କର ଅପାର କରୁଣାରୁ ପୁନରାୟ ଏକଥା ହୃଦୟଙ୍ଗମ କରୁ ଯେ—ବହିର୍ମୁଖୀ ବୃତ୍ତି ନେଇ ବାହ୍ୟଜଗତରେ ପରିଦୃଷ୍ଟ ବସ୍ତୁ ଓ ବ୍ୟକ୍ତିସମୂହର ଅବଲମ୍ବନରେ ଯଥାର୍ଥ ସତ୍ୟଲାଭ ବା ଜଗତକାରଣର ଅନୁସନ୍ଧାନ ଓ ଶାନ୍ତି ଲାଭ କଦାପି ସମ୍ଭବ ନୁହେଁ ।

### ବହିର୍ମୁଖୀ ବୃତ୍ତିନେଇ ଜଡ଼ବିଜ୍ଞାନର ଆଲୋଚନାରେ ଜଗତ୍କାରଣର ଜ୍ଞାନଲାଭ ଅସମ୍ଭବ :

ପାଶ୍ଚାତ୍ୟବିଦ୍ୟା-ପାରଦର୍ଶୀ ପାଠକ ଆମମାନଙ୍କର ପୂର୍ବୋକ୍ତ କଥାଶୁଣି ନିଶ୍ଚୟ କହିବେ—ବାହ୍ୟଜଗତର ବସ୍ତୁ ଓ ବ୍ୟକ୍ତିମାନଙ୍କୁ ଅବଲମ୍ବନ କରି ଅନୁସନ୍ଧାନ ଦ୍ୱାରା ମାନବର ଜ୍ଞାନ ଆଜିକାଲି କେତେଦୂର ଉନ୍ନତ ହୋଇଅଛି ଓ ପ୍ରତିଦିନ ହେଉଅଛି, ତାହା ଯିଏ ଦେଖୁଛି ସେ କେବେ ହେଲେ ଏପରି କଥା କହିପାରିବ ନାହିଁ । ଏହାର ଉତ୍ତରରେ ଆମେ କହିବୁ—ଜଡ଼ବିଜ୍ଞାନର ଉନ୍ନତି ଦ୍ୱାରା ମନୁଷ୍ୟର ଜ୍ଞାନବୃଦ୍ଧି ହେବା ସତ୍ୟ ହେଲେ ମଧ୍ୟ ଏହାର ସହାୟତାରେ ପୂର୍ଣ୍ଣସତ୍ୟଲାଭ ଆମମାନଙ୍କର କଦାପି ସାଧିତ ହେବ ନାହିଁ । କାରଣ, ଯେଉଁ ବିଜ୍ଞାନ ଜଗତକାରଣକୁ ଜଡ଼ କିମ୍ବା ଆମ ଅପେକ୍ଷା ଅଧମ, ତଥା ନିକୃଷ୍ଟ ବସ୍ତୁ ବୋଲି ଧାରଣା କରିବାକୁ ଶିକ୍ଷା ଦେଉଛି, ତାହାର ଉନ୍ନତି ଦ୍ୱାରା ଆମେ କ୍ରମଶଃ

ବହିର୍ମୁଖୀ ହୋଇ ଅଧିକ ପରିମାଣରେ ରୂପରସାଦି-ଭୋଗଲାଭକୁ ହିଁ ଜୀବନର ଏକମାତ୍ର ଲକ୍ଷ୍ୟ ବୋଲି ସ୍ଥିର କରିନେଉଛୁ । ଅତଏବ, ଏକମାତ୍ର ଜଡ଼ବସ୍ତୁରୁ ଜଗତର ସମସ୍ତ ବସ୍ତୁ ଉତ୍ପନ୍ନ ହୋଇଛି—ଏକଥା ଯନ୍ତ୍ରସାହାଯ୍ୟରେ କୌଣସି କାଳରେ ପ୍ରମାଣ କରିପାରିଲେ ମଧ୍ୟ ଅନ୍ତର-ରାଜ୍ୟର ସମୁଦାୟ ବିଷୟ ଆମ ନିକଟରେ ଚିର କାଳ ଅନ୍ଧକାରାବୃତ ଓ ଅପ୍ରମାଣିତ ହୋଇ ରହିବ । ଭୋଗବାସନାତ୍ୟାଗ ଓ ଅନ୍ତର୍ମୁଖୀବୃତ୍ତିସମ୍ପନ୍ନ ହେବା ହିଁ ମାନବର ମୁକ୍ତିଲାଭର ପଥ, ତାହା ଯେତେଦିନ ହୃଦୟଙ୍ଗମ ନ ହେବ, ସେତେଦିନ ପର୍ଯ୍ୟନ୍ତ ଆମମାନଙ୍କର ଦେଶକାଳାତୀତ ଅଖଣ୍ଡ ସତ୍ୟଲାଭପୂର୍ବକ ଶାନ୍ତିଲାଭ ସୁଦୂରପରାହତ ହୋଇ ରହିବ ।

**ଅବତାରପୁରୁଷଙ୍କର ବାଲ୍ୟକାଳରୁ ଭାବତନ୍ମୟତା :**

ଭାବରାଜ୍ୟ ବିଷୟ ନେଇ ବାଲ୍ୟକାଳରେ ବେଳେବେଳେ ତନ୍ମୟ ହୋଇଯିବା କଥା ସମସ୍ତ ଅବତାରପୁରୁଷଙ୍କର ଜୀବନରେ ଶୁଣିବାକୁ ମିଳିଥାଏ । ଶ୍ରୀକୃଷ୍ଣ ବାଲ୍ୟକାଳରେ ସ୍ୱୀୟ ଦେବତ୍ୱର ପରିଚୟ ବିଭିନ୍ନ ସମୟରେ ନିଜ ପିତାମାତା ଓ ବନ୍ଧୁବାନ୍ଧବମାନଙ୍କର ହୃଦୟଙ୍ଗମ କରାଇ ଦେଇଥିଲେ; ବୁଦ୍ଧ ବାଲ୍ୟକାଳରେ ଉଦ୍ୟାନରେ ବୁଲିବାକୁ ଯାଇ ଜମ୍ବୁବୃକ୍ଷତଳେ ସମାଧିସ୍ଥ ହୋଇ ଦେବତା ଓ ମାନବଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ; ବାଲ୍ୟକାଳରେ ଈଶା ବନ୍ୟ ପକ୍ଷୀମାନଙ୍କୁ ପ୍ରେମରେ ଆକର୍ଷଣପୂର୍ବକ ନିଜ ହାତରେ ଖୁଆଇଥିଲେ; ଭଗବାନ ଶଙ୍କର ନିଜର ମାତାଙ୍କୁ ଦିବ୍ୟଶକ୍ତି ପ୍ରଭାବରେ ମୁଗ୍ଧ ଓ ଆଶ୍ୱସ୍ତ କରି ବାଲ୍ୟ ବୟସରେ ହିଁ ସଂସାର ତ୍ୟାଗ କରିଥିଲେ; ଏବଂ ଚୈତନ୍ୟ ବାଲ୍ୟାବସ୍ଥାରେ ହିଁ ଦିବ୍ୟଭାବରେ ଆବିଷ୍ଟ ହୋଇ ଏକଥାର ଆଭାସ ଦେଇଥିଲେ ଯେ ଈଶ୍ୱରପ୍ରେମିକ ହେୟ-ଉପାଦେୟ ସମସ୍ତ ବସ୍ତୁ ଭିତରେ ହିଁ ଈଶ୍ୱରଙ୍କର ପ୍ରକାଶ ଦେଖନ୍ତି, ।

**ଶ୍ରୀରାମକୃଷ୍ଣଦେବଙ୍କର ଛଅବର୍ଷ ବୟସରେ<br>ପ୍ରଥମ ଭାବାବେଶର କଥା :**

ଶ୍ରୀରାମକୃଷ୍ଣଙ୍କର ଜୀବନରେ ମଧ୍ୟ ଏପରି ଘଟଣାର ଅଭାବ ନାହିଁ । ଦୃଷ୍ଟାନ୍ତସ୍ୱରୂପ କେତୋଟି ଘଟଣା ଏଠାରେ ଉଲ୍ଲେଖ କରୁଅଛୁ । ଘଟଣାଗୁଡ଼ିକ ଠାକୁରଙ୍କ ନିଜ ମୁଖରୁ ଶୁଣି ଆମେ ବୁଝିଛୁ, ଭାବରାଜ୍ୟରେ ପ୍ରଥମ ତନ୍ମୟ ହେବା ତାଙ୍କର ଅତି ଅଳ୍ପ ବୟସରେ ହିଁ ହୋଇଥିଲା । ଠାକୁର କହୁଥିଲେ—''କାମାରପୁକୁରରେ ପିଲାମାନଙ୍କୁ ଛୋଟଛୋଟ ଟାଙ୍ଗୁଡ଼ିରେ ମୁଢ଼ି ଖାଇବାକୁ ଦିଆଯାଏ । ଯାହାଘରେ ତାହା ନ ଥାଏ, ସେମାନେ ପିନ୍ଧିଥିବା ଲୁଗାରେ ମୁଢ଼ି ରଖି ଖାଆନ୍ତି । ପିଲାମାନେ କେହି କେହି ଟୁବୁଲିରେ କେହି କେହି କପଡ଼ାରେ ମୁଢ଼ି ନେଇ ଖାଉ ଖାଉ ପଡ଼ିଆରେ ବୁଲୁ ଥାଆନ୍ତି । ସେତେବେଳେ ଜ୍ୟେଷ୍ଠ କିମ୍ବା ଆଷାଢ଼ ମାସ ହେବ; ମୋତେ ସେତେବେଳେ ଛଅ କି ସାତ ବର୍ଷ ବୟସ

ହୋଇଥିଲା । ଦିନେ ସକାଳେ ଟୁବୁଲିରେ ମୁଢ଼ି ନେଇ ପଡ଼ିଆର ଚଲା ରାସ୍ତା ଦେଇ ଖାଇ ଖାଇ ଯାଉଛି । ଆକାଶରେ ଗୋଟିଏ ସୁନ୍ଦର ଜଳଭରା ମେଘ ଉଠିଛି —ମୁଁ ତାହା ଦେଖୁଛି ଓ ମୁଢ଼ି ଖାଉଛି । ଦେଖୁ ଦେଖୁ ମେଘ ଆକାଶକୁ ପ୍ରାୟ ଢାଙ୍କି ଦେଇଛି, ଏପରି ସମୟରେ ଦୁଧ ପରି ଧଳାବଗଗୁଡ଼ିଏ ସେହି କଳା ମେଘର କୋଳ ଦେଇ ଉଡ଼ିଯିବାକୁ ଲାଗିଲେ । ଏହା ଖୁବ୍ ସୁନ୍ଦର ଦେଖାଯାଉଥିଲା ! —ଦେଖୁ ଦେଖୁ ଅପୂର୍ବ ଭାବରେ ତନ୍ମୟ ହୋଇ ଏପରି ଏକ ଅବସ୍ଥା ହେଲା ଯେ, ଚେତା ରହିଲା ନାହିଁ ! ମୁଁ ପଡ଼ିଗଲି—ମୁଢ଼ିଗୁଡ଼ିକ ବିଛାଡ଼ି ହୋଇ ପଡ଼ିଲା । କେତେ ସମୟ ଏପରି ଭାବରେ ପଡ଼ି ରହିଥିଲି କହିପାରିବି ନାହିଁ, ଲୋକମାନେ ଦେଖିପାରି ଧରାଧରି କରି ଘରକୁ ନେଇ ଆସିଥିଲେ । ସେହି ପ୍ରଥମଥର ଭାବରେ ବେହୋସ ହୋଇ ଯାଇଥିଲି ।’’

### ବିଶାଳାକ୍ଷୀ ଦର୍ଶନ କରିବାକୁ ଯାଇ ଠାକୁରଙ୍କର ଦ୍ୱିତୀୟ ଭାବାବେଶର କଥା :

ଠାକୁରଙ୍କର ଜନ୍ମସ୍ଥାନ କାମାରପୁକୁରର ପ୍ରାୟ ଏକ କୋଶ ଉତ୍ତରରେ ଆନୁଡ଼ ନାମକ ଏକ ଗ୍ରାମ ଅବସ୍ଥିତ । ଆନୁଡ଼ର ବିଷଲକ୍ଷ୍ମୀ[୧] ଜାଗ୍ରତା ଦେବୀ । ଚତୁଃପାର୍ଶ୍ୱସ୍ଥ ଦୂର-ଦୂରାନ୍ତର ଗ୍ରାମରୁ ଗ୍ରାମବାସୀଗଣ ନାନାପ୍ରକାରର କାମନା ପୂରଣ ନିମିତ୍ତ ଦେବୀଙ୍କ ଉଦ୍ଦେଶ୍ୟରେ ପୂଜା ମାନସିକ କରନ୍ତି ଏବଂ ଅଭୀଷ୍ଟ ସିଦ୍ଧି ହେଲେ ଯଥାସମୟରେ ଆସି ପୂଜା ବଳି ପ୍ରଭୃତି ଦେଇଯାଆନ୍ତି । ଅବଶ୍ୟ ଆଗନ୍ତୁକ ଯାତ୍ରୀମାନଙ୍କ ମଧ୍ୟରେ ସ୍ତ୍ରୀଲୋକମାନଙ୍କର ସଂଖ୍ୟା ହିଁ ଅଧିକ ଥାଏ ଏବଂ ରୋଗଶାନ୍ତି-କାମନା ହିଁ ଅନ୍ୟାନ୍ୟ କାମନା ଅପେକ୍ଷା ଅଧିକ ସଂଖ୍ୟକ ଲୋକଙ୍କୁ ଏଠାକୁ ଆକୃଷ୍ଟ କରେ । ଦେବୀଙ୍କର ପ୍ରଥମ ଆବିର୍ଭାବ ଓ ଆତ୍ମପ୍ରକାଶ ସମ୍ବନ୍ଧୀୟ ଗଳ୍ପ ଓ ଗାନ କରୁ କରୁ ସଦ୍‌ବଂଶଜାତା ଗ୍ରାମ୍ୟ ସ୍ତ୍ରୀଲୋକମାନେ ଦଳବଦ୍ଧ ହୋଇ ନିଃଶଙ୍କଚିତ୍ତରେ ପ୍ରାନ୍ତର ପାର ହୋଇ ଦେବୀଦର୍ଶନ ପାଇଁ ଆଗମନ କରୁଛନ୍ତି—ଏ ଦୃଶ୍ୟ ଏବେ ମଧ୍ୟ ଦେଖିବାକୁ ମିଳେ । ଠାକୁରଙ୍କର ବାଲ୍ୟକାଳରେ କାମାରପୁକୁର ପ୍ରଭୃତି ଗ୍ରାମ ଯେ ବହୁଲୋକପୂର୍ଣ୍ଣ ଏବଂ ବର୍ତ୍ତମାନ

---

୧. ଉକ୍ତ ଦେବୀଙ୍କ ନାମ ବିଷଲକ୍ଷ୍ମୀ ବା ବିଶାଳାକ୍ଷୀ ତାହା ସ୍ଥିର କରିବା କଠିନ । ପ୍ରାଚୀନ ବଙ୍ଗଳା ଗ୍ରନ୍ଥରେ ମନସାଦେବୀଙ୍କ ଅନ୍ୟ ନାମ ବିଷହରି ଦେଖିବାକୁ ମିଳେ । ବିଷହରି ଶବ୍ଦଟି ବିଷଲକ୍ଷ୍ମୀରେ ସହଜରେ ହିଁ ପରିଣତ ହୋଇପାରେ । ପୁନଶ୍ଚ ମନସାମଙ୍ଗଳାଦି ଗ୍ରନ୍ଥରେ ମନସାଦେବୀଙ୍କ ରୂପବର୍ଣ୍ଣନାରେ ବିଶାଳାକ୍ଷୀ ଶବ୍ଦର ମଧ୍ୟ ପ୍ରୟୋଗ ଅଛି । ଅତଏବ ମନସା ଦେବୀ ହିଁ ସମ୍ଭବତଃ ବିଷଲକ୍ଷ୍ମୀ ବା ବିଶାଳାକ୍ଷୀ ନାମରେ ଅଭିହିତା ହୋଇ ଏଠାରେ ଲୋକଙ୍କର ପୂଜା ଗ୍ରହଣ କରିଥାନ୍ତି । ବିଷଲକ୍ଷ୍ମୀ ବା ବିଶାଳାକ୍ଷୀ ଦେବୀଙ୍କ ପୂଜା ରାଢ଼ର (ଗଙ୍ଗାର ପଶ୍ଚିମ ପାର୍ଶ୍ୱ ବଙ୍ଗଭୂମି) ଅନ୍ୟତ୍ର ଅନେକ ସ୍ଥଳରେ ମଧ୍ୟ ଦେଖିବାକୁ ମିଳେ । କାମାରପୁକୁରରୁ ଘାଟାଲ ଆସିବା ରାସ୍ତାରେ ଗୋଟିଏ ସ୍ଥାନରେ ଆମେମାନେ ଉକ୍ତ ଦେବୀଙ୍କର ଗୋଟିଏ ସୁନ୍ଦର ମନ୍ଦିର ଦେଖିଥିଲୁ । ମନ୍ଦିର-ସଂଲଗ୍ନ ନାଟମନ୍ଦିର, ପୁଷ୍କରିଣୀ, ବଗିଚା ପ୍ରଭୃତି ଦେଖି ଆମମାନଙ୍କର ଧାରଣା ହୋଇଥିଲା, ଏଠାରେ ପୂଜାର ବିଶେଷ ବନ୍ଦୋବସ୍ତ ଅଛି ।

ଅପେକ୍ଷା ଅନେକ ଅଧିକ ସମୃଦ୍ଧିଶାଳୀ ଥିଲା, ଏହା ଜନଶୂନ୍ୟ ଜଙ୍ଗଲରେ ପୂର୍ଣ୍ଣ ଭଗ୍ନଗୃହ, ଜୀର୍ଣ୍ଣ ପତିତ ଦେବମନ୍ଦିର, ରାସମଞ୍ଚ ପ୍ରଭୃତି ଦେଖି ବେଶ୍ ବୁଝି ହୁଏ । ସେଥିପାଇଁ ଆମର ଅନୁମାନ, ଆନୁଡ଼ର ଦେବୀଙ୍କ ନିକଟକୁ ଯାତ୍ରୀ ସଂଖ୍ୟା ମଧ୍ୟ ସେତେବେଳେ ଅନେକ ଅଧିକ ଥିଲା ।

ପ୍ରାନ୍ତର ମଧ୍ୟରେ ମୁକ୍ତ ଆକାଶ ତଳେ ଦେବୀଙ୍କର ଅବସ୍ଥାନ; ଖରାବର୍ଷାରୁ ରକ୍ଷା କରିବା ପାଇଁ କୃଷକମାନେ ସାମାନ୍ୟ ପର୍ଣ୍ଣାଚ୍ଛାଦନମାତ୍ର ପ୍ରତିବର୍ଷ କରିଦିଅନ୍ତି । ଗୋଟିଏ ସମୟରେ ଇଷ୍ଟକ ନିର୍ମିତ ମନ୍ଦିର ଥିଲା, ତାହାର ପରିଚୟ ପାର୍ଶ୍ୱସ୍ଥ ଭଗ୍ନସ୍ତୂପରୁ ଜଣାଯାଏ । ଗ୍ରାମବାସୀମାନଙ୍କୁ ଉକ୍ତ ମନ୍ଦିର କଥା ପଚାରିଲେ କହନ୍ତି, ଦେବୀ ସ୍ୱେଚ୍ଛାରେ ଏହାକୁ ଭାଙ୍ଗି ଦେଇଛନ୍ତି । ସେମାନେ କହନ୍ତି—

ଗ୍ରାମର ଯାଦବ ବାଳକଗଣ ଦେବୀଙ୍କର ପ୍ରିୟ ସଙ୍ଗୀ; ସକାଳୁ ଏମାନେ ଆସି ଗାଈମାନଙ୍କୁ ଛାଡ଼ିଦେଇ ଏଠାରେ ବସିବେ, ଗପସପ କରିବେ, ଖେଳିବେ, ବନଫୁଲ ତୋଳି ଦେବୀଙ୍କୁ ସଜାଇବେ ଏବଂ ଦେବୀଙ୍କ ଉଦ୍ଦେଶ୍ୟରେ ଯାତ୍ରୀ ବା ପଥିକଙ୍କ ଦ୍ୱାରା ପ୍ରଦତ୍ତ ମିଷ୍ଟାନ୍ନ ଓ ପଇସା ନିଜେ ନେଇ ଆନନ୍ଦ କରିବେ— ଏସମସ୍ତ ବାଳକସୁଲଭ ମିଷ୍ଟ ଉପଦ୍ରବ ନ ହେଲେ ଦେବୀ ରହିପାରନ୍ତି ନାହିଁ । ଏକଦା କୌଣସି ଗ୍ରାମର ଜଣେ ଧନୀ ବ୍ୟକ୍ତିଙ୍କର ଅଭୀଷ୍ଟପୂରଣ ହେବାରୁ ସେ ଏହି ମନ୍ଦିର ନିର୍ମାଣ କରିଦେଇଥିଲେ ଏବଂ ଦେବୀଙ୍କୁ ଏହା ମଧ୍ୟରେ ପ୍ରତିଷ୍ଠିତା କରାଇଥିଲେ । ପୁରୋହିତ ପ୍ରତିଦିନ ସକାଳେ ଓ ସନ୍ଧ୍ୟାରେ ଆସି ପୂଜାକରି ମନ୍ଦିର ଦ୍ୱାର ବନ୍ଦକରି ଚାଲି ଯାଉଥିଲେ ଫଳରେ ପୂଜା ସମୟ ଭିନ୍ନ ଅନ୍ୟ ସମୟରେ ଯେଉଁ ଦର୍ଶନାଭିଳାଷୀମାନେ ଆସିଲେ, ସେମାନେ ଦ୍ୱାରର ଜାଲି ରନ୍ଧ୍ର ମଧ୍ୟ ଦେଇ ଦର୍ଶନୀ-ପ୍ରଣାମୀ ପକାଇ ଚାଲିଯିବାକୁ ଲାଗିଲେ । ସୁତରାଂ ରାଖାଲବାଳକମାନଙ୍କର ପୂର୍ବପରି ସେ ସବୁ ପଇସା ଆତ୍ମସାତ୍ କରିବା ଓ ମିଷ୍ଟଦ୍ରବ୍ୟାଦି କ୍ରୟ କରି ଦେବୀଙ୍କୁ ଥରେ ଦେଖାଇ ଭୋଜନ ଓ ଆନନ୍ଦ କରିବାର ସୁବିଧା ରହିଲା ନାହିଁ । ସେମାନେ କ୍ଷୁଣ୍ଣମନରେ ମା'ଙ୍କୁ ଜଣାଇଲେ—ମା', ମନ୍ଦିରରେ ପଶି ଆମମାନଙ୍କ ଖାଇବା ବନ୍ଦ କରି ଦେଲୁ ? ତୋର କୃପାରୁ ପ୍ରତିଦିନ ଲଡ଼୍ଡୁ ମୁଆ ଖାଉଥିଲୁ, ଏବେ ଆମକୁ ଆଉ କିଏ ସେସବୁ ଖାଇବାକୁ ଦେବ ? ସରଳ ରାଖାଲବାଳକମାନଙ୍କର ସେହି ଅଭିଯୋଗ ଦେବୀ ଶୁଣିଲେ ଏବଂ ସେହି ରାତିରେ ମନ୍ଦିର ଏପରି ଫାଟିଗଲା ଯେ, ଦେବୀ ଚାପି ହୋଇଯିବା ଭୟରେ· ପରଦିନ ପୁରୋହିତ ବ୍ୟସ୍ତ ହୋଇ ଦେବୀଙ୍କୁ ପୁନରାୟ ବାହାରକୁ ଆଣି ମୁକ୍ତାକାଶ ତଳେ ରଖିଲେ ! ସେହି ଦିନଠାରୁ ଯେଉଁବ୍ୟକ୍ତି ମନ୍ଦିରଟିକୁ ପୁନର୍ବାର ନିର୍ମାଣ କରିବାକୁ ଇଚ୍ଛା କରିଛନ୍ତି ତାହାକୁ ଦେବୀ ସ୍ୱପ୍ନରେ ବା ଅନ୍ୟ ନାନା ଉପାୟରେ ଜଣାଇ ଦିଅନ୍ତି ଯେ, ଏହା ତାଙ୍କର ଅଭିପ୍ରେତ ନୁହେଁ । ଗ୍ରାମବାସୀମାନେ କହନ୍ତି— ସେମାନଙ୍କ ମଧ୍ୟରୁ କାହାକୁ କାହାକୁ ମା' ଭୟ ଦେଖାଇ ମଧ୍ୟ ନିରସ୍ତ କରିଛନ୍ତି !

—ସ୍ୱପ୍ନରେ କହିଛନ୍ତି, ''ମୁଁ ରାଖାଲ ବାଳକମାନଙ୍କ ସହିତ ପଡ଼ିଆ ଭିତରେ ବେଶ୍ ଭଲରେ ଅଛି; ମନ୍ଦିର କରି ମୋତେ ଆବଦ୍ଧ କଲେ ମୁଁ ତୋର ସର୍ବନାଶ କରିବି—ବଂଶରେ କାହାକୁ ମଧ୍ୟ ଜୀବିତ ରଖିବି ନାହିଁ !''

ଠାକୁରଙ୍କର ବୟସ ସେତେବେଳେ ଆଠବର୍ଷ—ସେତେବେଳେ ମଧ୍ୟ ଉପନୟନ ହୋଇ ନଥିଲା । ଗ୍ରାମର କୁଳୀନଘରର ଅନେକଗୁଡ଼ିଏ ସ୍ତ୍ରୀଲୋକ ଦିନେ ଦଳବଦ୍ଧ ହୋଇ ପୂର୍ବଭଳି ବିଶାଳାକ୍ଷୀ ଦେବୀଙ୍କର ମାନସିକ ପୂର୍ଣ୍ଣ କରିବା ପାଇଁ ପଡ଼ିଆ ଦେଇ ଯାଉଥିଲେ । ଠାକୁରଙ୍କର ନିଜ ପରିବାରର ଜଣେ ଦୁଇଜଣ ସ୍ତ୍ରୀଲୋକ ଏବଂ ଗ୍ରାମର ଜମିଦାର ଧର୍ମଦାସ ଲାହାଙ୍କର ବିଧବା କନ୍ୟା ପ୍ରସନ୍ନ ଏମାନଙ୍କ ସହିତ ଥିଲେ । ପ୍ରସନ୍ନଙ୍କ ସରଳତା, ଧର୍ମପ୍ରାଣତା, ପବିତ୍ରତା ଓ ଅମାୟିକତା ସମ୍ବନ୍ଧରେ ଠାକୁରଙ୍କର ଉଚ୍ଚ ଧାରଣା ଥିଲା । ସବୁ ବିଷୟରେ ପ୍ରସନ୍ନଙ୍କୁ ପଚାରି ତାଙ୍କ ପରାମର୍ଶ ନେଇ ଚାଲିବାକୁ ଠାକୁର ମାତାଠାକୁରାଣୀଙ୍କୁ ଅନେକ ଥର କହିଥିଲେ ଏବଂ ପ୍ରସନ୍ନ କଥା ବେଳେବେଳେ ନିଜର ସ୍ତ୍ରୀଭକ୍ତମାନଙ୍କୁ ମଧ୍ୟ କହୁଥିଲେ । ପ୍ରସନ୍ନ ମଧ୍ୟ ଠାକୁରଙ୍କୁ ବାଳକ-କାଳରୁ ଅକୃତ୍ରିମ ସ୍ନେହ କରୁଥିଲେ ଏବଂ ଅନେକ ସମୟରେ ତାଙ୍କୁ ଯଥାର୍ଥ ଗଦାଧର ବୋଲି ଜ୍ଞାନ କରୁଥିଲେ । ସରଳା ସ୍ତ୍ରୀଲୋକ ଗଦାଧରଙ୍କଠାରୁ ଠାକୁର-ଦେବତାଙ୍କର ପୁଣ୍ୟକଥା ଏବଂ ଭକ୍ତିପୂର୍ଣ୍ଣ ସଙ୍ଗୀତ ଶୁଣି ମୋହିତ ହୋଇ ଅନେକଥର ତାଙ୍କୁ ପଚାରୁଥିଲେ—''ଆରେ ଗଦାଇ, ତୋତେ ଅନେକ ସମୟରେ ଠାକୁର ବୋଲି ମନେ ହୁଏ କାହିଁକି କହ ତ ? ହଁ ରେ ! ତୁ ଠାକୁର ବୋଲି ମୋର ସତରେ ହିଁ ମନେ ହୁଏ !'' ଗଦାଇ ଏକଥା ଶୁଣି ମଧୁର ହାସ୍ୟ କରୁଥିଲେ, କିନ୍ତୁ କିଛି କହୁ ନ ଥିଲେ; କିମ୍ବା ଅନ୍ୟ କିଛି କଥା କହି ତାଙ୍କୁ ଭୁଲାଇବାକୁ ଚେଷ୍ଟା କରୁଥିଲେ । ପ୍ରସନ୍ନ ସେସବୁ କଥାରେ ନ ଭୁଲି ଗମ୍ଭୀର ଭାବରେ ମୁଣ୍ଡ ହଲାଇ କହୁଥିଲେ—''ତୁ ଯାହା କହ, ତୁ କିନ୍ତୁ ମଣିଷ ନୁହଁ ।'' ପ୍ରସନ୍ନ ରାଧାକୃଷ୍ଣ ବିଗ୍ରହ ସ୍ଥାପନ କରି ନିଜ ହାତରେ ନିତ୍ୟ ସେବାର ଆୟୋଜନ କରି ଦେଉଥିଲେ । ପର୍ବପର୍ବାଣୀରେ ସେହି ମନ୍ଦିରରେ ଯାତ୍ରା ସଙ୍ଗୀତ ହେଉଥିଲା । ପ୍ରସନ୍ନ କିନ୍ତୁ ତାହା ଶୁଣୁଥିଲେ । ପଚାରିଲେ କହୁଥିଲେ, ''ଗଦାଇର ଗୀତ ଶୁଣିଲା ପରେ ଅନ୍ୟଗୀତ ଭଲଲାଗେ ନାହିଁ—ଗଦାଇ କାନ ଖରାପ କରିଦେଇଛି ।'' —ଅବଶ୍ୟ ଏସବୁ ଅନେକ ପରର କଥା !

ବିଶାଳାକ୍ଷୀ ଦର୍ଶନ ପାଇଁ ସ୍ତ୍ରୀଲୋକମାନଙ୍କର ଯିବା ଦେଖି ବାଳକ ଗଦାଇ କହିଲେ 'ମୁଁ ବି ଯିବି' । ବାଳକର କଷ୍ଟ ହେବ ଭାବି ସ୍ତ୍ରୀଲୋକମାନେ ଅନେକ ପ୍ରକାର ବୁଝାଇ ତାକୁ ନିଷେଧ କଲେ ମଧ୍ୟ କୌଣସି କଥା ନ ଶୁଣି ଗଦାଇ ସେମାନଙ୍କ ସଙ୍ଗରେ ଚାଲିଲେ । ସ୍ତ୍ରୀଲୋକମାନଙ୍କର ସେଥିରେ ଅବଶ୍ୟ ଆନନ୍ଦ ବ୍ୟତୀତ ବିରକ୍ତି ହେଲା ନାହିଁ । କାରଣ ସର୍ବଦା ପ୍ରଫୁଲ୍ଲଚିତ୍ତ ରଙ୍ଗରସପ୍ରିୟ ବାଳକ ସମସ୍ତଙ୍କର ମନହରଣ କରୁଥିଲେ । ତା'ଉପରେ ଏହି ଅଳ୍ପ ବୟସରୁ ଗଦାଧରଙ୍କର

ଠାକୁର ଦେବତାଙ୍କର ଗୀତ କଣ୍ଠସ୍ଥ ଥିଲା । ବାଟରେ ଚାଲୁ ଚାଲୁ ସେମାନଙ୍କ ଅନୁରୋଧରେ ସେଥିରୁ ଦୁଇ–ଚାରୋଟି ସେ ଗାଇବ ହିଁ ଗାଇବ । ଫେରିଲା ବେଳେ ତାଙ୍କୁ ଭୋକ ହେଲେ ମଧ୍ୟ ଅସୁବିଧା ନାହିଁ, ପାଖରେ ଥିବା ଦେବୀଙ୍କ ପ୍ରସାଦୀ ନୈବେଦ୍ୟ ଓ ଦୁଗ୍ଧାଦି ତାଙ୍କୁ ଦେଇହେବ । ତେଣୁ ଗଦାଇ ସାଙ୍ଗରେ ଗଲେ ବିରକ୍ତି ହେବାର କିଛି ନାହିଁ । ଏସବୁ ଭାବି ରମଣୀଗଣ ଗଦାଇକୁ ସାଙ୍ଗରେ ନେଇ ନିଃଶଙ୍କ ଚିତ୍ତରେ ଚାଲିଲେ ଏବଂ ପଥ ମଧ୍ୟରେ ଗଦାଇ ସେମାନଙ୍କର ଭାବନା ଅନୁଯାୟୀ ଠାକୁର ଦେବତାଙ୍କର ଗଳ୍ପ ଗାନ କରୁ କରୁ ହୃଷ୍ଟ ଚିତ୍ତରେ ଚାଲିବାକୁ ଲାଗିଲେ ।

କିନ୍ତୁ ବିଶାଳାକ୍ଷୀ ଦେବୀଙ୍କର ମହିମା କୀର୍ତ୍ତନ କରୁ କରୁ ପଡ଼ିଆଟି ପାର ହେବା ପୂର୍ବରୁ ହିଁ ଏକ ଅଭାବନୀୟ ଘଟଣା ଉପସ୍ଥିତ ହେଲା । ବାଳକ ଗଦାଇ ଗୀତ ଗାଉ ଗାଉ ହଠାତ୍ ଅଟକିଗଲା, ତା'ର ଅଙ୍ଗପ୍ରତ୍ୟଙ୍ଗ ଆଦି ଅବଶ ହୋଇଗଲା, ଚକ୍ଷୁଦ୍ୱୟରୁ ଅବିରଳ ଅଶ୍ରୁଧାରା ବହିବାକୁ ଲାଗିଲା ଏବଂ ରମଣୀଗଣଙ୍କର ବାରମ୍ବାର ସସ୍ନେହ ଆହ୍ୱାନରେ ସେ କୌଣସି ଉତ୍ତର ଦେଲା ନାହିଁ । ପଥଚାଲିବାରେ ଅନଭ୍ୟସ୍ତ, କୋମଳ ବାଳକ ଖରାରେ ଅସୁସ୍ଥ ହୋଇପଡ଼ିଲା ବୋଲି ଭାବି ରମଣୀଗଣ ଶଙ୍କିତ ହେଲେ ଏବଂ ନିକଟସ୍ଥ ପୋଖରୀରୁ ଜଳ ଆଣି ବାଳକର ମୁଣ୍ଡରେ ଓ ଚକ୍ଷୁରେ ଦେବାକୁ ଲାଗିଲେ । ଏଥିରେ ମଧ୍ୟ ଗଦାଇର ଚେତା ନ ଫେରିବାରୁ ସେମାନେ ନିତାନ୍ତ ନିରୁପାୟ ହୋଇ ଚିନ୍ତିତ ହେଲେ । ଦେବୀଙ୍କ ମାନସିକ ପୂଜା କିପରି ଦିଆଯିବ ଏବଂ ପର ପିଲାଟି କିପରି ଠିକ୍ ହୋଇ ଘରକୁ ଫେରିବ ତାହା ଭାବିବାକୁ ଲାଗିଲେ । ପ୍ରାନ୍ତର ଜନମାନବଶୂନ୍ୟ, ତେଣୁ ସାହାଯ୍ୟ କରିବାକୁ କେହି ନାହିଁ । ସ୍ତ୍ରୀଲୋକମାନେ ବିଶେଷ ବିପନ୍ନା ହେଲେ ଏବଂ ଠାକୁର ଦେବତାଙ୍କ କଥା ଭୁଲି ବାଳକକୁ ଘେରି ବସି କେବେ ବ୍ୟଜନ, କେବେ ଜଳସେକ ଏବଂ କେବେ ବା ତାର ନାମ ଉଚ୍ଚାରଣ କରି ଡାକିବାକୁ ଲାଗିଲେ ।

କିଛି ସମୟ ପରେ ପ୍ରସନ୍ନଙ୍କର ହଠାତ୍ ମନେହେଲା ବିଶ୍ୱାସୀ ସରଳ ବାଳକ ମଧ୍ୟରେ ଦେବୀ ପ୍ରବେଶ କରି ନାହାନ୍ତି ତ' ? ସରଳପ୍ରାଣ ପବିତ୍ର ବାଳକ ଓ ସ୍ତ୍ରୀପୁରୁଷଙ୍କଠାରେ ଦେବଦେବୀ ପ୍ରବେଶ କରିଥିବା କଥା ଶୁଣାଯାଏ । ପ୍ରସନ୍ନ ସାଥୀ ରମଣୀଗଣଙ୍କୁ ଏକଥା କହିଲେ ଏବଂ ଗଦାଇଙ୍କୁ ନ ଡାକି ଏକମନରେ ବିଶାଳାକ୍ଷୀଙ୍କର ନାମ କରିବାକୁ ଅନୁରୋଧ କଲେ । ପ୍ରସନ୍ନଙ୍କର ପୁଣ୍ୟ ଚରିତ୍ର ଯୋଗୁଁ ତାଙ୍କ ଉପରେ ରମଣୀମାନଙ୍କ ପୂର୍ବରୁ ଶ୍ରଦ୍ଧା ଥିଲା, ସୁତରାଂ ସହଜରେ ସେହି କଥାରେ ବିଶ୍ୱାସିନୀ ହୋଇ ସମସ୍ତେ ଏବେ ଦେବୀଜ୍ଞାନରେ ବାଳକକୁ ସମ୍ବୋଧନ କରି ବାରମ୍ବାର କହିବାକୁ ଲାଗିଲେ—'ମା' ବିଶାଳାକ୍ଷୀ, ପ୍ରସନ୍ନା ହୁଅ; ମା' ରକ୍ଷାକର; ମା' ବିଶାଳାକ୍ଷୀ, ଆମକୁ ଚାହଁ; ମା' ଅକୂଳରେ କୂଳ ଦିଅ !'

ଆଶ୍ଚର୍ଯ୍ୟର କଥା ! ରମଣୀଗଣ ଏହିପରି କେତେଥର ଦେବୀଙ୍କର ନାମ କରିଛନ୍ତି କି ନାହିଁ ଗଦାଧରଙ୍କ ମୁଖମଣ୍ଡଳ ମଧୁର ହାସ୍ୟରେ ରଞ୍ଜିତ ହୋଇଉଠିଲା ଏବଂ ବାଳକର ଅଳ୍ପ ଅଳ୍ପ ସଂଜ୍ଞାର ଲକ୍ଷଣ ଦେଖାଗଲା । ସେଥିରେ ଆଶ୍ୱାସିତା ହୋଇ ସେମାନେ ବାଳକ ଶରୀରରେ ବାସ୍ତବିକ ଦେବୀ ହିଁ ପ୍ରବିଷ୍ଟ ହୋଇଛନ୍ତି ଜାଣି ତାଙ୍କୁ ବାରମ୍ବାର ପ୍ରଣାମ ଓ ମାତୃସମ୍ବୋଧନରେ ପ୍ରାର୍ଥନା କରିବାକୁ ଲାଗିଲେ ।[୧]

କ୍ରମେ ସଂଜ୍ଞାଲାଭ କରି ବାଳକ ପ୍ରକୃତିସ୍ଥ ହେଲେ ଏବଂ ଆଶ୍ଚର୍ଯ୍ୟର କଥା, ପୂର୍ବର ସେହିପରି ଅବସ୍ଥା ଯୋଗୁଁ ତାଙ୍କ ଶରୀରରେ କୌଣସି ପ୍ରକାରର ଅବସାଦ ବା ଦୁର୍ବଳତା ଲକ୍ଷିତ ହୋଇ ନ ଥିଲା । ରମଣୀଗଣ ଏଥର ତାଙ୍କୁ ନେଇ ଭକ୍ତିଗଦ୍‌ଗଦ୍‌ଚିତ୍ତରେ ଦେବୀଙ୍କ ପୀଠକୁ ଗଲେ ଏବଂ ଯଥାବିଧି ପୂଜା କରି ଗୃହକୁ ପ୍ରତ୍ୟାବର୍ତ୍ତନ କରି ଠାକୁରଙ୍କ ମାତାଙ୍କ ନିକଟରେ ସମସ୍ତ ଘଟଣା ଆଦ୍ୟୋପାନ୍ତ ନିବେଦନ କଲେ । ସେ ସେଥିରେ ଭୀତା ହୋଇ ଗଦାଇର କଲ୍ୟାଣ ପାଇଁ ସେଦିନ ତାଙ୍କର କୁଳଦେବତା ରଘୁବୀରଙ୍କର ବିଶେଷ ପୂଜା କଲେ ଏବଂ ବିଶାଳାକ୍ଷୀ ଦେବୀଙ୍କ ଉଦ୍ଦେଶ୍ୟରେ ବାରମ୍ବାର ପ୍ରଣାମ କରି ତାଙ୍କର ମଧ୍ୟ ବିଶେଷ ପୂଜା ମାନସିକ କଲେ ।

ଶ୍ରୀରାମକୃଷ୍ଣଙ୍କ ଜୀବନର ଆଉ ଏକ ଘଟଣା ବାଲ୍ୟକାଳରୁ ତାଙ୍କର ଉଚ୍ଚ ଭାବଭୂମିରେ ମଝିରେ ମଝିରେ ଆରୁଢ଼ ହେବା ବିଷୟରେ ସାକ୍ଷ୍ୟ ପ୍ରଦାନ କରେ । ଘଟଣାଟି ଏହିପରି ହୋଇଥିଲା—

କାମାରପୁକୁରରେ ଠାକୁରଙ୍କର ପିତ୍ରାଳୟର ଦକ୍ଷିଣ-ପଶ୍ଚିମର କିଛି ଦୂରରେ ଗୋଟିଏ ବଣିଆ ପରିବାର ବାସ କରୁଥିଲେ । ପାଇନ୍‌ମାନେ ଯେ ସେତେବେଳେ ବିଶେଷ ଶ୍ରୀମାନ ଥିଲେ, ତା'ର ପରିଚୟ ସେମାନଙ୍କ ଦ୍ୱାରା ପ୍ରତିଷ୍ଠିତ ବିଚିତ୍ର କାରୁକାର୍ଯ୍ୟଖଚିତ ଇଷ୍ଟକନିର୍ମିତ ଶିବମନ୍ଦିର ଦେଖି ବୁଝାଯାଏ । ଏହି ପରିବାରର ଜଣେ ଦୁଇଜଣ କେବଳ ଏପର୍ଯ୍ୟନ୍ତ ଜୀବିତ ଅଛନ୍ତି ଏବଂ ଘରଦ୍ୱାର ଭଗ୍ନ ଓ ଭୂମିସାତ୍ ହୋଇଅଛି । ଗ୍ରାମର ଲୋକଙ୍କ ନିକଟରୁ ଶୁଣିବାକୁ ମିଳେ, ପାଇନ୍‌ମାନଙ୍କର ସେତେବେଳେ ବିଶେଷ ଶ୍ରୀବୃଦ୍ଧି ଥିଲା, ଘରେ ବହୁତ ଲୋକ ରହୁଥିଲେ, ଜମିବାଡ଼ି, ଚାଷବାସ, ଗୋରୁଲଙ୍ଗଳ ଯେପରି ଥିଲା, ନିଜର ବ୍ୟବସାୟରୁ ମଧ୍ୟ ସେପରି ଭଲ ଅର୍ଥ ଉପାର୍ଜ୍ଜନ ହେଉଥିଲା । ତେବେ ପାଇନ୍ ବଂଶ ଗ୍ରାମର ଜମିଦାରଙ୍କ ପରି ଧନାଢ଼୍ୟ ନ ଥିଲେ, ମଧ୍ୟବିତ୍ତ ଗୃହସ୍ଥ-ଶ୍ରେଣୀଭୁକ୍ତ ଥିଲେ ।

---

୧. କେହି କେହି କହନ୍ତି, ଏହି ସମୟରେ ଭକ୍ତିର ଆତିଶଯ୍ୟରେ ସ୍ତ୍ରୀଲୋକମାନେ ବିଶାଳାକ୍ଷୀଙ୍କ ପାଇଁ ଆଣିଥିବା ନୈବେଦ୍ୟାଦି ବାଳକକୁ ଖାଇବାକୁ ଦେଇଥିଲେ ।

ପାଇନ୍ ପରିବାରର ମୁରବୀ ବିଶେଷ ଧର୍ମନିଷ୍ଠ ଥିଲେ । ସମର୍ଥ ଥିଲେ ମଧ୍ୟ ନିଜ ବାସଗୃହ ପାଇଁ ପକ୍କାଘର କରି ନ ଥିଲେ, ସର୍ବଦା 'ମାଟିକୋଠା'ରେ[୧] ରହୁଥିଲେ, ଦେବାଳୟଟି କିନ୍ତୁ ବିଶିଷ୍ଟଶିଳ୍ପୀ ନିଯୁକ୍ତ କରି ଇଟାରେ ସୁନ୍ଦରଭାବରେ ନିର୍ମାଣ କରାଇଥିଲେ । ଗୃହକର୍ତ୍ତାଙ୍କ ନାମ ସୀତାନାଥ ଥିଲା । ତାଙ୍କର ସାତ ପୁତ୍ର ଏବଂ ଆଠ କନ୍ୟା ଥିଲେ; ଏବଂ ବିବାହିତା ହେଲେ ମଧ୍ୟ କନ୍ୟାଗୁଡ଼ିକ, କେଉଁ ଅଜଣା କାରଣରୁ ସର୍ବଦା ପିତ୍ରାଳୟରେ ହିଁ ରହୁଥିଲେ । ଶୁଣାଯାଏ, ଠାକୁରଙ୍କର ଯେତେବେଳେ ଦଶବାରବର୍ଷ ବୟସ, ସେତେବେଳେ ଏହାଙ୍କର ସର୍ବକନିଷ୍ଠା କନ୍ୟା ଯୌବନରେ ପଦାର୍ପଣ କରିଥାଆନ୍ତି । କନ୍ୟାମାନେ ସମସ୍ତେ ରୂପବତୀ ଓ ଦେବଦ୍ୱିଜ–ଭକ୍ତିପରାୟଣା ଥିଲେ ଏବଂ ପ୍ରତିବେଶୀ ବାଳକ ଗଦାଧରଙ୍କୁ ଅତ୍ୟନ୍ତ ସ୍ନେହ କରୁଥିଲେ । ଠାକୁର ବାଲ୍ୟକାଳରେ ଅନେକ ସମୟ ଏହି ଧର୍ମନିଷ୍ଠ ପରିବାର ସହିତ କଟାଉଥିଲେ । ତାଙ୍କ ଘରେ ଠାକୁରଙ୍କର ଉଚ୍ଚ ଭାବଭୂମିରେ ଉଠି ନାନା ପ୍ରକାର ଲୀଳାର କଥା ଏବେ ମଧ୍ୟ ଗ୍ରାମରେ ଶୁଣାଯାଏ । ନିମ୍ନଲିଖିତ ଘଟଣାଟି ଆମେ ଠାକୁରଙ୍କର ଶ୍ରୀମୁଖରୁ ଶୁଣିଅଛୁ ।

କାମାରପୁକୁରରେ ବୈଷ୍ଣବ ଓ ଶୈବ ସମ୍ପ୍ରଦାୟର ବାସିନ୍ଦାମାନେ ପରସ୍ପର ପ୍ରତି ଦ୍ୱେଷଭାବ ନ ରଖି ମିଳିମିଶି ଚଳୁଥିଲେ । ଏବେ ମଧ୍ୟ ପ୍ରତ୍ୟେକ ବର୍ଷ ଶିବଙ୍କ 'ଗାଜନ' (ମହାବିଷୁବ ସଂକ୍ରାନ୍ତି ଉପଲକ୍ଷେ ଯାତ୍ରା) ଉତ୍ସବ ପରି ବିଷ୍ଣୁଙ୍କ ଚବିଶ ପ୍ରହରୀ ନାମ ସଂକୀର୍ତ୍ତନ ମଧ୍ୟ ମହାସମାରୋହ ସହକାରେ ପାଳିତ ହୁଏ; ତେବେ ଏଠାରେ ବିଷ୍ଣୁଙ୍କ ମନ୍ଦିର ଅପେକ୍ଷା ଶିବମନ୍ଦିର ବେଶୀ । ସାଧାରଣତଃ ସୁବର୍ଣ୍ଣବଣିକମାନଙ୍କ ମଧ୍ୟରୁ ଅଧିକାଂଶ ଅତ୍ୟନ୍ତ ରକ୍ଷଣଶୀଳ ବୈଷ୍ଣବ ହୋଇଥାଆନ୍ତି । ନିତ୍ୟାନନ୍ଦ ପ୍ରଭୁ ଉଦ୍ଧାରଣ ଦତ୍ତଙ୍କୁ ଦୀକ୍ଷା ଦେଇ ଉଦ୍ଧାର କରିବା ପରଠାରୁ ଏହି ଜାତି ମଧ୍ୟରେ ବୈଷ୍ଣବ ମତ ବିଶେଷ ଭାବରେ ପ୍ରଚଳିତ ହୋଇଥିଲା । କାମାରପୁକୁରର ପାଇନ୍‌ମାନେ କିନ୍ତୁ ଶିବ ଏବଂ ବିଷ୍ଣୁ ଉଭୟଙ୍କର ଭକ୍ତ ଥିଲେ । ବୃଦ୍ଧ ଗୃହକର୍ତ୍ତା ସୀତାନାଥ ପାଇନ୍ ଯେପରି ତ୍ରିସନ୍ଧ୍ୟା ହରିନାମ କରୁଥିଲେ, ସେପରି ଅନ୍ୟ ଦିଗରେ ଶିବମନ୍ଦିର ପ୍ରତିଷ୍ଠା କରିଥିଲେ ଏବଂ ପ୍ରତିବର୍ଷ ଶିବରାତ୍ରି ବ୍ରତ ପାଳନ କରୁଥିଲେ । ରାତି ଉଜାଗରର ସହାୟକ ହେବ ବୋଲି ବ୍ରତକାଳରେ ପାଇନ୍‌ଙ୍କ ଗୃହରେ ଯାତ୍ରାର ବନ୍ଦୋବସ୍ତ ହେଉଥିଲା ।

ଥରେ ଏହିପରି ଜାଗର ଦିନ ପାଇନ୍‌ଙ୍କ ଘରଠାରେ ଯାତ୍ରାର ବନ୍ଦୋବସ୍ତ ହୋଇଥାଏ । ନିକଟବର୍ତ୍ତୀ ଗ୍ରାମର ଏକ ଦଳ ଶିବମହିମାସୂଚକ ପାଲା କରିବେ, ରାତ୍ରିର ପ୍ରଥମ ପ୍ରହର ପରେ ଯାତ୍ରା ହେବ । ସନ୍ଧ୍ୟା ସମୟରେ ଜଣାପଡ଼ିଲା ଯେ, ଯେଉଁ ପିଲାଟି ଶିବଙ୍କ ଅଭିନୟ କରେ ସେ ପିଲାର ହଠାତ୍ ଦେହ ଖରାପ

---

୧. ବାଉଁଶ, କାଠ, ନଡ଼ା ଓ ମୃତ୍ତିକା ସାହାଯ୍ୟରେ ନିର୍ମିତ ଦୁଇମହଲା ଘରକୁ ପଲ୍ଲୀଗ୍ରାମରେ 'ମାଟିକୋଠା' କୁହନ୍ତି । ଏଥିରେ ଇଟା ବ୍ୟବହୃତ ହୋଇ ନ ଥାଏ ।

ହୋଇଛି, ଶିବ ସାଜିବା ଲୋକ ବହୁ ସନ୍ଧାନ କରି ମଧ୍ୟ ମିଳୁ ନାହିଁ । ଯାତ୍ରା ଅଧିକାରୀ ହତାଶ ହୋଇ ସେଦିନ ପାଇଁ ଯାତ୍ରା ବନ୍ଦ ରଖିବାକୁ ମିନତି କଲେ । ତେବେ କ'ଣ କରାଯାଏ ? ଶିବରାତ୍ରିରେ ରାତ୍ରି ଜାଗରଣ କିପରି ହେବ ? ବୟସ୍କ ଲୋକମାନେ ପରାମର୍ଶ କରି ଯାତ୍ରା ଅଧିକାରୀଙ୍କୁ ପଚାରିଲେ ଯେ ଶିବ ଭୂମିକାରେ ଅଭିନୟ କରିବା ଲୋକ ମିଳିଲେ ଆଜି ରାତ୍ରି ଯାତ୍ରା ହୋଇପାରିବ କି ନାହିଁ ? ଅଧିକାରୀ କହିଲେ, ଶିବ ସାଜିବାକୁ ଲୋକ ମିଳିଲେ ଯାତ୍ରା ହୋଇପାରିବ । ଶିବ ସାଜିବାକୁ କାହାକୁ ଅନୁରୋଧ କରାଯିବ, ଗ୍ରାମ ପଞ୍ଚାୟତ ପୁନଶ୍ଚ ସେବିଷୟରେ ପରାମର୍ଶ କଲେ । ସ୍ଥିର ହେଲା, ଗଦାଇର ବୟସ ଅଳ୍ପ ହେଲେ ମଧ୍ୟ ସେ ଅନେକ ଶିବଙ୍କ ଗୀତ ଜାଣନ୍ତି ଏବଂ ଶିବବେଶରେ ସେ ଖୁବ୍ ସୁନ୍ଦର ଦେଖାଯିବେ, ତେଣୁ ତାଙ୍କୁ ହିଁ କୁହାଯାଉ । ତେବେ ଶିବ ସାଜି ଯେଉଁ ଟିକିଏ ଟିକିଏ କଥାବାର୍ତ୍ତା କହିବାକୁ ପଡ଼ିବ, ତାହା ଅଧିକାରୀ·କୌଶଳରେ ଚଳାଇ ନେବେ । ଗଦାଧରଙ୍କୁ ଡକାଗଲା ଏବଂ ସମସ୍ତଙ୍କର ଆଗ୍ରହ ଦେଖି ବାଳକ ଗଦାଧର ଏଥିରେ ସମ୍ମତି ପ୍ରକାଶ କଲେ । ପୂର୍ବନିର୍ଦ୍ଧାରିତ ବ୍ୟବସ୍ଥାନୁସାରେ ରାତ୍ରି ଏକ ପ୍ରହର ପରେ ଯାତ୍ରା ଆରମ୍ଭ ହେଲା ।

### ଶିବରାତ୍ରିରେ ଶିବ ସାଜି ଠାକୁରଙ୍କର ତୃତୀୟ ଭାବାବେଶ :

ଗ୍ରାମର ଜମିଦାର ଧର୍ମଦାସ ଲାହାଙ୍କର ଠାକୁରଙ୍କର ପିତାଙ୍କ ସହିତ ବିଶେଷ ବନ୍ଧୁତା ଥିଲା । ଧର୍ମଦାସଙ୍କର ଜ୍ୟେଷ୍ଠ ପୁତ୍ର ଗୟାବିଷ୍ଣୁ ଓ ଠାକୁର ଉଭୟେ 'ସଙ୍ଗାତ' ହୋଇଥିଲେ । 'ସଙ୍ଗାତ' ଯାତ୍ରାରେ ଶିବ ହେବାକଥା ଶୁଣି ଗୟାବିଷ୍ଣୁ ତା'ର ଦଳବଳ ଧରି ଅତି ଆନନ୍ଦରେ ସଙ୍ଗାତ ଗଦାଧରଙ୍କୁ ଶିବବେଶରେ ସଜାଇଲେ । ଗଦାଧର ଶିବବେଶରେ ସଜ୍ଜିତ ହୋଇ ଶୃଙ୍ଗାର ଗୃହରେ ବସି ଶିବଙ୍କର କଥା ଭାବୁଥିଲା, ଏହି ସମୟରେ ସେ ରଙ୍ଗମଞ୍ଚକୁ ଯିବାପାଇଁ ଡାକରା ଆସିଲା ଏବଂ ତାର ଜନୈକ ବନ୍ଧୁ ତାକୁ ପଥପ୍ରଦର୍ଶନ କରି ରଙ୍ଗମଞ୍ଚକୁ ନେବାପାଇଁ ଉପସ୍ଥିତ ହେଲା । ବନ୍ଧୁର ଆହ୍ୱାନରେ ଠାକୁରେ ଉଠିଲେ ଏବଂ ଉନ୍ମନାଭାବରେ କୌଣସି ଆଡ଼େ ଲକ୍ଷ୍ୟ ନ ରଖି ଧୀରମନ୍ଥର ଗତିରେ ମଞ୍ଚରେ ଆସି ସ୍ଥିରଭାବରେ ଦଣ୍ଡାୟମାନ ହେଲେ । ସେତେବେଳେ ଠାକୁରଙ୍କର ସେ ଜଟାଜୁଟ ବିଭୂତିମଣ୍ଡିତ ବେଶ, ସେହି ଧୀରସ୍ଥିର ପଦକ୍ଷେପ ଏବଂ ପରେ ଅଚଳ ଅଟଳ ଅବସ୍ଥିତି, ବିଶେଷତଃ ସେହି ଅପାର୍ଥିବ ଅନ୍ତର୍ମୁଖୀ ନିର୍ନିମେଷ ଦୃଷ୍ଟି ଓ ଓଠରେ ଈଷତ୍ ହାସ୍ୟରେଖା ଦେଖି ଲୋକମାନେ ଆନନ୍ଦରେ ଓ ବିସ୍ମୟରେ ମୋହିତ ହୋଇ ପଲ୍ଲୀଗ୍ରାମର ପ୍ରଥାନୁସାରେ ଉଚ୍ଚସ୍ୱରରେ ହରିବୋଲ କହି ଉଠିଲେ ଏବଂ ସ୍ତ୍ରୀଲୋକମାନଙ୍କ ମଧ୍ୟରୁ କେହି କେହି ହୁଳୁହୁଳି ଓ ଶଙ୍ଖଧ୍ୱନି କରିବାକୁ ଲାଗିଲେ । ଏହାପରେ ସମସ୍ତଙ୍କୁ ସ୍ଥିର କରିବା ପାଇଁ ଯାତ୍ରା ଅଧିକାରୀ ଏହି କୋଳାହଳ ମଧ୍ୟରେ ହିଁ ଶିବଙ୍କର ସ୍ତୁତି ଆରମ୍ଭ କଲେ । ଏଥିରେ ଶ୍ରୋତୃବର୍ଗ ସାମାନ୍ୟ ସ୍ଥିର ହେଲେ ମଧ୍ୟ ପରସ୍ପର ଈଶାରା କରି ଓ ଦେହଠେଲି

'ବାଃ''ବାଃ' 'ଗଦାଇ କିପରି ସୁନ୍ଦର ଦେଖାଯାଉଛି' 'ଟୋକାଟା ଶିବଙ୍କର ଅଭିନୟ ଏତେ ସୁନ୍ଦର କରିବ ବୋଲି କେହି ତ ଭାବିପାରି ନ ଥିଲୁ', 'ପିଲାଟାକୁ ନେଇ ଆମର ଏକ ଯାତ୍ରାଦଳ ଗଢ଼ିଲେ ହୁଅନ୍ତା' ଇତ୍ୟାଦି ନାନା କଥା ଅନୁଚ୍ଚ ସ୍ୱରରେ ଚାଲିବାକୁ ଲାଗିଲା । ଗଦାଧର କିନ୍ତୁ ସେ ପର୍ଯ୍ୟନ୍ତ ସେହି ଭାବରେ ଦଣ୍ଡାୟମାନ, ଏବଂ ତାଙ୍କର ବକ୍ଷସ୍ଥଳ ପ୍ଲାବିତ କରି ଅବିରତ ନୟନାଶ୍ରୁ ପତିତ ହେବାକୁ ଲାଗିଲା । ଏହିପରି କିଛି ସମୟ ଗଲାପରେ ମଧ୍ୟ ଗଦାଧର ସ୍ଥାନ ପରିବର୍ତ୍ତନ ବା କିଛି କଥା କହୁ ନ ଥିବା ଦେଖି ଯାତ୍ରା ଅଧିକାରୀ ଓ ଗ୍ରାମର ଜଣେ ଦୁଇଜଣ ବୃଦ୍ଧ ବାଳକ ନିକଟକୁ ଯାଇ ଦେଖିଲେ, ତା'ର ହସ୍ତ-ପଦ ନିସ୍ପନ୍ଦ ହୋଇଯାଇଛି ଏବଂ ବାଳକ ସମ୍ପୂର୍ଣ୍ଣ ସଂଜ୍ଞାଶୂନ୍ୟ । ସେତେବେଳେ ଗୋଳମାଳ ଆହୁରି ବଢ଼ିଗଲା । କିଏ କହିଲା—ଜଳ, ଆଖିରେ ମୁହଁରେ ଜଳଛାଟ; କିଏ କହିଲା—ପଙ୍ଖାକର; କିଏ କହିଲା—ଶିବଙ୍କର ଆବେଶ ହୋଇଅଛି, ନାମକର; କେହି ମଧ୍ୟ କହିଲେ— ଟୋକାଟା ରସଭଙ୍ଗ କଲା, ଯାତ୍ରାଟା ଆଉ ଶୁଣାହୋଇ ପାରିଲା ନାହିଁ ! ଯାହା ହେଉ ବାଳକର ସଂଜ୍ଞା ନ ଫେରିବାରୁ ଯାତ୍ରା ବନ୍ଦ ହୋଇଗଲା ଏବଂ ଗଦାଧରଙ୍କୁ କେତେଜଣ ଟେକି ନେଇ କୌଣସି ପ୍ରକାରରେ ଘରେ ଛାଡ଼ିଲେ । ଶୁଣିଛୁ ସେହି ରାତିରେ ଗଦାଧରଙ୍କର ସେଭାବ ବହୁ ଚେଷ୍ଟାରେ ମଧ୍ୟ ଭଙ୍ଗ ହୋଇ ନ ଥିଲା ଏବଂ ଘରେ କାନ୍ଦବୋବାଳି ପଡ଼ିଥିଲା । ପରେ ସୂର୍ଯ୍ୟୋଦୟ ହେବାପରେ ସେ ପୁଣି ପ୍ରକୃତିସ୍ଥ ହୋଇଥିଲେ ।[୧]

---

୧. କେହି କେହି କହନ୍ତି ସେ ତିନିଦିନ ଏହି ଅବସ୍ଥାରେ ଥିଲେ ।

# ତୃତୀୟ ଅଧ୍ୟାୟ

## ସାଧକଭାବର ପ୍ରଥମ ବିକାଶ

### ଠାକୁରଙ୍କର ବାଲ୍ୟଜୀବନରେ ଭାବତନ୍ମୟତାର ପରିଚାୟକ ଅନ୍ୟାନ୍ୟ ଦୃଷ୍ଟାନ୍ତ :

ଭାବତନ୍ମୟତା ସମ୍ବନ୍ଧରେ ପୂର୍ବୋକ୍ତ ଘଟଣାଗୁଡ଼ିକ ବ୍ୟତୀତ ଆହୁରି ଅନେକ କଥା ତାଙ୍କର ବାଲ୍ୟଜୀବନରେ ଘଟିଥିବାର ଶୁଣିବାକୁ ମିଳେ । ଛୋଟ ଛୋଟ ଅନେକ ବିଷୟରେ ତାଙ୍କ ମନର ଏପରି ସ୍ୱଭାବର ପରିଚୟ ଆମେ ବେଳେ ବେଳେ ପାଇଥାଉ ।

ଯଥା — ଗ୍ରାମର କୁମ୍ଭକାର ଶିବଦୁର୍ଗାଦି ଦେବଦେବୀଙ୍କର ମୂର୍ତ୍ତି ଗଢୁଥାଆନ୍ତି; ସାଙ୍ଗମାନଙ୍କ ସହିତ ବୁଲୁବୁଲୁ ଠାକୁର ସେଠାରେ ପହଞ୍ଚି ମୂର୍ତ୍ତିଗୁଡ଼ିକୁ ଦେଖୁ ଦେଖୁ ହଠାତ୍ କହିଉଠିଲେ, ''ଏ କ'ଣ କରିଛ ? ଦେବ ଚକ୍ଷୁ କ'ଣ ଏପରି ହୁଏ ? ଏମିତି ଅଙ୍କାଯାଏ'' — କହି ଯେଉଁ ଭାବରେ ଟାଣି ଦେଇ ଆଙ୍କିଲେ ଚକ୍ଷୁରେ ଅପାର୍ଥିବ ଶକ୍ତି, କରୁଣା, ଅନ୍ତର୍ମୁଖୀନତା ଓ ଆନନ୍ଦର ଏକତ୍ର ସମାବେଶ ହୋଇ ମୂର୍ତ୍ତିଗୁଡ଼ିକ ଜୀବନ୍ତ ଦେବଭାବସମ୍ପନ୍ନ ହେବ, ସେ ବିଷୟ କୁମ୍ଭକାରକୁ ବୁଝାଇ ଦେଲେ । ବାଳକ ଗଦାଧର କେବେହେଲେ ଶିକ୍ଷା ଲାଭ ନ କରି କେମିତି ଏକଥା ବୁଝିଲେ ଓ ବୁଝାଇବାକୁ ସକ୍ଷମ ହେଲେ, ସମସ୍ତେ ଅବାକ୍ ହୋଇ ତାହା ଭାବିବାକୁ ଲାଗିଲେ ଏବଂ ସେବିଷୟର କୌଣସି କାରଣ ଖୋଜି ପାଇଲେ ନାହିଁ ।

ଏହିପରି ସାଙ୍ଗମାନଙ୍କ ସହିତ ଖେଳକୁଦ ବେଳେ କୌଣସି ଦେବତାଙ୍କର ପୂଜା କରିବାର ସଂକଳ୍ପ କରି ଠାକୁର ନିଜ ହସ୍ତରେ ମୂର୍ତ୍ତି ଏପରି ସୁନ୍ଦର ଭାବରେ ଗଢୁଥିଲେ ଓ ରଙ୍ଗ ଦେଉଥିଲେ ଯେ ଲୋକମାନେ ତାହା ଦେଖି କୌଣସି ସୁଦକ୍ଷ କାରିଗରର କାର୍ଯ୍ୟ ବୋଲି ଭାବୁଥିଲେ ।

ଏହିପରି ଅଯାଚିତ ଓ ଅତର୍କିତଭାବରେ କୌଣସି ବ୍ୟକ୍ତିଙ୍କୁ ଏପରି କୌଣସି କଥା କହିଦେଲେ, ଯେଉଁଥିରେ ସେ ବ୍ୟକ୍ତିର ମନରେ ଥିବା ବହୁଦିନର ସନ୍ଦେହ ନୀରସନ ହୋଇ ସେ ତାହାର ଭାବୀ ଜୀବନ ନିୟମିତ କରିବାର ବିଶେଷ ସନ୍ଧାନ ଓ ଶକ୍ତି ଲାଭପୂର୍ବକ ସ୍ତମ୍ଭିତହୃଦୟରେ ଭାବିବାକୁ ଲାଗିଲେ, ବାଳକ ଗଦାଧରଙ୍କ ମାଧ୍ୟମରେ ତାଙ୍କର ଆରାଧ୍ୟ ଦେବତା କ'ଣ କରୁଣାରେ ଏପରି ପଥ ଦେଖାଇ ଦେଲେ !

ଯେପରି ଶାସ୍ତ୍ରଜ୍ଞ ପଣ୍ଡିତମାନେ ଯେଉଁ ପ୍ରଶ୍ନର ମୀମାଂସା କରିପାରୁ ନ ଥିଲେ, ବାଳକ ଗଦାଧର ସେସବୁ ଗୋଟିଏ କଥାରେ ମିମାଂସା କରି ଦେଇ ସେମାନଙ୍କୁ ଚମତ୍କୃତ କରିଦେଲେ ।[୧]

---

୧. ଗୁରୁଭାବ-ପୂର୍ବାର୍ଦ୍ଧ, ଚତୁର୍ଥ ଅଧ୍ୟାୟ ।

## ଠାକୁରଙ୍କ ଜୀବନରେ ଏହି ସମସ୍ତ ଘଟଣାର ଛଅ ପ୍ରକାରର ଶ୍ରେଣୀ ନିର୍ଦ୍ଦେଶ :

ଠାକୁରଙ୍କର ବାଲ୍ୟଜୀବନ ସମ୍ବନ୍ଧରେ ଏପରି ଯେଉଁ ସମସ୍ତ ଅଦ୍ଭୁତ ଘଟଣା ଆମେ ଶୁଣିଅଛୁ, ସେସମସ୍ତ ହିଁ ଯେ ତାଙ୍କର ଉଚ୍ଚତର ଭାବଭୂମିରେ ଆରୋହଣ କରି ଦିବ୍ୟଶକ୍ତିପ୍ରକାଶର ପରିଚାୟକ, ତାହା ନୁହେଁ । ଏମାନଙ୍କ ମଧ୍ୟରେ କେତେଗୁଡ଼ିଏ ଏପରି ହେଲେ ମଧ୍ୟ ଅନ୍ୟଗୁଡ଼ିକୁ ଆମେ ସାଧାରଣତଃ ଛଅ ପ୍ରକାରର ବିଭାଗ ବା ଶ୍ରେଣୀରେ ବିଭକ୍ତ କରିପାରୁ । ଏହାର କେତେଗୁଡ଼ିଏ ତାଙ୍କର ଅଦ୍ଭୁତ ସ୍ମୃତିର, କେତେଗୁଡ଼ିଏ ପ୍ରବଳ ବିଚାରବୁଦ୍ଧିର, କେତେଗୁଡ଼ିଏ ବିଶେଷ ନିଷ୍ଠା ଓ ଦୃଢ଼ପ୍ରତିଜ୍ଞାର, କେତେଗୁଡ଼ିଏ ଅସୀମ ସାହସର, କେତେଗୁଡ଼ିଏ ରଙ୍ଗରସପ୍ରିୟତାର ଏବଂ କେତେଗୁଡ଼ିଏ ଅପାର ପ୍ରେମ ବା କରୁଣାର ପରିଚାୟକ । ପୂର୍ବୋକ୍ତ ସକଳ ଶ୍ରେଣୀର ସମସ୍ତ ଘଟଣା ମଧ୍ୟରେ କିନ୍ତୁ ତାଙ୍କ ମନର ଅସାଧାରଣ ବିଶ୍ୱାସ, ପବିତ୍ରତା ଓ ନିଃସ୍ୱାର୍ଥପରତା ଓତଃପ୍ରୋତଭାବେ ଜଡ଼ିତ ରହିଥିବାର ଦେଖିବାକୁ ମିଳିଥାଏ । ଦେଖାଯାଏ, ବିଶ୍ୱାସ, ପବିତ୍ରତା, ଓ ସ୍ୱାର୍ଥହୀନତାରୂପକ ଉପାଦାନରେ ତାଙ୍କର ମନ ଯେପରି ସ୍ୱଭାବତଃ ନିର୍ମିତ ହୋଇଅଛି, ଏବଂ ସଂସାରର ନାନା ଘାତ-ପ୍ରତିଘାତ ଏଥିରେ ସ୍ମୃତି, ବୁଦ୍ଧି, ପ୍ରତିଜ୍ଞା, ସାହସ, ରଙ୍ଗରସ, ପ୍ରେମ ବା କରୁଣାରୂପ ଆକାରରେ ତରଙ୍ଗସମୂହ ସୃଷ୍ଟି କରୁଅଛି । କେତୋଟି ଦୃଷ୍ଟାନ୍ତର ଉଲ୍ଲେଖ କଲେ ପାଠକ ଆମକଥା ସମ୍ୟକ୍‌ରୂପରେ ଧାରଣା କରିପାରିବେ ।

### ଅଦ୍ଭୁତ ସ୍ମୃତିଶକ୍ତିର ଦୃଷ୍ଟାନ୍ତ :

ଗ୍ରାମରେ ରାମ ବା କୃଷ୍ଣଙ୍କ ବିଷୟରେ ଯାତ୍ରା କିମ୍ୱା ପାଲା ହୋଇଅଛି, ଅନ୍ୟମାନଙ୍କ ସହିତ ବାଳକ ଗଦାଧର ମଧ୍ୟ ତାହା ଶୁଣିଛନ୍ତି; ମାତ୍ର ଅନ୍ୟମାନେ ସେସମସ୍ତ ପବିତ୍ର ପୁରାଣକଥା ଓ ଗୀତ ବିଷୟ ଭୁଲି ପରଦିନଠାରୁ ଯିଏ ଯାହାର ସ୍ୱାର୍ଥଚେଷ୍ଟାରେ ନିମଜ୍ଜିତ ହୁଅନ୍ତି । କିନ୍ତୁ ବାଳକ ଗଦାଧରଙ୍କ ମନ ମଧ୍ୟରେ ତାହା ଯେଉଁ ଭାବତରଙ୍ଗ ଉଠାଇଛି, ତାହାର ବିରାମ ନାହିଁ; ବାଳକ ସେହି ସବୁର ପୁନରାବୃତ୍ତି କରି ଆନନ୍ଦ ଉପଭୋଗ ନିମିତ୍ତ ସାଙ୍ଗମାନଙ୍କୁ ନିକଟସ୍ଥ ଆମ୍ବବଗିଚାରେ ଏକତ୍ର କରିଛନ୍ତି ଏବଂ ପ୍ରତ୍ୟେକ ସାଙ୍ଗକୁ ପାଲାର ଭିନ୍ନ ଭିନ୍ନ ଚରିତ୍ରର ଭୂମିକା ଯଥାସମ୍ଭବ ଆୟତ୍ତ କରାଇ ଏବଂ ନିଜେ ମୁଖ୍ୟ ଚରିତ୍ରର ଭୂମିକା ନେଇ ତାହାର ଅଭିନୟ କରିବାକୁ ଆରମ୍ଭ କରିଛନ୍ତି । ସରଳ କୃଷକମାନେ ଜମିରେ ଚାଷ କରୁ କରୁ ବାଳକମାନଙ୍କର ସେହିପରି କ୍ରୀଡ଼ାଦର୍ଶନରେ ମୁଗ୍ଧ ହୋଇ ଭାବୁଛନ୍ତି— ଥରେମାତ୍ର ଶୁଣି ପାଲାଟିର ପ୍ରାୟ ସମସ୍ତ କଥା ଓ ଗୀତଗୁଡ଼ିକ ଏମାନେ କିପରି ଆୟତ୍ତ କରିପାରିଲେ ?

### ଦୃଢ଼ ପ୍ରତିଜ୍ଞାର ଦୃଷ୍ଟାନ୍ତ :

ଉପନୟନ ସମୟରେ ଗଦାଧର ଆତ୍ମୀୟସ୍ୱଜନ ଓ ସମାଜ ପ୍ରଚଳିତ ପ୍ରଥା ବିରୁଦ୍ଧରେ ଯାଇ କମାର ଜାତିର ଧନୀ ନାମକ ରମଣୀଙ୍କୁ ଭିକ୍ଷାମାତାରୂପରେ ବରଣ କରିବାକୁ ଅଡ଼ି ବସିଲେ ।[୧] 'ଅଥବା ଧନୀର ସ୍ନେହ ଓ ଭଲ ପାଇବାରେ ମୁଗ୍ଧ ହୋଇ ଏବଂ ତା'ର ହୃଦୟର ଅଭିଳାଷ ଜାଣି ପାରି ବାଳକ ସାମାଜିକ ନୀତି ନିୟମ କଥା ଭୁଲି ସେହି ନୀଚ ଜାତୀୟା ରମଣୀର ସ୍ୱହସ୍ତ-ପକ୍ୱ ବ୍ୟଞ୍ଜନ ଛଡ଼ାଇ ଖାଇଲେ ! ଧନୀର ଭୀତିପ୍ରସୂତ ସାଗ୍ରହ ନିଷେଧ ବାଳକଙ୍କୁ ଏକାର୍ଯ୍ୟରୁ ନିବୃତ୍ତ କରିପାରିଲା ନାହିଁ ।

### ଅସୀମ ସାହସର ଦୃଷ୍ଟାନ୍ତ :

ବିଭୂତିଭୂଷିତ ଜଟାଧାରୀ ନାଗାସାଧୁଙ୍କୁ ଦେଖିଲେ ସହର ବା ଗ୍ରାମର ବାଳକବାଳିକାମାନଙ୍କର ହୃଦୟରେ ସର୍ବଦା ଭୟ ସଞ୍ଚାର ହୋଇଥାଏ । ଏପରି ସାଧୁମାନେ ଅଳ୍ପ ବୟସର ବାଳକମାନଙ୍କୁ ନାନା ପ୍ରକାରରେ ଭୁଲାଇ ଅଥବା ସୁଯୋଗ ପାଇଲେ ବଳପୂର୍ବକ ଦୂରଦେଶକୁ ନେଇ ନିଜର ଦଳପୁଷ୍ଟି କରନ୍ତି, ଏପରି କିମ୍ବଦନ୍ତୀ ବଙ୍ଗଦେଶରେ ସେତେବେଳେ ସର୍ବତ୍ର ପ୍ରଚଳିତ ଥିଲା । କାମାରପୁକୁରର ଦକ୍ଷିଣପ୍ରାନ୍ତରେ ପୁରୀଧାମ ଯିବା ପାଇଁ ଯେଉଁ ପଥ ଅଛି, ସେହି ପଥଦେଇ ସେତେବେଳେ ପ୍ରତିଦିନ ଏପରି ସାଧୁ-ଫକୀର, ବୈରାଗୀ-ବାବାଜୀ ଦଳ ଯିବାଆସିବା କରୁଥିଲେ ଏବଂ ଗ୍ରାମ ଭିତରକୁ ପ୍ରବେଶ କରି ଭିକ୍ଷାବୃତ୍ତି ଦ୍ୱାରା ଆହାର ସଂଗ୍ରହପୂର୍ବକ ଦିନେ ଦୁଇଦିନ ବିଶ୍ରାମ କରି ଗନ୍ତବ୍ୟ ପଥରେ ଅଗ୍ରସର ହେଉଥିଲେ । କିମ୍ବଦନ୍ତୀରେ ଭୀତ ହୋଇ ଗଦାଧରଙ୍କର ସାଙ୍ଗମାନେ ସେମାନଙ୍କୁ ଦେଖି ଦୌଡ଼ି ପଳାଇଲେ ମଧ୍ୟ ବାଳକ ଗଦାଧର ଆଦୌ ଭୀତ ହେଉ ନ ଥିଲେ । ଫକୀରଙ୍କ ଦଳ ଦେଖିଲେ ସେ ତାଙ୍କ ସହିତ ମିଶି ମଧୁରାଳାପ ଓ ସେବା ଦ୍ୱାରା ସେମାନଙ୍କୁ ପ୍ରସନ୍ନ କରି ସେମାନଙ୍କର ଆଚାର-ବ୍ୟବହାର ଲକ୍ଷ୍ୟ କରିବାପାଇଁ ସେମାନଙ୍କ ସହିତ ଅନେକ ସମୟ ଅତିବାହିତ କରୁଥିଲା । କେବେକେବେ ଦେବୋଦ୍ଦେଶ୍ୟରେ ନିବେଦିତ ସେମାନଙ୍କ ଅନ୍ନ ପାଇ ଘରକୁ ଫେରୁଥିଲେ ଏବଂ ମାତାଙ୍କ ନିକଟରେ ଏବିଷୟରେ ଗଳ୍ପ କରୁଥିଲା । ସେମାନଙ୍କ ପରି ବେଶ ଧାରଣ ପାଇଁ ବାଳକ ଦିନେ ସର୍ବାଙ୍ଗରେ ତିଳକ ଚିହ୍ନ କରାଇ ପିତାମାତା ଦେଇଥିବା ନୂତନ ବସ୍ତ୍ରଟିକୁ ଚିରି କୌପୀନ ଏବଂ ବହିର୍ବାସରୂପେ ଧାରଣପୂର୍ବକ ଜନନୀଙ୍କ ନିକଟକୁ ଆସିଥିଲା ।

---

୧ 'ଗୁରୁଭାବ'—ପୂର୍ବାର୍ଦ୍ଧ, ୪ର୍ଥ ଅଧ୍ୟାୟ ।

## ପରିହାସପ୍ରିୟତାର ଦୃଷ୍ଟାନ୍ତ :

ଗ୍ରାମର ନୀଚ ଜାତିମାନଙ୍କ ମଧ୍ୟରେ ଅନେକେ ରାମାୟଣ ମହାଭାରତ ପଢ଼ି ଜାଣି ନ ଥିଲେ । ଏସବୁ ଗ୍ରନ୍ଥ ଶୁଣିବାକୁ ଇଚ୍ଛାହେଲେ ସେମାନେ ପଢ଼ି ବୁଝାଇ ପାରିବେ ଏପରି କୌଣସି ବ୍ରାହ୍ମଣ ବା ନିଜ ଜାତିର ଲୋକଙ୍କୁ ଡାକି ଭକ୍ତିପୂର୍ବକ ତାଙ୍କର ପାଦ ଧୋଇବା ପାଇଁ ପାଣି, ନୂଆ ହୁକାରେ ତମାଖୁ, ଉପବେଶନ କରି ପାଠ କରିବା ପାଇଁ ଉତ୍ତମ ଆସନ ବା ନୂତନ ମସିଣା ପ୍ରଦାନ କରୁଥିଲେ । ଏପରି ଭାବରେ ସମ୍ମାନିତ ହୋଇ ଉକ୍ତ ବ୍ୟକ୍ତି ଅହଂକାର ଓ ଅଭିମାନରେ ସ୍ଫୀତହୋଇ ଶ୍ରୋତାମାନଙ୍କ ନିକଟରେ କିପରି ଉଚ୍ଚାସନ ଗ୍ରହଣ କରନ୍ତି ଏବଂ କେତେପ୍ରକାରର ବିସଦୃଶ ଅଙ୍ଗଭଙ୍ଗୀ ଓ ସୁରରେ ଗ୍ରନ୍ଥ ପାଠ କରୁ କରୁ ସେମାନଙ୍କ ନିକଟରେ ନିଜର ପ୍ରାଧାନ୍ୟ ଜ୍ଞାପନ କରନ୍ତି, ତୀକ୍ଷ୍ଣଦୃଷ୍ଟିସମ୍ପନ୍ନ ପରିହାସପ୍ରିୟ ବାଳକ ତାହା ଲକ୍ଷ୍ୟ କରୁଥିଲେ ଏବଂ ବେଳେବେଳେ ଅନ୍ୟମାନଙ୍କ ନିକଟରେ ଗମ୍ଭୀର ଭାବରେ ଏହାର ଅଭିନୟ କରି ହାସ୍ୟରୋଳ ସୃଷ୍ଟି କରୁଥିଲେ ।

## ଠାକୁରଙ୍କ ମନର ସ୍ୱାଭାବିକ ଗଠନ :

ଠାକୁରଙ୍କର ବାଲ୍ୟ ଜୀବନର ଏସମସ୍ତ କଥାର ଆଲୋଚନାରୁ ଆମେ ବୁଝିପାରୁ ଯେ, ସେ କିପରି ମନ ନେଇ ସାଧନାରେ ଅଗ୍ରସର ହୋଇଥିଲେ । ଆମେ ବୁଝିପାରୁ, ଏପରି ମନ ଯାହା ଧରିବ ତାହା କରିବ ହିଁ କରିବ, ଯାହା ଶୁଣିବ ତାହା କେବେହେଲେ ଭୁଲିଯିବ ନାହିଁ ଏବଂ ଅଭୀଷ୍ଟଲାଭ ପଥରେ ଯାହା ଅନ୍ତରାୟ ବୋଲି ବୁଝିବ ଦୃଢ଼ହସ୍ତରେ ତାହା ତତ୍‌କ୍ଷଣାତ୍ ଦୂରକୁ ନିକ୍ଷେପ କରିବ । ଆମେ ବୁଝିପାରୁ ଯେ, ଏପରି ହୃଦୟ ଈଶ୍ୱରଙ୍କ ଉପରେ, ନିଜ ଉପରେ ଏବଂ ସାଧାରଣ ମାନବଙ୍କ ଅନ୍ତର୍ନିହିତ ଦେବପ୍ରକୃତି ଉପରେ ଦୃଢ଼ ବିଶ୍ୱାସ ସ୍ଥାପନ କରି ସଂସାରର ସମସ୍ତ କାର୍ଯ୍ୟରେ ଅଗ୍ରସର ହେବେ । ନୀଚ ଅପବିତ୍ର ଭାବସମୂହ ତ ଦୂରର କଥା—ସଂକୀର୍ଣ୍ଣତାର ସ୍ୱଳ୍ପ ଗନ୍ଧ ମଧ୍ୟ ଯେଉଁ ସମସ୍ତ ଭାବରେ ଅନୁଭୂତ ହେବ, ତତ୍‌କ୍ଷଣାତ୍ ତାହାକୁ ଉପାଦେୟ ବୋଲି ଗ୍ରହଣ କରିବେ ନାହିଁ ଏବଂ କେବଳ ପବିତ୍ରତା, ପ୍ରେମ ଓ କରୁଣା ହିଁ ତାଙ୍କୁ ସବୁ ସମୟରେ ସର୍ବବିଷୟରେ ନିୟମିତ କରିବ । ଏହା ସହିତ ଏକଥା ମଧ୍ୟ ହୃଦୟଙ୍ଗମ ହୁଏ ଯେ, ନିଜର ବା ଅନ୍ୟର ଅନ୍ତରର କୌଣସି ଭାବ ନିଜ ସ୍ୱରୂପ ଲୁଚାଇ ରଖି ଛଦ୍ମବେଶରେ ଏପରି ହୃଦୟ-ମନକୁ କେବେହେଲେ ପ୍ରତାରିତ କରିପାରିବ ନାହିଁ । ଠାକୁରଙ୍କର ଅନ୍ତର ସମ୍ବନ୍ଧରେ ପୂର୍ବୋକ୍ତ କଥା ବିଶେଷ ଭାବରେ ସ୍ମରଣ ରଖି ଅଗ୍ରସର ହେଲେ ଯାଇ ଆମେ ତାଙ୍କର ସାଧକଜୀବନର ଅଲୌକିକତ୍ୱ ହୃଦୟଙ୍ଗମ କରିବାକୁ ସମର୍ଥ ହେବୁ ।

### ସାଧକଭାବର ପ୍ରଥମ ପ୍ରକାଶ — ଚାଉଳକଦଳୀ–ବନ୍ଧା ବିଦ୍ୟା ଶିଖିବି ନାହିଁ; ଯେଉଁଥିରେ ଯଥାର୍ଥ ଜ୍ଞାନ ହୁଏ ସେହି ବିଦ୍ୟା ଶିଖିବି :

ଠାକୁରଙ୍କର ଜୀବନରେ ସାଧକ ଭାବର ପ୍ରଥମ ବିଶେଷ ବିକାଶ ଆମେ ସେତେବେଳେ ଦେଖିବାକୁ ପାଉ, ଯେତେବେଳେ ସେ କଲିକତାରେ ତାଙ୍କ ଭାଇଙ୍କ ଚତୁଷ୍ପାଠୀରେ ବିଦ୍ୟାଶିକ୍ଷାରେ ମନୋଯୋଗୀ ହେବାପାଇଁ ତାଙ୍କର ଅଗ୍ରଜ ରାମକୁମାରଙ୍କ ତିରସ୍କାର ଓ ଅନୁଯୋଗର ଉତ୍ତରରେ ସ୍ପଷ୍ଟଭାବରେ କହିଥିଲେ, "ଚାଉଳ କଦଳୀ–ବନ୍ଧା ବିଦ୍ୟା ଶିଖିବାକୁ ମୁଁ ଚାହେଁ ନାହିଁ; ମୁଁ ଏପରି ବିଦ୍ୟା ଶିଖିବାକୁ ଚାହେଁ ଯେଉଁଥିରେ ଜ୍ଞାନର ଉଦୟ ହୋଇ ମନୁଷ୍ୟ ବାସ୍ତବିକ୍ କୃତାର୍ଥ ହେବ !" ସେତେବେଳେ ତାଙ୍କର ବୟସ ସତର ବର୍ଷ ହେବ ଏବଂ ଗ୍ରାମ ପାଠଶାଳାରେ ତାଙ୍କର ଶିକ୍ଷା ଅଗ୍ରସର ହେବାର ବିଶେଷ ସମ୍ଭାବନା ନାହିଁ ବୁଝି ଅଭିଭାବକମାନେ ତାଙ୍କୁ କଲିକତା ଆଣିଥିଲେ ।

### କଲିକତାର ଝାମାପୁକୁରରେ ରାମକୁମାରଙ୍କର ଟୋଲ୍‌ରେ ଥିବାବେଳେ ଠାକୁରଙ୍କର ଆଚରଣ :

ଝାମାପୁକୁରରେ ଦିଗମ୍ବର ମିତ୍ରଙ୍କର ଘର ନିକଟରେ ଜ୍ୟୋତିଷ ଏବଂ ସ୍ମୃତିଶାସ୍ତ୍ରରେ ବିଜ୍ଞ ତାଙ୍କର ସ୍ୱଧର୍ମନିଷ୍ଠ ଅଗ୍ରଜ ଟୋଲ୍ ଖୋଲି ଛାତ୍ରମାନଙ୍କୁ ଶିକ୍ଷା ଦେଉଥିଲେ ଏବଂ ପୂର୍ବୋକ୍ତ ମିତ୍ର ପରିବାର ବ୍ୟତୀତ ସେଠାର ଅନ୍ୟ କେତୋଟି ସମ୍ଭ୍ରାନ୍ତ ପରିବାରରେ ପ୍ରତିଦିନ ଦେବସେବାର ଦାୟିତ୍ୱ ମଧ୍ୟ ଗ୍ରହଣ କରିଥିଲେ । ନିତ୍ୟକ୍ରିୟା ସମାପନପୂର୍ବକ ଛାତ୍ରମାନଙ୍କୁ ଶିକ୍ଷାଦାନ କରିବାରେ ତାଙ୍କର ପ୍ରାୟ ସମସ୍ତ ସମୟ ଅତିବାହିତ ହେଉଥିଲା, ତେଣୁ ଅନ୍ୟ ଗୃହକୁ ପ୍ରତ୍ୟହ ଦୁଇବେଳା ଯାଇ ସେଠାରେ ଦେବସେବା ଯଥାରୀତି ସମ୍ପନ୍ନ କରିବା ତାଙ୍କ ପକ୍ଷରେ ଅତ୍ୟନ୍ତ କଷ୍ଟକର ହେଲା । ତଥାପି ସେ ଉକ୍ତ କାର୍ଯ୍ୟ ହଠାତ୍ ଛାଡ଼ିପାରୁ ନ ଥିଲେ । କାରଣ ଟୋଲ୍‌ରୁ ଶିକ୍ଷାଦାନ ବାବଦରେ ଛାତ୍ରମାନଙ୍କ ତରଫରୁ ଯାହା ମିଳୁଥିଲା ତାହା ଅଳ୍ପ ଏବଂ ଦିନକୁ ଦିନ ଏହା ବୃଦ୍ଧି ନ ପାଇ ହ୍ରାସ ପାଉଥିଲା; ଏପରି ଅବସ୍ଥାରେ ଦେବସେବାର ପାରିଶ୍ରମିକ ସ୍ୱରୂପ ଯାହା ପାଉଥିଲେ, ତାହାକୁ ଛାଡ଼ିଲେ ସଂସାର ଚଳିବ କିପରି ? ପରିଶେଷରେ ନିଜ କନିଷ୍ଠ ଭ୍ରାତାଙ୍କୁ ଆଣି ତାଙ୍କ ଉପରେ ଉକ୍ତ ଦେବସେବାର ଭାର ଅର୍ପଣପୂର୍ବକ ସେ ଅଧ୍ୟାପନାରେ ମନୋନିବେଶ କରିଥିଲେ ।

ଗଦାଧର ଏଠାକୁ ଆସି ନିଜ ମନ ମୁତାବକ କାର୍ଯ୍ୟ ପାଇ ତାହା ସାନନ୍ଦରେ ସମାପନପୂର୍ବକ ଅଗ୍ରଜଙ୍କ ସେବା ଓ ତାଙ୍କ ନିକଟରେ କିଛି କିଛି ପାଠ ଅଭ୍ୟାସ ମଧ୍ୟ କରୁଥିଲେ । ସଦ୍‌ଗୁଣସମ୍ପନ୍ନ ପ୍ରିୟଦର୍ଶନ ବାଳକ ଅଳ୍ପଦିନ ମଧ୍ୟରେ ଯଜମାନ ପରିବାରରେ ସମସ୍ତଙ୍କର ପ୍ରିୟ ହୋଇ ଉଠିଲା । କାମାରପୁକୁର ପରି ଏଠାରେ ମଧ୍ୟ ସେହି ସମସ୍ତ ସମ୍ଭ୍ରାନ୍ତ ପରିବାରର ରମଣୀଗଣ ତାଙ୍କର କାର୍ଯ୍ୟଦକ୍ଷତା, ସରଳ

ବ୍ୟବହାର, ମିଷ୍ଟାଳାପ ଓ ଦେବଭକ୍ତିଦର୍ଶନରେ ନିଃସଙ୍କୋଚରେ ତାଙ୍କ ନିକଟକୁ ଆସୁଥିଲେ ଏବଂ ତାଙ୍କ ଦ୍ୱାରା ଛୋଟ ଛୋଟ କାମ କରାଇ ନେବାକୁ ଏବଂ ତାଙ୍କର ମଧୁର କଣ୍ଠର ଭଜନ ଶୁଣିବାକୁ ଆଗ୍ରହ ପ୍ରକାଶ କରୁଥିଲେ । ଏହିପରି ବାଳକର କାମାରପୁକୁର ପରି ଏଠାରେ ମଧ୍ୟ ନିଜର ଗୋଟିଏ ଦଳ ବିନା ଚେଷ୍ଟାରେ ଗଠିତ ହୋଇ ଉଠିଥିଲା ଏବଂ ଅବସର ମିଳିଲେ ହିଁ ସେଠାକାର ସ୍ତ୍ରୀପୁରୁଷମାନଙ୍କ ସହିତ ମିଳିତ ହୋଇ ସେ ଆନନ୍ଦରେ ଦିନ କାଟୁଥିଲା । ତେଣୁ ଏଠାକୁ ଆସି ମଧ୍ୟ ବାଳକର ବିଦ୍ୟାଶିକ୍ଷାରେ ଯେ ବିଶେଷ ଉନ୍ନତି ହୋଇ ନ ଥିଲା ଏକଥା ବୁଝି ହୁଏ ।

ପୂର୍ବୋକ୍ତ ବିଷୟ ଲକ୍ଷ୍ୟ କରି ମଧ୍ୟ ରାମକୁମାର ସାନଭାଇକୁ ହଠାତ୍ କିଛି କହିପାରୁ ନ ଥିଲେ । କାରଣ, ଏକେ ତ ମା'ଙ୍କର ପ୍ରିୟ କନିଷ୍ଠ ପୁତ୍ରକୁ ତାଙ୍କର ସ୍ନେହସୁଖରୁ ବଞ୍ଚିତ କରି ଏକ ପ୍ରକାର ନିଜର ସୁବିଧା ପାଇଁ ତାଙ୍କୁ ଏତେଦୂରକୁ ଆଣିଛନ୍ତି, ତା'ପରେ ଭ୍ରାତାଙ୍କ ଗୁଣରେ ଆକୃଷ୍ଟ ହୋଇ ସେଠାର ଲୋକମାନେ ତାଙ୍କୁ ଆଗ୍ରହ ସହକାରେ ଘରକୁ ନିମନ୍ତ୍ରଣ କରୁଥିବାରୁ, ସେ ବାଳକର ଏହି ଆନନ୍ଦରେ ବାଧା ଦେବାକୁ ଯୁକ୍ତିଯୁକ୍ତ ମନେ କରି ନ ଥିଲେ । କାରଣ ଏପରି କଲେ ବାଳକର କଲିକତା କ'ଣ ବାସ ବନବାସ ତୁଲ୍ୟ ଅସହ୍ୟ ହୋଇଉଠିବ ନାହିଁ ? ସଂସାରରେ ଅଭାବ ନ ଥିଲେ ବାଳକକୁ ମାତାଙ୍କ ନିକଟରୁ ଦୂରକୁ ଆଣିବାର କୌଣସି ଦରକାର ନ ଥିଲା । କାମାରପୁକୁରର ନିକଟବର୍ତ୍ତୀ ଅନ୍ୟ ଗ୍ରାମରେ କୌଣସି ଯୋଗ୍ୟ ଅଧ୍ୟାପକଙ୍କ ନିକଟରେ ପଢ଼ିବାକୁ ପଠାଇଲେ ହିଁ ଚଳିଥାନ୍ତା । ବାଳକ ସେଥିରେ ମାତାଙ୍କ ନିକଟରେ ରହି ବିଦ୍ୟାଭ୍ୟାସ କରିପାରି ଥାଆନ୍ତା । ଏହିପରି ଚିନ୍ତା କରି ରାମକୁମାର କେତେମାସ ପର୍ଯ୍ୟନ୍ତ କିଛି ନ କହିଲେ ମଧ୍ୟ ପରିଶେଷରେ ଦିନେ ନିଜର କର୍ତ୍ତବ୍ୟଜ୍ଞାନର ପ୍ରେରଣାରେ ବାଳକକୁ ପାଠରେ ମନୋଯୋଗୀ ହେବାପାଇଁ ମୃଦୁ ତିରସ୍କାର କଲେ । କାରଣ ସରଳ ଓ ସର୍ବଦା ଆତ୍ମହରା ବାଳକକୁ ଦିନେ ନା ଦିନେ ସଂସାରରେ ପ୍ରବେଶ କରିବାକୁ ହେବ ? ଏବେଠାରୁ ଯଦି ସେ ନିଜର ସାଂସାରିକ ଅବସ୍ଥାରେ ଯେପରି ଉନ୍ନତି ହେବ, ସେପରି ପଥରେ ନିଜକୁ ଚଲାଇ ନ ଶିଖେ, ଭବିଷ୍ୟତରେ ସେ ଆଉ କ'ଣ ତାହା କରିପାରିବ ? ଅତଏବ ଭ୍ରାତୃବାତ୍ସଲ୍ୟ ଓ ସଂସାରର ଅଭିଜ୍ଞତା, ଉଭୟ ହିଁ ରାମକୁମାରଙ୍କୁ ଏପରି କାର୍ଯ୍ୟରେ ପ୍ରବୃତ୍ତ କରାଇଥିଲା ।

### ନିଜର ଭ୍ରାତାଙ୍କର ମାନସିକ ପ୍ରକୃତି ସମ୍ବନ୍ଧରେ ରାମକୁମାରଙ୍କର ଅନଭିଜ୍ଞତା :

କିନ୍ତୁ ସ୍ନେହପରବଶ ରାମକୁମାର ସଂସାରର ସ୍ୱାର୍ଥପର କଠୋର ପ୍ରଥାରେ ଠକି ଶିଖି କେତେକ ଅଭିଜ୍ଞତା ଲାଭ କରିଥିଲେ ମଧ୍ୟ ନିଜ କନିଷ୍ଠର ଅଦ୍ଭୁତ ମାନସିକ ଗଠନ ସମ୍ବନ୍ଧରେ ବିଶେଷ ଅଭିଜ୍ଞ ନ ଥିଲେ । ବାଳକ ଯେ ଏତେ ଅଳ୍ପ

ବୟସରୁ ସଂସାରୀ ମାନବର ସର୍ବପ୍ରକାର ଚେଷ୍ଟାର ଏବଂ ଆଜୀବନ ପରିଶ୍ରମର କାରଣ ଜାଣିପାରିଛି ଏବଂ ଦୁଇ ଦିନର ପ୍ରତିଷ୍ଠା ଓ ଭୋଗସୁଖଲାଭକୁ ତୁଚ୍ଛଜ୍ଞାନ କରି ମାନବ ଜୀବନର ଅନ୍ୟ ଉଦ୍ଦେଶ୍ୟ ନିର୍ଦ୍ଧାରିତ କରିଅଛି, ଏକଥା ରାମକୁମାର ସ୍ୱପ୍ନରେ ମଧ୍ୟ ଭାବିପାରି ନ ଥିଲେ। ସୁତରାଂ ତିରସ୍କାରରେ ବିଚଳିତ ନ ହୋଇ ସରଳ ବାଳକ ଯେତେବେଳେ ତାଙ୍କୁ ପ୍ରାଣର କଥା ପୂର୍ବୋକ୍ତ ରୂପରେ ଖୋଲି କହିଲେ, ସେତେବେଳେ ସେ ବାଳକର କଥା ହୃଦୟଙ୍ଗମ କରିପାରିଲେ ନାହିଁ । ଭାବିଲେ, ପିତା ମାତାଙ୍କର ଅତି ଆଦରର ବାଳକ ଜୀବନରେ ଏହି ପ୍ରଥମ ତିରସ୍କୃତ ହୋଇ ଅଭିମାନ ବା ବିରକ୍ତିରେ ଏପରି ଉତ୍ତର ପ୍ରଦାନ କରୁଅଛି । ସତ୍ୟନିଷ୍ଠ ବାଳକ ତାଙ୍କୁ ନିଜ ଅନ୍ତରର କଥା ବୁଝାଇବାକୁ ସେଦିନ ଅନେକ ଚେଷ୍ଟା କରି, ଅର୍ଥକରୀ ବିଦ୍ୟା ଶିଖିବାକୁ ତା'ର କୌଣସି ପ୍ରକାରରେ ପ୍ରବୃତ୍ତି ହେଉ ନାହିଁ, ଏକଥା ବିଭିନ୍ନ ପ୍ରକାରରେ ପ୍ରକାଶ କଲେ, କିନ୍ତୁ ବାଳକର କଥା କିଏ ଶୁଣୁଛି ? ବାଳକ ତ ବାଳକ, ବୟୋବୃଦ୍ଧ କାହାକୁ ମଧ୍ୟ ଯଦି ଆମେ ସ୍ୱାର୍ଥଚେଷ୍ଟାରେ ପରାଙ୍‌ମୁଖ ଦେଖୁ, ତେବେ ସିଦ୍ଧାନ୍ତ କରି ବସୁ—ତାହାର ମସ୍ତିଷ୍କ ବିକୃତି ହୋଇଅଛି ।

ବାଳକର ସେହି ସକଳ କଥା ରାମକୁମାର ସେଦିନ ବୁଝିପାରି ନ ଥିଲେ । ଅଧିକନ୍ତୁ ସ୍ନେହର ପାତ୍ରକୁ ଗାଳିଦେଇ ପରମୁହୂର୍ତ୍ତରେ ଆମେ ଯେପରି ଅନୁତପ୍ତ ହେଉ ଏବଂ ତାକୁ ପୂର୍ବାପେକ୍ଷା ଶତଗୁଣ ଅଧିକ ଆଦରଯତ୍ନ କରି ସ୍ୱୟଂ ଶାନ୍ତିଲାଭ କରିବାକୁ ଚେଷ୍ଟା କରୁ, କନିଷ୍ଠ ଭାଇଙ୍କ ପ୍ରତି ତାଙ୍କର ବ୍ୟବହାର କିଛି ଦିନ ସେପରି ହୋଇଉଠିଲା । ବାଳକ ଗଦାଧର କିନ୍ତୁ ନିଜର ମନୋଗତ ଅଭିପ୍ରାୟ ସଫଳ କରିବା ପାଇଁ ଏବେଠାରୁ ଯେଉଁ ସୁଯୋଗ ଅନୁସନ୍ଧାନ କରିଥିଲେ, ଏବିଷୟର ପରିଚୟ ଆମେ ତାଙ୍କର ପରବର୍ତ୍ତୀ କାର୍ଯ୍ୟକଳାପ ଦେଖି ବିଶେଷ ଭାବରେ ଅବଗତ ହେଉ ।

## ରାମକୁମାରଙ୍କ ସାଂସାରିକ ଅବସ୍ଥା :

ପୂର୍ବୋକ୍ତ ଘଟଣାର ପରବର୍ତ୍ତୀ ଦୁଇବର୍ଷରେ ଠାକୁର ଓ ତାଙ୍କର ଭାଇଙ୍କର ଜୀବନରେ ପରିବର୍ତ୍ତନର ପ୍ରବାହ କିଛି ପ୍ରବଳ ଭାବରେ ଚାଲିଥିଲା । ଅଗ୍ରଜଙ୍କର ଆର୍ଥିକ ଅବସ୍ଥା ଦିନକୁ ଦିନ ଦୁର୍ବଳ ହେବାକୁ ଲାଗିଲା ଏବଂ ନାନା ପ୍ରକାର ଚେଷ୍ଟା କରି ମଧ୍ୟ ସେ କୌଣସି ପ୍ରକାରରେ ଏଥିରେ ଉନ୍ନତିସାଧନ କରିପାରୁ ନ ଥିଲେ । ଟୋଲ୍ ବନ୍ଦ କରି ଅନ୍ୟ କିଛି କର୍ମ ଗ୍ରହଣ କରିବେ କି ନାହିଁ, ସେ ବିଷୟରେ ତାଙ୍କ ମନ ମଧ୍ୟରେ ଦ୍ୱନ୍ଦ୍ୱ ଉଠୁଥିଲା, ମାତ୍ର ସେ କିଛି ସ୍ଥିର କରିପାରୁ ନ ଥିଲେ । କିନ୍ତୁ ଏକଥା ମନେ ମନେ ଠିକ୍ ବୁଝିଥିଲେ ଯେ, ସଂସାରଯାତ୍ରାନିର୍ବାହ ନିମିତ୍ତ ଅନ୍ୟ କୌଣସି ପନ୍ଥା ଶୀଘ୍ର ଗ୍ରହଣ ନ କରି ଏପରି ଦିନ କଟାଇଲେ ପରିଶେଷରେ ଋଣଗ୍ରସ୍ତ ହୋଇ ନାନା ପ୍ରକାରର ଅନର୍ଥ ଉପସ୍ଥିତ ହେବ । ମାତ୍ର କେଉଁ ଉପାୟ

ଅବଲମ୍ବନ କରିବେ ? ଯଜନ, ଯାଜନ ଓ ଅଧ୍ୟାପନା ଭିନ୍ନ ଅନ୍ୟ କୌଣସି କାର୍ଯ୍ୟ ତ ସେ ଶିଖିନାହାନ୍ତି, ଏବଂ ଚେଷ୍ଟା କରି ଏବେ ସେ ସମୟ–ଉପଯୋଗୀ କୌଣସି ଅର୍ଥକରୀ ବିଦ୍ୟା ଶିଖିବେ, ସେହି ଉତ୍ସାହ ବା ଉଦ୍ୟମ ତାଙ୍କର କାହିଁ ? ପୁଣି, ଏପରି ଶିକ୍ଷାଲାଭ କରି ଅର୍ଥ ଉପାର୍ଜ୍ଜନର ଚେଷ୍ଟା କଲେ ନିଜର ନିତ୍ୟକର୍ମ ଓ ପୂଜାଦିସମ୍ପନ୍ନ କରିବାରେ ସମୟ ପାଇବା ଯେ କଠିନ ହେବ, ଏହା ନିଶ୍ଚିତ । ଅଳ୍ପରେ ସନ୍ତୁଷ୍ଟ ସାଧୁସ୍ୱଭାବବିଶିଷ୍ଟ ରାମକୁମାର ବୈଷୟିକ ବିଷୟରେ ବିଶେଷ ଉଦ୍ୟମୀ ନ ଥିଲେ । ସୁତରାଂ 'ଯାହା ରଘୁବୀର କରିବେ' ଭାବି ପୂର୍ବୋକ୍ତ ଚିନ୍ତାରୁ ମନକୁ ଫେରାଇ ଯାହା ଏତେ କାଳ କରିଆସିଛନ୍ତି, ସେହି କାର୍ଯ୍ୟ ହିଁ ଭଗ୍ନହୃଦୟରେ କରି ଚାଲିଲେ । ସେ ଯାହା ହେଉ, ଏପରି ଅନିଶ୍ଚୟତା ମଧ୍ୟରେ ଗୋଟିଏ ଘଟଣା ଈଶ୍ୱରଙ୍କ ଇଚ୍ଛାରେ ରାମକୁମାରଙ୍କୁ ପଥ ଦେଖାଇ ନିଶ୍ଚିନ୍ତ କରିଥିଲା ।

# ଚତୁର୍ଥ ଅଧ୍ୟାୟ

## ଦକ୍ଷିଣେଶ୍ୱରର କାଳୀମନ୍ଦିର

### ରାମକୁମାରଙ୍କର କଲିକତାରେ ଟୋଲ ଖୋଲିବାର କାରଣ ଓ ସମୟନିରୂପଣ :

୧୮୫୦ ଖ୍ରୀଷ୍ଟାବ୍ଦରେ ରାମକୁମାର ଯେତେବେଳେ ଚତୁଷ୍ପାଠୀ ଖୋଲିଥିଲେ, ସେତେବେଳେ ତାଙ୍କର ବୟସ ସମ୍ଭବତଃ ୪୫ ବର୍ଷ ହୋଇଥିଲା । ସଂସାରର ଅଭାବ ଅନଟନ ଏହି ସମୟର କିଛି ପୂର୍ବରୁ ତାଙ୍କୁ ଚିନ୍ତିତ କରିଥିଲା ଏବଂ ତାଙ୍କର ପତ୍ନୀ ଏକମାତ୍ର ପୁତ୍ର ଅକ୍ଷୟଙ୍କ ଜନ୍ମପରେ ମୃତ୍ୟୁ ମୁଖରେ ପତିତ ହୋଇଥିଲେ । କଥିତ ଅଛି, ସାଧକ ରାମକୁମାର ପତ୍ନୀଙ୍କର ମୃତ୍ୟୁ ବିଷୟ ପୂର୍ବରୁ ଜାଣିପାରିଥିଲେ ଏବଂ ଏକଥା ସେ ପରିବାରର କେତେକଙ୍କୁ କହିଥିଲେ, ''ସେ (ତାଙ୍କର ପତ୍ନୀ) ଏଥର ଆଉ ବଞ୍ଚିବ ନାହିଁ ।'' ଠାକୁର ସେତେବେଳେ ଚତୁର୍ଦ୍ଦଶ ବର୍ଷରେ ପଦାର୍ପଣ କରିଛନ୍ତି । ସମୃଦ୍ଧିଶାଳୀ କଲିକତାରେ ନାନା ଧନୀ ଓ ମଧ୍ୟବିତ୍ତ ଶ୍ରେଣୀର ଲୋକଙ୍କର ବସବାସ; ଶାନ୍ତିସ୍ୱସ୍ତ୍ୟୟନାଦି କ୍ରିୟାକଳାପରେ, ବିବିଧ ବ୍ୟବସ୍ଥାପତ୍ର ପ୍ରଦାନ କରିବାରେ ଏବଂ ଟୋଲର ଛାତ୍ରମାନଙ୍କୁ ବିଦ୍ୟାଲାଭରେ ପାରଦର୍ଶୀ କରି ସୁପଣ୍ଡିତ ବୋଲି ଥରେ ଖ୍ୟାତିଲାଭ କରିପାରିଲେ ସଂସାରର ଆୟବ୍ୟୟ ନିମିତ୍ତ ତାଙ୍କୁ ଆଉ ଚିନ୍ତାଗ୍ରସ୍ତ ହେବାକୁ ପଡ଼ିବ ନାହିଁ—ବୋଧହୁଏ ଏପରି କିଛି ଭାବି ରାମକୁମାର କଲିକତା ଆସିଥିଲେ । ପତ୍ନୀଙ୍କ ବିୟୋଗରେ ସେ ଜୀବନରେ ଯେଉଁ ବିଶେଷ ପରିବର୍ତ୍ତନ ଓ ଅଭାବ ଅନୁଭବ କରୁଥିଲେ, ବିଦେଶରେ ନାନାପ୍ରକାର କାର୍ଯ୍ୟରେ ବ୍ୟାପୃତ ରହିଲେ ଏଦୁଃଖରୁ କିଛିଟା ମୁକ୍ତିଲାଭ କରିବେ, ଏପରି ଧାରଣା ମଧ୍ୟ ତାଙ୍କୁ ସେହି କାର୍ଯ୍ୟରେ ପ୍ରବୃତ୍ତ କରାଇଥିଲା । ଯାହାହେଉ, ଝାମାପୁକୁରର ଚତୁଷ୍ପାଠୀ ପ୍ରତିଷ୍ଠିତ ହେବାର ପ୍ରାୟ ତିନିଚାରିବର୍ଷ ପରେ ସେ ଠାକୁରଙ୍କୁ କଲିକତା ଆଣିଥିଲେ ଏବଂ ୧୮୫୨ ଖ୍ରୀଷ୍ଟାବ୍ଦରେ କଲିକତା ଆସି ଠାକୁର ଯେଉଁ ଭାବରେ ତିନିବର୍ଷ କାଳ ଅତିବାହିତ କରିଥିଲେ, ସେ କଥା ଆମେ ଏହା ପୂର୍ବରୁ ପାଠକଙ୍କୁ କହିଅଛୁ । ଠାକୁରଙ୍କ ଜୀବନର ଘଟଣାବଳୀ ଜାଣିବାକୁ ହେଲେ ଅତଃପର ଆମକୁ ଅନ୍ୟ ଆଡ଼କୁ ଦୃଷ୍ଟି ପକାଇବାକୁ ପଡ଼ିବ । ଦାନ-ଦକ୍ଷିଣା ଆଦାୟର ସୁବିଧା ପାଇଁ ସାଧାରଣ ବ୍ୟକ୍ତିଙ୍କ ପରି ତାଙ୍କର ଅଗ୍ରଜ ଯେତେବେଳେ ନିଜ ଚତୁଷ୍ପାଠୀର ଶ୍ରୀବୃଦ୍ଧିସାଧନରେ ଯତ୍ନପର ଥିଲେ, ସେତେବେଳେ କଲିକତାର ଅନ୍ୟତ୍ର ଏକ ସ୍ଥାନରେ ଏକ ସୁବିଖ୍ୟାତ ପରିବାରମଧ୍ୟରେ ଈଶ୍ୱରଙ୍କ ଇଚ୍ଛାରେ ଯେଉଁ ଘଟଣାପରମ୍ପରାର ଉଦୟ ହେଉଥିଲା, ଏବେ ପାଠକଙ୍କୁ ସେବିଷୟରେ ମନୋନିବେଶ କରିବାକୁ ହେବ ।

## ରାଣୀ ରାସମଣି :

କଲିକତାର ଦକ୍ଷିଣାଂଶରେ, ଜାନବଜାର ନାମକ ପଲ୍ଲୀରେ ପ୍ରଥିତକୀର୍ତ୍ତି ରାଣୀ ରାସମଣିଙ୍କର ବାସ ଥିଲା । କ୍ରମଶଃ ଚାରୋଟି କନ୍ୟାଙ୍କର ମାତା ହୋଇ ରାଣୀ ୪୪ବର୍ଷ ବୟସରେ ବିଧବା ହୋଇଥିଲେ; ଏବଂ ସେବେଠାରୁ ସ୍ୱାମୀ ରାଜଚନ୍ଦ୍ର ଦାସଙ୍କ ପ୍ରଭୂତ ସମ୍ପତ୍ତିର ତତ୍ତ୍ୱାବଧାନରେ ସ୍ୱୟଂ ନିଯୁକ୍ତା ରହି ଏହାର ସମଧିକ ଶ୍ରୀବୃଦ୍ଧିସାଧନପୂର୍ବକ ସ୍ୱଳ୍ପକାଳ ମଧ୍ୟରେ କଲିକତାବାସୀଙ୍କ ନିକଟରେ ସୁପରିଚିତା ହୋଇ ଉଠିଥିଲେ । କେବଳ ବିଷୟକର୍ମର ପରିଚାଳନାରେ ଦକ୍ଷତା ଦେଖାଇ ସେ ଯଶସ୍ୱିନୀ ହୋଇଥିଲେ ତାହା ନୁହେଁ, ତାଙ୍କର ଈଶ୍ୱର-ବିଶ୍ୱାସ, ଓଜସ୍ୱୀତା[୧] ଏବଂ ଦରିଦ୍ରମାନଙ୍କ ପ୍ରତି ନିରନ୍ତର ସହାନୁଭୂତି,[୨] ତାଙ୍କର ଅଜସ୍ର ଦାନ,

---

୧. ଶୁଣାଯାଏ, ରାଣୀ ରାସମଣୀଙ୍କ ଜାନବଜାରର ଗୃହ ନିକଟରେ ପୂର୍ବେ ଇଂରେଜ ସୈନିକମାନଙ୍କର ଗୋଟିଏ ବ୍ୟାରାକ ବା ଆଡ୍ଡାସ୍ଥଳୀ ପ୍ରତିଷ୍ଠିତ ଥିଲା । ମଦ୍ୟପାନରେ ଉଚ୍ଛୃଙ୍ଖଳ ସୈନିକମାନେ ଦିନେ ରାଣୀଙ୍କର ଦ୍ୱାରରକ୍ଷକମାନଙ୍କୁ ବଳପୂର୍ବକ ବଶୀଭୂତ କରି ଘରମଧ୍ୟକୁ ପ୍ରବେଶ କରି ଲୁଟପାଟ୍ ଆରମ୍ଭ କଲେ । ରାଣୀଙ୍କ ଜାମାତା ମଥୁରବାବୁପ୍ରମୁଖ ପୁରୁଷମାନେ ସେତେବେଳେ କାର୍ଯ୍ୟୋପଲକ୍ଷେ ବାହାରକୁ ଯାଇଥିଲେ । ସୈନିକମାନେ ବାଧା ନ ପାଇବାରୁ କ୍ରମେ ଭିତର ମହଲକୁ ଅଗ୍ରସର ହେଉଛନ୍ତି ଦେଖି ରାଣୀ ସ୍ୱୟଂ ଅସ୍ତ୍ରଶସ୍ତ୍ରରେ ସଜ୍ଜିତା ହୋଇ ସେମାନଙ୍କୁ ବାଧା ଦେବା ପାଇଁ ପ୍ରସ୍ତୁତ ହୋଇଥିଲେ ।

୨. କଥିତ ଅଛି, ଗଙ୍ଗାରେ ମାଛ ଧରିବା ପାଇଁ ଧୀବରମାନଙ୍କ ଉପରେ ଥରେ ଇଂରେଜ ସରକାର କର ବସାଇଥିଲେ । ଏହି ଧୀବରମାନଙ୍କ ମଧ୍ୟରୁ ଅନେକେ ରାଣୀଙ୍କ ଜମିଦାରୀରେ ବାସ କରୁଥିଲେ । କର ବୋଝରେ ଅତିଷ୍ଠ ଧୀବରମାନେ ରାଣୀଙ୍କୁ ସେମାନଙ୍କର ଦୁଃଖ ଜଣାଇଲେ । ରାଣୀ ତାହା ଶୁଣି ସେମାନଙ୍କୁ ଅଭୟ ଦେଲେ ଏବଂ ବହୁ ଅର୍ଥ ବ୍ୟୟ କରି ସରକାରସାହେବଙ୍କଠାରୁ ଗଙ୍ଗାରେ ମାଛ ଧରିବାର ଆଦେଶନାମା ନେଇଆସିଲେ । ରାଣୀ ମାଛ ବ୍ୟବସାୟ କରିବେ ଭାବି ସରକାରସାହେବ ଅଧିକାର ପ୍ରଦାନ କରିବା ମାତ୍ରେ କେତେକ ସ୍ଥଳରେ ଗଙ୍ଗାର ଗୋଟିଏ କୂଳରୁ ଅନ୍ୟ କୂଳ ପର୍ଯ୍ୟନ୍ତ ରାଣୀ ଏପରି ଶିକୁଳି ବନ୍ଧ କରିଦେଲେ ଯେ, ଇଂରେଜମାନଙ୍କର ଜଳଯାନଗୁଡ଼ିକ ନଦୀ ମଧ୍ୟକୁ ପ୍ରବେଶ କରିପାରିଲା ନାହିଁ । ସେମାନେ ସେତେବେଳେ ରାଣୀଙ୍କର ଏହି କାର୍ଯ୍ୟକୁ ବିରୋଧ କରିବାରୁ ରାଣୀ ଖବର ପଠାଇଲେ ଯେ, ''ମୁଁ ଅନେକ ଅର୍ଥ ବ୍ୟୟ କରି ନଦୀରେ ମାଛ ଧରିବାର ଅଧିକାର ଆପଣଙ୍କଠାରୁ କ୍ରୟ କରିଛି, ସେହି ଅଧିକାର ସୂତ୍ରରେ ହିଁ ଏପରି କରିଛି । ଏପରି କରିବାର କାରଣ, ନଦୀ ମଧ୍ୟ ଦେଇ ଜଳଯାନ ନିରନ୍ତର ଯାତାୟାତ କଲେ ମାଛସବୁ ଅନ୍ୟତ୍ର ପଳାୟନ କରିବେ ଏବଂ ମୋର ପ୍ରଭୂତ କ୍ଷତି ହେବ; ଅତଏବ ନଦୀଗର୍ଭ ଶୃଙ୍ଖଳମୁକ୍ତ କିପରି କରିବି । ତେବେ ଯଦି ଆପଣ ନଦୀରେ ମାଛ ଧରିବାର ନୂତନ କର ଉଠାଇ ଦେବାପାଇଁ ରାଜି ହେବେ, ତେବେ ମୁଁ ମଧ୍ୟ ମୋର ଅଧିକାରସ୍ୱତ୍ୱ ସ୍ୱେଚ୍ଛାରେ ତ୍ୟାଗ କରିବା ପାଇଁ ରାଜି ଅଛି । ଅନ୍ୟଥା ଏବିଷୟରେ ମକଦ୍ଦମା କରାଯିବ ଏବଂ ସରକାରସାହେବଙ୍କୁ ମୋର କ୍ଷତିପୂରଣ ଭରଣା କରିବାକୁ ପଡ଼ିବ ।'' ଶୁଣାଯାଏ, ରାଣୀଙ୍କର ଏହିପରି ଯୁକ୍ତିଯୁକ୍ତ କଥାରେ ଏବଂ ଗରୀବ ଧୀବରମାନଙ୍କୁ ସାହାଯ୍ୟ କରିବା ପାଇଁ ରାଣୀ ଏହିପରି କରିଛନ୍ତି, ଏହା ହୃଦୟଙ୍ଗମ କରି ସରକାରସାହେବ ସେହି କର ଅଳ୍ପ ଦିନ ପରେ ଉଠାଇ ଦେଲେ ଏବଂ ଧୀବରମାନେ ପୂର୍ବପରି କର ନ ଦେଇ ଯଥେଚ୍ଛ ମାଛ ଧରି ରାଣୀଙ୍କୁ ଆଶୀର୍ବାଦ କରିବାକୁ ଲାଗିଲେ ।

ଲୋକହିତକର କାର୍ଯ୍ୟରେ ରାଣୀ ରାସମଣୀଙ୍କର ଉତ୍ସାହ ସର୍ବଦା ପରିଲକ୍ଷିତ ହେଉଥିଲା । ''ସୋନାଇ, ବେଲେଘାଟା ଓ ଭବାନୀପୁରରେ ବଜାର; କାଳୀଘାଟରେ ଘାଟ

ଅକାତରରେ ଅନ୍ନବ୍ୟୟ ପ୍ରଭୃତି ଅନୁଷ୍ଠାନସମୂହ ତାଙ୍କୁ ସମସ୍ତଙ୍କର ବିଶେଷ ପ୍ରିୟ କରି ତୋଳିଥିଲା । ବାସ୍ତବିକ୍ ସ୍ୱୀୟ ଗୁଣ ଓ କର୍ମରେ ଏହି ରମଣୀ ସେତେବେଳେ ନିଜର 'ରାଣୀ' ନାମ ସାର୍ଥକ କରିଥିଲେ ଏବଂ ବ୍ରାହ୍ମଣେତର ନିର୍ବିଶେଷରେ ସମସ୍ତ ଜାତିର ଲୋକଙ୍କ ହୃଦୟର ଶ୍ରଦ୍ଧା ଓ ଭକ୍ତି ସର୍ବପ୍ରକାର ଆକର୍ଷଣରେ ସକ୍ଷମ ହୋଇଥିଲେ । ଆମେ ଯେଉଁ ସମୟର କଥା କହୁଛୁ, ସେତେବେଳେ ରାଣୀଙ୍କର କନ୍ୟାମାନଙ୍କର ବିବାହ ଏବଂ ସନ୍ତାନସନ୍ତତି ମଧ୍ୟ ହୋଇସାରିଥିଲା ଏବଂ ଗୋଟିଏ ମାତ୍ର ପୁତ୍ର ରଖି ରାଣୀଙ୍କର ତୃତୀୟ କନ୍ୟାର ମୃତ୍ୟୁ ହେବା ପରେ ତୃତୀୟ ଜାମାତା ଶ୍ରୀଯୁକ୍ତ ମଥୁରମୋହନ ବା ମଥୁରାନାଥ ବିଶ୍ୱାସ ଏଘଟଣାରେ ପର ହୋଇଯିବେ ଭାବି, ରାଣୀ ତାଙ୍କର ଚତୁର୍ଥ କନ୍ୟା ଶ୍ରୀମତୀ ଜଗଦମ୍ବା ଦାସୀର ବିବାହ ଉକ୍ତ ଜାମାତାଙ୍କ ସହିତ ସମ୍ପନ୍ନ କରି ତାଙ୍କୁ ସ୍ନେହପାଶରେ ଆବଦ୍ଧ କରିଥିଲେ । ରାଣୀଙ୍କର ଏହି ଚାରି କନ୍ୟାଙ୍କର ସନ୍ତାନସନ୍ତତିଗଣ ଏବେ ମଧ୍ୟ ଜୀବିତ ।[୧]

### ରାଣୀଙ୍କର ଦେବୀଭକ୍ତି :

ଅଶେଷଗୁଣଶାଳିନୀ ରାଣୀଙ୍କର ଶ୍ରୀଶ୍ରୀକାଳିକାଙ୍କର ଶ୍ରୀପାଦପଦ୍ମରେ ଚିରକାଳ ବିଶେଷ ଭକ୍ତି ଥିଲା । ଜମିଦାରୀ ସିରେସ୍ତାର କାଗଜପତ୍ରରେ ନାମାଙ୍କିତ କରିବା ପାଇଁ ସେ ଯେଉଁ ସିଲ୍‌ମୋହର ତିଆରି କରାଇଥିଲେ ସେଥିରେ ଖୋଦିତ

ଓ ମୁମୂର୍ଷୁ-ନିବାସ; ହାଲିସହରର ଜାହ୍ନବୀତୀରରେ ଘାଟ ଓ ସୁବର୍ଣ୍ଣରେଖାର ଅନ୍ୟ ତୀରରୁ କିଛିଦୂର ପର୍ଯ୍ୟନ୍ତ ଶ୍ରୀକ୍ଷେତ୍ରକୁ ରାସ୍ତା ପ୍ରଭୃତିରେ ତାହାର ପରିଚୟ ମିଳେ । ଗଙ୍ଗାସାଗର, ତ୍ରିବେଣୀ, ନବଦ୍ୱୀପ, ଅଗ୍ରଦ୍ୱୀପ ଓ ପୁରୀକୁ ତୀର୍ଥଯାତ୍ରା କରି ରାସମଣୀ ଦେବୋଦ୍ଦେଶ୍ୟରେ ପ୍ରଚୁର ଅର୍ଥବ୍ୟୟ କରିଥିଲେ ।'' ତଦ୍‌ଭିନ୍ନ ମକିମପୁର ଜମିଦାରୀର ପ୍ରଜାଗଣଙ୍କୁ ନୀଳକର ଅତ୍ୟାଚାରରୁ ରକ୍ଷା କରିବା ଏବଂ ଦଶହଜାର ମୁଦ୍ରା ବ୍ୟୟକରି କେନାଇ ଖନନ କରାଇ ମଧୁମତୀ ସହିତ ନବଗଙ୍ଗାର ସଂଯୋଗବିଧାନ କରିବା ପ୍ରଭୃତି ନାନା ସତ୍‌କାର୍ଯ୍ୟ ରାଣୀ ରାସମଣୀଙ୍କ ଦ୍ୱାରା ଅନୁଷ୍ଠିତ ହୋଇଥିଲା ।

୧. ପାଠକମାନଙ୍କର ଅବଗତି ନିମନ୍ତେ ରାଣୀ ରାସମଣୀଙ୍କର ବଂଶତାଲିକା 'ଶ୍ରୀଦକ୍ଷିଣେଶ୍ୱର' ନାମକ ପୁସ୍ତିକାରୁ ଏଠାରେ ଉଦ୍ଧୃତ କରାଯାଉଛି —



ଥିଲା — 'କାଳୀପଦ ଅଭିଳାଷୀ ଶ୍ରୀମତୀ ରାସମଣି ଦାସୀ' । ଠାକୁରଙ୍କ ଶ୍ରୀମୁଖରୁ ଶୁଣିଛୁ, ତେଜସ୍ୱିନୀ ରାଣୀଙ୍କର ଦେବୀଭକ୍ତି ଏହିପରି ସମସ୍ତ ବିଷୟରେ ପ୍ରକାଶିତ ହେଉଥିଲା ।

**ରାଣୀ ରାସମଣିଙ୍କର କାଶୀ ଯିବାର ଉଦ୍ୟୋଗ ସମୟରେ ପ୍ରତ୍ୟାଦେଶ ଲାଭ :**

କାଶୀଧାମକୁ ଯାଇ ଶ୍ରୀଶ୍ରୀବିଶ୍ୱେଶ୍ୱର ଓ ଅନ୍ନପୂର୍ଣ୍ଣାମାତାଙ୍କୁ ଦର୍ଶନ ଓ ବିଶେଷଭାବରେ ପୂଜା କରିବାର ବାସନା ରାଣୀଙ୍କ ହୃଦୟରେ ବହୁଦିନରୁ ରହିଥିଲା । ଶୁଣାଯାଏ, ସେ ଏଥିପାଇଁ ବହୁ ଅର୍ଥ ସଞ୍ଚୟ କରି ରଖିଥିଲେ; ମାତ୍ର ସ୍ୱାମୀଙ୍କର ହଠାତ୍ ମୃତ୍ୟୁ ହେବାରୁ ସମଗ୍ର ବିଷୟର ତତ୍ତ୍ୱାବଧାନ ନିଜ ଉପରେ ପଡ଼ିବାରୁ ଏଯାବତ ସେହି ବାସନା ଫଳବତୀ କରିପାରି ନାହାନ୍ତି । କିନ୍ତୁ ସମୟାନୁକ୍ରମେ ଜାମାତାମାନେ, ବିଶେଷ କରି ତାଙ୍କର କନିଷ୍ଠ ଜାମାତା ଶ୍ରୀଯୁକ୍ତ ମଥୁରମୋହନ ତାଙ୍କୁ ବିଷୟତତ୍ତ୍ୱାବଧାନରେ ସହାୟତା କରିବାକୁ ଶିକ୍ଷା ଲାଭ କରି ତାଙ୍କର ଦକ୍ଷିଣହସ୍ତସ୍ୱରୂପ ହୋଇ ଉଠିବାରୁ ରାଣୀ ୧୮୪୭ ଖ୍ରୀଷ୍ଟାବ୍ଦରେ କାଶୀଯାତ୍ରା ନିମନ୍ତେ ପ୍ରସ୍ତୁତ ହେବାକୁ ଲାଗିଲେ । ସବୁକିଛି ସ୍ଥିର ହେବା ପରେ ଯାତ୍ରା କରିବା ପୂର୍ବ ରାତ୍ରିରେ ସେ ସ୍ୱପ୍ନରେ ଦେବୀଙ୍କର ଦର୍ଶନଲାଭ ଏବଂ ପ୍ରତ୍ୟାଦେଶ ପାଇଲେ — କାଶୀ ଯିବାର ଆବଶ୍ୟକତା ନାହିଁ, ଭାଗୀରଥିକୂଳରେ ଏକ ମନୋରମ ସ୍ଥାନରେ ମୋର ମୂର୍ତ୍ତି ପ୍ରତିଷ୍ଠିତ କରି ପୂଜା ଓ ଭୋଗ ବ୍ୟବସ୍ଥା କର, ମୁଁ ସେହି ମୂର୍ତ୍ତି ଆଶ୍ରୟରେ ଆବିର୍ଭୂତା ହୋଇ ତୁମ ନିକଟରୁ ପ୍ରତିଦିନ ପୂଜା ଗ୍ରହଣ କରିବି ।[୧] ଭକ୍ତି ପରାୟଣା ରାଣୀ ଏପରି ଆଦେଶଲାଭରେ ବିଶେଷ ପରିତୃପ୍ତା ହେଲେ ଏବଂ କାଶୀ ଯାତ୍ରା ସ୍ଥଗିତ ରଖି ସଞ୍ଚିତ ଧନରାଶି ଏହି କାର୍ଯ୍ୟରେ ନିୟୋଜିତ କରିବାକୁ ସଂକଳ୍ପ କଲେ ।

**ରାଣୀଙ୍କର ଦେବୀମନ୍ଦିର ନିର୍ମାଣ :**

ଏହିପରି ଶ୍ରୀଶ୍ରୀଜଗଦମ୍ବାଙ୍କ ପ୍ରତି ରାଣୀଙ୍କର ବହୁକାଳ ସଞ୍ଚିତ ଭକ୍ତି ଏହି ସମୟରେ ସାକାର ମୂର୍ତ୍ତିପରିଗ୍ରହ ସକାଶେ ଉନ୍ମୁଖ ହୋଇ ଉଠିଥିଲା ଏବଂ ଭାଗୀରଥୀ କୂଳରେ ଏକ ବିସ୍ତୀର୍ଣ୍ଣ ଭୂଖଣ୍ଡ[୨] କ୍ରୟ କରି ସେ ବହୁ ଅର୍ଥବ୍ୟୟ କରି

---

୧. କେହି କେହି କହନ୍ତି, ରାଣୀ ଯାତ୍ରାକରି କଲିକତାର ଉତ୍ତରରେ ଦକ୍ଷିଣେଶ୍ୱର ଗ୍ରାମ ପର୍ଯ୍ୟନ୍ତ ଅଗ୍ରସର ହୋଇ ନୌକା ଉପରେ ରାତ୍ରିବାସ କରିବା ସମୟରେ ଏହି ପ୍ରକାର ପ୍ରତ୍ୟାଦେଶ ଲାଭ କରନ୍ତି ।

୨.ଦେବୋତ୍ତର-ଦାନପତ୍ରରେ ଲେଖାଅଛି, କାଳୀମନ୍ଦିର ଜମିର ପରିମାଣ ୬୦ ବିଘା । ୧୮୪୭ ଖ୍ରୀଷ୍ଟାବ୍ଦର ସେପ୍ଟେମ୍ବର ମାସ ୬ ତାରିଖରେ ଉକ୍ତ ଜମି କଲିକତାର ସୁପ୍ରିମକୋର୍ଟରେ ଆଟର୍ଣ୍ଣୀ ହେଷ୍ଟି ନାମକ ଜନୈକ ଇଂରେଜଙ୍କ ନିକଟରୁ କ୍ରୟ କରାହୁଏ । ଅତଏବ ମନ୍ଦିରାଦି ନିର୍ମାଣ କରିବାକୁ ପ୍ରାୟ ଦଶ ବର୍ଷ ଲାଗିଥିଲା ।

ସେଠାରେ ନବରତ୍ନ ପରିଶୋଭିତ ସୁବୃହତ୍ ମନ୍ଦିର, ଦେବାଙ୍ଗନ ଓ ତତ୍‌ସଂଲଗ୍ନ ଉଦ୍ୟାନ ନିର୍ମାଣ କରିବାକୁ ଆରମ୍ଭ କଲେ । ୧୮୪୯ ଖ୍ରୀଷ୍ଟାବ୍ଦରୁ ମନ୍ଦିର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇ ୧୮୫୫ ଖ୍ରୀଷ୍ଟାବ୍ଦରେ ମଧ୍ୟ ଉକ୍ତ ଦେବାଳୟ ସମ୍ପୂର୍ଣ୍ଣ ହୋଇ ପାରୁ ନ ଥିବା ଦେଖି ରାଣୀ ଭାବିଲେ, ଜୀବନ ଅନିଶ୍ଚିତ, ମନ୍ଦିର-ନିର୍ମାଣରେ ବହୁକାଳ ବ୍ୟୟ ହେଲେ ଶ୍ରୀଶ୍ରୀଜଗଦମ୍ବାଙ୍କ ପ୍ରତିଷ୍ଠା କରିବାର ସଂକଳ୍ପ ହୁଏତ ନିଜର ଜୀବନ କାଳରେ କାର୍ଯ୍ୟରେ ପରିଣତ ହୋଇପାରିବ ନାହିଁ । ଏହିପରି ଆଲୋଚନା କରି ୧୮୫୫ ଖ୍ରୀଷ୍ଟାବ୍ଦ ମଇ ୩୧ ତାରିଖ ସ୍ନାନ ପୂର୍ଣ୍ଣିମା ଦିନ ରାଣୀ ଶ୍ରୀଶ୍ରୀଜଗଦମ୍ବାଙ୍କର ପ୍ରତିଷ୍ଠାକାର୍ଯ୍ୟ ସମ୍ପନ୍ନ କରିଥିଲେ । ଏହା ପୂର୍ବରୁ କେତୋଟି କଥା ପାଠକମାନଙ୍କର ଜାଣିବା ଆବଶ୍ୟକ ।

### ରାଣୀଙ୍କର ଦେବୀଙ୍କୁ ଅନ୍ନଭୋଗ ଦେବାର ବାସନା :

ପ୍ରତ୍ୟାଦେଶ ପାଇବା ହେତୁ ହେଉ ବା ହୃଦୟର ସ୍ୱାଭାବିକ ଉଚ୍ଛ୍ୱାସ ଯୋଗୁଁ ହେଉ—କାରଣ, ଭକ୍ତମାନେ ନିଜର ଇଷ୍ଟଦେବତାଙ୍କୁ ସର୍ବଦା ଆତ୍ମବତ୍ ସେବା କରିବାକୁ ଭଲପାଇ ଥାଆନ୍ତି—ଶ୍ରୀଶ୍ରୀଜଗଦମ୍ବାଙ୍କୁ ଅନ୍ନଭୋଗ ଦେବା ପାଇଁ ରାଣୀଙ୍କର ପ୍ରାଣ ବ୍ୟାକୁଳ ହୋଇ ଉଠିଥିଲା । ରାଣୀ ଭାବିଥିଲେ — ମନ୍ଦିର ଇତ୍ୟାଦି ତାଙ୍କ ମନ ଅନୁସାରେ ନିର୍ମିତ ହୋଇଅଛି, ସେବା ପାଇଁ ଯଥେଷ୍ଟ ସମ୍ପତ୍ତି ମଧ୍ୟ ରଖା ହୋଇଛି, କିନ୍ତୁ ଏତେସବୁ କରି ମଧ୍ୟ ଯଦି ଶ୍ରୀଶ୍ରୀଜଗଦମ୍ବାଙ୍କୁ ପ୍ରାଣ ଯେପରି ଚାହେଁ ପ୍ରତିଦିନ ଅନ୍ନଭୋଗ ଦେଇ ନ ପାରିବି ତେବେ ସମସ୍ତ କାର୍ଯ୍ୟ ବୃଥା । ଲୋକମାନେ କହିବେ, ରାଣୀ ରାସମଣି ଏତେ ବଡ଼ କୀର୍ତ୍ତି ରଖିଯାଇଛନ୍ତି, କିନ୍ତୁ ଲୋକଙ୍କ କଥାରେ କ'ଣ ଯାଏ ଆସେ ? ହେ ଜଗଦମ୍ବେ, ଅନ୍ତଃସାରହୀନ ନାମଯଶମାତ୍ର ଦେଇ ମୋତେ ସେବାରୁ ବଞ୍ଚିତ କର ନାହିଁ । ତୁମେ ଏଠାରେ ନିତ୍ୟ ପ୍ରକାଶିତା ରୁହ ଏବଂ କୃପା କରି ଦାସୀର ପ୍ରାଣର କାମନା ପୂର୍ଣ୍ଣ କର ।

### ପଣ୍ଡିତମାନଙ୍କର ବ୍ୟବସ୍ଥା-ଗ୍ରହଣରେ ଏହି ବାସନା ପୂରଣ ହେବାର ଅନ୍ତରାୟ :

ରାଣୀ ଦେଖିଲେ, ଦେବୀଙ୍କୁ ଅନ୍ନଭୋଗ ପ୍ରଦାନ କରିବାର ପଥରେ ତାଙ୍କର ଜାତି ଓ ସାମାଜିକ ପ୍ରଥା ପ୍ରଧାନ ଅନ୍ତରାୟ ହୋଇଛି । ନତୁବା ତାଙ୍କର ଅନ୍ତର ତ ଥରେ ମଧ୍ୟ କହେ ନାହିଁ ଯେ, ଅନ୍ନଭୋଗ ଦେଲେ ଜଗନ୍ମାତା ତାହା ଗ୍ରହଣ କରିବେ ନାହିଁ— ନିଜର ହୃଦୟ ଏହି ଚିନ୍ତାରେ ଉତ୍‌ଫୁଲ୍ଲ ହେବା ବ୍ୟତୀତ କେତେବେଳେ ତ ସଙ୍କୁଚିତ ହେଉ ନାହିଁ ! ତେଣୁ ଏପରି ବିପରୀତ ପ୍ରଥାର ପ୍ରଚଳନ କାହିଁକି ହୋଇଛି ? ଶାସ୍ତ୍ରକାର କ'ଣ ପ୍ରାଣହୀନ ବ୍ୟକ୍ତି ଥିଲେ ? କିମ୍ବା, ସ୍ୱାର୍ଥାନ୍ୱେଷୀ ହୋଇ ଈଶ୍ୱରଙ୍କ ନିକଟରେ ମଧ୍ୟ ଉଚ୍ଚବର୍ଣ୍ଣର ଉଚ୍ଚାଧିକାର ବ୍ୟବସ୍ଥା କରି ଯାଇଛନ୍ତି ? ପ୍ରାଣର ପବିତ୍ର ଆକାଙ୍‌କ୍ଷାର ଅନୁସରଣପୂର୍ବକ ପ୍ରଚଳିତ ପ୍ରଥା

ବିରୁଦ୍ଧରେ କାର୍ଯ୍ୟ କଲେ ମଧ ଭକ୍ତ ବ୍ରାହ୍ମଣ ସଜ୍ଜନମାନେ ଦେବାଳୟରେ ଉପସ୍ଥିତ ହୋଇ ପ୍ରସାଦ ଗ୍ରହଣ କରିବେ ନାହିଁ — ତେବେ ଉପାୟ ? ସେ ଅନ୍ନଭୋଗପ୍ରଦାନ ନିମିତ୍ତ ନାନାସ୍ଥାନରୁ ଶାସ୍ତ୍ରଜ୍ଞ ପଣ୍ଡିତମାନଙ୍କର ମତାମତ ଆଣିବାକୁ ଲାଗିଲେ, କିନ୍ତୁ ସେମାନଙ୍କ ମଧ୍ୟରୁ କେହି ହେଲେ ତାଙ୍କୁ ଏଥିରେ ଉତ୍ସାହିତ କଲେ ନାହିଁ ।

**ରାମକୁମାରଙ୍କ ବ୍ୟବସ୍ଥାଦାନ :**

ଏହିପରି ମନ୍ଦିରନିର୍ମାଣ ଓ ମୂର୍ତ୍ତିଗଠନ ସମ୍ପୂର୍ଣ୍ଣ ହେଲେ ମଧ ରାଣୀଙ୍କର ପୂର୍ବୋକ୍ତ ସଂକଳ୍ପ ପୂର୍ଣ୍ଣ ହେବାର କୌଣସି ଉପାୟ ଦେଖାଗଲା ନାହିଁ । ପଣ୍ଡିତମାନଙ୍କ ନିକଟରୁ ବାରମ୍ବାର ପ୍ରତ୍ୟାଖ୍ୟାତ ହୋଇ ତାଙ୍କର ଆଶା ଯେତେବେଳେ ପ୍ରାୟ ଲୁପ୍ତହେବାକୁ ବସିଲା, ଠିକ୍ ସେସମୟରେ ଝାମାପୁକୁର ଚତୁଷ୍ପାଠୀରୁ ଦିନେ ଏକ ପରାମର୍ଶ ଆସି ପହଞ୍ଚିଲା — ପ୍ରତିଷ୍ଠାର ପୂର୍ବରୁ ରାଣୀ ଯଦି ଉକ୍ତ ସମ୍ପତ୍ତି କୌଣସି ବ୍ରାହ୍ମଣଙ୍କୁ ଦାନ କରିବେ ଏବଂ ସେହି ବ୍ରାହ୍ମଣ ଏହି ମନ୍ଦିରରେ ଦେବୀଙ୍କୁ ପ୍ରତିଷ୍ଠା କରି ଅନ୍ନଭୋଗର ବ୍ୟବସ୍ଥା କରିବେ, ତାହା ହେଲେ ଶାସ୍ତ୍ରର ନିୟମ ଯଥାଯଥ ରକ୍ଷିତ ହେବ ଏବଂ ବ୍ରାହ୍ମଣ ଆଦି ଉଚ୍ଚବର୍ଣ୍ଣ ବ୍ୟକ୍ତିମାନେ ଉକ୍ତ ଦେବାଳୟରେ ପ୍ରସାଦ ଗ୍ରହଣ କଲେ ମଧ ଦୋଷଭାଗୀ ହେବେ ନାହିଁ ।

**ମନ୍ଦିର ଉତ୍ସର୍ଗ ସମ୍ବନ୍ଧରେ ରାଣୀଙ୍କର ସଂକଳ୍ପ :**

ଏପରି ପରାମର୍ଶ ପାଇ ରାଣୀଙ୍କ ହୃଦୟରେ ଆଶାର ସଞ୍ଚାର ହେଲା । ସେ ନିଜର ଗୁରୁଙ୍କ ନାମରେ ଦେବାଳୟ ପ୍ରତିଷ୍ଠାପୂର୍ବକ ତାଙ୍କର ଅନୁମତିରେ ଏହି ଦେବସେବାର ତତ୍ତ୍ୱାବଧାରକ କର୍ମଚାରୀ ପଦବୀ ଗ୍ରହଣ କରି ରହିବାର ସଂକଳ୍ପ କଲେ । ରାମକୁମାର ଭଟ୍ଟାଚାର୍ଯ୍ୟଙ୍କର ପରାମର୍ଶ ଅନୁସାରେ କାର୍ଯ୍ୟ କରିବାକୁ ତାଙ୍କର ଦୃଢ଼ ସଂକଳ୍ପ ଜାଣିବାକୁ ପାଇ ଅନ୍ୟ ପଣ୍ଡିତଗଣ 'କାର୍ଯ୍ୟଟି ସାମାଜିକ ପ୍ରଥାର ବିରୁଦ୍ଧ,' ଏବଂ ଏପରି କଲେ ବ୍ରାହ୍ମଣମାନେ ଏହି ସ୍ଥାନରେ ପ୍ରସାଦ ଗ୍ରହଣ କରିବେ ନାହିଁ, ଇତ୍ୟାଦି ନାନାପ୍ରକାର କଥା ପରୋକ୍ଷରେ କହିଲେ ମଧ ଏହା ଯେ ଶାସ୍ତ୍ରବିରୁଦ୍ଧ ହେବ, ଏକଥା କହିବାକୁ ସାହସୀ ହେଲେ ନାହିଁ ।

**ରାମକୁମାରଙ୍କ ଉଦାରତା :**

ଭଟ୍ଟାଚାର୍ଯ୍ୟ ରାମକୁମାରଙ୍କ ପ୍ରତି ରାଣୀଙ୍କର ଦୃଷ୍ଟି ଯେ ଉକ୍ତ ଘଟଣାରେ ବିଶେଷ ରୂପେ ଆକୃଷ୍ଟ ହୋଇଥିଲା, ଏକଥା ଆମେ ବେଶ୍ ଅନୁମାନ କରିପାରୁ । ଏହା ଭାବି ଦେଖିଲେ ସେକାଳର ପରିସ୍ଥିତିରେ ରାମକୁମାରଙ୍କର ଏପରି ବ୍ୟବସ୍ଥା ପ୍ରଦାନ ସାମାନ୍ୟ ଉଦାରତାର ପରିଚାୟକ ବୋଲି ବୋଧ ହୁଏ ନାହିଁ । ସମାଜର ନେତୃତ୍ୱ ନେଉଥିବା ବ୍ରାହ୍ମଣ ପଣ୍ଡିତମାନଙ୍କର ମନ ସେତେବେଳେ ଅତ୍ୟନ୍ତ ସଂକୀର୍ଣ୍ଣ ଗଣ୍ଡି ମଧ୍ୟରେ ଆବଦ୍ଧ ହୋଇପଡ଼ିଥିଲା, ଏସମସ୍ତର ବାହାରକୁ ଯାଇ ଶାସ୍ତ୍ରଶାସନ

ଭିତରେ ଗୋଟିଏ ଉଦାର ଭାବ ଦେଖିବାକୁ ଏବଂ ଅବସ୍ଥା ଅନୁଯାୟୀ ବ୍ୟବସ୍ଥା ପ୍ରଦାନ କରିବାକୁ ସେମାନଙ୍କ ଭିତରେ ବିରଳ ବ୍ୟକ୍ତି ହିଁ ସକ୍ଷମ ହେଉଥିଲେ । ଫଳରେ ଅନେକ ସ୍ଥଳରେ ପଣ୍ଡିତମାନଙ୍କର ବ୍ୟବସ୍ଥା ଲଙ୍ଘନ କରିବାକୁ ଲୋକଙ୍କ ମନରେ ପ୍ରବୃତ୍ତିର ଉଦୟ ହେଉଥିଲା ।

**ରାଣୀ ରାସମଣିଙ୍କର ଉପଯୁକ୍ତ ପୂଜକର ଅନ୍ୱେଷଣ :**

ସେ ଯାହା ହେଉ, ରାମକୁମାରଙ୍କ ସହିତ ରାଣୀଙ୍କ ସମ୍ବନ୍ଧ ଏହିଠାରେ ସମାପ୍ତ ହେଲା ନାହିଁ । ବୁଦ୍ଧିମତୀ ରାଣୀ ନିଜର ଗୁରୁବଂଶୀୟମାନଙ୍କୁ ଯଥାଯଥ ସମ୍ମାନ ଦେଉଥିଲେ ମଧ୍ୟ ସେମାନଙ୍କର ଶାସ୍ତ୍ରଜ୍ଞାନର ଅଭାବ ଏବଂ ଶାସ୍ତ୍ରସମ୍ମତ ଦେବସେବାସମ୍ପନ୍ନ କରିବାର ସମ୍ପୂର୍ଣ୍ଣ ଅଯୋଗ୍ୟତା ବିଶେଷ ଭାବରେ ଲକ୍ଷ୍ୟ କରିଥିଲେ । ସେଥିପାଇଁ ସେମାନଙ୍କର ନ୍ୟାଯ୍ୟ ଦାନ-ଦକ୍ଷିଣା ଅକ୍ଷୁଣ୍ଣ ରଖି ନୂତନ ଦେବାଳୟର କାର୍ଯ୍ୟଭାର ଯେପରି ଶାସ୍ତ୍ରଜ୍ଞ ସଦାଚାରୀ ବ୍ରାହ୍ମଣମାନଙ୍କ ହସ୍ତରେ ଅର୍ପିତ ହୁଏ, ସେ-ବିଷୟ ବନ୍ଦୋବସ୍ତରେ ମନୋନିବେଶ କଲେ । ଏଠାରେ ମଧ୍ୟ ପ୍ରଚଳିତ ସାମାଜିକ ପ୍ରଥା ତାଙ୍କ ବିରୁଦ୍ଧରେ ଦଣ୍ଡାୟମାନ ହେଲା । ଶୂଦ୍ର-ପ୍ରତିଷ୍ଠିତ ଦେବଦେବୀଙ୍କର ପୂଜା କରିବା ଦୂରରେ ଥାଉ, ସଦ୍‌ବଂଶଜାତ ବ୍ରାହ୍ମଣମାନେ ସେକାଳରେ ପ୍ରଣାମ ପର୍ଯ୍ୟନ୍ତ କରି ଏସମସ୍ତ ମୂର୍ତ୍ତିଙ୍କର ମର୍ଯ୍ୟାଦା ରକ୍ଷା କରୁ ନ ଥିଲେ ଏବଂ ରାଣୀଙ୍କର ଗୁରୁବଂଶୀୟମାନଙ୍କ ପରି ବ୍ରାହ୍ମଣବନ୍ଧୁମାନଙ୍କୁ ସେମାନେ ଶୂଦ୍ରମଧ୍ୟରେ ହିଁ ପରିଗଣିତ କରୁଥିଲେ । ସୁତରାଂ ଯଜନଯାଜନକ୍ଷମ ସଦାଚାରୀ କୌଣସି ବ୍ରାହ୍ମଣ ରାଣୀଙ୍କର ଦେବାଳୟରେ ପୂଜକ ପଦରେ ବ୍ରତୀ ହେବାକୁ ହଠାତ୍ ସ୍ୱୀକୃତ ହେଲେ ନାହିଁ । ଏଥିରେ ହତାଶ ନ ହୋଇ ରାଣୀ ବେତନ ଏବଂ ପାରିତୋଷିକ ହାର ବୃଦ୍ଧିପୂର୍ବକ ପୂଜକ ନିମିତ୍ତ ନାନା ସ୍ଥାନରେ ସନ୍ଧାନ କରିବାକୁ ଲାଗିଲେ ।

**ରାଣୀଙ୍କର କର୍ମଚାରୀ ସିହଡ଼ ଗ୍ରାମର ମହେଶଚନ୍ଦ୍ର ଚଟ୍ଟୋପାଧ୍ୟାୟଙ୍କ ପୂଜକ ସନ୍ଧାନ କରିବାର ଭାରଗ୍ରହଣ :**

ଠାକୁରଙ୍କର ଭଗିନୀ ଶ୍ରୀମତୀ ହେମାଙ୍ଗିନୀ ଦେବୀଙ୍କ ଗୃହ କାମାରପୁକୁରର ଅନତିଦୂରରେ ସିହଡ଼ ନାମକ ଗ୍ରାମରେ ଥିଲା । ସେଠାରେ ଅନେକ ବ୍ରାହ୍ମଣଙ୍କର ବସତି । ମହେଶଚନ୍ଦ୍ର ଚଟ୍ଟୋପାଧ୍ୟାୟ[୧] ନାମକ ସେହି ଗ୍ରାମର ଏକ ବ୍ୟକ୍ତି ସେତେବେଳେ ରାଣୀଙ୍କର କାର୍ଯ୍ୟାଳୟରେ ନିଯୁକ୍ତ ଥିଲେ । କିଛି ଲାଭ ହୋଇପାରେ ଭାବି ଏହି ବ୍ୟକ୍ତି ଏବେ ରାଣୀଙ୍କର ଦେବାଳୟ ନିମିତ୍ତ ପୂଜକ, ପାଚକ ପ୍ରଭୃତି ସମସ୍ତ ପ୍ରକାରର ବ୍ରାହ୍ମଣ କର୍ମଚାରୀ ଯୋଗାଡ଼ କରିବା ଦାୟିତ୍ୱ ନେବା ପାଇଁ

---

୧. କେହି କେହି କହନ୍ତି, ଏହି ବଂଶୀୟମାନେ କୌଣସି ସମୟରେ 'ମଜୁମଦାର' ଉପାଧି ପ୍ରାପ୍ତ ହୋଇଥିଲେ ।

ଆଗେଇ ଆସିଲେ । ରାଣୀଙ୍କର ଦେବାଳୟରେ ଚାକିରି ସ୍ୱୀକାର କରିବା ଦୂଷଣୀୟ ନୁହେଁ, ଏହା ଗ୍ରାମସ୍ଥ ଦରିଦ୍ର ବ୍ରାହ୍ମଣମାନଙ୍କୁ ବୁଝାଇବା ପାଇଁ ମହେଶ ଉକ୍ତ ବନ୍ଦୋବସ୍ତର ଭାର ଗ୍ରହଣପୂର୍ବକ ସର୍ବ ପ୍ରଥମେ ନିଜର ଅଗ୍ରଜ କ୍ଷେତ୍ରନାଥଙ୍କୁ ଶ୍ରୀଶ୍ରୀ ରାଧାଗୋବିନ୍ଦଜୀଙ୍କର ପୂଜକ ପଦରେ ମନୋନୀତ କଲେ । ଏହିପରି ନିଜର ପରିବାରର ଜଣକୁ ରାଣୀଙ୍କର କାର୍ଯ୍ୟରେ ନିଯୁକ୍ତ କରିବାରୁ ଅନ୍ୟାନ୍ୟ ବ୍ରାହ୍ମଣ କର୍ମଚାରୀ ଯୋଗାଡ଼ କରିବା ତାଙ୍କ ପକ୍ଷରେ ଅନେକଟା ସହଜ ହୋଇଥିଲା । କିନ୍ତୁ ନାନାପ୍ରକାର ଚେଷ୍ଟା କରି ମଧ୍ୟ ସେ ଶ୍ରୀଶ୍ରୀକାଳିକାଦେବୀଙ୍କ ମନ୍ଦିର ପାଇଁ ସୁଯୋଗ୍ୟ ପୂଜକ ଯୋଗାଡ଼ କରି ନ ପାରି ବିଶେଷ ଚିନ୍ତିତ ହେଲେ ।

### ରାଣୀଙ୍କର ରାମକୁମାରଙ୍କୁ ପୂଜକର ପଦଗ୍ରହଣ କରିବାକୁ ଅନୁରୋଧ :

ରାମକୁମାର ଭଟ୍ଟାଚାର୍ଯ୍ୟଙ୍କ ସହିତ ମହେଶ ପୂର୍ବରୁ ପରିଚିତ ଥିଲେ । ଗ୍ରାମ ସମ୍ପର୍କରୁ ଉଭୟଙ୍କ ମଧ୍ୟରେ ଏକ ବନ୍ଧୁତାପୂର୍ଣ୍ଣ ସମ୍ପର୍କ ଥିବା ପରି ମନେ ହୁଏ । ରାମକୁମାର ଯେ ଜଣେ ଭକ୍ତିମାନ ସାଧକ ଏବଂ ନିଜ ଇଚ୍ଛାରେ ଶକ୍ତିମନ୍ତ୍ରରେ ଦୀକ୍ଷିତ ହୋଇଛନ୍ତି, ଏକଥା ମହେଶଙ୍କର ଅବିଦିତ ନ ଥିଲା । ତାଙ୍କର ସାଂସାରିକ ଅଭାବ ଅନଟନ କଥା ମହେଶ କିଛିଟା ଜାଣିଥିଲେ । ସେଥିପାଇଁ ଶ୍ରୀଶ୍ରୀକାଳିକାମାତାଙ୍କର ପୂଜକ ନିର୍ବାଚନ କରିବାକୁ ଯାଇ ତାଙ୍କର ଦୃଷ୍ଟି ରାମକୁମାରଙ୍କ ପ୍ରତି ଆକୃଷ୍ଟ ହେଲା । ମାତ୍ର ପରକ୍ଷଣରେ ହିଁ ତାଙ୍କର ମନେ ହେଲା — ଅଶୂଦ୍ରଯାଜୀ ରାମକୁମାର କଲିକତା ଆସି ଦିଗମ୍ବର ମିତ୍ର ପ୍ରଭୃତି ଜଣେ ଦୁଇଜଣଙ୍କ ଘରେ ପୂଜକ ପଦ ବେଳେବେଳେ ଗ୍ରହଣ କରିଥିଲେ ମଧ୍ୟ କୈବର୍ତ୍ତଜାତୀୟ ରାଣୀଙ୍କ ଦେବାଳୟରେ କ'ଣ ଏପରି କରିବାକୁ ସ୍ୱୀକୃତ ହେବେ ! ଏହା ବିଶେଷ ସନ୍ଦେହଜନକ । ଯାହା ହେଉ, ଦେବୀ ପ୍ରତିଷ୍ଠା ଦିନ ସନ୍ନିକଟ, ସୁଯୋଗ୍ୟ ଲୋକ ମଧ୍ୟ ମିଳୁ ନାହାନ୍ତି, ତେଣୁ ସବୁ ଆଡୁ ଚିନ୍ତା କରି ମହେଶ ଥରେ ଏବିଷୟରେ ଚେଷ୍ଟା କରିବାକୁ ଯୁକ୍ତିଯୁକ୍ତ ବିବେଚନା କଲେ । କିନ୍ତୁ ନିଜେ ଏବିଷୟରେ ସହସା ଅଗ୍ରସର ନ ହୋଇ ରାଣୀଙ୍କ ନିକଟରେ ସମସ୍ତ ବିଷୟ କହି, ପ୍ରତିଷ୍ଠା ଦିନ ଅନ୍ତତଃ ରାମକୁମାର ଯେପରି ପୂଜକଙ୍କ ପଦ ଗ୍ରହଣ କରି ସମସ୍ତ କାର୍ଯ୍ୟ ସୁସମ୍ପନ୍ନ କରନ୍ତି ସେଥିପାଇଁ ତାଙ୍କୁ ଅନୁରୋଧ ଓ ନିମନ୍ତ୍ରଣ ପଠାଇବାକୁ କହିଲେ । ରାମକୁମାରଙ୍କ ନିକଟରୁ ପୂର୍ବୋକ୍ତ ବ୍ୟବସ୍ଥାପତ୍ର ପାଇଥିବାରୁ ରାଣୀ ତାଙ୍କର ଯୋଗ୍ୟତା ବିଷୟରେ ପୂର୍ବରୁ ହିଁ ଉଚ୍ଚଧାରଣା କରିଥିଲେ, ସୁତରାଂ ତାଙ୍କର ପୂଜକପଦରେ ବ୍ରତୀ ହେବାର ସମ୍ଭାବନା ଦେଖି ସେ ଏବେ ବିଶେଷ ଆନନ୍ଦିତା ହେଲେ ଏବଂ ଅତି ଦୀନଭାବରେ ତାଙ୍କୁ କହି ପଠାଇଲେ, "ଶ୍ରୀଶ୍ରୀ ଜଗନ୍ମାତାଙ୍କୁ ପ୍ରତିଷ୍ଠା କରିବାକୁ ଆପଣଙ୍କର ବ୍ୟବସ୍ଥାବଳରେ ହିଁ ମୁଁ ଅଗ୍ରସର ହୋଇଛି ଏବଂ ଆଗାମୀ ସ୍ନାନଯାତ୍ରା

ଦିନ ଶୁଭମୁହୂର୍ତ୍ତରେ ଏକାର୍ଯ୍ୟ ସମ୍ପନ୍ନ କରିବା ପାଇଁ ସମସ୍ତ ଆୟୋଜନ ମଧ୍ୟ କରିଅଛି । ଶ୍ରୀଶ୍ରୀ ରାଧାଗୋବିନ୍ଦଜୀଙ୍କ ପାଇଁ ପୂଜକ ମିଳିଛନ୍ତି କିନ୍ତୁ କୌଣସି ସୁଯୋଗ୍ୟ ବ୍ରାହ୍ମଣ ଶ୍ରୀଶ୍ରୀକାଳୀମାତାଙ୍କର ପୂଜକପଦଗ୍ରହଣ କରି ମୋର ଏହି ପ୍ରତିଷ୍ଠାକାର୍ଯ୍ୟରେ ସହାୟତା କରିବାକୁ ଅଗ୍ରସର ହେଉ ନାହାନ୍ତି । ଅତଏବ ଆପଣ ହିଁ ଏବିଷୟରେ ଯାହା ହେଉ ଶୀଘ୍ର ଗୋଟିଏ ବ୍ୟବସ୍ଥା କରି ମୋତେ ଏହି ବିପଦରୁ ଉଦ୍ଧାର କରନ୍ତୁ । ଆପଣ ଜଣେ ସୁପଣ୍ଡିତ ଏବଂ ଶାସ୍ତ୍ରଜ୍ଞ, ତେଣୁ ଏହି ପୂଜକ ପଦରେ ଯାହାକୁ ତାହାକୁ ନିଯୁକ୍ତ କରାଯାଇ ପାରେ ନାହିଁ, ଏକଥା ଆପଣଙ୍କୁ କହିବା ଅନାବଶ୍ୟକ ।''

ରାଣୀଙ୍କର ଉକ୍ତ ଅନୁରୋଧ ପତ୍ର ନେଇ ମହେଶ ରାମକୁମାରଙ୍କ ନିକଟରେ ଯାଇ ପହଞ୍ଚିଲେ ଏବଂ ତାଙ୍କୁ ନାନାପ୍ରକାରେ ବୁଝାଇ, ସୁଯୋଗ୍ୟ ପୂଜକ ନ ମିଳିବା ପର୍ଯ୍ୟନ୍ତ ପୂଜକର ଆସନ ଗ୍ରହଣ କରାଇବା ପାଇଁ ସ୍ୱୀକୃତ କରାଇଲେ । ସେହିପରି ଲୋଭପରିଶୂନ୍ୟ ଭକ୍ତିମାନ ରାମକୁମାର ନିର୍ଦ୍ଦିଷ୍ଟ ଦିନରେ ଶ୍ରୀଶ୍ରୀଜଗଦମ୍ବାଙ୍କର ପ୍ରତିଷ୍ଠା ବନ୍ଦ ହେବା ଆଶଙ୍କାରେ ହିଁ ପ୍ରଥମେ ଦକ୍ଷିଣେଶ୍ୱର ଆଗମନ କରିଥିଲେ[୧] ଏବଂ ରାଣୀ ଓ ମଥୁରବାବୁଙ୍କ ଅନୁନୟ ଯୋଗୁଁ ସୁଯୋଗ୍ୟ ପୂଜକର ଅଭାବ ଦେଖି ସେହି ସ୍ଥାନରେ ଯାବଜ୍ଜୀବନ ରହିଗଲେ । ଶ୍ରୀଶ୍ରୀଜଗଦମ୍ବାଙ୍କର ଇଚ୍ଛାରେ

୧. ଦକ୍ଷିଣେଶ୍ୱର କାଳୀମନ୍ଦିରକୁ ଶ୍ରୀଯୁକ୍ତ ରାମକୁମାରଙ୍କର ପ୍ରଥମ ଆଗମନ ସମ୍ବନ୍ଧରେ ପୂର୍ବୋକ୍ତ ବିବରଣ ଆମେମାନେ ଠାକୁରଙ୍କ ଅନୁଗତ ଭଣଜା ଶ୍ରୀଯୁକ୍ତ ହୃଦୟରାମଙ୍କ ନିକଟରୁ ପ୍ରାପ୍ତ ହୋଇଛୁ । ଠାକୁରଙ୍କ ଭ୍ରାତୁଷ୍ପୁତ୍ର ଶ୍ରୀଯୁକ୍ତ ରାମଲାଲ ଭଟ୍ଟାଚାର୍ଯ୍ୟ କିନ୍ତୁ ଏସମ୍ବନ୍ଧରେ ଅନ୍ୟ କଥା କହନ୍ତି । ସେ କହନ୍ତି—କାମାରପୁକୁର ନିକଟବର୍ତ୍ତୀ ଦେଶଡ଼ା ନାମକ ଗ୍ରାମର ରାମଧନ ଘୋଷ ରାଣୀ ରାସମଣୀଙ୍କ କର୍ମଚାରୀ ଥିଲେ । କାର୍ଯ୍ୟଦକ୍ଷତା ଯୋଗୁଁ ସେ ରାଣୀଙ୍କ ସୁଦୃଷ୍ଟିରେ ପଡ଼ି କ୍ରମେ ତାଙ୍କର ଦେଓ୍ୱାନ ପର୍ଯ୍ୟନ୍ତ ହୋଇଥିଲେ । କାଳୀମନ୍ଦିର ପ୍ରତିଷ୍ଠା ସମୟରେ ସେ ଶ୍ରୀଯୁକ୍ତ ରାମକୁମାରଙ୍କ ସହିତ ପରିଚିତ ଥିବାରୁ ବିଦାୟି ନେବା ପାଇଁ ତାହାଙ୍କୁ ନିମନ୍ତ୍ରଣ ପତ୍ର ଦିଅନ୍ତି । ରାମକୁମାର ସେଥିରେ ରାଣୀଙ୍କ ଜାନ୍‌ବଜାରସ୍ଥିତ ଭବନରେ ଉପସ୍ଥିତ ହୋଇ ରାମଧନଙ୍କୁ କହିଲେ, ''ରାଣୀ କୈବର୍ତ୍ତଜାତୀୟା, ଆମେ ତାହାଙ୍କ ନିମନ୍ତ୍ରଣ ଓ ଦାନ ଗ୍ରହଣ କଲେ ଏକଘରିକିଆ ହେବାକୁ ପଡ଼ିବ ।'' ସେଥିରେ ଆପତ୍ତି କରି ରାମଧନ ତାହାଙ୍କୁ ଖାତା ଦେଖାଇ କହିଲେ, ''କାହିଁକି? ଏହି ଦେଖ, କେତେ ବ୍ରାହ୍ମଣଙ୍କୁ ନିମନ୍ତ୍ରଣ କରାହୋଇଛି, ସେମାନେ ସମସ୍ତେ ଭୋଜନ କରିବେ ଏବଂ ରାଣୀଙ୍କ ବିଦାୟି ଗ୍ରହଣ କରିବେ ।'' ତାହାଦ୍ୱାରା ରାମକୁମାର ବିଦାୟି ଗ୍ରହଣ କରିବାରେ ରାଜି ହୋଇ କାଳୀମନ୍ଦିର ପ୍ରତିଷ୍ଠାର ପୂର୍ବଦିନ ଠାକୁରଙ୍କ ସହିତ ଦକ୍ଷିଣେଶ୍ୱରରେ ଉପସ୍ଥିତ ହୋଇଥିଲେ । ପ୍ରତିଷ୍ଠାର ପୂର୍ବଦିନ ଯାତ୍ରା, କାଳୀକୀର୍ତ୍ତନ, ଭାଗବତପାଠ, ରାମାୟଣକଥା ଇତ୍ୟାଦି ନାନା ବିଷୟରେ କାଳୀମନ୍ଦିରରେ ଆନନ୍ଦର ପ୍ରବାହ ଛୁଟିଥିଲା । ରାତ୍ରିକାଳରେ ମଧ୍ୟ ସେହି ପ୍ରକାର ଆନନ୍ଦର ବିରାମ ହୋଇ ନାହିଁ ଏବଂ ଅସଂଖ୍ୟ ଆଲୋକମାଳାରେ ଦେବାଳୟ ସର୍ବତ୍ର ଦିବାଲୋକଭଳି ଉଜ୍ଜ୍ୱଳଭାବ ଧାରଣ କରିଥିଲା । ଠାକୁର କହୁଥିଲେ—''ସେହି ସମୟରେ ଦେବାଳୟ ଦେଖି ମନେ ହେଉଥିଲା, ରାଣୀ ଯେପରି ରଜତଗିରି ଉଠାଇ ଆଣି ଏଠାରେ ବସାଇ ଦେଇଛନ୍ତି ।'' ପୂର୍ବୋକ୍ତ ଆନନ୍ଦୋତ୍ସବ ଦେଖିବାପାଇଁ ଶ୍ରୀଯୁକ୍ତ ରାମକୁମାର ପ୍ରତିଷ୍ଠାର ପୂର୍ବଦିନ କାଳୀମନ୍ଦିରରେ ଉପସ୍ଥିତ ହୋଇଥିଲେ । ରାମଲାଲ ଭଟ୍ଟାଚାର୍ଯ୍ୟଙ୍କ ପୂର୍ବୋକ୍ତ କଥାରୁ ଅନୁମିତି ହୁଏ, ରାମଧନ ଓ ମହେଶ ଉଭୟଙ୍କ ଅନୁରୋଧରେ ଶ୍ରୀଯୁକ୍ତ ରାମକୁମାର ଦକ୍ଷିଣେଶ୍ୱରକୁ ଆଗମନପୂର୍ବକ ପୂଜକର ପଦ ଅଙ୍ଗୀକାର କରିଥିଲେ ।

ହିଁ ସଂସାରରେ ଛୋଟ ବଡ଼ ସମସ୍ତ କାର୍ଯ୍ୟ ସମ୍ପନ୍ନ ହୋଇଥାଏ; ଦେବୀଭକ୍ତ ରାମକୁମାର ଏବିଷୟରେ ଇଚ୍ଛାମୟୀଙ୍କର ଇଚ୍ଛା ଜାଣି ପାରି ଏହି କାର୍ଯ୍ୟରେ ବ୍ରତୀ ହୋଇଥିଲେ କି ନାହିଁ ତାହା କିଏ କହିବ ।

**ରାଣୀଙ୍କର ଦେବୀପ୍ରତିଷ୍ଠା :**

ସେ ଯାହାହେଉ, ଏପରି ଅସମ୍ଭାବିତ ଉପାୟରେ ରାମକୁମାରଙ୍କୁ ପୂଜକରୂପରେ ପାଇ ରାଣୀ ରାସମଣି ୧୮୫୫ ଖ୍ରୀଷ୍ଟାବ୍ଦ ମଇ ୩୧ ତାରିଖ, ଗୁରୁବାର, ସ୍ନାନଯାତ୍ରା ଦିନ ମହାସମାରୋହରେ ଶ୍ରୀଶ୍ରୀଜଗଦମ୍ବାଙ୍କୁ ନୂତନ ମନ୍ଦିରରେ ପ୍ରତିଷ୍ଠିତା କଲେ । ଶୁଣାଯାଏ 'ଦୀୟତାଂ ଭୁଜ୍ୟତାଂ' ଶବ୍ଦରେ ସେଦିନ ଏହି ସ୍ଥାନ ଦିନରାତି ସମାନ ଭାବରେ କୋଳାହଳପୂର୍ଣ୍ଣ ହୋଇ ଉଠିଥିଲା ଏବଂ ରାଣୀ ଅକାତରରେ ଅଜସ୍ର ଅର୍ଥ ବ୍ୟୟ କରି ଅତିଥି ଅଭ୍ୟାଗତ ସମସ୍ତଙ୍କୁ ଆନନ୍ଦିତ କରିବାରେ ତ୍ରୁଟି କରି ନ ଥିଲେ । ସୁଦୂର କାନ୍ୟକୁବ୍ଜ, ବାରାଣସୀ, ଶ୍ରୀହଟ୍ଟ, ଚଟ୍ଟଗ୍ରାମ, ଓଡ଼ିଶା ଏବଂ ନବଦ୍ୱୀପ ପ୍ରଭୃତି ପଣ୍ଡିତପ୍ରଧାନ ସ୍ଥାନଗୁଡ଼ିକରୁ ବହୁ ଅଧ୍ୟାପକ ବ୍ରାହ୍ମଣପଣ୍ଡିତ ଏହି ଉପଲକ୍ଷରେ ସମାଗତ ହୋଇ ପ୍ରତ୍ୟେକେ ସେଦିନ ଦାମୀ ରେଶମୀ ବସ୍ତ୍ର, ଉତ୍ତରୀୟ ଏବଂ ବିଦାୟ ସ୍ୱରୂପ ଗୋଟିଏ କରି ସ୍ୱର୍ଣ୍ଣମୁଦ୍ରା ପ୍ରାପ୍ତ ହୋଇଥିଲେ । ଶୁଣାଯାଏ, ଦେବାଳୟନିର୍ମାଣ ଓ ପ୍ରତିଷ୍ଠା ଉପଲକ୍ଷରେ ରାଣୀ ନଅଲକ୍ଷ ମୁଦ୍ରା ବ୍ୟୟ କରିଥିଲେ ଏବଂ ଦୁଇ ଲକ୍ଷ ଛବିଶ ହଜାର ମୁଦ୍ରା ବିନିମୟରେ ତ୍ରୈଲୋକନାଥ ଠାକୁରଙ୍କ ନିକଟରୁ ଦିନାଜପୁର ଜିଲ୍ଲାର ଠାକୁର-ଗାଁ ମହକୁମା ଅନ୍ତର୍ଗତ ଶାଳବାଡ଼ି ପରଗଣା କ୍ରୟ କରି ଦେବସେବା ପାଇଁ ଦାନପତ୍ର ଲେଖି ଦେଇଥିଲେ ।

**ପ୍ରତିଷ୍ଠାଦିନ ଠାକୁରଙ୍କର ଆଚରଣ :**

କେହି କେହି କହନ୍ତି, ଭଟ୍ଟାଚାର୍ଯ୍ୟ ରାମକୁମାର ସେଦିନ ସିଧା (ରନ୍ଧନ ସାମଗ୍ରୀ) ନେଇ ଗଙ୍ଗାଜଳରେ ରନ୍ଧନ କରି ଅଭୀଷ୍ଟ ଦେବୀଙ୍କୁ ନିବେଦନ କରି ପ୍ରସାଦ ପାଇଥିଲେ, କିନ୍ତୁ ଆମମାନଙ୍କର ଏକଥା ସମ୍ଭବ ବୋଲି ମନେହୁଏ ନାହିଁ । କାରଣ ଦେବୀଭକ୍ତ ରାମକୁମାର ସ୍ୱୟଂ ବ୍ୟବସ୍ଥା କରି ଦେବୀଙ୍କର ଅନ୍ନଭୋଗର ବ୍ୟବସ୍ଥା କରିଥିଲେ । ତେଣୁ ସେ ଏବେ ସେହି ନିବେଦିତ ଅନ୍ନ ଗ୍ରହଣ ନ କରି ନିଜ ବିଧାନର ଏବଂ ଭକ୍ତିଶାସ୍ତ୍ରର ବିରୁଦ୍ଧ କାର୍ଯ୍ୟ କରିବେ, ଏହା ଯୁକ୍ତିସମ୍ମତ ନୁହେଁ । ଅତଏବ ଆମମାନଙ୍କର ଧାରଣା, ସେ ପୂଜା ପରେ ହୃଷ୍ଟ ଚିତ୍ତରେ ଶ୍ରୀଶ୍ରୀଜଗଦମ୍ବାଙ୍କର ପ୍ରସାଦୀ ନୈବେଦ୍ୟାନ୍ନ ହିଁ ଗ୍ରହଣ କରିଥିଲେ । ଠାକୁର କିନ୍ତୁ ଏହି ଆନନ୍ଦ ଉତ୍ସବରେ ସମ୍ପୂର୍ଣ୍ଣଭାବରେ ଯୋଗଦାନ କଲେ ମଧ୍ୟ ଆହାର ବିଷୟରେ ନିଜ ନିଷ୍ଠା ରକ୍ଷାପୂର୍ବକ ସନ୍ଧ୍ୟାବେଳେ ନିକଟବର୍ତ୍ତୀ ବଜାରରୁ ଏକ ପଇସାର ମୁଢ଼ି

ଉଖୁଡ଼ା କିଣି ଖାଇ ପଦବ୍ରଜରେ ଝାମାପୁକୁର ଚାଟଶାଳୀକୁ ଆସି ସେହି ରାତ୍ରିରେ ବିଶ୍ରାମ କରିଥିଲେ ।

**କାଳୀମନ୍ଦିର ପ୍ରତିଷ୍ଠା ସମ୍ବନ୍ଧରେ ଠାକୁରଙ୍କ କଥା :**

ରାଣୀ ରାସମଣିଙ୍କର ଦକ୍ଷିଣେଶ୍ୱରରେ କାଳୀମନ୍ଦିର ପ୍ରତିଷ୍ଠା କରିବା ସମ୍ବନ୍ଧରେ ଠାକୁର ସ୍ୱୟଂ ଆମମାନଙ୍କୁ ଅନେକ ସମୟରେ ଅନେକ କଥା କହୁଥିଲେ । କହୁଥିଲେ—ରାଣୀ କାଶୀଧାମକୁ ଯିବାପାଇଁ ସମସ୍ତ ଆୟୋଜନ କରିଥିଲେ; ଯାତ୍ରାର ଦିନ ସ୍ଥିର କରି ପ୍ରାୟ ଏକଶତ କ୍ଷୁଦ୍ର ଓ ବୃହତ୍ ନୌକା ନାନାପ୍ରକାରର ଦ୍ରବ୍ୟ ସମ୍ଭାରରେ ପୂର୍ଣ୍ଣ କରି ଘାଟରେ ବାନ୍ଧି ରଖିଥିଲେ, ଯାତ୍ରା କରିବାର ପୂର୍ବରାତ୍ରିରେ ସ୍ୱପ୍ନରେ ଦେବୀଙ୍କ ନିକଟରୁ ପ୍ରତ୍ୟାଦେଶ ଲାଭ କରି ସେହି ସଂକଳ୍ପ ପରିତ୍ୟାଗ କଲେ ଓ ଦେବୀମନ୍ଦିର ପ୍ରତିଷ୍ଠା ନିମନ୍ତେ ଯଥାଯୋଗ୍ୟ ସ୍ଥାନର ଅନୁସନ୍ଧାନରେ ନିଯୁକ୍ତା ହେଲେ ।

ଠାକୁର କହୁଥିଲେ—ରାଣୀ ପ୍ରଥମେ 'ଗଙ୍ଗାର ପଶ୍ଚିମ କୂଳ, ବାରାଣସୀ ସମତୁଲ'—ଏହି ଧାରଣାର ବଶବର୍ତ୍ତିନୀ ହୋଇ ଭାଗୀରଥୀର ପଶ୍ଚିମକୂଳରେ ବାଲୀ, ଉତ୍ତରପଡ଼ା ପ୍ରଭୃତି ଗ୍ରାମରେ ସ୍ଥାନାନ୍ୱେଷଣ କରି ବିଫଳ ମନୋରଥ ହେଲେ ।[୧] କାରଣ 'ଦଶଅଣା' 'ଛଅଅଣା' ଅଂଶୀଦାରଖ୍ୟାତ ଏହି ସ୍ଥାନର ପ୍ରସିଦ୍ଧ ଭୂମି ମାଲିକମାନେ, ରାଣୀଙ୍କର ପ୍ରଭୂତ ଅର୍ଥ ଦାନରେ ସ୍ୱୀକୃତ ହେଲେ ମଧ୍ୟ, କହିଲେ, ସେମାନଙ୍କର ଅଧିକୃତ ସ୍ଥାନର କେଉଁଠାରେ ମଧ୍ୟ ଅନ୍ୟର ଖର୍ଚ୍ଚରେ ନିର୍ମିତ ଘାଟ ଦେଇ ସେମାନେ ଗଙ୍ଗାରେ ଅବତରଣ କରିବେ ନାହିଁ । ରାଣୀ ବାଧ୍ୟ ହୋଇ ଶେଷରେ ଭାଗୀରଥୀର ପୂର୍ବତଟରେ ଏହି ସ୍ଥାନ କ୍ରୟ କରିଥିଲେ ।

ଠାକୁର କହୁଥିଲେ—ରାଣୀ ଦକ୍ଷିଣେଶ୍ୱରର ଯେଉଁ ସ୍ଥାନଟି ମନୋନୀତ କରିଥିଲେ, ଏହାର କିଛି ଅଂଶ ଜଣେ ସାହେବଙ୍କର ଥିଲା ଏବଂ ଅନ୍ୟ ଅଂଶରେ ମୁସଲମାନମାନଙ୍କର କବରସ୍ଥଳ ଓ ଗାଜିସାହେବ ନାମକ ପୀରଙ୍କର ସ୍ଥାନ ଥିଲା; ସ୍ଥାନଟିର ଆକାର କୂର୍ମପୃଷ୍ଠ ସଦୃଶ ଥିଲା; ଏପରି କୂର୍ମପୃଷ୍ଠାକୃତି ଶ୍ମଶାନ ହିଁ ଶକ୍ତିପ୍ରତିଷ୍ଠା ଓ ସାଧନା ନିମିତ୍ତ ବିଶେଷ ପ୍ରଶସ୍ତ ବୋଲି ତନ୍ତ୍ରରେ କୁହାଯାଇଅଛି; ଅତଏବ ଯେପରି ଦୈବାଧୀନ ହୋଇ ରାଣୀ ଏହି ସ୍ଥାନଟିକୁ ମନୋନୀତ କରିଥିଲେ ।

ପୁଣି ଶକ୍ତିପ୍ରତିଷ୍ଠା ନିମନ୍ତେ ଶାସ୍ତ୍ରନିର୍ଦ୍ଦିଷ୍ଟ ଅନ୍ୟ ଶୁଭ ଦିନମାନଙ୍କରେ ମନ୍ଦିର ପ୍ରତିଷ୍ଠା ନ କରି ସ୍ନାନଯାତ୍ରା ଦିନରେ ବିଷ୍ଣୁ-ପର୍ବରେ ରାଣୀ ଶ୍ରୀଶ୍ରୀଜଗଦମ୍ବାଙ୍କର ପ୍ରତିଷ୍ଠା କାହିଁକି କଲେ, ସେବିଷୟରେ କଥା ଉଠାଇ ଠାକୁର ବେଳେ ବେଳେ ଆମମାନଙ୍କୁ କହୁଥିଲେ—ଦେବୀମୂର୍ତ୍ତି ନିର୍ମାଣର ଆରମ୍ଭ ଦିନଠାରୁ ରାଣୀ

୧. ବାଲୀ, ଉତ୍ତରପଡ଼ା ପ୍ରଭୃତି ଗ୍ରାମର ପ୍ରାଚୀନ ଲୋକମାନେ ବର୍ତ୍ତମାନ ମଧ୍ୟ ଏକଥା ସତ୍ୟ ବୋଲି ସାକ୍ଷ୍ୟ ପ୍ରଦାନ କରନ୍ତି ।

ଯଥାଶାସ୍ତ୍ର କଠୋର ତପସ୍ୟା କରିଥିଲେ; ତ୍ରିସନ୍ଧ୍ୟା ସ୍ନାନ, ହବିଷାନ୍ନ-ଭୋଜନ, ମାଟିରେ ଶୟନ ଓ ଯଥାଶକ୍ତି ଜପ ଓ ପୂଜାଦି କରୁଥିଲେ; ମନ୍ଦିର ଓ ଦେବୀମୂର୍ତ୍ତି ନିର୍ମିତ ହେଲେ ପ୍ରତିଷ୍ଠା ପାଇଁ ଧୀରେ ସୁସ୍ଥେ ଶୁଭଦିନର ନିର୍ଦ୍ଧାରଣ ହେଉଥିଲା ଏବଂ ମୂର୍ତ୍ତିଟି ଭଗ୍ନ ହୋଇଯିବା ଆଶଙ୍କାରେ ବାକ୍ସରେ ବନ୍ଦ କରି ରଖା ଯାଇଥିଲା । ଏପରି ସମୟରେ ଯେ କୌଣସି କାରଣରୁ ହେଉ, ମୂର୍ତ୍ତି ଘର୍ମାକ୍ତ ହୋଇଯାଏ ଏବଂ ରାଣୀଙ୍କୁ ସ୍ୱପ୍ନରେ ପ୍ରତ୍ୟାଦେଶ ହୁଏ — 'ମୋତେ ଆଉ କେତେଦିନ ଏପରି ଭାବରେ ଆବଦ୍ଧ କରି ରଖିବୁ ? ମୋର ବଡ଼କଷ୍ଟ ହେଉଅଛି; ଯେତେ ଶୀଘ୍ର ପାରୁଛୁ ମୋତେ ପ୍ରତିଷ୍ଠିତ କର ।' ଏପରି ପ୍ରତ୍ୟାଦେଶ ଲାଭ କରି ହିଁ ରାଣୀ ଦେବୀ-ପ୍ରତିଷ୍ଠା ପାଇଁ ବ୍ୟସ୍ତ ହୋଇ ଶୁଭଦିନ ନିର୍ଦ୍ଧାରଣ କରିବାକୁ ଲାଗିଲେ ଏବଂ ସ୍ନାନପୂର୍ଣ୍ଣିମା ପୂର୍ବରୁ ଅନ୍ୟ କୌଣସି ଶୁଭ ଦିନ ନ ପାଇବାରୁ ସ୍ନାନପୂର୍ଣ୍ଣିମା ଦିନ ହିଁ ଏହି କାର୍ଯ୍ୟ ସମ୍ପନ୍ନ କରିବାକୁ ସଂକଳ୍ପ କଲେ ।

ଏହାଛଡ଼ା ଦେବୀଙ୍କୁ ଅନ୍ନଭୋଗ ଦେଇ ପାରିବେ ବୋଲି ନିଜର ଗୁରୁଙ୍କ ନାମରେ ରାଣୀଙ୍କର ଉକ୍ତ ଠାକୁରବାଡ଼ି ପ୍ରତିଷ୍ଠା କରିବା ପ୍ରଭୃତି ପୂର୍ବରୁ କୁହାଯାଇଥିବା ସମସ୍ତ କଥା ହିଁ ଆମେ ଠାକୁରଙ୍କ ନିକଟରୁ ଶୁଣିଥିଲୁ । କେବଳ ମନ୍ଦିର ପ୍ରତିଷ୍ଠା ପାଇଁ ରାଣୀଙ୍କୁ ରାମକୁମାରଙ୍କର ବ୍ୟବସ୍ଥାଦାନ ଓ ଠାକୁରଙ୍କୁ ବୁଝାଇବା ପାଇଁ ରାମକୁମାରଙ୍କର ଧର୍ମପତ୍ରାନୁଷ୍ଠାନର କଥା ଦୁଇଟି ଆମେ ଠାକୁରଙ୍କର ଭଣଜା ଶ୍ରୀଯୁକ୍ତ ହୃଦୟରାମ ମୁଖୋପାଧ୍ୟାୟଙ୍କଠାରୁ ଶୁଣିଥିଲୁ ।

ଦକ୍ଷିଣେଶ୍ୱର କାଳୀମନ୍ଦିରରେ ଚିରକାଳ ପାଇଁ ପୂଜକପଦ ଗ୍ରହଣ କରିବା ଯେ ଭଟ୍ଟାଚାର୍ଯ୍ୟ ରାମକୁମାରଙ୍କର ପ୍ରଥମ ଅଭୀପ୍ସିତ ନ ଥିଲା, ସେକଥା ଆମେ ଠାକୁରଙ୍କର ଏହି ସମୟର ବ୍ୟବହାରରୁ ବୁଝିପାରୁ । ସେହି କଥାର ଅନୁଧ୍ୟାନରେ ମନେ ହୁଏ ସରଳ ରାମକୁମାର ସେତେବେଳେ ମଧ୍ୟ ସେହି ବିଷୟ ବୁଝିପାରି ନ ଥିଲେ । ସେ ଭାବିଥିଲେ, ଦେବୀଙ୍କୁ ଅନ୍ନଭୋଗ ପ୍ରଦାନର ବିଧାନ ଦେଇ ଏବଂ ପ୍ରତିଷ୍ଠା ଦିନରେ ସ୍ୱୟଂ ଏହି କାର୍ଯ୍ୟ ସମ୍ପନ୍ନ କରିବା ପରେ ସେ ପୁନରାୟ ଝାମାପୁକୁର ଫେରିଯିବେ । ସେହିଦିନ ଦେବୀଙ୍କୁ ଅନ୍ନଭୋଗ ନିବେଦନ କରିବାକୁ ବସି ସେ ଯେ କିଛିମାତ୍ର କୁଣ୍ଠିତ ହୋଇ ନ ଥିଲେ ବା ସେ ଯେ କୌଣସି ପ୍ରକାର ଅନ୍ୟାୟ, ଅଶାସ୍ତ୍ରୀୟ କାର୍ଯ୍ୟ କରୁଛନ୍ତି ଏପରି ମନେ କରି ନାହାନ୍ତି, ଏହା କନିଷ୍ଠଙ୍କ ସହିତ ତାଙ୍କର ଏହି ସମୟର ବ୍ୟବହାରରୁ ବୁଝି ହୁଏ ।

ପ୍ରତିଷ୍ଠାର ପରଦିନ ପ୍ରତ୍ୟୁଷରେ ଠାକୁର ଅଗ୍ରଜଙ୍କ ଖବର ଜାଣିବା ପାଇଁ ଏବଂ ପ୍ରତିଷ୍ଠାସଂକ୍ରାନ୍ତ ଅନ୍ୟ ଯେଉଁ କାର୍ଯ୍ୟସବୁ ବାକିଥିଲା, ତାହା ଦେଖିବାକୁ କୌତୁହଳପରବଶ ହୋଇ ଦକ୍ଷିଣେଶ୍ୱରରେ ଆସି ପହଞ୍ଚିଲେ ଏବଂ କିଛି ସମୟ ସେଠାରେ ରହି ବୁଝିଲେ ଅଗ୍ରଜଙ୍କର ସେଦିନ ଝାମାପୁକୁର ଫେରିବାର କୌଣସି ସମ୍ଭାବନା ନାହିଁ । ସୁତରାଂ ସେଦିନ ସେଠାରେ ଅବସ୍ଥାନ କରିବାକୁ ଅଗ୍ରଜଙ୍କ

ଅନୁରୋଧ ନ ଶୁଣି ସେ ଭୋଜନ ସମୟରେ ପୁନର୍ବାର ଝାମାପୁକୁର ଫେରି ଆସିଲେ । ଏହାପରେ ଠାକୁର ପ୍ରାୟ ପାଞ୍ଚ-ସାତ ଦିନ ଆଉ ଦକ୍ଷିଣେଶ୍ୱର ଗଲେ ନାହିଁ । ଦକ୍ଷିଣେଶ୍ୱରଠାରେ କାର୍ଯ୍ୟ ଶେଷ ହେଲେ ଅଗ୍ରଜ ଯଥା ସମୟରେ ଝାମାପୁକୁର ଫେରିବେ ଭାବି ସେହି ସ୍ଥାନରେ ହିଁ ଅବସ୍ଥାନ କରିଥିଲେ । କିନ୍ତୁ ଏକ ସପ୍ତାହ ପରେ ମଧ୍ୟ ଯେତେବେଳେ ରାମକୁମାର ଫେରି ଆସିଲେ ନାହିଁ, ସେତେବେଳେ ମନରେ ନାନାପ୍ରକାର ଚିନ୍ତା ଭାବନା କରି ଠାକୁର ପୁନରାୟ ଖବର ଜାଣିବା ପାଇଁ ଦକ୍ଷିଣେଶ୍ୱର ଆସିଲେ ଏବଂ ଶୁଣିଲେ, ରାଣୀଙ୍କର ବିନମ୍ର ଅନୁରୋଧରେ ସେ ଚିରକାଳ ପାଇଁ ସେଠାରେ ଶ୍ରୀଶ୍ରୀଜଗଦମ୍ବାଙ୍କର ପୂଜକ ପଦ ଗ୍ରହଣ କରିବାକୁ ସମ୍ମତି ପ୍ରଦାନ କରିଛନ୍ତି । ଏହାଶୁଣି ଠାକୁରଙ୍କ ମନରେ ନାନାପ୍ରକାର କଥା ଆସିଲା ଏବଂ ସେ ତାଙ୍କ ପିତାଙ୍କର ଅଶୂଦ୍ରଯାଜିତ୍ୱ ଏବଂ ଅପ୍ରତିଗ୍ରାହିତ୍ୱର କଥା ସ୍ମରଣ କରାଇ ଦେଇ ତାଙ୍କୁ ସେହି ପ୍ରକାର କାର୍ଯ୍ୟରୁ ନିବୃତ୍ତ କରାଇବା ପାଇଁ ଚେଷ୍ଟା କଲେ । ଶୁଣାଯାଏ, ଏଥିରେ ରାମକୁମାର ଠାକୁରଙ୍କୁ ଶାସ୍ତ୍ର ଓ ଯୁକ୍ତିସହକାରେ ନାନାଭାବରେ ବୁଝାଇ ଯେତେବେଳେ ଦେଖିଲେ ଯେ କୌଣସି କଥା ତାଙ୍କର ଅନ୍ତର ସ୍ପର୍ଶ କରୁ ନାହିଁ, ସେତେବେଳେ ସେ ଧର୍ମପତ୍ର-ଅନୁଷ୍ଠାନରୂପକଂ ସରଳ ଉପାୟ ଅବଲମ୍ବନ କରିଥିଲେ । ଶୁଣାଯାଏ, ଧର୍ମପତ୍ରରେ

---

୧. ପଲ୍ଲୀଗ୍ରାମରେ ରୀତି ଅଛି, କୌଣସି ବିଷୟ ଯୁକ୍ତିସହକାରେ ମୀମାଂସା ହୋଇ ନ ପାରିଲେ, ଲୋକେ ଦୈବ ଉପରେ ନିର୍ଭର କରି ଦେବତାଙ୍କର ଏହି ବିଷୟରେ କ'ଣ ଅଭୀପ୍ସିତ, ଜାଣିବା ପାଇଁ ଧର୍ମପତ୍ରର ଅନୁଷ୍ଠାନ ଏବଂ ଏହାର ସାହାଯ୍ୟରେ ଦେବତାଙ୍କର ଇଚ୍ଛା ଜାଣି ସେହି ବିଷୟରେ ଆଉ ଯୁକ୍ତିତର୍କ ନ କରି ତଦନୁରୂପ କାର୍ଯ୍ୟ କରିଥାଆନ୍ତି । ଧର୍ମପତ୍ର ନିମ୍ନଲିଖିତ ଭାବରେ ଅନୁଷ୍ଠିତ ହୁଏ ।

କେତେଗୁଡ଼ିଏ ଟୁକୁରା କାଗଜରେ ବା ବିଲ୍ୱପତ୍ରରେ 'ହଁ' ବା 'ନା' ଲେଖି ଗୋଟିଏ ଲୋଟା ଭିତରେ ରଖି କୌଣସି ଶିଶୁକୁ ସେଥିରୁ ଗୋଟିଏ ଉଠାଇବା ପାଇଁ କୁହା ହୁଏ । ଶିଶୁ 'ହଁ' ଲିଖିତ କାଗଜ ଉଠାଇଲେ ଅନୁଷ୍ଠାତା ବୁଝେ, ଦେବତା ତାହାକୁ ଏହି କାର୍ଯ୍ୟ କରିବାକୁ କହୁଛନ୍ତି । କହିବା ବାହୁଲ୍ୟ, ବିପରୀତ ଉଠିଲେ ଅନୁଷ୍ଠାତା ଦେବତାଙ୍କର ଅଭିପ୍ରାୟ ଅନ୍ୟରୂପ ବୁଝେ । ଧର୍ମପତ୍ରର ଅନୁଷ୍ଠାନ ଦ୍ୱାରା ବେଳେବେଳେ ବିଷୟବିଭାଗ ମଧ୍ୟ ହୋଇଥାଏ । ଯେପରି, ପିତାଙ୍କ ଚାରି ସନ୍ତାନ ପୂର୍ବରୁ ଏକତ୍ର ଥିଲେ, ବର୍ତ୍ତମାନ ପୃଥକ ହେବା ପାଇଁ ସଂକଳ୍ପ କରି ବିଷୟ ଭାଗ କରିବାକୁ ଯାଇ ଏହାର କେଉଁ ଅଂଶ କିଏ ନେବ ତାହା ସ୍ଥିର କରି ନ ପାରିଲେ, ଗ୍ରାମର କେତେଜଣ ନିଃସ୍ୱାର୍ଥ ଧାର୍ମିକ ଲୋକଙ୍କୁ ମୀମାଂସା କରିଦେବାକୁ କହନ୍ତି । ସେମାନେ ସେତେବେଳେ ସ୍ଥାବର ଅସ୍ଥାବର ସମୁଦାୟ ସମ୍ପତ୍ତି ଯେତେଦୂର ସମ୍ଭବ ସମାନ ଚାରିଭାଗରେ ବିଭାଗ କରି କେଉଁ ଭାଇ ଭାଗରେ କେଉଁ ଭାଗଟି ପଡ଼ିବ, ତାହା ଧର୍ମପତ୍ର ଦ୍ୱାରା ମୀମାଂସା କରିଥାଆନ୍ତି । ଏହି ସମୟରେ ମଧ୍ୟ ପ୍ରାୟ ପୂର୍ବପରି ଅନୁଷ୍ଠାନ ହୁଏ । ଛୋଟ ଛୋଟ କାଗଜରେ ବିଷୟାଧିକାରୀମାନଙ୍କର ନାମ ଲେଖି କେହି ଦେଖି ନ ପାରିବା ଭଳି ଗୁଡ଼ାଇ ଗୋଟିଏ ଲୋଟା ଭିତରେ ରଖନ୍ତି ଏବଂ ଉକ୍ତ ଚାରିଭାଗରେ ବିଭକ୍ତ ସମ୍ପତ୍ତିର ପ୍ରତ୍ୟେକ ଭାଗ 'କ' 'ଖ' ଇତ୍ୟାଦି ଚିହ୍ନରେ ନିର୍ଦ୍ଦିଷ୍ଟ କରି ଓ ସେହିପରି କ୍ଷୁଦ୍ର କ୍ଷୁଦ୍ର କାଗଜଖଣ୍ଡରେ ଲିପିବଦ୍ଧ ହୋଇ ଅନ୍ୟ ଏକ ପାତ୍ରରେ ରଖାଯାଏ । ତାହାପରେ ଦୁଇଜଣ ଶିଶୁଙ୍କୁ ଡାକି ଜଣକୁ ଗୋଟିଏ ପାତ୍ରରୁ ଓ ଅନ୍ୟଜଣକୁ ଦ୍ୱିତୀୟ ପାତ୍ରରୁ ଖଣ୍ଡିଏ ଲେଖାଏଁ କାଗଜ ଉଠାଇବାକୁ କୁହାଯାଏ । ଅନନ୍ତର କାଗଜଗୁଡ଼ିକ

ଉଠିଥିଲା — "ରାମକୁମାର ପୂଜକର ପଦଗ୍ରହଣ କରି ନିନ୍ଦିତ କର୍ମ କରି ନାହାନ୍ତି । ଏଥିରେ ସମସ୍ତଙ୍କର ମଙ୍ଗଳ ହେବ ।"

### ଠାକୁରଙ୍କର ଆହାର ସମ୍ବନ୍ଧରେ ନିଷ୍ଠା :

ଧର୍ମପତ୍ରର ମୀମାଂସା ଦେଖି ଠାକୁରଙ୍କର ମନ ଏବିଷୟରେ ନିଶ୍ଚିନ୍ତ ହେଲେ ମଧ୍ୟ ଅନ୍ୟ ଏକ ଚିନ୍ତା ତାଙ୍କ ହୃଦୟ ଅଧିକାର କଲା । ସେ ଭାବିବାକୁ ଲାଗିଲେ, ଚତୁଷ୍ପାଠୀ ତ' ଏବେ ଉଠିଗଲା, ସେ ଏବେ କରିବେ କ'ଣ ! ଝାମାପୁକୁରକୁ ସେଦିନ ଫେରି ନ ଯାଇ ଠାକୁର ସେହି ବିଷୟରେ ଚିନ୍ତିତ ରହିଲେ ଏବଂ ରାମକୁମାର ତାଙ୍କୁ ମନ୍ଦିରର ପ୍ରସାଦ ପାଇବାକୁ କହିଲେ ମଧ୍ୟ ସେ ଏଥିରେ ସମ୍ମତ ହେଲେ ନାହିଁ । ରାମକୁମାର ନାନା ପ୍ରକାରରେ ବୁଝାଇ କହିଲେ, "ଦେବାଳୟ, ଗଙ୍ଗାଜଳରେ ରନ୍ଧା, ତା'ପରେ ଶ୍ରୀଶ୍ରୀଜଗଦମ୍ବାଙ୍କୁ ଏହା ନିବେଦିତ ହୋଇଅଛି, ତେଣୁ ତାହା ଭୋଜନ କଲେ ଦୋଷ ହେବ ନାହିଁ ।" ଠାକୁରଙ୍କର କିନ୍ତୁ ଏସମସ୍ତ କଥା ମନକୁ ପାଇଲା ନାହିଁ । ସେତେବେଳେ ରାମକୁମାର କହିଲେ, "ତେବେ ସିଧା (ଶୁଖିଲା ଭୋଜ୍ୟ) ନେଇ ପଞ୍ଚବଟୀତଳେ ଗଙ୍ଗାଗର୍ଭକୁ ଯାଇ ସ୍ୱହସ୍ତରେ ରନ୍ଧନ କରି ଭୋଜନ କର; ଗଙ୍ଗାଗର୍ଭସ୍ଥିତ ସକଳ ବସ୍ତୁ ହିଁ ପବିତ୍ର, ଏକଥା ତ ମାନିବୁ ?" ଆହାର ସମ୍ବନ୍ଧରେ ଠାକୁରଙ୍କର ମନର ଐକାନ୍ତିକ ନିଷ୍ଠା, ଏଥର ତାଙ୍କର ଅନ୍ତର୍ନିହିତ ଗଙ୍ଗାଭକ୍ତି ନିକଟରେ ପରାଜିତ ହେଲା । ଶାସ୍ତ୍ରଜ୍ଞ ରାମକୁମାର ତାଙ୍କୁ ଯୁକ୍ତି ସହାୟତାରେ ଏତେ କହି ବୁଝାଇ ଏହା ପୂର୍ବରୁ ଯାହା କରିପାରି ନ ଥିଲେ, ବିଶ୍ୱାସ ଓ ଭକ୍ତି ତାହା ସଂସାଧିତ କଲା । ଠାକୁର ଏହି କଥାରେ ସମ୍ମତ ହେଲେ ଏବଂ ସେହି ପ୍ରକାରରେ ଭୋଜନ କରି ଦକ୍ଷିଣେଶ୍ୱରରେ ଅବସ୍ଥାନ କରିବାକୁ ଲାଗିଲେ ।

### ଠାକୁରଙ୍କର ଗଙ୍ଗାଭକ୍ତି :

ବାସ୍ତବିକ, ଆମେ ଆଜୀବନ ଠାକୁରଙ୍କୁ ଗଙ୍ଗାଙ୍କ ପ୍ରତି ଗଭୀର ଭକ୍ତି କରିବାକୁ ଦେଖିଛୁ । ସେ କହୁଥିଲେ — ନିତ୍ୟ-ଶୁଦ୍ଧ ବ୍ରହ୍ମ ହିଁ ଜୀବକୁ ପବିତ୍ର କରିବା ନିମନ୍ତେ ବାରିରୂପରେ ଗଙ୍ଗା ଆକାରରେ ପରିଣତ ହୋଇ ରହିଛନ୍ତି । ସୁତରାଂ ଗଙ୍ଗା ସାକ୍ଷାତ୍ ବ୍ରହ୍ମବାରି; ଗଙ୍ଗାତୀରରେ ବାସ କଲେ ଦେବତୁଲ୍ୟ ଅନ୍ତଃକରଣ ହୋଇ ଧର୍ମବୁଦ୍ଧି ସ୍ୱତଃ ସ୍ଫୁରିତ ହୋଇଥାଏ । ଗଙ୍ଗାର ପୂତବାଷ୍ପକଣିକାପୂର୍ଣ୍ଣ ବାୟୁ ଉଭୟ ତଟରେ ଯେତେଦୂର ସଞ୍ଚରଣ କରେ, ସେତେଦୂର ପର୍ଯ୍ୟନ୍ତ ପବିତ୍ର ଭୂମି — ସେହି ଭୂମିବାସୀମାନଙ୍କ ଜୀବନରେ ସଦାଚାର, ଈଶ୍ୱରଭକ୍ତି, ନିଷ୍ଠା, ଦାନ

---

ଖୋଲି ଦେଖିଲେ ଯାହାର ନାମରେ ସମ୍ପତ୍ତିର ଯେଉଁ ଭାଗଟି ଉଠିଅଛି, ସେହି ଭାଗଟି ନେବା ପାଇଁ ତାହାକୁ ବାଧ କରାହୁଏ ।

ଏବଂ ତପସ୍ୟାର ଭାବ ଶୈଳସୂତା ଭାଗୀରଥୀଙ୍କ କୃପାରେ ସର୍ବଦା ବିରାଜିତ ଥାଏ । ଅନେକସମୟ ଯଦି କେହି ବିଷୟକଥା କହିଛି କିମ୍ବା ବିଷୟୀ ଲୋକର ସଙ୍ଗ କରି ଆସିଛି ତାହେଲେ ଠାକୁର ତାକୁ କହୁଥିଲେ, 'ଟିକେ ଗଙ୍ଗାଜଳ ପିଇ ଆସ ।' ଈଶ୍ୱରବିମୁଖ, ବିଷୟାସକ୍ତ ମାନବ ପୁଣ୍ୟାଶ୍ରମର କୌଣସି ସ୍ଥାନରେ ବସି ବିଷୟ ଚିନ୍ତା କରି କଳୁଷିତ କଲେ ଠାକୁର ସେଠାରେ ଗଙ୍ଗାଜଳ ସିଞ୍ଚନ କରୁଥିଲେ ଏବଂ ଗଙ୍ଗାଜଳରେ କେହି ଶୌଚାଦି କରିବା ଦେଖିଲେ ମନରେ ବିଶେଷ କଷ୍ଟ ପାଉଥିଲେ ।

## ଠାକୁରଙ୍କର ଦକ୍ଷିଣେଶ୍ୱରରେ ବାସ ଏବଂ ସ୍ୱହସ୍ତରେ ରନ୍ଧନ କରି ଭୋଜନ କରିବା :

ସେ ଯାହାହେଉ, ମନୋରମ ଭାଗୀରଥୀ ତୀରରେ ବିହଙ୍ଗକୂଜିତ ପଞ୍ଚବଟୀଶୋଭିତ ଉଦ୍ୟାନ, ସୁବିଶାଳ ଦେବାଳୟରେ ଭକ୍ତିମାନ ସାଧକାନୁଷ୍ଠିତ ସୁସମ୍ପନ୍ନ ଦେବସେବା, ଧାର୍ମିକ ସଦାଚାରୀ ପିତୃତୁଲ୍ୟ ଅଗ୍ରଜଙ୍କର ଅକୃତ୍ରିମ ସ୍ନେହ ଏବଂ ଦେବଦ୍ୱିଜପରାୟଣା ପୁଣ୍ୟବତୀ ରାଣୀ ରାସମଣି ଏବଂ ତାଙ୍କର ଜାମାତା ମଥୁରବାବୁଙ୍କର ଶ୍ରଦ୍ଧା ଓ ଭକ୍ତି ଅତିଶୀଘ୍ର ଦକ୍ଷିଣେଶ୍ୱରର କାଳୀମନ୍ଦିରକୁ ଠାକୁରଙ୍କ ନିକଟରେ କାମାରପୁକୁର ଗୃହ ସଦୃଶ ଆପଣାର କରିତୋଳିଲା ଏବଂ ଠାକୁର କିଛି କାଳ ସ୍ୱହସ୍ତରେ ରନ୍ଧନ କରି ଭୋଜନ କରୁଥିଲେ ମଧ୍ୟ ସେ ସେଠାରେ ସାନନ୍ଦଚିତ୍ତରେ ବାସ କରି ମନର ପୂର୍ବବର୍ଣ୍ଣିତ କିଂକର୍ତ୍ତବ୍ୟଭାବ ପରିହାର କରିବାକୁ ସମର୍ଥ ହେଲେ ।

## ଅନୁଦାରତା ଓ ଐକାନ୍ତିକ ନିଷ୍ଠାରେ ପ୍ରଭେଦ :

ଠାକୁରଙ୍କର ଆହାର ସମ୍ବନ୍ଧୀୟ ପୂର୍ବୋକ୍ତ ନିଷ୍ଠା କଥା ଶୁଣି କେହି କେହି ହୁଏତ କହିବେ, ଏପରି ଅନୁଦାରତା ଆମମାନଙ୍କ ପରି ମାନବଙ୍କ ଅନ୍ତରରେ ସଚରାଚର ଦୃଷ୍ଟ ହୋଇଥାଏ — ଠାକୁରଙ୍କ ଜୀବନରେ ଏହାର ଉଲ୍ଲେଖ କରି ଏହା କ'ଣ କୁହାଯାଇପାରେ ଯେ ସେହି ପ୍ରକାର ଅନୁଦାର ନ ହେଲେ ଆଧ୍ୟାତ୍ମିକ ଜୀବନରେ ଚରମ ଉନ୍ନତି ସମ୍ଭବପର ନୁହେଁ ? ଉତ୍ତରରେ କହିବାକୁ ହୁଏ, ଅନୁଦାରତା ଓ ଐକାନ୍ତିକ ନିଷ୍ଠା, ଦୁଇଟି ଏକ ବସ୍ତୁ ନୁହେଁ । ଅହଙ୍କାରରୁ ପ୍ରଥମଟିର ଜନ୍ମ ଏବଂ ଏହାର ପ୍ରଭାବରେ ମନୁଷ୍ୟ ସ୍ୱୟଂ ଯାହା ବୁଝିଅଛି, କରୁଅଛି, ତାହାକୁ ହିଁ ସର୍ବୋଚ୍ଚ ଜ୍ଞାନକରି ନିଜ ଚାରିପଟେ ଏକ ବେଷ୍ଟନୀ ଟାଣି ନିଶ୍ଚିନ୍ତ ହୋଇରହେ; କିନ୍ତୁ ଶାସ୍ତ୍ର ଏବଂ ମହାପୁରୁଷମାନଙ୍କର ଅନୁଶାସନରେ ବିଶ୍ୱାସରୁ ହିଁ ଦ୍ୱିତୀୟଟିର ଉତ୍ପତ୍ତି — ଏହାର ଉଦୟରେ ମାନବ ନିଜ ଅହଂକାରକୁ ଖର୍ବ କରି

ଆଧ୍ୟାତ୍ମିକ ଜୀବନରେ ଉନ୍ନତ ଏବଂ କାଳକ୍ରମେ ପରମସତ୍ୟ ଲାଭର ଅଧିକାରୀ ହୋଇଥାଏ । ନିଷ୍ଠା ପ୍ରଭାବରେ ମାନବ ପ୍ରଥମେ କିଛିକାଳ ଅନୁଦାର ରୂପରେ ପ୍ରତୀୟମାନ ହୋଇପାରେ; କିନ୍ତୁ ତାହା ସହାୟତାରେ ସେ ଜୀବନପଥରେ ଉଚ୍ଚରୁ ଉଚ୍ଚତର ଆଲୋକ କ୍ରମଶଃ ଦେଖିପାରେ ଏବଂ ତାହାର ସଂକୀର୍ଣ୍ଣତାର ଗଣ୍ଡି ସ୍ୱଭାବତଃ ଅନ୍ତର୍ହିତ ହୁଏ । ଅତଏବ ଆଧ୍ୟାତ୍ମିକ ଉନ୍ନତିପଥରେ ନିଷ୍ଠାର ଏକାନ୍ତ ପ୍ରୟୋଜନୀୟତା ରହିଛି । ଠାକୁରଙ୍କ ଜୀବନରେ ଏହାର ପରିଚୟ ପୂର୍ବୋକ୍ତରୂପେ ପାଇ ଏହା ହିଁ ବୁଝାଯାଏ ଯେ, ଶାସ୍ତ୍ରର ଶାସନ ପ୍ରତି ଦୃଢ଼ ନିଷ୍ଠା ରଖି ଯଦି ଆମେ ଆଧ୍ୟାତ୍ମିକ ତତ୍ତ୍ୱସକଳ ପ୍ରତ୍ୟକ୍ଷ କରିବାକୁ ଅଗ୍ରସର ହେଉ, ତେବେ ହିଁ ସମୟାନୁକ୍ରମେ ଯଥାର୍ଥ ଉଦାରତାର ଅଧିକାରୀ ହୋଇ ପରମ ଶାନ୍ତିଲାଭରେ ସକ୍ଷମ ହେବୁ, ନତୁବା ନୁହେଁ । ଠାକୁର ଯେପରି କହୁଥିଲେ—ଗୋଟିଏ କଣ୍ଟା ଦେଇ ଆମକୁ ଆଉ ଗୋଟିଏ କଣ୍ଟା କାଢ଼ିବାକୁ ହେବ—ନିଷ୍ଠାକୁ ଅବଲମ୍ବନ କରି ହିଁ ସତ୍ୟର ଉଦାରତାରେ ପହଞ୍ଚିବାକୁ ହେବ—ଶାସନ, ନିୟମକୁ ଅନୁସରଣ କରି ହିଁ ଶାସନାତୀତ, ନିୟମାତୀତ ଅବସ୍ଥା ଲାଭ କରିବାକୁ ହେବ ।

ଯୌବନର ପ୍ରାରମ୍ଭରେ ଠାକୁରଙ୍କ ଜୀବନରେ ସେହି ପ୍ରକାରର ଅସମ୍ପୂର୍ଣ୍ଣତା ଦେଖି କେହି କେହି କହିବେ, ତେବେ ତାଙ୍କୁ ଈଶ୍ୱରାବତାର ବୋଲି କୁହାଯିବ କାହିଁକି, ମଣିଷ କହିଲେ ହିଁ ତ' ହୁଏ ? ପୁଣି ଯଦି ତାଙ୍କୁ ଠାକୁର ମାନିବାକୁ ଚାହଁ, ତେବେ ତାଙ୍କର ଏପରି ଅସମ୍ପୂର୍ଣ୍ଣତାଗୁଡ଼ିକ ଚାପି, ଢାଙ୍କି କହିବା ହିଁ ଭଲ, ନ ହେଲେ ତୁମମାନଙ୍କର ଅଭୀଷ୍ଟ ସହଜରେ ସଂସିଦ୍ଧ ହେବ ନାହିଁ । ଆମେ କହୁ—ଭାଇ, ଆମର ମଧ୍ୟ ଗୋଟିଏ ସମୟ କଟିଛି ଯେତେବେଳେ ଈଶ୍ୱରଙ୍କର ମାନବ ବିଗ୍ରହଧାରଣପୂର୍ବକ ଅବତୀର୍ଣ୍ଣ ହେବା କଥା ସ୍ୱପ୍ନରେ ସୁଦ୍ଧା ସମ୍ଭବପର ବୋଲି ବିଶ୍ୱାସ କରି ନାହୁଁ; ପୁଣି ଯେତେବେଳେ ତାଙ୍କର ଅହେତୁକ କୃପାରେ ସେହିକଥା ସମ୍ଭବପର ବୋଲି ସେ ଆମମାନଙ୍କୁ ବୁଝାଇଦେଲେ ସେତେବେଳେ ଦେଖିଲୁ, ମାନବଦେହ ଧାରଣ କରିବାକୁ ଗଲେ ସେହି ଦେହର ଅସମ୍ପୂର୍ଣ୍ଣତାଗୁଡ଼ିକ ପରି ମାନବମନର ତ୍ରୁଟିଗୁଡ଼ିକୁ ମଧ୍ୟ ତାଙ୍କୁ ଯଥାଯଥ ଭାବରେ ସ୍ୱୀକାର କରିବାକୁ ହୁଏ । ଠାକୁର କହୁଥିଲେ, ''ସୁନାରେ ଖାଦ ନ ମିଶାଇଲେ ଯେପରି ଅଳଙ୍କାର ଗଢ଼ିବା ହୋଇପାରେ ନାହିଁ, ସେହିପରି ବିଶୁଦ୍ଧ ସତ୍ତ୍ୱଗୁଣ ସହିତ ରଜଃ ଏବଂ ତମୋଗୁଣର ମଳିନତା କେତେକାଂଶରେ ମିଳିତ ନ ହେଲେ କୌଣସି ପ୍ରକାରର ଦେହ-ମନ ଗଠିତ ହେବା ଅସମ୍ଭବ ।'' ନିଜ ଜୀବନର ଏହି ସମସ୍ତ ଅସମ୍ପୂର୍ଣ୍ଣତାର କଥା ଆମମାନଙ୍କ ନିକଟରେ ପ୍ରକାଶ କରିବାକୁ ସେ କେବେହେଲେ କିଛିମାତ୍ର

କୁଣ୍ଠିତ ହୋଇ ନାହାନ୍ତି, ଅଥଚ ସ୍ପଷ୍ଟଭାବରେ ଆମମାନଙ୍କୁ ବାରମ୍ବାର କହିଛନ୍ତି— "ପୂର୍ବପୂର୍ବ ଯୁଗରେ ଯିଏ ରାମ ଓ କୃଷ୍ଣ ରୂପରେ ଆବିର୍ଭୂତ ହୋଇଥିଲେ, ସେ ହିଁ ଇଦାନୀଂ (ନିଜର ଶରୀର ଦେଖାଇ) ଏହି ଖୋଳଟା ଭିତରେ ଆସିଛନ୍ତି; ତେବେ ଏଥର ଗୁପ୍ତଭାବରେ ଆସିବା—ରାଜା ଯେପରି ଛଦ୍ମବେଶରେ ସହର ପରିଦର୍ଶନ କରିବାକୁ ଯାଆନ୍ତି, ଠିକ୍ ସେହିପରି ।" ଅତଏବ ଠାକୁରଙ୍କ ସମ୍ବନ୍ଧରେ ଆମମାନଙ୍କୁ ଯାହା କିଛି ଜଣା ଅଛି, ସେସମସ୍ତ କଥା ହିଁ ଆମେ କହିବୁ । ହେ ପାଠକ, ତୁମେ ଏହାର ଯେତେଦୂର ବିଶ୍ୱାସ ଓ ଗ୍ରହଣ କରିବା ଯୁକ୍ତିଯୁକ୍ତ ବୁଝିବ, ସେତିକି ମାତ୍ର ନେଇ ଅବଶିଷ୍ଟ ପାଇଁ ଆମମାନଙ୍କୁ ଯେତେ ଇଚ୍ଛା ନିନ୍ଦା ତିରସ୍କାର କଲେ ମଧ୍ୟ ଆମେ ଦୁଃଖିତ ହେବୁ ନାହିଁ ।

# ପଞ୍ଚମ ଅଧ୍ୟାୟ

## ପୂଜକପଦ ଗ୍ରହଣ

### ପ୍ରଥମ ଦର୍ଶନରୁ ମଥୁରବାବୁଙ୍କର ଠାକୁରଙ୍କ ପ୍ରତି ଆଚରଣ ଓ ସଂକଳ୍ପ :

ମନ୍ଦିର ପ୍ରତିଷ୍ଠାର କେତେ ସପ୍ତାହ ପରେ ଠାକୁରଙ୍କର ସୌମ୍ୟ ଦର୍ଶନ, କୋମଳ ପ୍ରକୃତି, ଧର୍ମନିଷ୍ଠା ଓ ଅଳ୍ପ ବୟସ ରାଣୀ ରାସମଣିଙ୍କର ଜାମାତା ଶ୍ରୀଯୁକ୍ତ ମଥୁରବାବୁଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ଦେଖିବାକୁ ମିଳେ, ଜୀବନରେ ଯେଉଁମାନଙ୍କ ସହିତ ଦୀର୍ଘକାଳବ୍ୟାପୀ ଘନିଷ୍ଠ ସମ୍ବନ୍ଧ ସ୍ଥାପିତ ହୁଏ, ସେମାନଙ୍କୁ ପ୍ରଥମ ଦର୍ଶନକାଳରେ ମାନବହୃଦୟରେ ଗୋଟିଏ ପ୍ରୀତିର ଆକର୍ଷଣ ହଠାତ୍ ଆସି ଉପସ୍ଥିତ ହୁଏ । ଶାସ୍ତ୍ର କହନ୍ତି, ଏହା ଆମମାନଙ୍କର ପୂର୍ବଜନ୍ମକୃତ ସମ୍ବନ୍ଧର ସଂସ୍କାରରୁ ଉଦିତ ହୋଇଥାଏ । ଠାକୁରଙ୍କୁ ଦେଖି ମଥୁରବାବୁଙ୍କର ମନରେ ସେତେବେଳେ ଯେ ସେହିପରି ଏକ ଅନିର୍ଦ୍ଦିଷ୍ଟ ଆକର୍ଷଣ ଉପସ୍ଥିତ ହୋଇଥିଲା, ଏକଥା ପରବର୍ତ୍ତୀ ସମୟରେ ସେମାନଙ୍କର ପରସ୍ପର ମଧ୍ୟରେ ସୁଦୃଢ଼ ପ୍ରେମସମ୍ବନ୍ଧ ଦେଖି ଆମେ ନିଶ୍ଚିତରୂପେ ବୁଝିପାରୁ ।

ଦେବମନ୍ଦିର ପ୍ରତିଷ୍ଠିତ ହେବା ପରେ କ'ଣ କରିବା କର୍ତ୍ତବ୍ୟ, ନିଶ୍ଚୟ କରି ନ ପାରି ଅଗ୍ରଜଙ୍କ ଅନୁରୋଧରେ ଏକ ମାସ କାଳ ପର୍ଯ୍ୟନ୍ତ ଠାକୁର ଦକ୍ଷିଣେଶ୍ୱରରେ ଅବସ୍ଥାନ କରିଥିଲେ । ମଥୁରବାବୁ ଏହା ମଧ୍ୟରେ ତାଙ୍କୁ ଦେବୀଙ୍କର ବେଶକାରୀ କାର୍ଯ୍ୟରେ ନିଯୁକ୍ତ କରିବା ପାଇଁ ମନେ ମନେ ସଂକଳ୍ପ କରି ରାମକୁମାରଙ୍କୁ ଏକଥା କହିଥିଲେ । ରାମକୁମାର ତାଙ୍କ ଭାଇଙ୍କର ମାନସିକ ଅବସ୍ଥା କଥା ସବିଶେଷ ବୁଝାଇ ତାଙ୍କୁ ସେହି ବିଷୟରେ ନିରୁତ୍ସାହିତ କରିଥିଲେ । ମାତ୍ର ମଥୁରବାବୁ ସହଜରେ ନିରସ୍ତ ହେବା ଲୋକ ନ ଥିଲେ । ତେଣୁ ସେହି ଭାବରେ ପ୍ରତ୍ୟାଖ୍ୟାତ ହୋଇ ମଧ୍ୟ ସେ ସେହି ସଂକଳ୍ପ କାର୍ଯ୍ୟରେ ପରିଣତ କରିବାକୁ ସୁଯୋଗ ଅନୁସନ୍ଧାନ କରିବାକୁ ଲାଗିଲେ ।

### ଠାକୁରଙ୍କର ଭଣଜା ହୃଦୟରାମ :

ଠାକୁରଙ୍କ ଜୀବନ ସହିତ ଘନିଷ୍ଠ ସମ୍ବନ୍ଧରେ ସଂଯୁକ୍ତ ଆଉ ଜଣେ ବ୍ୟକ୍ତି ଏବେ ଦକ୍ଷିଣେଶ୍ୱରରେ ଆସି ଉପସ୍ଥିତ ହୋଇଥିଲେ । ଠାକୁରଙ୍କର ପିଉସୀ ଝିଅ ଭଉଣୀ ଶ୍ରୀମତୀ ହେମାଙ୍ଗିନୀ ଦେବୀଙ୍କର ପୁତ୍ର ଶ୍ରୀହୃଦୟରାମ ମୁଖୋପାଧ୍ୟାୟ ପୂର୍ବୋକ୍ତ ଘଟଣାର କେତେ ମାସ ପୂର୍ବରୁ କର୍ମ ଅନ୍ୱେଷଣରେ ବର୍ଦ୍ଧମାନ ସହରରେ ଆସି ପହଞ୍ଚିଥିଲେ । ହୃଦୟଙ୍କର ବୟସ ସେତେବେଳେ ଷୋହଳ ବର୍ଷ । ଯୁବକ ହୃଦୟ ସେଠାରେ ନିଜ ଗ୍ରାମର ପରିଚିତ ଲୋକଙ୍କ ଘରେ ରହି

ନିଜ ସଂକଳ୍ପସିଦ୍ଧିର କୌଣସି ପ୍ରକାର ସୁବିଧା କରିପାରୁ ନ ଥିଲେ । ସେ ଏବେ ଲୋକମୁଖରେ ସମ୍ବାଦ ପାଇଲେ ତାଙ୍କର ମାମୁଁମାନେ ରାଣୀ ରାସମଣିଙ୍କର ନୂତନ ଦେବାଳୟରେ ସସମ୍ମାନେ ଅବସ୍ଥାନ କରୁଛନ୍ତି, ତେଣୁ ସେଠାରେ ପହଞ୍ଚି ପାରିଲେ ତାଙ୍କର ଅଭିପ୍ରାୟସିଦ୍ଧିର ସୁଯୋଗ ହୋଇପାରେ । କାଳବିଳମ୍ବ ନ କରି ହୃଦୟ ଦକ୍ଷିଣେଶ୍ୱର-ଦେବାଳୟରେ ଉପସ୍ଥିତ ହେଲେ ଏବଂ ବାଲ୍ୟକାଳରୁ ସୁପରିଚିତ, ପ୍ରାୟ ସମବୟସ୍କ ମାମୁଁ ଶ୍ରୀରାମକୃଷ୍ଣଦେବଙ୍କ ସହିତ ମିଳିତ ହୋଇ ସେଠାରେ ଆନନ୍ଦରେ କାଳଯାପନ କରିବାକୁ ଲାଗିଲେ ।[୧]

ହୃଦୟ ଦୀର୍ଘାକୃତି ଓ ଦେଖିବାକୁ ସୁଶ୍ରୀ ସୁପୁରୁଷ ଥିଲେ । ତାଙ୍କର ଶରୀର ଯେପରି ସୁଦୃଢ଼ ଓ ବଳିଷ୍ଠ ଥିଲା, ମନ ମଧ୍ୟ ସେପରି ଉଦ୍ୟମଶୀଳ ଓ ଭୟଶୂନ୍ୟ ଥିଲା । କଠୋର ପରିଶ୍ରମ ଓ ଅବସ୍ଥା ଅନୁସାରେ ବ୍ୟବସ୍ଥା କରିବାକୁ ଏବଂ ପ୍ରତିକୂଳ ଅବସ୍ଥାରେ ପଡ଼ିଲେ ମଧ୍ୟ ସ୍ଥିର ରହି ଅଦ୍ଭୁତ ଉପାୟମାନ ଉଦ୍‌ଭାବନପୂର୍ବକ ତାହା ଅତିକ୍ରମ କରିବାରେ ହୃଦୟ ପାରଦର୍ଶୀ ଥିଲେ । ନିଜର ସାନମାମୁଁ ତଥା ଠାକୁରଙ୍କୁ ସେ ସତରେ ଖୁବ୍ ଭଲ ପାଉଥିଲେ ଓ ତାଙ୍କୁ ସୁଖୀ କରିବାକୁ ଅଶେଷ ଶାରୀରିକ କଷ୍ଟସ୍ୱୀକାର କରିବାକୁ କୁଣ୍ଠିତ ହେଉ ନ ଥିଲେ ।

ସର୍ବଦା ଅନଳସ ହୃଦୟରାମଙ୍କ ଅନ୍ତରରେ ଭାବୁକତାର ସାମାନ୍ୟତମ ଲେଶମାତ୍ର ନ ଥିଲା । ସେଥିପାଇଁ ସଂସାରୀ ମଣିଷଙ୍କର ଯେପରି ହୋଇଥାଏ, ହୃଦୟଙ୍କର ଚିତ୍ତ ନିଜର ସ୍ୱାର୍ଥଚେଷ୍ଟାରୁ କେବେହେଲେ ସମ୍ପୂର୍ଣ୍ଣ ବିମୁକ୍ତ ହୋଇପାରୁ ନ ଥିଲା । ଠାକୁରଙ୍କ ସହିତ ହୃଦୟଙ୍କର ଏହି ସମୟଠାରୁ ସମ୍ବନ୍ଧ ବିଷୟରେ ଆମେ ଯେତେ ଆଲୋଚନା କରିବୁ ସେତେ ହିଁ ଦେଖିବାକୁ ପାଇବୁ, ତାଙ୍କର ଜୀବନରେ ଭବିଷ୍ୟତରେ ଯେତେ ଟିକିଏ ଭାବୁକତା ଓ ନିଃସ୍ୱାର୍ଥ ଚେଷ୍ଟାର ପରିଚୟ ମିଳିଥାଏ,

---

୧.ପାଠକମାନଙ୍କର ସୁବିଧା ଦୃଷ୍ଟିରୁ ଠାକୁରଙ୍କର ବଂଶତାଲିକା ନିମ୍ନରେ ପ୍ରଦାନ କରାଗଲା ।:



ତାହା ଭାବମୟ ଠାକୁରଙ୍କ ନିରନ୍ତର ସଙ୍ଗଗୁଣରେ ଏବଂ ବେଳେବେଳେ ତାଙ୍କର କାର୍ଯ୍ୟର ଅନୁକରଣ ଯୋଗୁଁ ହୋଇଥିଲା । ଠାକୁରଙ୍କ ପରି ଆହାର, ବିହାର ପ୍ରଭୃତି ସର୍ବପ୍ରକାର ଶରୀରଚେଷ୍ଟାରେ ଉଦାସୀନ, ସର୍ବଦା ଚିନ୍ତାଶୀଳ, ସ୍ୱାର୍ଥଗନ୍ଧଶୂନ୍ୟ ଭାବୁକଜୀବନର ଗଠନକାଳରେ ହୃଦୟଙ୍କ ପରି ଶ୍ରଦ୍ଧାସମ୍ପନ୍ନ, ସାହସୀ, ଉଦ୍ୟମଶୀଳ କର୍ମୀର ସହାୟତା ଅତ୍ୟନ୍ତ ପ୍ରୟୋଜନ ଥିଲା । ଶ୍ରୀଶ୍ରୀଜଗଦମ୍ବା କ'ଣ ସେଥିପାଇଁ ଠାକୁରଙ୍କର ସାଧନକାଳରେ ହୃଦୟଙ୍କ ପରି ବ୍ୟକ୍ତିଙ୍କୁ ତାଙ୍କ ସହିତ ଘନିଷ୍ଠ ସମ୍ବନ୍ଧରେ ସମ୍ବନ୍ଧ କରାଇଥିଲେ? ଠାକୁର ଏକଥା ଆମକୁ ବାରମ୍ବାର କହିଛନ୍ତି, ହୃଦୟ ନ ଥିଲେ ସାଧନସମୟରେ ତାଙ୍କର ଶରୀରରକ୍ଷା ଅସମ୍ଭବ ହୋଇଥାଆନ୍ତା । ଶ୍ରୀଶ୍ରୀରାମକୃଷ୍ଣଙ୍କ-ଜୀବନ ସହିତ ହୃଦୟଙ୍କର ନାମ ସେଥିପାଇଁ ନିତ୍ୟସଂଯୁକ୍ତ—ଏବଂ ସେଥିପାଇଁ ସେ ଆନ୍ତରିକ ଭକ୍ତିଶ୍ରଦ୍ଧାର ଅଧିକାରୀ ହୋଇ ଚିରଦିନ ପାଇଁ ଆମମାନଙ୍କର ପ୍ରଣମ୍ୟ ହୋଇ ରହିଛନ୍ତି ।

**ହୃଦୟଙ୍କର ଆଗମନରେ ଠାକୁରଙ୍କ ଅବସ୍ଥା :**

ହୃଦୟଙ୍କର ଦକ୍ଷିଣେଶ୍ୱରକୁ ଆସିବା ସମୟରେ ଠାକୁରଙ୍କର ବୟସ କୋଡ଼ିଏ ବର୍ଷରୁ ଅଳ୍ପକେଇ ମାସ ଅଧିକ । ସହଚରରୂପେ ତାଙ୍କୁ ପାଇ ଠାକୁରଙ୍କର ଦକ୍ଷିଣେଶ୍ୱରରେ ବାସ ଯେ ଅନେକ ସହଜ ହୋଇଥିଲା, ଏକଥା ଆମେ ବେଶ ଅନୁମାନ କରିପାରୁ । ସେ ଏବେଠାରୁ ଭ୍ରମଣ, ଶୟନ, ଉପବେଶନ ପ୍ରଭୃତି ସମସ୍ତ କାର୍ଯ୍ୟ ତାଙ୍କ ସହିତ ଏକତ୍ର ଅନୁଷ୍ଠାନ କରୁଥିଲେ । ଚିରକାଳ ବାଳକଭାବାପନ୍ନ ଶ୍ରୀରାମକୃଷ୍ଣଦେବଙ୍କର, ସାଧାରଣ ନୟନରେ କାରଣହୀନ ଚେଷ୍ଟାସକଳର ପ୍ରତିବାଦ ନ କରି ସର୍ବଦା ସର୍ବାନ୍ତଃକରଣରେ ଅନୁମୋଦନ ଓ ସହାନୁଭୂତି କରୁଥିବାରୁ, ହୃଦୟ ଏବେଠାରୁ ତାଙ୍କର ବିଶେଷ ପ୍ରିୟ ହୋଇ ଉଠିଥିଲେ ।

**ଠାକୁରଙ୍କ ପ୍ରତି ହୃଦୟଙ୍କର ଭଲ ପାଇବା :**

ହୃଦୟ ଆମମାନଙ୍କୁ ନିଜ ମୁଖରେ କହିଛନ୍ତି—"ଏହି ସମୟଠାରୁ ମୁଁ ଠାକୁରଙ୍କ ପ୍ରତି ଏକ ଅନିର୍ବଚନୀୟ ଆକର୍ଷଣ ଅନୁଭବ କରୁଥିଲି ଏବଂ ଛାୟା ସଦୃଶ ସର୍ବଦା ତାଙ୍କ ସହିତ ରହୁଥିଲି । ତାଙ୍କୁ ଛାଡ଼ି କ୍ଷଣକ ପାଇଁ କେଉଁଠି ରହିବାକୁ ହେଲେ କଷ୍ଟ ବୋଧ ହେଉଥିଲା । ଶୟନ, ଭ୍ରମଣ, ଉପବେଶନାଦି ସକଳ କାର୍ଯ୍ୟ ଏକତ୍ର କରୁଥିଲୁ । କେବଳ ମଧ୍ୟାହ୍ନ ଭୋଜନ ସମୟରେ କିଛି ସମୟ ପାଇଁ ଆମକୁ ପୃଥକ ହେବାକୁ ପଡୁଥିଲା । କାରଣ, ଠାକୁର ସିଧା ନେଇ ପଞ୍ଚବଟୀରେ ସ୍ୱହସ୍ତରେ ରନ୍ଧନକରି ଭୋଜନ କରୁଥିଲେ ଏବଂ ମୁଁ ମନ୍ଦିରରେ ପ୍ରସାଦ ପାଉଥିଲି । ତାଙ୍କର ରାନ୍ଧନାଦିର ସମସ୍ତ ଯୋଗାଡ଼ ମୁଁ କରି ଦେଉଥିଲି ଏବଂ ଅନେକ ସମୟରେ ପ୍ରସାଦ ମଧ୍ୟ ପାଉଥିଲି । ଏପରି ରନ୍ଧନ କରି ଖାଇ ମଧ୍ୟ ସେ ମନରେ ଶାନ୍ତି ପାଉ ନ ଥିଲେ—ଆହାର ସମ୍ବନ୍ଧରେ ତାଙ୍କର ନିଷ୍ଠା ସେତେବେଳେ ଏତେ ପ୍ରବଳ

ଥିଲା । ମଧ୍ୟାହ୍ନରେ ଏପରି ରନ୍ଧନ କଲେ ମଧ୍ୟ ରାତ୍ରିରେ କିନ୍ତୁ ସେ ଆମମାନଙ୍କ ପରି ଶ୍ରୀଶ୍ରୀଜଗଦମ୍ବାଙ୍କୁ ନିବେଦିତ ପ୍ରସାଦୀ ପୁରୀ ଖାଉଥିଲେ । କେତେଥର ଦେଖିଛି ଏପରି ପୁରୀ ଖାଉ ଖାଉ ତାଙ୍କର ନୟନରେ ଅଶ୍ରୁ ଆସିଛି ଏବଂ ଆକ୍ଷେପ କରି ଶ୍ରୀଶ୍ରୀଜଗନ୍ମାତାଙ୍କୁ କହିଛନ୍ତି, 'ମା, ମୋତେ କୈବର୍ତ୍ତର ଅନ୍ନ ଖୁଆଇଲୁ' !''

ଠାକୁର ବେଳେ ବେଳେ ଆମକୁ ସେହି ସମୟର କଥା ଏପ୍ରକାରରେ କହିଛନ୍ତି ''କୈବର୍ତ୍ତର ଅନ୍ନ ଖାଇବାକୁ ହେବ ଭାବି ମନରେ ସେତେବେଳେ ଅତ୍ୟନ୍ତ କଷ୍ଟ ହେଉଥିଲା । ଗରିବ କାଙ୍ଗାଳୀମାନେ ମଧ୍ୟ ସେତେବେଳେ ରାସମଣିଙ୍କର ମନ୍ଦିରକୁ ଏଥିପାଇଁ ଖାଇବାକୁ ଆସୁ ନ ଥିଲେ । ଖାଇବା ଲୋକ ଜୁଟୁ ନ ଥିବାରୁ କେତେଥର ପ୍ରସାଦୀ ଅନ୍ନ ଗୋରୁମାନଙ୍କୁ ଖୁଆଇ ଅବଶିଷ୍ଟ ଗଙ୍ଗାରେ ନିକ୍ଷେପ କରିବାକୁ ପଡ଼ିଛି ।'' ତେବେ ରନ୍ଧନ କରି ତାଙ୍କୁ ବେଶୀଦିନ ଯେ ଖାଇବାକୁ ପଡ଼ି ନ ଥିଲା, ଏକଥା ଆମେ ଠାକୁର ଓ ହୃଦୟ ଉଭୟଙ୍କ ମୁହଁରୁ ହିଁ ଶୁଣିଛୁ । ଆମମାନଙ୍କର ଧାରଣା, କାଳୀମନ୍ଦିରରେ ପୂଜକ ପଦରେ ଠାକୁର ଯେତେଦିନ ବ୍ରତୀ ନ ହୋଇଥିଲେ, ସେତେଦିନ ହିଁ ସେପରି କରିଥିଲେ ଏବଂ ଠାକୁରଙ୍କର ସେହି ପଦରେ ବ୍ରତୀ ହେବା ଦେବାଳୟ ପ୍ରତିଷ୍ଠାର ଦୁଇ ତିନି ମାସ ପରେ ହିଁ ହୋଇଥିଲା ।

### ଠାକୁରଙ୍କର ଆଚରଣ ସମ୍ବନ୍ଧରେ ଯାହା ହୃଦୟ ବୁଝିପାରୁ ନ ଥିଲେ :

ଠାକୁର ଯେ ତାଙ୍କୁ ଅତ୍ୟନ୍ତ ଭଲ ପାଉଥିଲେ, ହୃଦୟ ଏକଥା ବୁଝିଥିଲେ । ତାଙ୍କ ସମ୍ବନ୍ଧରେ ଗୋଟିଏ କଥା କେବଳ ସେ କୌଣସି ପ୍ରକାରରେ ବୁଝିପାରୁ ନ ଥିଲେ । ତାହା ହେଲା, ବଡ଼ ମାମୁଁ ରାମକୁମାରଙ୍କୁ ସେ ଯେତେବେଳେ କୌଣସି ବିଷୟରେ ସାହାଯ୍ୟ କରିବାକୁ ଯାଆନ୍ତି, ମଧ୍ୟାହ୍ନ ଭୋଜନ ପରେ ଯେତେବେଳେ ଟିକେ ଶୟନ କରନ୍ତି, ଅଥବା ସନ୍ଧ୍ୟାରେ ଯେତେବେଳେ ମନ୍ଦିରରେ ଆରତ୍ରିକ ଦର୍ଶନ କରନ୍ତି, ସେ ସମୟରେ ଠାକୁର କିଛିକ୍ଷଣ ପାଇଁ କେଉଁଆଡ଼େ ଅନ୍ତର୍ହିତ ହେଉଥିଲେ । ଅନେକ ଖୋଜି ମଧ୍ୟ ସେ ତାଙ୍କର ସନ୍ଧାନ ପାଉ ନ ଥିଲେ । ପରେ ଘଣ୍ଟାଏ ଦୁଇଘଣ୍ଟା ଅତିବାହିତ ହେଲେ ସେ ଯେତେବେଳେ ଫେରୁଥିଲେ, ପଚାରିଲେ ସେତେବେଳେ କହୁଥିଲେ, 'ଏହିଠାରେ ତ ଥିଲି ।' କେବେକେବେ ସନ୍ଧାନ କରିବାକୁ ଯାଇ ସେ ତାଙ୍କୁ ପଞ୍ଚବଟୀ ଆଡୁ ଫେରୁଥିବାର ଦେଖି ଭାବନ୍ତି, ବୋଧହୁଏ ସେ ଶୌଚାଦି ପାଇଁ ସେଆଡ଼େ ଯାଇଥିଲେ, ତେଣୁ ଆଉ କିଛି ପଚାରୁ ନ ଥିଲେ ।

### ଠାକୁରଙ୍କ ଦ୍ୱାରା ନିର୍ମିତ ଶିବମୂର୍ତ୍ତି ଦେଖି ମଥୁରବାବୁଙ୍କର ପ୍ରଶଂସା :

ହୃଦୟ କହୁଥିଲେ, 'ଏହି ସମୟରେ ଦିନେ ମୂର୍ତ୍ତି ଗଢ଼ି ଶିବପୂଜା କରିବା ପାଇଁ ଠାକୁରଙ୍କର ଇଚ୍ଛା ହେଲା ।' ଆମେ ଏହାପୂର୍ବରୁ କହିଛୁ, ବାଲ୍ୟକାଳରେ

କାମାରପୁକୁରରେ ସେ ବେଳେ ବେଳେ ଏପରି କରୁଥିଲେ । ଇଚ୍ଛା ହେବା ମାତ୍ରେ ସେ ଗଙ୍ଗାଗର୍ଭରୁ ମୃତ୍ତିକା ଆଣି ବୃଷଭ, ଡମ୍ବରୁ ଓ ତ୍ରିଶୂଳ ସହିତ ଗୋଟିଏ ଶିବମୂର୍ତ୍ତି ସ୍ୱହସ୍ତରେ ଗଠନ କରି ଏହାର ପୂଜା କରିବାକୁ ଲାଗିଲେ । ମଥୁରବାବୁ ସେହି ସମୟରେ ବୁଲୁ ବୁଲୁ ସେହି ସ୍ଥାନରେ ଆସି ଉପସ୍ଥିତ ହେଲେ ଏବଂ ତନ୍ମୟ ହୋଇ ଠାକୁର କ'ଣ ପୂଜା କରୁଛନ୍ତି ଜାଣିବାକୁ ଉତ୍ସୁକ ହୋଇ ନିକଟକୁ ଆସି ମୂର୍ତ୍ତି ଟି ଦେଖିବାକୁ ପାଇଲେ । ବଡ଼ ନ ହେଲେ ମଧ୍ୟ ମୂର୍ତ୍ତିଟି ସୁନ୍ଦର ହୋଇଥିଲା । ମଥୁର ଏହା ଦେଖି ବିସ୍ମିତ ହେଲେ, ବଜାରରେ ସେହିପରି ଦେବଭାବାଙ୍କିତ ମୂର୍ତ୍ତି ଯେ ମିଳେ ନାହିଁ, ଏହା ସେ ଦେଖି ବୁଝିପାରିଲେ । କୌତୁହଳପରବଶ ହୋଇ ସେ ହୃଦୟଙ୍କୁ ପଚାରିଲେ, "ଏହି ମୂର୍ତ୍ତି କେଉଁଠୁ ପାଇଲେ, ଏବଂ ଏହାକୁ କିଏ ଗଢ଼ିଛି ?" ଠାକୁର ଦେବଦେବୀଙ୍କ ମୂର୍ତ୍ତି ଗଢ଼ିପାରନ୍ତି ଏବଂ ଭଗ୍ନ ମୂର୍ତ୍ତି ସୁନ୍ଦର ଭାବରେ ଯୋଡ଼ି ଦେଇ ପାରନ୍ତି—ହୃଦୟଙ୍କଠାରୁ ଏହି ଉତ୍ତର ଶୁଣି ସେ ବିସ୍ମିତ ହେଲେ ଏବଂ ପୂଜା ପରେ ଉକ୍ତ ମୂର୍ତ୍ତିଟିକୁ ତାଙ୍କୁ ଦେବାକୁ ଅନୁରୋଧ କଲେ । ହୃଦୟ ମଧ୍ୟ ଉକ୍ତ କଥାରେ ସ୍ୱୀକୃତ ହୋଇ ପୂଜାପରେ ଠାକୁରଙ୍କୁ କହି ଉକ୍ତ ମୂର୍ତ୍ତିଟି ତାଙ୍କୁ ଦେଇ ଆସିଲେ । ମୂର୍ତ୍ତିଟି ପାଇ ମଥୁରବାବୁ ଏହାକୁ ତନ୍ନ ତନ୍ନ କରି ନିରୀକ୍ଷଣ କରିବାକୁ ଲାଗିଲେ ଏବଂ ନିଜେ ମୁଗ୍ଧ ହୋଇ ରାଣୀଙ୍କୁ ତାହା ଦେଖାଇବାକୁ ପଠାଇଲେ । ରାଣୀ ମଧ୍ୟ ଏହା ଦେଖି ନିର୍ମାତାଙ୍କର ବିଶେଷ ପ୍ରଶଂସା କଲେ ଏବଂ ଠାକୁର ଏହା ଗଢ଼ିଛନ୍ତି ଜାଣି ମଥୁରଙ୍କ ପରି ବିସ୍ମୟ ପ୍ରକାଶ କଲେ ।[୧] ଠାକୁରଙ୍କୁ ଦେବାଳୟର କାର୍ଯ୍ୟରେ ନିଯୁକ୍ତ କରିବାକୁ ମଥୁରଙ୍କର ଏହାପୂର୍ବରୁ ଇଚ୍ଛା ହୋଇଥିଲା, ଏବେ ତାଙ୍କର ଏହି ନୂତନ ଗୁଣର ପରିଚୟ ପାଇ ଉକ୍ତ ଇଚ୍ଛା ଅଧିକତର ବଳବତୀ ହେଲା । ମଥୁରଙ୍କର ଏପରି ଅଭିପ୍ରାୟ କଥା ଠାକୁର ଏହାପୂର୍ବରୁ ଭାଇଙ୍କଠାରୁ ଶୁଣିଥିଲେ; କିନ୍ତୁ ଭଗବାନଙ୍କ ବ୍ୟତୀତ ଅନ୍ୟ କାହାର ଚାକିରୀ କରିବି ନାହିଁ—ଏପରି ଏକ ଭାବ ବାଲ୍ୟକାଳରୁ ତାଙ୍କ ମନରେ ଦୃଢ଼ନିବଦ୍ଧ ଥିବାରୁ ସେ ଏକଥାରେ କର୍ଣ୍ଣପାତ କରି ନ ଥିଲେ ।

### ଚାକିରୀ କରିବା ସମ୍ବନ୍ଧରେ ଠାକୁର :

ଚାକିରୀ କରିବା ସମ୍ବନ୍ଧରେ ଠାକୁରଙ୍କୁ ସେହିପ୍ରକାର ଭାବ ପ୍ରକାଶ କରିବା ଆମେ ଅନେକ ସମୟରେ ଶୁଣିଅଛୁ । ବିଶେଷ ଅଭାବରେ ନ ପଡ଼ି କେହି ସ୍ୱେଚ୍ଛାରେ ଚାକିରୀ କଲେ ଠାକୁର ଉକ୍ତ ବ୍ୟକ୍ତି ସମ୍ବନ୍ଧରେ ଉଚ୍ଚ ଧାରଣା କରୁ ନ ଥିଲେ । ତାଙ୍କର ବାଳକ ଭକ୍ତମାନଙ୍କ ମଧ୍ୟରେ ଜଣେ[୨] ଚାକିରୀ ଗ୍ରହଣ କରିଛି

---

୧. କେହି କେହି କହନ୍ତି, ଏହି ଘଟଣା ଠାକୁରଙ୍କର ପୂଜାକାଳରେ ହୋଇଥିଲା ଏବଂ ମଥୁର ଏହା ରାଣୀ ରାସମଣୀଙ୍କୁ ଦେଖାଇ କହିଥିଲେ— "ଯେପରି ଉପଯୁକ୍ତ ପୂଜକ ପାଇଛେ, ସେଥିରେ ଦେବୀ ଶୀଘ୍ର ହିଁ ଜାଗ୍ରତା ହୋଇଉଠିବେ ।"

୨. ସ୍ୱାମୀ ନିରଞ୍ଜନାନନ୍ଦ ।

ବୋଲି ଜାଣି ଆମେ ତାଙ୍କୁ ବିଶେଷ ବ୍ୟଥିତ ହୋଇ କହିବାକୁ ଶୁଣିଛୁ, ''ସେ ମରିଛି ଶୁଣିଥିଲେ ମୋର ଯେତେ କଷ୍ଟ ହୋଇଥାନ୍ତା, ସେ ଚାକିରୀ କରୁଛି ଶୁଣି ତତୋଧିକ କଷ୍ଟ ହୋଇଅଛି ।'' କିଛିଦିନ ପରେ ତାଙ୍କଠାରୁ ସେ ଯେତେବେଳେ ଶୁଣିଲେ, ସେ ତାଙ୍କର ଅସହାୟା ବୃଦ୍ଧାମାତାଙ୍କ ଭରଣ ପୋଷଣ ନିମିତ୍ତ ଚାକିରୀ ଗ୍ରହଣ କରିଛି, ସେତେବେଳେ ସେ ସସ୍ନେହରେ ତାହାର ଗାତ୍ର ଓ ମୁଣ୍ଡ ଆଉଁସି କହିଲେ, ''ସେଥିରେ ଦୋଷ ନାହିଁ, ମା'ଙ୍କ ପାଇଁ ଚାକିରୀ କରିଥିବାରୁ ତୋତେ ଦୋଷ ସ୍ପର୍ଶ କରିବ ନାହିଁ; କିନ୍ତୁ ମା'ଙ୍କ ନିମିତ୍ତ ନ ହୋଇ ଯଦି ତୁ ସ୍ୱେଚ୍ଛାରେ ଚାକିରୀ କରିଥାଆନ୍ତୁ, ତେବେ ତୋତେ ଆଉ ସ୍ପର୍ଶ କରିପାରି ନ ଥାନ୍ତି ! ସେଥିପାଇଁ ମୁଁ କହେ, ମୋର ନିରଞ୍ଜନଠାରେ ଟିକେ ହେଲେ ଅଞ୍ଜନ (କଳାଦାଗ) ନାହିଁ, ତା'ର ଏପରି ହୀନବୁଦ୍ଧି କାହିଁକି ହେବ ?''

ନିତ୍ୟନିରଞ୍ଜନଙ୍କୁ ଲକ୍ଷ୍ୟ କରି ଠାକୁରଙ୍କର ପୂର୍ବୋକ୍ତ କଥା ଶୁଣି ଅନ୍ୟାନ୍ୟ ଆଗନ୍ତୁକ ବ୍ୟକ୍ତିମାନେ ସମସ୍ତେ ବିସ୍ମିତ ହେଲେ । ଜଣେ କହିଲେ, ''ମହାଶୟ, ଆପଣ ଚାକିରୀର ନିନ୍ଦା କରୁଛନ୍ତି, କିନ୍ତୁ ଚାକିରୀ ନ କଲେ ସଂସାରପୋଷଣ କିପରି କରିବୁ ?'' ଏହାର ଉତ୍ତରରେ ଠାକୁର କହିଲେ, ''ଯିଏ କରିବ, କରୁ; ମୁଁ ତ ସମସ୍ତଙ୍କୁ ଚାକିରୀ କରିବାକୁ ବାରଣ କରୁ ନାହିଁ, (ନିରଞ୍ଜନଙ୍କୁ ଓ ତାଙ୍କର ଅନ୍ୟାନ୍ୟ ବାଳକ ଭକ୍ତଗଣଙ୍କୁ ଦେଖାଇ) ଏମାନଙ୍କୁ ସେହି କଥା କହୁଛି; ଏମାନଙ୍କର କଥା ଅଲଗା ।'' ଠାକୁର ତାଙ୍କର ବାଳକ ଭକ୍ତମାନଙ୍କ ଜୀବନ ଅନ୍ୟ ଭାବରେ ଗଢୁଥିଲେ ଏବଂ ପୂର୍ଣ୍ଣ ଆଧ୍ୟାତ୍ମିକ ଭାବ ସହିତ ଚାକିରୀ କରିବାର କଦାପି ସାମଞ୍ଜସ୍ୟ ହୁଏ ନାହିଁ, ଏପରି ଧାରଣା ଥିଲା ବୋଲି ହିଁ ଯେ ସେ ଏହିପରି କଥା କହିଥିଲେ, ଏକଥା କହିବା ବାହୁଲ୍ୟ ।

## ଚାକିରୀ କରିବାକୁ କହିବେ ବୋଲି ମଥୁରଙ୍କ ନିକଟକୁ ଯିବାକୁ ଠାକୁରଙ୍କର ସଙ୍କୋଚ :

ଅଗ୍ରଜଙ୍କ ପାଖରୁ ମଥୁରବାବୁଙ୍କର ଏପରି ଅଭିପ୍ରାୟ ଜାଣିପାରି ଠାକୁର ତା ପରଠାରୁ ତାଙ୍କ ସମ୍ମୁଖକୁ ନ ଯାଇ ଯେତେ ସମ୍ଭବ ତାଙ୍କ ଚକ୍ଷୁର ଅନ୍ତରାଳରେ ରହିବାକୁ ଚେଷ୍ଟା କରୁଥିଲେ । କାରଣ, କାୟମନୋବାକ୍ୟରେ ସତ୍ୟ ଓ ଧର୍ମ ପାଳନ କରିବାକୁ ସେ ଯେପରି କେବେ ହେଲେ କାହାର ଅପେକ୍ଷା ରଖି ନ ଥାନ୍ତି, ସେପରି ବିଶେଷ କାରଣ ନ ଥିଲେ କାହାକୁ ଉପେକ୍ଷା କରି ବୃଥା କଷ୍ଟ ଦେବାକୁ ମଧ୍ୟ ଚିରକାଳ କୁଣ୍ଠିତ ହେଉଥିଲେ । ପୁଣି, ମନରେ କୌଣସି ପ୍ରକାରର ପ୍ରତ୍ୟାଶା ନ ରଖି ଗୁଣୀ ବ୍ୟକ୍ତଙ୍କର ଗୁଣର ଆଦର କରିବା, ଏବଂ ମାନୀ ବ୍ୟକ୍ତିମାନଙ୍କୁ ସରଳ ତଥା ସ୍ୱାଭାବିକ ଭାବରେ ସମ୍ମାନ ଦେବା ଠାକୁରଙ୍କର ପ୍ରକୃତିଗତ ଥିଲା । ଅତଏବ ଦେବାଳୟରେ ପୂଜକ ପଦ ଗ୍ରହଣ କରିବେ କି ନାହିଁ, ଏହି ପ୍ରଶ୍ନର କୌଣସି

ଗୋଟିଏ ମୀମାଂସାରେ ସ୍ୱୟଂ ଉପନୀତ ହେବା ପୂର୍ବରୁ ମଥୁରବାବୁ ତାଙ୍କୁ ଏହା ସ୍ୱୀକାର କରିବାକୁ ଅନୁରୋଧ କଲେ, ସେ ବାଧ୍ୟ ହୋଇ ଏକଥା ପ୍ରତ୍ୟାଖ୍ୟାନ କରିବେ, ଯଦ୍ଦ୍ୱାରା ମଥୁରବାବୁଙ୍କ ମନରେ କଷ୍ଟ ହେବ—ଏହି ଆଶଙ୍କା ଯେ ଠାକୁରଙ୍କର ସେହିପରି ଚେଷ୍ଟାର ମୂଳରେ ବିଦ୍ୟମାନ ଥିଲା, ତାହା ଆମେ ବେଶ୍ ବୁଝିପାରୁ । ବିଶେଷତଃ, ସେ ଏବେ ଜଣେ ନଗଣ୍ୟ ଯୁବକ ମାତ୍ର ଏବଂ ରାଣୀ ରାସମଣିଙ୍କର ଦକ୍ଷିଣହସ୍ତସ୍ୱରୂପ ମଥୁର ମହାମାନନୀୟ ବ୍ୟକ୍ତି; ଏହି ଅବସ୍ଥାରେ ମଥୁରଙ୍କର ଅନୁରୋଧ ପ୍ରତ୍ୟାଖ୍ୟାନ କରିବା ତାଙ୍କ ପକ୍ଷରେ ବାଳସୁଲଭ ଚପଳତା ବୋଲି ପରିଗଣିତ ହେବ । କିନ୍ତୁ ଯେତେଦିନ ଗତ ହେଉଥିଲା ଦକ୍ଷିଣେଶ୍ୱରର କାଳୀମନ୍ଦିରରେ ଅବସ୍ଥାନ କରିବାଟା ଠାକୁରଙ୍କ ପକ୍ଷରେ ସେତେ ପ୍ରୀତିକର ବୋଧ ହେଉଥିଲା, ଅନ୍ତର୍ଦୃଷ୍ଟିସମ୍ପନ୍ନ ଠାକୁରଙ୍କ ନିକଟରେ ନିଜର ମନୋଗତ ଏହି ଭାବଟି ମଧ୍ୟ ଲୁକ୍କାୟିତ ନ ଥିଲା । କୌଣସି ପ୍ରକାରର ଗୁରୁତର କାର୍ଯ୍ୟର ଦାୟିତ୍ୱ ଗ୍ରହଣ ନ କରି ଦକ୍ଷିଣେଶ୍ୱରରେ ରହିବାକୁ ତାଙ୍କର ଏବେ ଆଉ ପୂର୍ବପରି ଆପତ୍ତି ନ ଥିଲା ଏବଂ ଜନ୍ମଭୂମି କାମାରପୁକୁର ଫେରିବାକୁ ତାଙ୍କ ମନ ଯେ ଏବେ ଆଉ ପୂର୍ବପରି ଚଞ୍ଚଳ ନ ଥିଲା, ଏବିଷୟ ଆମେ ଏହାପରର ଘଟଣାବଳୀରୁ ବେଶ୍ ବୁଝିପାରିବା ।

### ଠାକୁରଙ୍କର ପୂଜକର ପଦଗ୍ରହଣ :

ଠାକୁର ଯାହା ଆଶଙ୍କା କରୁଥିଲେ, ଦିନେ ତାହା ହିଁ ହେଲା । ମଥୁରବାବୁ କାଳୀମନ୍ଦିରକୁ ଦର୍ଶନ କରିବାକୁ ଆସି କିଛି ଦୂରରେ ଠାକୁରଙ୍କୁ ଦେଖି ତାଙ୍କୁ ଡାକି ପଠାଇଲେ । ଠାକୁର ସେତେବେଳେ ହୃଦୟଙ୍କ ସହିତ ବୁଲୁ ବୁଲୁ ମଥୁରବାବୁଙ୍କୁ ଦେଖି ସେଠାରୁ ଅନ୍ୟତ୍ର ଚାଲି ଯାଉଥିଲେ, ଏହି ସମୟରେ ମଥୁରବାବୁଙ୍କର ଭୃତ୍ୟ ଆସି ସମ୍ବାଦ ଦେଲା, ''ବାବୁ ଆପଣଙ୍କୁ ଡାକୁଛନ୍ତି ।'' ଠାକୁର ମଥୁରଙ୍କ ନିକଟକୁ ଯିବାକୁ ଇତସ୍ତତଃ କରୁଛନ୍ତି ଦେଖି ହୃଦୟ ତାଙ୍କୁ ଏହାର କାରଣ ପଚାରିବାରୁ ସେ କହିଲେ, ''ଗଲେ ହିଁ ସେ ମୋତେ ଏଠାରେ ରହିବାକୁ କହିବେ ଏବଂ ଚାକିରୀ (ପୂଜକର ପଦ ଗ୍ରହଣ) କରିବାକୁ କହିବେ ।'' ହୃଦୟ କହିଲେ, ''ସେଥିରେ ଦୋଷ କ'ଣ ? ଏପରି ସ୍ଥାନରେ, ମହତ ଲୋକଙ୍କ ଆଶ୍ରୟରେ କାର୍ଯ୍ୟରେ ନିଯୁକ୍ତ ହେବା ତ ଭଲ କଥା, ତୁମେ ଏପରି ଇତସ୍ତତଃ କରୁଛ କାହିଁକି ?''

ଠାକୁର କହିଲେ ମୋର ଚାକିରୀରେ ଚିରକାଳ ଆବଦ୍ଧ ହୋଇ ରହିବାର ଇଚ୍ଛା ନାହିଁ । ବିଶେଷତଃ ଏଠାରେ ପୂଜା କରିବାକୁ ସ୍ୱୀକାର କଲେ ଦେବୀଙ୍କ ଅଙ୍ଗରେ ଯେଉଁ ସମସ୍ତ ଅଳଙ୍କାର ଆଦି ଅଛି ତା'ର ଦାୟିତ୍ୱ ନେବାକୁ ପଡ଼ିବ, ଯାହା କି ବଡ଼ ହଙ୍ଗାମା କଥା; ମୋ ଦ୍ୱାରା ଏହା ସମ୍ଭବ ହେବ ନାହିଁ । ତେବେ ତୁ ଯଦି ଏକାର୍ଯ୍ୟର ଭାର ନେଇ ଏଠାରେ ରହିବୁ, ତା'ହେଲେ ମୋର ପୂଜା କରିବାକୁ ଆପତ୍ତି ନାହିଁ ।

ହୃଦୟ ଏଠାକୁ ଚାକିରୀର ଅନ୍ୱେଷଣରେ ହିଁ ଆସିଥିଲେ । ସୁତରାଂ ଠାକୁରଙ୍କର ଏହି କଥାରେ ଆନନ୍ଦରେ ରାଜି ହେଲେ । ଠାକୁର ମଥୁରବାବୁଙ୍କ ନିକଟକୁ ଯାଇ ତାଙ୍କ ଦ୍ୱାରା ଦେବାଳୟରେ କାର୍ଯ୍ୟ କରିବାକୁ ଅନୁରୁଦ୍ଧ ହେବାରୁ ପୂର୍ବୋକ୍ତ ଅଭିପ୍ରାୟ ପ୍ରକାଶ କଲେ । ଶ୍ରୀଯୁକ୍ତ ମଥୁର ତାଙ୍କ କଥାରେ ସ୍ୱୀକୃତ ହୋଇ ଏହିଦିନଠାରୁ ତାଙ୍କୁ କାଳୀମନ୍ଦିରରେ ବେଶକାରୀ ପଦରେ ଏବଂ ହୃଦୟକୁ ରାମକୁମାର ଓ ତାଙ୍କୁ ସାହାଯ୍ୟ କରିବାକୁ ନିଯୁକ୍ତ କଲେ । ମଥୁରବାବୁଙ୍କ ଅନୁରୋଧରେ ଭାଇଙ୍କୁ କାର୍ଯ୍ୟରେ ନିଯୁକ୍ତ ହେବା ଦେଖି ରାମକୁମାର ନିଶ୍ଚିନ୍ତ ହେଲେ ।

### ଗୋବିନ୍ଦଜୀଙ୍କର ବିଗ୍ରହ ଭଗ୍ନ ହେବା :

ଦେବାଳୟପ୍ରତିଷ୍ଠାର ତିନିମାସ ମଧ୍ୟରେ ହିଁ ଉପରୋକ୍ତ ଘଟଣାସବୁ ହୋଇଗଲା । ୧୮୫୫ ଖ୍ରୀଷ୍ଟାବ୍ଦର ଭାଦ୍ରବ ମାସ ଉପସ୍ଥିତ ହେଲା । ପୂର୍ବଦିନ ମନ୍ଦିରରେ ଜନ୍ମାଷ୍ଟମୀ ଉତ୍ସବ ଯଥାଯଥ ସୁସମ୍ପନ୍ନ ହୋଇଯାଇଛି । ଆଜି ନନ୍ଦୋତ୍ସବ । ମଧ୍ୟାହ୍ନରେ ରାଧାଗୋବିନ୍ଦଜୀଙ୍କ ବିଶେଷ ପୂଜା ଓ ଭୋଗରାଗାଦି ସରିବା ପରେ ପୂଜକ କ୍ଷେତ୍ରନାଥ ଚଟ୍ଟୋପାଧ୍ୟାୟ ରାଧାରାଣୀଙ୍କୁ କକ୍ଷାନ୍ତରରେ ଶୟନ କରାଇ ଗୋବିନ୍ଦଜୀଙ୍କୁ ଶୟନ ଦେବାକୁ ନେଲାବେଳେ ହଠାତ୍ ପଡ଼ିଯିବାରୁ ବିଗ୍ରହଟିର ଗୋଟିଏ ଗୋଡ଼ ଭାଙ୍ଗିଗଲା । ନାନା ପଣ୍ଡିତଙ୍କର ମତାମତ ନେବା ପରେ ଠାକୁରଙ୍କ ପରାମର୍ଶରେ ବିଗ୍ରହର ଭଗ୍ନାଂଶ ଯୋଡ଼ାଯାଇ ପୂଜା ଚାଲିବାକୁ ଲାଗିଲା ।[୧] ଭଗବତ୍‌ପ୍ରେମରେ ଠାକୁରଙ୍କୁ ଏହାପୂର୍ବରୁ ବେଳେ ବେଳେ ଭାବାବିଷ୍ଟ ହେବା ଦେଖି ଏବଂ କୌଣସି କୌଣସି ବିଷୟରେ ଆଦେଶପ୍ରାପ୍ତ ହେଉଥିବା ଶୁଣି ମଥୁରବାବୁ ଭଗ୍ନବିଗ୍ରହ ପରିବର୍ତ୍ତନ-ସମ୍ବନ୍ଧରେ ତାଙ୍କର ପରାମର୍ଶ ନେବାରେ ଇଚ୍ଛୁକ ହୋଇଥିଲେ । ହୃଦୟ କହୁଥିଲେ, ଭଗ୍ନବିଗ୍ରହ ସମ୍ବନ୍ଧରେ ମଥୁରବାବୁଙ୍କର ପ୍ରଶ୍ନର ଉତ୍ତର ଦେବା ପୂର୍ବରୁ ଠାକୁର ଭାବାବିଷ୍ଟ ହୋଇଥିଲେ, ଏବଂ ଭାବ ଭଙ୍ଗ ହେବାପରେ କହିଥିଲେ, ଦେବ-ବିଗ୍ରହ ପରିବର୍ତ୍ତନ କରିବାର ପ୍ରୟୋଜନ ନାହିଁ । ଠାକୁର ଭଗ୍ନବିଗ୍ରହ ସୁନ୍ଦରଭାବରେ ଯୋଡ଼ି ପାରନ୍ତି, ଏକଥା ମଥୁରବାବୁ ଜାଣିଥିଲେ । ତେଣୁ ତାଙ୍କର ଅନୁରୋଧରେ ଠାକୁରଙ୍କୁ ହିଁ ଏବେ ସେହି ବିଗ୍ରହଙ୍କ ଗୋଡ଼ ଯୋଡ଼ି ଦେବାକୁ ହୋଇଥିଲା । ଠାକୁର ତାହା ଏତେ ସୁନ୍ଦରଭାବରେ ଯୋଡ଼ିଥିଲେ ଯେ, ବିଶେଷ ନିରୀକ୍ଷଣ କରି ଦେଖିଲେ ମଧ୍ୟ ଉକ୍ତ ମୂର୍ତ୍ତି ଯେ କେବେ ଭଗ୍ନ ହୋଇଥିଲା, ତାହା ଏବେ ମଧ୍ୟ ଜାଣି ହୁଏ ନାହିଁ ।

ରାଧାଗୋବିନ୍ଦଜୀଙ୍କର ବିଗ୍ରହ ସେହିପରି ଭଗ୍ନ ହେବାରୁ ଅଙ୍ଗହୀନ ବିଗ୍ରହରେ ପୂଜା ସିଦ୍ଧ ହୁଏ ନାହିଁ ବୋଲି ଅନେକେ ଅନେକ କଥା ସେତେବେଳେ କୁହାକୁହି ହେଉଥିଲେ ।ରାଣୀ ରାସମଣି ଓ ମଥୁରବାବୁ କିନ୍ତୁ ଠାକୁରଙ୍କର ଯୁକ୍ତିଯୁକ୍ତ

୧.ଏହି ଘଟଣାର ସବିସ୍ତାର ବିବରଣ ପାଇଁ 'ଗୁରୁଭାବ, ପୂର୍ବାର୍ଦ୍ଧ'—ଷଷ୍ଠ ଅଧ୍ୟାୟ ଦେଖ ।

ପରାମର୍ଶରେ ଦୃଢ଼ବିଶ୍ୱାସ ସ୍ଥାପନପୂର୍ବକ ଏସମସ୍ତ କଥାରେ କର୍ଣ୍ଣପାତ କରୁ ନ ଥିଲେ । ସେ ଯାହାହେଉ, ପୂଜକ କ୍ଷେତ୍ରନାଥ ଅସାବଧାନତାର ଅପରାଧରେ କାର୍ଯ୍ୟରୁ ବହିଷ୍କୃତ ହେଲେ ଏବଂ ରାଧାଗୋବିନ୍ଦଜୀଙ୍କ ପୂଜାର ଦାୟିତ୍ୱ ତା ପରଠାରୁ ଠାକୁରଙ୍କ ଉପରେ ନ୍ୟସ୍ତ ହେଲା । ହୃଦୟ ମଧ୍ୟ ଏବେଠାରୁ ପୂଜା ସମୟରେ ଶ୍ରୀଶ୍ରୀ କାଳୀମାତାଙ୍କ ବେଶ କରି ରାମକୁମାରଙ୍କୁ ସାହାଯ୍ୟ କରିବାକୁ ଲାଗିଲେ ।

## ଭଗ୍ନବିଗ୍ରହର ପୂଜାସମ୍ବନ୍ଧରେ ଠାକୁର ଜୟନାରାୟଣବାବୁଙ୍କୁ ଯାହା କହିଥିଲେ :

ବିଗ୍ରହଭଙ୍ଗପ୍ରସଙ୍ଗରେ ହୃଦୟ ଥରେ ଆମମାନଙ୍କ ନିକଟରେ ଆଉ ଗୋଟିଏ କଥା କହିଥିଲେ । କଲିକତାର କେତେ ମାଇଲ ଉତ୍ତରରେ, ବରାହନଗରର କୁଟିଘାଟ ନିକଟରେ ନଡ଼ାଲର ପ୍ରସିଦ୍ଧ ଜମିଦାର ରତନ ରାୟଙ୍କ ଘାଟ ବିଦ୍ୟମାନ । ଏହି ଘାଟ ନିକଟରେ ଗୋଟିଏ ମନ୍ଦିର ଅଛି । ସେଥିରେ ଦଶମହାବିଦ୍ୟା ମୂର୍ତ୍ତି ପ୍ରତିଷ୍ଠିତା ଅଛନ୍ତି । ପୂର୍ବେ ଉକ୍ତ ମନ୍ଦିରରେ ପୂଜାଦିର ସୁବନ୍ଦୋବସ୍ତ ଥିଲେ ମଧ୍ୟ ଠାକୁରଙ୍କର ସାଧନକାଳରେ ତାହା ହୀନଦଶାପନ୍ନ ହୋଇଥିଲା । ମଥୁରବାବୁ ଯେତେବେଳେ ଠାକୁରଙ୍କୁ ବିଶେଷ ଶ୍ରଦ୍ଧା ଓ ଭକ୍ତି କରୁଥିଲେ, ସେତେବେଳେ ସେ ଥରେ ତାଙ୍କ ସହିତ ଉକ୍ତ ଦେବାଳୟ ଦର୍ଶନ କରିବାକୁ ଆସିଥିଲେ ଏବଂ ଏଠାର ଅଭାବ ଦେଖି ଠାକୁର ତାଙ୍କୁ କହି ଭୋଗ ପାଇଁ ଦୁଇ ମହଣ (ପ୍ରାୟ ଦୁଇଶହ କିଲୋ) ଚାଉଳ ଓ ଦୁଇଟଙ୍କା ମାସିକ ବନ୍ଦୋବସ୍ତ କରି ଦେଇଥିଲେ । ସେହି ଦିନରୁ ସେ ଏଠାକୁ ବେଳେବେଳେ ଦଶମହାବିଦ୍ୟା ଦର୍ଶନ କରିବାକୁ ଆସୁଥିଲେ । ଦିନେ ଏହିପରି ଦର୍ଶନ କରି ଫେରିବା ବେଳେ ଠାକୁର ଏଠାର ସୁପ୍ରସିଦ୍ଧ ଜମିଦାର ଜୟନାରାୟଣ ବନ୍ଦୋପାଧ୍ୟାୟଙ୍କୁ ଅନେକଗୁଡ଼ିଏ ଲୋକଙ୍କ ସହିତ ସ୍ୱପ୍ରତିଷ୍ଠିତ ଘାଟରେ ଦଣ୍ଡାୟମାନ ହୋଇଥିବାର ଦେଖିଲେ । ପୂର୍ବରୁ ପରିଚିତ ଥିବାରୁ ଠାକୁରେ ତାଙ୍କ ସହିତ ଦେଖା କରିବାକୁ ଗଲେ । ଜୟନାରାୟଣ ବାବୁ ତାଙ୍କୁ ନମସ୍କାର ଓ ସାଦର ସମ୍ଭାଷଣ କରି ସେଠାରେ ଥିବା ସଙ୍ଗୀମାନଙ୍କୁ ତାଙ୍କ ସହିତ ପରିଚିତ କରାଇଦେଲେ । ପରେ କଥାପ୍ରସଙ୍ଗରେ ରାଣୀ ରାସମଣିଙ୍କର କାଳୀମନ୍ଦିରର କଥା ଉଠାଇ ଠାକୁରଙ୍କୁ ପଚାରିଲେ— ''ମହାଶୟ, ସେଠାର ଗୋବିନ୍ଦଜୀ କ'ଣ ଭଙ୍ଗା ?'' ଠାକୁର କହିଲେ, ''ତୁମର କି ବୁଦ୍ଧି ହେ ? ଯିଏ ଅଖଣ୍ଡମଣ୍ଡଳାକାର ସେ କେବେ କ'ଣ ଭାଙ୍ଗି ଯାଆନ୍ତି ?'' ଜୟନାରାୟଣବାବୁଙ୍କର ପ୍ରଶ୍ନରେ ନିରର୍ଥକ କଥା ଉଠିବାର ସମ୍ଭାବନା ଦେଖି ଠାକୁର ଏହି ପ୍ରସଙ୍ଗ ଉପେକ୍ଷା କଲେ ଏବଂ ପ୍ରସଙ୍ଗାନ୍ତରର ଉତ୍‌ଥାପନ କରି ସମସ୍ତ ବସ୍ତୁର ଅସାର ଅଂଶ ତ୍ୟାଗକରି ସାର ଅଂଶ ଗ୍ରହଣ କରିବା ପାଇଁ ତାଙ୍କୁ କହିଲେ ! ସୁବୁଦ୍ଧିସମ୍ପନ୍ନ ଜୟନାରାୟଣବାବୁ

ମଧ୍ୟ ଠାକୁରଙ୍କର ଇଙ୍ଗିତ ବୁଝି ତା'ପରଠାରୁ ଏପରି ପ୍ରଶ୍ନ କରିବାରେ ନିରସ୍ତ ରହିଥିଲେ ।

### ଠାକୁରଙ୍କର ସଙ୍ଗୀତଶକ୍ତି :

ହୃଦୟଙ୍କ ନିକଟରୁ ଶୁଣିଛୁ, ଠାକୁରଙ୍କର ପୂଜା ଦେଖିବାର ବିଷୟ ଥିଲା; ଯିଏ ଦେଖୁଥିଲା ସେ ମୁଗ୍ଧ ହୋଇଯାଉଥିଲା, ତା'ସହିତ ଠାକୁରଙ୍କର ସେହି ପ୍ରାଣର ଉଚ୍ଛ୍ୱାସରେ ମଧୁର କଣ୍ଠରେ ଗୀତ !—ସେହି ଗୀତ ଯିଏ ଥରେ ଶୁଣିଛି, ସେ କେବେ ଭୁଲି ପାରୁ ନ ଥିଲା । ସେଗୀତରେ ଓସ୍ତାଦୀ ରାଗ-ରଙ୍ଗ କିଛି ନ ଥିଲା; ଥିଲା କେବଳ ଗୀତୋକ୍ତ ବିଷୟର ଭାବଟିକୁ ନିଜ ମଧ୍ୟରେ ସମ୍ପୂର୍ଣ୍ଣ ଆରୋପ କରି ମର୍ମସ୍ପର୍ଶୀ ମଧୁର ସ୍ୱରରେ ଯଥାଯଥ ପ୍ରକାଶ ଏବଂ ତାଳ ଓ ଲୟର ବିଶୁଦ୍ଧତା । ଭାବ ହିଁ ଯେ ସଙ୍ଗୀତର ପ୍ରାଣ, ଏକଥା ଯିଏ ତାଙ୍କର ଗୀତ ଶୁଣିଛି ସେ ହିଁ ବୁଝିଅଛି । ପୁଣି ତାଳ ଓ ଲୟ ବିଶୁଦ୍ଧ ନ ହେଲେ ଏହି ଭାବ ଯେ ଆତ୍ମ-ପ୍ରକାଶରେ ବାଧା ପାଇଥାଏ—ଏକଥା ଠାକୁରଙ୍କର ମୁଖନିଃସୃତ ସଙ୍ଗୀତ ଶୁଣି ଏବଂ ଅନ୍ୟମାନଙ୍କର ସଙ୍ଗୀତ ସହିତ ତାହାର ତୁଳନା କରି ବେଶ୍ ବୁଝାଯାଉଥିଲା । ରାଣୀ ରାସମଣି ଯେତେବେଳେ ଦକ୍ଷିଣେଶ୍ୱର ଆସୁଥିଲେ, ସେତେବେଳେ ଠାକୁରଙ୍କୁ ଡକାଇ ତାଙ୍କର ଗୀତ ଶୁଣୁଥିଲେ । ନିମ୍ନଲିଖିତ ଗୀତଟି ତାଙ୍କର ବିଶେଷ ପ୍ରିୟ ଥିଲା—

କୋନ୍ ହିସାବେ ହରହୃଦେ ଦାଡ଼ିୟେଛ ମା' ପଦ ଦିୟେ ।<br>
ସାଧ କରେ ଜିବ୍ ବଡ଼ାୟେଛ, ଯେନ କତ ନ୍ୟାକା ମେୟେ ।।<br>
ଜେନେଛି ଜେନେଛି ତାରା,<br>
ତାରା କି ତୋର ଏମନି ଧାରା ।<br>
ତୋର ମା' କି ତୋର ବାପେର ବୁକେ ଦାଁଡ଼ିୟେଛିଲ ଅମନି କରେ ।।

[ଗୀତର ଭାବାର୍ଥ ହେଉଛି :- ହେ ମା', କେଉଁ ହିସାବରେ ତୁମେ ଶିବଙ୍କ ଛାତିରେ ପାଦ ରଖି ଛିଡ଼ା ହୋଇଛ ? ତୁମେ ଇଚ୍ଛା କରି ନିଜ ଜିଭ ବାହାର କରି ରଖିଛ, ସତେ ଯେମିତି କେତେ ସାଦାସିଧା ଝିଅ । ହେ ତାରା ! ମୋତେ ଏହା ଜଣାଅଛି ଯେ ତୁମର ବ୍ୟବହାର ହିଁ ଏମିତି । ତୁମର ମା' କଣ ତୁମ ବାପାଙ୍କ ଛାତିରେ ପାଦ ଦେଇ ଏପରି ଠିଆ ହୋଇଥିଲା ?]

ଠାକୁରଙ୍କର ଗୀତ ଏତେ ମଧୁର ଲାଗିବାର ଆଉ ଗୋଟିଏ କାରଣ ଥିଲା । ଗାଇବା ସମୟରେ ସେ ନିଜେ ଗୀତୋକ୍ତ ଭାବରେ ଏତେ ମୁଗ୍ଧ ହୋଇ ଯାଉଥିଲେ ଯେ, ଅନ୍ୟ କାହାର ପ୍ରୀତି ପାଇଁ ଗୀତ ବୋଲୁଛନ୍ତି, ଏକଥା ସମ୍ପୂର୍ଣ୍ଣ ଭୁଲି ଯାଉଥିଲେ । ଗୀତୋକ୍ତ ଭାବରେ ମୁଗ୍ଧ ହୋଇ ଏପରି ଆତ୍ମବିସ୍ମୃତ ହେବା ଆମେ ଜୀବନରେ ଆଉ କାହାକୁ ଦେଖି ନାହୁଁ । ଭାବୁକ ଗାୟକମାନେ ମଧ୍ୟ ଶ୍ରୋତାଙ୍କ ନିକଟରୁ ପ୍ରଶଂସାର ପ୍ରତ୍ୟାଶା କିଛି ନା କିଛି ରଖିଥାଆନ୍ତି । ଠାକୁରଙ୍କୁ

କେବଳ ଦେଖିଛି, ତାଙ୍କର ଗୀତ ଶୁଣି କେହି ପ୍ରଶଂସା କଲେ ସେ ଯଥାର୍ଥରେ ଭାବୁଥିଲେ, ଉକ୍ତ ବ୍ୟକ୍ତି ଗୀତୋକ୍ତ ଭାବର ପ୍ରଶଂସା କରୁଛନ୍ତି ଏବଂ ଏଥିରୁ ବିନ୍ଦୁମାତ୍ର ତାଙ୍କର ପ୍ରାପ୍ୟ ନୁହେଁ ।

## ପ୍ରଥମ ପୂଜା ସମୟରେ ଠାକୁରଙ୍କର ଦର୍ଶନ :

ହୃଦୟ କହୁଥିଲେ, ଏହି ସମୟରେ ଗୀତ ଗାଉ ଗାଉ ତାଙ୍କର ଦୁଇ ଚକ୍ଷୁର ଅଶ୍ରୁ ବୋହି ବକ୍ଷ ଭାସିଯାଉଥିଲା; ଏବଂ ଯେତେବେଳେ ପୂଜା କରୁଥିଲେ, ସେତେବେଳେ ଏପରି ତନ୍ମୟଭାବରେ ତାହା କରୁଥିଲେ ଯେ, ପୂଜାସ୍ଥଳକୁ କେହି ଆସିଲେ ବା ନିକଟରେ ଠିଆ ହୋଇ କଥା କହିଲେ ମଧ୍ୟ ସେ ତାହା ଆଦୌ ଶୁଣିପାରୁ ନ ଥିଲେ । ଠାକୁର କହୁଥିଲେ, ଅଙ୍ଗନ୍ୟାସ, କରନ୍ୟାସ ପ୍ରଭୃତି ପୂଜାଙ୍ଗସକଳ ସମ୍ପନ୍ନ କରିବା ସମୟରେ ସେହି ମନ୍ତ୍ରବର୍ଣ୍ଣ ନିଜ ଦେହରେ ଉଜ୍ଜ୍ୱଳବର୍ଣ୍ଣରେ ସନ୍ନିବେଶିତ ରହିଅଛି ବୋଲି ସେ ବାସ୍ତବିକ ଦେଖିପାରୁଥିଲେ । ସେ ବାସ୍ତବିକ ହିଁ ଦେଖୁଥିଲେ ଯେ ସର୍ପାକୃତି କୁଣ୍ଡଳିନୀଶକ୍ତି ସୁଷୁମ୍ନାମାର୍ଗ ଦେଇ ସହସ୍ରାରକୁ ଉଠୁଅଛି ଏବଂ ଶରୀରର ଯେଉଁ ଯେଉଁ ଅଂଶକୁ ଉକ୍ତ ଶକ୍ତି ତ୍ୟାଗ କରୁଛି, ସେହି ସେହି ଅଂଶଗୁଡ଼ିକ ସମ୍ପୂର୍ଣ୍ଣ ନିଷ୍ପନ୍ଦ, ବୋଧହୀନ ଏବଂ ମୃତବତ୍ ହୋଇଯାଉଛି ! ପୁଣି ପୂଜା-ପଦ୍ଧତିର ବିଧାନ ଅନୁସାରେ ଯେତେବେଳେ ''ରଂ ଇତି ଜଳଧାରୟା ବହ୍ନିପ୍ରାକାରଂ ବିଚିନ୍ତ୍ୟ''—ଅର୍ଥାତ୍ ରଂ ଏହି ମନ୍ତ୍ରବର୍ଣ୍ଣ ଉଚ୍ଚାରଣପୂର୍ବକ ପୂଜକ ନିଜର ଚତୁର୍ଦ୍ଦିଗରେ ଜଳ ସିଞ୍ଚନ କରି ଭାବିବେ ଯେପରି ଅଗ୍ନିର ପ୍ରାଚୀର ଦ୍ୱାରା ପୂଜାସ୍ଥାନ ବେଷ୍ଟିତ ରହିଅଛି ଏବଂ ସେଥିପାଇଁ କୌଣସି ପ୍ରକାର ବାଧାବିଘ୍ନ ସେଠାରେ ପ୍ରବେଶ କରିପାରୁ ନାହିଁ—ପ୍ରଭୃତି କଥାର ଉଚ୍ଚାରଣ କରୁଥିଲେ, ସେତେବେଳେ ଦେଖିବାକୁ ପାଉଥିଲେ ତାଙ୍କର ଚତୁର୍ଦ୍ଦିଗରେ ଶତ ଜିହ୍ୱା ବିସ୍ତାର କରି ଅନୁଲ୍ଲଙ୍ଘନୀୟ ଅଗ୍ନିର ପ୍ରାଚୀର ସତକୁ ସତ ବିଦ୍ୟମାନ ଥାଇ ପୂଜାସ୍ଥାନକୁ ସର୍ବପ୍ରକାର ବିଘ୍ନରୁ ସର୍ବତୋଭାବରେ ରକ୍ଷା କରୁଅଛି । ହୃଦୟ କହୁଥିଲେ, ପୂଜା ସମୟରେ ଠାକୁରଙ୍କର ତେଜଃପୁଞ୍ଜିତ ଶରୀର ଏବଂ ତନ୍ମନସ୍କ ଭାବ ଦେଖି ଅନ୍ୟ ବ୍ରାହ୍ମଣମାନେ କୁହାକୁହି ହେଉଥିଲେ—ସାକ୍ଷାତ୍ ବ୍ରହ୍ମଣ୍ୟଦେବ ଯେପରି ନରଶରୀର ପରିଗ୍ରହ କରି ପୂଜା କରିବାକୁ ବସିଛନ୍ତି !

## ଠାକୁରଙ୍କୁ କାର୍ଯ୍ୟଦକ୍ଷ କରିବା ପାଇଁ ରାମକୁମାରଙ୍କର ଶିକ୍ଷାଦାନ :

ଦେବୀଭକ୍ତ ରାମକୁମାର ଦକ୍ଷିଣେଶ୍ୱର ଆସି ରହିବା ପରେ ଆତ୍ମୀୟଗଣଙ୍କର ଭରଣପୋଷଣ ସମ୍ବନ୍ଧରେ ଅନେକ ନିଶ୍ଚିନ୍ତ ହେଲେ ମଧ୍ୟ ଅନ୍ୟ ଏକ ବିଷୟରେ ସେ ବେଳେ ବେଳେ ବିଶେଷ ଚିନ୍ତିତ ହେଉଥିଲେ । କାରଣ, ସେ ଦେଖୁଥିଲେ, ଏଠାକୁ ଆସିବା ପରଠୁ ତାଙ୍କର କନିଷ୍ଠଙ୍କର ନିର୍ଜ୍ଜନପ୍ରିୟତା ଓ ସଂସାର ସମ୍ବନ୍ଧରେ କିପରି ଏକ ଉଦାସୀନ ଭାବ ପରିଲକ୍ଷିତ ହେଉଥିଲା ! ସଂସାରର ଯେଉଁଥିରେ ଉନ୍ନତି

ହେବ—ଏପରି କୌଣସି କାର୍ଯ୍ୟରେ ହିଁ ଯେପରି ତାଙ୍କର କୌଣସି ଚିନ୍ତା ଥିବା ଦେଖିପାରୁ ନ ଥିଲେ । ଦେଖୁଥିଲେ, ବାଳକ ସକାଳ ଓ ସନ୍ଧ୍ୟାରେ ଯେତେବେଳେ ସେତେବେଳେ ଏକାକୀ ମନ୍ଦିରଠାରୁ ଦୂର ଗଙ୍ଗାକୂଳରେ ପଦଚାରଣ କରୁଛନ୍ତି, ପଞ୍ଚବଟୀମୂଳରେ ସ୍ଥିର ହୋଇ ବସି ରହୁଛନ୍ତି, କିମ୍ବା ପଞ୍ଚବଟୀର ଚତୁର୍ଦ୍ଦିଗରେ ସେତେବେଳେ ଥିବା ଜଙ୍ଗଲପୂର୍ଣ୍ଣ ସ୍ଥାନରେ ପ୍ରବେଶ କରି ଅନେକ ସମୟ ପରେ ସେଠାରୁ ବାହାରୁଛନ୍ତି । ରାମକୁମାର ପ୍ରଥମେ ଭାବୁଥିଲେ, ବାଳକ ବୋଧହୁଏ କାମାରପୁକୁର ମା'ଙ୍କ ପାଖକୁ ଯିବା ପାଇଁ ବ୍ୟସ୍ତ ହେଉଛନ୍ତି ଏବଂ ସେହି ବିଷୟ ସଦାସର୍ବଦା ଚିନ୍ତା କରୁଛନ୍ତି । କିନ୍ତୁ ଦିନ ପରେ ଦିନ ଗଡ଼ି ଚାଲିଲେ ମଧ୍ୟ ସେ ଯେତେବେଳେ ଘରକୁ ଫେରିବା କଥା ମୁହଁ ଖୋଲି କହିଲେ ନାହିଁ ଏବଂ ପଚାରିଲେ ମଧ୍ୟ ମୁହଁ ଖୋଲି କିଛି କହୁ ନ ଥିଲେ, ତେଣୁ ସେ ତାଙ୍କୁ ଘରକୁ ପଠାଇବା କଥା ଛାଡ଼ିଦେଲେ । ଭାବିଲେ, ତାଙ୍କର ବୟସ ହୋଇଛି, ଶରୀର ମଧ୍ୟ ଦିନକୁ ଦିନ ଅପଟୁ ହୋଇ ଆସୁଛି, କେବେ ପରମାୟୁ ସରିବ କିଏ କହିପାରିବ ? —ଏ ଅବସ୍ଥାରେ ସମୟ ନଷ୍ଟ ନ କରି, ତାଙ୍କ ଅବର୍ତ୍ତମାନରେ ବାଳକ ଯେପରି ନିଜ ଗୋଡ଼ରେ ଠିଆ ହୋଇ କିଛି ଅର୍ଥ ଉପାର୍ଜ୍ଜନ କରି ସଂସାରନିର୍ବାହ କରିପାରିବେ ସେପରି ଭାବରେ ତାଙ୍କୁ ମଣିଷ କରି ତୋଳିବା ଏକାନ୍ତ କର୍ତ୍ତବ୍ୟ । ତେଣୁ ମଥୁରବାବୁ ଯେତେବେଳେ ବାଳକକୁ ଦେବାଳୟରେ ନିଯୁକ୍ତ କରିବା ଅଭିପ୍ରାୟରେ ରାମକୁମାରଙ୍କୁ ପଚାରିଲେ, ସେତେବେଳେ ସେ ବିଶେଷ ଆନନ୍ଦିତ ହୋଇଥିଲେ ଏବଂ ଏହାର କିଛିଦିନ ପରେ ଯେତେବେଳେ ବାଳକ ମଥୁରବାବୁଙ୍କର ଅନୁରୋଧରେ ପ୍ରଥମେ ବେଶକାରୀ ଓ ପରେ ପୂଜକର ପଦରେ ରହିଲେ ଏବଂ ଦକ୍ଷତାର ସହିତ ଉକ୍ତ କାର୍ଯ୍ୟଗୁଡ଼ିକ ସମ୍ପନ୍ନ କରିବାକୁ ଲାଗିଲେ, ସେତେବେଳେ ସେ ଅନେକଟା ନିଶ୍ଚିନ୍ତ ହୋଇ ତାଙ୍କୁ ଚଣ୍ଡୀପାଠ, ଶ୍ରୀଶ୍ରୀକାଳୀମାତା ଏବଂ ଅନ୍ୟାନ୍ୟ ଦେବଦେବୀଙ୍କର ପୂଜା ପ୍ରଭୃତି ଶିଖାଇବାକୁ ଲାଗିଲେ । ଠାକୁର ଏପରି ଭାବରେ ଦଶକର୍ମାନ୍ୱିତ ବ୍ରାହ୍ମଣମାନଙ୍କର ଯାହା ଶିକ୍ଷା କରିବା କର୍ତ୍ତବ୍ୟ ତାହା ଖୁବ୍ ଶୀଘ୍ର ଶିଖିଲେ; ଏବଂ ଶାକ୍ତୀ ଦୀକ୍ଷା ନ ନେଇ ଦେବୀପୂଜା ପ୍ରଶସ୍ତ ନୁହେଁ ଜାଣି ଶକ୍ତିମନ୍ତ୍ରରେ ଦୀକ୍ଷିତ ହେବାର ସଂକଳ୍ପ କଲେ ।

**କେନାରାମ ଭଟ୍ଟାଚାର୍ଯ୍ୟଙ୍କଠାରୁ ଠାକୁରଙ୍କର ଶକ୍ତିଦୀକ୍ଷାଗ୍ରହଣ :**

ଶ୍ରୀଯୁକ୍ତ କେନାରାମ ଭଟ୍ଟାଚାର୍ଯ୍ୟ ନାମକ ଜନୈକ ପ୍ରବୀଣ ଶକ୍ତିସାଧକ ସେତେବେଳେ କଲିକତାର ବୈଠକଖାନା ବଜାରରେ ବାସ କରୁଥିଲେ । ଦକ୍ଷିଣେଶ୍ୱରର ରାଣୀ ରାସମଣିଙ୍କର ଦେବାଳୟକୁ ତାଙ୍କର ଯିବା ଆସିବା ଥିଲା ଏବଂ ମଥୁରବାବୁ-ପ୍ରମୁଖ ସମସ୍ତଙ୍କ ସହିତ ତାଙ୍କର ପରିଚୟ ଥିଲା ବୋଲି ବୋଧ ହୁଏ । ହୃଦୟଙ୍କ ପାଖରୁ ଶୁଣିଛୁ, ଯେଉଁମାନେ ତାଙ୍କୁ ଚିହ୍ନିଥିଲେ, ଅନୁରାଗୀ

ସାଧକ ବୋଲି ତାଙ୍କୁ ସେମାନେ ବିଶେଷ ସମ୍ମାନ କରୁଥିଲେ । ଠାକୁରଙ୍କର ଅଗ୍ରଜ ରାମକୁମାର ଭଟ୍ଟାଚାର୍ଯ୍ୟଙ୍କ ସହିତ ସେ ପୂର୍ବରୁ ପରିଚିତ ଥିଲେ । ଠାକୁର ଏହାଙ୍କ ନିକଟରୁ ଦୀକ୍ଷାଗ୍ରହଣ କରିବାକୁ ମନସ୍ଥ କଲେ । ଆମେ ଶୁଣିଛୁ, ଦୀକ୍ଷାଗ୍ରହଣ କରିବା ମାତ୍ରେ ଠାକୁର ଭାବାବେଶରେ ସମାଧିସ୍ଥ ହୋଇଥିଲେ, ଏବଂ ଶ୍ରୀଯୁକ୍ତ କେନାରାମ ତାଙ୍କର ଅସାଧାରଣ ଭକ୍ତି ଦେଖି ଅତ୍ୟନ୍ତ ମୁଗ୍ଧ ହୋଇ ତାଙ୍କୁ ଇଷ୍ଟଲାଭ ବିଷୟରେ ପ୍ରାଣ ଖୋଲି ଆଶୀର୍ବାଦ କରିଥିଲେ ।

## ରାମକୁମାରଙ୍କର ମୃତ୍ୟୁ :

ରାମକୁମାରଙ୍କର ଶରୀର ଏହି ସମୟରେ ଦୁର୍ବଳତାରୁ ହେଉ, ବା ଠାକୁରଙ୍କୁ ଏହି କାର୍ଯ୍ୟରେ ଅଭ୍ୟସ୍ତ କରାଇବା ପାଇଁ ହେଉ, ସେ ଏହି ସମୟରେ ସ୍ୱଳ୍ପାୟାସସାଧ ରାଧାଗୋବିନ୍ଦଜୀଙ୍କର ସେବା ନିଜେ କରି, ଶ୍ରୀଶ୍ରୀ କାଳୀମାତାଙ୍କ ପୂଜା କାର୍ଯ୍ୟରେ ଠାକୁରଙ୍କୁ ନିଯୁକ୍ତ କରିବାକୁ ଲାଗିଲେ । ମଥୁରବାବୁ ଏହି କଥା ଶୁଣି ଏବଂ ଠାକୁର ଏବେ ଦେବୀପୂଜାରେ ପାରଦର୍ଶୀ ହୋଇଅଛନ୍ତି ଜାଣି, ରାମକୁମାରଙ୍କୁ ଏବେଠାରୁ ବରାବର ବିଷ୍ଣୁଘରେ ପୂଜା କରିବାକୁ ଅନୁରୋଧ କଲେ । ଅତଏବ ଏବେଠାରୁ କାଳୀଘରେ ଠାକୁର ପୂଜକରୂପେ ନିଯୁକ୍ତ ରହିଲେ । ବୃଦ୍ଧ ରାମକୁମାରଙ୍କ ଶରୀର ଦୁର୍ବଳ ହେବାରୁ କାଳୀଘରର ଗୁରୁତର କାର୍ଯ୍ୟଭାର ବହନ କରିବା ତାଙ୍କ ଦ୍ୱାରା ସମ୍ଭବ ନୁହେଁ—ଏକଥା ବୁଝି ମଥୁରବାବୁ ଏହିପରି ପୂଜକପଦ ପରିବର୍ତ୍ତନ କରିଥିଲେ । ରାମକୁମାର ମଧ ଏପରି ବ୍ୟବସ୍ଥାରେ ବିଶେଷ ଆନନ୍ଦିତ ହୋଇ କନିଷ୍ଠଭ୍ରାତାଙ୍କୁ ଦେବୀଙ୍କ ପୂଜା ଓ ସେବାକାର୍ଯ୍ୟ ଯଥାଯଥରୂପେ ସମ୍ପନ୍ନ କରିବାକୁ ଶିକ୍ଷାଦାନପୂର୍ବକ ନିଶ୍ଚିନ୍ତ ହୋଇଥିଲେ । ଏହାର କିଛିକାଳ ପରେ ସେ ମଥୁରବାବୁଙ୍କୁ କହି ହୃଦୟଙ୍କୁ ଶ୍ରୀରାଧାଗୋବିନ୍ଦଜୀଙ୍କ ପୂଜାରେ ନିଯୁକ୍ତ କଲେ ଏବଂ ଅବସର ନେଇ କିଛିଦିନ ପାଇଁ ଘରକୁ ଯିବାର ବନ୍ଦୋବସ୍ତ କରିବାକୁ ଲାଗିଲେ । କିନ୍ତୁ ରାମକୁମାର ଆଉ ଗୃହକୁ ଫେରିପାରି ନ ଥିଲେ । ଗୃହକୁ ଫେରିବାର ବନ୍ଦୋବସ୍ତ କରୁ କରୁ କଲିକତାର ଉତ୍ତରରେ ଅବସ୍ଥିତ ଶ୍ୟାମନଗର-ମୂଳାଯୋଡ଼ ନାମକ ସ୍ଥାନକୁ ତାଙ୍କୁ କିଛିଦିନ ପାଇଁ କୌଣସି କାର୍ଯ୍ୟ ନିମିତ୍ତ ଯିବାକୁ ପଡ଼ିଥିଲା ଏବଂ ସେଠାରେ ସେ ହଠାତ୍ ମୃତ୍ୟୁ ମୁଖରେ ପତିତ ହେଲେ । ରାମକୁମାର ଭଟ୍ଟାଚାର୍ଯ୍ୟ ରାଣୀ ରାସମଣିଙ୍କର ଦେବାଳୟ ପ୍ରତିଷ୍ଠା ହେବା ପରେ ଗୋଟିଏ ବର୍ଷ ମାତ୍ର ଜୀବିତ ରହି ଶ୍ରୀଶ୍ରୀ ଜଗନ୍ମାତାଙ୍କର ପୂଜା କରିଥିଲେ । ସମ୍ଭବତଃ ୧୮୫୬ ଖ୍ରୀଷ୍ଟାବ୍ଦର ପ୍ରାରମ୍ଭରେ ତାଙ୍କର ଦେହତ୍ୟାଗ ହୋଇଥିଲା ।

# ଷଷ୍ଠ ଅଧ୍ୟାୟ

## ବ୍ୟାକୁଳତା ଓ ପ୍ରଥମ ଦର୍ଶନ

### ଠାକୁରଙ୍କର ଏହି ସମୟର ଆଚରଣ :

ଅତି ଅଳ୍ପ ବୟସରେ ଠାକୁରଙ୍କ ପିତାଙ୍କର ମୃତ୍ୟୁ ହୋଇଥିଲା । ତେଣୁ ବାଲ୍ୟକାଳରୁ ସେ ଜନନୀ ଚନ୍ଦ୍ରମଣି ଓ ଅଗ୍ରଜ ରାମକୁମାରଙ୍କର ସ୍ନେହରେ ପାଳିତ ହୋଇଥିଲେ । ଠାକୁରଙ୍କ ଅପେକ୍ଷା ରାମକୁମାର ୩୧ବର୍ଷ ବଡ଼ ଥିଲେ । ସୁତରାଂ ଠାକୁରଙ୍କ ପିତୃଭକ୍ତିର କିଛି ସେ ଅଂଶ ପାଇଥିଲେ ବୋଲି ବୋଧ ହୁଏ । ପିତୃତୁଲ୍ୟ ଅଗ୍ରଜଙ୍କର ହଠାତ୍ ମୃତ୍ୟୁ ହେବାରୁ ଠାକୁରେ ଅତ୍ୟନ୍ତ ବ୍ୟଥିତ ହୋଇଥିଲେ । କିଏ କହିବ, ସେହି ଘଟଣା ତାଙ୍କର ଶୁଦ୍ଧ ମନରେ ସଂସାରର ଅନିତ୍ୟତା–ସମ୍ବନ୍ଧୀୟ ଧାରଣା ଦୃଢ଼ କରି ସେଥିରେ ବୈରାଗ୍ୟାନଳକୁ କେତେଦୂର ପ୍ରବୁଦ୍ଧ କରିଥିଲା ? ଦେଖାଯାଏ, ଏହି ସମୟରୁ ସେ ଶ୍ରୀଶ୍ରୀଜଗନ୍ମାତାଙ୍କ ପୂଜାରେ ସମଧିକ ମନୋନିବେଶପୂର୍ବକ ମାନବ ତାଙ୍କର ଦର୍ଶନ ଲାଭରେ ବାସ୍ତବିକ କୃତାର୍ଥ ହୁଏ କି ନାହିଁ, ତଦ୍‌ବିଷୟ ଜାଣିବା ପାଇଁ ବ୍ୟାକୁଳ ହୋଇ ଉଠିଥିଲେ । ପୂଜା ଶେଷରେ ମନ୍ଦିର ମଧ୍ୟରେ ଶ୍ରୀଶ୍ରୀଜଗନ୍ମାତାଙ୍କ ନିକଟରେ ବସି ଏହି ସମୟରେ ସେ ତନ୍ମନସ୍କ ଭାବରେ ଦିନ ଯାପନ କରୁଥିଲେ ଏବଂ ରାମପ୍ରସାଦ ଓ କମଳାକାନ୍ତ–ପ୍ରମୁଖ ଭକ୍ତଗଣରଚିତ ସଙ୍ଗୀତମାନ ଦେବୀଙ୍କୁ ଶୁଣାଉ ଶୁଣାଉ ପ୍ରେମରେ ବିହ୍ୱଳ ଓ ଆତ୍ମହରା ହୋଇ ପଡୁଥିଲେ । ବୃଥା ବାକ୍ୟାଳାପ କରି ସେ ଏବେ ତିଳେମାତ୍ର ସମୟ ଅପବ୍ୟୟ କରୁ ନ ଥିଲେ ଏବଂ ରାତିରେ ମନ୍ଦିର ଦ୍ୱାର ବନ୍ଦ ହେଲେ ଲୋକସଙ୍ଗ ପରିହାରପୂର୍ବକ ପଞ୍ଚବଟୀ ପାର୍ଶ୍ୱସ୍ଥ ଜଙ୍ଗଲରେ ପ୍ରବେଶ କରି ଜଗନ୍ମାତାଙ୍କ ଧ୍ୟାନରେ କାଳଯାପନ କରୁଥିଲେ ।

### ଏହା ଦେଖି ହୃଦୟଙ୍କର ଚିନ୍ତା ଏବଂ ସଂକଳ୍ପ :

ଠାକୁରଙ୍କର ଏହି ପ୍ରକାରର ଚେଷ୍ଟାସମୂହ ହୃଦୟଙ୍କୁ ଭଲ ଲାଗୁ ନ ଥିଲା । କିନ୍ତୁ ସେ କରିବେ କ'ଣ ? ବାଲ୍ୟ ବୟସରୁ ସେ ଯେତେବେଳେ ଯାହା ଧରିବସନ୍ତି, ତାହା ତତ୍‌କ୍ଷଣାତ୍ କରନ୍ତି, କେହି ତାଙ୍କୁ ବାଧା ଦେଇ ପାରନ୍ତି ନାହିଁ— ହୃଦୟଙ୍କୁ ଏକଥା ଜଣା ଥିଲା । ସୁତରାଂ ପ୍ରତିବାଦ କିମ୍ବା ବାଧା ଦେବା ବୃଥା ହେବ । ମାତ୍ର ଠାକୁରଙ୍କର ଉକ୍ତ ଭାବ ଦିନକୁ ଦିନ ପ୍ରବଳ ହେଉଛି ଦେଖି ହୃଦୟ ବେଳେ ବେଳେ ଟିକେ ଅଧେ ନ କହି ରହିପାରୁ ନ ଥିଲେ । ରାତ୍ରିରେ ନ ଶୋଇ ଶଯ୍ୟାତ୍ୟାଗପୂର୍ବକ ସେ ପଞ୍ଚବଟୀକୁ ଚାଲିଯାଆନ୍ତି, ଏକଥା ଜାଣିପାରି ହୃଦୟ ଏହି ସମୟରେ ବିଶେଷ ଚିନ୍ତାନ୍ୱିତ ହୋଇଥିଲେ । କାରଣ, ମନ୍ଦିରରେ ଠାକୁରସେବାର ପରିଶ୍ରମ, ତା'ଉପରେ ଠାକୁରଙ୍କର ପୂର୍ବପରି ଆହାର କରୁ ନ

ଥିଲେ, ଏଅବସ୍ଥାରେ ରାତ୍ରିରେ ନିଦ୍ରା ନ ଗଲେ ଶରୀର ଅସୁସ୍ଥ ହେବାର ସମ୍ଭାବନା ଥିଲା । ହୃଦୟ ମନସ୍ଥ କଲେ, ଏ ବିଷୟର ସନ୍ଧାନ ଏବଂ ଯଥାସାଧ୍ୟ ପ୍ରତିବିଧାନ କରିବାକୁ ହେବ ।

**ଏହି ସମୟରେ ପଞ୍ଚବଟୀର ଅବସ୍ଥା :**

ପଞ୍ଚବଟୀର ପାର୍ଶ୍ୱସ୍ଥ ସ୍ଥାନ ସେତେବେଳେ ବର୍ତ୍ତମାନ ପରି ସମତଳ ନ ଥିଲା; ନୀଚ ଜମି, ଖାଲଢ଼ିପ ଓ ଜଙ୍ଗଲରେ ପୂର୍ଣ୍ଣ ଥିଲା । ଏହି ବଣୁଆ ଗଛ ମଧ୍ୟରେ ଗୋଟିଏ ଅଁଳା ଗଛ ସେଠାରେ ଉଠିଥିଲା । ଏକେତ କବରସ୍ଥଳୀ, ତା'ଉପରେ ଜଙ୍ଗଲ, ସେଥିପାଇଁ ଦିନବେଳା ମଧ୍ୟ କେହି ସେହି ସ୍ଥାନକୁ ଯାଉ ନ ଥିଲେ ଏବଂ ଗଲେ ମଧ୍ୟ ଜଙ୍ଗଲ ମଧ୍ୟରେ ପ୍ରବେଶ କରୁ ନ ଥିଲେ । ରାତିରେ ଭୂତ ଭୟରେ ସେହି ଆଡ଼କୁ କେହି ଯାଉ ନ ଥିଲେ । ହୃଦୟଙ୍କ ମୁଖରୁ ଶୁଣିଅଛୁ, ପୂର୍ବୋକ୍ତ ଅଁଳା ଗଛଟି ନୀଚ ଜମିରେ ଥିବାରୁ ତା ତଳେ କେହି ବସି ରହିଲେ ଜଙ୍ଗଲ ବାହାରର ଉଚ୍ଚଜମିରୁ କାହାର ନୟନଗୋଚର ହେଉ ନ ଥିଲା । ଠାକୁର ଏହି ସମୟରେ ଉକ୍ତ ଗଛ ତଳେ ବସି ରାତିରେ ଧ୍ୟାନଧାରଣା କରୁଥିଲେ ।

**ହୃଦୟଙ୍କର ପ୍ରଶ୍ନ—ରାତିରେ ଜଙ୍ଗଲକୁ ଯାଇ କ'ଣ କର ? :**

ରାତ୍ରିରେ ଠାକୁର ସେହି ସ୍ଥାନକୁ ଯିବାବେଳେ, ଦିନେ ହୃଦୟ ତାଙ୍କର ଅଲକ୍ଷ୍ୟରେ ତାଙ୍କ ପଛେ ପଛେ ଚାଲିଲେ ଏବଂ ତାଙ୍କୁ ଜଙ୍ଗଲମଧ୍ୟରେ ପ୍ରବେଶ କରିବାର ଦେଖିବାକୁ ପାଇଲେ । ସେ ବିରକ୍ତ ହେବେ ଭାବି ସେ ଆଉ ବେଶୀ ଦୂର ଗଲେ ନାହିଁ । କିନ୍ତୁ ତାଙ୍କୁ ଭୟ ଦେଖାଇବା ପାଇଁ କିଛି ସମୟ ପର୍ଯ୍ୟନ୍ତ ଆଖପାଖକୁ ଢେଲା ଫୋପାଡ଼ିବାକୁ ଲାଗିଲେ । ସେଥିରେ ମଧ୍ୟ ସେ ନ ଫେରିବାରୁ ଅଗତ୍ୟା ସେ ଘରକୁ ଫେରି ଆସିଲେ । ପରଦିନ ସମୟ ଦେଖି ତାଙ୍କୁ ପଚାରିଲେ, "ଜଙ୍ଗଲ ଭିତରକୁ ରାତିରେ ଯାଇ କ'ଣ କର କୁହ ତ ?" ଠାକୁର କହିଲେ, "ସେଠାରେ ଗୋଟିଏ ଅଁଳା ଗଛ ଅଛି, ସେହି ଗଛ ତଳେ ବସି ଧ୍ୟାନ କରେ; ଶାସ୍ତ୍ର କହେ, ଅଁଳା ଗଛ ତଳେ ଯିଏ ଯାହା କାମନା କରି ଧ୍ୟାନ କରେ, ତାହାର ସେହି କାମନା ସିଦ୍ଧ ହୁଏ ।"

**ଠାକୁରଙ୍କୁ ହୃଦୟର ଭୟ ଦେଖାଇବାର ଚେଷ୍ଟା ଏବଂ ହୃଦୟକୁ ଠାକୁରଙ୍କର ଉତ୍ତର—'ପାଶମୁକ୍ତ' ହୋଇ ଧ୍ୟାନ କରିବାକୁ ହୁଏ :**

ସେହି ଘଟଣା ପରେ ଠାକୁର ପୂର୍ବୋକ୍ତ ଅଁଳା ଗଛ ମୂଳରେ ଧ୍ୟାନ ଧାରଣା କରିବାକୁ ବସିଲେ ହିଁ ବେଳେ ବେଳେ ଟେକାପଥର ପଡ଼ିବା ଇତ୍ୟାଦି ନାନାବିଧ ଉତ୍ପାତ ହେବାକୁ ଲାଗିଲା । ତାହା ହୃଦୟର କର୍ମ ବୁଝି ମଧ୍ୟ ଠାକୁର ତାଙ୍କୁ କିଛି କହିଲେ ନାହିଁ । ହୃଦୟ କିନ୍ତୁ ଭୟ ଦେଖାଇ ତାଙ୍କୁ ଉକ୍ତ କର୍ମରୁ ନିରସ୍ତ କରି ନ

ପାରି ଆଉ ସ୍ଥିର ରହି ପାରିଲେ ନାହିଁ । ଦିନେ ଠାକୁର ବୃକ୍ଷ ତଳକୁ ଯିବାର କିଛି ସମୟ ପରେ ହୃଦୟ ନିଃଶବ୍ଦରେ ଜଙ୍ଗଲରେ ପ୍ରବେଶ କରି ଦୂରରୁ ଦେଖିଲେ, ସେ ପିନ୍ଧିଥିବା ବସ୍ତ୍ର ଏବଂ ଯଜ୍ଞୋପବୀତ ତ୍ୟାଗ କରି ସୁଖାସୀନ ହୋଇ ଧ୍ୟାନରେ ନିମଗ୍ନ ହୋଇଛନ୍ତି । ଏହା ଦେଖି ସେ ଭାବିଲେ, 'ମାମୁଁ କ'ଣ ପାଗଳ ହୋଇଗଲେ ନା କ'ଣ ? ଏପରି କର୍ମ ତ ପାଗଳମାନେ ହିଁ କରନ୍ତି; ଧ୍ୟାନ କରିବ, କର; କିନ୍ତୁ ଉଲଗ୍ନ ହୋଇ କାହିଁକି ?' ଏପରି ଭାବି ସେ ହଠାତ୍ ତାଙ୍କ ନିକଟରେ ପହଞ୍ଚିଗଲେ ଏବଂ ତାଙ୍କୁ ସମ୍ବୋଧନ କରି କହିବାକୁ ଲାଗିଲେ, ''ଏ କ'ଣ ହେଉଛି ? ଲୁଗାପଟା, ପଇତା ଫିଙ୍ଗିଦେଇ ଉଲଗ୍ନ ହୋଇ ବସିଛ ଯେ ?'' କେତେଥର ଡାକିବା ପରେ ଠାକୁରଙ୍କର ଚୈତନ୍ୟ ହେଲା ଏବଂ ହୃଦୟକୁ ନିକଟରେ ଠିଆହୋଇ ଏପରି ପ୍ରଶ୍ନ କରୁଥିବାର ଶୁଣି ଉତ୍ତର ଦେଲେ, ''ତୁ କ'ଣ ଜାଣିଛୁ ? ଏହିପରି ପାଶମୁକ୍ତ ହୋଇ ଧ୍ୟାନ କରିବାକୁ ହୁଏ; ଜନ୍ମରୁ ମନୁଷ୍ୟ ଘୃଣା, ଲଜ୍ଜା, କୁଳ, ଶୀଳ, ଭୟ, ମାନ, ଜାତି ଓ ଅଭିମାନ—ଏହି ଅଷ୍ଟପାଶରେ ବନ୍ଧା ହୋଇ ରହିଅଛି । ପଇତାଗୋଛାଟା ମଧ୍ୟ 'ମୁଁ ବ୍ରାହ୍ମଣ, ସମସ୍ତଙ୍କଠାରୁ ବଡ଼'—ଏହି ଅଭିମାନର ଚିହ୍ନ ତେଣୁ ଗୋଟିଏ ପାଶ; ମା'କୁ ଡାକିବାକୁ ହେଲେ ଏସମସ୍ତ ପାଶକୁ ପକାଇ ଦେଇ ଏକ ମନରେ ଡାକିବାକୁ ହୁଏ, ତେଣୁ ଏସବୁ ଖୋଲି ଦେଇଛି, ଧ୍ୟାନ କରିବା ଶେଷ ହେଲେ ଫେରିବା ବେଳେ ପୁଣି ପିନ୍ଧିବି ।'' ହୃଦୟ ଏପରି କଥା ଏହାପୂର୍ବରୁ କେବେ ଶୁଣି ନ ଥିଲେ, ତେଣୁ ଅବାକ୍ ହୋଇ ରହିଲେ ଏବଂ ଉତ୍ତରରେ କିଛି କହି ନ ପାରି ସେଠାରୁ ଫେରି ଆସିଲେ । ଏହାପୂର୍ବରୁ ସେ ଭାବିଥିଲେ ମାମୁଁଙ୍କୁ ଅନେକ କଥା ବୁଝାଇ କହିବେ ଏବଂ ତିରସ୍କାର କରିବେ—ସେସବୁ କିଛି ହିଁ ହୋଇପାରିଲା ନାହିଁ ।

### ଶରୀର ଏବଂ ମନ ଉଭୟ ଦ୍ୱାରା ଠାକୁରଙ୍କର ଜାତ୍ୟାଭିମାନନାଶ, 'ସମଲୋଷ୍ଟ୍ରାଶ୍ମକାଞ୍ଚନ' ହେବା ଏବଂ ସର୍ବଜୀବରେ ଶିବଜ୍ଞାନଲାଭ ନିମିତ୍ତ ଅନୁଷ୍ଠାନ :

ପୂର୍ବୋକ୍ତ ଘଟଣା ପ୍ରସଙ୍ଗରେ ଏଠାରେ ଗୋଟିଏ କଥା କହି ରଖିବା ଭଲ । କାରଣ, ଏହା ଜଣାଥିଲେ ଠାକୁରଙ୍କ ଜୀବନର ପରବର୍ତ୍ତୀ ଅନେକଗୁଡ଼ିଏ ଘଟଣା ଆମେ ସହଜରେ ବୁଝିପାରିବା । ଆମେ ଦେଖିଲୁ ଅଷ୍ଟପାଶରୁ ମୁକ୍ତ ହେବା ପାଇଁ କେବଳ ମନେ ମନେ ଏସବୁକୁ ତ୍ୟାଗ କରି ଠାକୁର ନିଶ୍ଚିନ୍ତ ହୋଇ ପାରି ନ ଥିଲେ; ବରଂ ସ୍ଥୂଳ ଭାବରେ ମଧ୍ୟ ଏଗୁଡ଼ିକ ଯେତେଦୂର ତ୍ୟାଗ କରାଯାଇ ପାରେ, ତାହା କରିଥିଲେ । ପରଜୀବନରେ ଅନ୍ୟ ସମସ୍ତ ବିଷୟରେ ମଧ୍ୟ ତାଙ୍କୁ ଏପରି କରିବା ଆମେ ଦେଖିବାକୁ ପାଉ । ଯଥା—

ଅଭିମାନ ନାଶ କରି ମନରେ ଯଥାର୍ଥ ଦୀନତା ଆଣିବା ପାଇଁ, ଅନ୍ୟମାନେ ଯେଉଁ ସ୍ଥାନକୁ ଅଶୁଦ୍ଧ ଭାବି ସର୍ବଦା ପରିତ୍ୟାଗ କରନ୍ତି, ସେସ୍ଥାନକୁ ଅତ୍ୟନ୍ତ ଯତ୍ନର ସହିତ ସ୍ୱହସ୍ତରେ ପରିଷ୍କାର କରିଥିଲେ ।

'ସମଲୋଷ୍ଟ୍ରାଶ୍ମକାଞ୍ଚନ' ନ ହେଲେ ଅର୍ଥାତ୍ ଇତରସାଧାରଣଙ୍କ ନିକଟରେ ବହୁମୂଲ୍ୟ ବୋଲି ପରିଗଣିତ ସ୍ୱର୍ଣ୍ଣାଦି ଧାତୁ ଓ ରତ୍ନ ସବୁକୁ ମାଟିଢେଲା ସଦୃଶ ତୁଚ୍ଛ ଜ୍ଞାନ କରି ନ ପାରିଲେ, ମାନବର ମନ ଶାରୀରିକ ଭୋଗସୁଖ ଇଚ୍ଛାରୁ ନିଜକୁ ବିଯୁକ୍ତ କରି ଈଶ୍ୱରାଭିମୁଖରେ ସମ୍ପୂର୍ଣ୍ଣ ଧାବିତ ହୁଏ ନାହିଁ ଏବଂ ଯୋଗାରୂଢ଼ ହୋଇ ପାରେ ନାହିଁ—ଏହି କଥା ଜାଣି ଠାକୁରେ କେତେ ଖଣ୍ଡ ମୁଦ୍ରା ଓ ମାଟିଢେଲା ହସ୍ତରେ ଗ୍ରହଣ କରି ବାରମ୍ବାର 'ଟଙ୍କା ମାଟି, ମାଟି ଟଙ୍କା' କହି କହି ତାହା ଗଙ୍ଗା–ଗର୍ଭରେ ନିକ୍ଷେପ କରିଥିଲେ ।

ସର୍ବଜୀବରେ ଶିବଜ୍ଞାନ ଦୃଢ଼ କରିବା ନିମନ୍ତେ କାଳୀମନ୍ଦିରରେ କାଙ୍ଗାଳୀମାନଙ୍କର ଭୋଜନ ଶେଷ ହେଲା ପରେ ସେମାନଙ୍କର ଉଚ୍ଛିଷ୍ଟାନ୍ନ ସେ ଦେବତାଙ୍କର ପ୍ରସାଦଜ୍ଞାନରେ ଭୋଜନ ଏବଂ ମସ୍ତକରେ ଧାରଣ କରିଥିଲେ । ପରେ, ଉଚ୍ଛିଷ୍ଟ ପତ୍ରଗୁଡ଼ିକୁ ମସ୍ତକରେ ବହନ କରି ଗଙ୍ଗାକୂଳରେ ପକାଇ ସ୍ୱହସ୍ତରେ ମାର୍ଜନୀ ଧରି ଉକ୍ତ ସ୍ଥାନ ପରିଷ୍କାର କରିଥିଲେ ଏବଂ ଏଥିରେ ନିଜର ନଶ୍ୱର ଶରୀର ଦ୍ୱାରା ସେହି ରୂପରେ ଯତ୍‌କିଞ୍ଚିତ୍ ଦେବସେବା ସାଧିତ ହେଲା ବୋଲି ଭାବି ନିଜକୁ କୃତାର୍ଥ ଜ୍ଞାନ କରିଥିଲେ ।

**ଠାକୁରଙ୍କର ତ୍ୟାଗର କ୍ରମ :**

ସେହିପରି ନାନା ଘଟଣାର ଉଲ୍ଲେଖ କରାଯାଇପାରେ । ସର୍ବଦା ଦେଖାଯାଉଥିଲା, ଈଶ୍ୱରଲାଭ ପଥରେ ପ୍ରତିକୂଳ ବିଷୟଗୁଡ଼ିକୁ କେବଳ ମନେ ମନେ ତ୍ୟାଗ କରି ସେ ନିଶ୍ଚିନ୍ତ ରହୁ ନ ଥିଲେ । କିନ୍ତୁ ସ୍ଥୂଳ ଭାବରେ ଏସବୁକୁ ତ୍ୟାଗ କରି କିମ୍ବା ନିଜ ଶରୀର ଓ ଇନ୍ଦ୍ରିୟବର୍ଗଙ୍କୁ ଏସମସ୍ତ ବିଷୟଠାରୁ ଯଥାସମ୍ଭବ ଦୂରରେ ରଖି ତା'ର ବିପରୀତ ଅନୁଷ୍ଠାନ କରିବାକୁ ସେ ସେଗୁଡ଼ିକୁ ବଳପୂର୍ବକ ନିୟୋଜିତ କରୁଥିଲେ । ଦେଖାଯାଏ, ସେପରି ଅନୁଷ୍ଠାନରେ ତାଙ୍କ ମନର ପୂର୍ବ ସଂସ୍କାରଗୁଡ଼ିକ ସମ୍ପୂର୍ଣ୍ଣ ନଷ୍ଟ ହୋଇଯାଉଥିଲା ଏବଂ ତଦ୍‌ବିପରୀତ ନୂତନ ସଂସ୍କାର ଗୁଡ଼ିକ ସେ ଏପରି ଦୃଢ଼ଭାବରେ ଧାରଣ କରୁଥିଲେ ଯେ, କେବେହେଲେ ଅନ୍ୟ ଭାବ ଆଶ୍ରୟ କରିପାରୁ ନ ଥିଲେ । ସେହି ପ୍ରକାରରେ କୌଣସି ନବୀନ ଭାବ ମନ ଦ୍ୱାରା ପ୍ରଥମେ ଗୃହୀତ ହୋଇ ଶରୀର ଓ ଇନ୍ଦ୍ରିୟ ସାହାଯ୍ୟରେ କିଞ୍ଚିତ୍‌ମାତ୍ର ଯେପର୍ଯ୍ୟନ୍ତ ଅନୁଷ୍ଠିତ ନ ହୋଇଛି, ସେପର୍ଯ୍ୟନ୍ତ ସେହି ବିଷୟର ଯଥାଯଥ ଧାରଣା ହୋଇ ଏହାର ବିପରୀତ ଭାବର ତ୍ୟାଗ ହୋଇଛି ବୋଲି ସେ ସ୍ୱୀକାର କରୁ ନ ଥିଲେ ।

## 'ମନଃକଳ୍ପିତ ସାଧନପଥ' ବୋଲି ସେହି କ୍ରମ ସମ୍ବନ୍ଧରେ ଆପତ୍ତି ଓ ତାହାର ମୀମାଂସା :

ପୂର୍ବ ସଂସ୍କାରସମୂହ ତ୍ୟାଗ କରିବାକୁ ନିତାନ୍ତ ପରାଙ୍‌ମୁଖ ଆମେମାନେ ଭାବୁ, ଠାକୁରଙ୍କର ଏପରି ଆଚରଣର କିଞ୍ଚିତ୍‌ମାତ୍ର ଆବଶ୍ୟକତା ନ ଥିଲା । ତାଙ୍କର ସେହି ପ୍ରକାର ଆଚରଣଗୁଡ଼ିକର ଆଲୋଚନା କରିବାକୁ ଯାଇ କେହି କେହି କହିଛନ୍ତି—''ଅପବିତ୍ର କଦର୍ଯ୍ୟ ସ୍ଥାନ ପରିଷ୍କାର କରିବା, 'ଟଙ୍କା ମାଟି, ମାଟି ଟଙ୍କା' ବୋଲି କହି ମାଟି ସହିତ ମୁଦ୍ରାଖଣ୍ଡ ସବୁ ଗଙ୍ଗାରେ ପକାଇ ଦେବା ପ୍ରଭୃତି ଘଟଣାବଳୀ ତାଙ୍କର ନିଜ ମନଃକଳ୍ପିତ ସାଧନପଥ ବୋଲି ମନେ ହୁଏ; କିନ୍ତୁ ଏପରି ଅଦୃଷ୍ଟପୂର୍ବ ଉପାୟଗୁଡ଼ିକ ଅବଲମ୍ବନରେ ସେ ମନ ଉପରେ ଯେଉଁ କର୍ତ୍ତୃତ୍ୱଲାଭ କରିଥିଲେ ତାହା ଅତି ଶୀଘ୍ର ତଦପେକ୍ଷା ସହଜ ଉପାୟରେ ମିଳି ଯାଇ ପାରେ ।''[୧] ଉତ୍ତରରେ କହିବାକୁ ହେବ—ଭଲ କଥା, କିନ୍ତୁ ସେହି ପ୍ରକାର ବାହ୍ୟ ଅନୁଷ୍ଠାନସମୂହ ନ କରି କେବଳ ମନରେ ବିଷୟ ତ୍ୟାଗକରିବାରୂପକ ତୁମମାନଙ୍କର ତଥାକଥିତ ସହଜ ଉପାୟ ଅବଲମ୍ବନ କରି କେତେଜଣ ଲୋକ ଏପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ଭାବରେ ରୂପ-ରସାଦି ବିଷୟସମୂହରୁ ବିମୁଖ ହୋଇ ଷୋଳଅଣା ମନ ଈଶ୍ୱରଙ୍କଠାରେ ଅର୍ପଣ କରିବାକୁ ସକ୍ଷମ ହୋଇଛନ୍ତି ? ଏହା କେବେ ହେଲେ ସମ୍ଭବପର ନୁହେଁ । ମନ ଏକପ୍ରକାର ଚିନ୍ତା କରି ଗୋଟିଏ ଦିଗକୁ ଚାଲିବ, ଏବଂ ଶରୀର ସେହି ଚିନ୍ତା ବା ଭାବର ବିପରୀତ କାର୍ଯ୍ୟାନୁଷ୍ଠାନ କରି ଅନ୍ୟ ଦିଗରେ ଚାଲିବ—ଏହି ଭାବରେ କୌଣସି ମହତ୍ କାର୍ଯ୍ୟରେ ସିଦ୍ଧିଲାଭ କରି ହୁଏ ନାହିଁ, ଈଶ୍ୱର ଲାଭ ତ ଦୂରର କଥା ! କିନ୍ତୁ ରୂପରସାଦିଭୋଗଲୋଲୁପ ମାନବ ଏକଥା ବୁଝେ ନାହିଁ । କୌଣସି ବିଷୟ ତ୍ୟାଗ କରିବା ଭଲ ବୋଲି ବୁଝି ମଧ୍ୟ ସେ ପୂର୍ବସଂସ୍କାରବଶରେ ନିଜର ଶରୀର-ଇନ୍ଦ୍ରିୟାଦି ଦ୍ୱାରା ଏହାକୁ ତ୍ୟାଗ କରିବାକୁ ଅଗ୍ରସର ହୁଏ ନାହିଁ ଏବଂ ଭାବି ଚାଲେ, 'ଶରୀର ଯେଉଁ ପ୍ରକାର କାର୍ଯ୍ୟ କରୁ ନା କାହିଁକି, ମନରେ ତ ମୁଁ ଅନ୍ୟ ପ୍ରକାର ଭାବୁଛି !' ଯୋଗ ଏବଂ ଭୋଗ ଏକାଠି ଗ୍ରହଣ କରିବ ଭାବି ସେ ନିଜକୁ ନିଜେ ଏପରି ଭାବରେ ପ୍ରତାରିତ କରିଥାଏ । ମାତ୍ର ଆଲୋକ ଓ ଅନ୍ଧାର ସଦୃଶ ଯୋଗ ଓ ଭୋଗରୂପ ଦୁଇ ପଦାର୍ଥ କଦାପି ଏକତ୍ର ରହିପାରେ ନାହିଁ । କାମ-କାଞ୍ଚନମୟ ସଂସାର ଓ ଈଶ୍ୱରଙ୍କର ସେବା ଯେଉଁଥିରେ ଏକତ୍ର ଏକ ସମୟରେ ସମ୍ପନ୍ନ କରିହେବ, ଏପରି ସହଜ ପଥର ଆବିଷ୍କାର ଆଧ୍ୟାତ୍ମିକ ଜଗତରେ ଏପର୍ଯ୍ୟନ୍ତ କେହି କରିପାରି ନାହାନ୍ତି ।[୨] ଶାସ୍ତ୍ର ସେଥିପାଇଁ ଆମମାନଙ୍କୁ ବାରମ୍ବାର କହୁଛନ୍ତି, 'ଯାହା ତ୍ୟାଗ କରିବାକୁ

---

୧. ⁄ଶିବନାଥ ଶାସ୍ତ୍ରୀ ମହାଶୟଙ୍କ ଲିଖିତ—''Personal Reminiscences of Ramakrishna Paramahamsa.'' Vide 'Modern Review' for November, 1910.

୨. Ye cannot serve God and Mammon together.—Holy Bible.

ହେବ, ତାହା କାୟମନୋବାକ୍ୟରେ ତ୍ୟାଗ କରିବାକୁ ହେବ ଏବଂ ଯାହା ଗ୍ରହଣ କରିବାକୁ ହେବ ତାହା ମଧ୍ୟ ଏପରି କାୟମନୋବାକ୍ୟରେ ଗ୍ରହଣ କରିବାକୁ ହେବ, ତେବେ ଯାଇ ସାଧକ ଈଶ୍ୱର ଲାଭର ଅଧିକାରୀ ହେବେ ।' ଋଷିଗଣ ସେଥିପାଇଁ କହିଯାଇଛନ୍ତି, ମାନସିକ ଭାବୋଦ୍ଦୀପକ ଶାରୀରିକ ଚିହ୍ନ ଓ ଅନୁଷ୍ଠାନରହିତ ତପସ୍ୟା ସହାୟରେ—'ତପସୋ ବାପ୍ୟଲିଙ୍ଗାତ୍'—ମନୁଷ୍ୟ କେବେହେଲେ ଆତ୍ମସାକ୍ଷାତ୍କାରଲାଭରେ ସମର୍ଥ ହୁଏ ନାହିଁ । ଯୁକ୍ତିବଳରେ, ସ୍ଥୂଳରୁ ସୂକ୍ଷ୍ମ ଏବଂ ସୂକ୍ଷ୍ମରୁ କାରଣରେ ମାନବମନ କ୍ରମଶଃ ଅଗ୍ରସର ହୁଏ । —'ନାନ୍ୟଃ ପନ୍ଥା ବିଦ୍ୟତେଽୟନାୟ' ।

**ଠାକୁର ଏହି ସମୟରେ ଯେଉଁ ଭାବରେ ପୂଜାଦି କରୁଥିଲେ :**

ଆମେ କହିଅଛୁ, ଅଗ୍ରଜଙ୍କ ମୃତ୍ୟୁ ପରେ ଠାକୁର ଶ୍ରୀଶ୍ରୀଜଗଦମ୍ବାଙ୍କର ପୂଜାରେ ଅଧିକତର ମନୋନିବେଶ କରିଥିଲେ ଏବଂ ତାଙ୍କର ଦର୍ଶନଲାଭ ନିମିତ୍ତ ଯାହା ଅନୁକୂଳ ବୋଲି ବୁଝୁଥିଲେ, ତାହା ବିଶ୍ୱସ୍ତଚିତ୍ତରେ ବ୍ୟଗ୍ର ହୋଇ ସମ୍ପନ୍ନ କରୁଥିଲେ । ତାଙ୍କର ଶ୍ରୀମୁଖରୁ ଆମେ ଶୁଣିଛୁ, ଏହି ସମୟରେ ଯଥାରୀତି ପୂଜା ସମାପନାନ୍ତେ ଦେବୀଙ୍କୁ ପ୍ରତିଦିନ ସାଧକ ରାମପ୍ରସାଦ-ପ୍ରମୁଖ ସିଦ୍ଧ ଭକ୍ତଗଣଙ୍କ ରଚିତ ସଙ୍ଗୀତସମୂହ ଶୁଣାଇବା ତାଙ୍କର ପୂଜାର ଅଙ୍ଗବିଶେଷ ବୋଲି ଗଣ୍ୟ କରୁଥିଲେ । ଅନ୍ତରର ଗଭୀର ଉଚ୍ଛ୍ୱାସପୂର୍ଣ୍ଣ ଏହି ସମସ୍ତ ଗୀତ ଗାଉ ଗାଉ ତାଙ୍କର ଚିତ୍ତ ଉତ୍ସାହପୂର୍ଣ୍ଣ ହୋଇ ଉଠୁଥିଲା । ଭାବୁଥିଲେ—'ରାମପ୍ରସାଦ-ପ୍ରମୁଖ ଭକ୍ତମାନେ ମା'ଙ୍କର ଦର୍ଶନ ପାଇଥିଲେ; ତେଣୁ ଜଗତ ଜନନୀଙ୍କର ଦର୍ଶନ ନିଶ୍ଚୟ ମିଳେ; ମୁଁ କାହିଁକି ତେବେ ତାଙ୍କର ଦର୍ଶନ ପାଇବି ନାହିଁ ? ବ୍ୟାକୁଳ ହୃଦୟରେ କହୁଥିଲେ— ''ମା', ତୁ ରାମପ୍ରସାଦଙ୍କୁ ଦେଖା ଦେଇଛୁ, ମୋତେ ତାହାହେଲେ କାହିଁକି ଦେଖା ଦେବୁ ନାହିଁ ? ମୁଁ ଧନ, ଜନ, ଭୋଗସୁଖ କିଛି ଚାହେଁ ନାହିଁ, ମୋତେ ଦେଖା ଦେ ।'' ଏପରି ପ୍ରାର୍ଥନା କରୁ କରୁ ଅଶ୍ରୁଧାରାରେ ତାଙ୍କର ବକ୍ଷସ୍ଥଳ ଭାସି ଯାଉଥିଲା ଏବଂ ସେଥିରେ ଭାରାକ୍ରାନ୍ତ ହୃଦୟ କିଞ୍ଚିତ ଲଘୁ ହେଲେ ବିଶ୍ୱାସର ମୁଗ୍ଧ ପ୍ରେରଣାରେ ସାମାନ୍ୟ ଆଶ୍ୱସ୍ତ ହୋଇ ପୁନରାୟ ଗୀତ ଗାଇ ସେ ଦେବୀଙ୍କୁ ପ୍ରସନ୍ନା କରିବାକୁ ଉଦ୍ୟତ ହେଉଥିଲେ । ଏହିପରି ପୂଜା, ଧ୍ୟାନ ଓ ଭଜନରେ ଦିନ କଟିବାକୁ ଲାଗିଲା ଏବଂ ଠାକୁରଙ୍କ ମନର ଅନୁରାଗ ଓ ବ୍ୟାକୁଳତା ଦିନକୁ ଦିନ ବର୍ଦ୍ଧିତ ହେବାକୁ ଲାଗିଲା ।

ଦେବୀଙ୍କର ପୂଜା ଓ ସେବା ସମ୍ପନ୍ନ କରିବାର ନିର୍ଦ୍ଦିଷ୍ଟ ସମୟ ଏହି ସମୟରୁ ତାଙ୍କର ଦିନକୁ ଦିନ ବଢ଼ିବାକୁ ଲାଗିଲା । ପୂଜା କରିବାକୁ ବସି ସେ ଯଥାବିଧି ନିଜ ମସ୍ତକରେ ଗୋଟିଏ ଫୁଲ ଚଢ଼ାଇ ଦେଇ ହୁଏତ ଦୁଇଘଣ୍ଟା ପର୍ଯ୍ୟନ୍ତ ସ୍ଥାଣୁ, ସ୍ପନ୍ଦନହୀନ ଭାବରେ ଧ୍ୟାନସ୍ଥ ରହିଲେ; ଅନ୍ନାଦି ନିବେଦନ କରି, ମା' ଖାଉଛନ୍ତି

ବୋଲି ଭାବି ଭାବି ହୁଏତ ବହୁତ ସମୟ କଟାଇ ଦେଲେ, ପ୍ରତ୍ୟୁଷରେ ସ୍ୱହସ୍ତରେ ପୁଷ୍ପଚୟନ କରି ମାଳା ଗୁନ୍ଥି ଦେବୀଙ୍କୁ ସଜାଇବାରେ କେତେ ସମୟ ବିତାଇଲେ, ଅଥବା ଅନୁରାଗପୂର୍ଣ୍ଣ ହୃଦୟରେ ସନ୍ଧ୍ୟା ଆରତୀରେ ବହୁ କ୍ଷଣ ବ୍ୟାପୃତ ରହିଲେ ! ପୁଣି ଅପରାହ୍ଣରେ ଯଦି ଜଗନ୍ମାତାଙ୍କୁ ଗୀତ ଶୁଣାଇବାକୁ ଆରମ୍ଭ କଲେ, ସେତେବେଳେ ଏପରି ତନ୍ମୟ ଏବଂ ଭାବବିହ୍ୱଳ ହୋଇ ପଡୁଥିଲେ ଯେ, ସମୟ ଶେଷ ହୋଇଯାଇଛି ବୋଲି ବାରମ୍ବାର ସ୍ମରଣ କରାଇଦେଲେ ମଧ୍ୟ ତାଙ୍କର ଆରତ୍ରିକାଦି କର୍ମସମ୍ପାଦନର ସମୟ ନିର୍ଦ୍ଦିଷ୍ଟ କରି ହେଲା ନାହିଁ !—ଏହିପରି ଭାବରେ କିଛିଦିନ ପୂଜା ଚାଲିଲା ।

**ଠାକୁରଙ୍କର ଏହି ସମୟରେ ପୂଜାଦି କାର୍ଯ୍ୟ ସମ୍ବନ୍ଧରେ ମଥୁରବାବୁ-ପ୍ରମୁଖ ସମସ୍ତେ ଯାହା ଭାବୁଥିଲେ :**

ଏପରି ନିଷ୍ଠା, ଭକ୍ତି ଓ ବ୍ୟାକୁଳତା ଦେଖି ଠାକୁରବାଡ଼ିର ଜନସାଧାରଣଙ୍କ ଦୃଷ୍ଟି ଯେ ଠାକୁରଙ୍କ ପ୍ରତି ଆକୃଷ୍ଟ ହୋଇଥିଲା, ଏକଥା ବେଶ ବୁଝାଯାଏ । ସାଧାରଣ ଲୋକେ ସଚରାଚର ଯେଉଁ ପଥରେ ଚାଲିଥାଆନ୍ତି, ତାକୁ ଛାଡ଼ି ନୂତନଭାବରେ କାହାକୁ ଚାଲିବା ବା କିଛି କରିବାକୁ ଦେଖିଲେ ଲୋକମାନେ ପ୍ରଥମେ ବିଦ୍ରୂପ ଏବଂ ଥଟ୍ଟା ପରିହାସ କରି ଥାଆନ୍ତି । କିନ୍ତୁ ଦିନ ପରେ ଦିନ ଯେତେ ଯାଉଥାଏ ଏବଂ ସେହି ବ୍ୟକ୍ତି ଦୃଢ଼ତାସହକାରେ ନିଜର ଗନ୍ତବ୍ୟପଥରେ ଯେତେ ଅଗ୍ରସର ହୁଅନ୍ତି, ସେତେ ସାଧାରଣଙ୍କ ମନରୁ ପୂର୍ବୋକ୍ତଭାବ ପରିବର୍ତ୍ତିତ ହୋଇ ସେହି ସ୍ଥାନ ଶ୍ରଦ୍ଧା ଅଧିକାର କରେ । ଠାକୁରଙ୍କର ଏହି ସମୟର କାର୍ଯ୍ୟକଳାପ ସମ୍ବନ୍ଧରେ ଏପରି ହିଁ ହୋଇଥିଲା । କିଛିଦିନ ଏପରି ଭାବରେ ପୂଜା କରିବାରୁ ସେ ପ୍ରଥମେ ଅନେକଙ୍କର ବିଦ୍ରୂପଭାଜନ ହୋଇଥିଲେ । କିଛିଦିନ ପରେ କେହି କେହି ପୁଣି ତାଙ୍କ ପ୍ରତି ଶ୍ରଦ୍ଧାସମ୍ପନ୍ନ ହୋଇ ଉଠିଲେ । ଶୁଣାଯାଏ, ମଥୁରବାବୁ ଏହି ସମୟରେ ଠାକୁରଙ୍କର ପୂଜା ଦେଖି ହୃଷ୍ଟଚିତ୍ତରେ ରାଣୀ ରାସମଣିଙ୍କୁ କହିଥିଲେ, "ଅଦ୍ଭୁତ ପୂଜକ ମିଳିଛନ୍ତି, ଦେବୀ ବୋଧହୁଏ ଶୀଘ୍ର ହିଁ ଜାଗ୍ରତା ହୋଇ ଉଠିବେ !" ଲୋକମାନଙ୍କର ଏପରି ମତାମତରେ ଠାକୁର କିନ୍ତୁ କଦାପି ତାଙ୍କର ଗନ୍ତବ୍ୟ ପଥରୁ ବିଚଳିତ ହୋଇ ନ ଥିଲେ । ସାଗର-ଗାମିନୀ ନଦୀ ପରି ଠାକୁରଙ୍କର ମନ ଅବିରାମ ଏକଭାବରେ ହିଁ ଶ୍ରୀଶ୍ରୀଜଗନ୍ମାତାଙ୍କର ଶ୍ରୀପଦ ଉଦ୍ଦେଶ୍ୟରେ ଧାବିତ ହେଉଥିଲା ।

**ଈଶ୍ୱରାନୁରାଗର ବୃଦ୍ଧିରେ ଠାକୁରଙ୍କ ଶରୀରରେ ଯେଉଁ ସମସ୍ତ ବିକାର ଉପସ୍ଥିତ ହୋଇଥିଲା :**

ଦିନ ପରେ ଦିନ ଯେତେ ଗଡ଼ିଚାଲିଲା, ଠାକୁରଙ୍କ ମନରେ ଅନୁରାଗ ଓ ବ୍ୟାକୁଳତା ମଧ୍ୟ ସେତେ ବୃଦ୍ଧି ପାଇବାକୁ ଲାଗିଲା ଏବଂ ମନର ସେହିପ୍ରକାରର ଅବିରାମ ଏକମୁଖୀ ଗତି ତାଙ୍କ ଶରୀରରେ ନାନାପ୍ରକାରର ବାହ୍ୟ ଲକ୍ଷଣ ପ୍ରକାଶ

ପାଇବାକୁ ଲାଗିଲା । ଠାକୁରଙ୍କର ଆହାର ଓ ନିଦ୍ରା କମିଗଲା । ଶରୀରର ରକ୍ତପ୍ରବାହ ବକ୍ଷରେ ଓ ମସ୍ତିଷ୍କରେ ନିରନ୍ତର ଦୃତ ପ୍ରବାହିତ ହେବାରୁ, ବକ୍ଷସ୍ଥଳ ସର୍ବଦା ଆରକ୍ତିମ ହୋଇ ରହିଲା, ଚକ୍ଷୁ ବେଳେ ବେଳେ ସହସା ଜଳଭାରାକ୍ରାନ୍ତ ହେବାକୁ ଲାଗିଲା ଏବଂ ଭଗବଦ୍ଦର୍ଶନ ନିମିତ୍ତ ଏକାନ୍ତ ବ୍ୟାକୁଳତାବଶତଃ 'କ'ଣ କରିବି, କିପରି ପାଇବି,' ଏପରି ଗୋଟିଏ ଚିନ୍ତା ସର୍ବକ୍ଷଣ ରହିଥିବାରୁ ଧ୍ୟାନପୂଜାଦିର ସମୟ ବ୍ୟତୀତ ଅନ୍ୟ ସମୟରେ ତାଙ୍କର ଶରୀରରେ ଏକ ଅଶାନ୍ତି ଓ ଚାଞ୍ଚଲ୍ୟର ଭାବ ଲକ୍ଷିତ ହେବାକୁ ଲାଗିଲା ।

### ଶ୍ରୀଶ୍ରୀଜଗଦମ୍ବାଙ୍କର ପ୍ରଥମ ଦର୍ଶନଲାଭର ବିବରଣ ଏବଂ ଠାକୁରଙ୍କର ଏହି ସମୟର ବ୍ୟାକୁଳତା :

ତାଙ୍କର ଶ୍ରୀମୁଖରୁ ଶୁଣିଅଛୁ, ଏହି ସମୟରେ ସେ ଜଗଦମ୍ବାଙ୍କୁ ଦିନେ ଗୀତ ଶୁଣାଉଥିଲେ ଏବଂ ତାଙ୍କର ଦର୍ଶନଲାଭ ପାଇଁ ନିତାନ୍ତ ବ୍ୟାକୁଳ ହୋଇ ପ୍ରାର୍ଥନା ଓ କ୍ରନ୍ଦନ କରୁଥିଲେ । କହୁଥିଲେ,''ମା', ଏତେ ଯେ ଡାକୁଛି; ତାହା କିଛି କ'ଣ ତୁ ଶୁଣୁ ନାହୁଁ ? ରାମପ୍ରସାଦଙ୍କୁ ଦେଖା ଦେଇଛୁ, ମୋତେ କ'ଣ ଦେଖା ଦେବୁ ନାହିଁ ?'' ସେ କହୁଥିଲେ—''ମା'ଙ୍କର ଦେଖା ପାଇଲି ନାହିଁ ବୋଲି ହୃଦୟରେ ଅସହ୍ୟ ଯନ୍ତ୍ରଣା ହେଉଥିଲା; ଜଳ ନିଗାଡ଼ିବା ପାଇଁ ଲୋକେ ଯେପରି ଗାମୁଛା ଚିପୁଡ଼ିଥାନ୍ତି, ମନେ ହେଉଥିଲା ହୃଦୟ ଭିତରଟା କେହି ଯେପରି ତଦ୍ରୂପ କରୁଅଛି ! ମା'ଙ୍କ ଦେଖା ବୋଧହୁଏ କେବେ ହେଲେ ପାଇବି ନାହିଁ ଭାବି ଯନ୍ତ୍ରଣାରେ ଛଟପଟ ହେବାକୁ ଲାଗିଲି । ଅସ୍ଥିର ହୋଇ ଭାବିଲି, ତେବେ ଏଜୀବନର ଆଉ ଆବଶ୍ୟକତା ନାହିଁ । ମା'ଙ୍କ ଘରେ ଯେଉଁ ଖଣ୍ଡା ଥିଲା, ସହସା ଦୃଷ୍ଟି ତାହା ଉପରେ ପଡ଼ିଲା । ଏହି କ୍ଷଣରେ ହିଁ ଜୀବନର ଅବସାନ କରିବି ଭାବି ଉନ୍ମତ୍ତପ୍ରାୟ ଧାଇଁ ଯାଇ ତାହା ଧରୁଛି, ଏପରି ସମୟରେ ସହସା ମା'ଙ୍କ ଅଦ୍ଭୁତ ଦର୍ଶନ ପାଇଲି ଏ୍ବଂ ସଂଜ୍ଞାଶୂନ୍ୟ ହୋଇ ପଡ଼ିଗଲି ! ତା' ପରେ ବାହାରେ କ'ଣ ଯେ ହୋଇଛି, ସେଦିନ ଓ ତା ପର ଦିନ କିପରି କଟିଛି, ତାହା କିଛି ହିଁ ଜାଣି ପାରି ନ ଥିଲି ! ଅନ୍ତର ମଧ୍ୟରେ କିନ୍ତୁ ଏକ ଅନନୁଭୂତ ଜମାଟ-ବନ୍ଧା ଆନନ୍ଦର ସ୍ରୋତ ପ୍ରବାହିତ ଥିଲା ଏବଂ ମା'ଙ୍କ ସାକ୍ଷାତ୍ ପ୍ରକାଶ ଉପଲବ୍ଧି କରିଥିଲି !''

ଏହି ଅଦ୍ଭୁତ ଦର୍ଶନର କଥା ଅନ୍ୟ ଏକ ଦିନ ଠାକୁର ଆମମାନଙ୍କୁ ଏପରି କହିଥିଲେ, ''ଘର, ଦ୍ୱାର, ମନ୍ଦିର ସବୁ ଯେପରି କେଉଁଠି ଲୁପ୍ତ ହେଲା—କେଉଁଠି ଯେପରି ଆଉ କିଛି ନାହିଁ ! ପୁଣି ଦେଖୁଛି, ଏକ ଅସୀମ ଅନନ୍ତ ଚେତନ ଜ୍ୟୋତିଃ- -ସମୁଦ୍ର ! —ସେ ଆଡ଼କୁ ଯେତେଦୂର ଦେଖୁଛି, ଚାରିଦିଗରୁ ତା'ର ଉଜ୍ଜ୍ୱଳ ଊର୍ମିମାଳା ଗର୍ଜନ-ତର୍ଜନ କରି ଗ୍ରାସ କରିବା ନିମିତ୍ତ ପ୍ରବଳ ବେଗରେ ଅଗ୍ରସର ହେଉଛି ! ଦେଖୁ ଦେଖୁ ଏସବୁ ମୋ ଉପରେ ଆସି ପଡ଼ିଲା ଏବଂ ମୋତେ

ସମ୍ପୂର୍ଣ୍ଣ ତଳିତଲାନ୍ତ କରିଦେଲା ! ଅଣନିଃଶ୍ୱାସୀ ହୋଇ ଉବୁଟୁବୁ ହେଉ ହେଉ ସଂଜ୍ଞାଶୂନ୍ୟ ହୋଇ ପଡ଼ିଗଲି !'' ଏହିପରି ପ୍ରଥମ ଦର୍ଶନକାଳରେ ସେ ଚେତନ ଜ୍ୟୋତିଃ-ସମୁଦ୍ରର ଦର୍ଶନଲାଭ କଥା ଆମକୁ କହିଥିଲେ । କିନ୍ତୁ ଚୈତନ୍ୟ-ଘନ ଜଗଦମ୍ବାଙ୍କର ବରାଭୟକରା ମୂର୍ତ୍ତି ? ଠାକୁର କ'ଣ ସେତେବେଳେ ତାଙ୍କର ଦର୍ଶନ ଏହି ଜ୍ୟୋତିଃ-ସମୁଦ୍ର ମଧ୍ୟରେ ପାଇଥିଲେ ? ପାଇଥିଲେ ବୋଲି ହିଁ ମନେ ହୁଏ; କାରଣ ଆମେ ଶୁଣିଛୁ ଯେ, ପ୍ରଥମ ଦର୍ଶନ ସମୟରେ ଯେତେବେଳେ ତାଙ୍କର ଅଳ୍ପ ସଂଜ୍ଞା ହୋଇଥିଲା, ସେତେବେଳେ ସେ କାତର କଣ୍ଠରେ 'ମା', 'ମା' ଶବ୍ଦ ଉଚ୍ଚାରଣ କରିଥିଲେ ।

ପୂର୍ବୋକ୍ତ ଦର୍ଶନର ବିରାମ ହେବା ପରେ ଶ୍ରୀଶ୍ରୀଜଗଦମ୍ବାଙ୍କର ଚିନ୍ମୟୀ ମୂର୍ତ୍ତିର ଅବିରାମ ଦର୍ଶନଲାଭ ପାଇଁ ଠାକୁରଙ୍କ ପ୍ରାଣରେ ଏକ ଅବିଶ୍ରାନ୍ତ ଆକୁଳ କ୍ରନ୍ଦନର ରୋଳ ଉଠିଥିଲା । ଏସମସ୍ତ ବାହ୍ୟ ଲକ୍ଷଣ ସବୁବେଳେ ପ୍ରକାଶିତ ନ ହେଲେ ମଧ୍ୟ ଏହା ଅନ୍ତର ମଧ୍ୟରେ ସର୍ବଦା ବିଦ୍ୟମାନ ରହୁଥିଲା ଏବଂ ଏହି ଉଚ୍ଛ୍ୱାସ ବେଳେବେଳେ ଏପରି ବଢ଼ିଯାଉଥିଲା ଯେ, ସେ ଆଉ ସମ୍ଭାଳି ନ ପାରି ଭୂମିରେ ପଡ଼ି ଯନ୍ତ୍ରଣାରେ ଛଟପଟ ହୋଇ 'ମା, ମୋତେ କୃପା କର, ଦେଖା ଦେ'ବୋଲି ଏପରି କ୍ରନ୍ଦନ କରୁଥିଲେ ଯେ, ଲୋକମାନେ ଚାରିଆଡୁ ଧାଇଁ ଆସୁଥିଲେ ! ଏପରି ଘଟଣାରେ ଲୋକେ କ'ଣ କହିବେ, ଏକଥା ବିନ୍ଦୁମାତ୍ର ସେତେବେଳେ ତାଙ୍କ ମନକୁ ଆସୁ ନ ଥିଲା । କହୁଥିଲେ, ''ଚାରିପାଖରେ ଲୋକେ ଠିଆ ହୋଇ ରହିଥିଲେ ମଧ୍ୟ ସେମାନଙ୍କୁ ଛାୟା ବା ଛବି ଅଙ୍କିତ ମୂର୍ତ୍ତି ପରି ଅବାନ୍ତର ମନେ ହେଉଥିଲା ଏବଂ ସେଥିପାଇଁ ମନରେ କୌଣସି ପ୍ରକାରର ଲଜ୍ଜା ବା ସଙ୍କୋଚ ହେଉ ନ ଥିଲା ! ଏପରି ଅସହ୍ୟ ଯନ୍ତ୍ରଣାରେ ବେଳେ ବେଳେ ବାହ୍ୟ ସଂଜ୍ଞାଶୂନ୍ୟ ହୋଇ ପଡୁଥିଲି ଏବଂ ଏପରି ହେବା ପରେ ହିଁ ମା'ଙ୍କ ବରାଭୟକରା ଚିନ୍ମୟୀ ମୂର୍ତ୍ତି ଦେଖୁଥିଲି—ଦେଖୁଥିଲି ସେହି ମୂର୍ତ୍ତି ହସୁଛି, କଥା କହୁଛି, ଏବଂ ଅଶେଷ ପ୍ରକାରରେ ସାନ୍ତ୍ୱନା ଓ ଶିକ୍ଷା ଦେଉଛି !''

# ସପ୍ତମ ଅଧ୍ୟାୟ

## ସାଧନା ଓ ଦିବ୍ୟୋନ୍ମତ୍ତତା

### ପ୍ରଥମ ଦର୍ଶନର ପର ଅବସ୍ଥା :

ଶ୍ରୀଶ୍ରୀଜଗଦମ୍ବାଙ୍କର ପ୍ରଥମ ଦର୍ଶନ ଲାଭର ଆନନ୍ଦରେ ଠାକୁର କେତେ ଦିନପାଇଁ କୌଣସି କର୍ମ କରିପାରିଲେ ନାହିଁ । ମନ୍ଦିର ପୂଜା ଆଦି ନିୟମିତ ରୂପରେ ସମ୍ପନ୍ନ କରିବା ତାଙ୍କ ପକ୍ଷରେ ଅସମ୍ଭବ ହୋଇପଡ଼ିଲା । ହୃଦୟ ଉକ୍ତ କାର୍ଯ୍ୟ ଅନ୍ୟ ଜଣେ ବ୍ରାହ୍ମଣଙ୍କ ସାହାଯ୍ୟରେ କୌଣସି ମତେ ସମ୍ପାଦନ କରାଇବାକୁ ଲାଗିଲେ ଏବଂ ମାମୁଁ ବାୟୁରୋଗରେ ଆକ୍ରାନ୍ତ ହୋଇଛନ୍ତି ଭାବି ତାଙ୍କର ଚିକିତ୍ସାରେ ମନୋନିବେଶ କଲେ । ଭୂକୈଳାସର ରାଜବାଟୀରେ ରହୁଥିବା ଏକ ସୁଯୋଗ୍ୟ ବୈଦ୍ୟଙ୍କ ସହିତ ଏହା ପୂର୍ବରୁ ତାଙ୍କର ପରିଚୟ ହୋଇଥିଲା; ହୃଦୟ ଏବେ ତାଙ୍କ ଦ୍ୱାରା ଠାକୁରଙ୍କର ଚିକିତ୍ସା କରାଇବାକୁ ଲାଗିଲେ ଏବଂ ରୋଗର ଶୀଘ୍ର ଉପଶମ ସମ୍ଭାବନା ନ ଦେଖି କାମାରପୁକୁରକୁ ଖବର ପଠାଇଲେ ।

### ଠାକୁରଙ୍କର ଏହି ସମୟର ଶାରୀରିକ ଅବସ୍ଥା ଓ ମାନସିକ ପ୍ରତ୍ୟକ୍ଷ ଏବଂ ଦର୍ଶନାଦି :

ଭଗବଦ୍ଦର୍ଶନ ନିମିତ୍ତ ଠାକୁର ଯେଉଁ ଦିନ ବ୍ୟାକୁଳତାରେ ଅସ୍ଥିର ବା ବାହ୍ୟଜ୍ଞାନଶୂନ୍ୟ ନ ହେଉଥିଲେ, ସେଦିନ ସେ ପୂର୍ବପରି ପୂଜା କରିଥାଆନ୍ତି । ପୂଜା ଏବଂ ଧ୍ୟାନ କରିବା ସମୟରେ ତାଙ୍କର ଯେପରି ଚିନ୍ତା ଓ ଅନୁଭବ ହେଉଥିଲା, ସେ ବିଷୟରେ ଠାକୁର ଆମକୁ ନିମ୍ନଲିଖିତ ଭାବରେ ବେଳେ ବେଳେ କିଛି କିଛି କହିଥିଲେ ।

''ମା'ଙ୍କ ନାଟ-ମନ୍ଦିର ଛାତର ତାଜାପାଖରେ ଯେଉଁ ଧ୍ୟାନସ୍ଥ ଭୈରବମୂର୍ତ୍ତି ଅଛି, ଧ୍ୟାନ କରିବାକୁ ଯିବା ସମୟରେ ତାଙ୍କୁ ଦେଖାଇ ମନକୁ କହୁଥିଲି, 'ସେହିପରି ସ୍ଥିର ନିସ୍ପନ୍ଦଭାବରେ ବସି ମା'ଙ୍କ ପାଦପଦ୍ମ ଚିନ୍ତା କରିବାକୁ ହେବ ।' ଧ୍ୟାନ କରିବାକୁ ବସିବାମାତ୍ରେ ଶୁଣିବାକୁ ପାଉଥିଲି, ଶରୀର ଏବଂ ଅଙ୍ଗପ୍ରତ୍ୟଙ୍ଗର ଗ୍ରନ୍ଥିଗୁଡ଼ିକରେ, ପାଦରୁ ଊର୍ଦ୍ଧ୍ୱ ପର୍ଯ୍ୟନ୍ତ ଖଟଖଟ କରି ଶବ୍ଦ ହେଉଛି ଏବଂ ଗୋଟିକ ପରେ ଗୋଟିଏ କରି ଗ୍ରନ୍ଥିଗୁଡ଼ିକ ଆବଦ୍ଧ ହୋଇଯାଉଛି — କିଏ ଯେପରି ଭିତରେ ଏସବୁ ସ୍ଥାନରେ ତାଲା ପକାଇ ଦେଉଛି । ଯେତେ ସମୟ ଧ୍ୟାନ କରେ ସେତେ ସମୟ ଶରୀରକୁ ଟିକେ ହଲାଇ ଏପାଖ-ସେପାଖ କରି ଆସନ ପରିବର୍ତ୍ତନ କରିନେବି ଅଥବା ଇଚ୍ଛା ମାତ୍ରେ ହିଁ ଧ୍ୟାନଛାଡ଼ି ଅନ୍ୟତ୍ର ଯିବି ବା ଅନ୍ୟ କାର୍ଯ୍ୟରେ ନିଯୁକ୍ତ ହେବି, ସେହି ସାମର୍ଥ୍ୟ ରହୁ ନ ଥିଲା ! ପୂର୍ବପରି ଖଟଖଟ ଶବ୍ଦ କରି — ଏଥର ଉପର ଆଡୁ ପାଦ ପର୍ଯ୍ୟନ୍ତ — ପୁନର୍ବାର ଯେପର୍ଯ୍ୟନ୍ତ ସେ ଗ୍ରନ୍ଥିଗୁଡ଼ିକ ଖୋଲି ନ ଯାଏ, ସେତେ

ସମୟ କିଏ ଯେପରି ଜୋର୍ କରି ବସାଇ ରଖୁଥିଲା ! ଧ୍ୟାନ କରିବାକୁ ବସି ପ୍ରଥମେ ପ୍ରଥମେ ଖଦ୍ୟୋତପୁଞ୍ଜ ପରି ଜ୍ୟୋତିର୍ବିନ୍ଦୁସମୂହ ଦେଖିବାକୁ ପାଉଥିଲି; ବେଳେବେଳେ କୁହୁଡ଼ିପରି ପୁଞ୍ଜ ପୁଞ୍ଜ ଜ୍ୟୋତିଃରେ ଚତୁର୍ଦ୍ଦିଗ ବ୍ୟାପ୍ତ ଦେଖୁଥିଲି; କେତେବେଳେ ପୁଣି ତରଳ ରୂପାପରି ଉଜ୍ଜ୍ୱଳ ଜ୍ୟୋତିଃ-ତରଙ୍ଗରେ ସମୁଦାୟ ପଦାର୍ଥ ପରିବ୍ୟାପ୍ତ ଦେଖୁଥିଲି । ଚକ୍ଷୁ ମୁଦ୍ରିତ କରି ଏପରି ଦେଖୁଥିଲି; ପୁଣି ଅନେକ ସମୟରେ ଆଖି ଖୋଲିଲେ ମଧ୍ୟ ଏପରି ଦେଖେ । କ'ଣ ଦେଖୁଛି ତାହା ବୁଝେ ନାହିଁ, ଏପରି ଦର୍ଶନ ହେବା ଭଲ କି ମନ୍ଦ ତାହା ମଧ୍ୟ ଜାଣେ ନାହିଁ; ତେଣୁ ମା'ଙ୍କ (ଜଗନ୍ମାତାଙ୍କ) ନିକଟରେ ବ୍ୟାକୁଳ ଭାବରେ ପ୍ରାର୍ଥନା କରୁଥିଲି — 'ମା', ମୋର କ'ଣ ହେଉଛି କିଛି ବୁଝିପାରୁ ନାହିଁ; ତୋତେ ଡାକିବା ପାଇଁ ମନ୍ତ୍ର ତନ୍ତ୍ର କିଛି ଜାଣେ ନାହିଁ; ଯାହା କଲେ ତୋତେ ପାଇବି, ତୁ ତାହା ମୋତେ ଶିଖାଇ ଦେ' । ତୁ ନ ଶିଖାଇଲେ କିଏ ମୋତେ ଶିଖାଇବ, ମା' ତୋ ଛଡ଼ା ମୋର ଅନ୍ୟ ଗତି ବା ସହାୟ ଆଉ କେହି ନାହିଁ !' ଏକାଗ୍ର ମନରେ ଏପରି ପ୍ରାର୍ଥନା କରୁଥିଲି ଏବଂ ପ୍ରାଣର ବ୍ୟାକୁଳତାରେ କ୍ରନ୍ଦନ କରୁଥିଲି !''

### ପ୍ରଥମ ଦର୍ଶନଲାଭରେ ଠାକୁରଙ୍କର ପ୍ରତ୍ୟେକ ଚେଷ୍ଟା ଓ ଭାବରେ କିପରି ପରିବର୍ତ୍ତନ ହୋଇଥିଲା :

ଠାକୁରଙ୍କର ପୂଜାଧ୍ୟାନ ଇତ୍ୟାଦି ଏହି ସମୟରେ ଏକ ଅଭିନବ ଆକାର ଧାରଣ କରିଥିଲା । ସେହି ଅଦ୍ଭୁତ ତନ୍ମୟଭାବ, ଶ୍ରୀଶ୍ରୀ ଜଗନ୍ମାତାଙ୍କୁ ଆଶ୍ରୟ କରି ବାଳକ ସଦୃଶ ସରଳ ବିଶ୍ୱାସ ଓ ନିର୍ଭରତାର ମାଧୁର୍ଯ୍ୟ ଅନ୍ୟକୁ ବୁଝାଇବା କଠିନ । ପ୍ରବୀଣର ଗାମ୍ଭୀର୍ଯ୍ୟ, ପୁରୁଷକାର-ଅବଲମ୍ବନରେ ଦେଶକାଳପାତ୍ର ଭେଦରେ ବିଧିନିଷେଧ ମାନି ଚଳିବା କିମ୍ବା ଭବିଷ୍ୟତ ଭାବି ସବୁଆଡ଼କୁ ଦୃଷ୍ଟି ଦେଇ ବ୍ୟବହାର କରିବା ଇତ୍ୟାଦିର କିଛି ହିଁ ଏଥିରେ ଲକ୍ଷିତ ହେଉ ନ ଥିଲା । ଦେଖିଲେ ମନେ ହେଉଥିଲା, 'ମା, ତୋ'ର ଶରଣାଗତ ବାଳକକୁ ଯାହା କହିବାକୁ ଓ କରିବାକୁ ହେବ, ତୁ ହିଁ ତାହା କୁହା ଓ କରା' — ସର୍ବାନ୍ତଃକରଣରେ ଏପରି ଭାବ ଆଶ୍ରୟପୂର୍ବକ ଇଚ୍ଛାମୟୀଙ୍କର ଇଚ୍ଛା ଭିତରେ ନିଜର କ୍ଷୁଦ୍ର ଇଚ୍ଛା ଓ ଅଭିମାନ ବୁଡ଼ାଇ ରଖି ଏକପ୍ରକାର ଯନ୍ତ୍ରସ୍ୱରୂପ ହୋଇ ହିଁ ସେ ଏବେ ସମସ୍ତ କାର୍ଯ୍ୟ କରୁଛନ୍ତି । ଏଥିରେ ସାଧାରଣ ମନୁଷ୍ୟର ବିଶ୍ୱାସ ଓ କାର୍ଯ୍ୟକଳାପ ସହିତ ତାଙ୍କର ବ୍ୟବହାର-ଚେଷ୍ଟାଦିର ବିଶେଷ ବିରୋଧ ଆରମ୍ଭ ହୋଇ, ନାନା ଲୋକେ ନାନା କଥା ପ୍ରଥମେ ଅସ୍ଫୁଟଜଳ୍ପନାରେ ଓ ପରେ ଉଚ୍ଚସ୍ୱରରେ କହିବାକୁ ଆରମ୍ଭ କରିଥିଲେ । କିନ୍ତୁ କ'ଣ ହେବ ? ଜଗଦମ୍ବାଙ୍କର ବାଳକ ଏବେ ତାଙ୍କର ହିଁ ଇଚ୍ଛାରେ ଯାହା କରିବା କଥା କରୁଥିଲେ, କ୍ଷୁଦ୍ର ସଂସାରର ବୃଥା କୋଳାହଳ ତାଙ୍କର କର୍ଣ୍ଣରେ ଏବେ କିଛି ମାତ୍ର ପ୍ରବେଶ କରୁ ନ ଥିଲା ! ଏବେ ସେ ସଂସାରରେ ଥାଇ ମଧ୍ୟ

ସଂସାରରେ ନ ଥିଲେ । ବହିର୍ଜଗତ ଏବେ ତାଙ୍କ ନିକଟରେ ସ୍ୱପ୍ନରାଜ୍ୟରେ ପରିଣତ ହୋଇଥିଲା; ଚେଷ୍ଟା କରି ମଧ୍ୟ ସେଥିରେ ସେ ଆଉ ପୂର୍ବପରି ବାସ୍ତବତା ଆଣି ପାରୁ ନ ଥିଲେ ଏବଂ ଶ୍ରୀଶ୍ରୀଜଗଦମ୍ବାଙ୍କର ଚିନ୍ମୟୀ ଆନନ୍ଦଘନମୂର୍ତ୍ତି ହିଁ ଏବେ ତାଙ୍କ ନିକଟରେ ଏକମାତ୍ର ସାର ପଦାର୍ଥ ବୋଲି ପ୍ରତୀୟମାନ ହେଉଥିଲା ।

## ଠାକୁରଙ୍କର ଏହାପୂର୍ବରୁ ଏବଂ ଏହି ସମୟରେ ପୂଜା ଓ ଦର୍ଶନ ଇତ୍ୟାଦିର ପ୍ରଭେଦ :

ପୂଜା ଧ୍ୟାନ ଆଦି କରିବାକୁ ବସି ଠାକୁର ଏହାପୂର୍ବରୁ କୌଣସି ଦିନ ଦେଖନ୍ତି ମା'ଙ୍କ ହସ୍ତ, ବା କମଳୋଜ୍ଜ୍ୱଳ ପଦଯୁଗଳ, 'ସୌମ୍ୟାତ୍‌ସୌମ୍ୟ' ହାସ୍ୟଦୀପ୍ତ ସ୍ନିଗ୍ଧ ଚନ୍ଦ୍ରମୁଖଟିକୁ—ଏବେ ପୂଜା ଓ ଧ୍ୟାନ ସମୟ ବ୍ୟତୀତ ଅନ୍ୟ ସମୟରେ ମଧ୍ୟ ଦେଖିବାକୁ ପାଉଥିଲେ ସର୍ବାବୟବସମ୍ପନ୍ନା ଜ୍ୟୋତିର୍ମୟୀ ମା' ହସୁଛନ୍ତି, କଥା କହୁଛନ୍ତି, 'ଏହା କର, ତାହା କର ନାହିଁ' କହି ତାଙ୍କ ସହିତ ବୁଲୁଛନ୍ତି ।

ପୂର୍ବେ ମା'ଙ୍କୁ ଅନ୍ନ ନିବେଦନ କରି ଦେଖୁଥିଲେ, ମା'ଙ୍କ ନୟନରୁ ଅପୂର୍ବ ଜ୍ୟୋତିଃରଶ୍ମି ନିର୍ଗତ ହୋଇ, ନିବେଦିତ ଆହାର୍ଯ୍ୟସମୁଦାୟ ସ୍ପର୍ଶ ଓ ତାହାର ସାରଭାଗ ଗ୍ରହଣ କରି ପୁନରାୟ ନୟନରେ ସଂହୃତ ହେଉଛି ! ଏବେ ଦେଖିବାକୁ ପାଉଥିଲେ, ଭୋଗ ନିବେଦନ କରିବା ମାତ୍ରେ ଏବଂ ବେଳେବେଳେ ଭୋଗଦେବା ପୂର୍ବରୁ ହିଁ ମା' ତାଙ୍କ ଶ୍ରୀଅଙ୍ଗର ପ୍ରଭାରେ ମନ୍ଦିର ଆଲୋକିତ କରି ସାକ୍ଷାତ ଖାଇବାକୁ ବସିଯାଇଛନ୍ତି ! ହୃଦୟଙ୍କ ନିକଟରୁ ଶୁଣିଛି, ପୂଜାସମୟରେ ଦିନେ ସେ ସହସା ପହଞ୍ଚି ଦେଖିଲେ ଠାକୁର ଜଗଦମ୍ବାଙ୍କର ପାଦପଦ୍ମରେ ମନ୍ଦାର ବିଲ୍ୱପତ୍ର ଅର୍ଘ୍ୟ ଦେବେ ବୋଲି ତାହା ହସ୍ତରେ ଧାରଣ କରି ତନ୍ମୟ ହୋଇ ଚିନ୍ତା କରୁ କରୁ ସହସା ଚିତ୍କାର କରି ଉଠିଲେ, 'ରହ, ରହ ଆଗେ ମନ୍ତ୍ରଟା କହେ, ତା'ପରେ ଖାଇବୁ', ଏବଂ ପୂଜା ସମ୍ପୂର୍ଣ୍ଣ ନ କରି ପ୍ରଥମେ ହିଁ ନୈବେଦ୍ୟ ନିବେଦନ କରିଦେଲେ ।

ପୂର୍ବେ ଧ୍ୟାନପୂଜାଦି ସମୟରେ ଦେଖୁଥିଲେ, ସମ୍ମୁଖସ୍ଥ ପାଷାଣମୟୀ ମୂର୍ତ୍ତିରେ ଏକ ଜୀବନ୍ତ ଜାଗ୍ରତ ଅଧିଷ୍ଠାନ ଆବିର୍ଭୂତ ହୋଇଅଛି—ଏବେ ମନ୍ଦିର ମଧ୍ୟରେ ପଶି ପାଷାଣମୟୀଙ୍କୁ ଆଉ ଦେଖିବାକୁ ପାଉ ନ ଥିଲେ । ଦେଖୁଥିଲେ, ଯାହାର ଚୈତନ୍ୟରେ ସମଗ୍ର ଜଗତ ଚୈତନ୍ୟମୟ ହୋଇ ରହିଅଛି, ସେ ହିଁ ଚିଦ୍‌ଘନମୂର୍ତ୍ତି ପରିଗ୍ରହପୂର୍ବକ ବରାଭୟକର-ସୁଶୋଭିତା ହୋଇ ସେଠାରେ ସର୍ବଦା ବିରାଜିତା ! ଠାକୁରେ କହୁଥିଲେ, ''ନାସିକାରେ ହାତ ଦେଇ ଦେଖିଛି, ମା' ସତକୁ ସତ ନିଃଶ୍ୱାସ ନେଉଛନ୍ତି । ତନ୍ନତନ୍ନ କରି ଦେଖି ମଧ୍ୟ ରାତ୍ରି କାଳରେ ଦୀପାଲୋକରେ ମନ୍ଦିରରେ ମା'ଙ୍କ ଦିବ୍ୟଅଙ୍ଗର ଛାୟା କେତେବେଳେ ପତିତ ହେବାର ଦେଖି ନାହିଁ । ନିଜର କୋଠରୀରେ ବସି ଶୁଣିଛି, ମା' ପାଉଁଜି ପିନ୍ଧି

ବାଳିକା ପରି ଆନନ୍ଦିତା ହୋଇ ଝମ୍‌ଝମ୍ ଶବ୍ଦ କରି ମନ୍ଦିରର ଉପର ମହଲାକୁ ଉଠୁଛନ୍ତି । ଦ୍ରୁତ ପଦରେ କୋଠରୀ ବାହାରେ ଆସି ଦେଖିଛି, ସତରେ ହିଁ ମା' ମନ୍ଦିରର ଦୋତାଲା ବାରଣ୍ଡାରେ ଆଲୁଳାୟିତକେଶରେ ଠିଆ ହୋଇ କେତେବେଳେ କଲିକତା ଓ କେତେବେଳେ ଗଙ୍ଗା ଦର୍ଶନ କରୁଛନ୍ତି ।''

**ଠାକୁରଙ୍କର ଏହି ସମୟରେ ପୂଜାଦି ସମ୍ବନ୍ଧରେ ହୃଦୟଙ୍କର କଥା :**

ହୃଦୟ କହୁଥିଲେ, ''ଠାକୁର ଯେତେବେଳେ ଶ୍ରୀମନ୍ଦିରରେ ଥାଆନ୍ତି ସେତେବେଳେ ତ' କଥା ହିଁ ନାହିଁ, ଅନ୍ୟ ସମୟରେ ମଧ୍ୟ ଏବେ କାଳୀଙ୍କ ଘରେ ପଶିଗଲେ ଏକ ଅନିର୍ବଚନୀୟ ଦିବ୍ୟାବେଶ ଅନୁଭୂତ ହୋଇ ଦେହଟା 'ଝିମ୍‌ଝିମ୍' କରୁଥିଲା । ପୂଜା ସମୟରେ ଠାକୁର କିପରି ବ୍ୟବହାର କରନ୍ତି, ତାହା ଦେଖିବାର ଲୋଭ ଛାଡ଼ି ପାରୁ ନ ଥିଲି । ଅନେକ ସମୟ ସେଠାରେ ପହଞ୍ଚି ଯାହା ଦେଖେ, ସେଥିରେ ଅନ୍ତର ବିସ୍ମୟଭକ୍ତିରେ ପୂର୍ଣ୍ଣ ହୋଇଯାଉଥିଲା । ବାହାରକୁ ଆସିଲା ପରେ କିନ୍ତୁ ମନରେ ସନ୍ଦେହ ହୁଏ । ଭାବୁଥିଲି, ମାମୁଁ କ'ଣ ସତରେ ପାଗଳ ହୋଇଗଲେ ? ନ ହେଲେ ପୂଜା ବେଳେ ଏପରି ବ୍ୟବହାର କରନ୍ତି କାହିଁକି ? ରାଣୀମାତା ଓ ମଥୁରବାବୁ ଏହିପରି ପୂଜା କଥା ଜାଣି ପାରିଲେ କ'ଣ ମନେ କରିବେ, ଭାବି ମନରେ ବହୁତ ଭୟ ମଧ୍ୟ ହେଉଥିଲା । ମାମୁଁଙ୍କର କିନ୍ତୁ ଏପରି କଥା ଆଦୌ ମନରେ ଆସେ ନାହିଁ ଏବଂ କହିଲେ ମଧ୍ୟ ସେଥିରେ କର୍ଣ୍ଣପାତ କରନ୍ତି ନାହିଁ । ଏସମୟରେ ଅଧିକ କଥା ମଧ୍ୟ ତାଙ୍କୁ କହିପାରୁ ନ ଥିଲି; ଏକ ଅବ୍ୟକ୍ତ ଭୟ ଓ ସଙ୍କୋଚ ଆସି ମୁହଁକୁ ଚାପିଧରେ ଏବଂ ତାଙ୍କର ଓ ମୋ ମଧ୍ୟରେ ଏକ ଅନିର୍ବଚନୀୟ ଦୂରତ୍ୱର ବ୍ୟବଧାନ ଅନୁଭବ କରୁଥିଲି । ଅଗତ୍ୟା ନୀରବରେ ତାଙ୍କର ଯଥାସାଧ୍ୟ ସେବା କରିଯାଏ । ମନରେ କିନ୍ତୁ ଭାବୁଥିଲି, ମାମୁଁ ନ ଜାଣେ କୌଣସି ଦିନ କ'ଣ ଗୋଟିଏ କାଣ୍ଡ କରି ବସିବେ !''

ପୂଜା ସମୟରେ ମନ୍ଦିର ମଧ୍ୟରେ ହଠାତ୍ ପହଞ୍ଚି ଠାକୁରଙ୍କ ଯେଉଁ ସମସ୍ତ କାର୍ଯ୍ୟ ଦେଖି ହୃଦୟଙ୍କଠାରେ ବିସ୍ମୟ, ଭୟ ଏବଂ ଭକ୍ତି ଉପୁଜୁଥିଲା, ସେ ବିଷୟରେ ସେ ଆମମାନଙ୍କୁ ଏହିପରି କହିଥିଲେ—

''ଦେଖୁଥିଲି ଯେ, ମନ୍ଦାର ବେଲପତ୍ର ଅର୍ଘ୍ୟ ସଜାଇ ମାମୁଁ ପ୍ରଥମେ ଏହା ଦ୍ୱାରା ନିଜ ମସ୍ତକ, ବକ୍ଷ, ସର୍ବାଙ୍ଗ, ଏପରିକି ନିଜର ପାଦ ପର୍ଯ୍ୟନ୍ତ ସ୍ପର୍ଶ କରି ପରେ ଏହାକୁ ଜଗଦମ୍ବାଙ୍କର ପାଦପଦ୍ମରେ ଅର୍ପଣ କଲେ ।

''ଦେଖୁଥିଲି, ମାତାଲ ସଦୃଶ ତାଙ୍କର ବକ୍ଷସ୍ଥଳ ଏବଂ ଚକ୍ଷୁ ଆରକ୍ତିମ ହୋଇ ଉଠିଛି ଏବଂ ସେହି ଅବସ୍ଥାରେ ଟଳି ଟଳି ପୂଜାସନ ତ୍ୟାଗକରି ସିଂହାସନ ଉପରେ ଉଠି ସସ୍ନେହରେ ଜଗଦମ୍ବାଙ୍କର ଚିବୁକ ଧରି ଆଦର, ଗାନ, ପରିହାସ

ବା କଥୋପକଥନ କରିବାକୁ ଲାଗିଲେ, ଅଥବା ଶ୍ରୀମୂର୍ତ୍ତିଙ୍କର ହାତଧରି ନାଚିବାକୁ ଆରମ୍ଭ କଲେ !

"ଦେଖେ ଯେ, ଶ୍ରୀଶ୍ରୀଜଗଦମ୍ବାଙ୍କୁ ଅନ୍ନ ବ୍ୟଞ୍ଜନ ଭୋଗ ନିବେଦନ କରୁ କରୁ ସେ ହଠାତ୍ ଉଠିପଡ଼ିଲେ ଏବଂ ଥାଳିରୁ ଗୁଣ୍ଡାଏ ଅନ୍ନବ୍ୟଞ୍ଜନ ନେଇ ଦ୍ରୁତପଦରେ ସିଂହାସନ ଉପରକୁ ଉଠି ମା'ଙ୍କ ମୁଖରେ ସ୍ପର୍ଶ କରାଇ କହିବାକୁ ଲାଗିଲେ—'ଖାଆ, ମା' ଖାଆ ! ଭଲ କରି ଖାଆ !' ପରେ କହିଲେ, 'ମୁଁ ଖାଇବି ? ଆଚ୍ଛା, ଖାଉଛି !" —ଏପରି କହି ଏଥିରୁ କିଛିଟା ନିଜେ ଗ୍ରହଣ କରି ଅବଶିଷ୍ଟ ମା'ଙ୍କ ମୁଖରେ ଦେଇ କହିବାକୁ ଲାଗିଲେ, 'ମୁଁ ତ ଖାଇଛି, ଏଥର ତୁ ଖାଆ !'

"ଦିନେ ଦେଖିଲି, ଭୋଗ ନିବେଦନ କରିବା ସମୟରେ ଗୋଟିଏ ବିଲେଇ କାଳୀମନ୍ଦିରରେ ପଶି ମ୍ୟାଉଁ ମ୍ୟାଉଁ କରିବା ଦେଖି ମାମୁଁ 'ଖାଇବୁ ମା, ଖାଇବୁ ମା' କହି ଭୋଗର ଅନ୍ନ ତାକୁ ଖୁଆଇବାକୁ ଲାଗିଲେ !

"ଦେଖେ, ଦିନେ ରାତିରେ ଜଗନ୍ମାତାଙ୍କୁ ଶୟନ କରାଇ—'ମା' ମା' ମୋତେ ପାଖରେ ଶୋଇବାକୁ କହୁଛୁ—ଆଚ୍ଛା, ଶୋଉଛି' କହି ଜଗନ୍ମାତାଙ୍କର ରୂପାରେ ତିଆରି ଖଟ ଉପରେ କିଛିକ୍ଷଣ ଶୋଇରହିଲେ ।

"ପୁଣି ଦେଖିଛି, ପୂଜା କରିବାକୁ ବସି ସେ ଏପରି ତନ୍ମୟ ଭାବରେ ଧ୍ୟାନରେ ନିମଗ୍ନ ହୋଇଗଲେ ଯେ, ବହୁକ୍ଷଣ ପର୍ଯ୍ୟନ୍ତ ତାଙ୍କର ବାହ୍ୟଚେତନାର ଲେଶମାତ୍ର ରହିଲା ନାହିଁ ।

ପ୍ରତ୍ୟୁଷରୁ ଉଠି ମା-କାଳୀଙ୍କ ମାଳ ଗୁନ୍ଥିବା ପାଇଁ ମାମୁଁ ପ୍ରତିଦିନ ପୁଷ୍ପ ଚୟନ କରୁଥିଲେ । ଦେଖିଛି, ସେତେବେଳେ ମଧ୍ୟ ସେ ଯେପରି କାହା ସହିତ କଥା ହେଉଛନ୍ତି, ହସୁଛନ୍ତି, ଆଦର ଅଳି, ରଙ୍ଗ ପରିହାସାଦି କରୁଛନ୍ତି ।

"ଆହୁରି ଦେଖିଛି, ରାତିରେ ମାମୁଁ ଆଦୌ ଶୁଅନ୍ତି ନାହିଁ ! ଯେତେବେଳେ ମୋର ନିଦ ଭାଙ୍ଗିଛି, ସେତେବେଳେ ହିଁ ଦେଖିଛି ସେ ଯେପରି ଗୋଟିଏ ଭାବରେ ପ୍ରଭାବିତ ହୋଇ କଥା କହୁଛନ୍ତି; ଗୀତ ଗାଉଛନ୍ତି କିମ୍ବା ପଞ୍ଚବଟୀକୁ ଯାଇ ସେଠାରେ ଧ୍ୟାନରେ ନିମଗ୍ନ ରହୁଛନ୍ତି ।"

**ଠାକୁରଙ୍କର ରାଗାତ୍ମିକା ପୂଜା ଦେଖି କାଳୀମନ୍ଦିରର ଖାଜାଞ୍ଚିପ୍ରମୁଖ କର୍ମଚାରୀମାନଙ୍କର ଆଲୋଚନା ଓ ମଥୁରବାବୁଙ୍କ ନିକଟକୁ ଖବର ପଠାଇବା :**

ହୃଦୟ କହୁଥିଲେ, ଠାକୁରଙ୍କୁ ଏପରି କରିବା ଦେଖି ମନରେ ଆଶଙ୍କା ଉପୁଜିଲେ ମଧ୍ୟ ଏହି ସମସ୍ତ କଥା ଅନ୍ୟମାନଙ୍କ ପାଖରେ ପ୍ରକାଶ କରି କ'ଣ କରିବା କର୍ତ୍ତବ୍ୟ, ତଦ୍‌ବିଷୟରେ ପରାମର୍ଶ ନେବା ପାଇଁ ତାଙ୍କର ଉପାୟ ନ ଥିଲା, କାରଣ ଯଦି ସେ ମନ୍ଦିରର ଉଚ୍ଚପଦସ୍ଥ କର୍ମଚାରୀଙ୍କ ନିକଟରେ ଏହା ପ୍ରକାଶ କରନ୍ତି

ତେବେ ସେମାନେ ଏକଥା ବାବୁଙ୍କର କାନରେ ପକାଇ ହୁଏତ ତାଙ୍କ ମାମୁଁଙ୍କର ଅନିଷ୍ଟ କରିବେ । କିନ୍ତୁ ପ୍ରତିଦିନ ଯେତେବେଳେ ଏପରି ହେବାକୁ ଲାଗିଲା, ସେତେବେଳେ ସେହି କଥା କିପରି ଲୁଚି ରହିବ ? ଅନ୍ୟମାନେ ମଧ୍ୟ ବେଳେ ବେଳେ ତାଙ୍କର ପୂଜା କରିବା ସମୟରେ କାଳୀ ମନ୍ଦିରକୁ ଆସି ଏସବୁ ଆଚରଣ ସ୍ୱଚକ୍ଷୁରେ ଦେଖି ଖାଜାଞ୍ଚିପ୍ରମୁଖ କର୍ମଚାରୀମାନଙ୍କ ନିକଟରେ ଅଭିଯୋଗ କଲେ । ସେମାନେ ଏକଥା ଶୁଣି କାଳୀ ମନ୍ଦିରକୁ ଆସି ସ୍ୱଚକ୍ଷୁରେ ଏସମସ୍ତ ପ୍ରତ୍ୟକ୍ଷ କଲେ; କିନ୍ତୁ ଠାକୁରଙ୍କର ଦେବତାବିଷ୍ଟସଦୃଶ ଚେହେରା, ଅସଙ୍କୋଚ ବ୍ୟବହାର ଓ ନିର୍ଭୀକ ଉନ୍ମନାଭାବ ଦେଖି ଏକ ଅଜଣା ଭୟରେ ସଙ୍କୁଚିତ ହୋଇ ସହସା ତାହାଙ୍କୁ କିଛି କହିବାକୁ କିମ୍ବା ନିଷେଧ କରିବାକୁ ବିଫଳ ହେଲେ । ଦପ୍ତରଖାନାରେ ବସି ସମସ୍ତେ ପରାମର୍ଶ କରି ସ୍ଥିର କଲେ—ହୁଏତ ଭଟ୍ଟାଚାର୍ଯ୍ୟ ପାଗଳ ହୋଇଯାଇଛନ୍ତି, ନ ହେଲେ ତାଙ୍କଠାରେ ଉପଦେବତାଙ୍କର ଆବେଶ ହୋଇଅଛି ! ନତୁବା ପୂଜା ସମୟରେ କେହି ଏପରି ଶାସ୍ତ୍ରବିରୁଦ୍ଧ ସ୍ୱେଚ୍ଛାଚାର କରିପାରେ ନାହିଁ; ଯା'ହେଉ, ଦେବୀଙ୍କର ପୂଜା, ଭୋଗ ଇତ୍ୟାଦି ହେଉ ନାହିଁ; ସେ ସବୁ ନଷ୍ଟ କରିଛନ୍ତି; ତେଣୁ ବାବୁମାନଙ୍କୁ ଏକଥା ଜଣାଇବା ଆମର କର୍ତ୍ତବ୍ୟ ।

### ଠାକୁରଙ୍କର ପୂଜା ଦେଖିବାକୁ ମଥୁରବାବୁଙ୍କର ଆଗମନ ଓ ସେ ବିଷୟରେ ଧାରଣା :

ମଥୁରବାବୁଙ୍କ ନିକଟକୁ ଖବର ପଠାଗଲା । ଉତ୍ତରରେ ସେ କହିପଠାଇଲେ, ଶୀଘ୍ର ନିଜେ ଯାଇ ଏବିଷୟରେ ଯଥାବିଧାନ କରିବେ । ସେ ଯେପର୍ଯ୍ୟନ୍ତ ତାହା ନ କରିଛନ୍ତି, ଭଟ୍ଟାଚାର୍ଯ୍ୟ ମହାଶୟ ଯେପରି ପୂଜା ଇତ୍ୟାଦି କରୁଛନ୍ତି, ସେପରି ହିଁ କରିବେ; ତଦ୍‌ବିଷୟରେ କେହି ଯେପରି ବାଧା ନ ଦିଅନ୍ତି । ମଥୁରବାବୁଙ୍କର ଏପରି ପତ୍ର ପାଇ ସମସ୍ତେ ତାଙ୍କର ଆଗମନକୁ ଉତ୍କଣ୍ଠାର ସହିତ ଅପେକ୍ଷା କରି ରହିଲେ ଏବଂ 'ଏଥର ଭଟ୍ଟାଚାର୍ଯ୍ୟ ପଦଚ୍ୟୁତ ହେବେ, ବାବୁ ଆସି ତାଙ୍କୁ ବିଦାୟ କରିବେ—ଦେବତାଙ୍କଠାରେ ଅପରାଧ, ଦେବତା କେତେଦିନ ସହିବେ କୁହ,' ଇତ୍ୟାଦି ନାନା କଳ୍ପନା ଜଳ୍ପନା ସେମାନଙ୍କ ଭିତରେ ଚାଲିବାକୁ ଲାଗିଲା ।

ମଥୁରବାବୁ କାହାକୁ କିଛି ନ ଜଣାଇ ଦିନେ ପୂଜା ସମୟରେ ହଠାତ୍ ଆସି ସିଧା କାଳୀମନ୍ଦିରରେ ପ୍ରବେଶ କଲେ ଏବଂ ଅନେକ ସମୟ ଧରି ଠାକୁରଙ୍କର କାର୍ଯ୍ୟକଳାପ ଦେଖିବାକୁ ଲାଗିଲେ । ଭାବବିଭୋର ଠାକୁର କିନ୍ତୁ ତାହା ଆଦୌ ଲକ୍ଷ୍ୟ କଲେ ନାହିଁ । ପୂଜାବେଳେ ମା'କୁ ନେଇ ସେ ପ୍ରତିଦିନ ତନ୍ମୟ ହୋଇ ରହୁଥିଲେ, ମନ୍ଦିରକୁ କିଏ ଆସୁଛି, ଯାଉଛି, ସେଥିପ୍ରତି ତାଙ୍କର ଆଦୌ ଜ୍ଞାନ ରହୁ ନ ଥିଲା । ଶ୍ରୀଯୁକ୍ତ ମଥୁରମୋହନ ଆସିବାମାତ୍ରେ ଏହି ବିଷୟଟି ବୁଝିପାରିଥିଲେ । ଶ୍ରୀଶ୍ରୀଜଗନ୍ମାତାଙ୍କ ନିକଟରେ ତାଙ୍କର ବାଳକ ସଦୃଶ ଅଳି, ଅନୁରୋଧ ପ୍ରଭୃତି

ଦେଖି ତାହା ଯେ ଐକାନ୍ତିକ ପ୍ରେମଭକ୍ତିପ୍ରସୂତ, ତାହା ମଧ୍ୟ ବୁଝିଲେ । ତାଙ୍କର ମନେ ହେଲା, ଏପରି ଅକପଟ ଭକ୍ତିବିଶ୍ୱାସରେ ଯଦି ମା'ଙ୍କୁ ପାଇ ନ ହେବ ତେବେ କେଉଁଥିରେ ତାଙ୍କର ଦର୍ଶନଲାଭ ହେବ ? ପୂଜା କରୁ କରୁ ଠାକୁରଙ୍କର କେତେବେଳେ ଗଳଦଶ୍ରୁଧାରା, କେତେବେଳେ ଅକପଟ ଉଦ୍ଦାମ ଉଲ୍ଲାସ ଏବଂ କେତେବେଳେ ଜଡ଼ ସଦୃଶ ସଂଜ୍ଞାଶୂନ୍ୟତା, ଅବିଚଳତା ଏବଂ ବାହ୍ୟବିଷୟରେ ସମ୍ପୂର୍ଣ୍ଣ ଲକ୍ଷ୍ୟରାହିତ୍ୟ ଦେଖି ତାଙ୍କର ହୃଦୟ ଏକ ଅପୂର୍ବ ଆନନ୍ଦରେ ପୂର୍ଣ୍ଣ ହୋଇଗଲା । ସେ ଅନୁଭବ କରିବାକୁ ଲାଗିଲେ, ଶ୍ରୀମନ୍ଦିର ଦେବପ୍ରକାଶରେ ଯଥାର୍ଥ ହିଁ ଝଲମଲ କରୁଅଛି ! ତାଙ୍କର ସ୍ଥିର ବିଶ୍ୱାସ ହେଲା ଭଟ୍ଟାଚାର୍ଯ୍ୟ ମହାଶୟ ଜଗନ୍ମାତାଙ୍କର କୃପାଲାଭରେ ଧନ୍ୟ ହୋଇଛନ୍ତି । ଅନନ୍ତର ଭକ୍ତିପୂତଚିତ୍ତରେ ସଜଳନୟନରେ ଶ୍ରୀଶ୍ରୀଜଗନ୍ମାତା ଓ ତାଙ୍କର ଅପୂର୍ବ ପୂଜକଙ୍କୁ ଦୂରରୁ ବାରମ୍ବାର ପ୍ରଣାମ କରି କହିବାକୁ ଲାଗିଲେ, ''ଏତେଦିନ ପରେ ଦେବୀପ୍ରତିଷ୍ଠା ସାର୍ଥକ ହେଲା, ଏତେଦିନ ପରେ ଶ୍ରୀଶ୍ରୀଜଗନ୍ମାତା ସତରେ ଏଠାରେ ଆବିର୍ଭୂତ ହେଲେ, ଏବଂ ଏତେଦିନରେ ମା'ଙ୍କର ପୂଜା ଠିକ୍ ଭାବରେ ସମ୍ପନ୍ନ ହେଲା ।'' କର୍ମଚାରୀମାନଙ୍କୁ କିଛି ନ କହି ସେ ସେଦିନ ଗୃହକୁ ପ୍ରତ୍ୟାବର୍ତ୍ତନ କଲେ । ପରଦିନ ମନ୍ଦିରର ପ୍ରଧାନ କର୍ମଚାରୀଙ୍କୁ ନିର୍ଦ୍ଦେଶ ଆସିଲା, 'ଭଟ୍ଟାଚାର୍ଯ୍ୟ ମହାଶୟ ଯେପରି ଭାବରେ ପୂଜା କରନ୍ତୁ ନା କାହିଁକି, ତାଙ୍କୁ କେହି ବାଧା ଦେବେ ନାହିଁ ।'[୧]

## ପ୍ରବଳ ଈଶ୍ୱର ପ୍ରେମରେ ଠାକୁରଙ୍କର ରାଗାତ୍ମିକା ଭକ୍ତିଲାଭ ଏବଂ ଏହି ଭକ୍ତିର ଫଳ :

ପୂର୍ବୋକ୍ତ ଘଟଣାବଳୀ ଶୁଣି ଶାସ୍ତ୍ରଜ୍ଞ ପାଠକମାନେ ଏକଥା ସହଜରେ ବୁଝିପାରିବେ ଯେ, ବୈଧୀ ଭକ୍ତିର ବିଧିବଦ୍ଧ ସୀମା ଅତିକ୍ରମ କରି ଠାକୁରଙ୍କର ମନ ଏବେ ଅହେତୁକ ପ୍ରେମଭକ୍ତିର ଉଚ୍ଚମାର୍ଗରେ ପ୍ରବଳବେଗରେ ଧାବିତ ହେଉଥିଲା । ଏପରି ସରଳ ସ୍ୱାଭାବିକଭାବରେ ସେହି ଘଟଣା ସଙ୍ଘଟିତ ହୋଇଥିଲା ଯେ, ଅନ୍ୟମାନଙ୍କ କଥା ଦୂରରେ ଥାଉ, ସେ ନିଜେ ମଧ୍ୟ ଏବିଷୟ ହୃଦୟଙ୍ଗମ କରିପାରି ନ ଥିଲେ । କେବଳ ବୁଝିଥିଲେ ଯେ, ଜଗନ୍ମାତାଙ୍କ ପ୍ରତି ଭଲ ପାଇବାର ପ୍ରବଳ ପ୍ରେରଣାରେ ସେ ଏପରି ନ କରି ରହିପାରୁ ନାହାନ୍ତି—କିଏ ଯେପରି ଜୋର୍ କରି ତାଙ୍କୁ ଏପରି କରାଉଛି ! ଏଥିପାଇଁ ଦେଖିବାକୁ ମିଳେ, ବେଳେବେଳେ ତାଙ୍କ ମନରେ ଆସେ, 'ମୋର ଅବସ୍ଥା ଏକ'ଣ ହେଉଅଛି ? ମୁଁ ଠିକ୍ ବାଟରେ ଚାଲୁଛି ତ ?' ଏଥିପାଇଁ ଦେଖାଯାଏ ସେ ବ୍ୟାକୁଳହୃଦୟରେ ଶ୍ରୀଶ୍ରୀଜଗନ୍ମାତାଙ୍କୁ ଜଣାଉଛନ୍ତି—'ମା, ମୋର ଏପରି ଅବସ୍ଥା କାହିଁକି ହେଉଛି ମୁଁ କିଛି ବୁଝିପାରୁ ନାହିଁ, ତୁ ମୋତେ ଯାହା କରିବାର କରାଇ ଓ ଯାହା ଶିଖିବାର ଶିଖାଇ, ଦେଖା ଦେ' ! ସବୁବେଳେ ମୋର ହାତ ଧରି ରଖିଥା !' କାମ, କାଞ୍ଚନ, ମାନ, ଯଶ,

୧. ଗୁରୁଭାବ—ପୂର୍ବାର୍ଦ୍ଧ, ଷଷ୍ଠ ଅଧ୍ୟାୟ ।

ପୃଥିବୀର ସମସ୍ତ ଭୋଗଐଶ୍ୱର୍ଯ୍ୟରୁ ମନ ଫେରାଇ ଅନ୍ତରର ଅନ୍ତରତମ ପ୍ରଦେଶରୁ ସେ ଜଗନ୍ମାତାଙ୍କୁ ଏକଥା ନିବେଦନ କରିଥିଲେ । ଶ୍ରୀଶ୍ରୀଜଗନ୍ମାତା ମଧ୍ୟ ତାଙ୍କୁ ତାଙ୍କର ହାତଧରି ସମସ୍ତ ବିଷୟରେ ରକ୍ଷାକରି ତାଙ୍କର ପ୍ରାର୍ଥନା ପୂରଣ କରୁଥିଲେ । ତାଙ୍କର ସାଧକଜୀବନର ପରିପୁଷ୍ଟି ଓ ପୂର୍ଣ୍ଣତା ପାଇଁ ଯେତେବେଳେ ଯାହା କିଛି ଏବଂ ଯେପରି ଲୋକର ପ୍ରୟୋଜନ ହୋଇଥିଲା, ସେତେବେଳେ ସେ ସକଳ ବସ୍ତୁ ଓ ବ୍ୟକ୍ତିଙ୍କୁ ଅଯାଚିତ ଭାବରେ ତାଙ୍କ ନିକଟକୁ ଆଣି ତାଙ୍କୁ ଶୁଦ୍ଧଜ୍ଞାନ ଓ ଶୁଦ୍ଧା ଭକ୍ତିର ଚରମ ସୀମାରେ ସ୍ୱାଭାବିକ ଓ ସହଜ ଭାବରେ ଆରୁଢ଼ କରାଇଥିଲେ । ଗୀତାରେ ଶ୍ରୀଭଗବାନ ଭକ୍ତଙ୍କ ନିକଟରେ ପ୍ରତିଜ୍ଞା କରିଛନ୍ତି—

ଅନନ୍ୟଶ୍ଚିନ୍ତୟନ୍ତୋ ମାଂ ଯେ ଜନାଃ ପର୍ଯ୍ୟୁପାସତେ ।
ତେଷାଂ ନିତ୍ୟାଭିଯୁକ୍ତାନାଂ ଯୋଗକ୍ଷେମଂ ବହାମ୍ୟହମ୍ ॥

—ଗୀତା, ୯/୨୨

ଯେଉଁ ସମସ୍ତ ବ୍ୟକ୍ତି ଅନନ୍ୟଚିତ୍ତରେ ଉପାସନା କରି ମୋ ସହିତ ନିତ୍ୟଯୁକ୍ତ ହୋଇଥାନ୍ତି—ଶରୀରଧାରଣୋପଯୋଗୀ ଆହାର-ବିହାରାଦି ବିଷୟ ନିମିତ୍ତ ଚିନ୍ତା ନ କରି ସମ୍ପୂର୍ଣ୍ଣ ମନ ମୋଠାରେ ଅର୍ପଣ କରିଥାଆନ୍ତି—ପ୍ରୟୋଜନୀୟ ସମସ୍ତ ବିଷୟ ମୁଁ ଅଯାଚିତ ଭାବେ ତାଙ୍କ ନିକଟକୁ ଆଣି ଦେଇଥାଏ । ଗୀତାର ଉକ୍ତ ପ୍ରତିଜ୍ଞା ଠାକୁରଙ୍କ ଜୀବନରେ କିପରି ପ୍ରତିକ୍ଷେତ୍ରରେ ସାଫଲ୍ୟଲାଭ କରିଥିଲା, ତାହା ଆମେ ଠାକୁରଙ୍କର ଏହି ସମୟର ଜୀବନ ଯେତେ ଆଲୋଚନା କରିବୁ ସେତେ ସମ୍ୟକ ହୃଦୟଙ୍ଗମ କରି ବିସ୍ମିତ ଓ ସ୍ତମ୍ଭିତ ହେବୁ । କାମକାଞ୍ଚନ ହିଁ ଏକମାତ୍ର ଲକ୍ଷ୍ୟ ଥିବା ବର୍ତ୍ତମାନର ସ୍ୱାର୍ଥପର ଯୁଗରେ ଶ୍ରୀଭଗବାନଙ୍କର ଏହି ପ୍ରତିଜ୍ଞାର ସତ୍ୟତା ସୁସ୍ପଷ୍ଟ ରୂପେ ପୁନର୍ବାର ପ୍ରମାଣିତ କରିବାର ପ୍ରୟୋଜନ ହୋଇଥିଲା । ଯୁଗେ ଯୁଗେ ସାଧକମାନେ 'ସବ୍ ଛୋଡ଼େ ସବ୍ ପାଓୟେ'— ଶ୍ରୀଭଗବାନଙ୍କ ନିମିତ୍ତ ସର୍ବସ୍ୱ ତ୍ୟାଗ କଲେ ପ୍ରୟୋଜନୀୟ କୌଣସି ବିଷୟ ପାଇଁ ସାଧକଙ୍କୁ ଅଭାବଗ୍ରସ୍ତ ହୋଇ କଷ୍ଟ ଭୋଗିବାକୁ ପଡ଼ି ନ ଥାଏ—ଏକଥା ମନୁଷ୍ୟକୁ ଉପଦେଶ ଦେଇ ଆସୁଥିଲେ ମଧ୍ୟ ଦୁର୍ବଳହୃଦୟ ବିଷୟାବଦ୍ଧ ମାନବ ତାହା ବର୍ତ୍ତମାନ ଯୁଗରେ ପୁଣି ପୂର୍ଣ୍ଣଭାବରେ ନ ଦେଖି ବିଶ୍ୱାସୀ ହୋଇପାରୁ ନ ଥିଲା । ସେଥିପାଇଁ ସମ୍ପୂର୍ଣ୍ଣରୂପେ ଅନନ୍ୟଚିତ୍ତ ଠାକୁରଙ୍କୁ ନେଇ ଶାସ୍ତ୍ରୀୟ ସେହି ବାକ୍ୟର ସଫଳତା ମାନବକୁ ଦେଖାଇବା ପାଇଁ ଶ୍ରୀଶ୍ରୀଜଗନ୍ମାତାଙ୍କ ଏହି ଅଦ୍ଭୁତ ଲୀଳାଭିନୟ ! ହେ ମାନବ, ପବିତ୍ର ଚିତ୍ତରେ ଏକଥା ଶ୍ରବଣ କରି ତ୍ୟାଗ ପଥରେ ଯଥାସାଧ୍ୟ ଅଗ୍ରସର ହୁଅ ।

### ଠାକୁରଙ୍କ କଥା—ରାଗାତ୍ମିକା ବା ରାଗାନୁଗା ଭକ୍ତିର ପୂର୍ଣ୍ଣ ପ୍ରଭାବ କେବଳ ଅବତାରପୁରୁଷମାନଙ୍କର ଶରୀର-ମନ ଧାରଣ କରିବାରେ ସମର୍ଥ :

ଠାକୁର କହୁଥିଲେ, ଈଶ୍ୱରୀୟ ଭାବର ପ୍ରବଳ ବନ୍ୟା ଯେତେବେଳେ ଅତର୍କିତ ଭାବରେ ମନୁଷ୍ୟ ଜୀବନରେ ଆସି ପହଞ୍ଚେ, ସେତେବେଳେ ତାହା ଚାପି ରଖିବାର ସହସ୍ର ଚେଷ୍ଟାରେ ମଧ୍ୟ ସଫଳ ହୁଏ ନାହିଁ । ସାଧାରଣ ମନୁଷ୍ୟର ଜଡ଼ଦେହ ଏହାର ପ୍ରବଳ ବେଗ ଧାରଣ କରିବାକୁ ସକ୍ଷମ ନ ହୋଇ ସମ୍ପୂର୍ଣ୍ଣ ଭାଙ୍ଗି ଚୂର୍‌ମାର ହୋଇଯାଏ । ଏହି ପ୍ରକାରେ ଅନେକ ସାଧକ ମୃତ୍ୟୁମୁଖରେ ପତିତ ହୋଇଛନ୍ତି । ପୂର୍ଣ୍ଣ ଜ୍ଞାନ ବା ପୂର୍ଣ୍ଣ ଭକ୍ତିର ଉଦ୍ଦାମ ବେଗ ଧାରଣ କରିବାର ଉପଯୋଗୀ ଶରୀର ପ୍ରୟୋଜନ । ଅବତାରପ୍ରଥିତ ମହାପୁରୁଷମାନଙ୍କର ଶରୀର ହିଁ କେବଳ ଏହାର ପୂର୍ଣ୍ଣ ବେଗ ସର୍ବକ୍ଷଣ ଧାରଣ କରି ସଂସାରରେ ଜୀବିତ ରହିବା ଏପର୍ଯନ୍ତ ଦେଖାଯାଇଛି । ଭକ୍ତିଶାସ୍ତ୍ର ସେଥିପାଇଁ ସେମାନଙ୍କୁ ଶୁଦ୍ଧସତ୍ତ୍ୱବିଗ୍ରହବାନ ବୋଲି ବାରମ୍ବାର କହିଅଛି । ଶୁଦ୍ଧସତ୍ତ୍ୱଗୁଣ ଉପାଦାନରେ ଗଠିତ ଶରୀର ଧାରଣ କରି ସଂସାରକୁ ଆସନ୍ତି ବୋଲି ହିଁ ସେମାନେ ଆଧ୍ୟାତ୍ମିକ ଭାବସମୂହର ପୂର୍ଣ୍ଣବେଗ ସହ୍ୟ କରିବାକୁ ସମର୍ଥ ହୋଇଥାଆନ୍ତି । ଏପରି ଶରୀରଧାରଣ କରି ମଧ୍ୟ ସେମାନଙ୍କୁ ବିଶେଷତଃ ଭକ୍ତିମାର୍ଗ-ସଞ୍ଚରଣଶୀଳ ଅବତାରପୁରୁଷମାନଙ୍କୁ ଏସବୁର ପ୍ରବଳ ବେଗରେ ଅନେକ ସମୟ ମୂହ୍ୟମାନ ହେବାର ଦେଖାଯାଇଥାଏ । ଭାବ-ଭକ୍ତିର ପ୍ରାବଲ୍ୟରେ ଈଶା ଓ ଶ୍ରୀଚୈତନ୍ୟଙ୍କର ଶରୀରର ଅଙ୍ଗଗ୍ରନ୍ଥିସକଳ ଶିଥିଳ ହେବା, ସ୍ୱେଦ ସଦୃଶ ପ୍ରତି ଲୋମକୂପରୁ ବିନ୍ଦୁ ବିନ୍ଦୁ କରି ରକ୍ତ ନିର୍ଗତ ହେବା ପ୍ରଭୃତି ଶାସ୍ତ୍ରନିବଦ୍ଧ କଥାରୁ ଏହା ବୁଝି ହୁଏ । ସେହି ସମସ୍ତ ଶାରୀରିକ ବିକାର କ୍ଳେଶକର ବୋଲି ଉପଲବ୍ଧ ହେଲେ ମଧ୍ୟ ଏଗୁଡ଼ିକର ସାହାଯ୍ୟରେ ହିଁ ସେମାନଙ୍କର ଶରୀର ଭକ୍ତିପ୍ରସୂତ ଅସାଧାରଣ ମାନସିକ ବେଗ ଧାରଣ କରିବାକୁ ଅଭ୍ୟସ୍ତ ହୋଇଯାଏ । ପରେ, ଉକ୍ତ ବେଗ ଧାରଣରେ ସେମାନଙ୍କ ଶରୀର କ୍ରମେ କ୍ରମେ ଯେତେ ଅଭ୍ୟସ୍ତ ହୁଏ, ସେହି ବିକୃତିଗୁଡ଼ିକ ମଧ୍ୟ ଆଉ ପୂର୍ବପରି ପରିଲକ୍ଷିତ ହୁଏ ନାହିଁ ।

### ଏହି ଭକ୍ତି ପ୍ରଭାବରେ ଠାକୁରଙ୍କର ଶାରୀରିକ ବିକାର ଓ ତାହାଦ୍ୱାରା କଷ୍ଟ—ଯଥା, ଗାତ୍ରଦାହ । ପ୍ରଥମ ଗାତ୍ରଦାହ ପାପପୁରୁଷ ଦଗ୍ଧ ହେବା ସମୟରେ; ଦ୍ୱିତୀୟ, ପ୍ରଥମ ଦର୍ଶନଲାଭ ପରେ ଈଶ୍ୱର ବିରହରେ; ତୃତୀୟ, ମଧୁରଭାବ-ସାଧନ ସମୟରେ :

ଭାବଭକ୍ତିର ପ୍ରେରଣାରେ ଠାକୁରଙ୍କର ଶରୀରରେ ଏବେଠାରୁ ନାନା ପ୍ରକାରର ଅଦ୍ଭୁତ ବିକାର ଦେଖାଯାଉଥିଲା ।[୮] ସାଧନାର ପ୍ରାରମ୍ଭରୁ ତାଙ୍କର ଗାତ୍ରଦାହ କଥା ଆମେ ଏହାପୂର୍ବରୁ କହିଛୁ । ଏହା ବୃଦ୍ଧିହେବାରୁ ତାଙ୍କୁ ଅନେକ

ସମୟରେ ବିଶେଷ କଷ୍ଟ ଭୋଗିବାକୁ ପଡ଼ିଥିଲା । ଠାକୁର ନିଜେ ଆମକୁ ଏହାର କାରଣ ଏହିପରି କହିଛନ୍ତି—"ସନ୍ଧ୍ୟା-ପୂଜାଦି କରିବା ସମୟରେ ଶାସ୍ତ୍ରୀୟ ବିଧାନ ଅନୁସାରେ ଯେତେବେଳେ ଭିତରର ପାପପୁରୁଷ ଦଗ୍ଧ ହୋଇଗଲା ବୋଲି ଚିନ୍ତା କରୁଥାଏ, ସେତେବେଳେ କିଏ ଜାଣିଥିଲା, ଶରୀରରେ ସତରେ ହିଁ ପାପପୁରୁଷ ଅଛି ଏବଂ ଏହାକୁ ବାସ୍ତବିକ ଦଗ୍ଧ ଏବଂ ବିନଷ୍ଟ କରାଯାଏ ! ସାଧନାର ପ୍ରାରମ୍ଭରୁ ଗାତ୍ରଦାହ ଉପସ୍ଥିତ ହେଲା; ଭାବିଲି, ଇଏ ପୁଣି କି ରୋଗ ହେଲା ! କ୍ରମେ ଏହା ଖୁବ୍ ବୃଦ୍ଧି ହୋଇ ଅସହ୍ୟ ହୋଇ ଉଠିଲା । ନାନାପ୍ରକାରର କବିରାଜୀ ତୈଳ ମାଲିସ୍ କରାଗଲା; ମାତ୍ର କୌଣସି ପ୍ରକାରରେ ତାହା କମିଲା ନାହିଁ । ପରେ ଦିନେ ପଞ୍ଚବଟୀରେ ବସିଛି, ହଠାତ୍ ଦେଖିଲି କଳା ମଚ ମଚ ରଙ୍ଗ, ଆରକ୍ତଲୋଚନ ଭୀଷଣାକାର ଜଣେ ପୁରୁଷ ଯେପରି ମଦ ଖାଇ ଟଳି ଟଳି (ନିଜ ଶରୀର ଦେଖାଇ) ଏହା ଭିତରୁ ବାହାରି ସମ୍ମୁଖରେ ବୁଲିବାକୁ ଲାଗିଲା । ପର ମୁହୂର୍ତ୍ତରେ ଦେଖିଲି—ଅନ୍ୟ ଜଣେ ସୌମ୍ୟମୂର୍ତ୍ତି ପୁରୁଷ ଗୈରିକ ଓ ତ୍ରିଶୂଳ ଧାରଣ କରି ସେପରି (ଶରୀର) ଏହା ଭିତରୁ ବାହାରି ପୂର୍ବୋକ୍ତ ଭୀଷଣାକାର ପୁରୁଷକୁ ସବଳେ ଆକ୍ରମଣପୂର୍ବକ ନିହତ କଲା ଏବଂ ସେହି ଦିନରୁ ଗାତ୍ରଦାହ କମିଗଲା; ଏହି ଘଟଣା ପୂର୍ବରୁ ଛଅମାସ ଧରି ଗାତ୍ରଦାହରେ ଅଶେଷ କଷ୍ଟ ପାଇଥିଲି ।"

ଠାକୁରଙ୍କ ନିକଟରୁ ଶୁଣିଛୁ, ପାପପୁରୁଷ ବିନଷ୍ଟ ହେବାପରେ ଗାତ୍ରଦାହ ନିବାରିତ ହେଲେ ମଧ୍ୟ ଅଳ୍ପଦିନ ପରେ ପୁଣି ଏହା ଆରମ୍ଭ ହୋଇଥିଲା । ସେତେବେଳେ ବୈଧୀ ଭକ୍ତିର ସୀମା ଉଲ୍ଲଙ୍ଘନ କରି ସେ ରାଗାତ୍ମିକାମାର୍ଗରେ ଶ୍ରୀଶ୍ରୀଜଗଦମ୍ବାଙ୍କର ପୂଜାରେ ନିଯୁକ୍ତ ଥିଲେ । କ୍ରମେ ଏହା ଏତେ ବଢ଼ିଗଲା ଯେ, ଓଦା ଗାମୁଛା ମୁଣ୍ଡରେ ଦେଇ ତିନି ଚାରିଘଣ୍ଟା କାଳ ଗଙ୍ଗାରେ ଶରୀର ବୁଡ଼ାଇ ବସି ରହି ମଧ୍ୟ ସେ ଶାନ୍ତିଲାଭ କରିପାରୁ ନ ଥିଲେ । ପରେ ବ୍ରାହ୍ମଣୀ ଆସି ସେହି ଗାତ୍ରଦାହ, ଶ୍ରୀଭଗବାନଙ୍କର ପୂର୍ଣ୍ଣଦର୍ଶନଲାଭ ନିମିତ୍ତ ଉତ୍କଣ୍ଠା ଓ ବିରହବେଦନା-ପ୍ରସୂତ ବୋଲି କହି ଯେପରି ସହଜ ଉପାୟରେ ଏହା ନିବାରଣ କଲେ, ସେ ସକଳ କଥା ଆମେ ଅନ୍ୟତ୍ର ଉଲ୍ଲେଖ କରିଅଛୁ ।[୧] ଏହା ପରେ ଠାକୁର ମଧୁରଭାବ ସାଧନ କରିବା ସମୟରେ ପୁଣି ଗାତ୍ରଦାହରେ ପୀଡ଼ିତ ହୋଇଥିଲେ । ହୃଦୟ କହୁଥିଲେ, "ଛାତି ଭିତରେ ଗୋଟିଏ ଗାମଲା ନିଆଁ ରଖିଲେ ଯେପରି ଉତ୍ତାପ ଓ ଯନ୍ତ୍ରଣା ହୁଏ, ଠାକୁର ଏହି ସମୟରେ ସେପରି ଅନୁଭବ କରି ଅସ୍ଥିର ହୋଇପଡୁଥିଲେ । ବେଳେବେଳେ ଏପରି ହୋଇ ବହୁଦିନ ପର୍ଯ୍ୟନ୍ତ ସେ କଷ୍ଟ ପାଇଥିଲେ । ଅନନ୍ତର ସାଧନକାଳର କେତେବର୍ଷ ପରେ ସେ ବାରାସତନିବାସୀ ମୋକ୍ତାର ଶ୍ରୀଯୁକ୍ତ ରାମକାନାଇ ଘୋଷାଲଙ୍କ ସହିତ ପରିଚିତ ହୋଇଥିଲେ । ସେ

୧. ଗୁରୁଭାବ—ଉତ୍ତରାର୍ଦ୍ଧ, ପ୍ରଥମ ଅଧ୍ୟାୟ ।

ଉନ୍ନତ ଶକ୍ତିସାଧକ ଥିଲେ ଏବଂ ଠାକୁରଙ୍କର ଏପରି ଗାତ୍ରଦାହର କଥା ଶୁଣି ତାଙ୍କୁ ଇଷ୍ଟକବଚ ଧାରଣ କରିବାକୁ ପରାମର୍ଶ ଦେଇଥିଲେ । କବଚଧାରଣ ପରେ ସେ ଆଉ କେବେ ଏପରି ଗାତ୍ରଦାହ କଷ୍ଟ ଭୋଗି ନ ଥିଲେ ।''

**ପୂଜା କରୁ କରୁ ବିଷୟକର୍ମର ଚିନ୍ତା କାରଣରୁ ରାଣୀ ରାସମଣିଙ୍କୁ ଠାକୁରଙ୍କର ଦଣ୍ଡ ପ୍ରଦାନ :**

ଠାକୁରଙ୍କର ଏପରି ଅଦ୍ଭୁତ ପୂଜା ଦେଖି ଜାନବଜାରକୁ ଫେରି ମଥୁରମୋହନ ରାଣୀ ରାସମଣିଙ୍କୁ ସମସ୍ତ କଥା ଶୁଣାଇଲେ । ଭକ୍ତିମତୀ ରାଣୀ ଏସମସ୍ତ ଶୁଣି ବିଶେଷ ପୁଲକିତା ହେଲେ । ଭଟ୍ଟାଚାର୍ଯ୍ୟଙ୍କର (ଠାକୁରଙ୍କର) ମୁଖନିଃସୃତ ଭକ୍ତିମିଶା ସଙ୍ଗୀତ ଶ୍ରବଣ କରି ସେ ତାଙ୍କ ପ୍ରତି ଏହାପୂର୍ବରୁ ହିଁ ସ୍ନେହ ପରାୟଣା ଥିଲେ ଏବଂ ଶ୍ରୀଗୋବିନ୍ଦଜୀଙ୍କ ବିଗ୍ରହ-ଭଗ୍ନକାଳରେ ତାଙ୍କର ଭାବାବେଶ ଓ ଭକ୍ତିପୂତ ବୁଦ୍ଧିର ପରିଚୟ ପାଇ ବିସ୍ମିତ ହୋଇଥିଲେ ।[୧] ଅତଏବ ଶ୍ରୀଶ୍ରୀଜଗଦମ୍ବାଙ୍କର କୃପାଲାଭ ଯେ ଠାକୁରଙ୍କ ସଦୃଶ ପବିତ୍ରହୃଦୟ ସାଧକ ପକ୍ଷରେ ସମ୍ଭବପର, ଏହା ବୁଝିବାକୁ ତାଙ୍କୁ ବିଳମ୍ବ ହୋଇ ନ ଥିଲା । ଏହାର ଅଳ୍ପଦିନ ପରେ କିନ୍ତୁ ଏପରି ଏକ ଘଟଣା ଘଟିଲା, ଯେଉଁଥିରେ ରାଣୀ ଓ ମଥୁରବାବୁଙ୍କର ସେହି ବିଶ୍ୱାସ ବିଚଳିତ ହେବାର ବିଶେଷ ସମ୍ଭାବନା ହୋଇଥିଲା । ରାଣୀ ଦିନେ ମନ୍ଦିରରେ ଶ୍ରୀଶ୍ରୀଜଗଦମ୍ବାଙ୍କର ଦର୍ଶନ ଓ ପୂଜା ଇତ୍ୟାଦି କରିବା ସମୟରେ ଏଥିରେ ତନ୍ମୟ ନ ହୋଇ ବିଷୟକର୍ମସମ୍ବନ୍ଧୀୟ ଗୋଟିଏ ମାମଲାର ଫଳାଫଳ ସାଗ୍ରହରେ ଚିନ୍ତା କରୁଥିଲେ । ଠାକୁରେ ଏହି ସମୟରେ ତାଙ୍କୁ ଏକ ସଙ୍ଗୀତ ଶୁଣାଉଥିଲେ । ଭାବାବିଷ୍ଟ ଠାକୁରେ ତାଙ୍କର ମନର କଥା ଜାଣିପାରି, 'ଏଠାରେ ମଧ୍ୟ ଏପରି ଚିନ୍ତା' କହି ତାଙ୍କ କୋମଳାଙ୍ଗରେ ଆଘାତପୂର୍ବକ ସେହି ଚିନ୍ତାରୁ ନିରସ୍ତା ହେବାକୁ ଶିକ୍ଷାପ୍ରଦାନ କରିଥିଲେ । ଶ୍ରୀଶ୍ରୀଜଗଦମ୍ବାଙ୍କର କୃପାପାତ୍ରୀ ସାଧିକା ରାଣୀ ଏଥିରେ ନିଜର ମନର ଦୁର୍ବଳତା ଜାଣିପାରି ଅନୁତପ୍ତା ହୋଇଥିଲେ ଏବଂ ଠାକୁରଙ୍କ ପ୍ରତି ତାଙ୍କର ଭକ୍ତି ସେହି ଘଟଣା ପରେ ବିଶେଷ ବୃଦ୍ଧି ହୋଇଥିଲା । ଏସମସ୍ତ କଥା ଆମେ ଅନ୍ୟତ୍ର ସବିସ୍ତାର ଉଲ୍ଲେଖ କରିଅଛୁ ।

**ଭକ୍ତିର ପରିଣତିରେ ଠାକୁରଙ୍କର ବାହ୍ୟପୂଜା ତ୍ୟାଗ । ଏହି ସମୟରେ ତାଙ୍କର ଅବସ୍ଥା :**

ଶ୍ରୀଶ୍ରୀଜଗନ୍ମାତାଙ୍କୁ ନେଇ ଠାକୁରଙ୍କର ଭାବାବେଶ ଓ ଆନନ୍ଦଉଲ୍ଲାସ ଅଳ୍ପଦିନ ପରେ ଏତେ ବଢ଼ିଗଲା ଯେ, ଦେବୀସେବାର ନିତ୍ୟ-ନୈମିତ୍ତିକ କାର୍ଯ୍ୟ ନିର୍ବାହ କରିବା ମଧ୍ୟ ତାଙ୍କ ପକ୍ଷରେ ସମ୍ଭବ ହେଲା ନାହିଁ । ଆଧ୍ୟାତ୍ମିକ ଅବସ୍ଥାର ଉନ୍ନତିରେ ବୈଧୀ କର୍ମର ତ୍ୟାଗ କିପରି ସ୍ୱାଭାବିକ ଭାବରେ ହୋଇଥାଏ, ସେବିଷୟରେ

---

୧. ଗୁରୁଭାବ—ପୂର୍ବାର୍ଦ୍ଧ, ପଞ୍ଚମ ଅଧ୍ୟାୟ ।

ଦୃଷ୍ଟାନ୍ତସ୍ୱରୂପ ଠାକୁର କହୁଥିଲେ, ''ଯେପରି ଗୃହସ୍ଥ ବୋହୂର ଯେପର୍ଯନ୍ତ ଗର୍ଭ ନ ହୁଏ, ସେପର୍ଯ୍ୟନ୍ତ ତା'ର ଶାଶୁ ତାକୁ ସମସ୍ତ ଜିନିଷ ଖାଇବାକୁ ଓ ସମସ୍ତ କାର୍ଯ୍ୟ କରିବାକୁ ଦିଏ, ଗର୍ଭ ହେଲେ ହିଁ ସେହି ସମସ୍ତ ବିଷୟରେ ଅଳ୍ପ ବହୁତ ବାଛବିଚାର ଆରମ୍ଭ ହୁଏ; ପରେ ଗର୍ଭ ଯେତେ ବୃଦ୍ଧି ପାଉଥାଏ, ସେତେ ତା'ର କାର୍ଯ୍ୟ କମାଇ ଦିଆଯାଏ; କ୍ରମେ ଯେତେବେଳେ ସେ ଆସନ୍ନପ୍ରସବା ହୁଏ, ଗର୍ଭସ୍ଥ ଶିଶୁର ଅନିଷ୍ଟ ଆଶଙ୍କାରେ ତାକୁ ଆଉ କୌଣସି କାର୍ଯ୍ୟ କରିବାକୁ ଦିଆଯାଏ ନାହିଁ; ପରେ ଯେତେବେଳେ ତା'ର ସନ୍ତାନ ଭୂମିଷ୍ଠ ହୁଏ, ସେତେବେଳେ ସେହି ସନ୍ତାନକୁ ନେଇ ହିଁ ତା'ର ଦିନ କଟୁଥାଏ ।'' ଶ୍ରୀଶ୍ରୀଜଗଦମ୍ବାଙ୍କର ବାହ୍ୟପୂଜା ଓ ସେବାଦି–ତ୍ୟାଗ ମଧ୍ୟ ଠାକୁରଙ୍କର ଠିକ୍ ଏପରି ସ୍ୱାଭାବିକ ଭାବରେ ହୋଇଥିଲା । ପୂଜା ଓ ସେବାର କାଳାକାଳବିଚାର ଏବେ ତାଙ୍କର ଲୋପ ପାଇଥିଲା । ଭାବାବେଶରେ ସର୍ବଦା ବିଭୋର ରହି ସେ ଏବେ ଶ୍ରୀଶ୍ରୀଜଗନ୍ମାତାଙ୍କୁ ଯେତେବେଳେ ଯେଉଁ ପ୍ରକାରର ସେବା କରିବାକୁ ଇଚ୍ଛା ହେଉଥିଲା, ସେତେବେଳେ ସେପରି ହିଁ କରୁଥିଲେ । ଯଥା—ପୂଜା ନ କରି ହୁଏତ ଭୋଗ ନିବେଦନ କରିଦେଲେ ! ଅଥବା ଧ୍ୟାନରେ ତନ୍ମୟ ହୋଇ, ନିଜର ପୃଥକ ଅସ୍ତିତ୍ୱ ଏକାଥରକେ ଭୁଲିଯାଇ ଦେବୀପୂଜା ପାଇଁ ଆଣିଥିବା ପୁଷ୍ପଚନ୍ଦନାଦିରେ ନିଜ ଅଙ୍ଗ ଭୂଷିତ କଲେ ! ଭିତରେ ବାହାରେ ନିରନ୍ତର ଜଗଦମ୍ବାଙ୍କର ଦର୍ଶନ ଯୋଗୁଁ ଠାକୁରଙ୍କର ଏସମୟର କାର୍ଯ୍ୟକଳାପ ସେହିପ୍ରକାରର ହେଉଥିଲା, ଏକଥା ଆମେ ତାଙ୍କଠାରୁ ଅନେକଥର ଶୁଣିଛୁ । ଆହୁରି ମଧ୍ୟ ଶୁଣିଛୁ ଯେ, ସେହି ତନ୍ମୟତାର ଅଳ୍ପ ମାତ୍ର ହ୍ରାସ ହୋଇ ଯଦି ଏସମୟରେ କିଛି କ୍ଷଣ ପାଇଁ ମଧ୍ୟ ସେ ମାତୃଦର୍ଶନରେ ବାଧାପ୍ରାପ୍ତ ହେଉଥିଲେ ତେବେ ଏପରି ବ୍ୟାକୁଳତା ଆସି ତାଙ୍କୁ ଅଧିକାର କରୁଥିଲା ଯେ, କଚାଡ଼ି ହୋଇ ଭୂମିରେ ପଡ଼ି ମୁଖ ଘର୍ଷଣ କରୁ କରୁ ବ୍ୟାକୁଳ କ୍ରନ୍ଦନରେ ଚତୁର୍ଦ୍ଦିଗ ପୂର୍ଣ୍ଣ କରୁଥିଲେ ! ଶ୍ୱାସପ୍ରଶ୍ୱାସ ବନ୍ଦ ହୋଇ ପ୍ରାଣ ଛଟପଟ ହେଉଥିଲା । କଚାଡ଼ି ହୋଇ ପଡ଼ି ସର୍ବାଙ୍ଗ କ୍ଷତବିକ୍ଷତ ଓ ରୁଧିରଲିପ୍ତ ହେଲେ ମଧ୍ୟ ସେଥିପ୍ରତି ତାଙ୍କର ଲକ୍ଷ୍ୟ ରହୁ ନ ଥିଲା । ଜଳରେ ପଡ଼ିଲେ ବା ଅଗ୍ନିରେ ପଡ଼ିଲେ, ସେତେବେଳେ ତାଙ୍କର ସେ ଜ୍ଞାନ ମଧ୍ୟ ରହୁ ନ ଥିଲା । ପରକ୍ଷଣରେ ହିଁ ପୁନର୍ବାର ଶ୍ରୀଶ୍ରୀଜଗଦମ୍ବାଙ୍କର ଦର୍ଶନ ପାଇ ସେହି ଭାବ କଟିଯାଉଥିଲା ଏବଂ ତାଙ୍କର ମୁଖମଣ୍ଡଳ ଅଦ୍ଭୁତ ଜ୍ୟୋତିଃ ଓ ଉଲ୍ଲାସରେ ପୂର୍ଣ୍ଣ ହେଉଥିଲା—ସେ ଯେପରି ସମ୍ପୂର୍ଣ୍ଣ ଅନ୍ୟ ଏକ ବ୍ୟକ୍ତି ହୋଇ ଯାଉଥିଲେ !

**ପୂଜାତ୍ୟାଗ ସମ୍ବନ୍ଧରେ ହୃଦୟଙ୍କର କଥା ଏବଂ ଠାକୁରଙ୍କର ବର୍ତ୍ତମାନ ଅବସ୍ଥା ସମ୍ବନ୍ଧରେ ମଥୁରବାବୁଙ୍କର ସନ୍ଦେହ :**

ଠାକୁରଙ୍କର ସେହିପରି ଅବସ୍ଥା ହେବାର ପୂର୍ବ ପର୍ଯ୍ୟନ୍ତ ମଥୁରବାବୁ ତାଙ୍କ ଦ୍ୱାରା ପୂଜାକାର୍ଯ୍ୟ କୌଣସି ପ୍ରକାରରେ ଚଳାଇ ନେଉଥିଲେ; ଏବେ ଆଉ ସେପରି

କରିବା ଅସମ୍ଭବ ଚିନ୍ତାକରି ପୂଜାକାର୍ଯ୍ୟର ଅନ୍ୟ ପ୍ରକାରର ବନ୍ଦୋବସ୍ତ କରିବାକୁ ସଂକଳ୍ପ କଲେ । ହୃଦୟ କହୁଥିଲେ, ''ମଥୁରବାବୁଙ୍କର ଏପରି ସଂକଳ୍ପ କରିବାର ଗୋଟିଏ କାରଣ ଥିଲା । ପୂଜା ଆସନରୁ ଉଠିପଡ଼ି ଭାବାବିଷ୍ଟ ଠାକୁର ଦିନେ ମଥୁରବାବୁଙ୍କୁ ଓ ମୋତେ ମନ୍ଦିର ଭିତରେ ଦେଖିଲେ ଏବଂ ମୋର ହାତ ଧରି ପୂଜା ଆସନରେ ବସାଇ ମଥୁରବାବୁଙ୍କୁ ଲକ୍ଷ୍ୟ କରି କହିଲେ, 'ଆଜିଠାରୁ ହୃଦୟ ପୂଜା କରିବ; ମା' କହୁଛନ୍ତି, ମୋର ପୂଜାପରି ହୃଦୟର ପୂଜା ସେ ସମଭାବରେ ଗ୍ରହଣ କରିବେ ।' ବିଶ୍ୱାସୀ ମଥୁର ଠାକୁରଙ୍କର ସେହି କଥା ଦୈବାଦେଶ ବୋଲି ଗ୍ରହଣ କରି ନେଇଥିଲେ ।'' ହୃଦୟଙ୍କର କଥା କେତେଦୂର ସତ୍ୟ ତାହା କହିହେବ ନାହିଁ, ତେବେ ବର୍ତ୍ତମାନ ଅବସ୍ଥାରେ ଠାକୁରଙ୍କର ନିତ୍ୟ ପୂଜାଦି କରିବା ଯେ ଅସମ୍ଭବ, ଏବିଷୟରେ ମଥୁରବାବୁ ନିଃସନ୍ଦେହ ଥିଲେ ।

**ଗଙ୍ଗାପ୍ରସାଦ ସେନ୍ କବିରାଜଙ୍କର ଚିକିତ୍ସା :**

ପ୍ରଥମଦର୍ଶନ କାଳରୁ ମଥୁରବାବୁଙ୍କର ମନ ଠାକୁରଙ୍କ ପ୍ରତି ବିଶେଷ ଭାବରେ ଆକୃଷ୍ଟ ହେବା କଥା ଆମେ ଏହାପୂର୍ବରୁ କହିଛୁ । ସେଦିନଠାରୁ ସେ ସମସ୍ତ ପ୍ରକାରର ଅସୁବିଧା ଦୂର କରି ତାଙ୍କୁ ଦକ୍ଷିଣେଶ୍ୱର ମନ୍ଦିରରେ ରଖିବାକୁ ସଚେଷ୍ଟ ହୋଇଥିଲେ । ପରେ କ୍ରମେ କ୍ରମେ ତାଙ୍କଠାରେ ଅଦ୍ଭୁତ ଗୁଣରାଶିର ଯେତେ ପରିଚୟ ପାଉଥିଲେ, ସେତେ ମୁଗ୍ଧ ହୋଇ ଆବଶ୍ୟକ ଅନୁସାରେ ତାଙ୍କର ସେବା ଏବଂ ଅନ୍ୟମାନଙ୍କର ଅଯଥା ଅତ୍ୟାଚାରରୁ ତାଙ୍କୁ ରକ୍ଷା କରୁଥିଲେ । ଯଥା—ଠାକୁରଙ୍କର ବାୟୁପ୍ରବଣ ଶରୀର ଜାଣି ମଥୁର ତାଙ୍କ ପାଇଁ ପ୍ରତିଦିନ ମିଶ୍ରି ସରବତ-ପାନର ବନ୍ଦୋବସ୍ତ କରି ଦେଇଥିଲେ; ରାଗାନୁଗାଭକ୍ତି ପ୍ରଭାବରେ ଠାକୁର ଅଦୃଷ୍ଟପୂର୍ବ ପ୍ରଣାଳୀରେ ପୂଜାରେ ପ୍ରବୃତ୍ତ ହେଲେ ବାଧା ପାଇବାର ସମ୍ଭାବନା ବୁଝି ସେ ତାଙ୍କୁ ରକ୍ଷା କରୁଥିଲେ; ସେହିପରି ଆଉ କେତୋଟି କଥା ଆମେ ଅନ୍ୟତ୍ର ଉଲ୍ଲେଖ କରିଅଛୁ ।[୧] କିନ୍ତୁ ରାସମଣୀଙ୍କର ଦେହରେ ଆଘାତ କରି ଠାକୁର ଯେଉଁଦିନ ତାଙ୍କୁ ଶିକ୍ଷା ଦେଇଥିଲେ, ସେହି ଦିନଠାରୁ ମଥୁର ସନ୍ଦିଗ୍ଧ ହୋଇ ତାଙ୍କର ବାୟୁରୋଗ ହୋଇଅଛି ବୋଲି ସିଦ୍ଧାନ୍ତ କରିଥିଲେ, ଏକଥା ସମ୍ଭବପର ବୋଲି ଆମମାନଙ୍କର ମନେ ହୁଏ । ବୋଧ ହୁଏ, ଏହି ଘଟଣାରେ ସେ ତାଙ୍କଠାରେ ଆଧ୍ୟାତ୍ମିକତା ସହିତ ଉନ୍ମତ୍ତତାର ସଂଯୋଗ ଅନୁମାନ କରିଥିଲେ । କାରଣ ଏହି ସମୟରେ ସେ କଲିକତାର ସୁପ୍ରସିଦ୍ଧ କବିରାଜ ଶ୍ରୀଯୁକ୍ତ ଗଙ୍ଗାପ୍ରସାଦ ସେନଙ୍କ ଦ୍ୱାରା ତାଙ୍କର ଚିକିତ୍ସାର ବନ୍ଦୋବସ୍ତ କରିଥିଲେ ।

ଏହିପରି ଚିକିତ୍ସାର ବନ୍ଦୋବସ୍ତ କରି ମଥୁରବାବୁ କ୍ଷାନ୍ତ ହୋଇ ନ ଥିଲେ । କିନ୍ତୁ ନିଜ ମନକୁ ସୁସଂଯତ ରଖି ଯେପରି ଠାକୁର ସାଧନାରେ ଅଗ୍ରସର ହୁଅନ୍ତି, ଯୁକ୍ତିତର୍କ ସାହାଯ୍ୟରେ ଏହା ତାଙ୍କୁ ବୁଝାଇବାକୁ ସେ ଯଥେଷ୍ଟ ଚେଷ୍ଟା ମଧ୍ୟ

---

୧. ଗୁରୁଭାବ—ପୂର୍ବାର୍ଦ୍ଧ, ୬ଷ୍ଠ ଅଧ୍ୟାୟ ।

କରିଥିଲେ । ନାଲି ମନ୍ଦାରଫୁଲ ଗଛରେ ଶ୍ୱେତମନ୍ଦାର ଫୁଲ ଫୁଟିବା ଦେଖି କିପରି ସେ ପରାଜୟ ସ୍ୱୀକାରପୂର୍ବକ ସମ୍ପୂର୍ଣ୍ଣରୂପେ ଠାକୁରଙ୍କ ବଶୀଭୂତ ହୋଇଥିଲେ, ସେ ସକଳ କଥା ଆମେ ପାଠକଙ୍କୁ ଅନ୍ୟତ୍ର କହିଅଛୁ ।

ଆମେ ପୂର୍ବରୁ କହିଛୁ, ମନ୍ଦିରର ନିତ୍ୟ ନିୟମିତ ଦେବୀସେବା ଠାକୁରଙ୍କ ଦ୍ୱାରା ନିଷ୍ପନ୍ନ ହେବା ଅସମ୍ଭବ ବୁଝି ମଥୁରବାବୁ ଏବେ ଅନ୍ୟ ବନ୍ଦୋବସ୍ତ କରିଥିଲେ । ଠାକୁରଙ୍କ ଦାଦାଙ୍କ ପୁତ୍ର ଶ୍ରୀଯୁକ୍ତ ରାମତାରକ ଚଟ୍ଟୋପାଧ୍ୟାୟ ଏହି ସମୟରେ କର୍ମ ଅନ୍ୱେଷଣରେ ଦକ୍ଷିଣେଶ୍ୱରରେ ଉପସ୍ଥିତ ହେବାରୁ ତାଙ୍କୁ ହିଁ ମଥୁରବାବୁ ଠାକୁର ଆରୋଗ୍ୟ ନ ହେବା ପର୍ଯ୍ୟନ୍ତ ଦେବୀପୂଜାରେ ନିଯୁକ୍ତ କଲେ । ୧୮୫୮ ଖ୍ରୀଷ୍ଟାବ୍ଦରେ ଏହି ଘଟଣା ଘଟିଥିଲା ।

**ହଳଧାରୀଙ୍କର ଆଗମନ :**

ରାମତାରକଙ୍କୁ ଠାକୁରେ ହଳଧାରୀ ବୋଲି ଡାକୁଥିଲେ । ଏହାଙ୍କ ସମ୍ବନ୍ଧରେ ଆମେ ଅନେକ କଥା ତାଙ୍କ ନିକଟରୁ ଶୁଣିଛୁ । ହଳଧାରୀ ସୁପଣ୍ଡିତ ଓ ନିଷ୍ଠାଚାରୀ ସାଧକ ଥିଲେ । ଶ୍ରୀମଦ୍‌ଭାଗବତ, ଅଧ୍ୟାତ୍ମ-ରାମାୟଣ ଆଦି ଗ୍ରନ୍ଥସବୁ ସେ ପ୍ରତିଦିନ ପାଠ କରୁଥିଲେ ।[୧] ବିଷ୍ଣୁଙ୍କ ପୂଜାରେ ତାଙ୍କର ଅଧିକ ପ୍ରୀତି ଥିଲେ ମଧ ଶକ୍ତିଙ୍କ ଉପରେ ତାଙ୍କର ଦ୍ୱେଷ ନ ଥିଲା । ସେଥିପାଇଁ ବିଷ୍ଣୁଭକ୍ତ ହୋଇ ମଧ ସେ ମଥୁରବାବୁଙ୍କର ଅନୁରୋଧରେ ଶ୍ରୀଶ୍ରୀଜଗଦମ୍ବାଙ୍କର ପୂଜାକାର୍ଯ୍ୟରେ ବ୍ରତୀ ହୋଇଥିଲେ । ମଥୁରବାବୁଙ୍କୁ କହି ସେ ସିଧା ନେଇ ପ୍ରତିଦିନ ସ୍ୱହସ୍ତରେ ରନ୍ଧନ କରି ଖାଇବାର ବ୍ୟବସ୍ଥା କରି ନେଇଥିଲେ । ମଥୁରବାବୁ ସେଥିରେ ତାଙ୍କୁ ପଚାରିଥିଲେ, "ତୁମର ଭାଇ ଶ୍ରୀରାମକୃଷ୍ଣ ଓ ଭଣଜା ହୃଦୟ ତ' ମନ୍ଦିରର ପ୍ରସାଦ ପାଉଛନ୍ତି ?" ବୁଦ୍ଧିମାନ ହଳଧାରୀ ଉତ୍ତରରେ କହିଥିଲେ, "ମୋର ଭାଇଙ୍କର ଆଧ୍ୟାତ୍ମିକ ଅବସ୍ଥା ଅତି ଉଚ୍ଚ; ତାଙ୍କର କେଉଁଥିରେ ହେଲେ ଦୋଷ ହେବ ନାହିଁ; ମୋର ସେପରି ଅବସ୍ଥା ହୋଇ ନାହିଁ, ସୁତରାଂ ନିଷ୍ଠା ଭାଙ୍ଗିଲେ ଦୋଷ ହେବ ।" ମଥୁରବାବୁ ତାଙ୍କର ଉତ୍ତରରେ ସନ୍ତୁଷ୍ଟ ହୋଇଥିଲେ ଏବଂ ତା'ପରଠାରୁ ହଳଧାରୀ ସିଧା ନେଇ ପଞ୍ଚବଟୀ ତଳେ ନିତ୍ୟ ସ୍ୱପାକ ଭୋଜନ କରୁଥିଲେ ।

ଶାକ୍ତଦ୍ୱେଷୀ ନ ହେଲେ ମଧ ହଳଧାରୀଙ୍କର ଦେବୀଙ୍କୁ ପଶୁବଳିପ୍ରଦାନରେ ପ୍ରବୃତ୍ତି ହେଉ ନ ଥିଲା । ପର୍ବସମୟରେ ଜଗଦମ୍ବାଙ୍କୁ ପଶୁବଳିପ୍ରଦାନ କରିବା ବିଧି ମନ୍ଦିରରେ ପ୍ରଚଳନ ଥିବାରୁ ସେହି ଦିନମାନଙ୍କରେ ସେ ଆନନ୍ଦରେ ପୂଜା କରି ପାରୁ ନ ଥିଲେ । କଥିତ ଅଛି, ପ୍ରାୟ ଏକମାସ ଏପରି କ୍ଷୁଣ୍ଣ ମନରେ ପୂଜା କରିବା ପରେ ହଳଧାରୀ ଦିନେ ସନ୍ଧ୍ୟା କରିବାକୁ ବସିଛନ୍ତି, ଏହି ସମୟରେ ଦେଖିଲେ

---

୧. ଗୁରୁଭାବ—ପୂର୍ବାର୍ଦ୍ଧ, ୬ଷ୍ଠ ଅଧ୍ୟାୟ ଦ୍ରଷ୍ଟବ୍ୟ ।

ଦେବୀ ଭୟଙ୍କରୀ ମୂର୍ତ୍ତିଧାରଣ କରି ତାଙ୍କୁ କହୁଛନ୍ତି, ''ମୋର ପୂଜା କରିବା ତୋର ଦରକାର ନାହିଁ; ଯଦି କରୁ ସେବା ଅପରାଧରେ ତୋ'ର ସନ୍ତାନର ମୃତ୍ୟୁ ହେବ ।'' ଶୁଣାଯାଏ, ହଳଧାରୀ ମସ୍ତିଷ୍କର ଭ୍ରମ ବୋଲି ମନେ କରି ସେହି ଆଦେଶ ପ୍ରଥମେ ଗ୍ରାହ୍ୟ କରି ନ ଥିଲେ । କିନ୍ତୁ କିଛିଦିନ ପରେ ତାଙ୍କର ପୁତ୍ରର ମୃତ୍ୟୁସମ୍ବାଦ ଯେତେବେଳେ ସତରେ ଆସିଲା, ସେତେବେଳେ ଠାକୁରଙ୍କ ନିକଟରେ ସେହି ବିଷୟ ଆଦ୍ୟୋପାନ୍ତ କହି ସେ ଦେବୀପୂଜାରୁ ବିରତ ହୋଇଥିଲେ । ସେଥିପାଇଁ ସେହି ଦିନରୁ ସେ ଶ୍ରୀଶ୍ରୀରାଧାଗୋବିନ୍ଦଙ୍କର ପୂଜା ଏବଂ ହୃଦୟ ଦେବୀଙ୍କର ପୂଜା କରିବାକୁ ଲାଗିଲେ । ଏହି ଘଟଣାଟି ଆମେ ହୃଦୟଙ୍କର ଭାଇ ଶ୍ରୀଯୁକ୍ତ ରାଜାରାମଙ୍କ ନିକଟରୁ ଶୁଣିଥିଲୁ ।

# ଅଷ୍ଟମ ଅଧ୍ୟାୟ

## ପ୍ରଥମ ଚାରିବର୍ଷର ଶେଷକଥା

### ସାଧନାକାଳର ସମୟନିରୂପଣ :

ଠାକୁରଙ୍କର ସାଧନାକାଳର ଆଲୋଚନା କରିବାକୁ ହେଲେ ସେ ଆମମାନଙ୍କୁ ଏହି ସମୟ ସମ୍ବନ୍ଧରେ ନିଜେ ଯାହା କହିଥିଲେ, ତାହା ସର୍ବପ୍ରଥମେ ସ୍ମରଣ କରିବାକୁ ହେବ । ତାହାହେଲେ ଏହି କାଳର ଘଟଣାବଳୀର ଯଥାଯଥ ସମୟ ନିର୍ଦ୍ଦେଶ କରିବା ଅସମ୍ଭବ ହେବ ନାହିଁ । ପାଠକମାନଙ୍କୁ ଆମେ କହିଛୁ, ଆମେ ତାଙ୍କ ନିକଟରୁ ଶୁଣିଛୁ, ଦୀର୍ଘ ଦ୍ୱାଦଶବର୍ଷ କାଳ ନିରନ୍ତର ନାନାମତର ସାଧନାରେ ସେ ନିମଗ୍ନ ଥିଲେ । ରାଣୀ ରାସମଣିଙ୍କର ମନ୍ଦିରସଂକ୍ରାନ୍ତ ଦେବୋତ୍ତର-ଦାନପତ୍ର ଦେଖିଲେ ସଠିକ୍ ଜଣାଯାଏ ଯେ, ଦକ୍ଷିଣେଶ୍ୱର କାଳୀବାଡ଼ୀ ୧୮୫୫ ଖ୍ରୀଷ୍ଟାବ୍ଦର ୩୧ ମେ ଗୁରୁବାରଦିନ ପ୍ରତିଷ୍ଠିତ ହୋଇଥିଲା । ଏହାର କେତେମାସ ପରେ ସେହି ବର୍ଷ ହିଁ ଠାକୁର ପୂଜକର ପଦ ଗ୍ରହଣ କରିଥିଲେ । ଅତଏବ ୧୮୫୫ ଖ୍ରୀଷ୍ଟାବ୍ଦରୁ ୧୮୬୬ ପର୍ଯ୍ୟନ୍ତ ଯେ ତାଙ୍କର ସାଧନକାଳ, ଏହା ସୁନିଶ୍ଚିତ । ଉକ୍ତ ଦ୍ୱାଦଶ ବର୍ଷ ଠାକୁରଙ୍କର ସାଧନକାଳ ବୋଲି ଧରାଗଲେ ମଧ୍ୟ ଏହାପରେ ତୀର୍ଥଦର୍ଶନରେ ଯାଇ ସେହି ସମସ୍ତ ସ୍ଥାନରେ ଏବଂ ସେଠାରୁ ଦକ୍ଷିଣେଶ୍ୱର ଫେରି ସେ ବେଳେବେଳେ କିଛି କାଳପାଇଁ ସାଧନାରେ ନିଯୁକ୍ତ ଥିଲେ, ଏହା ଆମେ ଦେଖିବାକୁ ପାଇବା ।

### ଏହି କାଳର ତିନୋଟି ପ୍ରଧାନ ବିଭାଗ :

ପୂର୍ବୋକ୍ତ ଦ୍ୱାଦଶ ବର୍ଷକୁ ତିନିଭାଗରେ ବିଭକ୍ତ କରି ପ୍ରତ୍ୟେକ ଅଂଶର ଆଲୋଚନା କରିବାକୁ ଆମେ ଅଗ୍ରସର ହୋଇଛୁ । ପ୍ରଥମ, ଇଂରାଜୀ ୧୮୫୫ ରୁ ୧୮୫୮, ପାଖାପାଖି ଚାରିବର୍ଷର— ଯେଉଁକାଳର ପ୍ରଧାନ ପ୍ରଧାନ ବିଷୟଗୁଡ଼ିକ ଆମେ ଏହାପୂର୍ବରୁ ଆଲୋଚନା କରିଛୁ । ଦ୍ୱିତୀୟ ୧୮୫୯ରୁ ୧୮୬୩— ଯେଉଁ ସମୟର ଶେଷ ଦୁଇବର୍ଷରୁ ଅଧିକ ସମୟ ଠାକୁର ବ୍ରାହ୍ମଣୀଙ୍କ ନିର୍ଦ୍ଦେଶରେ 'ଗୋକୁଳବ୍ରତ'ରୁ ଆରମ୍ଭ କରି ସେତେବେଳେ ବଙ୍ଗଳାଦେଶରେ ପ୍ରଚଳିତ ଚଉଷଠୀ ପ୍ରକାରର ପ୍ରଧାନ ତନ୍ତ୍ର-ନିର୍ଦ୍ଦିଷ୍ଟ ସାଧନସମୂହ ଯଥାବିଧି ଅନୁଷ୍ଠାନ କରିଥିଲେ । ତୃତୀୟ, ୧୮୬୩ ରୁ ୧୮୬୬— ଚାରିବର୍ଷ ଯେଉଁ ସମୟରେ ସେ 'ଜଟାଧାରୀ' ନାମକ ରାମୋପାସକ ସାଧୁଙ୍କ ନିକଟରୁ ରାମ-ମନ୍ତ୍ରରେ ଉପଦିଷ୍ଟ ହୋଇଥିଲେ ଏବଂ ଶ୍ରୀଶ୍ରୀରାମଲାଲା ବିଗ୍ରହ ପ୍ରାପ୍ତ ହୋଇଥିଲେ । ବୈଷ୍ଣବତନ୍ତ୍ରୋକ୍ତ ମଧୁରଭାବରେ ସିଦ୍ଧିଲାଭ କରିବା ପାଇଁ ଛଅମାସ କାଳ ସ୍ତ୍ରୀବେଶ ଧାରଣ କରିଥିଲେ, ଆଚାର୍ଯ୍ୟ ଶ୍ରୀତୋତାପୁରୀଙ୍କ ନିକଟରୁ ସନ୍ନ୍ୟାସଗ୍ରହଣପୂର୍ବକ ସମାଧିର ନିର୍ବିକଳ୍ପ ଭୂମିରେ ଆରୋହଣ କରିଥିଲେ ଏବଂ ପରିଶେଷରେ ଶ୍ରୀଯୁକ୍ତ ଗୋବିନ୍ଦଙ୍କ

ନିକଟରୁ ଇସ୍‌ଲାମ ଧର୍ମର ଉପଦେଶ ଗ୍ରହଣ କରିଥିଲେ; ଉକ୍ତ ଦ୍ୱାଦଶ ବର୍ଷ ମଧ୍ୟରେ ହିଁ ସେ ବୈଷ୍ଣବତନ୍ତ୍ରୋକ୍ତ ସଖ୍ୟଭାବର ଓ କର୍ତ୍ତାଭଜା, ନବରସିକ ପ୍ରଭୃତି ବୈଷ୍ଣବ ମତର ଅବାନ୍ତର ସମ୍ପ୍ରଦାୟଗୁଡ଼ିକର ସାଧନମାର୍ଗ ସହିତ ମଧ୍ୟ ପରିଚିତ ହୋଇଥିଲେ । ବୈଷ୍ଣବଧର୍ମର ସମସ୍ତ ସଂପ୍ରଦାୟର ମତ ସହିତ ଯେ ସେ ବିଶେଷ ଭାବରେ ପରିଚିତ ଥିଲେ, ତାହା ବୈଷ୍ଣବଚରଣ ଗୋସ୍ୱାମୀପ୍ରମୁଖ ଏସମସ୍ତ ପଥର ସାଧକବର୍ଗଙ୍କର ତାଙ୍କ ନିକଟକୁ ଆଧ୍ୟାତ୍ମିକ ସହାୟତା ଲାଭ ନିମିତ୍ତ ଆଗମନରୁ ସ୍ପଷ୍ଟ ଭାବରେ ବୁଝାଯାଏ । ଠାକୁରଙ୍କ ସାଧନ ସମୟକୁ ପୂର୍ବୋକ୍ତ ରୂପରେ ତିନିଭାଗରେ ବିଭକ୍ତ କରି ଅନୁଧାବନ କରି ଦେଖିଲେ ଏହି ତିନିଭାଗର ପ୍ରତ୍ୟେକଟିରେ ଅନୁଷ୍ଠିତ ତାଙ୍କର ସାଧନକାଳ ମଧ୍ୟରେ ଏକ ଶ୍ରେଣୀଗତ ବିଭିନ୍ନତା ସ୍ପଷ୍ଟ ଦେଖିବାକୁ ମିଳିଥାଏ ।

### ସାଧନାକାଳର ପ୍ରଥମ ଚାରିବର୍ଷରେ ଠାକୁରଙ୍କର ଅବସ୍ଥା ଓ ଦର୍ଶନାଦିର ପୁନରାବୃତ୍ତି :

ଆମେ ଦେଖିଛୁ—ସାଧନାକାଳର ପ୍ରଥମଭାଗରେ ଠାକୁର ବାହାରର ସହାୟତା ମଧ୍ୟରେ କେବଳ ଶ୍ରୀଯୁକ୍ତ କେନାରାମ ଭଟ୍ଟାଚାର୍ଯ୍ୟଙ୍କ ନିକଟରୁ ଦୀକ୍ଷାଗ୍ରହଣ କରିଥିଲେ । ଈଶ୍ୱରଲାଭ ନିମିତ୍ତ ଅନ୍ତରର ବ୍ୟାକୁଳତା ହିଁ ସେହି ସମୟରେ ତାଙ୍କର ଏକମାତ୍ର ସହାୟ ହୋଇଥିଲା । ତାହା ହିଁ ପ୍ରବଳ ହୋଇ ଅଳ୍ପ ଦିନ ମଧ୍ୟରେ ତାଙ୍କର ଶରୀରମନରେ ଅଶେଷ ପରିବର୍ତ୍ତନ ଆଣିଥିଲା । ଉପାସ୍ୟଙ୍କ ପ୍ରତି ଅସୀମ ଭଲ ପାଇବା ଆଣି ତାହା ହିଁ ତାଙ୍କୁ ବୈଧୀ ଭକ୍ତିର ନିମୟାବଳୀ ଉଲ୍ଲଂଘନ କରାଇ କ୍ରମେ ରାଗାନୁଗା ଭକ୍ତିପଥରେ ଅଗ୍ରସର କରାଇଥିଲା ଏବଂ ଶ୍ରୀଶ୍ରୀଜଗନ୍ମାତାଙ୍କ ପ୍ରତ୍ୟକ୍ଷ ଦର୍ଶନରେ ସୌଭାଗ୍ୟ ପ୍ରଦାନ କରି ଯୋଗବିଭୂତିସମ୍ପନ୍ନ କରି ତୋଳିଥିଲା ।

### ଏହି ସମୟରେ ଶ୍ରୀଶ୍ରୀଜଗଦମ୍ବାଙ୍କର ଦର୍ଶନଲାଭ ହେବା ପରେ ଠାକୁରଙ୍କୁ ପୁଣି କାହିଁକି ସାଧନା କରିବାକୁ ହୋଇଥିଲା ? ଗୁରୁ ଉପଦେଶ, ଶାସ୍ତ୍ରବାକ୍ୟ ଓ ନିଜକୃତ ପ୍ରତ୍ୟକ୍ଷର ଏକତାଦର୍ଶନରେ ଶାନ୍ତିଲାଭ :

ପାଠକମାନେ ହୁଏତ କହିବେ, ''ତେବେ ଆଉ କ'ଣ ବାକି ରହିଲା ? ସେହି ସମୟରେ ହିଁ ତ ଠାକୁର ଯୋଗସିଦ୍ଧି ଓ ଈଶ୍ୱରଲାଭ କରି କୃତାର୍ଥ ହୋଇଥିଲେ; ତେଣୁ ପରେ ପୁଣି କାହିଁକି ସାଧନ କଲେ ?'' ଏହାର ଉତ୍ତରରେ କହିବାକୁ ହେବ—ଗୋଟିଏ ଭାବରେ ସେହି କଥା ଯଥାର୍ଥ ହେଲେ ମଧ୍ୟ ପରବର୍ତ୍ତୀ କାଳରେ ସାଧନାରେ ପ୍ରବୃତ୍ତ ହେବା ତାଙ୍କର ଅନ୍ୟ ପ୍ରୟୋଜନ ଥିଲା । ଠାକୁର କହୁଥିଲେ, ''ବୃକ୍ଷ ଏବଂ ଲତାଗୁଡ଼ିକରେ ସାଧାରଣ ନିୟମରେ ଆଗେ ଫୁଲ,

ପରେ ଫଳ ହୋଇଥାଏ; ମାତ୍ର ଏହା ମଧ୍ୟରେ କିଛି ଏପରି ବୃକ୍ଷ ଥାଏ, ଯେଉଁଥିରେ ଆଗେ ଫଳ ଦେଖା ଦେଇ ପରେ ଫୁଲ ଦେଖାଯାଇଥାଏ ।'' ସାଧନକ୍ଷେତ୍ରରେ ଠାକୁରଙ୍କର ମନର ବିକାଶ ମଧ୍ୟ ଠିକ୍ ସେହି ପ୍ରକାରରେ ହୋଇଥିଲା । ଏଥିପାଇଁ ପାଠକମାନଙ୍କର ପୂର୍ବୋକ୍ତ କଥା ଆମେ ଏକ ପ୍ରକାର ସତ୍ୟ ବୋଲି କହୁଛୁ । କିନ୍ତୁ ସାଧନ କାଳର ପ୍ରଥମ ଭାଗରେ ତାଙ୍କର ଅଦ୍ଭୁତ ପ୍ରତ୍ୟକ୍ଷ ଓ ଜଗଦମ୍ବାଙ୍କର ଦର୍ଶନ ଇତ୍ୟାଦି ଉପସ୍ଥିତ ହୋଇଥିଲେ ମଧ୍ୟ ସେସବୁକୁ ଶାସ୍ତ୍ରରେ ଲିପିବଦ୍ଧ ସାଧକମାନଙ୍କର ଉପଲବ୍ଧି ସହିତ ଯେତେକ୍ଷଣ ମିଳାଇ ନ ପାରୁଥିଲେ, ସେତେକ୍ଷଣ ପର୍ଯ୍ୟନ୍ତ ଏଗୁଡ଼ିକର ସତ୍ୟତା ଏବଂ ଚରମ ସୀମା ସମ୍ବନ୍ଧରେ ସେ ଦୃଢ଼ନିଶ୍ଚୟ ହୋଇ ପାରୁ ନ ଥିଲେ । କେବଳ ଅନ୍ତରର ବ୍ୟାକୁଳତା ସାହାଯ୍ୟରେ ଯାହା ସେ ଏହାପୂର୍ବରୁ ପ୍ରତ୍ୟକ୍ଷ କରିଥିଲେ, ତାହା ହିଁ ପୁଣି ପୂର୍ବୋକ୍ତ କାରଣରେ ଶାସ୍ତ୍ରନିର୍ଦ୍ଦିଷ୍ଟ ପଥ ଓ ପ୍ରଣାଳୀ ଅବଲମ୍ବନ କରି ପ୍ରତ୍ୟକ୍ଷ କରିବା ତାଙ୍କର ପ୍ରୟୋଜନ ହୋଇଥିଲା । ଶାସ୍ତ୍ର କହନ୍ତି — ଗୁରୁମୁଖରୁ ଶ୍ରୁତ ଅନୁଭବ ଓ ଶାସ୍ତ୍ରରେ ଲିପିବଦ୍ଧ ପୂର୍ବ ପୂର୍ବ ଯୁଗର ସାଧକମାନଙ୍କର ଅନୁଭବ ସହିତ ସାଧକ ନିଜ ଧର୍ମ-ଜୀବନରେ ଦିବ୍ୟଦର୍ଶନ ଓ ଅଲୌକିକ ଅନୁଭବସମସ୍ତ ଯେପର୍ଯ୍ୟନ୍ତ ମିଳାଇ ସମାନ ବୋଲି ପ୍ରତ୍ୟକ୍ଷ ନ କରେ ସେପର୍ଯ୍ୟନ୍ତ ସେ ନିଶ୍ଚିନ୍ତ ହୋଇପାରେ ନାହିଁ । ଏହି ତିନୋଟି ବିଷୟକୁ ମିଳାଇ ଏକ ବୋଲି ଦେଖିବାକୁ ପାଇବାମାତ୍ରେ ସେ ସର୍ବତୋଭାବରେ ସଂଶୟରହିତ ହୋଇ ପୂର୍ଣ୍ଣ ଶାନ୍ତିର ଅଧିକାରୀ ହୋଇଥାଏ ।

**ବ୍ୟାସପୁତ୍ର ଶୁକଦେବଙ୍କର ସେହିପରି ହୋଇଥିବାର ଘଟଣା :**

ପୂର୍ବୋକ୍ତ କଥାର ଦୃଷ୍ଟାନ୍ତସ୍ୱରୂପ ଆମେ ପାଠକଙ୍କୁ ବ୍ୟାସପୁତ୍ର ପରମହଂସାଗ୍ରଣୀ ଶ୍ରୀଶୁକଦେବଙ୍କର ଜୀବନ-ଘଟଣା ଉଲ୍ଲେଖ କରିପାରିବୁ । ମାୟାରହିତ ଶ୍ରୀଶୁକଦେବଙ୍କ ଜୀବନରେ ଜନ୍ମସମୟରୁ ନାନାପ୍ରକାର ଦିବ୍ୟଦର୍ଶନ ଓ ଅନୁଭବ ଉପସ୍ଥିତ ହେଉଥିଲା । ମାତ୍ର ପୂର୍ଣ୍ଣଜ୍ଞାନ ଲାଭରେ କୃତାର୍ଥ ହୋଇଛନ୍ତି ବୋଲି ଯେ ତାଙ୍କର ସେହିପରି ହେଉଛି, ସେ ତାହା ଧାରଣା କରିପାରୁ ନ ଥିଲେ । ମହାମତି ବ୍ୟାସଙ୍କ ନିକଟରୁ ବେଦାଦି ଶାସ୍ତ୍ର ଅଧ୍ୟୟନ ସମାପ୍ତ କରି ଶୁକ ଦିନେ ପିତାଙ୍କୁ କହିଲେ, ''ଶାସ୍ତ୍ରରେ ଯେଉଁ ସମସ୍ତ ଅବସ୍ଥା କଥା ଲିପିବଦ୍ଧ ଅଛି, ତାହା ମୁଁ ଆଜନ୍ମ ଅନୁଭବ କରୁଛି; ତଥାପି ଆଧ୍ୟାତ୍ମିକ ରାଜ୍ୟର ଚରମ ସତ୍ୟ ଉପଲବ୍ଧି କରିଛି କି ନାହିଁ, ତଦ୍ବିଷୟରେ ସ୍ଥିରନିଶ୍ଚୟ ହୋଇପାରୁ ନାହିଁ । ଅତଏବ ଏହା ସମ୍ବନ୍ଧରେ ଆପଣ ଯାହା ଜାଣିଛନ୍ତି ମୋତେ କୁହନ୍ତୁ ।'' ବ୍ୟାସଦେବ ଭାବିଲେ ଶୁକଙ୍କୁ ମୁଁ ଆଧ୍ୟାତ୍ମିକ ଲକ୍ଷ୍ୟ ଏବଂ ଚରମ ସତ୍ୟ ସମ୍ବନ୍ଧରେ ସର୍ବଦା ଉପଦେଶ ଦେଇ ଆସୁଛି, ତଥାପି ତା'ର ମନରୁ ସନ୍ଦେହ ଦୂର ହୋଇ ନାହିଁ; ସେ ମନେ କରୁଛି ପୂର୍ଣ୍ଣଜ୍ଞାନ ଲାଭ କଲେ ସେ ସଂସାର ତ୍ୟାଗ କରିବ ଏକଥା ଭାବି

ସ୍ନେହର ବଶବର୍ତ୍ତୀ ହୋଇ କିମ୍ବା ଅନ୍ୟ କୌଣସି କାରଣରୁ ମୁଁ ତାଙ୍କୁ ସମସ୍ତ କଥା କହି ନାହିଁ । ତେଣୁ ଅନ୍ୟ କୌଣସି ମନୀଷୀ ବ୍ୟକ୍ତିଙ୍କ ନିକଟରୁ ତା'ର ଏବିଷୟ ଶ୍ରବଣ କରିବା କର୍ତ୍ତବ୍ୟ । ଏପରି ଚିନ୍ତା କରି ବ୍ୟାସ କହିଲେ, ''ମୁଁ ତୁମର ଏହି ସନ୍ଦେହ ନିରସନରେ ଅସମର୍ଥ; ମିଥିଳାର ବିଦେହରାଜା ଜନକ ଯଥାର୍ଥ ଜ୍ଞାନୀ ଭାବରେ ଖ୍ୟାତି ବୋଲି ତୁମକୁ ଅଜଣା ନାହିଁ । ତାଙ୍କ ନିକଟକୁ ଗମନ କରି ତୁମେ ସମସ୍ତ ପ୍ରଶ୍ନର ମୀମାଂସା କରିନିଅ ।'' ଶୁକ ପିତାଙ୍କର କଥା ମାନି ଅତିଶୀଘ୍ର ମିଥିଳା ଗମନ କରିଥିଲେ ଏବଂ ରାଜର୍ଷି ଜନକଙ୍କ ନିକଟରୁ ବ୍ରହ୍ମଜ୍ଞ ପୁରୁଷଙ୍କର ଯେଉଁ ପ୍ରକାରର ଅନୁଭୂତି ଉପସ୍ଥିତ ହୁଏ ଶୁଣି ଗୁରୁ ଉପଦେଶ, ଶାସ୍ତ୍ରବାକ୍ୟ ଏବଂ ନିଜ ଜୀବନର ଅନୁଭବର ଐକ୍ୟ ଦେଖି ଶାନ୍ତିଲାଭ କରିଥିଲେ ।

## ଠାକୁରଙ୍କର ସାଧନାର ଅନ୍ୟ କାରଣ ହେଉଛି; ସେ ସ୍ୱାର୍ଥ ପାଇଁ ନୁହେଁ, ବରଂ ଅନ୍ୟମାନଙ୍କର କଲ୍ୟାଣ ପାଇଁ ସାଧନାରେ ପ୍ରବୃତ୍ତ ହୋଇଥିଲେ :

ପୂର୍ବୋକ୍ତ କାରଣ ବ୍ୟତୀତ ଠାକୁରଙ୍କର ପରବର୍ତ୍ତୀ ସମୟର ସାଧନା ନିମିତ୍ତ ଗଭୀର କାରଣସମୂହ ମଧ୍ୟ ଥିଲା । ଏଗୁଡ଼ିକର ଉଲ୍ଲେଖ ମାତ୍ର ଆମେ ଏଠାରେ କରିପାରିବା । ଶାନ୍ତିଲାଭ କରି ସ୍ୱୟଂ କୃତାର୍ଥ ହେବେ, କେବଳ ଏହା ହିଁ ଠାକୁରଙ୍କର ସାଧନାର ଉଦ୍ଦେଶ୍ୟ ନ ଥିଲା । ଶ୍ରୀଶ୍ରୀଜଗନ୍ମାତା ତାଙ୍କୁ ଜଗତର କଲ୍ୟାଣ ନିମିତ୍ତ ଶରୀର ପରିଗ୍ରହ କରାଇଥିଲେ । ସେଥିପାଇଁ ପରସ୍ପରବିବଦମାନ ଧର୍ମମତଗୁଡ଼ିକର ଅନୁଷ୍ଠାନ କରି ସତ୍ୟାସତ୍ୟ-ନିର୍ଦ୍ଧାରଣର ଅଦ୍ଭୁତ ପ୍ରୟାସ ତାଙ୍କ ଜୀବନରେ ଘଟିଥିଲା । ତେଣୁ ସମଗ୍ର ଆଧ୍ୟାତ୍ମିକ ଜଗତର ଆଚାର୍ଯ୍ୟ ପଦବୀ ଗ୍ରହଣ ପାଇଁ ତାଙ୍କୁ ସମସ୍ତ ପ୍ରକାରର ଧର୍ମମତର ସାଧନା ଓ ସେଗୁଡ଼ିକର ଚରମ ଉଦ୍ଦେଶ୍ୟ ସହିତ ପରିଚିତ ହେବାକୁ ପଡ଼ିଥିଲା, ଏହି କଥା କୁହାଯାଇପାରେ । କେବଳ ସେତିକି ନୁହେଁ, ଅଧିକନ୍ତୁ ଅନୁଷ୍ଠାନ-ସାହାଯ୍ୟରେ ତାଙ୍କ ପରି ନିରକ୍ଷର ପୁରୁଷଙ୍କ ଜୀବନରେ ଶାସ୍ତ୍ରରେ ଲିପିବଦ୍ଧ ଅବସ୍ଥାସମୂହର ଉଦୟ କରି ଶ୍ରୀଶ୍ରୀଜଗଦମ୍ବା ଠାକୁରଙ୍କ ଦ୍ୱାରା ବର୍ତ୍ତମାନ ଯୁଗରେ ବେଦ, ପୁରାଣ, ବାଇବେଲ, କୋରାନ୍ ଇତ୍ୟାଦି ସମସ୍ତ ଧର୍ମଶାସ୍ତ୍ରର ସତ୍ୟତା ପୁନଃପ୍ରତିଷ୍ଠିତ କରିବାକୁ ଅଗ୍ରସର ହୋଇଥିଲେ । ସେଥିପାଇଁ ସ୍ୱୟଂ ଶାନ୍ତିଲାଭ କରିବା ପରେ ମଧ୍ୟ ତାଙ୍କର ସାଧନାର ବିରାମ ହୋଇ ନ ଥିଲା । ପ୍ରତ୍ୟେକ ଧର୍ମମତର ସିଦ୍ଧପୁରୁଷ ଓ ପଣ୍ଡିତମାନଙ୍କୁ ଯଥାସମୟରେ ଦକ୍ଷିଣେଶ୍ୱରକୁ ଅଣାଇ ସମସ୍ତ ଧର୍ମମତର ସାଧନାନୁଷ୍ଠାନର ଶାସ୍ତ୍ରସକଳ ଶ୍ରବଣ କରିବାର ଅଧିକାର ଯେ ଜଗନ୍ମାତା ଠାକୁରଙ୍କୁ ପୂର୍ବୋକ୍ତ ପ୍ରୟୋଜନବିଶେଷ ସାଧନ ପାଇଁ ପ୍ରଦାନ କରିଥିଲେ, ଏକଥା ଆମେ ତାଙ୍କ ଅଦ୍ଭୂତ ଜୀବନ ଆଲୋଚନାରେ ଯେତେ ଅଗ୍ରସର ହେବା ସେତେ ସ୍ପଷ୍ଟ ବୁଝିପାରିବା ।

**ଯଥାର୍ଥ ବ୍ୟାକୁଳତାର ଉଦୟରେ ସାଧକର ଈଶ୍ୱରଲାଭ । ଠାକୁରଙ୍କ ଜୀବନରେ ଉକ୍ତ ବ୍ୟାକୁଳତା କେତେଦୂର ହୋଇଥିଲା :**

ପୂର୍ବେ କୁହାଯାଇଅଛି, ସାଧନସମୟର ପ୍ରଥମ ଚାରିବର୍ଷରେ ଈଶ୍ୱରଦର୍ଶନ ନିମିତ୍ତ ଅନ୍ତରର ବ୍ୟାକୁଳ ଆଗ୍ରହ ହିଁ ଠାକୁରଙ୍କ ପ୍ରଧାନ ଅବଲମ୍ବନୀୟ ହୋଇଥିଲା । ଏପରି କୌଣସି ଲୋକ ସେହି ସମୟରେ ତାଙ୍କ ନିକଟକୁ ଆସି ନ ଥିଲେ, ଯିଏ ତାଙ୍କୁ ସମସ୍ତ ବିଷୟରେ ଶାସ୍ତ୍ରନିର୍ଦ୍ଦିଷ୍ଟ ବିଧିବଦ୍ଧ ପଥରେ ସୁଚାଳିତ କରି ଆଧ୍ୟାତ୍ମିକ ଉନ୍ନତି ବିଷୟରେ ଅଗ୍ରସର କରାଇବେ । ତେଣୁ ସାଧନପ୍ରଣାଳୀର ଅନ୍ତର୍ଗତ ତୀବ୍ର ଆଗ୍ରହରୂପ ସାଧାରଣ ବିଧି ହିଁ ସେତେବେଳେ ତାଙ୍କର ଏକମାତ୍ର ଅବଲମ୍ବନୀୟ ହୋଇଥିଲା । କେବଳ ତାହାର ସହାୟତାରେ ଠାକୁର ଜଗଦମ୍ବାଙ୍କୁ ଦର୍ଶନ କରିଥିବାରୁ ଏହା ମଧ୍ୟ ପ୍ରମାଣିତ ହୁଏ ଯେ, ବାହ୍ୟ କୌଣସି ବିଷୟର ସହାୟତା ନ ପାଇଲେ ମଧ୍ୟ ଏକମାତ୍ର ବ୍ୟାକୁଳତା ଥିଲେ ହିଁ ସାଧକର ଈଶ୍ୱରଲାଭ ହୋଇପାରେ । କିନ୍ତୁ କେବଳ ତାହାର ସହାୟରେ ସିଦ୍ଧକାମ ହେବାକୁ ହେଲେ ଏହି ବ୍ୟାକୁଳତାର ପରିମାଣ ଯେ କେତେ ଅଧିକ ହେବା ଆବଶ୍ୟକ, ତାହା ଆମେ ଅନେକ ସମୟରେ ଅନୁଧାବନ କରିବାକୁ ଭୁଲିଯାଉ । ଠାକୁରଙ୍କର ଏହି ସମୟର ଜୀବନ ଆଲୋଚନା କଲେ ଏବିଷୟ ଆମମାନଙ୍କର ସ୍ପଷ୍ଟ ପ୍ରତୀୟମାନ ହୁଏ । ଆମେ ଦେଖିଛୁ, ତୀବ୍ର ବ୍ୟାକୁଳତାର ପ୍ରେରଣାରେ ତାଙ୍କର ଆହାର, ନିଦ୍ରା, ଲଜ୍ଜା, ଭୟ ପ୍ରଭୃତି ଶାରୀରିକ ଓ ମାନସିକ ଦୃଢ଼ବଦ୍ଧ ସଂସ୍କାର ଓ ଅଭ୍ୟାସଗୁଡ଼ିକ ଯେପରି କେଉଁଠାରେ ଲୁପ୍ତ ହୋଇଯାଇଥିଲା; ଏବଂ ଶାରୀରିକ ସ୍ୱାସ୍ଥ୍ୟରକ୍ଷା ଦୂରରେ ଥାଉ, ଜୀବନରକ୍ଷା ଦିଗରେ ମଧ୍ୟ ତାଙ୍କର କିଛିମାତ୍ର ଲକ୍ଷ୍ୟ ନ ଥିଲା । ଠାକୁର କହୁଥିଲେ, ‘‘ଶରୀରସଂସ୍କାର ଆଡ଼କୁ ମନ ଆଦୌ ନ ଥିବାରୁ ଏସମୟରେ ମସ୍ତକର କେଶ ବଢ଼ିଯାଇ ଧୂଳିମାଟି ଲାଗି ଜଟା ହୋଇଯାଇଥିଲା । ଧ୍ୟାନ କରିବାକୁ ବସିଲେ ମନର ଏକାଗ୍ରତାରେ ଶରୀରଟା ଏପରି ସ୍ଥାଣୁବତ୍ ସ୍ଥିର ହୋଇ ରହୁଥିଲା ଯେ, ପକ୍ଷୀମାନେ ଜଡ଼ପଦାର୍ଥ ଜ୍ଞାନରେ ନିଃସଂକୋଚରେ ମଥା ଉପରେ ବସି ରହୁଥିଲେ ଏବଂ କେଶମଧ୍ୟଗତ ଧୂଳିସବୁ ଚଞ୍ଚୁ ଦ୍ୱାରା ହଲାଇ ତା’ମଧ୍ୟରେ ତଣ୍ଡୁଳକଣିକା ଅନ୍ୱେଷଣ କରୁଥିଲେ ! ପୁଣି ବେଳେବେଳେ ଭଗବତ-ବିରହରେ ଅଧୀର ହୋଇ ଭୂମିରେ ଏପରି ମୁଖଘର୍ଷଣ କରୁଥିଲି ଯେ, ମୁହଁ ଛିଣ୍ଡିଯାଇ ସ୍ଥାନେ ସ୍ଥାନେ ରକ୍ତ ବାହାରୁଥିଲା ! ସେହିପରି ଧ୍ୟାନ, ଭଜନ, ପ୍ରାର୍ଥନା, ଆତ୍ମନିବେଦନ ଆଦିରେ ସମସ୍ତ ଦିନ କିପରି ଚାଲି ଯାଉଥିଲା, ତାହାର ହୋସ୍ ନ ଥିଲା ! ପରେ ସନ୍ଧ୍ୟାହେଲେ ଯେତେବେଳେ ଚାରିଆଡ଼େ ଶଙ୍ଖଘଣ୍ଟାର ଧ୍ୱନି ହେଉଥିଲା, ସେତେବେଳେ ମନେପଡୁଥିଲା ଯେ ଦିନ ସରିଲା, ଆଉ ଗୋଟିଏ ଦିନ ବୃଥାରେ ଚାଲିଗଲା, ମା’ର ଦେଖା ପାଇଲି ନାହିଁ । ସେତେବେଳେ ତୀବ୍ର ଆକ୍ଷେପରେ ପ୍ରାଣ ଏତେ ବ୍ୟାକୁଳ ହେଉଥିଲା ଯେ, ଆଉ ସ୍ଥିର ରହିପାରୁ ନ ଥିଲି; କଚାଡ଼ି ହୋଇ ଭୂଇଁରେ

ପଡ଼ି 'ମା, ଏବେ ମଧ୍ୟ ଦେଖା ଦେଲୁ ନାହିଁ' ବୋଲି ଚିତ୍କାର ଓ କ୍ରନ୍ଦନରେ ଚତୁର୍ଦ୍ଦିଗ ପୂର୍ଣ୍ଣ କରୁଥିଲି ଓ ଯନ୍ତ୍ରଣାରେ ଛଟପଟ ହେଉଥିଲି । ଲୋକମାନେ କହୁଥିଲେ, 'ବୋଧହୁଏ ପେଟମରା ରୋଗ ହୋଇଅଛି, ସେଥିପାଇଁ ଏତେ କାନ୍ଦୁଛନ୍ତି ।' ଆମେ ଯେତେବେଳେ ଠାକୁରଙ୍କ ନିକଟକୁ ଯାଉଥିଲୁ, ସେତେବେଳେ ସେ ବେଳେବେଳେ ଆମକୁ ଈଶ୍ୱରଙ୍କ ନିମିତ୍ତ ପ୍ରାଣରେ ତୀବ୍ର ବ୍ୟାକୁଳତାର ପ୍ରୟୋଜନ ବୁଝାଇବାକୁ ସାଧନସମୟର ଏସମସ୍ତ କଥା ଶୁଣାଇ ଆକ୍ଷେପ କରି କହୁଥିଲେ, ''ଲୋକମାନେ ସ୍ତ୍ରୀପୁତ୍ରାଦିର ମୃତ୍ୟୁରେ ବା ବିଷୟସମ୍ପତ୍ତି ହରାଇଲେ ଆଖିରୁ ମାଠିଆ ମାଠିଆ ଲୁହ ଗଡ଼ାଇ ଥାଆନ୍ତି, ମାତ୍ର ଈଶ୍ୱରଲାଭ ହେଲା ନାହିଁ ବୋଲି ଏପରି କିଏ କରେ କହ ? ଅଥଚ କହନ୍ତି, 'ତାଙ୍କୁ ଏତେ ଡାକିଲି, ତଥାପି ସେ ଦେଖାଦେଲେ ନାହିଁ !' ଈଶ୍ୱରଙ୍କ ପାଇଁ ସେହିପରି ବ୍ୟାକୁଳଭାବରେ ଥରେ ମାତ୍ର କାନ୍ଦୁ ତ, ଦେଖିବା କିପରି ସେ ଦର୍ଶନ ନ ଦେବେ !'' କଥାଗୁଡ଼ିକ ଆମମାନଙ୍କୁ ମର୍ମେ ମର୍ମେ ଆଘାତ କରୁଥିଲା; ଶୁଣିଲେ ହିଁ ବୁଝାଯାଉଥିଲା ଯେ, ସେ ନିଜ ଜୀବନରେ ଏକଥା ସତରେ ପ୍ରତ୍ୟକ୍ଷ କରିଛନ୍ତି ବୋଲି ହିଁ ଏତେ ନିଃସଂଶୟରେ ତାହା କହିପାରୁଛନ୍ତି ।

### ମହାବୀରଙ୍କର ଅନୁଗାମୀ ହୋଇ ଠାକୁରଙ୍କର ଦାସ୍ୟଭକ୍ତିସାଧନା :

ସାଧନକାଳର ପ୍ରଥମ ଚାରିବର୍ଷରେ ଠାକୁର କେବଳ ଜଗଦମ୍ବାଙ୍କର ଦର୍ଶନ କରି ନିଶ୍ଚିନ୍ତ ରହି ନ ଥିଲେ । ଭାବମୁଖରେ ଶ୍ରୀଶ୍ରୀଜଗନ୍ମାତାଙ୍କର ଦର୍ଶନଲାଭ ପରେ ନିଜ କୁଳଦେବତା ରଘୁବୀରଙ୍କ ଆଡ଼କୁ ତାଙ୍କର ଚିତ୍ତ ଆକୃଷ୍ଟ ହୋଇଥିଲା । ହନୁମାନଙ୍କ ସଦୃଶ ଅନନ୍ୟଭକ୍ତିରେ ହିଁ ଶ୍ରୀରାମଚନ୍ଦ୍ରଙ୍କର ଦର୍ଶନଲାଭ ସମ୍ଭବପର ବୁଝି ଦାସ୍ୟଭକ୍ତିରେ ସିଦ୍ଧ ହେବା ପାଇଁ ସେ ଏବେ ନିଜ ଭିତରେ ମହାବୀରଙ୍କର ଭାବ ଆରୋପ କରି କିଛିଦିନ ପାଇଁ ସାଧନାରେ ପ୍ରବୃତ୍ତ ହୋଇଥିଲେ । ନିରନ୍ତର ମହାବୀରଙ୍କର ଚିନ୍ତା କରୁ କରୁ ଏସମୟରେ ସେ ସେହି ଆଦର୍ଶରେ ଏତେଦୂର ତନ୍ମୟ ହୋଇଯାଇଥିଲେ ଯେ, ନିଜର ପୃଥକ ଅସ୍ତିତ୍ୱ ଓ ବ୍ୟକ୍ତିତ୍ୱର କଥା କିଛି ଦିନ ପାଇଁ ସମ୍ପୂର୍ଣ୍ଣରୂପରେ ବିସ୍ମୃତ ହୋଇଥିଲେ । ସେ କହୁଥିଲେ, ''ଏହି ସମୟରେ ଆହାରବିହାର ଇତ୍ୟାଦି ସମସ୍ତ କାର୍ଯ୍ୟ ହନୁମାନଙ୍କ ପରି କରିବାକୁ ହେଉଥିଲା— ଇଚ୍ଛା କରି ଯେ କରୁଥିଲି ତାହା ନୁହେଁ, ଆପେ ହୋଇଯାଉଥିଲା ! ପିନ୍ଧିବା କପଡ଼ାକୁ ଲାଞ୍ଜ ପରି କରି ଅଣ୍ଟାରେ ଗୁଡ଼ାଉଥିଲି, ଲମ୍ଫଦେଇ ଚାଲୁଥିଲି, ଫଳମୂଳ ବ୍ୟତୀତ ଅନ୍ୟ କିଛି ଖାଉ ନ ଥିଲି—ତାହା ମଧ୍ୟ ଚୋପା ଛଡ଼ାଇ ଖାଇବାକୁ ପ୍ରବୃତ୍ତି ହେଉ ନ ଥିଲା । ଗଛ ଉପରେ ଅନେକ ସମୟ ବସି କଟାଉଥିଲି ଏବଂ ନିରନ୍ତର 'ରଘୁବୀର, ରଘୁବୀର' କହି ଗମ୍ଭୀର ସ୍ୱରରେ ଚିତ୍କାର କରୁଥିଲି । ଚକ୍ଷୁଦ୍ୱୟ ସେତେବେଳେ ସର୍ବଦା ଚଞ୍ଚଳ ଭାବ ଧାରଣ କରିଥିଲା ଏବଂ ଆଶ୍ଚର୍ଯ୍ୟର କଥା,

ମେରୁଦଣ୍ଡର ଶେଷ ଭାଗ ଏହି ସମୟରେ ପ୍ରାୟ ଏକ ଇଞ୍ଚ ବଢ଼ି ଯାଇଥିଲା ।''[୧] ଶେଷୋକ୍ତ କଥାଟି ଶୁଣି ଆମେ ପଚାରିଥିଲୁ, ''ମହାଶୟ, ଆପଣଙ୍କ ଶରୀରର ସେହି ଅଂଶ କ'ଣ ଏବେ ମଧ୍ୟ ସେହିପରି ରହିଛି ?'' ଉତ୍ତରରେ ସେ କହିଥିଲେ, ''ନା, ମନରୁ ସେହି ଭାବ ଗଲାପରେ ଏହା ଧୀରେ ଧୀରେ ପୂର୍ବ ପରି ସ୍ୱାଭାବିକ ଆକାର ଧାରଣ କରିଥିଲା ।''

## ଦାସ୍ୟଭକ୍ତି-ସାଧନାକାଳରେ ଶ୍ରୀଶ୍ରୀ ସୀତାଦେବୀଙ୍କର ଦର୍ଶନଲାଭର ବିବରଣ :

ଦାସ୍ୟଭକ୍ତି-ସାଧନାକାଳରେ ଠାକୁରଙ୍କ ଜୀବନରେ ଏକ ଅଭୂତପୂର୍ବ ଦର୍ଶନ ଓ ଅନୁଭବ ଆସିଥିଲା । ଏହି ଦର୍ଶନ ଓ ଅନୁଭବ ତାଙ୍କର ପୂର୍ବ ପ୍ରତ୍ୟକ୍ଷ-ଦର୍ଶନାଦିଠାରୁ ଏତେ ନୂତନ ଧରଣର ଥିଲା ଯେ, ଏହା ତାଙ୍କ ମନରେ ଗଭୀର ଭାବରେ ଅଙ୍କିତ ହୋଇ ସ୍ମୃତିରେ ସର୍ବକ୍ଷଣ ଜାଗରୂକ ଥିଲା । ସେ କହୁଥିଲେ, ''ଏହି ସମୟରେ ପଞ୍ଚବଟୀ ତଳେ ଦିନେ ବସିଛି—ଧ୍ୟାନଚିନ୍ତା ଯେ କରୁଥିଲି ତା ନୁହେଁ, ଏମିତି ବସିଥିଲି—ଏପରି ସମୟରେ ନିରୁପମା ଜ୍ୟୋତିର୍ମୟୀ ସ୍ତ୍ରୀମୂର୍ତ୍ତି ଅଦୂରରେ ଆବିର୍ଭୂତା ହୋଇ ସ୍ଥାନଟିକୁ ଆଲୋକିତ କଲେ । ସେତେବେଳେ କେବଳ ଏହି ମୂର୍ତ୍ତିଙ୍କୁ ଯେ ଦେଖିବାକୁ ପାଉଥିଲି ତା ନୁହେଁ, ପଞ୍ଚବଟୀର ବୃକ୍ଷରାଜି, ଗଙ୍ଗା ଇତ୍ୟାଦି ସମସ୍ତ ପଦାର୍ଥ ସାଧାରଣ ଭାବରେ ଦେଖିବାକୁ ପାଉଥିଲି । ଦେଖିଲି, ମୂର୍ତ୍ତିଟି ଜଣେ ମାନବୀର, କାରଣ ତାହା ଦେବୀମାନଙ୍କ ପରି ତ୍ରିନୟନସମ୍ପନ୍ନା ନ ଥିଲା । କିନ୍ତୁ ପ୍ରେମ-ଦୁଃଖ-କରୁଣା ଓ ସହିଷ୍ଣୁତାପୂର୍ଣ୍ଣ ସେହି ମୁଖସଦୃଶ ଅପୂର୍ବ ଓଜସ୍ୱୀ ଗମ୍ଭୀରଭାବ ଦେବୀମୂର୍ତ୍ତିମାନଙ୍କରେ ମଧ୍ୟ ସଚରାଚର ଦେଖାଯାଏ ନାହିଁ ! ପ୍ରସନ୍ନ ଦୃଷ୍ଟିପାତରେ ମୋହିତ କରି ସେହି ଦେବୀ-ମାନବୀ ଧୀର ଓ ମନ୍ଥର ପଦରେ ଉତ୍ତର ଦିଗରୁ ଦକ୍ଷିଣକୁ ମୋ ଆଡ଼କୁ ଆସୁଛନ୍ତି ! ସ୍ତମ୍ଭିତ ହୋଇ ଭାବୁଛି, 'ଇଏ କିଏ ?'—ଏହି ସମୟରେ ଗୋଟିଏ ହନୁମାନ କେଉଁଠୁ ହୁଂ-ହୁଂ ଶବ୍ଦ କରି ଆସି ତାଙ୍କର ପାଦତଳେ ଲୋଟିପଡ଼ିଲା ଏବଂ ଅନ୍ତର ମଧ୍ୟରୁ ମନ କହି ଉଠିଲା, 'ସୀତା, ଜନମ-ଦୁଃଖିନୀ ସୀତା, ଜନକରାଜନନ୍ଦିନୀ ସୀତା, 'ରାମମୟଜୀବିତା ସୀତା !' ସେତେବେଳେ 'ମା', 'ମା' କହି ଅଧୀର ହୋଇ ତାଙ୍କର ପାଦତଳେ ପଡ଼ିବାକୁ ଯାଉଛି, ଏହି ସମୟରେ ସେ ହଠାତ୍ ଆସି ଏହାଭିତରେ (ନିଜର ଶରୀର ଦେଖାଇ) ପ୍ରବେଶ କଲେ !—ଆନନ୍ଦ ଓ ବିସ୍ମୟରେ ଅଭିଭୂତ ହୋଇ ମୁଁ ବାହ୍ୟଜ୍ଞାନ ହରାଇ ପଡ଼ିଗଲି । ଧ୍ୟାନ-ଚିନ୍ତାଦି କିଛି ନ କରି ଏପରି ଭାବରେ କୌଣସି ଦର୍ଶନ ଏହାପୂର୍ବରୁ ହୋଇ ନ ଥିଲା । ଜନମ-ଦୁଃଖିନୀ ସୀତାଙ୍କୁ ସର୍ବାଗ୍ରେ ଦେଖିଥିଲି ବୋଲି ହିଁ ବୋଧହୁଏ ତାଙ୍କ ପରି ଆଜନ୍ମ ଦୁଃଖ ଭୋଗ କରୁଅଛି !''

---

୧. Enlargement of the Coccyx.

## ଠାକୁରଙ୍କର ସ୍ୱହସ୍ତରେ ପଞ୍ଚବଟୀ ରୋପଣ :

ତପସ୍ୟା ପାଇଁ ଉପଯୁକ୍ତ ଭୂମିର ପ୍ରୟୋଜନୀୟତା ଅନୁଭବ କରି ଠାକୁର ଏହି ସମୟରେ ହୃଦୟଙ୍କ ନିକଟରେ ନୂତନ ଏକ ପଞ୍ଚବଟୀ[୧] ସ୍ଥାପନ ପାଇଁ ବାସନା ପ୍ରକାଶ କଲେ । ହୃଦୟ କହୁଥିଲେ, "ପଞ୍ଚବଟୀର ନିକଟବର୍ତ୍ତୀ ହଂସପୁକୁର ନାମକ କ୍ଷୁଦ୍ର ପୁଷ୍କରିଣୀଟି ସେତେବେଳେ ଉଷଳା ହୋଇଥାଏ ଏବଂ ପୁରାତନ ପଞ୍ଚବଟୀ ନିକଟସ୍ଥ ନୀଚ ଜମିଖଣ୍ଡ ସେହି ମାଟିରେ ଭର୍ତ୍ତି କରି ସମତଳ କରାଯାଇଥିବାରୁ ଠାକୁର ଏହାପୂର୍ବରୁ ଯେଉଁ ଅଁଳା ଗଛ ମୂଳରେ ବସି ଧ୍ୟାନ କରୁଥିଲେ, ତାହା ନଷ୍ଟ ହୋଇଯାଇଥିଲା ।" ତେଣୁ ଏବେ ସେଠାରେ ଯେଉଁ ସାଧନକୁଟୀର ରହିଛି, ତାହାର ପଶ୍ଚିମରେ ଠାକୁର ସ୍ୱହସ୍ତରେ ଗୋଟିଏ ଅଶ୍ୱତଥ ବୃକ୍ଷ ରୋପଣ କରି ହୃଦୟଙ୍କ ଦ୍ୱାରା ବଟ, ଅଶୋକ, ବେଲ ଓ ଅଁଳା ବୃକ୍ଷର ଚାରା ରୋପଣ କରାଇଥିଲେ ଏବଂ ତୁଳସୀ ଓ ଅପରାଜିତାର ଅନେକଗୁଡ଼ିଏ ଚାରା ପୋତି ସମଗ୍ର ସ୍ଥାନଟି ବେଷ୍ଟନ କରାଇ ଦେଲେ । ଗୋରୁ, ଛେଳିଆଦିଙ୍କଠାରୁ ଚାରାଗଛଗୁଡ଼ିକୁ ରକ୍ଷା କରିବା ପାଇଁ ଯେଉଁ ଅଦ୍ଭୁତ ଉପାୟରେ ସେ 'ଭର୍ତାଭାରୀ' ନାମକ ମନ୍ଦିର ବଗିଚାର ଜନୈକ ମାଳୀର ସାହାଯ୍ୟରେ ସେ ସ୍ଥାନରେ ବେଢ଼ା ମଧ୍ୟ ବୁଲାଇଥିଲେ, ତାହା ଆମେ ପୂର୍ବରୁ କହିଛୁ ।[୨] ଠାକୁରଙ୍କ ଯତ୍ନରେ ଏବଂ ନିୟମିତ ପାଣି ଦେବାରୁ ତୁଳସୀ ଓ ଅପରାଜିତା ଗଛଗୁଡ଼ିକ ଅତି ଶୀଘ୍ର ଏତେ ବଡ଼ ଓ ଘଞ୍ଚ ହୋଇଉଠିଲା ଯେ, ଏହା ଭିତରେ ବସି ସେ ଯେତେବେଳେ ଧ୍ୟାନ କରୁଥିଲେ, ବାହାରର ଲୋକେ ତାଙ୍କୁ ଆଦୌ ଦେଖିପାରୁ ନ ଥିଲେ ।

## ଠାକୁରଙ୍କର ହଠଯୋଗ ଅଭ୍ୟାସ :

କାଳୀମନ୍ଦିର ପ୍ରତିଷ୍ଠା କଥା ଜନଶ୍ରୁତିରେ ପ୍ରଚାର ହେବା ପରେ ଗଙ୍ଗାସାଗର ଓ ଜଗନ୍ନାଥ-ଦର୍ଶନ କରିବାକୁ ଯାଉଥିବା ସାଧୁମାନେ ଏହି ଦୁଇତୀର୍ଥକୁ ଯିବାବେଳେ କେତେ ଦିନ ପାଇଁ ଶ୍ରଦ୍ଧାସମ୍ପନ୍ନା ରାଣୀଙ୍କର ଆତିଥ୍ୟଗ୍ରହଣ କରି ଦକ୍ଷିଣେଶ୍ୱର ମନ୍ଦିରରେ ବିଶ୍ରାମ କରିବାକୁ ଆରମ୍ଭ କଲେ ।[୩] ଠାକୁର କହୁଥିଲେ ଏପରି ଅନେକ ସାଧକ ଓ ସିଦ୍ଧପୁରୁଷମାନେ ଏଠାରେ ପଦାର୍ପଣ କରିଥିଲେ । ସେମାନଙ୍କ ମଧ୍ୟରୁ କାହାଠାରୁ ଉପଦିଷ୍ଟ ହୋଇ ଠାକୁର ସେସମୟରେ ପ୍ରାଣାୟାମ

---

୧. ଅଶ୍ୱତ୍ଥବିଲ୍ୱବୃକ୍ଷଞ୍ଚ ବଟଧାତ୍ରୀ-ଅଶୋକକମ୍ ।
ବଟୀପଞ୍ଚକମିତ୍ୟୁକ୍ତଂ ସ୍ଥାପୟେତ୍ ପଞ୍ଚଦିକ୍ଷୁ ଚ ॥
ଅଶ୍ୱତ୍ଥଂ ସ୍ଥାପୟେତ ପ୍ରାଚି ବିଲ୍ୱମୁତ୍ତରଭାଗତଃ ।
ବଟଂ ପଶ୍ଚିମଭାଗେ ତୁ ଧାତ୍ରୀଂ ଦକ୍ଷିଣତସ୍ତଥା ॥
ଅଶୋକଂ ବହ୍ନିଦିକ୍‌ସ୍ଥାପ୍ୟଂ ତପସ୍ୟାର୍ଥଂ ସୁରେଶ୍ୱରୀ ।
ମଧ୍ୟେ ବେଦୀଂ ଚତୁର୍ହସ୍ତାଂ ସୁନ୍ଦରୀଂ ସୁମନୋହରାମ୍ ॥ ଇତି — ସ୍କନ୍ଦପୁରାଣ ।

୨. ଗୁରୁଭାବ-ପୂର୍ବାର୍ଦ୍ଧ, ଦ୍ୱିତୀୟ ଅଧ୍ୟାୟ

୩. ଗୁରୁଭାବ — ଉତ୍ତରାର୍ଦ୍ଧ, ଦ୍ୱିତୀୟ ଅଧ୍ୟାୟ ।

ଇତ୍ୟାଦି ହଠଯୋଗର କ୍ରିୟାଗୁଡ଼ିକ ଅଭ୍ୟାସ କରୁଥିଲେ ବୋଲି ବୋଧହୁଏ । ହଳଧାରୀଙ୍କ ସମ୍ପର୍କୀୟ ନିମ୍ନଲିଖିତ ଘଟଣାଟି କହୁ କହୁ ଦିନେ ସେ ଆମମାନଙ୍କୁ ଏବିଷୟ କହିଥିଲେ । ହଠଯୋଗର କ୍ରିୟାଗୁଡ଼ିକ ନିଜେ ଅଭ୍ୟାସପୂର୍ବକ ଏସବୁର ଫଳାଫଳ ପ୍ରତ୍ୟକ୍ଷ କରି ହିଁ ସେ ପରଜୀବନରେ ଆମମାନଙ୍କୁ ଏସମସ୍ତ ଅଭ୍ୟାସ କରିବାକୁ ନିଷେଧ କରିଥିଲେ । ଆମମାନଙ୍କର ଜଣା ଅଛି, ଏବିଷୟରେ ଉପଦେଶ ପାଇଁ କେହି କେହି ତାଙ୍କ ନିକଟକୁ ଆସିଲେ ସେ ଉତ୍ତର ଦେଉଥିଲେ — ''ଏସବୁ ସାଧନ ବର୍ତ୍ତମାନ କାଳ ପାଇଁ ନୁହେଁ । କଳିରେ ଜୀବ ଅଳ୍ପାୟୁ ଏବଂ ଅନ୍ନଗତ ପ୍ରାଣ; ତେଣୁ ହଠଯୋଗ ଅଭ୍ୟାସପୂର୍ବକ ଶରୀର ଦୃଢ଼ କରି ରାଜଯୋଗ ସାହାଯ୍ୟରେ ଈଶ୍ୱରଙ୍କୁ ଡାକିବା ପାଇଁ ତା'ର ସମୟ କେଉଁଠି ? ହଠଯୋଗର କ୍ରିୟା ଅଭ୍ୟାସ କରିବାକୁ ହେଲେ ସିଦ୍ଧଗୁରୁଙ୍କ ସହିତ ନିରନ୍ତର ରହିବାକୁ ହୁଏ ଏବଂ ଆହାର-ବିହାର ଇତ୍ୟାଦି ସମସ୍ତ ବିଷୟରେ ତାଙ୍କର ଉପଦେଶ ଗ୍ରହଣ କରି କଠୋର ନିୟମ ପାଳନ କରିବାକୁ ହୁଏ । ନିୟମର ସାମାନ୍ୟ ବ୍ୟତିକ୍ରମରେ ଶରୀରରେ ବ୍ୟାଧି ଆରମ୍ଭ ହୋଇ ସାଧକର ମୃତ୍ୟୁ ମଧ୍ୟ ହୋଇପାରେ । ସେଥିପାଇଁ ଏସବୁ କରିବାର ଆବଶ୍ୟକତା ନାହିଁ । ପ୍ରାଣାୟାମ ଓ କୁମ୍ଭକ ଆଦି କରି ବାୟୁନିରୋଧ କରିବାର ଉଦ୍ଦେଶ୍ୟ ହେଉଛି ମନନିରୋଧ କରିବା । ଈଶ୍ୱରଙ୍କର ଭକ୍ତିସଂଯୁକ୍ତ ଧ୍ୟାନରେ ମନ ଓ ବାୟୁ ଉଭୟ ସ୍ୱତଃ ନିରୁଦ୍ଧ ହୋଇ ଆସିବ । କଳିରେ ଜୀବ ଅଳ୍ପାୟୁ ଓ ଅଳ୍ପଶକ୍ତିବିଶିଷ୍ଟ ହୋଇଥିବାରୁ ଭଗବାନ କୃପା କରି ତାହା ପାଇଁ ଈଶ୍ୱରଲାଭର ପଥ ସୁଗମ କରିଦେଇଛନ୍ତି । ସ୍ତ୍ରୀ-ପୁତ୍ରର ବିୟୋଗରେ ପ୍ରାଣରେ ଯେପରି ବ୍ୟାକୁଳତା ଓ ଅଭାବବୋଧ ଆସିଥାଏ, ଈଶ୍ୱରଙ୍କ ପାଇଁ ସେହିପରି ବ୍ୟାକୁଳତା ଚବିଶ ଘଣ୍ଟାମାତ୍ର କାହାର ପ୍ରାଣରେ ସ୍ଥାୟୀ ହେଲେ ସେ ତାଙ୍କୁ ଅବଶ୍ୟ ଦେଖା ଦେବେ ହିଁ ଦେବେ ।''

## ହଳଧାରୀଙ୍କର ଅଭିଶାପ :

ଲୀଳାପ୍ରସଙ୍ଗର ଏକ ଜାଗାରେ ଆମେ ପାଠକଙ୍କୁ କହିଛୁ, ଭାରତର ବର୍ତ୍ତମାନ କାଳରେ ସ୍ମୃତି ଅନୁସାରୀ ସାଧକ-ଭକ୍ତମାନେ ପ୍ରାୟତଃ ଅନୁଷ୍ଠାନଗୁଡ଼ିକରେ ତନ୍ତ୍ରର ଆଶ୍ରୟ ଗ୍ରହଣ କରି ଥାଆନ୍ତି ଏବଂ ବୈଷ୍ଣବ-ସମ୍ପ୍ରଦାୟଭୁକ୍ତ ଏହିପରି ବ୍ୟକ୍ତିମାନେ ପ୍ରାୟତଃ ପରକୀୟା-ପ୍ରେମସାଧନରୂପକ ପଥରେ ଯାଇଥାଆନ୍ତି ।[୧] ବୈଷ୍ଣବମତରେ ପ୍ରୀତିସମ୍ପନ୍ନ ହଳଧାରୀ ମଧ୍ୟ ରାଧାଗୋବିନ୍ଦଜୀଙ୍କ ପୂଜାରେ ନିଯୁକ୍ତ ହେବାର କିଛି କାଳ ପରେ ଗୋପନରେ ଏହି ସାଧନପଥ ଅବଲମ୍ବନ କରିଥିଲେ । ଲୋକମାନେ ଏହି କଥା ଜାଣିପାରି ନିଜ ନିଜ ଭିତରେ କୁହାକୁହି ହେଲେ; କିନ୍ତୁ ହଳଧାରୀ ବାକ୍‌ସିଦ୍ଧ ଅର୍ଥାତ୍ ଯାହାକୁ ଯାହା କହିବେ ତାହା ହିଁ ହେବ, ଏପରି ଶକ୍ତିର ଅଧିକାରୀ ହୋଇଥିବାରୁ କୋପରେ ପଡ଼ିବା ଆଶଙ୍କାରେ ତାଙ୍କ ସମ୍ମୁଖରେ

୧. ଗୁରୁଭାବ-ଉତ୍ତରାର୍ଦ୍ଧ, ପ୍ରଥମ ଅଧ୍ୟାୟ ।

ସେହି କଥା ଆଲୋଚନା ବା ହାସ୍ୟ-ପରିହାସାଦି କରିବାକୁ କେହି ସାହସୀ ହେଉ ନ ଥିଲେ । ଧିରେ ଧିରେ ଠାକୁରଙ୍କୁ ଅଗ୍ରଜଙ୍କ ସମ୍ବନ୍ଧରେ ସେହିକଥା ବିଦିତ ହେଲା ଏବଂ ଲୋକମାନେ ତାଙ୍କର ନିନ୍ଦାବାଦ କରୁଛନ୍ତି ଦେଖି ସେ ତାଙ୍କୁ ସମସ୍ତ କଥା ଖୋଲି କହିଲେ । କିନ୍ତୁ ହଳଧାରୀ ସେପରି ବ୍ୟବହାରର ବିପରୀତ ଅର୍ଥ ଗ୍ରହଣପୂର୍ବକ ଅତ୍ୟନ୍ତ ରୁଷ୍ଟ ହୋଇ କହିଲେ, ''କନିଷ୍ଠ ହୋଇ ତୁ ମୋତେ ଅବଜ୍ଞା କଲୁ ? ତୋର ମୁହଁରୁ ରକ୍ତ ପଡ଼ିବ !'' ଠାକୁରେ ତାଙ୍କୁ ନାନା ପ୍ରକାରରେ ପ୍ରସନ୍ନ କରାଇବାକୁ ଚେଷ୍ଟା କଲେ ମଧ୍ୟ ସେ ସେସମୟରେ କୌଣସି କଥା ଶ୍ରବଣ କଲେ ନାହିଁ ।

### ଉକ୍ତ ଅଭିଶାପ କିପରି ସଫଳ ହୋଇଥିଲା :

ଏଘଟଣାର କିଛି ଦିନ ପରେ ଦିନେ ରାତି ୮ଟା ୯ଟା ଅନ୍ଦାଜ ସମୟରେ ଠାକୁରଙ୍କର ତାଲୁଦେଶ ହଠାତ୍ ଅତିଶୟ ସମ୍ବେଦନଶୀଳ ହୋଇ ମୁହଁ ଦେଇ ସତକୁ ସତ ରକ୍ତ ବୋହିବାକୁ ଲାଗିଲା । ଠାକୁରେ କହୁଥିଲେ, ''ଶିମ୍ବ ପତ୍ରର ରସ ପରି ସେହି ରକ୍ତର ରଙ୍ଗ ଅତ୍ୟନ୍ତ କଳା ଏବଂ ଏତେ ଗାଢ଼ ଥିଲା ଯେ, କିଛି ବାହାରେ ପଡ଼ିଲା ଓ କିଛି ମୁହଁ ଭିତରେ ଜମିଯାଇ ସାମନା ଦାନ୍ତ ଆଗରେ ବଟବୃକ୍ଷର ଓହଳ ପରି ଝୁଲିବାକୁ ଲାଗିଲା । ମୁହଁ ଭିତରେ କପଡ଼ା ଚାପିଧରି ରକ୍ତ ବନ୍ଦ କରିବାକୁ ଚେଷ୍ଟା କଲେ ମଧ୍ୟ ତାହା ବନ୍ଦ ହେଲା ନାହିଁ ଦେଖି ବଡ଼ ଭୟ ହେଲା । ସମ୍ବାଦ ପାଇ ସମସ୍ତେ ଧାଇଁ ଆସିଲେ । ହଳଧାରୀ ସେତେବେଳେ ମନ୍ଦିରରେ ସେବା କାର୍ଯ୍ୟ ଶେଷ କରୁଥିଲେ; ଏହି ଖବର ପାଇ ସେ ମଧ୍ୟ ଅସ୍ତବ୍ୟସ୍ତ ହୋଇ ଦୌଡ଼ି ଆସିଲେ । ତାଙ୍କୁ କହିଲି, 'ଭାଇ, ଅଭିଶାପ ଦେଇ ତୁମେ ମୋର କ'ଣ ଅବସ୍ଥା କଲ, ଦେଖ ତ !' ମୋର କାତରତା ଦେଖି ସେ କାନ୍ଦିବାକୁ ଲାଗିଲେ ।

''ମନ୍ଦିରକୁ ସେଦିନ ଜଣେ ପ୍ରାଚୀନ ବିଜ୍ଞ ସାଧୁ ଆସିଥିଲେ । ଗୋଳମାଳ ଶୁଣି ସେ ମଧ୍ୟ ମୋତେ ଦେଖିବାକୁ ଆସିଲେ ଏବଂ ରକ୍ତର ରଙ୍ଗ ଓ ମୁହଁ ଭିତରର ଯେଉଁ ସ୍ଥଳରୁ ନିର୍ଗତ ହେଉଛି ତାହା ପରୀକ୍ଷା କରି କହିଲେ—'ଭୟ ନାହିଁ, ରକ୍ତ ବାହାରି ଯାଇ ଖୁବ୍ ଭଲ ହୋଇଛି । ଦେଖୁଛି ଯେ, ତୁମେ ଯୋଗସାଧନା କରୁଥିଲ । ହଠଯୋଗର ଚରମ ଅବସ୍ଥାରେ ଜଡ଼ସମାଧି ହୁଏ, ତୁମର ମଧ୍ୟ ସେହିପରି ହେଉଥିଲା । ସୁଷୁମ୍ନାଦ୍ୱାର ଖୋଲିଯାଇ ଶରୀରର ରକ୍ତ ମଥାକୁ ଉଠୁଥିଲା । ମଥାକୁ ନ ଉଠି ଏହା ଯେ ଏପରି ମୁହଁବାଟ ଦେଇ ରାସ୍ତା କରି ଆପେ ବାହାରିଗଲା, ଏହା ଖୁବ୍ ଭଲ ହେଲା; କାରଣ, ଜଡ଼ ସମାଧି ହୋଇଥିଲେ ତାହା କୌଣସି ପ୍ରକାରରେ ଭାଙ୍ଗି ନ ଥାନ୍ତା । ତୁମ ଶରୀର ଦ୍ୱାରା ଜଗନ୍ମାତାଙ୍କର ବିଶେଷ କୌଣସି କାର୍ଯ୍ୟ ଅଛି; ତେଣୁ ସେ ତୁମକୁ ଏପରି ଭାବରେ ରକ୍ଷା କଲେ !' ସାଧୁଙ୍କର

ସେହିକଥା ଶୁଣି ଆଶ୍ୱସ୍ତ ହେଲି ।'' ଠାକୁରଙ୍କ ସମ୍ବନ୍ଧରେ ହଳଧାରୀଙ୍କର ଶାପ ଏହିପରି ଭାବରେ କାକତାଳୀୟ ପରି ସଫଳତା ଦେଖାଇ ବରଦାନରେ ପରିଣତ ହୋଇଥିଲା ।

## ଠାକୁରଙ୍କ ସମ୍ବନ୍ଧରେ ହଳଧାରୀଙ୍କର ଧାରଣାର ବାରମ୍ବାର ପରିବର୍ତ୍ତନ କଥା :

ହଳଧାରୀଙ୍କ ସହିତ ଠାକୁରଙ୍କର ଆଚରଣରେ ବେଶ୍ ଏକ ମଧୁର ବିନୋଦପୂର୍ଣ୍ଣ ଭାବ ଥିଲା । ପୂର୍ବେ କୁହାଯାଇଛି ହଳଧାରୀ ଠାକୁରଙ୍କର କକା ପୁଅ ଭାଇ ଏବଂ ବୟୋଜ୍ୟେଷ୍ଠ ଥିଲେ । ଅନ୍ଦାଜ ୧୮୫୮ ଖ୍ରୀଷ୍ଟାବ୍ଦରେ ଦକ୍ଷିଣେଶ୍ୱର ଆସି ସେ ରାଧାଗୋବିନ୍ଦଜୀଙ୍କର ପୂଜା କାର୍ଯ୍ୟରେ ନିଯୁକ୍ତ ହେଲେ ଏବଂ ୧୮୬୫ ଖ୍ରୀଷ୍ଟାବ୍ଦର କିଛିଦିନ ପର୍ଯ୍ୟନ୍ତ ଏହି କାର୍ଯ୍ୟ କରୁଥିଲେ । ଅତଏବ ଠାକୁରଙ୍କର ସାଧନକାଳର ଦ୍ୱିତୀୟ ଚାରିବର୍ଷ ଏବଂ ତାହା ପରେ ମଧ୍ୟ ଦୁଇବର୍ଷରୁ ଅଧିକ କାଳ ଦକ୍ଷିଣେଶ୍ୱରରେ ଅବସ୍ଥାନ କରି ସେ ଠାକୁରଙ୍କୁ ଦେଖିବାର ସୁଯୋଗ ପାଇଥିଲେ । ତଥାପି ସେ ଠାକୁରଙ୍କ ସମ୍ବନ୍ଧରେ ଏକ ସ୍ଥିର ଧାରଣା କରିପାରି ନ ଥିଲେ । ସେ ସ୍ୱୟଂ ବିଶେଷ ନିଷ୍ଠାଚାରସମ୍ପନ୍ନ ଥିଲେ; ତେଣୁ ଭାବାବେଶରେ ଠାକୁରଙ୍କର ପିନ୍ଧାଲୁଗା ଓ ପଇତା ଇତ୍ୟାଦି ପକାଇଦେବା ତାଙ୍କୁ ଭଲ ଲାଗୁ ନ ଥିଲା । ଭାବୁଥିଲେ କନିଷ୍ଠ ଯଥେଚ୍ଛାଚାରୀ ଅଥବା ପାଗଳ ହୋଇଅଛି । ହୃଦୟ କହୁଥିଲେ—''ସେ ବେଳେବେଳେ ମତେ କହନ୍ତି, 'ହୃଦୁ, ସେ ଲୁଗା ପକାଇ ଦେଉଛି,' ପଇତା ପକାଇ ଦେଉଛି, ଏହା ଅତ୍ୟନ୍ତ ଦୋଷର କଥା; କେତେ ଜନ୍ମର ପୁଣ୍ୟରେ ବ୍ରାହ୍ମଣ ଘରେ ଜନ୍ମ ହୁଏ, ମାତ୍ର ସେ ସେହି ବ୍ରାହ୍ମଣତ୍ୱକୁ ସାମାନ୍ୟ ଜ୍ଞାନ କରି ବ୍ରାହ୍ମଣାଭିମାନ ତ୍ୟାଗ କରିବାକୁ ଚାହୁଁଛି ! ଏପରି କ'ଣ ଉଚ୍ଚ ଅବସ୍ଥା ହୋଇଛି ଯେ, ସେ ଏପରି କରୁଛି ? ହୃଦୁ, ସେ ତୁମ କଥା ଟିକେ ଶୁଣେ, ତେଣୁ ତୁମର ଉଚିତ୍ ସେ ଯେପରି ସେହି ପ୍ରକାର ନ କରେ ତଦ୍‌ବିଷୟରେ ଲକ୍ଷ୍ୟ ରଖିବା; ଏପରି କି ବାନ୍ଧିରଖି ମଧ୍ୟ ଯଦି ତୁମେ ତାଙ୍କୁ ଏହି କର୍ମରୁ ନିରସ୍ତ କରିପାର, ତାହା ମଧ୍ୟ କରିବା ଉଚିତ୍' ।''

ପୁଣି ପୂଜା କରୁ କରୁ ଠାକୁରଙ୍କ ନୟନର ପ୍ରେମଧାରା ଭଗବାନଙ୍କ ନାମଗୁଣଶ୍ରବଣରେ ଅଦ୍ଭୁତ ଉଲ୍ଲାସ ଓ ଈଶ୍ୱରଲାଭ ନିମିତ୍ତ ଅଦୃଷ୍ଟପୂର୍ବ ବ୍ୟାକୁଳତା ପ୍ରଭୃତି ଦେଖି ସେ ମୋହିତ ହୋଇ ଭାବୁଥିଲେ, ନିଶ୍ଚୟ କନିଷ୍ଠଙ୍କର ଏସକଳ ଅବସ୍ଥା ଐଶ୍ୱରିକ ଆବେଶରେ ହେଉଅଛି, ନ ହେଲେ ସାଧାରଣ ମନୁଷ୍ୟର ଏପରି ହେବା ତ' କଦାପି ଦେଖାଯାଏ ନାହିଁ । ଏହି କଥା ଭାବି ହଳଧାରୀ ବେଳେବେଳେ ହୃଦୟକୁ କହୁଥିଲେ, ''ହୃଦୟ, ତୁମେ ନିଶ୍ଚୟ ତାଙ୍କ ଭିତରେ କିଛି ଆଶ୍ଚର୍ଯ୍ୟ ଦର୍ଶନ ପାଇଛ, ନ ହେଲେ ଏତେ ତା'ର ସେବା କରି ନ ଥାନ୍ତ ।''

**ନସ୍ୟ ଗ୍ରହଣ କରି ଶାସ୍ତ୍ର ବିଚାର କରିବା ପାଇଁ ବସିଲେ ହିଁ ହଳଧାରୀଙ୍କର ଉଚ୍ଚଧାରଣାର ଲୋପ :**

ଏହିପରି ହଳଧାରୀଙ୍କର ମନ ସର୍ବଦା ସନ୍ଦେହରେ ଦୋଳାୟମାନ ହେଉଥିବାରୁ ସେ ଠାକୁରଙ୍କ ପ୍ରକୃତ ଅବସ୍ଥା ସମ୍ବନ୍ଧରେ ଏକ ସ୍ଥିର ମୀମାଂସାରେ କୌଣସି ପ୍ରକାରେ ପହଞ୍ଚିପାରୁ ନ ଥିଲେ । ଠାକୁର କହୁଥିଲେ, ''ମୋର ପୂଜା ଦେଖି ମୋହିତ ହୋଇ ହଳଧାରୀ କେତେଥର କହିଛନ୍ତି, 'ରାମକୃଷ୍ଣ, ଏଥର ମୁଁ ତୋତେ ଚିହ୍ନିପାରିଛି ।' ଏକଥାରେ ମୁଁ ବେଳେ ବେଳେ ଥଟ୍ଟା କରି କହେ, 'ଦେଖ, ପୁଣି ଯେପରି ଗୋଳମାଳ ନ ହୁଏ !' ସେ କହନ୍ତି, 'ଏଥର ଆଉ ତୋ'ର ଫାଙ୍କି ଦେବାର ଜୁ ନାହିଁ; ତୋ'ଠାରେ ନିଶ୍ଚୟ ଈଶ୍ୱରୀୟ ଆବେଶ ଅଛି; ଏଥର ମୁଁ ଠିକ୍ ଭାବରେ ବୁଝିଛି ।' ତାହା ଶୁଣି ମୁଁ କହୁଥିଲି, 'ଆଚ୍ଛା, ଦେଖାଯାଉ ।' ଏହାପରେ ମନ୍ଦିରର ଦେବସେବା ଶେଷ କରି ଟିପରେ ନସ୍ୟ ନେଇ ହଳଧାରୀ ଯେତେବେଳେ ଶ୍ରୀମଦ୍‌ଭାଗବତ, ଗୀତା ବା ଅଧ୍ୟାତ୍ମରାମାୟଣ ଆଦି ଶାସ୍ତ୍ର ବିଚାର କରିବାକୁ ବସନ୍ତି, ସେତେବେଳେ ଅଭିମାନରେ ଫୁଲି ଉଠି ଅନ୍ୟ ପ୍ରକାରର ଲୋକ ହୋଇଯାଉଥିଲେ । ମୁଁ ସେତେବେଳେ ସେଠାରେ ଉପସ୍ଥିତ ହୋଇ କହେ, 'ତୁମେ ଶାସ୍ତ୍ରରେ ଯାହା ସବୁ ପଢୁଛ, ସେ-ସବୁ ଅବସ୍ଥା ମୋର ଉପଲବ୍ଧି ହୋଇଛି, ମୁଁ ସେ ସମସ୍ତ କଥା ବୁଝିପାରେ ।' ଏକଥା ଶୁଣି ସେ କହିଉଠନ୍ତି, 'ଆରେ, ତୁ ଗଣ୍ଡମୂର୍ଖ, ତୁ ପୁଣି ଏସବୁ କଥା ବୁଝିବୁ !' ମୁଁ କହେ (ନିଜର ଶରୀର ଦେଖାଇ), ସତ କହୁଛି, ଏହା ଭିତରେ ଯିଏ ଅଛି, ସେ ସମସ୍ତ କଥା ବୁଝାଇଦିଏ । ଏଇ ଯେମିତି ଟିକେ ଆଗରୁ ତୁମେ କହିଲ ତୋ ଭିତରେ ଈଶ୍ୱରୀୟ ଆବେଶ ଅଛି—ସେ ହିଁ ସମସ୍ତ କଥା ବୁଝାଇ ଦିଏ ।' ହଳଧାରୀ ଏକଥା ଶୁଣି ରାଗି ଯାଇ କହନ୍ତି, 'ଯା ଯା ମୂର୍ଖ କେଉଁଠିକାର, କଳିରେ କଲ୍‌କି ଛଡ଼ା ଆଉ ଈଶ୍ୱରଙ୍କ ଅବତାର ହେବାର କଥା କେଉଁ ଶାସ୍ତ୍ରରେ ଅଛି ? ତୁ ଉନ୍ମାଦ ହୋଇଛୁ, ତେଣୁ ଏପରି ଭାବୁଛୁ ।' ମୁଁ ହସି ହସି କହେ, 'ତୁମେ କହିଥିଲ ନା ଆଉ ଗୋଳମାଳ ହେବ ନାହିଁ— କିନ୍ତୁ ସେକଥା ସେତେବେଳେ କିଏ ଶୁଣୁଛି ? ଏପରି ଦିନେ ଅଧେ ନୁହେଁ, ଅନେକଦିନ ହେଉଥିଲା । ପରେ ଦିନେ ସେ ଦେଖିବାକୁ ପାଇଲେ, ମୁଁ ଭାବାବିଷ୍ଟ ହୋଇ ବସ୍ତ୍ର ତ୍ୟାଗ କରି ଗଛ ଉପରେ ବସିଛି ଏବଂ ବାଳକ ପରି ସେହି ଅବସ୍ଥାରେ ପରିସ୍ରା କରୁଛି—ସେହି ଦିନଠାରୁ ସେ ପକ୍କା କରିନେଲେ ଯେ ମୋତେ ବ୍ରହ୍ମଦୈତ୍ୟ ଗ୍ରାସ କରିଛି !''

### କାଳୀଙ୍କୁ ତମୋଗୁଣମୟୀ କହିବାରୁ ଠାକୁରଙ୍କର ହଳଧାରୀଙ୍କୁ ଶିକ୍ଷାଦାନ :

ହଳଧାରୀଙ୍କର ଶିଶୁପୁତ୍ରର ମୃତ୍ୟୁ କଥା ଆମେ ଏହାପୂର୍ବରୁ କହିଛୁ । ତା' ପରଠାରୁ ସେ କାଳୀଙ୍କୁ ତାମସୀ ବା ତମୋଗୁଣମୟୀ ବୋଲି ଧାରଣା କରିଥିଲେ । ଦିନେ ଠାକୁରଙ୍କୁ କହୁ କହୁ କହିଦେଲେ ଯେ, ''ତାମସୀ ମୂର୍ତ୍ତିର ଉପାସନାରେ ଆଧ୍ୟାତ୍ମିକ ଉନ୍ନତି କେବେ ହୋଇପାରେ କି ? ତୁମେ ଏହି ଦେବୀଙ୍କର ଆରାଧନା କାହିଁକି କରୁଛ ?'' ଠାକୁର ଏକଥା ଶୁଣି ତାଙ୍କୁ ସେତେବେଳେ କିଛି କହିଲେ ନାହିଁ, ମାତ୍ର ଇଷ୍ଟନିନ୍ଦା ଶ୍ରବଣରେ ତାଙ୍କର ଅନ୍ତର ବ୍ୟଥିତ ହେଲା । ପରେ କାଳୀମନ୍ଦିରକୁ ଯାଇ ସଜଳନୟନରେ ଶ୍ରୀଶ୍ରୀଜଗଦମ୍ବାତାଙ୍କୁ ପଚାରିଲେ, ''ମା, ହଳଧାରୀ ଶାସ୍ତ୍ରଜ୍ଞ ପଣ୍ଡିତ— ସେ ତୋତେ ତମୋଗୁଣୀ କହୁଛି; ତୁ କ'ଣ ସତରେ ତାହା ?'' ଅନନ୍ତର ଜଗଦମ୍ବାଙ୍କଠାରୁ ସେହି ବିଷୟରେ ଯଥାର୍ଥ ତତ୍ତ୍ୱ ଜାଣିପାରି ଠାକୁର ଉଲ୍ଲାସରେ ଉତ୍ସାହିତ ହୋଇ ହଳଧାରୀଙ୍କ ନିକଟକୁ ଧାଇଁଗଲେ ଏବଂ ତାଙ୍କର କାନ୍ଧରେ ବସି ଉତ୍ତେଜିତ ସ୍ୱରରେ ବାରମ୍ବାର କହିବାକୁ ଲାଗିଲେ, ''ତୁ ମା'କୁ ତାମସୀ କହୁଛୁ ? ମା' କ'ଣ ତାମସୀ ? ମା' ଯେ ସବୁ—ତ୍ରିଗୁଣମୟୀ ଏବଂ ଶୁଦ୍ଧସତ୍ତ୍ୱଗୁଣମୟୀ !'' ଭାବାବିଷ୍ଟ ଠାକୁରଙ୍କର ଏପରି କଥା ଓ ସ୍ପର୍ଶରେ ହଳଧାରୀଙ୍କର ସେତେବେଳେ ଯେପରି ଅନ୍ତରର ଚକ୍ଷୁ ପ୍ରସ୍ଫୁଟିତ ହେଲା ! ସେ ସେତେବେଳେ ପୂଜାର ଆସନରେ ବସିଥିଲେ—ଠାକୁରଙ୍କର ସେହି କଥା ଅନ୍ତରର ସହିତ ସ୍ୱୀକାର କଲେ ଏବଂ ଠାକୁରଙ୍କ ଭିତରେ ଜଗଦମ୍ବାଙ୍କର ଆବିର୍ଭାବ ପ୍ରତ୍ୟକ୍ଷ କରି ସମ୍ମୁଖରେ ଥିବା ଫୁଲଚନ୍ଦନ ନେଇ ତାଙ୍କର ପାଦପଦ୍ମରେ ଭକ୍ତି ସହକାରେ ଅଞ୍ଜଳି ପ୍ରଦାନ କଲେ ! ଏହାର କିଛି ସମୟ ପରେ ହୃଦୟ ଆସି ତାଙ୍କୁ ପଚାରିଲେ, ''ମାମୁଁ, ତୁମେ କୁହ ରାମକୃଷ୍ଣଙ୍କୁ ଭୂତ ଲାଗିଛି, ତେବେ ତାଙ୍କୁ ଏପରି ପୂଜା କିପରି କଲ ?'' ହଳଧାରୀ କହିଲେ, ''କେଜାଣି, ହୃଦୁ, କାଳୀମନ୍ଦିରରୁ ଫେରି ଆସି ସେ ମୋତେ ଏମିତି କିଛି କରିଦେଲେ ଯେ, ମୁଁ ସବୁ ଭୁଲି ତା ଭିତରେ ସାକ୍ଷାତ୍ ଈଶ୍ୱରଙ୍କର ପ୍ରକାଶ ଦେଖିବାକୁ ପାଇଲି ! କାଳୀମନ୍ଦିରରେ ଯେତେବେଳେ ହିଁ ମୁଁ ରାମକୃଷ୍ଣ ପାଖକୁ ଯାଏ, ସେତେବେଳେ ହିଁ ସେ ମୋତେ ଏମିତି କରିଦିଏ ! ଏହା ବଡ଼ ଆଶ୍ଚର୍ଯ୍ୟର କଥା—ମୁଁ କିଛି ବୁଝିପାରେ ନାହିଁ !''

### କାଙ୍ଗାଳୀମାନଙ୍କର ଉଚ୍ଛିଷ୍ଟ ଭୋଜନ କରିବା ଦେଖି ହଳଧାରୀଙ୍କର ଠାକୁରଙ୍କୁ ଭର୍ତ୍ସନା ଓ ଠାକୁରଙ୍କର ଉତ୍ତର :

ସେହି ପ୍ରକାରରେ ଠାକୁରଙ୍କ ଭିତରେ ହଳଧାରୀ ବାରମ୍ବାର ଦୈବ ପ୍ରକାଶ ଦେଖିବାକୁ ପାଇଲେ ମଧ୍ୟ ନସ୍ୟ ନେଇ ଶାସ୍ତ୍ରବିଚାର କରିବାକୁ ବସିଲେ ହିଁ ପାଣ୍ଡିତ୍ୟ ଅଭିମାନରେ ମତ୍ତ ହୋଇ 'ପୁନର୍ମୂଷିକତ୍ୱ' ପ୍ରାପ୍ତ ହେଉଥିଲେ ।

କାମକାଞ୍ଚନରୁ ଆସକ୍ତି ଦୂର ନ ହେଲେ ବାହ୍ୟଶୌଚ, ସଦାଚାର ଓ ଶାସ୍ତ୍ରଜ୍ଞାନ ଯେ ବିଶେଷ କାମରେ ଲାଗେ ନାହିଁ ଏବଂ ମାନବକୁ ତତ୍ତ୍ୱର ଧାରଣା କରାଇ ପାରେ ନାହିଁ, ହଳଧାରୀଙ୍କର ପୂର୍ବୋକ୍ତ ଆଚରଣରୁ ଏକଥା ସ୍ପଷ୍ଟ ବୁଝାଯାଏ । ମନ୍ଦିରର ପ୍ରସାଦ ପାଇବାକୁ ସମାଗତ କାଙ୍ଗାଳୀମାନଙ୍କୁ ଠାକୁର ନାରାୟଣ ଜ୍ଞାନ କରି ଏକ ସମୟରେ ସେମାନଙ୍କର ଭୋଜନାବଶେଷ ଗ୍ରହଣ କରିଥିଲେ—ଏକଥା ଆମେ ପୂର୍ବରୁ ହିଁ କହିଛୁ । ହଳଧାରୀ ଏହା ଦେଖି ବିରକ୍ତ ହୋଇ ତାଙ୍କୁ କହିଥିଲେ, ''ତୋ'ର ପିଲାପିଲିଙ୍କ ବିବାହ କିପରି ହେବ, ମୁଁ ଦେଖିବି !'' ଜ୍ଞାନାଭିମାନୀ ହଳଧାରୀଙ୍କ ମୁହଁରେ ଏହି କଥା ଶୁଣି ଠାକୁରେ ଉତ୍ତେଜିତ ହୋଇ କହିଥିଲେ, ''ଆରେ ଶଳା, ଶାସ୍ତ୍ରବ୍ୟାଖ୍ୟା କଲା ବେଳେ ତୁ ତ କହୁଛୁ ଜଗତ ମିଥ୍ୟା ଏବଂ ସର୍ବଭୂତରେ ବ୍ରହ୍ମଦୃଷ୍ଟି ରଖିବାକୁ ହେବ । ତୁ ଭାବୁଛୁ, ମୁଁ ତୋ ପରି ଜଗତ ମିଥ୍ୟା କହିବି, ଅଥଚ ପିଲାପିଲିଙ୍କର ବାପା ହେବି ! ଧିକ ତୋ'ର ଶାସ୍ତ୍ରଜ୍ଞାନ !''

### ହଳଧାରୀଙ୍କର ପାଣ୍ଡିତ୍ୟରେ ଠାକୁରଙ୍କ ମନରେ ସନ୍ଦେହ ଏବଂ ଶ୍ରୀଶ୍ରୀଜଗଦମ୍ବାଙ୍କର ପୁନଃଦର୍ଶନ ଓ ପ୍ରତ୍ୟାଦେଶଲାଭ— 'ଭାବମୁଖରେ ରହ' :

ବାଳକସ୍ୱଭାବ ଠାକୁର ପୁଣି ବେଳେବେଳେ ହଳଧାରୀଙ୍କର ପାଣ୍ଡିତ୍ୟରେ ଭୁଲି ତାଙ୍କର କ'ଣ କରିବା ଉଚିତ ତାହା ଜାଣିବାକୁ ଶ୍ରୀଶ୍ରୀଜଗନ୍ମାତାଙ୍କର ମତାମତ ଗ୍ରହଣ କରିବାକୁ ତାଙ୍କ ନିକଟକୁ ଯାଆନ୍ତି । ଆମେ ଶୁଣିଛୁ, ଭାବ ସହାୟରେ ଐଶ୍ୱରିକ ସ୍ୱରୂପ ସମ୍ବନ୍ଧରେ ଠାକୁରଙ୍କୁ ଯେଉଁ ସମସ୍ତ ଅନୁଭୂତି ହୁଏ ସେ ସବୁକୁ ମିଥ୍ୟା ପ୍ରତିପନ୍ନ କରି ଏବଂ ଈଶ୍ୱରଙ୍କୁ ଭାବ-ଅଭାବର ଅତୀତ କହି ଶାସ୍ତ୍ର ସାହାଯ୍ୟରେ ନିର୍ଦ୍ଦେଶ କରି ହଳଧାରୀ ଠାକୁରଙ୍କ ମନରେ ଦିନେ ଜଟିଳ ସନ୍ଦେହର ଉଦୟ କରାଇଥିଲେ । ଠାକୁର କହୁଥିଲେ, ''ଭାବିଲି, ଭାବାବେଶରେ ଯାହା କିଛି ଈଶ୍ୱରୀୟ ରୂପ ଦେଖିଛି, ଆଦେଶ ପାଇଛି, ସେ ସବୁ ତା'ହେଲେ ଭୁଲ; ମା' ତା'ହେଲେ ମୋତେ ଠକିଦେଇଛି ! ମନ ବଡ଼ ବ୍ୟାକୁଳ ହେଲା ଏବଂ ଅଭିମାନରେ କାନ୍ଦି କାନ୍ଦି ମା'ଙ୍କୁ କହିବାକୁ ଲାଗିଲି—'ମା, ନିରକ୍ଷର ମୂର୍ଖ ବୋଲି ମୋତେ କ'ଣ ଏମିତି କରି ଠକିଛୁ ?' —ସେହି କାନ୍ଦ ଆଉ ବନ୍ଦ ହେଲା ନାହିଁ ! କୋଠୀଘରେ ବସି ମୁଁ କାନ୍ଦୁଥିଲି । କିଛି କ୍ଷଣ ପରେ ଦେଖିଲି ଯେ ହଠାତ୍ ଚଟାଣରୁ କୁହୁଡ଼ିପରି ଧୂଆଁ ଉଠି ସାମନାରେ କେତେକ ସ୍ଥାନ ପୂର୍ଣ୍ଣ ହୋଇଗଲା । ତା'ପରେ, ତାହା ଭିତରେ ଆବକ୍ଷଲମ୍ବିତଶ୍ମଶ୍ରୁ ଗୋଟିଏ ଗୌରବର୍ଣ୍ଣ ଜୀବନ୍ତ ସୌମ୍ୟ ମୁଖ ଦେଖିଲି ! ସେହି ମୂର୍ତ୍ତି ମୋ ଆଡ଼କୁ ସ୍ଥିର ଦୃଷ୍ଟିରେ ଦେଖୁ ଦେଖୁ ଗମ୍ଭୀରସ୍ୱରରେ କହିଲେ—'ଆରେ, ତୁ ଭାବମୁଖରେ ରହ, ଭାବମୁଖରେ ରହ, ଭାବମୁଖରେ ରହ !'—ତିନିଥର ମାତ୍ର ସେହି କଥାଗୁଡ଼ିକ କହି—ସେହି ମୂର୍ତ୍ତି ଧୀରେ ଧୀରେ ପୁଣି ସେହି କୁହୁଡ଼ିରେ ମିଳାଇଗଲେ ଏବଂ କୁହୁଡ଼ି ପରି ଧୂଆଁ ମଧ୍ୟ କେଉଁଆଡ଼େ

ଅନ୍ତର୍ହିତ ହୋଇଗଲା ! ଏପରି ଦେଖି ସେଥର ଶାନ୍ତ ହେଲି ।'' ଏହି ଘଟଣାଟି ଠାକୁର ଦିନେ ସ୍ୱାମୀ ପ୍ରେମାନନ୍ଦଙ୍କୁ ସ୍ୱମୁଖରେ କହିଥିଲେ । ଠାକୁର କହୁଥିଲେ, ''ହଳଧାରୀଙ୍କର କଥାରେ ଏପରି ସନ୍ଦେହ ଆଉ ଥରେ ମଧ୍ୟ ମନରେ ଉଠିଥିଲା; ସେଥର ପୂଜା କରୁ କରୁ ମା'ଙ୍କୁ ଏବିଷୟରେ ମୀମାଂସା ନିମିତ୍ତ କାନ୍ଦି କାନ୍ଦି ପଚାରିଥିଲି; ମା' ସେହି ସମୟରେ 'ରତିର ମା' ନାମକ ଜଣେ ସ୍ତ୍ରୀଲୋକ ବେଶରେ ଘଟ ପାର୍ଶ୍ୱରେ ଆବିର୍ଭୂତା ହୋଇ କହିଥିଲେ, 'ତୁ ଭାବମୁଖରେ ରହ' !'' ପୁଣି ପରିବ୍ରାଜକାଚାର୍ଯ୍ୟ ତୋତାପୁରୀ ଗୋସ୍ୱାମୀ ବେଦାନ୍ତଜ୍ଞାନ ଉପଦେଶ ଦେଇ ଦକ୍ଷିଣେଶ୍ୱରରୁ ଚାଲିଯିବା ପରେ ଠାକୁର ଯେତେବେଳେ ଛଅମାସ ଧରି ନିରନ୍ତର ନିର୍ବିକଳ୍ପ ଭୂମିରେ ବାସ କରିଥିଲେ, ସେତେବେଳେ ଏହାର ଶେଷକାଳରେ ଶ୍ରୀଶ୍ରୀଜଗଦମ୍ବାଙ୍କର ଅଶରୀରୀ ବାଣୀ ପ୍ରାଣେ ପ୍ରାଣେ ଶୁଣିବାକୁ ପାଇଥିଲେ— 'ତୁ ଭାବମୁଖରେ ରହ !'

**ହଳଧାରୀ କାଳୀମନ୍ଦିରରେ କେତେଦିନ ଥିଲେ :**

ଦକ୍ଷିଣେଶ୍ୱର ମନ୍ଦିରରେ ହଳଧାରୀ ପ୍ରାୟ ସାତ ବର୍ଷ ବାସ କରିଥିଲେ । ତେଣୁ ପିଶାଚବତ୍ ଆଚରଣକାରୀ ପୂର୍ଣ୍ଣଜ୍ଞାନୀ ସାଧୁଙ୍କର, ବ୍ରାହ୍ମଣୀଙ୍କର, ଜଟାଧାରୀ ନାମକ ରାମାୟେତ୍ ସାଧୁଙ୍କର ଓ ଶ୍ରୀମତ୍ ତୋତାପୁରୀଙ୍କର ଦକ୍ଷିଣେଶ୍ୱରକୁ ଆଗମନ ସେ ସ୍ୱଚକ୍ଷୁରେ ଦେଖିଥିଲେ । ଠାକୁରଙ୍କର ଶ୍ରୀମୁଖରୁ ଶୁଣାଯାଇଛି, ହଳଧାରୀ ଶ୍ରୀମତ୍ ତୋତାପୁରୀଙ୍କ ସହିତ ଏକତ୍ର ବେଳେବେଳେ ଅଧ୍ୟାତ୍ମ-ରାମାୟଣ ଇତ୍ୟାଦି ଶାସ୍ତ୍ରପାଠ କରୁଥିଲେ । ଅତଏବ ହଳଧାରୀ-ସମ୍ବନ୍ଧୀୟ ଘଟଣାଗୁଡ଼ିକ ପୂର୍ବୋକ୍ତ ସାତ ବର୍ଷର ବିଭିନ୍ନ ସମୟରେ ଘଟିଥିଲା । ବର୍ଣ୍ଣନା କରିବାର ସୁବିଧା ନିମିତ୍ତ ଆମେ ଏସବୁ ପାଠକଙ୍କୁ ଏକତ୍ର କରି କହିଲୁ ।

**ଠାକୁରଙ୍କର ଦିବ୍ୟୋନ୍ମାଦ ଅବସ୍ଥା ସମ୍ବନ୍ଧରେ ଆଲୋଚନା :**

ଠାକୁରଙ୍କର ସାଧକ-ଜୀବନ ବିଷୟ ଆମେ ଯେତେ ଦୂର ଆଲୋଚନା କଲୁ, ସେଥିରୁ ଏକଥା ନିଃସଂଶୟରେ ବୁଝାଯାଏ, କାଳୀମନ୍ଦିରର ଜନସାଧାରଣଙ୍କ ଚକ୍ଷୁରେ ସେ ଏବେ ଉନ୍ମତ୍ତ ବୋଲି ପରିଗଣିତ ହେଲେ ମଧ୍ୟ ମସ୍ତିଷ୍କର ବିକାର ବା ବ୍ୟାଧିପ୍ରସୂତ ସାଧାରଣ ଉନ୍ମାଦ ଅବସ୍ଥା ତାଙ୍କର ଉପୁଜି ନ ଥିଲା । ଈଶ୍ୱରଦର୍ଶନ ନିମିତ୍ତ ତାଙ୍କ ଅନ୍ତରରେ ତୀବ୍ର ବ୍ୟାକୁଳତାର ଉଦୟ ହୋଇଥିଲା ଏବଂ ଏହାର ପ୍ରଭାବରେ ସେ ଏସମୟରେ ଆତ୍ମସମ୍ବରଣ କରି ପାରୁ ନ ଥିଲେ ! ଅଗ୍ନିଶିଖା ସଦୃଶ ଜ୍ୱାଳାମୟୀ ବ୍ୟାକୁଳତା ହୃଦୟରେ ନିରନ୍ତର ରହିଥିବାରୁ ସାଧାରଣ ବିଷୟଗୁଡ଼ିକରେ ସାଧାରଣ ମନୁଷ୍ୟଙ୍କ ପରି ସେ ବ୍ୟବହାର କରିପାରୁ ନ ଥିଲେ ବୋଲି ଲୋକେ ତାଙ୍କୁ ଉନ୍ମାଦ ଦୃଷ୍ଟିରେ ଦେଖୁଥିଲେ । କିଏ ଅବା ସେପରି କରିପାରିବ ? ହୃଦୟର ତୀବ୍ର ବେଦନା, ମାନବର ସ୍ୱାଭାବିକ ସହ୍ୟଗୁଣକୁ

ଯେତେବେଳେ ଅତିକ୍ରମ କରେ, କେହି ମଧ୍ୟ ସେତେବେଳେ ମୁହଁରେ ଏକ ପ୍ରକାର ଓ ଭିତରେ ଅନ୍ୟ ପ୍ରକାର ଭାବରଖି ସଂସାରରେ ସମସ୍ତଙ୍କ ସହିତ ଏକାଭଳି ଚଳିପାରେ ନାହିଁ । କୁହାଯାଇପାରେ, ସହିବା ଶକ୍ତି ସମସ୍ତଙ୍କ ପକ୍ଷରେ ସମାନ ନୁହେଁ, କିଏ ସାମାନ୍ୟ ସୁଖଦୁଃଖରେ ବିଚଳିତ ହୋଇ ପଡ଼େ, ପୁଣି କେହି ଉଭୟର ଗଭୀର ବେଗ ହୃଦୟରେ ଧାରଣ କରି ମଧ୍ୟ ସମୁଦ୍ରବତ୍ ଅଟଳ ଅଚଳ ରହେ; ଅତଏବ ଠାକୁରଙ୍କର ସହ୍ୟଗୁଣର ସୀମା କିପିରି ବୁଝାଯିବ ? ଉତ୍ତରରେ କୁହାଯାଇପାରେ, ତାଙ୍କ ଜୀବନର ଅନ୍ୟାନ୍ୟ ଘଟଣାବଳୀ ଅନୁଧାବନ କଲେ ହିଁ ତାହା ଯେ ଅସାଧାରଣ ଥିଲା, ଏକଥା ସ୍ପଷ୍ଟ ପ୍ରତୀୟମାନ ହେବ; ଦୀର୍ଘ ଦ୍ୱାଦଶ ବର୍ଷକାଳ, ପ୍ରାୟତଃ ଅର୍ଦ୍ଧାଶନ, ଅନଶନ ଓ ଅନିଦ୍ରାରେ ରହି ଯିଏ ସ୍ଥିର ରହିପାରେ, ଅତୁଳ ସମ୍ପତ୍ତି ବାରମ୍ବାର ପଦତଳକୁ ଆସିଲେ ମଧ୍ୟ ଯିଏ ଈଶ୍ୱରଲାଭର ପଥରେ ଅନ୍ତରାୟ ବୋଲି ତତୋଧିକବାର ତାହା ପ୍ରତ୍ୟାଖ୍ୟାନ କରିପାରେ—ସେହି ପ୍ରକାର କେତେକଥା କୁହାଯାଇପାରିବ—ତାଙ୍କର ଶରୀର ଓ ମନର ଅସାଧାରଣ ଧୈର୍ଯ୍ୟ କଥା କ'ଣ ପୁଣି କହିବାକୁ ହେବ ?

## ଅଜ୍ଞ ବ୍ୟକ୍ତିମାନେ ହିଁ ତାଙ୍କର ଉକ୍ତ ଅବସ୍ଥାକୁ ବ୍ୟାଧିଜନିତ ବୋଲି ଭାବିଥିଲେ, କିନ୍ତୁ ସାଧକମାନେ ନୁହେଁ :

ସେହି ସମୟର ଘଟଣାବଳୀ ଅନୁଧାବନ କଲେ ଦେଖିବାକୁ ମିଳେ, କାମକାଞ୍ଚନୋନ୍ମତ୍ତ ବଦ୍ଧ ଜୀବଙ୍କ ଚକ୍ଷୁରେ ହିଁ ତାଙ୍କର ପୂର୍ବୋକ୍ତ ଅବସ୍ଥା ବ୍ୟାଧିଜନିତ ବୋଲି ପ୍ରତୀତ ହେଉଥିଲା । ଦେଖାଯାଏ, ମଥୁରବାବୁଙ୍କ ବ୍ୟତୀତ ତାଙ୍କର ଏସମୟର ମାନସିକ ଅବସ୍ଥା କଳ୍ପନା କିମ୍ବା ଯୁକ୍ତିସହାୟରେ ଆଂଶିକଭାବରେ ମଧ୍ୟ ନିର୍ଦ୍ଧାରଣ କରିପାରିବେ, ଏପରି କୌଣସି ଲୋକ ସେତେବେଳେ ଦକ୍ଷିଣେଶ୍ୱର ମନ୍ଦିରରେ ନ ଥିଲେ । ଶ୍ରୀଯୁକ୍ତ କେନାରାମ ଭଟ୍ଟାଚାର୍ଯ୍ୟ ଠାକୁରଙ୍କୁ ଦୀକ୍ଷା ଦେବା ପରେ କେଉଁଆଡ଼େ ଅନ୍ତର୍ହିତ ହେଲେ, କହି ହେବ ନାହିଁ; କାରଣ ସେହି ଘଟଣା ପରେ ତାଙ୍କ କଥା ହୃଦୟ ବା ଅନ୍ୟ କାହା ପାଖରୁ ଶୁଣିବାକୁ ମିଳି ନାହିଁ । ମନ୍ଦିରର ମୂର୍ଖ ଲୁବ୍ଧ କର୍ମଚାରୀଗଣ ଠାକୁରଙ୍କ ଏହି ସମୟର କ୍ରିୟାକଳାପ ଏବଂ ମାନସିକ ଅବସ୍ଥା ବିଷୟରେ ଯେଉଁ ସାକ୍ଷ୍ୟପ୍ରଦାନ କରିଛନ୍ତି, ତାହା ପ୍ରମାଣ ଭାବରେ ଗ୍ରହଣ କରାଯାଇ ପାରେ ନାହିଁ । ଅତଏବ କାଳୀମନ୍ଦିରକୁ ଆସୁଥିବା ସିଦ୍ଧ ଓ ସାଧକଗଣ ତାଙ୍କର ଅବସ୍ଥା ସମ୍ବନ୍ଧରେ ଏହି ସମୟରେ ଯାହା କହି ଯାଇଛନ୍ତି, ତାହା ହିଁ ସେହି ବିଷୟରେ ଏକମାତ୍ର ବିଶ୍ୱସ୍ତ ପ୍ରମାଣ । ଠାକୁରଙ୍କର ନିଜର ଓ ଅନ୍ୟାନ୍ୟ ବ୍ୟକ୍ତିମାନଙ୍କ ନିକଟରୁ ସେହିବିଷୟରେ ଯାହା ଶୁଣାଯାଇଛି ସେଥିରୁ ଜଣାଯାଏ, ସେମାନେ ତାଙ୍କୁ ଉନ୍ମାଦଗ୍ରସ୍ତ ସ୍ଥିର କରିବା ଅତି ଦୂରର କଥା, ବରଂ ତାଙ୍କ ସମ୍ବନ୍ଧରେ ସର୍ବଦା ଅତି ଉଚ୍ଚ ଧାରଣା କରିଥିଲେ ।

### ଏହି ସମୟର କାର୍ଯ୍ୟକଳାପ ଦେଖି ଠାକୁର ବ୍ୟାଧିଗ୍ରସ୍ତ ବୋଲି କୁହାଯାଇପାରିବ ନାହିଁ :

ପରବର୍ତ୍ତୀ ସମୟର କଥାଗୁଡ଼ିକ ଆଲୋଚନା କରିବାକୁ ଯାଇ ଆମେ ଦେଖିବାକୁ ପାଇବା, ଈଶ୍ୱରଲାଭର ପ୍ରବଳ ବ୍ୟାକୁଳତାରେ ଠାକୁର ଯେପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ଦେହବୋଧରହିତ ହୋଇଯାଇଥିଲେ, ସେପର୍ଯ୍ୟନ୍ତ ଶାରୀରିକ କଲ୍ୟାଣ ପାଇଁ ତାଙ୍କୁ ଯିଏ ଯାହା କରିବାକୁ କହିଥିଲେ, ସେ ତତ୍‌କ୍ଷଣାତ ତାହା କରୁଥିଲେ । ଯଦି କେତେଜଣ କହିଦେଲେ ଯେ, ତାଙ୍କର ଚିକିତ୍ସା ଦରକାର, ଏଥିରେ ସେ ସମ୍ମତି ହେଲେ; କାମାରପୁକୁରକୁ ତାଙ୍କ ମା'ଙ୍କ ପାଖକୁ ନିଆଯାଉ, ସେଥିରେ ସମ୍ମତ ହେଲେ; ବିବାହ କରାଇ ଦିଆଯାଉ, ସେଥିରେ ମଧ୍ୟ ଅସମ୍ମତ ହେଲେ ନାହିଁ ! —ଏପରି ଅବସ୍ଥାରେ ଉନ୍ମତ୍ତର କାର୍ଯକଳାପ ସହିତ ତାଙ୍କ ଆଚରଣାଦିର କିପରି ତୁଳନା କରାଯାଇପାରିବ ?

ଆହୁରି ମଧ୍ୟ ଦେଖିବାକୁ ମିଳିଥାଏ, ଦିବ୍ୟୋନ୍ମାଦ-ଅବସ୍ଥାଲାଭ ହେବା ପରଠାରୁ ଠାକୁର ବିଷୟୀ ଲୋକ ଏବଂ ବିଷୟସଂକ୍ରାନ୍ତ କଥାରୁ ସର୍ବଦା ଦୂରରେ ରହିବାକୁ ଯତ୍ନବାନ ହେଉଥିଲେ ମଧ୍ୟ ଯେଉଁଠାରେ ବହୁ ଲୋକ ଏକତ୍ର ହୋଇ ଈଶ୍ୱରଙ୍କର ପୂଜାକୀର୍ତ୍ତନ ଇତ୍ୟାଦି କରୁଛନ୍ତି, ସେଠାକୁ ଯିବାକୁ ଏବଂ ସେମାନଙ୍କ ସହିତ ଯୋଗଦାନ କରିବାକୁ କୌଣସି ଆପତ୍ତି କରିବା ଦୂରରେ ଥାଉ, ବିଶେଷ ଆଗ୍ରହ ପ୍ରକାଶ କରୁଥିଲେ । ବରାହନଗରଠାରେ ଦଶମହାବିଦ୍ୟାଦର୍ଶନ, କାଳୀଘାଟରେ ଶ୍ରୀଶ୍ରୀଜଗଦମ୍ବାଙ୍କୁ ଦର୍ଶନ ଏବଂ ପ୍ରାୟ ପ୍ରତିବର୍ଷ ପାଣିହାଟିର ମହୋତ୍ସବରେ ଯୋଗଦାନ ଇତ୍ୟାଦି ଘଟଣାରୁ ଏସବୁ କଥା ବେଶ୍ ବୁଝାଯାଏ । ଏହି ସବୁ ସ୍ଥାନରେ ମଧ୍ୟ ଶାସ୍ତ୍ରଜ୍ଞ ସାଧକମାନଙ୍କ ସହିତ ତାଙ୍କର ବେଳେବେଳେ ଦର୍ଶନ-ସମ୍ଭାଷଣ ଆଦି ହୋଇଥିଲା । ଏସବୁ ବିଷୟରେ ଆମେ ଅଳ୍ପ ଯାହା କିଛି ଜାଣିପାରିଛୁ ସେଥିରୁ ବୁଝାଯାଏ, ଏହି ସମସ୍ତ ସାଧକମାନେ ମଧ୍ୟ ତାଙ୍କୁ ଉଚ୍ଚାସନ ପ୍ରଦାନ କରିଥିଲେ ।

### ୧୮୫୮ ମସିହାରେ ପାନିହାଟି ମହୋତ୍ସବରେ ବୈଷ୍ଣବଚରଣଙ୍କର ଠାକୁରଙ୍କୁ ପ୍ରଥମ ଦର୍ଶନ ଏବଂ ଠାକୁରଙ୍କ ପ୍ରତି ତାଙ୍କର ଧାରଣା :

ସେହି ବିଷୟରେ ଦୃଷ୍ଟାନ୍ତସ୍ୱରୂପ ଆମେ ଠାକୁରଙ୍କର ୧୮୫୮ ଖ୍ରୀଷ୍ଟାବ୍ଦରେ ପାନିହାଟି ମହୋତ୍ସବ ଦର୍ଶନ ପାଇଁ ଗମନ କରିବା କଥା ଉଲ୍ଲେଖ କରିବୁ । ଉତ୍ସବାନନ୍ଦ ଗୋସ୍ୱାମୀଙ୍କର ପୁତ୍ର ବୈଷ୍ଣବଚରଣଙ୍କୁ ଠାକୁର ସେଦିନ ପ୍ରଥମ ଦେଖିଥିଲେ । ହୃଦୟଙ୍କ ନିକଟରୁ ଏବଂ ଠାକୁରଙ୍କ ନିଜମୁଖରୁ ମଧ୍ୟ ଆମମାନଙ୍କ ମଧ୍ୟରୁ କେହି କେହି ଶୁଣିଥିଲେ, ସେହିଦିନ ପାନିହାଟି ଯାଇ ସେ ଶ୍ରୀଯୁକ୍ତ ମଣିମୋହନ ସେନଙ୍କର ମନ୍ଦିରରେ ବସିଥିଲେ, ଏହି ସମୟରେ ବୈଷ୍ଣବଚରଣ

ସେଠାକୁ ଆସିଲେ ଏବଂ ଠାକୁରଙ୍କୁ ଦେଖିବା ମାତ୍ରେ ଆଧାତ୍ମିକ ଉଚ୍ଚାବସ୍ଥାସମ୍ପନ୍ନ ଅଦ୍ୱିତୀୟ ମହାପୁରୁଷ ବୋଲି ସ୍ଥିରନିଶ୍ଚୟ କରିଥିଲେ । ବୈଷ୍ଣବଚରଣ ସେଦିନ ଅଧିକାଂଶ ସମୟ ଉତ୍ସବକ୍ଷେତ୍ରରେ ତାଙ୍କ ସହିତ ଅତିବାହିତ କରିଥିଲେ ଏବଂ ନିଜେ ବ୍ୟୟ କରି ଠାକୁରଙ୍କ ପାଇଁ ଚୁଡ଼ା, ଉଖୁଡ଼ା, ଆମ୍ବ ଇତ୍ୟାଦି କ୍ରୟପୂର୍ବକ 'ମାଲସା ଭୋଗ'ର[୧] ବନ୍ଦୋବସ୍ତ କରି ଆନନ୍ଦ କରିଥିଲେ । ପୁଣି, ଉତ୍ସବାନ୍ତେ କଲିକତା ଫେରିବା ସମୟରେ ସେ ପୁନରାୟ ଦର୍ଶନଲାଭ ନିମିତ୍ତ ରାଣୀ ରାସମଣିଙ୍କର କାଳୀମନ୍ଦିରରେ ଓହ୍ଲାଇ ଠାକୁରଙ୍କର ଅନୁସନ୍ଧାନ କରିଥିଲେ; ଏବଂ ଠାକୁର ସେତେବେଳେ ପାନିହାଟି ଉତ୍ସବରୁ ପ୍ରତ୍ୟାଗମନ କରି ନାହାନ୍ତି ଜାଣି କ୍ଷୁଣ୍ଣ ମନରେ ଫେରି ଯାଇଥିଲେ । ଏହି ଘଟଣାର ତିନି ଚାରି ବର୍ଷ ପରେ ବୈଷ୍ଣବଚରଣ ପୁନର୍ବାର କିପରି ଠାକୁରଙ୍କର ଦର୍ଶନଲାଭ କରିଥିଲେ ଏବଂ ତାଙ୍କ ସହିତ ଘନିଷ୍ଠ ସମ୍ବନ୍ଧରେ ଆବଦ୍ଧ ହୋଇଥିଲେ, ସେ ସମସ୍ତ ବିଷୟ ଆମେ ସବିସ୍ତାର ଗୁରୁଭାବ-ଉତ୍ତରାର୍ଦ୍ଧ ପ୍ରଥମ ଅଧ୍ୟାୟରେ ବର୍ଣ୍ଣନା କରିଛୁ ।

### ଠାକୁରଙ୍କ ଏହି କାଳର ଅନ୍ୟାନ୍ୟ ସାଧନା—'ଟଙ୍କା ମାଟି, ମାଟି ଟଙ୍କା; ଅଶୁଚି ସ୍ଥାନ ପରିଷ୍କାର; ଚନ୍ଦନ-ବିଷ୍ଠାରେ ସମଜ୍ଞାନ :

ଠାକୁରେ ଏହି ଚାରିବର୍ଷ ମଧ୍ୟରେ ମନରୁ କାଞ୍ଚନାସକ୍ତି ନିର୍ମୂଳ କରିବା ପାଇଁ କେତୋଟି ମୁଦ୍ରା ଓ ମୃତ୍ତିକା ସହିତ ଏକାଠି ହାତରେ ଧରି ସଦସତ୍ ବିଚାରରେ ନିଯୁକ୍ତ ହୋଇଥିଲେ । ସଚ୍ଚିଦାନନ୍ଦସ୍ୱରୂପ ଈଶ୍ୱରଙ୍କୁ ଲାଭ କରିବା ଯେଉଁ ବ୍ୟକ୍ତି ଜୀବନର ଉଦ୍ଦେଶ୍ୟ କରିଛନ୍ତି, ସେ ମୃତ୍ତିକାପରି କାଞ୍ଚନରୁ ମଧ୍ୟ ସେହି ବିଷୟରେ କୌଣସି ସହାୟତା ଲାଭ କରନ୍ତି ନାହିଁ । ତେଣୁ ତାଙ୍କ ନିକଟରେ ମାଟି ଓ ସୁନା ଉଭୟର ମୂଲ୍ୟ ସମାନ । ସେହି କଥା ଦୃଢ଼ ଧାରଣା କରିବା ପାଇଁ ସେ ବାରମ୍ବାର 'ଟଙ୍କାମାଟି', 'ମାଟିଟଙ୍କା' କହୁ କହୁ କାଞ୍ଚନଲାଭ କରିବା ବାସନା ସହିତ ହାତରେ ଧରିଥିବା ମୃତ୍ତିକା ଓ ମୁଦ୍ରାସକଳ ଗଙ୍ଗାରେ ବିସର୍ଜନ କରିଥିଲେ । ସେହିପରି ଆବ୍ରହ୍ମସ୍ତମ୍ବପର୍ଯ୍ୟନ୍ତ ବସ୍ତୁ ଓ ବ୍ୟକ୍ତିସମୂହଙ୍କୁ ଶ୍ରୀଶ୍ରୀଜଗଦମ୍ବାଙ୍କର ପ୍ରକାଶ ଓ ଅଂଶରୂପେ ଧାରଣା ନିମିତ୍ତ କାଙ୍ଗାଳୀମାନଙ୍କର ଭୋଜନାବଶିଷ୍ଟ ଗ୍ରହଣପୂର୍ବକ ଭୋଜନସ୍ଥାନ ପରିଷ୍କାର କରିବା—ସମସ୍ତଙ୍କର ଘୃଣାର ପାତ୍ର ମେହେନ୍ତରଠାରୁ ମଧ୍ୟ ସେ କୌଣସି ଅଂଶରେ ବଡ଼ ନୁହଁନ୍ତି, ଏକଥା ଧାରଣାପୂର୍ବକ ମନରୁ ଅଭିମାନ ଅହଂକାର ପରିହାର ନିମିତ୍ତ ଅଶୁଚି ସ୍ଥାନ ଧୌତ କରିବା—ଚନ୍ଦନରୁ ବିଷ୍ଠା ପର୍ଯ୍ୟନ୍ତ ସମସ୍ତ ପଦାର୍ଥ ପଞ୍ଚଭୂତର ବିକାରପ୍ରସୂତ ଜାଣି ହେୟୋପାଦେୟଜ୍ଞାନ ଦୂର କରିବା ନିମିତ୍ତ ଜିହ୍ୱା ଦ୍ୱାରା ଅନ୍ୟର ବିଷ୍ଠା ନିର୍ବିକାରଚିତ୍ତରେ ସ୍ପର୍ଶ କରିବା ପ୍ରଭୃତି ଯେଉଁ ସବୁ ଅଶ୍ରୁତପୂର୍ବ ସାଧନକଥା ଠାକୁରଙ୍କ ସମ୍ବନ୍ଧରେ ଶୁଣିବାକୁ ମିଳିଥାଏ, ସେସମସ୍ତ

---

୧. ମାଟିପାତ୍ରରେ ଦହି ସହିତ ଉପରୋକ୍ତ ବସ୍ତୁ ମିଳାଇ ଯେଉଁ ଭୋଗ ଦିଆଯାଏ ବଙ୍ଗଳାରେ ତାହାକୁ ମାଲସା ଭୋଗ କୁହାଯାଏ ।

ମଧ୍ୟ ଏହି ସମୟରେ ସାଧିତ ହୋଇଥିଲା । ପ୍ରଥମ ଚାରିବର୍ଷର ଏହି ସମସ୍ତ ସାଧନ ଓ ଦର୍ଶନ କଥା ଅନୁଧାବନ କଲେ ଈଶ୍ୱରଲାଭ ପାଇଁ ତାଙ୍କ ମନରେ କେତେ ଅସାଧାରଣ ଆଗ୍ରହ ସେହି ସମୟରେ ଆଧିପତ୍ୟ କରିଥିଲା ଏବଂ କେଉଁ ଅଲୌକିକ ବିଶ୍ୱାସ ସହିତ ସେ ସାଧନ ରାଜ୍ୟରେ ଅଗ୍ରସର ହୋଇଥିଲେ, ତାହା ପରିଷ୍କାର ଭାବରେ ବୁଝି ହୁଏ । ଏଥିସହ ଏକଥା ମଧ୍ୟ ନିଶ୍ଚିତ ଧାରଣା ହୁଏ ଯେ, ଅନ୍ୟ କୌଣସି ବ୍ୟକ୍ତିଙ୍କ ସାହାଯ୍ୟ ନ ନେଇ ଏକମାତ୍ର ବ୍ୟାକୁଳତାସହାୟରେ ସେ ସେହି ସମୟ ଭିତରେ ଶ୍ରୀଶ୍ରୀଜଗଦମ୍ବାଙ୍କର ପୂର୍ଣ୍ଣଦର୍ଶନଲାଭପୂର୍ବକ ସିଦ୍ଧକାମ ହୋଇଥିଲେ ଏବଂ ସାଧନାର ଚରମ ଫଳ କରଗତ କରି ଗୁରୁବାକ୍ୟ ଓ ଶାସ୍ତ୍ରବାକ୍ୟ ସହିତ ନିଜ ଅପୂର୍ବ ପ୍ରତ୍ୟକ୍ଷଗୁଡ଼ିକ ମିଳାଇବାକୁ ହିଁ ପରବର୍ତ୍ତୀ ସମୟରେ ଅଗ୍ରସର ହୋଇଥିଲେ !

### ପରିଶେଷରେ ନିଜର ମନ ହିଁ ସାଧକର ଗୁରୁ ହୋଇଯାଏ । ଠାକୁରଙ୍କ ମନର ଏହି ସମୟରେ ଗୁରୁବତ୍ ଆଚରଣର ଦୃଷ୍ଟାନ୍ତ (୧) ସୂକ୍ଷ୍ମଦେହରେ କୀର୍ତ୍ତନାନନ୍ଦ :

ନିରନ୍ତର ତ୍ୟାଗ ଓ ସଂଯମ ଅଭ୍ୟାସପୂର୍ବକ ସାଧକ ଯେତେବେଳେ ନିଜ ମନକୁ ସମ୍ପୂର୍ଣ୍ଣଭାବରେ ବଶୀଭୂତ କରି ପବିତ୍ର ହୁଏ, ଠାକୁର କହୁଥିଲେ, ସେହି ମନ ହିଁ ସେତେବେଳେ ତା'ର ଗୁରୁ ହୋଇଥାଏ । ଏପରି ଶୁଦ୍ଧ ମନରେ ଯେଉଁ ସମସ୍ତ ଭାବତରଙ୍ଗ ଉଠୁଥାଏ, ସେସବୁ ବିପଥଗାମୀ କରିବା ପରିବର୍ତ୍ତେ ସାଧକକୁ ତା'ର ଗନ୍ତବ୍ୟ ଲକ୍ଷ୍ୟରେ ଯଥାଶୀଘ୍ର ପହଞ୍ଚାଇ ଦିଏ । ଅତଏବ ବୁଝାଯାଉଛି, ଠାକୁରଙ୍କର ଆଜନ୍ମ ପରିଶୁଦ୍ଧ ମନ ଗୁରୁସଦୃଶ ପଥ ପ୍ରଦର୍ଶନ କରାଇ ସାଧନାର ପ୍ରଥମ ଚାରିବର୍ଷରେ ହିଁ ତାଙ୍କୁ ଈଶ୍ୱରଲାଭ ବିଷୟରେ ସିଦ୍ଧକାମ କରିଥିଲା । ତାଙ୍କ ନିକଟରୁ ଶୁଣିଛୁ, ଏହା ତାଙ୍କୁ ଏହି ସମୟରେ କେଉଁ କାର୍ଯ୍ୟ କରିବାକୁ ହେବ ଏବଂ କେଉଁ କାର୍ଯ୍ୟରୁ ବିରତ ରହିବାକୁ ହେବ, ସେତିକି ମାତ୍ର ଶିକ୍ଷା ଦେଇ ନିଶ୍ଚିନ୍ତ ହେଉ ନ ଥିଲା, କିନ୍ତୁ ସମୟ ସମୟରେ ମୂର୍ତ୍ତି ପରିଗ୍ରହପୂର୍ବକ ପୃଥକ ଏକ ବ୍ୟକ୍ତି ପରି ଦେହମଧ୍ୟରୁ ତାଙ୍କ ସମ୍ମୁଖରେ ଆବିର୍ଭୂତ ହୋଇ ତାଙ୍କୁ ସାଧନ ପଥରେ ଉତ୍ସାହିତ କରୁଥିଲା, ଭୟ ପ୍ରଦର୍ଶନପୂର୍ବକ ଧ୍ୟାନରେ ନିମଗ୍ନ ହୋଇ ରହିବାକୁ କହୁଥିଲା, ଅନୁଷ୍ଠାନ ବିଶେଷ କାହିଁକି କରିବାକୁ ହେବ ସେସମସ୍ତ ବୁଝାଇ ଦେଇ କୃତକାର୍ଯ୍ୟର ଫଳାଫଳ ଜଣାଇ ଦେଉଥିଲା ! ଏହି ସମୟରେ ଧ୍ୟାନ କରି ବସିଲେ ସେ ଦେଖୁଥିଲେ, ଶାଣିତ-ତ୍ରିଶୂଳଧାରୀ ଜନୈକ ସନ୍ନ୍ୟାସୀ ଦେହମଧ୍ୟରୁ ବହିର୍ଗତ ହୋଇ ତାଙ୍କୁ କହୁଛନ୍ତି, ''ଅନ୍ୟ ଚିନ୍ତା ପରିତ୍ୟାଗପୂର୍ବକ ଇଷ୍ଟଚିନ୍ତା ଯଦି ନ କରିବୁ ତେବେ ଏହି ତ୍ରିଶୂଳ ତୋର ଛାତିରେ ଭୁଷିଦେବି !'' ଅନ୍ୟ ଏକ ସମୟରେ ଦେଖିଥିଲେ—ଭୋଗବାସନାମୟ ପାପପୁରୁଷ ଶରୀରରୁ ବାହାରିଲା ପରେ ସେହି ଯୁବକ ସନ୍ନ୍ୟାସୀ ଦେହ ମଧ୍ୟରୁ ବାହାରି ସେହି ପୁରୁଷକୁ ନିହତ କଲେ !

ଦୂରସ୍ଥ ଦେବଦେବୀଙ୍କ ମୂର୍ତ୍ତିଦର୍ଶନରେ ଅଥବା କୀର୍ତ୍ତନାଦିଶ୍ରବଣରେ ଅଭିଳାଷୀ ହୋଇ ସେହି ଯୁବକ ସନ୍ନ୍ୟାସୀ କେବେ କେବେ ସେହିପରି ଦେହରୁ ବାହାରି ଆସି ଜ୍ୟୋତିର୍ମୟ ପଥରେ ସେସମସ୍ତ ସ୍ଥାନକୁ ଗମନ କରୁଥିଲେ ଏବଂ କିଛି ସମୟ ଆନନ୍ଦ ଉପଭୋଗପୂର୍ବକ ପୁନରାୟ ପୂର୍ବୋକ୍ତ ଜ୍ୟୋତିର୍ମୟ ବର୍ତ୍ମ (ପଥ) ଅବଲମ୍ବନ କରି ତାଙ୍କର ଶରୀରମଧ୍ୟରେ ପ୍ରବିଷ୍ଟ ହେଉଥିଲେ ! —ଏହିପରି ନାନା ଦର୍ଶନର କଥା ଆମେ ଠାକୁରଙ୍କଠାରୁ ଶୁଣିଛୁ ।

## (୨) ନିଜ ଶରୀର ଭିତରେ ଯୁବକ ସନ୍ନ୍ୟାସୀଙ୍କର ଦର୍ଶନ ଏବଂ ଉପଦେଶଲାଭ :

ସାଧନକାଳର ପ୍ରାୟ ପ୍ରାରମ୍ଭରୁ ଠାକୁର ଦର୍ପଣରେ ଦେଖାଯାଉଥିବା ପ୍ରତିବିମ୍ବ ପରି ତାଙ୍କରି ଅନୁରୂପ ଆକାରବିଶିଷ୍ଟ ଶରୀରମଧ୍ୟଗତ ସେହି ଯୁବକ ସନ୍ନ୍ୟାସୀଙ୍କର ଦର୍ଶନ ପାଇଥିଲେ ଏବଂ କ୍ରମେ ସମସ୍ତ କାର୍ଯ୍ୟର ମୀମାଂସା ପାଇଁ ତାଙ୍କର ପରାମର୍ଶ ଅନୁସାରେ ଚଳିବାକୁ ଅଭ୍ୟସ୍ତ ହୋଇଥିଲେ । ସାଧକଜୀବନର ଅପୂର୍ବ ଅନୁଭବ-ପ୍ରତ୍ୟକ୍ଷାଦିର ପ୍ରସଙ୍ଗ କରୁ କରୁ ସେ ଦିନେ ସେହି ବିଷୟ ଆମକୁ ନିମ୍ନଲିଖିତ ଭାବରେ କହିଥିଲେ ''ମୋ ପରି ଦେଖିବାକୁ ଏକ ଯୁବକ ସନ୍ନ୍ୟାସୀମୂର୍ତ୍ତି ଭିତରୁ ଯେତେବେଳେ ସେତେବେଳେ ବାହାରି ଆସି ମୋତେ ସବୁ ବିଷୟରେ ଉପଦେଶ ଦେଉଥିଲେ । ସେ ବାହାରି ଆସିଲେ କେବେ ସାମାନ୍ୟ ବାହ୍ୟଜ୍ଞାନ ଥାଏ ଏବଂ କେତେବେଳେ ସମ୍ପୂର୍ଣ୍ଣ ଭାବରେ ବାହ୍ୟଜ୍ଞାନ ହରାଇ ଜଡ଼ବତ୍ ପଡ଼ି ରହି କେବଳ ତାଙ୍କର ଚେଷ୍ଟା ଏବଂ କଥା ଦେଖିବାକୁ ଓ ଶୁଣିବାକୁ ପାଉଥିଲି ! ତାଙ୍କର ମୁହଁରୁ ଯାହା ଶୁଣିଥିଲି, ସେହି ସମସ୍ତ ତତ୍ତ୍ୱ କଥା ବ୍ରାହ୍ମଣୀ, ଲେଙ୍ଗ୍‌ଟା (ଶ୍ରୀମତ୍ ତୋତାପୁରୀ) ପ୍ରଭୃତି ଆସି ପୁନରାୟ ଉପଦେଶ ଦେଇଥିଲେ । ଯାହା ଜାଣିଥିଲି, ତାହା ହିଁ ସେମାନେ ଜଣାଇ ଦେଇଥିଲେ । ଏଥିରୁ ବୁଝାଯାଏ, ଶାସ୍ତ୍ରବିଧିର ମାନ୍ୟ ରକ୍ଷା କରାଇବା ପାଇଁ ହିଁ ସେମାନେ ଗୁରୁରୂପରେ ଜୀବନରେ ଆସିଥିଲେ; ନ ହେଲେ ଲେଙ୍ଗ୍‌ଟା(ତୋତାପୁରୀ) ପ୍ରଭୃତିଙ୍କୁ ଗୁରୁରୂପରେ ଗ୍ରହଣ କରିବାର ପ୍ରୟୋଜନ ଖୋଜି ମିଳେ ନାହିଁ ।''

## (୩) ଶିହଡ଼ ଯିବା ବାଟରେ ଠାକୁରଙ୍କର ଦର୍ଶନ । ଉକ୍ତଦର୍ଶନ ସମ୍ବନ୍ଧରେ ଭୈରବୀ ବ୍ରାହ୍ମଣୀଙ୍କର ମୀମାଂସା :

ସାଧନାର ପ୍ରଥମ ଚାରିବର୍ଷର ଶେଷଭାଗରେ ଠାକୁର ଯେତେବେଳେ କାମାରପୁକୁରରେ ରହୁଥିଲେ ସେତେବେଳେ ଏହି ସମ୍ବନ୍ଧୀୟ ଅନ୍ୟ ଏକ ଅପୂର୍ବ ଦର୍ଶନ ତାଙ୍କ ଜୀବନରେ ଘଟିଥିଲା । ସବାରୀରେ କାମାରପୁକୁରରୁ ହୃଦୟଙ୍କ ଘର ଶିହଡ଼ ଗ୍ରାମକୁ ଯିବା ସମୟରେ ତାଙ୍କର ଉକ୍ତ ଦର୍ଶନ ହୋଇଥିଲା । ସେହି କଥା ହିଁ ଏବେ ଆମେ ପାଠକଙ୍କୁ କହିବୁ—ସୁନୀଳ ଆକାଶ ତଳେ ବିସ୍ତୀର୍ଣ୍ଣ ପ୍ରାନ୍ତର,

ଶ୍ୟାମଳ ଧାନ୍ୟ କ୍ଷେତ୍ର, ବିହଙ୍ଗକୂଜିତ ଶୀତଳଛାୟାସମ୍ପନ୍ନ ଅଶ୍ୱତ୍ଥବଟବୃକ୍ଷରାଜି ଏବଂ ମଧୁଗନ୍ଧ-କୁସୁମ-ଭୂଷିତ ତରୁଲତା ପ୍ରଭୃତି ଅବଲୋକନପୂର୍ବକ ପ୍ରଫୁଲ୍ଲ ମନରେ ଯାଉ ଯାଉ ଠାକୁର ଦେଖିଲେ, ତାଙ୍କ ଦେହମଧ୍ୟରୁ ଦୁଇଟି କିଶୋରବୟସ୍କ ସୁନ୍ଦର ବାଳକ ସହସା ବହିର୍ଗତ ହୋଇ ବନଫୁଲ ଅନ୍ୱେଷଣରେ କେବେ ପ୍ରାନ୍ତରମଧ୍ୟରେ ବହୁତ ଦୂର ଗମନ କରୁଥିଲେ, ପୁଣି କେତେବେଳେ ଶିବିକା ସନ୍ନିକଟକୁ ଆଗମନପୂର୍ବକ ହାସ୍ୟ, ପରିହାସ, କଥୋପକଥନ ଆଦି ନାନା ଚେଷ୍ଟା କରୁ କରୁ ଅଗ୍ରସର ହେବାକୁ ଲାଗିଲେ । ଅନେକ ସମୟ ପର୍ଯ୍ୟନ୍ତ ସେହିପରି ଆନନ୍ଦରେ ବିହାର କରି ସେମାନେ ପୁନର୍ବାର ତାଙ୍କର ଦେହ ମଧ୍ୟରେ ପ୍ରବେଶ କଲେ । ସେହି ଦର୍ଶନର ପ୍ରାୟ ଦେଢ଼ ବର୍ଷ ପରେ ବ୍ରାହ୍ମଣୀ ଦକ୍ଷିଣେଶ୍ୱରରେ ଆସି ପହଞ୍ଚିଥିଲେ । କଥାପ୍ରସଙ୍ଗରେ ଦିନେ ଠାକୁରଙ୍କ ନିକଟରୁ ଉକ୍ତ ଦର୍ଶନ ବିବରଣ ଶୁଣି ବ୍ରାହ୍ମଣୀ କହିଥିଲେ, ''ବାବା, ତୁମେ ଠିକ୍ ଦେଖିଛ; ଏଥର ନିତ୍ୟାନନ୍ଦଙ୍କ ଖୋଳରେ ଚୈତନ୍ୟଙ୍କର ଆବିର୍ଭାବ—ଶ୍ରୀନିତ୍ୟାନନ୍ଦ ଓ ଶ୍ରୀଚୈତନ୍ୟ ଏଥର ଏକସଙ୍ଗରେ ଏକାଧାରରେ ଆସି ତୁମ ଭିତରେ ରହିଛନ୍ତି ! ସେଥିପାଇଁ ତୁମର ଏପରି ଦର୍ଶନ ହୋଇଥିଲା ।'' ହୃଦୟ କହୁଥିଲେ, ଏକଥା କହି ବ୍ରାହ୍ମଣୀ ଚୈତନ୍ୟ ଭାଗବତରୁ ନିମ୍ନଲିଖିତ ଶ୍ଳୋକ ଦୁଇଟି ଆବୃତ୍ତି କରିଥିଲେ—

> ଅଦ୍ୱୈତର ଗଲା ଧରି କହେନ ବାର ବାର
> ପୁନଃ ଯେ କରିବ ଲୀଲା ମୋର ଚମତ୍କାର ।
> କୀର୍ତ୍ତନେ ଆନନ୍ଦରୂପ ହଇବେ ଆମାର ।।
> ଅଦ୍ୟାବଧି ଗୌରଲୀଳା କରେନ ଗୌରରାୟ ।
> କୋନ କୋନ ଭାଗ୍ୟବାନେ ଦେଖିବାରେ ପାୟ ।।

[ଏହି ଗୀତର ଭାବାର୍ଥ ହେଉଛି :- ଶ୍ରୀଅଦ୍ୱୈତ ପ୍ରଭୁଙ୍କ ଗଳାରେ ହାତ ଘେରାଇ ଶ୍ରୀଚୈତନ୍ୟ ମହାପ୍ରଭୁ ଏହା ବାରମ୍ବାର କହିବାକୁ ଲାଗିଲେ ଯେ, ମୁଁ ପୁଣି ଯେଉଁ ଅଦ୍ଭୁତ ଲୀଳା କରିବି, ସେଥିରେ ଶ୍ରୀହରିକୀର୍ତ୍ତନରେ ମୋର ଆନନ୍ଦମୟ ରୂପ ହେବ । ଏବେ ବି ଶ୍ରୀଗୌରାଙ୍ଗଦେବ ନିଜର ଲୀଳା କରୁଛନ୍ତି, କିଛି କିଛି ଭାଗ୍ୟବାନଙ୍କୁ ସେହି ଲୀଳାର ଦର୍ଶନ ହୁଏ ।]

### ଉକ୍ତ ଦର୍ଶନରୁ ଯାହା ବୁଝାଯାଏ :

ଆମେ ଦିନେ ତାଙ୍କୁ ଏହି ଦର୍ଶନ କଥା ପଚାରିବାରୁ ଠାକୁର କହିଥିଲେ, ''ସତରେ ସେହିପରି ଦେଖିଥିଲି । ବ୍ରାହ୍ମଣୀ ସେ କଥାଶୁଣି ସେହିପରି କହିଥିଲେ, ଏକଥା ମଧ୍ୟ ସତ୍ୟ । କିନ୍ତୁ ତାହାର ପ୍ରକୃତ ଅର୍ଥ କ'ଣ ତାହା କିପରି କହିବି କୁହ ?'' ଯାହା ହେଉ, ସେହି ସମସ୍ତ ଦର୍ଶନ କଥା ଶୁଣି ମନେ ହୁଏ, ସେ ଏହି ସମୟରୁ ଜାଣି ପାରିଥିଲେ, ବହୁ ପ୍ରାଚୀନକାଳରୁ ପୃଥିବୀରେ ସୁପରିଚିତ କୌଣସି

ଆତ୍ମା ତାଙ୍କର ଶରୀର ମନରେ ଅହଂ-ଅଭିମାନ ନେଇ ପ୍ରୟୋଜନବିଶେଷ ସିଦ୍ଧି ନିମିତ୍ତ ଅବସ୍ଥାନ କରୁଛନ୍ତି ! ସେହିପରି ନିଜ ବ୍ୟକ୍ତିତ୍ୱ ସମ୍ବନ୍ଧରେ ଯେଉଁ ଅଲୌକିକ ଆଭାସ ସେ ଏବେ ପାଉଥିଲେ, ତାହା ହିଁ କାଳକ୍ରମେ ସୁସ୍ପଷ୍ଟ ହୋଇ ତାଙ୍କୁ ବୁଝାଇ ଦେଇଥିଲା ଯେ, — ଯିଏ ପୂର୍ବ ଯୁଗମାନଙ୍କରେ ଧର୍ମସଂସ୍ଥାପନ ପାଇଁ ଅଯୋଧ୍ୟାରେ ଜାନକୀବଲ୍ଲଭ ଶ୍ରୀରାମଚନ୍ଦ୍ର ଓ ବୃନ୍ଦାବନରେ ରାଧାବଲ୍ଲଭ ଶ୍ରୀକୃଷ୍ଣରୂପରେ ଜନ୍ମଗ୍ରହଣ କରିଥିଲେ, ସେ ହିଁ ଏବେ ପୁନରାୟ ଭାରତ ଓ ଜଗତକୁ ନବୀନ ଧର୍ମାଦର୍ଶଦାନ ନିମିତ୍ତ ନୂତନ ଶରୀର ଧାରଣପୂର୍ବକ ଶ୍ରୀରାମକୃଷ୍ଣରୂପରେ ଅବତୀର୍ଣ୍ଣ ହୋଇଅଛନ୍ତି । ଆମେ ତାଙ୍କୁ ବାରମ୍ବାର କହିବା ଶୁଣିଛୁ, ''ଯିଏ ରାମ, ଯିଏ କୃଷ୍ଣ ହୋଇଥିଲେ, ସେ ହିଁ ଇଦାନୀଂ (ନିଜ ଶରୀର ଦେଖାଇ) ଏହି ଖୋଳଟା ଭିତରେ ରହିଛନ୍ତି — ରାଜା ଯେପରି ବେଳେବେଳେ ଛଦ୍ମବେଶରେ ନଗରଭ୍ରମଣ କରିବାକୁ ବାହାରି ଥାଆନ୍ତି, ସେହିପରି ଗୁପ୍ତଭାବରେ ସେ ଏଥର ପୃଥିବୀକୁ ଆସିଛନ୍ତି !''

### ଠାକୁରଙ୍କର ଦର୍ଶନସମୂହ କେବେହେଲେ ମିଥ୍ୟା ପ୍ରମାଣିତ ହୋଇ ନାହିଁ :

ପୂର୍ବୋକ୍ତ ଦର୍ଶନର ସତ୍ୟାସତ୍ୟ ନିର୍ଣ୍ଣୟ କରିବାକୁ ହେଲେ ଅନ୍ତରଙ୍ଗ ଭକ୍ତମାନଙ୍କ ନିକଟରେ ଠାକୁର ଏପରି ନିଜ ବ୍ୟକ୍ତିତ୍ୱ ସମ୍ବନ୍ଧରେ ଯାହା କହିଛନ୍ତି, ତାହା ବିଶ୍ୱାସ କରିବା ବ୍ୟତୀତ ଅନ୍ୟ କୌଣସି ପନ୍ଥା ନାହିଁ । ମାତ୍ର ଏହି ଦର୍ଶନଟିର କଥା ଛାଡ଼ିଦେଲେ ତାଙ୍କର ଏହି ସମୟର ଅନ୍ୟାନ୍ୟ ଦର୍ଶନସମୂହର ସତ୍ୟତା ସମ୍ବନ୍ଧରେ ଆମେ ନିଶ୍ଚିତ ଧାରଣା କରିପାରୁ । କାରଣ, ସେହିପରି ଦର୍ଶନ ଆଦି ଆମମାନଙ୍କ ସମୟରେ ଠାକୁରଙ୍କ ଜୀବନରେ ନିତ୍ୟ ଉପସ୍ଥିତ ହେଉଥିଲା ଏବଂ ତାଙ୍କର ଇଂରାଜୀଶିକ୍ଷିତ ସନ୍ଦେହଶୀଳ ଶିଷ୍ୟମାନେ ଏସମସ୍ତ ପରୀକ୍ଷା କରିବାକୁ ଯାଇ ପ୍ରତିଥର ପରାଜିତ ତଥା ସ୍ତମ୍ଭିତ ହେଉଥିଲେ । ଏବିଷୟରେ କେତୋଟି ଉଦାହରଣ[୧] 'ଲୀଳାପ୍ରସଙ୍ଗ'ର ଅନ୍ୟ ସ୍ଥାନରେ ଥିଲେ ମଧ୍ୟ ପାଠକଙ୍କର ତୃପ୍ତି ନିମିତ୍ତ ଅନ୍ୟ ଏକ ଦୃଷ୍ଟାନ୍ତ ଏଠାରେ ଉଲ୍ଲେଖ କରୁଅଛୁ ।

### ଉକ୍ତ ବିଷୟରେ ଦୃଷ୍ଟାନ୍ତ — ୧୮୮୫ ଖ୍ରୀଷ୍ଟାବ୍ଦରେ ଶ୍ରୀସୁରେଶଚନ୍ଦ୍ର ମିତ୍ରଙ୍କ ଘରେ ଦୁର୍ଗାପୂଜା ସମୟରେ ଠାକୁରଙ୍କର ଦର୍ଶନର ବିବରଣ :

୧୮୮୫ ଖ୍ରୀଷ୍ଟାବ୍ଦର ଶେଷ ଭାଗରେ, ଆଶ୍ୱିନ ମାସ, ଶାରଦୀୟ ପୂଜା ମହୋତ୍ସବରେ କଲିକତା-ନଗରୀର ଆବାଳବୃଦ୍ଧବନିତା ପ୍ରତିବର୍ଷ ଯେପରି ମାତିଥାଆନ୍ତି, ସେପରି ମାତିଛନ୍ତି । ସେହି ଆନନ୍ଦର ପ୍ରବାହ ଠାକୁରଙ୍କର ଭକ୍ତମାନଙ୍କ ଅନ୍ତରରେ ବିଶେଷରୂପେ ଅନୁଭୂତ ହେଲେ ମଧ୍ୟ ଏହାର ବାହ୍ୟ ପ୍ରକାଶରେ ବିଶେଷ ବାଧା ଉପୁଜିଅଛି । କାରଣ, ଯାହାକୁ ନେଇ ତାଙ୍କର ଆନନ୍ଦ

---

୧. ଗୁରୁଭାବ — ଉତ୍ତରାର୍ଦ୍ଧ, ୪ର୍ଥ ଅଧ୍ୟାୟ ।

କରିବା କଥା ତାଙ୍କ ଶରୀର ଏବେ ଅସୁସ୍ଥ — ଠାକୁର ଗଳାରୋଗରେ ଆକ୍ରାନ୍ତ । କଲିକତାର ଶାମପୁକୁର ପଲ୍ଲୀସ୍ଥ ଏକ ଦୋତାଲାଘରଂ ଭଡ଼ା କରି ପ୍ରାୟ ମାସେ ହେବ ଭକ୍ତମାନେ ତାଙ୍କୁ ଆଣି ରଖିଛନ୍ତି ଏବଂ ସେତେବେଳର ସୁପ୍ରସିଦ୍ଧ ଚିକିତ୍ସକ ଡାକ୍ତର ମହେନ୍ଦ୍ରଲାଲ ସରକାର ଔଷଧପଥ୍ୟ ବ୍ୟବସ୍ଥା କରି ତାଙ୍କୁ ରୋଗମୁକ୍ତ କରିବା ପାଇଁ ଯଥାସାଧ୍ୟ ଚେଷ୍ଟା କରୁଛନ୍ତି । ଏହା ସତ୍ତ୍ୱେ ବ୍ୟାଧିର ଉପଶମ ନ ହୋଇ ଦିନକୁ ଦିନ ବୃଦ୍ଧି ହେଉଅଛି । ଗୃହସ୍ଥ ଭକ୍ତମାନେ ସକାଳେ ସନ୍ଧ୍ୟାରେ ଏହି ଘରକୁ ଆସି ସମସ୍ତ ବିଷୟର ତତ୍ତ୍ୱାବଧାନ ଓ ବନ୍ଦୋବସ୍ତ କରୁଛନ୍ତି ଏବଂ ଯୁବକ-ଛାତ୍ର ଭକ୍ତଗଣଙ୍କ ମଧ୍ୟରେ ଅନେକେ ନିଜ ନିଜ ଘରକୁ ଭୋଜନ କରିବାକୁ ଯିବାଛଡ଼ା ଅନ୍ୟ ସମୟରେ ଠାକୁରଙ୍କ ସେବାରେ ନିଯୁକ୍ତ ଅଛନ୍ତି; ଆବଶ୍ୟକ ବୁଝି କେହି କେହି ତାହା ମଧ୍ୟ ନ କରି ଚବିଶଘଣ୍ଟା ସେଠାରେ ରହୁଛନ୍ତି ।

ଅଧିକ କଥା କହିଲେ ଏବଂ ବାରମ୍ବାର ସମାଧିସ୍ଥ ହେଲେ ଶରୀରର ରକ୍ତ ପ୍ରବାହ ଊର୍ଦ୍ଧ୍ୱକୁ ଉଠି କ୍ଷତସ୍ଥାନକୁ ନିରନ୍ତର ଆଘାତପୂର୍ବକ ରୋଗର ଉପଶମ ହେବାରେ ବାଧା ସୃଷ୍ଟି କରିବ ବୋଲି ଚିକିତ୍ସକ ଠାକୁରଙ୍କୁ ଉକ୍ତ ଉଭୟ ବିଷୟରେ ବିଶେଷ ସଂଯତ ରହିବାକୁ ପରାମର୍ଶ ଦେଇଛନ୍ତି । ଏହି ବ୍ୟବସ୍ଥା ଅନୁଯାୟୀ ଚଳିବାକୁ ଚେଷ୍ଟା କଲେ ମଧ୍ୟ ଭ୍ରମବଶତଃ ସେ ବାରମ୍ବାର ଏହାର ବିପରୀତ କାର୍ଯ୍ୟ କରି ପକାଉଛନ୍ତି । କାରଣ 'ହାଡ଼-ମାଂସର ପିଞ୍ଜରା' ବୋଲି ଚିରକାଳ ଅବଜ୍ଞା କରି ଯେଉଁ ଶରୀରରୁ ମନକୁ ଉଠାଇ ନେଇଛନ୍ତି, ସାଧାରଣ ମନୁଷ୍ୟ ପରି ତାହାକୁ ପୁନରାୟ ବହୁମୂଲ୍ୟ ଜ୍ଞାନ କରିବାକୁ ସେ ଆଦୌ ସମର୍ଥ ହେଉ ନାହାନ୍ତି । ଭଗବତ୍‌ପ୍ରସଙ୍ଗ ଆରମ୍ଭ ହେଲେ ହିଁ ଶରୀର ଓ ଶରୀରରକ୍ଷା କଥା ଏକାବେଳକେ ଭୁଲି ପୂର୍ବ ପରି ସେଥିରେ ଯୋଗଦାନ କରି ବାରମ୍ବାର ସମାଧିସ୍ଥ ହୋଇପଡୁଛନ୍ତି ! ଏହାପୂର୍ବରୁ ତାଙ୍କର ଦର୍ଶନ ପାଇ ନାହାନ୍ତି ଏପରି ଅନେକ ବ୍ୟକ୍ତି ମଧ୍ୟ ଉପସ୍ଥିତ ହେଉଛନ୍ତି; ସେମାନଙ୍କର ହୃଦୟର ବ୍ୟାକୁଳତା ଦେଖି ସେ ସ୍ଥିର ରହିପାରୁ ନାହାନ୍ତି, ମୃଦୁସ୍ୱରରେ ସେମାନଙ୍କୁ ସାଧନପଥ ନିର୍ଦ୍ଦେଶ କରି ଦେଉଛନ୍ତି । ଏଥିରେ ତାଙ୍କର ନିରନ୍ତର ଉତ୍ସାହ-ଆନନ୍ଦ ଦେଖି ଭକ୍ତମାନେ ଠାକୁରଙ୍କର ବ୍ୟାଧି ସାମାନ୍ୟ ଓ ସହଜସାଧ୍ୟ ଜ୍ଞାନ କରି ନିଶ୍ଚିନ୍ତ ହେଉଛନ୍ତି; କେହି କେହି ପୁଣି ନବାଗତ ବ୍ୟକ୍ତିମାନଙ୍କୁ କୃପା କରିବାକୁ ଏବଂ ବହୁଜନମଧ୍ୟରେ ଧର୍ମଭାବପ୍ରଚାର ନିମିତ୍ତ ଠାକୁର ସ୍ୱେଚ୍ଛାରେ ଶାରୀରିକ ବ୍ୟାଧିରୂପକ ଉପାୟ କିଛିଦିନ ପାଇଁ ଅବଲମ୍ବନ କରିଛନ୍ତି — ଏହିପରି ମତ ପ୍ରକାଶ କରି ସମସ୍ତଙ୍କୁ ନିଃଶଙ୍କ କରିବାକୁ ଚେଷ୍ଟା କରୁଛନ୍ତି ।

ଡାକ୍ତର ମହେନ୍ଦ୍ରଲାଲ କେଉଁଦିନ ସକାଳେ ଏବଂ କେଉଁଦିନ ଅପରାହ୍ଣରେ ପ୍ରାୟ ପ୍ରତିଦିନ ଆସୁଛନ୍ତି ଏବଂ ରୋଗର ହ୍ରାସବୃଦ୍ଧି ପରୀକ୍ଷା କରି ବ୍ୟବସ୍ଥା କରିବା ପରେ ଠାକୁରଙ୍କର ମୁଖନିଃସୃତ ଭଗବଦାଳାପ ଶୁଣି ଏପରି ମୁଗ୍ଧ ହୋଇ ତନ୍ମୟ

---

୧. ଗୋକୁଳଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ ଘର ।

ହୋଇ ଯାଉଛନ୍ତି ଯେ, ଦୁଇ ତିନି ଘଣ୍ଟା କାଳ ଅତୀତ ହେଲେ ମଧ୍ୟ ତାଙ୍କ ନିକଟରୁ ବିଦାୟଗ୍ରହଣ କରିପାରୁ ନାହାନ୍ତି ! ପୁଣି, ପ୍ରଶ୍ନ ଉପରେ ପ୍ରଶ୍ନ ପଚାରି ଏସମସ୍ତ ପ୍ରଶ୍ନର ଅଦ୍ଭୁତ ସମାଧାନ ଶୁଣି ଶୁଣି ଅନେକ ସମୟ ଅତୀତ ହେଲେ କେବେକେବେ ସେ ଅନୁତପ୍ତ ହୋଇ କହୁଛନ୍ତି, ''ଆଜି ଆପଣଙ୍କୁ ବହୁକ୍ଷଣ ଧରି କଥା କୁହାଇଛି, ଅନ୍ୟାୟ ହୋଇଛି; ଯାହା ହେବାର ହୋଇଛି ଏବେ ସାରାଦିନ ଆଉ କାହା ସହିତ କୌଣସି କଥା ହେବେ ନାହିଁ, ତାହାହେଲେ କୌଣସି ଅପକାର ହେବ ନାହିଁ । ଆପଣଙ୍କ କଥାରେ ଏପରି ଆକର୍ଷଣ ଅଛି ଯେ, ଆପଣଙ୍କ ନିକଟକୁ ଆସିଲେ ସମସ୍ତ କାର୍ଯ୍ୟ ଛାଡ଼ି ଦୁଇ ତିନି ଘଣ୍ଟା ନ ବସି ଉଠିଯାଇ ପାରେ ନାହିଁ; ସମୟ କିପରି କଟିଯାଏ ଜଣା ପଡ଼େ ନାହିଁ । ସେ ଯାହା ହେଉ, ଆଉ କାହା ସହିତ ଏତେ ସମୟ ଧରି କଥା କହିବେ ନାହିଁ; କେବଳ ମୁଁ ଆସିଲେ ଏମିତି କହିବେ, ସେଥିରେ ଦୋଷ ହେବ ନାହିଁ ।''(ଡାକ୍ତରଙ୍କର ଓ ସକଳ ଭକ୍ତମାନଙ୍କର ହାସ୍ୟ) ।

ଠାକୁରଙ୍କର ପରମ ଭକ୍ତ ଶ୍ରୀଯୁକ୍ତ ସୁରେନ୍ଦ୍ର ନାଥ ମିତ୍ର—ଯାହାଙ୍କୁ ସେ ବେଳେବେଳେ ସୁରେଶ ମିତ୍ର ବୋଲି କହୁଥିଲେ—ତାଙ୍କର ସିମ୍‌ଲାର ବାସଭବନରେ ଏବର୍ଷ ପୂଜା କରିବେ । ପୂର୍ବେ ତାଙ୍କ ଘରେ ପ୍ରତିବର୍ଷ ପୂଜା ହେଉଥିଲା, ମାତ୍ର ଥରେ ବିଶେଷ ବିଘ୍ନ ଉପୁଜିବାରୁ ଏହା ଅନେକ ବର୍ଷ ବନ୍ଦ ଥିଲା । ଘରେ ପୁନର୍ବାର ପୂଜା କରିବା ପାଇଁ କେହି ସାହସ କରୁ ନ ଥିଲେ; କେହି ପୂଜା କରିବାର ଉଦ୍‌ଯୋଗ କଲେ ଅନ୍ୟମାନେ ତାଙ୍କୁ ଏହି ସଂକଳ୍ପରୁ ନିରସ୍ତ କରୁଥିଲେ । ଠାକୁରଙ୍କର ପ୍ରେରଣାରେ ସୁରେନ୍ଦ୍ରନାଥ ଦୈବବିଘ୍ନର ଭୟ କରୁ ନ ଥିଲେ ଏବଂ ଥରେ କୌଣସି ବିଷୟ କରିବେ ବୋଲି ସଂକଳ୍ପ ନେଲେ କାହାର ଆପତ୍ତି ଗ୍ରାହ୍ୟ କରୁ ନ ଥିଲେ । ଘରର ସମସ୍ତେ ନାନା ପ୍ରକାରର ଚେଷ୍ଟା କରି ମଧ୍ୟ ତାଙ୍କୁ ଏବର୍ଷ ପୂଜା ସଂକଳ୍ପରୁ ନିରସ୍ତ କରିପାରି ନ ଥିଲେ । ସେ ଠାକୁରଙ୍କୁ ଜଣାଇ ସମସ୍ତ ଖର୍ଚ୍ଚ ନିଜେ ବହନ କରି ଶ୍ରୀଶ୍ରୀଜଗଦମ୍ବାଙ୍କୁ ଘରକୁ ଆଣୁଛନ୍ତି । ଶରୀରର ଅସୁସ୍ଥତାବଶତଃ ଠାକୁର ଆସି ପାରିବେ ନାହିଁ ବୋଲି ସୁରେନ୍ଦ୍ରଙ୍କର ଆନନ୍ଦରେ ନିରାନନ୍ଦ ସୃଷ୍ଟି ହୋଇଛି । ପୁଣି ପୂଜାର ଅଳ୍ପ ଦିନ ପୂର୍ବରୁ ଦୁଇ ଚାରିଜଣ ଅସୁସ୍ଥ ହୋଇ ପଡ଼ିଥିବାରୁ ସେ ଏଥିପାଇଁ ଦୋଷୀ ସାବ୍ୟସ୍ତ ହୋଇ ଘରର ସମସ୍ତଙ୍କର ଅପ୍ରିୟ ମଧ୍ୟ ହୋଇଛନ୍ତି, କିନ୍ତୁ ଏଥିରେ ବିଚଳିତ ନ ହୋଇ ସୁରେନ୍ଦ୍ରନାଥ ଭକ୍ତି ସହକାରେ ଶ୍ରୀଶ୍ରୀଜଗନ୍ମାତାଙ୍କର ପୂଜା ଆରମ୍ଭ କଲେ ଏବଂ ସମସ୍ତ ଗୁରୁଭାଇମାନଙ୍କୁ ନିମନ୍ତ୍ରଣ କଲେ ।

ସପ୍ତମୀ ପୂଜା ସରିଛି, ଆଜି ମହାଷ୍ଟମୀ । ଶ୍ୟାମପୁକୁର ଘରେ ଠାକୁରଙ୍କ ନିକଟରେ ଅନେକ ଭକ୍ତ ଏକତ୍ରିତ ହୋଇ ଭଗବତ୍‌କଥା ଓ ଭଜନାଦି କରି ଆନନ୍ଦ କରୁଥାଆନ୍ତି । ଡାକ୍ତର ବାବୁ ଅପରାହ୍ଣ ଚାରିଟା ସମୟରେ ପହଞ୍ଚିବାର କିଛିକ୍ଷଣ ପରେ ନରେନ୍ଦ୍ରନାଥ (ସ୍ୱାମୀ ବିବେକାନନ୍ଦ) ଭଜନ ଆରମ୍ଭ କଲେ ।

ସେହି ଦିବ୍ୟ ସ୍ୱରଲହରୀ ଶୁଣୁ ଶୁଣୁ ସମସ୍ତେ ଆତ୍ମହରା ହୋଇପଡ଼ିଲେ । ଠାକୁର ନିକଟରେ ଉପବିଷ୍ଟ ଡାକ୍ତରଙ୍କୁ ସଙ୍ଗୀତର ଭାବାର୍ଥ ମୃଦୁସ୍ୱରରେ ବୁଝାଇବାକୁ ଏବଂ କେତେବେଳେ ଅଳ୍ପକ୍ଷଣ ପାଇଁ ସମାଧିସ୍ଥ ହେବାକୁ ଲାଗିଲେ । ଭକ୍ତଗଣଙ୍କ ମଧ୍ୟରେ କେତେକ ଭାବାବେଶରେ ବାହ୍ୟ ଚୈତନ୍ୟ ହରାଇଲେ ।

ଏହିପରି ପ୍ରବଳ ଆନନ୍ଦପ୍ରବାହରେ ଘର ବେଶ୍ ଜମି ଉଠିଥିଲା । ଦେଖୁ ଦେଖୁ ରାତି ସାଢ଼େ-ସାତଟା ବାଜିଲା । ଡାକ୍ତରଙ୍କର ସେତେବେଳେ ଚେତା ପଶିଲା, ସେ ସ୍ୱାମୀଜୀଙ୍କୁ ପୁତ୍ରବତ୍ ସ୍ନେହରେ ଆଲିଙ୍ଗନ କଲେ ଏବଂ ଠାକୁରଙ୍କ ନିକଟରୁ ବିଦାୟଗ୍ରହଣ କରି ଠିଆ ହେବାମାତ୍ରେ ଠାକୁର ମଧ୍ୟ ହସି ହସି ଉଠି ଠିଆହୋଇ ସହସା ଗଭୀର ସମାଧିମଗ୍ନ ହେଲେ । ଭକ୍ତମାନେ କାନରେ କୁହାକୁହି ହେବାକୁ ଲାଗିଲେ, ଏହା ସନ୍ଧିପୂଜା ସମୟ, ସେଥିପାଇଁ ଠାକୁର ସମାଧିସ୍ଥ ହୋଇଛନ୍ତି ! ସନ୍ଧିକ୍ଷଣ କଥା ନ ଜାଣି ହଠାତ୍ ଏସମୟରେ ଦିବ୍ୟାବେଶରେ ସମାଧିସ୍ଥ ହେବା କମ୍ ଆଶ୍ଚର୍ଯ୍ୟର ବିଷୟ ନୁହେଁ !' ପ୍ରାୟ ଅଧଘଣ୍ଟା ପରେ ତାଙ୍କର ସମାଧି ଭଙ୍ଗ ହେଲା ଏବଂ ଡାକ୍ତର ବିଦାୟ ଗ୍ରହଣ କରି ଚାଲିଗଲେ ।

ଠାକୁର ଏହି ସମାଧିକାଳରେ ଯାହା ଦେଖିଥିଲେ, ସେସବୁ ଭକ୍ତମାନଙ୍କୁ କହିବାକୁ ଲାଗିଲେ—''ଏହିଠାରୁ ସୁରେନ୍ଦ୍ରର ଘର ପର୍ଯ୍ୟନ୍ତ ଗୋଟିଏ ଜ୍ୟୋତିର ରାସ୍ତା ଖୋଲିଗଲା । ଦେଖିଲି, ତାର ଭକ୍ତିରେ ପ୍ରତିମାରେ ମା'ଙ୍କର ଆବେଶ ହୋଇଅଛି ! ତୃତୀୟ ନୟନରୁ ଜ୍ୟୋତିରଶ୍ମି ନିର୍ଗତ ହେଉଅଛି ! ପୂଜା ମଣ୍ଡପରେ ଦେବୀଙ୍କ ସମ୍ମୁଖରେ ଦୀପମାଳା ଜଳା ହୋଇଛି, ଏବଂ ଅଗଣାରେ ବସି ସୁରେନ୍ଦ୍ର ବ୍ୟାକୁଳ ହୃଦୟରେ 'ମା', 'ମା' କହି କ୍ରନ୍ଦନ କରୁଛି । ତୁମେମାନେ ସମସ୍ତେ ତୁରନ୍ତ ତା'ଘରକୁ ଯାଅ । ତୁମମାନଙ୍କୁ ଦେଖିଲେ ତା'ର ପ୍ରାଣ ଶୀତଳ ହେବ ।''

ଏହାପରେ ଠାକୁରଙ୍କୁ ପ୍ରଣାମ କରି ସ୍ୱାମୀ ବିବେକାନନ୍ଦ-ପ୍ରମୁଖ ସମସ୍ତେ ସୁରେନ୍ଦ୍ରନାଥଙ୍କ ଘରକୁ ଗଲେ ଏବଂ ତାଙ୍କୁ ପଚାରି ଜାଣିଲେ ବାସ୍ତବିକ୍ ମଣ୍ଡପରେ ଯେଉଁ ସ୍ଥାନର କଥା ଠାକୁର କହିଥିଲେ, ସେଠାରେ ଦୀପମାଳା ବସାଯାଇଥିଲା ଏବଂ ଠାକୁରଙ୍କର ଯେତେବେଳେ ସମାଧି ହେଲା, ସେତେବେଳେ ସୁରେନ୍ଦ୍ରନାଥ ପ୍ରତିମା ସମ୍ମୁଖରେ ଅଗଣାରେ ବସି ପ୍ରାଣର ଆବେଗରେ 'ମା', 'ମା' ବୋଲି ପ୍ରାୟ ଏକଘଣ୍ଟାକାଳ ବାଳକ ପରି ଉଚ୍ଚସ୍ୱରରେ ରୋଦନ କରିଥିଲେ । ଠାକୁରଙ୍କର ସମାଧି କାଳର ଦର୍ଶନ ଏପରି ବାହ୍ୟ ଘଟଣା ସହିତ ମିଳାଇ ଭକ୍ତମାନେ ବିସ୍ମୟ ଓ ଆନନ୍ଦରେ ହତବୁଦ୍ଧି ହେଲେ !

## ରାଣୀ ରାସମଣି ଓ ମଥୁରବାବୁ ଭ୍ରମଧାରଣାବଶତଃ ଠାକୁରଙ୍କୁ ଯେପରି ପରୀକ୍ଷା କରିଥିଲେ :

ସାଧନ କାଳର ପ୍ରଥମ ଚାରିବର୍ଷର କୌଣସି ଏକ ସମୟରେ ରାଣୀରାସମଣି ଓ ତାଙ୍କର ଜାମାତା ମଥୁରମୋହନ ଭାବିଥିଲେ, ଅଖଣ୍ଡ ବ୍ରହ୍ମଚର୍ଯ୍ୟପାଳନ ହେତୁ ଠାକୁରଙ୍କର ମସ୍ତିଷ୍କ ବିକୃତି ହୋଇ ଆଧ୍ୟାତ୍ମିକ ବ୍ୟାକୁଳତା ରୂପରେ ପ୍ରକାଶିତ ହେଉଅଛି । ବ୍ରହ୍ମଚର୍ଯ୍ୟଭଙ୍ଗ ହେଲେ ପୁନର୍ବାର ଶାରୀରିକ ସ୍ୱାସ୍ଥ୍ୟଲାଭର ସମ୍ଭାବନା ହୋଇପାରେ ଭାବି ସେମାନେ ଲକ୍ଷ୍ମୀବାଈପ୍ରମୁଖ ସୁନ୍ଦରୀ ବାରାଙ୍ଗନାଙ୍କ ସାହାଯ୍ୟରେ ତାଙ୍କୁ ପ୍ରଥମେ ଦକ୍ଷିଣେଶ୍ୱରରେ ଏବଂ ପରେ କଲିକତା ମେଛୁଆବଜାର ପଲ୍ଲୀସ୍ଥ ଏକ ଭବନରେ ପ୍ରଲୋଭିତ କରିବାକୁ ଚେଷ୍ଟା କରିଥିଲେ । ଠାକୁର କହୁଥିଲେ, ଏହି ସମସ୍ତ ରମଣୀଙ୍କ ମଧ୍ୟରେ ଶ୍ରୀଶ୍ରୀଜଗନ୍ମାତାଙ୍କୁ ଦେଖିବାକୁ ପାଇ ସେ 'ମା', 'ମା' କହୁ କହୁ ବାହ୍ୟଚେତନା ହରାଇଥିଲେ ଏବଂ ତାଙ୍କର ଇନ୍ଦ୍ରିୟ ସଙ୍କୁଚିତ ହୋଇ କୁର୍ମାଙ୍ଗସଦୃଶ ଶରୀର ମଧ୍ୟରେ ପ୍ରବେଶ କରିଯାଇଥିଲା ! ଏହି ଘଟଣା ପ୍ରତ୍ୟକ୍ଷ କରି ଏବଂ ତାଙ୍କର ବାଳକ ସଦୃଶ ବ୍ୟବହାରରେ ମୁଗ୍ଧା ହୋଇ ଏହି ସମସ୍ତ ରମଣୀଗଣଙ୍କ ହୃଦୟରେ ବାତ୍ସଲ୍ୟ ଭାବର ସଞ୍ଚାର ହୋଇଥିଲା । ଏହାପରେ ତାଙ୍କୁ ବ୍ରହ୍ମଚର୍ଯ୍ୟଭଙ୍ଗ ନିମିତ୍ତ ପ୍ରଲୋଭିତ କରିବାକୁ ଯାଇ ଅପରାଧିନୀ ହୋଇଛନ୍ତି ଭାବି ସଜଳନୟନରେ ତାଙ୍କ ନିକଟରେ କ୍ଷମାପ୍ରାର୍ଥନା ଏବଂ ତାଙ୍କୁ ବାରମ୍ବାର ପ୍ରଣାମପୂର୍ବକ ତାଙ୍କଠାରୁ ସେମାନେ ସଭୟଚିତ୍ତରେ ବିଦାୟଗ୍ରହଣ କରିଥିଲେ ।

# ନବମ ଅଧ୍ୟାୟ

## ବିବାହ ଏବଂ ପୁନରାଗମନ

### ଠାକୁରଙ୍କର କାମାରପୁକୁର ଆଗମନ :

ଏବେ ଠାକୁର ପୂଜାକାର୍ଯ୍ୟ ଛାଡ଼ି ଦେଇଛନ୍ତି, ଏହି ସମ୍ବାଦ କାମାରପୁକୁରରେ ତାଙ୍କ ମା' ଓ ଭାଇ ଶୁଣି ବିଶେଷ ଚିନ୍ତିତ ହେଲେ । ରାମକୁମାରଙ୍କର ମୃତ୍ୟୁର ଦୁଇବର୍ଷ ହୋଇଛି କି ନାହିଁ ଠାକୁର ବାୟୁରୋଗାକ୍ରାନ୍ତ ହୋଇଥିବା ଶୁଣି ଜନନୀ ଚନ୍ଦ୍ରମଣି ଦେବୀ ଓ ଭାଇ ଶ୍ରୀଯୁକ୍ତ ରାମେଶ୍ୱର ବିଶେଷ ଚିନ୍ତିତ ହେଲେ । ଲୋକେ କହନ୍ତି, ମନୁଷ୍ୟର ଅଦୃଷ୍ଟରେ ଯେତେବେଳେ ଦୁଃଖ ଆସେ ସେତେବେଳେ ଗୋଟିଏ ମାତ୍ର ଦୁର୍ଘଟଣାରେ ଏହାର ପରିସମାପ୍ତି ହୁଏ ନାହିଁ, କିନ୍ତୁ ନାନାପ୍ରକାରର ଦୁଃଖ ଚାରିପଟରୁ ପରକୁ ପର ଆସି ତାହାର ଜୀବନାକାଶ ଏକାବେଳକେ ଆଚ୍ଛନ୍ନ କରିଦିଏ —ଏମାନଙ୍କ ଜୀବନରେ ଏବେ ସେହିପରି ହେଲା । ଗଦାଧର ଚନ୍ଦ୍ରମଣି ଦେବୀଙ୍କର ପରିଣତ ବୟସରେ ପ୍ରାପ୍ତ ଆଦରର କନିଷ୍ଠ ପୁତ୍ର-ସନ୍ତାନ ଥିଲେ । ତେଣୁ ଦୁଃଖରେ ଅଧୀରା ହୋଇ ସେ ପୁତ୍ରକୁ ଘରକୁ ଫେରାଇ ଆଣିଲେ ଏବଂ ତାଙ୍କର ଉଦାସୀନ, ଚଞ୍ଚଳଭାବ ଏବଂ 'ମା', 'ମା' ଡାକର କାତର କ୍ରନ୍ଦନରେ ନିତାନ୍ତ ବ୍ୟାକୁଳା ହୋଇ ପ୍ରତିକାର ପାଇଁ ନାନାପ୍ରକାରର ଚେଷ୍ଟା କରିବାକୁ ଲାଗିଲେ । ଔଷଧ ଇତ୍ୟାଦି ବ୍ୟବହାର ସହିତ ଶାନ୍ତି, ସ୍ୱସ୍ତ୍ୟୟନ, ଝଡ଼ାଫୁଙ୍କା ପ୍ରଭୃତି ନାନା ଦୈବ ପ୍ରକିୟାର ଅନୁଷ୍ଠାନ ହେବାକୁ ଲାଗିଲା । ଏହା ୧୮୫୮ ଖ୍ରୀଷ୍ଟାବ୍ଦର ଆଶ୍ୱିନ ବା କାର୍ତ୍ତିକ ମାସ ହେବ ।

### ଠାକୁର ଉପଦେବତାବିଷ୍ଟ ହୋଇଛନ୍ତି ବୋଲି ଆତ୍ମୀୟଗଣଙ୍କର ଧାରଣା :

ଗୃହକୁ ପ୍ରତ୍ୟାବର୍ତ୍ତନ କରି ଠାକୁର ପୂର୍ବପରି ପ୍ରକୃତିସ୍ଥ ରହିଥିଲେ ମଧ୍ୟ ବେଳେବେଳେ 'ମା', 'ମା' ଡାକି ବ୍ୟାକୁଳଭାବରେ କ୍ରନ୍ଦନ କରୁଥିଲେ ଏବଂ ବେଳେବେଳେ ଭାବାବେଶରେ ବାହ୍ୟଜ୍ଞାନଶୂନ୍ୟ ହୋଇ ପଡୁଥିଲେ । ତାଙ୍କର ଚାଲିଚଳନ ବ୍ୟବହାର ଆଦି କେତେବେଳେ ସାଧାରଣ ମନୁଷ୍ୟ ପରି ତ ପୁଣି କେତେବେଳେ ଏହାର ସମ୍ପୂର୍ଣ୍ଣ ବିପରୀତ ହେଉଥିଲା । ଏହି କାରଣରୁ ଏବେ ଏକଦିଗରେ ତାଙ୍କଠାରେ ସତ୍ୟ, ସରଳତା, ଦେବ ଓ ମାତୃଭକ୍ତି ଏବଂ ବନ୍ଧୁ-ପ୍ରେମର ଯେପରି ପ୍ରକାଶ ଦେଖାଯାଉଥିଲା, ଅନ୍ୟ ଦିଗରେ ସେହିପରି ସାଂସାରିକ ସମସ୍ତ ବିଷୟରେ ଉଦାସୀନତା, ସାଧାରଣ ଲୋକଙ୍କ ଅପରିଚିତ ବିଷୟ ଲାଭ ପାଇଁ ବ୍ୟାକୁଳତା ଏବଂ ଲଜ୍ଜା, ଘୃଣା ଓ ଭୟଶୂନ୍ୟ ହୃଦୟରେ ଅଭୀଷ୍ଟ ଲକ୍ଷ୍ୟରେ ପହଞ୍ଚିବାର ଉଦ୍ଦାମ ଚେଷ୍ଟା ସର୍ବଦା ପରିଲକ୍ଷିତ ହେଉଥିଲା । ଲୋକଙ୍କ ମନରେ

ଏଥିଯୋଗୁଁ ତାଙ୍କ ସମ୍ବନ୍ଧରେ ଏକ ଅଦ୍ଭୁତ ବିଶ୍ୱାସର ଉଦୟ ହୋଇଥିଲା । ସେମାନେ ଭାବିଥିଲେ, ସେ ଉପଦେବତାବିଷ୍ଟ ହୋଇଛନ୍ତି ।

### ଗୁଣିଆ ଆଣି ଚଣ୍ଡ ଛଡ଼ାଇବା :

ଠାକୁରଙ୍କର ମାତା ସରଳହୃଦୟା ଚନ୍ଦ୍ରାଦେବୀଙ୍କ ପ୍ରାଣରେ ପୂର୍ବୋକ୍ତ କଥା ଏହାପୂର୍ବରୁ ବେଳେବେଳେ ଉଦିତ ହୋଇଥିଲା । ଏବେ ଅନ୍ୟମାନେ ସେପରି ଆଲୋଚନା କରିବା ଶୁଣି ସେ ପୁତ୍ରର କଲ୍ୟାଣ ପାଇଁ ଗୁଣିଆ ଅଣାଇବାକୁ ମନସ୍ଥ କଲେ । ଠାକୁର କହୁଥିଲେ—''ଦିନେ ଜଣେ ଗୁଣିଆ ଆସି ଗୋଟିଏ ମନ୍ତ୍ରପୂତ ବଳିତା ପୋଡ଼ି ଶୁଙ୍ଘିବାକୁ ଦେଲା; କହିଲା, ଯଦି ଭୂତ ହୋଇଥିବ ତେବେ ପଳାଇଯିବ । କିନ୍ତୁ କିଛି ହେଲା ନାହିଁ ! ପରେ କେତେଜଣ ପ୍ରଧାନ ଗୁଣିଆ ଆସି ପୂଜାଦି କରି ଦିନେ ରାତ୍ରିକାଳରେ ଚଣ୍ଡ ଓହ୍ଲାଇଲେ । ପୂଜା ଓ ବଳି ଗ୍ରହଣ କରି ଚଣ୍ଡ ପ୍ରସନ୍ନ ହୋଇ ସେମାନଙ୍କୁ କହିଲେ, 'ତାଙ୍କୁ ଭୂତ ଲାଗି ନାହିଁ କିମ୍ବା ତାଙ୍କର କିଛି ରୋଗ ହୋଇ ନାହିଁ !'—ପରେ ସମସ୍ତଙ୍କ ସାମନାରେ ମୋତେ ସମ୍ବୋଧନ କରି କହିଲେ, 'ଗଦାଇ, ତୁମେ ସାଧୁ ହେବାକୁ ଚାହୁଁଛ, ତେବେ ଏତେ ଗୁଆ କାହିଁକି ଖାଉଛ ? ଅଧିକ ଗୁଆ ଖାଇଲେ କାମ ବୃଦ୍ଧି ହୁଏ !' ଏହାପୂର୍ବରୁ ସତରେ ମୁଁ ଗୁଆ ଖାଇବାକୁ ଭଲ ପାଉଥିଲି ଏବଂ ପ୍ରାୟ ସଦାବେଳେ ଚୋବାଉଥିଲି; ଚଣ୍ଡ କଥାରେ ସେଦିନଠାରୁ ଗୁଆ ଖାଇବା ତ୍ୟାଗକଲି !''

### ଠାକୁରଙ୍କର ପ୍ରକୃତିସ୍ଥ ହେବାର କାରଣ ସମ୍ବନ୍ଧରେ ତାଙ୍କର ଆତ୍ମୀୟବର୍ଗଙ୍କର କଥା :

ଠାକୁରଙ୍କର ବୟସ ସେତେବେଳେ ତେଇଶବର୍ଷ ପୂର୍ଣ୍ଣ ହେବାକୁ ଯାଉଥାଏ । କାମାରପୁକୁରରେ କେତେ ମାସ ରହିବା ପରେ ସେ ଅନେକାଂଶରେ ପ୍ରକୃତିସ୍ଥ ହେଲେ । ଶ୍ରୀଶ୍ରୀଜଗଦମ୍ବାଙ୍କର ଅଦ୍ଭୁତ ଦର୍ଶନାଦି ବାରମ୍ବାର ଲାଭ କରି ସେ ଏବେ ଶାନ୍ତ ହୋଇ ପାରିଥିଲେ । ଏହି ସମୟର ଅନେକ କଥା ଆମେ ତାଙ୍କର ଆତ୍ମୀୟବର୍ଗଙ୍କ ନିକଟରୁ ଶୁଣିଛୁ । ସେଥିପାଇଁ ଆମମାନଙ୍କ ମନରେ ଏପରି ଧାରଣା ହୋଇଅଛି । ଏହାପରେ ସେହି ସମସ୍ତ କଥା ଆମେ ପାଠକଙ୍କୁ କହିବୁ । କାମାରପୁକୁରର ପଶ୍ଚିମ ଓ ଉତ୍ତର-ପୂର୍ବ ଦୁଇ ପ୍ରାନ୍ତରେ ଅବସ୍ଥିତ 'ଭୂତିର ଖାଲ' ଏବଂ 'ବୁଧୁଇ ମୋଡ଼ଲ' ନାମକ ଦୁଇଟି ଶ୍ମଶାନରେ ଠାକୁର ଦିନ ଓ ରାତିର ଅନେକ ସମୟ ଏକାକୀ ଅତିବାହିତ କରୁଥିଲେ । ତାଙ୍କଠାରେ ଅଦୃଷ୍ଟପୂର୍ବ ଶକ୍ତିପ୍ରକାଶ ପାଇଥିବା କଥା ମଧ୍ୟ ତାଙ୍କର ଆତ୍ମୀୟମାନେ ଏହି ସମୟରେ ଜାଣି ପାରିଥିଲେ । ଏମାନଙ୍କ ନିକଟରୁ ଶୁଣିଛୁ, ଉପରୋକ୍ତ ଶ୍ମଶାନଦ୍ୱୟରେ ଥିବା ଶିବା ଏବଂ ଉପଦେବତାମାନଙ୍କୁ ସେ ଏସମୟରେ ବେଳେବେଳେ ବଳି ପ୍ରଦାନ କରୁଥିଲେ । ନୂଆହାଣ୍ଡିରେ ମିଷ୍ଟାନ୍ନ ଇତ୍ୟାଦି ଖାଦ୍ୟଦ୍ରବ୍ୟ ରଖି ଏହି ଦୁଇଟି ସ୍ଥାନକୁ

ଯାଇ ବଳି ନିବେଦନ କରିବା ମାତ୍ରେ ଶିବାସମୂହ ଚାରିଆଡୁ ଦଳ ଦଳ ହୋଇ ଆସି ତାହା ଖାଇ ଦେଉଥିଲେ ଏବଂ ଉପଦେବତାମାନଙ୍କୁ ନିବେଦିତ ଆହାର୍ଯ୍ୟପୂର୍ଣ୍ଣ ହାଣ୍ଡିଗୁଡ଼ିକ ବାୟୁଦ୍ୱାରା ଊର୍ଦ୍ଧ୍ୱକୁ ଉଠି ଶୂନ୍ୟରେ ଲୀନ ହୋଇ ଯାଉଥିଲା ! ସେହି ସକଳ ଉପଦେବତାମାନଙ୍କୁ ସେ ଅନେକ ସମୟରେ ଦେଖିବାକୁ ପାଉଥିଲେ । ରାତି ଦୁଇ ପ୍ରହର ଗତ ହୋଇଗଲେ ମଧ୍ୟ କନିଷ୍ଠଙ୍କୁ ଦିନେ ଦିନେ ଗୃହକୁ ଫେରି ନ ଥିବା ଦେଖି ଠାକୁରଙ୍କ ମଧ୍ୟମାଗ୍ରଜ ଶ୍ରୀଯୁକ୍ତ ରାମେଶ୍ୱର ଶ୍ମଶାନ ନିକଟକୁ ଯାଇ ତାଙ୍କ ନାମ ଧରି ଉଚ୍ଚସ୍ୱରରେ ଯେତେବେଳେ ଡାକୁଥିଲେ ଠାକୁର ତାଙ୍କୁ ସତର୍କ କରିବା ପାଇଁ ଉଚ୍ଚକଣ୍ଠରେ କହୁଥିଲେ, "ଯାଉଛି ଭାଇ; ତୁମେ ଏଆଡ଼କୁ ଆସ ନାହିଁ, ଆସିଲେ ଏମାନେ (ଉପଦେବତାମାନେ) ତୁମର ଅପକାର କରିବେ ।" ଭୂତିର ଖାଲ ପାର୍ଶ୍ୱସ୍ଥ ଶ୍ମଶାନରେ ସେ ଏହି ସମୟରେ ଏକ ବିଲ୍ୱବୃକ୍ଷ ସ୍ୱହସ୍ତରେ ରୋପଣ କରିଥିଲେ ଏବଂ ଶ୍ମଶାନ ମଧ୍ୟରେ ଯେଉଁ ପୁରାତନ ଅଶ୍ୱତ୍ଥବୃକ୍ଷ ଥିଲା, ତା ତଳେ ବସି ଅନେକ ସମୟ ଜପ-ଧ୍ୟାନ କରୁଥିଲେ । ଠାକୁରଙ୍କର ଆତ୍ମୀୟବର୍ଗଙ୍କଠାରୁ ଏସବୁ କଥା ଶୁଣି ବୁଝାଯାଏ, ଜଗଦମ୍ବାଙ୍କର ଦର୍ଶନଲାଳସାରେ ସେ ଏହାପୂର୍ବରୁ ଯେଉଁ ବିଷମ ଅଭାବ ପ୍ରାଣରେ ଅନୁଭବ କରିଥିଲେ, ତାହା କେତେଗୁଡ଼ିଏ ଅପୂର୍ବ ଦର୍ଶନ ଓ ଉପଲବ୍ଧି ଦ୍ୱାରା ଏହି ସମୟରେ ପ୍ରଶମିତ ହୋଇଥିଲା । ତାଙ୍କର ଏହି ସମୟର ଜୀବନ ଆଲୋଚନା କରି ମନେ ହୁଏ, ଶ୍ରୀଶ୍ରୀଜଗଦମ୍ବାଙ୍କର ଖଡ୍‌ଗ-ମୁଣ୍ଡଧାରିଣୀ, ବରାଭୟକରା, ସାଧକମାନଙ୍କ ପ୍ରତି ଅନୁଗ୍ରହକାରିଣୀ ଚିନ୍ମୟୀ ମୂର୍ତ୍ତିର ଦର୍ଶନ ସେ ଏହି କାଳରେ ପ୍ରାୟ ସର୍ବଦା ଲାଭ କରୁଥିଲେ ଏବଂ ତାଙ୍କୁ ଯେତେବେଳେ ଯେଉଁ ପ୍ରଶ୍ନ କରୁଥିଲେ, ତାହାର ଉତ୍ତର ପାଇ ସେହି ଅନୁସାରେ ନିଜ ଜୀବନ ଚାଳିତ କରୁଥିଲେ । ମନେ ହୁଏ, ଏହି ସମୟରୁ ତାଙ୍କର ପ୍ରାଣରେ ଦୃଢ଼ ଧାରଣା ହୋଇଥିଲା ଯେ, ଶ୍ରୀଶ୍ରୀଜଗନ୍ମାତାଙ୍କର ବାଧାଶୂନ୍ୟ ନିରନ୍ତର ଦର୍ଶନ ତାଙ୍କ ଭାଗ୍ୟରେ ଅଚିରେ ଉପସ୍ଥିତ ହେବ ।

### ଏହି ସମୟରେ ଠାକୁରଙ୍କର ଯୋଗବିଭୂତିର କଥା :

ଭବିଷ୍ୟତ ଦର୍ଶନରୂପ ବିଭୂତିର ପ୍ରକାଶ ମଧ୍ୟ ଏହି ସମୟରେ ଠାକୁରଙ୍କର ଜୀବନରେ ଦେଖିବାକୁ ମିଳେ । ହୃଦୟରାମ ଏବଂ କାମାରପୁକୁର ଓ ଜୟରାମବାଟୀର ଅନେକେ ଏବିଷୟରେ ସାକ୍ଷ୍ୟ ପ୍ରଦାନ କରିଅଛନ୍ତି । ଠାକୁରଙ୍କ ଶ୍ରୀମୁଖରୁ ଏବିଷୟରେ ଇଙ୍ଗିତ ଆମେ ବେଳେବେଳେ ପାଇଛୁ । ନିମ୍ନଲିଖିତ ଘଟଣାବଳୀରୁ ପାଠକ ଏହି କଥା ବୁଝିପାରିବେ ।

## ଠାକୁରଙ୍କୁ ପ୍ରକୃତିସ୍ଥ ଦେଖି ଆତ୍ମୀୟବର୍ଗଙ୍କର ତାଙ୍କୁ ବିବାହଦେବାକୁ ସଂକଳ୍ପ :

ଠାକୁରଙ୍କର ବ୍ୟବହାର ଓ କାର୍ଯ୍ୟକଳାପ ଦେଖି ତାଙ୍କର ମାତା ପ୍ରଭୃତିଙ୍କର ଧାରଣା ହୋଇଥିଲା, ଦୈବକୃପାରେ ତାଙ୍କର ବାୟୁରୋଗର ଏବେ ଅନେକ ଶାନ୍ତି ହୋଇଅଛି । କାରଣ, ସେମାନେ ଦେଖୁଥିଲେ, ଏବେ ସେ ପୂର୍ବପରି ବ୍ୟାକୁଳ ଭାବରେ କ୍ରନ୍ଦନ କରୁ ନାହାନ୍ତି, ଆହାରାଦି ଯଥାସମୟରେ କରୁଛନ୍ତି ଏବଂ ପ୍ରାୟ ସବୁ ବିଷୟରେ ସାଧାରଣ ମଣିଷଙ୍କ ପରି ଆଚରଣ କରୁଛନ୍ତି । ସର୍ବଦା ଠାକୁର –ଦେବତାଙ୍କୁ ନେଇ ରହିବା, ଶ୍ମଶାନରେ ବିଚରଣ କରିବା, ପିନ୍ଧିଥିବା ବସନ ତ୍ୟାଗପୂର୍ବକ ବେଳେବେଳେ ଧ୍ୟାନ ପୂଜାଦି କରିବା ଓ ଏବିଷୟରେ କାହାର ନିଷେଧ ନ ମାନିବା ଇତ୍ୟାଦି କେତେକ ବ୍ୟବହାର ଅନନ୍ୟସାଧାରଣ ହେଲେ ମଧ୍ୟ, ସେ ଚିରକାଳ ଏସବୁ କରୁଥିଲେ ବୋଲି ସେସବୁରେ ସେମାନେ ତାଙ୍କର ବାୟୁରୋଗର କିଛି କାରଣ ଦେଖୁ ନ ଥିଲେ । କିନ୍ତୁ ସାଂସାରିକ ସମସ୍ତ ବିଷୟରେ ତାଙ୍କର ପୂର୍ଣ୍ଣମାତ୍ରାରେ ଉଦାସୀନତା ଏବଂ ନିରନ୍ତର ଉନ୍ମନାଭାବ ଦୂର କରିବା ପାଇଁ ସେମାନେ ଏବେ ମଧ୍ୟ ବିଶେଷ ଚିନ୍ତିତ ଥିଲେ । ସାଂସାରିକ ବିଷୟରେ ଦୃଷ୍ଟି ଆକୃଷ୍ଟ ହୋଇ ପୂର୍ବୋକ୍ତ ଭାବଟି ଯେତେଦିନ ପ୍ରଶମିତ ନ ହୋଇଛି, ସେତେଦିନ ପର୍ଯ୍ୟନ୍ତ ବାୟୁରୋଗରେ ପୁନରାକ୍ରାନ୍ତ ହେବାର ତାଙ୍କର ବିଶେଷ ସମ୍ଭାବନା ଅଛି—ଏହି ବିଷୟ ସେମାନଙ୍କ ମନରେ ପୁନଃପୁନଃ ଉଦିତ ହେଉଥିଲା । ଏଥିରୁ ତାଙ୍କୁ ରକ୍ଷା କରିବା ପାଇଁ ଠାକୁରଙ୍କର ସ୍ନେହମୟୀ ଜନନୀ ଓ ଅଗ୍ରଜ ଏବେ ଏକ ଉପଯୁକ୍ତ ପାତ୍ରୀ ଦେଖି ତାଙ୍କୁ ବିବାହ ଦେବାପାଇଁ ସ୍ଥିର କଲେ । କାରଣ ସଦ୍‌ବଂଶୀୟା ସୁଶୀଳା ସ୍ତ୍ରୀ ପ୍ରତି ଭଲ ପାଇବା ଆରମ୍ଭ ହେଲେ ତାଙ୍କର ମନ ନାନା ବିଷୟରେ ସଞ୍ଚରଣ ନ କରି ନିଜର ସାଂସାରିକ ଅବସ୍ଥାର ଉନ୍ନତିସାଧନରେ ହିଁ ରତ ରହିବ ।

### ଗଦାଧରଙ୍କର ବିବାହରେ ସମ୍ମତି ପ୍ରଦାନର କଥା :

ଗଦାଧର ଜାଣି ପାରିଲେ କାଳେ ଆପତ୍ତି କରିବେ, ଏହା ଭାବି ମା’ ଓ ପୁଅଙ୍କ ପୂର୍ବୋକ୍ତ ପରାମର୍ଶ ଅନ୍ତରାଳରେ ହୋଇଥିଲା । ଚତୁର ଗଦାଧରଙ୍କର କିନ୍ତୁ ଏକଥା ଜାଣିବାରେ ଅଧିକ ବିଳମ୍ବ ହୋଇ ନ ଥିଲା । ଏକଥା ଜାଣିପାରି ମଧ୍ୟ ସେ ଏବିଷୟରେ କୌଣସି ଆପତ୍ତି କରି ନ ଥିଲେ । ଘରେ କୌଣସି ଗୋଟିଏ ଅଭିନବ ଘଟଣା ହେଲେ ବାଳକବାଳିକାମାନେ ଯେପରି ଆନନ୍ଦ କରିଥାଆନ୍ତି ତଦ୍ରୂପ ଆଚରଣ କରିଥିଲେ । ଶ୍ରୀଶ୍ରୀଜଗନ୍ମାତାଙ୍କ ନିକଟରେ ନିବେଦନ କରି ସେହି ବିଷୟରେ କିଂକର୍ତ୍ତବ୍ୟ ଜାଣି କ’ଣ ସେ ଏପରି ଆନନ୍ଦପ୍ରକାଶ କରିଥିଲେ, କିମ୍ବା ବାଳକ ପରି ଭବିଷ୍ୟତଦୃଷ୍ଟି ଓ ଚିନ୍ତାରାହିତ୍ୟ ହିଁ ତାଙ୍କର ଏପରି ବ୍ୟବହାରର

କାରଣ ? ପାଠକ ଦେଖିବାକୁ ପାଇବେ, ଆମେ ଏବିଷୟରେ ଅନ୍ୟତ୍ର ଯଥାସାଧ ଆଲୋଚନା କରିଅଛୁ ।[୧]

### ବିବାହ ନିମିତ୍ତ ଠାକୁରଙ୍କର ପାତ୍ରୀ ନିର୍ବାଚନ :

ଯାହାହେଉ, ଆଖପାଖ ଗ୍ରାମମାନଙ୍କୁ ଲୋକ ପଠାଗଲା, କିନ୍ତୁ ଉପଯୁକ୍ତ ପାତ୍ରୀର ସନ୍ଧାନ ମିଳିଲା ନାହିଁ । ଯେଉଁ କେତୋଟି ମିଳିଲା, ସେମାନଙ୍କର ପିତାମାତା ଅତ୍ୟଧିକ ପଣ ଦାବୀ କରିବାରୁ ରାମେଶ୍ୱର ଏସବୁ ସ୍ଥାନରେ ଭ୍ରାତାର ବିବାହ ଦେବାକୁ ସାହସ କଲେ ନାହିଁ । ସେହିପରି ଅନେକ ଖୋଜା ଖୋଜିରେ ମଧ ପାତ୍ରୀ ମିଳୁ ନାହାନ୍ତି ଦେଖି ଚନ୍ଦ୍ରାଦେବୀ ଓ ରାମେଶ୍ୱର ଯେତେବେଳେ ଅତ୍ୟନ୍ତ ଚିନ୍ତାମଗ୍ନ, ସେତେବେଳେ ଭାବାବିଷ୍ଟ ହୋଇ ଗଦାଧର ଦିନେ ତାଙ୍କୁ କହିଲେ—"ଅନ୍ୟତ୍ର ଅନୁସନ୍ଧାନ ବୃଥା, ଜୟରାମବାଟୀ ଗ୍ରାମର ଶ୍ରୀରାମଚନ୍ଦ୍ର ମୁଖୋପାଧ୍ୟାୟଙ୍କର ଘରେ ବିବାହର ପାତ୍ରୀ କୁଟାବନ୍ଧା ହୋଇ ରହିଅଛି !"[୨]

### ବିବାହ :

ସେହିକଥାରେ ବିଶ୍ୱାସ ନ କଲେ ମଧ ଠାକୁରଙ୍କର ମା' ଏବଂ ଭାଇ ସେହି ସ୍ଥାନକୁ ଅନୁସନ୍ଧାନ କରିବାକୁ ଲୋକ ପଠାଇଲେ । ଲୋକ ଯାଇ ସମ୍ବାଦ ଆଣିଲା, ଅନ୍ୟ ସମସ୍ତ ବିଷୟରେ ଯାହା ହେଉ ପାତ୍ରୀଟି କିନ୍ତୁ ନିତାନ୍ତ ବାଳିକା, ବୟସ ମାତ୍ର ପାଞ୍ଚବର୍ଷ ଉତ୍ତୀର୍ଣ୍ଣ ହୋଇଛି । ଏପରି ଅପ୍ରତ୍ୟାଶିତ ଭାବରେ ସନ୍ଧାନ ମିଳିଥିବାରୁ ଚନ୍ଦ୍ରାଦେବୀ ଏହିଠାରେ ହିଁ ପୁତ୍ରକୁ ବିବାହ ଦେବାକୁ ସ୍ୱୀକୃତା ହେଲେ ଏବଂ ଅଳ୍ପଦିନ ମଧରେ ସମସ୍ତ ବିଷୟର କଥାବାର୍ତ୍ତା ସ୍ଥିର ହୋଇଗଲା । ଏହାପରେ ଶୁଭ ଦିନରେ ଶୁଭ ମୁହୂର୍ତ୍ତରେ ଶ୍ରୀଯୁକ୍ତ ରାମେଶ୍ୱର କାମାରପୁକୁରଠାରୁ ଦୁଇକୋଶ (ପ୍ରାୟ ୭ କି.ମି.) ପଶ୍ଚିମରେ ଅବସ୍ଥିତ ଜୟରାମବାଟୀ ଗ୍ରାମକୁ ଭାଇଙ୍କୁ ନେଇ ଶ୍ରୀଯୁକ୍ତ ରାମଚନ୍ଦ୍ର ମୁଖୋପାଧ୍ୟାୟଙ୍କର ପଞ୍ଚମବର୍ଷୀୟା ଏକମାତ୍ର କନ୍ୟା ସହିତ ଶୁଭ-ପରିଣୟ-କ୍ରିୟା ସମ୍ପନ୍ନ କରି ଆସିଲେ । ବିବାହରେ ତିନିଶତ ଟଙ୍କା ପଣ ଲାଗିଥିଲା । ସେତେବେଳେ ୧୮୫୯ ଖ୍ରୀଷ୍ଟାବ୍ଦର ମଇ ମାସର ଶେଷ ଭାଗ ଏବଂ ଠାକୁର ଚବିଶ ବର୍ଷରେ ପଦାର୍ପଣ କରିଥାନ୍ତି ।

### ବିବାହ ପରେ ଶ୍ରୀମତୀ ଚନ୍ଦ୍ରମଣି ଏବଂ ଠାକୁରଙ୍କର ଆଚରଣ :

ଗଦାଧରଙ୍କୁ ବିବାହ କରାଇ ଶ୍ରୀମତୀ ଚନ୍ଦ୍ରମଣି ଅନେକ ନିଶ୍ଚିନ୍ତ ହୋଇଥିଲେ । ବିବାହ ବିଷୟରେ ତାଙ୍କର ଆଦେଶ ପୁତ୍ରକୁ ପାଳନ କରିଥିବା ଦେଖି ସେ ଭାବିଥିଲେ, ଦେବତା ଏତେଦିନରେ ମୁହଁକୁ ଚାହିଁଲେ । ଉନ୍ମନା ପୁତ୍ର ଘରକୁ ଫେରିଲା, ସଦ୍‌ବଂଶୀୟା ପାତ୍ରୀ ଜୁଟିଲା, ଅର୍ଥର ଅନଟନ ଅଚିନ୍ତନୀୟଭାବରେ

୧. ଗୁରୁଭାବ—ପୂର୍ବାର୍ଦ୍ଧ, ୪ର୍ଥ ଅଧ୍ୟାୟ ।
୨. ଗୁରୁଭାବ—ପୂର୍ବାର୍ଦ୍ଧ, ୪ର୍ଥ ଅଧ୍ୟାୟ ।

ପୂର୍ଣ୍ଣ ହେଲା; ତେଣୁ ଦୈବ ଅନୁକୂଳ ନୁହଁନ୍ତି, ଏହା କିପରି କୁହାଯିବ ? ସୁତରାଂ ସରଳହୃଦୟା ଧର୍ମପରାୟଣା ଚନ୍ଦ୍ରାଦେବୀ ଯେ ଏବେ କିଞ୍ଚିତ୍ ସୁଖୀ ହୋଇଥିଲେ, ଏକଥା ଆମେ କହିପାରୁ । ମାତ୍ର ବୈବାହିକଙ୍କ ମନସ୍ତୁଷ୍ଟି ଓ ବାହାର ସମ୍ଭ୍ରମରକ୍ଷା ନିମିତ୍ତ ଜମିଦାର ବନ୍ଧୁ ଲାହାବାବୁଙ୍କ ଘରୁ ମାଗି ଆଣିଥିବା ଯେଉଁ ଗହଣାଗୁଡ଼ିକ ଦେଇ ବିବାହ ଦିନରେ ବୋହୂକୁ ସଜାଇ ଆଣିଥିଲେ, ସେଗୁଡ଼ିକ ତାଙ୍କୁ ଫେରାଇ ଦେବାର ସମୟ ଯେତେବେଳେ ଆସିଲା, ସେତେବେଳେ ସେ ପୁଣି ନିଜ ସଂସାରର ଦାରିଦ୍ର୍ୟଚିନ୍ତାରେ ଅଭିଭୂତା ହୋଇଥିଲେ, ଏହା ମଧ୍ୟ ସ୍ପଷ୍ଟ ବୁଝି ହୁଏ । ନବବଧୂକୁ ସେ ବିବାହ ଦିନଠାରୁ ନିଜର କରିନେଇଥିଲେ । ବାଳିକା ଅଙ୍ଗରୁ ଅଳଙ୍କାରଗୁଡ଼ିକ ସେ କିପରି ଖୋଲିନେବେ, ଏହି ଚିନ୍ତାରେ ତାଙ୍କର ଚକ୍ଷୁ ଲୋତକପୂର୍ଣ୍ଣ ହୋଇଥିଲା । ଅନ୍ତରର କଥା ସେ କାହାକୁ ନ କହିଲେ ମଧ୍ୟ ଗଦାଧରଙ୍କର ଏକଥା ବୁଝିବାରେ ବିଳମ୍ବ ହୋଇ ନ ଥିଲା । ସେ ମାତାଙ୍କୁ ଶାନ୍ତ କରି ନିଦ୍ରିତା ବଧୂର ଅଙ୍ଗରୁ ଗହଣାଗୁଡ଼ିକ ଏପରି କୌଶଳପୂର୍ବକ କାଢ଼ି ଆଣିଥିଲେ ଯେ, ବାଳିକା ତାହା କିଛି ଜାଣିପାରିଲା ନାହିଁ । ବୁଦ୍ଧିମତୀ ବାଳିକା କିନ୍ତୁ ନିଦ୍ରାଭଙ୍ଗ ହେଲା ପରେ କହିଥିଲା, ''ମୋ ଦେହରେ ଯେଉଁ ଗହଣାଗୁଡ଼ିକ ଥିଲା, ସେସବୁ କୁଆଡ଼େ ଗଲା ?'' ଏକଥାରେ ଚନ୍ଦ୍ରାଦେବୀ ସଜଳନୟନରେ ତାକୁ କୋଳକୁ ନେଇ ସାନ୍ତ୍ୱନା ପ୍ରଦାନ କରି କହିଥିଲେ, ''ମା' ! ଗଦାଧର ତୁମ ପାଇଁ ଏହା ଅପେକ୍ଷା ଆହୁରି ଭଲ ଭଲ ଗହଣା ପରେ ଗଢ଼ାଇ ଦେବ !'' ଏଠାରେ କିନ୍ତୁ ଏକଥାର ପରିସମାପ୍ତି ହେଲା ନାହିଁ । କନ୍ୟାର ଦାଦା ତାକୁ ସେଦିନ ଦେଖିବାକୁ ଆସି ଏବିଷୟ ଜାଣିଲେ ଏବଂ ଅସନ୍ତୋଷ ପ୍ରକାଶପୂର୍ବକ ସେଦିନ ହିଁ ତାକୁ ପିତ୍ରାଳୟ ନେଇଗଲେ । ମାତାଙ୍କର ମନରେ ଏହି ଘଟଣାରେ ବିଶେଷ ବେଦନା ହେବା ଦେଖି ଗଦାଧର ତାଙ୍କର ଏଦୁଃଖ ଦୂର କରିବା ପାଇଁ ପରିହାସ ଛଳରେ କହିଥିଲେ, ''ସେମାନେ ଏବେ ଯାହା କହନ୍ତୁ ବା କରନ୍ତୁ ନା କାହିଁକି, ବିବାହ ତ ଆଉ ଫେରିବ ନାହିଁ !''

### ଠାକୁରଙ୍କର କଲିକତାକୁ ପୁନରାଗମନ :

ବିବାହ ପରେ ଠାକୁର କାମାରପୁକୁରରେ ପ୍ରାୟ ଏକବର୍ଷ ସାତମାସ କାଳ ରହିଥିଲେ । ବୋଧହୁଏ, ଶରୀର ସମ୍ପୂର୍ଣ୍ଣ ସୁସ୍ଥ ନ ହୋଇ କଲିକତା ଫେରିଲେ ପୁଣି ତାଙ୍କର ବାୟୁରୋଗ ହୋଇପାରେ, ଏହା ଆଶଙ୍କା କରି ଶ୍ରୀମତୀ ଚନ୍ଦ୍ରାଦେବୀ ତାଙ୍କୁ ସହସା ଯିବାକୁ ଦେଇ ନ ଥିଲେ । ଯାହାହେଉ, ୧୮୬୦ ଖ୍ରୀଷ୍ଟାବ୍ଦ ଡିସେମ୍ବର ମାସରେ ବଧୂ ସପ୍ତମ ବର୍ଷରେ ପଦାର୍ପଣ କରିବାରୁ କୁଳପ୍ରଥାନୁସାରେ ତାଙ୍କୁ କିଛିଦିନ ପାଇଁ ଶ୍ୱଶୁରାଳୟକୁ ଗମନପୂର୍ବକ ଶୁଭଦିନ ଦେଖି ପତ୍ନୀଙ୍କ ସହିତ ଏକତ୍ର କାମାରପୁକୁରକୁ ଆଗମନ କରିବାକୁ ହୋଇଥିଲା । ଏପରି 'ଯୁଗଳଯାତ୍ରା'ରେ ଆସିବାର ଅନତିକାଳପରେ ସେ କଲିକତା ଫେରିବାକୁ ସଂକଳ୍ପ କରିଥିଲେ ।

ମା' ଓ ଭାଇ ତାଙ୍କୁ କାମାରପୁକୁରରେ ଆଉ କିଛି ଦିନ ରହିବାକୁ କହିଲେ ମଧ୍ୟ ସଂସାରର ଅଭାବ ଅନଟନର ବିଷୟ ତାଙ୍କର ଅବିଦିତ ନ ଥିଲା । ସେହି କାରଣରୁ ସେମାନଙ୍କ କଥା ନ ଶୁଣି ସେ ଦକ୍ଷିଣେଶ୍ୱରକୁ ଫେରି ପୂର୍ବପରି ଶ୍ରୀଶ୍ରୀଜଗଦମ୍ବାଙ୍କର ସେବା କାର୍ଯ୍ୟରେ ବ୍ରତୀ ହୋଇଥିଲେ ।

## ଠାକୁରଙ୍କର ଦ୍ୱିତୀୟଥର ଦିବ୍ୟୋନ୍ମାଦ ଅବସ୍ଥା :

କଲିକତା ଫେରି ସେ କିଛିଦିନ ପୂଜା କରିଛନ୍ତି କି ନାହିଁ ତାଙ୍କର ମନ ଉକ୍ତ କାର୍ଯ୍ୟରେ ଏତେ ତନ୍ମୟ ହୋଇଗଲା ଯେ, ମା', ଭାଇ, ସ୍ତ୍ରୀ, ସଂସାର–ଅନଟନ ପ୍ରଭୃତି କାମାରପୁକୁରର ସମସ୍ତ କଥା ତାଙ୍କ ମନର ଏକ ନିଭୃତ କୋଣରେ ଚାପି ହୋଇଗଲା ଏବଂ ଶ୍ରୀଶ୍ରୀଜଗନ୍ମାତାଙ୍କୁ ସବୁବେଳେ ସମସ୍ତଙ୍କ ମଧ୍ୟରେ କିପରି ଦେଖିବାକୁ ପାଇବେ—ଏହି ବିଷୟ ହିଁ ତାଙ୍କର ସମସ୍ତ ମନ ଅଧିକାର କରି ରହିଲା । ଦିବାରାତ୍ର ସ୍ମରଣ, ମନନ, ଜପ, ଧ୍ୟାନ ଇତ୍ୟାଦିରେ ତାଙ୍କର ବକ୍ଷସ୍ଥଳ ପୁନରାୟ ସର୍ବକ୍ଷଣ ଆରକ୍ତିମ ଭାବ ଧାରଣ କଲା; ସଂସାର ଏବଂ ସାଂସାରିକ ବିଷୟର ପ୍ରସଙ୍ଗ ବିଷବତ୍ ବୋଧ ହେବାକୁ ଲାଗିଲା; ବିଷମ ଗାତ୍ରଦାହ ପୁନରାୟ ଆରମ୍ଭ ହେଲା ଏବଂ ନୟନରୁ ନିଦ୍ରା ଯେପରି କେଉଁଆଡ଼େ ଅପସୃତ ହେଲା ! ତେବେ ସେପରି ଶାରୀରିକ ଓ ମାନସିକ ଅବସ୍ଥା ଏହାପୂର୍ବରୁ ଥରେ ଅନୁଭବ କରିଥିବାରୁ ସେ ଏଥିରେ ପୂର୍ବପରି ଏକାବେଳକେ ଆତ୍ମହରା ହୋଇପଡ଼ିଲେ ନାହିଁ ।

ହୃଦୟଙ୍କଠାରୁ ଶୁଣିଅଛୁ, ମଥୁରବାବୁଙ୍କ ନିର୍ଦ୍ଦେଶରେ କଲିକତାର ସୁପ୍ରସିଦ୍ଧ କବିରାଜ ଗଙ୍ଗାପ୍ରସାଦ ଠାକୁରଙ୍କର ବାୟୁପ୍ରକୋପ, ଅନିଦ୍ରା ଓ ଗାତ୍ରଦାହ ଆଦି ରୋଗର ଉପଶମ ପାଇଁ ଏସମୟରେ ନାନାପ୍ରକାରର ଔଷଧ ଓ ତୈଳ ବ୍ୟବହାରର ବ୍ୟବସ୍ଥା କରିଥିଲେ । ଚିକିତ୍ସାରେ ସଙ୍ଗେ ସଙ୍ଗେ ଫଳ ନ ମିଳିଲେ ମଧ୍ୟ, ହୃଦୟ ନିରାଶ ନ ହୋଇ ମଝିରେ ମଝିରେ ଠାକୁରଙ୍କୁ ସାଙ୍ଗରେ ନେଇ କବିରାଜଙ୍କ କଲିକତାସ୍ଥ ଭବନକୁ ଯାଉଥିଲେ । ଠାକୁର କହୁଥିଲେ, "ଦିନେ ଏପ୍ରକାରର ଗଙ୍ଗାପ୍ରସାଦଙ୍କ ଘରେ ପହଞ୍ଚିବାରୁ ଚିକିତ୍ସାର ଆଶାନୁରୂପ ଫଳ ହେଉ ନାହିଁ ଦେଖି ସେ ଚିନ୍ତିତ ହେଲେ ଏବଂ ବିଶେଷରୂପରେ ପରୀକ୍ଷାପୂର୍ବକ ନୂତନ ବ୍ୟବସ୍ଥା କରିବାକୁ ଲାଗିଲେ । ପୂର୍ବବଙ୍ଗର ଅନ୍ୟ ଜଣେ ବୈଦ୍ୟ ମଧ୍ୟ ସେତେବେଳେ ସେଠାରେ ଉପସ୍ଥିତ ଥିଲେ । ରୋଗର ଲକ୍ଷଣଗୁଡ଼ିକ ଶୁଣି ସେ କହିଥିଲେ, 'ଏହାଙ୍କର ଦିବ୍ୟୋନ୍ମାଦ ଅବସ୍ଥା ବୋଲି ବୋଧ ହେଉଅଛି; ଏହା ଯୋଗଜ ବ୍ୟାଧି; ଔଷଧରେ ଭଲ ହେବ ନାହିଁ ।'[୧] ସେହି ବୈଦ୍ୟ ହିଁ ବ୍ୟାଧି ସଦୃଶ ପ୍ରତୀୟମାନ ମୋର ଶାରୀରିକ ବିକାରସମୂହର ଯଥାର୍ଥ କାରଣ ପ୍ରଥମେ

୧. କେହି କେହି କହନ୍ତି, ୰ଗଙ୍ଗାପ୍ରସାଦଙ୍କର ଭାଇ ଶ୍ରୀଯୁକ୍ତ ଦୁର୍ଗାପ୍ରସାଦ ହିଁ ଠାକୁରଙ୍କୁ ଏହି କଥା କହିଥିଲେ ।

ନିର୍ଦ୍ଦେଶ କରିବାକୁ ସମର୍ଥ ହୋଇଥିଲେ । କିନ୍ତୁ କେହି ସେତେବେଳେ ତାଙ୍କ କଥାକୁ ଗୁରୁତ୍ୱ ଦେଇ ନ ଥିଲେ ।'' ସେହିପରି ମଥୁରବାବୁପ୍ରମୁଖ ଠାକୁରଙ୍କର ହିତୈଷୀ ବନ୍ଧୁବର୍ଗ ତାଙ୍କର ଅସାଧାରଣ ବ୍ୟାଧି ନିମିତ୍ତ ଚିନ୍ତାନ୍ୱିତ ହୋଇ ନାନାପ୍ରକାରର ଚିକିତ୍ସା କରାଇଥିଲେ । ତାସତ୍ତ୍ୱେ ରୋଗର କ୍ରମଶଃ ବୃଦ୍ଧି ବ୍ୟତୀତ ଉପଶମ ହୋଇ ନ ଥିଲା ।

**ଚନ୍ଦ୍ରାଦେବୀଙ୍କର ଅଧିଆ ପଡ଼ିବା :**

ଠାକୁରଙ୍କର ବ୍ୟାଧିର ସମ୍ବାଦ କାମାରପୁକୁରରେ ପହଞ୍ଚିଲା । ଶ୍ରୀମତୀ ଚନ୍ଦ୍ରାଦେବୀ କୌଣସି ଉପାୟ ନ ଦେଖି ପୁତ୍ରର କଲ୍ୟାଣକାମନାରେ ମହାଦେବଙ୍କ ନିକଟରେ ଅଧିଆ ପଡ଼ିବାର ସଂକଳ୍ପ କଲେ ଏବଂ କାମାରପୁକୁରର 'ବୁଢ଼ା ଶିବ'ଙ୍କୁ ଜାଗ୍ରତ ଦେବତା ଜାଣି ତାଙ୍କର ମନ୍ଦିର ପ୍ରାଙ୍ଗଣରେ ପ୍ରାୟୋପବେଶନ କରି ପଡ଼ି ରହିଲେ । 'ମୁକୁନ୍ଦପୁରର ଶିବଙ୍କ ନିକଟରେ ଅଧିଆଦେଲେ ତାଙ୍କର ଅଭିଳାଷ ପୂର୍ଣ୍ଣହେବ' — ସେ ଏଠାରେ ଏପରି ପ୍ରତ୍ୟାଦେଶ ଲାଭ କରିବାରୁ ମୁକୁନ୍ଦପୁରକୁ ଯାଇ ପୁନରାୟ ପ୍ରାୟୋପବେଶନ ଅନୁଷ୍ଠାନ କଲେ । ମୁକୁନ୍ଦପୁରର ଶିବଙ୍କ ନିକଟରେ ଏହାପୂର୍ବରୁ କାମନା ପୂରଣ ନିମିତ୍ତ କେହି ଅଧିଆ ଦେଉ ନ ଥିଲେ । ପ୍ରତ୍ୟାଦିଷ୍ଟା ବୃଦ୍ଧା ଏକଥା ଜାଣି ମଧ୍ୟ ମନରେ କୌଣସି ଦ୍ୱିଧା କଲେ ନାହିଁ । ଦୁଇ ତିନି ଦିନ ପରେ ସେ ସ୍ୱପ୍ନରେ ଦେଖିଲେ, ଜଟାଜୁଟସୁଶୋଭିତ ବ୍ୟାଘ୍ରଚର୍ମପରିହିତ ରଜତଦଳିତକାନ୍ତି ମହାଦେବ ସମ୍ମୁଖରେ ଆବିର୍ଭୂତ ହୋଇ ତାଙ୍କୁ ସାନ୍ତ୍ୱନା ଦାନପୂର୍ବକ କହୁଛନ୍ତି — 'ଭୟ ନାହିଁ, ତୁମର ପୁତ୍ର ପାଗଳ ହୋଇ ନାହିଁ, ଐଶ୍ୱରିକ ଆବେଶରେ ତାହାର ଏପରି ଅବସ୍ଥା ହୋଇଅଛି !' ଧର୍ମପରାୟଣା ବୃଦ୍ଧା ସେହି ପ୍ରକାରର ଦେବାଦେଶଲାଭରେ ଆଶ୍ୱସ୍ତା ହୋଇ ଭକ୍ତିପୂତଚିତ୍ତରେ ଶ୍ରୀଶ୍ରୀମହାଦେବଙ୍କର ପୂଜାଦି କରି ଗୃହକୁ ଫେରି ଆସିଲେ ଏବଂ ପୁତ୍ରର ମାନସିକ ବିକାରର ଶାନ୍ତି ନିମିତ୍ତ କୁଳଦେବତା ରଘୁବୀର ଓ ଶୀତଳାମାତାଙ୍କର ଐକାନ୍ତିକ ମନରେ ସେବା କରିବାକୁ ଲାଗିଲେ । ଶୁଣାଯାଇଛି, ମୁକୁନ୍ଦପୁରର ଶିବଙ୍କ ନିକଟରେ ତଦବଧି ଅନେକ ନରନାରୀ ପ୍ରତିବର୍ଷ ଅଧିଆ ଦେଇ ସଫଳକାମ ହେଉଛନ୍ତି ।

**ଠାକୁରଙ୍କର ଏହି ସମୟର ଅବସ୍ଥା :**

ଠାକୁରେ ତାଙ୍କର ଏହି ସମୟର ଦିବ୍ୟୋନ୍ମାଦ ଅବସ୍ଥା ମନେ ପକାଇ ଆମମାନଙ୍କୁ ଅନେକ ସମୟରେ କହିଥିଲେ — ''ଆଧ୍ୟାତ୍ମିକ ଭାବର ପ୍ରାବଲ୍ୟରେ ସାଧାରଣ ଜୀବର ଶରୀର ଓ ମନରେ ଏପରି ହେବା ଦୂରେ ଥାଉ ଏହାର ଏକ ଚତୁର୍ଥାଂଶ ବିକାର ଉପସ୍ଥିତ ହେଲେ ଦେହତ୍ୟାଗ ହୁଏ । ଦିନ-ରାତ୍ରିର ଅଧିକାଂଶ ଭାଗ ମା'ର କୌଣସି ନା କୌଣସି ପ୍ରକାର ଦର୍ଶନ ଆଦି ପାଇ ଭୁଲି ରହୁଥିଲି ବୋଲି

ରକ୍ଷା, ନ ହେଲେ ଏହି ଖୋଳଟା (ନିଜର ଶରୀର ଦେଖାଇ) ରହିବା ଅସମ୍ଭବ ହୋଇ ଥାଆନ୍ତା । ଏହିସମୟଠାରୁ ଆରମ୍ଭ ହୋଇ ଦୀର୍ଘ ଛଅ ବର୍ଷକାଳ ତିଳେମାତ୍ର ନିଦ୍ରା ହୋଇ ନାହିଁ । ଚକ୍ଷୁ ପଲକଶୂନ୍ୟ ହୋଇ ଯାଇଥିଲା, ବେଳେବେଳେ ଚେଷ୍ଟା କରି ମଧ୍ୟ ପଲକ ପକାଇ ପାରୁ ନ ଥିଲି ! କେତେ ସମୟ ଗତ ହେଲା, ତାହାର ଜ୍ଞାନ ରହେ ନାହିଁ ଏବଂ ଶରୀରକୁ ରକ୍ଷାକରି ଚଳିବାକୁ ହେବ, ଏକଥା ପ୍ରାୟ ଭୁଲି ଯାଇଥିଲି । ଶରୀର ଆଡ଼କୁ ଯେତେବେଳେ ଟିକେ ଅଧେ ଦୃଷ୍ଟି ପଡୁଥିଲା, ସେତେବେଳେ ତାହାର ଅବସ୍ଥା ଦେଖି ଅତ୍ୟନ୍ତ ଭୟ ହେଉଥିଲା; ଭାବେ, ପାଗଳ ହେବାକୁ ଯାଉଛି ନା କ'ଣ ? ଦର୍ପଣ ସମ୍ମୁଖରେ ଠିଆହୋଇ ଆଖିରେ ଆଙ୍ଗୁଳି ଦେଇ ଦେଖେ, ଚକ୍ଷୁର ପଲକ ପଡୁଛି କି ନାହିଁ । ସେତେବେଳେ ମଧ୍ୟ ଚକ୍ଷୁ ସମଭାବରେ ପଲକଶୂନ୍ୟ ହୋଇ ରହୁଥିଲା । ଭୟରେ କାନ୍ଦିପକାଏ ଏବଂ ମା'କୁ କହେ—'ମା, ତୋତେ ଡାକିବାର ଓ ତୋ ଉପରେ ଏକାନ୍ତ ବିଶ୍ୱାସ କରି ନିର୍ଭର କରିବାର କ'ଣ ଏହି ଫଳ ହେଲା ? ଶରୀରରେ ବିଷମ ବ୍ୟାଧି ଦେଲୁ ?' ପୁଣି ପରକ୍ଷଣରେ କହୁଥିଲି, 'ଯାହା ହେବାର ହେଉ, ଶରୀର ଯାଉ ପଛେ ତୁ କିନ୍ତୁ ମୋତେ ଛାଡ଼ିବୁ ନାହିଁ, ମୋତେ ଦେଖା ଦେ, କୃପାକର, ମୁଁ ଯେ ମା' ତୋ'ର ପାଦପଦ୍ମରେ ଏକାନ୍ତ ଶରଣ ନେଇଛି, ତୋ ଛଡ଼ା ମୋର ଯେ ଆଉ ଅନ୍ୟ ଗତି ନାହିଁ !' ଏପରି କାନ୍ଦି କାନ୍ଦି ମନ ପୁଣି ଅଦ୍ଭୁତ ଉତ୍ସାହରେ ଉତ୍ତେଜିତ ହୋଇ ଉଠୁଥିଲା, ଶରୀରଟାକୁ ଅତି ତୁଚ୍ଛ ବୋଲି ମନେ ହେଉଥିଲା ଏବଂ ମା'ର ଦର୍ଶନ ଏବଂ ଅଭୟବାଣୀ ଶୁଣି ଆଶ୍ୱସ୍ତ ହେଉଥିଲି !''

**ମଥୁରବାବୁଙ୍କର ଠାକୁରଙ୍କୁ ଶିବ ଓ କାଳୀରୂପରେ ଦର୍ଶନ :**

ଶ୍ରୀଶ୍ରୀଜଗନ୍ମାତାଙ୍କର ଅଚିନ୍ତ୍ୟ ଲୀଳାରେ ମଥୁରବାବୁ ଏହି ସମୟରେ ଦିନେ ଠାକୁରଙ୍କ ମଧ୍ୟରେ ଅଦ୍ଭୁତ ଦେବପ୍ରକାଶ ଅଯାଚିତ ଭାବରେ ଦେଖିବାକୁ ପାଇ ବିସ୍ମିତ ଓ ସ୍ତମ୍ଭିତ ହୋଇଯାଇଥିଲେ । କି ରୂପରେ ସେ ସେଦିନ ଠାକୁରଙ୍କ ଭିତରେ ଶିବ ଓ କାଳୀମୂର୍ତ୍ତି ସନ୍ଦର୍ଶନପୂର୍ବକ ତାଙ୍କୁ ଜୀବନ୍ତ ଦେବତାଜ୍ଞାନରେ ପୂଜା କରିଥିଲେ ତାହା ଆମେ ଅନ୍ୟତ୍ର କହିଛୁ ।[୧] ସେହିଦିନଠାରୁ ସେ ଯେପରି ଦୈବଶକ୍ତି ପ୍ରଭାବରେ ଠାକୁରଙ୍କୁ ଭିନ୍ନ ଦୃଷ୍ଟିରେ ଦେଖିବାକୁ ଏବଂ ସର୍ବଦା ଭକ୍ତି ବିଶ୍ୱାସ କରିବାକୁ ବାଧ୍ୟ ହୋଇଥିଲେ । ସେହି ପ୍ରକାରର ଅଘଟଣ-ଘଟଣା ଦେଖି ସ୍ପଷ୍ଟ ମନେ ହୁଏ, ଠାକୁରଙ୍କର ସାଧକଜୀବନରେ ଏବେଠାରୁ ମଥୁରଙ୍କର ସହାୟତା ଓ ଆନୁକୂଲ୍ୟର ବିଶେଷ ପ୍ରୟୋଜନ ହେବ ବୋଲି ହିଁ ଇଚ୍ଛାମୟୀ ଜଗନ୍ମାତା ଉଭୟଙ୍କୁ

---

୧. ଗୁରୁଭାବ-ପୂର୍ବାର୍ଦ୍ଧ, ୬ଷ୍ଠ ଅଧ୍ୟାୟ ।

ଅବିଚ୍ଛେଦ୍ୟ ପ୍ରେମବନ୍ଧନରେ ଆବଦ୍ଧ କରିଥିଲେ । ସନ୍ଦେହବାଦ, ଜଡ଼ବାଦ ଓ ନାସ୍ତିକ୍ୟପ୍ରବଣ ବର୍ତ୍ତମାନ ଯୁଗର ଧର୍ମଗ୍ଲାନି ଦୂର କରି ଜୀବନ୍ତ ଅଧ୍ୟାତ୍ମଶକ୍ତି-ସଂକ୍ରମଣ ନିମିତ୍ତ ଠାକୁରଙ୍କର ଶରୀରମନରୂପକ ଯନ୍ତ୍ରଟିକୁ ଶ୍ରୀଶ୍ରୀଜଗଦମ୍ବା କେତେ ଯତ୍ନରେ ଏବଂ କିପରି ଅଦ୍ଭୁତ ଉପାୟ ଅବଲମ୍ବନରେ ନିର୍ମାଣ କରିଥିଲେ, ସେହି ପ୍ରକାରର ଘଟଣାମାନଙ୍କରେ ତାର ପ୍ରମାଣ ପାଇ ସ୍ତମ୍ଭିତ ହେବାକୁ ହୁଏ ।

# ଦଶମ ଅଧ୍ୟାୟ

## ଭୈରବୀ ବ୍ରାହ୍ମଣୀଙ୍କର ଆଗମନ

### ରାଣୀ ରାସମଣିଙ୍କର ସାଙ୍ଘାତିକ ପୀଡ଼ା :

୧୮୬୧ ମସିହାରେ କାମାରପୁକୁରରୁ ଦକ୍ଷିଣେଶ୍ୱର ଫେରିବା ପରେ ଠାକୁରଙ୍କର ଜୀବନରେ ଦୁଇଟି ଘଟଣା ଘଟିଥିଲା । ଘଟଣା ଦୁଇଟି ତାଙ୍କ ଜୀବନରେ ବିଶେଷ ପରିବର୍ତ୍ତନ ଆଣି ଦେଇଥିଲା । ସେଥିପାଇଁ ଏକଥା ଆମର ଆଲୋଚନା କରିବା ଆବଶ୍ୟକ । ୧୮୬୧ ଖ୍ରୀଷ୍ଟାବ୍ଦର ପ୍ରାରମ୍ଭରେ ରାଣୀ ରାସମଣି ଗ୍ରହଣୀରୋଗରେ ଆକ୍ରାନ୍ତ ହୋଇଥିଲେ । ଠାକୁରଙ୍କ ନିକଟରୁ ଶୁଣିଛୁ, ରାଣୀ ସେହି ସମୟରେ ଦିନେ ହଠାତ୍ ପଡ଼ିଯାଇଥିଲେ । ଏହାପରେ ତାଙ୍କୁ ଜ୍ୱର, ଗାତ୍ର ବେଦନା ଓ ଅଜୀର୍ଣ୍ଣ ଇତ୍ୟାଦି ହୋଇ ଉକ୍ତ ରୋଗ ଆରମ୍ଭ ହୋଇଥିଲା । ଅଳ୍ପ ସମୟ ମଧ୍ୟରେ ରୋଗ ସାଙ୍ଘାତିକ ଆକାର ଧାରଣ କରିଥିଲା ।

### ରାଣୀଙ୍କର ଦିନାଜପୁରର ସମ୍ପତ୍ତି ଦେବୋତ୍ତର କରିବା ଏବଂ ମୃତ୍ୟୁ :

ଆମେ ଏହାପୂର୍ବରୁ କହିଛୁ ସନ ୧୨୬୨ ସାଲର ୧୮ ଜ୍ୟେଷ୍ଠ, ଇଂରାଜୀ ୧୮୫୫ ଖ୍ରୀଷ୍ଟାବ୍ଦ ମେ ମାସର ୩୧ ତାରିଖ ଗୁରୁବାର ଦିନ ରାଣୀ ଦକ୍ଷିଣେଶ୍ୱରରେ ଦେବୀ-ପ୍ରତିଷ୍ଠା କରିଥିଲେ । ଦେବାଳୟର ବ୍ୟୟନିର୍ବାହ ନିମିତ୍ତ ସେ ଏହି ବର୍ଷ ଅଗଷ୍ଟ ୨୯ ତାରିଖ ଦିନ ଦିନାଜପୁର ଜିଲ୍ଲାର ଅନ୍ତର୍ଗତ ତିନୋଟି ଜମିଦାରୀ ଦୁଇ ଲକ୍ଷ ଛବିଶ ହଜାର ଟଙ୍କା ବିନିମୟରେ କ୍ରୟ କରିଥିଲେ ।[୧] କିନ୍ତୁ ମନରେ ସଂକଳ୍ପ ଥିଲେ ମଧ୍ୟ ଏତେ ଦିନ ସେ ଏହି ସମ୍ପତ୍ତି ଦାନପତ୍ର କରି ଦେବୋତ୍ତରରେ ପରିଣତ କରିପାରି ନ ଥିଲେ । ଆସନ୍ନମୃତ୍ୟୁ ଉପସ୍ଥିତ ଦେଖି ଏହା କରିବା ପାଇଁ ସେ ବ୍ୟସ୍ତ ହୋଇ ଉଠିଲେ । ରାଣୀଙ୍କର ଚାରି କନ୍ୟାଙ୍କ ମଧ୍ୟରେ ମଧ୍ୟମା ଏବଂ ତୃତୀୟା ଶ୍ରୀମତୀ କୁମାରୀ ଏବଂ ଶ୍ରୀମତୀ କରୁଣାମୟୀ ଦାସୀଙ୍କର କାଳୀମନ୍ଦିର-ପ୍ରତିଷ୍ଠା ପୂର୍ବରୁ ହିଁ ମୃତ୍ୟୁ ହୋଇଥିଲା । ତେଣୁ ତାଙ୍କର ମୃତ୍ୟୁଶଯ୍ୟା ପାଖରେ ତାଙ୍କ ବଡ଼ ଏବଂ ସାନ ଝିଅ ଦୁଇଜଣ ଶ୍ରୀମତୀ ପଦ୍ମମଣି ଓ ଶ୍ରୀମତୀ ଜଗଦମ୍ବା ଦାସୀ କେବଳ ଉପସ୍ଥିତ ଥିଲେ । ଦାନପତ୍ର ସମ୍ପନ୍ନ କରିବା ସମୟରେ ସେ ଭବିଷ୍ୟତ ଚିନ୍ତାକରି ଉକ୍ତ ସମ୍ପତ୍ତିର ଅଯଥା ବିନିଯୋଗର ପଥ ସମ୍ପୂର୍ଣ୍ଣ ବନ୍ଦ କରିବାର ଇଚ୍ଛାରେ ନିଜର

---

୧. Plaint in High Court Suit No. 308 of 1872 Puddomoni Dasee vs. Jagadamba Dasee, recites the following from the Deed of Endowment executed by Rani Rasmani — "According to my late husband's desire***I on 18th Jaistha, 1262 B.S. (31st May, 1855)established and consecrated the Thakurs ..and for purpose of carrying on the Sheba purchased three lots of Zemindaris in District Dinajpur on 14th Bhadra, 1262 B.S. (29 August, 1855) for Rs. 2,26,000."

ଦୁଇଜଣ କନ୍ୟାଙ୍କୁ ଦେବୋତ୍ତର କରିବାର ସମ୍ମତି ପ୍ରଦାନପୂର୍ବକ ଅନ୍ୟ ଏକ ଅଙ୍ଗୀକାର ପତ୍ର ଦସ୍ତଖତ କରିବାକୁ କହିଥିଲେ । ଶ୍ରୀମତୀ ଜଗଦମ୍ବା ଉକ୍ତ ପତ୍ରରେ ଦସ୍ତଖତ କଲେ, କିନ୍ତୁ ବଡ଼ଝିଅ ପଦ୍ମମଣି ବହୁ ଅନୁରୋଧ ସତ୍ତ୍ୱେ ସେଥିରେ ଦସ୍ତଖତ କଲେ ନାହିଁ । ସେଥିପାଇଁ ମୃତ୍ୟୁ ଶଯ୍ୟାରେ ଶୟନ କରି ମଧ୍ୟ ରାଣୀ ଶାନ୍ତି ପାଇ ନ ଥିଲେ । ଅଗତ୍ୟା, ଜଗଦମ୍ବାଙ୍କ ଇଚ୍ଛାରେ ଯାହା ହେବାର ହେବ ଭାବି ରାଣୀ ୧୮୬୧ ମସିହା ଫେବୃୟାରୀ ୧୮ ତାରିଖରେ ଦେବୋତ୍ତର-ଦାନପତ୍ର ଦସ୍ତଖତ କଲେ[୧] ଏବଂ ସେହି କାର୍ଯ୍ୟ ଶେଷ କରିବାର ପରଦିନ ଫେବୃୟାରୀ ୧୯ ତାରିଖ ଦିନ ରାତିରେ ଶରୀରତ୍ୟାଗ କରି ଦେବୀଲୋକ ଗମନ କଲେ ।

### ଶରୀର ରକ୍ଷା କରିବା ସମୟରେ ରାଣୀଙ୍କର ଦର୍ଶନ :

ଠାକୁର କହୁଥିଲେ, ଶରୀର ତ୍ୟାଗର କିଛିଦିନ ପୂର୍ବରୁ ରାଣୀ ରାସମଣି କାଳୀଘାଟରେ ଆଦିଗଙ୍ଗାତୀରସ୍ଥ ଘରକୁ ଆସି ରହିଥିଲେ । ଦେହରକ୍ଷାର ଅବ୍ୟବହିତ ପୂର୍ବରୁ ତାଙ୍କୁ ଗଙ୍ଗାଗର୍ଭକୁ ଆନୟନ କରାହେବାରୁ ସମ୍ମୁଖରେ ଅନେକଗୁଡ଼ିଏ ପ୍ରଜ୍ୱଳିତ ଦୀପ ରହିଥିବା ଦେଖି ସେ ହଠାତ୍ କହିଉଠିଲେ, ‘‘ଘୁଞ୍ଚେଇ ଦେ, ଘୁଞ୍ଚେଇ ଦେ, ଏସମସ୍ତ ଆଲୋକ ଆଉ ଭଲ ଲାଗୁ ନାହିଁ, ଏବେ ମୋର ମା’ (ଶ୍ରୀଶ୍ରୀଜଗନ୍ମାତା) ଆସୁଛନ୍ତି, ତାଙ୍କର ଶ୍ରୀଅଙ୍ଗର ପ୍ରଭାରେ ଚାରିଦିଗ ଆଲୋକମୟ ହୋଇଉଠିଛି !’’ (କିଛିକ୍ଷଣ ପରେ) ‘‘ମା’, ଆସିଲ ! ପଦ୍ମ ଯେ ଦସ୍ତଖତ କଲା ନାହିଁ—କ’ଣ ହେବ, ମା’ ?’’ ଏକଥାର ଉତ୍ତର ପ୍ରଦାନ କରିବାକୁ ଯେପରି ଶୃଗାଳ ଦଳ ଉଚ୍ଚସ୍ୱରରେ ଭୁକିବାକୁ ଲାଗିଲେ । କଥାଗୁଡ଼ିକ କହି ପୁଣ୍ୟବତୀ ରାଣୀ ଶାନ୍ତଭାବରେ ମାତୃକୋଳରେ ମହାସମାଧିରେ ଶୟନ କଲେ । ରାତି ସେତେବେଳେ ଦ୍ୱିତୀୟ ପ୍ରହର ଉତ୍ତୀର୍ଣ୍ଣ ହୋଇଛି ।

### ରାଣୀ ମୃତ୍ୟୁକାଳରେ ଯାହା ଆଶଙ୍କା କରିଥିଲେ, ଶେଷରେ ତାହା ହିଁ ହେଲା :

କାଳୀମନ୍ଦିରର ଦେବୋତ୍ତର ସମ୍ପତ୍ତି ନେଇ ରାଣୀ ରାସମଣିଙ୍କ ଦୌହିତ୍ରଗଣଙ୍କ ମଧ୍ୟରେ ପରବର୍ତ୍ତୀ ସମୟରେ ବିବାଦ ଉପୁଜି ଯେଉଁପରି ମକଦ୍ଦମା ଚାଲିଲା, ସେଥିରୁ ବୁଝାଯାଏ—ତୀକ୍ଷ୍ଣଦୃଷ୍ଟିସମ୍ପନ୍ନା ରାଣୀ ତାଙ୍କର ପ୍ରାଣସ୍ୱରୂପ ଦେବୀସେବାର ବନ୍ଦୋବସ୍ତ ଯଥାଯଥ ହୋଇପାରିବ ନାହିଁ ବୋଲି କାହିଁକି ଏତେ

---

୧. The Deed of Endowment, dated 18 February, 1861 was executed by Rani Rasmani; she acknowledged her execution of the same before J.F. Watkins, Solicitor, Calcutta. This dedication was accepted as valid by all parties in Alipore Suit No. 47 of 1867. Jadu Nath Chowdhury vs. Puddomoni and in the High Court Suit No. 308 of 1872, Puddomoni vs. Jagadamba and also when that Suit (No. 308) was revived after contest on 19 July, 1888. J.F Watkins, Solicitor. Calcutta.

ଆଶଙ୍କା କରିଥିଲେ ଏବଂ କାହିଁକି ବା ବ୍ୟାଧିର ଯନ୍ତ୍ରଣା ଅପେକ୍ଷା ଏହି ଚିନ୍ତାର ଯନ୍ତ୍ରଣା ମୃତ୍ୟୁକାଳରେ ତାଙ୍କଠାରେ ତୀବ୍ରତର ବୋଲି ଅନୁଭୂତ ହୋଇଥିଲା । ଅଦାଲତର କାଗଜ ପତ୍ରରେ ଦେଖାଯାଏ, ସେହି ସମସ୍ତ ମକଦ୍ଦମାର ବହୁଳ ବ୍ୟୟ ପାଇଁ ସେହି ଦେବୋତ୍ତର ସମ୍ପତ୍ତି ଋଣଗ୍ରସ୍ତ ହୋଇ କ୍ରମଶଃ ଏକଲକ୍ଷରୁ ସାମାନ୍ୟ କମ୍ ଟଙ୍କାରେ ବନ୍ଧା ପଡ଼ିଲା ।[୧] କିଏ କହିବ, ରାଣୀ ରାସମଣିଙ୍କର ଅଦ୍ୱିତୀୟ ଦୈବକୀର୍ତ୍ତି ଏହି ବିବାଦ ଫଳରେ ନାମମାତ୍ରରେ ପର୍ଯ୍ୟବସିତ ଏବଂ କାଳକ୍ରମେ ଲୁପ୍ତ ହେବ କି ନାହିଁ !

**ମଥୁରବାବୁଙ୍କର ସାଂସାରିକ ଉନ୍ନତି ଏବଂ ଦେବସେବାର ବନ୍ଦୋବସ୍ତ :**

ରାଣୀଙ୍କର କନିଷ୍ଠ ଜାମାତା ଶ୍ରୀଯୁକ୍ତ ମଥୁରମୋହନ ବିଶ୍ୱାସ ବିଷୟସଂକ୍ରାନ୍ତ ସମସ୍ତ କାର୍ଯ୍ୟପରିଚାଳନାରେ ତାଙ୍କର ଦକ୍ଷିଣହସ୍ତସ୍ୱରୂପ ହୋଇ ଉଠିଥିଲେ । ପ୍ରତିଷ୍ଠା ସମୟରୁ ସେ କାଳୀମନ୍ଦିରର ଦେବୋତ୍ତର ସମ୍ପତ୍ତିର ଆୟବ୍ୟୟ ବୁଝି ନେଇ ରାଣୀଙ୍କର ଇଚ୍ଛାନୁସାରେ ସକଳ ବିଷୟର ବନ୍ଦୋବସ୍ତ କରୁଥିଲେ । ସୁତରାଂ ରାଣୀଙ୍କ ମୃତ୍ୟୁପରେ ସେ ହିଁ ଦେବସେବା ସଂକ୍ରାନ୍ତ ସମସ୍ତ କାର୍ଯ୍ୟ ପୂର୍ବପରି ପରିଚାଳନା କରିବାକୁ ଲାଗିଲେ । ଶ୍ରୀରାମକୃଷ୍ଣଦେବଙ୍କର ପବିତ୍ର ପ୍ରଭାବରେ ଦେବତାଭକ୍ତି ମଥୁରମୋହନଙ୍କର ଅନ୍ତରରେ ବିଶେଷ ଅଧିକାର ବିସ୍ତାର କରିବାରୁ ଦକ୍ଷିଣେଶ୍ୱରରେ ମାତୃସେବା ରାଣୀଙ୍କ ମୃତ୍ୟୁ ଯୋଗୁଁ କୌଣସି ପ୍ରକାରରେ କ୍ଷତିଗ୍ରସ୍ତ ହୋଇ ନ ଥିଲା ।

**ଠାକୁରଙ୍କୁ ସହାୟତା କରିବା ନିମିତ୍ତ ମଥୁରବାବୁଙ୍କର ଉନ୍ନତି ଓ ଆଧିପତ୍ୟ ପ୍ରାପ୍ତି :**

ଠାକୁରଙ୍କ ସହିତ ମଥୁରବାବୁଙ୍କର ବିଚିତ୍ର ସମ୍ବନ୍ଧ ବିଷୟରେ ଆମେ ଏହା ପୂର୍ବରୁ ଅନେକ ସ୍ଥାନରେ କହିଛୁ; ତେଣୁ ଏଠାରେ ଏହାର ପୁନରୁଲ୍ଲେଖ ନିଷ୍ପ୍ରୟୋଜନ । ଏଠାରେ କେବଳ ଗୋଟିଏ କଥା କୁହାଯାଇପାରେ ଯେ, ଦୀର୍ଘକାଳବ୍ୟାପୀ ତନ୍ତ୍ରୋକ୍ତ ସାଧନସମୂହ ଠାକୁରଙ୍କ ଜୀବନରେ ଅନୁଷ୍ଠିତ ହେବା ପୂର୍ବରୁ ରାଣୀ ରାସମଣିଙ୍କର ସ୍ୱର୍ଗାରୋହଣ ଓ କାଳୀମନ୍ଦିରସଂକ୍ରାନ୍ତ ସମସ୍ତ ବିଷୟରେ ମଥୁରମୋହନଙ୍କର ଏକାଧିପତ୍ୟଲାଭରୂପକ ଘଟଣା ଉପସ୍ଥିତ ହେବାରୁ, ଭକ୍ତିମାନ ମଥୁରବାବୁ ତାଙ୍କୁ ଏବିଷୟରେ ସହାୟତା ପାଇଁ ବିଶେଷ ସୁବିଧା ପାଇଥିଲେ । ମନେହୁଏ, ମଥୁରଙ୍କର ଉକ୍ତ ଆଧିପତ୍ୟଲାଭ ଯେପରି ଠାକୁରଙ୍କୁ ସାହାଯ୍ୟ କରିବା ପାଇଁ ହିଁ ହୋଇଥିଲା । କାରଣ ଦେଖାଯାଏ, ଦେବତାଜ୍ଞାନରେ ଠାକୁରଙ୍କ ସେବା

---

୧. Debt due on mortgage by the Estate is Rs. 50,000; interest payble quartely is Rs. 876-0-0; Costs of the Referee already stated amount to Rs. 20,000, as yet untaxed.

କରିବା ହିଁ ଏହି ସମୟରୁ ତାଙ୍କ ନିକଟରେ ସର୍ବପ୍ରଧାନ କାର୍ଯ୍ୟରୂପରେ ପରିଣତ ହୋଇଥିଲା । ଦୀର୍ଘକାଳ ପର୍ଯ୍ୟନ୍ତ ସମଭାବରେ ଗୋଟିଏ ବିଷୟରେ ବିଶ୍ୱାସୀ ରହି ଉଚ୍ଚଭାବ ଆଶ୍ରୟରେ ଜୀବନ ଅତିବାହିତ କରିବା ଏକମାତ୍ର ଈଶ୍ୱରଙ୍କ କୃପାରେ ହିଁ ସମ୍ଭବପର ହୋଇଥାଏ । ଅତଏବ ରାଣୀଙ୍କର ବିପୁଳ ସମ୍ପତ୍ତିର ଏକାଧିପତ୍ୟ ଲାଭପୂର୍ବକ ବିପଥଗାମୀ ନ ହୋଇ ମଥୁରମୋହନ ଯେ ଠାକୁରଙ୍କ ପ୍ରତି ଦିନକୁ ଦିନ ଅଧିକତର ବିଶ୍ୱାସସମ୍ପନ୍ନ ହୋଇ ଉଠିଥିଲେ ଏବଂ ଏହି ସମୟଠାରୁ ଦୀର୍ଘ ଏଗାର ବର୍ଷ କାଳ ତାଙ୍କର ସେବାରେ ନିଜକୁ ସମଭାବରେ ନିଯୁକ୍ତ ରଖିବାକୁ ସକ୍ଷମ ହୋଇଥିଲେ, ଏଥିରେ ତାଙ୍କର ପରମ ସୌଭାଗ୍ୟର କଥା ବୁଝାଯାଏ ।

## ଠାକୁରଙ୍କ ସମ୍ବନ୍ଧରେ ସାଧାରଣ ଲୋକ ଏବଂ ମଥୁରବାବୁଙ୍କର ଧାରଣା :

ଈଶ୍ୱରସାଧକ ବ୍ୟତୀତ ଅନ୍ୟ କୌଣସି ବ୍ୟକ୍ତି ଠାକୁରଙ୍କର ଦିବ୍ୟୋନ୍ମାଦ ଅବସ୍ଥାର ଅସାଧାରଣ ଉଚ୍ଚତା ସମ୍ବନ୍ଧରେ ବିନ୍ଦୁମାତ୍ର ଧାରଣା କରିପାରି ନ ଥିଲେ । ସାଧାରଣ ଲୋକେ ତାଙ୍କୁ ବିକୃତମସ୍ତିଷ୍କ ସ୍ଥିର କରିଥିଲେ । କାରଣ ସେମାନେ ଦେଖିଥିଲେ, ସେ ସମସ୍ତ ପ୍ରକାରର ପାର୍ଥିବ ଭୋଗସୁଖଲାଭରେ ପରାଙ୍‌ମୁଖ ହୋଇ ସେମାନଙ୍କର ବୁଦ୍ଧିର ଅଗୋଚର ଏକ ଅନିର୍ଦ୍ଦିଷ୍ଟ ଭାବରେ ବିଭୋର ରହି କେତେବେଳେ 'ହରି', କେତେବେଳେ 'ରାମ' ଏବଂ କେତେବେଳେ 'କାଳୀ', 'କାଳୀ' କହି ଦିନ କାଟୁଛନ୍ତି ! ପୁଣି ରାଣୀ ରାସମଣି ଓ ମଥୁରବାବୁଙ୍କର କୃପାପ୍ରାପ୍ତ ହୋଇ କେତେ ଲୋକ ଧନୀ ହୋଇଗଲେ, ମାତ୍ର ଭାଗ୍ୟକ୍ରମରେ ସେ ସେମାନଙ୍କର ସୁଦୃଷ୍ଟିରେ ପଡ଼ି ମଧ ନିଜର ସାଂସାରିକ ଉନ୍ନତି କିଛି କରିପାରିଲେ ନାହିଁ । ସୁତରାଂ ସେ ହିତାହିତ-ଜ୍ଞାନଶୂନ୍ୟ ଉନ୍ମାଦ ଛଡ଼ା ଆଉ କ'ଣ ହେବେ ? ମାତ୍ର ଗୋଟିଏ କଥା ସମସ୍ତେ ବୁଝିଥିଲେ ଯେ, ସାଂସାରିକ ସବୁ ବିଷୟରେ ଅକର୍ମଣ୍ୟ ହେଲେ ମଧ ଏହି ଉନ୍ମାଦର ଉଜ୍ଜ୍ୱଳ ନୟନରେ, ଅଦୃଷ୍ଟପୂର୍ବ ଚାଳିଚଳଣରେ, ମଧୁର କଣ୍ଠସ୍ୱରରେ, ସୁଲଳିତ ବାକ୍ୟ ବିନ୍ୟାସରେ ଏବଂ ଅଦ୍ଭୁତ ପ୍ରତ୍ୟୁତ୍ପନ୍ନମତିତ୍ୱରେ ଏପରି ଏକ ଆକର୍ଷଣ ଅଛି, ଯଦ୍ୱାରା ସେମାନେ ଯେଉଁସମସ୍ତ ଧନୀ ମାନୀ ଓ ପଣ୍ଡିତ ବ୍ୟକ୍ତିଙ୍କ ସମ୍ମୁଖରେ ଅଗ୍ରସର ହେବାକୁ ମଧ ସଙ୍କୋଚ ବୋଧ କରନ୍ତି, ସେହି ସମସ୍ତ ଲୋକଙ୍କ ସମ୍ମୁଖରେ ସେ କିଛିମାତ୍ର ସଙ୍କୁଚିତ ନ ହୋଇ ପହଞ୍ଚିଯାନ୍ତି ଏବଂ ଶୀଘ୍ର ସେମାନଙ୍କର ପ୍ରିୟ ହୋଇଉଠନ୍ତି ! ସାଧାରଣ ମନୁଷ୍ୟ ଓ କାଳୀମନ୍ଦିରର କର୍ମଚାରୀମାନେ ଏପରି ଭାବିଲେ ମଧ, ମଥୁରବାବୁ କିନ୍ତୁ ଏବେ ଅନ୍ୟ ପ୍ରକାରର ଭାବୁଥିଲେ । ମଥୁରମୋହନ କହୁଥିଲେ, ''ଶ୍ରୀଶ୍ରୀଜଗଦମ୍ବାଙ୍କର କୃପା ହୋଇଅଛି ବୋଲି ହିଁ ତାଙ୍କର ସେହିପ୍ରକାର ଉନ୍ମତ୍ତବତ୍ ଅବସ୍ଥା ହୋଇଅଛି ।''

## ଭୈରବୀ ବ୍ରାହ୍ମଣୀଙ୍କର ଆଗମନ :

ରାଣୀ ରାସମଣିଙ୍କ ମୃତ୍ୟୁର ସ୍ୱଳ୍ପ କାଳ ପରେ ଠାକୁରଙ୍କ ଜୀବନରେ ସେହି ବର୍ଷ ଅନ୍ୟ ଗୋଟିଏ ବିଶେଷ ଘଟଣା ଘଟିଥିଲା । ଦକ୍ଷିଣେଶ୍ୱର ମନ୍ଦିରର ପଶ୍ଚିମଭାଗରେ ଗଙ୍ଗାକୂଳରେ ଏକ ବଡ଼ ପଠା ଉପରେ ଏହି ସମୟରେ ସୁନ୍ଦର ପୁଷ୍ପ କାନନ ଥିଲା । ସଯତ୍ନ-ରକ୍ଷିତ ସେହି ଉଦ୍ୟାନରେ ନାନାଜାତିର ପୁଷ୍ପ ସମ୍ଭାରରେ ଭୂଷିତ ହୋଇ ବୃକ୍ଷଲତାଦି ବିଚିତ୍ର ଶୋଭା ବିସ୍ତାର କରୁଥିଲା ଏବଂ ପୁଷ୍ପଗୁଡ଼ିକର ମହକରେ ଚତୁର୍ଦ୍ଦିଗ ଆମୋଦିତ ହେଉଥିଲା । ଶ୍ରୀଶ୍ରୀଜଗଦମ୍ବାଙ୍କର ପୂଜା ନ କରୁଥିଲେ ମଧ୍ୟ ଠାକୁର ଏହି ସମୟରେ ପ୍ରତିଦିନ ଉକ୍ତ ଉଦ୍ୟାନରୁ ପୁଷ୍ପଚୟନ କରୁଥିଲେ ଏବଂ ମାଳା ଗୁନ୍ଥି ଶ୍ରୀଶ୍ରୀଜଗଦମ୍ବାଙ୍କୁ ସ୍ୱହସ୍ତରେ ସଜାଉଥିଲେ । ଏହି ଉଦ୍ୟାନର ମଧ୍ୟ ଭାଗରେ ଗଙ୍ଗାଗର୍ଭରୁ ମନ୍ଦିରକୁ ଯିବାର ଚାନ୍ଦିନି-ଶୋଭିତ ବିସ୍ତୃତ ସୋପାନବଳୀ ଏବଂ ଉତ୍ତରରେ ପଠା ଶେଷରେ ସ୍ତ୍ରୀଲୋକମାନଙ୍କ ବ୍ୟବହାର ପାଇଁ ଏକ ବନ୍ଧା ଘାଟ ଓ ନହବତଖାନା ଅଦ୍ୟାପି ବର୍ତ୍ତମାନ । ବନ୍ଧାଘାଟ ଉପରେ ଏକ ବୃହତ୍ ବକୁଳ ବୃକ୍ଷ ଥିବାରୁ ଲୋକେ ତାକୁ ବକୁଳତଳା ଘାଟ ବୋଲି କହୁଥିଲେ ।

ଠାକୁର ଦିନେ ପ୍ରାତଃକାଳରେ ପୁଷ୍ପଚୟନ କରୁଛନ୍ତି, ଏହି ସମୟରେ ଗୋଟିଏ ନୌକା ବକୁଳତଳା ଘାଟରେ ଆସି ଲାଗିଲା ଏବଂ ଗୈରିକବସ୍ତ୍ରପରିହିତା ଆଲୁଲାୟିତା-ଦୀର୍ଘକେଶା ଭୈରବୀବେଶଧାରିଣୀ ଏକ ସୁନ୍ଦରୀ ରମଣୀ ସେଥିରୁ ଅବତରଣ କରି ଦକ୍ଷିଣେଶ୍ୱର ଘାଟର ଚାନ୍ଦିନୀ ଆଡ଼କୁ ଅଗ୍ରସର ହେଲେ । ପ୍ରୌଢ଼ା ହେଲେ ମଧ୍ୟ ଯୌବନର ସୌନ୍ଦର୍ଯ୍ୟାଭାସ ତାଙ୍କ ଶରୀରକୁ ସେତେବେଳେ ମଧ୍ୟ ତ୍ୟାଗ କରି ନାହିଁ । ଠାକୁରଙ୍କ ନିକଟରୁ ଶୁଣିଛୁ, ଭୈରବୀଙ୍କର ବୟସ ସେତେବେଳେ ଚାଳିଶିବର୍ଷ ପାଖାପାଖି ଥିଲା । ନିକଟ ଆତ୍ମୀୟଙ୍କୁ ଦେଖିଲେ ଲୋକେ ଯେପରି ବିଶେଷ ଆକର୍ଷଣ ଅନୁଭବ କରିଥାନ୍ତି, ଭୈରବୀଙ୍କୁ ଦେଖି ଠାକୁର ମଧ୍ୟ ସେହିପରି ଅନୁଭବ କରିଥିଲେ ଏବଂ ଘରକୁ ଫେରି ଭଣଜା ହୃଦୟକୁ ଚାନ୍ଦିନୀ ପାଖରୁ ତାଙ୍କୁ ଡାକି ଆଣିବାକୁ କହିଥିଲେ । ହୃଦୟ ତାଙ୍କର ସେହିପ୍ରକାରର ଆଦେଶରେ ଇତସ୍ତତଃ କରି କହିଥିଲେ, "ରମଣୀ ଅପରିଚିତା, ଡାକିଲେ କାହିଁକି ଆସିବେ ?" ଠାକୁର ଉତ୍ତରରେ କହିଥିଲେ, "ମୁଁ ଡାକୁଛି ବୋଲି କହିଲେ ଆସିବେ ।" ହୃଦୟ କହୁଥିଲେ, ଅପରିଚିତା ସନ୍ନ୍ୟାସିନୀଙ୍କ ସହିତ ଆଳାପ କରିବା ପାଇଁ ମାମୁଁଙ୍କର ସେହି ପ୍ରକାରର ଅତିଶୟ ଆଗ୍ରହ ଦେଖି ସେ ଅବାକ୍ ହୋଇଯାଇଥିଲେ । କାରଣ ତାଙ୍କୁ ସେପରି ଆଚରଣ କରିବା ସେ ଏହାପୂର୍ବରୁ କେବେ ଦେଖି ନ ଥିଲେ ।

ଉନ୍ମାଦ ମାମୁଁଙ୍କର ବାକ୍ୟ ଅମାନ୍ୟ କରିବାର ଉପାୟ ନାହିଁ ବୁଝି ହୃଦୟ ଚାନ୍ଦିନୀ ପାଖକୁ ଯାଇ ଦେଖିଲେ ଭୈରବୀ ସେଠାରେ ବସିଛନ୍ତି । ସେ ତାଙ୍କୁ ସମ୍ବୋଧନ କରି କହିଲେ, ତାଙ୍କର ଈଶ୍ୱରଭକ୍ତ ମାମୁଁ ତାଙ୍କର ଦର୍ଶନଲାଭ ପାଇଁ

ପ୍ରାର୍ଥନା କରୁଛନ୍ତି । ସେହିକଥା ଶୁଣି ଭୈରବୀ କୌଣସି ପ୍ରଶ୍ନ ନ ପଚାରି ତାଙ୍କ ସହିତ ଆସିବାକୁ ପ୍ରସ୍ତୁତ ହେବାରୁ ହୃଦୟ ଅଧିକତର ବିସ୍ମିତ ହେଲେ ।

**ପ୍ରଥମ ଦର୍ଶନରେ ଭୈରବୀ ଠାକୁରଙ୍କୁ ଯାହା କହିଥିଲେ :**

ଠାକୁରଙ୍କ ଘରେ ପ୍ରବେଶପୂର୍ବକ ତାଙ୍କୁ ଦେଖି ହିଁ ଭୈରବୀ ଆନନ୍ଦରେ ଓ ବିସ୍ମୟରେ ଅଭିଭୂତା ହେଲେ ଏବଂ ସଜଳନୟନରେ ସହସା କହି ଉଠିଲେ, ''ବାବା, ତୁମେ ଏଠାରେ ଅଛ ! ତୁମେ ଗଙ୍ଗାକୂଳରେ ରହିଛ ଜାଣି ତୁମକୁ ଖୋଜି ବୁଲୁଥିଲି, ଏତେ ଦିନପରେ ଦେଖା ପାଇଲି !'' ଠାକୁରେ ପଚାରିଲେ, ''ମୋ କଥା କିପରି ଜାଣି ପାରିଲ, ମା' ?'' ଭୈରବୀ କହିଲେ, ''ତୁମ ତିନିଜଣଙ୍କ ସଙ୍ଗରେ ଦେଖା କରିବାକୁ ହେବ, ଏକଥା ଜଗଦମ୍ବାଙ୍କ କୃପାରୁ ପୂର୍ବରୁ ଜାଣି ପାରିଥିଲି । ଦୁଇଜଣଙ୍କର ଦେଖା ପୂର୍ବବଙ୍ଗରେ ପାଇସାରିଛି, ଆଜି ଏଠାରେ ତୁମର ଦେଖା ପାଇଲି ।''

**ଠାକୁର ଓ ଭୈରବୀଙ୍କ ମଧ୍ୟରେ ପ୍ରଥମ ଆଳାପ :**

ଠାକୁର ସେତେବେଳେ ଭୈରବୀଙ୍କ ନିକଟରେ ବସି ବାଳକ ଯେପରି ଅନ୍ତରର କଥା ଜନନୀ ନିକଟରେ ଆନନ୍ଦରେ ପ୍ରକାଶ କରେ, ସେପରି ନିଜର ଅଲୌକିକ ଦର୍ଶନ, ଈଶ୍ୱରୀୟ ପ୍ରସଙ୍ଗରେ ବାହ୍ୟଜ୍ଞାନ ଲୁପ୍ତ ହେବା, ଗାତ୍ରଦାହ, ନିଦ୍ରାଶୂନ୍ୟତା, ଶାରୀରିକ ବିକାର ପ୍ରଭୃତି ଜୀବନର ନିତ୍ୟ ଅନୁଭୂତ ବିଷୟସକଳ ତାଙ୍କୁ କହୁ କହୁ ବାରମ୍ବାର ପଚାରିବାକୁ ଲାଗିଲେ, ''ହଁ ଗୋ, ମୋର ଏସବୁ କ'ଣ ହୁଏ ? ମୁଁ କ'ଣ ସତରେ ପାଗଳ ହୋଇଗଲି ? ଜଗଦମ୍ବାଙ୍କୁ ମନ ପ୍ରାଣରେ ଡାକିବାରୁ ସତରେ କ'ଣ ମୋର କଠିନ ବ୍ୟାଧି ହେଲା ?'' ଭୈରବୀ ତାଙ୍କର ଏସମସ୍ତ କଥା ଶୁଣୁ ଶୁଣୁ ମା' ପରି କେତେବେଳେ ଉତ୍ତେଜିତା, କେତେବେଳେ ଉଲ୍ଲସିତା, ଏବଂ କେତେବେଳେ କରୁଣାର୍ଦ୍ରହୃଦୟା ହୋଇ ତାଙ୍କୁ ସାନ୍ତ୍ୱନା ଦେବାପାଇଁ ବାରମ୍ବାର କହିବାକୁ ଲାଗିଲେ, ''ତୁମକୁ କିଏ ପାଗଳ କହୁଛି, ବାବା ? ତୁମର ଏହା ପାଗଳାମୀ ନୁହେଁ, ତୁମର ମହାଭାବ ହୋଇଅଛି, ସେଥିପାଇଁ ସେହିପରି ଅବସ୍ଥା ସବୁ ହୋଇଛି ଏବଂ ହେଉଅଛି । ତୁମର ଯେଉଁ ଅବସ୍ଥା ହୋଇଛି, ତାହା ଚିହ୍ନିବାକୁ କ'ଣ କାହାର ସାଧ ଅଛି ? ସେଥିପାଇଁ ଏପରି କହୁଛନ୍ତି । ଏପରି ଅବସ୍ଥା ଶ୍ରୀମତୀ ରାଧାରାଣୀଙ୍କର ହୋଇଥିଲା; ଏପରି ଅବସ୍ଥା ଶ୍ରୀଚୈତନ୍ୟ ମହାପ୍ରଭୁଙ୍କର ହୋଇଥିଲା ! ଏକଥା ଭକ୍ତି ଶାସ୍ତ୍ରରେ ଅଛି । ମୋ' ପାଖରେ ସେସମସ୍ତ ପୋଥି ଅଛି, ସେଥିରୁ ପଢ଼ି ମୁଁ ଶୁଣାଇ ଦେବି, ଈଶ୍ୱରଙ୍କୁ ଯେଉଁମାନେ ଏକ ମନରେ ଡାକିଥାନ୍ତି ସେସମସ୍ତଙ୍କର ସେହିପରି ଅବସ୍ଥାଗୁଡ଼ିକ ହୋଇଛି ଓ ହୁଏ ।'' ଭୈରବୀ ବ୍ରାହ୍ମଣୀ ଓ ନିଜ ମାମୁଁଙ୍କର ଏପରି ପରମ ଆତ୍ମୀୟଙ୍କ ପରି ବାକ୍ୟାଳାପ କରିବା ଦେଖି ହୃଦୟଙ୍କର ବିସ୍ମୟର ସୀମା ରହିଲା ନାହିଁ ।

କଥା ହେଉ ହେଉ ଅନେକ ସମୟ ହୋଇଗଲାଣି ଦେଖି ଠାକୁର ଦେବୀଙ୍କର ପ୍ରସାଦୀ ଫଳମୂଳ, ଲଡ୍ଡୁଣୀ, ମିଶ୍ରି ପ୍ରଭୃତି ଭୈରବୀଙ୍କୁ ଜଳଯୋଗ କରିବାକୁ ବେଲେ ଏବଂ ମାତୃଭାବରେ ଭାବିତା ବ୍ରାହ୍ମଣୀ ପୁତ୍ରସ୍ୱରୂପରେ ତାଙ୍କୁ ଆଗେ ନ ଖୁଆଇ ଜଳଗ୍ରହଣ କରିବେ ନାହିଁ ବୁଝି ସ୍ୱୟଂ ସେସମସ୍ତ ଖାଦ୍ୟର କିୟଦଂଶ ଗ୍ରହଣ କଲେ । ଦେବଦର୍ଶନ ଓ ଜଳଯୋଗ ସରିଲେ ବ୍ରାହ୍ମଣୀ ନିଜର କଣ୍ଠସ୍ଥିତ ରଘୁବୀରଶିଳାର ଭୋଗପାଇଁ ଠାକୁରବାଡ଼ିର ଭଣ୍ଡାରରୁ ଅଟା, ଚାଉଳ, ପ୍ରଭୃତି ଭିକ୍ଷାସ୍ୱରୂପ ଗ୍ରହଣ କରି ପଞ୍ଚବଟୀତଳେ ରନ୍ଧନରେ ବ୍ୟାପୃତା ହେଲେ ।

**ପଞ୍ଚବଟୀରେ ଭୈରବୀଙ୍କର ଅପୂର୍ବ ଦର୍ଶନ :**

ରନ୍ଧନ ଶେଷ ହେଲାପରେ ରଘୁବୀରଙ୍କ ସମ୍ମୁଖରେ ଖାଦ୍ୟ ଇତ୍ୟାଦି ରଖି ବ୍ରାହ୍ମଣୀ ନିବେଦନ କଲେ ଏବଂ ଇଷ୍ଟଦେବଙ୍କୁ ଚିନ୍ତା କରୁ କରୁ ଗଭୀର ଧ୍ୟାନରେ ନିମଗ୍ନ ହୋଇ ଅଭୂତପୂର୍ବ ଦର୍ଶନଲାଭରେ ସମାଧିସ୍ଥା ହେଲେ । ବାହ୍ୟଜ୍ଞାନ ଲୁପ୍ତ ହୋଇ ତାଙ୍କର ଦୁଇନୟନରୁ ପ୍ରେମାଶ୍ରୁଧାରା ପ୍ରବାହିତ ହେବାକୁ ଲାଗିଲା । ଠାକୁର ସେହି ସମୟରେ ପ୍ରାଣେ ପ୍ରାଣେ ଆକୃଷ୍ଟ ହୋଇ ଅର୍ଦ୍ଧବାହ୍ୟ ଅବସ୍ଥାରେ ସହସା ସେଠାରେ ଉପସ୍ଥିତ ହେଲେ ଏବଂ ଦୈବଶକ୍ତିବଳରେ ପୂର୍ଣ୍ଣାବିଷ୍ଟ ହୋଇ ବ୍ରାହ୍ମଣୀ–ନିବେଦିତ ଖାଦ୍ୟ ସକଳ ଭୋଜନ କରିବାକୁ ଲାଗିଲେ । କେତେ ସମୟ ପରେ ବ୍ରାହ୍ମଣୀ ସଂଜ୍ଞାଲାଭ କରି ଚକ୍ଷୁ ଉନ୍ମୀଳନ କଲେ ଏବଂ ବାହ୍ୟଜ୍ଞାନ ବିରହିତ ଭାବାବିଷ୍ଟ ଠାକୁରଙ୍କର ଏପରି କାର୍ଯ୍ୟକଳାପ ନିଜ ଦର୍ଶନ ସହିତ ମିଶି ଯିବାରୁ ଆନନ୍ଦରେ କଣ୍ଟକିତ–କଳେବରା ହେଲେ । କିଛିକ୍ଷଣ ପରେ ଠାକୁର ସାଧାରଣ ଜ୍ଞାନ ଭୂମିକୁ ଆରୋହଣ କଲେ ଏବଂ ନିଜର କୃତ କର୍ମ ନିମିତ୍ତ କ୍ଷୁବ୍ଧ ହୋଇ ବ୍ରାହ୍ମଣୀଙ୍କୁ କହିବାକୁ ଲାଗିଲେ, ‘‘କିଏ ଜାଣେ ବାବା, ଆତ୍ମହରା ହୋଇ କାହିଁକି ଯେ ଏପରି କାର୍ଯ୍ୟ ସବୁ କରି ବସେ !’’ ବ୍ରାହ୍ମଣୀ ସେତେବେଳେ ଜନନୀ ପରି ତାଙ୍କୁ ଆଶ୍ୱାସ ପ୍ରଦାନପୂର୍ବକ କହିଲେ, ‘‘ବେଶ୍ କରିଛ, ବାବା; ଏପରି କାର୍ଯ୍ୟ ତୁମେ କରି ନାହଁ, ତୁମ ଭିତରେ ଯିଏ ଅଛନ୍ତି ସେ କରିଛନ୍ତି; ଧ୍ୟାନ କରି ମୁଁ ଯାହା ଦେଖିଛି, ସେଥିରୁ ନିଶ୍ଚିତ ଭାବରେ ବୁଝିପାରିଛି, କିଏ ସେପରି କରିଛି ଏବଂ କାହିଁକି କରିଛି । ବୁଝିଛି ଯେ, ମୋର ଆଉ ପୂର୍ବପରି ବାହ୍ୟପୂଜାର ଆବଶ୍ୟକତା ନାହିଁ, ମୋର ପୂଜା ଏତେଦିନରେ ସାର୍ଥକ ହୋଇଛି !’’ ଏହା କହି ବ୍ରାହ୍ମଣୀ କୌଣସି ପ୍ରକାର ଦ୍ୱିଧା ନ କରି ଦେବପ୍ରସାଦସ୍ୱରୂପ ଉକ୍ତ ଭୋଜନାବଶିଷ୍ଟ ଗ୍ରହଣ କଲେ ଏବଂ ଠାକୁରଙ୍କର ଶରୀରମନ ଆଶ୍ରୟରେ ରଘୁବୀରଙ୍କର ଜୀବନ୍ତ ଦର୍ଶନଲାଭପୂର୍ବକ ପ୍ରେମଗଦ୍‌ଗଦ୍‌ଚିତ୍ତରେ ବାଷ୍ପବାରି ମୋଚନ କରୁ କରୁ ବହୁକାଳ ପୂଜିତ ନିଜର ରଘୁବୀରଶିଳାଟିକୁ ଗଙ୍ଗାଗର୍ଭରେ ବିସର୍ଜନ କଲେ !

## ପଞ୍ଚବଟୀରେ ଶାସ୍ତ୍ରପ୍ରସଙ୍ଗ :

ପ୍ରଥମ ଦର୍ଶନର ପ୍ରୀତି ଓ ଆକର୍ଷଣ ଠାକୁର ଏବଂ ବ୍ରାହ୍ମଣୀଙ୍କ ମଧ୍ୟରେ ଦିନକୁ ଦିନ ବର୍ଦ୍ଧିତ ହେବାକୁ ଲାଗିଲା । ଠାକୁରଙ୍କ ପ୍ରତି ଅପତ୍ୟ ପ୍ରେମରେ ମୁଗ୍ଧ ହୃଦୟା ସନ୍ନ୍ୟାସିନୀ ଦକ୍ଷିଣେଶ୍ୱରରେ ରହିଗଲେ । ଆଧ୍ୟାତ୍ମିକ ବାକ୍ୟାଳାପରେ ଦିନ ପରେ ଦିନ କିପରି କଟିବାକୁ ଲାଗିଲା, ଉଭୟଙ୍କ ମଧ୍ୟରେ କାହାରି ତାହା ଅନୁଭବ ହେଲା ନାହିଁ ! ନିଜ ଆଧ୍ୟାତ୍ମିକ ଦର୍ଶନ ଓ ଅବସ୍ଥାସମ୍ବନ୍ଧୀୟ ରହସ୍ୟକଥା ସବୁ ଅକପଟରେ କହି ଠାକୁର ନିତ୍ୟ ନାନାପ୍ରକାରର ପ୍ରଶ୍ନ କରିବାକୁ ଲାଗିଲେ ଏବଂ ଭୈରବୀ ତନ୍ତ୍ରଶାସ୍ତ୍ରରୁ ଏସମସ୍ତର ସମାଧାନ କରି ଅଥବା ଈଶ୍ୱର ପ୍ରେମର ପ୍ରାବଲ୍ୟରେ ଅବତାରପୁରୁଷମାନଙ୍କର ଦେହ ଓ ମନରେ କିପରି ଲକ୍ଷଣମାନ ପ୍ରକାଶିତ ହୋଇଥାଏ, ଭକ୍ତିଗ୍ରନ୍ଥଗୁଡ଼ିକରୁ ସେ ବିଷୟ ପାଠକରି ଠାକୁରଙ୍କର ସଂଶୟ ମୋଚନ କରିବାକୁ ଲାଗିଲେ । ପଞ୍ଚବଟୀରେ ଏପରି କେତେ ଦିନ ଦିବ୍ୟାନନ୍ଦର ପ୍ରବାହ ଚାଲିଥିଲା ।

## ଭୈରବୀଙ୍କର ଦେବମଣ୍ଡଳ ଘାଟରେ ଅବସ୍ଥାନର କାରଣ :

ଛଅ ସାତ ଦିନ ଏପରି କଟିବା ପରେ ଠାକୁରଙ୍କର ମନେ ହେଲା ବ୍ରାହ୍ମଣୀଙ୍କୁ ଏଠାରେ ରଖିବା ଠିକ୍ ନୁହେଁ । କାମକାଞ୍ଚନରେ ଆସକ୍ତ ସଂସାରୀ ମଣିଷ ବୁଝି ନ ପାରି ପବିତ୍ରା ରମଣୀଙ୍କର ଚରିତ୍ର ସମ୍ବନ୍ଧରେ ନାନାକଥା ରଚନା କରିବାର ସୁଯୋଗ ପାଇବେ । ବ୍ରାହ୍ମଣୀଙ୍କୁ ଏକଥା କହିବା ମାତ୍ରେ ସେ ଏହାର ଯଥାର୍ଥତା ଅନୁଧାବନ କଲେ ଏବଂ ଗ୍ରାମ ମଧ୍ୟରେ କୌଣସି ସ୍ଥାନରେ ରହି ପ୍ରତିଦିନ କିଛି ସମୟ ଆସି ଠାକୁରଙ୍କ ସହିତ ଦେଖା କରିଯିବାର ସଂକଳ୍ପ ସ୍ଥିର କରି କାଳୀମନ୍ଦିର ପରିତ୍ୟାଗ କଲେ ।

କାଳୀମନ୍ଦିରର ଉତ୍ତର ଦିଗରେ ଭାଗୀରଥୀ ତୀରରେ ଦକ୍ଷିଣେଶ୍ୱର ଗ୍ରାମସ୍ଥ ଦେବମଣ୍ଡଳ ଘାଟରେ ଆସି ବ୍ରାହ୍ମଣୀ ବାସ କରିବାକୁ ଲାଗିଲେ[୧] ଏବଂ ଗ୍ରାମ ମଧ୍ୟରେ ପରିଭ୍ରମଣପୂର୍ବକ ରମଣୀଗଣଙ୍କ ସହିତ ଆଳାପ କରି ଅଳ୍ପ ଦିନ ମଧ୍ୟରେ ସେମାନଙ୍କର ଶ୍ରଦ୍ଧାର ପାତ୍ରୀ ହୋଇଉଠିଲେ । ସୁତରାଂ ଏଠାରେ ତାଙ୍କର ରହିବା ଏବଂ ଭିକ୍ଷା ସମ୍ବନ୍ଧରେ କୌଣସି ଅସୁବିଧା ହେଲା ନାହିଁ ଏବଂ ଲୋକନିନ୍ଦା ଭୟରେ ଠାକୁରଙ୍କର ପବିତ୍ର ଦର୍ଶନଲାଭରୁ ତାଙ୍କୁ ଦିନେ ହେଲେ ବଞ୍ଚିତ ହେବାକୁ ପଡ଼ିଲା ନାହିଁ । ସେ ପ୍ରତିଦିନ କିଛି ସମୟ ପାଇଁ କାଳୀମନ୍ଦିର ଆସି ଠାକୁରଙ୍କ

---

୧. ହୃଦୟ କହୁଥିଲେ, ଠାକୁର ହିଁ ବ୍ରାହ୍ମଣୀଙ୍କୁ ଦେବମଣ୍ଡଳ ଘାଟରେ ରହିବାର ପରାମର୍ଶ ପ୍ରଦାନପୂର୍ବକ ମଣ୍ଡଳଙ୍କ ଘରକୁ ପଠାଇ ଦେଇଥିଲେ । ସେଠାକୁ ଯିବାମାତ୍ରେ ୰ନବୀନଚନ୍ଦ୍ର ନିୟୋଗୀଙ୍କ ଧର୍ମପରାୟଣା ପତ୍ନୀ ତାହାଙ୍କୁ ସାଦରେ ଗ୍ରହଣ କରି ଘାଟର ଚାନ୍ଦିନୀରେ ଯେତେଦିନ ଇଚ୍ଛା ରହିବାର ଅନୁମତି ସହ ଗୋଟିଏ ତକ୍ତପୋଷ, ଚାଉଳ, ଡାଲି, ଘିଅ ଓ ଅନ୍ୟାନ୍ୟ ଭୋଜନ ସାମଗ୍ରୀ ପ୍ରଦାନ କରିଥିଲେ ।

ସହିତ କଥାବାର୍ତ୍ତାରେ ସମୟ କଟାଇବାକୁ ଲାଗିଲେ ଏବଂ ଗ୍ରାମର ରମଣୀମାନଙ୍କ ନିକଟରୁ ବିଭିନ୍ନ ପ୍ରକାରର ଖାଦ୍ୟଦ୍ରବ୍ୟ ସଂଗ୍ରହପୂର୍ବକ ବେଳେ ବେଳେ ଠାକୁରଙ୍କୁ ଖୁଆଇବାରେ ଲାଗିଲେ ।[୧]

## ଠାକୁରଙ୍କୁ ଅବତାର ବୋଲି ଭୈରବୀଙ୍କର ଧାରଣା କିପରି ହୋଇଥିଲା :

ଠାକୁରଙ୍କର କଥାଶୁଣି ବ୍ରାହ୍ମଣୀ ଏହାପୂର୍ବରୁ ମନେ କରିଥିଲେ ଯେ, ଅସାଧାରଣ ଈଶ୍ୱରପ୍ରେମରେ ହିଁ ତାଙ୍କର ଅଲୌକିକଦର୍ଶନ ଓ ଅବସ୍ଥାସମୂହ ଉପସ୍ଥିତ ହୋଇଅଛି । ଏବେ ଭଗବଦାଳାପ ଯୋଗୁଁ ତାଙ୍କର ଭାବସମାଧିରେ ମୁହୁର୍ମୁହୁଃ ବାହ୍ୟଚେତନା ଲୋପ ଓ କୀର୍ତ୍ତନରେ ପରମାନନ୍ଦ ଦେଖି ତାଙ୍କର ଦୃଢ଼ ଧାରଣା ହେଲା—ଇଏ ଜଣେ ସାଧାରଣ ସାଧକ ନୁହଁନ୍ତି । ଚୈତନ୍ୟ ଚରିତାମୃତ ଓ ଭାଗବତାଦି ଗ୍ରନ୍ଥରେ ସ୍ଥାନେ ସ୍ଥାନେ ମହାପ୍ରଭୁ ଶ୍ରୀଚୈତନ୍ୟଙ୍କର ଜୀବ ଉଦ୍ଧାର ନିମିତ୍ତ ପୁନରାୟ ଶରୀର ଧାରଣପୂର୍ବକ ତାଙ୍କର ଆଗମନର ଯେଉଁ ସମସ୍ତ ସଙ୍କେତ ଦେଖିବାକୁ ମିଳେ, ଠାକୁରଙ୍କୁ ଦେଖି ବ୍ରାହ୍ମଣୀଙ୍କର ସ୍ମୃତିପଥରେ ସେସବୁ କଥା ବାରମ୍ୱାର ଉଦିତ ହେବାକୁ ଲାଗିଲା । ବିଦୁଷୀ ବ୍ରାହ୍ମଣୀ ଏସବୁ ଗ୍ରନ୍ଥରେ ଶ୍ରୀଚୈତନ୍ୟ ଓ ଶ୍ରୀନିତ୍ୟାନନ୍ଦଙ୍କ ସମ୍ବନ୍ଧରେ ଯେଉଁ ସବୁ କଥା ଲିପିବଦ୍ଧ ଦେଖିଥିଲେ, ସେସମସ୍ତ ସହିତ ଠାକୁରଙ୍କର ଆଚାର ବ୍ୟବହାର ଓ ଅଲୌକିକ ପ୍ରତ୍ୟକ୍ଷାଦି ମିଳାଇ ସୌସାଦୃଶ୍ୟ ଦେଖିବାକୁ ପାଇଲେ । ଶ୍ରୀଚୈତନ୍ୟଦେବଙ୍କ ସଦୃଶ ଭାବାବେଶରେ ସ୍ପର୍ଶ କରି ଅନ୍ୟମାନଙ୍କ ମନରେ ଧର୍ମଭାବ ଉଦ୍ଦୀପିତ କରିବାର ଶକ୍ତି ଠାକୁରଙ୍କଠାରେ ପ୍ରକାଶିତ ଥିବାର ଦେଖିଲେ । ପୁଣି ଈଶ୍ୱର-ବିରହ-ବିଧୁର ଶ୍ରୀଚୈତନ୍ୟଦେବଙ୍କର ଗାତ୍ରଦାହ ହେଲେ ଚନ୍ଦନ ଇତ୍ୟାଦି ଯେଉଁ ସମସ୍ତ ପଦାର୍ଥ ବ୍ୟବହାରରେ ଏହା ପ୍ରଶମିତ ହେବାର ଉଲ୍ଲିଖିତ ଅଛି, ଠାକୁରଙ୍କ ଗାତ୍ରଦାହ ପ୍ରଶମନ ସକାଶେ ସେସବୁ ପ୍ରୟୋଗ କରି ସେ ତଦ୍ରୂପ ଫଳ ପାଇଲେ ।[୨] ସୁତରାଂ ତାଙ୍କ ମନରେ ଏବେଠାରୁ ଦୃଢ଼ଧାରଣା ହେଲା ଯେ, ଶ୍ରୀଚୈତନ୍ୟ ଓ ଶ୍ରୀନିତ୍ୟାନନ୍ଦ ଉଭୟେ ଜୀବଉଦ୍ଧାର ନିମିତ୍ତ ଠାକୁରଙ୍କର ଶରୀର ଏବଂ ମନ ଆଶ୍ରୟକରି ପୁନର୍ବାର ପୃଥିବୀରେ ଅବତୀର୍ଣ୍ଣ ହୋଇଛନ୍ତି । ସିହଡ଼ ଗ୍ରାମକୁ ଯିବାବେଳେ ଠାକୁର ନିଜର ଦେହାଭ୍ୟନ୍ତରରୁ କିଶୋରବୟସ୍କ ଦୁଇଜଣଙ୍କୁ ଯେପରି ବାହାରେ ଆବିର୍ଭୂତ ହେବାର ଦେଖିଥିଲେ, ତାହା ପୂର୍ବରୁ ପାଠକଙ୍କୁ କୁହାଯାଇଛି ।[୩] ବ୍ରାହ୍ମଣୀ ଏହି ଦର୍ଶନ କଥା ଠାକୁରଙ୍କଠାରୁ ଶ୍ରବଣପୂର୍ବକ

---

୧. ଗୁରୁଭାଗ—ପୂର୍ବାର୍ଦ୍ଧ, ଅଷ୍ଟମ ଅଧ୍ୟାୟ ।
୨. ଗୁରୁଭାବ—ଉତ୍ତରାର୍ଦ୍ଧ, ପ୍ରଥମ ଅଧ୍ୟାୟ ।
୩. ଗୁରୁଭାବ—ଉତ୍ତରାର୍ଦ୍ଧ, ପ୍ରଥମ ଅଧ୍ୟାୟ ।

ଶ୍ରୀରାମକୃଷ୍ଣଦେବସମ୍ବନ୍ଧୀୟ ନିଜ ମୀମାଂସାରେ ଦୃଢ଼ତର ଭାବରେ ବିଶ୍ୱାସବତୀ ହୋଇ କହିଲେ, ''ଏଥର ନିତ୍ୟାନନ୍ଦଙ୍କ ଖୋଳରେ ଚୈତନ୍ୟଙ୍କର ଆବିର୍ଭାବ !''

ଉଦାସୀନ ବ୍ରାହ୍ମଣୀ ସଂସାରରେ କାହା ନିକଟରୁ କିଛି ପ୍ରତ୍ୟାଶା କରୁ ନ ଥିଲେ, ସୁତରାଂ ନିଜର ପ୍ରାଣ ଯାହା ସତ ବୋଲି ବୁଝିଅଛି, ତାହା ପ୍ରକାଶ କଲେ ଲୋକଙ୍କର ନିନ୍ଦା ବା ଉପହାସର ପାତ୍ରୀ ହେବାକୁ ପଡ଼ିବ, ଏ ଆଶଙ୍କା ମଧ୍ୟ ରଖୁ ନ ଥିଲେ । ତେଣୁ ଶ୍ରୀରାମକୃଷ୍ଣଦେବଙ୍କ ସମ୍ବନ୍ଧରେ ନିଜ ମୀମାଂସା ସେ ସମସ୍ତଙ୍କ ସମ୍ମୁଖରେ କହିବାକୁ କିଛିମାତ୍ର କୁଣ୍ଠିତା ହୋଇ ନ ଥିଲେ । ଶୁଣିଛୁ, ଏହି ସମୟରେ ମଥୁରବାବୁଙ୍କ ସହିତ ଠାକୁରେ ଦିନେ ପଞ୍ଚବଟୀତଳେ ବସିଥିଲେ । ହୃଦୟ ମଧ୍ୟ ସେମାନଙ୍କ ପାଖରେ ଥିଲେ । କଥାପ୍ରସଙ୍ଗରେ ଠାକୁର, ବ୍ରାହ୍ମଣୀ ତାଙ୍କ ସମ୍ବନ୍ଧରେ ଯେଉଁ ମୀମାଂସାରେ ଉପନୀତା ହୋଇଛନ୍ତି, ସେକଥା ମଥୁରବାବୁଙ୍କୁ କହିବାକୁ ଲାଗିଲେ । ଠାକୁରେ କହିଲେ, ''ସେ କହେ ଯେ, ଅବତାରମାନଙ୍କ ମଧ୍ୟରେ ଯାହା ସବୁ ଲକ୍ଷଣ ଥାଏ, ସେସବୁ ଏହି ଶରୀର ଓ ମନରେ ଅଛି । ତା'ର ଅନେକ ଶାସ୍ତ୍ର ବିଷୟରେ ଜ୍ଞାନ ଅଛି । ପାଖରେ ଅନେକ ପୋଥି ମଧ୍ୟ ଅଛି ।'' ମଥୁରବାବୁ ଏସବୁ ଶୁଣି ହସି ହସି କହିଲେ, ''ସେ ଯାହା କୁହନ୍ତୁ ନା କାହିଁକି, ବାବା, ଅବତାର ତ ଦଶଟିରୁ ଅଧିକ ନାହିଁ ? ତେଣୁ ତାଙ୍କର କଥା ସତ୍ୟ କିପରି ହେବ ? ତେବେ ଆପଣଙ୍କ ଉପରେ ମା' କାଳୀଙ୍କର କୃପା ହୋଇଛି, ଏକଥା ସତ୍ୟ ।''

### ମଥୁରବାବୁଙ୍କ ସମ୍ମୁଖରେ ଭୈରବୀ ଠାକୁରଙ୍କୁ ଅବତାର ବୋଲି କହିବା :

ସେମାନେ ଏହିପରି କଥୋପକଥନ କରୁଛନ୍ତି, ଏପରି ସମୟରେ ଜଣେ ସନ୍ନ୍ୟାସିନୀ ସେମାନଙ୍କ ଆଡ଼କୁ ଆଗମନ କରୁଥିବାର ଦେଖିବାକୁ ପାଇଲେ ଏବଂ ମଥୁରବାବୁ ଠାକୁରଙ୍କୁ ପଚାରିଲେ ''ଇଏ କ'ଣ ସେ ?'' ଠାକୁର ସ୍ୱୀକାର କଲେ । ସେମାନେ ଦେଖିଲେ—ବ୍ରାହ୍ମଣୀ କେଉଁଠୁ ଥାଳିଏ ମିଠାଇ ଆଣି ଶ୍ରୀବୃନ୍ଦାବନରେ ନନ୍ଦରାଣୀ ଯଶୋଦା ଯେଉଁ ଭାବରେ ଗୋପାଳକୁ ଖୁଆଇବାକୁ ସପ୍ରେମରେ ଆସୁଥିଲେ, ସେହିପରି ଭାବରେ ତନ୍ମୟ ହୋଇ ଅନନ୍ୟ ମନରେ ସେମାନଙ୍କ ଆଡ଼କୁ ଆସୁଛନ୍ତି । ନିକଟକୁ ଆସି ମଥୁରବାବୁଙ୍କୁ ଦେଖିପାରି ସେ ନିଜକୁ ସଂଯତ କଲେ ଏବଂ ଠାକୁରଙ୍କୁ ଖୁଆଇବା ନିମିତ୍ତ ହୃଦୟଙ୍କ ହାତରେ ଥାଳିଟି ଦେଲେ । ସେତେବେଳେ ମଥୁରବାବୁଙ୍କୁ ଦେଖାଇ ଠାକୁର ତାଙ୍କୁ କହିଲେ, ''ଆଗୋ ! ତୁମେ ମୋତେ ଯେଉଁ କଥା କହୁଥିଲ ମୁଁ ସେହି ସବୁକଥା ଆଜି ଏହାଙ୍କୁ କହିଲି, ସେ କହିଲେ, 'ଅବତାର ତ ଦଶଟି ମାତ୍ର, ଏହାଛଡ଼ା ଆଉ ଅବତାର ନାହାନ୍ତି' ।'' ମଥୁରବାବୁ ଏହି ଅବସରରେ ସନ୍ନ୍ୟାସିନୀଙ୍କୁ ଅଭିବାଦନ କଲେ ଏବଂ ସେ ପ୍ରକୃତରେ ଏକଥା କହିଥିଲେ ବୋଲି ସ୍ୱୀକାର କଲେ । ବ୍ରାହ୍ମଣୀ

ତାଙ୍କୁ ଆଶୀର୍ବାଦ କରି ଉତ୍ତର କଲେ, ''କାହିଁକି ? ଶ୍ରୀମଦ୍‌ଭାଗବତରେ ଚବିଶଟି ଅବତାର କଥା ଉଲ୍ଲେଖ ରହିଥିବା ପରେ ମଧ୍ୟ ଭଗବାନ ବ୍ୟାସ ଶ୍ରୀହରିଙ୍କର ଅସଂଖ୍ୟଥର ଅବତୀର୍ଣ୍ଣ ହେବାର କଥା କହି ନାହାନ୍ତି କି ? ବୈଷ୍ଣବମାନଙ୍କର ଗ୍ରନ୍ଥରେ ମଧ୍ୟ ମହାପ୍ରଭୁଙ୍କର ପୁନରାଗମନର ବିଷୟ ସ୍ପଷ୍ଟ ଭାବରେ ଉଲ୍ଲେଖ ଅଛି । ଏହାଛଡ଼ା ଶ୍ରୀଚୈତନ୍ୟଙ୍କ ସହିତ (ଶ୍ରୀରାମକୃଷ୍ଣଦେବଙ୍କୁ ଦେଖାଇ) ଏହାଙ୍କର ଶରୀର-ମନରେ ପ୍ରକାଶିତ ଲକ୍ଷଣସମୂହର ବିଶେଷ ସୌସାଦୃଶ୍ୟ ଦେଖିବାକୁ ମିଳେ ।'' ବ୍ରାହ୍ମଣୀ ଏପରି ନିଜ ପକ୍ଷ ସମର୍ଥନ କରି କହିଲେ, ଶ୍ରୀମଦ୍‌ଭାଗବତ ଓ ଗୌଡ଼ୀୟ ବୈଷ୍ଣବାଚାର୍ଯ୍ୟମାନଙ୍କର ଗ୍ରନ୍ଥରେ ସୁପଣ୍ଡିତ ବ୍ୟକ୍ତିମାନଙ୍କୁ ତାଙ୍କର କଥା ସତ୍ୟ ବୋଲି ସ୍ୱୀକାର କରିବାକୁ ହିଁ ହେବ । ଏପରି ବ୍ୟକ୍ତିଙ୍କ ନିକଟରେ ସେ ନିଜ ପକ୍ଷ ସମର୍ଥନ କରିବାକୁ ସମ୍ମତା ଅଛନ୍ତି । ବ୍ରାହ୍ମଣୀଙ୍କର ଏକଥାର କୌଣସି ଉତ୍ତର ଦେଇ ନ ପାରି ମଥୁରବାବୁ ନୀରବ ରହିଲେ ।

**ପଣ୍ଡିତ ବୈଷ୍ଣବଚରଣଙ୍କର ଦକ୍ଷିଣେଶ୍ୱର ଆସିବାର କାରଣ :**

ଠାକୁରଙ୍କ ସମ୍ବନ୍ଧରେ ବ୍ରାହ୍ମଣୀଙ୍କର ଅପୂର୍ବ ଧାରଣା କ୍ରମେ କାଳୀମନ୍ଦିରର ସମସ୍ତେ ଜାଣିବାକୁ ପାଇଲେ ଏବଂ ଏକଥା ନେଇ ଏକ ବିଷମ ଆନ୍ଦୋଳନ ହେଲା । ଏହାର ଫଳାଫଳ ଆମେ ଅନ୍ୟତ୍ର ବିସ୍ତାରିତ ଭାବରେ ବର୍ଣ୍ଣନା କରିଅଛୁ ।[୧] ଭୈରବୀ ବ୍ରାହ୍ମଣୀ ଏପରି ଠାକୁରଙ୍କୁ ସମସ୍ତଙ୍କ ସମକ୍ଷରେ ହଠାତ୍ ଦେବତାର ସମ୍ମାନ ପ୍ରଦାନ କଲେ ମଧ୍ୟ ଠାକୁରଙ୍କ ମନରେ କିଛି ମାତ୍ର ବିକାର ହୋଇ ନ ଥିଲା । କିନ୍ତୁ ଉକ୍ତ ସିଦ୍ଧାନ୍ତ ସ୍ମରଣ କରି ଶାସ୍ତ୍ରଜ୍ଞ ପଣ୍ଡିତମାନେ କିପରି ମତାମତ ପ୍ରଦାନ କରିବେ, ତାହା ଜାଣିବାକୁ ଉତ୍ସୁକ ହୋଇ ସେ ବାଳକସଦୃଶ ମଥୁରମୋହନଙ୍କୁ ଏବିଷୟରେ ବନ୍ଦୋବସ୍ତ କରିବାକୁ ଅନୁରୋଧ କରିଥିଲେ । ଏହିପରି ଅନୁରୋଧ ଫଳରେ ବୈଷ୍ଣବଚରଣପ୍ରମୁଖ ଅନେକ ପଣ୍ଡିତଙ୍କର ଦକ୍ଷିଣେଶ୍ୱର କାଳୀମନ୍ଦିରକୁ ଆଗମନ ହୋଇଥିଲା । ସେମାନଙ୍କ ନିକଟରେ ଭୈରବୀ ବ୍ରାହ୍ମଣୀ କିପରି ନିଜ ପକ୍ଷ ସମର୍ଥନ କରିଥିଲେ, ତାହା ଅନ୍ୟତ୍ର କୁହାଯାଇଅଛି ।[୨]

---

୧. ଗୁରୁଭାବ—ପୂର୍ବାର୍ଦ୍ଧ, ୫ମ ଓ ୬ଷ୍ଠ ଅଧ୍ୟାୟ ଏବଂ ଉତ୍ତରାର୍ଦ୍ଧ, ୧ମ ଅଧ୍ୟାୟ ।
୨. ଗୁରୁଭାବ—ଉତ୍ତରାର୍ଦ୍ଧ, ୧ମ ଅଧ୍ୟାୟ ।

# ଏକାଦଶ ଅଧ୍ୟାୟ

## ଠାକୁରଙ୍କର ତନ୍ତ୍ରସାଧନା

### ସାଧନାପ୍ରସୂତ ଦିବ୍ୟଦୃଷ୍ଟି ବ୍ରାହ୍ମଣୀଙ୍କୁ ଠାକୁରଙ୍କର ଅବସ୍ଥା ଯଥାଯଥ ରୂପରେ ବୁଝାଇଥିଲା :

କେବଳ ଯୁକ୍ତିତର୍କ ସାହାଯ୍ୟରେ ବ୍ରାହ୍ମଣୀ ଠାକୁରଙ୍କ ସମ୍ବନ୍ଧରେ ପୂର୍ବୋକ୍ତ ସିଦ୍ଧାନ୍ତରେ ପହଞ୍ଚି ନ ଥିଲେ । ପାଠକମାନଙ୍କର ମନେଥିବ, ଠାକୁରଙ୍କ ସହିତ ପ୍ରଥମ ସାକ୍ଷାତ କାଳରେ ସେ କହିଥିଲେ, ଶ୍ରୀରାମକୃଷ୍ଣଦେବପ୍ରମୁଖ ତିନିଜଣଙ୍କ ସହିତ ସାକ୍ଷାତ କରି ସେମାନଙ୍କର ଆଧ୍ୟାତ୍ମିକ-ଜୀବନ-ବିକାଶରେ ତାଙ୍କୁ ସହାୟତା କରିବାକୁ ହେବ । ଠାକୁରଙ୍କୁ ଦର୍ଶନ କରିବାର ବହୁ ପୂର୍ବରୁ ସେ ଏପରି ପ୍ରତ୍ୟାଦେଶ ଲାଭ କରିଥିଲେ । ତେଣୁ ବୁଝିହୁଏ ଯେ, ସାଧନାପ୍ରସୂତ ଦିବ୍ୟଦୃଷ୍ଟି ହିଁ ତାଙ୍କୁ ଦକ୍ଷିଣେଶ୍ୱର ଆନୟନପୂର୍ବକ ସ୍ୱଳ୍ପ ପରିଚୟରେ ହିଁ ଠାକୁରଙ୍କୁ ସେହିପରି ବୁଝିବାକୁ ସହାୟତା କରିଥିଲେ । ପୁଣି ଦକ୍ଷିଣେଶ୍ୱର ଆସି ତାଙ୍କ ସହିତ ଯେତେ ଘନିଷ୍ଠ ଭାବରେ ମିଶିବାକୁ ଲାଗିଲେ, ସେତେ ହିଁ ତାଙ୍କ ମନରେ ଠାକୁରଙ୍କୁ କିପରି ଭାବରେ କେତେଦୂର ସହାୟତା କରିବାକୁ ହେବ, ସେ ବିଷୟ ପୂର୍ଣ୍ଣ ପ୍ରସ୍ଫୁଟିତ ହୋଇଉଠିଲା । ଅତଏବ କେବଳ ଠାକୁରଙ୍କ ସମ୍ବନ୍ଧରେ ସାଧାରଣଙ୍କର ଭ୍ରାନ୍ତ ଧାରଣା ଦୂର କରିବା ଚେଷ୍ଟାରେ ସେ ଏବେ କାଳକ୍ଷେପଣ କରି ନ ଥିଲେ, ମାତ୍ର ଶାସ୍ତ୍ରପଥଅବଲମ୍ବନ କରି ସାଧନାସମୂହର ଅନୁଷ୍ଠାନପୂର୍ବକ ଶ୍ରୀଶ୍ରୀଜଗଦମ୍ବାଙ୍କର ପୂର୍ଣ୍ଣ ପ୍ରସନ୍ନତାର ଅଧିକାରୀ ହୋଇ ଠାକୁର ଯେପରି ଦିବ୍ୟ ଭାବରେ ସୁପ୍ରତିଷ୍ଠିତ ହେବେ, ସେବିଷୟରେ ଯତ୍ନବତୀ ହୋଇଥିଲେ ।

### ଠାକୁରଙ୍କୁ ବ୍ରାହ୍ମଣୀଙ୍କର ତନ୍ତ୍ରସାଧନା କରିବାକୁ କହିବାର କାରଣ :

ଗୁରୁ-ପରମ୍ପରାଗତ ଶାସ୍ତ୍ରନିର୍ଦ୍ଦିଷ୍ଟ ସାଧନାପଥ ଅବଲମ୍ବନ ନ କରି କେବଳ ଅନୁରାଗ-ସହାୟତାରେ ଈଶ୍ୱରଦର୍ଶନରେ ଅଗ୍ରସର ହୋଇଛନ୍ତି ବୋଲି ଠାକୁର ନିଜ ଉଚ୍ଚ ଅବସ୍ଥା ସମ୍ବନ୍ଧରେ ଧାରଣା କରିପାରୁ ନାହାନ୍ତି, ପ୍ରବୀଣା ସାଧିକା ବ୍ରାହ୍ମଣୀଙ୍କର ଏକଥା ବୁଝିବାରେ ବିଳମ୍ବ ହୋଇ ନ ଥିଲା । ନିଜର ଅପୂର୍ବ ପ୍ରତ୍ୟକ୍ଷସକଳକୁ ମସ୍ତିଷ୍କବିକୃତିର ଫଳ ବୋଲି ଏବଂ ଶାରୀରିକ ବିକାରସମୂହ ବ୍ୟାଧି ଯୋଗୁଁ ହେଉଅଛି ବୋଲି, ଠାକୁରଙ୍କର ବେଳେବେଳେ ଯେଉଁ ସନ୍ଦେହ ଉପୁଜୁଥିଲା, ସେସବୁରୁ ନିର୍ମୁକ୍ତ କରିବା ପାଇଁ ବ୍ରାହ୍ମଣୀ ତାଙ୍କୁ ତନ୍ତ୍ରୋକ୍ତ ସାଧନମାର୍ଗ ଅବଲମ୍ବନ କରିବା ପାଇଁ ଉତ୍ସାହିତ କରିଥିଲେ । କାରଣ ସାଧକ ଯେଉଁ ପ୍ରକାର କ୍ରିୟାର ଅନୁଷ୍ଠାନରେ ଯେପରି ଫଳପ୍ରାପ୍ତି ହେବେ, ତନ୍ତ୍ରରେ ସେବିଷୟରେ ଲିପିବଦ୍ଧ ଦେଖିବାକୁ ପାଇ ଏବଂ ଅନୁଷ୍ଠାନ ସାହାଯ୍ୟରେ ସ୍ୱୟଂ ଏପରି ଫଳସମୂହ ଲାଭ କରି ତାଙ୍କର ମନରେ

ଏବିଷୟରେ ଦୃଢ଼ ପ୍ରତୀତି ହେବ ଯେ, ସାଧନସହାୟରେ ମାନବ ଅନ୍ତଃରାଜ୍ୟର ଉଚ୍ଚରୁ ଉଚ୍ଚତର ଭୂମିସମୂହରେ ଯେତେ ଆରୋହଣ କରୁଥାଏ, ସେତେ ହିଁ ତାହାର ଅନନ୍ୟସାଧାରଣ ଶାରୀରିକ ଓ ମାନସିକ ଅବସ୍ଥାଗୁଡ଼ିକ ଉପଲବ୍ଧି ହେଉଥାଏ । ଫଳରେ ଏହାଦ୍ୱାରା ଠାକୁରଙ୍କ ଜୀବନରେ ଭବିଷ୍ୟତରେ ଯେତେ ଅସାଧାରଣ ପ୍ରତ୍ୟକ୍ଷସମୂହ ଆସୁ ନା କାହିଁକି, ସେଥିରେ ସେ ଆଦୌ ବିଚଳିତ ନ ହୋଇ ଏଗୁଡ଼ିକୁ ସତ୍ୟ ଓ ଅବଶ୍ୟମ୍ଭାବୀ ଜାଣି ନିଶ୍ଚିନ୍ତମନରେ ଗନ୍ତବ୍ୟ ପଥରେ ଅଗ୍ରସର ହୋଇପାରିବେ । ବ୍ରାହ୍ମଣୀ ଜାଣିଥିଲେ, ଶାସ୍ତ୍ର ଏଥିପାଇଁ ସାଧକଙ୍କୁ ଗୁରୁବାକ୍ୟ ଓ ଶାସ୍ତ୍ରବାକ୍ୟ ସହିତ ନିଜ ଜୀବନର ଅନୁଭବଗୁଡ଼ିକୁ ମିଳାଇ ତଦନୁରୂପ ହେଲା କି ନାହିଁ ଦେଖିବାକୁ କହିଛନ୍ତି ।

### ଅବତାର ବୋଲି ଜାଣି ମଧ୍ୟ ବ୍ରାହ୍ମଣୀ କିପରି ଠାକୁରଙ୍କୁ ସାଧନାରେ ସହାୟତା କରିଥିଲେ :

ଏଠାରେ ପ୍ରଶ୍ନ ହୋଇପାରେ, ଠାକୁରଙ୍କୁ ଅବତାରପୁରୁଷ ବୋଲି ଜାଣବା ପରେ ମଧ୍ୟ ବ୍ରାହ୍ମଣୀ କେଉଁ ଯୁକ୍ତି ବଳରେ ପୁଣି ତାଙ୍କୁ ସାଧନା କରାଇବାକୁ ଉଦ୍ୟତ ହେଲେ ? ଈଶ୍ୱରମହିମାସମ୍ପନ୍ନ ଅବତାରପୁରୁଷଙ୍କୁ ସର୍ବତୋଭାବରେ ପୂର୍ଣ୍ଣ ବୋଲି ସ୍ୱୀକାର କରିବାକୁ ହୁଏ, ସୁତରାଂ ତାଙ୍କ ସମ୍ବନ୍ଧରେ ସାଧନାଦି ଚେଷ୍ଟାର ଅନାବଶ୍ୟକତା ସର୍ବଦା ପ୍ରତୀୟମାନ ହୋଇଥାଏ । ଉତ୍ତରରେ କୁହାଯାଇପାରେ, ଠାକୁରଙ୍କ ସମ୍ବନ୍ଧରେ ସେହି ପ୍ରକାରର ମହିମା ବା ଐଶ୍ୱର୍ଯ୍ୟଜ୍ଞାନ ବ୍ରାହ୍ମଣୀଙ୍କର ମନରେ ସର୍ବଦା ରହିଥିଲେ, ତାଙ୍କର ମାନସିକ ଭାବ ବୋଧହୁଏ ସେପରି ହୋଇଥାନ୍ତା, କିନ୍ତୁ ତାହା ହୋଇ ନାହିଁ । ଆମେ କହିଛୁ, ପ୍ରଥମ ଦର୍ଶନରୁ ବ୍ରାହ୍ମଣୀ ଅପତ୍ୟ ଜ୍ଞାନରେ ଠାକୁରଙ୍କୁ ଭଲ ପାଇଥିଲେ ଏବଂ ଐଶ୍ୱର୍ଯ୍ୟଜ୍ଞାନକୁ ଭୁଲାଇ ପ୍ରିୟତମର କଲ୍ୟାଣ ଚେଷ୍ଟାରେ ନିଯୁକ୍ତ କରାଇବାକୁ ଭଲପାଇବା ଭଳି ଦ୍ୱିତୀୟ ପଦାର୍ଥ ସଂସାରରେ ଆଉ ନାହିଁ । ଅତଏବ ବୁଝାଯାଏ, ଅକୃତ୍ରିମ ଭଲପାଇବାର ପ୍ରେରଣାରେ ହିଁ ସେ ଠାକୁରଙ୍କୁ ସାଧନାରେ ପ୍ରବୃତ୍ତ କରାଇଥିଲେ । ଦେବ-ମାନବ, ଅବତାରପୁରୁଷମାନଙ୍କ ଜୀବନ ଆଲୋଚନାରେ ଆମେ ସର୍ବତ୍ର ଏପରି ଦେଖିବାକୁ ପାଉ । ଦେଖିବାକୁ ପାଉ, ତାଙ୍କ ସହିତ ଘନିଷ୍ଠ ଭାବରେ ସମ୍ବନ୍ଧିତ ବ୍ୟକ୍ତିମାନେ ସେମାନଙ୍କର ଅଲୌକିକ ଐଶ୍ୱର୍ଯ୍ୟଜ୍ଞାନରେ ବେଳେବେଳେ ସ୍ତମ୍ଭିତ ହେଲେ ମଧ୍ୟ ପରକ୍ଷଣରେ ଏକଥା ଭୁଲିଯାଇ ଥାଆନ୍ତି ଏବଂ ପ୍ରେମରେ ମୁଗ୍ଧ ହୋଇ ସେମାନଙ୍କୁ ଅନ୍ୟ ସାଧାରଣ ଲୋକଙ୍କ ପରି ଅପୂର୍ଣ୍ଣ ଭାବି ସେମାନଙ୍କର କଲ୍ୟାଣ ପାଇଁ ଚେଷ୍ଟା କରିଥାଆନ୍ତି ! ଅତଏବ ଅଲୌକିକ ଭାବାବେଶ ଓ ଶକ୍ତିପ୍ରକାଶ-ଦର୍ଶନରେ ବେଳେବେଳେ ସ୍ତମ୍ଭିତା ହେଲେ ମଧ୍ୟ, ତାଙ୍କ ପ୍ରତି ଠାକୁରଙ୍କ ଅକୃତ୍ରିମ ଭକ୍ତି, ବିଶ୍ୱାସ ଓ ନିର୍ଭରତା ବ୍ରାହ୍ମଣୀଙ୍କର ଅନ୍ତର୍ନିହିତ କୋମଳକଠୋର ମାତୃସ୍ନେହକୁ

ଉଦ୍‌ବେଳିତ କରି ତାଙ୍କୁ ଭୁଲାଇ ରଖିବାକୁ ଏବଂ ଠାକୁରଙ୍କୁ ସୁଖୀ କରିବା ପାଇଁ ସମସ୍ତ ବିଷୟରେ ସହାୟତା କରିବାକୁ ସର୍ବଦା ପ୍ରେରିତ କରୁଥିଲା ।

### ଠାକୁରଙ୍କୁ ସମସ୍ତ ତପସ୍ୟାର ଫଳପ୍ରଦାନ ପାଇଁ ବ୍ରାହ୍ମଣୀଙ୍କର ବ୍ୟସ୍ତତା :

ଯୋଗ୍ୟ ବ୍ୟକ୍ତିଙ୍କୁ ଶିକ୍ଷା ଦେବାର ସୁଯୋଗ ମିଳିଲେ, ଗୁରୁଙ୍କ ହୃଦୟରେ ପରମ ପରିତୃପ୍ତି ଓ ଆତ୍ମପ୍ରସାଦ ସ୍ୱତଃ ଉଦିତ ହୋଇଥାଏ । ତେଣୁ ଠାକୁରଙ୍କ ପରି ଉତ୍ତମ ଅଧିକାରୀଙ୍କୁ ଶିକ୍ଷାଦାନ କରିବାର ସୁଯୋଗ ପାଇ ବ୍ରାହ୍ମଣୀଙ୍କର ହୃଦୟ ଆନନ୍ଦରେ ପୂର୍ଣ୍ଣ ହୋଇଥିଲା । ତା ସହିତ ଠାକୁରଙ୍କ ପ୍ରତି ତାଙ୍କର ଅକୃତ୍ରିମ ବାତ୍ସଲ୍ୟଭାବ ଥିଲା—ଅତଏବ ଏହି କ୍ଷେତ୍ରରେ ବ୍ରାହ୍ମଣୀ ତାଙ୍କର ଆଜୀବନ ସ୍ୱାଧ୍ୟାୟ ଓ ତପସ୍ୟାର ଫଳ ଅଳ୍ପ ସମୟ ମଧ୍ୟରେ ତାଙ୍କୁ ଅନୁଭବ କରାଇବା ପାଇଁ ସଚେଷ୍ଟ ହେବେ, ଏହା ବିଚିତ୍ର ନୁହେଁ ।

### ଜଗଦମ୍ବାଙ୍କର ଅନୁଜ୍ଞାଲାଭରେ ଠାକୁରଙ୍କର ତନ୍ତ୍ରସାଧନାର ଅନୁଷ୍ଠାନ ତଥା ତାଙ୍କର ସାଧନାଗ୍ରହର ପରିମାଣ :

ତନ୍ତ୍ରୋକ୍ତ ସାଧନାସମୂହ ଅନୁଷ୍ଠାନ କରିବା ପୂର୍ବରୁ ଠାକୁର ସେହି ବିଷୟରେ ତାଙ୍କର କର୍ତ୍ତବ୍ୟ ସମ୍ବନ୍ଧରେ ଶ୍ରୀଶ୍ରୀଜଗଦମ୍ବାଙ୍କୁ ପଚାରି ତାଙ୍କର ଅନୁମତି ଲାଭ କରି ଏଥିରେ ପ୍ରବୃତ୍ତ ହୋଇଥିଲେ—ଏବିଷୟ ତାଙ୍କ ଶ୍ରୀମୁଖରୁ ଆମେ ବେଳେବେଳେ ଶୁଣିଛୁ । ତେଣୁ କେବଳ ବ୍ରାହ୍ମଣୀଙ୍କର ଆଗ୍ରହ ଓ ଉତ୍ତେଜନା ତାଙ୍କୁ ଏହି ସାଧନାରେ ନିଯୁକ୍ତ କରି ନାହିଁ; ସାଧନପ୍ରସୂତ ଯୋଗଦୃଷ୍ଟିପ୍ରଭାବରେ ସେ ଏବେ ମର୍ମେମର୍ମେ ବୁଝିଥିଲେ—ଶାସ୍ତ୍ରୀୟ ପ୍ରଣାଳୀ-ଅବଲମ୍ବନରେ ଶ୍ରୀଶ୍ରୀ ଜଗନ୍ମାତାଙ୍କୁ ପ୍ରତ୍ୟକ୍ଷ କରିବାର ସମୟ ଉପସ୍ଥିତ ହୋଇଛି । ଠାକୁରଙ୍କର ଏକନିଷ୍ଠ ମନ ବ୍ରାହ୍ମଣୀନିର୍ଦ୍ଦିଷ୍ଟ ସାଧନପଥରେ ବର୍ତ୍ତମାନ ପୂର୍ଣ୍ଣ ଆଗ୍ରହରେ ଧାବିତ ହୋଇଥିଲା । ସେହି ଆଗ୍ରହର ପରିମାଣ ଓ ତୀବ୍ରତା ଅନୁଭବ କରିବା ଆମମାନଙ୍କ ପରି ବ୍ୟକ୍ତିଙ୍କ ପକ୍ଷରେ ସମ୍ଭବପର ନୁହେଁ । କାରଣ ପାର୍ଥିବ ନାନା ବିଷୟରେ ପ୍ରସାରିତ ଆମମାନଙ୍କର ମନର ସେହି ଉପରତି ଓ ଏକଲକ୍ଷ୍ୟତା କେଉଁଠି ? ଅନ୍ତଃସମୁଦ୍ରର ଉର୍ମିମାଳାର ବିଚିତ୍ର ରଙ୍ଗଭଙ୍ଗରେ ଭାସମାନ ନ ରହି ତାହାର ତଳସ୍ପର୍ଶ କରିବା ପାଇଁ ସର୍ବସ୍ୱ ଛାଡ଼ି ନିମଗ୍ନ ହେବାର ଅସୀମ ସାହସ ଆମମାନଙ୍କର କେଉଁଠି ? 'ଏକାଥରକେ ବୁଡ଼ିଯା', 'ନିଜ ଭିତରେ ନିଜକୁ ବୁଡ଼େଇ ଦେ' ବୋଲି ଠାକୁର ଆମମାନଙ୍କୁ ବାରମ୍ବାର କହି ଯେପରି ଉତ୍ତେଜିତ କରୁଥିଲେ, ସେହିପରି ଜଗତର ସମସ୍ତ ପଦାର୍ଥର ଏବଂ ନିଜ ଶରୀର ପ୍ରତି ମାୟାମମତା ଛିନ୍ନ କରି ଆଧ୍ୟାତ୍ମିକତାର ଗଭୀର ଗର୍ଭରେ ବୁଡ଼ିଯିବା ପାଇଁ ଆମମାନଙ୍କର କ'ଣ ସାମର୍ଥ୍ୟ ଅଛି ? ଆମେ ଯେତେବେଳେ ଶୁଣୁ, ଠାକୁର ଅସହ୍ୟ ଯନ୍ତ୍ରଣାରେ ବ୍ୟାକୁଳ ହୋଇ 'ମା, ଦେଖା

ଦେ’ ବୋଲି ପଞ୍ଚବଟୀତଳେ ଗଙ୍ଗାକୂଳରେ ମୁଖଘର୍ଷଣ କରୁଥିଲେ ଏବଂ ଦିନପରେ ଦିନ ଗଡ଼ିଗଲେ ମଧ୍ୟ ତାଙ୍କର ଉକ୍ତ ଭାବର ବିରାମ ହେଉ ନ ଥିଲା, ସେତେବେଳେ କଥାଗୁଡ଼ିକ କର୍ଣ୍ଣରେ ପ୍ରବିଷ୍ଟ ହୁଏ ମାତ୍ର, ହୃଦୟରେ ଅନୁରୂପ ଝଙ୍କାରର କିଛି ମାତ୍ର ଉପଲବ୍ଧି ହୋଇ ନ ଥାଏ ! ହେବ ବା କାହିଁକି ? ଶ୍ରୀଶ୍ରୀଜଗନ୍ମାତା ଯେ ଯଥାର୍ଥରେ ଅଛନ୍ତି ଏବଂ ସର୍ବସ୍ୱ ଛାଡ଼ି ବ୍ୟାକୁଳ ହୃଦୟରେ ତାଙ୍କୁ ଡାକିଲେ ତାଙ୍କର ଦର୍ଶନଲାଭ ଯେ ଯଥାର୍ଥ ହିଁ ସମ୍ଭବପର—ଏକଥାରେ କ’ଣ ଆମେ ଠାକୁରଙ୍କ ପରି ସରଳଭାବରେ ବିଶ୍ୱାସ ସ୍ଥାପନ କରିପାରିଛୁ ?

ସାଧନକାଳରେ ନିଜର ମାନସିକ ଆଗ୍ରହର ପରିମାଣ ଓ ତୀବ୍ରତାର କିଞ୍ଚିତ୍ ଆଭାସ ଠାକୁର ଆମମାନଙ୍କୁ ଦିନେ କାଶୀପୁରରେ ଅବସ୍ଥାନ କାଳରେ ପ୍ରଦାନ କରି ସ୍ତମ୍ଭିତ କରିଥିଲେ; ସେତେବେଳେ ଆମେ ଯାହା ଅନୁଭବ କରିଥିଲୁ, ସେକଥା ଆମେ ପାଠକମାନଙ୍କୁ କହି କେତେଦୂର ବୁଝାଇବାରେ ସମର୍ଥ ହୋଇପାରିବୁ ତାହା କହିହେବ ନାହିଁ; ତାସତ୍ତ୍ୱେ ସେବିଷୟ ଏଠାରେ ଉଲ୍ଲେଖ କରିବୁ ।

### କାଶୀପୁର ବଗିଚାରେ ଠାକୁର ନିଜର ସାଧନାକାଳର ଆଗ୍ରହ ସମ୍ବନ୍ଧରେ ଯାହା କହିଥିଲେ :

ଈଶ୍ୱର ଲାଭ ନିମିତ୍ତ ସ୍ୱାମୀ ବିବେକାନନ୍ଦଙ୍କର ଆକୁଳ ଆଗ୍ରହ ସେତେବେଳେ ଆମେ କାଶୀପୁରରେ ସ୍ୱଚକ୍ଷୁରେ ଦେଖିଥିଲୁ । ଆଇନ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ପାଇଁ ଆବଶ୍ୟକ ଟଙ୍କା (ଫୀ) ଜମା ଦେବାକୁ ଯାଇ କିପରି ତାଙ୍କର ଚୈତନ୍ୟ ଉଦୟ ହେଲା, ଏହାର ପ୍ରେରଣାରେ ସେ ଅସ୍ଥିର ହୋଇ କିପରି ଏକବସ୍ତ୍ରରେ, ନଗ୍ନପଦରେ ଜ୍ଞାନଶୂନ୍ୟ ସଦୃଶ ସହରର ରାସ୍ତାରେ ଧାଇଁ ଧାଇଁ କାଶୀପୁରରେ ଶ୍ରୀଗୁରୁଙ୍କର ପଦପ୍ରାନ୍ତରେ ଉପସ୍ଥିତ ହେଲେ ଏବଂ ଉନ୍ମତ୍ତ ପରି ନିଜର ମନୋବେଦନା ନିବେଦନ କରି ତାଙ୍କର କୃପା ଲାଭ କଲେ, ଆହାରନିଦ୍ରା ତ୍ୟାଗପୂର୍ବକ କିପରି ସେ ଏହି ସମୟରୁ ଦିବାରାତ୍ର ଧ୍ୟାନ, ଜପ, ଭଜନ ଓ ଈଶ୍ୱର ଚର୍ଚ୍ଚାରେ କାଳକଟାଇବାକୁ ଲାଗିଲେ, ଅସୀମ ସାଧନୋତ୍ସାହରେ କିପରି ତାଙ୍କର କୋମଳ ହୃଦୟ ସେତେବେଳେ ବଜ୍ରକଠୋର ଭାବାପନ୍ନ ହୋଇ ନିଜର ମା’ ଓ ଭାଇମାନଙ୍କର ଅଶେଷ କଷ୍ଟରେ ସମ୍ପୂର୍ଣ୍ଣ ଉଦାସୀନ ଥିଲା ଏବଂ କିପରି ଶ୍ରୀଗୁରୁପ୍ରଦର୍ଶିତ ସାଧନପଥରେ ଦୃଢ଼ନିଷ୍ଠାର ସହିତ ଅଗ୍ରସର ହୋଇ ସେ ଦର୍ଶନ ପରେ ଦର୍ଶନ ଲାଭ କରୁ କରୁ ତିନି ଚାରି ମାସରେ ହିଁ ନିର୍ବିକଳ୍ପ -ସମାଧିସୁଖ ପ୍ରଥମଥର ଅନୁଭବ କଲେ—ଇତ୍ୟାଦି ସମସ୍ତ ବିଷୟ ଆମମାନଙ୍କ ଚକ୍ଷୁ ସମ୍ମୁଖରେ ଅଭିନୀତ ହୋଇ ଆମମାନଙ୍କୁ ସ୍ତମ୍ଭିତ କରିଥିଲା । ଠାକୁର ସେତେବେଳେ ପରମାନନ୍ଦରେ ସ୍ୱାମୀଜୀଙ୍କର ଏପରି ଅପୂର୍ବ ଅନୁରାଗ, ବ୍ୟାକୁଳତା ଓ ସାଧନୋତ୍ସାହର ଭୂୟସୀ ପ୍ରଶଂସା ନିତ୍ୟ କରୁଥିଲେ । ଏହି ସମୟରେ ଠାକୁର

ଦିନେ ନିଜ ଅନୁରାଗ ଓ ସାଧନୋତ୍ସାହ ସହିତ ସ୍ୱାମୀଜୀଙ୍କର ଏହି ବିଷୟରେ ତୁଳନା କରି ଏସମ୍ବନ୍ଧରେ କହିଥିଲେ, "ନରେନ୍ଦ୍ରର ଅନୁରାଗ ଉତ୍ସାହ ଅତି ଅଦ୍ଭୁତ, (ନିଜକୁ ଦେଖାଇ) ଏଠାରେ ସେତେବେଳେ (ସାଧନକାଳରେ) ସେଗୁଡ଼ିକର ଯେଉଁ ତୋଡ଼ (ବେଗ) ଆସିଥିଲା ତାହା ତୁଳନାରେ ଏହା ଅତି ସାମାନ୍ୟ — ଏହା ତା'ର ସୁଉକିଏ (ଚାରିଅଣା ବା ଏକ ଚତୁର୍ଥାଂଶ) ମଧ୍ୟ ହେବ ନାହିଁ।" ଠାକୁରଙ୍କର ଏକଥା ଆମମାନଙ୍କ ମନରେ କିପରି ଭାବ ଆଣି ଦେଇଥିଲା, ପାଠକମାନେ କେବଳ ତାହା କଳ୍ପନା ଦ୍ୱାରା ଅନୁଭବ କରିପାରିବେ ।

### ପଞ୍ଚମୁଣ୍ଡାସନ–ନିର୍ମାଣ ଓ ଚୌଷଠିପ୍ରକାର ତନ୍ତ୍ରର ସମସ୍ତ ସାଧନାର ଅନୁଷ୍ଠାନ :

ସେ ଯାହା ହେଉ, ଶ୍ରୀଶ୍ରୀଜଗଦମ୍ବାଙ୍କର ଇଙ୍ଗିତରେ ଠାକୁରେ ଏବେ ସର୍ବସ୍ୱ ଭୁଲି ସାଧନାରେ ମଗ୍ନ ହେଲେ ଏବଂ ପ୍ରଜ୍ଞାସମ୍ପନ୍ନା କର୍ମକୁଶଳା ବ୍ରାହ୍ମଣୀ ତାନ୍ତ୍ରିକକ୍ରିୟା ଉପଯୋଗୀ ସମସ୍ତ ପଦାର୍ଥ ସଂଗ୍ରହପୂର୍ବକ ସେଗୁଡ଼ିକର ପ୍ରୟୋଗ ସମ୍ବନ୍ଧରେ ଉପଦେଶ ପ୍ରଦାନ କରି ତାଙ୍କୁ ସହାୟତା କରିବା ପାଇଁ ଅଶେଷ ଯତ୍ନ କରିବାକୁ ଲାଗିଲେ । ମନୁଷ୍ୟ ପ୍ରଭୃତି ପଞ୍ଚପ୍ରାଣୀଙ୍କର ମୁଣ୍ଡ–ଖପୁରୀ[୧] ଗଙ୍ଗାହୀନ ପ୍ରଦେଶରୁ ସଯତ୍ନରେ ଆଣି ମନ୍ଦିରର ବଗିଚାର ଉତ୍ତର ସୀମାନ୍ତରେ ଅବସ୍ଥିତ ବିଲ୍ୱବୃକ୍ଷ ମୂଳେ ଏବଂ ଠାକୁରଙ୍କ ସ୍ୱହସ୍ତ–ପ୍ରୋଥିତ ପଞ୍ଚବଟୀତଳେ ସାଧନାନୁକୂଳ ଦୁଇଟି ବେଦୀ[୨] ତିଆରି ହେଲା ଏବଂ ପ୍ରୟୋଜନ ଅନୁସାରେ ଏହି ମୁଣ୍ଡ–ଆସନ

---

୧. ଇଦାନୀଂ ଶୃଣୁ ଦେବେଶି ମୁଣ୍ଡସାଧନମୁତ୍ତମମ୍ ।
ଯତ କୃତ୍ୱା ସାଧକୋ ଯାତି ମହାଦେବ୍ୟାଃ ପରଂ ପଦମ୍ ॥ ୫୧
ନର–ମହିଷ–ମାର୍ଜାର–ମୁଣ୍ଡତ୍ରୟଂ ବରାନନେ ।
ଅଥବା ପରମେଶାନି ନୃମୁଣ୍ଡତ୍ରୟମାଦରାତ୍ ॥ ୫୨
ଶିବାସର୍ପସାରମେୟବୃଷଭାଣାଂ ମହେଶ୍ୱରୀ ।
ନରମୁଣ୍ଡଂ ତଥା ମଧ୍ୟେ ପଞ୍ଚମୁଣ୍ଡାନି ହୀରିତମ୍ ॥ ୫୩
ଅଥବା ପରମେଶାନି ନରାଣାଂ ପଞ୍ଚମୁଣ୍ଡକାନ୍ ।
ତଥା ଶତଂ ସହସ୍ରଂ ବାୟୁତଂ ଲକ୍ଷଂ ତଥୈବ ଚ ॥ ୫୪
ନିୟୁତଞ୍ଚାଥବା କୋଟିଂ ନୃମୁଣ୍ଡାନ୍ ପରମେଶ୍ୱରି ।
ନରମୁଣ୍ଡଂ ସ୍ଥାପୟିତ୍ୱା ପ୍ରୋଥୟିତ୍ୱା ଧରାତଲେ ॥ ୫୫
ବିତସ୍ତିପ୍ରମିତାଂ ବେଦୀଂ ତସ୍ୟୋପରି ପ୍ରକଳ୍ପୟେତ୍ ।
ଆୟାମପ୍ରସ୍ଥତୋ ଦେବୀ ଚତୁର୍ହସ୍ତୌ ସମାଚରେତ୍ ॥ ୫୬
— ଯୋଗିନୀତନ୍ତ୍ରମ୍ — ପଞ୍ଚମପଟଲଃ

୨. ସଚରାଚର ପଞ୍ଚମୁଣ୍ଡସଂଯୁକ୍ତ ଗୋଟିଏ ବେଦୀ ନିର୍ମାଣ କରି ସାଧକଗଣ ଜପଧ୍ୟାନାଦି ଅନୁଷ୍ଠାନ କରିଥାଆନ୍ତି; ଠାକୁର କିନ୍ତୁ ଦୁଇଟି ମୁଣ୍ଡାସନର କଥା ଆମମାନଙ୍କୁ କହିଥିଲେ, ତନ୍ମଧ୍ୟରେ ବିଲ୍ୱମୂଳର ବେଦୀ ତଳେ ତିନୋଟି ନରମୁଣ୍ଡ ପୋତା ହୋଇଥିଲା ଏବଂ ପଞ୍ଚବଟୀତଳ ବେଦୀ ନିମ୍ନରେ ପାଞ୍ଚପ୍ରକାର ଜୀବଙ୍କର ପାଞ୍ଚଟି ମୁଣ୍ଡ ପୋତା ହୋଇଥିଲା । ସାଧନାରେ ସିଦ୍ଧିଲାଭ କରିବାର କିଛି କାଳ ପରେ, ଠାକୁର ମୁଣ୍ଡଖପୁରୀଗୁଡ଼ିକ ଗଙ୍ଗାଗର୍ଭରେ ନିକ୍ଷେପପୂର୍ବକ ଆସନଦ୍ୱୟ ଭାଙ୍ଗିଦେଇଥିଲେ । ସାଧନାରେ ତ୍ରିମୁଣ୍ଡାସନ ପ୍ରଶସ୍ତତର ଯୋଗୁଁ ହେଉ ଅଥବା ବିଲ୍ୱମୂଳ ସେହି

ଦୁଇଟିରୁ ଯେକୌଣସିଟି ଉପରେ ଉପବିଷ୍ଟ ହୋଇ ଜପ, ପୁରଶ୍ଚରଣ ଓ ଧ୍ୟାନ ଆଦିରେ ଠାକୁରଙ୍କର ସମୟ କଟିବାକୁ ଲାଗିଲା । କେତେ ମାସ ଦିବାରାତ୍ର କିପରି ଆସିଲା ଓ ଗଲା, ତାହା ଏହି ଅଦ୍ଭୁତ ସାଧକ ଓ ଉତ୍ତରସାଧିକାଙ୍କର[୧] ଜ୍ଞାନ ରହିଲା ନାହିଁ । ଠାକୁର କହୁଥିଲେ[୨], ବ୍ରାହ୍ମଣୀ ଦିନବେଳା ନାନାସ୍ଥାନ ପରିଭ୍ରମଣପୂର୍ବକ ତନ୍ତ୍ରନିର୍ଦ୍ଦିଷ୍ଟ ଦୁଷ୍ପ୍ରାପ୍ୟ ପଦାର୍ଥସମୂହ ସଂଗ୍ରହ କରୁଥିଲେ । ରାତ୍ରିକାଳରେ ବିଲ୍ୱମୂଳେ ବା ପଞ୍ଚବଟୀତଳେ ସମସ୍ତ ବନ୍ଦୋବସ୍ତ କରି ମୋତେ ଆହ୍ୱାନ କରୁଥିଲେ ଏବଂ ଏହି ସମସ୍ତ ପଦାର୍ଥ ସାହାଯ୍ୟରେ ଶ୍ରୀଶ୍ରୀଜଗଦମ୍ବାଙ୍କର ପୂଜା ଯଥାବିଧି ସମ୍ପନ୍ନ କରାଇ ଜପଧ୍ୟାନରେ ନିମଗ୍ନ ହେବାକୁ କହୁଥିଲେ । କିନ୍ତୁ ପୂଜା ପରେ ପ୍ରାୟ ଜପ କରିପାରୁ ନ ଥିଲି, ମନ ଏତେ ତନ୍ମୟ ହୋଇଯାଉଥିଲା ଯେ, ମାଳା ଘୂରାଇବା ବେଳେ ସମାଧିସ୍ଥ ହୋଇଯାଉଥିଲି ଏବଂ ଏହି କ୍ରିୟାଗୁଡ଼ିକର ଶାସ୍ତ୍ରନିର୍ଦ୍ଦିଷ୍ଟ ଫଳ ଯଥାଯଥ ପ୍ରତ୍ୟକ୍ଷ କରୁଥିଲି । ସେହିପରି ଏହି ସମୟରେ ଦର୍ଶନ ପରେ ଦର୍ଶନ, ଅନୁଭବ ପରେ ଅନୁଭବ, ଅଦ୍ଭୁତ ଅଦ୍ଭୁତ କେତେ ଯେ ପ୍ରତ୍ୟକ୍ଷ କରିଛି, ତା'ର ହିସାବ ନାହିଁ । ବିଷ୍ଣୁକ୍ରାନ୍ତାରେ ପ୍ରଚଳିତ ଚଉଷଠି ପ୍ରକାରର ତନ୍ତ୍ରରେ ଯେଉଁସବୁ ସାଧନର କଥା ଅଛି, ସବୁଗୁଡ଼ିକ ବ୍ରାହ୍ମଣୀ ଗୋଟିଏ ଗୋଟିଏ କରି ଅନୁଷ୍ଠାନ କରାଇଥିଲେ । କଠିନ କଠିନ ସାଧନ—ଯାହା କରିବାକୁ ଯାଇ ଅଧିକାଂଶ ସାଧକ ପଥଭ୍ରଷ୍ଟ ହୋଇ ଥାଆନ୍ତି—ମା'(ଶ୍ରୀଜଗଦମ୍ବା)ଙ୍କର କୃପାରୁ ସେସବୁଥିରେ ଉତ୍ତୀର୍ଣ୍ଣ ହୋଇଅଛି ।

## ସ୍ତ୍ରୀ–ମୂର୍ତ୍ତିରେ ଦେବୀଜ୍ଞାନସିଦ୍ଧି :

ଦିନେ ଦେଖିଲି, ବ୍ରାହ୍ମଣୀ ଗଭୀର ରାତ୍ରିରେ କେଉଁଠାରୁ ଏକ ପୂର୍ଣ୍ଣଯୌବନା ସୁନ୍ଦରୀ ରମଣୀଙ୍କୁ ଡାକି ଆଣିଥିଲା ଏବଂ ପୂଜାର ଆୟୋଜନ କରି ଦେବୀଙ୍କର ଆସନରେ ତାଙ୍କୁ ବିବସ୍ତ୍ରା କରି ଉପବେଶନ କରାଇ ମୋତେ କହିଲା, 'ବାବା, ଏହାଙ୍କୁ ଦେବୀ ବୁଦ୍ଧିରେ ପୂଜା କର !' ପୂଜା ସରିଲା ପରେ କହିଲା, ବାବା, ସାକ୍ଷାତ୍ ଜଗଜ୍ଜନନୀ ଜ୍ଞାନରେ ଏହାଙ୍କ କୋଳରେ ବସି ତନ୍ମୟଚିତ୍ତରେ ଜପ କର !' ସେତେବେଳେ ଆତଙ୍କରେ କ୍ରନ୍ଦନ କରି ମା'ଙ୍କୁ (ଶ୍ରୀଶ୍ରୀଜଗଦମ୍ବା) କହିଲି, 'ମା, ତୋ'ର ଶରଣାଗତକୁ ଏକିପରି ଆଦେଶ କରୁଛୁ ? ଦୁର୍ବଳ ସନ୍ତାନର ଏପରି ଦୁଃସାହସର ସାମର୍ଥ୍ୟ କେଉଁଠି ?' ସେହିପରି କହିବାମାତ୍ରେ ଦିବ୍ୟବଳରେ ହୃଦୟ

---

ସମୟରେ ଅଧିକ ନିର୍ଜ୍ଜନ ଥିବା ଯୋଗୁଁ ବିଶେଷ କ୍ରିୟାଗୁଡ଼ିକ ଅନୁଷ୍ଠାନରେ ସୁବିଧା ହେବ ବୋଲି ହେଉ, ଦୁଇଟି ଆସନ ନିର୍ମିତ ହୋଇଥିଲା । ବିଲ୍ୱମୂଳ ସନ୍ନିକଟରେ କମ୍ପାନୀର ବାରୁଦଖାନା ବିଦ୍ୟମାନ ଥିବାରୁ, ହୋମାଦି ପାଇଁ ସେଠାରେ ଅଗ୍ନିପ୍ରଜ୍ୱଳିତ କରିବାରେ ଅସୁବିଧା ହେବାରୁ ଦୁଇଟି ମୁଣ୍ଡାସନ ନିର୍ମିତ ହୋଇଥିଲା,—ଏଭଳି ମଧ୍ୟ ହୋଇପାରେ ।

୧. ତାନ୍ତ୍ରିକ ସାଧକଙ୍କ ମୁଖ୍ୟ ସହକାରୀଙ୍କୁ ଉତ୍ତରସାଧକ କୁହାଯାଏ ।

୨. ଠାକୁରଙ୍କ ଶ୍ରୀମୁଖରୁ ଭିନ୍ନ ଭିନ୍ନ ସମୟରେ ଯାହା ଶୁଣାଯାଇଥିଲା, ତାହା ହିଁ ଏଠାରେ ସମ୍ବନ୍ଧଭାବରେ ଦିଆହେଲା ।

ପୂର୍ଣ୍ଣ ହେଲା ଏବଂ ଦେବତାବିଷ୍ଟ ସଦୃଶ କ'ଣ କରୁଛି ନ ଜାଣି ମନ୍ତ୍ର ଉଚ୍ଚାରଣ କରୁ କରୁ ରମଣୀ କୋଳରେ ଉପବିଷ୍ଟ ହେବା ମାତ୍ରେ ସମାଧିସ୍ଥ ହୋଇଗଲି ! ଅନନ୍ତର ଯେତେବେଳେ ଜ୍ଞାନ ହେଲା ସେତେବେଳେ ବ୍ରାହ୍ମଣୀ କହିଲା, 'କ୍ରିୟା ପୂର୍ଣ୍ଣ ହୋଇଅଛି ବାବା; ଅନ୍ୟମାନେ କଷ୍ଟରେ ଧୈର୍ଯ୍ୟଧାରଣ କରି ଏହି ଅବସ୍ଥାରେ କିଛି ସମୟ ମାତ୍ର ଜପ କରି କ୍ଷାନ୍ତ ହୁଅନ୍ତି, ତୁମେ ସମ୍ପୂର୍ଣ୍ଣ ଶରୀରବୋଧଶୂନ୍ୟ ହୋଇ ସମାଧିସ୍ଥ ହୋଇପଡ଼ିଥିଲ !' ଏହା ଶୁଣି ଆଶ୍ୱସ୍ତ ହେଲି ଏବଂ ପରୀକ୍ଷାରେ ଉତ୍ତୀର୍ଣ୍ଣ କରାଇବାରୁ ମା'ଙ୍କୁ (ଶ୍ରୀଶ୍ରୀଜଗଦମ୍ବାଙ୍କୁ) କୃତଜ୍ଞତାପୂର୍ଣ୍ଣ ହୃଦୟରେ ବାରମ୍ବାର ପ୍ରଣାମ କରିବାକୁ ଲାଗିଲି ।

''ଆଉ ଦିନେ ଦେଖିଲି, ବ୍ରାହ୍ମଣୀ ଶବର ଖପୁରିରେ ମାଛ ରାନ୍ଧି ଶ୍ରୀଶ୍ରୀଜଗଦମ୍ବାଙ୍କୁ ତର୍ପଣ କଲା ଏବଂ ମୋତେ ମଧ୍ୟ ଏପରି କରାଇ ତାହା ଗ୍ରହଣ କରିବାକୁ କହିଲା । ତାହାର ଆଦେଶରେ ସେପରି କଲି, ମନରେ କୌଣସି ଘୃଣାର ଉଦୟ ହୋଇ ନ ଥିଲା ।

**ଘୃଣାତ୍ୟାଗ :**

''କିନ୍ତୁ ଯେଉଁ ଦିନ ସେ (ବ୍ରାହ୍ମଣୀ) ଗଳିତ ନରମାଂସ-ଖଣ୍ଡ ଆଣି ତର୍ପଣାନ୍ତେ ଏହାକୁ ଜିହ୍ୱାଦ୍ୱାରା ସ୍ପର୍ଶ କରିବାକୁ କହିଲା, ସେଦିନ ଘୃଣାରେ ବିଚଳିତ ହୋଇ କହି ପକାଇଲି, 'ଏହା କ'ଣ କେବେ କରି ହୁଏ ?' ଏହା ଶୁଣି ସେ କହିଲା, 'ସେ କ'ଣ ବାବା, ଏହି ଦେଖ ମୁଁ କରୁଛି !' —ଏହା କହି ସେ ଏହାକୁ ନିଜର ମୁହଁରେ ଗ୍ରହଣ କରି 'ଘୃଣା କରିବାର ନୁହେଁ' କହି ପୁନରାୟ ତାହାର କିୟଦଂଶ ମୋର ସାମନାରେ ଧରିଲା । ତାକୁ ଏପରି କରିବା ଦେଖି ଶ୍ରୀଶ୍ରୀଜଗଦମ୍ବାଙ୍କର ପ୍ରଚଣ୍ଡ ଚଣ୍ଡିକା-ମୂର୍ତ୍ତିର ଉଦ୍ଦୀପନା ହେଲା ଏବଂ 'ମା' 'ମା' କହି କହି ମୁଁ ଭାବାବିଷ୍ଟ ହୋଇପଡ଼ିଲି । ସେତେବେଳେ ବ୍ରାହ୍ମଣୀ ମୋର ମୁହଁରେ ତାହା ପ୍ରଦାନ କଲେ ମଧ୍ୟ ଘୃଣାର ଉଦୟ ହେଲା ନାହିଁ ।

**ଆନନ୍ଦାସନରେ ସିଦ୍ଧିଲାଭ, 'କୁଳାଗାର' ପୂଜା ଏବଂ ତନ୍ତ୍ରୋକ୍ତ-ସାଧନାକାଳରେ ଠାକୁରଙ୍କର ଆଚରଣ :**

''ସେହିପରି ପୂର୍ଣ୍ଣାଭିଷେକ ଗ୍ରହଣ କରାଇବା ପରଠାରୁ ବ୍ରାହ୍ମଣୀ କେତେ ପ୍ରକାରର ଅନୁଷ୍ଠାନ କରାଇଥିଲା, ତା'ର ସୀମା ନାହିଁ । ସେହି ସବୁ କଥା ସବୁ ସମୟରେ ଏବେ ମନେପଡ଼େ ନାହିଁ । ତେବେ ମନେ ଅଛି, ଯେଉଁ ଦିନ ରତିକ୍ରିୟାସକ୍ତ ନରନାରୀଙ୍କ ସମ୍ଭୋଗାନନ୍ଦ ଦର୍ଶନପୂର୍ବକ ଶିବଶକ୍ତିଙ୍କ ଲୀଳାବିଳାସଜ୍ଞାନରେ ମୁଗ୍ଧ ଏବଂ ସମାଧିସ୍ଥ ହୋଇପଡ଼ିଥିଲି, ସେହିଦିନ ବାହ୍ୟଚେତନା ଲାଭ ପରେ ବ୍ରାହ୍ମଣୀ କହିଥିଲା, 'ବାବା, ତୁମେ ଆନନ୍ଦାସନରେ ସିଦ୍ଧ ହୋଇ ଦିବ୍ୟଭାବରେ ପ୍ରତିଷ୍ଠିତ ହେଲ, ଏହା ଏହି ମତର (ବୀରଭାବର) ଶେଷ ସାଧନ !' ଏହାର କିଛିଦିନ ପରେ

ଜଣେ ଭୈରବୀଙ୍କୁ ପାଞ୍ଚସୁଉକି ଦକ୍ଷିଣା ଦାନରେ ପ୍ରସନ୍ନ କରି ତାଙ୍କ ସହାୟତାରେ କାଳୀଘର ନାଟ ମନ୍ଦିରରେ ଦିନବେଳା ସମସ୍ତଙ୍କ ସମ୍ମୁଖରେ 'କୁଳାଗାର' ପୂଜାର ଯଥାବିଧି ଅନୁଷ୍ଠାନ କରି ବୀରଭାବ ସାଧନା ସମ୍ପୂର୍ଣ୍ଣ କରିଥିଲି । ଦୀର୍ଘକାଳବ୍ୟାପୀ ତନ୍ତ୍ରୋକ୍ତ ସାଧନା ସମୟରେ ମୋର ରମଣୀମାତ୍ରଙ୍କେ ମାତୃଭାବ ଯେପରି ଅକ୍ଷୁଣ୍ଣ ଥିଲା, ତଦ୍ରୂପ ବିନ୍ଦୁମାତ୍ର 'କାରଣ' (ମଦ୍ୟ) ଗ୍ରହଣ କରିପାରି ନାହିଁ । କାରଣର ନାମ ବା ଗନ୍ଧ ମାତ୍ରେ ହିଁ ଜଗତକାରଣ ଉପଲବ୍ଧିରେ ଆତ୍ମହରା ହେଉଥିଲି ଏବଂ 'ଯୋନି' ଶବ୍ଦ ଶୁଣିବା ମାତ୍ରେ ହିଁ ଜଗତ୍‌ଯୋନିର ଉଦ୍ଦୀପନାରେ ସମାଧିସ୍ଥ ହୋଇପଡୁଥିଲି !''

### ଶ୍ରୀଶ୍ରୀଗଣପତିଙ୍କର ରମଣୀ ମାତ୍ରକେ ମାତୃଜ୍ଞାନ ସମ୍ବନ୍ଧରେ ଠାକୁରଙ୍କର ଗଳ୍ପ :

ଦକ୍ଷିଣେଶ୍ୱରରେ ଅବସ୍ଥାନ ସମୟରେ ଠାକୁର ଦିନେ ତାଙ୍କର ରମଣୀ ମାତ୍ରେ ମାତୃଭାବର ଉଲ୍ଲେଖ କରି ଗୋଟିଏ ପୌରାଣିକ କାହାଣୀ କହିଥିଲେ । ସିଦ୍ଧ-ଜ୍ଞାନୀଗଣଙ୍କର ଅଧିନାୟକ ଶ୍ରୀଶ୍ରୀଗଣପତିଦେବଙ୍କର ହୃଦୟରେ ଏପରି ମାତୃଜ୍ଞାନ କିପରି ଦୃଢ଼ ପ୍ରତିଷ୍ଠିତ ହୋଇଥିଲା, ଗଳ୍ପଟି ତାର ବିବରଣ । ଗଜତୁଣ୍ଡଧାରୀ ଲମ୍ବୋଦର ଦେବଙ୍କ ଉପରେ ଏହା ପୂର୍ବରୁ ଆମର ଭକ୍ତି-ଶ୍ରଦ୍ଧାର ଆତିଶଯ୍ୟ ନ ଥିଲା । କିନ୍ତୁ ଠାକୁରଙ୍କ ଶ୍ରୀମୁଖରୁ ଏହା ଶୁଣିବା ପରେ ଧାରଣା ହେଲା, ଶ୍ରୀଶ୍ରୀଗଣପତି ବାସ୍ତବରେ ସମସ୍ତ ଦେବତାଙ୍କର ଅଗ୍ରପୂଜା ହେବାର ଯୋଗ୍ୟ ।

କିଶୋରବୟସରେ ଗଣେଶ ଦିନେ ଖେଳୁ ଖେଳୁ ଗୋଟିଏ ବିଲେଇ ଦେଖିବାକୁ ପାଇଲେ ଏବଂ ବାଳସୁଲଭ ଚପଳତାରେ ଏହାକୁ ନାନା ପ୍ରକାର ପୀଡ଼ାଦାନ ଓ ପ୍ରହାର କରି କ୍ଷତବିକ୍ଷତ କଲେ । ବିଲେଇଟି କୌଣସି ଉପାୟରେ ପ୍ରାଣ ବଞ୍ଚାଇ ପଳାଇଗଲା ପରେ ଗଣେଶ ଶାନ୍ତ ହୋଇ ମାତା ଶ୍ରୀଶ୍ରୀ ପାର୍ବତୀଦେବୀଙ୍କ ପାଖକୁ ଆସି ଦେଖିଲେ, ଦେବୀଙ୍କର ଶ୍ରୀଅଙ୍ଗର ନାନା ସ୍ଥାନରେ ପ୍ରହାରର ଚିହ୍ନ ଦେଖାଯାଉଅଛି । ବାଳକ ଗଣପତି ମାତାଙ୍କର ଏପରି ଅବସ୍ଥା ଦେଖି ଅତ୍ୟନ୍ତ ବ୍ୟଥିତ ହୋଇ ତାର କାରଣ ପଚାରିବାରୁ ଦେବୀ ବିମର୍ଷଭାବରେ ଉତ୍ତର ଦେଲେ, ''ତୁମେ ହିଁ ମୋର ଏପରି ଦୁରବସ୍ଥାର କାରଣ ।'' ମାତୃଭକ୍ତ ଗଣେଶ ସେହି କଥାରେ ଆଶ୍ଚର୍ଯ୍ୟ ଏବଂ ଅତ୍ୟଧିକ ଦୁଃଖିତ ହୋଇ ସଜଳନୟନରେ କହିଲେ, ''ଏ କି କଥା, ମା ! ମୁଁ ତୁମକୁ କେତେବେଳେ ପ୍ରହାର କଲି ? ଏପରି ଦୁଷ୍କର୍ମ କରିଛି ବୋଲି ତ ମନେ ପଡୁ ନାହିଁ, ଯେଉଁଥିରେ ତୁମର ଅବୋଧ ବାଳକ ପାଇଁ ଅନ୍ୟ ହାତରୁ ତୁମକୁ ଏପରି ଅପମାନ ସହ୍ୟ କରିବାକୁ ହେବ ?''ଜଗନ୍ମୟୀ ଶ୍ରୀଶ୍ରୀଦେବୀ ସେତେବେଳେ ତାଙ୍କୁ କହିଲେ, ''ଭାବି ଦେଖ, କୌଣସି ଜୀବକୁ ତୁମେ ଆଜି ପ୍ରହାର କରିଛ କି ନାହିଁ ?'' ଗଣେଶ କହିଲେ, ''ହଁ କରିଛି;

ଅଳ୍ପ ସମୟ ଆଗରୁ ଗୋଟିଏ ବିଲେଇକୁ ମାରିଛି !'' ଯାହାଙ୍କର ବିଲେଇ ସେହିଁ ମାତାଙ୍କୁ ଏପରି ପ୍ରହାର କରିଥିବେ ଭାବି ଗଣେଶ କାନ୍ଦିବାକୁ ଲାଗିଲେ । ଏହାପରେ ଶ୍ରୀଶ୍ରୀଦେବୀ ଅନୁତପ୍ତ ପୁତ୍ରକୁ ସାଦରରେ ହୃଦୟରେ ଧାରଣପୂର୍ବକ କହିଲେ, ''ତା ନୁହେଁ, ବାବା, ତୁମ ସମ୍ମୁଖରେ ବିଦ୍ୟମାନ ମୋର ଏହି ଶରୀରକୁ କେହି ପ୍ରହାର କରି ନାହିଁ, କିନ୍ତୁ ମୁଁ ହିଁ ବିଲେଇ ଇତ୍ୟାଦି ଯାବତୀୟ ପ୍ରାଣୀରୂପରେ ସଂସାରରେ ବିଚରଣ କରୁଅଛି, ସେଥିପାଇଁ ତୁମର ପ୍ରହାରର ଚିହ୍ନ ମୋର ଶରୀରରେ ଦେଖୁଛ । ତୁମେ ନ ଜାଣି ଏପରି କରିଛ, ସେଥିପାଇଁ ଦୁଃଖ କର ନାହିଁ; କିନ୍ତୁ ଏବେଠାରୁ ମନେରଖିବୁ, ସ୍ତ୍ରୀ–ମୂର୍ତ୍ତିବିଶିଷ୍ଟ ସମସ୍ତ ଜୀବ ମୋର ଅଂଶରୁ ଉଦ୍‌ଭୁତ ଏବଂ ପୁଂମୂର୍ତ୍ତିଧାରୀ ଜୀବସମୂହ ତୁମର ପିତାଙ୍କର ଅଂଶରେ ଜନ୍ମ ଗ୍ରହଣ କରିଛନ୍ତି—ଶିବ ଓ ଶକ୍ତି ଭିନ୍ନ ଜଗତରେ ଅନ୍ୟ କିଛି ନାହିଁ ।'' ଗଣେଶ ମାତାଙ୍କର ଏହି କଥା ଶ୍ରଦ୍ଧାସମ୍ପନ୍ନ ହୋଇ ହୃଦୟରେ ଧାରଣ କରି ରହିଲେ ଏବଂ ବିବାହଯୋଗ୍ୟ ବୟସପ୍ରାପ୍ତ ହୋଇ ମାତାଙ୍କୁ ବିବାହ କରିବାକୁ ହେବ ଭାବି ବିବାହ ବନ୍ଧନରେ ଆବଦ୍ଧ ହେବାକୁ ଅସମ୍ମତ ହେଲେ । ଏହିପରି ଶ୍ରୀଶ୍ରୀଗଣେଶ ଚିରକାଳ ବ୍ରହ୍ମଚାରୀ ହୋଇରହିଲେ ଏବଂ ଜଗତ୍ ଶିବଶକ୍ତ୍ୟାତ୍ମକ—ଏହି କଥା ହୃଦୟରେ ସର୍ବଦା ଧାରଣା କରି ରହିଥିବାରୁ ଜ୍ଞାନୀଗଣଙ୍କ ମଧ୍ୟରେ ଅଗ୍ରଗଣ୍ୟ ହେଲେ ।

### ଗଣେଶ ଓ କାର୍ତ୍ତିକଙ୍କର ଜଗତପରିଭ୍ରମଣ ବିଷୟକ ଗଳ୍ପ :

ଉପରୋକ୍ତ ଗଳ୍ପଟି କହି ଠାକୁର ଶ୍ରୀଶ୍ରୀଗଣପତିଙ୍କର ଜ୍ଞାନ–ଗରିମାସୂଚକ ନିମ୍ନଲିଖିତ କାହାଣୀଟି ମଧ କହିଥିଲେ : କୌଣସି ଏକ ସମୟରେ ଶ୍ରୀଶ୍ରୀପାର୍ବତୀଦେବୀ ନିଜର ବହୁମୂଲ୍ୟ ରତ୍ନମାଳା ଦେଖାଇ ଗଣେଶ ଓ କାର୍ତ୍ତିକଙ୍କୁ କହିଲେ ଯେ, ଚତୁର୍ଦ୍ଦଶଭୁବନାନ୍ୱିତ ଜଗତ ପରିଭ୍ରମଣ କରି ତୁମ ଉଭୟଙ୍କ ମଧ୍ୟରୁ ଯିଏ ପ୍ରଥମେ ମୋ ପାଖରେ ପହଞ୍ଚିବ, ତାକୁ ମୁଁ ଏହି ରତ୍ନମାଳା ପ୍ରଦାନ କରିବି । ମୟୂର–ବାହନ କାର୍ତ୍ତିକେୟ ଅଗ୍ରଜଙ୍କର ଲମ୍ବୋଦର ସ୍ଥୂଳତନୁର ଭାର ଏବଂ ତଦୀୟ ବାହନ ମୂଷିକର ମନ୍ଦଗତି ସ୍ମରଣ କରି ବିଦ୍ରୂପ ହାସ୍ୟ ହସିଲେ ଏବଂ 'ରତ୍ନମାଳାଟି ମୋର ହିଁ ହୋଇଅଛି' ସ୍ଥିର କରି ମୟୂର ଉପରେ ବସି ଜଗତ ପରିଭ୍ରମଣରେ ବାହାରିଲେ । କାର୍ତ୍ତିକଙ୍କର ଯିବାର ବହୁକ୍ଷଣ ପରେ ଗଣେଶ ନିଜର ଆସନ ପରିତ୍ୟାଗ କଲେ ଏବଂ ପ୍ରଜ୍ଞାଚକ୍ଷୁ ସାହାଯ୍ୟରେ ଶିବଶକ୍ତ୍ୟାତ୍ମକ ଜଗତକୁ ଶ୍ରୀଶ୍ରୀହରପାର୍ବତୀଙ୍କ ଶରୀରରେ ଅବସ୍ଥିତ ଦେଖି ଧୀର ପଦରେ ସେମାନଙ୍କୁ ପରିକ୍ରମା ଓ ବନ୍ଦନା କରି ନିଶ୍ଚିନ୍ତ ମନରେ ଉପବିଷ୍ଟ ରହିଲେ । ଏହାପରେ କାର୍ତ୍ତିକେୟ ଫେରି ଆସିଲେ । ଶ୍ରୀଶ୍ରୀପାର୍ବତୀଦେବୀ ପ୍ରସାଦୀ ରତ୍ନମାଳାଟି ଗଣପତିଙ୍କର ପ୍ରାପ୍ୟ ବୋଲି ତାଙ୍କ ଗଳାରେ ସସ୍ନେହରେ ପିନ୍ଧାଇ ଦେଲେ ।

ଏହିପରି ଶ୍ରୀଶ୍ରୀଗଣେଶଙ୍କର ରମଣୀ ମାତ୍ରେ ମାତୃଭାବର ଉଲ୍ଲେଖ କରି ଠାକୁର କହିଲେ, ''ମୋର ମଧ୍ୟ ରମଣୀ ମାତ୍ରେ ଏପରି ଭାବ; ସେଥିପାଇଁ ବିବାହିତ ସ୍ତ୍ରୀଙ୍କ ଭିତରେ ଶ୍ରୀଶ୍ରୀଜଗଦମ୍ବାଙ୍କର ମାତୃମୂର୍ତ୍ତିର ସାକ୍ଷାତ ଦର୍ଶନ ପାଇ ପୂଜା ଓ ପାଦବନ୍ଦନା କରିଥିଲି ।''

**ତନ୍ତ୍ରସାଧନାରେ ଠାକୁରଙ୍କର ବିଶେଷତ୍ୱ :**

ରମଣୀ ମାତ୍ରେ ମାତୃଜ୍ଞାନ ସର୍ବତୋଭାବରେ ଅକ୍ଷୁଣ୍ଣ ରଖି ତନ୍ତ୍ରୋକ୍ତ ବୀରଭାବରେ ସାଧନସକଳ ଅନୁଷ୍ଠାନ କରିବା କଥା ଆମେ କୌଣସି ଯୁଗରେ କୌଣସି ସାଧକ ସମ୍ବନ୍ଧରେ ଶୁଣି ନାହୁଁ । ବୀରମତାଶ୍ରୟୀ ହୋଇ ସାଧକ ମାତ୍ରେ ଶକ୍ତି-ଗ୍ରହଣ କରି ଆସିଅଛନ୍ତି । ବୀରାଚାରୀ ସାଧକବର୍ଗଙ୍କ ମନରେ ଏହି କାରଣରୁ ଏକ ଦୃଢ଼ବଦ୍ଧ ଧାରଣା ହୋଇଅଛି, ଶକ୍ତି-ଗ୍ରହଣ (ସ୍ତ୍ରୀ-ସହକାରୀ) ନ କଲେ ସାଧନାରେ ସିଦ୍ଧି ବା ଶ୍ରୀଶ୍ରୀଜଗଦମ୍ବାଙ୍କର ପ୍ରସନ୍ନତା ଲାଭ ଏକାନ୍ତ ଅସମ୍ଭବ । ନିଜ ପାଶବ ପ୍ରବୃତ୍ତିର ଏବଂ ଏହି ଧାରଣାର ବଶବର୍ତ୍ତୀ ହୋଇ ସାଧକମାନେ ବେଳେବେଳେ ପରକୀୟାଶକ୍ତି ଗ୍ରହଣରେ ମଧ୍ୟ ବିରତ ହୋଇ ନ ଥାନ୍ତି । ଲୋକମାନେ ଏଥିପାଇଁ ତନ୍ତ୍ରଶାସ୍ତ୍ର-ନିର୍ଦ୍ଦିଷ୍ଟ ବୀରାଚାର-ମତର ନିନ୍ଦା କରି ଆସିଛନ୍ତି ।

**ଏହି ବିଶେଷତ୍ୱ ଶ୍ରୀଶ୍ରୀଜଗଦମ୍ବାଙ୍କର ଅଭିପ୍ରେତ :**

ଯୁଗାବତାର ଅଲୌକିକ ଠାକୁର ହିଁ କେବଳ ନିଜ ସମ୍ବନ୍ଧରେ ବାରମ୍ବାର ଏକଥା ଆମକୁ କହିଛନ୍ତି, ଆଜୀବନ ସେ ସ୍ୱପ୍ନରେ ମଧ୍ୟ ସ୍ତ୍ରୀସଙ୍ଗ କରିନାହାନ୍ତି । ଅତଏବ ଆଜନ୍ମ ମାତୃଭାବାବଲମ୍ବୀ ଠାକୁରଙ୍କୁ ବୀରମତର ସାଧନସମୂହ ଅନୁଷ୍ଠାନରେ ପ୍ରବୃତ୍ତ କରାଇବାରେ ଶ୍ରୀଶ୍ରୀଜଗଦମ୍ବାଙ୍କ ଗୂଢ଼ ଅଭିପ୍ରାୟ ସୁସ୍ପଷ୍ଟ ପ୍ରତିପନ୍ନ ହୁଏ ।

**ଶକ୍ତି-ଗ୍ରହଣ ନ କରି ଠାକୁରଙ୍କ ସିଦ୍ଧିଲାଭରେ ଯାହା ପ୍ରମାଣିତ ହୁଏ :**

ଠାକୁର କହୁଥିଲେ, ସାଧନ ସମୟରେ କୌଣସିଟିରେ ସାଫଲ୍ୟଲାଭ କରିବାକୁ ତାଙ୍କୁ ତିନି ଦିନରୁ ଅଧିକ ସମୟ ଲାଗି ନାହିଁ । 'ସାଧନବିଶେଷ ଗ୍ରହଣ କରି ଫଳ ପ୍ରତ୍ୟକ୍ଷ କରିବା ପାଇଁ ବ୍ୟାକୁଳ ହୃଦୟରେ ଶ୍ରୀଶ୍ରୀଜଗଦମ୍ବାଙ୍କୁ ଧରି ବସିଲେ ତିନି ଦିନରେ ଏଥିରେ ସିଦ୍ଧକାମ ହେଉଥିଲି ।'' ଶକ୍ତି-ଗ୍ରହଣ ନ କରି ବୀରାଚାରର ସାଧନକାଳରେ ତାଙ୍କର ଏପରି ଅଳ୍ପ ସମୟ ମଧ୍ୟରେ ସାଫଲ୍ୟ ଲାଭ କରିବାରୁ ଏକଥା ସ୍ପଷ୍ଟ ପ୍ରତିପନ୍ନ ହୁଏ ଯେ, ପଞ୍ଚ'ମ'କାର ବା ସ୍ତ୍ରୀଗ୍ରହଣ ଏସବୁ ଅନୁଷ୍ଠାନର ଅବଶ୍ୟକର୍ତ୍ତବ୍ୟ ଅଙ୍ଗ ନୁହେଁ । ସଂଯମରହିତ ସାଧକ ନିଜ ଦୁର୍ବଳ ପ୍ରକୃତିର ବଶବର୍ତ୍ତୀ ହୋଇ ଏପରି କରିଥାଏ । ସାଧକ ଏପରି କରି ବସିଲେ ମଧ୍ୟ

ତନ୍ତ୍ର ଯେ ତାହାକୁ ଅଭୟ ପ୍ରଦାନ କରିଛନ୍ତି ଏବଂ ପୁନଃପୁନଃ ଅଭ୍ୟାସ ଫଳରେ ଦିନେ ସେ ଦିବ୍ୟଭାବରେ ପ୍ରତିଷ୍ଠିତ ହେବେ, ଏକଥାର ଉପଦେଶ କରିଅଛନ୍ତି, ଏଥିରେ ଶାସ୍ତ୍ରର ପରମ କାରୁଣିକତ୍ୱ ହିଁ ଉପଲବ୍ଧ ହୁଏ ।

## ତନ୍ତ୍ରୋକ୍ତ ଅନୁଷ୍ଠାନଗୁଡ଼ିକର ଉଦ୍ଦେଶ୍ୟ :

ଅତଏବ ରୂପରସାଦି ଯେଉଁ ସମସ୍ତ ପଦାର୍ଥ ସାଧାରଣ ମନୁଷ୍ୟଙ୍କୁ ପ୍ରଲୋଭିତ କରି ପୁନଃପୁନଃ ଜନ୍ମମରଣ ଆଦି ଅନୁଭବ କରାଉଛି ଏବଂ ଈଶ୍ୱରଲାଭ ଏବଂ ଆତ୍ମଜ୍ଞାନର ଅଧିକାରୀ ହେବାକୁ ଦେଉ ନାହିଁ, ସଂଯମ ସାହାଯ୍ୟରେ ବାରମ୍ବାର ଉଦ୍ୟମ ଓ ଚେଷ୍ଟା ଦ୍ୱାରା ସେଗୁଡ଼ିକୁ ଈଶ୍ୱରଙ୍କର ମୂର୍ତ୍ତି ବୋଲି ଅବଧାରଣ କରିବା ପାଇଁ ସାଧକକୁ ଅଭ୍ୟସ୍ତ କରାଇବା ହିଁ ତାନ୍ତ୍ରିକ କ୍ରିୟାଗୁଡ଼ିକର ଉଦ୍ଦେଶ୍ୟ ବୋଲି ଅନୁମିତ ହୁଏ । ସାଧକର ସଂଯମ ଓ ସର୍ବଭୂତରେ ଈଶ୍ୱରଧାରଣାର ତାରତମ୍ୟ ବିଚାର କରି ହିଁ ତନ୍ତ୍ର ପଶୁ, ବୀର ଓ ଦିବ୍ୟଭାବର ଅବତାରଣା କରିଛନ୍ତି ଏବଂ ତାଙ୍କୁ ପ୍ରଥମ, ଦ୍ୱିତୀୟ ବା ତୃତୀୟ ଭାବରେ ଈଶ୍ୱର ଉପାସନାରେ ଅଗ୍ରସର ହେବାକୁ ଉପଦେଶ କରିଛନ୍ତି । କିନ୍ତୁ କଠୋର ସଂଯମକୁ ମୂଳଦୁଆସ୍ୱରୂପ ଅବଲମ୍ବନ ପୂର୍ବକ ତନ୍ତ୍ରୋକ୍ତ ସାଧନସମୂହରେ ପ୍ରବୃତ୍ତ ହେଲେ ଫଳ ପ୍ରତ୍ୟକ୍ଷ ହେବ, ନ ହେଲେ ହେବ ନାହିଁ—ଏକଥା ଲୋକମାନେ କାଳଧର୍ମରେ ପ୍ରାୟ ବିସ୍ମୃତ ହୋଇଥିଲେ ଏବଂ ସେମାନଙ୍କର ଅନୁଷ୍ଠିତ କୁକ୍ରିୟାଗୁଡ଼ିକ ପାଇଁ ତନ୍ତ୍ରଶାସ୍ତ୍ର ହିଁ ଦାୟୀ ବୋଲି ସ୍ଥିର କରି ତନ୍ତ୍ରଶାସ୍ତ୍ରର ନିନ୍ଦା କରିବାକୁ ପ୍ରବୃତ୍ତ ହୋଇଥିଲେ । ଅତଏବ ରମଣୀମାତ୍ରେ ମାତୃଭାବରେ ପୂର୍ଣ୍ଣହୃଦୟ ଠାକୁରଙ୍କର ଏହି ସକଳ ଅନୁଷ୍ଠାନର ସାଫଲ୍ୟ ଦେଖି ଯଥାର୍ଥ ସାଧକମାନେ କେଉଁ ଲକ୍ଷ୍ୟରେ ଚାଲିବାକୁ ହେବ, ତାହାର ନିର୍ଦ୍ଦେଶ ଲାଭପୂର୍ବକ ଯେପରି ଉପକୃତ ହୋଇଛନ୍ତି, ତନ୍ତ୍ର ଶାସ୍ତ୍ରର ପ୍ରାମାଣ୍ୟ ମଧ୍ୟ ସେହିପରି ସୁପ୍ରତିଷ୍ଠିତ ହୋଇ ସେହି ଶାସ୍ତ୍ର ମହିମାନ୍ୱିତ ହୋଇଅଛି ।

## ଠାକୁରଙ୍କ ତନ୍ତ୍ରସାଧନାର ଅନ୍ୟ କାରଣ :

ଠାକୁର ଏହି ସମୟରେ ତନ୍ତ୍ରୋକ୍ତ ରହସ୍ୟସାଧନସମୂହର ଅନୁଷ୍ଠାନ ପ୍ରାୟ ଦୁଇବର୍ଷରୁ ଅଧିକ କାଳ ଏକାଦିକ୍ରମରେ କରିଥିଲେ ମଧ୍ୟ, ସେସବୁର ଆଦ୍ୟୋପାନ୍ତ ବିବରଣ ଆମମାନଙ୍କ ମଧ୍ୟରେ କାହାକୁ କେବେ କହିଛନ୍ତି ବୋଲି ବୋଧହୁଏ ନାହିଁ । ତେବେ ସାଧନପଥରେ ଉତ୍ସାହିତ କରିବା ପାଇଁ ଏସବୁ କଥାର ଅଳ୍ପବହୁତ ଆମମାନଙ୍କ ମଧ୍ୟରୁ ଅନେକଙ୍କୁ ବେଳେବେଳେ କହିଛନ୍ତି, ଅଥବା ବ୍ୟକ୍ତିଗତ ପ୍ରୟୋଜନ ବୁଝି କ୍ୱଚିତ୍ କାହାକୁ କିଛି କିଛି କ୍ରିୟାର ଅନୁଷ୍ଠାନ କରାଇଛନ୍ତି । ତନ୍ତ୍ରୋକ୍ତ କ୍ରିୟାଗୁଡ଼ିକର ଅନୁଷ୍ଠାନପୂର୍ବକ ଅସାଧାରଣ ଅନୁଭବସମୂହ ସ୍ୱୟଂ ପ୍ରତ୍ୟକ୍ଷ ନ କଲେ ପରବର୍ତ୍ତୀ କାଳରେ ସମୀପାଗତ ଭିନ୍ନ ଭିନ୍ନ ପ୍ରକୃତିବିଶିଷ୍ଟ ଭକ୍ତଗଣଙ୍କର ମାନସିକ ଅବସ୍ଥା ବୁଝି ସାଧନପଥରେ ସହଜରେ ଅଗ୍ରସର କରାଇ ପାରିବେ

ନାହିଁ ବୋଲି ହିଁ ଯେ ଶ୍ରୀଶ୍ରୀଜଗନ୍ମାତା ଠାକୁରଙ୍କୁ ଏହି ସମୟରେ ଏହି ପଥ ସହିତ ସମ୍ୟକ୍ ପରିଚିତ କରାଇଥିଲେ—ଏହା ବୁଝାଯାଏ । ଶରଣାଗତ ଭକ୍ତମାନଙ୍କୁ କିପରି କେତେ ପ୍ରକାରରେ ସେ ସାଧନମାର୍ଗରେ ଅଗ୍ରସର କରାଇ ଦେଉଥିଲେ, ସେ ବିଷୟରେ ଆମେ କିଞ୍ଚିତ୍ ଆଭାସ ଆମେ ଅନ୍ୟତ୍ର[1] ଦେଇଅଛୁ; ତାହା ପାଠକଲେ ଆମ ପୂର୍ବୋକ୍ତ ବାକ୍ୟର ଯୁକ୍ତିଯୁକ୍ତତା ପାଠକମାନେ ବୁଝିପାରିବେ । ଅତଏବ ଏଠାରେ ତାହାର ପୁନରୁଲ୍ଲେଖ ନିଷ୍ପ୍ରୟୋଜନ ।

**ତନ୍ତ୍ରସାଧନା ସମୟରେ ଠାକୁରଙ୍କର ଦର୍ଶନ ଓ ଅନୁଭବସମୂହ :**

ସାଧନକ୍ରିୟାଗୁଡ଼ିକ ପୂର୍ବୋକ୍ତ ଭାବରେ କହିବା ବ୍ୟତୀତ ଠାକୁର ତାଙ୍କର ତନ୍ତ୍ରୋକ୍ତ ସାଧନସମୟର ଅନେକଗୁଡ଼ିଏ ଦର୍ଶନ ଓ ଅନୁଭବର କଥା ଆମମାନଙ୍କୁ ବେଳେବେଳେ କହୁଥିଲେ । ଆମେ ଏବେ ସେଥିରୁ କେତୋଟି ପାଠକଙ୍କୁ କହିବୁ ।

**ଶିବାନୀର ଉଚ୍ଛିଷ୍ଟ ଗ୍ରହଣ :**

ସେ କହୁଥିଲେ, ତନ୍ତ୍ରୋକ୍ତ ସାଧନ ସମୟରେ ତାଙ୍କର ପୂର୍ବ ସ୍ୱଭାବର ଆମୂଳ ପରିବର୍ତ୍ତନ ହୋଇଥିଲା । ଶ୍ରୀଶ୍ରୀଜଗଦମ୍ବା ବେଳେବେଳେ ଶିବାରୂପ ପରିଗ୍ରହ କରିଥାନ୍ତି ଶୁଣି ଏବଂ କୁକୁରକୁ ଭୈରବଙ୍କର ବାହନ ଜାଣି ସେ ସେସମୟରେ ସେମାନଙ୍କର ଉଚ୍ଛିଷ୍ଟ ଖାଦ୍ୟକୁ ପବିତ୍ର ବୋଧରେ ଗ୍ରହଣ କରୁଥିଲେ । ଏଥିରେ ତାଙ୍କ ମନରେ କୌଣସି ଦ୍ୱିଧା ହେଉ ନ ଥିଲା ।

**ନିଜକୁ ଜ୍ଞାନାଗ୍ନିବ୍ୟାପ୍ତ ଦର୍ଶନ ଓ କୁଣ୍ଡଳିନୀ-ଜାଗରଣ ଦର୍ଶନ :**

ଶ୍ରୀଶ୍ରୀଜଗଦମ୍ବାଙ୍କର ପାଦପଦ୍ମରେ ଦେହ, ମନ, ପ୍ରାଣ ଆହୂତି ପ୍ରଦାନ କରି ସେ ଏସମୟରେ ନିଜକୁ ଅନ୍ତରରେ ଏବଂ ବାହାରେ ଜ୍ଞାନାଗ୍ନି-ପରିବ୍ୟାପ୍ତ ଦେଖିଥିଲେ ।

କୁଣ୍ଡଳିନୀ ଜାଗରିତା ହୋଇ ମସ୍ତକକୁ ଉଠିବା ସମୟରେ ମୂଳାଧାରରୁ ସହସ୍ରାର ପର୍ଯ୍ୟନ୍ତ ସମସ୍ତ ପଦ୍ମ ଉର୍ଦ୍ଧ୍ୱମୁଖ ଓ ପୂର୍ଣ୍ଣପ୍ରସ୍ଫୁଟିତ ହେଉଛି ଏବଂ ସେଗୁଡ଼ିକ ଗୋଟିଏ ପରେ ଗୋଟିଏ ପ୍ରସ୍ଫୁଟିତ ହେବାମାତ୍ରେ ଅପୂର୍ବ ଅନୁଭବସମୂହ ଅନ୍ତରରେ ଉଦିତ ହେଉଛି—ଏବିଷୟ ଠାକୁର[2] ଏହି ସମୟରେ ପ୍ରତ୍ୟକ୍ଷ କରିଥିଲେ । ସେ ଦେଖିଥିଲେ—ଏକ ଜ୍ୟୋତିର୍ମୟ ଦିବ୍ୟ ପୁରୁଷମୂର୍ତ୍ତୀ ସୁଷୁମ୍ନା ମଧ୍ୟ ଦେଇ ଏହି ସମସ୍ତ ପଦ୍ମ ନିକଟରେ ଉପସ୍ଥିତ ହୋଇ ଜିହ୍ୱାଦ୍ୱାରା ସ୍ପର୍ଶକରି ଏଗୁଡ଼ିକୁ ପ୍ରସ୍ଫୁଟିତ କରାଇ ଦେଉଛନ୍ତି ।

---

୧. ଗୁରୁଭାବ—ପୂର୍ବାର୍ଦ୍ଧ ୧ମ ଓ ୨ୟ ଅଧ୍ୟାୟ ।
୨. ଗୁରୁଭାବ—ପୂର୍ବାର୍ଦ୍ଧ, ୨ୟ ଅଧ୍ୟାୟ ।

### ବ୍ରହ୍ମଯୋନି ଦର୍ଶନ :

ସ୍ୱାମୀ ବିବେକାନନ୍ଦଙ୍କର ଏକ ସମୟରେ ଧ୍ୟାନ କରିବାକୁ ବସିଲେ ହିଁ ସମ୍ମୁଖରେ ସୁବୃହତ୍ ବିଚିତ୍ର ଜ୍ୟୋତିର୍ମୟ ଗୋଟିଏ ତ୍ରିକୋଣ ସ୍ୱତଃ ଉଦିତ ହେଉଥିଲା ଏବଂ ଏହି ତ୍ରିକୋଣକୁ ଜୀବନ୍ତ ବୋଲି ତାଙ୍କର ବୋଧ ହେଉଥିଲା । ଦିନେ ଦକ୍ଷିଣେଶ୍ୱର ଆସି ଠାକୁରଙ୍କୁ ଏବିଷୟରେ କହିବାରୁ, ସେ କହିଲେ, ''ବେଶ୍, ବେଶ୍, ତୋ'ର ବ୍ରହ୍ମଯୋନିଦର୍ଶନ ହୋଇଅଛି । ବିଲ୍ୱମୂଳରେ ସାଧନ ସମୟରେ ମୁଁ ମଧ୍ୟ ସେପରି ଦେଖୁଥିଲି ଏବଂ ଏହା ପ୍ରତି ମୁହୂର୍ତ୍ତରେ ଅସଂଖ୍ୟ ବ୍ରହ୍ମାଣ୍ଡ ପ୍ରସବ କରୁଅଛି ଦେଖି ପାରୁଥିଲି ।''

### ଅନାହତ ଧ୍ୱନି ଶ୍ରବଣ :

ବ୍ରହ୍ମାଣ୍ଡ ଅନ୍ତର୍ଗତ ପୃଥକ୍ ପୃଥକ୍ ଯାବତୀୟ ଧ୍ୱନି ଏକତ୍ରିତ ହୋଇ ଏକ ବିରାଟ ପ୍ରଣବଧ୍ୱନି ପ୍ରତି ମୁହୂର୍ତ୍ତରେ ଜଗତର ସର୍ବତ୍ର ସ୍ୱତଃ ଉଦିତ ହେଉଅଛି— ଏବିଷୟ ଠାକୁର ସେହି ସମୟରେ ପ୍ରତ୍ୟକ୍ଷ କରିଥିଲେ । ଆମମାନଙ୍କ ମଧ୍ୟରୁ କେହି କେହି କହନ୍ତି, ଏହି ସମୟରେ ସେ ପଶୁ, ପକ୍ଷୀ ପ୍ରଭୃତି ମନୁଷ୍ୟେତର ଜନ୍ତୁମାନଙ୍କର ଧ୍ୱନିଗୁଡ଼ିକର ଯଥାଯଥ ଅର୍ଥବୋଧ କରିପାରୁଥିଲେ—ଏବିଷୟ ସେମାନେ ଠାକୁରଙ୍କ ଶ୍ରୀମୁଖରୁ ଶୁଣିଥିଲେ ।

### 'କୁଳାଗାର'ରେ ଦେବୀଦର୍ଶନ :

ସ୍ତ୍ରୀଯୋନି ମଧ୍ୟରେ ସେ ସେହି ସମୟରେ ଶ୍ରୀଶ୍ରୀଜଗଦମ୍ବାଙ୍କୁ ସାକ୍ଷାତ ଅଧିଷ୍ଠିତା ଦେଖିଥିଲେ ।

ଏହି ସାଧନାର ଶେଷ ସମୟ ବେଳକୁ ଠାକୁର ନିଜ ଭିତରେ ଅଣିମାଦି ସିଦ୍ଧି ବା ବିଭୂତିର ଆବିର୍ଭାବ ଅନୁଭବ କରିଥିଲେ ଏବଂ ନିଜ ଭଣଜା ହୃଦୟଙ୍କର ପରାମର୍ଶରେ ଏସମସ୍ତ ପ୍ରୟୋଗ କରିବାର ଔଚିତ୍ୟ ବିଷୟରେ ଶ୍ରୀଶ୍ରୀଜଗଦମ୍ବାଙ୍କ ନିକଟରୁ ଦିନେ ଜାଣିବାକୁ ଯାଇ ଦେଖିଥିଲେ, ଏସବୁ ବେଶ୍ୟା-ବିଷ୍ଠା ତୁଲ୍ୟ ହେୟ ଓ ସର୍ବତୋଭାବରେ ପରିତ୍ୟାଜ୍ୟ । ସେ କହୁଥିଲେ ସେପରି ଦର୍ଶନ କରିବା ପରଠାରୁ ସିଦ୍ଧିନାମ ଶୁଣିଲେ ତାଙ୍କର ଘୃଣାର ଉଦୟ ହେଉଥିଲା ।

### ଅଷ୍ଟସିଦ୍ଧି ସମ୍ବନ୍ଧରେ ସ୍ୱାମୀ ବିବେକାନନ୍ଦଙ୍କ ସହିତ ଠାକୁରଙ୍କର କଥା :

ଠାକୁରଙ୍କର ଅଣିମାଦି ସିଦ୍ଧିକାଳର ଅନୁଭବପ୍ରସଙ୍ଗରେ ଗୋଟିଏ କଥା ଆମ ମନରେ ଆସୁଅଛି । ସ୍ୱାମୀ ବିବେକାନନ୍ଦଙ୍କୁ ସେ ପଞ୍ଚବଟୀତଳେ ନିର୍ଜନରେ ଦିନେ ଡାକି କହିଥିଲେ, ''ଦେଖ୍, ମୋଠାରେ ପ୍ରସିଦ୍ଧ ଅଷ୍ଟସିଦ୍ଧି ରହିଛି; କିନ୍ତୁ ମୁଁ ଏସମସ୍ତ କେବେ ହେଲେ ପ୍ରୟୋଗ କରିବି ନାହିଁ, ଏହା ମୁଁ ବହୁପୂର୍ବରୁ ନିଶ୍ଚୟ କରିଛି—ଏଗୁଡ଼ିକ ପ୍ରୟୋଗ କରିବାର ମୋର କୌଣସି ଆବଶ୍ୟକତା ମଧ୍ୟ ଦେଖୁ

ନାହିଁ; ତୋତେ ଧର୍ମ ପ୍ରଚାର ଇତ୍ୟାଦି ଅନେକ କାର୍ଯ୍ୟ କରିବାକୁ ହେବ, ତେଣୁ ତୋତେ ଏସମସ୍ତ ଦାନ କରିବାକୁ ସ୍ଥିର କରିଛି—ତୁ ଏସମସ୍ତ ଗ୍ରହଣ କର ।'' ସ୍ୱାମୀଜୀ ଏହାର ଉତ୍ତରରେ ତାଙ୍କୁ ପଚାରିଥିଲେ, ''ମହାଶୟ, ଏସମସ୍ତ ମୋତେ ଈଶ୍ୱରଲାଭରେ କୌଣସି ପ୍ରକାର ସହାୟତା କରିବ କି ?'' ଠାକୁରଙ୍କ ଉତ୍ତରରୁ ପରେ ଯେତେବେଳେ ଜାଣିଲେ ଯେ ଏହା ଧର୍ମପ୍ରଚାର କାର୍ଯ୍ୟରେ କିଛି ସାହାଯ୍ୟ କରିପାରିଲେ ମଧ ଈଶ୍ୱରଲାଭ ନିମିତ୍ତ କୌଣସି ପ୍ରକାର ସହାୟତା କରିପାରିବ ନାହିଁ, ସେତେବେଳେ ସେ ଏସମସ୍ତ ଗ୍ରହଣ କରିବାକୁ ଅସମ୍ମତ ହେଲେ । ସ୍ୱାମୀଜୀ କହୁଥିଲେ, ଠାକୁର ତାଙ୍କର ଏହି ଆଚରଣରେ ତାଙ୍କ ଉପରେ ଅଧିକତର ପ୍ରସନ୍ନ ହୋଇଥିଲେ ।

### ମୋହିନୀମାୟା ଦର୍ଶନ :

ଶ୍ରୀଶ୍ରୀଜଗନ୍ମାତାଙ୍କର ମୋହିନୀମାୟାର ଦର୍ଶନ କରିବା ଇଚ୍ଛା ମନରେ ଆସିବାରୁ ଠାକୁର ଥରେ ଦେଖିଲେ—ଏକ ଅପୂର୍ବ ସୁନ୍ଦରୀ ସ୍ତ୍ରୀମୂର୍ତ୍ତି ଗଙ୍ଗା ଗର୍ଭରୁ ଉତ୍ଥିତା ହୋଇ ଧୀର-ପଦକ୍ଷେପରେ ପଞ୍ଚବଟୀ ଆଗମନ କଲେ; କ୍ରମେ ଦେଖିଲେ, ସେହି ରମଣୀ ପୂର୍ଣ୍ଣଗର୍ଭା; ପରେ ଦେଖିଲେ, ସେହି ରମଣୀ ତାଙ୍କର ସମ୍ମୁଖରେ ଏକ ସୁନ୍ଦର କୁମାର ପ୍ରସବ କରି ତାକୁ ଅତ୍ୟନ୍ତ ସ୍ନେହରେ ସ୍ତନ୍ୟପାନ କରାଉଛନ୍ତି; ପରକ୍ଷଣରେ ଦେଖିଲେ, ରମଣୀ କଠୋର କରାଳବଦନା ହୋଇ ଉକ୍ତ ଶିଶୁଟିକୁ ଗ୍ରାସ କରି ପୁନର୍ବାର ଗଙ୍ଗାଗର୍ଭରେ ପ୍ରବେଶ କଲେ ।

### ଷୋଡ଼ଶୀମୂର୍ତ୍ତିର ସୌନ୍ଦର୍ଯ୍ୟ :

ପୂର୍ବୋକ୍ତ ଦର୍ଶନସମୂହ ବ୍ୟତୀତ ଠାକୁର ଏହି ସମୟରେ ଦଶଭୁଜାଠାରୁ ଆରମ୍ଭ କରି ଦ୍ୱିଭୁଜା ପର୍ଯ୍ୟନ୍ତ କେତେ ଯେ ଦେବୀମୂର୍ତ୍ତି ପ୍ରତ୍ୟକ୍ଷ କରିଥିଲେ, ତାର ଇୟତା ନ ଥିଲା । ସେମାନଙ୍କ ମଧ୍ୟରୁ କୌଣସି କୌଣସି ମୂର୍ତ୍ତି ତାଙ୍କୁ ନାନା ଭାବରେ ଉପଦେଶ ପ୍ରଦାନ କରିଥିଲେ । ସେହି ମୂର୍ତ୍ତିଗୁଡ଼ିକ ସମସ୍ତେ ଅପୂର୍ବ ସୌନ୍ଦର୍ଯ୍ୟପୂର୍ଣ୍ଣ ହେଲେ ମଧ ଶ୍ରୀଶୀରାଜରାଜେଶ୍ୱରୀ ବା ଷୋଡ଼ଶୀମୂର୍ତ୍ତିର ସୌନ୍ଦର୍ଯ୍ୟ ସହିତ ସେମାନଙ୍କର ରୂପର ତୁଳନା ହୁଏ ନାହିଁ—ଏକଥା ଆମେ ତାଙ୍କୁ କହିବାର ଶୁଣିଛୁ । ସେ କହୁଥିଲେ—''ଷୋଡ଼ଶୀ ବା ତ୍ରିପୁରାମୂର୍ତ୍ତିଙ୍କର ଅଙ୍ଗରୁ ରୂପ-ସୌନ୍ଦର୍ଯ୍ୟ ଗଳିତ ହୋଇ ଚତୁର୍ଦ୍ଦିଗରେ ପତିତ ଓ ବିଚ୍ଛୁରିତ ହେବାର ଦେଖିଥିଲି ।'' ଏହା ବ୍ୟତୀତ ଭୈରବ ଆଦି ନାନା ଦେବମୂର୍ତ୍ତିମାନଙ୍କର ଦର୍ଶନ ମଧ ଠାକୁର ସେହି ସମୟରେ ପାଇଥିଲେ ।

ଅଲୌକିକ ଦର୍ଶନ ଓ ଅନୁଭବଗୁଡ଼ିକ ଠାକୁରଙ୍କ ଜୀବନରେ ତନ୍ତ୍ରସାଧନ ସମୟରେ ପ୍ରତିଦିନ ଏତେ ହେଉଥିଲା ଯେ, ସେସବୁର ସମ୍ୟକ୍ ଉଲ୍ଲେଖ କରିବା ମନୁଷ୍ୟଶକ୍ତିର ସାଧ୍ୟାତୀତ ବୋଲି ଆମମାନଙ୍କର ପ୍ରତୀତି ହୋଇଅଛି ।

### ତନ୍ତ୍ରସାଧନାରେ ସିଦ୍ଧିଲାଭରେ ଠାକୁରଙ୍କର ଦେହବୋଧରାହିତ୍ୟ ଓ ବାଳକଭାବ ପ୍ରାପ୍ତି :

ତନ୍ତ୍ରୋକ୍ତ-ସାଧନାକାଳରୁ ଠାକୁରଙ୍କର ସୁଷୁମ୍ନାଦ୍ୱାର ପୂର୍ଣ୍ଣଭାବରେ ଉନ୍ମୋଚିତ ହୋଇ ତାଙ୍କୁ ବାଳକବତ୍ ଅବସ୍ଥାରେ ସୁପ୍ରତିଷ୍ଠିତ କରିଥିବାର କଥା ଆମେ ତାଙ୍କ ଶ୍ରୀମୁଖରୁ ଶୁଣିଛୁ । ଏହି ସମୟର ଶେଷଭାଗରେ ସେ ଚେଷ୍ଟା କଲେ ମଧ୍ୟ ନିଜର ପରିହିତ ବସନ ଏବଂ ଯଜ୍ଞ ଉପବୀତ ଦେହରେ ଧାରଣ କରି ରଖିପାରୁ ନ ଥିଲେ । ଏସବୁ କେତେବେଳେ କେଉଁଠି ପଡ଼ି ଯାଉଥିଲା, ତାହା ଜାଣିପାରୁ ନ ଥିଲେ । ଶ୍ରୀଶ୍ରୀଜଗଦମ୍ବାଙ୍କ ଶ୍ରୀପାଦପଦ୍ମରେ ତାଙ୍କର ମନ, ସଦାସର୍ବଦା ନିବିଷ୍ଟ ଥିବା କାରଣରୁ ଶରୀରବୋଧରାହିତ୍ୟ ହୋଇ ଯେ ଏପରି ହେଉଥିଲା, ସେ କଥା କହିବାର ଆବଶ୍ୟକତା ନାହିଁ । ନତୁବା ସ୍ୱେଚ୍ଛାପୂର୍ବକ ସେ ଏପରି କେବେହେଲେ କରି ନାହାନ୍ତି ବା ଅନ୍ୟତ୍ର ଦୃଷ୍ଟ ପରମହଂସମାନଙ୍କ ସଦୃଶ ଉଲଗ୍ନ ରହିବାର ଅଭ୍ୟାସ କରି ନାହାନ୍ତି—ଏ ବିଷୟ ମଧ୍ୟ ଆମେ ତାଙ୍କ ଶ୍ରୀମୁଖରୁ ଅନେକଥର ଶୁଣିଛୁ । ଠାକୁର କହୁଥିଲେ, ସେହି ସମସ୍ତ ସାଧନା ଶେଷରେ ତାଙ୍କର ସମସ୍ତ ପଦାର୍ଥରେ ଅଦ୍ୱୈତ ବୁଦ୍ଧି ଏତେ ଅଧିକ ବୃଦ୍ଧିପ୍ରାପ୍ତ ହୋଇଥିଲା ଯେ, ବାଲ୍ୟକାଳରୁ ସେ ଯେଉଁସବୁ ବସ୍ତୁକୁ ହେୟ ବୋଲି ଜ୍ଞାନ କରୁଥିଲେ, ଏବେ ସେଗୁଡ଼ିକୁ ମଧ୍ୟ ମହାପବିତ୍ର ବସ୍ତୁଗୁଡ଼ିକ ସହିତ ସମାନ ଦେଖୁଥିଲେ । କହୁଥିଲେ— ''ତୁଳସୀ ଓ ସଜନାଗଛର ପତ୍ର ସମଭାବରେ ପବିତ୍ର ବୋଲି ବୋଧ ହେଉଥିଲା ।''

### ତନ୍ତ୍ରସାଧନା ସମୟରେ ଠାକୁରଙ୍କର ଅଙ୍ଗକାନ୍ତି :

ଏହି ସମୟରୁ ଆରମ୍ଭ ହୋଇ କେତେବର୍ଷ ପର୍ଯ୍ୟନ୍ତ ଠାକୁରଙ୍କର ଅଙ୍ଗକାନ୍ତି ଏତେ ଅଧିକ ହୋଇଥିଲା ଯେ, ସେ ସର୍ବଦା ଲୋକମାନଙ୍କର ଆକର୍ଷଣର ବିଷୟ ହୋଇଥିଲେ । ତାଙ୍କର ନିରଭିମାନ ଚିତ୍ତରେ ଏଥିରେ ଏତେ ବିରକ୍ତି ଉଦୟ ହେଉଥିଲା ଯେ ସେ ଉକ୍ତ ଦିବ୍ୟକାନ୍ତି ପରିହାର ନିମିତ୍ତ ଶ୍ରୀଶ୍ରୀଜଗଦମ୍ବାଙ୍କ ନିକଟରେ ଅନେକ ସମୟ ପ୍ରାର୍ଥନା କରି କହୁଥିଲେ—''ମା, ମୋର ଏହି ବାହ୍ୟରୂପର କିଛିମାତ୍ର ପ୍ରୟୋଜନ ନାହିଁ । ଏହାକୁ ନେଇ ତୁ ମୋତେ ଆନ୍ତରିକ ଆଧ୍ୟାତ୍ମିକ ରୂପ ପ୍ରଦାନ କର !'' ତାଙ୍କର ଏପରି ପ୍ରାର୍ଥନା କ୍ରମେ ପୂର୍ଣ୍ଣ ହୋଇଥିଲା, ଏହା ଆମେ ଅନ୍ୟ ସ୍ଥାନରେ ପାଠକଙ୍କୁ କହିଛୁ ।[୧]

### ଭୈରବୀ ବ୍ରାହ୍ମଣୀ ଶ୍ରୀଶ୍ରୀଯୋଗମାୟାଙ୍କର ଅଂଶ ଥିଲେ :

ତନ୍ତ୍ରୋକ୍ତ ସାଧନାରେ ବ୍ରାହ୍ମଣୀ ଯେପରି ଠାକୁରଙ୍କୁ ସହାୟତା କରିଥିଲେ, ଠାକୁର ମଧ୍ୟ ସେହିପରି ବ୍ରାହ୍ମଣୀଙ୍କର ଆଧ୍ୟାତ୍ମିକ ଜୀବନ ପୂର୍ଣ୍ଣ କରିବାକୁ ଉତ୍ତରକାଳରେ ବିଶେଷ ସହାୟତା କରିଥିଲେ । ସେ ସେପରି ନ କରିଥିଲେ

---

୧. ଗୁରୁଭାବ—ପୂର୍ବାର୍ଦ୍ଧ, ୭ମ ଅଧ୍ୟାୟ ।

ବ୍ରାହ୍ମଣୀ ଭୈରବୀ ଯେ ଦିବ୍ୟଭାବରେ ପ୍ରତିଷ୍ଠିତା ହୋଇପାରି ନ ଥାନ୍ତେ, ଏହାର ଆଭାସ ଆମେ ପାଠକଙ୍କୁ ଅନ୍ୟତ୍ର ଦେଇଛୁ ।[୧] ବ୍ରାହ୍ମଣୀଙ୍କର ନାମ ଯୋଗେଶ୍ୱରୀ ଥିଲା ଏବଂ ଠାକୁର ତାଙ୍କୁ ଶ୍ରୀଶ୍ରୀଯୋଗମାୟାଙ୍କର ଅଂଶସମ୍ଭୂତା ବୋଲି କହିଥିଲେ ।

ତନ୍ତ୍ରସାଧନାର ପ୍ରଭାବରେ ଦିବ୍ୟଶକ୍ତି ଲାଭ କରି ଠାକୁରଙ୍କର ଅନ୍ୟ ଗୋଟିଏ ବିଷୟର ଉପଲବ୍ଧି ହୋଇଥିଲା । ଶ୍ରୀଶ୍ରୀଜଗଦମ୍ବାଙ୍କର କୃପାରେ ସେ ଜାଣିପାରିଥିଲେ, ପରବର୍ତ୍ତୀ ସମୟରେ ବହୁବ୍ୟକ୍ତି ତାଙ୍କ ନିକଟରୁ ଧର୍ମଲାଭ ନିମିତ୍ତ ଉପସ୍ଥିତ ହୋଇ କୃତାର୍ଥ ହେବେ । ପରମ ଅନୁଗତ ଶ୍ରୀଯୁକ୍ତ ମଥୁରମୋହନ ଓ ହୃଦୟ ପ୍ରଭୃତିଙ୍କୁ ସେ ସେହି ଉପଲବ୍ଧି ବିଷୟ କହିଥିଲେ । ମଥୁର ସେଥିରେ କହିଥିଲେ, ''ବେଶ୍ ତ ବାବା, ସମସ୍ତେ ମିଶି ତୁମକୁ ନେଇ ଆନନ୍ଦ କରିବୁ !''

---

୧. ଗୁରୁଭାବ—ପୂର୍ବାର୍ଦ୍ଧ, ୮ମ ଅଧ୍ୟାୟ ।

# ଦ୍ୱାଦଶ ଅଧ୍ୟାୟ

## ଜଟାଧାରୀ ଓ ବାତ୍ସଲ୍ୟଭାବ–ସାଧନା

### ଠାକୁରଙ୍କର କୃପାଲାଭରେ ମଥୁରଙ୍କର ଅନୁଭବ ଏବଂ ଆଚରଣ :

୧୮୬୧ ଖ୍ରୀଷ୍ଟାବ୍ଦର ଶେଷ ଭାଗରେ ପୁଣ୍ୟବତୀ ରାଣୀ ରାସମଣିଙ୍କର ଦେହତ୍ୟାଗ ପରେ ଶ୍ରୀମତୀ ଯୋଗେଶ୍ୱରୀ (ବ୍ରାହ୍ମଣୀ ଭୈରବୀ) ଦକ୍ଷିଣେଶ୍ୱର କାଳୀମନ୍ଦିରକୁ ଆସିଥିଲେ । ଏହି ସମୟରୁ ଆରମ୍ଭ କରି ୧୮୬୩ ଖ୍ରୀଷ୍ଟାବ୍ଦର ଶେଷ ପର୍ଯ୍ୟନ୍ତ ଠାକୁର ତନ୍ତ୍ରୋକ୍ତ ସାଧନାସମୂହ ଅନୁଷ୍ଠାନ କରିଥିଲେ । ଆମେ ଏହା ପୂର୍ବରୁ କହିଛୁ ଯେ, ସେହି ସମୟର ପ୍ରାରମ୍ଭରୁ ମଥୁରବାବୁ ଠାକୁରଙ୍କର ସେବାର ପୂର୍ଣ୍ଣ ଅଧିକାର ଲାଭ କରି ଧନ୍ୟ ହୋଇଥିଲେ । ଏହାପୂର୍ବରୁ ମଥୁରବାବୁ ବାରମ୍ବାର ପରୀକ୍ଷା କରି ଠାକୁରଙ୍କର ଅଦୃଷ୍ଟପୂର୍ବ ଈଶ୍ୱରାନୁରାଗ, ସଂଯମ ଓ ତ୍ୟାଗ ବୈରାଗ୍ୟ ସମ୍ବନ୍ଧରେ ଦୃଢ଼ନିଶ୍ଚୟ ହୋଇଥିଲେ । କିନ୍ତୁ ଆଧ୍ୟାତ୍ମିକତାର ସହିତ ତାଙ୍କଠାରେ ମଝିରେ ମଝିରେ ଉନ୍ମତ୍ତତାରୂପକ ବ୍ୟାଧି ହେଉଛି କି ନାହିଁ, ସେବିଷୟରେ ସେ ସେତେବେଳେ ମଧ୍ୟ କୌଣସି ସ୍ଥିର ସିଦ୍ଧାନ୍ତରେ ଉପନୀତ ହୋଇପାରି ନ ଥିଲେ । ତନ୍ତ୍ରସାଧନାସମୟରେ ତାଙ୍କର ମନରୁ ସେହି ସଂଶୟ ସମ୍ପୂର୍ଣ୍ଣ ଭାବରେ ଦୂରୀଭୂତ ହୋଇଥିଲା । କେବଳ ସେତିକି ନୁହେଁ, ଅଲୌକିକ ବିଭୂତିସମୂହର ବାରମ୍ବାର ପ୍ରକାଶ ଦେଖିବାକୁ ପାଇ ସେସମୟରେ ତାଙ୍କ ମନରେ ଦୃଢ଼ ଧାରଣା ହୋଇଥିଲା ଯେ, ତାଙ୍କର ଇଷ୍ଟଦେବୀ ତାଙ୍କ ପ୍ରତି ପ୍ରସନ୍ନା ହୋଇ ଶ୍ରୀରାମକୃଷ୍ଣବିଗ୍ରହ ଅବଲମ୍ବନରେ ତାଙ୍କର ସେବା ଗ୍ରହଣ କରୁଛନ୍ତି, ତାଙ୍କ ସଙ୍ଗେ ସଙ୍ଗେ ରହି ତାଙ୍କୁ ସବୁ ବିଷୟରେ ରକ୍ଷା କରୁଛନ୍ତି ଏବଂ ତାଙ୍କର ପ୍ରଭୁତ୍ୱ ଓ ବିଷୟାଧିକାର ସର୍ବତୋଭାବରେ ଅକ୍ଷୁଣ୍ଣ ରଖି ତାଙ୍କୁ ଦିନକୁ ଦିନ ଅଶେଷ ମର୍ଯ୍ୟାଦା ଓ ଗୌରବ–ସମ୍ପନ୍ନ କରିତୋଳୁଛନ୍ତି । ମଥୁରମୋହନ ସେତେବେଳେ ଯେଉଁ କାର୍ଯ୍ୟରେ ହାତ ଦେଉଥିଲେ, ସେଥିରେ ହିଁ ସିଦ୍ଧକାମ ହେଉଥିଲେ ଏବଂ ଠାକୁରଙ୍କ କୃପାଲାଭରେ ନିଜକୁ ବିଶେଷ ଦୈବ ସହାୟବାନ ବୋଲି ଅନୁଭବ କରୁଥିଲେ । ସୁତରାଂ ଠାକୁରଙ୍କର ସାଧନା ଅନୁକୂଳ ଦ୍ରବ୍ୟଗୁଡ଼ିକର ସଂଗ୍ରହରେ ଏବଂ ତାଙ୍କର ଅଭିପ୍ରାୟ ଅନୁଯାୟୀ ଦେବସେବା ଓ ଅନ୍ୟାନ୍ୟ ସତ୍‌କାର୍ଯ୍ୟରେ ମଥୁରଙ୍କର ଏହି ସମୟରେ ବହୁଳ ଅର୍ଥବ୍ୟୟ କରିବା ବିଚିତ୍ର ନୁହେଁ ।

ସାଧନା ସାହାଯ୍ୟରେ ଠାକୁରଙ୍କର ଆଧ୍ୟାତ୍ମିକ ଶକ୍ତିପ୍ରକାଶ ଦିନକୁ ଦିନ ଯେତେ ବର୍ଦ୍ଧିତ ହେଉଥିଲା, ତାଙ୍କର ଶ୍ରୀପଦାଶ୍ରୟୀ ମଥୁରବାବୁଙ୍କର ସର୍ବ ବିଷୟରେ ଉତ୍ସାହ, ସାହସ ଓ ବଳ ସେତେ ହିଁ ବୃଦ୍ଧି ପାଉଥିଲା । ଈଶ୍ୱରଙ୍କ ଉପରେ ପୂର୍ଣ୍ଣ ବିଶ୍ୱାସ ସ୍ଥାପନପୂର୍ବକ ତାଙ୍କର ଆଶ୍ରୟ ଏବଂ କୃପାଲାଭରେ ଭକ୍ତ ନିଜ ହୃଦୟରେ

ଯେଉଁ ଅପୂର୍ବ ଉତ୍ସାହ ଓ ବଳସଞ୍ଚାର ଅନୁଭବ କରିଥାନ୍ତି, ମଥୁରଙ୍କର ଅନୁଭୂତି ସେହି ସମୟରେ ତାଦୃଶୀ ହୋଇଥିଲା । ତେବେ ରଜୋଗୁଣୀ ସଂସାରୀ ମଥୁରଙ୍କ ଭକ୍ତି ଠାକୁରଙ୍କ ସେବା ଏବଂ ପୁଣ୍ୟକାର୍ଯ୍ୟ କରି ହିଁ ପରିତୁଷ୍ଟ ରହୁଥିଲା, ଆଧ୍ୟାତ୍ମିକ ରାଜ୍ୟର ଅନ୍ତରରେ ପ୍ରବିଷ୍ଟ ହୋଇ ଗୂଢ଼ ରହସ୍ୟସମୂହ ପ୍ରତ୍ୟକ୍ଷ କରିବାକୁ ଅଗ୍ରସର ହେଉ ନ ଥିଲା । କିନ୍ତୁ ସେହିପରି ନ ହେଲେ ମଧ୍ୟ ମଥୁରଙ୍କ ମନ ତାଙ୍କୁ ଏକଥା ସ୍ଥିର ବୁଝାଇଥିଲା ଯେ, ଠାକୁର ହିଁ ତାଙ୍କର ବଳ, ବୁଦ୍ଧି, ଭରସା, ତାଙ୍କର ଇହକାଳ ଓ ପରକାଳର ସମ୍ବଳ ଏବଂ ତାଙ୍କର ବୈଷୟିକ ଉନ୍ନତି ଏବଂ ପଦମର୍ଯ୍ୟାଦା ଲାଭର ମୂଳ କାରଣ ।

## ମଥୁରଙ୍କର ଅନ୍ନମେରୁ ବ୍ରତାନୁଷ୍ଠାନ :

ଠାକୁରଙ୍କର କୃପାଲାଭରେ ଏବେ ମଥୁର ଯେ ନିଜକୁ ବିଶେଷ ମହିମାନ୍ୱିତ ଜ୍ଞାନ କରିଥିଲେ, ସେବିଷୟର ପରିଚୟ ଆମେ ତାଙ୍କର ଏହି ସମୟରେ ଅନୁଷ୍ଠିତ କାର୍ଯ୍ୟରୁ ଜାଣିପାରୁ । 'ରାଣୀ ରାସମଣିଙ୍କର ଜୀବନବୃତ୍ତାନ୍ତ' — ଶୀର୍ଷକ ପୁସ୍ତକରେ ଦେଖିବାକୁ ମିଳେ, ସେ ଏହି ସମୟରେ (୧୮୬୪ ଖ୍ରୀଷ୍ଟାବ୍ଦ) ବହୁବ୍ୟୟସାଧ୍ୟ ଅନ୍ନମେରୁ ବ୍ରତାନୁଷ୍ଠାନ କରିଥିଲେ । ହୃଦୟ କହୁଥିଲେ, ଏହି ବ୍ରତସମୟରେ ପ୍ରଚୁର ସ୍ୱର୍ଣ୍ଣରୌପ୍ୟାଦି ବ୍ୟତୀତ ସହସ୍ର ମହଣ ଚାଉଳ ଓ ସହସ୍ର ମହଣ ତିଳ ବ୍ରାହ୍ମଣପଣ୍ଡିତମାନଙ୍କୁ ଦାନ କରାହୋଇଥିଲା ଏବଂ ସହଚରୀ ନାମ୍ନୀ ପ୍ରସିଦ୍ଧ ଗାୟିକା କୀର୍ତ୍ତନ, ରାଜନାରାୟଣଙ୍କର ଚଣ୍ଡୀଗାନ ଓ ଯାତ୍ରା ପ୍ରଭୃତିରେ ଦକ୍ଷିଣେଶ୍ୱରର କାଳୀମନ୍ଦିର କିଛି ଦିନ ଧରି ଉତ୍ସବକ୍ଷେତ୍ରରେ ପରିଣତ ହୋଇଥିଲା । ସେହି ସମସ୍ତ ଗାୟକ-ଗାୟିକାଙ୍କର ଭକ୍ତିରସପୂର୍ଣ୍ଣ ସଙ୍ଗୀତ-ଶ୍ରବଣରେ ଠାକୁରଙ୍କୁ ମୁହୁର୍ମୁହୁଃ ଭାବ ସମାଧିରେ ମଗ୍ନ ହେବା ଦେଖି ଶ୍ରୀଯୁକ୍ତ ମଥୁର ଠାକୁରଙ୍କ ପରିତୃପ୍ତିର ତାରତମ୍ୟକୁ ସେମାନଙ୍କର ଉତ୍କର୍ଷତାର ପରିମାପକ ହିସାବରେ ଗ୍ରହଣ କରିଥିଲେ ଏବଂ ଲକ୍ଷ୍ୟ କରି ଉକ୍ତ ଗାୟକଗାୟିକାମାନଙ୍କୁ ବହୁ ମୂଲ୍ୟର ଶାଲ, ରେଶମୀ ବସ୍ତ୍ର ଓ ପ୍ରଚୁର ମୁଦ୍ରା ପାରିତୋଷିକ ପ୍ରଦାନ କରିଥିଲେ ।

## ବୈଦାନ୍ତିକ ପଣ୍ଡିତ ପଦ୍ମଲୋଚନଙ୍କ ସହିତ ଠାକୁରଙ୍କର ସାକ୍ଷାତ :

ପୂର୍ବୋକ୍ତ ବ୍ରତାନୁଷ୍ଠାନର ଅଳ୍ପ ଦିନ ପୂର୍ବରୁ ଠାକୁର ବର୍ଦ୍ଧମାନରାଜାଙ୍କର ପ୍ରଧାନ ସଭାପଣ୍ଡିତ ଶ୍ରୀଯୁକ୍ତ ପଦ୍ମଲୋଚନଙ୍କର ଗଭୀର ପାଣ୍ଡିତ୍ୟ ଓ ନିରଭିମାନିତା କଥା ଶୁଣି ତାଙ୍କୁ ଦେଖିବାକୁ ଯାଇଥିଲେ । ଠାକୁର କହୁଥିଲେ, ଅନ୍ନମେରୁବ୍ରତ ସମୟରେ ଆହୂତ ପଣ୍ଡିତସଭାରେ ପଦ୍ମଲୋଚନଙ୍କୁ ଆମନ୍ତ୍ରିତ କରି ଦାନ ଗ୍ରହଣ କରାଇବା ନିମିତ୍ତ ଶ୍ରୀଯୁକ୍ତ ମଥୁରଙ୍କର ବିଶେଷ ଆଗ୍ରହ ହୋଇଥିଲା । ଠାକୁରଙ୍କ ପ୍ରତି ତାଙ୍କର ଅଚଳା ଭକ୍ତି କଥା ଜାଣି ମଥୁରବାବୁ ଉକ୍ତ ପଣ୍ଡିତଙ୍କୁ ନିମନ୍ତ୍ରଣ କରିବାକୁ ହୃଦୟରାମଙ୍କୁ ପଠାଇଥିଲେ । ଶ୍ରୀଯୁକ୍ତ ପଦ୍ମଲୋଚନ ନାନାକାରଣରୁ ଏହି

ନିମନ୍ତ୍ରଣ ଗ୍ରହଣରେ ଅସମର୍ଥ ହୋଇଥିଲେ । ପଦ୍ମଲୋଚନ ପଣ୍ଡିତଙ୍କ କଥା ଆମେ ଗୁରୁଭାବ ଉତ୍ତରାର୍ଦ୍ଧର ଦ୍ୱିତୀୟ ଅଧ୍ୟାୟରେ ସବିସ୍ତାର ବର୍ଣ୍ଣନା କରିଛୁ ।

## ଠାକୁରଙ୍କ ବୈଷ୍ଣବମତର ସାଧନାସମୂହରେ ପ୍ରବୃତ୍ତ ହେବାର କାରଣ :

ତାନ୍ତ୍ରିକସାଧନାସମୂହ ଅନୁଷ୍ଠାନ କରିସାରି ଠାକୁର ବୈଷ୍ଣବମତର ସାଧନା ପ୍ରତି ଆକୃଷ୍ଟ ହୋଇଥିଲେ ।[୧] ଏପରି ହେବାର କେତେକ ସ୍ୱାଭାବିକ କାରଣ ଆମେ ଅନୁସନ୍ଧାନ କରି ଜାଣି ପାରିଥିଲୁ । ପ୍ରଥମତଃ—ଭକ୍ତିମତୀ ବ୍ରାହ୍ମଣୀ ବୈଷ୍ଣବତନ୍ତ୍ରୋକ୍ତ ପଞ୍ଚଭାବାଶ୍ରିତ ସାଧନାଗୁଡ଼ିକରେ ସ୍ୱୟଂ ପାରଦର୍ଶିନୀ ଥିଲେ ଏବଂ ଏହି ଭାବଗୁଡ଼ିକ ମଧ୍ୟରୁ କୌଣସି ଗୋଟିଏ ଭାବ ଆଶ୍ରୟପୂର୍ବକ ତନ୍ମୟଚିତ୍ତରେ ଅନେକକାଳ ଅବସ୍ଥାନ କରିଥିଲେ । ନନ୍ଦରାଣୀ ଯଶୋଦାଙ୍କର ଭାବରେ ତନ୍ମୟ ହୋଇ ଠାକୁରଙ୍କୁ ବାଳଗୋପାଳ ଜ୍ଞାନରେ ଭୋଜନ କରାଇବା କଥା ଆମେ ତାଙ୍କ ସମ୍ବନ୍ଧରେ ଏହାପୂର୍ବରୁ କହିଛୁ । ଅତଏବ ବୈଷ୍ଣବ-ମତ-ସାଧନାବିଷୟରେ ଠାକୁରଙ୍କୁ ତାଙ୍କର ଉତ୍ସାହ ପ୍ରଦାନ କରିବା ବିଚିତ୍ର ନୁହେଁ । ଦ୍ୱିତୀୟତଃ—ବୈଷ୍ଣବକୁଳସମ୍ଭୂତ ଠାକୁରଙ୍କର ବୈଷ୍ଣବଭାବସାଧନାରେ ଅନୁରାଗ ରହିବା ସ୍ୱାଭାବିକ । କାମାରପୁକୁର ଅଞ୍ଚଳରେ ସେହିସବୁ ସାଧନା ବିଶେଷ ଭାବରେ ପ୍ରଚଳିତ ଥିବାରୁ ଏଥିପ୍ରତି ତାଙ୍କର ଶ୍ରଦ୍ଧା ବାଲ୍ୟକାଳରୁ ଥିଲା । ତୃତୀୟତଃ ଏବଂ ସର୍ବାପେକ୍ଷା ବିଶିଷ୍ଟ କାରଣ—ଠାକୁରଙ୍କ ଭିତରେ ଆଜୀବନ ପୁରୁଷ ଓ ସ୍ତ୍ରୀ ଉଭୟବିଧ ପ୍ରକୃତିର ଅଦୃଷ୍ଟପୂର୍ବ ସମ୍ମିଳନ ଦେଖାଯାଉଥିଲା । ଉଭୟ ମଧ୍ୟରୁ ଗୋଟିକର ପ୍ରଭାବରେ ସେ ସିଂହପ୍ରତିମ ନିର୍ଭୀକ, ବିକ୍ରମଶାଳୀ, ସର୍ବବିଷୟର କାରଣ ଅନ୍ୱେଷୀ, କଠୋର ପୁରୁଷପ୍ରବରରୂପରେ ପ୍ରତିଭାତ ହେଉଥିଲେ ଏବଂ ଅନ୍ୟଟିର ପ୍ରକାଶରେ ରମଣୀସୁଲଭ କୋମଳ-କଠୋର-ସ୍ୱଭାବବିଶିଷ୍ଟ ହୋଇ ହୃଦୟ ଦ୍ୱାରା ଜଗତର ଯାବତୀୟ ବସ୍ତୁ ଓ ବ୍ୟକ୍ତିଙ୍କୁ ଦେଖୁଥିଲେ ଏବଂ ପରିମାଣ ନିର୍ଣ୍ଣୟ କରୁଥିଲେ, ଏହିପରି ଦେଖା ଯାଉଥିଲା । ଶେଷୋକ୍ତ ପ୍ରକୃତି ବଶରେ ତାଙ୍କଠାରେ କେତେଗୁଡ଼ିଏ ବିଷୟରେ ତୀବ୍ର ଅନୁରାଗ ଓ ଅନ୍ୟ କେତେଗୁଡ଼ିକରେ ସେହିପରି ବିରାଗ ସ୍ୱଭାବତଃ ଉଦୟ ହେଉଥିଲା ଏବଂ ଭାବାବେଶରେ ଅଶେଷ କ୍ଲେଶ ହାସ୍ୟମୁଖରେ ସହ୍ୟ କରି ପାରୁଥିଲେ ମଧ୍ୟ ଭାବବିହୀନ ହୋଇ ସାଧାରଣ ବ୍ୟକ୍ତିଙ୍କ ସଦୃଶ କୌଣସି କାର୍ଯ୍ୟ କରିବାକୁ ସମର୍ଥ ହୋଇ ପାରୁ ନ ଥିଲେ ।

---

୧. ଏହା ତାଙ୍କର ଦ୍ୱିତୀୟଥର ଏବଂ ଗୁରୁପଦିଷ୍ଟ ପ୍ରଣାଳୀ-ଅବଲମ୍ବନରେ ବୈଷ୍ଣବମତ ସାଧନା । ଏହା ପୂର୍ବରୁ ସେ ହୃଦୟର ଐକାନ୍ତିକ ପ୍ରେରଣାରେ ଦାସ୍ୟଭକ୍ତିର ସାଧନା କରି ସିଦ୍ଧକାମ ହୋଇଥିଲେ । —ପ୍ରଃ.

**ବାତ୍ସଲ୍ୟ ଓ ମଧୁରଭାବ ସାଧନା ପୂର୍ବରୁ ଠାକୁରଙ୍କ ଭିତରେ ସ୍ତ୍ରୀଭାବର ଉଦୟ :**

ସାଧନାକାଳର ପ୍ରଥମ ଚାରିବର୍ଷରେ ଠାକୁର ବୈଷ୍ଣବତନ୍ତ୍ରୋକ୍ତ ଶାନ୍ତ, ଦାସ୍ୟ ଏବଂ ବେଳେବେଳେ ଶ୍ରୀକୃଷ୍ଣସଖା ସୁଦାମା ଇତ୍ୟାଦି ବ୍ରଜବାଳକମାନଙ୍କ ପରି ସଖ୍ୟଭାବ ଅବଲମ୍ବନରେ ସାଧନାରେ ସ୍ୱୟଂ ପ୍ରବର୍ତ୍ତିତ ହୋଇ ସିଦ୍ଧିଲାଭ କରିଥିଲେ । ଶ୍ରୀରାମଚନ୍ଦ୍ରଗତପ୍ରାଣ ମହାବୀରଙ୍କୁ ଆଦର୍ଶରୂପରେ ଗ୍ରହଣ କରି ଦାସ୍ୟଭକ୍ତି ଅବଲମ୍ବନରେ ତାଙ୍କର କିଛିକାଳ ରହିବା ଏବଂ ଜନକନନ୍ଦିନୀ, ଜନମ-ଦୁଃଖିନୀ ସୀତାଙ୍କ ଦର୍ଶନଲାଭ ପ୍ରଭୃତି କଥା ଏହା ପୂର୍ବରୁ ଉଲ୍ଲେଖ କରାଯାଇଛି । ତେଣୁ ବୈଷ୍ଣବତନ୍ତ୍ରୋକ୍ତ ବାତ୍ସଲ୍ୟ ଓ ମଧୁର-ରସାଶ୍ରିତ ମୁଖ୍ୟ ଭାବଦୁଇଟିର ସାଧନାରେ ହିଁ ସେ ଏବେ ମନୋନିବେଶ କରିଥିଲେ । ଦେଖିବାକୁ ମିଳେ ଏହି ସମୟରେ ସେ ନିଜକୁ ଶ୍ରୀଶ୍ରୀଜଗନ୍ମାତାଙ୍କର ସଖୀ ଭାବି ହସ୍ତରେ ଚାମର ଧରି ତାଙ୍କୁ ବ୍ୟଜନ କରୁଥିଲେ, ଶରତକାଳୀନ ଦେବୀପୂଜାକାଳରେ ମଥୁରବାବୁଙ୍କ କଲିକତାସ୍ଥିତ ବାସଭବନରେ ଉପସ୍ଥିତ ରହି ରମଣୀଜନୋଚିତ ସାଜରେ ସଜ୍ଜିତ ଓ କୁଳସ୍ତ୍ରୀଗଣ-ପରିବୃତ ହୋଇ ଦେବୀଙ୍କ ଦର୍ଶନାଦି କରୁଥିଲେ ଏବଂ ସ୍ତ୍ରୀଭାବର ପ୍ରାବଲ୍ୟରେ ଅନେକ ସମୟରେ ସେ ସ୍ୱୟଂ ଯେ ପୁଂଦେହବିଶିଷ୍ଟ, ଏକଥା ବିସ୍ମୃତ ହୋଇଯାଉଥିଲେ ।[୧] ଆମେ ଯେବେ ଦକ୍ଷିଣେଶ୍ୱର ଠାକୁରଙ୍କ ନିକଟକୁ ଯିବା ଆସିବା ଆରମ୍ଭ କଲୁ, ସେତେବେଳେ ମଧ୍ୟ ତାଙ୍କଠାରେ ବେଳେବେଳେ ପ୍ରକୃତି ଭାବର ଉଦୟ ହେବା ଦେଖିଛୁ, କିନ୍ତୁ ସେତେବେଳେ ସେହି ଆବେଶ ପୂର୍ବ ସମୟ ପରି ଏତେ ଦୀର୍ଘକାଳ ବ୍ୟାପୀ ଉପସ୍ଥିତ ରହୁ ନ ଥିଲା । ଏପରି ହେବାର ଆବଶ୍ୟକତା ମଧ୍ୟ ନ ଥିଲା । କାରଣ, ସ୍ତ୍ରୀ-ପୁରୁଷ ପ୍ରକୃତିଗତ ଯାବତୀୟ ଭାବ ଏବଂ ତଦତୀତ ଅଦ୍ୱୈତଭାବମୁଖରେ ନିଜ ଇଚ୍ଛାରେ ରହିବା ଶ୍ରୀଶ୍ରୀଜଗଦମ୍ବାଙ୍କର କୃପାରେ ତାଙ୍କ ପକ୍ଷରେ ସେତେବେଳେ ସହଜ ହୋଇଯାଇଥିଲା ଏବଂ ସମୀପାଗତ ପ୍ରତ୍ୟେକ ବ୍ୟକ୍ତିଙ୍କର କଲ୍ୟାଣ ସାଧନ ପାଇଁ ଏହି ସବୁ ଭାବର ଯେଉଁଥିରେ ଯେତେକ୍ଷଣ ଇଚ୍ଛା ସେ ଅବସ୍ଥାନ କରିପାରୁଥିଲେ ।

**ଠାକୁରଙ୍କ ମନର ଗଠନ କିପରି ଥିଲା, ସେବିଷୟରେ ଆଲୋଚନା :**

ଠାକୁରଙ୍କର ସାଧନକାଳର ମହିମା ହୃଦୟଙ୍ଗମ କରିବାକୁ ହେଲେ ପାଠକମାନଙ୍କୁ କଳ୍ପନା ସାହାଯ୍ୟରେ ପ୍ରଥମେ ଅନୁଧ୍ୟାନ କରି ଦେଖିବାକୁ ହେବ, ତାଙ୍କର ମନ ଜନ୍ମାବଧି କିପ୍ରକାର ଅସାଧାରଣ ଧାତୁରେ ଗଠିତ ହୋଇ ସଂସାରରେ କିପରି ନିତ୍ୟ ବିଚରଣ କରୁଥିଲା ଏବଂ ଆଧ୍ୟାତ୍ମିକ ରାଜ୍ୟର ପ୍ରବଳ ବାତ୍ୟାଭିମୁଖରେ ପତିତ ହୋଇ ବିଗତ ଆଠ ବର୍ଷରେ ଏଥିରେ କିପରି ପରିବର୍ତ୍ତନ ସବୁ ଉପସ୍ଥିତ

---

୧. ଗୁରୁଭାବ—ପୂର୍ବାର୍ଦ୍ଧ, ୭ମ ଅଧ୍ୟାୟ ।

ହେଉଥିଲା । ଆମେ ତାଙ୍କ ନିଜ ମୁଖରୁ ଶୁଣିଛୁ, ୧୮୫୬ ଖ୍ରୀଷ୍ଟାବ୍ଦରେ ଦକ୍ଷିଣେଶ୍ୱର କାଳୀମନ୍ଦିରକୁ ଯେତେବେଳେ ସେ ପ୍ରଥମେ ପଦାର୍ପଣ କଲେ ଏବଂ ଏହାପରେ ମଧ୍ୟ କିଛିଦିନ ପର୍ଯ୍ୟନ୍ତ ସେ ସରଳ ଭାବରେ ବିଶ୍ୱାସ କରି ଆସୁଥିଲେ ଯେ, ତାଙ୍କର ପିତୃପିତାମହଗଣ ଯେପରି ସତ୍ ପଥରେ ରହି ସଂସାରଧର୍ମ ପାଳନ କରି ଆସିଛନ୍ତି, ସେ ମଧ୍ୟ ସେପରି କରିବେ । ଆଜନ୍ମ ଅଭିମାନରହିତ ଠାକୁରଙ୍କ ମନରେ ଏକଥା ଥରେ ମଧ୍ୟ ଉଦିତ ହୋଇ ନାହିଁ ଯେ, ସେ ସଂସାରର ଅନ୍ୟଲୋକଙ୍କଠାରୁ କୌଣସି ଅଂଶରେ ବଡ଼ ବା ବିଶେଷ ଗୁଣସମ୍ପନ୍ନ । କିନ୍ତୁ କାର୍ଯ୍ୟ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇ ତାଙ୍କର ଅସାଧାରଣ ବିଶେଷତ୍ୱ ପ୍ରତିକାର୍ଯ୍ୟରେ ପ୍ରକାଶିତ ହେବାକୁ ଲାଗିଲା । ଏକ ଅପୂର୍ବ ଦୈବଶକ୍ତି ଯେପରି ପ୍ରତିକ୍ଷଣ ତାଙ୍କ ସଙ୍ଗେ ସଙ୍ଗେ ରହି ସଂସାରର ରୂପରସାଦି ପ୍ରତ୍ୟେକ ବିଷୟର ଅନିତ୍ୟତ୍ୱ ଓ ଅକିଞ୍ଚିତ୍କରତ୍ୱ ସ୍ପଷ୍ଟ ଭାବରେ ଚିତ୍ରିତ କରି ତାଙ୍କର ନୟନ ସମ୍ମୁଖରେ ଧାରଣପୂର୍ବକ ତାଙ୍କୁ ସର୍ବଦା ବିପରୀତ ମାର୍ଗରେ ଚାଳିତ କରିବାକୁ ଲାଗିଲା । ସ୍ୱାର୍ଥଶୂନ୍ୟ ସତ୍ୟାନୁସନ୍ଧିତ୍ସୁ ଠାକୁର ଏହି ଇଙ୍ଗିତରେ ଚାଳିତ ହେବାକୁ ଅତିଶୀଘ୍ର ନିଜକୁ ଅଭ୍ୟସ୍ତ କରି ପକାଇଲେ । ପାର୍ଥିବ ଭୋଗ୍ୟବସ୍ତୁ ଲାଭ କରିବାର ଇଚ୍ଛା ତାଙ୍କ ମନରେ ପ୍ରବଳ ରହିଥିଲେ ମଧ୍ୟ ସେପରି କରିବା ତାଙ୍କ ପାଇଁ ଯେ ସୁକଠିନ ହେଉଥିଲା, ଏକଥା ବୁଝିହୁଏ ।

**ଠାକୁରଙ୍କ ମନରେ ସଂସ୍କାରବନ୍ଧନ କେତେ ଅଳ୍ପ ଥିଲା :**

ସମସ୍ତ ବିଷୟରେ ଠାକୁରଙ୍କର ଆଜୀବନ ଆଚରଣ ସ୍ମରଣ କରିଲେ ହିଁ ପୂର୍ବୋକ୍ତ କଥା ପାଠକଙ୍କର ହୃଦୟଙ୍ଗମ ହେବ । ସଂସାରର ପ୍ରଚଳିତ ବିଦ୍ୟାଭ୍ୟାସର ଉଦ୍ଦେଶ୍ୟ ଯେ କେବଳ 'ଚାଉଳ-କଦଳୀ-ବନ୍ଧା' ବା ଅର୍ଥ ଉପାର୍ଜନ ଏହା ବୁଝି ସେ ପାଠ ପଢ଼ିଲେ ନାହିଁ—ସଂସାର ଯାତ୍ରାନିର୍ବାହରେ ସାହାଯ୍ୟ ହେବ ବୋଲି ପୂଜକର ପଦ ଗ୍ରହଣ କରିବା ପରେ ଦେବତା ଉପାସନାର ପ୍ରକୃତ ଉଦ୍ଦେଶ୍ୟ ବୁଝିଲେ ଏବଂ ଈଶ୍ୱରଲାଭ ପାଇଁ ଉନ୍ମତ୍ତ ହୋଇ ଉଠିଲେ—ସମ୍ପୂର୍ଣ୍ଣ ସଂଯମରେ ହିଁ ଯେ ଈଶ୍ୱରଲାଭ ହୁଏ, ଏକଥା ବୁଝି ବିବାହିତ ହୋଇ ମଧ୍ୟ ସ୍ତ୍ରୀସଙ୍ଗ କଲେ ନାହିଁ—ସଞ୍ଚୟଶୀଳ ବ୍ୟକ୍ତି ସମ୍ପୂର୍ଣ୍ଣ ଭାବରେ ଈଶ୍ୱରଙ୍କଠାରେ ନିର୍ଭରଶୀଳ ହୋଇପାରେ ନାହିଁ ବୋଲି ବୁଝି କାଞ୍ଚନାଦି ଦୂରର କଥା, ସାମାନ୍ୟ ପଦାର୍ଥ ସଞ୍ଚୟ କରିବାର ଚିନ୍ତା ମଧ୍ୟ ମନରୁ ଏକାବେଳକେ ଉତ୍ପାଟିତ କରିପକାଇଲେ—ଏପରି ଅନେକ କଥା ଠାକୁରଙ୍କ ସମ୍ବନ୍ଧରେ କୁହାଯାଇପାରିବ । ଏହି ସବୁ କଥାର ବିଶ୍ଳେଷଣରୁ ବୁଝି ହୁଏ, ସାଧାରଣ ଜୀବର ମୋହକାରୀ ସଂସ୍କାରବନ୍ଧନସମୂହ ତାଙ୍କ ମନରେ ବାଲ୍ୟାବସ୍ଥାରୁ କେତେ ଅଳ୍ପ ପ୍ରଭାବ ବିସ୍ତାର କରିଥିଲା । ଏଥିରୁ ଏହା ସ୍ପଷ୍ଟ ପ୍ରତୀତ ହୁଏ ଯେ, ତାଙ୍କର ଧାରଣାଶକ୍ତି ଏତେ ପ୍ରବଳ ଥିଲା ଯେ, ମନର ପୂର୍ବସଂସ୍କାରସମୂହ

ତାଙ୍କ ସମ୍ମୁଖରେ ମୁଣ୍ଡ ଟେକି ତାଙ୍କୁ ଲକ୍ଷ୍ୟଭ୍ରଷ୍ଟ କରାଇବାକୁ କେବେହେଲେ ସମର୍ଥ ହୋଇ ନ ଥିଲା ।

### ସାଧନାରେ ପ୍ରବୃତ୍ତ ହେବା ପୂର୍ବରୁ ଠାକୁରଙ୍କର ମନ କିପରି ଗୁଣସମ୍ପନ୍ନ ଥିଲା :

ଏହାଛଡ଼ା ଆମେ ଦେଖିଛୁ, ଠାକୁର ବାଲ୍ୟକାଳରୁ ଶ୍ରୁତିଧର ଥିଲେ । ଯାହା ଥରେ ଶୁଣୁଥିଲେ, ସେକଥା ଠିକ୍ ଠିକ୍ ଆବୃତ୍ତି କରିପାରୁଥିଲେ ଏବଂ ତାଙ୍କର ସ୍ମୃତି ଏହା ଚିରଦିନ ପାଇଁ ଧାରଣ କରି ରଖୁଥିଲା । ବାଲ୍ୟକାଳରେ ରାମାୟଣ ଆଦି କଥା, ସଙ୍ଗୀତ ଓ ଯାତ୍ରା ପ୍ରଭୃତି ଥରେ ଶୁଣିବା ପରେ ସାଙ୍ଗମାନଙ୍କୁ ନେଇ କାମାରପୁକୁରର ଗୋଚର ପଡ଼ିଆରେ ସେ ଏସବୁର କିପରି ପୁନରାବୃତ୍ତି କରୁଥିଲେ, ସେବିଷୟ ପାଠକମାନଙ୍କୁ ଜଣାଅଛି । ତେଣୁ ଦେଖାଯାଇଛି, ଅଦୃଷ୍ଟପୂର୍ବ ସତ୍ୟାନୁରାଗ, ଶ୍ରୁତିଧରତ୍ୱ ଏବଂ ସମ୍ପୂର୍ଣ୍ଣ ଧାରଣାରୂପ ଦୈବୀ ସମ୍ପତ୍ତିକୁ ନିଜସ୍ୱ କରି ଠାକୁର ସାଧକ ଜୀବନରେ ପ୍ରବେଶ କରିଥିଲେ । ଯେଉଁ ଅନୁରାଗ, ଧାରଣା ପ୍ରଭୃତି ଗୁଣଗୁଡ଼ିକ ଆୟତ୍ତ କରିବା ସାଧାରଣ ସାଧକଙ୍କର ଜୀବନ ବ୍ୟାପୀ ଚେଷ୍ଟାରେ ମଧ୍ୟ ସୁସାଧ୍ୟ ହୋଇପାରେ ନାହିଁ, ସେ ଏହି ସମସ୍ତ ଗୁଣକୁ ଭିତ୍ତି କରି ସାଧନାରାଜ୍ୟରେ ଅଗ୍ରସର ହୋଇଥିଲେ । ସୁତରାଂ ସାଧନାରାଜ୍ୟରେ ସ୍ୱଳ୍ପକାଳ ମଧ୍ୟରେ ତାଙ୍କର ସମଧିକ ଫଳଲାଭ କରିବା ବିଚିତ୍ର ନୁହେଁ । ସାଧନାକାଳରେ କଠିନ ସାଧନାସମୂହରେ ସେ ତିନି ଦିନ ମଧ୍ୟରେ ସିଦ୍ଧିଲାଭ କରିଥିଲେ, ଏବିଷୟ ଆମେ ତାଙ୍କ ନିକଟରୁ ଶୁଣି ଅତ୍ୟନ୍ତ ବିସ୍ମିତ ହୋଇଛୁ, ତାହାର କାରଣ ଆମେ ତାଙ୍କର ଅସାମାନ୍ୟ ମାନସିକ ଗଠନ କଥା ସେତେବେଳେ ବିନ୍ଦୁମାତ୍ର ହୃଦୟଙ୍ଗମ କରିପାରି ନ ଥିଲୁ ।

### ଠାକୁରଙ୍କ ଅସାମାନ୍ୟ ମାନସିକ ଗଠନର ଦୃଷ୍ଟାନ୍ତ ଓ ଆଲୋଚନା :

ଠାକୁରଙ୍କ ଜୀବନର କେତୋଟି ଘଟଣା ଉଲ୍ଲେଖ କଲେ ପାଠକ ଆମମାନଙ୍କ ପୂର୍ବୋକ୍ତ କଥା ବୁଝିପାରିବେ । ସାଧନକାଳର ଆରମ୍ଭରେ ଠାକୁର ନିତ୍ୟାନିତ୍ୟବସ୍ତୁ ବିଚାରପୂର୍ବକ 'ଟଙ୍କା ମାଟି—ମାଟି ଟଙ୍କା' କହୁ କହୁ ମାଟି ସହିତ କେତୋଟି ମୁଦ୍ରା ଗଙ୍ଗାଗର୍ଭରେ ନିକ୍ଷେପ କଲେ—ଏହା ସହିତ ଯେଉଁ କାଞ୍ଚନ-ଆସକ୍ତି ମନୁଷ୍ୟ ମନର ଅନ୍ତସ୍ଥଳ ପର୍ଯ୍ୟନ୍ତ ନିଜର ଅଧିକାର ବିସ୍ତୃତ କରି ରହିଛି, ତାହା ଚିରଦିନ ପାଇଁ ତାଙ୍କ ମନରୁ ସମୂଳେ ଉତ୍ପାଟିତ ହୋଇ ଗଙ୍ଗାଗର୍ଭରେ ବିସର୍ଜିତ ହୋଇଗଲା । ସାଧାରଣ ଲୋକେ ଯେଉଁ ସ୍ଥାନକୁ ଗଲେ ସ୍ନାନ ନ କଲେ ନିଜକୁ ଶୁଚି ଜ୍ଞାନ କରନ୍ତି ନାହିଁ, ସେସ୍ଥାନକୁ ସେ ସ୍ୱହସ୍ତରେ ମାର୍ଜନା କଲେ—ଏଥିରେ ତାଙ୍କର ମନ ଜନ୍ମଗତ ଜାତି-ଅଭିମାନ ପରିତ୍ୟାଗପୂର୍ବକ ଚିରଦିନ ପାଇଁ ଧାରଣା କରି ନେଲା ଯେ, ସମାଜରେ ଅସ୍ପୃଶ୍ୟ ଜାତି ବୋଲି ପରିଗଣିତ ବ୍ୟକ୍ତିମାନଙ୍କ

ଅପେକ୍ଷା ସେ କୌଣସି ପ୍ରକାରରେ ବଡ଼ ନୁହନ୍ତି ! ଜଗଦମ୍ବାଙ୍କର ସନ୍ତାନ ବୋଲି ନିଜକୁ ଧାରଣାପୂର୍ବକ ଯେତେବେଳେ ସେ ଶୁଣିଲେ, 'ସ୍ତ୍ରୀୟଃ ସମସ୍ତାଃ ସକଳା ଜଗତ୍ସୁ'—ସଙ୍ଗେ ସଙ୍ଗେ ସେ ସ୍ତ୍ରୀଜାତିର କାହାକୁ ମଧ୍ୟ ଭୋଗଲାଳସା ଚକ୍ଷୁରେ ଦେଖି ଦାମ୍ପତ୍ୟ ସୁଖ ଲାଭରେ ଅଗ୍ରସର ହୋଇପାରିଲେ ନାହିଁ । ଏଥିରୁ ବୁଝାଯାଏ, ଅସାମାନ୍ୟ ଧାରଣାଶକ୍ତି ନ ଥିଲେ ସେ ଏପରି ଫଳ ଲାଭ କଦାପି କରିପାରି ନ ଥାନ୍ତେ । ତାଙ୍କ ଜୀବନର ଏସମସ୍ତ କଥା ଶୁଣି ଆମେ ଯେ ଆଶ୍ଚର୍ଯ୍ୟ ହୋଇଥାଉ ଏବଂ ହଠାତ୍ ବିଶ୍ୱାସ କରିପାରୁ ନା, ତାର କାରଣ— ଆମେ ସେତେବେଳେ ଆମର ଅନ୍ତର ମଧ୍ୟରେ ଦୃଷ୍ଟିପାତ କରି ଦେଖିବାକୁ ପାଉ ଯେ, ଏହିପରି ମାଟି ସହିତ ଟଙ୍କାକୁ ସହସ୍ରବାର ଜଳରେ ବିସର୍ଜନ ଦେଲେ ମଧ୍ୟ ଆମମାନଙ୍କ କାଞ୍ଚନାସକ୍ତି ଯିବ ନାହିଁ—ସହସ୍ରଥର ପୂତିଗନ୍ଧମୟ ସ୍ଥାନ ଧୌତ କଲେ ମଧ୍ୟ ଆମର ମନର ଅଭିମାନ ଧୌତ ହେବ ନାହିଁ ଏବଂ ଜଗଜ୍ଜନନୀଙ୍କର ରମଣୀରୂପରେ ପ୍ରକାଶିତା ରହିବା କଥା ଆଜୀବନ ଶୁଣିଲେ ମଧ୍ୟ କାର୍ଯ୍ୟତଃ ଆମମାନଙ୍କର ରମଣୀ ମାତ୍ରେ ମାତୃଜ୍ଞାନର ଉଦୟ ହେବ ନାହିଁ ! ଆମମାନଙ୍କର ଧାରଣା ଶକ୍ତି ପୂର୍ବକୃତ କର୍ମସଂସ୍କାରଗୁଡ଼ିକରେ ନିଗୂଢ଼ଭାବରେ ଆବଦ୍ଧ ଥିବାରୁ ଚେଷ୍ଟା କରି ମଧ୍ୟ ଆମେ ଏସମସ୍ତ ବିଷୟରେ ଠାକୁରଙ୍କ ସଦୃଶ ଫଳଲାଭ କରିପାରୁ ନାହେଁ । ସଂଯମରହିତ, ଧାରଣାଶୂନ୍ୟ, ପୂର୍ବସଂସ୍କାରପ୍ରବଳ ମନ ନେଇ ଆମେ ଈଶ୍ୱରଲାଭ କରିବାକୁ ସାଧନା ରାଜ୍ୟରେ ଅଗ୍ରସର ହେଉ—ତେଣୁ ଫଳ ମଧ୍ୟ ତାଙ୍କ ପରି (ଠାକୁରଙ୍କ ପରି) ହୋଇପାରେ ନାହିଁ ।

ଠାକୁରଙ୍କ ପରି ଅପୂର୍ବଶକ୍ତିବିଶିଷ୍ଟ ମନର ଆବିର୍ଭାବ ସଂସାରରେ ଚାରି-ପାଞ୍ଚଶହ ବର୍ଷରେ ଗୋଟିଏ ଅଧେ ହୁଏ କି ନାହିଁ ସନ୍ଦେହ । ସଂଯମପ୍ରବୀଣ, ଧାରଣାକୁଶଳ, ପୂର୍ବସଂସ୍କାରନିର୍ଜୀବ ସେହି ମନ ଈଶ୍ୱରଲାଭ ନିମିତ୍ତ ଅଦୃଷ୍ଟପୂର୍ବ ଅନୁରାଗ ଓ ବ୍ୟାକୁଳତା ଯୋଗୁଁ ଆଠବର୍ଷ ଧରି ଆହାର-ନିଦ୍ରା ତ୍ୟାଗପୂର୍ବକ ଶ୍ରୀଶ୍ରୀଜଗନ୍ମାତାଙ୍କର ପୂର୍ଣ୍ଣଦର୍ଶନ ଲାଭ ନିମିତ୍ତ ସଚେଷ୍ଟ ରହି କେତେଦୂର ଶକ୍ତିସମ୍ପନ୍ନ ହୋଇଥିଲା ଏବଂ ସୂକ୍ଷ୍ମଦୃଷ୍ଟି ସାହାଯ୍ୟରେ କିପରି ପ୍ରତ୍ୟକ୍ଷସମୂହ ଲାଭ କରିଥିଲା, ତାହା ଆମମାନଙ୍କ ପରି ମନର କଳ୍ପନାରେ ଆଣିବା ମଧ୍ୟ ଅସମ୍ଭବ ।

### ଠାକୁରଙ୍କ ଇଚ୍ଛାରେ ମଥୁରବାବୁଙ୍କର ସାଧୁସେବା :

ଆମେ ଏହାପୂର୍ବରୁ କହିଛୁ, ରାଣୀ ରାସମଣିଙ୍କର ମୃତ୍ୟୁ ପରେ ଦକ୍ଷିଣେଶ୍ୱର କାଳୀମନ୍ଦିର ଶ୍ରୀଶ୍ରୀଜଗଦମ୍ବାଙ୍କର ସେବାରେ କୌଣସି ପ୍ରକାରର ତ୍ରୁଟି ହୋଇ ନ ଥିଲା । ଶ୍ରୀରାମକୃଷ୍ଣଗତପ୍ରାଣ ମଥୁରମୋହନ ଏହି ସେବା ପାଇଁ ନିୟମିତ ଅର୍ଥବ୍ୟୟ କରିବାରେ କୁଣ୍ଠିତ ହେବା ଦୂରରେ ଥାଉ, ବରଂ ଅନେକ ସମୟରେ ଠାକୁରଙ୍କ ନିର୍ଦ୍ଦେଶରେ ଏବିଷୟରେ ବହୁ ଅଧିକ ଖର୍ଚ୍ଚ କରୁଥିଲେ । ଦେବଦେବୀସେବା

ବ୍ୟତୀତ ସାଧୁଭକ୍ତଙ୍କ ସେବାରେ ତାଙ୍କର ବିଶେଷ ପ୍ରୀତି ଥିଲା । କାରଣ ଠାକୁରଙ୍କ ଶ୍ରୀପଦ ଆଶ୍ରିତ ମଥୁର ତାଙ୍କ ଶିକ୍ଷାରେ ସାଧୁଭକ୍ତଗଣଙ୍କୁ ଈଶ୍ୱରଙ୍କ ପ୍ରତିରୂପ ବୋଲି ବିଶ୍ୱାସ କରୁଥିଲେ । ସେଥିପାଇଁ ଦେଖାଯାଏ, ଠାକୁର ଯେତେବେଳେ ଏହି ସମୟରେ ତାହାଙ୍କୁ ସାଧୁଭକ୍ତମାନଙ୍କୁ ଅନ୍ନଦାନ ବ୍ୟତୀତ ଦେହରକ୍ଷା ଉପଯୋଗୀ ବସ୍ତ୍ର-କମ୍ବଳାଦି ଓ ନିତ୍ୟବ୍ୟବହାର୍ଯ୍ୟ କମଣ୍ଡଳୁ ପ୍ରଭୃତି ଜଳପାତ୍ର ଦାନର ବ୍ୟବସ୍ଥା କରିବାକୁ କହିଲେ, ସେତେବେଳେ ସେହି ବିଷୟ ସୁଚାରୁରୂପରେ ସମ୍ପନ୍ନ କରିବା ପାଇଁ ସେ ଏହି ସମସ୍ତ ପଦାର୍ଥ କ୍ରୟ କରି କାଳୀମନ୍ଦିରର ଗୋଟିଏ ଭଣ୍ଡାର ଘର ପୂର୍ଣ୍ଣ କରି ରଖିଥିଲେ ଏବଂ ସେ ସମସ୍ତ ଦ୍ରବ୍ୟ ଠାକୁରଙ୍କ ନିର୍ଦ୍ଦେଶରେ ବିତରଣ ହେବ ବୋଲି କର୍ମଚାରୀମାନଙ୍କୁ ଆଦେଶ ଦେଇଥିଲେ । ପୁଣି ଏହାର କିଛି ଦିନ ପରେ ସବୁ ସମ୍ପ୍ରଦାୟର ସାଧୁଭକ୍ତମାନଙ୍କୁ ସାଧନାର ଅନୁକୂଳ ପଦାର୍ଥଗୁଡ଼ିକ ଦାନ କରି ସେବା କରିବାର ଅଭିପ୍ରାୟ ଠାକୁରଙ୍କ ମନରେ ଉଦିତ ହେଲେ, ମଥୁର ସେହିବିଷୟ ଜାଣିପାରି ତାହାର ମଧ୍ୟ ବନ୍ଦୋବସ୍ତ କରିଥିଲେ ।[୧] ସମ୍ଭବତ ୧୮୬୩-୬୪ ଖ୍ରୀଷ୍ଟାବ୍ଦରେ ମଥୁରବାବୁ ଠାକୁରଙ୍କ ଇଚ୍ଛାରେ ଏପରି ସାଧୁସେବାର ବହୁଳ ଅନୁଷ୍ଠାନ କରିଥିଲେ ଏବଂ ଏଥିପାଇଁ ରାଣୀ ରାସମଣିଙ୍କର କାଳୀମନ୍ଦିରରେ ଅଭୂତ ଆତିଥେୟତା ବିଷୟ ସାଧୁଭକ୍ତଗଣଙ୍କ ମଧ୍ୟରେ ସର୍ବତ୍ର ପ୍ରଚାରିତ ହୋଇଥିଲା । ରାଣୀରାସମଣିଙ୍କର ଜୀବନକାଳଠାରୁ ହିଁ କାଳୀମନ୍ଦିର ତୀର୍ଥ ପର୍ଯ୍ୟଟନକାରୀ ସାଧୁ-ପରିବ୍ରାଜକମାନଙ୍କ ନିକଟରେ ପଥମଧ୍ୟରେ ସାମୟିକ ବିଶ୍ରାମସ୍ଥଳୀ ରୂପରେ ଗଣ୍ୟ ହୋଇଥିଲେ ମଧ୍ୟ ପରେ ଏହାର ସୁନାମ ଚାରିଆଡ଼େ ପ୍ରସାରିତ ହେଲା ଏବଂ ସବୁ ସମ୍ପ୍ରଦାୟଭୁକ୍ତ ସାଧୁସନ୍ଥମାନେ ଏସ୍ଥାନକୁ ଆସି ଏଠାର ଆତିଥ୍ୟ ଗ୍ରହଣରେ ପରିତୃପ୍ତ ହୋଇ ଏହାର ସେବାପରିଚାଳକଙ୍କୁ ଆଶୀର୍ବାଦପୂର୍ବକ ଗନ୍ତବ୍ୟପଥରେ ଅଗ୍ରସର ହେଉଥିଲେ । ଏପରି ସମାଗତ ହେଉଥିବା ବିଶିଷ୍ଟ ସାଧୁମାନଙ୍କର କଥା ଆମେ ଠାକୁରଙ୍କ ଶ୍ରୀମୁଖରୁ ଯାହା ଶୁଣିଛୁ, ସେସମସ୍ତ ଅନ୍ୟତ୍ର ବର୍ଣ୍ଣିତ ହୋଇଅଛି ।'[୨] 'ଜଟାଧାରୀ' ନାମକ ଯେଉଁ ରମାୟତପନ୍ଥୀ ସାଧୁଙ୍କ ନିକଟରୁ ଠାକୁର ରାମମନ୍ତ୍ରରେ ଦୀକ୍ଷା ଗ୍ରହଣ କରିଥିଲେ ଓ 'ଶ୍ରୀରାମଲାଲା' ନାମକ ଶ୍ରୀରାମଚନ୍ଦ୍ରଙ୍କର ବାଳବିଗ୍ରହ ପ୍ରାପ୍ତ ହୋଇଥିଲେ, ଦକ୍ଷିଣେଶ୍ୱର କାଳୀମନ୍ଦିରକୁ ତାଙ୍କର ଆଗମନକାଳ ବିଷୟରେ ପାଠକଙ୍କୁ ଜଣାଇବା ପାଇଁ ଏଠାରେ ତାହାର ପୁନରୁଲ୍ଲେଖ କରୁଛୁ । ଏଘଟଣା ସମ୍ଭବତଃ ୧୮୬୪ ଖ୍ରୀଷ୍ଟାବ୍ଦରେ ଘଟିଥିଲା ।

---

୧. ଗୁରୁଭାବ—ଉତ୍ତରାର୍ଦ୍ଧ, ୨ୟ ଅଧ୍ୟାୟ ।
୨. ଗୁରୁଭାବ—ଉତ୍ତରାର୍ଦ୍ଧ, ୨ୟ ଅଧ୍ୟାୟ ଦ୍ରଷ୍ଟବ୍ୟ ।

## ଜଟାଧାରୀଙ୍କର ଆଗମନ :

ଶ୍ରୀରାମଚନ୍ଦ୍ରଙ୍କ ପ୍ରତି ସାଧୁ ଜଟାଧାରୀଙ୍କର ଅଦ୍ଭୁତ ଅନୁରାଗ ଓ ଭକ୍ତି ପାଇବାର କଥା ଆମେ ଠାକୁରଙ୍କ ନିକଟରୁ ଅନେକଥର ଶୁଣିଛୁ । ବାଳକ ରାମଚନ୍ଦ୍ରଙ୍କର ମୂର୍ତ୍ତି ହିଁ ତାଙ୍କର ଅତ୍ୟନ୍ତ ପ୍ରିୟ ଥିଲା । ଏହି ମୂର୍ତ୍ତିଙ୍କର ବହୁକାଳ ସେବା କରିବା ଦ୍ୱାରା ତାଙ୍କର ମନ ଭାବରାଜ୍ୟରେ ଆରୂଢ଼ ହୋଇ ଏତେଦୂର ଅନ୍ତର୍ମୁଖୀ ଓ ତନ୍ମୟ ଅବସ୍ଥା ପ୍ରାପ୍ତ ହୋଇଥିଲା ଯେ, ଦକ୍ଷିଣେଶ୍ୱରରେ ଠାକୁରଙ୍କ ନିକଟକୁ ଆସିବା ପୂର୍ବରୁ ହିଁ ସେ ଦେଖିବାକୁ ପାଉଥିଲେ, ଶ୍ରୀରାମଚନ୍ଦ୍ରଙ୍କର ଜ୍ୟୋତିର୍ଘନ ବାଳବିଗ୍ରହ ସତକୁ ସତ ତାଙ୍କ ସମ୍ମୁଖରେ ଆବିର୍ଭୂତ ହୋଇ ତାଙ୍କର ଭକ୍ତିପୂତ ସେବା ଗ୍ରହଣ କରୁଛନ୍ତି । ପ୍ରଥମେ ପ୍ରଥମେ ଏପରି ଦର୍ଶନ ବେଳେ ବେଳେ କିଛିକ୍ଷଣ ପାଇଁ ଉପସ୍ଥିତ ହୋଇ ତାଙ୍କୁ ଆନନ୍ଦ ବିହ୍ୱଳ କରୁଥିଲା । କାଳକ୍ରମେ ସେ ସାଧନାରେ ଯେତେ ଅଗ୍ରସର ହେଲେ, ଏହି ଦର୍ଶନ ମଧ୍ୟ ସେତେ ଘନୀଭୂତ ହୋଇ ବହୁ ଦୀର୍ଘ ସମୟ ବ୍ୟାପୀ ଏବଂ କ୍ରମେ ନିତ୍ୟ ପରିଦୃଷ୍ଟ ବିଷୟ ପରି ହୋଇ ଯାଇଥିଲା । ଏପରି ବାଳ-ଶ୍ରୀରାମଚନ୍ଦ୍ରଙ୍କୁ ସେ ନିତ୍ୟସହଚର ରୂପରେ ଲାଭ କରିଥିଲେ । ଅନନ୍ତର ଯାହା ଅବଲମ୍ବନ କରି ଏହି ପରମ ସୌଭାଗ୍ୟ ତାଙ୍କ ଜୀବନରେ ଉପସ୍ଥିତ ହୋଇଥିଲା, ସେହି ଶ୍ରୀରାମଲାଲାବିଗ୍ରହଙ୍କ ସେବାରେ ନିଜକୁ ନିତ୍ୟ ନିଯୁକ୍ତ ରଖି ଜଟାଧାରୀ ଭାରତର ନାନା ତୀର୍ଥ ପର୍ଯ୍ୟଟନପୂର୍ବକ ଦକ୍ଷିଣେଶ୍ୱର କାଳୀମନ୍ଦିରରେ ଏହି ସମୟରେ ଆସି ଉପସ୍ଥିତ ହୋଇଥିଲେ ।

## ଜଟାଧାରୀଙ୍କ ସହିତ ଠାକୁରଙ୍କର ଘନିଷ୍ଠ ସମ୍ବନ୍ଧ :

ରାମଲାଲ-ସେବାରେ ନିଯୁକ୍ତ ଜଟାଧାରୀ ଯେ ବାଳ-ରାମଚନ୍ଦ୍ରଙ୍କର ଭାବଘନ-ମୂର୍ତ୍ତି ସଦାସର୍ବଦା ଦର୍ଶନଲାଭ କରୁଥିଲେ, ଏବିଷୟ ସେ କାହା ନିକଟରେ ପ୍ରକାଶ କରୁ ନ ଥିଲେ । ଲୋକେ ଦେଖୁଥିଲେ, ସେ ଗୋଟିଏ ଧାତୁ ନିର୍ମିତ ବାଳବିଗ୍ରହଙ୍କର ସେବା ଅପୂର୍ବ ନିଷ୍ଠାର ସହିତ ସବୁ ସମୟରେ ସମ୍ପାଦନ କରିଥାଆନ୍ତି । ଭାବରାଜ୍ୟର ଅଦ୍ୱିତୀୟ ଅଧୀଶ୍ୱର ଠାକୁରଙ୍କର ଦୃଷ୍ଟି କିନ୍ତୁ ତାଙ୍କ ସହିତ ପ୍ରଥମ ସାକ୍ଷାତ୍‌ର ସ୍ଥୂଳ ଯବନିକାର ଅନ୍ତରାଳ ଭେଦ କରି ଅନ୍ତରର ଗୂଢ଼ ରହସ୍ୟ ଅବଧାରଣ କରିଥିଲା । ସେଥିପାଇଁ ପ୍ରଥମ ଦର୍ଶନରୁ ହିଁ ସେ ଜଟାଧାରୀଙ୍କ ପ୍ରତି ଶ୍ରଦ୍ଧାସମ୍ପନ୍ନ ହୋଇ ଉଠିଥିଲେ ଏବଂ ତାଙ୍କର ପ୍ରୟୋଜନୀୟ ଦ୍ରବ୍ୟସମୂହ ଅତି ଆନନ୍ଦରେ ପ୍ରଦାନପୂର୍ବକ ତାଙ୍କ ନିକଟରେ ପ୍ରତିଦିନ ବହୁକ୍ଷଣ ବସି ତାଙ୍କର ସେବା ଭକ୍ତିର ସହିତ ନିରୀକ୍ଷଣ କରୁଥିଲେ । ଜଟାଧାରୀ ଶ୍ରୀରାମଚନ୍ଦ୍ରଙ୍କର ଯେଉଁ ଭାବଘନ ଦିବ୍ୟମୂର୍ତ୍ତିର ଦର୍ଶନ ସର୍ବକ୍ଷଣ ପାଉଥିଲେ, ସେହି ମୂର୍ତ୍ତିର ଦର୍ଶନ ପାଇଥିଲେ ବୋଲି ହିଁ ଯେ ଠାକୁର ଏପରି କରୁଥିଲେ, ଏକଥା ଆମେ ଅନ୍ୟତ୍ର କହିଛୁ । ଏହିପରି

ଜଟାଧାରୀଙ୍କ ସହିତ ଠାକୁରଙ୍କ ସମ୍ବନ୍ଧ କ୍ରମଶଃ ବିଶେଷ ଶ୍ରଦ୍ଧାପୂର୍ଣ୍ଣ ଓ ଘନିଷ୍ଠ ହୋଇ ଉଠିଥିଲା ।[୧]

**ସ୍ତ୍ରୀଭାବର ଉଦୟରେ ଠାକୁରଙ୍କର ବାତ୍ସଲ୍ୟଭାବ-ସାଧନାରେ ପ୍ରବୃତ୍ତ ହେବା :**

ଏହା ପୂର୍ବରୁ ଆମେ ଉଲ୍ଲେଖ କରିଛୁ, ଠାକୁର ନିଜକୁ ରମଣୀଜ୍ଞାନରେ ତନ୍ମୟ ହୋଇ ଅନେକ ଦିନ ଅବସ୍ଥାନ କରୁଥିଲେ । ଏହି ସମୟରେ ଅନ୍ତରର ପ୍ରବଳ ପ୍ରେରଣାରେ ଶ୍ରୀଶ୍ରୀଜଗଦମ୍ବାଙ୍କର ନିତ୍ୟସଙ୍ଗିନୀ ଜ୍ଞାନରେ ଅନେକ ସମୟ ସ୍ତ୍ରୀବେଶ ଧାରଣ କରି ରହିବା, ଫୁଲହାର ଗୁନ୍ଥି ତାଙ୍କୁ ବେଶଭୂଷା କରାଇବା, ଗରମ ସମୟରେ ତାଙ୍କୁ ବହୁ ସମୟ ଚାମରରେ ବ୍ୟଜନ କରିବା, ମଥୁରଙ୍କୁ କହି ତାଙ୍କ ପାଇଁ ନୂଆ ନୂଆ ଅଳଙ୍କାର ତିଆରି କରାଇ ତାଙ୍କୁ ପିନ୍ଧାଇବା ଏବଂ ତାଙ୍କର ପରିତୃପ୍ତି ପାଇଁ ନୃତ୍ୟଗୀତାଦି ଶୁଣାଇବା ପ୍ରଭୃତି କାର୍ଯ୍ୟରେ ସେ ଅନେକ ସମୟ ଅତିବାହିତ କରୁଥିଲେ । ଜଟାଧାରୀଙ୍କ ସହିତ ଆଳାପ ହେଲା ପରେ ଶ୍ରୀରାମଚନ୍ଦ୍ରଙ୍କ ପ୍ରତି ଭକ୍ତିପ୍ରୀତି ପୁନରୁଦ୍ଦୀପିତ ହୋଇ ସେ ଏବେ ତାଙ୍କର ଭାବଘନ ଶୈଶବାବସ୍ଥା-ମୂର୍ତ୍ତିର ଦର୍ଶନଲାଭ କଲେ ଏବଂ ପ୍ରକୃତି ଭାବର ପ୍ରାବଲ୍ୟରେ ତାଙ୍କର ହୃଦୟ ବାତ୍ସଲ୍ୟରସରେ ପୂର୍ଣ୍ଣ ହେଲା । ମାତା ଶିଶୁପୁତ୍ରକୁ ଦେଖି ଯେଉଁ ଅପୂର୍ବ ପ୍ରୀତି ଓ ପ୍ରେମାକର୍ଷଣ ଅନୁଭବ କରିଥାଏ, ସେ ଏବେ ଉକ୍ତ ଶିଶୁମୂର୍ତ୍ତି ପ୍ରତି ସେହିପରି ଆକର୍ଷଣ ଅନୁଭବ କରିବାକୁ ଲାଗିଲେ । ଏହି ପ୍ରେମାକର୍ଷଣ ହିଁ ତାଙ୍କୁ ଜଟାଧାରୀଙ୍କର ବାଳବିଗ୍ରହଙ୍କ ନିକଟରେ ବସାଇ କେଉଁ ଭାବରେ ସମୟ ଅତୀତ ହୋଇ ଯାଉଥିଲା, ତାହା ଜାଣିବାକୁ ଦେଉ ନ ଥିଲା । ତାଙ୍କ ନିଜ ମୁଖରୁ ଶୁଣିଛୁ, ସେହି ଉଜ୍ଜ୍ୱଳ ଦେବଶିଶୁ ମଧୁମୟ ବାଳସୁଲଭ ଆଚରଣରେ ତାଙ୍କୁ ଭୁଲାଇ ସର୍ବକ୍ଷଣ ନିଜ ନିକଟରେ ଧରି ରଖିବାକୁ ନିତ୍ୟ ପ୍ରୟାସ କରୁଥିଲେ, ତାଙ୍କ ଅଦର୍ଶନରେ ବ୍ୟାକୁଳ ହୋଇ ପଥ ନିରୀକ୍ଷଣ କରୁଥିଲେ ଏବଂ ନିଷେଧ ନ ମାନି ତାଙ୍କ ସହିତ ଚାରିଆଡ଼େ ଯିବାକୁ ଉଦ୍ୟତ ହେଉଥିଲେ ।

**କୌଣସି ଭାବର ଉଦୟ ହେଲେ ତାର ଚରମ ଉପଲବ୍ଧି କରିବା ପାଇଁ ତାଙ୍କର ଚେଷ୍ଟା—ଏପରି କରିବା ଉଚିତ୍ କି ନୁହେଁ :**

ଠାକୁରଙ୍କର ଉଦ୍ୟମଶୀଳ ମନ କୌଣସି କାର୍ଯ୍ୟ ଅଧା ନିଷ୍ପନ୍ନ କରି ରହିପାରୁ ନ ଥିଲା । ସ୍ଥୂଳ କର୍ମକ୍ଷେତ୍ରରେ ପ୍ରକାଶିତ ତାଙ୍କର ଏପରି ସ୍ୱଭାବ ସୂକ୍ଷ୍ମ ଭାବରାଜ୍ୟର ବିଷୟଗୁଡ଼ିକରେ ମଧ୍ୟ ପରିଦୃଷ୍ଟ ହେଉଥିଲା । ଦେଖାଯାଉଥିଲା, ସ୍ୱାଭାବିକ ପ୍ରେରଣାର କୌଣସି ଭାବବିଶେଷ ତାଙ୍କର ହୃଦୟ ପୂର୍ଣ୍ଣ କଲେ ସେ ତା'ର ଚରମସୀମା ପର୍ଯ୍ୟନ୍ତ ଉପଲବ୍ଧି ନ କରି ନିଶ୍ଚିନ୍ତ ହୋଇପାରୁ ନ ଥିଲେ ।

---

୧. ଗୁରୁଭାବ-ଉତ୍ତରାର୍ଦ୍ଧ, ୨ୟ ଅଧ୍ୟାୟ ।

ତାଙ୍କର ଏପରି ସ୍ୱଭାବର ଅନୁଶୀଳନ କରି କେହି ପାଠକ ଭାବିପାରନ୍ତି—'କିନ୍ତୁ ଏକଥା କ'ଣ ଭଲ ? ଯେତେବେଳେ ଯେଉଁ ଭାବ ଅନ୍ତରରେ ଉଦୟ ହେବ, ସେତେବେଳେ ତାହାର ହସ୍ତରେ କଣ୍ଢେଇ ଭଳି ହୋଇ ତା ପଛରେ ଧାବିତ ହେଲେ ମନୁଷ୍ୟର କ'ଣ କେବେ କଲ୍ୟାଣ ହୋଇପାରେ ? ଦୁର୍ବଳ ମନୁଷ୍ୟର ଅନ୍ତରରେ ଭଲ ଓ ମନ୍ଦ ସମସ୍ତ ପ୍ରକାରର ଭାବ ଯେତେବେଳେ ସର୍ବକ୍ଷଣ ଉଦୟ ହେଉଛି, ସେତେବେଳେ ଠାକୁରଙ୍କର ଏହି ପ୍ରକାରର ସ୍ୱଭାବ ତାଙ୍କୁ କେବେ ବିପଥଗାମୀ ନ କଲେ ମଧ, ସାଧାରଣଙ୍କର ଅନୁକରଣୀୟ ହୋଇପାରେ ନାହିଁ । କେବଳ ଭଲ ଭାବଗୁଡ଼ିକ ଯେ ଅନ୍ତରରେ ଉଦିତ ହେବ, ନିଜ ପ୍ରତି ଏତେଦୂର ବିଶ୍ୱାସ ସ୍ଥାପନ କରିବା ମଣିଷ ପକ୍ଷରେ କଦାପି ଉଚିତ ନୁହେଁ । ଅତଏବ ସଂଯମରୂପକ ରଜ୍ଜୁ ଦ୍ୱାରା ଭାବରୂପକ ଅଶ୍ୱଗୁଡ଼ିକୁ ସର୍ବଦା ନିୟନ୍ତ୍ରିତ କରିବା ହିଁ ମନୁଷ୍ୟର ଲକ୍ଷ୍ୟ ହେବା ଉଚିତ୍ ।'

## ଠାକୁରଙ୍କ ପରି ନିର୍ଭରଶୀଳ ସାଧକର ଭାବସଂଯମର ଆବଶ୍ୟକତା ନାହିଁ—ଏହାର କାରଣ :

ପୂର୍ବୋକ୍ତ କଥା ଯୁକ୍ତିଯୁକ୍ତ ହେଲେ ମଧ, ଆମମାନଙ୍କର ଏବିଷୟରେ କିଛି କହିବାର ଅଛି । କାମକାଞ୍ଚନାସକ୍ତ ଭୋଗଲୋଲୁପ ମାନବ-ମନର ନିଜ ପ୍ରତି ଏତେ ଦୂର ବିଶ୍ୱାସ ସ୍ଥାପନ କରିବା କଦାପି ଉଚିତ ନୁହେଁ— ଏକଥା ଅସ୍ୱୀକାର କରିବାର ଉପାୟ ନାହିଁ । ଅତଏବ ସାଧାରଣ ମନୁଷ୍ୟ ପକ୍ଷରେ ଭାବସଂଯମର ଆବଶ୍ୟକତା ବିଷୟରେ କୌଣସି ସନ୍ଦେହ ରଖିବା ଅଦୂରଦର୍ଶୀ ବ୍ୟକ୍ତିଙ୍କ ପକ୍ଷରେ ହିଁ ସମ୍ଭବପର । କିନ୍ତୁ ବେଦ ଇତ୍ୟାଦି ଶାସ୍ତ୍ରରେ ଅଛି, ଈଶ୍ୱରଙ୍କ କୃପାରେ ବିରଳ କୌଣସି ସାଧକଙ୍କ ପାଇଁ ସଂଯମ ଶ୍ୱାସ-ପ୍ରଶ୍ୱାସ ପରି ସହଜ ଓ ସ୍ୱାଭାବିକ ହୋଇଥାଏ । ସେମାନଙ୍କର ମନ ସେତେବେଳେ କାମ-କାଞ୍ଚନର ଆକର୍ଷଣରୁ ସମ୍ପୂର୍ଣ୍ଣ ମୁକ୍ତିଲାଭ କରି କେବଳ ଉତ୍ତମ ଭାବସମୂହର ନିବାସଭୂମିରେ ପରିଣତ ହୁଏ । ଠାକୁର କହୁଥିଲେ—ଶ୍ରୀଶ୍ରୀଜଗଦମ୍ବାଙ୍କ ପ୍ରତି ସମ୍ପୂର୍ଣ୍ଣ ନିର୍ଭରଶୀଳ ଏପରି ମନରେ ମାନବ ସେତେବେଳେ ତାଙ୍କ କୃପାରୁ କୌଣସି କୁଭାବ ମସ୍ତକୋତ୍ତୋଳନପୂର୍ବକ ପ୍ରଭୁତ୍ୱ ସ୍ଥାପନ କରିବାକୁ ସକ୍ଷମ ହୁଏ ନାହିଁ; 'ମା'(ଶ୍ରୀଶ୍ରୀଜଗଦମ୍ବା) ତାଙ୍କର ପାଦ କଦାପି ବେତାଳରେ ପଡ଼ିବାକୁ ଦିଅନ୍ତି ନାହିଁ ।' ଏପରି ଅବସ୍ଥାପ୍ରାପ୍ତ ମନୁଷ୍ୟ ସେତେବେଳେ ଅନ୍ତରର ପ୍ରତ୍ୟେକ ମନୋଭାବକୁ ବିଶ୍ୱାସ କଲେ ତାହା ଦ୍ୱାରା କୌଣସି ଅନିଷ୍ଟ ହେବା ତ ଦୂରର କଥା, ବରଂ ଅନ୍ୟର ବିଶେଷ କଲ୍ୟାଣ ସାଧିତ ହୋଇଥାଏ । କାରଣ ଦେହାଭିମାନବିଶିଷ୍ଟ ଯେଉଁ କ୍ଷୁଦ୍ର 'ମୁଁ'ତ୍ୱର ପ୍ରେରଣାରେ ଆମେ ସ୍ୱାର୍ଥପର ହୋଇ ଜଗତର ସମଗ୍ର ଭୋଗସୁଖାଧିକାରଲାଭକୁ ମଧ ପର୍ଯ୍ୟାପ୍ତ ବୋଲି ବିବେଚନା କରୁ ନାହେଁ, ଅନ୍ତରର ସେହି କ୍ଷୁଦ୍ର 'ମୁଁ'ତ୍ୱ ଈଶ୍ୱରଙ୍କର ବିରାଟ

'ମୁଁ'ତ୍ୱରେ ଚିରକାଳ ନିମିତ୍ତ ବିସର୍ଜିତ ହୋଇଥିବାରୁ, ଏପରି ମାନବ ପକ୍ଷରେ ସ୍ୱାର୍ଥସୁଖାନ୍ୱେଷଣ ସେତେବେଳେ ସମ୍ପୂର୍ଣ୍ଣ ଅସମ୍ଭବ ହୋଇପଡ଼େ । ତେଣୁ ବିରାଟ ଈଶ୍ୱରଙ୍କର ସର୍ବକଲ୍ୟାଣକାରୀ ଇଚ୍ଛା ହିଁ ସେହି ମାନବର ଅନ୍ତରରେ ସେତେବେଳେ ଅନ୍ୟର କଲ୍ୟାଣସାଧନ ନିମିତ୍ତ ବିବିଧ ମନୋଭାବରୂପରେ ସମୁଦିତ ହୋଇଥାଏ । ଅଥବା ଏପରି ଅବସ୍ଥାପ୍ରାପ୍ତ ସାଧକ ସେତେବେଳେ 'ମୁଁ ଯନ୍ତ୍ର, ତୁମେ ଯନ୍ତ୍ରୀ' ଏକଥା ପ୍ରାଣର ସହିତ ପ୍ରତ୍ୟକ୍ଷ କରି ନିଜର ମନୋଗତ ଭାବଗୁଡ଼ିକୁ ବିରାଟ ପୁରୁଷ ଈଶ୍ୱରଙ୍କର ଅଭିପ୍ରାୟ ବୋଲି ସ୍ଥିରନିଶ୍ଚୟ କରି ଏହାର ପ୍ରେରଣାରେ କାର୍ଯ୍ୟ କରିବାକୁ ଆଦୌ ସଙ୍କୁଚିତ ହୁଅନ୍ତି ନାହିଁ । ଫଳରେ ଦେଖାଯାଏ, ସେମାନଙ୍କର ଏପରି ଅନୁଷ୍ଠାନରେ ଅନ୍ୟମାନଙ୍କର ମହତ କଲ୍ୟାଣ ସାଧିତ ହୋଇଥାଏ । ଠାକୁରଙ୍କ ସଦୃଶ ଅଲୋକସାମାନ୍ୟ ମହାପୁରୁଷମାନଙ୍କର ଏପରି ଅବସ୍ଥା ଜୀବନର ଅତି ପ୍ରତ୍ୟୁଷରେ ଆସି ଉପସ୍ଥିତ ହୁଏ । ସେଥିପାଇଁ ଏପରି ପୁରୁଷମାନଙ୍କର ଜୀବନ ଇତିହାସରେ ଆମେ ସେମାନଙ୍କୁ କିଛିମାତ୍ର ଯୁକ୍ତିତର୍କ ନ କରି ନିଜ ନିଜ ମନୋଗତ ଭାବସକଳକୁ ପୂର୍ଣ୍ଣଭାବରେ ବିଶ୍ୱାସପୂର୍ବକ ଅନେକ ସମୟରେ କାର୍ଯ୍ୟରେ ଅଗ୍ରସର ହେବାର ଦେଖିବାକୁ ପାଇଥାଉ । ବିରାଟ ଇଚ୍ଛାଶକ୍ତିର ସହିତ ନିଜର କ୍ଷୁଦ୍ର ଇଚ୍ଛାକୁ ସର୍ବଦା ଅଭିନ୍ନ ରଖି ସେମାନେ ସାଧାରଣମାନବଙ୍କର ମନବୁଦ୍ଧିର ଅବିଷୟୀଭୂତ ବିଷୟଗୁଡ଼ିକୁ ସେତେବେଳେ ସର୍ବଦା ଧରିବାକୁ ଏବଂ ବୁଝିବାକୁ ସକ୍ଷମ ହୁଅନ୍ତି । କାରଣ ବିରାଟ ମନରେ ସୂକ୍ଷ୍ମ ଭାବଆକାରରେ ଏହି ସମସ୍ତ ବିଷୟ ପୂର୍ବରୁ ପ୍ରକାଶିତ ରହିଥାଏ ।

### ଏପରି ସାଧକ ନିଜର ଶରୀରତ୍ୟାଗ କଥା ଜାଣିପାରି ମଧ୍ୟ ଉଦ୍‌ବିଗ୍ନ ହୋଇ ନ ଥାନ୍ତି—ଏବିଷୟରେ ଦୃଷ୍ଟାନ୍ତ :

ବିରାଟ ଇଚ୍ଛାର ସର୍ବଦା ସମ୍ପୂର୍ଣ୍ଣ ଅନୁଗତ ରହିବାରୁ ସେମାନେ ଏତେଦୂର ସ୍ୱାର୍ଥ ଏବଂ ଭୟଶୂନ୍ୟ ହୋଇଥାଆନ୍ତି ଯେ, କେଉଁ ଭାବରେ କାହା ଦ୍ୱାରା ସେମାନଙ୍କର କ୍ଷୁଦ୍ର ଶରୀର-ମନ ଧ୍ୱଂସ ହେବ, ସେକଥା ପୂର୍ବରୁ ଜାଣିପାରି ମଧ୍ୟ ସେହି ବସ୍ତୁ, ବ୍ୟକ୍ତି ଓ ବିଷୟ ପ୍ରତି କିଛି ମାତ୍ର ବିରାଗସମ୍ପନ୍ନ ନ ହୋଇ ପରମ ପ୍ରୀତିର ସହିତ ସେହିକାର୍ଯ୍ୟସମ୍ପାଦନରେ ସେମାନଙ୍କୁ ଯଥାସାଧ୍ୟ ସାହାଯ୍ୟ କରିଥାଆନ୍ତି । କେତୋଟି ଦୃଷ୍ଟାନ୍ତ ଏଠାରେ ଉଲ୍ଲେଖ କଲେ ହିଁ ଆମ କଥା ପାଠକଙ୍କର ହୃଦୟଙ୍ଗମ ହେବ । ଶ୍ରୀରାମଚନ୍ଦ୍ର ଜନକ-ତନୟା ସୀତାଙ୍କୁ ନିଷ୍ପାପା ଜାଣି ମଧ୍ୟ ଭବିତବ୍ୟକୁ ବୁଝି ତାଙ୍କୁ ବନକୁ ପଠାଇଥିଲେ । ପୁଣି ପ୍ରାଣ ଅପେକ୍ଷା ପ୍ରିୟ ଅନୁଜ ଲକ୍ଷ୍ମଣଙ୍କୁ ବର୍ଜନ କଲେ ନିଜ ଲୀଳାସମ୍ବରଣ ଅବଶ୍ୟମ୍ଭାବୀ ବୁଝି ମଧ୍ୟ ଉକ୍ତ କାର୍ଯ୍ୟ କରିଥିଲେ । ଶ୍ରୀକୃଷ୍ଣ 'ଯଦୁବଂଶ ଧ୍ୱଂସ ହେବ' ପୂର୍ବରୁ ଜାଣିପାରି ମଧ୍ୟ ଏହାର ପ୍ରତିରୋଧ ପାଇଁ ବିନ୍ଦୁମାତ୍ର ଚେଷ୍ଟା ନ କରି ଯେଉଁଥିରେ ଉକ୍ତ ଘଟଣା ଯଥା

ସମୟରେ ଉପସ୍ଥିତ ହେବ, ତାହା ହିଁ କରିଥିଲେ । ଅଥବା ବ୍ୟାଧ ହସ୍ତରେ ନିଜର ନିଧନ ଜାଣି ମଧ୍ୟ ସେହି ସମୟ ଉପସ୍ଥିତ ହେଲେ ବୃକ୍ଷପତ୍ର ଅନ୍ତରାଳରେ ସର୍ବଶରୀର ଲୁକ୍କାୟିତ ରଖି ନିଜ ଆରକ୍ତିମ ଚରଣ-ଯୁଗଳ ଏପରି ଭାବରେ ଧାରଣ କରିଥିଲେ ଯେ, ଯଦ୍ଦ୍ୱାରା ବ୍ୟାଧ ଏହା ଦେଖିବା ମାତ୍ରେ ପକ୍ଷୀ ଭ୍ରମରେ ଶାଣିତ ଶର ନିକ୍ଷେପ କଲା । ସେତେବେଳେ ନିଜ ଭ୍ରମ ପାଇଁ ଅନୁତପ୍ତ ବ୍ୟାଧକୁ ଆଶୀର୍ବାଦ ଓ ସାନ୍ତ୍ୱନା ପ୍ରଦାନପୂର୍ବକ ସେ ଯୋଗ ଅବଲମ୍ବନ କରି ଶରୀରରକ୍ଷା କଲେ ।

ମହାମହିମ ବୁଦ୍ଧ ଚଣ୍ଡାଳର ଆତିଥ୍ୟଗ୍ରହଣରେ ମହାପରିନିର୍ବାଣପ୍ରାପ୍ତି କଥା ପୂର୍ବରୁ ଜାଣି ମଧ୍ୟ ଏହା ସ୍ୱୀକାରପୂର୍ବକ ଆଶୀର୍ବାଦ ଓ ସାନ୍ତ୍ୱନା ଦ୍ୱାରା ତାକୁ ଅନ୍ୟର ଘୃଣା ଓ ନିନ୍ଦାରୁ ରକ୍ଷା କରି ଉକ୍ତ ପଦବୀରେ ଆରୂଢ଼ ହୋଇଥିଲେ ! ପୁଣି ସ୍ତ୍ରୀ-ଜାତିକୁ ସନ୍ନ୍ୟାସଗ୍ରହଣରେ ଅନୁମତି ଦେଲେ ତାଙ୍କ ଦ୍ୱାରା ପ୍ରଚାରିତ ଧର୍ମ ଶୀଘ୍ର କଳୁଷିତ ହେବ ଜାଣି ମଧ୍ୟ ସେ ନିଜର ପୂଜ୍ୟା ମାଉସୀ ଗୌତମୀଙ୍କୁ ପ୍ରବ୍ରଜ୍ୟାଗ୍ରହଣ ପାଇଁ ଆଦେଶ କରିଥିଲେ ।

ଈଶ୍ୱରାବତାର ଈଶା ତାଙ୍କର ଶିଷ୍ୟ 'ଜୁଡାସ୍' ତାଙ୍କୁ ଅର୍ଥଲୋଭରେ ଶତ୍ରୁ ହସ୍ତରେ ସମର୍ପଣ କରିବ ଏବଂ ସେଥିରେ ହିଁ ତାଙ୍କର ଶରୀର ନାଶ ହେବ', ଏହା ଜାଣିପାରି ମଧ୍ୟ ତାପ୍ରତି ସମଭାବରେ ସ୍ନେହ ପ୍ରଦର୍ଶନ କରି ଆଜୀବନ ତାର କଲ୍ୟାଣ-ଚେଷ୍ଟାରେ ନିଜକୁ ନିଯୁକ୍ତ ରଖିଥିଲେ ।

### ଏପରି ସାଧକମାନଙ୍କର ମନରେ ସ୍ୱାର୍ଥଦୁଷ୍ଟ ବାସନାର ଉଦୟ ହୋଇ ନ ଥାଏ :

ଅବତାର ପୁରୁଷମାନଙ୍କର କଥା କ'ଣ କୁହାଯିବ, ସିଦ୍ଧ ଜୀବନ୍ମୁକ୍ତ ପୁରୁଷମାନଙ୍କର ଜୀବନ ଆଲୋଚନା କରି ମଧ୍ୟ ଆମେ ଏପରି ଅନେକ ଘଟଣା ଜାଣିବାକୁ ପାଉ । ଅବତାର ପୁରୁଷମାନଙ୍କର ଜୀବନରେ ଗୋଟିଏ ପଟେ ଅସାଧାରଣ ଉଦ୍ୟମଶୀଳତାର ଏବଂ ଅନ୍ୟପକ୍ଷରେ ବିରାଟଙ୍କ ଇଚ୍ଛାରେ ସମ୍ପୂର୍ଣ୍ଣ ନିର୍ଭରତାର ସାମଞ୍ଜସ୍ୟ କରିବାକୁ ହେଲେ ଏହା ହିଁ ସିଦ୍ଧାନ୍ତ କରିବାକୁ ହୋଇଥାଏ ଯେ, ବିରାଟ-ଇଚ୍ଛାରେ ଅନୁମୋଦନରେ ହିଁ ସେମାନଙ୍କ ମଧ୍ୟ ଦେଇ ଉଦ୍ୟମର ପ୍ରକାଶ ହୋଇଥାଏ, ନ ହେଲେ ନୁହେଁ । ଅତଏବ ଦେଖାଯାଉଅଛି, ଈଶ୍ୱରଙ୍କ ଇଚ୍ଛା ସମ୍ପୂର୍ଣ୍ଣ ଅନୁଗାମୀ ପୁରୁଷମାନଙ୍କର ଅନ୍ତର୍ଗତ ସ୍ୱାର୍ଥସଂସ୍କାରସମୂହ ସମ୍ପୂର୍ଣ୍ଣ ବିନଷ୍ଟ ହୋଇ ମନ ଏପରି ଏକ ପବିତ୍ର ଭୂମିରେ ଉପନୀତ ହୁଏ, ଯେଉଁଠାରେ ଏଥିରେ ଶୁଦ୍ଧ ବ୍ୟତୀତ ସ୍ୱାର୍ଥଦୁଷ୍ଟ ଭାବସମୂହର କଦାପି ଉଦୟ ହୁଏ ନାହିଁ ଏବଂ ଏପରି ଅବସ୍ଥାସମ୍ପନ୍ନ ସାଧକମାନେ ନିଶ୍ଚିନ୍ତ ମନରେ ନିଜର ମନୋଭାବଗୁଡ଼ିକରେ ବିଶ୍ୱାସ-ସ୍ଥାପନପୂର୍ବକ ଏସବୁର ପ୍ରେରଣାରେ କର୍ମ ଅନୁଷ୍ଠାନ କରି ଦୋଷଭାଗୀ ହୁଅନ୍ତି ନାହିଁ । ଠାକୁରଙ୍କର ଏପରି ଅନୁଷ୍ଠାନସମୂହ ସାଧାରଣ ମନୁଷ୍ୟମାନଙ୍କ

ପକ୍ଷରେ ଅନୁକରଣୀୟ ନ ହେଲେ ମଧ୍ୟ, ପୂର୍ବୋକ୍ତ ପ୍ରକାରର ଅସାଧାରଣ ଅବସ୍ଥାସମ୍ପନ୍ନ ସାଧକଙ୍କୁ ନିଜ ଜୀବନ ପରିଚାଳନାରେ ବିଶେଷ ଆଲୋକ ପ୍ରଦାନ କରିବ, ଏଥିରେ ସନ୍ଦେହ ନାହିଁ । ଏପରି ଅବସ୍ଥାସମ୍ପନ୍ନ ପୁରୁଷମାନଙ୍କର ଆହାରବିହାର ଇତ୍ୟାଦି ସାମାନ୍ୟ ସ୍ୱାର୍ଥବାସନାକୁ ଶାସ୍ତ୍ର ଭର୍ଜିତବୀଜ ସହିତ ତୁଳନା କରିଛନ୍ତି । ଅର୍ଥାତ୍ ବୃକ୍ଷଲତାଦିର ବୀଜସମୂହ ଉତ୍ତାପଦଗ୍ଧ ହେଲେ ସେମାନଙ୍କ ଜୀବନୀଶକ୍ତି ଅନ୍ତର୍ହିତ ହୋଇ ସେଥିରୁ ବୃକ୍ଷଲତାଦି ଯେପରି ଉତ୍ପନ୍ନ ହୋଇପାରେ ନାହିଁ, ପୁରୁଷମାନଙ୍କର ସଂସାରବାସନା ତଦ୍ରୂପ ସଂଯମ ଓ ଜ୍ଞାନାଗ୍ନିରେ ଦଗ୍ଧୀଭୂତ ହେବାରେ ଏଗୁଡ଼ିକ ସେମାନଙ୍କୁ କେତେବେଳେ ହେଲେ ଭୋଗତୃଷ୍ଣା ଆଡ଼କୁ ଆକୃଷ୍ଟ କରି ବିପଥଗାମୀ କରିପାରି ନ ଥାଏ । ଠାକୁର ଏହି କଥା ଆମମାନଙ୍କୁ ବୁଝାଇବା ପାଇଁ କହୁଥିଲେ, ପରଶମଣି ସ୍ପର୍ଶରେ ଲୌହ ତରବାରି ସ୍ୱର୍ଣ୍ଣମୟ ହୋଇଗଲେ ଏହାର ହିଂସାକ୍ଷମ ଆକାରମାତ୍ର ହିଁ ବିଦ୍ୟମାନ ଥାଏ, ଏହା ଦ୍ୱାରା ହିଂସା କାର୍ଯ୍ୟ ଆଉ ହୁଏ ନାହିଁ ।

### ଏପରି ସାଧକ ସତ୍ୟସଂକଳ୍ପ ହୁଅନ୍ତି, ଠାକୁରଙ୍କ ଜୀବନରେ ଏସମ୍ବନ୍ଧରେ ଦୃଷ୍ଟାନ୍ତ :

ଉପନିଷଦ୍‌କାର ଋଷିମାନେ କହିଛନ୍ତି, ଏପରି ସାଧକମାନେ ସତ୍ୟସଂକଳ୍ପ ହୋଇଥାଆନ୍ତି । ଅର୍ଥାତ୍ ସେମାନଙ୍କର ଅନ୍ତରରେ ଉଦିତ ସଂକଳ୍ପସମୂହ ସତ୍ୟ ବ୍ୟତୀତ ମିଥ୍ୟା କଦାପି ହୁଏ ନାହିଁ । ଭାବମୁଖରେ ଅବସ୍ଥିତ ଠାକୁରଙ୍କ ମନରେ ଉଦିତ ଭାବଗୁଡ଼ିକୁ ବାରମ୍ବାର ପରୀକ୍ଷା ଦ୍ୱାରା ସତ୍ୟ ବୋଲି ଦେଖି ନ ପାରିଥିଲେ, ଆମେମାନେ ଋଷିମାନଙ୍କର ପୂର୍ବୋକ୍ତ କଥାରେ କଦାପି ବିଶ୍ୱାସୀ ହୋଇପାରି ନ ଥାନ୍ତୁ । ଆମେ ଦେଖିଛୁ, କୌଣସି ପ୍ରକାର ଆହାର ଗ୍ରହଣ କରିବାକୁ ଯାଇ ଠାକୁରଙ୍କ ମନ ସଙ୍କୁଚିତ ହେଲେ ଅନୁସନ୍ଧାନ ଦ୍ୱାରା ଜଣାଯାଇଛି, ତାହା ଏହାପୂର୍ବରୁ ବାସ୍ତବିକ ଦୋଷଦୁଷ୍ଟ ହୋଇଥିଲା — କୌଣସି ବ୍ୟକ୍ତିଙ୍କୁ ଈଶ୍ୱରୀୟ ବିଷୟ କଥା କହିବାକୁ ଯାଇ ତାଙ୍କ ମୁହଁ ବନ୍ଦ ହୋଇଗଲେ ପ୍ରମାଣିତ ହୋଇଅଛି, ବାସ୍ତବରେ ସେହି ବ୍ୟକ୍ତି ସେବିଷୟର ସମ୍ପୂର୍ଣ୍ଣ ଅନଧିକାରୀ — କୌଣସି ବ୍ୟକ୍ତି ସମ୍ବନ୍ଧରେ ଇହ ଜୀବନରେ ଧର୍ମଲାଭ ହେବ ନାହିଁ ବୋଲି କିମ୍ବା ଅତ୍ୟନ୍ତଅଳ୍ପ ଧର୍ମଲାଭ ହେବ ବୋଲି ତାଙ୍କର ଉପଲବ୍ଧି ହେଲେ, ସତକୁ ସତ ତାହା ସିଦ୍ଧ ହୋଇଛି — କାହାକୁ ଦେଖି ତାଙ୍କ ମନରେ ବିଶେଷ କୌଣସି ଭାବ ଅଥବା ଦେବଦେବୀଙ୍କ କଥା ଉଦିତ ହେଲେ, ଉକ୍ତ ବ୍ୟକ୍ତି ସେହି ଭାବର ବା ସେହି ଦେବୀଙ୍କର ଅନୁଗତ ସାଧକ ବୋଲି ଜଣାଯାଇଛି — ଅନ୍ତରର ଭାବ-ପ୍ରେରଣାରେ ହଠାତ୍ କାହାକୁ କୌଣସି କଥା ସେ କହିଦେଲେ, ସେହି କଥାରେ ସେ ବିଶେଷଆଲୋକ ପ୍ରାପ୍ତ ହୋଇ ତାର ଜୀବନ

ଏକାଥରକେ ପରିବର୍ତ୍ତିତ ହୋଇଯାଇଛି । ଏପରି ଅନେକ କଥା ତାଙ୍କ ସମ୍ବନ୍ଧରେ କୁହାଯାଇପାରେ ।

**ଜଟାଧାରୀଙ୍କ ନିକଟରୁ ଠାକୁରଙ୍କର ଦୀକ୍ଷାଗ୍ରହଣପୂର୍ବକ ବାତ୍ସଲ୍ୟଭାବ-ସାଧନା ଓ ସିଦ୍ଧି :**

ଆମେ କହିଛୁ, ଜଟାଧାରୀଙ୍କର ଆଗମନ ସମୟରେ ଠାକୁର ଅନ୍ତରର ଭାବ-ପ୍ରେରଣାରେ ନିଜକୁ ରମଣୀ ସଦୃଶ ଦେହ-ମନ-ସମ୍ପନ୍ନ ବୋଲି ଧାରଣାପୂର୍ବକ ତଦନୁରୂପ କାର୍ଯ୍ୟ ଅନୁଷ୍ଠାନ କରୁଥିଲେ ଏବଂ ଶ୍ରୀରାମଚନ୍ଦ୍ରଙ୍କର ମଧୁମୟ ବାଲ୍ୟରୂପର ଦର୍ଶନଲାଭ କରି ତାଙ୍କ ପ୍ରତି ବାତ୍ସଲ୍ୟ-ଭାବାପନ୍ନ ହୋଇଥିଲେ । କୁଳଦେବତା ରଘୁବୀରଙ୍କର ପୂଜା ଓ ସେବା ଆଦି ଯଥାରୀତି ସମ୍ପନ୍ନ କରିବା ପାଇଁ ସେ ବହୁ ପୂର୍ବରୁ ରାମମନ୍ତ୍ରରେ ଦୀକ୍ଷିତ ହୋଇଥିଲେ ମଧ୍ୟ ତାଙ୍କ ପ୍ରତି ପ୍ରଭୁ-ଭାବ ବ୍ୟତୀତ ଅନ୍ୟ କୌଣସି ଭାବରେ ସେ ଆକୃଷ୍ଟ ହୋଇ ନ ଥିଲେ । ବର୍ତ୍ତମାନ ସେହି ଦେବତାଙ୍କ ପ୍ରତି ପୂର୍ବୋକ୍ତ ନବୀନ ଭାବ ଉପଲବ୍ଧି କରିବାରୁ ସେ ଏବେ ଗୁରୁମୁଖରୁ ଯଥାଶାସ୍ତ୍ର ସେହି ଭାବର ସାଧନୋଚିତ ମନ୍ତ୍ର ଗ୍ରହଣ କରି ତାହାର ଚରମ ଉପଲବ୍ଧି ପ୍ରତ୍ୟକ୍ଷ କରିବା ପାଇଁ ବ୍ୟସ୍ତ ହୋଇପଡ଼ିଲେ । ଗୋପାଳମନ୍ତ୍ରରେ ସିଦ୍ଧକାମ ଜଟାଧାରୀ ତାଙ୍କର ଏପରି ଆଗ୍ରହ ଜାଣି ତାଙ୍କୁ ଅତି ଶ୍ରଦ୍ଧାରେ ନିଜ ଇଷ୍ଟମନ୍ତ୍ରରେ ଦୀକ୍ଷିତ କଲେ ଏବଂ ଠାକୁର ଏହି ମନ୍ତ୍ର ସାହାଯ୍ୟରେ ତାଙ୍କର ପ୍ରଦର୍ଶିତ ପଥରେ ସାଧନାରେ ନିମଗ୍ନ ହୋଇ କିଛିଦିନ ଭିତରେ ହିଁ ଶ୍ରୀରାମଚନ୍ଦ୍ରଙ୍କର ବାଳଗୋପାଳ ମୂର୍ତ୍ତିର ଅନୁକ୍ଷଣ ଦିବ୍ୟଦର୍ଶନଲାଭରେ ସମର୍ଥ ହେଲେ । ବାତ୍ସଲ୍ୟଭାବ ସହାୟରେ ଏହି ଦିବ୍ୟମୂର୍ତ୍ତିର ଅନୁଧ୍ୟାନରେ ତନ୍ମୟ ହୋଇ ସେ ଅତିଶୀଘ୍ର ପ୍ରତ୍ୟକ୍ଷ କଲେ—

''ଜୋ ରାମ ଦଶରଥ କା ବେଟା, ୱହୀ ରାମ ଘଟ-ଘଟମେ ଲେଟା ।
ୱହୀ ରାମ ଜଗତ୍ ପସେରା, ୱହୀ ରାମ ସବ୍‌ସେ ନ୍ୟାରା ।।

—ଅର୍ଥାତ୍ ଯେଉଁ ଶ୍ରୀରାମଚନ୍ଦ୍ର ଦଶରଥଙ୍କ ପୁତ୍ର ସେହି ରାମ ପ୍ରତିଟି ଶରୀର ଆଶ୍ରୟ କରି ଜୀବ ଭାବରେ ପ୍ରକାଶିତ ହୋଇରହିଛନ୍ତି । ପୁଣି ଏହିପରି ଅନ୍ତରରେ ପ୍ରବେଶପୂର୍ବକ ଜଗତ ରୂପରେ ନିତ୍ୟ ପ୍ରକାଶିତ ହୋଇ ରହିଲେ ମଧ୍ୟ ସେ ଜଗତର ଯାବତୀୟ ପଦାର୍ଥଠାରୁ ପୃଥକ, ମାୟାରହିତ, ନିର୍ଗୁଣସ୍ୱରୂପରେ ନିତ୍ୟ ବିଦ୍ୟମାନ ରହିଛନ୍ତି । ଉପରୋକ୍ତ ହିନ୍ଦୀ ଦୋହାଟି ଆମେ ଠାକୁରଙ୍କୁ ଅନେକ ସମୟରେ ଆବୃତ୍ତି କରିବା ଶୁଣିଛୁ ।

**ଠାକୁରଙ୍କୁ ଜଟାଧାରୀଙ୍କର 'ରାମଲାଲା' ବିଗ୍ରହ ପ୍ରଦାନ :**

ଶ୍ରୀଗୋପାଳମନ୍ତ୍ରରେ ଦୀକ୍ଷାପ୍ରଦାନ ବ୍ୟତୀତ ଜଟାଧାରୀ ରାମଲାଲା ନାମକ ଯେଉଁ ବାଳଗୋପାଳବିଗ୍ରହ ଏତେଦିନ ପର୍ଯ୍ୟନ୍ତ ନିଷ୍ଠାର ସହିତ ସେବା

କରୁଥିଲେ, ତାହାକୁ ଠାକୁରଙ୍କୁ ପ୍ରଦାନ କରିଥିଲେ । କାରଣ, ଏହି ଜୀବନ୍ତ ବିଗ୍ରହଟି ଏବେଠାରୁ ଠାକୁରଙ୍କ ନିକଟରେ ରହିବେ ବୋଲି ସ୍ୱୀୟ ଅଭିପ୍ରାୟ ତାଙ୍କଠାରେ ପ୍ରକାଶ କରିଥିଲେ । ଜଟାଧାରୀ ଓ ଠାକୁରଙ୍କ ସହିତ ଏହି ବିଗ୍ରହଙ୍କର ଅପୂର୍ବ ଲୀଳାବିଳାସ କଥା ଆମେ ଅନ୍ୟତ୍ର[୧] ସବିସ୍ତାର ଉଲ୍ଲେଖ କରିଛୁ, ତେଣୁ ଏଠାରେ ସେହି ପ୍ରସଙ୍ଗର ପୁନରାୟ ଉତ୍‌ଥାପନ ନିଷ୍ପ୍ରୟୋଜନ ।

### ବୈଷ୍ଣବମତ–ସାଧନା ସମୟରେ ଠାକୁର ଭୈରବୀ ବ୍ରାହ୍ମଣୀଙ୍କର କେତେଦୂର ସହାୟତା ଲାଭ କରିଥିଲେ :

ବାତ୍ସଲ୍ୟଭାବର ପରିପୁଷ୍ଟି ଓ ଚରମ ଉତ୍କର୍ଷ ଲାଭ ପାଇଁ ଠାକୁର ଯେତେବେଳେ ପୂର୍ବୋକ୍ତ ରୂପେ ସାଧନାରେ ମନୋନିବେଶ କଲେ, ସେତେବେଳେ ଯୋଗେଶ୍ୱରୀ ନାମ୍ନୀ ଭୈରବୀ ବ୍ରାହ୍ମଣୀ ଦକ୍ଷିଣେଶ୍ୱରରେ ତାଙ୍କ ନିକଟରେ ଅବସ୍ଥାନ କରୁଥିବାର ଆମେ ଏହାପୂର୍ବରୁ ପାଠକଙ୍କୁ କହିଅଛୁ । ଠାକୁରଙ୍କର ଶ୍ରୀମୁଖରୁ ଶୁଣିଛୁ, ବୈଷ୍ଣବତନ୍ତ୍ରୋକ୍ତ ପଞ୍ଚଭାବାଶ୍ରିତ ସାଧନରେ ସେ ମଧ୍ୟ ବିଶେଷ ଅଭିଜ୍ଞା ଥିଲେ । ବାତ୍ସଲ୍ୟ ଓ ମଧୁରଭାବ–ସାଧନ ସମୟରେ ଠାକୁର ତାଙ୍କ ନିକଟରୁ ବିଶେଷ କିଛି ସାହାଯ୍ୟ ପାଇଥିଲେ କି ନାହିଁ, ଏବିଷୟରେ ଆମେ ଠାକୁରଙ୍କ ନିକଟରୁ ସ୍ପଷ୍ଟ ଭାବରେ କିଛି ଶୁଣି ନାହୁଁ । ତେବେ ବାତ୍ସଲ୍ୟଭାବରେ ରହି ବ୍ରାହ୍ମଣୀ ଅନେକ ସମୟ ଠାକୁରଙ୍କୁ ଗୋପାଳରୂପରେ ଦର୍ଶନପୂର୍ବକ ସେବା କରୁଥିଲେ, ଏହି କଥା ଠାକୁରଙ୍କ ଶ୍ରୀମୁଖରୁ ଏବଂ ହୃଦୟଙ୍କ ନିକଟରୁ ଶୁଣି ଅନୁମିତ ହୁଏ, ଶ୍ରୀକୃଷ୍ଣଙ୍କର ବାଳଗୋପାଳମୂର୍ତ୍ତିରେ ବାତ୍ସଲ୍ୟ ଭାବ ଆରୋପିତ କରି ତାର ଚରମ ଉପଲବ୍ଧି କରିବା ସମୟରେ ଓ ମଧୁରଭାବ–ସାଧନାକାଳରେ ଠାକୁର ତାଙ୍କ ନିକଟରୁ କିଛି ନା କିଛି ସାହାଯ୍ୟ ପ୍ରାପ୍ତ ହୋଇଥିଲେ । ବିଶେଷ କୌଣସି ପ୍ରକାର ସାହାଯ୍ୟ ନ ପାଇଥିଲେ ମଧ୍ୟ, ବ୍ରାହ୍ମଣୀଙ୍କୁ ଏପରି ସାଧନାସମୂହରେ ନିରତା ଦେଖି ଏବଂ ତାଙ୍କଠାରୁ ଏଗୁଡ଼ିକର ପ୍ରଶଂସା ଶୁଣି ଠାକୁରଙ୍କର ମନରେ ଏସବୁ ଭାବସାଧନାର ଇଚ୍ଛା ଯେ ବଳବତୀ ହୋଇ ଉଠିଥିଲା, ଏହା ଅନ୍ତତଃ ସ୍ୱୀକାର୍ଯ୍ୟ ।

---

୧. ଗୁରୁଭାବ—ଉତ୍ତରାର୍ଦ୍ଧ ୨ୟ ଅଧ୍ୟାୟ ଦ୍ରଷ୍ଟବ୍ୟ ।

# ତ୍ରୟୋଦଶ ଅଧ୍ୟାୟ

## ମଧୁରଭାବର ସାରତତ୍ତ୍ୱ

### ସାଧକର କଠୋର ଅନ୍ତଃସଂଗ୍ରାମ ଓ ଲକ୍ଷ୍ୟ :

ସାଧକ ନ ହୋଇଥିଲେ ସାଧକ-ଜୀବନର ଇତିହାସ ବୁଝିବା କଷ୍ଟକର । କାରଣ ସାଧନା ସୂକ୍ଷ୍ମ ଭାବରାଜ୍ୟର ବିଷୟ । ସେଠାରେ ରୂପରସାଦି ବିଷୟସମୂହର ମୋହନୀୟ ସ୍ଥୂଳ ମୂର୍ତ୍ତିଗୁଡ଼ିକ ନୟନଗୋଚର ହୋଇ ନ ଥାଏ, ବାହ୍ୟବସ୍ତୁ ଓ ବ୍ୟକ୍ତିମାନଙ୍କ ଅବଲମ୍ବନରେ ଘଟଣାବଳୀର ବିଚିତ୍ର ସମାବେଶପାରମ୍ପର୍ଯ୍ୟ ଦେଖାଯାଏ ନାହିଁ କିମ୍ବା ରାଗଦ୍ୱେଷ ଆଦି ଦ୍ୱନ୍ଦ୍ୱସମାକୁଳ ମନୁଷ୍ୟମନ ପ୍ରବୃତ୍ତିର ପ୍ରେରଣାରେ ଅସ୍ଥିର ହୋଇ ଭୋଗସୁଖ କରାୟତ୍ତ କରିବା ପାଇଁ ଅନ୍ୟକୁ ପଛରେ ପକାଇବାକୁ ଯେପରି ଉଦ୍ୟମ କରିଥାଏ ଏବଂ ବିଷୟବିମୁଗ୍ଧ ସଂସାର ଯାହାକୁ ବୀରତ୍ୱ ଓ ମହତ୍ତ୍ୱ ବୋଲି ଘୋଷଣା କରିଥାଏ — ଏପରି ଉନ୍ମାଦ ଉଦ୍ୟମାଦିର ମଧ୍ୟ କିଛି ମାତ୍ର ସେଠାରେ ପ୍ରକାଶ ନ ଥାଏ । ସେଠାରେ କେବଳ ସାଧକର ନିଜ ଅନ୍ତର ଓ ତନ୍ମଧ୍ୟସ୍ଥ ଜନ୍ମଜନ୍ମାନ୍ତରର ଅନନ୍ତ ସଂସ୍କାରପ୍ରବାହ ବିଦ୍ୟମାନ ଥାଏ । କେବଳ ବାହ୍ୟବସ୍ତୁ ବା ଶକ୍ତିବିଶେଷର ସଂଘର୍ଷରେ ଆସି ସାଧକର ଉଚ୍ଚଭାବ ଓ ଲକ୍ଷ୍ୟ ପ୍ରତି ଆକୃଷ୍ଟ ହେବା ଏବଂ ଉକ୍ତ ଭାବରେ ମନର ଏକତାନତା ଆନୟନ କରିବାର ଏବଂ ସେହି ଲକ୍ଷ୍ୟରେ ଅଗ୍ରସର ହେବା ନିମିତ୍ତ ନିଜର ପ୍ରତିକୂଳ ସଂସ୍କାରଗୁଡ଼ିକ ସହିତ ଦୃଢ଼ ସଂକଳ୍ପରେ ଅନନ୍ତ ସଂଗ୍ରାମ କରିବା ମଧ୍ୟ ବିଦ୍ୟମାନ ଥାଏ । ସେଠାରେ ଥାଏ କେବଳ ବାହ୍ୟ ବିଷୟଗୁଡ଼ିକରୁ ସାଧକର ମନ କ୍ରମେ ଏକାନ୍ତ ଭାବରେ ବିମୁଖ ହୋଇ ନିଜ ଅନ୍ତରରେ ପ୍ରବେଶପୂର୍ବକ ନିଜ ମଧ୍ୟରେ ନିଜେ ବୁଡ଼ି ରହିବା, ଅନ୍ତରାଜ୍ୟର ଗଭୀରରୁ ଗଭୀରତର ପ୍ରଦେଶସମୂହରେ ଅବତୀର୍ଣ୍ଣ ହୋଇ ସୂକ୍ଷ୍ମରୁ ସୂକ୍ଷ୍ମତର ଭାବାନ୍ତରସମୂହର ଉପଲବ୍ଧି କରିବା ଏବଂ ପରିଶେଷରେ ନିଜ ଅସ୍ତିତ୍ୱର ଗଭୀରତମ ପ୍ରଦେଶରେ ଉପସ୍ଥିତ ହୋଇ ଯାହାର ଅବଲମ୍ବନରେ ସର୍ବଭାବର ଓ ଅହଂଜ୍ଞାନର ଉତ୍ପତ୍ତି ହୋଇଅଛି ଏବଂ ଯାହାର ଆଶ୍ରୟରେ ଏସମସ୍ତ ନିତ୍ୟ ଅବସ୍ଥାନ କରୁଛନ୍ତି, ସେହି 'ଅଶବ୍ଦମସ୍ପର୍ଶମରୂପମବ୍ୟୟମେକମେବା-ଦ୍ୱିତୀୟମ୍' ବସ୍ତୁର ଉପଲବ୍ଧି ଏବଂ ତାଙ୍କ ସହିତ ଏକୀଭୂତ ହୋଇ ଅବସ୍ଥିତି । ପରେ ସଂସ୍କାରସମୂହ ପୂର୍ଣ୍ଣରୂପରେ କ୍ଷୀଣ ହୋଇ ମନର ସଂକଳ୍ପବିକଳ୍ପାତ୍ମକ ଧର୍ମ ଚିରକାଳ ପାଇଁ ଯେତେଦିନ ନାଶ ନ ହୁଏ, ସେତେଦିନ ପର୍ଯ୍ୟନ୍ତ ଯେଉଁ ପଥ ଅବଲମ୍ବନରେ ସାଧକ-ମନ ପୂର୍ବୋକ୍ତ ଅଦ୍ୱୟ ବସ୍ତୁର ଉପଲବ୍ଧିରେ ଉପସ୍ଥିତ ହୋଇଥିଲା, ବିଲୋମଭାବରେ ସେହି ପଥ ଦେଇ ସମାଧି ଅବସ୍ଥାରୁ ପୁନରାୟ ବହିର୍ଜଗତର ଉପଲବ୍ଧିରେ ତାହାର ଉପସ୍ଥିତ ହେବା ପ୍ରକ୍ରିୟା ଚାଲୁ ରହେ ।

**ଅସାଧାରଣ ସାଧକମାନଙ୍କର ନିର୍ବିକଳ୍ପ ସମାଧିରେ ଅବସ୍ଥାନ କରିବାର ସ୍ୱତଃପ୍ରବୃତ୍ତି—ଶ୍ରୀରାମକୃଷ୍ଣଦେବ ସେହି ଶ୍ରେଣୀଭୁକ୍ତ ସାଧକ :**

ଉପରୋକ୍ତ ରୂପେ ସମାଧିରୁ ବାହ୍ୟଜଗତର ଉପଲବ୍ଧି ଏବଂ ସେଠାରୁ ସମାଧି-ଅବସ୍ଥାରେ ସାଧକ-ମନର ଗମନାଗମନ ପୁନଃ ପୁନଃ ହେଉଥାଏ । ଜଗତର ଆଧ୍ୟାତ୍ମିକ ଇତିହାସ ସୃଷ୍ଟିର ପ୍ରାଚୀନତମ ଯୁଗରୁ ଅଦ୍ୟାବଧି ଏପରି କେତୋଟି ସାଧକ-ମନର କଥା ଲିପିବଦ୍ଧ ହୋଇଅଛି, ଯେଉଁମାନଙ୍କ ପୂର୍ବୋକ୍ତ ସମାଧି ଅବସ୍ଥା ହିଁ ଯେପରି ସ୍ୱାଭାବିକ ଅବସ୍ଥାନର ଭୂମି—ସାଧାରଣ ମାନବର କଲ୍ୟାଣ ପାଇଁ କୌଣସି ପ୍ରକାରରେ ଜୋର୍ କରି ସେମାନେ କିଛିକାଳ ପାଇଁ ନିଜକୁ ସଂସାରରେ, ବାହ୍ୟଜଗତ ଉପଲବ୍ଧି କରିବାର ଭୂମିରେ ଆବଦ୍ଧ କରି ରଖିଥିଲେ । ଶ୍ରୀରାମକୃଷ୍ଣଦେବଙ୍କର ସାଧନା-ଇତିହାସ ଆମ୍ଭେ ଯେତେ ଜାଣିବୁ, ସେତେ ହିଁ ବୁଝିବୁ ଯେ, ତାଙ୍କର ମନ ଉକ୍ତଶ୍ରେଣୀଭୁକ୍ତ ଥିଲା । ତାଙ୍କର ଲୀଳାପ୍ରସଙ୍ଗ-ଆଲୋଚନାରେ ଯଦି ଆମମାନଙ୍କର ଏପରି ଧାରଣା ନ ହୁଏ, ତେବେ ବୁଝିବାକୁ ହେବ ଏଥିପାଇଁ ଲେଖକଙ୍କର ତ୍ରୁଟି ହିଁ ଦାୟୀ । କାରଣ ସେ ଆମମାନଙ୍କୁ ବାରମ୍ବାର କହିଯାଇଛନ୍ତି, ''ଛୋଟ ଛୋଟ ଗୋଟେ-ଅଧେ ବାସନା ଜୋର୍ କରି ରଖି ତାହାର ଅବଲମ୍ବନରେ ମନକୁ ତୁମମାନଙ୍କ ପାଇଁ ନିମ୍ନଗାମୀ କରି ରଖେ ! ନ ହେଲେ ଏହାର ସ୍ୱାଭାବିକ ପ୍ରବୃତ୍ତି ହେଲା ଅଖଣ୍ଡରେ ମିଳିତ ଓ ଏକୀଭୂତ ହୋଇ ଅବସ୍ଥାନ କରିବା ।''

**'ଶୂନ୍ୟ' ଏବଂ 'ପୂର୍ଣ୍ଣ' ନାମରେ ନିର୍ଦ୍ଦିଷ୍ଟ ବସ୍ତୁ ଏକ ପଦାର୍ଥ :**

ସମାଧି ସମୟରେ ଉପଲବ୍ଧ ଅଖଣ୍ଡ ଅଦ୍ୱୟ ବସ୍ତୁକୁ ପ୍ରାଚୀନ ଋଷିଗଣଙ୍କ ମଧ୍ୟରୁ କେହି କେହି ସର୍ବଭାବର ଅଭାବ ବା 'ଶୂନ୍ୟ' ବୋଲି, ଏବଂ କେହି କେହି ସର୍ବଭାବର ସମ୍ମିଳନଭୂମି 'ପୂର୍ଣ୍ଣ' ବୋଲି ଆଖ୍ୟା ଦେଇଯାଇଛନ୍ତି । ଫଳରେ ସମସ୍ତେ କିନ୍ତୁ ଗୋଟିଏ କଥା ହିଁ କହିଯାଇଛନ୍ତି । କାରଣ ସମସ୍ତେ ଏହାକୁ ସର୍ବଭାବର ଉତ୍ପତ୍ତି ଓ ଲୟଭୂମି ବୋଲି କହିଛନ୍ତି । ଭଗବାନ ବୁଦ୍ଧ ଯାହାକୁ ସର୍ବଭାବର ନିର୍ବାଣ-ଭୂମି ଶୂନ୍ୟବସ୍ତୁ ବୋଲି କହିଛନ୍ତି, ଭଗବାନ ଶଙ୍କର ତାହାକୁ ହିଁ ସର୍ବଭାବର ମିଳନ-ଭୂମି ପୂର୍ଣ୍ଣବସ୍ତୁ ବୋଲି ଶିକ୍ଷା ଦେଇଛନ୍ତି । ପରବର୍ତ୍ତୀ ବୌଦ୍ଧାଚାର୍ଯ୍ୟଗଣଙ୍କର ମତାମତ ଛାଡ଼ି ଦେଇ ଉଭୟଙ୍କର କଥା ଆଲୋଚନା କଲେ ଏହିପରି ସିଦ୍ଧ ହୁଏ ।

**ଅଦ୍ୱୈତଭାବର ସ୍ୱରୂପ :**

ଶୂନ୍ୟ ବା ପୂର୍ଣ୍ଣ ବୋଲି ଆଖ୍ୟାୟିତ ଅଦ୍ୱୈତଭାବଭୂମିକୁ ହିଁ ଉପନିଷଦ୍ ଏବଂ ବେଦାନ୍ତରେ ଭାବାତୀତ ଅବସ୍ଥା ବୋଲି କୁହାଯାଇଅଛି । କାରଣ ଉକ୍ତ ଭୂମିରେ ସମ୍ୟକ୍ ରୂପରେ ପ୍ରତିଷ୍ଠିତ ହେଲେ ସାଧକର ମନ ସଗୁଣ ବ୍ରହ୍ମ ବା

ଈଶ୍ୱରଙ୍କର ସୃଜନ, ପାଳନ ଏବଂ ନିଧନ ଆଦି ଲୀଳାପ୍ରସୂତ ସମଗ୍ର ଭାବଭୂମିର ସୀମା ଅତିକ୍ରମପୂର୍ବକ ସମରସ-ମଗ୍ନ ହୋଇଯାଏ । ଅତଏବ ଦେଖାଯାଉଛି, ସସୀମ ମାନବମନ ଆଧ୍ୟାତ୍ମିକରାଜ୍ୟରେ ପ୍ରବିଷ୍ଟ ହୋଇ ଶାନ୍ତଦାସ୍ୟାଦି ଯେଉଁ ପଞ୍ଚଭାବ ଅବଲମ୍ବନରେ ଈଶ୍ୱରଙ୍କ ସହିତ ନିତ୍ୟ ସମ୍ବନ୍ଧ ହୁଏ, ସେସମସ୍ତଠାରୁ ଅଦ୍ୱୈତ ଭାବ ଏକ ପୃଥକ ଅପାର୍ଥିବ ବସ୍ତୁ । ପୃଥିବୀର ମନୁଷ୍ୟ ଇହ-ପରକାଳରେ ପ୍ରାପ୍ତ ସମସ୍ତ ପ୍ରକାରର ଭୋଗସୁଖରେ ଐକାନ୍ତିକ ଭାବରେ ଉଦାସୀନ ହୋଇ ପବିତ୍ରତା ବଳରେ ଦେବତାମାନଙ୍କ ଅପେକ୍ଷା ଉଚ୍ଚପଦ ଲାଭ କଲେ ହିଁ ଉକ୍ତ ଭାବ ଉପଲବ୍ଧି କରିଥାଏ ଏବଂ ସମଗ୍ର ସଂସାର ଓ ଏହାର ସୃଷ୍ଟି-ସ୍ଥିତି-ପ୍ରଳୟକର୍ତ୍ତା ଈଶ୍ୱର ଯେଉଁଥିରେ ନିତ୍ୟ ପ୍ରତିଷ୍ଠିତ, ଉକ୍ତ ଭାବ ସହାୟରେ ନିର୍ଗୁଣ ବ୍ରହ୍ମବସ୍ତୁର ସେହି ପ୍ରତ୍ୟକ୍ଷ ଲାଭରେ କୃତାର୍ଥ ହୋଇଥାଏ ।

### ଶାନ୍ତାଦି ଭାବପଞ୍ଚକ ଏବଂ ଏଗୁଡ଼ିକର ସାଧ୍ୟବସ୍ତୁ ଈଶ୍ୱର :

ଅଦ୍ୱୈତଭାବ ଓ ଏହାଦ୍ୱାରା ଉପଲବ୍ଧ ନିର୍ଗୁଣବ୍ରହ୍ମଙ୍କ କଥା ଛାଡ଼ି ଦେଲେ ଆଧ୍ୟାତ୍ମିକ ରାଜ୍ୟରେ ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଓ ମଧୁର-ରୂପକ ପଞ୍ଚଭାବର ପ୍ରକାଶ ଦେଖିବାକୁ ମିଳେ । ଏସବୁର ପ୍ରତ୍ୟେକଟିର ସାଧ୍ୟବସ୍ତୁ ଈଶ୍ୱର ବା ସଗୁଣ-ବ୍ରହ୍ମ । ଅର୍ଥାତ୍ ସାଧକ ମାନବ ନିତ୍ୟ-ଶୁଦ୍ଧ-ବୁଦ୍ଧ-ମୁକ୍ତ-ସ୍ୱଭାବବାନ, ସର୍ବଶକ୍ତିମାନ, ସର୍ବନିୟନ୍ତା ଈଶ୍ୱରଙ୍କ ପ୍ରତି ଏସମସ୍ତ ଭାବରୁ କୌଣସି ଗୋଟିଏ ଆରୋପ କରି ତାହାଙ୍କୁ ପ୍ରତ୍ୟକ୍ଷ କରିବାକୁ ଅଗ୍ରସର ହୋଇଥାଏ ଏବଂ ସର୍ବାନ୍ତର୍ଯ୍ୟାମୀ, ସର୍ବଭାବାଧାର ଈଶ୍ୱର ମଧ୍ୟ ତାଙ୍କ ମନର ଐକାନ୍ତିକତା ଏବଂ ଏକନିଷ୍ଠା ଦେଖି ତାଙ୍କର ଭାବ ପରିପୁଷ୍ଟି ନିମିତ୍ତ ଉକ୍ତ ଭାବାନୁରୂପ ତନୁ ଧାରଣପୂର୍ବକ ତାକୁ ଦର୍ଶନ ଦାନରେ କୃତାର୍ଥ କରିଥାଆନ୍ତି । ଏପରି ହିଁ ଭିନ୍ନ ଭିନ୍ନ ଯୁଗରେ ଈଶ୍ୱରଙ୍କର ନାନା ଭାବମୟ ଚିଦ୍‌ଘନ ମୂର୍ତ୍ତିଧାରଣ ଏବଂ ଏପରିକି, ସ୍ଥୂଳ ମନୁଷ୍ୟରୂପରେ ଅବତୀର୍ଣ୍ଣ ହୋଇ ସାଧକର ଅଭୀଷ୍ଟପୂରଣର କଥା ଶାସ୍ତ୍ରପାଠରେ ଜଣାଯାଇଥାଏ ।

### ଶାନ୍ତାଦି ଭାବପଞ୍ଚକର ସ୍ୱରୂପ — ଏଗୁଡ଼ିକ ଜୀବକୁ କିପରି ଉନ୍ନତ କରିଥାନ୍ତି :

ସଂସାରରେ ଜନ୍ମହୋଇ ମନୁଷ୍ୟ ଅନ୍ୟ ସମସ୍ତଙ୍କ ସହିତ ଯେଉଁ ସମସ୍ତ ଭାବ ନେଇ ନିତ୍ୟ ସମ୍ବନ୍ଧରେ ରହିଥାଏ, ଶାନ୍ତଦାସ୍ୟାଦି ପଞ୍ଚ-ଭାବ ସେହି ପାର୍ଥିବ ଭାବସମୂହର ହିଁ ସୂକ୍ଷ୍ମ ଓ ଶୁଦ୍ଧ ପ୍ରତିକୃତିସ୍ୱରୂପ । ସଂସାରରେ ଆମେ ପିତା, ମାତା, ସ୍ୱାମୀ, ସ୍ତ୍ରୀ, ସଖା, ସଖୀ, ପ୍ରଭୁ, ଭୃତ୍ୟ, ପୁତ୍ର, କନ୍ୟା, ରାଜା, ପ୍ରଜା, ଗୁରୁ, ଶିଷ୍ୟ ପ୍ରଭୃତିଙ୍କ ସହିତ ଗୋଟିଏ ଗୋଟିଏ ବିଶେଷ ସମ୍ବନ୍ଧ ଉପଲବ୍ଧି କରିଥାଉ ଏବଂ ଶତ୍ରୁ ନ ହେଲେ ସାଧାରଣଙ୍କ ସହିତ ଶ୍ରଦ୍ଧାଯୁକ୍ତ ବ୍ୟବହାର କରିବା କର୍ତ୍ତବ୍ୟ ବୋଲି

ଜ୍ଞାନ କରିଥାଉ । ଭକ୍ତିମାର୍ଗର ଆଚାର୍ଯ୍ୟଗଣ ସେହି ସମ୍ବନ୍ଧସମୂହକୁ ଶାନ୍ତାଦି ପାଞ୍ଚଟି ଶ୍ରେଣୀରେ ବିଭକ୍ତ କରିଛନ୍ତି ଏବଂ ଅଧିକାରୀଭେଦରେ ଏଗୁଡ଼ିକରୁ ଭାବାନୁଯାୟୀ ଯେକୌଣସିଟିକୁ ମୁଖ୍ୟ ରୂପେ ଅବଲମ୍ବନ କରି ଈଶ୍ୱରଙ୍କଠାରେ ଆରୋପ କରିବାକୁ ଉପଦେଶ ଦେଇଛନ୍ତି । କାରଣ ଶାନ୍ତାଦି ପଞ୍ଚଭାବ ସହିତ ଜୀବ ନିତ୍ୟ ପରିଚିତ ଥିବାରୁ ତାହାର ଅବଲମ୍ବନରେ ଈଶ୍ୱରଙ୍କୁ ପ୍ରତ୍ୟକ୍ଷ କରିବାକୁ ଅଗ୍ରସର ହେବା ତା ପକ୍ଷରେ ସୁଗମ ହେବ । କେବଳ ସେତିକି ନୁହେଁ, ପ୍ରବୃତ୍ତିମୂଳକ ଏହି ସମସ୍ତ ସମ୍ବନ୍ଧାଶ୍ରିତ ଭାବର ପ୍ରେରଣାରେ ରାଗଦ୍ୱେଷାଦି ଯେଉଁ ସମସ୍ତ ପ୍ରବୃତ୍ତି ତାର ମନରେ ଉଦିତ ହୋଇ, ଏହାପୂର୍ବରୁ ତାକୁ ସଂସାରର ନାନା କୁକର୍ମରେ ରତ କରାଉଥିଲେ, ଈଶ୍ୱରାର୍ପିତ ସମ୍ବନ୍ଧ ଆଶ୍ରୟରେ ସେହି ସମସ୍ତ ବୃତ୍ତି ତାଙ୍କ ମନରେ ଉତ୍‌ଥିତ ହେଲେ ମଧ୍ୟ ଏଗୁଡ଼ିକର ପ୍ରବଳ ବେଗ ତାହାକୁ ଈଶ୍ୱରଦର୍ଶନରୂପକ ଲକ୍ଷ୍ୟାଭିମୁଖରେ ହିଁ ଅଗ୍ରସର କରାଇବ । ଯଥା — ସମସ୍ତ ଦୁଃଖର କାରଣ ସ୍ୱରୂପ କାମ, ତାକୁ ଈଶ୍ୱରଦର୍ଶନକାମନାରେ ନିଯୁକ୍ତ ରଖିବ, ଏହି ଦର୍ଶନ ମାର୍ଗର ପ୍ରତିକୂଳ ବସ୍ତୁ ଓ ବ୍ୟକ୍ତିମାନଙ୍କ ଉପରେ ତା'ର କ୍ରୋଧ ପ୍ରଯୁକ୍ତ ହେବ, ସାଧବସ୍ତୁ ଈଶ୍ୱରଙ୍କର ଅପୂର୍ବ ପ୍ରେମ-ସୌନ୍ଦର୍ଯ୍ୟର ସମ୍ଭୋଗ ଲୋଭରେ ହିଁ ସେ ଉନ୍ମତ୍ତ ଓ ମୋହିତ ହେବ ଏବଂ ଈଶ୍ୱରଙ୍କର ପୁଣ୍ୟ ଦର୍ଶନ ଲାଭରେ କୃତାର୍ଥ ବ୍ୟକ୍ତିମାନଙ୍କର ଅପୂର୍ବ ଧର୍ମଶ୍ରୀ ଦେଖି ସେ ତାହା ଲାଭ ନିମିତ୍ତ ବ୍ୟାକୁଳ ହୋଇ ଉଠିବ ।

### ପ୍ରେମ ହିଁ ଭାବ-ସାଧନାର ଉପାୟ ଏବଂ ଈଶ୍ୱରଙ୍କର ସାକାର ବ୍ୟକ୍ତିତ୍ୱ ହିଁ ଏହାର ଅବଲମ୍ବନ :

ଶାନ୍ତଦାସ୍ୟାଦି ଭାବପଞ୍ଚକ ସେହିପରି ଈଶ୍ୱରଙ୍କଠାରେ ପ୍ରୟୋଗ କରିବାକୁ ଜୀବ ଗୋଟିଏ ସମୟରେ ବା ଜଣକ ନିକଟରୁ ଶିକ୍ଷା କରି ନାହିଁ । ଯୁଗେ ଯୁଗେ ନାନା ମହାପୁରୁଷ ସଂସାରରେ ଜନ୍ମଗ୍ରହଣପୂର୍ବକ ଏସମସ୍ତ ଭାବର ଗୋଟିଏ, ଦୁଇଟି ବା ତତୋଧିକ ଅବଲମ୍ବନରେ ଈଶ୍ୱରଲାଭ ନିମିତ୍ତ ନିଯୁକ୍ତ ହୋଇ ତାହାଙ୍କୁ ପ୍ରେମରେ ଆପଣାର କରି ନେଇ ଏପରି କରିବାକୁ ଶିକ୍ଷା ଦେଇଛନ୍ତି । ଏହି ସମସ୍ତ ଆଚାର୍ଯ୍ୟଙ୍କର ଅଲୌକିକ ଜୀବନ ଆଲୋଚନାରୁ ଏବିଷୟ ସ୍ପଷ୍ଟ ପ୍ରତୀତ ହୋଇଥାଏ ଯେ, ଏକମାତ୍ର ପ୍ରେମ ହିଁ ଭାବସାଧନାର ମୂଳରେ ଅବସ୍ଥିତ ଏବଂ ଈଶ୍ୱରଙ୍କର ଉନ୍ନତ ବା ଅନୁନ୍ନତ କୌଣସି ପ୍ରକାରର ସାକାର ବ୍ୟକ୍ତିତ୍ୱ ଉପରେ ହିଁ ଏହି ପ୍ରେମ ସର୍ବଦା ପ୍ରଯୁକ୍ତ ହୋଇଛି; କାରଣ ଦେଖାଯାଏ, ଅଦ୍ୱୈତଭାବର ଉପଲବ୍ଧି ମନୁଷ୍ୟ ଯେତେଦିନ ପର୍ଯ୍ୟନ୍ତ କରିପାରି ନ ଥାଏ, ସେତେଦିନ ପର୍ଯ୍ୟନ୍ତ ସେ ଈଶ୍ୱରଙ୍କର କୌଣସି ନା କୌଣସି ପ୍ରକାରର ସସୀମ ସାକାର ବ୍ୟକ୍ତିତ୍ୱର ହିଁ କଳ୍ପନା ଓ ଉପଲବ୍ଧି କରିବାକୁ ସକ୍ଷମ ହୋଇଥାଏ ।

## ପ୍ରେମରେ ଐଶ୍ୱର୍ଯ୍ୟଜ୍ଞାନର ଲୋପସିଦ୍ଧି— ଏହା ହିଁ ଭାବସମୂହର ପରିମାପକ :

ପ୍ରେମର ସ୍ୱଭାବ ପର୍ଯ୍ୟାଲୋଚନା କରି ଏକଥା ସ୍ପଷ୍ଟ ବୁଝାଯାଏ ଯେ, ଏହା ପ୍ରେମିକ ଦ୍ୱୟଙ୍କ ମଧ୍ୟରେ ଐଶ୍ୱର୍ଯ୍ୟଜ୍ଞାନମୂଳକ ଭେଦର ଉପଲବ୍ଧି କ୍ରମଶଃ ତିରୋହିତ କରିଦିଏ । ଭାବ-ସାଧନାରେ ନିଯୁକ୍ତ ସାଧକର ମନରୁ ମଧ୍ୟ ଏହା କ୍ରମେ ଈଶ୍ୱରଙ୍କର ଅସୀମ ଐଶ୍ୱର୍ଯ୍ୟଜ୍ଞାନ ତିରୋହିତ କରି ତାଙ୍କୁ ତାହାର ଭାବାନୁରୂପ ପ୍ରେମାସ୍ପଦ ରୂପରେ ଦେଖିବା ପାଇଁ ସର୍ବଦା ପ୍ରେରଣ କରିଥାଏ । ଦେଖାଯାଏ, ଏଥିପାଇଁ ଏହିପଥର ସାଧକ ପ୍ରେମରେ ଈଶ୍ୱରଙ୍କୁ ସମ୍ପୂର୍ଣ୍ଣଭାବରେ ନିଜର ବୋଲି ଜ୍ଞାନ କରି ତାଙ୍କ ପ୍ରତି ଅଭିମାନ, ଅନୁରୋଧ, ତିରସ୍କାରାଦି କିଛିମାତ୍ର କରିବାକୁ କୁଣ୍ଠିତ ହୋଇ ନ ଥାନ୍ତି । ସାଧକଙ୍କୁ ଈଶ୍ୱରଙ୍କର ଐଶ୍ୱର୍ଯ୍ୟଜ୍ଞାନ ଭୁଲାଇ କେବଳ ତାଙ୍କର ପ୍ରେମ ଏବଂ ମାଧୁର୍ଯ୍ୟର ଉପଲବ୍ଧି କରାଇବାକୁ ପୂର୍ବୋକ୍ତ ଭାବପଞ୍ଚକ ମଧ୍ୟରେ ଯେଉଁଟି ଯେତେଦୂର ସକ୍ଷମ, ସେହିଟି ସେତେଦୂର ଉଚ୍ଚଭାବ ବୋଲି ଉକ୍ତ ପଥରେ ପରିଗଣିତ ହୋଇଥାଏ । ଶାନ୍ତାଦି ଭାବପଞ୍ଚକର ଉଚ୍ଚନୀଚ ତାରତମ୍ୟ ନିର୍ଣ୍ଣୟ କରି ମଧୁରଭାବକୁ ଭକ୍ତ୍ୟାଚାର୍ଯ୍ୟଗଣ ସର୍ବୋଚ୍ଚ ପଦବୀ-ପ୍ରଦାନ କରିଛନ୍ତି । ନ ହେଲେ ଏଗୁଡ଼ିକର ପ୍ରତ୍ୟେକଟି ଯେ ସାଧକକୁ ଈଶ୍ୱରଲାଭ କରାଇବାକୁ ସକ୍ଷମ, ଏକଥା ସେମାନେ ସମସ୍ତେ ଏକ ବାକ୍ୟରେ ସ୍ୱୀକାର କରିଛନ୍ତି ।

## ଶାନ୍ତାଦିଭାବର ପ୍ରତ୍ୟେକଟିର ସାହାଯ୍ୟରେ ଚରମ ଅଦ୍ୱୈତଭାବ ଉପଲବ୍ଧିବିଷୟରେ ଭକ୍ତିଶାସ୍ତ୍ର ଓ ଶ୍ରୀରାମକୃଷ୍ଣଙ୍କ ଜୀବନର ଶିକ୍ଷା :

ଭାବପଞ୍ଚକର ପ୍ରତ୍ୟେକଟିର ଚରମ ପରିପୁଷ୍ଟିରେ ସାଧକ ଯେ ନିଜକୁ ଭୁଲି କେବଳ ତାର ପ୍ରେମାସ୍ପଦର ସୁଖରେ ସୁଖୀ ହୋଇଥାଏ ଏବଂ ବିରହ ସମୟରେ ତାର ଚିନ୍ତାରେ ତନ୍ମୟ ହୋଇ ବେଳେବେଳେ ନିଜର ଅସ୍ତିତ୍ୱଜ୍ଞାନ ହରାଇ ବସେ, ଏକଥା ଆଧ୍ୟାତ୍ମିକ ଇତିହାସପାଠରୁ ଜଣାଯାଏ । ଶ୍ରୀମଦ୍‌ଭାଗବତ ଆଦି ଭକ୍ତିଗ୍ରନ୍ଥପାଠରେ ଦେଖିବାକୁ ମିଳେ ଯେ, ବ୍ରଜଗୋପିକାଗଣ ଏହିପରି ନିଜର ଅସ୍ତିତ୍ୱଜ୍ଞାନ କେବଳ ବିସ୍ମୃତ ହେଉ ନ ଥିଲେ, ପରନ୍ତୁ ବେଳେବେଳେ ନିଜକୁ ନିଜ ପ୍ରେମାସ୍ପଦ ଶ୍ରୀକୃଷ୍ଣ ବୋଲି ମଧ୍ୟ ଉପଲବ୍ଧି କରୁଥିଲେ । ଜୀବର କଲ୍ୟାଣ ପାଇଁ ଶରୀରତ୍ୟାଗ ସମୟରେ ଈଶାଙ୍କୁ ଯେଉଁ ଉତ୍କଟ ଦୁଃଖ ଭୋଗ କରିବାକୁ ପଡ଼ିଥିଲା, ସେକଥା ଚିନ୍ତା କରୁ କରୁ ତନ୍ମୟ ହୋଇ କୌଣସି କୌଣସି ସାଧକ-ସାଧିକାଙ୍କର ଅନୁରୂପ ଅଙ୍ଗରୁ ରକ୍ତ ନିର୍ଗତ ହେବା କଥା ଖ୍ରୀଷ୍ଟାନ୍ ସମ୍ପ୍ରଦାୟର ଭକ୍ତି ଗ୍ରନ୍ଥରେ ଲିପିବଦ୍ଧ ଅଛି ।[୧] ଅତଏବ ବୁଝାଯାଉଛି, ଶାନ୍ତାଦି ଭାବପଞ୍ଚକର ପ୍ରତ୍ୟେକଟିର ଚରମ ପରିପୁଷ୍ଟିରେ ସାଧକ ପ୍ରେମାସ୍ପଦଙ୍କର ଚିନ୍ତାରେ ସମ୍ପୂର୍ଣ୍ଣରୂପେ

---

୧. Vide Life of St. Francis of Assisi and St. Chatherine of Sienna.

ତନ୍ମୟ ହୋଇଯାଏ ଏବଂ ପ୍ରେମର ପ୍ରାବଲ୍ୟରେ ତାଙ୍କ ସହିତ ମିଳିତ ଓ ଏକୀଭୂତ ହୋଇ ଅଦ୍ୱୈତଭାବ ଉପଲବ୍ଧି କରିଥାଏ । ଶ୍ରୀରାମକୃଷ୍ଣଦେବଙ୍କର ଅଲୌକିକ ସାଧକଜୀବନ ଏହି ବିଷୟରେ ଆମମାନଙ୍କୁ ଅଦ୍ଭୁତ ଆଲୋକ ପ୍ରଦାନ କରିଅଛି । ଭାବସାଧନରେ ଅଗ୍ରସର ହୋଇ ସେ ପ୍ରତ୍ୟେକ ଭାବର ଚରମ ପରିପୁଷ୍ଟିରେ ହିଁ ପ୍ରେମାସ୍ପଦଙ୍କ ସହିତ ପ୍ରେମରେ ତନ୍ମୟ ହୋଇ ଯାଇଥିଲେ ଏବଂ ନିଜ ଅସ୍ତିତ୍ୱ ସମ୍ପୂର୍ଣ୍ଣ ବିସ୍ମୃତ ହୋଇ ଅଦ୍ୱୈତଭାବ ଉପଲବ୍ଧି କରିଥିଲେ ।

ଏଠାରେ ପ୍ରଶ୍ନ ଉଠିପାରେ, ଶାନ୍ତଦାସ୍ୟାଦି ଭାବ ଅବଲମ୍ବନରେ ମାନବ ମନ କିପରି ସର୍ବଭାବାତୀତ ଅଦ୍ୱୟବସ୍ତୁର ଉପଲବ୍ଧି କରିବ । କାରଣ ଅନ୍ତତଃ ଦୁଇଜଣ ବ୍ୟକ୍ତିଙ୍କର ଉପଲବ୍ଧି ବ୍ୟତୀତ ଏଥିରେ କୌଣସି ପ୍ରକାର ଭାବର ଉଦୟ, ସ୍ଥିତି ଓ ପରିପୁଷ୍ଟି କେଉଁଠାରେ ହେଲେ ଦେଖାଯାଏ ନାହିଁ ।

## ଶାନ୍ତାଦି ଭାବପଞ୍ଚକ ଦ୍ୱାରା ଅଦ୍ୱୈତଭାବ ପ୍ରାପ୍ତି ବିଷୟରେ ଆପତ୍ତି ଏବଂ ମୀମାଂସା :

ଏକଥା ସତ୍ୟ । କିନ୍ତୁ କୌଣସି ଭାବ ଯେତେ ପରିପୁଷ୍ଟ ହୁଏ, ସେତେ ହିଁ ଏହା ନିଜର ପ୍ରଭାବ ବିସ୍ତାର କରି ସାଧକର ମନରୁ ଅନ୍ୟାନ୍ୟ ସମସ୍ତ ବିରୋଧୀ ଭାବକୁ କ୍ରମେ ତିରୋହିତ କରିଥାଏ । ପୁଣି ଯେତେବେଳେ ତାହାର ଚରମ ପରିପୁଷ୍ଟି ହୁଏ, ସେତେବେଳେ ସାଧକର ସମାହିତ ଅନ୍ତଃକରଣ, ଧ୍ୟାନ ସମୟରେ ପୂର୍ବ ପରିଦୃଷ୍ଟ 'ତୁମେ' (ସେବ୍ୟ) ଏବଂ 'ମୁଁ' (ସେବକ) ଓ ସେହି ଉଭୟର ମଧ୍ୟଗତ ଦାସ୍ୟାଦି ସମ୍ବନ୍ଧ ବେଳେ ବେଳେ ବିସ୍ମୃତ ହୋଇ କେବଳ 'ତୁମେ' ଶବ୍ଦ ଦ୍ୱାରା ନିର୍ଦ୍ଦିଷ୍ଟ ସେବ୍ୟ ବସ୍ତୁରେ ପ୍ରେମରେ ଏକ ହୋଇ ଅଚଳଭାବରେ ଅବସ୍ଥାନ କରୁଥାଏ । ଭାରତର ବିଶିଷ୍ଟ ଆଚାର୍ଯ୍ୟମାନେ କହିଯାଇଛନ୍ତି ଯେ, ମାନବମନ କେବେହେଲେ ଯୁଗପତ୍ 'ତୁମେ', 'ମୁଁ' ଓ ତଦୁଭୟ ମଧ୍ୟଗତ ଭାବସମ୍ବନ୍ଧ ଉପଲବ୍ଧି କରେ ନାହିଁ । ତାହା ଏକକ୍ଷଣରେ 'ତୁମେ' ଶବ୍ଦ ଦ୍ୱାରା ନିର୍ଦ୍ଦିଷ୍ଟ ବସ୍ତୁର ଏବଂ ପରକ୍ଷଣରେ 'ମୁଁ' ଶବ୍ଦାଭିଧେୟ ପଦାର୍ଥ ପ୍ରତ୍ୟକ୍ଷ କରୁଥାଏ ଏବଂ ସେହି ଉଭୟ ପଦାର୍ଥ ମଧ୍ୟରେ ସର୍ବଦା ଦ୍ରୁତ ପରିଭ୍ରମଣ କରୁଥିବାରୁ ଏମାନଙ୍କ ମଧ୍ୟରେ ଏକ ଭାବସମ୍ବନ୍ଧ ତାର ବୁଦ୍ଧିରେ ପରିସ୍ଫୁଟ ହୋଇଉଠେ । ସେତେବେଳେ ମନେହୁଏ ଯେପରି ତାହା ସେମାନଙ୍କର ଏବଂ ସେମାନଙ୍କର ମଧ୍ୟଗତ ଉକ୍ତ ସମ୍ବନ୍ଧକୁ ଯୁଗପତ୍ ପ୍ରତ୍ୟକ୍ଷ କରୁଅଛି । ପରିପୁଷ୍ଟ ଭାବର ପ୍ରଭାବରେ ମନର ଚଞ୍ଚଳତା ନଷ୍ଟ ହୋଇଯାଏ ଏବଂ ଏହା କ୍ରମେ ପୂର୍ବୋକ୍ତ ବିଷୟ ବୁଝିବାକୁ ସକ୍ଷମ ହୁଏ । ଧ୍ୟାନକାଳରେ ମନ ଏହିପରି ଯେତେ ବୃତ୍ତିହୀନ ହୁଏ, ସେତେ ହିଁ ସେ କ୍ରମଶଃ ବୁଝିପାରେ ଯେ, ଏକ ଅଦ୍ୱୟ ପଦାର୍ଥକୁ ଦୁଇଦିଗରୁ ଦୁଇ ଭାବରେ ଦେଖି, 'ତୁମେ' ଓ 'ମୁଁ'– ରୂପକ ଦୁଇପଦାର୍ଥ କଳ୍ପନା କରି ଆସିଅଛି ।

## ଭିନ୍ନ ଭିନ୍ନ ଯୁଗରେ ଭିନ୍ନ ଭିନ୍ନ ଭାବ-ସାଧନାର ପ୍ରାବଲ୍ୟ-ନିର୍ଦ୍ଦେଶ :

ଶାନ୍ତଦାସ୍ୟାଦି ଭାବର ପ୍ରତ୍ୟେକଟି ପୂର୍ଣ୍ଣ ପରିପୁଷ୍ଟ ହୋଇ ମାନବମନକୁ ପୂର୍ବୋକ୍ତରୂପେ ଅଦ୍ୱୟ ବସ୍ତୁର ଉପଲବ୍ଧି କରାଇବାକୁ କେତେ ସାଧକର କେତେକାଳ ବ୍ୟାପୀ ଚେଷ୍ଟାର ଯେ ପ୍ରୟୋଜନ ହୋଇଅଛି, ତାହା ଭାବିଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼ିଥାଏ । ଶାସ୍ତ୍ରରୂପକ ଆଧ୍ୟାତ୍ମିକ ଇତିହାସ ପାଠରୁ ବୁଝାଯାଏ, ଗୋଟିଏ ଗୋଟିଏ ଯୁଗରେ ଏସମସ୍ତ ଭାବରୁ ଗୋଟିଏ ଗୋଟିଏ ମାନବମନର ଉପାସନାର ପ୍ରଧାନ ଅବଲମ୍ବନୀୟ ହୋଇଥିଲା ଏବଂ ଏହା ଦ୍ୱାରା ହିଁ ସେହି ଯୁଗର ବିଶିଷ୍ଟ ସାଧକମାନେ ଈଶ୍ୱରଙ୍କ ଓ ସେମାନଙ୍କ ମଧ୍ୟରେ ବିରଳ କେହି କେହି ଅଖଣ୍ଡ ଅଦ୍ୱୟ ବ୍ରହ୍ମବସ୍ତୁ ଉପଲବ୍ଧି କରିଥିଲେ । ଦେଖାଯାଏ, ବୈଦିକ ଓ ବୌଦ୍ଧ ଯୁଗରେ ପ୍ରଧାନତଃ ଶାନ୍ତଭାବର, ଔପନିଷଦିକ ଯୁଗରେ ଶାନ୍ତଭାବର ଚରମ ପରିପୁଷ୍ଟିରେ ଅଦ୍ୱୈତଭାବର ଏବଂ ଦାସ୍ୟ ଓ ଈଶ୍ୱରଙ୍କ ପିତୃଭାବର, ରାମାୟଣ ଓ ମହାଭାରତ ଯୁଗରେ ଶାନ୍ତ ଏବଂ ନିଷ୍କାମକର୍ମସଂଯୁକ୍ତ ଦାସ୍ୟଭାବର, ତାନ୍ତ୍ରିକ ଯୁଗରେ ଈଶ୍ୱରଙ୍କର ମାତୃଭାବ ଓ ମଧୁରଭାବସମ୍ବନ୍ଧର କିୟଦଂଶର ଏବଂ ବୈଷ୍ଣବ ଯୁଗରେ ସଖ୍ୟ, ବାତ୍ସଲ୍ୟ ଓ ମଧୁରଭାବର ଚରମ ପ୍ରକାଶ ଉପସ୍ଥିତ ହୋଇଥିଲା ।

## ଶାନ୍ତାଦି ଭାବପଞ୍ଚକର ପୂର୍ଣ୍ଣ ପରିପୁଷ୍ଟି ବିଷୟରେ ଭାରତ ଏବଂ ଅନ୍ୟ ଦେଶମାନଙ୍କରେ ଯେପରି ଦେଖିବାକୁ ମିଳେ :

ଭାରତର ଆଧ୍ୟାତ୍ମିକ ଇତିହାସରେ ଏପରି ଅଦ୍ୱୈତ ଭାବ ସହିତ ଶାନ୍ତାଦି ପଞ୍ଚଭାବର ପୂର୍ଣ୍ଣ ପ୍ରକାଶ ଦେଖିବାକୁ ମିଳିଲେ ମଧ୍ୟ, ଅନ୍ୟାନ୍ୟ ଦେଶର ଧର୍ମସମ୍ପ୍ରଦାୟରେ କେବଳ ଶାନ୍ତ, ଦାସ୍ୟ ଓ ଈଶ୍ୱରଙ୍କର ପିତୃଭାବସମ୍ବନ୍ଧର ହିଁ ପ୍ରକାଶ ଦେଖାଯାଏ । ଇହୁଦୀ, ଖ୍ରୀଷ୍ଟିୟାନ ଓ ଇସ୍‌ଲାମ ଧର୍ମସମ୍ପ୍ରଦାୟମାନଙ୍କରେ ରାଜର୍ଷି ସାଲୋମନଙ୍କ ସଖ୍ୟ ଓ ମଧୁର-ଭାବାତ୍ମକ ଗୀତଗୁଡ଼ିକର ପ୍ରଚଳିତ ଥିଲେ ମଧ୍ୟ, ଏମାନେ ସମସ୍ତେ ଏହାର ଭାବଗ୍ରହଣରେ ଅସମର୍ଥ ହୋଇ ଭିନ୍ନ ଅର୍ଥ କଳ୍ପନା କରିଥାଆନ୍ତି । ଇସ୍‌ଲାମ ଧର୍ମର ସୁଫି-ସମ୍ପ୍ରଦାୟ ଭିତରେ ସଖ୍ୟ ଏବଂ ମଧୁର ଭାବର ଅନେକ ପ୍ରଚଳନ ଥିଲେ ମଧ୍ୟ ମୁସଲମାନ ଜନସାଧାରଣ ଏପରି ଈଶ୍ୱର ଉପାସନାକୁ କୋରାନ୍ ବିରୋଧୀ ବୋଲି ବିଚାର କରିଥାଆନ୍ତି । ପୁଣି କାଥୋଲିକ୍ ଖ୍ରୀଷ୍ଟିୟାନ ସମ୍ପ୍ରଦାୟ ମଧ୍ୟରେ ଈଶାମାତା ମେରୀଙ୍କର ପ୍ରତିମା ଅବଲମ୍ବନରେ ଜଗନ୍ମାତୃତ୍ୱର ପୂଜା ପ୍ରକାରାନ୍ତରେ ପ୍ରଚଳିତ ଥିଲେ ମଧ୍ୟ, ଏହା ଈଶ୍ୱରଙ୍କର ମାତୃଭାବ ସହିତ ପ୍ରକାଶ୍ୟରୂପେ ସଂଯୁକ୍ତ ନ ଥିବାରୁ, ଭାରତରେ ପ୍ରଚଳିତ ଜଗଜ୍ଜନନୀଙ୍କର ପୂଜାସଦୃଶ ଫଳପ୍ରଦ ହୋଇ ସାଧକକୁ ଅଖଣ୍ଡ ସଚ୍ଚିଦାନନ୍ଦଙ୍କର ଉପଲବ୍ଧି କରାଇବାକୁ ଓ ସ୍ତ୍ରୀ ମାତ୍ରେ ଈଶ୍ୱରୀୟ ବିକାଶ ପ୍ରତ୍ୟକ୍ଷ

କରାଇବାକୁ ସକ୍ଷମ ହୋଇ ନାହିଁ । କାଥୋଲିକ୍ ସମ୍ପ୍ରଦାୟଗତ ମାତୃଭାବର ଏହି ପ୍ରବାହ ଫଲ୍‌ଗୁନଦୀ ସଦୃଶ ଅର୍ଦ୍ଧପଥରେ ଅନ୍ତର୍ହିତ ହୋଇଅଛି ।

### ଯାହା ଦେଖି ସାଧକଙ୍କ ଭାବର ଗଭୀରତ୍ୱ ବୁଝାଯାଏ :

ପୂର୍ବେ କୁହାଯାଇଛି, କୌଣସି ପ୍ରକାରର ଭାବ ସମ୍ବନ୍ଧ ଅବଲମ୍ବନରେ ସାଧକଙ୍କ ମନ ଈଶ୍ୱରଙ୍କ ପ୍ରତି ଆକୃଷ୍ଟ ହେଲେ ଏହା କ୍ରମେ ସେହି ଭାବରେ ତନ୍ମୟ ହୋଇ ବାହ୍ୟଜଗତରୁ ବିମୁଖ ହୁଏ ଏବଂ ନିଜ ମଧ୍ୟରେ ନିଜେ ବୁଡି ରହେ; ଏପରି ମଗ୍ନ ହେବା ସମୟରେ ମନର ପୂର୍ବ ସଂସ୍କାରସମୂହ ଉକ୍ତ ପଥରେ ବାଧା ପ୍ରଦାନ କରି ତାହାକୁ ଏକନିଷ୍ଠଭାବରେ ସାଧନାରେ ମଗ୍ନ ହେବାକୁ ନ ଦେଇ ପୁନରାୟ ବହିର୍ମୁଖୀ କରାଇବାକୁ ଚେଷ୍ଟା କରେ । ଏଥିପାଇଁ ପ୍ରବଳପୂର୍ବସଂସ୍କାରବିଶିଷ୍ଟ ସାଧାରଣ ମାନବମନ ଅନେକ ସମୟରେ ଗୋଟିଏ ମାତ୍ର ଭାବରେ ତନ୍ମୟ ହେବା ସମ୍ପୂର୍ଣ୍ଣ ଜୀବନକାଳର ଚେଷ୍ଟାରେ ମଧ୍ୟ ହୋଇପାରେ ନାହିଁ । ଏପରି ସ୍ଥଳରେ ସେ ପ୍ରଥମେ ନିରୁତ୍ସାହ, ଓ ପରେ ହତୋଦ୍ୟମ ଏବଂ ତାପରେ ସାଧ୍ୟବସ୍ତୁରେ ବିଶ୍ୱାସ ହରାଇ ବାହ୍ୟଜଗତର ରୂପରସାଦିଭୋଗକୁ ହିଁ ସାର ବୋଲି ଭାବି ତାହା ଲାଭ କରିବାକୁ ପୁନରାୟ ଧାବିତ ହୁଏ । ଅତଏବ ଭାବପ୍ରାପ୍ତି ବିଷୟରେ ବାହ୍ୟ-ବିଷୟବିମୁଖତା, ପ୍ରେମାସ୍ପଦଙ୍କର ଧ୍ୟାନରେ ତନ୍ମୟତ୍ୱ ଏବଂ ଭାବପ୍ରସୂତ ଉଲ୍ଲାସ ହିଁ ସାଧକର ଲକ୍ଷ୍ୟାଭିମୁଖରେ ଅଗ୍ରସର ହେବାର ଏକମାତ୍ର ପରିମାପକ ବୋଲି ପରିଗଣିତ ହୋଇଅଛି ।

### ଠାକୁରଙ୍କର ସର୍ବଭାବରେ ସିଦ୍ଧିଲାଭ କରିବାର ଦେଖି ଯାହା ମନେ ହୁଏ :

କୌଣସି ଗୋଟିଏ ଭାବରେ ତନ୍ମୟତ୍ୱ ଲାଭରେ ଅଗ୍ରସର ହୋଇ ଯିଏ କଦାପି ଅନ୍ତର୍ନିହିତ ପୂର୍ବସଂସ୍କାରସମୂହର ପ୍ରବଳ ବାଧା ଉପଲବ୍ଧି କରି ନାହାନ୍ତି, ସାଧକ ମନର ଅନ୍ତଃସଂଗ୍ରାମର କଥା ସେ କିଛିମାତ୍ର ବୁଝିପାରିବେ ନାହିଁ । ଯିଏ ଏହା କରିଛନ୍ତି, ସେ ହିଁ କେବଳ ବୁଝିବେ — କେତେ ଦୁଃଖରେ ମନୁଷ୍ୟ ଜୀବନରେ ଭାବତନ୍ମୟତ୍ୱ ଆସିଥାଏ, ଏବଂ ସେ ହିଁ ଶ୍ରୀରାମକୃଷ୍ଣଦେବଙ୍କୁ ସ୍ୱଳ୍ପକାଳରେ ଗୋଟିକ ପରେ ଗୋଟିଏ କରି ସମସ୍ତ ପ୍ରକାରର ଭାବରେ ଅଦୃଷ୍ଟପୂର୍ବ ତନ୍ମୟତ୍ୱଲାଭ କରିବାକୁ ଦେଖି ବିମୁଗ୍ଧ ହୋଇ ଭାବିବେ ଯେ, ଏପରି ହେବା ମନୁଷ୍ୟଶକ୍ତିର ଆୟତ୍ତସାଧ୍ୟ ନୁହେଁ ।

## ଧର୍ମବୀରମାନଙ୍କର ସାଧନା–ଇତିହାସ ଲିପିବଦ୍ଧ ନ ଥିବା ସମ୍ବନ୍ଧରେ ଆଲୋଚନା :

ଭାବରାଜ୍ୟର ସୂକ୍ଷ୍ମ ତତ୍ତ୍ୱସମୂହ ସାଧାରଣ ମାନବମନ ବୁଝିବାକୁ ସକ୍ଷମ ହୋଇ ନାହିଁ ବୋଲି ହିଁ କ'ଣ ଅବତାରପ୍ରଥିତ ଧର୍ମବୀରମାନଙ୍କର ସାଧନ–ଇତିହାସ ସମ୍ୟକ୍ ଲିପିବଦ୍ଧ ହୋଇ ନାହିଁ ? କାରଣ ସେମାନଙ୍କ ସମ୍ବନ୍ଧରେ ଯାହାକିଛି ଉପଲବ୍ଧ ଅଛି ସେବିଷୟ ପାଠ କଲେ ଦେଖାଯାଏ, ସେମାନଙ୍କ ସାଧନା–ପଥରେ ପ୍ରବେଶ ସମୟରେ ବିଷୟବୈରାଗ୍ୟ ତଥା ତ୍ୟାଗର କଥା ଏବଂ ସାଧନାରେ ସିଦ୍ଧିଲାଭ ପରେ ସେମାନଙ୍କ ମାଧ୍ୟମରେ ବିଷୟବିମୁଗ୍ଧ ମାନବମନର କଲ୍ୟାଣ ନିମିତ୍ତ ଯେଉଁ ଅଦ୍ଭୁତ ଶକ୍ତି ପ୍ରକାଶିତ ହୋଇଥିଲା, ସେ ସମସ୍ତ କଥାର ହିଁ ସବିସ୍ତାର ଆଲୋଚନା ବିଦ୍ୟମାନ । ଦେଖାଯାଏ ଅନ୍ତରର ପୂର୍ବସଂସ୍କାର ସବୁକୁ ବିଧ୍ୱସ୍ତ ଏବଂ ସମୂଳେ ଉତ୍ପାଟିତ କରି ନିଜ ଉପରେ ସମ୍ପୂର୍ଣ୍ଣ ପ୍ରଭୁତ୍ୱ ସ୍ଥାପନ ପାଇଁ ସେମାନେ ସାଧନା ସମୟରେ ଯେଉଁ ଅପୂର୍ବ ଅନ୍ତଃସଂଗ୍ରାମରେ ନିଯୁକ୍ତ ହୋଇଥିଲେ, ତାର ଆଭାସମାତ୍ର କେବଳ ଏଥିରେ ଆଲୋଚିତ ହୋଇଅଛି, ଅଥବା ରୂପକଛଳରେ ଏବଂ ଅତିରଞ୍ଜିତ ବାକ୍ୟ ସାହାଯ୍ୟରେ ଏସଂଗ୍ରାମର କଥା ଏପରି ଭାବରେ ପ୍ରକାଶ କରାହୋଇଛି ଯେ, ସେସମସ୍ତ ବିବରଣରୁ ସତ୍ୟ ବାହାର କରିବା ଆମମାନଙ୍କ ପକ୍ଷରେ କଷ୍ଟକର ହୁଏ । କେତୋଟି ଦୃଷ୍ଟାନ୍ତ ଏଠାରେ ଉଲ୍ଲେଖ କଲେ ପାଠକ ଏବିଷୟ ବୁଝିପାରିବେ ।

## ଶ୍ରୀକୃଷ୍ଣଙ୍କ ସମ୍ବନ୍ଧରେ ସେହି କଥା :

ଭଗବାନ ଶ୍ରୀକୃଷ୍ଣ ଲୋକକଲ୍ୟାଣ–ସାଧନ ଉଦ୍ଦେଶ୍ୟରେ ବିଶେଷ ବିଶେଷ ଶକ୍ତି ଲାଭ ନିମିତ୍ତ ଅନେକ ସମୟ ତପସ୍ୟାରତ ହୋଇଥିଲେ, ଏହା ଦେଖାଯାଏ । କିନ୍ତୁ ସେବିଷୟରେ ସିଦ୍ଧକାମ ହେବାପାଇଁ ସେ କିଛିଦିନ ଜଳ ବା ବାୟୁ ଆହାରପୂର୍ବକ ଗୋଟିଏ ପାଦରେ ଦଣ୍ଡାୟମାନ ହୋଇ ରହିଥିଲେ ଇତ୍ୟାଦି କଥା ବ୍ୟତୀତ ବିରୋଧୀଭାବଗୁଡ଼ିକରୁ ମୁକ୍ତ ହେବା ପାଇଁ ତାଙ୍କର ଅନ୍ତଃସଂଗ୍ରାମ ବିଷୟରେ କୌଣସି ବିବରଣ ମିଳେ ନାହିଁ ।

## ବୁଦ୍ଧଦେବଙ୍କ ସମ୍ବନ୍ଧରେ ସେହି କଥା :

ଭଗବାନ ବୁଦ୍ଧଙ୍କର ସଂସାରବୈରାଗ୍ୟ ଉଦୟ ହେବାରୁ ଗୃହତ୍ୟାଗ ଏବଂ ପରେ ଧର୍ମଚକ୍ରପ୍ରବର୍ତ୍ତନର ବିଶଦ ଇତିହାସ ଯେତେଦୂର ମିଳେ, ତାଙ୍କର ସାଧନ–ଇତିହାସ ସେତେ ମିଳେ ନାହିଁ । ତେବେ ଅନ୍ୟାନ୍ୟ ଧର୍ମବୀରମାନଙ୍କ ସାଧନାର ଇତିହାସ ଯେପରି କିଛି ମିଳେ ନାହିଁ, ଭଗବାନ ବୁଦ୍ଧଙ୍କ ସମ୍ବନ୍ଧରେ ସେପରି ନ ହୋଇ ସାମାନ୍ୟ କିଛି କିଛି ତଥ୍ୟ ମିଳିଥାଏ । ଦେଖାଯାଏ—ସିଦ୍ଧିଲାଭ ନିମିତ୍ତ

ଦୃଢ଼ସଂକଳ୍ପ ହୋଇ ଆହାର ସଂଯମପୂର୍ବକ ସେ ଦୀର୍ଘ ଛଅବର୍ଷ କାଳ ଏକାସନରେ ଧ୍ୟାନ–ତପସ୍ୟାରେ ନିଯୁକ୍ତ ଥିଲେ ଏବଂ ଅନ୍ତଃପବନ ନିରୋଧପୂର୍ବକ 'ଆସ୍ଫାନକ' ନାମକ ଧ୍ୟାନ ଅଭ୍ୟାସରେ ସମାଧିସ୍ଥ ହୋଇଥିଲେ । କିନ୍ତୁ ଚିତ୍ତର ପୂର୍ବସଂସ୍କାରସମୂହ ବିନଷ୍ଟ କରିବାକୁ ତାଙ୍କର ମାନସିକ ସଂଗ୍ରାମ କଥା ଲିପିବଦ୍ଧ କରିବା ସମୟରେ ଗ୍ରନ୍ଥକାର ସ୍ଥୂଳ ବାହ୍ୟ ଘଟଣା ସଦୃଶ 'ମାର' ସହିତ ତାଙ୍କର ସଂଗ୍ରାମ କଥା ଅବତାରଣା କରିଛନ୍ତି ।

### ଈଶାଙ୍କ ସମ୍ବନ୍ଧରେ ସେହି କଥା :

ଭଗବାନ ଈଶାଙ୍କର ସାଧନ ଇତିହାସର ପ୍ରାୟ କୌଣସି ବିଷୟ ଲିପିବଦ୍ଧ ହୋଇ ନାହିଁ । ତାଙ୍କର ଦ୍ୱାଦଶ ବର୍ଷ ପର୍ଯ୍ୟନ୍ତ ବୟସର ମାତ୍ର କେତୋଟି ଘଟଣା ଲିପିବଦ୍ଧ କରି ଗ୍ରନ୍ଥକାର ତିରିଶି ବର୍ଷରେ 'ଜନ୍' ନାମକ ସିଦ୍ଧ ସାଧୁଙ୍କ ନିକଟରୁ ତାଙ୍କର ଅଭିଷେକ ଗ୍ରହଣପୂର୍ବକ ବିଜନ ମରୁପ୍ରଦେଶରେ ଚାଳିଶ ଦିନ ଧରି ଧ୍ୟାନ ଓ ତପସ୍ୟାର କଥା ଏବଂ ଏହି ମରୁପ୍ରଦେଶରେ ଶୟତାନକର୍ତ୍ତୃକ ପ୍ରଲୋଭିତ ହୋଇ ଜୟଲାଭପୂର୍ବକ ସେସ୍ଥାନରୁ ପ୍ରତ୍ୟାଗମନ ଓ ଲୋକ କଲ୍ୟାଣ ସାଧନରେ ନିଜକୁ ନିୟୋଜିତ କରିଥିବାର ବିଷୟ ଅବତାରଣା କରିଅଛନ୍ତି । ଏହାପରେ ସେ ତିନିବର୍ଷ ମାତ୍ର ସ୍ଥୂଳ ଶରୀରରେ ଥିଲେ । ଅତଏବ ତାଙ୍କର ଦ୍ୱାଦଶ ବର୍ଷଠାରୁ ତରିଶି ବର୍ଷ ପର୍ଯ୍ୟନ୍ତ ସେ କିପରି ଭାବରେ କାଳଯାପନ କରିଥିଲେ, ତା'ର କୌଣସି କଥା ଜଣାଯାଏ ନାହିଁ ।

ଭଗବାନ ଶଙ୍କରଙ୍କ ଜୀବନର ଘଟଣାବଳୀର ପାରମ୍ପର୍ଯ୍ୟ ଅନେକ ବିଷୟ ମିଳିଥିଲେ ମଧ୍ୟ, ତାଙ୍କର ଆନ୍ତରିକ ସାଧନ–ଇତିହାସ ଅନେକ ସ୍ଥଳରେ ଅନୁମାନ କରିବାକୁ ପଡ଼ିଥାଏ ।

### ଶ୍ରୀଚୈତନ୍ୟଙ୍କ ସମ୍ବନ୍ଧରେ ସେହି କଥା ଏବଂ ମଧୁରଭାବର ଚରମତତ୍ତ୍ୱ ସମ୍ବନ୍ଧରେ ଶ୍ରୀରାମକୃଷ୍ଣଦେବ :

ଭଗବାନ ଶ୍ରୀଚୈତନ୍ୟଦେବଙ୍କର ସାଧନ–ଇତିହାସର ଅନେକ କଥା ଲିପିବଦ୍ଧ ହୋଇଥିଲେ ମଧ୍ୟ, ତାଙ୍କର କାମଗନ୍ଧହୀନ ଉଚ୍ଚ ଈଶ୍ୱରପ୍ରେମର କଥା ଶ୍ରୀରାଧାକୃଷ୍ଣଙ୍କର ପ୍ରଣୟବିହାରାଦି–ଅବଲମ୍ବନରେ ରୂପକଛଳରେ ବର୍ଣ୍ଣିତ ହେବାରୁ ସାଧାରଣ ମନୁଷ୍ୟ ଏହାକୁ ଅନେକ ସମୟରେ ଯଥାଯଥ ଭାବରେ ବୁଝିପାରି ନ ଥାଏ । ଏକଥା କିନ୍ତୁ ଅବଶ୍ୟ ସ୍ୱୀକାର୍ଯ୍ୟ ଯେ, ଧର୍ମବୀର ଶ୍ରୀଚୈତନ୍ୟ ଓ ତାଙ୍କର ପ୍ରଧାନ ପ୍ରଧାନ ପାର୍ଷଦମାନେ ସଖ୍ୟ, ବାତ୍ସଲ୍ୟ ଏବଂ ବିଶେଷ କରି ମଧୁରଭାବର ଆରମ୍ଭରୁ ପ୍ରାୟ ଚରମ ପରିସ୍ଫୁର୍ତ୍ତି ପର୍ଯ୍ୟନ୍ତ ସାଧକ ମନରେ ଯେଉଁ ଯେଉଁ ଅବସ୍ଥା କ୍ରମଶଃ ଉପସ୍ଥିତ ହୋଇଥାଏ, ସେସମସ୍ତ ରୂପକ ଭାଷାରେ ଯେତେଦୂର କୁହାଯାଇପାରେ ସେତେଦୂର ବିସ୍ତାରିତ ଭାବରେ ଲିପିବଦ୍ଧ କରିଯାଇଛନ୍ତି । କେବଳ

ଉକ୍ତ ଭାବତ୍ରୟର ପ୍ରତ୍ୟେକଟିର ସର୍ବୋଚ୍ଚ ପରିଣତିରେ ସାଧକମନ ପ୍ରେମାସ୍ପଦ ସହିତ ଏକତ୍ୱ ଅନୁଭବପୂର୍ବକ ଅଦ୍ୱୟ ବସ୍ତୁରେ ଲୀନ ହୋଇଥାଏ—ଏହି ଚରମ ତତ୍ତ୍ୱଟି ସେମାନେ ପ୍ରକାଶ କରି ନାହାନ୍ତି କିମ୍ବା ଏହାର ସାମାନ୍ୟ ଇଙ୍ଗିତ ପ୍ରଦାନ କରିଥିଲେ ମଧ୍ୟ ଏହାକୁ ହୀନ ଅବସ୍ଥା ବୋଲି ସାଧକଙ୍କୁ ଏଥିରୁ ସତର୍କ ରହିବା ପାଇଁ ଉପଦେଶ ପ୍ରଦାନ କରିଛନ୍ତି । ଶ୍ରୀରାମକୃଷ୍ଣଦେବଙ୍କ ଅଲୌକିକ ଜୀବନ ଓ ଅଦୃଷ୍ଟପୂର୍ବ ସାଧନ ଇତିହାସ ବର୍ତ୍ତମାନ ଯୁଗରେ ଆମମାନଙ୍କୁ ଏହି ଚରମ ତତ୍ତ୍ୱ ବିଶଦ୍‌ଭାବରେ ଶିକ୍ଷା ଦେଇ ଜଗତର ଯାବତୀୟ ଧର୍ମ ସମ୍ପ୍ରଦାୟର ଯାବତୀୟ ଧର୍ମଭାବ ଯେ ସାଧକମନକୁ ଗୋଟିଏ ଲକ୍ଷ୍ୟରେ ଅଗ୍ରସର କରିଥାଏ, ଏବିଷୟ ସମ୍ୟକ୍ ବୁଝିବାକୁ ସକ୍ଷମ କରିଅଛି । ତାଙ୍କର ଜୀବନରୁ ଶିକ୍ଷଣୀୟ ଅନ୍ୟ ସମସ୍ତ କଥା ଗଣନାରେ ନ ଆଣିଲେ ମଧ୍ୟ ତାଙ୍କର କୃପାରେ କେବଳ ପୂର୍ବୋକ୍ତ ବିଷୟ ଜ୍ଞାତ ହୋଇ ଆମମାନଙ୍କର ଆଧ୍ୟାତ୍ମିକ ଦୃଷ୍ଟି ଯେଉଁ ପ୍ରସାରତା ଓ ସମନ୍ୱୟର ଆଭାସ ପ୍ରାପ୍ତ ହୋଇଅଛି, ସେଥି ନିମିତ୍ତ ଆମେ ତାଙ୍କ ନିକଟରେ ଚିରକାଳ ପାଇଁ ନିଃସଂଶୟରେ ଋଣୀ ରହିଅଛୁ ।

## ମଧୁରଭାବ ଓ ବୈଷ୍ଣବ ଆଚାର୍ଯ୍ୟଗଣ :

ପୂର୍ବେ କୁହାଯାଇଛି, ମଧୁରଭାବ ହିଁ ଶ୍ରୀଚୈତନ୍ୟପ୍ରମୁଖ ବୈଷ୍ଣବାଚାର୍ଯ୍ୟଗଣଙ୍କର ଆଧ୍ୟାତ୍ମିକ ଜଗତକୁ ପ୍ରଧାନ ଦାନ । ସେମାନେ ପଥ ପ୍ରଦର୍ଶନ ନ କରିଥିଲେ ଏହା କେବେହେଲେ ଈଶ୍ୱରଲାଭ ନିମିତ୍ତ ଏତେ ଲୋକଙ୍କର ଅବଲମ୍ବନୀୟ ହୋଇ ସେମାନଙ୍କୁ ଶାନ୍ତି ଓ ବିମଳାନନ୍ଦର ଅଧିକାରୀ କରି ନ ଥାନ୍ତା । ଭଗବାନ ଶ୍ରୀକୃଷ୍ଣଙ୍କର ଜୀବନରେ ବୃନ୍ଦାବନଲୀଳା ଯେ ନିରର୍ଥକ ଅନୁଷ୍ଠିତ ହୋଇ ନାହିଁ, ଏକଥା ସେମାନେ ହିଁ ପ୍ରଥମେ ବୁଝି ଅନ୍ୟମାନଙ୍କୁ ବୁଝାଇବାକୁ ପ୍ରୟାସୀ ହୋଇଥିଲେ । ଭଗବାନ ଶ୍ରୀଚୈତନ୍ୟଙ୍କର ଅଭ୍ୟୁଦୟ ନ ହୋଇଥିଲେ ଶ୍ରୀବୃନ୍ଦାବନ ସାଧାରଣ ଏକ ବନସ୍ଥଳୀ ବୋଲି ପରିଗଣିତ ହୋଇଥାଆନ୍ତା ।

## ବୃନ୍ଦାବନ ଲୀଳାର ଐତିହାସିକତ୍ୱ ସମ୍ବନ୍ଧରେ ଆପତ୍ତି ଏବଂ ମୀମାଂସା :

ପାଶ୍ଚାତ୍ୟର ଅନୁକରଣରେ ବାହ୍ୟ ଘଟଣାବଳୀକୁ ଲିପିବଦ୍ଧ କରିବାକୁ ଯତ୍ନଶୀଳ ବର୍ତ୍ତମାନ ଯୁଗର ଐତିହାସିକମାନେ କହିବେ, ବୃନ୍ଦାବନଲୀଳା ବିଷୟରେ ଯାହା କୁହାଯାଇଛି ସେପରି ବାସ୍ତବ କ୍ଷେତ୍ରରେ ଯେ ଘଟିଥିଲା, ସେସମ୍ବନ୍ଧରେ କୌଣସି ପ୍ରମାଣ ମିଳେ ନାହିଁ; ଅତଏବ ତୁମମାନଙ୍କର ସେସମସ୍ତ ହସ-କାନ୍ଦ, ଭାବ-ମହାଭାବ ନିରାଧାର ଅଟେ ! ଏହାର ଉତ୍ତରରେ ବୈଷ୍ଣବ ଆଚାର୍ଯ୍ୟମାନେ କହିବେ, ପୁରାଣରୁ ଆମେ ଯାହା କହିଛୁ ଏସବୁ ଯେ ସେପରି ହୋଇ ନାହିଁ ସେବିଷୟରେ ତୁମେମାନେ କ'ଣ ନିଃଶଂସୟରେ ପ୍ରମାଣ କରିପାରିବ ?

ତୁମମାନଙ୍କର ଇତିହାସ ବହୁ ପ୍ରାଚୀନ ଯୁଗର ଦ୍ୱାର ଯେ ନିଃଶଂସୟରେ ଉଦ୍‌ଘାଟିତ କରିଛି, ଏବିଷୟରେ ଯେତେଦିନ ପ୍ରମାଣ ନ ପାଇବୁ, ସେତେଦିନ ପର୍ଯ୍ୟନ୍ତ ଆମେ କହିବୁ ତୁମମାନଙ୍କ ସନ୍ଦେହ ହିଁ ନିରାଧାର । ଆଉ ଗୋଟିଏ କଥା, ଯଦି କେତେବେଳେ ତୁମେମାନେ ଏପରି ପ୍ରମାଣ ଦେଇପାର ତାହେଲେ ମଧ୍ୟ ଆମମାନଙ୍କ ବିଶ୍ୱାସର କୌଣସି ହାନି ହେବ ? ନିତ୍ୟବୃନ୍ଦାବନରେ ଶ୍ରୀଭଗବାନଙ୍କର ନିତ୍ୟଲୀଳାକୁ ତାହା କିଛି ମାତ୍ର ସ୍ପର୍ଶ କରିବ ନାହିଁ । ଭାବରାଜ୍ୟରେ ଏହି ରହସ୍ୟ–ଲୀଳା ଚିରକାଳ ସମାନ ସତ୍ୟ ହୋଇ ରହିବ । ଚିନ୍ମୟ ଧାମରେ ଚିନ୍ମୟ ରାଧାଶ୍ୟାମଙ୍କର ଏପରି ଅପୂର୍ବ ପ୍ରେମଲୀଳା ଯଦି ଦେଖିବାକୁ ଚାହଁ ତେବେ ପ୍ରଥମେ କାୟମନୋବାକ୍ୟରେ କାମ–ଗନ୍ଧହୀନ ହେବାକୁ ପଡ଼ିବ, ଏବଂ ଶ୍ରୀମତୀଙ୍କର ସଖୀମାନଙ୍କର ପଦାନୁଗ ହୋଇ ନିଃସ୍ୱାର୍ଥ ସେବା କରିବାକୁ ହେବ । ତାହାହେଲେ ଦେଖିପାରିବ ତୁମମାନଙ୍କର ହୃଦୟରେ ଶ୍ରୀହରିଙ୍କର ଲୀଳାଭୂମି ଶ୍ରୀବୃନ୍ଦାବନ ଚିର–ପ୍ରତିଷ୍ଠିତ ରହିଛି ଏବଂ ତୁମକୁ ନେଇ ଏପରି ଲୀଳାର ନିତ୍ୟ ଅଭିନୟ ହେଉଅଛି ।

### ବୃନ୍ଦାବନଲୀଳା ବୁଝିବାକୁ ହେଲେ ଭାବରୂପକ ଇତିହାସ ବୁଝିବାକୁ ହେବ—ଏ ବିଷୟରେ ଠାକୁର ଯାହା କହୁଥିଲେ :

ଭାବରାଜ୍ୟକୁ ସତ୍ୟ ବୋଲି ଉପଲବ୍ଧି କରି ଯିଏ ବାହ୍ୟଘଟଣାରୂପକ ଅବଲମ୍ବନ ପାଶୋରି ଶୁଦ୍ଧ ଭାବରୂପକ ଇତିହାସର ଆଲୋଚନା କରିବାକୁ ଶିଖି ନାହିଁ, ସେ ଶ୍ରୀବୃନ୍ଦାବନଲୀଳାର ସତ୍ୟତା ଏବଂ ମାଧୁର୍ଯ୍ୟର ଉପଭୋଗ କରିବାରେ କଦାପି ସକ୍ଷମ ହେବ ନାହିଁ । ଶ୍ରୀରାମକୃଷ୍ଣଦେବ ଉକ୍ତ ଲୀଳାର କଥା ଉତ୍ସାହର ସହିତ କହିଲା ବେଳେ ଯେତେବେଳେ ଦେଖନ୍ତି ଯେ ଏହା ତାଙ୍କ ନିକଟକୁ ଆସୁଥିବା ଇଂରାଜୀଶିକ୍ଷିତ ନବଯୁବକଦଳଙ୍କର ରୁଚିକର ହେଉ ନାହିଁ, ସେତେବେଳେ ସେ କହୁଥିଲେ, "ତୁମେମାନେ ଏହି ଲୀଳା ଭିତରେ ଶ୍ରୀକୃଷ୍ଣଙ୍କ ପ୍ରତି ଶ୍ରୀମତୀଙ୍କର ମନର ଆକର୍ଷଣଟିକୁ କେବଳ ଦେଖ, ଗ୍ରହଣ କର—ଈଶ୍ୱରଙ୍କଠାରେ ମନର ଏପରି ଆକର୍ଷଣ ରହିଲେ ତେବେ ଯାଇ ତାଙ୍କୁ ପାଇହୁଏ । ଦେଖୁନ, ଗୋପୀମାନେ ସ୍ୱାମୀ, ପୁତ୍ର, କୁଳ–ଶୀଳ, ମାନ–ଅପମାନ, ଲଜ୍ଜା–ଘୃଣା, ଲୋକଭୟ, ସମାଜ–ଭୟ—ସବୁଛାଡ଼ି ଶ୍ରୀଗୋବିନ୍ଦଙ୍କ ପାଇଁ କେତେଦୂର ଉନ୍ମତ୍ତା ହୋଇଉଠିଥିଲେ !—ଏପରି କରିପାରିଲେ ଯାଇ ଭଗବାନ ଲାଭ ହୁଏ !" ପୁଣି କହୁଥିଲେ, "କାମଗନ୍ଧହୀନ ନ ହେଲେ ମହାଭାବମୟୀ ଶ୍ରୀରାଧାଙ୍କର ଭାବ ବୁଝାଯାଏ ନାହିଁ । ସଚ୍ଚିଦାନନ୍ଦଘନ ଶ୍ରୀକୃଷ୍ଣଙ୍କୁ ଦେଖିଲା ମାତ୍ରେ ଗୋପୀମାନଙ୍କର ମନରେ କୋଟି କୋଟି ରମଣସୁଖଠାରୁ ଅଧିକ ଆନନ୍ଦ ଅନୁଭବ ହୋଇ ଦେହବୁଦ୍ଧିର ଲୋପ ହେଉଥିଲା—ତୁଚ୍ଛ ଶରୀରର ରମଣସୁଖ କ'ଣ ସେତେବେଳେ ସେମାନଙ୍କ ମନରେ ଉଦୟ ହୋଇପାରେ ! ଶ୍ରୀକୃଷ୍ଣଙ୍କ ଅଙ୍ଗର

ଦିବ୍ୟ ଜ୍ୟୋତି ସେମାନଙ୍କ ଶରୀରକୁ ସ୍ପର୍ଶ କରି ତାଙ୍କର ପ୍ରତି ଲୋମକୂପରେ ଯେ ରମଣସୁଖଠାରୁ ଅଧିକ ଆନନ୍ଦ ଅନୁଭବ କରାଉଥିଲା !''

ସ୍ୱାମୀ ବିବେକାନନ୍ଦ ଥରେ ଠାକୁରଙ୍କ ନିକଟରେ ଶ୍ରୀଶ୍ରୀରାଧାକୃଷ୍ଣଙ୍କର ବୃନ୍ଦାବନଲୀଳାର ଐତିହାସିକତ୍ୱ ସମ୍ବନ୍ଧରେ ଆପତ୍ତି ଉତ୍ଥାପନ କରି ଏହାର ମିଥ୍ୟାତ୍ୱ–ପ୍ରତିପାଦନରେ ସଚେଷ୍ଟ ହୋଇଥିଲେ । ଏହି କଥାରେ ଠାକୁର ତାହାଙ୍କୁ କହିଥିଲେ, ''ଆଚ୍ଛା, ମାନିଲି ଯେ ଶ୍ରୀମତୀ ରାଧା ବୋଲି କେହି କେବେ ନ ଥିଲେ — କୌଣସି ପ୍ରେମିକ ସାଧକ ରାଧାଚରିତ୍ର କଳ୍ପନା କରିଛନ୍ତି । କିନ୍ତୁ ଉକ୍ତ ଚରିତ୍ର କଳ୍ପନା ବେଳେ ମଧ୍ୟ ଏହି ସାଧକଙ୍କୁ ଶ୍ରୀରାଧାଙ୍କ ଭାବରେ ସମ୍ପୂର୍ଣ୍ଣ ତନ୍ମୟ ହେବାକୁ ପଡ଼ିଥିଲା, ଏକଥା ତ ମାନିବୁ ? ତା'ହେଲେ ଉକ୍ତ ସାଧକ ଯେ ସେହି ସମୟରେ ନିଜକୁ ଭୁଲି ରାଧା ହୋଇଥିଲେ ଏବଂ ବୃନ୍ଦାବନ–ଲୀଳାର ଅଭିନୟ ଯେ ଏପରି ସ୍ଥୂଳଭାବରେ ହୋଇଥିଲା — ଏକଥା ପ୍ରମାଣିତ ହୁଏ !''

ବାସ୍ତବିକ୍, ଶ୍ରୀବୃନ୍ଦାବନରେ ଭଗବାନଙ୍କର ପ୍ରେମଲୀଳାସମ୍ବନ୍ଧରେ ଶତ ସହସ୍ର ଆପତ୍ତି ଉଠିଲେ ମଧ୍ୟ ଶ୍ରୀଚୈତନ୍ୟପ୍ରମୁଖ ବୈଷ୍ଣବ ଆଚାର୍ଯ୍ୟଗଣଙ୍କ ଦ୍ୱାରା ପ୍ରଥମ ଆବିଷ୍କୃତ ଏବଂ ସେମାନଙ୍କର ଶୁଦ୍ଧ ପବିତ୍ର ଜୀବନ ଅବଲମ୍ବନରେ ପ୍ରକାଶିତ ମଧୁରଭାବସମ୍ବନ୍ଧ ଚିରଦିନ ହିଁ ସତ୍ୟ ହୋଇରହିବ, ଚିରକାଳ ହିଁ ଏବିଷୟର ଅଧିକାରୀ ସାଧକ ନିଜକୁ ସ୍ତ୍ରୀଭାବି ଏବଂ ଶ୍ରୀଭଗବାନଙ୍କୁ ନିଜର ପତି ରୂପରେ ଦେଖି ତାଙ୍କର ପୁଣ୍ୟଦର୍ଶନଲାଭରେ ଧନ୍ୟ ହେବେ ଏବଂ ସେହି ଭାବର ଚରମ ପରିପୁଷ୍ଟିରେ ଶୁଦ୍ଧାଦ୍ୱୟ ବ୍ରହ୍ମରୂପରେ ପ୍ରତିଷ୍ଠିତ ହେବେ ।

## ଶ୍ରୀଚୈତନ୍ୟଙ୍କର ପୁରୁଷଜାତିକୁ ମଧୁରଭାବ–ସାଧନାରେ ପ୍ରବୃତ୍ତ କରିବାର କାରଣ :

ଶ୍ରୀଭଗବାନଙ୍କଠାରେ ପତିଭାବ ଆରୋପ କରି ସାଧନପଥରେ ଅଗ୍ରସର ହେବା ସ୍ତ୍ରୀଜାତି ପକ୍ଷରେ ସ୍ୱାଭାବିକ ଓ ସହଜସାଧ୍ୟ ହେଲେ ମଧ୍ୟ, ପୁରୁଷ ଶରୀରଧାରୀମାନଙ୍କ ପକ୍ଷରେ ଏହା ଅସ୍ୱାଭାବିକ ବୋଲି ପ୍ରତୀୟମାନ ହୁଏ । ଅତଏବ ଏକଥା ସହଜରେ ମନରେ ଆସିଥାଏ ଯେ, ଭଗବାନ ଶ୍ରୀଚୈତନ୍ୟଦେବ ଏପରି ବିସଦୃଶ ସାଧନ ପଥରେ କାହିଁକି ଲୋକମାନଙ୍କୁ ପ୍ରବର୍ତ୍ତାଇ ଥିଲେ । ଏହାର ଉତ୍ତରରେ କହିବାକୁ ହେବ, ଯୁଗାବତାରଗଣଙ୍କର ସମସ୍ତ କାର୍ଯ୍ୟ ଲୋକକଲ୍ୟାଣ ନିମନ୍ତେ ଉଦ୍ଦିଷ୍ଟ । ଭଗବାନ ଶ୍ରୀକୃଷ୍ଣଚୈତନ୍ୟଙ୍କ ଦ୍ୱାରା ପୂର୍ବୋକ୍ତ ସାଧନପଥର ପ୍ରବର୍ତ୍ତନ ଏଥିପାଇଁ ହିଁ ହୋଇଥିଲା । ସାଧକମାନେ ସେତେବେଳେ ଆଧ୍ୟାତ୍ମିକ ରାଜ୍ୟରେ ଯେପରି ଆଦର୍ଶ ଉପଲବ୍ଧି କରିବା ପାଇଁ ବହୁ ଦିନ ଧରି ବ୍ୟଗ୍ର ହୋଇଥିଲେ, ସେ ବିଷୟ ଲକ୍ଷ୍ୟକରି ସେ ସେମାନଙ୍କୁ ମଧୁରଭାବରୂପକ ପଥରେ ଅଗ୍ରସର କରାଇଥିଲେ; ନ ହେଲେ ଈଶ୍ୱରାବତାର ନିତ୍ୟମୁକ୍ତ ଶ୍ରୀଗୌରାଙ୍ଗଦେବ

ନିଜର କଲ୍ୟାଣ ପାଇଁ ଯେ ଏହି ଭାବ–ସାଧନାରେ ନିଯୁକ୍ତ ରହି ଏହାର ପୂର୍ଣ୍ଣାଦର୍ଶ ଜନସମାଜରେ ପ୍ରତିଷ୍ଠିତ କରିଥିଲେ ତାହା ନୁହେଁ । ଶ୍ରୀରାମକୃଷ୍ଣଦେବ କହୁଥିଲେ, ‘‘ହାତୀର ବାହାରର ଦାନ୍ତ ଯେପରି ଶତ୍ରୁକୁ ଆକ୍ରମଣ ପାଇଁ ଏବଂ ଭିତରର ଦାନ୍ତ ଖାଦ୍ୟ ଚର୍ବଣ କରି ନିଜର ଶରୀର ପୋଷଣ ପାଇଁ ରହେ, ସେହିପରି ଶ୍ରୀଗୌରାଙ୍ଗଙ୍କର ଅନ୍ତରରେ ଓ ବାହାରେ ଦୁଇପ୍ରକାର ଭାବର ପ୍ରକାଶ ଥିଲା । ବାହାରର ମଧୁରଭାବସାହାଯ୍ୟରେ ସେ ଲୋକକଲ୍ୟାଣ ସାଧନ କରୁଥିଲେ ଏବଂ ଅନ୍ତରର ଅଦ୍ୱୈତଭାବ ଦ୍ୱାରା ପ୍ରେମର ଚରମ ପରିପୁଷ୍ଟିରେ ବ୍ରହ୍ମଭାବରେ ପ୍ରତିଷ୍ଠିତ ହୋଇ ସ୍ୱୟଂ ଭୂମାନନ୍ଦ ଅନୁଭବ କରୁଥିଲେ ।’’

### ସେସମୟରେ ଦେଶର ଆଧ୍ୟାତ୍ମିକ ଅବସ୍ଥା ଓ ଶ୍ରୀଚୈତନ୍ୟ କିପରି ଏହାକୁ ଉନ୍ନତ କରିଥିଲେ :

ପୁରାତତ୍ତ୍ୱବିଦ୍‌ଗଣ କହନ୍ତି, ବୌଦ୍ଧଯୁଗର ଅବସାନ ସମୟରେ ଦେଶରେ ବଜ୍ରଯାନରୂପକ ମାର୍ଗ ଏବଂ ଏହି ମତର ଆଚାର୍ଯ୍ୟମାନଙ୍କର ଅଭ୍ୟୁଦୟ ହୋଇଥିଲା । ସେମାନେ ପ୍ରଚାର କରିଥିଲେ—ନିର୍ବାଣପ୍ରୟାସୀ ମାନବମନ ବାସନାସମୂହର ହସ୍ତରୁ ମୁକ୍ତପ୍ରାୟ ହୋଇ ଧ୍ୟାନର ସହାୟତାରେ ଯେତେବେଳେ ମହାଶୂନ୍ୟରେ ଲୀନ ହେବାକୁ ଅଗ୍ରସର ହୁଅନ୍ତି, ସେତେବେଳେ ‘ନିରାତ୍ମା’ ନାମକ ଦେବୀ ତାଙ୍କର ସମ୍ମୁଖୀନ ହୋଇ ତାଙ୍କୁ ଏପରି ହେବାକୁ ନ ଦେଇ ନିଜ ଅଙ୍ଗରେ ସଂଯୁକ୍ତ କରି ରଖନ୍ତି ଏବଂ ସାଧକର ସ୍ଥୂଳଶରୀର ବିଷୟଭୋଗର ଉପଲବ୍ଧି ସେତେବେଳେ ନ ଥିଲେ ମଧ୍ୟ ସୂକ୍ଷ୍ମଶରୀରବିଶିଷ୍ଟ ତାକୁ ଇନ୍ଦ୍ରିୟଜ ସର୍ବଭୋଗସୁଖର ସାରସମଷ୍ଟି ନିତ୍ୟ ଉପଭୋଗ କରାଇଥାନ୍ତି । ସ୍ଥୂଳ–ବିଷୟଭୋଗ–ତ୍ୟାଗରେ ଭାବରାଜ୍ୟରେ ସୂକ୍ଷ୍ମ ନିରବଚ୍ଛିନ୍ନ ଭୋଗସୁଖପ୍ରାପ୍ତିରୂପକ ସେମାନଙ୍କର ପ୍ରଚାରିତ ମତ ସମୟାନୁକ୍ରମେ ବିକୃତ ହୋଇ ନିରବଚ୍ଛିନ୍ନ ସ୍ଥୂଳଭୋଗସୁଖପ୍ରାପ୍ତିକୁ ଧର୍ମାନୁଷ୍ଠାନର ଉଦ୍ଦେଶ୍ୟ ହେଲା ଏବଂ ଦେଶରେ ବ୍ୟଭିଚାରର ମାତ୍ରା ବୃଦ୍ଧି ପାଇଲା, ଏହା କିଛି ବିଚିତ୍ର କଥା ନୁହେଁ । ଭଗବାନ ଶ୍ରୀଚୈତନ୍ୟଦେବଙ୍କର ଆବିର୍ଭାବ ସମୟରେ ଦେଶର ଅଶିକ୍ଷିତ ଜନସାଧାରଣ ଏହି ସମସ୍ତ ବିକୃତ ବୌଦ୍ଧଧର୍ମମତ ଅବଲମ୍ବନ କରି ନାନା ସମ୍ପ୍ରଦାୟରେ ବିଭକ୍ତ ହୋଇଥିଲା । ଉଚ୍ଚବର୍ଣ୍ଣମାନଙ୍କର ଅଧିକାଂଶଙ୍କ ମଧ୍ୟରେ ତନ୍ତ୍ରୋକ୍ତ ବାମାଚାର ବିକୃତ ହୋଇ ଶ୍ରୀଶ୍ରୀଜଗଦମ୍ବାଙ୍କର ସକାମ ପୂଜା ଓ ଉପାସନା ଦ୍ୱାରା ଅସାଧାରଣ ବିଭୂତି ଓ ଭୋଗସୁଖଲାଭରୂପକ ମତର ପ୍ରଚଳନ ହୋଇଥିଲା । ପୁଣି ଏହି ସମୟର ଯଥାର୍ଥ ସାଧକସମ୍ପ୍ରଦାୟ ଆଧ୍ୟାତ୍ମିକ ରାଜ୍ୟରେ ଭାବ ସହାୟରେ ନିରବଚ୍ଛିନ୍ନ ଆନନ୍ଦ ଲାଭର ପ୍ରୟାସୀ ହୋଇ ପଥର ସନ୍ଧାନ ପାଇପାରୁ ନ ଥିଲେ । ଭଗବାନ ଶ୍ରୀଚୈତନ୍ୟ ନିଜ ଜୀବନରେ ଅନୁଷ୍ଠାନ କରି ଅଦ୍ଭୁତ ତ୍ୟାଗ–ବୈରାଗ୍ୟର ଆଦର୍ଶ ସେହି ସମସ୍ତ ସାଧକମାନଙ୍କ ନିକଟରେ

ପ୍ରତିଷ୍ଠିତ କଲେ । ପରେ ଶୁଦ୍ଧ ପବିତ୍ର ହୋଇ ନିଜକୁ ପ୍ରକୃତି ଭାବି ଈଶ୍ୱରଙ୍କୁ ପତିରୂପରେ ଭଜନା କଲେ ଜୀବ ଯେ ସୂକ୍ଷ୍ମ ଭାବରାଜ୍ୟରେ ନିରବଚ୍ଛିନ୍ନ ଦିବ୍ୟାନନ୍ଦ ଲାଭରେ ସତରେ ହିଁ ସମର୍ଥ ହୁଏ, ତାହା ସେମାନଙ୍କୁ ଦେଖାଇ ଦେଲେ ଏବଂ ସ୍ଥୂଳଦୃଷ୍ଟିସମ୍ପନ୍ନ ସାଧାରଣ ଜନଗଣଙ୍କ ନିକଟରେ ଈଶ୍ୱରଙ୍କର ନାମମାହାତ୍ମ୍ୟ ପ୍ରଚାର କରି ସେମାନଙ୍କୁ ନାମ ଜପ ଓ ଉଚ୍ଚ ସଂକୀର୍ତ୍ତନରେ ନିଯୁକ୍ତ କରାଇଲେ । ଏହିପରି ପଥଭ୍ରଷ୍ଟ ଲକ୍ଷ୍ୟଚ୍ୟୁତ ବହୁଳବିକୃତ ବୌଦ୍ଧସମ୍ପ୍ରଦାୟଗଣ ତାଙ୍କର କୃପାରୁ ପୁନର୍ବାର ଆଧାତ୍ମିକ ପଥରେ ଉନ୍ନୀତ ହୋଇଥିଲେ । ବିକୃତ ବାମାଚାର–ଅନୁଷ୍ଠାନକାରୀ ଦଳଗୁଡ଼ିକ ପ୍ରଥମ ପ୍ରଥମ ପ୍ରକାଶ୍ୟରେ ତାଙ୍କର ବିରୁଦ୍ଧାଚରଣ କଲେ ମଧ୍ୟ ପରେ ତାଙ୍କର ଅଦୃଷ୍ଟପୂର୍ବ ଜୀବନାଦର୍ଶର ଅଦ୍ଭୁତ ଆକର୍ଷଣରେ ତ୍ୟାଗଶୀଳ ହୋଇ ନିଷ୍କାମଭାବରେ ପୂଜା କରି ଶ୍ରୀଶ୍ରୀଜଗନ୍ନାଥଙ୍କର ଦର୍ଶନଲାଭ କରିବାକୁ ପ୍ରୟାସୀ ହୋଇଥିଲେ । ଭଗବାନ ଶ୍ରୀଚୈତନ୍ୟଙ୍କର ଅଲୌକିକ ଜୀବନକଥା ଲିପିବଦ୍ଧ କରିବାକୁ ଯାଇ କୌଣସି କୌଣସି ଗ୍ରନ୍ଥକାର ସ୍ପଷ୍ଟ ଭାବରେ ଲେଖିଛନ୍ତି ଯେ, ସେ ଅବତୀର୍ଣ୍ଣ ହେବା ସମୟରେ ଶୂନ୍ୟବାଦୀ ବୌଦ୍ଧସମ୍ପ୍ରଦାୟସମୂହ ମଧ୍ୟ ଆନନ୍ଦ ପ୍ରକାଶ କରିଥିଲେ ।[୧]

## ମଧୁରଭାବର ସ୍ଥୂଳକଥା :

ସଚ୍ଚିଦାନନ୍ଦ–ଘନ ପରମାତ୍ମା ଶ୍ରୀକୃଷ୍ଣ ହିଁ ଏକମାତ୍ର ପୁରୁଷ — ଏବଂ ଜଗତର ସ୍ଥୂଳ ସୂକ୍ଷ୍ମ ଯାବତୀୟ ପଦାର୍ଥ ଓ ଜୀବଗଣର ପ୍ରତ୍ୟେକେ ହିଁ ତାଙ୍କର ମହାଭାବମୟୀ ପ୍ରକୃତିର ଅଂଶସମ୍ଭୂତ — ଅତଏବ, ତାଙ୍କର ସ୍ତ୍ରୀ । ସେଥିପାଇଁ ଶୁଦ୍ଧ ପବିତ୍ର ହୋଇ ଜୀବ ତାଙ୍କୁ ପତିରୂପରେ ସର୍ବାନ୍ତଃକରଣରେ ଭଜନା କଲେ ତାଙ୍କର କୃପାରେ ତାହାର ଗତିମୁକ୍ତି ଓ ନିରବଚ୍ଛିନ୍ନ ଆନନ୍ଦପ୍ରାପ୍ତି ହୁଏ — ଏହା ହିଁ ଶ୍ରୀଚୈତନ୍ୟ ମହାପ୍ରଭୁକର୍ତ୍ତୃକ ପ୍ରଚାରିତ ମଧୁରଭାବର ସ୍ଥୂଳ କଥା । ମହାଭାବରେ ସର୍ବଭାବର ଏକତ୍ର ସମାବେଶ ଥାଏ । ପ୍ରଧାନା ଗୋପୀ ଶ୍ରୀରାଧା ସେହି ମହାଭାବସ୍ୱରୂପିଣୀ ଏବଂ ଅନ୍ୟ ଗୋପିକାଗଣ ପ୍ରତ୍ୟେକେ ମହାଭାବ ଅନ୍ତର୍ଗତ ଅନ୍ତର୍ଭାବସମୂହର ଏକ, ଦୁଇ ବା ତତୋଽଧିକ ଭାବସ୍ୱରପିଣୀ । ସୁତରାଂ ବ୍ରଜଗୋପିକାଗଣଙ୍କର ଭାବାନୁକରଣରେ ସାଧନରେ ପ୍ରବୃତ୍ତ ହୋଇ ସାଧକ ଏସମସ୍ତ ଅନ୍ତର୍ଭାବ, ନିଜର ଆୟତ୍ତ କରିବାକୁ ସମର୍ଥ ହୋଇଥାଏ ଏବଂ ପରିଶେଷରେ ମହାଭାବୋତ୍ଥ ମହାଆନନ୍ଦର ଆଭାସପ୍ରାପ୍ତ ହୋଇ ଧନ୍ୟ ହୋଇଥାଏ । ଏହିପରି ମହାଭାବସ୍ୱରୂପିଣୀ[୨]

---

୧. 'ଚୈତନ୍ୟମଙ୍ଗଳ' ଗ୍ରନ୍ଥ ଦ୍ରଷ୍ଟବ୍ୟ ।

୨. କୃଷ୍ଣସ୍ୟ ସୁଖେ ପୀଡ଼ାଶଙ୍କୟା ନିମିଷସ୍ୟାପି ଅସହିଷ୍ଣୁତାଦିକଂ ଯତ୍ର ସ ରୁଢୋ ମହାଭାବଃ । କୋଟିବ୍ରହ୍ମାଣ୍ଡଗତଂ ସମସ୍ତସୁଖଂ ଯସ୍ୟ ସୁଖସ୍ୟ ଲେଶୋଽପି ନ ଭବତି, ସମସ୍ତବୃଶ୍ଚିକସର୍ପାଦିଦଂଶକୃତ ଦୁଃଖମପି ଯସ୍ୟ ଦୁଃଖସ୍ୟ ଲେଶୋ ନ ଭବତି ଏବମ୍ଭୂତେ କୃଷ୍ଣସଂଯୋଗବିୟୋଗୟୋଃ ସୁଖଦୁଃଖେ ଯତୋ ଭବତଃ ସଃ ଅଧିରୂଢଃ ମହାଭାବଃ ।

ଶ୍ରୀରାଧାଙ୍କ ଭାବାନୁଷ୍ଠାନରେ ନିଜର ସୁଖବାଞ୍ଛା ଏକାନ୍ତ ଭାବରେ ପରିତ୍ୟାଗ କରି କାୟମନୋବାକ୍ୟରେ ସର୍ବତୋଭାବରେ ଶ୍ରୀକୃଷ୍ଣଙ୍କ ସୁଖରେ ସୁଖୀ ହେବା ହିଁ ଏହି ପଥରେ ସାଧକର ଚରମ ଲକ୍ଷ୍ୟ ହୋଇଥାଏ ।

## ସ୍ୱାଧୀନା ନାୟିକାର ସର୍ବଗ୍ରାସୀ ପ୍ରେମ ଈଶ୍ୱରଙ୍କଠାରେ ଆରୋପ କରିବାକୁ ହେବ :

ସାମାଜିକ ବିଧାନରେ ବିବାହିତ ନାୟକ-ନାୟିକାମାନେ ପରସ୍ପର ପ୍ରତି ପ୍ରେମ—ଜାତି, କୁଳ, ଶୀଳ, ଲୋକଭୟ, ସମାଜଭୟ ପ୍ରଭୃତି ନାନା ବିଷୟ ଦ୍ୱାରା ପରିଚାଳିତ ହୋଇଥାଏ । ଏପରି ନାୟକ-ନାୟିକା ଏସବୁର ସୀମା ମଧ୍ୟରେ ରହି ନାନା କର୍ତ୍ତବ୍ୟାକର୍ତ୍ତବ୍ୟ ପ୍ରତି ଲକ୍ଷ୍ୟ ରଖି ପାରସ୍ପରିକ ସୁଖ-ସମ୍ପାଦନ ପାଇଁ ଯଥାସମ୍ଭବ ତ୍ୟାଗସ୍ୱୀକାର କରିଥାଆନ୍ତି । ବିବାହିତା ନାୟିକା ସାମାଜିକ କଠୋର ନିୟମଗୁଡ଼ିକ ଯଥାଯଥ ପାଳନ କରିବାକୁ ଯାଇ ଅନେକ ସମୟରେ ନାୟକ ପ୍ରତି ନିଜର ପ୍ରେମସମ୍ବନ୍ଧ ଭୁଲିଯିବାକୁ କିମ୍ବା ହ୍ରାସ କରିବାକୁ ସଙ୍କୁଚିତ ହୋଇ ନ ଥାନ୍ତି; କିନ୍ତୁ ସ୍ୱାଧୀନା ନାୟିକାର ପ୍ରେମର ଆଚରଣ ଅନ୍ୟ ପ୍ରକାରର । ପ୍ରେମର ପ୍ରାବଲ୍ୟରେ ଏପରି ନାୟିକା ଅନେକ ସମୟରେ ଏସମସ୍ତ ନିୟମ ବନ୍ଧନକୁ ପଦଦଳିତ କରିବାକୁ ଏବଂ ସମାଜପ୍ରଦତ୍ତ ନିଜର ସାମାଜିକ ଅଧିକାରକୁ ସମ୍ପୂର୍ଣ୍ଣ ତ୍ୟାଗପୂର୍ବକ ନାୟକ ସହିତ ସଂଯୁକ୍ତା ହେବାକୁ କୁଣ୍ଠିତ ହୋଇ ନ ଥାନ୍ତି । ବୈଷ୍ଣବ ଆଚାର୍ଯ୍ୟମାନେ ଏପରି ସର୍ବଗ୍ରାସୀ ପ୍ରେମସମ୍ବନ୍ଧକୁ ଈଶ୍ୱରଙ୍କଠାରେ ଆରୋପ କରିବାକୁ ସାଧକଙ୍କୁ ଉପଦେଶ ଦେଇଛନ୍ତି ଏବଂ ବୃନ୍ଦାବନ-ଅଧିଶ୍ୱରୀ ଶ୍ରୀରାଧା ସେଥିନିମିତ୍ତ ଆୟାନ ଘୋଷଙ୍କ ବିବାହିତା ପତ୍ନୀ ହୋଇ ମଧ୍ୟ ଶ୍ରୀକୃଷ୍ଣଙ୍କ ପ୍ରେମରେ ସର୍ବସ୍ୱତ୍ୟାଗିନୀ ବୋଲି ବର୍ଣ୍ଣିତ ହୋଇଛନ୍ତି ।

## ମଧୁରଭାବ ଅନ୍ୟ ସମସ୍ତ ଭାବର ସମଷ୍ଟିରୂପକ ଏବଂ ତତୋଽଧିକ :

ବୈଷ୍ଣବ ଆଚାର୍ଯ୍ୟମାନେ ମଧୁରଭାବକୁ ଶାନ୍ତ ଇତ୍ୟାଦି ଅନ୍ୟ ଚାରିପ୍ରକାର ଭାବର ସାରସମଷ୍ଟି ଏବଂ ତତୋଽଧିକ ବୋଲି ବର୍ଣ୍ଣନା କରିଛନ୍ତି । କାରଣ ପ୍ରେମିକା ନାୟିକା କ୍ରୀତଦାସୀ ପରି ପ୍ରିୟର ସେବା କରନ୍ତି, ସଖୀପରି ସର୍ବାବସ୍ଥାରେ ତାଙ୍କୁ ସୁପରାମର୍ଶ ଦେଇ ତାଙ୍କର ଆନନ୍ଦରେ ଉଲ୍ଲସିତ ଓ ଦୁଃଖରେ ସମ ବେଦନାଯୁକ୍ତ ହୋଇଥାଆନ୍ତି, ମାତାଙ୍କ ପରି ସର୍ବଦା ତାଙ୍କ ଶରୀର ମନର ପୋଷଣରେ ଏବଂ କଲ୍ୟାଣକାମନାରେ ନିଯୁକ୍ତ ରହିଥାଆନ୍ତି ଏବଂ ଏହିପରି ସର୍ବପ୍ରକାରେ ନିଜକୁ ଭୁଲି ପ୍ରିୟତମର କଲ୍ୟାଣସାଧନ ଓ ଚିତ୍ତବିନୋଦନପୂର୍ବକ ତାଙ୍କର ମନକୁ ଅପୂର୍ବ ଶାନ୍ତିରେ ଆପ୍ଳୁତ କରିଥାଆନ୍ତି ! ଯେଉଁ ନାୟିକା ଏହିପରି ପ୍ରେମଭାବରେ

---

ଅଧିରୂଢସ୍ୟୈବ ମୋଦନ ମାଦନ ଇତି ଦ୍ୱୌ ରୂପୌ ଭବତଃ । ଇତ୍ୟାଦି—ଶ୍ରୀବିଶ୍ୱନାଥ ଚକ୍ରବର୍ତ୍ତୀଙ୍କର ଭକ୍ତିଗ୍ରନ୍ଥାବଳୀ ।

ଆତ୍ମବିସ୍ମୃତ ହୋଇ ପ୍ରିୟର କଲ୍ୟାଣ ଓ ସୁଖ ଆଡ଼କୁ ସର୍ବତୋଭାବରେ ଦୃଷ୍ଟି ନିବଦ୍ଧ କରିଥାଆନ୍ତି, ତାଙ୍କର ପ୍ରେମ ହିଁ ସର୍ବଶ୍ରେଷ୍ଠ ଏବଂ ସେ ହିଁ ସମର୍ଥା ପ୍ରେମିକା ବୋଲି ଭକ୍ତିଗ୍ରନ୍ଥମାନଙ୍କରେ କୁହାଯାଇଅଛି । ସ୍ୱାର୍ଥଜଡ଼ିତ ଅନ୍ୟାନ୍ୟ ସମସ୍ତ ପ୍ରକାରର ପ୍ରେମ ସମଞ୍ଜସା ଓ ସାଧାରଣୀ ଶ୍ରେଣୀ ମଧ୍ୟରେ ଅନ୍ତର୍ଭୁକ୍ତ । ସମଞ୍ଜସାଶ୍ରେଣୀଭୁକ୍ତା ନାୟିକା ପ୍ରିୟଙ୍କ ସୁଖସଦୃଶ ନିଜ ସୁଖକୁ ମଧ୍ୟ ସମଭାବରେ ଲକ୍ଷ୍ୟ ରଖିଥାଆନ୍ତି ଏବଂ ସାଧାରଣୀଶ୍ରେଣୀଭୁକ୍ତା ନାୟିକା କେବଳ ଆତ୍ମସୁଖନିମିତ୍ତ ନାୟକଙ୍କୁ ଭଲ ପାଇଥାନ୍ତି ।

## ଶ୍ରୀଚୈତନ୍ୟ ମଧୁରଭାବ ସାହାଯ୍ୟରେ କିପରି ଲୋକକଲ୍ୟାଣ କରିଥିଲେ :

ବିଷୟସୁଖ ବିଷବତ୍ ପରିତ୍ୟାଗପୂର୍ବକ ଜୀବନ ନିୟନ୍ତ୍ରିତ କରିବାକୁ ଏବଂ ପ୍ରେମରେ ଶ୍ରୀକୃଷ୍ଣପ୍ରିୟାଙ୍କ ସ୍ଥାନରେ ଦଣ୍ଡାୟମାନ ହେବାକୁ ସାଧକମାନଙ୍କୁ ଶିକ୍ଷା ପ୍ରଦାନ କରି ଓ ନାମମାହାତ୍ମ୍ୟ ପ୍ରଚାର କରି ଭଗବାନ ଶ୍ରୀଚୈତନ୍ୟଦେବ ସେ ସମୟରେ ଦେଶର ବ୍ୟଭିଚାର ନିବାରଣରେ ଓ କଲ୍ୟାଣସାଧନରେ ପ୍ରୟାସୀ ହୋଇଥିଲେ । ଫଳରେ ସେସମୟରେ ତଦୀୟ ଭାବ ଓ ଉପଦେଶ ପଥଭ୍ରଷ୍ଟଙ୍କୁ ପଥ ଦେଖାଇ, ସମାଜଚ୍ୟୁତମାନଙ୍କୁ ନୂତନ ସମାଜବନ୍ଧନକୁ ଆଣି, ଜାତିବହିର୍ଭୂତମାନଙ୍କୁ ଭଗବତ୍ ଭକ୍ତରୂପକ ଜାତିରେ ଅନ୍ତର୍ଭୁକ୍ତ କରି ଏବଂ ସର୍ବସମ୍ପ୍ରଦାୟଙ୍କର ସମ୍ମୁଖରେ ତ୍ୟାଗ–ବୈରାଗ୍ୟର ପବିତ୍ର ଉଚ୍ଚ ଆଦର୍ଶ ସ୍ଥାପନ କରି ଅଶେଷ ଲୋକକଲ୍ୟାଣ ସାଧିତ କରିଥିଲେ । କେବଳ ସେତିକି ନୁହେଁ—ସାଧାରଣ ନାୟକ–ନାୟିକାଙ୍କ ପ୍ରଣୟ ଓ ମିଳନଜନିତ 'ଅଷ୍ଟସାତ୍ତ୍ୱିକବିକାର'[୧] ନାମକ ମାନସିକ ଓ ଶାରୀରିକ ବିକାରସମୂହ ଶ୍ରୀଶ୍ରୀଜଗତ୍ସ୍ୱାମୀଙ୍କର ତୀବ୍ରଧ୍ୟାନାନୁଚିନ୍ତନରେ ପବିତ୍ରଚେତା ସାଧକଙ୍କର ସତରେ ଉପସ୍ଥିତ ହୋଇଥାଏ, ଏକଥା ଶ୍ରୀଚୈତନ୍ୟଙ୍କର ଅଲୌକିକ ଜୀବନ ସହାୟରେ ନିଃସଂଶୟରେ ପ୍ରମାଣିତ କରି ବୈଷ୍ଣବସମ୍ପ୍ରଦାୟରେ ପ୍ରଚାରିତ ମଧୁରଭାବ ସେହି ସମୟରେ ଅଳଙ୍କାରଶାସ୍ତ୍ରକୁ ଆଧ୍ୟାତ୍ମିକ ଶାସ୍ତ୍ରଗୁଡ଼ିକର ଅଙ୍ଗୀଭୂତ କରିଥିଲା; କୁବାକ୍ୟଗୁଡ଼ିକୁ ଉଚ୍ଚ ଆଧ୍ୟାତ୍ମିକ ଭାବରେ ରଞ୍ଜିତ କରି ସାଧକମନ ପାଇଁ ଉପଭୋଗ୍ୟ ଓ ଉନ୍ନତି ବିଧାୟକ କରିଥିଲା ଏବଂ ଶାନ୍ତଭାବ ଅନୁଷ୍ଠାନରେ ଅବଶ୍ୟପରିତ୍ୟାଜ୍ୟ କାମ–କ୍ରୋଧାଦି ନୀଚ ଭାବଗୁଡ଼ିକୁ ଶ୍ରୀଭଗବାନଙ୍କୁ ନିଜର କରି ନେଇ ତାଙ୍କ ନିମିତ୍ତ ଏବଂ ତାଙ୍କରି ଉପରେ ପ୍ରୟୋଗ କରିବାକୁ ସାଧକଙ୍କୁ ଶିଖାଇ ତାଙ୍କର ସାଧନାପଥ ସୁଗମ କରି ଦେଇଥିଲା ।

---

୧. ଯେ ଚିତ୍ତଂ ତନୁଞ୍ଚ କ୍ଷୋଭୟନ୍ତି ତେ ସାତ୍ତ୍ୱିକାଃ । ତେ ଅଷ୍ଟୌ ସ୍ତମ୍ଭ ସ୍ୱେଦଃ ରୋମାଞ୍ଚସ୍ୱରଭେଦ ବେପଥୁବୈବର୍ଣ୍ଣ୍ୟାଶ୍ରୁପ୍ରଲୟାଃ ଇତି । ତେ ଧୂମାୟିତା ଜ୍ୱଳିତା ଦୀପ୍ତା ଉଦ୍ଦୀପ୍ତା ସୁଦୀପ୍ତା ଇତି ପଞ୍ଚବିଧା ଯଥୋତ୍ତରସୁଖଦା ସ୍ୟୁଃ ।—ଆକରଗ୍ରନ୍ଥ

## ବେଦାନ୍ତବିଦ୍ ମଧୁରଭାବ-ସାଧନାକୁ ଯେଉଁ ଭାବରେ ସାଧକର କଲ୍ୟାଣକର ବୋଲି ଗ୍ରହଣ କରନ୍ତି :

ପାଶ୍ଚାତ୍ୟଶିକ୍ଷାପ୍ରାପ୍ତ ବର୍ତ୍ତମାନ ଯୁଗର ନବ୍ୟ ସମ୍ପ୍ରଦାୟଙ୍କର ଚକ୍ଷୁରେ ମଧୁରଭାବ ପୁରୁଷଦେହଧାରୀମାନଙ୍କ ପକ୍ଷରେ ଅସ୍ୱାଭାବିକ ତଥା ବିସଦୃଶ ବୋଲି ପ୍ରତୀତ ହେଲେ ମଧ ବେଦାନ୍ତବାଦୀଙ୍କ ନିକଟରେ ଏହାର ସମୁଚିତ ମୂଲ୍ୟ ନିର୍ଦ୍ଧାରିତ ହେବାକୁ ବିଳମ୍ବ ହୋଇ ନାହିଁ । ସେ ଦେଖନ୍ତି, ଭାବଗୁଡ଼ିକ ହିଁ ବହୁଦିନ ଅଭ୍ୟାସରେ ମାନବ-ମନରେ ଦୃଢ଼-ସଂସ୍କାରରୂପରେ ପରିଣତ ହୋଇଥାଏ ଏବଂ ଜନ୍ମଜନ୍ମାଗତ ଏପରି ସଂସ୍କାରଗୁଡ଼ିକ ପାଇଁ ମନୁଷ୍ୟ ଏକ ଅଦ୍ୱୟ ବ୍ରହ୍ମବସ୍ତୁ ସ୍ଥାନରେ ଏହି ବିଚିତ୍ର ଜଗତକୁ ଦେଖିବାକୁ ପାଇଥାଏ । ଈଶ୍ୱରାନୁଗ୍ରହରୁ ଯେଉଁ ମୁହୂର୍ତ୍ତରେ ସେ ଜଗତ ନାହିଁ ବୋଲି ଠିକ୍ ରୂପେ ଭାବନା କରିପାରେ, ସେହି ମୁହୂର୍ତ୍ତରେ ଏହା ତା'ର ଚକ୍ଷୁରାଦି ଇନ୍ଦ୍ରିୟସମୂହ ସମ୍ମୁଖରୁ ଅନ୍ତର୍ହିତ ହୋଇଯିବ । ଜଗତ ଅଛି ଭାବେ ବୋଲି ହିଁ ମନୁଷ୍ୟ ନିକଟରେ ଜଗତ ବର୍ତ୍ତମାନ । ମୁଁ ପୁରୁଷ ବୋଲି ନିଜକୁ ଭାବେ ବୋଲି ହିଁ ପୁରୁଷଭାବାପନ୍ନ ହୋଇ ରହିଅଛି ଏବଂ ଅନ୍ୟମାନେ ସ୍ତ୍ରୀ ବୋଲି ଭାବିବାରୁ ସ୍ତ୍ରୀଭାବାପନ୍ନ ହୋଇ ରହିଅଛନ୍ତି । ପୁଣି ମନୁଷ୍ୟ ହୃଦୟରେ ଗୋଟିଏ ଭାବ ପ୍ରବଳ ହୋଇ ଅପର ସମସ୍ତ ବିପରୀତ ଭାବକୁ ଯେ ସମାଚ୍ଛନ୍ନ ଏବଂ କ୍ରମେ ବିନଷ୍ଟ କରିଥାଏ, ଏହା ମଧ ନିତ୍ୟପରିଦୃଷ୍ଟ । ଅତଏବ ଈଶ୍ୱରଙ୍କ ପ୍ରତି ମଧୁରଭାବ ସମ୍ବନ୍ଧ ଆରୋପ କରି ଏହାର ପ୍ରାବଲ୍ୟରେ ସାଧକ ନିଜ ମନର ଅନ୍ୟ ସମସ୍ତ ଭାବକୁ ସମାଚ୍ଛନ୍ନ ଏବଂ କ୍ରମେ ବିନଷ୍ଟ କରିବାର ଚେଷ୍ଟାକୁ ବେଦାନ୍ତବିତ୍ ଗୋଟିଏ କଣ୍ଟା ସାହାଯ୍ୟରେ ପଦବିଦ୍ଧ କଣ୍ଟାକୁ ବାହାର କରିବାର ଚେଷ୍ଟା ସଦୃଶ ବିବେଚନା କରିଥାଆନ୍ତି । ମାନବମନର ଅନ୍ୟ ସମସ୍ତ ସଂସ୍କାରର ଅବଲମ୍ବନସ୍ୱରୂପ 'ମୁଁ ଦେହୀ' ବୋଲି ବୋଧ ଏବଂ ସେହି ଦେହ ସଂଯୋଗରେ 'ମୁଁ ପୁରୁଷ ବା ସ୍ତ୍ରୀ' ବୋଲି ସଂସ୍କାର ହିଁ ସର୍ବାପେକ୍ଷା ପ୍ରବଳ । ଶ୍ରୀଭଗବାନଙ୍କଠାରେ ପତି ଭାବ ଆରୋପ କରି 'ମୁଁ ସ୍ତ୍ରୀ' ବୋଲି ଭାବୁ ଭାବୁ ସାଧକ-ପୁରୁଷ ନିଜର ପୁରୁଷଭାବ ଭୁଲିବାକୁ ସକ୍ଷମ ହେଲାପରେ, 'ମୁଁ ସ୍ତ୍ରୀ' ଏଭାବକୁ ମଧ ଅତି ସହଜରେ ପରିତ୍ୟାଗ କରି ଭାବାତୀତ ଅବସ୍ଥାରେ ଉପନୀତ ହୋଇପାରିବେ, ଏହା କହିବା ବାହୁଲ୍ୟ । ଅତଏବ ମଧୁରଭାବରେ ସିଦ୍ଧ ହେଲେ ସାଧକ ଯେ ଭାବାତୀତ ଭୂମିର ଅତି ନିକଟରେ ପହଞ୍ଚିଯିବେ, ବେଦାନ୍ତବାଦୀ ଦାର୍ଶନିକଙ୍କ ଦୃଷ୍ଟିରେ ଏହା ହିଁ ସର୍ବଥା ପ୍ରତୀୟମାନ ହୋଇଥାଏ ।

## ଶ୍ରୀମତୀଙ୍କର ଭାବ ପ୍ରାପ୍ତ ହେବା ହିଁ ମଧୁରଭାବ–ସାଧନାର ଚରମ ଲକ୍ଷ୍ୟ :

ପ୍ରଶ୍ନ ଉଠିପାରେ, ତେବେ କ'ଣ ରାଧାଭାବ ପ୍ରାପ୍ତ ହେବା ହିଁ ସାଧକର ଚରମ ଲକ୍ଷ୍ୟ ? ଉତ୍ତରରେ କହିବାକୁ ହୁଏ, ବୈଷ୍ଣବ ଗୋସ୍ୱାମୀଗଣ ବର୍ତ୍ତମାନ ଏହା ଅସ୍ୱୀକାରପୂର୍ବକ ସଖୀଭାବ ପ୍ରାପ୍ତି ହିଁ ସାଧ୍ୟ ଏବଂ ମହାଭାବମୟୀ ଶ୍ରୀରାଧାଙ୍କର ଭାବ ଲାଭ କରିବା ସାଧକ ପକ୍ଷରେ ଅସାଧ୍ୟ ବୋଲି ପ୍ରଚାର କଲେ ମଧ୍ୟ ଏହା ହିଁ ସାଧକର ଚରମ ଲକ୍ଷ୍ୟ ବୋଲି ଅନୁମିତ ହୁଏ । କାରଣ, ଦେଖାଯାଏ, ସଖୀଗଣଙ୍କର ଓ ଶ୍ରୀମତୀଙ୍କର ଭାବ ମଧ୍ୟରେ ଏକ ଗୁଣଗତ ପାର୍ଥକ୍ୟ ବିଦ୍ୟମାନ ନାହିଁ, ମାତ୍ର ପରିମାଣଗତ ପାର୍ଥକ୍ୟ ହିଁ ରହିଛି । ଦେଖାଯାଏ, ଶ୍ରୀମତୀଙ୍କ ପରି ସଖୀମାନେ ମଧ୍ୟ ସଚ୍ଚିଦାନନ୍ଦଘନ ଶ୍ରୀକୃଷ୍ଣଙ୍କୁ ପତିଭାବରେ ଭଜନା କରୁଥିଲେ ଏବଂ ଶ୍ରୀରାଧାଙ୍କ ସହିତ ସମ୍ମିଳନରେ ଶ୍ରୀକୃଷ୍ଣଙ୍କର ସର୍ବାପେକ୍ଷା ଅଧିକ ଆନନ୍ଦ ଦେଖି, ତାହାଙ୍କୁ ସୁଖୀ କରିବା ପାଇଁ ଶ୍ରୀଶ୍ରୀ ରାଧାକୃଷ୍ଣଙ୍କର ମିଳନସମ୍ପାଦନରେ ସର୍ବଦା ଯତ୍ନବତୀ ହେଉଥିଲେ । ପୁଣି ଦେଖାଯାଏ, ଶ୍ରୀରୂପ, ଶ୍ରୀସନାତନ, ଶ୍ରୀଜୀବ ପ୍ରଭୃତି ପୁରାତନ ଗୋସ୍ୱାମୀପାଦଗଣଙ୍କର ପ୍ରତ୍ୟେକେ ମଧୁରଭାବ–ପରିତୁଷ୍ଟି ନିମିତ୍ତ ପୃଥକ୍ ପୃଥକ୍ ଶ୍ରୀକୃଷ୍ଣବିଗ୍ରହର ସେବାରେ ଶ୍ରୀବୃନ୍ଦାବନରେ ଜୀବନ ଅତିବାହିତ କରିଥିଲେ ମଧ୍ୟ, ତତ୍‌ସଙ୍ଗେ ଶ୍ରୀରାଧାଙ୍କର ମୂର୍ତ୍ତି ପ୍ରତିଷ୍ଠିତ କରି ସେବା କରିବାର ପ୍ରୟାସ କରି ନାହାନ୍ତି — ନିଜକୁ ରାଧାସ୍ଥାନୀୟ ଭାବିଥିବାରୁ ଯେ ସେମାନେ ଏପରି କରିନାହାନ୍ତି ଏକଥା ହିଁ ଏଥିରୁ ଅନୁମିତ ହୁଏ ।

ବୈଷ୍ଣବତନ୍ତ୍ରୋକ୍ତ ମଧୁରଭାବର ଯେଉଁମାନେ ବିଶଦ ଆଲୋଚନା ଚାହାଁନ୍ତି, ସେମାନେ ଶ୍ରୀରୂପ, ଶ୍ରୀସନାତନ, ଶ୍ରୀଜୀବ ଆଦି ପ୍ରାଚୀନ ଗୋସ୍ୱାମୀପାଦଗଣଙ୍କ ଗ୍ରନ୍ଥଗୁଡ଼ିକରେ ଏବଂ ଶ୍ରୀବିଦ୍ୟାପତି–ଚଣ୍ଡୀଦାସପ୍ରମୁଖ ବୈଷ୍ଣବ କବିମାନଙ୍କର ପୂର୍ବରାଗ, ଦାନ, ମାନ ଓ ମାଥୁର–ଲୀଳାସମ୍ବନ୍ଧୀୟ ପଦାବଳୀ ସମସ୍ତ ଆଲୋଚନା କରିବେ । ମଧୁରଭାବ ସାଧନରେ ପ୍ରବୃତ୍ତ ହୋଇ ଠାକୁର ଏଥିରେ କି ଅପୂର୍ବ ଚରମ ଉତ୍‌କର୍ଷ ଲାଭ କରିଥିଲେ ତାହା ବୁଝିବାକୁ ସୁଗମ ହେବ ବୋଲି ଆମେ ଏହାର ସାରାଂଶ ସଂକ୍ଷେପରେ ଆଲୋଚନା କଲୁ ।

# ଚତୁର୍ଦ୍ଦଶ ଅଧ୍ୟାୟ

## ଠାକୁରଙ୍କର ମଧୁରଭାବ–ସାଧନା

### ବାଲ୍ୟକାଳରୁ ଠାକୁରଙ୍କ ମନରେ ଭାବ–ତନ୍ମୟତାର ଆଚରଣ :

ଠାକୁରଙ୍କର ଏକାଗ୍ରଚିତ୍ତରେ ଯେତେବେଳେ ଯେଉଁ ଭାବର ଉଦୟ ହେଉଥିଲା, ସେହି ଭାବରେ ସେ କିଛିଦିନ ପାଇଁ ତନ୍ମୟ ହୋଇଯାଉଥିଲେ । ଉକ୍ତ ଭାବ ସେତେବେଳେ ତାଙ୍କ ମନରେ ପୂର୍ଣ୍ଣ ଅଧିକାର ସ୍ଥାପନପୂର୍ବକ ଅନ୍ୟ ସମସ୍ତ ଭାବକୁ ଲୋପ କରିଦେଉଥିଲା ଏବଂ ତାଙ୍କର ଶରୀରକୁ ପରିବର୍ତ୍ତିତ କରି ସେହି ଭାବ ପ୍ରକାଶର ଯନ୍ତ୍ର କରି ତୋଳୁଥିଲା । ବାଲ୍ୟକାଳରୁ ତାଙ୍କର ଏପରି ସ୍ୱଭାବ କଥା ଶୁଣିବାକୁ ମିଳେ ଏବଂ ଦକ୍ଷିଣେଶ୍ୱର ଗମନାଗମନ କରିବା ସମୟରେ ଆମେ ଏବିଷୟର ନିତ୍ୟ ପରିଚୟ ପାଉଥିଲୁ । ଦେଖୁଥିଲୁ, ସଙ୍ଗୀତ ଇତ୍ୟାଦି ଶୁଣିବାରେ ବା ଅନ୍ୟ କୌଣସି ଉପାୟରେ ତାଙ୍କର ମନ ଭାବବିଶେଷରେ ମଗ୍ନ ହେଲେ ଯଦି କେହି ସହସା ଅନ୍ୟ ଭାବରେ ସଙ୍ଗୀତ ବା କଥା ଆରମ୍ଭ କରେ, ତେବେ ସେ ଅତ୍ୟନ୍ତ ଯନ୍ତ୍ରଣା ଅନୁଭବ କରୁଥିଲେ । ଗୋଟିଏ ଲକ୍ଷ୍ୟରେ ପ୍ରବାହିତ ଚିତ୍ତବୃତ୍ତିସକଳର ସହସା ଗତିରୋଧ ହେବାରୁ ହିଁ ଯେ ତାଙ୍କର ଏପରି କଷ୍ଟ ଉପୁଜୁଥିଲା, ଏହା କହିବା ବାହୁଲ୍ୟ । ମହାମୁନି ପତଞ୍ଜଳି ଗୋଟିଏ ଭାବରେ ତରଙ୍ଗାୟିତ ଚିତ୍ତବୃତ୍ତିଯୁକ୍ତ ମନକୁ ସବିକଳ୍ପ ସମାଧି ବୋଲି ଆଖ୍ୟା ଦେଇଛନ୍ତି ଏବଂ ଭକ୍ତିଗ୍ରନ୍ଥଗୁଡ଼ିକ ଏହି ସମାଧି ଭାବସମାଧି ବୋଲି ମତ ଦେଇଛନ୍ତି । ଅତଏବ ଦେଖାଯାଇଛି, ଠାକୁରଙ୍କ ମନ ଏହିପରି ସମାଧିରେ ଅବସ୍ଥାନ କରିବାକୁ ଆଜୀବନ ସମର୍ଥ ଥିଲା ।

### ସାଧନା ସମୟରେ ତାଙ୍କ ମନର ଉକ୍ତ<br>ସ୍ୱଭାବର କିପରି ପରିବର୍ତ୍ତନ ହୁଏ :

ସାଧନାରେ ପ୍ରବୃତ୍ତ ହେବା ସମୟରୁ ତାଙ୍କ ମନର ପୂର୍ବୋକ୍ତ ସ୍ୱଭାବ ଏକ ଅପୂର୍ବ ପଥ ଅବଲମ୍ବନ କରିଥିଲା । କାରଣ ଦେଖାଯାଏ, ଏହି ସମୟରେ ତାଙ୍କର ମନ ପୂର୍ବପରି କୌଣସି ଭାବରେ କିଛିକ୍ଷଣ ମାତ୍ର ଅବସ୍ଥାନ କରି ଅନ୍ୟ ଭାବ ବିଶେଷ ଅବଲମ୍ବନ କରୁ ନାହିଁ; କିନ୍ତୁ କୌଣସି ଗୋଟିଏ ଭାବରେ ଆବିଷ୍ଟ ହେଲେ, ଯେପର୍ଯ୍ୟନ୍ତ ସେ ଉକ୍ତଭାବର ଚରମ ସୀମାରେ ଉପନୀତ ହୋଇ ଅଦ୍ୱୈତଭାବର ଆଭାସ ଉପଲବ୍ଧି କରୁନାହାନ୍ତି, ସେପର୍ଯ୍ୟନ୍ତ ଉକ୍ତ ଭାବକୁ ଅବଲମ୍ବନ କରି ସର୍ବକ୍ଷଣ ଅବସ୍ଥାନ କରୁଥିଲେ । ଦୃଷ୍ଟାନ୍ତସ୍ୱରୂପ କୁହାଯାଇପାରେ ଯେ, ଦାସ୍ୟଭାବର ଚରମ ସୀମାରେ ନ ପହଞ୍ଚିବା ପର୍ଯ୍ୟନ୍ତ ସେ ମାତୃଭାବ ଉପଲବ୍ଧି କରିବାକୁ ଅଗ୍ରସର ହୋଇ ନାହାନ୍ତି; ପୁଣି ମାତୃଭାବସାଧନାର ଚରମ ଉପଲବ୍ଧି ନ କରି ବାତ୍ସଲ୍ୟ

ଇତ୍ୟାଦି ଭାବ ସାଧନାରେ ପ୍ରବୃତ୍ତ ହୋଇ ନାହାନ୍ତି । ତାଙ୍କର ସାଧନକାଳର ଇତିହାସ ପର୍ଯ୍ୟାଲୋଚନା କଲେ ଏପରି ସର୍ବତ୍ର ଦେଖାଯାଏ ।

**ସାଧନାକାଳ ପୂର୍ବରୁ ଠାକୁରଙ୍କୁ ମଧୁରଭାବ ଭଲ ଲାଗୁ ନ ଥିଲା :**

ବ୍ରାହ୍ମଣୀଙ୍କର ଆସିବା ସମୟରେ ଠାକୁରଙ୍କର ମନ ଈଶ୍ୱରଙ୍କର ମାତୃଭାବର ଅନୁଧ୍ୟାନରେ ପୂର୍ଣ୍ଣ ଥିଲା । ଜଗତର ଯାବତୀୟ ପ୍ରାଣୀ ଓ ପଦାର୍ଥରେ, ବିଶେଷତଃ ସ୍ତ୍ରୀମୂର୍ତ୍ତିମାନଙ୍କରେ ସେତେବେଳେ ସେ ଶ୍ରୀଶ୍ରୀଜଗଦମ୍ବାଙ୍କର ପ୍ରକାଶ ସାକ୍ଷାତ୍ ପ୍ରତ୍ୟକ୍ଷ କରୁଥିଲେ । ଅତଏବ ବ୍ରାହ୍ମଣୀଙ୍କୁ ଦର୍ଶନମାତ୍ରେ ସେ କାହିଁକି ମାତୃ ସମ୍ବୋଧନ କରିଥିଲେ ଏବଂ ବେଳେବେଳେ ବାଳକ ପରି କ୍ରୋଡ଼ରେ ଉପବେଶନପୂର୍ବକ ତାଙ୍କ ହସ୍ତରୁ ଆହାର୍ଯ୍ୟ ଗ୍ରହଣ କରୁଥିଲେ, ତାହାର କାରଣ ଏଥିରୁ ସ୍ପଷ୍ଟ ବୁଝାଯାଏ । ହୃଦୟଙ୍କଠାରୁ ଶୁଣାଯାଇଛି, ବ୍ରାହ୍ମଣୀ ଏହି ସମୟରେ କେବେହେଲେ ବ୍ରଜଗୋପୀକା ଭାବରେ ଆବିଷ୍ଟହୋଇ ମଧୁରରସାତ୍ମକ ସଙ୍ଗୀତ ଗାନ କଲେ ଠାକୁର କହୁଥିଲେ, ଏଭାବ ତାଙ୍କୁ ଭଲ ଲାଗୁ ନାହିଁ ଏବଂ ଉକ୍ତ ଭାବ ସମ୍ବରଣପୂର୍ବକ ମାତୃଭାବର ଭଜନସବୁ ଗାନ କରିବା ପାଇଁ ତାଙ୍କୁ ଅନୁରୋଧ କରୁଥିଲେ । ବ୍ରାହ୍ମଣୀ ମଧ୍ୟ ଠାକୁରଙ୍କର ମାନସିକ ଅବସ୍ଥା ଏଥିରୁ ଯଥାଯଥ ବୁଝି ତାଙ୍କର ପ୍ରୀତି ପାଇଁ ସଙ୍ଗେ ସଙ୍ଗେ ଶ୍ରୀଶ୍ରୀଜଗଦମ୍ବାଙ୍କର ଦାସୀ ଭାବରେ ସଙ୍ଗୀତ ଆରମ୍ଭ କରୁଥିଲେ, କିମ୍ବା ବ୍ରଜ ଗୋପାଳଙ୍କ ପ୍ରତି ନନ୍ଦରାଣୀ ଶ୍ରୀମତୀ ଯଶୋଦାଙ୍କର ହୃଦୟର ଗଭୀର ଉଚ୍ଛ୍ୱାସପୂର୍ଣ୍ଣ ଗୀତ ଗାଉଥିଲେ । ଉକ୍ତ ଘଟଣା ଅବଶ୍ୟ ଠାକୁରଙ୍କର ମଧୁରଭାବସାଧନା କରିବାର ବହୁ ପୂର୍ବର କଥା । 'ଭାବ ଘରେ ଚୋରୀ'[୧] ଯେ ତାଙ୍କର ମନରେ ବିନ୍ଦୁମାତ୍ର କେବେ ନ ଥିଲା, ଏଥିରୁ ଏକଥା ବୁଝାଯାଇଥାଏ ।

ଏହାର କେତେ ବର୍ଷ ପରେ ଠାକୁରଙ୍କର ମନ କିପରି ପରିବର୍ତ୍ତିତ ହୋଇ ବାତ୍ସଲ୍ୟଭାବସାଧନାରେ ଅଗ୍ରସର ହୋଇଥିଲା, ସେବିଷୟ ଆମେ ପାଠକଙ୍କୁ ଇତିପୂର୍ବରେ କହିଛୁ । ଅତଏବ ମଧୁରଭାବସାଧନାରେ ପ୍ରବୃତ୍ତ ହୋଇ ସେ ଯେଉଁସବୁ ଅନୁଷ୍ଠାନରେ ରତ ହୋଇଥିଲେ, ସେସମସ୍ତ ବିଷୟ ଏବେ କହିବାକୁ ପ୍ରବୃତ୍ତ ହେଉଅଛୁ ।

**ଠାକୁରଙ୍କର ସାଧନା କେବେହେଲେ ଶାସ୍ତ୍ର ବିରୋଧୀ ହୋଇ ନାହିଁ । ଏହାଦ୍ୱାରା ଯାହା ପ୍ରମାଣିତ ହୁଏ :**

ଠାକୁରଙ୍କର ଜୀବନ ଆଲୋଚନା କଲେ ଦେଖିବାକୁ ମିଳେ, ଆମେ ଯାହାକୁ 'ନିରକ୍ଷର' କହୁ, ଠାକୁର ପ୍ରାୟ ପୂର୍ଣ୍ଣମାତ୍ରାରେ ସେହି ଅବସ୍ଥାପନ୍ନ ହେଲେ

---

୧. ମନରେ ଗୋଟିଏ ଭାବ ରଖି ମୁହଁରେ ଗୋଟିଏ ଭାବ ପ୍ରକାଶକୁ ଭାବଘରେ ଚୋରି କୁହାଯାଏ ।

ମଧ୍ୟ କିପରି ଭାବରେ ଆଜୀବନ ଶାସ୍ତ୍ର ମର୍ଯ୍ୟାଦା ରକ୍ଷା କରି ଚଳି ଆସିଛନ୍ତି । ଗୁରୁଗ୍ରହଣ କରିବା ପୂର୍ବରୁ କେବଳ ନିଜ ହୃଦୟର ପ୍ରେରଣାରେ ସେ ଯେଉଁ ସମସ୍ତ ସାଧନାନୁଷ୍ଠାନରେ ରତ ହୋଇଥିଲେ, ସେଗୁଡ଼ିକ କେବେ ହେଲେ ଶାସ୍ତ୍ରବିରୋଧୀ ନ ହୋଇ ଏହାର ଅନୁଗାମୀ ହୋଇଥିଲା । 'ଭାବ ଘରେ ଚୋରି' ନ ରଖି ଶୁଦ୍ଧ ପବିତ୍ର ହୃଦୟରେ ଈଶ୍ୱରଲାଭ ନିମିତ୍ତ ବ୍ୟାକୁଳ ହେଲେ ଏପରି ହୋଇଥାଏ, ଏକଥାର ପରିଚୟ ଏଥିରୁ ସ୍ପଷ୍ଟ ମିଳେ । ଘଟଣାଗୁଡ଼ିକ ସେହିପରି ହେବା ବିଚିତ୍ର ନୁହେଁ; କାରଣ ଶାସ୍ତ୍ରସମୂହ ଏହି ଭାବରେ ହିଁ ଯେ ପ୍ରଣୀତ ହୋଇଅଛି, ଏକଥା ସାମାନ୍ୟ ଚିନ୍ତା କଲେ ବୁଝି ହୁଏ । କାରଣ ମହାପୁରୁଷମାନଙ୍କର ସତ୍ୟଲାଭର ଚେଷ୍ଟା ଓ ଉପଲବ୍ଧିଗୁଡ଼ିକ ଲିପିବଦ୍ଧ ହୋଇ ପରେ 'ଶାସ୍ତ୍ର' ଆଖ୍ୟା ପ୍ରାପ୍ତ ହୋଇଅଛି । ସେ ଯାହାହେଉ, ନିରକ୍ଷର ଠାକୁରଙ୍କର ଶାସ୍ତ୍ରନିର୍ଦ୍ଦିଷ୍ଟ ଉପଲବ୍ଧିଗୁଡ଼ିକର ଯଥାଯଥ ଅନୁଭୂତି ହେବାରୁ ଶାସ୍ତ୍ରସମୂହର ସତ୍ୟତା ବିଶେଷଭାବରେ ପ୍ରମାଣିତ ହୋଇଅଛି । ସ୍ୱାମୀ ବିବେକାନନ୍ଦ ଏକଥାରେ କହିଛନ୍ତି—ଶାସ୍ତ୍ରସମୂହର ସତ୍ୟତା ପ୍ରମାଣିତ କରିବା ପାଇଁ ହିଁ ଠାକୁର ଏଥର ନିରକ୍ଷର ହୋଇ ଆସିଛନ୍ତି ।

### ଠାକୁରଙ୍କର ସ୍ୱଭାବତଃ ଶାସ୍ତ୍ରମର୍ଯ୍ୟାଦା ରକ୍ଷା କରିବାର ଦୃଷ୍ଟାନ୍ତ— ସାଧନା ସମୟରେ ନାନାପ୍ରକାରର ଭେକ ଓ ବେଶ ଗ୍ରହଣ :

ଶାସ୍ତ୍ରମର୍ଯ୍ୟାଦା ସ୍ୱଭାବତଃ ରକ୍ଷା କରିବାର ଦୃଷ୍ଟାନ୍ତସ୍ୱରୂପ ଆମେ ଏଠାରେ ବିଶେଷ ବିଶେଷ ଭାବର ପ୍ରେରଣାରେ ଠାକୁରଙ୍କର ନାନାପ୍ରକାର ବେଶ ଧାରଣର ବିଷୟ ଉଲ୍ଲେଖ କରିବୁ । ଉପନିଷଦ୍‌ରେ ଋଷିମାନେ କହିଛନ୍ତି— 'ତପସୋ ବାପ୍ୟଲିଙ୍ଗାତ୍'[୧] ସିଦ୍ଧ ପ୍ରାପ୍ତ କରିବା ସମ୍ଭବ ନୁହେଁ । ଠାକୁରଙ୍କ ଜୀବନରେ ଦେଖିବାକୁ ମିଳେ, ସେ ଯେତେବେଳେ ଯେଉଁ ଭାବସାଧନାରେ ନିଯୁକ୍ତ ରହୁଥିଲେ, ସେତେବେଳେ ହୃଦୟର ପ୍ରେରଣାରେ ପ୍ରଥମରୁ ହିଁ ସେହି ଭାବାନୁକୂଳ ବେଶଭୂଷା ବା ବାହ୍ୟ ଚିହ୍ନଗୁଡ଼ିକ ଧାରଣ କରୁଥିଲେ । ଯଥା, ତନ୍ତ୍ରୋକ୍ତ ମାତୃଭାବରେ ସିଦ୍ଧିଲାଭ ନିମିତ୍ତ ସେ ରକ୍ତବସ୍ତ୍ର, ବିଭୂତି, ସିନ୍ଦୁର ଓ ରୁଦ୍ରାକ୍ଷ ଧାରଣ କରିଥିଲେ; ବୈଷ୍ଣବତନ୍ତ୍ରୋକ୍ତ ଭାବସମୂହର ସାଧନା ସମୟରେ ଗୁରୁ-ପରମ୍ପରାପ୍ରସିଦ୍ଧ ଭେକ ବା ତଦନୁକୂଳ ବେଶ ଗ୍ରହଣ କରି ଶ୍ୱେତବସ୍ତ୍ର, ଶ୍ୱେତଚନ୍ଦନ, ତୁଳସୀ-ମାଳାରେ ନିଜ ଅଙ୍ଗ ଭୂଷିତ କରିଥିଲେ । ବେଦାନ୍ତୋକ୍ତ ଅଦ୍ୱୈତଭାବରେ ସିଦ୍ଧିଲାଭ ପାଇଁ ଶିଖାସୂତ୍ର ପରିତ୍ୟାଗପୂର୍ବକ କାଷାୟବସ୍ତ୍ର ଧାରଣ କରିଥିଲେ । ପୁଣି ପୁରୁଷ-ଭାବସମୂହର ସାଧନସମୟରେ ସେ ଯେପରି ବିବିଧ ପୁରୁଷବେଶ ଧାରଣ କରିଥିଲେ, ସେହିପରି ସ୍ତ୍ରୀଜନୋଚିତ ଭାବସମୂହର ସାଧନକାଳରେ ରମଣୀର ବେଶଭୂଷାରେ ନିଜକୁ ସଜ୍ଜିତ କରିବାକୁ କୁଣ୍ଠିତ ହୋଇ ନାହାନ୍ତି । ଠାକୁର

---

୧. ମୁଣ୍ଡକୋପନିଷଦ୍, ୩/୨/୪—ସନ୍ନ୍ୟାସର ଲିଙ୍ଗ ବା ଚିହ୍ନ (ଯଥା, ଗୈରିକାଦି) ଧାରଣ ନ କରି କେବଳ ତପସ୍ୟା ଦ୍ୱାରା ଆତ୍ମଦର୍ଶନ ହୁଏ ନାହିଁ ।

ଆମମାନଙ୍କୁ ବାରମ୍ବାର ଶିକ୍ଷା ଦେଇଛନ୍ତି—ଲଜ୍ଜା, ଘୃଣା, ଭୟ ଓ ଜନ୍ମଗତ ଜାତି-କୁଳ-ଶୀଳାଦି ଅଷ୍ଟପାଶ ତ୍ୟାଗ ନ କଲେ କେହି କେବେ ଈଶ୍ୱର ଲାଭ କରିପାରିବ ନାହିଁ । ଏହି ଶିକ୍ଷା ସେ ସ୍ୱୟଂ ଆଜୀବନ କାୟମନୋବାକ୍ୟରେ କେତେଦୂର ପାଳନ କରିଥିଲେ, ତାହା ତାଙ୍କର ସାଧନା ସମୟରେ ବିବିଧ ବେଶଧାରଣାଦିରୁ ଆରମ୍ଭ କରି ପ୍ରତି କାର୍ଯ୍ୟକଳାପର ଅନୁଶୀଳନରୁ ସ୍ପଷ୍ଟ ବୁଝି ହୁଏ ।

## ମଧୁରଭାବ-ସାଧନାରେ ପ୍ରବୃତ୍ତ ଠାକୁରଙ୍କର ସ୍ତ୍ରୀବେଶ ଗ୍ରହଣ :

ମଧୁରଭାବ-ସାଧନାରେ ପ୍ରବୃତ୍ତ ହୋଇ ଠାକୁର ସ୍ତ୍ରୀଜନୋଚିତ ବେଶଭୂଷା ଧାରଣ କରିବା ପାଇଁ ବ୍ୟସ୍ତ ହୋଇ ପଡ଼ିଥିଲେ ଏବଂ ପରମଭକ୍ତ ମଥୁରମୋହନ ତାଙ୍କର ଏପରି ଇଚ୍ଛା ଜାଣିପାରି କେତେବେଳେ ବହୁମୂଲ୍ୟ ବନାରସୀ ଶାଢ଼ୀ ଏବଂ କେତେବେଳେ ଘାଗରା, ଓଢ଼ଣୀ, ଚୋଲି ପ୍ରଭୃତି ଦ୍ୱାରା ତାଙ୍କୁ ସଜ୍ଜିତ କରି ସୁଖୀ ହୋଇଥିଲେ । ଆହୁରି ମଧ 'ବାବା'ଙ୍କ (ଠାକୁରଙ୍କ) ରମଣୀବେଶ ସର୍ବାଙ୍ଗସମ୍ପୂର୍ଣ୍ଣ କରିବା ପାଇଁ ଶ୍ରୀଯୁକ୍ତ ମଥୁର ଲମ୍ବା ବେଣୀ ଥିବା ଗୋଟିଏ କେଶ-ଟୋପୀ ଏବଂ ଗୋଟିଏ ସେଟ୍ ସ୍ୱର୍ଣ୍ଣ ଅଳଙ୍କାରରେ ମଧ ତାଙ୍କୁ ଭୂଷିତ କରିଥିଲେ । ଆମେ ବିଶେଷ ସୂତ୍ରରୁ ଶୁଣିଛୁ, ଭକ୍ତିମାନ ମଥୁରଙ୍କର ଏପ୍ରକାର ଦାନ ଠାକୁରଙ୍କ କଠୋର ତ୍ୟାଗରେ କଳଙ୍କାର୍ପଣ କରିବାକୁ ଦୁଷ୍ଟଚିତ୍ତମାନଙ୍କୁ ସୁଯୋଗ ଦେଇଥିଲା; କିନ୍ତୁ ଠାକୁର ଏବଂ ମଥୁରମୋହନ ସେସବୁ କଥାରେ ଆଦୌ ଦୃଷ୍ଟି ନ ଦେଇ ନିଜ ଲକ୍ଷ୍ୟରେ ଅଗ୍ରସର ହୋଇଥିଲେ । ମଥୁରମୋହନ 'ବାବା'ଙ୍କର ତୁଷ୍ଟି ନିମନ୍ତେ ଏସବୁ କରୁଥିଲେ ଏବଂ ବାବା ଯେ ଏସମସ୍ତ ନିରର୍ଥକ କରୁ ନାହାନ୍ତି—ଏହି ବିଶ୍ୱାସରେ ପରମ ସୁଖୀ ହୋଇଥିଲେ । ଠାକୁର ଏପରି ବେଶଭୂଷାରେ ସଜ୍ଜିତ ହୋଇ ଶ୍ରୀହରିଙ୍କର ପ୍ରେମଲୋଲୁପା ବ୍ରଜରମଣୀ ଭାବରେ କ୍ରମେ ଏତେଦୂର ମଗ୍ନ ହୋଇଥିଲେ ଯେ, ତାଙ୍କର ପୁରୁଷବୋଧ ସମ୍ପୂର୍ଣ୍ଣ ଅନ୍ତର୍ହିତ ହୋଇ ପ୍ରତିଟି ଚିନ୍ତା ଓ ବାକ୍ୟ ରମଣୀ ସଦୃଶ ହୋଇଯାଇଥିଲା । ଠାକୁରଙ୍କ ନିକଟରୁ ଶୁଣିଛୁ, ମଧୁରଭାବ-ସାଧନା ସମୟରେ ସେ ଛଅମାସକାଳ ରମଣୀବେଶ ଧାରଣପୂର୍ବକ ଅବସ୍ଥାନ କରିଥିଲେ ।

## ସ୍ତ୍ରୀବେଶ ଗ୍ରହଣରେ ଠାକୁରଙ୍କର ପ୍ରତ୍ୟେକ ଆଚରଣ ସ୍ତ୍ରୀଜାତି ସଦୃଶ ହେବା :

ଠାକୁରଙ୍କ ଭିତରେ ସ୍ତ୍ରୀ ଓ ପୁରୁଷ—ଉଭୟ ଭାବର ବିଚିତ୍ର ସମାବେଶ କଥା ଆମେ ଅନ୍ୟତ୍ର କହିଅଛୁ । ଅତଏବ ସ୍ତ୍ରୀବେଶର ଉଦ୍ଦୀପନାରେ ତାଙ୍କ ମନରେ ଯେ ଏବେ ରମଣୀଭାବର ଉଦୟ ହେବ, ଏହା ବିଚିତ୍ର ନୁହେଁ । କିନ୍ତୁ ଏହିଭାବର ପ୍ରେରଣାରେ ତାଙ୍କର ଚାଲିଚଳନ, କଥାବାର୍ତ୍ତା, ହାସ୍ୟ, କଟାକ୍ଷ, ଅଙ୍ଗଭଙ୍ଗୀ ଏବଂ ଶରୀର ଓ ମନର ପ୍ରତ୍ୟେକ ଚେଷ୍ଟା ଯେ ସମ୍ପୂର୍ଣ୍ଣ ଲଳନା-ସୁଲଭ ହୋଇଉଠିବ,

ଏହା କେହି କେବେ କଳ୍ପନା କରି ନାହିଁ । କିନ୍ତୁ ଏପରି ଅସମ୍ଭବ କଥା ଯେ ବାସ୍ତବରେ ହୋଇଥିଲା, ଏକଥା ଆମେ ଠାକୁର ଓ ହୃଦୟ ଉଭୟଙ୍କ ନିକଟରୁ ଅନେକଥର ଶୁଣିଛୁ । ଦକ୍ଷିଣେଶ୍ୱର ଯିବା ଆସିବା ବେଳେ ଆମେ ଅନେକଥର ତାଙ୍କୁ ରଙ୍ଗଛଳରେ ସ୍ତ୍ରୀଚରିତ୍ରର ଅଭିନୟ କରିବାର ଦେଖିଛୁ । ସେତେବେଳେ ତାହା ଏତେଦୂର ସର୍ବାଙ୍ଗସମ୍ପୂର୍ଣ୍ଣ ହେଉଥିଲା ଯେ, ସ୍ତ୍ରୀଲୋକମାନେ ମଧ୍ୟ ଏହା ଦେଖି ଆଶ୍ଚର୍ଯ୍ୟବୋଧ କରୁଥିଲେ ।

### ମଥୁରଙ୍କ ଘରେ ସ୍ତ୍ରୀଲୋକମାନଙ୍କ ସହିତ ଠାକୁରଙ୍କର ସଖୀଭାବରେ ଆଚରଣ :

ଠାକୁର ଏହି ସମୟରେ ବେଳେବେଳେ ରାଣୀ ରାସମଣିଙ୍କର ଜାନବଜାର ସ୍ଥିତ ଘରକୁ ଯାଇ ଶ୍ରୀଯୁକ୍ତ ମଥୁରମୋହନଙ୍କର ପୁରାଙ୍ଗନାମାନଙ୍କ ସହିତ ବାସ କରିଥିଲେ । ଅନ୍ତଃପୁରବାସିନୀମାନେ ତାଙ୍କର କାମଗନ୍ଧହୀନ ଚରିତ୍ର ସହିତ ପରିଚିତ ଥାଇ ତାଙ୍କୁ ଦେବତା ସଦୃଶ ଜ୍ଞାନ କରୁଥିଲେ । ଏବେ ତାଙ୍କର ସ୍ତ୍ରୀ-ସୁଲଭ ଆଚାର-ବ୍ୟବହାରରେ ଏବଂ ଅକୃତ୍ରିମ ସ୍ନେହ ଏବଂ ପରିଚର୍ଯ୍ୟାରେ ମୁଗ୍ଧ ହୋଇ ତାଙ୍କୁ ସେମାନେ ସେମାନଙ୍କ ମଧ୍ୟରୁ ଜଣେ ବୋଲି ଏତେଦୂର ସ୍ଥିର ନିଶ୍ଚୟ ହୋଇଯାଇଥିଲେ ଯେ, ତାଙ୍କ ପାଖରେ ଲଜ୍ଜାସଙ୍କୋଚଆଦିଭାବ ରଖି ପାରି ନ ଥିଲେ ।[୧] ଠାକୁରଙ୍କର ଶ୍ରୀମୁଖରୁ ଶୁଣିଛୁ, ଶ୍ରୀଯୁକ୍ତ ମଥୁରଙ୍କର କନ୍ୟାଗଣଙ୍କ ମଧ୍ୟରେ କାହାର ସ୍ୱାମୀ ଯଦି ଜାନବଜାର ଘରେ ଉପସ୍ଥିତ ରହୁଥିଲେ, ଠାକୁର ଏହି କନ୍ୟାର କେଶବିନ୍ୟାସ ଓ ବେଶଭୂଷାଦି ନିଜହସ୍ତରେ ସମ୍ପାଦନ କରୁଥିଲେ ଏବଂ ସ୍ୱାମୀଙ୍କର ମନୋରଞ୍ଜନର ନାନା ଉପାୟ ତାକୁ ଶିଖାଇ ସଖୀ ସଦୃଶ ତାହାର ହାତ ଧରି କରି ସ୍ୱାମୀଙ୍କ ନିକଟରେ ଛାଡ଼ି ଆସୁଥିଲେ । ସେ କହୁଥିଲେ, "ସେମାନେ ସେତେବେଳେ ମୋତେ ସେମାନଙ୍କର ସଖୀ ବୋଲି ବୋଧ କରି କୌଣସି ମତେ ସଙ୍କୁଚିତ ହେଉ ନ ଥିଲେ !"

### ରମଣୀବେଶରେ ଥିବାବେଳେ ଠାକୁରଙ୍କୁ ପୁରୁଷ ବୋଲି ଚିହ୍ନିବା ଦୁଃସାଧ୍ୟ ହେଉଥିଲା :

ହୃଦୟ କହୁଥିଲେ—"ଏପରି ରମଣୀଗଣ ପରିବୃତା ହୋଇ ରହିବା ସମୟରେ ଠାକୁରଙ୍କୁ ହଠାତ୍ ଚିହ୍ନିବା ତାଙ୍କର ନିତ୍ୟପରିଚିତ ଆତ୍ମୀୟମାନଙ୍କ ପକ୍ଷରେ ମଧ୍ୟ ଅସମ୍ଭବ ହେଉଥିଲା । ମଥୁରବାବୁ ଏହି ସମୟରେ ଥରେ ମୋତେ ଅନ୍ତଃପୁରମଧ୍ୟକୁ ନେଇ ପଚାରିଥିଲେ, 'କହତ ଏମାନଙ୍କ ମଧ୍ୟରେ ତୁମର ମାମୁଁ କିଏ ?' ଏତେଦିନ ଏକ ସଙ୍ଗେ ରହି ଦିନରାତି ତାଙ୍କର ସେବା କରି ମଧ୍ୟ ସେତେବେଳେ ମୁଁ ତାଙ୍କୁ ସହସା ଚିହ୍ନିପାରି ନ ଥିଲି ! ଦକ୍ଷିଣେଶ୍ୱରରେ

---

୧. ଗୁରୁଭାବ—ପୂର୍ବାର୍ଦ୍ଧ, ସପ୍ତମ ଅଧ୍ୟାୟ ଦ୍ରଷ୍ଟବ୍ୟ ।

ଥିବାବେଳେ ମାମୁଁ ପ୍ରତିଦିନ ପ୍ରତ୍ୟୁଷରୁ ଫୁଲ ଚାଙ୍ଗୁଡ଼ି ହାତରେ ନେଇ ଫୁଲ ତୋଳିବା ପାଇଁ ବଗିଚାକୁ ଯାଉଥିବା ବେଳେ ଆମେ ବିଶେଷ ଭାବରେ ଲକ୍ଷ୍ୟ କରିଛୁ, ଚାଲିବା ସମୟରେ ସ୍ତ୍ରୀଲୋକ ସଦୃଶ ତାଙ୍କର ବାମ ପାଦ ପ୍ରତିଥର ସ୍ୱତଃ ଆଗକୁ ପଡୁଛି । ବ୍ରାହ୍ମଣୀ କହୁଥିଲେ—'ତାଙ୍କର ଏପରି ଫୁଲ ତୋଳିବା ବେଳେ ତାଙ୍କୁ ଦେଖି ମୋର ବେଳେବେଳେ ସାକ୍ଷାତ୍ ଶ୍ରୀମତୀ ରାଧାରାଣୀ ବୋଲି ଭ୍ରମ ହୋଇଅଛି ।' ଫୁଲ ତୋଳି ବିଚିତ୍ର ମାଳ ଗୁନ୍ଥି ସେ ଏହି ସମୟରେ ପ୍ରତିଦିନ ଶ୍ରୀଶ୍ରୀରାଧାଗୋବିନ୍ଦଜୀଉଙ୍କୁ ସଜ୍ଜିତ କରୁଥିଲେ ଏବଂ ବେଳେବେଳେ ଶ୍ରୀଶ୍ରୀଜଗଦମ୍ବାଙ୍କୁ ଏପରି ସଜାଇ କାତ୍ୟାୟନୀଙ୍କ ନିକଟରେ ବ୍ରଜଗୋପିକାମାନଙ୍କ ପରି ଶ୍ରୀକୃଷ୍ଣଙ୍କୁ ସ୍ୱାମୀରୂପରେ ପାଇବା ନିମିତ୍ତ ସକରୁଣ ପ୍ରାର୍ଥନା କରୁଥିଲେ ।''

### ମଧୁରଭାବ ସାଧନାରେ ନିଯୁକ୍ତ ଠାକୁରଙ୍କର ଆଚରଣ ଏବଂ ଶାରୀରିକ ବିକାରସମୂହ :

ଏପରି ଶ୍ରୀଶ୍ରୀଜଗଦମ୍ବାଙ୍କର ସେବା-ପୂଜାଦି ସମ୍ପାଦନପୂର୍ବକ ଶ୍ରୀକୃଷ୍ଣଙ୍କର ଦର୍ଶନ ଏବଂ ତାଙ୍କୁ ନିଜର ପତିରୂପରେ ପ୍ରାପ୍ତ ହେବାର ମାନସରେ ଠାକୁର ଏତିକି ବେଳେ ଅନନ୍ୟଚିତ୍ତରେ ଶ୍ରୀଶ୍ରୀଯୁଗଳପାଦପଦ୍ମସେବାରେ ରତ ହୋଇଥିଲେ, ଏବଂ ସାଗ୍ରହ ପ୍ରାର୍ଥନା ଓ ପ୍ରତୀକ୍ଷାରେ ଦିନ ପରେ ଦିନ ଅତିବାହିତ କରିଥିଲେ । ଦିନ କିମ୍ବା ରାତି, କୌଣସି ସମୟରେ ତାଙ୍କର ହୃଦୟର ସେହି ଆକୁଳ ପ୍ରାର୍ଥନାର ବିରାମ ହେଉ ନ ଥିଲା ଏବଂ ଦିନ, ପକ୍ଷ, ମାସାନ୍ତରରେ ମଧ ଅବିଶ୍ୱାସପ୍ରସୂତ ନୈରାଶ୍ୟ ଆସି ତାଙ୍କ ହୃଦୟକୁ ଉକ୍ତ ପ୍ରତୀକ୍ଷାରୁ ବିଚଳିତ କରିପାରି ନ ଥିଲା । କ୍ରମେ କ୍ରମେ ଉକ୍ତ ପ୍ରାର୍ଥନା ଆକୁଳ କ୍ରନ୍ଦନରେ ଏବଂ ଉକ୍ତ ପ୍ରତୀକ୍ଷା ଉନ୍ମତ୍ତସଦୃଶ ଉତ୍କଣ୍ଠା ଓ ଚଞ୍ଚଳତାରେ ପରିଣତ ହୋଇ ତାଙ୍କର ଆହାର ନିଦ୍ରାର ଲୋପସାଧନ କରିଥିଲା । ପୁଣି ବିରହ ବିଷୟରେ କ'ଣ କୁହାଯିବ ?—ଏକାନ୍ତ ପ୍ରିୟଜନ ସହିତ ସର୍ବଦା ସର୍ବତୋଭାବରେ ସମ୍ମିଳିତ ହେବାର ଅସୀମ ଲାଳସା ନାନା ବାଧାବିଘ୍ନରେ ପ୍ରତିରୁଦ୍ଧ ହେଲେ ମାନବର ହୃଦୟ ଓ ମନକୁ ମଥିତ କରି ଶରୀର ଓ ଇନ୍ଦ୍ରିୟକୁ ବିକଳ କଲା ଭଳି ଯେଉଁ ଅବସ୍ଥା ଆନୟନ କରେ, ସେହି ବିରହ ଠାକୁରଙ୍କଠାରେ ଉପସ୍ଥିତ ହୋଇଥିଲା । ତାହା ତାଙ୍କଠାରେ ଅଶେଷ ଯନ୍ତ୍ରଣାର କାରଣସ୍ୱରୂପ କେବଳ ମାନସିକ ବିକାରରୂପରେ ପ୍ରକାଶିତ ହୋଇ ଉପଶାନ୍ତ ହୋଇ ନ ଥିଲା, କିନ୍ତୁ ସାଧନକାଳର ପୂର୍ବାବସ୍ଥାରେ ଅନୁଭୂତ ପ୍ରଚଣ୍ଡ ଶାରୀରିକ ଉତ୍ତାପ ଓ ଜ୍ୱାଳାରୂପରେ ପୁନରାୟ ଆବିର୍ଭୂତ ହୋଇଥିଲା । ଠାକୁରଙ୍କ ଶ୍ରୀମୁଖରୁ ଶୁଣିଛି—ଶ୍ରୀକୃଷ୍ଣ ବିରହର ପ୍ରବଳ ପ୍ରଭାବରେ ଏସମୟରେ ତାଙ୍କର ଶରୀରର ଲୋମକୂପ ଦେଇ ସମୟ ସମୟରେ ବିନ୍ଦୁ ବିନ୍ଦୁ ରକ୍ତ ନିର୍ଗତ ହେଉଥିଲା, ଦେହର ଗ୍ରନ୍ଥିଗୁଡ଼ିକ ଭଗ୍ନପ୍ରାୟ ଶିଥିଳ ହୋଇଯାଉଥିଲା ଏବଂ ହୃଦୟର ଅସୀମ ଯନ୍ତ୍ରଣାରେ

ଇନ୍ଦ୍ରିୟଗୁଡ଼ିକ ନିଜର କାର୍ଯ୍ୟରୁ ବିରତ ହେବାରୁ ଶରୀର ବେଳେ ବେଳେ ମୃତବତ୍ ନିଶ୍ଚେଷ୍ଟ ଓ ସଂଜ୍ଞାଶୂନ୍ୟ ହୋଇ ପଡ଼ି ରହୁଥିଲା ।

**ଠାକୁରଙ୍କର ଅତୀନ୍ଦ୍ରିୟ ପ୍ରେମ ସହିତ ଆମର ଉକ୍ତବିଷୟରେ ଧାରଣାର ତୁଳନା :**

ଦେହ ସହିତ ନିତ୍ୟସମ୍ବନ୍ଧ ଥିବା ଆମମାନଙ୍କ ପରି ମନୁଷ୍ୟ ପ୍ରେମ କହିଲେ ଗୋଟିଏ ଶରୀର ପ୍ରତି ଅନ୍ୟ ଶରୀରର ଆକର୍ଷଣକୁ ବୁଝୁ କିମ୍ବା ବହୁ ଚେଷ୍ଟା ଫଳରେ ସ୍ଥୂଳ ଦେହବୁଦ୍ଧିରୁ ସାମାନ୍ୟ ଉର୍ଦ୍ଧ୍ବକୁ ଉଠି ଯଦି ଏହାକୁ ଶରୀରର ଆଶ୍ରୟରେ ପ୍ରକାଶିତ ଗୁଣସମଷ୍ଟି ପ୍ରତି ଆକର୍ଷଣ ବୋଲି ଅନୁଭବ କରୁ, ତେବେ ତାହାକୁ 'ଅତୀନ୍ଦ୍ରିୟ ପ୍ରେମ' ବୋଲି ଆଖ୍ୟା ପ୍ରଦାନ କରି ତାହାର ଯଶଗାନ କରିଥାଉ । ମାତ୍ର କବିକୁଳବନ୍ଦିତ ଆମମାନଙ୍କର ଏହି ଅତୀନ୍ଦ୍ରିୟ ପ୍ରେମ ଯେ ସ୍ଥୂଳ ଦେହବୁଦ୍ଧି ଏବଂ ସୂକ୍ଷ୍ମ ଭୋଗଲାଳସା ପରିଶୂନ୍ୟ ନୁହେଁ, ଏହା ବୁଝିବାରେ ବିଳମ୍ବ ହୋଇ ନ ଥାଏ । ଠାକୁରଙ୍କ ଜୀବନରେ ପ୍ରକାଶିତ ଯଥାର୍ଥ ଅତୀନ୍ଦ୍ରିୟ ପ୍ରେମର ତୁଳନାରେ ଏହା ଅତ୍ୟନ୍ତ ତୁଚ୍ଛ, ହେୟ ଏବଂ ଅନ୍ତଃସାରଶୂନ୍ୟ ବୋଲି ପ୍ରତୀୟମାନ ହୁଏ !

**ଶ୍ରୀମତୀଙ୍କର ଅତୀନ୍ଦ୍ରିୟ ପ୍ରେମ ସମ୍ବନ୍ଧରେ ଭକ୍ତିଶାସ୍ତ୍ରର କଥା :**

ଭକ୍ତିଗ୍ରନ୍ଥମାନଙ୍କରେ ଲିଖିତ ଅଛି, ବ୍ରଜେଶ୍ୱରୀ ଶ୍ରୀମତୀ ରାଧାରାଣୀ ହିଁ କେବଳ ଯଥାର୍ଥ ଅତୀନ୍ଦ୍ରିୟ ପ୍ରେମର ପରାକାଷ୍ଠା ଜୀବନରେ ପ୍ରତ୍ୟକ୍ଷପୂର୍ବକ ଏହାର ପୂର୍ଣ୍ଣ ଆଦର୍ଶ ଜଗତରେ ରଖିଯାଇଛନ୍ତି । ଲଜ୍ଜା-ଘୃଣା-ଭୟ ତ୍ୟାଗ କରି, ଲୋକଭୟ, ସମାଜଭୟ ପରିତ୍ୟାଗ କରି, ଜାତି-କୁଳ-ଶୀଳ-ପଦମର୍ଯ୍ୟାଦା ଏବଂ ନିଜର ଦେହମନର ଭୋଗସୁଖର କଥା ସମ୍ପୂର୍ଣ୍ଣରୂପରେ ବିସ୍ମୃତ ହୋଇ ଭଗବାନ ଶ୍ରୀକୃଷ୍ଣଙ୍କ ସୁଖରେ ନିଜକୁ ସୁଖୀ ଅନୁଭବ କରୁଥିବା ତାଙ୍କ ସଦୃଶ ଦ୍ୱିତୀୟ ଦୃଷ୍ଟାନ୍ତ ଭକ୍ତିଶାସ୍ତ୍ରରେ ମିଳେ ନାହିଁ । ସେଥିପାଇଁ ଶାସ୍ତ୍ର କହନ୍ତି, ଶ୍ରୀମତୀ ରାଧାରାଣୀଙ୍କର କୃପାକଟାକ୍ଷ ବ୍ୟତୀତ ଭଗବାନ ଶ୍ରୀକୃଷ୍ଣଙ୍କର ଦର୍ଶନଲାଭ ଜଗତରେ କେବେହେଲେ ସମ୍ଭବପର ନୁହେଁ, କାରଣ ସଚ୍ଚିଦାନନ୍ଦଘନବିଗ୍ରହ ଭଗବାନ ଶ୍ରୀକୃଷ୍ଣ ଶ୍ରୀମତୀଙ୍କ ପ୍ରେମରେ ଚିରକାଳ ସର୍ବତୋଭାବରେ ଆବଦ୍ଧରହି ତାଙ୍କର ଇଙ୍ଗିତରେ ଭକ୍ତମାନଙ୍କର ମନର ଅଭିଳାଷ ପୂର୍ଣ୍ଣ କରୁଛନ୍ତି । ଶ୍ରୀମତୀଙ୍କର କାମଗନ୍ଧହୀନ ପ୍ରେମର ଅନୁରୂପ ବା ତଜ୍ଜାତୀୟ ପ୍ରେମଲାଭ ନ ହେଲେ କେହି କେବେ ଈଶ୍ୱରଙ୍କୁ ପତି ଭାବରେ ଲାଭ କରିବାକୁ ଏବଂ ମଧୁରଭାବର ପୂର୍ଣ୍ଣ ମାଧୁର୍ଯ୍ୟ ଉପଲବ୍ଧି କରିପାରିବ ନାହିଁ, ଭକ୍ତିଶାସ୍ତ୍ରର ପୂର୍ବୋକ୍ତ କଥାର ଏହା ହିଁ ଅଭିପ୍ରାୟ, ଏକଥା ବୁଝିହୁଏ ।

## ଶ୍ରୀମତୀଙ୍କର ଅତୀନ୍ଦ୍ରିୟ ପ୍ରେମର କଥା ବୁଝାଇବା ପାଇଁ ଶ୍ରୀଗୌରାଙ୍ଗଦେବଙ୍କର ଆଗମନ :

ବ୍ରଜେଶ୍ୱରୀ ଶ୍ରୀମତୀ ରାଧାରାଣୀଙ୍କର ପ୍ରେମର ଦିବ୍ୟ ମହିମା, ମାୟାରହିତବିଗ୍ରହ ପରମହଂସାଗ୍ରଣୀ ଶ୍ରୀଶୁକଦେବପ୍ରମୁଖ ଆତ୍ମାରାମ ମୁନିମାନଙ୍କ ଦ୍ୱାରା ବହୁଳ ଭାବରେ ବର୍ଣ୍ଣିତ ହୋଇଥିଲେ ମଧ, ଭାରତର ଜନସାଧାରଣ ଏହା କିପରି ଜୀବନରେ ଉପଲବ୍ଧି କରିବାକୁ ହେବ, ତାହା ବହୁକାଳ ପର୍ଯ୍ୟନ୍ତ ବୁଝିପାରି ନ ଥିଲେ । ଗୌଡ଼ୀୟ ଗୋସ୍ୱାମୀପାଦଗଣ କହନ୍ତି, ଏକଥା ବୁଝାଇବା ପାଇଁ ଶ୍ରୀଭଗବାନଙ୍କୁ ଶ୍ରୀମତୀଙ୍କ ସହିତ ମିଳିତ ହୋଇ ଏକାଧାରରେ ବା ଏକଶରୀର ଅବଲମ୍ବନରେ ପୁନରାୟ ଅବତୀର୍ଣ୍ଣ ହେବାକୁ ପଡ଼ିଥିଲା । ଅନ୍ତଃକୃଷ୍ଣ ବହିର୍ଗୌର ରୂପରେ ପ୍ରକାଶିତ ଶ୍ରୀଗୌରାଙ୍ଗଦେବ ହିଁ ମଧୁର ଭାବର ପ୍ରେମାଦର୍ଶ ପ୍ରତିଷ୍ଠା କରିବାକୁ ଆବିର୍ଭୂତ ଶ୍ରୀଭଗବାନଙ୍କର ସେହି ଅପୂର୍ବ ବିଗ୍ରହ । ଶ୍ରୀକୃଷ୍ଣପ୍ରେମରେ ରାଧାରାଣୀଙ୍କର ଶରୀର ମନରେ ଯେଉଁ ସମସ୍ତ ଲକ୍ଷଣ ପ୍ରକାଶିତ ହେଉଥିଲା, ପୁରୁଷ ଶରୀରଧାରୀ ହେଲେ ମଧ ଶ୍ରୀଗୌରାଙ୍ଗଦେବଙ୍କର ସେହି ସମସ୍ତ ଲକ୍ଷଣ ଈଶ୍ୱର ପ୍ରେମର ପ୍ରାବଲ୍ୟରେ ଆବିର୍ଭୂତ ହେବା ଦେଖି ଗୋସ୍ୱାମୀଗଣ ତାଙ୍କୁ ଶ୍ରୀମତୀ ବୋଲି କହିଥିଲେ । ତେଣୁ ଶ୍ରୀଗୌରାଙ୍ଗଦେବ ଯେ ଅତୀନ୍ଦ୍ରିୟ ପ୍ରେମାଦର୍ଶର ଦ୍ୱିତୀୟ ଦୃଷ୍ଟାନ୍ତସ୍ୱରୂପ, ଏକଥା ବୁଝାଯାଏ ।

## ଠାକୁରଙ୍କର ଶ୍ରୀମତୀ ରାଧିକାଙ୍କର ଉପାସନା ଓ ଦର୍ଶନଲାଭ :

ଶ୍ରୀମତୀ ରାଧାରାଣୀଙ୍କର କୃପା ବ୍ୟତୀତ ଶ୍ରୀକୃଷ୍ଣଦର୍ଶନ ଅସମ୍ଭବ ଜାଣି ଠାକୁର ଏବେ ତଦ୍‌ଗତ ଚିତ୍ତରେ ତାଙ୍କର ଉପାସନାରେ ପ୍ରବୃତ୍ତ ହୋଇଥିଲେ ଏବଂ ତାଙ୍କର ପ୍ରେମଘନମୂର୍ତ୍ତି ସ୍ମରଣ, ମନନ ଓ ଧ୍ୟାନରେ ନିରନ୍ତର ମଗ୍ନ ରହି ତାଙ୍କର ଶ୍ରୀପାଦପଦ୍ମରେ ହୃଦୟର ଆକୁଳ ଆବେଗ ଅବିରାମ ନିବେଦନ କରିଥିଲେ । ଫଳରେ, ଅତିଶୀଘ୍ର ହିଁ ସେ ଶ୍ରୀମତୀ ରାଧାରାଣୀଙ୍କର ଦର୍ଶନ ଲାଭରେ କୃତାର୍ଥ ହୋଇଥିଲେ । ଅନ୍ୟାନ୍ୟ ଦେବ-ଦେବୀମାନଙ୍କର ଦର୍ଶନକାଳରେ ଠାକୁର ଏହାପୂର୍ବରୁ ଯେପରି ପ୍ରତ୍ୟକ୍ଷ କରିଥିଲେ, ଏହି ଦର୍ଶନ ସମୟରେ ମଧ ସେହିପରି ଏହି ମୂର୍ତ୍ତି ତାଙ୍କ ଅଙ୍ଗରେ ସମ୍ମିଳିତ ହୋଇଯିବାର, ସେ ଅନୁଭବ କରିଥିଲେ । ସେ କହୁଥିଲେ, "ଶ୍ରୀକୃଷ୍ଣଙ୍କ ପ୍ରେମରେ ସର୍ବସ୍ୱହରା ସେହି ନିରୁପମ ପବିତ୍ରୋଜ୍ଜ୍ୱଳ ମୂର୍ତ୍ତିର ମହିମା ଓ ମାଧୁର୍ଯ୍ୟ ବର୍ଣ୍ଣନା କରିବା ଅସମ୍ଭବ । ଶ୍ରୀମତୀଙ୍କର ଅଙ୍ଗକାନ୍ତି ନାଗକେଶର ପୁଷ୍ପର କେଶର ସଦୃଶ ଗୌରବର୍ଣ୍ଣ ଦେଖିଥିଲି ।"

## ଠାକୁରଙ୍କର ନିଜକୁ ଶ୍ରୀମତୀ ବୋଲି ଅନୁଭବ ଓ ତା'ର କାରଣ :

ଉକ୍ତ ଦର୍ଶନ ପରଠାରୁ ଠାକୁର କିଛି କାଳ ପର୍ଯ୍ୟନ୍ତ ନିଜକୁ ଶ୍ରୀମତୀ ବୋଲି ନିରନ୍ତର ଉପଲବ୍ଧି କରିଥିଲେ । ଶ୍ରୀମତୀ ରାଧାରାଣୀଙ୍କର ଶ୍ରୀମୂର୍ତ୍ତି ଓ ଚରିତ୍ରର ଗଭୀର ଅନୁଧ୍ୟାନରେ ନିଜର ପୃଥକ ଅସ୍ତିତ୍ୱ ବୋଧ ସମ୍ପୂର୍ଣ୍ଣ ହଜି ଯାଇଥିବାରୁ ତାଙ୍କର ଏପରି ଅବସ୍ଥା ହୋଇଥିଲା । ତେଣୁ ଏକଥା ନିଶ୍ଚିତରୂପରେ କୁହାଯାଇପାରେ ଯେ, ତାଙ୍କର ମଧୁରଭାବଜନ୍ୟ ଈଶ୍ୱରପ୍ରେମ ଏବେ ପରିବର୍ଦ୍ଧିତ ହୋଇ ଶ୍ରୀମତୀ ରାଧାରାଣୀଙ୍କର ପ୍ରେମାନୁରୂପ ସୁଗଭୀର ହୋଇଉଠିଥିଲା । ତାହାର ଫଳସ୍ୱରୂପ ସେପରି ଦେଖାଯାଇଥିଲା । କାରଣ ପୂର୍ବୋକ୍ତ ଦର୍ଶନ ପରଠାରୁ ଶ୍ରୀମତୀ ରାଧାରାଣୀ ଏବଂ ଶ୍ରୀଗୌରାଙ୍ଗଦେବଙ୍କ ପରି ତାଙ୍କଠାରେ ମଧ୍ୟ ମଧୁରଭାବର ପରାକାଷ୍ଠାପ୍ରସୂତ ମହାଭାବର ସମସ୍ତ ପ୍ରକାର ଲକ୍ଷଣ ପ୍ରକାଶିତ ହୋଇଥିଲା । ଗୋସ୍ୱାମୀପାଦଗଣଙ୍କର ଗ୍ରନ୍ଥରେ ମହାଭାବ ଯୋଗୁଁ ପ୍ରକାଶିତ ଶାରୀରିକ ଲକ୍ଷଣଗୁଡ଼ିକର କଥା ଲିପିବଦ୍ଧ ଅଛି । ବୈଷ୍ଣବତନ୍ତ୍ରନିପୁଣା ଭୈରବୀ ବ୍ରାହ୍ମଣୀ ଏବଂ ପରେ ବୈଷ୍ଣବଚରଣ ଆଦି ଶାସ୍ତ୍ରଜ୍ଞ ସାଧକମାନେ ଠାକୁରଙ୍କର ଶ୍ରୀଅଙ୍ଗରେ ମହାଭାବର ପ୍ରେରଣାରେ ଏସକଳ ଲକ୍ଷଣର ଆବିର୍ଭାବ ଦେଖି ସ୍ତମ୍ଭିତ ହୋଇ ତାଙ୍କୁ ହୃଦୟର ଶ୍ରଦ୍ଧା ଓ ପୂଜା ଅର୍ପଣ କରିଥିଲେ । ମହାଭାବର ଉଲ୍ଲେଖ କରି ଠାକୁର ଆମକୁ ଅନେକ ଥର କହିଛନ୍ତି— "ଉଣେଇଶ ପ୍ରକାରର ଭାବ ଏକାଧାରରେ ପ୍ରକାଶିତ ହେଲେ ତାହାକୁ ମହାଭାବ କୁହାଯାଏ, ଏହା ଭକ୍ତି ଶାସ୍ତ୍ରରେ ଅଛି । ସାଧନ କରି ଗୋଟିଏ ଗୋଟିଏ ଭାବରେ ସିଦ୍ଧିପ୍ରାପ୍ତ ହେବାପାଇଁ ଲୋକଙ୍କର ଜୀବନ କଟିଯାଏ ! (ନିଜ ଶରୀର ଦେଖାଇ) ଏଠାରେ ଏକାଧାରରେ ଏକତ୍ର ଏହି ପ୍ରକାର ଉଣେଇଶଟି ଭାବର ପୂର୍ଣ୍ଣ ପ୍ରକାଶ ।"[୧]

---

୧. ଶ୍ରୀଜୀବ ଗୋସ୍ୱାମୀ ପ୍ରଭୃତି ବୈଷ୍ଣବାଚାର୍ଯ୍ୟଗଣ ରାଗାତ୍ମିକା ଭକ୍ତିର ନିମ୍ନଲିଖିତ ବିଭାଗ ନିର୍ଦ୍ଦେଶ କରିଛନ୍ତି—



## ପ୍ରକୃତିଭାବରେ ଠାକୁରଙ୍କର ଶରୀରରେ ଅଦ୍ଭୁତ ପରିବର୍ତ୍ତନ :

ଶ୍ରୀକୃଷ୍ଣବିରହର ଉତ୍କଟ ଯନ୍ତ୍ରଣାରେ ଠାକୁରଙ୍କ ଶରୀରର ପ୍ରତି ଲୋମ କୂପରୁ ରକ୍ତ ନିର୍ଗମର ବିଷୟ ଆମେ ଏହା ପୂର୍ବରୁ କହିଛୁ—ଏହା ମହାଭାବର ପରାକାଷ୍ଠାରେ ଏହି ସମୟରେ ହିଁ ଘଟିଥିଲା । ନିଜକୁ ପ୍ରକୃତି ଭାବୁ ଭାବୁ ସେ ଏହି ସମୟରେ ଏତେଦୂର ତନ୍ମୟ ହୋଇଯାଇଥିଲେ ଯେ, ସ୍ୱପ୍ନରେ ବା ଭ୍ରମରେ ମଧ୍ୟ ସେ ନିଜକୁ ପୁରୁଷ ବୋଲି ଭାବିପାରୁ ନ ଥିଲେ ଏବଂ ସ୍ତ୍ରୀଶରୀର ସଦୃଶ କାର୍ଯ୍ୟକଳାପରେ ତାଙ୍କର ଶରୀର ଓ ଇନ୍ଦ୍ରିୟ ସ୍ୱତଃ ପ୍ରବୃତ୍ତ ହେଉଥିଲା ! ଆମେ ତାଙ୍କର ଶ୍ରୀମୁଖରୁ ଶୁଣିଛୁ—ଏହି ସମୟରେ ତାଙ୍କର ସ୍ୱାଧିଷ୍ଠାନଚକ୍ର ଅବସ୍ଥାନ ପ୍ରଦେଶର ସମସ୍ତ ଲୋମକୂପରୁ ପ୍ରତିମାସ ନିର୍ଦ୍ଦିଷ୍ଟ ସମୟରେ ବିନ୍ଦୁ ବିନ୍ଦୁ ଶୋଣିତ-ନିର୍ଗମ ହେଉଥିଲା, ଏବଂ ସ୍ତ୍ରୀଶରୀର ପରି ପ୍ରତିଥର ଏକାଦିକ୍ରମେ ତିନିଦିନ ଏପରି ହେଉଥିଲା ! ତାଙ୍କର ଭଣଜା ହୃଦୟ ଆମକୁ କହିଥିଲେ—ସେ ସ୍ୱଚକ୍ଷୁରେ ଏହା ଦେଖିଥିଲେ ଏବଂ ପରିହିତ ବସନ ନଷ୍ଟ ହେବା ଆଶଙ୍କାରେ ଏସମୟରେ ଠାକୁର କୌପୀନ ବ୍ୟବହାର କରିବା ମଧ୍ୟ ଦେଖିଥିଲେ !

## ମାନସିକ ଭାବର ପ୍ରାବଲ୍ୟରେ ତାଙ୍କର ଶାରୀରିକ ଏପରି ପରିବର୍ତ୍ତନ ଦେଖି ବୁଝାଯାଏ ଯେ, ମନ ଏହି ଶରୀର ସୃଷ୍ଟି କରେ :

ବେଦାନ୍ତ ଶାସ୍ତ୍ରର ଶିକ୍ଷା—ମନୁଷ୍ୟର ମନ ତା'ର ଶରୀରକୁ ବର୍ତ୍ତମାନ ଆକାରରେ ପରିଣତ କରିଅଛି—'ମନ ଏହି ଶରୀର ସୃଷ୍ଟି କରେ' ଏବଂ ତୀବ୍ର ଇଚ୍ଛା ବା ବାସନା ସାହାଯ୍ୟରେ ମନୁଷ୍ୟ ଜୀବନର ପ୍ରତି ମୁହୂର୍ତ୍ତରେ ମନ ଏହାକୁ ଭାଙ୍ଗି ଚୂରି ନୂତନ ଭାବରେ ଗଠିତ କରୁଅଛି । ଶରୀର ଉପରେ ମନର ଏପରି ପ୍ରଭୁତ୍ୱର କଥା ଶୁଣି ଆମେ ବୁଝିବାକୁ ଓ ଧାରଣା କରିବାକୁ ସମର୍ଥ ହୋଇପାରୁ ନାହୁଁ । କାରଣ ଯେପରି ତୀବ୍ର ବାସନା ଉପସ୍ଥିତ ହେଲେ ମନ ଅନ୍ୟ ସମସ୍ତ ବିଷୟରୁ ପ୍ରତ୍ୟାବୃତ୍ତ ହୋଇ ବିଷୟ-ବିଶେଷରେ କେନ୍ଦ୍ରୀଭୂତ ହୁଏ ଏବଂ ଅପୂର୍ବ ଶକ୍ତି ପ୍ରକାଶ କରେ, ସେହିପରି ତୀବ୍ରବାସନା ଆମେ କୌଣସି ବିଷୟ ଲାଭ କରିବା ପାଇଁ ଅନୁଭବ କରି ନ ଥାଉ । ବିଷୟବିଶେଷ ଉପଲବ୍ଧି କରିବାର ତୀବ୍ର ବାସନାରେ ଠାକୁରଙ୍କର ଶରୀର ଅଳ୍ପଦିନ ମଧ୍ୟରେ ଏପରି ପରିବର୍ତ୍ତିତ ହେବାର ବେଦାନ୍ତରେ ଉଲ୍ଲିଖିତ ପୂର୍ବୋକ୍ତ କଥା ପ୍ରମାଣିତ ହେଉଅଛି, ଏକଥା କହିବା ବାହୁଲ୍ୟ । ପଦ୍ମଲୋଚନ ଆଦି ବିଖ୍ୟାତ ପଣ୍ଡିତମାନେ ଠାକୁରଙ୍କର ଆଧ୍ୟାତ୍ମିକ ଉପଲବ୍ଧିସମୂହ ଶୁଣି ବେଦପୁରାଣ ଇତ୍ୟାଦିରେ ଲିପିବଦ୍ଧ ପୂର୍ବ ଯୁଗମାନଙ୍କର ସିଦ୍ଧ ଋଷିମାନଙ୍କର ସମସ୍ତ ଉପଲବ୍ଧି ସହିତ ମିଳାଇ କହିଥିଲେ, "ଆପଣଙ୍କର ସମସ୍ତ

---

ମହାଭାବରେ କାମାତ୍ମିକା ଏବଂ ସମ୍ବନ୍ଧାତ୍ମିକା, ଉଭୟ ପ୍ରକାର ଭକ୍ତିର ପୂର୍ବୋଲ୍ଲିଖିତ ଉନବିଂଶ ପ୍ରକାରର ଅନ୍ତର୍ଭାବର ଏକତ୍ର ସମାବେଶ ହୁଏ । ଏଠାରେ ଠାକୁର ଏହା ହିଁ ନିର୍ଦ୍ଦେଶ କରିଛନ୍ତି ।

ଉପଲବ୍ଧି ବେଦପୁରାଣକୁ ଅତିକ୍ରମ କରି ବହୁଦୂର ଅଗ୍ରସର ହୋଇଛି !'' ମାନସିକ ଭାବର ପ୍ରାବଲ୍ୟରେ ଠାକୁରଙ୍କର ଶାରୀରିକ ପରିବର୍ତ୍ତନଗୁଡ଼ିକର ଅନୁଶୀଳନରେ ତଦ୍ରୂପ ସ୍ତମ୍ଭିତ ହୋଇ କହିବାକୁ ହୁଏ—ତାଙ୍କର ଶାରୀରିକ ବିକାରସମୂହ ଶାରୀରିକ ଜ୍ଞାନ-ରାଜ୍ୟର ସୀମା ଅତିକ୍ରମପୂର୍ବକ ସେଥିରେ ଅପୂର୍ବ ଯୁଗାନ୍ତର ଉପସ୍ଥିତ କରିବାର ସୂଚନା ଦେଇଛି ।

## ଠାକୁରଙ୍କର ଭଗବାନ ଶ୍ରୀକୃଷ୍ଣଙ୍କ ଦର୍ଶନଲାଭ :

ଠାକୁରଙ୍କର ପତିଭାବରେ ଈଶ୍ୱରପ୍ରେମ ଏବେ ପରିଶୁଦ୍ଧ ଓ ଘନୀଭୂତ ହୋଇଥିବାରୁ ସେ ପୂର୍ବୋକ୍ତ ପ୍ରକାରରେ ବ୍ରଜେଶ୍ୱରୀ ଶ୍ରୀମତୀ ରାଧାରାଣୀଙ୍କର କୃପା ଅନୁଭବ କରିଥିଲେ ଏବଂ ସେହି ପ୍ରେମର ପ୍ରଭାବରେ ଅଳ୍ପଦିନ ପରେ ସଚ୍ଚିଦାନନ୍ଦ-ଘନ-ବିଗ୍ରହ ଭଗବାନ ଶ୍ରୀକୃଷ୍ଣଙ୍କର ପୁଣ୍ୟଦର୍ଶନ ଲାଭ କରିଥିଲେ । ସେ ଦେଖିଥିବା ମୂର୍ତ୍ତି ଅନ୍ୟ ସମସ୍ତଙ୍କ ପରି ତାଙ୍କର ଶ୍ରୀଅଙ୍ଗରେ ମିଳିତ ହୋଇଥିଲେ । ଏହି ଦର୍ଶନଲାଭର ଦୁଇ-ତିନିମାସ ପରେ ପରମହଂସ ଶ୍ରୀମତ୍ ତୋତାପୁରୀ ଆସି ତାଙ୍କୁ ବେଦାନ୍ତପ୍ରସିଦ୍ଧ ଅଦ୍ୱୈତଭାବସାଧନାରେ ଶିକ୍ଷା ଦେଇଥିଲେ । ତେଣୁ ବୁଝାଯାଏ, ମଧୁରଭାବସାଧନାରେ ସିଦ୍ଧ ହୋଇ ଠାକୁର କିଛିଦିନ ଏହିଭାବ ସାହାଯ୍ୟରେ ଈଶ୍ୱରସମ୍ଭୋଗରେ କାଳଯାପନ କରିଥିଲେ । ତାଙ୍କ ଶ୍ରୀମୁଖରୁ ଶୁଣିଛୁ—ଏହି ସମୟରେ ଶ୍ରୀକୃଷ୍ଣଚିନ୍ତାରେ ତନ୍ମୟ ହୋଇ ସେ ନିଜର ପୃଥକ ଅସ୍ତିତ୍ୱବୋଧ ହରାଇ ବେଳେବେଳେ ନିଜକୁ ଭଗବାନ ଶ୍ରୀକୃଷ୍ଣ ବୋଲି ବୋଧ କରୁଥିଲେ, ପୁଣି କେତେବେଳେ ଆବ୍ରହ୍ମସ୍ତମ୍ବପର୍ଯ୍ୟନ୍ତ ସମସ୍ତଙ୍କୁ ଶ୍ରୀକୃଷ୍ଣ ବିଗ୍ରହ ବୋଲି ଦର୍ଶନ କରୁଥିଲେ । ଦକ୍ଷିଣେଶ୍ୱରକୁ ତାଙ୍କ ନିକଟକୁ ଆମେ ଯିବାଆସିବା କରୁଥିବା ବେଳେ ସେ ଦିନେ ବଗିଚାରୁ ଗୋଟିଏ ଘାସଫୁଲ ଧରି ହର୍ଷୋତ୍‌ଫୁଲ୍ଲବଦନରେ ଆମମାନଙ୍କ ନିକଟକୁ ଆସି କହିଥିଲେ, ''ସେତେବେଳେ (ମଧୁରଭାବ-ସାଧନ ସମୟରେ) ଯେଉଁ କୃଷ୍ଣମୂର୍ତ୍ତି ଦେଖିଥିଲି, ତାଙ୍କର ଶରୀରର ବର୍ଣ୍ଣ ଏହିପରି ଥିଲା ।''

## ଯୌବନର ପ୍ରାରମ୍ଭରେ ଠାକୁରଙ୍କ ମନରେ ପ୍ରକୃତି ହେବାର ବାସନା :

ଅନ୍ତରର ପ୍ରକୃତିଭାବର ପ୍ରେରଣାରେ ଯୌବନର ପ୍ରାରମ୍ଭରେ ଠାକୁରଙ୍କ ମନରେ ଏକପ୍ରକାର ବାସନା ଉଦୟ ହେଉଥିଲା । ବ୍ରଜଗୋପୀମାନେ ସ୍ତ୍ରୀଶରୀର ନେଇ ଜନ୍ମଗ୍ରହଣ କରି ପ୍ରେମରେ ସଚ୍ଚିଦାନନ୍ଦ-ବିଗ୍ରହ ଶ୍ରୀକୃଷ୍ଣଙ୍କୁ ଲାଭ କରିଥିଲେ । ଏହା ଜାଣି ଠାକୁରଙ୍କର ମନେ ହେଉଥିଲା, ସେ ଯଦି ସ୍ତ୍ରୀଶରୀର ନେଇ ଜନ୍ମଗ୍ରହଣ କରିଥାଆନ୍ତେ, ତାହେଲେ ଗୋପୀମାନଙ୍କ ପରି ଶ୍ରୀକୃଷ୍ଣଙ୍କୁ ଭଜନା ଓ ଲାଭ କରି ଧନ୍ୟ ହୋଇଥାନ୍ତେ । ଏପରି ନିଜ ପୁରୁଷ ଶରୀରକୁ ଶ୍ରୀକୃଷ୍ଣଲାଭ ପଥରେ ଅନ୍ତରାୟ ବୋଲି ବିବେଚନା କରି ସେ ସେତେବେଳେ କଳ୍ପନା କରୁଥିଲେ ଯେ,

ଯଦି ପୁଣି ଭବିଷ୍ୟତରେ ଜନ୍ମଗ୍ରହଣ କରିବାକୁ ହୁଏ, ତେବେ ସେ ବ୍ରାହ୍ମଣ ଘରର ପରମାସୁନ୍ଦରୀ ଦୀର୍ଘକେଶୀ ବାଲ୍ୟବିଧବା ହେବେ ଏବଂ ଶ୍ରୀକୃଷ୍ଣଙ୍କ ବ୍ୟତୀତ ଅନ୍ୟ କାହାକୁ ପତି ବୋଲି ଜାଣିବେ ନାହିଁ । ମୋଟା ଭାତ, ମୋଟା କପଡ଼ା ପାଇଁ କିଛି ସଂସ୍ଥାନ ଥିବ, କୁଡ଼ିଆଘର ପାଖରେ ଗୁଣ୍ଠେ ଦୁଇଗୁଣ୍ଠ ଜମି ଥିବ—ଯେଉଁଥିରେ ନିଜ ହାତରେ ଶାଗ, ପରିବା ଫସଲ ଉତ୍ପନ୍ନ କରିପାରିବେ ଏବଂ ତା'ସହିତ ଜଣେ ବୃଦ୍ଧା ଅଭିଭାବିକା ଥିବେ, ଗୋଟିଏ ଗାଈ—ଯାହାକୁ ସେ ନିଜ ହାତରେ ଦୁହିଁପାରିବେ ଏବଂ ସୂତା କାଟିବା ପାଇଁ ଗୋଟିଏ ଚରଖା ଥିବ । ବାଳକର କଳ୍ପନା ଆହୁରି ଅଧିକ ଅଗ୍ରସର ହୋଇ ଭାବୁଥିଲା, ଦିନବେଳେ ଗୃହକର୍ମ ସମାପନ କରି ସେହି ଚରଖାରେ ସୂତା କାଟୁ କାଟୁ ଶ୍ରୀକୃଷ୍ଣବିଷୟକ ସଙ୍ଗୀତ ଗାନ କରିବେ ଏବଂ ସନ୍ଧ୍ୟା ପରେ ସେହି ଗାଭୀର ଦୁଧରେ ପ୍ରସ୍ତୁତ ମୋଦକାଦି ଗ୍ରହଣ କରି ଶ୍ରୀକୃଷ୍ଣଙ୍କୁ ସ୍ୱହସ୍ତରେ ଖୁଆଇବା ପାଇଁ ଗୋପନରେ ବ୍ୟାକୁଳ କ୍ରନ୍ଦନ କରୁଥିବେ । ଶ୍ରୀକୃଷ୍ଣ ଭଗବାନ ମଧ୍ୟ ଏଥିରେ ପ୍ରସନ୍ନ ହୋଇ ଗୋପବାଳକ ବେଶରେ ସହସା ଆସି ଏସବୁ ଗ୍ରହଣ କରିବେ ଏବଂ ଅନ୍ୟମାନଙ୍କର ଅଗୋଚରରେ ଏପରି ଭାବରେ ତାଙ୍କ ନିକଟକୁ ନିତ୍ୟ ଗମନାଗମନ କରୁଥିବେ । ଠାକୁରଙ୍କର ଉକ୍ତ ବାସନା ଏଭାବରେ ପୂର୍ଣ୍ଣ ନ ହେଲେ ମଧ୍ୟ, ମଧୁରଭାବ-ସାଧନ ସମୟରେ ପୂର୍ବୋକ୍ତ ପ୍ରକାରରେ ସିଦ୍ଧ ହୋଇଥିଲା ।

### ଭାଗବତ, ଭକ୍ତ, ଭଗବାନ—<br>'ତିନି ହିଁ ଏକ ଓ ଏକ ହିଁ ତିନି' ରୂପରେ ଦର୍ଶନ :

ମଧୁର ଭାବରେ ଥିବା ସମୟରେ ଠାକୁରଙ୍କର ଅନ୍ୟ ଗୋଟିଏ ଦର୍ଶନ କଥା ଆମେ ଏଠାରେ ଉଲ୍ଲେଖ କରି ଏହି ବିଷୟର ଉପସଂହାର କରିବୁ । ଏହି ସମୟରେ ବିଷ୍ଣୁମନ୍ଦିର ସମ୍ମୁଖରେ ବସି ସେ ଦିନେ ଶ୍ରୀମଦ୍‌ଭାଗବତ ପାଠ ଶୁଣୁଥିଲେ । ଶୁଣୁ ଶୁଣୁ ଭାବାବିଷ୍ଟ ହୋଇ ଭଗବାନ ଶ୍ରୀକୃଷ୍ଣଙ୍କର ଜ୍ୟୋତିର୍ମୟ ମୂର୍ତ୍ତି ଦର୍ଶନ ଲାଭ କଲେ । ପରେ ଦେଖିବାକୁ ପାଇଲେ, ଉକ୍ତ ମୂର୍ତ୍ତିର ପାଦପଦ୍ମରୁ ଦଉଡ଼ି ପରି ଏକ ଜ୍ୟୋତି ବହିର୍ଗତ ହୋଇ ପ୍ରଥମେ ଭାଗବତ ଗ୍ରନ୍ଥକୁ ସ୍ପର୍ଶ କଲା ଏବଂ ପରେ ତାଙ୍କର ନିଜ ବକ୍ଷଃସ୍ଥଳରେ ସଂଲଗ୍ନ ହୋଇ ଏହି ତିନି ବସ୍ତୁକୁ ଏକତ୍ର କିଛି ସମୟ ସଂଯୁକ୍ତ କରି ରଖିଲା ।

ଠାକୁର କହୁଥିଲେ, ଏପରି ଦର୍ଶନ କରି ତାଙ୍କ ମନରେ ଦୃଢ଼ ଧାରଣା ହୋଇଥିଲା ଯେ, ''ଭାଗବତ, ଭକ୍ତ ଏବଂ ଭଗବାନ ତିନିପ୍ରକାର ଭିନ୍ନ ରୂପରେ ପ୍ରକାଶିତ ହୋଇଥିଲେ ମଧ୍ୟ ଏକ ପଦାର୍ଥ ବା ଗୋଟିଏ ପଦାର୍ଥର ପ୍ରକାଶସମ୍ଭୂତ । ''ଭାଗବତ (ଶାସ୍ତ୍ର), ଭକ୍ତ ଏବଂ ଭଗବାନ—ତିନିରେ ଏକ, ଏକରେ ତିନି !''

# ପଞ୍ଚଦଶ ଅଧ୍ୟାୟ

## ଠାକୁରଙ୍କର ବେଦାନ୍ତସାଧନା

ମଧୁରଭାବସାଧନାରେ ସିଦ୍ଧ ହୋଇ ଠାକୁର ଏବେ ଭାବ–ସାଧନାର ଚରମ ଭୂମିରେ ଉପସ୍ଥିତ ହେଲେ । ଅତଏବ ତାଙ୍କର ଅପୂର୍ବ ସାଧନା କଥା ଲିପିବଦ୍ଧ କରିବା ପୂର୍ବରୁ ତାଙ୍କର ସେସମୟର ମାନସିକ ଅବସ୍ଥା କଥା ଥରେ ଆଲୋଚନା କରିବା ଶ୍ରେୟସ୍କର ।

### ଠାକୁରଙ୍କର ସେସମୟର ମାନସିକ ଅବସ୍ଥାର ଆଲୋଚନା :

### (୧) କାମକାଞ୍ଚନତ୍ୟାଗରେ ଦୃଢ଼ପ୍ରତିଷ୍ଠା :

ଆମେ ଦେଖିଅଛୁ, କୌଣସି ଭାବସାଧନାରେ ସିଦ୍ଧ ହେବାକୁ ହେଲେ ସାଧକକୁ ସଂସାରର ରୂପରସାଦି ଭୋଗ୍ୟବିଷୟସମୂହକୁ ପରିହାର କରି ତାହା ଅନୁଷ୍ଠାନ କରିବାକୁ ହେବ । ସିଦ୍ଧଭକ୍ତ ତୁଳସୀଦାସ କହିଯାଇଛନ୍ତି, ''ଜହାଁ ରାମ ତହଁ କାମ[୧] ନହିଁ''[୨] (ଯେଉଁଠାରେ ରାମ ସେଠାରେ କାମନା ନ ଥାଏ) — ଏକଥା ବାସ୍ତବିକ୍ ସତ୍ୟ । ଠାକୁରଙ୍କର ଅଦୃଷ୍ଟପୂର୍ବ ସାଧନ–ଇତିହାସ ଏସମ୍ବନ୍ଧରେ ସମ୍ପୂର୍ଣ୍ଣ ସାକ୍ଷ୍ୟ ପ୍ରଦାନ କରେ । କାମକାଞ୍ଚନତ୍ୟାଗରୂପକ ଭିତ୍ତି ଉପରେ ଦୃଢ଼ପ୍ରତିଷ୍ଠିତ ହୋଇ ହିଁ ସେ ଭାବସାଧନାରେ ଅଗ୍ରସର ହୋଇଥିଲେ ଏବଂ ଏହି ଭିତ୍ତିକୁ କେବେହେଲେ ତିଳେମାତ୍ର ପରିତ୍ୟାଗ କରି ନ ଥିଲେ ବୋଲି ସେ ଯେତେବେଳେ ଯେଉଁ ଭାବସାଧନାରେ ନିଯୁକ୍ତ ହେଉଥିଲେ, ଅତି ସ୍ୱଳ୍ପକାଳ ମଧ୍ୟରେ ହିଁ ନିଜ ଜୀବନରେ ତାହାକୁ ଆୟତ୍ତ କରିବାକୁ ସମର୍ଥ ହୋଇଥିଲେ । ଅତଏବ କାମକାଞ୍ଚନର ପ୍ରଲୋଭନକୁ ବହୁ ପଛରେ ପକାଇ ତାଙ୍କର ମନ ଯେ ସେତେବେଳେ ନିରନ୍ତର ଉଚ୍ଚଭୂମିରେ ଅବସ୍ଥାନ କରୁଥିଲା, ଏକଥା ସ୍ପଷ୍ଟ ବୁଝାଯାଏ ।

### (୨) ନିତ୍ୟାନିତ୍ୟବସ୍ତୁବିବେକ ଓ ଇହାମୁତ୍ରଫଳଭୋଗ ବିରାଗଃ :

ବିଷୟକାମନା ତ୍ୟାଗପୂର୍ବକ ନଅବର୍ଷ ନିରନ୍ତର ଈଶ୍ୱରଲାଭରେ ସଚେଷ୍ଟ ରହିବାରୁ ଅଭ୍ୟାସଯୋଗରେ ତାଙ୍କର ମନ ଏବେ ଏପରି ଏକ ଅବସ୍ଥାରେ ଉପନୀତ ହୋଇଥିଲା ଯେ, ଈଶ୍ୱରଙ୍କ ବ୍ୟତୀତ ଅନ୍ୟ କୌଣସି ବିଷୟ ସ୍ମରଣ ମନନ କରିବା ତାଙ୍କ ନିକଟରେ ବିଷସଦୃଶ ପ୍ରତୀତ ହେଉଥିଲା । କାୟମନୋବାକ୍ୟରେ ଈଶ୍ୱରଙ୍କୁ ହିଁ ସାରାତ୍ସାର ପରାତ୍ପର ବସ୍ତୁ ବୋଲି ସର୍ବତୋଭାବରେ ଧାରଣା କରିବାରୁ ଏହା

---

୧. ସକାମ କର୍ମ ।

୨. ଜହାଁ ରାମ ତହଁ କାମ ନହିଁ, ଜହାଁ କାମ ନହିଁ ରାମ ।
ତୁଳସୀ କବହୁଁ ହୋତ ନହିଁ ରବି ରଜନୀ ଇକ ଠାମ ।।
— ଶ୍ରୀତୁଳସୀଦାସକୃତ ଦୋହା ।

ଇହକାଳ ବା ପରକାଳରେ ତଦତିରିକ୍ତ ଅନ୍ୟ କୌଣସି ବସ୍ତୁଲାଭରେ ସମ୍ପୂର୍ଣ୍ଣ ଉଦାସୀନ ଓ ନିସ୍ପୃହ ହୋଇଥିଲା ।

### (୩) ଶମଦମାଦିଷଟ୍‌ସମ୍ପତ୍ତି ଓ ମୁମୁକ୍ଷୁତ୍ୱ :

ରୂପରସାଦି ବାହ୍ୟ ବିଷୟସମୂହ ଏବଂ ଶରୀରର ସୁଖଦୁଃଖାଦି ବିସ୍ମୃତ ହୋଇ ଅଭୀଷ୍ଟ ବିଷୟର ଏକାଗ୍ର ଧ୍ୟାନରେ ତାଙ୍କର ମନ ଏବେ ଏତେଦୂର ଅଭ୍ୟସ୍ତ ହୋଇଯାଇଥିଲା ଯେ, ସାମାନ୍ୟ ଚେଷ୍ଟାରେ ହିଁ ଏହା ସମ୍ପୂର୍ଣ୍ଣରୂପରେ ସମାହୃତ ହୋଇ ଲକ୍ଷ୍ୟ ବିଷୟରେ ତନ୍ମୟ ହୋଇ ଆନନ୍ଦ ଅନୁଭବ କରୁଥିଲା । ଦିନ ମାସ ବର୍ଷ ଅତିକ୍ରାନ୍ତ ହେଲେ ମଧ୍ୟ ତାଙ୍କର ସେହି ଆନନ୍ଦର ବିରାମ ନ ଥିଲା । ଈଶ୍ୱରଙ୍କ ବ୍ୟତୀତ ଜଗତର ଅନ୍ୟ କିଛି ବସ୍ତୁ ଅଛି ବା ଥାଇପାରେ ଏହି ଚିନ୍ତା ତାଙ୍କର ମୁହୂର୍ତ୍ତକ ପାଇଁ ନ ଥିଲା ।

### (୪) ଈଶ୍ୱରନିର୍ଭରତା ଏବଂ ଦର୍ଶନଜନିତ ଭୟଶୂନ୍ୟତା :

ପରିଶେଷରେ ଠାକୁରଙ୍କ ମନରେ ଜଗତକାରଣଙ୍କ ପ୍ରତି 'ଗତିର୍ଭର୍ତା ପ୍ରଭୁଃ ସାକ୍ଷୀ ନିବାସଃ ଶରଣଂ ସୁହୃତ୍' ବୋଲି ଏକାନ୍ତ ଅନୁରାଗ, ବିଶ୍ୱାସ ଏବଂ ନିର୍ଭରତାର ଏବେ ସୀମା ନ ଥିଲା । ଏସବୁ ସହାୟରେ ସେ ଯେ ଏବେ ନିଜକୁ ଈଶ୍ୱରଙ୍କ ସହିତ ସପ୍ରେମ ସମ୍ବନ୍ଧରେ କେବଳ ନିତ୍ୟଯୁକ୍ତ ଦେଖୁଥିଲେ ତା ନୁହେଁ, କିନ୍ତୁ ମାତାଙ୍କ ପ୍ରତି ବାଳକ ସଦୃଶ ଈଶ୍ୱରଙ୍କ ପ୍ରତି ଏକାନ୍ତ ଅନୁରାଗରେ ସାଧକ ଯେ ତାଙ୍କୁ ସର୍ବଦା ନିଜ ନିକଟରେ ଦେଖିବାକୁ ପାଇଥାଏ, ତାଙ୍କର ମଧୁର ବାଣୀ ସର୍ବଦା କର୍ଣ୍ଣଗୋଚର କରି କୃତକୃତାର୍ଥ ହୋଇଥାଏ ଏବଂ ତାଙ୍କର ପ୍ରବଳ ହସ୍ତ ଦ୍ୱାରା ରକ୍ଷିତ ହୋଇ ସଂସାରପଥରେ ସତତ ନିର୍ଭୟରେ ବିଚରଣ କରିବାକୁ ସମର୍ଥ ହୋଇଥାଏ—ଏ କଥାର ବହୁଳ ପ୍ରମାଣ ପାଇ ତାଙ୍କର ମନ ଜୀବନର କ୍ଷୁଦ୍ର ବୃହତ୍ ସମସ୍ତ କାର୍ଯ୍ୟ ଶ୍ରୀଶ୍ରୀଜଗଦମ୍ବାଙ୍କର ଆଦେଶରେ ଏବଂ ସଙ୍କେତରେ ନିର୍ଭୟପୂର୍ବକ ଅନୁଷ୍ଠାନ କରିବାକୁ ଏବେ ସମ୍ପୂର୍ଣ୍ଣ ଭାବରେ ଅଭ୍ୟସ୍ତ ହୋଇଥିଲା ।

### ଈଶ୍ୱର ଦର୍ଶନ ପରେ ମଧ୍ୟ ଠାକୁର କାହିଁକି ସାଧନା କରିଥିଲେ, ସେବିଷୟରେ ତାଙ୍କର କଥା :

ପ୍ରଶ୍ନ ଉଠିପାରେ—ଜଗତକାରଣଙ୍କୁ ଏପରି ସ୍ନେହମୟୀ ମାତାପରି ସର୍ବଦା ନିଜ ନିକଟରେ ପାଇ ମଧ୍ୟ ଠାକୁର ପୁଣି ସାଧନପଥରେ ନିଯୁକ୍ତ ହେଲେ କାହିଁକି ? ଯାହାଙ୍କୁ ଲାଭ କରିବା ପାଇଁ ସାଧକର ଯୋଗ-ତପସ୍ୟାଦି ସାଧନାର ଅନୁଷ୍ଠାନ, ତାଙ୍କୁ ଯଦି ପରମ ଆତ୍ମୀୟରୂପରେ ପାଇଲି, ତେବେ ପୁଣି ସାଧନ କ'ଣ ପାଇଁ ? ଏପ୍ରଶ୍ନର ଉତ୍ତର ଆମେ ପୂର୍ବରୁ ଗୋଟିଏ ପ୍ରକାରରେ କରିଥିଲେ ମଧ୍ୟ ତତ୍‌ସମ୍ବନ୍ଧରେ ଅନ୍ୟ ଏକ ଭାବରେ ଏବେ ଦୁଇଚାରୋଟି କଥା କହିବୁ ।

ଠାକୁରଙ୍କର ଶ୍ରୀପଦପ୍ରାନ୍ତରେ ବସି ତାଙ୍କ ସାଧନ ଇତିହାସ ଶୁଣୁ ଶୁଣୁ ଆମମାନଙ୍କ ମନରେ ଥରେ ଏପରି ପ୍ରଶ୍ନ ଉଠିଥିଲା ଏବଂ ଏକଥା ପ୍ରକାଶ କରିବାକୁ ଆମେ ସଙ୍କୁଚିତ ହୋଇ ନ ଥିଲୁ । ତଦୁତ୍ତରରେ ସେ ସେତେବେଳେ ଆମମାନଙ୍କୁ ଯାହା କହିଥିଲେ, ତାହା ହିଁ ଏଠାରେ କହିବୁ । ଠାକୁର କହିଥିଲେ, ''ସମୁଦ୍ର କୂଳରେ ଯେଉଁବ୍ୟକ୍ତି ସର୍ବଦା ବାସ କରେ, ତା ମନରେ ଯେପରି ବେଳେବେଳେ ବାସନାର ଉଦୟ ହୁଏ ଯେ, ରତ୍ନାକରଙ୍କ ଗର୍ଭରେ କେତେ ପ୍ରକାରର ରତ୍ନ ଅଛି ତାହା ଦେଖିବ, ସେପରି ମା'କୁ ପାଇ ଏବଂ ମା'ଙ୍କ ପାଖରେ ସର୍ବଦା ରହି ମଧ ମୋର ସେତେବେଳେ ମନେ ହେଉଥିଲା ଯେ, ମା' ଅନନ୍ତଭାବମୟୀ, ଅନନ୍ତରୂପିଣୀ; ତାଙ୍କୁ ନାନା ଭାବରେ ଓ ନାନା ରୂପରେ ଦେଖିବି । ବିଶେଷ କୌଣସି ଭାବରେ ତାଙ୍କୁ ଦେଖିବାକୁ ଇଚ୍ଛା ହେଲେ ସେଥିପାଇଁ ତାଙ୍କୁ ବ୍ୟାକୁଳ ହୋଇ ଧରୁଥିଲି । କୃପାମୟୀ ମା' ମଧ ସେତେବେଳେ ତାଙ୍କର ସେହି ଭାବ ଦେଖିବା ପାଇଁ କିମ୍ବା ଉପଲବ୍ଧି କରିବା ପାଇଁ ଯାହା କିଛି ସାଧନାର ପ୍ରୟୋଜନ, ସେସବୁ ମୋ ଦ୍ୱାରା କରାଇ, ସେହି ଭାବରେ ଦେଖା ଦେଉଥିଲେ । ଏଥିପାଇଁ ହିଁ ଭିନ୍ନ ଭିନ୍ନ ମତର ସାଧନା କରାହୋଇଥିଲା ।''

ପୂର୍ବେ କୁହାଯାଇଛି, ମଧୁରଭାବରେ ସିଦ୍ଧ ହୋଇ ଠାକୁର ଭାବସାଧନାର ଚରମଭୂମିରେ ଉପନୀତ ହୋଇଥିଲେ । ଏହାପରେ ଠାକୁରଙ୍କ ମନରେ ସର୍ବଭାବାତୀତ ବେଦାନ୍ତପ୍ରସିଦ୍ଧ ଅଦ୍ୱୈତଭାବସାଧନାର ପ୍ରବଳ ପ୍ରେରଣା ଉପସ୍ଥିତ ହେଲା । ଶ୍ରୀଶ୍ରୀଜଗଦମ୍ବାଙ୍କର ଇଙ୍ଗିତରେ ଉକ୍ତ ପ୍ରେରଣା ତାଙ୍କର ଜୀବନରେ କିପରି ଆସିଥିଲା ଏବଂ କିପରି ଭାବରେ ଏବେ ସେ ଶ୍ରୀଶ୍ରୀଜଗନ୍ମାତାଙ୍କର ନିର୍ଗୁଣ ନିରାକାର ନିର୍ବିକଳ୍ପ ତୁରୀୟ ରୂପର ସାକ୍ଷାତ୍ ଉପଲବ୍ଧି କରିଥିଲେ, ସେକଥା ହିଁ ଏବେ ଆମେ ପାଠକଙ୍କୁ ଜଣାଇବୁ ।

### ଠାକୁରଙ୍କ ଜନନୀଙ୍କର ଗଙ୍ଗାକୂଳରେ ବାସ କରିବାର ଇଚ୍ଛା ଏବଂ ଦକ୍ଷିଣେଶ୍ୱର ଆଗମନ :

ଠାକୁର ଯେତେବେଳେ ଅଦ୍ୱୈତଭାବ-ସାଧନାରେ ପ୍ରବୃତ୍ତ ଥିଲେ, ସେତେବେଳେ ତାଙ୍କର ବୃଦ୍ଧାମାତା ଦକ୍ଷିଣେଶ୍ୱରର କାଳୀମନ୍ଦିରରେ ଅବସ୍ଥାନ କରୁଥିଲେ । ଜ୍ୟେଷ୍ଠ ପୁତ୍ର ରାମକୁମାରଙ୍କ ମୃତ୍ୟୁ ହେବାପରେ, ଶୋକସନ୍ତପ୍ତା ବୃଦ୍ଧା ଅନ୍ୟ ଦୁଇ ପୁତ୍ରଙ୍କର ମୁହଁକୁ ଚାହିଁ କୌଣସି ପ୍ରକାରେ ଧୈର୍ଯ୍ୟଧାରଣ କରିଥିଲେ । କିନ୍ତୁ ଅନତିକାଳ ପରେ ତାଙ୍କର କନିଷ୍ଠ ପୁତ୍ର ଗଦାଧର ପାଗଳ ହୋଇଯାଇଛି ବୋଲି ଲୋକେ ଯେତେବେଳେ ଆଲୋଚନା କରିବାକୁ ଲାଗିଲେ, ସେତେବେଳେ ତାଙ୍କର ଦୁଃଖର ସୀମା ରହିଲା ନାହିଁ । ପୁଅକୁ ଘରକୁ ଆଣି ନାନାପ୍ରକାରର ଚିକିତ୍ସା ଓ ଶାନ୍ତିସ୍ୱସ୍ତ୍ୟୟନ ଆଦି କରି ତାଙ୍କର ଉକ୍ତଭାବର ସାମାନ୍ୟ

ଉପଶମ ହେବାପରେ, ବୃଦ୍ଧା ଆଶାୟୀ ହୋଇ ତାଙ୍କର ବିବାହ କରାଇଲେ । କିନ୍ତୁ ବିବାହ ପରେ ଦକ୍ଷିଣେଶ୍ୱରକୁ ପୁନର୍ବାର ଆସି ଗଦାଧରଙ୍କର ଏପରି ଅବସ୍ଥା ଯେତେବେଳେ ପୁଣି ଆରମ୍ଭ ହେଲା, ସେତେବେଳେ ବୃଦ୍ଧା ଆଉ ନିଜକୁ ସମ୍ଭାଳି ପାରିଲେ ନାହିଁ—ପୁତ୍ରର ଆରୋଗ୍ୟକାମନାରେ ଅଧିଆ ପଡ଼ିଥିଲେ । ପରେ ମହାଦେବଙ୍କର ପ୍ରତ୍ୟାଦେଶରେ ପୁତ୍ରର ଦିବ୍ୟୋନ୍ମାଦ ହୋଇଅଛି ଜାଣି ସାମାନ୍ୟ ଆଶ୍ୱସ୍ତା ହୋଇଥିଲେ ମଧ ସେ ଏହାର ଅନତିକାଳ ପରେ ସଂସାରରେ ବୀତରାଗ ହୋଇ ଦକ୍ଷିଣେଶ୍ୱରରେ ପୁତ୍ରଙ୍କ ନିକଟରେ ପହଞ୍ଚିଲେ ଏବଂ ଜୀବନର ଅବଶିଷ୍ଟ କାଳ ଭାଗୀରଥି ତୀରରେ ଯାପନ କରିବେ ବୋଲି ଦୃଢ଼ ସଂକଳ୍ପ କଲେ । କାରଣ, ଯେଉଁମାନଙ୍କ ପାଇଁ ଏବଂ ଯାହାଙ୍କୁ ନେଇ ତାଙ୍କର ସଂସାର କରିବା, ସେମାନେ ଯଦି ଗୋଟି ଗୋଟି କରି ସଂସାର ଓ ତାଙ୍କୁ ପରିତ୍ୟାଗ କରି ଚାଲିଗଲେ, ତେବେ ବୃଦ୍ଧ ବୟସରେ ତାଙ୍କର ଏଥିରେ ଲିପ୍ତ ରହିବାର ପ୍ରୟୋଜନ କ'ଣ ? ଶ୍ରୀଯୁକ୍ତ ମଥୁରଙ୍କର ଅନ୍ନମେରୁ-ଅନୁଷ୍ଠାନ କଥା ଆମେ ଏହାପୂର୍ବରୁ ପାଠକଙ୍କୁ କହିଛୁ । ଠାକୁରଙ୍କର ମାତା ଏହି ସମୟରେ ଦକ୍ଷିଣେଶ୍ୱର କାଳୀମନ୍ଦିରରେ ଉପସ୍ଥିତ ଥିଲେ ଏବଂ ସେବେଠାରୁ ବାରବର୍ଷ ପରେ ତାଙ୍କର ଶରୀରତ୍ୟାଗ ପର୍ଯ୍ୟନ୍ତ ସେ କାମାରପୁକୁରକୁ ପୁନର୍ବାର ଯାଇ ନ ଥିଲେ । ଅତଏବ ଠାକୁରଙ୍କର ଜଟାଧାରୀ ବାବାଜୀଙ୍କଠାରୁ 'ରାମ'ମନ୍ତ୍ରରେ ଦୀକ୍ଷାଗ୍ରହଣ ଏବଂ ମଧୁରଭାବ ଓ ବେଦାନ୍ତଭାବ ପ୍ରଭୃତିର ସାଧନା ଯେ ତାଙ୍କର ମାତାଙ୍କର ଦକ୍ଷିଣେଶ୍ୱର ଅବସ୍ଥାନ ସମୟରେ ହୋଇଥିଲା, ଏଥିରେ ସନ୍ଦେହ ନାହିଁ ।

## ଠାକୁରଙ୍କ ମା'ଙ୍କର ଲୋଭରାହିତ୍ୟ :

ଠାକୁରଙ୍କ ମା'ଙ୍କର ଉଦାର ହୃଦୟର ପରିଚାୟକ ଗୋଟିଏ ଘଟଣା ଆମେ ପାଠକଙ୍କୁ ଏଠାରେ ଜଣାଇବୁ । ଘଟଣାଟି ତାଙ୍କର ଦକ୍ଷିଣେଶ୍ୱର ଆଗମନର ଅଳ୍ପଦିନ ପରେ ହିଁ ଘଟିଥିଲା । ଆଗରୁ କୁହାଯାଇଛି, ଏହି ସମୟରେ କାଳୀମନ୍ଦିରରେ ମଥୁରବାବୁଙ୍କର ଅକ୍ଷୁଣ୍ଣ ପ୍ରଭାବ ଥିଲା ଏବଂ ସେ ମୁକ୍ତହସ୍ତ ହୋଇ ନାନା ସତ୍‌କାର୍ଯ୍ୟର ଅନୁଷ୍ଠାନ ଓ ପ୍ରଭୂତ ଅନ୍ନଦାନ କରୁଥିଲେ । ଠାକୁରଙ୍କ ପ୍ରତି ତାଙ୍କର ଭଲ ପାଇବା ଓ ଭକ୍ତିର ଆତିଶଯ୍ୟ ଦୃଷ୍ଟିରୁ ସେ ଠାକୁରଙ୍କ ଦୈହିକ ସେବାର ଯେପରି କୌଣସି ତ୍ରୁଟି ନ ହୁଏ, ତଦ୍‌ବିଷୟରେ ବନ୍ଦୋବସ୍ତ କରିଦେବାକୁ ସର୍ବଦା ସଚେଷ୍ଟ ଥିଲେ; କିନ୍ତୁ ଠାକୁରଙ୍କର କଠୋର ତ୍ୟାଗଶୀଳତା ଦେଖି ତାଙ୍କୁ ଏବିଷୟରେ ମୁହଁ ଖୋଲି କିଛି କହିବାକୁ ସାହସ କରି ନ ଥିଲେ । ଠାକୁରଙ୍କ ଶ୍ରବଣଗୋଚର ହେବ, ଏପରି ସ୍ଥଳରେ ଛିଡ଼ା ହୋଇ ସେ ଏହାପୂର୍ବରୁ ଦିନେ ଠାକୁରଙ୍କ ନାମରେ ଖଣ୍ଡିଏ ତାଲୁକ ଲେଖି ଦେବାପାଇଁ ହୃଦୟଙ୍କ ସହିତ ପରାମର୍ଶ କରିବାକୁ ଯାଇ ବିଷମ ଅନର୍ଥରେ ପଡ଼ିଥିଲେ । କାରଣ, ଏହିକଥା ଠାକୁରଙ୍କର କର୍ଣ୍ଣଗୋଚର ହେବାମାତ୍ରେ ଠାକୁର

ଉନ୍ମତ୍ତପ୍ରାୟ ହୋଇ, 'ଶଳା, ତୁ ମୋତେ ବିଷୟୀ କରିବାକୁ ଚାହୁଁଛୁ' କହି ତାଙ୍କୁ ମାରିବାକୁ ଧାଇଁଥିଲେ । ତେଣୁ ତାଙ୍କ ମନରେ ଏପରି କଥା ରହିଥିଲେ ମଧ୍ୟ ନିଜର ଅଭିପ୍ରାୟ ସମ୍ପାଦନର ସୁଯୋଗ ପାଇ ନ ଥିଲେ । ଠାକୁରଙ୍କ ମାଆ ଆସିବା ପରେ ସେ ଏବେ ସୁଯୋଗ ବୁଝି ବୃଦ୍ଧା ଚନ୍ଦ୍ରାଦେବୀଙ୍କୁ ପିତାମହୀ ସମ୍ବୋଧନରେ ଆପ୍ୟାୟିତ କରି ଏବଂ ପ୍ରତିଦିନ ତାଙ୍କ ପାଖରେ ବସି ବିଭିନ୍ନ କଥା ଆଲୋଚନା କରି କ୍ରମେ କ୍ରମେ ତାଙ୍କର ବିଶେଷ ସ୍ନେହର ପାତ୍ର ହୋଇ ଉଠିଲେ । ପରେ ସୁବିଧା ଦେଖି ଦିନେ ତାଙ୍କୁ କହିଲେ—''ଠାକୁରମା, ତୁମେ ତ' ମୋ ନିକଟରୁ କେବେ କିଛି ସେବା ଗ୍ରହଣ କଲ ନାହିଁ । ତେବେ ତୁମେ ଯଦି ଯଥାର୍ଥରେ ମୋତେ ନିଜର ବୋଲି ଭାବ, ତା'ହେଲେ ମୋ ନିକଟରୁ ତୁମର ଯାହା ଇଚ୍ଛା ମାଗି ନିଅ ।'' ସରଳହୃଦୟା ବୃଦ୍ଧା ମଥୁରଙ୍କ ଏପରି କଥାରେ ବିଶେଷ ବିପନ୍ନା ହେଲେ । କାରଣ, ସେ ଭାବି ଚିନ୍ତି କୌଣସି ବିଷୟର ଅଭାବ ଅନୁଭବ କରିପାରିଲେ ନାହିଁ । ସୁତରାଂ କ'ଣ ମାଗିବେ, ଏହା ସ୍ଥିର କରିପାରିଲେ ନାହିଁ । ଅଗତ୍ୟା ତାଙ୍କୁ କହିବାକୁ ପଡ଼ିଲା—''ବାବା, ତୁମ ଯୋଗୁଁ ମୋର ତ କୌଣସି ଅଭାବ ନାହିଁ, ତେଣୁ ଯେତେବେଳେ ଯାହା ଆବଶ୍ୟକ ହେବ ତାହା ମାଗିନେବି ।'' ଏହା କହି ସେ ନିଜର ବାକ୍ସ ଖୋଲି ମଥୁରକୁ କହିଲେ—''ଦେଖିବ, ଏହି ଦେଖ, ମୋର ଏତେ ଲୁଗା ପିନ୍ଧିବା ପାଇଁ ଅଛି ! ପୁଣି ତୁମର ସଦିଚ୍ଛାରେ ମୋର ଖାଇବାର କୌଣସି କଷ୍ଟ ନାହିଁ, ତୁମେ ସମସ୍ତ ବନ୍ଦୋବସ୍ତ କରି ଦେଇଛ ଓ କରୁଛ; ତେବେ ପୁଣି ଆଉ କ'ଣ ଦରକାର କୁହ ? ମଥୁରବାବୁ କିନ୍ତୁ ଛାଡ଼ିବାର ପାତ୍ର ନ ଥିଲେ, 'ଯାହା ଇଚ୍ଛା କିଛି ନିଅ' କହି ବାରମ୍ବାର ଅନୁରୋଧ କରିବାକୁ ଲାଗିଲେ ।'' ତେଣୁ ଠାକୁରଙ୍କ ମା'ଙ୍କର ଗୋଟିଏ ଅଭାବ କଥା ମନେପଡ଼ିଲା; ସେ ହସି ହସି କହିଲେ— ''ଯଦି ନିହାତି ଦେବ, ତେବେ ମୋର, ପାଟିରେ ଦେବା ପାଇଁ ତମାଖୁର ଅଭାବ, ଏକଅଣାର ତମାଖୁ କିଣି ଦିଅ ।'' ଏକଥାରେ ବିଷୟୀ ମଥୁରବାବୁଙ୍କର ଚକ୍ଷୁ ଅଶ୍ରୁପୂର୍ଣ୍ଣ ହୋଇଗଲା । ସେ ତାଙ୍କୁ ଦଣ୍ଡବତ ପ୍ରଣାମ କରି କହିଲେ—''ଏପରି ମାତା ନ ହେଲେ କ'ଣ ଏପରି ତ୍ୟାଗଶୀଳ ପୁତ୍ର ହୁଏ !'' ଏହା କହି ବୃଦ୍ଧାଙ୍କର ଇଚ୍ଛା ଅନୁଯାୟୀ ଗୁଣ୍ଡି ତମ୍ବାଖୁ ମଗାଇ ଦେଲେ ।

### ହଳଧାରୀଙ୍କର କର୍ମତ୍ୟାଗ ଓ ଅକ୍ଷୟଙ୍କ ଆଗମନ :

ଠାକୁର ବେଦାନ୍ତସାଧନା କରିବା ସମୟରେ ତାଙ୍କର ପିତୃବ୍ୟପୁତ୍ର ହଳଧାରୀ ଦକ୍ଷିଣେଶ୍ୱର ମନ୍ଦିରରେ ଶ୍ରୀଶ୍ରୀରାଧାଗୋବିନ୍ଦଜିଉଙ୍କର ସେବାପୂଜାରେ ନିଯୁକ୍ତ ଥିଲେ । ବୟୋଜ୍ୟେଷ୍ଠ ଥିଲେ ବୋଲି ଏବଂ ଭାଗବତ ଆଦି ଗ୍ରନ୍ଥରେ ତାଙ୍କର ସାମାନ୍ୟ ପାଣ୍ଡିତ୍ୟ ଥିବାରୁ ସେ ଅହଙ୍କାରର ବଶବର୍ତ୍ତୀ ହୋଇ ବେଳେବେଳେ ଠାକୁରଙ୍କୁ କିପରି ଶ୍ଳେଷ କରୁଥିଲେ ଏବଂ ତାଙ୍କର (ଠାକୁରଙ୍କର) ଆଧ୍ୟାତ୍ମିକ

ଦର୍ଶନ ଓ ଅବସ୍ଥାସମୂହକୁ ମସ୍ତିଷ୍କର ବିକାରପ୍ରସୂତ ବୋଲି କହୁଥିବାରୁ ଠାକୁର ଏଥିରେ ବ୍ୟଥିତ ହୋଇ ଶ୍ରୀଶ୍ରୀଜଗଦମ୍ବାଙ୍କୁ ଏସବୁ କଥା ନିବେଦନ କରି ବାରମ୍ବାର ଆଶ୍ୱସ୍ତ ହେଉଥିବା ବିଷୟ ଆମେ ଇତଃପୂର୍ବରୁ ପାଠକଙ୍କୁ କହିଛୁ । ହଳଧାରୀଙ୍କର ତୀବ୍ର ଶ୍ଳେଷପୂର୍ଣ୍ଣ ବାକ୍ୟରେ ଠାକୁର ଥରେ ବିଷଣ୍ଣ ହୋଇଥିବା ସମୟରେ ଭାବାବେଶରେ ଏକ ସୌମ୍ୟମୂର୍ତ୍ତି ଦର୍ଶନ କରି, ତାଙ୍କଠାରୁ 'ଭାବମୁଖରେ ରହ' ବୋଲି ପ୍ରତ୍ୟାଦେଶ ପାଇଥିଲେ । ବୋଧହୁଏ ଉକ୍ତ ଦର୍ଶନ ଠାକୁରଙ୍କର ବେଦାନ୍ତସାଧନାର କିଛି ଦିନ ପୂର୍ବରୁ ଘଟିଥିଲା ଏବଂ ମଧୁରଭାବସାଧନା ସମୟରେ ତାଙ୍କୁ ସ୍ତ୍ରୀବେଶ ଧାରଣପୂର୍ବକ ରମଣୀ ସଦୃଶ ରହିବା ଦେଖି ହଳଧାରୀ ତାଙ୍କୁ ଆତ୍ମଜ୍ଞାନବିହୀନ କହି ଭର୍ତ୍ସନା କରିଥିଲେ । ପରମହଂସ ପରିବ୍ରାଜକ ଶ୍ରୀମଦ୍ ଆଚାର୍ଯ୍ୟ ତୋତାପୁରୀଙ୍କର ଦକ୍ଷିଣେଶ୍ୱରକୁ ଆଗମନ ଓ ଅବସ୍ଥାନ ସମୟରେ ହଳଧାରୀ କାଳୀମନ୍ଦିରରେ ଥିଲେ ଏବଂ ବେଳେବେଳେ ତାଙ୍କ ସହିତ ଶାସ୍ତ୍ର ଆଲୋଚନା କରୁଥିଲେ, ଏକଥା ଆମେ ଠାକୁରଙ୍କ ଶ୍ରୀମୁଖରୁ ଶୁଣିଛୁ । ଶ୍ରୀମତ୍ ତୋତା ଓ ହଳଧାରୀଙ୍କର ଏପରି ଅଧ୍ୟାତ୍ମରାମାୟଣ-ଚର୍ଚ୍ଚାସମୟରେ ଠାକୁର ଦିନେ ଜାୟା ଓ ଅନୁଜ ଲକ୍ଷ୍ମଣଙ୍କ ସହ ଭଗବାନ ଶ୍ରୀରାମଚନ୍ଦ୍ରଙ୍କର ଦିବ୍ୟଦର୍ଶନ-ଲାଭ କରିଥିଲେ । ଶ୍ରୀମତ୍ ତୋତା ସମ୍ଭବତଃ ୧୮୬୫ ଖ୍ରୀଷ୍ଟାବ୍ଦ ଶେଷ ଭାଗରେ ଦକ୍ଷିଣେଶ୍ୱରକୁ ଶୁଭାଗମନ କରିଥିଲେ । ଏହି ଘଟଣାର କେତେ ମାସପରେ ଶାରୀରିକ ଅସୁସ୍ଥତା କାରଣରୁ ହଳଧାରୀ କାଳୀମନ୍ଦିର କର୍ମରୁ ଅବସରଗ୍ରହଣ କରିବାରୁ, ଠାକୁରଙ୍କର ଭ୍ରାତୁଷ୍ପୁତ୍ର ଅକ୍ଷୟ ଉକ୍ତକାର୍ଯ୍ୟରେ ନିଯୁକ୍ତ ହୋଇଥିଲେ ।

### ଭାବସମାଧିରେ ସିଦ୍ଧ ଠାକୁରଙ୍କର ଅଦ୍ୱୈତଭାବ ସାଧନାରେ ପ୍ରବୃତ୍ତ ହେବାର କାରଣ :

ଭକ୍ତର ସ୍ୱଭାବ, ସେ ସାଯୁଜ୍ୟ ବା ନିର୍ବାଣ ମୁକ୍ତିଲାଭ ପାଇଁ କଦାପି ପ୍ରୟାସୀ ହୁଏ ନାହିଁ । ଶାନ୍ତଦାସ୍ୟାଦି ଭାବବିଶେଷ ଅବଲମ୍ବନପୂର୍ବକ ଈଶ୍ୱରଙ୍କର ପ୍ରେମର ମହିମା ଓ ମାଧୁର୍ଯ୍ୟ ସମ୍ଭୋଗ କରିବାକୁ ସେମାନେ ସର୍ବଦା ସଚେଷ୍ଟ ରହିଥାଆନ୍ତି । ଦେବୀଭକ୍ତ ଶ୍ରୀରାମପ୍ରସାଦଙ୍କର 'ଚିନି ହେବା ଭଲ ନୁହେଁ, ମା', ଚିନି ଖାଇବାକୁ ଭଲ ପାଏ'-ଭଳି କଥା ଭକ୍ତ ହୃଦୟର ସ୍ୱାଭାବିକ ଉଚ୍ଛ୍ୱାସ ବୋଲି ସର୍ବକାଳରେ ପ୍ରସିଦ୍ଧ ରହିଅଛି । ଅତଏବ ଭାବସାଧନାର ପରାକାଷ୍ଠାରେ ଉପନୀତ ହୋଇ ଠାକୁରଙ୍କର ଭାବାତୀତ ଅଦ୍ୱୈତାବସ୍ଥା ଲାଭର ପ୍ରୟାସ ଅନେକଙ୍କୁ ବିସଦୃଶ ବୋଧ ହୋଇପାରେ । କିନ୍ତୁ ଏପରି ଭାବିବା ପୂର୍ବେ ଆମମାନଙ୍କର ସ୍ମରଣ ରଖିବା କର୍ତ୍ତବ୍ୟ ଯେ, ଠାକୁର ସ୍ୱପ୍ରଣୋଦିତ ହୋଇ ଏବେ ଆଉ କୌଣସି କାର୍ଯ୍ୟର ଅନୁଷ୍ଠାନ କରିବାକୁ ସମର୍ଥ ନ ଥିଲେ । ଜଗଦମ୍ବାଙ୍କ ବାଳକ ଠାକୁର ଏବେ ତାଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭର କରି ସର୍ବଦା ତାଙ୍କର ମୁହଁକୁ ଅନାଇ ରହୁଥିଲେ ଏବଂ

ସେ ତାଙ୍କୁ ଯେପରି ଭାବରେ ଚଳାଉଥିଲେ, ସେହି ଭାବରେ ହିଁ ସେତେବେଳେ ପରମାନନ୍ଦରେ ଅବସ୍ଥାନ କରୁଥିଲେ । ଶ୍ରୀଶ୍ରୀଜଗନ୍ମାତା ମଧ୍ୟ ସେହି କାରଣରୁ ତାଙ୍କର ସମ୍ପୂର୍ଣ୍ଣ ଦାୟିତ୍ୱ ଗ୍ରହଣପୂର୍ବକ ନିଜ ଉଦ୍ଦେଶ୍ୟବିଶେଷ ସାଧନ ନିମିତ୍ତ ଠାକୁରଙ୍କର ଅଜ୍ଞାତସାରରେ ତାଙ୍କୁ ଅଦୃଷ୍ଟପୂର୍ବ ଅଭିନବ ଆଦର୍ଶରେ ଗଢ଼ି ତୋଳୁଥିଲେ । ସର୍ବପ୍ରକାର ସାଧନା ପରେ ଠାକୁରେ ଜଗଦମ୍ବାଙ୍କ ଏହି ଉଦ୍ଦେଶ୍ୟ ଉପଲବ୍ଧି କରିଥିଲେ ଏବଂ ଏହା ବୁଝି ଜୀବନର ଅବଶିଷ୍ଟ କାଳ ମାତାଙ୍କ ସହିତ ପ୍ରେମରେ ଏକ ହୋଇ ଲୋକକଲ୍ୟାଣସାଧନରୂପକ ତାଙ୍କର ସୁମହତ ଦାୟିତ୍ୱ ନିଜର ବୋଲି ଅନୁଭବପୂର୍ବକ ସାନନ୍ଦରେ ବହନ କରିଥିଲେ ।

### ଭାବସାଧନାର ଚରମ ଅବସ୍ଥାରେ ଅଦ୍ୱୈତଭାବ ପ୍ରାପ୍ତି ପାଇଁ ପ୍ରୟାସର ଯୁକ୍ତିଯୁକ୍ତତା :

ମଧୁରଭାବସାଧନା ପରେ ଠାକୁରଙ୍କର ଅଦ୍ୱୈତଭାବସାଧନାର ଯୁକ୍ତିଯୁକ୍ତତା ଅନ୍ୟ ଗୋଟିଏ ଦିଗରୁ ଦେଖିଲେ ବିଶେଷରୂପରେ ବୁଝି ହୁଏ । ଭାବ ଏବଂ ଭାବାତୀତ ରାଜ୍ୟ ପରସ୍ପର କାର୍ଯ୍ୟକାରଣ ସମ୍ବନ୍ଧରେ ସର୍ବଦା ଅବସ୍ଥିତ । କାରଣ, ଭାବାତୀତ ଅଦ୍ୱୈତରାଜ୍ୟର ଭୂମାନନ୍ଦ ହିଁ ସୀମାବଦ୍ଧ ହୋଇ ଭାବରାଜ୍ୟର ଦର୍ଶନ-ସ୍ପର୍ଶନ ଆଦି ସମ୍ଭୋଗାନନ୍ଦରୂପରେ ପ୍ରକାଶିତ ରହିଅଛି । ଅତଏବ ମଧୁରଭାବର ପରାକାଷ୍ଠାଲାଭରେ ଭାବରାଜ୍ୟର ଚରମ ଭୂମିରେ ଉପନୀତ ହେବା ପରେ ଭାବାତୀତ ଅଦ୍ୱୈତ ଭୂମି ବ୍ୟତୀତ ଅନ୍ୟ କେଉଁଠାକୁ ଆଉ ତାଙ୍କର ମନ ଅଗ୍ରସର ହେବ ?

### ଶ୍ରୀମତ୍ ତୋତାପୁରୀଙ୍କ ଆଗମନ :

ଶ୍ରୀଶ୍ରୀଜଗଦମ୍ବାଙ୍କର ଇଙ୍ଗିତରେ ହିଁ ଯେ ଠାକୁର ଏବେ ଅଦ୍ୱୈତଭାବ-ସାଧନାରେ ଅଗ୍ରସର ହୋଇଥିଲେ, ତାହା ଆମେ ନିମ୍ନଲିଖିତ ଘଟଣାରୁ ସମ୍ୟକ ବୁଝିପାରିବୁ—ସାଗରସଙ୍ଗମରେ ସ୍ନାନ ଓ ପୁରୁଷୋତ୍ତମକ୍ଷେତ୍ରରେ ଶ୍ରୀଶ୍ରୀଜଗନ୍ନାଥଦେବଙ୍କର ସାକ୍ଷାତ ପ୍ରକାଶ ଦର୍ଶନ କରିବେ ବୋଲି ପରିବ୍ରାଜକାଚାର୍ଯ୍ୟ ଶ୍ରୀମତ୍ ତୋତାପୁରୀ ଏହି ସମୟରେ ମଧ୍ୟଭାରତଠାରୁ କିଛିକାଳ ଯଦୃଚ୍ଛା ଭ୍ରମଣ କରୁ କରୁ ବଙ୍ଗ ପ୍ରଦେଶରେ ଆସି ପହଞ୍ଚିଲେ । ପୁଣ୍ୟତୋୟା ନର୍ମଦାତୀରରେ ବହୁକାଳ ଏକାନ୍ତବାସପୂର୍ବକ ସାଧନଭଜନରେ ନିମଗ୍ନ ରହି ସେ ଏହାପୂର୍ବରୁ ନିର୍ବିକଳ୍ପ ସମାଧି ପଥରେ ବ୍ରହ୍ମ ସାକ୍ଷାତ୍‌କାର କରିଥିଲେ, ଏକଥାର ପରିଚୟ ସେଠାର ପ୍ରାଚୀନ ସାଧୁମାନେ ଏବେ ମଧ୍ୟ ଦେଇଥାଆନ୍ତି । ବ୍ରହ୍ମଜ୍ଞ ହେବା ପରେ ତାଙ୍କ ମନରେ ଯଦୃଚ୍ଛା ପରିଭ୍ରମଣର ସଂକଳ୍ପ ଉଦିତ ହେବାରୁ ଏବଂ ଏହାର ପ୍ରେରଣାରେ ସେ ପୂର୍ବ ଭାରତ ଆଗମନପୂର୍ବକ ତୀର୍ଥରୁ ତୀର୍ଥାନ୍ତରକୁ ଭ୍ରମଣ କରୁଥିଲେ । ଆତ୍ମାରାମ ପୁରୁଷଗଣଙ୍କ ସମାଧି-ଭିନ୍ନ କାଳରେ ବାହ୍ୟଜଗତର

ଉପଲବ୍ଧି ହେଲେ ମଧ ତାହାକୁ ବ୍ରହ୍ମ ବୋଲି ଅନୁଭବ ହୋଇଥାଏ । ମାୟାକଳ୍ପିତ ଜଗତ ଅନ୍ତର୍ଗତ ବିଶେଷ ବିଶେଷ ବ୍ୟକ୍ତି, ଦେଶ, କାଳ ଓ ପଦାର୍ଥରେ କମ୍-ବେଶୀ ବ୍ରହ୍ମପ୍ରକାଶ ଉପଲବ୍ଧି କରି ସେମାନେ ସେହି କାଳରେ ଦେବସ୍ଥାନ, ତୀର୍ଥ ଓ ସାଧୁଦର୍ଶନରେ ପ୍ରବୃତ୍ତ ହୋଇଥାନ୍ତି । ଅତଏବ ବ୍ରହ୍ମଜ୍ଞ ତୋତାଙ୍କ ତୀର୍ଥଦର୍ଶନରେ ପ୍ରବୃତ୍ତ ହେବା ବିଚିତ୍ର ନୁହେଁ । ପୂର୍ବୋକ୍ତ ତୀର୍ଥଦ୍ୱୟ ଦର୍ଶନାନ୍ତେ ଭାରତର ଉତ୍ତର-ପଶ୍ଚିମାଞ୍ଚଳକୁ ଫେରିବା ସମୟରେ ସେ ଦକ୍ଷିଣେଶ୍ୱର ଆଗମନ କରିଥିଲେ । ତିନି ଦିନରୁ ଅଧିକ ସମୟ ଗୋଟିଏ ସ୍ଥାନରେ ଯାପନ କରିବା ତାଙ୍କର ନିୟମ ନ ଥିଲା । ସେଥିପାଇଁ କାଳୀମନ୍ଦିରରେ ତିନିଦିବସ ମାତ୍ର ଅତିବାହିତ କରିବେ ସ୍ଥିର କରିଥିଲେ । ଶ୍ରୀଶ୍ରୀଜଗଦମ୍ବା ତାଙ୍କର ଜ୍ଞାନର ମାତ୍ରା ସମ୍ପୂର୍ଣ୍ଣ କରିଦେବେ ବୋଲି ଏବଂ ତାଙ୍କ ଦ୍ୱାରା ନିଜ ବାଳକକୁ (ଠାକୁରଙ୍କୁ) ବେଦାନ୍ତ ସାଧନ କରାଇବେ ବୋଲି ଯେ ତାଙ୍କୁ ଏଠାକୁ ଅଣାଇଛନ୍ତି, ଏକଥା ତାଙ୍କର ସେତେବେଳେ ହୃଦୟଙ୍ଗମ ହୋଇ ନ ଥିଲା ।

## ଠାକୁର ଓ ତୋତାପୁରୀଙ୍କର ପ୍ରଥମ ସମ୍ଭାଷଣ ଏବଂ ଠାକୁରଙ୍କର ବେଦାନ୍ତ ସାଧନା ବିଷୟରେ ପ୍ରତ୍ୟାଦେଶ ଲାଭ :

କାଳୀବାଡ଼ୀକୁ ଆସି ତୋତାପୁରୀ ପ୍ରଥମେ ହିଁ ଘାଟର ସୁବୃହତ୍ ଚାନ୍ଦିନୀରେ ପହଞ୍ଚିଲେ । ଠାକୁର ସେତେବେଳେ ସେହି ଚାନ୍ଦିନୀର ଗୋଟିଏ ପାଖରେ ଅନ୍ୟମନସ୍କ ଭାବରେ ବସିଥିଲେ । ତାଙ୍କର ତପୋଦୀପ୍ତ ଭାବୋଜ୍ଜ୍ୱଳ ମୁଖମଣ୍ଡଳରେ ଦୃଷ୍ଟି ପଡ଼ିବା ମାତ୍ରେ ଶ୍ରୀମତ୍ ତୋତା ଆକୃଷ୍ଟ ହେଲେ, ଏବଂ ପ୍ରାଣେ ପ୍ରାଣେ ଅନୁଭବ କଲେ, ଏବ୍ୟକ୍ତି ସାଧାରଣ ପୁରୁଷ ନୁହନ୍ତି — ବେଦାନ୍ତସାଧନାର ଏପରି ଉତ୍ତମ ଅଧିକାରୀ କ୍ୱଚିତ୍ ଦେଖାଯାଇଥାଆନ୍ତି । ତନ୍ତ୍ରପ୍ରାଣ ବଙ୍ଗ ପ୍ରଦେଶରେ ବେଦାନ୍ତର ଏପରି ଅଧିକାରୀ ଅଛନ୍ତି ଭାବି ସେ ବିସ୍ମୟରେ ଅଭିଭୂତ ହୋଇପଡ଼ିଲେ ଏବଂ ଠାକୁରଙ୍କୁ ବିଶେଷରୂପେ ନିରୀକ୍ଷଣପୂର୍ବକ ସ୍ୱତଃପ୍ରଣୋଦିତ ହୋଇ ପଚାରିଲେ, "ତୁମକୁ ଉତ୍ତମ ଅଧିକାରୀ ବୋଲି ମନେ ହେଉଛି, ତୁମେ ବେଦାନ୍ତସାଧନା କରିବ ?"

ଜଟାଜୁଟଧାରୀ ଦୀର୍ଘକାୟ ଉଲଗ୍ନ ସନ୍ନ୍ୟାସୀଙ୍କର ଏହି ପ୍ରଶ୍ନରେ ଠାକୁର ଉତ୍ତର ଦେଲେ, "କ'ଣ କରିବି ନ କରିବି, ମୁଁ କିଛି ଜାଣେ ନାହିଁ — ମୋର ମା ସବୁ ଜାଣନ୍ତି, ସେ ଆଦେଶ ଦେଲେ କରିବି ।"

ଶ୍ରୀମତ୍ ତୋତା କହିଲେ, "ତେବେ ଯାଅ, ତୁମର ମା'ଙ୍କୁ ଏବିଷୟ ପଚାରି ଆସ । କାରଣ ମୁଁ ଏଠାରେ ବେଶୀ ଦିନ ରହିବି ନାହିଁ ।"

ଠାକୁର ଏହି କଥାରେ କିଛି ଉତ୍ତର ନ ଦେଇ ଧୀରେ ଧୀରେ ଜଗଦମ୍ବାଙ୍କର ମନ୍ଦିରକୁ ଗଲେ ଏବଂ ଭାବାବିଷ୍ଟ ହୋଇ ଶ୍ରୀଶ୍ରୀଜଗନ୍ମାତାଙ୍କର ବାଣୀ ଶୁଣିବାକୁ

ପାଇଲେ—"ଯାଅ ଶିକ୍ଷା କର, ତୁମକୁ ଶିଖାଇବା ପାଇଁ ହିଁ ସନ୍ନ୍ୟାସୀଙ୍କର ଏଠାକୁ ଆଗମନ ହୋଇଅଛି ।"

**ଶ୍ରୀଶ୍ରୀଜଗଦମ୍ବାଙ୍କ ସମ୍ବନ୍ଧରେ ଶ୍ରୀମତ୍ ତୋତାପୁରୀଙ୍କର ଯେପରି ଧାରଣା ଥିଲା :**

ଅର୍ଦ୍ଧବାହ୍ୟଭାବାବିଷ୍ଟ ଠାକୁର ସେତେବେଳେ ହର୍ଷୋତ୍‌ଫୁଲ୍ଲ ବଦନରେ ତୋତାପୁରୀ ଗୋସ୍ୱାମୀଙ୍କ ନିକଟକୁ ଆସି ତାଙ୍କର ମାତାଙ୍କର ଏପରି ପ୍ରତ୍ୟାଦେଶ କଥା କହିଲେ । ମନ୍ଦିର ଅଭ୍ୟନ୍ତରରେ ପ୍ରତିଷ୍ଠିତ ଦେବୀଙ୍କୁ ହିଁ ଠାକୁର ପ୍ରେମରେ ଏପରି ମାତୃସମ୍ବୋଧନ କରୁଛନ୍ତି ଜାଣି ଶ୍ରୀମତ୍ ତୋତା ତାଙ୍କର ବାଳକ ସଦୃଶ ସରଳଭାବରେ ମୁଗ୍ଧ ହେଲେ ମଧ, ତାଙ୍କର ଏପରି ଆଚରଣ ଅଜ୍ଞତା ଓ କୁସଂସ୍କାରଯୁକ୍ତ ବୋଲି ବୁଝିଲେ । ଏପରି ସିଦ୍ଧାନ୍ତରେ ତାଙ୍କର ଓଠରେ କରୁଣା ଓ ବ୍ୟଙ୍ଗମିଶ୍ରିତ ହାସ୍ୟରେଖା ଦେଖା ଦେଇଥିଲା, ଏକଥା ଆମେ ଅନୁମାନ କରିପାରୁ । କାରଣ ଶ୍ରୀମତ୍ ତୋତାଙ୍କର ତୀକ୍ଷ୍ଣବୁଦ୍ଧି ବେଦାନ୍ତୋକ୍ତ କର୍ମଫଳଦାତା ଈଶ୍ୱରଙ୍କ ବ୍ୟତୀତ ଅନ୍ୟ କୌଣସି ଦେବଦେବୀଙ୍କ ନିକଟରେ ମସ୍ତକ ଅବନତ କରୁ ନ ଥିଲା ଏବଂ ବ୍ରହ୍ମଧ୍ୟାନପରାୟଣ ସଂଯତ ସାଧକଙ୍କ ଏପରି ଈଶ୍ୱରଙ୍କର ଅସ୍ତିତ୍ୱରେ ଶ୍ରଦ୍ଧାପୂର୍ଣ୍ଣ ବିଶ୍ୱାସ ଛଡ଼ା କୃପାପ୍ରାର୍ଥୀ ହୋଇ ତାଙ୍କୁ ଭକ୍ତି ଓ ଉପାସନା ଆଦି କରିବାର ପ୍ରୟୋଜନୀୟତା ସ୍ୱୀକାର କରୁ ନ ଥିଲା । ପୁଣି ତ୍ରିଗୁଣମୟୀ ବ୍ରହ୍ମଶକ୍ତି ମାୟା ? —ତୋତାପୁରୀଜୀ ତାହାକୁ ଭ୍ରମମାତ୍ର ଧାରଣା କରି ତାଙ୍କର ବ୍ୟକ୍ତିଗତ ଅସ୍ତିତ୍ୱ ସ୍ୱୀକାର କରିବା ବା ତାଙ୍କର ପ୍ରସନ୍ନତା ପାଇଁ ଉପାସନାର ଆବଶ୍ୟକତା ଅନୁଭବ କରୁ ନ ଥିଲେ । ଫଳତଃ ଅଜ୍ଞାନବନ୍ଧନରୁ ମୁକ୍ତିଲାଭ ନିମିତ୍ତ ସାଧକର ପୁରୁଷକାର ଅବଲମ୍ବନ ବ୍ୟତୀତ ଈଶ୍ୱର ବା ଶକ୍ତିସଂଯୁକ୍ତ ବ୍ରହ୍ମଙ୍କର କରୁଣା ଓ ସହାୟତା ପ୍ରାର୍ଥନାର କିଞ୍ଚିତ୍ ମାତ୍ର ସାଫଲ୍ୟ ସେ ପ୍ରାଣରେ ଅନୁଭବ କରୁ ନ ଥିଲେ ଏବଂ ଯେଉଁମାନେ ଏପରି କରନ୍ତି, ସେମାନେ ଭ୍ରାନ୍ତସଂସ୍କାରବଶତଃ କରିଥାନ୍ତି ବୋଲି ସିଦ୍ଧାନ୍ତ କରୁଥିଲେ ।

**ଠାକୁରଙ୍କର ଗୁପ୍ତଭାବରେ ସନ୍ନ୍ୟାସ ଗ୍ରହଣର ଅଭିପ୍ରାୟ ଓ ଏହାର କାରଣ :**

ସେ ଯାହାହେଉ, ତାଙ୍କ ନିକଟରେ ଦୀକ୍ଷିତ ହୋଇ ଜ୍ଞାନମାର୍ଗର ସାଧନାରେ ପ୍ରବୃତ୍ତ ହେଲେ ଠାକୁରଙ୍କ ମନର ପୂର୍ବୋକ୍ତ ସଂସ୍କାର ଖୁବ୍‌ଶୀଘ୍ର ଦୂରୀଭୂତ ହେବ ଭାବି ତୋତା ତାଙ୍କୁ ଏବିଷୟରେ ସେତେବେଳେ କିଛି ନ କହି ଅନ୍ୟ ପ୍ରସଙ୍ଗର ଅବତାରଣା କଲେ ଏବଂ କହିଲେ—ବେଦାନ୍ତସାଧନାରେ ଉପଦିଷ୍ଟ ଓ ପ୍ରବୃତ୍ତ ହେବା ପୂର୍ବରୁ ତାଙ୍କୁ ଶିଖାସୂତ୍ର ପରିତ୍ୟାଗପୂର୍ବକ ଯଥାଶାସ୍ତ୍ର ସନ୍ନ୍ୟାସଗ୍ରହଣ କରିବାକୁ ହେବ । ଠାକୁର ଏକଥାରେ ସ୍ୱୀକୃତି ପ୍ରଦାନ କରିବାକୁ

ସାମାନ୍ୟ ଇତଃସ୍ତତ ହୋଇ କହିଲେ—ଗୋପନରେ କଲେ ଯଦି ହୁଏ, ତେବେ ସନ୍ନ୍ୟାସଗ୍ରହଣ କରିବାରେ ତାଙ୍କର କିଛି ଆପତ୍ତି ନାହିଁ । କିନ୍ତୁ ପ୍ରକାଶ୍ୟରେ ଏହା କରି ତାଙ୍କର ଶୋକସନ୍ତପ୍ତା ବୃଦ୍ଧା ଜନନୀଙ୍କର ପ୍ରାଣରେ ବିଷମ ଆଘାତ ପ୍ରଦାନ କରିବାକୁ ସେ କେବେହେଲେ ସମର୍ଥ ହେବେ ନାହିଁ । ତୋତାପୁରୀଜୀ ଠାକୁରଙ୍କର ଏପରି ଅଭିପ୍ରାୟର କଥା ବୁଝିପାରିଲେ ଏବଂ 'ଉତ୍ତମ କଥା, ଶୁଭ ମୁହୂର୍ତ୍ତ ଦେଖି ତୁମକୁ ଗୋପନରେ ହିଁ ଦୀକ୍ଷିତ କରିବି' କହି ପଞ୍ଚବଟୀତଳକୁ ଆଗମନପୂର୍ବକ ସେଠାରେ ଆସନ ଲଗାଇଲେ ।

**ଠାକୁରଙ୍କର ସନ୍ନ୍ୟାସଦୀକ୍ଷାଗ୍ରହଣର ପୂର୍ବ କାର୍ଯ୍ୟସମୂହ ସମ୍ପାଦନ :**

ଏହାପରେ ଶୁଭ ଦିନ ଉପସ୍ଥିତ ଜାଣି ତୋତାପୁରୀଜୀ ଠାକୁରଙ୍କୁ ପିତୃପୁରୁଷଗଣଙ୍କର ତୃପ୍ତି ନିମିତ୍ତ ଶ୍ରାଦ୍ଧାଦି କ୍ରିୟା ସମ୍ପନ୍ନ କରିବାକୁ ଆଦେଶ କଲେ ଏବଂ ଏକାର୍ଯ୍ୟ ଶେଷ ହେଲେ ଶିଷ୍ୟଙ୍କର ନିଜ ଆତ୍ମାର ତୃପ୍ତି ନିମିତ୍ତ ଯଥାବିଧାନରେ ପିଣ୍ଡପ୍ରଦାନ କରାଇଲେ । କାରଣ ସନ୍ନ୍ୟାସ-ଦୀକ୍ଷାଗ୍ରହଣ ସମୟରୁ ସାଧକ ଭୂରାଦି ସମସ୍ତ ଲୋକପ୍ରାପ୍ତିର ଆଶା ଓ ଅଧିକାର ନିଃଶେଷରେ ବର୍ଜନ କରନ୍ତି ବୋଲି ଶାସ୍ତ୍ର ତାଙ୍କୁ ତାପୂର୍ବରୁ ନିଜର ପ୍ରେତ-ପିଣ୍ଡ ନିଜେ ଦେବାକୁ ନିର୍ଦ୍ଦେଶ ଦେଇଛନ୍ତି ।

ଠାକୁର ଯେତେବେଳେ ଯାହାଙ୍କୁ ଗୁରୁପଦରେ ବରଣ କରିଛନ୍ତି, ସେତେବେଳେ ନିଃସଙ୍କୋଚରେ ତାଙ୍କୁ ଆତ୍ମସମର୍ପଣପୂର୍ବକ ସେ ଯେପରି କରିବାକୁ ଆଦେଶ କରିଛନ୍ତି, ଅସୀମ ବିଶ୍ୱାସର ସହିତ ତାହା ଅନୁଷ୍ଠାନ କରିଛନ୍ତି । ଅତଏବ ତୋତାପୁରୀଜୀ ତାଙ୍କୁ ଏବେ ଯେପରି କରିବାକୁ କହୁଥିଲେ, ସେ ତାହା ହିଁ ଅକ୍ଷରେ ଅକ୍ଷରେ ଅନୁଷ୍ଠାନ କରୁଥିଲେ, ଏକଥା କହିବା ବାହୁଲ୍ୟ । ଶ୍ରାଦ୍ଧାଦି ପୂର୍ବ କ୍ରିୟା ସମାପନ କରି ସେ ସଂଯତ ହୋଇ ରହିଲେ ଏବଂ ପଞ୍ଚବଟୀସ୍ଥ ନିଜ ସାଧନକୁଟୀରରେ ଗୁରୁନିର୍ଦ୍ଦିଷ୍ଟ ସକଳ ଦ୍ରବ୍ୟ ଆହରଣ କରି ଆନନ୍ଦରେ ଶୁଭମୁହୂର୍ତ୍ତକୁ ଅପେକ୍ଷା କରିବାକୁ ଲାଗିଲେ ।

ଏହାପରେ ରାତ୍ରି-ଅବସାନରେ ଶୁଭ ବ୍ରାହ୍ମମୁହୂର୍ତ୍ତର ଉଦୟ ହେବାରୁ ଗୁରୁ ଓ ଶିଷ୍ୟ ଉଭୟେ କୁଟୀରରେ ସମାଗତ ହେଲେ । ପୂର୍ବକୃତ୍ୟ ସମାପ୍ତ ହେଲା, ହୋମାଗ୍ନି ପ୍ରଜ୍ୱଳିତ ହେଲା ଏବଂ ଈଶ୍ୱରାର୍ଥେ ସର୍ବସ୍ୱ-ତ୍ୟାଗରୂପକ ଯେଉଁ ବ୍ରତ ସନାତନ କାଳରୁ ଗୁରୁପରମ୍ପରାଗତ ହୋଇ ଭାରତକୁ ଏବେ ମଧ୍ୟ ବ୍ରହ୍ମଜ୍ଞପଦବୀରେ ସୁପ୍ରତିଷ୍ଠିତ ରଖିଅଛି, ସେହି ତ୍ୟାଗବ୍ରତ ଅବଲମ୍ବନ କରିବା ପୂର୍ବରୁ ଉଚ୍ଚାରିତ ମନ୍ତ୍ରସମୂହର ପୂତଗମ୍ଭୀର ଧ୍ୱନିରେ ପଞ୍ଚବଟୀ-ଉପବନ ମୁଖରିତ ହୋଇ ଉଠିଲା । ପୁଣ୍ୟତୋୟା ଭାଗୀରଥୀର ସ୍ନେହପୂର୍ଣ୍ଣ କମ୍ପିତ ବକ୍ଷରେ ସେହି ଧ୍ୱନିର ସୁଖସ୍ପର୍ଶ ଯେପରି ନୂତନ ଜୀବନର ସଞ୍ଚାର ଆନୟନ କଲା ଏବଂ ଯୁଗଯୁଗାନ୍ତରର ଅଲୌକିକ ସାଧକ ବହୁକାଳ ପରେ ପୁଣି ଭାରତର ଏବଂ

ସମଗ୍ର ଜଗତର ବହୁଜନହିତାର୍ଥ ସର୍ବସ୍ୱତ୍ୟାଗରୂପକ ବ୍ରତ ଅବଲମ୍ବନ କରୁଛନ୍ତି — ଏସମ୍ବାଦ ଜଣାଇବାକୁ ହିଁ ଭାଗୀରଥି ଯେପରି ଆନନ୍ଦରେ କଳ କଳ ଗାନ କରି ଦିଗନ୍ତରରେ ପ୍ରବାହିତ ହେବାକୁ ଲାଗିଲା ।

ଗୁରୁ ମନ୍ତ୍ରପାଠରେ ପ୍ରବୃତ୍ତ ହେଲେ, ଶିଷ୍ୟ ଅବହିତଚିତ୍ତରେ ତାହାଙ୍କୁ ଅନୁସରଣପୂର୍ବକ ସେସବୁ ମନ୍ତ୍ର ଉଚ୍ଚାରଣ କରି ସମିଦ୍ଧ ହୁତାଶନରେ ଆହୁତିପ୍ରଦାନ ପାଇଁ ପ୍ରସ୍ତୁତ ହେଲେ । ପ୍ରଥମେ ପ୍ରାର୍ଥନାମନ୍ତ୍ର ଉଚ୍ଚାରିତ ହେଲା —

**ସନ୍ନ୍ୟାସ ଗ୍ରହଣ ପୂର୍ବର ପ୍ରାର୍ଥନାମନ୍ତ୍ର :**

"ପରବ୍ରହ୍ମତତ୍ତ୍ୱ ମୋତେ ପ୍ରାପ୍ତ ହେଉ । ପରମାନନ୍ଦଲକ୍ଷଣୋପେତ ବସ୍ତୁ ମୋତେ ପ୍ରାପ୍ତ ହେଉ । ଅଖଣ୍ଡୈକରସ ମଧୁମୟ ବ୍ରହ୍ମବସ୍ତୁ ମୋଠାରେ ପ୍ରକାଶିତ ହେଉ । ହେ ବ୍ରହ୍ମବିଦ୍ୟାସହ ନିତ୍ୟ ବର୍ତ୍ତମାନ ପରାମାତ୍ମନ ! ଦେବ-ମନୁଷ୍ୟ ଆଦି ତୁମର ସମଗ୍ର ସନ୍ତାନଗଣଙ୍କ ମଧ୍ୟରେ ମୁଁ ତୁମର ବିଶେଷକରୁଣାଯୋଗ୍ୟ ବାଳକ ସେବକ । ହେ ସଂସାର-ଦୁଃସ୍ୱପ୍ନହାରିନ୍ ପରମେଶ୍ୱର ! ଦ୍ୱୈତପ୍ରତିଭାରୂପକ ମୋର ଯାବତୀୟ ଦୁଃସ୍ୱପ୍ନ ବିନାଶ କର । ହେ ପରମାତ୍ମନ୍ ! ମୋର ଯାବତୀୟ ପ୍ରାଣବୃତ୍ତି ମୁଁ ନିଃଶେଷରେ ତୁମକୁ ଆହୁତି ପ୍ରଦାନପୂର୍ବକ ଇନ୍ଦ୍ରିୟଗଣକୁ ନିରୁଦ୍ଧ କରି ତଦେକଚିତ୍ତ ହେଉଅଛି । ହେ ସର୍ବପ୍ରେରକ ଦେବ ! ଜ୍ଞାନପ୍ରତିବନ୍ଧକ ଯାବତୀୟ ମଳିନତା ମୋଠାରୁ ବିଦୂରିତ କରି ଅସମ୍ଭାବନା-ବିପରୀତଭାବନାଦିରହିତ ତତ୍ତ୍ୱଜ୍ଞାନ ଯେପରି ମୋଠାରେ ଉପସ୍ଥିତ ହେବ, ତାହା ହିଁ କର । ସୂର୍ଯ୍ୟ, ବାୟୁ, ନଦୀସକଳର ସ୍ନିଗ୍ଧ ନିର୍ମଳ ବାରି, ବ୍ରୀହିଯବାଦି ଶସ୍ୟ, ବନସ୍ପତିସମୂହ, ଜଗତର ସକଳ ପଦାର୍ଥ ତୁମର ନିର୍ଦ୍ଦେଶରେ ଅନୁକୂଳପ୍ରକାଶଯୁକ୍ତ ହୋଇ ମୋତେ ତତ୍ତ୍ୱଜ୍ଞାନଲାଭରେ ସହାୟତା କରୁ । ହେ ବ୍ରହ୍ମନ ! ତୁମେ ହିଁ ଜଗତରେ ବିଶେଷଶକ୍ତିମାନ ନାନାରୂପରେ ପ୍ରକାଶିତ ହୋଇ ରହିଅଛ । ଶରୀର-ମନ-ଶୁଦ୍ଧି ଦ୍ୱାରା ତତ୍ତ୍ୱଜ୍ଞାନଧାରଣର ଯୋଗ୍ୟତା ଲାଭ ପାଇଁ ମୁଁ ଅଗ୍ନିସ୍ୱରୂପ ତୁମକୁ ଆହୁତି ପ୍ରଦାନ କରୁଅଛି — ପ୍ରସନ୍ନ ହୁଅ ।"[୧]

**ସନ୍ନ୍ୟାସ ଗ୍ରହଣ ପୂର୍ବରୁ ସମ୍ପାଦିତ ବିରଜାହୋମର ସଂକ୍ଷେପାର୍ଥ :**

ଅନନ୍ତର ବିରଜାହୋମ ଆରମ୍ଭ ହେଲା — "ପୃଥ୍ୱୀ, ଅପ, ତେଜଃ, ବାୟୁ ଓ ଆକାଶ-ରୂପରେ ମୋ ମଧ୍ୟରେ ଅବସ୍ଥିତ ଭୂତ ପଞ୍ଚକ ଶୁଦ୍ଧ ହେଉ; ଆହୂତି ପ୍ରଭାବରେ ରଜୋଗୁଣପ୍ରସୂତ ମଳିନତାରୁ ବିମୁକ୍ତ ହୋଇ ମୁଁ ଯେପରି ଜ୍ୟୋତିଃସ୍ୱରୂପ ହୁଏ — ସ୍ୱାହା ।

"ପ୍ରାଣ, ଅପାନ, ସମାନ, ଉଦାନ, ବ୍ୟାନ ଆଦି ମୋ ମଧ୍ୟରେ ଅବସ୍ଥିତ ବାୟୁ ସକଳ ଶୁଦ୍ଧ ହେଉ; ଆହୁତିପ୍ରଭାବରେ ରଜୋଗୁଣପ୍ରସୂତ ମଳିନତାଠାରୁ ବିମୁକ୍ତ ହୋଇ ମୁଁ ଯେପରି ଜ୍ୟୋତିଃସ୍ୱରୂପ ହୁଏ — ସ୍ୱାହା ।

୧. ତ୍ରିସୁପର୍ଣ୍ଣମନ୍ତ୍ରର ଭାବାର୍ଥ ।

''ଅନ୍ନମୟ, ପ୍ରାଣମୟ, ମନୋମୟ, ବିଜ୍ଞାନମୟ, ଆନନ୍ଦମୟ ନାମକ ମୋର କୋଷ-ପଞ୍ଚକ ଶୁଦ୍ଧ ହେଉ; ଆହୁତିପ୍ରଭାବରେ ରଜୋଗୁଣପ୍ରସୂତ ମଳିନତାରୁ ବିମୁକ୍ତ ହୋଇ ମୁଁ ଯେପରି ଜ୍ୟୋତିଃସ୍ୱରୂପ ହୁଏ—ସ୍ୱାହା ।

''ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ-ପ୍ରସୂତ ମୋ ମଧ୍ୟରେ ଅବସ୍ଥିତ ବିଷୟସଂସ୍କାରସମୂହ ଶୁଦ୍ଧ ହେଉ; ଆହୁତିପ୍ରଭାବରେ ରଜୋଗୁଣ ପ୍ରସୂତ ମଳିନତାରୁ ବିମୁକ୍ତ ହୋଇ ମୁଁ ଯେପରି ଜ୍ୟୋତିଃସ୍ୱରୂପ ହୁଏ—ସ୍ୱାହା ।

''ମୋର ମନ, ବାକ୍ୟ, କାୟ, କର୍ମ ଆଦି ଶୁଦ୍ଧ ହେଉ; ଆହୁତିପ୍ରଭାବରେ ରଜୋଗୁଣପ୍ରସୂତ ମଳିନତାରୁ ବିମୁକ୍ତ ହୋଇ ମୁଁ ଯେପରି ଜ୍ୟୋତିଃସ୍ୱରୂପ ହୁଏ—ସ୍ୱାହା ।

''ହେ ଅଗ୍ନିଶରୀରରେ ଶୟନଶୀଳ ! ଜ୍ଞାନ-ପ୍ରତିବନ୍ଧ-ହରଣ-କୁଶଳ, ଲୋହିତାକ୍ଷ ପୁରୁଷ, ଜାଗରିତ ହୁଅ । ହେ ଅଭୀଷ୍ଟପୂରଣକାରିନ୍ ! ତତ୍ତ୍ୱଜ୍ଞାନ ଲାଭ ପଥରେ ମୋର ଯାହା କିଛି ପ୍ରତିବନ୍ଧକ ଅଛି, ସେହି ସମସ୍ତ ନାଶ କର ଏବଂ ଚିତ୍ତର ସମଗ୍ର ସଂସ୍କାର ସମ୍ପୂର୍ଣ୍ଣରୂପରେ ଶୁଦ୍ଧ ହୋଇ ଯେପରି ଗୁରୁମୁଖରେ ଶ୍ରୁତ ଜ୍ଞାନ ମୋର ଅନ୍ତରରେ ସମ୍ୟକ ଉଦିତ ହୁଏ, ତାହା କରିଦିଅ; ଆହୁତି ଦ୍ୱାରା ରଜୋଗୁଣପ୍ରସୂତ ମଳିନତା ବିଦୁରିତ ହୋଇ ମୁଁ ଯେପରି ଜ୍ୟୋତିଃସ୍ୱରୂପ ହୁଏ—ସ୍ୱାହା ।

''ଚିଦାଭାସ ବ୍ରହ୍ମସ୍ୱରୂପ ମୁଁ ଦାରା, ପୁତ୍ର, ସମ୍ପଦ, ଲୋକମାନ୍ୟ, ସୁନ୍ଦର ଶରୀରାଦି ଲାଭର ସମସ୍ତ ବାସନା ଅଗ୍ନିରେ ଆହୁତିପ୍ରଦାନ ପୂର୍ବକ ନିଃଶେଷରେ ତ୍ୟାଗ କରୁଅଛି—ସ୍ୱାହା ।''

**ଠାକୁରଙ୍କର ଶିଖାସୂତ୍ରାଦି ପରିତ୍ୟାଗପୂର୍ବକ ସନ୍ନ୍ୟାସଗ୍ରହଣ :**

ଏପରି ବହୁତ ଆହୁତି ପ୍ରଦତ୍ତ ହେବା ପରେ 'ଭୂରାଦି ସକଳ ଲୋକ ଲାଭର ପ୍ରତ୍ୟାଶା ମୁଁ ଏହି ମୁହୂର୍ତ୍ତରୁ ତ୍ୟାଗ କଲି' ଏବଂ 'ଜଗତର ସର୍ବଭୂତଙ୍କୁ ଅଭୟ ପ୍ରଦାନ କରୁଅଛି'—ବୋଲି ହୋମ ପରିସମାପ୍ତି ହେଲା । ଅନନ୍ତର ଶିଖା, ସୂତ୍ର ଓ ଯଜ୍ଞୋପବୀତ ଯଥାବିଧାନରେ ଆହୁତି ଦେଇ ଆବହମାନକାଳରୁ ସାଧକ ପରମ୍ପରାନିଷେବିତ ଗୁରୁପ୍ରଦତ୍ତ କୌପୀନ, କାଷାୟ ଓ ନାମରେ[୧] ଭୂଷିତ ହୋଇ ଠାକୁର ତୋତାପୁରୀଜୀଙ୍କ ନିକଟରୁ ଉପଦେଶ-ଗ୍ରହଣ ନିମିତ୍ତ ଉପବିଷ୍ଟ ହେଲେ ।

---

୧. ଆମମାନଙ୍କ ମଧ୍ୟରୁ କେହି କେହି କହନ୍ତି, ସନ୍ନ୍ୟାସଦୀକ୍ଷାଦାନ ସମୟରେ ଶ୍ରୀମତ୍ ତୋତାପୁରୀ ଗୋସ୍ୱାମୀ ଠାକୁରଙ୍କୁ 'ଶ୍ରୀରାମକୃଷ୍ଣ' ନାମ ପ୍ରଦାନ କରିଥିଲେ । ଅନ୍ୟ କେହି କେହି କହନ୍ତି, ଠାକୁରଙ୍କର ପରମଭକ୍ତ ସେବକ ଶ୍ରୀଯୁକ୍ତ ମଥୁରମୋହନ ହିଁ ତାହାଙ୍କୁ ସେହି ନାମରେ ପ୍ରଥମେ ଅଭିହିତ କରିଥିଲେ । ଆମମାନଙ୍କ ନିକଟରେ ପ୍ରଥମ ମତବାଦଟି ସମୀଚୀନ ବୋଲି ମନେ ହୁଏ ।

### ଠାକୁରଙ୍କର ବ୍ରହ୍ମସ୍ୱରୂପରେ ଅବସ୍ଥାନ ନିମିତ୍ତ ଶ୍ରୀମତ୍ ତୋତାପୁରୀଙ୍କର ପ୍ରେରଣା :

ଅନନ୍ତର ବ୍ରହ୍ମଜ୍ଞ ତୋତାପୁରୀ ଠାକୁରଙ୍କୁ ବେଦାନ୍ତପ୍ରସିଦ୍ଧ 'ନେତି ନେତି' ଉପାୟ ଅବଲମ୍ବନପୂର୍ବକ ବ୍ରହ୍ମସ୍ୱରୂପରେ ଅବସ୍ଥାନ ପାଇଁ ଉତ୍ସାହିତ କରିବାକୁ ଲାଗିଲେ । କହିଲେ—

ନିତ୍ୟଶୁଦ୍ଧବୁଦ୍ଧମୁକ୍ତସ୍ୱଭାବ, ଦେଶକାଳ ଆଦି ଦ୍ୱାରା ସର୍ବଦା ଅପରିଚ୍ଛିନ୍ନ ଏକମାତ୍ର ବ୍ରହ୍ମବସ୍ତୁ ହିଁ ନିତ୍ୟ ସତ୍ୟ । ଅଘଟଣ-ଘଟଣ-ପଟୀୟସୀ ମାୟା ନିଜ ପ୍ରଭାବରେ ତାଙ୍କୁ ନାମରୂପ ଦ୍ୱାରା ଖଣ୍ଡିତବତ୍ ପ୍ରତୀତ କରାଇଲେ ମଧ୍ୟ ସେ କଦାପି ବାସ୍ତବିକ୍ ଏପରି ନୁହଁନ୍ତି । କାରଣ ସମାଧିସମୟରେ ମାୟାଜନିତ ଦେଶକାଳ ବା ନାମରୂପର ବିନ୍ଦୁମାତ୍ର ଉପଲବ୍ଧି ହୁଏ ନାହିଁ । ଅତଏବ ନାମରୂପର ସୀମା ମଧ୍ୟରେ ଯାହାକିଛି ଅବସ୍ଥିତ, ତାହା କଦାପି ନିତ୍ୟବସ୍ତୁ ହୋଇପାରେ ନାହିଁ, ସେସବୁକୁ ଦୂରରେ ପରିହାର କର । ନାମରୂପର ଦୃଢ଼ ପିଞ୍ଜରାକୁ ସିଂହବିକ୍ରମରେ ଭେଦ କରି ନିର୍ଗତ ହୁଅ । ନିଜ ମଧ୍ୟରେ ଅବସ୍ଥିତ ଆତ୍ମତତ୍ତ୍ୱର ଅନ୍ୱେଷଣରେ ବୁଡ଼ି ଯାଅ । ସମାଧିସହାୟରେ ତାଙ୍କଠାରେ ଅବସ୍ଥାନ କର; ଦେଖିବ, ନାମରୂପାତ୍ମକ ଜଗତ କେଉଁଆଡ଼େ ଲୁପ୍ତ ହୋଇଯିବ, କ୍ଷୁଦ୍ର 'ମୁଁ-ଜ୍ଞାନ' ବିରାଟରେ ଲୀନ ଏବଂ ସ୍ତବ୍ଧୀଭୂତ ହେବ ଓ ଅଖଣ୍ଡ ସଚ୍ଚିଦାନନ୍ଦଙ୍କୁ ନିଜ ସ୍ୱରୂପ ବୋଲି ସାକ୍ଷାତ୍ ପ୍ରତ୍ୟକ୍ଷ କରିବ । ''ଯେଉଁ ଜ୍ଞାନାବଲମ୍ବନରେ ଜଣେ ବ୍ୟକ୍ତି ଅନ୍ୟ ଜଣଙ୍କୁ ଦେଖେ, ଜାଣେ କିମ୍ବା ଅନ୍ୟର କଥା ଶୁଣେ, ତାହା ଅଳ୍ପ ବା କ୍ଷୁଦ୍ର; ଯାହା ଅଳ୍ପ ତାହା ତୁଚ୍ଛ— ସେଥିରେ ପରମାନନ୍ଦ ନାହିଁ; ମାତ୍ର ଯେଉଁ ଜ୍ଞାନରେ ଅବସ୍ଥିତ ହୋଇ ଜଣେ ବ୍ୟକ୍ତି ଅନ୍ୟ ଜଣକୁ ଜାଣେ ନାହିଁ ବା ଦେଖେ ନାହିଁ ବା ଅନ୍ୟର ବାଣୀ ଇନ୍ଦ୍ରିୟଗୋଚର କରେ ନାହିଁ—ତାହା ହିଁ ଭୂମା ବା ମହାନ୍, ତତ୍‌ସହାୟତାରେ ପରମାନନ୍ଦରେ ଅବସ୍ଥିତି ହୋଇଥାଏ । ଯିଏ ସର୍ବ ସମୟରେ ସମସ୍ତଙ୍କ ଅନ୍ତରରେ ବିଜ୍ଞାତା ହୋଇ ରହିଅଛନ୍ତି, କେଉଁ ମନ ବୁଦ୍ଧି ତାଙ୍କୁ ଜାଣିବାକୁ ସମର୍ଥ ହେବ ?''

### ଠାକୁରଙ୍କର ମନକୁ ନିର୍ବିକଳ୍ପ କରିବାର ଚେଷ୍ଟା ନିଷ୍ଫଳ ହେବାରୁ ତୋତାପୁରୀଙ୍କର ଆଚରଣ ଏବଂ ଠାକୁରଙ୍କର ନିର୍ବିକଳ୍ପ ସମାଧିଲାଭ :

ଶ୍ରୀମତ୍ ତୋତାପୁରୀ ପୂର୍ବୋକ୍ତ ପ୍ରକାରରେ ନାନା ଯୁକ୍ତି ଓ ସିଦ୍ଧାନ୍ତ-ବାକ୍ୟ ସାହାଯ୍ୟରେ ଠାକୁରଙ୍କୁ ସେଦିନ ସମାହିତ କରିବାକୁ ଚେଷ୍ଟା କରିଥିଲେ । ଠାକୁରଙ୍କଠାରୁ ଶୁଣିଛି, ସେ ଯେପରି ତାଙ୍କର ଆଜୀବନ ସାଧନାଲବ୍ଧ ଉପଲବ୍ଧି-ସମୂହ ଅନ୍ତରରେ ପ୍ରବେଶ କରାଇ ତାଙ୍କୁ ତତ୍‌କ୍ଷଣାତ୍ ଅଦ୍ୱୈତଭାବରେ ସମାହିତ କରିଦେବା ନିମିତ୍ତ ବଦ୍ଧପରିକର ହୋଇଥିଲେ । ସେ କହୁଥିଲେ, ''ଦୀକ୍ଷା ପ୍ରଦାନ

କରି, ଲେଙ୍ଗ୍‌ଟା, (ଉଲଗ୍ନ ସାଧୁ) ନାନା ସିଦ୍ଧାନ୍ତବାକ୍ୟର ଉପଦେଶ ଦେବାକୁ ଲାଗିଲେ ଏବଂ ମନକୁ ସର୍ବତୋଭାବରେ ନିର୍ବିକଳ୍ପ କରି ଆତ୍ମଧ୍ୟାନରେ ନିମଗ୍ନ ହୋଇଯିବାକୁ କହିଲେ । କିନ୍ତୁ ମୋର ଏପରି ହେଲା ଯେ, ଧ୍ୟାନ କରିବାକୁ ବସି ଚେଷ୍ଟା କରି ମଧ୍ୟ ମନକୁ ନିର୍ବିକଳ୍ପ କରିପାରିଲି ନାହିଁ ଅର୍ଥାତ୍ ନାମରୂପର ଗଣ୍ଡିରୁ ମୁକ୍ତ କରି ପାରିଲି ନାହିଁ । ଅନ୍ୟ ସମସ୍ତ ବିଷୟରୁ ମନ ସହଜରେ ଉଠି ଯିବାକୁ ଲାଗିଲା, ମାତ୍ର ମନକୁ ଏପରି ଉଠାଇ ଆଣିବା ମାତ୍ରେ ଶ୍ରୀଶ୍ରୀଜଗଦମ୍ବାଙ୍କର ଚିରପରିଚିତ ଚିଦ୍‌ଘନୋଜ୍ଜ୍ୱଳ ମୂର୍ତ୍ତି ଜ୍ୱଳନ୍ତ ଜୀବନ୍ତଭାବରେ ସମୁଦିତ ହୋଇ ସର୍ବପ୍ରକାରର ନାମରୂପତ୍ୟାଗ କଥା ଏକାବେଳକେ ଭୁଲାଇ ଦେବାକୁ ଲାଗିଲା । ସିଦ୍ଧାନ୍ତ ବାକ୍ୟସମୂହ ଶ୍ରବଣପୂର୍ବକ ଧ୍ୟାନରେ ବସି ଯେତେବେଳେ ପରକୁ ପର ତିନିଦିନ କାଳ ଏପରି ହେବାକୁ ଲାଗିଲା, ସେତେବେଳେ ନିର୍ବିକଳ୍ପ ସମାଧି ସମ୍ବନ୍ଧରେ ପ୍ରାୟ ଏକ ପ୍ରକାର ନିରାଶ ହେଲି ଏବଂ ଆଖିଖୋଲି ଲେଙ୍ଗ୍‌ଟାକୁ କହିଲି, 'ହେଲା ନାହିଁ, ମନକୁ ସମ୍ପୂର୍ଣ୍ଣ ନିର୍ବିକଳ୍ପ କରି ଆତ୍ମଧ୍ୟାନରେ ମଗ୍ନ ହୋଇପାରିଲି ନାହିଁ ।' ଲେଙ୍ଗ୍‌ଟା ଏହାଶୁଣି ଅତ୍ୟନ୍ତ ଉତ୍ତେଜିତ ହୋଇ ତୀବ୍ର ତିରସ୍କାର କରି କହିଲେ, 'କ୍ୟୋଁ ନେହିଁ ହୋଗା ?' ଅର୍ଥାତ୍—କ'ଣ ! ହେବ ନାହିଁ, ଏତେ ବଡ଼ କଥା ! କହି କୁଟୀର ମଧ୍ୟରେ ଇତଃସ୍ତତଃ ନିରୀକ୍ଷଣ କରି ଖଣ୍ଡିଏ ଭଙ୍ଗାକାଚ ଦେଖି ତାକୁ ନେଇ ଛୁଞ୍ଚିପରି ତାହାର ତୀକ୍ଷ୍ଣ ଅଗ୍ରଭାଗଟିକୁ ଭ୍ରୂମଧ୍ୟରେ ଜୋର୍‌ରେ ବିଦ୍ଧ କରି କହିଲେ, 'ଏହି ବିନ୍ଦୁରେ ମନକୁ ଏକାଗ୍ର କର ।' ସେତେବେଳେ ଦୃଢ଼ ସଂକଳ୍ପ କରି ପୁନରାୟ ଧ୍ୟାନରେ ବସିଲି ଏବଂ ଜଗଦମ୍ବାଙ୍କର ଶ୍ରୀମୂର୍ତ୍ତି ପୂର୍ବପରି ମନରେ ଉଦିତ ହେବା ମାତ୍ରେ ଜ୍ଞାନକୁ ଅସି କଳ୍ପନା କରି ତାହା ଦ୍ୱାରା ଉକ୍ତ ମୂର୍ତ୍ତିକୁ ମନେମନେ ଦୁଇଖଣ୍ଡ କରି ପକାଇଲି । ଏହାପରେ ମନରେ ଆଉ କୌଣସି ପ୍ରକାର ବିକଳ୍ପ ରହିଲା ନାହିଁ; ଏକାଥରକେ ହୁ ହୁ କରି ଏହା ସମଗ୍ର ନାମରୂପ ରାଜ୍ୟର ଊର୍ଦ୍ଧ୍ୱକୁ ଉଠିଗଲା ଏବଂ ସମାଧିମଗ୍ନ ହୋଇଗଲି ।''

### ଠାକୁର ନିର୍ବିକଳ୍ପ ସମାଧି ଯଥାର୍ଥ ଲାଭ କରିଥିଲେ କି ନାହିଁ ସେବିଷୟରେ ତୋତାପୁରୀଙ୍କର ପରୀକ୍ଷା ଓ ବିସ୍ମୟ :

ଠାକୁର ପୂର୍ବୋକ୍ତ ପ୍ରକାରରେ ସମାଧିସ୍ଥ ହେବାରୁ ଶ୍ରୀମତ୍ ତୋତାପୁରୀ ଅନେକ ସମୟ ତାଙ୍କ ନିକଟରେ ଉପବିଷ୍ଟ ରହିଲେ । ପରେ ନିଃଶବ୍ଦରେ କୁଟୀର ବାହାରକୁ ଆସି ତାଙ୍କର ଅଜ୍ଞାତସାରରେ କାଳେ କେହି ଆସି କୁଟୀରରେ ପ୍ରବେଶପୂର୍ବକ ଠାକୁରଙ୍କୁ ବିରକ୍ତ କରିବ, ସେଥିପାଇଁ ଦ୍ୱାରରେ ତାଲା ପକାଇ ଦେଲେ । ଏହାପରେ କୁଟୀରର ଅନତିଦୂରରେ ପଞ୍ଚବଟୀତଳେ ନିଜ ଆସନରେ ଉପବିଷ୍ଟ ହୋଇ ଦ୍ୱାର ଖୋଲି ଦେବା ପାଇଁ ଠାକୁରଙ୍କ ଆହ୍ୱାନକୁ ପ୍ରତୀକ୍ଷା କରିବାକୁ ଲାଗିଲେ ।

ଦିନ ଗଲା, ରାତି ଆସିଲା । ଦିନ ପରେ ଦିନ ବିତି ତିନିଦିନ ଅତିବାହିତ ହେଲା । ତଥାପି ଠାକୁର ଶ୍ରୀମତ୍ ତୋତାପୁରୀଙ୍କୁ କୁଟୀର ଦ୍ୱାର ଖୋଲିବାକୁ ଡାକିଲେ ନାହିଁ । ସେତେବେଳେ ବିସ୍ମୟ କୌତୁହଳରେ ଶ୍ରୀମତ୍ ତୋତାପୁରୀ ନିଜେ ହିଁ ଆସନ ତ୍ୟାଗକରି ଉଠିଲେ ଏବଂ ଶିଷ୍ୟଙ୍କର ଅବସ୍ଥା ଦେଖିବା ପାଇଁ ଅର୍ଗଳ ଖୋଲି କୁଟୀର ମଧ୍ୟରେ ପ୍ରବେଶ କଲେ । ସେ ଦେଖିଲେ, ଠାକୁରଙ୍କୁ ସେ ଯେପରି ବସାଇ ଦେଇଥିଲେ, ସେ ସେହି ଭାବରେ ହିଁ ବସିଛନ୍ତି—ଦେହରେ ପ୍ରାଣର ପ୍ରକାଶ ନାହିଁ, ମାତ୍ର ମୁଖମଣ୍ଡଳ ପ୍ରଶାନ୍ତ, ଗମ୍ଭୀର, ଜ୍ୟୋତିପୂର୍ଣ୍ଣ ! ଶ୍ରୀମତ୍ ତୋତା ବୁଝିଲେ—ବହିର୍ଜଗତ ସମ୍ବନ୍ଧରେ ଶିଷ୍ୟ ଏବେ ମଧ୍ୟ ସମ୍ପୂର୍ଣ୍ଣ ମୃତକଳ୍ପ—ନିବାତ-ନିଷ୍କମ୍ପ-ପ୍ରଦୀପବତ୍ ତାଙ୍କର ଚିତ୍ତ ବ୍ରହ୍ମରେ ଲୀନ ହୋଇ ଅବସ୍ଥାନ କରୁଅଛି !

ସମାଧିରହସ୍ୟଜ୍ଞ ତୋତା ସ୍ତମ୍ଭିତ ଚିତ୍ତରେ ଭାବିବାକୁ ଲାଗିଲେ—ଯାହା ଦେଖୁଛି, ତାହା କ'ଣ ବାସ୍ତବିକ୍ ସତ୍ୟ—ଚାଳିଶ ବର୍ଷ ବ୍ୟାପୀ କଠୋର ସାଧନାରେ ଯାହା ଜୀବନରେ ଉପଲବ୍ଧି କରିବାକୁ ସକ୍ଷମ ହୋଇଛି, ତାହା କ'ଣ ଏହି ମହାପୁରୁଷ ବାସ୍ତବରେ ତିନିଦିନ ମଧ୍ୟରେ ଆୟତ୍ତ କଲେ ! ସନ୍ଦେହରେ ପଡ଼ି ସେ ପୁନରାୟ ପରୀକ୍ଷାରେ ମନୋନିବେଶ କଲେ, ତନ୍ନ ତନ୍ନ କରି ଶିଷ୍ୟଙ୍କର ଦେହରେ ପ୍ରକାଶିତ ଲକ୍ଷଣଗୁଡ଼ିକୁ ଅନୁଧାବନ କରିବାକୁ ଲାଗିଲେ । ହୃଦୟ ସ୍ପନ୍ଦିତ ହେଉଛି କି ନାହିଁ, ନାସିକା ଦ୍ୱାରରୁ ବିନ୍ଦୁମାତ୍ର ବାୟୁ ନିର୍ଗତ ହେଉଛି କି ନାହିଁ ବିଶେଷରୂପରେ ପରୀକ୍ଷା କଲେ । ଧୀର ସ୍ଥିର କାଷ୍ଠଖଣ୍ଡ ସଦୃଶ ଅଚଳଭାବରେ ସ୍ଥିତ ଶିଷ୍ୟଙ୍କର ଶରୀର ବାରମ୍ବାର ସ୍ପର୍ଶ କଲେ । କିଛି ମାତ୍ର ବିକାର, ବୈଲକ୍ଷଣ୍ୟ ବା ଚେତନାର ଉଦୟ ହେଲା ନାହିଁ ! ଶେଷରେ ବିସ୍ମୟଆନନ୍ଦରେ ଅଭିଭୂତ ହୋଇ ତୋତାଜୀ ଚିତ୍କାର କରି କହିଉଠିଲେ—

ୟହ କ୍ୟା ଦୈବୀ ମାୟା—ୟହ ତେ ସଚମୁଚ୍ ସମାଧି ହୀ ହେ ! ବେଦାନ୍ତୋକ୍ତ ଜ୍ଞାନମାର୍ଗର ଚରମଫଳ ନିର୍ବିକଳ୍ପ ସମାଧି, ତାପୁଣି ତିନି ଦିନରେ[1] ହୋଇଛି ! —ଭଗବାନଙ୍କର ଏହା କିପରି ଅଦ୍ଭୁତ ମାୟା !

## ଶ୍ରୀମତ୍ ତୋତାଙ୍କର ଠାକୁରଙ୍କ ସମାଧି ଭାଙ୍ଗିବାର ଚେଷ୍ଟା :

ଅନନ୍ତର ସମାଧି ଅବସ୍ଥାରୁ ବ୍ୟୁତ୍ଥିତ କରିବା ପାଇଁ ତୋତା ପ୍ରକ୍ରିୟା ଆରମ୍ଭ କଲେ ଏବଂ 'ହରି ଓମ୍' ମନ୍ତ୍ରର ସୁଗଭୀର ଧ୍ୱନିରେ ପଞ୍ଚବଟୀର ଜଳ-ସ୍ଥଳ-ଆକାଶ ପରିପୂର୍ଣ୍ଣ ହୋଇ ଉଠିଲା ।

ଶିଷ୍ୟପ୍ରେମରେ ମୁଗ୍ଧ ହୋଇ ଏବଂ ନିର୍ବିକଳ୍ପ ଭୂମିରେ ତାହାଙ୍କୁ ଦୃଢ଼ ପ୍ରତିଷ୍ଠିତ କରିବେ ବୋଲି ଶ୍ରୀମତ୍ ତୋତା କିପରି ଏଠାରେ ଦିନପରେ ଦିନ, ମାସ ପରେ ମାସ ଅତିବାହିତ କରିବାକୁ ଲାଗିଲେ ଏବଂ ଠାକୁରଙ୍କର ସହାୟତାରେ କିପରି

୧. ଗୁରୁଭାବ—ପୂର୍ବାର୍ଦ୍ଧ (୯ମ ସଂ), ବଙ୍ଗଳା 'କଥାମୃତ' ୪ର୍ଥ ଭାଗ (୮ମ ସଂ)୩୧୦ପୃ —ପ୍ରକାଶକ

ନିଜର ଆଧ୍ୟାତ୍ମିକ ଜୀବନ ସର୍ବାଙ୍ଗସମ୍ପୂର୍ଣ୍ଣ କଲେ, ସେସବୁ ଅନ୍ୟତ୍ର ସବିସ୍ତାରରେ କୁହାଯାଇଥିବାରୁ[୧] ଏଠାରେ ତାହାର ପୁନରୁଲ୍ଲେଖ କଲୁ ନାହିଁ ।

ଏକାଦିକ୍ରମେ ଏଗାର ମାସ ଦକ୍ଷିଣେଶ୍ୱରରେ ଅବସ୍ଥାନ କରି ଶ୍ରୀମତ୍ ତୋତା ଉତ୍ତର-ପଶ୍ଚିମାଞ୍ଚଳକୁ ପ୍ରସ୍ଥାନ କଲେ । ଏହି ଘଟଣାର ଅବ୍ୟବହିତ ପରେ ହିଁ ଠାକୁରଙ୍କ ମନରେ ଦୃଢ଼ ସଂକଳ୍ପ ଉପୁଜିଲା ଯେ, ସେ ଏବେଠାରୁ ନିରନ୍ତର ନିର୍ବିକଳ୍ପ ଅଦ୍ୱୈତ ଭୂମିରେ ଅବସ୍ଥାନ କରିବେ । କିପରି ସେ ସେହି ସଂକଳ୍ପ କାର୍ଯ୍ୟରେ ପରିଣତ କରିଥିଲେ — ଜୀବକୋଟି ସାଧକବର୍ଗଙ୍କ କଥା ଦୂରେ ଥାଉ, ଅବତାରପ୍ରତିମ ଆଧିକାରିକ ବ୍ୟକ୍ତିମାନେ ମଧ୍ୟ ଯେଉଁ ଘନୀଭୂତ ଅଦ୍ୱୈତାବସ୍ଥାରେ ବହୁକାଳ ଅବସ୍ଥାନ କରିବାକୁ ସକ୍ଷମ ହୋଇ ନ ଥାନ୍ତି, ସେହି ଭୂମିରେ କିପରି ସେ ନିରନ୍ତର ଛଅମାସ କାଳ ଅବସ୍ଥାନ କରିବାକୁ ସକ୍ଷମ ହୋଇଥିଲେ ଏବଂ ଏହି ସମୟରେ କିପରି ଜନୈକ ସାଧୁପୁରୁଷ କାଳୀମନ୍ଦିରକୁ ଆଗମନପୂର୍ବକ ଠାକୁରଙ୍କ ଦ୍ୱାରା ପରେ ଲୋକକଲ୍ୟାଣ ବିଶେଷ ରୂପରେ ସାଧିତ ହେବ, ଏହା ଜାଣିପାରି ଛଅ ମାସ ଧରି ସେଠାରେ ରହି ନାନା ଉପାୟରେ ତାଙ୍କର ଶରୀରରକ୍ଷା କରିଥିଲେ, ସେସମସ୍ତ କଥା ଆମେ ପାଠକଙ୍କୁ ଅନ୍ୟତ୍ର କହିଛୁ ।[୨] ଅତଏବ ଠାକୁରଙ୍କ ସହାୟତାରେ ଏହି ସମୟରେ ମଥୁରବାବୁଙ୍କର ଜୀବନରେ ଯେଉଁ ସବୁ ବିଶେଷ ଘଟଣା ଘଟିଥିଲା ସେ ସମସ୍ତ ଉଲ୍ଲେଖ କରି ଆମେ ଏହି ଅଧ୍ୟାୟର ଉପସଂହାର କରିବୁ ।

**ଠାକୁର ଜଗଦମ୍ବା ଦାସୀଙ୍କର କଠିନ ପୀଡ଼ା ଆରୋଗ୍ୟ କରିବା :**

ଠାକୁରଙ୍କଠାରେ ନାନା ପ୍ରକାର ଦୈବୀଶକ୍ତିର ଦର୍ଶନରେ ଶ୍ରୀଯୁକ୍ତ ମଥୁରମୋହନଙ୍କର ଭକ୍ତି-ବିଶ୍ୱାସ ଏହାପୂର୍ବରୁ ହିଁ ତାଙ୍କ ପ୍ରତି ବିଶେଷ ଭାବରେ ବର୍ଦ୍ଧିତ ହୋଇଥିଲା । ଏହି ସମୟର ଗୋଟିଏ ଘଟଣା ଉକ୍ତ ଭକ୍ତିର ଅଧିକତର ଅଚଳଭାବ ଧାରଣପୂର୍ବକ ଚିରକାଳ ତାଙ୍କୁ ଠାକୁରଙ୍କର ଶରଣାପନ୍ନ କରି ରଖିଥିଲା ।

ମଥୁରମୋହନଙ୍କ ଦ୍ୱିତୀୟ ପତ୍ନୀ ଶ୍ରୀମତୀ ଜଗଦମ୍ବା ଦାସୀ ଏହି ସମୟରେ ଗ୍ରହଣୀ ରୋଗରେ ଆକ୍ରାନ୍ତ ହେଲେ । ଉକ୍ତ ରୋଗ ଏତେ ବଢ଼ିଲା ଯେ, କଲିକତାର ସୁପ୍ରସିଦ୍ଧ ଡାକ୍ତର-ବୈଦ୍ୟମାନେ ତାଙ୍କର ଜୀବନ ରକ୍ଷା ସମ୍ବନ୍ଧରେ ପ୍ରଥମେ ସଂଶୟାପନ୍ନ ଏବଂ ପରେ ହତାଶ ହୋଇଥିଲେ ।

ଠାକୁରଙ୍କ ନିକଟରୁ ଶୁଣିଛି, ମଥୁରମୋହନ ସୁପୁରୁଷ ଥିଲେ, କିନ୍ତୁ ଦରିଦ୍ର ଘରେ ଜନ୍ମଗ୍ରହଣ କରିଥିଲେ । ରୂପବାନ ଦେଖି ରାଣୀ ରାସମଣି ତାଙ୍କୁ ପ୍ରଥମେ ନିଜର ତୃତୀୟା କନ୍ୟା ଶ୍ରୀମତୀ କରୁଣାମୟୀଙ୍କ ସହିତ ଏବଂ ସେହି କନ୍ୟାର

୧. ଗୁରୁଭାବ-ପୂର୍ବାର୍ଦ୍ଧ, ୮ମ ଅଧ୍ୟାୟ ।
୨. ଗୁରୁଭାବ-ପୂର୍ବାର୍ଦ୍ଧ, ୨ୟ ଅଧ୍ୟାୟ ।

ମୃତ୍ୟୁହେବା ପରେ ପୁନରାୟ ନିଜର କନିଷ୍ଠା କନ୍ୟା ଶ୍ରୀମତୀ ଜଗଦମ୍ବା ଦାସୀଙ୍କ ସହିତ ବିବାହ କରାଇଥିଲେ । ତେଣୁ ବିବାହ ପରେ ଶ୍ରୀଯୁକ୍ତ ମଥୁରଙ୍କର ଅବସ୍ଥାର ପରିବର୍ତ୍ତନ ହୋଇଥିଲା ଏବଂ ନିଜ ବୁଦ୍ଧିବଳ ଓ କାର୍ଯ୍ୟଦକ୍ଷତା ଯୋଗୁଁ କ୍ରମେ ନିଜ ଶ୍ୱଶ୍ରୂଠାକୁରାଣୀଙ୍କର ଦକ୍ଷିଣହସ୍ତସ୍ୱରୂପ ହୋଇଉଠିଥିଲେ । ଏହାପରେ ରାଣୀ ରାସମଣିଙ୍କର ଦେହାନ୍ତ ପରେ ସେ କିପରି ଭାବରେ ରାଣୀଙ୍କ ବିଷୟସଂକ୍ରାନ୍ତ ସକଳକାର୍ଯ୍ୟ ପରିଚାଳନାରେ ଏକପ୍ରକାର ଏକାଧିପତ୍ୟ ଲାଭ କରିଥିଲେ, ତାହା ଆମେ ପାଠକଙ୍କୁ ଏହାପୂର୍ବରୁ ଜଣାଇ ସାରିଛୁ ।

ଜଗଦମ୍ବା ଦାସୀଙ୍କର ସାଙ୍ଘାତିକ ରୋଗରେ ମଥୁରମୋହନ କେବଳ ଯେ ପ୍ରିୟତମା ପତ୍ନୀଙ୍କୁ ହରାଇବାକୁ ବସିଥିଲେ ତାହା ନୁହେଁ, ଏହା ସହିତ ଶାଶୁଙ୍କର ବିଷୟ ସମ୍ପତ୍ତିର ଆଧିପତ୍ୟ ମଧ୍ୟ ହରାଇବାକୁ ବସିଥିଲେ । ସୁତରାଂ ତାଙ୍କ ମନର ତତ୍‌କାଳୀନ ଅବସ୍ଥା ସମ୍ବନ୍ଧରେ ଅଧିକ କଥା କହିବା ନିଷ୍ପ୍ରୟୋଜନ ।

ରୋଗୀର ଅବସ୍ଥା ଦେଖି ଡାକ୍ତର-ବୈଦ୍ୟମାନେ ଯେତେବେଳେ ତାଙ୍କ ଜୀବନର ଆଶା ଛାଡ଼ିଦେଲେ, ମଥୁରବାବୁ ସେତେବେଳେ କାତର ହୋଇ ଦକ୍ଷିଣେଶ୍ୱରକୁ ଆସି ପ୍ରଥମେ କାଳୀମନ୍ଦିରରେ ଜଗନ୍ମାତାଙ୍କୁ ପ୍ରଣାମ କରିସାରି ଠାକୁରଙ୍କୁ ଖୋଜି ଖୋଜି ପଞ୍ଚବଟୀକୁ ଆସିଲେ । ତାଙ୍କର ଏହି ପ୍ରକାର ଉନ୍ମତ୍ତପ୍ରାୟ ଅବସ୍ଥା ଦେଖି ଠାକୁରେ ତାଙ୍କୁ ସଯତ୍ନରେ ପାଖରେ ବସାଇଲେ ଏବଂ ଏପରି ଅବସ୍ଥାର କାରଣ ପଚାରିଲେ । ମଥୁରବାବୁ ତାଙ୍କ ପାଦତଳେ ପଡ଼ି ଅଶ୍ରୁପୂର୍ଣ୍ଣ ଚକ୍ଷୁରେ ସକଳ କଥା ନିବେଦନ କରି ଦୀନ ଭାବରେ ବାରମ୍ବାର କହିବାକୁ ଲାଗିଲେ, ''ମୋର ତ ଯାହା ହେବାର କଥା ହେବ; ବାବା ! ତୁମର ସେବାର ଅଧିକାରରୁ ବଞ୍ଚିତ ହେବାକୁ ଯାଉଛି, ତୁମର ସେବା ଆଉ କରିପାରିବି ନାହିଁ ।''

ମଥୁରଙ୍କର ଏପରି ଦୈନ୍ୟ ଦେଖି ଠାକୁରଙ୍କର ହୃଦୟ କରୁଣାରେ ପୂର୍ଣ୍ଣ ହେଲା । ଠାକୁର ଭାବାବିଷ୍ଟ ହୋଇ ତାଙ୍କୁ କହିଲେ, ''ଭୟ ନାହିଁ, ତୁମର ପତ୍ନୀ ଆରୋଗ୍ୟଲାଭ କରିବେ ।'' ବିଶ୍ୱାସୀ ମଥୁର ଠାକୁରଙ୍କୁ ସାକ୍ଷାତ୍ ଦେବତାଜ୍ଞାନ କରୁଥିଲେ; ତେଣୁ ତାଙ୍କର ଅଭୟବାଣୀରେ ବିଶେଷ ଆଶ୍ୱସ୍ତ ହୋଇ ସେଦିନ ବିଦାୟ ଗ୍ରହଣ କଲେ । ଏହାପରେ ଜାନବଜାରକୁ ଫେରି ସେ ଦେଖିଲେ, ଜଗଦମ୍ବା ଦାସୀଙ୍କର ଅବସ୍ଥାର ପରିବର୍ତ୍ତନ ହୋଇଛି । ଠାକୁର କହୁଥିଲେ, ''ସେହି ଦିନଠାରୁ ଜଗଦମ୍ବା ଦାସୀ ଧୀରେ ଧୀରେ ଆରୋଗ୍ୟ ଲାଭ କରିବାକୁ ଲାଗିଲେ ଏବଂ ତାର ରୋଗର ଭୋଗ (ନିଜର ଶରୀର ଦେଖାଇ) ଏହି ଶରୀର ଉପରେ ହେବାକୁ ଲାଗିଲା; ଜଗଦମ୍ବା ଦାସୀଙ୍କୁ ଭଲ କରି ଛଅମାସ କାଳ ପେଟର ଯନ୍ତ୍ରଣା ଓ ଅନ୍ୟାନ୍ୟ କଷ୍ଟ ଭୋଗିବାକୁ ପଡ଼ିଥିଲା ।''

ଶ୍ରୀଯୁକ୍ତ ମଥୁରଙ୍କର ଠାକୁରଙ୍କ ପ୍ରତି ଅଦ୍ଭୁତ ପ୍ରେମପୂର୍ଣ୍ଣ ସେବାର କଥା ଆଲୋଚନା କରିବା ସମୟରେ ଠାକୁର ଦିନେ ଆମମାନଙ୍କ ନିକଟରେ ପୂର୍ବୋକ୍ତ ଘଟଣା ଉଲ୍ଲେଖ କରି କହିଥିଲେ, ''ମଥୁର ଯେଉଁ ଚଉଦବର୍ଷ ମୋର ସେବା କରିଥିଲା, ସେ କ'ଣ ସେମିତି ଖାଲି କରିଥିଲା ? ମା' ତାକୁ (ନିଜ ଶରୀର ଦେଖାଇ) ଏହା ଭିତର ଦେଇ ନାନାପ୍ରକାର ଅଦ୍ଭୁତ ବିଷୟ ଦେଖାଇଥିଲେ, ସେଥିପାଇଁ ହିଁ ସେ ଏତେ ସେବା କରିଥିଲା ।''

# ଷୋଡ଼ଶ ଅଧ୍ୟାୟ

## ବେଦାନ୍ତସାଧନାର ଅବଶିଷ୍ଟ କଥା ଏବଂ ଇସ୍‌ଲାମ ଧର୍ମସାଧନା

### ଠାକୁରଙ୍କର କଠିନ ବ୍ୟାଧି—
### ଏହି ସମୟରେ ତାଙ୍କ ମନର ଅପୂର୍ବ ଆଚରଣ :

ଜଗଦମ୍ବା ଦାସୀଙ୍କର ସାଂଘାତିକ ରୋଗ ଆରୋଗ୍ୟ କରିଥିବା ହେତୁ ହେଉ, ଅଥବା ଅଦ୍ୱୈତ-ଭାବଭୂମିରେ ନିରନ୍ତର ଅବସ୍ଥାନ କରିବା ପାଇଁ ଠାକୁର ଦୀର୍ଘ ଛଅମାସ କାଳ ପର୍ଯ୍ୟନ୍ତ ଯେଉଁ ଅମାନୁଷୀ ଚେଷ୍ଟା କରିଥିଲେ ତାହା ଫଳରେ ହେଉ, ତାଙ୍କର ଦୃଢ଼ଶରୀର ଭଗ୍ନ ହୋଇ ଏବେ କେତେ ମାସ ପର୍ଯ୍ୟନ୍ତ ରୋଗଗ୍ରସ୍ତ ହୋଇପଡ଼ିଥିଲା । ତାଙ୍କ ନିକଟରୁ ଶୁଣିଛୁ ଏହି ସମୟରେ ସେ ଆମାଶୟ ରୋଗରେ ଆକ୍ରାନ୍ତ ହୋଇଥିଲେ । ଭଣଜା ହୃଦୟ ନିରନ୍ତର ତାଙ୍କ ସେବାରେ ନିଯୁକ୍ତ ଥିଲେ ଏବଂ ଶ୍ରୀଯୁକ୍ତ ମଥୁର ତାହାଙ୍କୁ ସୁସ୍ଥ ଓ ରୋଗମୁକ୍ତ କରିବା ପାଇଁ ପ୍ରସିଦ୍ଧ କବିରାଜ ଗଙ୍ଗାପ୍ରସାଦ ସେନ୍‌ଙ୍କ ଦ୍ୱାରା ଚିକିତ୍ସା ପଥ୍ୟାଦିର ବିଶେଷ ବନ୍ଦୋବସ୍ତ କରିଥିଲେ । ଠାକୁରଙ୍କର ଶରୀର ଏପରି ବ୍ୟାଧିଗ୍ରସ୍ତ ହୋଇଥିଲେ ମଧ୍ୟ ତାଙ୍କର ଦେହବୋଧବିବର୍ଜିତ ମନ ଏବେ ଯେଉଁ ଅପୂର୍ବ ଶାନ୍ତି ଏବଂ ନିରବଚ୍ଛିନ୍ନ ଆନନ୍ଦରେ ଅବସ୍ଥାନ କରୁଥିଲା, ତାହା ଅବର୍ଣ୍ଣନୀୟ । ବିନ୍ଦୁମାତ୍ର ଉତ୍ତେଜନାରେ[୧] ତାହା ଶରୀର, ବ୍ୟାଧି ଏବଂ ସଂସାରର ସମସ୍ତ ବିଷୟରୁ ପୃଥକ ହୋଇ ନିର୍ବିକଳ୍ପ ଭୂମିରେ ଉପନୀତ ହେଉଥିଲା ଏବଂ ବ୍ରହ୍ମ, ଆତ୍ମା ଓ ଈଶ୍ୱରଙ୍କ ସ୍ମରଣମାତ୍ରେହିଁ ଅନ୍ୟ ସମସ୍ତ କଥା ଭୁଲି ତନ୍ମୟ ହୋଇ କିଛି ସମୟ ପାଇଁ ନିଜର ପୃଥକ୍-ଅସ୍ତିତ୍ୱବୋଧ ହରାଉଥିଲା । ତେଣୁ ଏଥିରୁ ବୁଝାଯାଏ ଯେ, ବ୍ୟାଧିର ପ୍ରକୋପରେ ଶରୀରରେ ଅସହ୍ୟ ଯନ୍ତ୍ରଣା ହେଉଥିଲେ ମଧ୍ୟ ସେ ଏହାର ସାମାନ୍ୟମାତ୍ର ଉପଲବ୍ଧି କରୁଥିଲେ । ତେବେ ଉକ୍ତ ରୋଗର ଯନ୍ତ୍ରଣା ବେଳେ ବେଳେ ତାଙ୍କର ମନକୁ ଉଚ୍ଚଭାବଭୂମିରୁ ଫେରାଇ ଆଣି ଶରୀରରେ ଯେ ନିବିଷ୍ଟ କରୁଥିଲା, ଏକଥା ମଧ୍ୟ ସେ ଆମକୁ କହିଛନ୍ତି । ଠାକୁର କହୁଥିଲେ, ଏହି ସମୟରେ ତାଙ୍କ ନିକଟକୁ ବେଦାନ୍ତମାର୍ଗ ବିଚରଣଶୀଳ ସାଧକାଗ୍ରଣୀ ପରମହଂସଗଣଙ୍କର ଆଗମନ ହେଉଥିଲା ଏବଂ 'ନେତି ନେତି', 'ଅସ୍ତି-ଭାତି-ପ୍ରିୟ,' 'ଅୟମାତ୍ମା ବ୍ରହ୍ମ' ପ୍ରଭୃତି ବେଦାନ୍ତ ପ୍ରସିଦ୍ଧ ତତ୍ତ୍ୱସମୂହର ବିଚାରଧ୍ୱନିରେ ତାଙ୍କର ବାସଗୃହ ନିରନ୍ତର ମୁଖରିତ ହେଉଥିଲା ।[୨] ଏହି ସମସ୍ତ ଉଚ୍ଚତତ୍ତ୍ୱର ବିଚାର କାଳରେ ସେମାନେ ଯେତେବେଳେ କୌଣସି ବିଷୟରେ ସୁମୀମାଂସାରେ ଉପନୀତ ହୋଇପାରୁ ନ ଥିଲେ, ଠାକୁରଙ୍କୁହିଁ ସେତେବେଳେ ମଧ୍ୟସ୍ଥ ହୋଇ ଏହାର ମୀମାଂସା କରିବାକୁ ପଡୁଥିଲା ।

---

୧. ଗୁରୁଭାବ-ପୂର୍ବାର୍ଦ୍ଧ, ୨ୟ ଅଧ୍ୟାୟ ।
୨. ଗୁରୁଭାବ-ଉତ୍ତରାର୍ଦ୍ଧ, ୨ୟ ଅଧ୍ୟାୟ ।

କହିବା ବାହୁଲ୍ୟ, ସାଧାରଣ ଲୋକମାନଙ୍କ ପରି ବ୍ୟାଧିର ପ୍ରକୋପରେ ନିରନ୍ତର ମୁହ୍ୟମାନ ହୋଇ ରହିଥିଲେ କଠୋର ଦାର୍ଶନିକ ବିଚାରରେ ଏପରି ପ୍ରତିନିୟତ ଯୋଗଦାନ କରିବା ତାଙ୍କ ପକ୍ଷରେ କଦାପି ସମ୍ଭବପର ହୋଇ ନ ଥାନ୍ତା ।

**ଅଦ୍ୱୈତଭାବରେ ପ୍ରତିଷ୍ଠିତ ହେବା ପରେ ଠାକୁରଙ୍କର ଦର୍ଶନ—ଏହି ଦର୍ଶନ ଫଳରେ ତାଙ୍କର ଉପଲବ୍ଧିସମୂହ :**

ଆମେ ଅନ୍ୟତ୍ର କହିଅଛୁ, ନିର୍ବିକଳ୍ପ ଭୂମିରେ ନିରନ୍ତର ରହିଥିବା ବେଳର ଶେଷ ଭାଗରେ ଠାକୁରଙ୍କର ଏକ ବିଚିତ୍ର ଦର୍ଶନ ବା ଉପଲବ୍ଧି ହୋଇଥିଲା । ଭାବମୁଖରେ ଅବସ୍ଥାନ କରିବା ପାଇଁ ସେ ତୃତୀୟଥର ଆଦିଷ୍ଟ ହୋଇଥିଲେ ।[1] 'ଦର୍ଶନ' ବୋଲି ଏବିଷୟ ଉଲ୍ଲେଖ ହୋଇଥିଲେ ମଧ ଏହା ଯେ ତାଙ୍କର ପ୍ରାଣେପ୍ରାଣେ ଉପଲବ୍ଧିର କଥା, ଏହାକୁ ପାଠକମାନେ ବୁଝିନେବେ । କାରଣ ପୂର୍ବର ଦୁଇଥର ପରି ଠାକୁର ଏହି ସମୟରେ କୌଣସି ଦୃଷ୍ଟମୂର୍ତ୍ତିଙ୍କ ମୁହଁରୁ ଏକଥା ଶୁଣି ନ ଥିଲେ । ବରଂ ତୁରୀୟ ଅଦ୍ୱୈତତତ୍ତ୍ୱରେ ସମ୍ପୂର୍ଣ୍ଣ ଏକୀଭୂତ ହୋଇ ଅବସ୍ଥାନ ନ କରି ଯେତେବେଳେ ତାଙ୍କର ମନ ଉକ୍ତ ତତ୍ତ୍ୱରୁ ସାମାନ୍ୟ ପୃଥକ୍ ହୋଇ ନିଜକୁ ସଗୁଣ ବିରାଟ ବ୍ରହ୍ମଙ୍କର ବା ଶ୍ରୀଶ୍ରୀଜଗଦମ୍ବାଙ୍କର ଅଂଶ ବୋଲି ପ୍ରତ୍ୟକ୍ଷ କରୁଥିଲା, ସେତେବେଳେ ଏହା ସେହି ବିରାଟ ବ୍ରହ୍ମଙ୍କର ବିରାଟ ମନରେ ଏପରି ଭାବ ବା ଇଚ୍ଛାର ବିଦ୍ୟମାନତା ସାକ୍ଷାତ୍ ଉପଲବ୍ଧି କରିଥିଲା ।[2] ଏହି ଉପଲବ୍ଧିରୁ ତାଙ୍କର ମନରେ ନିଜ ଜୀବନର ଭବିଷ୍ୟତ ପ୍ରୟୋଜନୀୟତା ସମ୍ୟକ୍ ପ୍ରସ୍ଫୁଟିତ ହୋଇଉଠିଥିଲା । କାରଣ ଶରୀରରକ୍ଷା କରିବାର ବିନ୍ଦୁମାତ୍ର ବାସନା ତାଙ୍କର ଅନ୍ତରରେ ନ ଥିଲେ ମଧ ଶ୍ରୀଶ୍ରୀଜଗଦମ୍ବାଙ୍କର ବିଚିତ୍ର ଇଚ୍ଛାରେ ବାରମ୍ବାର ଭାବମୁଖରେ ଅବସ୍ଥାନ କରିବାକୁ ଆଦିଷ୍ଟ ହୋଇ ଠାକୁର ବୁଝିଥିଲେ, ନିଜର ପ୍ରୟୋଜନ ନ ଥିଲେ ମଧ ଭଗବଦ୍‌ଲୀଳାର ପ୍ରୟୋଜନ ପାଇଁ ତାଙ୍କୁ ଦେହରକ୍ଷା କରିବାକୁ ହେବ ଏବଂ ସବୁ ସମୟରେ ବ୍ରହ୍ମରେ ଅବସ୍ଥାନ କଲେ ଶରୀର ରହିବା ସମ୍ଭବପର ନୁହେଁ ବୋଲି ସେ ଏବେଠାରୁ ଏପରି କରିବାକୁ ଆଦେଶ ପ୍ରାପ୍ତ ହୋଇଥିଲେ । ଜାତିସ୍ମରତ୍ୱସହାୟରେ ଏହି ସମୟରେ ଠାକୁର ସମ୍ୟକ୍ ବୁଝିଥିଲେ, ସେ ନିତ୍ୟ-ଶୁଦ୍ଧ-ବୁଦ୍ଧ-ମୁକ୍ତ-ସ୍ୱଭାବବାନ ଆଧିକାରିକ ଅବତାରପୁରୁଷ, ବର୍ତ୍ତମାନ ଯୁଗର ଧର୍ମଗ୍ଳାନି ଦୂର କରି ଲୋକକଲ୍ୟାଣସାଧନ ପାଇଁ ତାଙ୍କୁ ଦେହଧାରଣ ଓ ତପସ୍ୟାଦି କରିବାକୁ ହୋଇଅଛି । ଏକଥା ମଧ ତାଙ୍କର ଏହି ସମୟରେ ହୃଦୟଙ୍ଗମ ହୋଇଥିଲା ଯେ, ଶ୍ରୀଶ୍ରୀଜଗନ୍ମାତା ବିଶେଷ ଉଦ୍ଦେଶ୍ୟ ସାଧନନିମିତ୍ତ ହିଁ ଏଥର ତାଙ୍କୁ ବାହ୍ୟ ଐଶ୍ୱର୍ଯ୍ୟର ଆଡ଼ମ୍ବରପରିଶୂନ୍ୟ ଓ ନିରକ୍ଷର କରି ଦରିଦ୍ର ବ୍ରାହ୍ମଣ କୁଳରେ ଆନୟନ କରିଛନ୍ତି ଏବଂ ଏହି ଲୀଳାରହସ୍ୟ

---

୧. ଏହି ଗ୍ରନ୍ଥର ଅଷ୍ଟମ ଅଧ୍ୟାୟ ଦ୍ରଷ୍ଟବ୍ୟ ।

୨. ଗୁରୁଭାବ—ପୂର୍ବାର୍ଦ୍ଧ, ତୃତୀୟ ଅଧ୍ୟାୟ ।

ତାଙ୍କର ଜୀବନକାଳରେ ସ୍ୱଳ୍ପ ଲୋକେ ବୁଝିବାକୁ ସମର୍ଥ ହେଲେ ମଧ୍ୟ, ଯେଉଁ ପ୍ରବଳ ଆଧ୍ୟାତ୍ମିକ ତରଙ୍ଗ ତାଙ୍କର ଶରୀର ଓ ମନ ଦ୍ୱାରା ଜଗତରେ ଉଦିତ ହେବ, ତାହା ସର୍ବତୋଭାବରେ ଅମୋଘ ରହି ଅନନ୍ତକାଳ ପର୍ଯ୍ୟନ୍ତ ଜନସାଧାରଣଙ୍କ କଲ୍ୟାଣ ସାଧନ କରି ଚାଲିବ ।

### ବ୍ରହ୍ମଜ୍ଞାନଲାଭ ପୂର୍ବରୁ ସାଧକର ଜାତିସ୍ମରତ୍ୱଲାଭ ସମ୍ବନ୍ଧରେ ଶାସ୍ତ୍ରୀୟ କଥା :

ଏପରି ଅସାଧାରଣ ଉପଲବ୍ଧିମାନ ଠାକୁରଙ୍କର କିପରି ହୋଇଥିଲା ବୁଝିବାକୁ ହେଲେ ଶାସ୍ତ୍ରର କେତୋଟି କଥା ଆମମାନଙ୍କୁ ସ୍ମରଣ କରିବାକୁ ହେବ । ଶାସ୍ତ୍ର କହନ୍ତି, ଅଦ୍ୱୈତଭାବ ସହାୟରେ ଜ୍ଞାନସ୍ୱରୂପରେ ପୂର୍ଣ୍ଣ ରୂପରେ ଅବସ୍ଥାନ କରିବା ପୂର୍ବରୁ ସାଧକ ଜାତିସ୍ମରତ୍ୱ ଲାଭ କରିଥାନ୍ତି ।[୧] କିମ୍ବା ଏହି ଭାବର ପରିପକ୍ୱତାରେ ତାଙ୍କର ସ୍ମୃତି ସେତେବେଳେ ଏତେଦୂର ପରିଣତ ଅବସ୍ଥା ପ୍ରାପ୍ତ ହୋଇଥାଏ ଯେ, ଏହା ପୂର୍ବରୁ ସେ ଯେଉଁ ଭାବରେ ଯେଉଁଠାରେ ଯେତେଥର ଶରୀର ପରିଗ୍ରହପୂର୍ବକ ଯାହା କିଛି ସୁକୃତ-ଦୁଷ୍କୃତର ଅନୁଷ୍ଠାନ କରିଥିଲେ, ସେସବୁ କଥା ତାଙ୍କର ସ୍ମରଣରେ ଆସି ଯାଇଥାଏ । ଫଳରେ ସଂସାରର ସମସ୍ତ ବିଷୟର ନଶ୍ୱରତା ଓ ରୂପରସାଦି ଭୋଗସୁଖର ପଶ୍ଚାତ୍‌ଧାବିତ ହୋଇ ବାରମ୍ବାର ଏହି ଭାବରେ ଜନ୍ମପରିଗ୍ରହରେ ନିଷ୍ଫଳତା ସମ୍ୟକ୍ ପ୍ରତ୍ୟକ୍ଷୀଭୂତ ହୋଇ ତାଙ୍କ ମନରେ ତୀବ୍ର ବୈରାଗ୍ୟ ଉପସ୍ଥିତ ହୁଏ ଏବଂ ସେହି ବୈରାଗ୍ୟସହାୟରେ ତାଙ୍କର ପ୍ରାଣ ସର୍ବବିଧ ବାସନାଗୁଡ଼ିକରୁ ସମ୍ପୂର୍ଣ୍ଣ ପୃଥକ ହୋଇ ଦଣ୍ଡାୟମାନ ହୋଇଥାଏ ।

### ବ୍ରହ୍ମଜ୍ଞାନଲାଭରେ ସାଧକର ସର୍ବପ୍ରକାର ଯୋଗବିଭୂତି ଓ ସିଦ୍ଧସଂକଳ୍ପତ୍ୱ-ଲାଭ ସମ୍ବନ୍ଧରେ ଶାସ୍ତ୍ରୀୟ କଥା :

ଉପନିଷଦ୍ କହେ,[୨] ଏପରି ପୁରୁଷ ସିଦ୍ଧସଂକଳ୍ପ ହୋଇଥାଆନ୍ତି ଏବଂ ଦେବ, ପିତୃ, ପ୍ରଭୃତି ଯେତେବେଳେ ଯେଉଁ ଲୋକ ପ୍ରତ୍ୟକ୍ଷ କରିବାକୁ ତାଙ୍କର ଇଚ୍ଛା ହୁଏ, ସେତେବେଳେ ତାଙ୍କର ମନ ସମାଧି-ବଳରେ ଏସମସ୍ତ ଲୋକ ପ୍ରତ୍ୟକ୍ଷ କରିବାକୁ ସମର୍ଥ ହୋଇଥାଆନ୍ତି । ମହାମୁନି ପତଞ୍ଜଳି ସ୍ୱରଚିତ ଯୋଗଶାସ୍ତ୍ରରେ ଏହି ବିଷୟ ଉଲ୍ଲେଖ କରି କହିଛନ୍ତି ଯେ, ଏପରି ପୁରୁଷଙ୍କର ସର୍ବବିଧ ବିଭୂତି ବା ଯୋଗୈଶ୍ୱର୍ଯ୍ୟ ସ୍ୱତଃ ଉଦୟ ହୋଇଥାଏ । ପଞ୍ଚଦଶୀକାର ସାୟନ-ମାଧବ[୩] ଏପରି ପୁରୁଷଙ୍କର

---

୧. ସଂସ୍କାରସାକ୍ଷାତ୍‌କରଣାତ୍ ପୂର୍ବଜାତିଜ୍ଞାନମ୍ ।

—ପାତଞ୍ଜଳ ସୂତ୍ର, ବିଭୂତିପାଦ, ୧୮ ସୂତ୍ର ।

୨. ଛାନ୍ଦୋଗ୍ୟ ଉପନିଷଦ୍, ୮ମ ପ୍ରପାଠକ, ୨ୟ ଖଣ୍ଡ ।

୩. ଗ୍ରନ୍ଥକାରଙ୍କ ସମୟରେ ପ୍ରାୟ ଏହି ଧାରଣା ଥିଲା ଯେ 'ପଞ୍ଚଦଶୀ', ବେଦର ଭାଷ୍ୟକାର ସୟନାଚାର୍ଯ୍ୟଙ୍କ ଦ୍ୱାରା ରଚିତ ତଥା ତାଙ୍କର ଅନ୍ୟ ନାମ ମାଧବ । କିନ୍ତୁ ପରବର୍ତ୍ତୀ ସମୟରେ ଗବେଷଣା ଦ୍ୱାରା ଏହା ସତ୍ୟ ସିଦ୍ଧ ହୋଇ ନାହିଁ । ବର୍ତ୍ତମାନର ମାନ୍ୟତା ହେଉଛି

ବାସନାରାହିତ୍ୟ ଯୋଗୈଶ୍ୱର୍ଯ୍ୟଲାଭ—ଉଭୟ କଥାର ସାମଞ୍ଜସ୍ୟ କରି କହିଛନ୍ତି ଯେ, ଏପରି ବିଚିତ୍ର ଐଶ୍ୱର୍ଯ୍ୟ ସକଳ ଲାଭ କଲେ ମଧ୍ୟ ସେମାନଙ୍କର ଅନ୍ତରରେ ବିନ୍ଦୁମାତ୍ର ବାସନା ନ ଥିବାରୁ ସେମାନେ ଏସମସ୍ତ ଶକ୍ତି କଦାପି ପ୍ରୟୋଗ କରି ନ ଥାନ୍ତି । ମନୁଷ୍ୟ ସଂସାରରେ ଯେଉଁ ଅବସ୍ଥାରେ ରହି ବ୍ରହ୍ମଜ୍ଞାନ ଲାଭ କରେ, ଜ୍ଞାନଲାଭପରେ ସେହି ଅବସ୍ଥାରେ କାଳାତିପାତ କରେ । କାରଣ ଚିତ୍ତ ସର୍ବପ୍ରକାର ବାସନାଶୂନ୍ୟ ହେବାରୁ ସମର୍ଥ ହୋଇ ମଧ୍ୟ ଏଅବସ୍ଥାର ପରିବର୍ତ୍ତନ କରିବାର ଆବଶ୍ୟକତା ସେ କିଛିମାତ୍ର ଅନୁଭବ କରି ନ ଥାଏ । ଆଧିକାରିକ ପୁରୁଷମାନେଂହିଁ କେବଳ ସର୍ବତୋଭାବରେ ଈଶ୍ୱରଙ୍କର ଇଚ୍ଛାଧୀନ ରହି ବହୁଜନହିତାୟ ସେହି ଶକ୍ତିସମୂହର ପ୍ରୟୋଗ ସମୟ ସମୟରେ କରିଥାଆନ୍ତି ।

### ପୂର୍ବୋକ୍ତ ଶାସ୍ତ୍ରକଥା ଅନୁସାରେ ଠାକୁରଙ୍କର ଜୀବନ ଆଲୋଚନା ଦ୍ୱାରା ତାଙ୍କର ଅପୂର୍ବ ଉପଲବ୍ଧିଗୁଡ଼ିକର କାରଣ ବୁଝାଯାଏ :

ପୂର୍ବୋକ୍ତ ଶାସ୍ତ୍ରୀୟ କଥାଗୁଡ଼ିକ ସ୍ମରଣ ରଖି ଠାକୁରଙ୍କର ବର୍ତ୍ତମାନ ଜୀବନର ଅନୁଶୀଳନରେ ତାଙ୍କର ଏହି ସମୟର ବିଚିତ୍ର ଅନୁଭୂତିସବୁ ସମ୍ୟକ୍ ନ ହେଲେ ମଧ୍ୟ ଅନେକାଂଶରେ ବୁଝି ହୁଏ । ବୁଝାଯାଏ ଯେ ସେ ଶ୍ରୀଭଗବତ୍ ପାଦପଦ୍ମରେ ଅନ୍ତରର ସହିତ ସର୍ବସ୍ୱ ସମର୍ପଣ କରି ସର୍ବପ୍ରକାରରେ ବାସନା ପରିଶୂନ୍ୟ ହୋଇଥିଲେ ବୋଲି ହିଁ, ଅତ୍ୟନ୍ତ ଅଳ୍ପ ସମୟ ମଧ୍ୟରେ ବ୍ରହ୍ମଜ୍ଞାନର ନିର୍ବିକଳ୍ପଭୂମିରେ ଉଠିବାକୁ ଏବଂ ଦୃଢ଼ ପ୍ରତିଷ୍ଠିତ ହେବାକୁ ସମର୍ଥ ହୋଇଥିଲେ । ବୁଝାଯାଏ, ଜାତିସ୍ମରତ୍ୱ ଲାଭ କରି ହିଁ ସେ ଏହି ସମୟରେ ସାକ୍ଷାତ୍ ପ୍ରତ୍ୟକ୍ଷ କରିଥିଲେ ଯେ ପୂର୍ବ ଯୁଗମାନଙ୍କରେ ଯିଏ 'ଶ୍ରୀରାମ' ଏବଂ 'ଶ୍ରୀକୃଷ୍ଣ' ରୂପରେ ଆବିର୍ଭୂତ ହୋଇ ଲୋକକଲ୍ୟାଣସାଧନ କରିଥିଲେ, ସେ ହିଁ ବର୍ତ୍ତମାନସମୟରେ ପୁନର୍ବାର ଶରୀର ପରିଗ୍ରହପୂର୍ବକ 'ଶ୍ରୀରାମକୃଷ୍ଣ'ରୂପରେ ଆବିର୍ଭୂତ ହୋଇଛନ୍ତି । ବୁଝାଯାଏ, ଲୋକକଲ୍ୟାଣସାଧନନିମିତ୍ତ ପରବର୍ତ୍ତୀଜୀବନରେ ତାଙ୍କଠାରେ ବିଚିତ୍ର ବିଭୂତିସମୂହ ନିତ୍ୟ ପ୍ରକାଶ ପାଇଥିଲେ ମଧ୍ୟ କାହିଁକି ଆମେ ତାଙ୍କୁ ନିଜର ଶରୀର ମନର ସୁଖସ୍ୱାଚ୍ଛନ୍ଦ୍ୟ ନିମିତ୍ତ ଏସବୁ ଦିବ୍ୟଶକ୍ତିର ପ୍ରୟୋଗ କରିବାକୁ କେବେ ଦେଖିବାକୁ ପାଇ ନାହୁଁ । ବୁଝିହୁଏ ଯେ, ସେ କାହିଁକି ସଂକଳ୍ପମାତ୍ରେ ହିଁ ଆଧ୍ୟାତ୍ମିକ ତତ୍ତ୍ୱଗୁଡ଼ିକୁ ପ୍ରତ୍ୟକ୍ଷ କରିବାର ଶକ୍ତି ଅନ୍ୟଠାରେ ଜାଗରିତ କରିବାକୁ ସମର୍ଥ ହେଉଥିଲେ ଏବଂ କାହିଁକି ବା ତାଙ୍କର ଦିବ୍ୟପ୍ରଭାବ ଦିନକୁ ଦିନ ପୃଥିବୀର ସମସ୍ତ ଦେଶରେ ଅପୂର୍ବ ଆଧିପତ୍ୟ ଲାଭ କରୁଅଛି ।

---

କେବଳ ଜଣେ ଗ୍ରନ୍ଥକାର ନୁହନ୍ତି ବରଂ ବିଦ୍ୟାରଣ୍ୟ ଓ ଭାରତୀ କୃଷ୍ଣତୀର୍ଥ ଦୁଇଜଣ ହିଁ ଏହି ଗ୍ରନ୍ଥର ରଚୟିତା ବିଦ୍ୟାରଣ୍ୟଙ୍କର ପୂର୍ବନାମ ମାଧବ ଓ ସେ ସାୟନାଚାର୍ଯ୍ୟଙ୍କର ଭାଇ ଥିଲେ ।

୧. ଲୋକକଲ୍ୟାଣ ସାଧନ ପାଇଁ ଯେଉଁମାନେ ବିଶେଷ ଅଧିକାର ବା ଶକ୍ତି ନେଇ ଜନ୍ମଗ୍ରହଣ କରନ୍ତି ।

## ପୂର୍ବୋକ୍ତ ଉପଲବ୍ଧିଗୁଡ଼ିକ ଠାକୁରଙ୍କଠାରେ ଯୁଗପତ୍ ଉପସ୍ଥିତ ନ ହେବାର କାରଣ :

ଅଦ୍ୱୈତଭାବରେ ଦୃଢ଼ପ୍ରତିଷ୍ଠିତ ହୋଇ ଭାବରାଜ୍ୟରେ ଅବରୋହଣ କରିବା ସମୟରେ ଠାକୁର ଏପରି ଭାବରେ ନିଜ ଜୀବନର ଭୂତଭବିଷ୍ୟତ ସମ୍ୟକ୍ ଉପଲବ୍ଧି କରିଥିଲେ । କିନ୍ତୁ ଏହି ସମସ୍ତ ଉପଲବ୍ଧି ତାଙ୍କଠାରେ ଯେ ହଠାତ୍ ଦିନେ ଉପସ୍ଥିତ ହୋଇଥିଲା, ତାହା ବୋଧ ହୁଏ ନାହିଁ । ଆମମାନଙ୍କର ଅନୁମାନ, ଭାବଭୂମିରେ ଅବରୋହଣ ପରେ ପ୍ରାୟ ଏକବର୍ଷ ମଧରେ ସେ ଏସବୁ କଥା ସମ୍ୟକ୍ ବୁଝିପାରିଥିଲେ । ଶ୍ରୀଶ୍ରୀଜଗଦମ୍ବା ଏହି ସମୟରେ ତାଙ୍କର ଚକ୍ଷୁ ସମ୍ମୁଖରୁ ଗୋଟିଏ ପରେ ଗୋଟିଏ ଆବରଣ ଘୁଞ୍ଚାଇ ଦିନକୁ ଦିନ ତାଙ୍କୁ ଏସବୁ ସ୍ପଷ୍ଟ ବୁଝାଇ ଦେଇଥିଲେ । ପୂର୍ବୋକ୍ତ ଉପଲବ୍ଧିଗୁଡ଼ିକ ତାଙ୍କ ମନରେ ଯୁଗପତ୍ କାହିଁକି ଉପସ୍ଥିତ ହୋଇ ନାହିଁ, ସେବିଷୟରେ କାରଣ ଖୋଜିଲେ ଆମକୁ କହିବାକୁ ହେବ— ଅଦ୍ୱୈତଭାବରେ ଅବସ୍ଥାନପୂର୍ବକ ଗଭୀର ବ୍ରହ୍ମାନନ୍ଦ ସମ୍ଭୋଗରେ ସେ ଏହି ସମୟରେ ନିରନ୍ତର ବ୍ୟାପୃତ ଥିଲେ । ସୁତରାଂ ଯେତେଦିନ ପର୍ଯ୍ୟନ୍ତ ତାଙ୍କର ମନ ପୁନରାୟ ବହିର୍ମୁଖୀ ବୃତ୍ତି ଅବଲମ୍ବନ କରି ନ ଥିଲା, ସେତେଦିନ ଏସବୁ ବିଷୟ ଉପଲବ୍ଧି କରିବାର ତାଙ୍କର ସୁଯୋଗ ଏବଂ ପ୍ରବୃତ୍ତି ହୋଇ ନ ଥିଲା । ଏହିପରି ସାଧନକାଳର ପ୍ରାରମ୍ଭରେ ଠାକୁର ଶ୍ରୀଶ୍ରୀଜଗଦମ୍ବାତାଙ୍କ ନିକଟରେ ଯେଉଁ ପ୍ରାର୍ଥନା କରିଥିଲେ, 'ମା, ମୁଁ କ'ଣ କରିବି ତାହା କିଛି ଜାଣେ ନାହିଁ, ତୁ ନିଜେ ମୋତେ ଯାହା ଶିଖାଇବୁ ତାହା ହିଁ ଶିଖିବି'—ଏହା ହିଁ ଏହି ସମୟରେ ପୂର୍ଣ୍ଣ ହୋଇଥିଲା ।

## ଅଦ୍ୱୈତଭାବ ଲାଭ କରିବା ହିଁ ସମସ୍ତ ସାଧନାର ଉଦ୍ଦେଶ୍ୟ ବୋଲି ଠାକୁରଙ୍କର ଉପଲବ୍ଧି :

ଅଦ୍ୱୈତଭାବଭୂମିରେ ଆରୂଢ଼ ହୋଇ ଠାକୁରଙ୍କର ଏସମୟରେ ଅନ୍ୟ ଏକ ବିଷୟର ମଧ ଉପଲବ୍ଧି ହୋଇଥିଲା । ସେ ହୃଦୟଙ୍ଗମ କରିଥିଲେ ଯେ, ଅଦ୍ୱୈତଭାବରେ ସୁପ୍ରତିଷ୍ଠିତ ହେବା ହିଁ ସର୍ବପ୍ରକାର ସାଧନ-ଭଜନର ଚରମ ଉଦ୍ଦେଶ୍ୟ । କାରଣ ଭାରତରେ ପ୍ରଚଳିତ ପ୍ରଧାନ ପ୍ରଧାନ ଧର୍ମସମ୍ପ୍ରଦାୟସମୂହର ମତ ଅବଲମ୍ବନରେ ସାଧନ କରି ସେ ଏହାପୂର୍ବରୁ ପ୍ରତ୍ୟକ୍ଷ କରିଥିଲେ ଯେ, ଏପ୍ରତ୍ୟେକଟି ହିଁ ସାଧକଙ୍କୁ ଉକ୍ତ ଭୂମି ଆଡ଼କୁ ଅଗ୍ରସର କରାଏ । ଅଦ୍ୱୈତଭାବ କଥା ପଚାରିଲେ ସେ ସେଥିପାଇଁ ବାରମ୍ବାର ଆମକୁ କହୁଥିଲେ, ''ଏହା ଶେଷ କଥା ରେ, ଶେଷ କଥା; ଈଶ୍ୱର-ପ୍ରେମର ଚରମ ପରିଣତିରେ ସର୍ବଶେଷରେ ଏହା ସାଧକ-ଜୀବନରେ ସ୍ୱତଃ ଆସି ଉପସ୍ଥିତ ହୋଇଥାଏ; ଜାଣିବୁ ସମସ୍ତ ମତର ହିଁ ଏହା ଶେଷକଥା ଏବଂ ଯେତେ ମତ ସେତେ ପଥ ।''

### ପୂର୍ବୋକ୍ତ ଉପଲବ୍ଧି ତାଙ୍କ ପୂର୍ବରୁ ଅନ୍ୟ କେହି କରି ନ ଥିଲେ :

ଏହିପରି ଅଦ୍ୱୈତଭାବ ଉପଲବ୍ଧି କରି ଠାକୁରଙ୍କର ମନ ଅସୀମ ଉଦାରତା ଲାଭ କରିଥିଲା । ଈଶ୍ୱରଲାଭକୁ ଯେଉଁମାନେ ମାନବ ଜୀବନର ଉଦ୍ଦେଶ୍ୟ ବୋଲି ଶିକ୍ଷାପ୍ରଦାନ କରନ୍ତି, ଏପରି ସମସ୍ତ ସମ୍ପ୍ରଦାୟ ପ୍ରତି ଏହା ଏବେ ଅପୂର୍ବ ସହାନୁଭୂତିସମ୍ପନ୍ନ ହୋଇଥିଲା । କିନ୍ତୁ ଏପରି ଉଦାରତା ଓ ସହାନୁଭୂତି ଯେ ତାଙ୍କର ନିଜସ୍ୱ ସମ୍ପତ୍ତି ଏବଂ ପୂର୍ବଯୁଗର କୌଣସି ସାଧକାଗ୍ରଣୀ ଯେ ତାହା ତାଙ୍କ ପରି ପୂର୍ଣ୍ଣଭାବରେ ଲାଭ କରିବାକୁ ସମର୍ଥ ହୋଇ ନାହାନ୍ତି, ଏକଥା ପ୍ରଥମେ ତାଙ୍କର ହୃଦୟଙ୍ଗମ ହୋଇ ନ ଥିଲା । ଦକ୍ଷିଣେଶ୍ୱର କାଳୀମନ୍ଦିରରେ ଏବଂ ପ୍ରସିଦ୍ଧ ତୀର୍ଥମାନଙ୍କରେ ନାନା ସମ୍ପ୍ରଦାୟର ପ୍ରବୀଣ ସାଧକଗଣଙ୍କ ସହିତ ମିଳିତ ହୋଇ କ୍ରମେ ତାଙ୍କର ଏକଥାର ଉପଲବ୍ଧି ହୋଇଥିଲା । କିନ୍ତୁ ଏବେଠାରୁ ସେ ଧର୍ମର ଏକଦେଶୀଭାବ (ଏକ ଚାଟିଆ ଭାବ) ଅନ୍ୟମାନଙ୍କଠାରେ ଅବଲୋକନ କରିବା ମାତ୍ରେ ପ୍ରାଣରେ ବିଷମ ଆଘାତ ପ୍ରାପ୍ତ ହୋଇ ଏହି ପ୍ରକାର ହୀନବୁଦ୍ଧି ଦୂର କରିବାକୁ ସର୍ବତୋଭାବରେ ସଚେଷ୍ଟ ହେଉଥିଲେ ।

### ଅଦ୍ୱୈତବିଜ୍ଞାନରେ ପ୍ରତିଷ୍ଠିତ ଠାକୁରଙ୍କର ମନର ଉଦାରତା ସମ୍ବନ୍ଧରେ ଦୃଷ୍ଟାନ୍ତ—ତାଙ୍କର ଇସଲାମ ଧର୍ମସାଧନା :

ଅଦ୍ୱୈତବିଜ୍ଞାନରେ ପ୍ରତିଷ୍ଠିତ ହୋଇ ଠାକୁରଙ୍କ ମନ ଏସମୟରେ କିପରି ଉଦାରଭାବସମ୍ପନ୍ନ ହୋଇଥିଲା, ତାହା ଆମେ ଏହି ସମୟର ଗୋଟିଏ ଘଟଣାରୁ ସ୍ପଷ୍ଟ ବୁଝିପାରୁ । ଆମେ ଦେଖିଛୁ, ଉକ୍ତ ଭାବସାଧନାରେ ସିଦ୍ଧ ହେବା ପରେ ଠାକୁରଙ୍କ ଶରୀର କେତେ ମାସଧରି ରୋଗାକ୍ରାନ୍ତ ହୋଇପଡ଼ିଥିଲା । ସେହି ରୋଗରୁ ମୁକ୍ତ ହେବା ପରେ ନିମ୍ନଲିଖିତ ଘଟଣା ଘଟିଥିଲା ।

ଗୋବିନ୍ଦ ରାୟ ନାମକ ଏକ ବ୍ୟକ୍ତି ଏହି ସମୟର କିଛି କାଳ ପୂର୍ବରୁ ଧର୍ମାନ୍ୱେଷଣରେ ପ୍ରବୃତ୍ତ ହୋଇଥିଲେ । ହୃଦୟ କହୁଥିଲେ, ସେ ଜାତିରେ କ୍ଷତ୍ରିୟ ଥିଲେ । ସମ୍ଭବତଃ ପାର୍ସୀ ଏବଂ ଆରବୀ ଭାଷାରେ ତାଙ୍କର ଦଖଲ ଥିଲା । ଧର୍ମସମ୍ବନ୍ଧୀୟ ନାନା ମତାମତ ଆଲୋଚନା କରି ଏବଂ ନାନା ସମ୍ପ୍ରଦାୟ ସହିତ ମିଳିତ ହୋଇ ସେ ପରିଶେଷରେ ଇସ୍‌ଲାମ ଧର୍ମର ଉଦାର ମତରେ ଆକୃଷ୍ଟ ହୋଇ ଯଥାରୀତି ଦୀକ୍ଷା ଗ୍ରହଣ କରିଥିଲେ । ଧର୍ମପିପାସୁ ଗୋବିନ୍ଦ ଇସ୍‌ଲାମ ଧର୍ମ ମତ ଗ୍ରହଣ କଲେ ମଧ୍ୟ ତାଙ୍କର ସାମାଜିକ ନିୟମପଦ୍ଧତି କେତେଦୂର ଅନୁସରଣ କରୁଥିଲେ, ତାହା କହିହେବ ନାହିଁ । କିନ୍ତୁ ଦୀକ୍ଷା ଗ୍ରହଣ କରିବା ପରଠାରୁ ସେ କୋରାନ୍ ପାଠ ଓ ତଦୁକ୍ତ ପ୍ରଣାଳୀରେ ସାଧନଭଜନରେ ମହୋତ୍ସାହରେ ନିଯୁକ୍ତ ଥିଲେ, ଏହା ଆମେ ଶୁଣିଥିଲୁ । ଗୋବିନ୍ଦ ପ୍ରେମିକ ଥିଲେ । ବୋଧହୁଏ, ଇସ୍‌ଲାମର ସୁଫୀ ସମ୍ପ୍ରଦାୟର ପ୍ରଚଳିତ ଶିକ୍ଷା ଏବଂ ଭାବ ସାହାଯ୍ୟରେ ଈଶ୍ୱରଙ୍କ

ଉପାସନା କରିବାର ପଦ୍ଧତି ତାଙ୍କର ହୃଦୟ ଅଧିକାର କରିଥିଲା । କାରଣ ସେ ଏହି ସମ୍ପ୍ରଦାୟର ଦରବେଶ୍‌ମାନଙ୍କ ପରି ଏବେ ଭାବସାଧନାରେ ଅହୋରାତ୍ର ନିଯୁକ୍ତ ରହୁଥିଲେ ।

### ସୁଫି ଗୋବିନ୍ଦ ରାୟଙ୍କର ଆଗମନ :

ଯେପରି ହେଉ, ଗୋବିନ୍ଦ ଏବେ ଦକ୍ଷିଣେଶ୍ୱର କାଳୀମନ୍ଦିରଠାରେ ପହଞ୍ଚିଲେ ଏବଂ ସାଧନାନୁକୂଳ ସ୍ଥାନ ବୁଝି ପଞ୍ଚବଟୀର ଶାନ୍ତିପ୍ରଦ ଛାୟାରେ ଆସନ ପକାଇ କିଛି ଦିନ କଟାଇଲେ । ରାଣୀ ରାସମଣିଙ୍କର କାଳୀମନ୍ଦିରରେ ସେତେବେଳେ ହିନ୍ଦୁ ସଂସାରତ୍ୟାଗୀମାନଙ୍କ ପରି ମୁସଲମାନ ଫକୀରମାନଙ୍କର ମଧ୍ୟ ସମାଦର ଥିଲା ଏବଂ ଜାତିଧର୍ମନିର୍ବିଶେଷରେ ସମସ୍ତ ସମ୍ପ୍ରଦାୟର ତ୍ୟାଗୀ ବ୍ୟକ୍ତିମାନଙ୍କ ପ୍ରତି ଏଠାରେ ସମଭାବରେ ଆତିଥ୍ୟ ପ୍ରଦର୍ଶନ କରା ହେଉଥିଲା । ଅତଏବ ଏଠାରେ ରହିବାବେଳେ ଗୋବିନ୍ଦଙ୍କୁ ଭିକ୍ଷା ନିମନ୍ତେ ଅନ୍ୟତ୍ର ଗମନ କରିବାକୁ ପଡୁ ନ ଥିଲା ଏବଂ ଇଷ୍ଟଚିନ୍ତାରେ ନିଯୁକ୍ତ ହୋଇ ସେ ସାନନ୍ଦରେ ଦିନଯାପନ କରୁଥିଲେ ।

### ଗୋବିନ୍ଦଙ୍କ ସହିତ ଆଳାପ କରି ଠାକୁରଙ୍କର ସଂକଳ୍ପ :

ପ୍ରେମିକ ଗୋବିନ୍ଦଙ୍କୁ ଦେଖି ଠାକୁର ତାଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ ଏବଂ ତାଙ୍କ ସହିତ ଆଳାପରେ ପ୍ରବୃତ୍ତ ହୋଇ ତାଙ୍କର ସରଳ ବିଶ୍ୱାସ ଓ ପ୍ରେମରେ ମୁଗ୍ଧ ହେଲେ । ଏହିଭାବରେ ଠାକୁରଙ୍କର ମନ ବର୍ତ୍ତମାନ ଇସ୍‌ଲାମ ଧର୍ମପ୍ରତି ଆକୃଷ୍ଟ ହେଲା ଏବଂ ସେ ଭାବିବାକୁ ଲାଗିଲେ, 'ଏହା ମଧ୍ୟ ଈଶ୍ୱରଲାଭର ଏକ ପଥ, ଅନନ୍ତ-ଲୀଳାମୟୀ ମା' ଏହିପଥ ଦେଇ ମଧ୍ୟ କେତେ ଲୋକଙ୍କୁ ତାଙ୍କର ଶ୍ରୀପାଦପଦ୍ମଲାଭରେ ଧନ୍ୟ କରୁଛନ୍ତି; କିପରି ସେ ଏହି ପଥ ଦେଇ ତାଙ୍କର ଆଶ୍ରିତମାନଙ୍କୁ କୃତାର୍ଥ କରନ୍ତି ତାହା ଦେଖିବାକୁ ହେବ; ଗୋବିନ୍ଦଙ୍କ ନିକଟରୁ ଦୀକ୍ଷିତ ହୋଇ ଏହି ଭାବସାଧନରେ ନିଯୁକ୍ତ ହେବି ।'

### ଗୋବିନ୍ଦଙ୍କ ନିକଟରୁ ଦୀକ୍ଷାଗ୍ରହଣ କରି ସାଧନାରେ ଠାକୁରଙ୍କର ସିଦ୍ଧିଲାଭ :

ଯେପରି ଚିନ୍ତା, ସେପରି କର୍ମ । ଠାକୁର ଗୋବିନ୍ଦଙ୍କୁ ନିଜର ଅଭିପ୍ରାୟ ପ୍ରକାଶ କଲେ ଏବଂ ଦୀକ୍ଷାଗ୍ରହଣ କରି ଯଥାବିଧି ଇସ୍‌ଲାମ ଧର୍ମସାଧନାରେ ପ୍ରବୃତ୍ତ ହେଲେ । ଠାକୁର କହୁଥିଲେ, "ସେହି ସମୟରେ 'ଆଲ୍ଲା'ମନ୍ତ୍ର ଜପ କରୁଥିଲି, ମୁସଲମାନମାନଙ୍କ ପରି କଛା ଖୋଲି ଲୁଗା ପିନ୍ଧୁଥିଲି; ତ୍ରିସନ୍ଧ୍ୟା ନମାଜ ପାଠ କରୁଥିଲି ଏବଂ ହିନ୍ଦୁଭାବ ମନରୁ ଏକାନ୍ତ ଭାବରେ ଲୁପ୍ତ ହୋଇଯିବାରୁ ହିନ୍ଦୁଦେବଦେବୀମାନଙ୍କୁ ପ୍ରଣାମ କରିବା ଦୂରରେ ଥାଉ, ଦର୍ଶନ ପର୍ଯ୍ୟନ୍ତ କରିବାକୁ ପ୍ରବୃତ୍ତି ହେଉ ନ ଥିଲା । ଏହିଭାବରେ ତିନିଦିନ ଅତିବାହିତ ହେବାପରେ ସେହି ମତର

ସାଧନଫଳ ସମ୍ୟକ ହସ୍ତଗତ ହୋଇଥିଲା ।'' ଇସ୍‌ଲାମ ଧର୍ମସାଧନାକାଳରେ ଠାକୁର ପ୍ରଥମେ ଏକ ଦୀର୍ଘଶ୍ମଶ୍ରୁବିଶିଷ୍ଟ, ସୁଗମ୍ଭୀର, ଜ୍ୟୋତିର୍ମୟ ପୁରୁଷଙ୍କର ଦିବ୍ୟଦର୍ଶନ ଲାଭ କରିଥିଲେ । ପରେ ସଗୁଣ ବିରାଟ ବ୍ରହ୍ମର ଉପଲବ୍ଧିପୂର୍ବକ ତୁରୀୟ ନିର୍ଗୁଣ ବ୍ରହ୍ମରେ ତାଙ୍କର ମନ ଲୀନ ହୋଇ ଯାଇଥିଲା ।

**ଇସ୍‌ଲାମ ଧର୍ମସାଧନା କାଳରେ ଠାକୁରଙ୍କର ଆଚରଣ :**

ହୃଦୟ କହୁଥିଲେ, ଇସ୍‌ଲାମ ଧର୍ମସାଧନା ସମୟରେ ଠାକୁର ମୁସଲମାନମାନଙ୍କର ପ୍ରିୟ ଖାଦ୍ୟସବୁ, ଏପରିକି ଗୋମାଂସ ପର୍ଯ୍ୟନ୍ତ ଗ୍ରହଣ କରିବାକୁ ଇଚ୍ଛୁକ ହୋଇଥିଲେ । ମଥୁରମୋହନଙ୍କର ସାନୁନୟ ଅନୁରୋଧ ହିଁ ସେତେବେଳେ ତାଙ୍କୁ ଏକର୍ମରୁ ନିରସ୍ତ କରିଥିଲା । ବାଳକସ୍ୱଭାବ ଠାକୁରଙ୍କର ସେହିପରି ଇଚ୍ଛା ଅନ୍ତତଃ ଆଂଶିକ ପୂର୍ଣ୍ଣ ନ ହେଲେ ସେ କେବେ ନିରସ୍ତ ହେବେ ନାହିଁ ଭାବି ମଥୁରବାବୁ ଏସମୟରେ ଜଣେ ମୁସଲମାନ ପାଚକ ଆଣି ତାଙ୍କ ନିର୍ଦ୍ଦେଶରେ ଏକ ବ୍ରାହ୍ମଣ ଦ୍ୱାରା ମୁସଲମାନମାନଙ୍କର ପ୍ରଣାଳୀରେ ଖାଦ୍ୟସକଳ ରନ୍ଧନ କରାଇ ଠାକୁରଙ୍କୁ ଭୋଜନ କରିବାକୁ ଦେଇଥିଲେ । ଇସ୍‌ଲାମ ଧର୍ମସାଧନା ସମୟରେ ଠାକୁର କାଳୀମନ୍ଦିର ଅଭ୍ୟନ୍ତରକୁ ଥରେ ମଧ୍ୟ ପଦାର୍ପଣ କରି ନାହାନ୍ତି । କାଳୀମନ୍ଦିରର ବାହାରେ ଅବସ୍ଥିତ ମଥୁରମୋହନଙ୍କ କୋଠିରେ ହିଁ ବାସ କରୁଥିଲେ ।

**ଭାରତରେ ହିନ୍ଦୁ ଓ ମୁସଲମାନ ଜାତି କାଳକ୍ରମେ ଭ୍ରାତୃଭାବରେ ମିଳିତ ହେବେ, ଠାକୁରଙ୍କର ଇସ୍‌ଲାମ ମତସାଧନାରୁ ଏକଥା ବୁଝାଯାଏ :**

ବେଦାନ୍ତସାଧନାରେ ସିଦ୍ଧ ହୋଇ ଠାକୁରଙ୍କର ମନ ଅନ୍ୟାନ୍ୟ ଧର୍ମସମ୍ପ୍ରଦାୟ ପ୍ରତି କିପରି ସହାନୁଭୂତିସମ୍ପନ୍ନ ହୋଇଥିଲା, ତାହା ପୂର୍ବୋକ୍ତ ଘଟଣାରୁ ବୁଝି ହୋଇଥାଏ ଏବଂ ଏକମାତ୍ର ବେଦାନ୍ତବିଜ୍ଞାନରେ ବିଶ୍ୱାସୀ ହୋଇ ହିଁ ଯେ ଭାରତର ହିନ୍ଦୁ ଓ ମୁସଲମାନ ସମ୍ପ୍ରଦାୟ ପରସ୍ପର ସହାନୁଭୂତିସମ୍ପନ୍ନ ଏବଂ ଭାତୃଭାବରେ ନିବଦ୍ଧ ହୋଇପାରିବେ, ଏକଥା ମଧ୍ୟ ହୃଦୟଙ୍ଗମ ହୁଏ । ନ ହେଲେ ଠାକୁର ଯେପରି କହୁଥିଲେ, ''ହିନ୍ଦୁ ଏବଂ ମୁସଲମାନମାନଙ୍କ ମଧ୍ୟରେ ଯେପରି ଏକ ପର୍ବତ-ବ୍ୟବଧାନ ରହିଅଛି—ପରସ୍ପରର ଚିନ୍ତାପ୍ରଣାଳୀ, ଧର୍ମବିଶ୍ୱାସ ଓ କାର୍ଯ୍ୟକଳାପ ଏତେଦିନ ଏକତ୍ରବାସରେ ମଧ୍ୟ ପରସ୍ପର ନିକଟରେ ସମ୍ପୂର୍ଣ୍ଣ ଦୁର୍ବୋଧ୍ୟ ହୋଇ ରହିଅଛି ।'' ଏହି ପର୍ବତ ଯେ ଦିନେ ଅନ୍ତର୍ହିତ ହେବ ଏବଂ ଉଭୟେ ପ୍ରେମରେ ପରସ୍ପରଙ୍କୁ ଆଲିଙ୍ଗନ କରିବେ, ଯୁଗାବତାର ଠାକୁରଙ୍କର ଇସ୍‌ଲାମ ଧର୍ମସାଧନା କ'ଣ ତାହାର ହିଁ ସୂଚନା କରିଗଲା ?

## ପରବର୍ତ୍ତୀ କାଳରେ ଠାକୁରଙ୍କର ମନରେ ଅଦ୍ୱୈତସ୍ମୃତି କେତେଦୂର ପ୍ରବଳ ଥିଲା :

ନିର୍ବିକଳ୍ପ ଭୂମିରେ ପ୍ରତିଷ୍ଠିତ ହେବା ଫଳରେ ଠାକୁରଙ୍କର ଏବେ ଦ୍ୱୈତ ଭୂମିର ସୀମାନ୍ତରାଳରେ ଅବସ୍ଥିତ ବିଷୟ ଓ ବ୍ୟକ୍ତିମାନଙ୍କୁ ଦେଖି ଅଦ୍ୱୈତସ୍ମୃତି ଅନେକ ସମୟରେ ସହସା ପ୍ରବୁଦ୍ଧ ହୋଇ ଉଠୁଥିଲା ଏବଂ ତାଙ୍କୁ ତୁରୀୟଭାବରେ ଲୀନ କରୁଥିଲା । ସଂକଳ୍ପ ନ କଲେ ମଧ୍ୟ ସାମାନ୍ୟମାତ୍ର ଉଦ୍ଦୀପନାରେ ଆମେ ତାଙ୍କର ସେହିପରି ଅବସ୍ଥା ଉପସ୍ଥିତ ହେବାର ଦେଖିଛୁ । ତେଣୁ ଏବେଠାରୁ ସେ ସଂକଳ୍ପ କରିବାମାତ୍ରେ ଯେ ଉକ୍ତ ଭୂମିକୁ ଆରୋହଣରେ ସମର୍ଥ ଥିଲେ, ଏକଥା କହିବା ଅନାବଶ୍ୟକ । ଅଦ୍ୱୈତଭାବ ଯେ ତାଙ୍କର କେତେଦୂର ଅନ୍ତରର ପଦାର୍ଥ ଥିଲା, ତାହା ଏଥିରୁ ସ୍ପଷ୍ଟ ବୁଝାଯାଏ । ଏପରି କେତୋଟି ଘଟଣା ଏଠାରେ ଉଲ୍ଲେଖ କଲେ ହିଁ ପାଠକ ବୁଝିପାରିବେ, ସେହି ଭାବ ତାଙ୍କ ହୃଦୟରେ ଯେପରି ଗଭୀର ସେପରି ବ୍ୟାପକ ଥିଲା ।

### ଏବିଷୟରେ କେତୋଟି ଦୃଷ୍ଟାନ୍ତ—

### (୧) ବୃଦ୍ଧ ଘାସକଟାଳି :

ଦକ୍ଷିଣେଶ୍ୱରର କାଳୀମନ୍ଦିରର ପ୍ରଶସ୍ତ ବଗିଚା ବର୍ଷାଦିନେ ତୃଣାଚ୍ଛନ୍ନ ହୋଇଯାଉଥିବାରୁ ସେଠାର ମାଳୀମାନଙ୍କୁ ପନିପରିବା ଚାଷ କରିବାରେ ବିଶେଷ ଅସୁବିଧା ହୋଇଥାଏ । ସେଥିପାଇଁ ଘାସକଟାଳିମାନଙ୍କୁ ଏହି ସମୟରେ ଘାସକାଟି ନେଇଯିବାକୁ ଅନୁମତି ପ୍ରଦାନ କରାହୁଏ । ଜଣେ ବୃଦ୍ଧ ଘାସକଟାଳି ଦିନେ ଏପରି ବିନାମୂଲ୍ୟରେ ଘାସ କାଟି ନେବାର ଅନୁମତି ଲାଭ କରି ସାନନ୍ଦରେ ସାରାଦିନ ଉକ୍ତ କର୍ମରେ ନିଯୁକ୍ତ ରହି ଅପରାହ୍ଣରେ ଘାସବୋଝ ଧରି ବଜାରରେ ବିକ୍ରି କରିବା ପାଇଁ ଯିବାକୁ ଉପକ୍ରମ କରୁଥିଲା । ଠାକୁର ଦେଖିଲେ, ଲୋଭରେ ପଡ଼ି ସେ ଏତେ ଘାସ କାଟି ପକାଇଛି ଯେ, ଏତେବଡ଼ ଘାସର ବୋଝ ନେବା ବୃଦ୍ଧଙ୍କ ଶକ୍ତି ମଧ୍ୟରେ ନ ଥିଲା । ଗରିବ ବୃଦ୍ଧ ଘାସକଟାଳି ଏକଥା କିଛିମାତ୍ର ବୁଝି ନ ପାରି ବୃହତ୍ ବୋଝଟାକୁ ଟେକି ମୁଣ୍ଡରେ ରଖିବା ପାଇଁ ବାରମ୍ବାର ଚେଷ୍ଟା କରି ମଧ୍ୟ ତାହା ଉଠାଇ ପାରୁ ନ ଥିଲା । ଏହି ଦୃଶ୍ୟ ଦେଖୁ ଦେଖୁ ଠାକୁରଙ୍କର ଭାବାବେଶ ହେଲା । ଭାବିଲେ, ଅନ୍ତରରେ ପୂର୍ଣ୍ଣଜ୍ଞାନସ୍ୱରୂପ ଆତ୍ମା ବିଦ୍ୟମାନ ଏବଂ ବାହାରେ ଏତେ ନିର୍ବୁଦ୍ଧିତା, ଏତେ ଅଜ୍ଞାନ । 'ହେ ରାମ, ତୁମର ବିଚିତ୍ର ଲୀଳା !' —କହୁ କହୁ ଠାକୁର ସମାଧିସ୍ଥ ହୋଇଗଲେ ।

## (୨) ଆହତ ପତଙ୍ଗ :

ଦିନେ ଠାକୁର ଦେଖିଲେ, ଗୋଟିଏ କଙ୍କି ଉଡୁଛି ଏବଂ ଏହାର ଗୁହ୍ୟଦେଶରେ ଗୋଟିଏ ଲମ୍ବା କାଠି ବିଦ୍ଧ ହୋଇ ରହିଛି । କୌଣସି ଦୁଷ୍ଟ ବାଳକ ସେହିପରି କରିଛି ବୋଲି ଭାବି ସେ ପ୍ରଥମେ ବ୍ୟଥିତ ହେଲେ । କିନ୍ତୁ ପରମୁହୂର୍ତ୍ତରେ ଭାବାବିଷ୍ଟ ହୋଇ 'ହେ ରାମ, ତୁମେ ନିଜ ନିଜର ଦୁର୍ଦ୍ଦଶା କରିଅଛ' କହି ହସି ଉଠିଲେ ।

## (୩) ପଦଦଳିତ ନବୀନ ଦୁର୍ବାଦଳ :

ଥରେ କାଳୀମନ୍ଦିର ଉଦ୍ୟାନର ଗୋଟିଏ ସ୍ଥାନ ନବୀନ ଦୁର୍ବାଦଳରେ ସମାଚ୍ଛନ୍ନ ହୋଇ ରମଣୀୟ ଦେଖାଯାଉଥିଲା । ଠାକୁର ଏହା ଦେଖୁ ଦେଖୁ ଭାବାବିଷ୍ଟ ହୋଇ ଏତେଦୂର ତନ୍ମୟ ହୋଇ ଯାଇଥିଲେ ଯେ, ସେହି ସ୍ଥାନକୁ ସର୍ବତୋଭାବରେ ନିଜର ଅଙ୍ଗ ବୋଲି ଅନୁଭବ କରୁଥିଲେ । ସହସା ଜଣେ ବ୍ୟକ୍ତି ଏହି ସମୟରେ ସେହି ସ୍ଥାନ ଉପର ଦେଇ ଅନ୍ୟତ୍ର ଯିବାକୁ ଲାଗିଲେ । ଠାକୁର ଏଥିରେ ଅସହ୍ୟ ଯନ୍ତ୍ରଣା ଅନୁଭବ କରି ଅସ୍ଥିର ହୋଇପଡ଼ିଲେ । ଏଘଟଣା ଉଲ୍ଲେଖ କରି ସେ ଆମକୁ କହିଥିଲେ, ''ଛାତି ଉପରେ ଚଢ଼ି କେହି ଚାଲିଗଲେ ଯେପରି ଯନ୍ତ୍ରଣା ଅନୁଭବ ହୁଏ, ସେତେବେଳେ ଠିକ୍ ସେହିପରି ଯନ୍ତ୍ରଣା ଅନୁଭବ କରିଥିଲି । ଏପରି ଭାବାବସ୍ଥା ଅତ୍ୟନ୍ତ ଯନ୍ତ୍ରଣାଦାୟକ, ମୋର ତାହା ଛଅଘଣ୍ଟା ପର୍ଯ୍ୟନ୍ତ ରହିଥିଲା, ସେଥିରେ ହିଁ ମୁଁ ଅସ୍ଥିର ହୋଇପଡ଼ିଥିଲି ।''

## (୪) ନୌକାରେ ଦୁଇଜଣ ମାଝିଙ୍କର ପରସ୍ପର କଳହରେ ଠାକୁରଙ୍କ ନିଜ ଶରୀରରେ ଆଘାତ ଅନୁଭବ :

କାଳୀମନ୍ଦିରର ଚାନ୍ଦିନୀ-ସମାଯୁକ୍ତ ବୃହତ୍ ଘାଟରେ ଦଣ୍ଡାୟମାନ ହୋଇ ଠାକୁର ଦିନେ ଭାବାବେଶରେ ଗଙ୍ଗା ଦର୍ଶନ କରୁଥିଲେ । ଘାଟରେ ସେସମୟରେ ଦୁଇଖଣ୍ଡ ଡଙ୍ଗା ଲାଗିଥିଲା ଏବଂ ଏହାର ମାଝିମାନେ କୌଣସି ବିଷୟ ନେଇ ପରସ୍ପର କଳହ କରୁଥିଲେ । କଳହ କ୍ରମେ ବଢ଼ିବାରୁ ସବଳ ବ୍ୟକ୍ତି ଜଣକ ଦୁର୍ବଳର ପିଠିରେ ଖୁବ୍ ଜୋର୍‌ରେ ଚାପୁଡ଼ା ମାରିଲା । ଠାକୁର ଏହା ଦେଖି ଚିତ୍କାର କରି କାନ୍ଦି ଉଠିଲେ । ଠାକୁରଙ୍କର ଏପରି କାତର କ୍ରନ୍ଦନ କାଳୀମନ୍ଦିରରେ ଥିବା ହୃଦୟଙ୍କ କର୍ଣ୍ଣରେ ପ୍ରବେଶ କରିବାରୁ ସେ ଦ୍ରୁତପଦରେ ସେଠାରେ ଆସି ଦେଖିଲେ ତାଙ୍କ ପୃଷ୍ଠଦେଶ ଆରକ୍ତିମ ହୋଇ ଫୁଲି ଯାଇଛି । କ୍ରୋଧରେ ଅଧୀର ହୋଇ ହୃଦୟ ବାରମ୍ବାର କହିବାକୁ ଲାଗିଲେ, ''ମାମୁଁ, ତମକୁ କିଏ ମାରିଛି କୁହ, ମୁଁ ତା'ର

ମୁଣ୍ଡଟା ଛିଣ୍ଡାଇ ଦେବି ।'' ପରେ ଠାକୁର ସାମାନ୍ୟ ଶାନ୍ତ ହେଲେ ମାଝିମାନଙ୍କ ବିବାଦରୁ ତାଙ୍କ ପିଠିରେ ଆଘାତ ଜନିତ ବେଦନାଚିହ୍ନ ଉପସ୍ଥିତ ହୋଇଅଛି ଶୁଣି ହୃଦୟ ସ୍ତମ୍ଭିତ ହୋଇ ଭାବିବାକୁ ଲାଗିଲେ, ଏହା କ'ଣ କେବେ ସମ୍ଭବ !' ଉକ୍ତ ଘଟଣାଟି ଶ୍ରୀଯୁକ୍ତ ଗିରିଶଚନ୍ଦ୍ର ଘୋଷ ମହାଶୟ ଠାକୁରଙ୍କର ଶ୍ରୀମୁଖରୁ ଶୁଣି ଆମମାନଙ୍କୁ କହିଥିଲେ । ଠାକୁରଙ୍କ ସମ୍ବନ୍ଧରେ ଏପରି ଅନେକ ଘଟଣା[୧] ଉଲ୍ଲେଖ କରାଯାଇପାରେ ।

---

୧. ଗୁରୁଭାବ—ପୂର୍ବାର୍ଦ୍ଧ, ୨ୟ ଅଧ୍ୟାୟ ।

# ସପ୍ତଦଶ ଅଧ୍ୟାୟ

## ଜନ୍ମଭୂମିଦର୍ଶନ

### ଭୈରବୀ ବ୍ରାହ୍ମଣୀ ଓ ହୃଦୟଙ୍କ ସହିତ ଠାକୁରଙ୍କର କାମାରପୁକୁର ଗମନ :

ପ୍ରାୟ ଛଅମାସ କାଳ ରୋଗ ଭୋଗି ଠାକୁରଙ୍କ ଶରୀର ଅବଶେଷରେ ରୋଗମୁକ୍ତ ହେଲା ଏବଂ ତାଙ୍କର ମନ ଭାବମୁଖରେ ଦ୍ୱୈତାଦ୍ୱୈତଭୂମିରେ ଅବସ୍ଥାନ କରିବାକୁ ଅନେକାଂଶରେ ଅଭ୍ୟସ୍ତ ହୋଇଆସିଲା । ମାତ୍ର ତାଙ୍କର ଶରୀର ସେତେବେଳେ ମଧ୍ୟ ପୂର୍ବ ପରି ସୁସ୍ଥ ଓ ସବଳ ହୋଇ ନ ଥିଲା । ତେଣୁ ବର୍ଷା ଆରମ୍ଭରେ ଗଙ୍ଗାର ଜଳ ଲବଣାକ୍ତ ହେବାରୁ ବିଶୁଦ୍ଧ ପାନୀୟ ଜଳର ଅଭାବରେ ତାଙ୍କର ପେଟର ପୀଡ଼ା ପୁନରାୟ ଦେଖାଯିବାର ସମ୍ଭାବନା ଥିବା ଭାବି ମଥୁରବାବୁପ୍ରମୁଖ ସମସ୍ତେ ସ୍ଥିର କଲେ, କେତେମାସ ପାଇଁ ତାଙ୍କର ଜନ୍ମଭୂମି କାମାରପୁକୁରକୁ ଯିବା ଉଚିତ ହେବ । ସେତେବେଳେ ୧୮୬୭ ଖ୍ରୀଷ୍ଟାବ୍ଦ ମଇ-ଜୁନ୍ ମାସ ହେବ । ମଥୁରପତ୍ନୀ ଭକ୍ତିମତୀ ଜଗଦମ୍ବା ଦାସୀ ଠାକୁରଙ୍କର କାମାରପୁକୁରର ସଂସାର ଶିବଙ୍କ ସଂସାର ପରି ଚିରଦରିଦ୍ର ବୋଲି ଜାଣିଥିଲେ । ଅତଏବ ସେଠାକୁ ଯାଇ ବାବାଙ୍କର ଯେପରି କୌଣସି ଦ୍ରବ୍ୟର ଅଭାବରେ କଷ୍ଟ ନ ହୁଏ, ସେବିଷୟରେ ସେ ବିଶେଷ ଧ୍ୟାନ ଦେଇ ସମସ୍ତ ଜିନିଷପତ୍ର ସଜାଡ଼ି ତାଙ୍କ ସହିତ ପଠାଇବାର ଆୟୋଜନ କରିବାକୁ ଲାଗିଲେ ।[୧] ଅନନ୍ତର ଶୁଭ ମୁହୂର୍ତ୍ତର ଉଦୟ ହେଲେ, ଠାକୁର ଯାତ୍ରା କଲେ । ହୃଦୟ ଏବଂ ଭୈରବୀ ବ୍ରାହ୍ମଣୀ ତାଙ୍କ ସହିତ ଗଲେ । କିନ୍ତୁ ତାଙ୍କର ବୃଦ୍ଧା ଜନନୀ ଗଙ୍ଗାତୀରରେ ବାସ କରିବେ ବୋଲି ଏହା ପୂର୍ବରୁ ଯେଉଁ ସଂକଳ୍ପ କରିଥିଲେ, ତାହା ସ୍ଥିର ରଖି ଦକ୍ଷିଣେଶ୍ୱରରେ ବାସ କରିବାକୁ ଲାଗିଲେ । ଏହା ପୂର୍ବରୁ ପ୍ରାୟ ଆଠବର୍ଷ କାଳ ଠାକୁର କାମାରପୁକୁରକୁ ଆସି ନ ଥିଲେ, ତେଣୁ ତାଙ୍କର ଆତ୍ମୀୟବର୍ଗ ଯେ ତାଙ୍କୁ ଦେଖିବାକୁ ଉଦଗ୍ରୀବ ହୋଇଥିଲେ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କେତେବେଳେ ସ୍ତ୍ରୀବେଶ ଧରି 'ହରି ହରି' କରୁଛନ୍ତି, କେତେବେଳେ ସନ୍ନ୍ୟାସୀ ହୋଇଛନ୍ତି, ପୁଣି କେତେବେଳେ 'ଆଲ୍ଲା ଆଲ୍ଲା' କହୁଛନ୍ତି, ପ୍ରଭୃତି ତାଙ୍କ ସମ୍ବନ୍ଧରେ ନାନା କଥା ବେଳେବେଳେ ସେମାନଙ୍କର କର୍ଣ୍ଣଗୋଚର ହୋଇଥିବାରୁ ତାହା ସେମାନଙ୍କୁ ବେଶି ଉଦ୍‌ବିଗ୍ନ କରିଥିଲା । କିନ୍ତୁ ଠାକୁର ସେମାନଙ୍କ ପାଖକୁ ଆସିବାମାତ୍ରେ ସେମାନଙ୍କର ଚକ୍ଷୁକର୍ଣ୍ଣର ବିବାଦଭଞ୍ଜନ ହେଲା ।

---

୧. ଗୁରୁଭାବ—ଉତ୍ତରାର୍ଦ୍ଧ, ୧ମ ଅଧ୍ୟାୟ ।

## ଠାକୁରଙ୍କୁ ତାଙ୍କର ଆତ୍ମୀୟବନ୍ଧୁଗଣ ଯେଉଁ ଭାବରେ ଦେଖିଥିଲେ :

ସେମାନେ ଦେଖିଲେ, ପୂର୍ବେ ସେ ଯେପରି ଥିଲେ, ଏବେ ମଧ୍ୟ ସେହିପରି ଅଛନ୍ତି । ସେହି ଅମାୟିକତା, ସେହି ପ୍ରେମପୂର୍ଣ୍ଣ ହାସ୍ୟପରିହାସ, ସେହି କଠୋର ସତ୍ୟନିଷ୍ଠା, ସେହି ଧର୍ମପ୍ରାଣତା, ସେହି ହରିନାମରେ ବିହ୍ୱଳ ହୋଇ ଆତ୍ମହରା ହେବା—ସେସବୁ ହିଁ ତାଙ୍କଠାରେ ପୂର୍ବବତ୍ ପୂର୍ଣ୍ଣମାତ୍ରାରେ ରହିଛି, କେବଳ କୌଣସି ଏକ ଅଦୃଷ୍ଟପୂର୍ବ ଅନିର୍ବଚନୀୟ ଦିବ୍ୟାବେଶ ତାଙ୍କର ଶରୀରମନକୁ ସର୍ବଦା ଏପରି ସମୁଦ୍‌ଭାସିତ କରି ରଖିଛି ଯେ, ସହସା ତାଙ୍କର ସମ୍ମୁଖୀନ ହେବାକୁ ଏବଂ ସେ ସ୍ୱୟଂ ସେପରି ନ କଲେ କ୍ଷୁଦ୍ର ସଂସାରର ବିଷୟ ନେଇ ତାଙ୍କ ସହିତ ଆଳାପ ପରିଚୟ କରିବାକୁ ସେମାନଙ୍କର ଅନ୍ତରରେ ଅତ୍ୟନ୍ତ ସଙ୍କୋଚ ବୋଧ ହେଉଥିଲା । ତଦ୍‌ଭିନ୍ନ ଅନ୍ୟ ଗୋଟିଏ ବିଷୟ ସେମାନେ ତାଙ୍କଠାରେ ଏବେ ବିଶେଷରୂପରେ ଲକ୍ଷ୍ୟ କରିଥିଲେ । ସେମାନେ ଦେଖିଥିଲେ, ତାଙ୍କ ନିକଟରେ ରହିଲେ ସଂସାରର ସକଳ ଦୁର୍ଭାବନା କେଉଁଆଡ଼େ ଅପସାରିତ ହୋଇ ସେମାନଙ୍କ ପ୍ରାଣରେ ଏକ ଧୀର ସ୍ଥିର ଆନନ୍ଦ ଓ ଶାନ୍ତିର ଧାରା ପ୍ରବାହିତ ରହେ ଏବଂ ଦୂରକୁ ଗଲେ ପୁନର୍ବାର ତାଙ୍କ ପାଖକୁ ଆସିବା ପାଇଁ ଏକ ଅଜ୍ଞାତ ଆକର୍ଷଣରେ ସେମାନେ ପ୍ରବଳ ଭାବରେ ଆକୃଷ୍ଟ ହୁଅନ୍ତି । ସେ ଯାହାହେଉ, ବହୁକାଳ ପରେ ତାଙ୍କୁ ପାଖରେ ପାଇ ଏହି ଦରିଦ୍ର ସଂସାରରେ ଏବେ ଆନନ୍ଦର ହାଟବଜାର ବସିଗଲା ଏବଂ ନବବଧୂଙ୍କୁ ଆଣି ସୁଖର ମାତ୍ରା ପୂର୍ଣ୍ଣ କରିବା ପାଇଁ ରମଣୀମାନଙ୍କ ନିର୍ଦ୍ଦେଶରେ ଠାକୁରଙ୍କ ଶ୍ୱଶୁରାଳୟ ଜୟରାମବାଟୀ ଗ୍ରାମକୁ ଲୋକ ପ୍ରେରିତ ହେଲେ । ଠାକୁର ତାହା ଜାଣିପାରି ସେବିଷୟରେ ସମ୍ମତି ବା ଆପତ୍ତି କିଛି ପ୍ରକାଶ କଲେ ନାହିଁ । ବିବାହ ପରେ ନବବଧୂଙ୍କ ଭାଗ୍ୟରେ ଥରେ ମାତ୍ର ସ୍ୱାମୀସନ୍ଦର୍ଶନ ଲାଭ ହୋଇଥିଲା । କାରଣ, ତାଙ୍କର ସାତବର୍ଷ ବୟସ ବେଳେ କୁଳପ୍ରଥାନୁସାରେ ଠାକୁରଙ୍କୁ ଦିନେ ଜୟରାମବାଟୀକୁ ନିଆଯାଇଥିଲା । କିନ୍ତୁ ସେତେବେଳେ ସେ ନିତାନ୍ତ ବାଳିକା; ତେଣୁ ଏହି ଘଟଣା ସମ୍ବନ୍ଧରେ ତାଙ୍କର ଏତିକି ମାତ୍ର ମନେ ଥିଲା ଯେ, ହୃଦୟଙ୍କ ସହିତ ଠାକୁର ତାଙ୍କର ପିତ୍ରାଳୟକୁ ଆସିବା ପରେ ସେ ଘରର କୌଣସି ନିଭୃତ ଅଂଶରେ ଲୁଚି ରହି ମଧ୍ୟ ପରିତ୍ରାଣ ପାଇ ନ ଥିଲେ । ହୃଦୟ କେଉଁଠାରୁ କେତେଗୁଡ଼ିଏ ପଦ୍ମଫୁଲ ଆଣି ତାଙ୍କୁ ଖୋଜି ବାହାର କରିଥିଲେ ଏବଂ ଲଜ୍ଜା ଓ ଭୟରେ ସେ ସଙ୍କୁଚିତା ହୋଇ ରହିଥିଲେ ମଧ୍ୟ ତାଙ୍କର ପାଦପଦ୍ମ ପୂଜା କରିଥିଲେ । ଏହି ଘଟଣାର ପ୍ରାୟ ଛଅବର୍ଷ ପରେ ତାଙ୍କର ତ୍ରୟୋଦଶ ବର୍ଷ ବୟସ ସମୟରେ ତାଙ୍କୁ କାମାରପୁକୁରକୁ ପ୍ରଥମ କରି ନିଆଯାଇଥିଲା । ସେଥର ତାଙ୍କୁ ସେଠାରେ ଗୋଟିଏ ମାସ ରହିବାକୁ ମଧ୍ୟ ହୋଇଥିଲା । ମାତ୍ର ଠାକୁର ଓ ତାଙ୍କର ଜନନୀ ସେତେବେଳେ ଦକ୍ଷିଣେଶ୍ୱରରେ ଥିବାରୁ ଉଭୟଙ୍କ ମଧ୍ୟରେ କାହାକୁ ମଧ୍ୟ ଦେଖିବା ତାଙ୍କ ଭାଗ୍ୟରେ ଯୁଟି ନ ଥିଲା । ଏହାର ପ୍ରାୟ ଛଅ ମାସ

ପରେ ପୁନରାୟ ଶ୍ୱଶୁରାଳୟ ଆଗମନ ପୂର୍ବକ ଦେଢ଼ ମାସ କାଳ ରହିଥିଲେ ମଧ୍ୟ ପୂର୍ବୋକ୍ତ କାରଣରୁ ସେ ସେମାନଙ୍କୁ ଦେଖିପାରି ନ ଥିଲେ । ମାତ୍ର ତିନି ଚାରିମାସ ହେବ ସେଠାରୁ ସେ ପିତ୍ରାଳୟକୁ ଫେରିବା ପରେ ଏବେ ସମ୍ବାଦ ଆସିଲା— ଠାକୁର ଆସିଛନ୍ତି, ତାଙ୍କୁ କାମାରପୁକୁର ଯିବାକୁ ହେବ । ଛଅ ସାତ ମାସ ପୂର୍ବରୁ ସେ ଚତୁର୍ଦ୍ଦଶ ବର୍ଷରେ ପଦାର୍ପଣ କରିଥାଆନ୍ତି । ତେଣୁ କହିବାକୁ ଗଲେ ବିବାହ ପରେ ଏହା ହିଁ ତାଙ୍କର ପ୍ରଥମ ସ୍ୱାମୀସନ୍ଦର୍ଶନ ।

### ଆତ୍ମୀୟବର୍ଗ ଏବଂ ବାଲ୍ୟବନ୍ଧୁମାନଙ୍କ ସହିତ ଠାକୁରଙ୍କର ସେସମୟର ଆଚରଣ :

କାମାରପୁକୁରରେ ଠାକୁର ଏଥର ଛଅ ସାତ ମାସ ରହିଥିଲେ । ତାଙ୍କର ବାଲ୍ୟବନ୍ଧୁଗଣ ଏବଂ ଗ୍ରାମସ୍ଥ ପରିଚିତ ସ୍ତ୍ରୀ–ପୁରୁଷମାନେ ତାଙ୍କ ସହିତ ପୂର୍ବପରି ମିଳିତ ହୋଇ ତାଙ୍କର ପ୍ରୀତିସମ୍ପାଦନରେ ସଚେଷ୍ଟ ହୋଇଥିଲେ । ଠାକୁର ମଧ୍ୟ ବହୁକାଳ ପରେ ସେମାନଙ୍କୁ ଦେଖି ପରିତୁଷ୍ଟ ହୋଇଥିଲେ । ଦୀର୍ଘକାଳ କଠୋର ପରିଶ୍ରମ ପରେ ଅବସର ଲାଭ କରି ଚିନ୍ତାଶୀଳ ମନୀଷିଗଣ ବାଳକ-ବାଳିକାମାନଙ୍କର ଅର୍ଥହୀନ ଉଦ୍ଦେଶ୍ୟରହିତ କ୍ରୀଡ଼ାଦିରେ ଯୋଗଦାନ କରି ଯେପରି ଆନନ୍ଦ ଅନୁଭବ କରିଥାଆନ୍ତି, କାମାରପୁକୁରର ସ୍ତ୍ରୀ–ପୁରୁଷ ସମସ୍ତଙ୍କର କ୍ଷୁଦ୍ର ସାଂସାରିକ ଜୀବନରେ ଯୋଗଦାନ କରି ଠାକୁରଙ୍କର ବର୍ତ୍ତମାନ ଆନନ୍ଦ ତଦ୍ରୂପ ହୋଇଥିଲା । ତେବେ, ଇହଜୀବନର ନଶ୍ୱରତା ଅନୁଭବ କରି ଯେଉଁଥିରେ ସେମାନେ ସଂସାରରେ ରହି ମଧ୍ୟ ଧୀରେ ଧୀରେ ସଂଯତ ହେବାକୁ ଏବଂ ସମସ୍ତ ବିଷୟରେ ଈଶ୍ୱରଙ୍କ ଉପରେ ନିର୍ଭର କରିବାକୁ ଶିକ୍ଷାଲାଭ କରନ୍ତି, ସେ ବିଷୟରେ ସେ ସର୍ବଦା ଦୃଷ୍ଟି ରଖୁଥିଲେ, ଏକଥା ନିଶ୍ଚିତ କୁହାଯାଇପାରେ । ଖେଳ, କୌତୁକ, ହାସ୍ୟ–ପରିହାସ ଭିତର ଦେଇ ସେ ଆମମାନଙ୍କୁ ନିରନ୍ତର ଏସବୁ ବିଷୟ ଯେଉଁ ଭାବରେ ଶିକ୍ଷା ଦେଉଥିଲେ, ସେଥିରୁ ଆମେ ପୂର୍ବୋକ୍ତ କଥା ଅନୁମାନ କରିପାରୁ ।

### ସେମାନଙ୍କ ମଧ୍ୟରେ କୌଣସି କୌଣସି ବ୍ୟକ୍ତିଙ୍କର ଆଧ୍ୟାତ୍ମିକ ଉନ୍ନତି ସମ୍ବନ୍ଧରେ ଠାକୁରଙ୍କର କଥା :

ପୁଣି ଏହି କ୍ଷୁଦ୍ର ପଲ୍ଲୀ ଅନ୍ତର୍ଗତ କ୍ଷୁଦ୍ର ସଂସାରରେ ରହି କେହି କେହି ଧର୍ମଜୀବନରେ ଆଶାତୀତ ଅଗ୍ରସର ହୋଇଛନ୍ତି ଦେଖି ସେ ଈଶ୍ୱରଙ୍କର ଅଚିନ୍ତ୍ୟ ମହିମା–ଧ୍ୟାନରେ ମୁଗ୍ଧ ହୋଇଥିଲେ । ଏହି ବିଷୟରେ ଗୋଟିଏ ଘଟଣା ସେ ଆମମାନଙ୍କ ନିକଟରେ ଅନେକ ଥର ଉଲ୍ଲେଖ କରୁଥିଲେ । ଠାକୁର କହୁଥିଲେ— ଏହି ସମୟରେ ଦିନେ ସେ ଆହାରାନ୍ତେ ନିଜ ଗୃହରେ ବିଶ୍ରାମ କରୁଥାଆନ୍ତି । ପ୍ରତିବେଶିନୀ କେତେକ ରମଣୀ ତାଙ୍କୁ ଦର୍ଶନ କରିବାକୁ ଆସିଥିଲେ ଏବଂ ପାଖରେ ବସି ତାଙ୍କ ସହିତ ଧର୍ମସମ୍ବନ୍ଧୀୟ ନାନା ପ୍ରଶ୍ନାଳାପରେ ନିଯୁକ୍ତ ଥିଲେ । ଏହି

ସମୟରେ ସହସା ତାଙ୍କର ଭାବାବେଶ ହେଲା ଏବଂ ଅନୁଭୂତି ହେବାକୁ ଲାଗିଲା ସେ ଯେପରି ମୀନରୂପରେ ସଚ୍ଚିଦାନନ୍ଦସାଗରରେ ପରମାନନ୍ଦରେ ଭାସୁଛନ୍ତି, ବୁଡୁଛନ୍ତି ଏବଂ ନାନା ଭାବରେ ସନ୍ତରଣକ୍ରୀଡ଼ା କରୁଛନ୍ତି । କଥା କହୁ କହୁ ଅନେକ ସମୟରେ ସେ ଏପରି ଭାବାବେଶରେ ମଗ୍ନ ହେଉଥିଲେ । ସୁତରାଂ ରମଣୀଗଣ ଏଥିରେ କିଛି ମାତ୍ର ମନ ନ ଦେଇ ଆଲୋଚ୍ୟ ବିଷୟରେ ନିଜ ନିଜର ମତାମତ ପ୍ରକାଶ କରି ଗଣ୍ଡଗୋଳ କରିବାକୁ ଲାଗିଲେ । ସେମାନଙ୍କ ମଧ୍ୟରୁ ଜଣେ ସେମାନଙ୍କୁ ଏପରି କରିବାକୁ ନିଷେଧ କରି ଠାକୁରଙ୍କର ଭାବାବେଶ ଯେପର୍ଯ୍ୟନ୍ତ ନ ଭାଙ୍ଗିଛି, ସେପର୍ଯ୍ୟନ୍ତ ସ୍ଥିର ହୋଇ ରହିବାକୁ କହିଲେ । ସେ କହିଲେ, ''ସେ (ଠାକୁର) ବର୍ତ୍ତମାନ ମୀନ ହୋଇ ସଚ୍ଚିଦାନନ୍ଦସାଗରରେ ସନ୍ତରଣରତ, ଗୋଳମାଳ କଲେ ତାଙ୍କର ଏହି ଆନନ୍ଦରେ ବ୍ୟାଘାତ ଘଟିବ ।'' ରମଣୀଙ୍କ କଥାରେ ସେତେବେଳେ ଅନ୍ୟମାନେ ବିଶ୍ୱାସ ନ କଲେ ମଧ୍ୟ ସମସ୍ତେ ନିସ୍ତବ୍ଧ ହୋଇ ରହିଲେ । ପରେ ଭାବଭଙ୍ଗ ହେବାରୁ ଠାକୁରଙ୍କୁ ଏକଥା ପଚାରିବାରୁ ସେ କହିଲେ, '' ରମଣୀ ଜଣକ ସତ କହିଛନ୍ତି । ଆଶ୍ଚର୍ଯ୍ୟ, କିପରି ସେ ଏକଥା ଜାଣିପାରିଲେ !''

### ଠାକୁରଙ୍କୁ କାମାରପୁକୁରବାସୀଗଣ ନୂଆ ଭଳି ଲାଗିବାର କାରଣ :

କାମାରପୁକୁରପଲ୍ଲୀସ୍ଥ ନରନାରୀଙ୍କର ଦୈନନ୍ଦିନ ଜୀବନ ଠାକୁରଙ୍କ ନିକଟରେ ଯେ ଅନେକାଂଶରେ ନୂଆ ବୋଲି ବୋଧ ହେଉଥିଲା, ଏକଥା ବେଶ୍ ବୁଝିହୁଏ । ବିଦେଶରୁ ବହୁଦିନ ପରେ ଫେରିଥିବା ବ୍ୟକ୍ତିଙ୍କର, ସ୍ୱଦେଶର ପ୍ରତ୍ୟେକ ବ୍ୟକ୍ତି ଏବଂ ବିଷୟକୁ ଯେପରି ନୂଆ ବୋଲି ବୋଧହୁଏ, ଠାକୁରଙ୍କର ଏବେ ଅନେକାଂଶରେ ସେପରି ହୋଇଥିଲା । କାରଣ କେବଳ ଆଠ ବର୍ଷ ମାତ୍ର ଜନ୍ମଭୂମିରୁ ଦୂରରେ ରହିଥିଲେ ମଧ୍ୟ ସେହି ସମୟ ମଧ୍ୟରେ ଠାକୁରଙ୍କ ଅନ୍ତରରେ ସାଧନାର ପ୍ରବଳ ଝଡ଼ ପ୍ରବାହିତ ହୋଇ ସେଥିରେ ଆମୂଳ ପରିବର୍ତ୍ତନ ଆଣିଦେଇଥିଲା । ଏହି ସମୟରେ ସେ ନିଜକୁ ଭୁଲିଯାଇଥିଲେ, ଜଗତକୁ ଭୁଲିଯାଇଥିଲେ ଏବଂ ଦୂରରୁ ବହୁଦୂର ଦେଶକାଳର ସୀମାର ବହିର୍ଭାଗକୁ ଯାଇ ତା ଭିତରକୁ ପୁନର୍ବାର ଫେରିବା ସମୟରେ ସର୍ବଭୂତରେ ବ୍ରହ୍ମଦୃଷ୍ଟିସମ୍ପନ୍ନ ହୋଇ ଆଗମନପୂର୍ବକ ସମସ୍ତ ବ୍ୟକ୍ତି ଓ ବିଷୟକୁ ଅପୂର୍ବ ନବୀନ ଭାବରେ ଦେଖିବାକୁ ପାଇଥିଲେ । ଚିନ୍ତାଶ୍ରେଣୀସମୂହର ପାରମ୍ପର୍ଯ୍ୟରୁ ଆମମାନଙ୍କର କାଳର ଅନୁଭୂତି ଏବଂ ଏହାର ଦୈର୍ଘ୍ୟ-ସ୍ୱଳ୍ପତାଦି ପରିମାଣର ଉପଲବ୍ଧି ହୋଇଥାଏ, ଏହା ଦର୍ଶନପ୍ରସିଦ୍ଧ । ଏଥିପାଇଁ ସ୍ୱଳ୍ପ ସମୟ ମଧ୍ୟରେ ପ୍ରଭୂତ ଚିନ୍ତାରାଶି ଅନ୍ତରରେ ଉଦୟ ଏବଂ ଲୟ ହେଲେ ଏହିକାଳ ଆମମାନଙ୍କ ନିକଟରେ ସୁଦୀର୍ଘ ବୋଲି ପ୍ରତୀତ ହୋଇଥାଏ । ପୂର୍ବୋକ୍ତ ଆଠବର୍ଷରେ ଠାକୁରଙ୍କ ଅନ୍ତରରେ କି ବିପୁଳ ଚିନ୍ତାରାଶି ପ୍ରକଟିତ ହୋଇଥିଲା

ତାହା ଭାବିଲେ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ହୁଏ ! ତେଣୁ ଏହି କାଳକୁ ତାଙ୍କର ଯେ ଗୋଟିଏ ଯୁଗ ପରି ଅନୁଭବ ହେବ, ଏହା ବିଚିତ୍ର ନୁହେଁ ।

**ଜନ୍ମଭୂମି ସହିତ ଠାକୁରଙ୍କର ଚିର–ପ୍ରେମସମ୍ବନ୍ଧ :**

କାମାରପୁକୁରରେ ସ୍ତ୍ରୀ–ପୁରୁଷସମସ୍ତଙ୍କୁ ଠାକୁର କି ଅଦ୍ଭୁତ ପ୍ରେମବନ୍ଧନରେ ଆବଦ୍ଧ କରିଥିଲେ, ତାହା ଭାବିଲେ ବିସ୍ମିତ ହେବାକୁ ପଡ଼େ । ଗ୍ରାମର ଜମିଦାର ଲାହାବାବୁଙ୍କ ଘରଠାରୁ ଆରମ୍ଭ କରି ବ୍ରାହ୍ମଣ, କମାର, ସୂତ୍ରଧର, ବଣିଆ ପ୍ରଭୃତି ସବୁ ଜାତୀୟ ପ୍ରତିବେଶୀଗଣଙ୍କର ପରିବାରଭୁକ୍ତ ସ୍ତ୍ରୀ–ପୁରୁଷମାନେ ସମସ୍ତେ ତାଙ୍କ ସହିତ ଶ୍ରଦ୍ଧାପୂର୍ଣ୍ଣ ପ୍ରେମସମ୍ବନ୍ଧରେ ଆବଦ୍ଧ ଥିଲେ । ଶ୍ରୀଯୁକ୍ତ ଧର୍ମଦାସ ଲାହାଙ୍କର ସରଳହୃଦୟା ଭକ୍ତିମତୀ ବିଧବା କନ୍ୟା ପ୍ରସନ୍ନ ଏବଂ ଠାକୁରଙ୍କର ବାଲ୍ୟସଖା, ଲାହାବାବୁଙ୍କର ପୁତ୍ର ଗୟାବିଷ୍ଣୁ ଲାହା, ସରଳ ବିଶ୍ୱାସୀ ଶ୍ରୀନିବାସ ଶଁଖାରୀ, ପାଇନଙ୍କ ଘରର ଭକ୍ତି ପରାୟଣା ରମଣୀଗଣ ଓ ଠାକୁରଙ୍କ ଭିକ୍ଷାମାତା କମାରକନ୍ୟା ଧନୀ ପ୍ରଭୃତି ଅନେକଙ୍କର ଭକ୍ତି ଏବଂ ଭଲ ପାଇବାର କଥା ଠାକୁର ବିଶେଷ ପ୍ରୀତିର ସହିତ ଅନେକ ସମୟରେ ଆମମାନଙ୍କୁ କହୁଥିଲେ ଏବଂ ଆମେ ମଧ୍ୟ ଶୁଣି ମୁଗ୍ଧ ହେଉଥିଲୁ । ସେମାନେ ସମସ୍ତେ ପ୍ରାୟତଃ ସବୁ ସମୟରେ ତାଙ୍କ ନିକଟରେ ରହୁଥିଲେ । ଯେଉଁମାନେ ବିଷୟ ବା ଗୃହକର୍ମ ଯୋଗୁଁ ସେହିପରି କରିପାରୁ ନ ଥିଲେ, ସେମାନେ ସକାଳ, ସନ୍ଧ୍ୟା କିମ୍ବା ମଧ୍ୟାହ୍ନରେ ସମୟ ପାଇଲେ ଆସୁଥିଲେ । ରମଣୀଗଣ ତାଙ୍କୁ ଭୋଜନ କରାଇ ପରମ ପରିତୃପ୍ତି ଲାଭ କରୁଥିଲେ, ସେଥିପାଇଁ ନାନାବିଧ ଖାଦ୍ୟସାମଗ୍ରୀ ନେଇ ତାଙ୍କ ନିକଟରେ ଉପସ୍ଥିତ ହେଉଥିଲେ । ଗ୍ରାମବାସୀମାନଙ୍କର ଏପରି ମଧୁର ବ୍ୟବହାର ଏବଂ ଆତ୍ମୀୟସ୍ୱଜନଙ୍କ ମଧ୍ୟରେ ରହି ମଧ୍ୟ ଠାକୁର ନିରନ୍ତର କିପରି ଦିବ୍ୟ ଭାବାବେଶରେ ରହୁଥିଲେ, ସେସମସ୍ତ କଥାର ଆଭାସ ଆମେ ଲୀଳା ପ୍ରସଙ୍ଗରେ ଅନ୍ୟତ୍ର ପାଠକଙ୍କୁ ଜଣାଇଛୁ, ତାହାର ପୁନରୁଲ୍ଲେଖ ନିଷ୍ପ୍ରୟୋଜନ ।[୧]

**ଠାକୁରଙ୍କର ନିଜ ପତ୍ନୀଙ୍କ ପ୍ରତି କର୍ତ୍ତବ୍ୟପାଳନ ଆରମ୍ଭ :**

କାମାରପୁକୁର ଆସି ଠାକୁର ସେସମୟରେ ଗୋଟିଏ ସୁମହତ କର୍ତ୍ତବ୍ୟ ପାଳନରେ ଯତ୍ନବାନ ହୋଇଥିଲେ । ନିଜର ପତ୍ନୀ ତାଙ୍କ ନିକଟକୁ ଆସିବା ବା ନ ଆସିବା ସମ୍ବନ୍ଧରେ ଉଦାସୀନ ରହିଥିଲେ ମଧ୍ୟ ଯେତେବେଳେ ସେ ତାଙ୍କର ସେବା କରିବାକୁ କାମାରପୁକୁରରେ ଆସି ଉପସ୍ଥିତ ହେଲେ, ଠାକୁର ସେତେବେଳେ ତାଙ୍କୁ ଶିକ୍ଷାଦୀକ୍ଷାଦି ପ୍ରଦାନପୂର୍ବକ ତାଙ୍କର କଲ୍ୟାଣସାଧନରେ ତତ୍ପର ହୋଇଥିଲେ । ଠାକୁରଙ୍କୁ ବିବାହିତ ଜାଣି ଶ୍ରୀମଦାଚାର୍ଯ୍ୟ ତୋତାପୁରୀ ତାଙ୍କୁ ଥରେ କହିଥିଲେ, ''ସେଥିରେ କ'ଣ ଯାଏ ଆସେ ? ସ୍ତ୍ରୀ ନିକଟରେ ରହିଲେ ମଧ୍ୟ ଯାହାର ତ୍ୟାଗ,

---

୧. ଗୁରୁଭାବ—ଉତ୍ତରାର୍ଦ୍ଧ, ୧ମ ଅଧ୍ୟାୟ ।

ବୈରାଗ୍ୟ, ବିବେକ, ଜ୍ଞାନ ସର୍ବତୋଭାବରେ ଅକ୍ଷୁଣ୍ଣ ରହିଥାଏ, ସେହି ବ୍ୟକ୍ତି ହିଁ ବ୍ରହ୍ମରେ ଯଥାର୍ଥ ପ୍ରତିଷ୍ଠିତ ହୋଇଅଛି; ସ୍ତ୍ରୀ ଓ ପୁରୁଷ ଉଭୟଙ୍କୁ ହିଁ ଯେ ସମଭାବରେ ଆତ୍ମା ବୋଲି ସର୍ବକ୍ଷଣ ଦୃଷ୍ଟି ଓ ତଦନୁରୂପ ବ୍ୟବହାର କରିପାରନ୍ତି, ତାହାର ହିଁ ଯଥାର୍ଥ ବ୍ରହ୍ମଜ୍ଞାନ ଲାଭ ହୋଇଅଛି; ସ୍ତ୍ରୀ-ପୁରୁଷ ମଧ୍ୟରେ ଭେଦଦୃଷ୍ଟିସମ୍ପନ୍ନ ଅନ୍ୟମାନେ ସାଧକ ହୋଇଥିଲେ ମଧ୍ୟ ବ୍ରହ୍ମଜ୍ଞାନଠାରୁ ବହୁ ଦୂରରେ ରହିଛନ୍ତି ।'' ଶ୍ରୀମତ୍ ତୋତାପୁରୀଜୀଙ୍କର ପୂର୍ବୋକ୍ତକଥା ଠାକୁରଙ୍କର ସ୍ମରଣରେ ରହି ତାଙ୍କୁ ବହୁକାଳ ବ୍ୟାପୀ ସାଧନଲବ୍ଧ ନିଜ ଜ୍ଞାନର ପରୀକ୍ଷାରେ ଏବଂ ନିଜ ପତ୍ନୀଙ୍କର କଲ୍ୟାଣସାଧନରେ ନିଯୁକ୍ତ କରିଥିଲା ।

**ସେହି ବିଷୟରେ ଠାକୁର କେତେଦୂର ସୁସିଦ୍ଧ ହୋଇଥିଲେ :**

କର୍ତ୍ତବ୍ୟ ବୋଲି ବିବେଚିତ ହେଲେ ଠାକୁର କଦାପି କୌଣସି କାର୍ଯ୍ୟ ଉପେକ୍ଷା ବା ଅର୍ଦ୍ଧସମ୍ପନ୍ନ କରି ପକାଇରଖୁ ନ ଥିଲେ; ବର୍ତ୍ତମାନ ବିଷୟରେ ମଧ୍ୟ ତଦ୍ରୂପ ହୋଇଥିଲା । ଐହିକ, ପାରତ୍ରିକ ସମସ୍ତ ବିଷୟରେ ସର୍ବତୋଭାବରେ ତାଙ୍କର ମୁଖାପେକ୍ଷୀ ବାଳିକା-ପତ୍ନୀଙ୍କୁ ଶିକ୍ଷା ପ୍ରଦାନ କରିବାକୁ ଯାଇ ସେ ସେହି ବିଷୟରେ ଅର୍ଦ୍ଧନିଷ୍ପନ୍ନ କରି କ୍ଷାନ୍ତ ହୋଇ ନ ଥିଲେ । ଦେବତା, ଗୁରୁ ଓ ଅତିଥି ପ୍ରଭୃତିଙ୍କର ସେବା ଏବଂ ଗୃହକର୍ମରେ ସେ ଯେପରି କୁଶଳା ହେବେ, ଅର୍ଥର ସଦ୍‌ବ୍ୟବହାର କରିପାରିବେ ଏବଂ ସର୍ବୋପରି ଈଶ୍ୱରଙ୍କଠାରେ ସର୍ବସ୍ୱ ସମର୍ପଣ କରି ଦେଶକାଳପାତ୍ର ଭେଦରେ ସମସ୍ତଙ୍କ ସହିତ ବ୍ୟବହାରରେ ନିପୁଣା ହୋଇଉଠିବେ,[୧] ଏସମସ୍ତ ବିଷୟରେ ଏବେଠାରୁ ସେ ବିଶେଷ ଲକ୍ଷ୍ୟ ରଖିଥିଲେ । ଅଖଣ୍ଡବ୍ରହ୍ମଚର୍ଯ୍ୟସମ୍ପନ୍ନ ନିଜର ଆଦର୍ଶ ଜୀବନ ସମ୍ମୁଖରେ ରଖି ପୂର୍ବୋକ୍ତ ଶିକ୍ଷାପ୍ରଦାନର ଫଳ କେତେଦୂର କିପରି ହୋଇଥିଲା, ସେବିଷୟରେ ଆମେ ଅନ୍ୟତ୍ର ଆଭାସ ଦେଇଅଛୁ । ଅତଏବ ଏଠାରେ ସଂକ୍ଷେପରେ ଏହିକଥା କହିଲେ ଚଳିବ ଯେ, ଶ୍ରୀମତୀ ମାତାଠାକୁରାଣୀ ଠାକୁରଙ୍କର କାମଗନ୍ଧରହିତ ବିଶୁଦ୍ଧ ପ୍ରେମଲାଭରେ ସର୍ବତୋଭାବରେ ପରିତୃପ୍ତା ହୋଇ ଠାକୁରଙ୍କୁ ସାକ୍ଷାତ ଇଷ୍ଟଦେବତା ଜ୍ଞାନରେ ଆଜୀବନ ପୂଜା କରିବାକୁ ଏବଂ ତାଙ୍କର ଶ୍ରୀପଦାନୁସାରିଣୀ ହୋଇ ନିଜ ଜୀବନ ଗଢ଼ି ତୋଳିବାକୁ ସମର୍ଥା ହୋଇଥିଲେ ।

**ପତ୍ନୀଙ୍କ ପ୍ରତି ଠାକୁରଙ୍କର ଏପରି ଆଚରଣ**
**ଦର୍ଶନରେ ବ୍ରାହ୍ମଣୀଙ୍କର ଆଶଙ୍କା ଓ ଭାବାନ୍ତର :**

ପତ୍ନୀଙ୍କ ପ୍ରତି କର୍ତ୍ତବ୍ୟପାଳନରେ ଅଗ୍ରସର ଠାକୁରଙ୍କୁ ଭୈରବୀ ବ୍ରାହ୍ମଣୀ ବର୍ତ୍ତମାନ ଅନେକ ସମୟରେ ବୁଝିପାରୁ ନ ଥିଲେ । ଶ୍ରୀମତ୍ ତୋତାଙ୍କ ସହିତ ମିଳିତ ହୋଇ ଠାକୁର ସନ୍ନ୍ୟାସଗ୍ରହଣ କରିବା ସମୟରେ ସେ ତାଙ୍କୁ ସେହି କର୍ମରୁ

---

୧. ଗୁରୁଭାବ—ପୂର୍ବାର୍ଦ୍ଧ, ୨ୟ ଅଧ୍ୟାୟ ଏବଂ ୪ର୍ଥ ଅଧ୍ୟାୟ ।

ବିରତ କରିବା ପାଇଁ ଚେଷ୍ଟା କରିଥିଲେ ।[୧] ତାଙ୍କର ମନେ ହୋଇଥିଲା, ସନ୍ନ୍ୟାସୀ ହୋଇ ଅଦ୍ୱୈତତତ୍ତ୍ୱ ସାଧନାରେ ଅଗ୍ରସର ହେଲେ ଠାକୁରଙ୍କ ହୃଦୟରୁ ଈଶ୍ୱରପ୍ରେମ ସମ୍ପୂର୍ଣ୍ଣ ଭାବରେ ଉଚ୍ଛେଦ ହୋଇଯିବ । ସେପରି କୌଣସି ଆଶଙ୍କା ମଧ୍ୟ ଏହି ସମୟରେ ତାଙ୍କର ଅନ୍ତରରେ ଉଦିତ ହୋଇଥିଲା । ବୋଧହୁଏ ସେ ଭାବିଥିଲେ, ଠାକୁର ନିଜ ପତ୍ନୀଙ୍କ ସହିତ ଏପରି ଘନିଷ୍ଠଭାବରେ ମିଶିଲେ ତାଙ୍କର ବ୍ରହ୍ମଚର୍ଯ୍ୟର ହାନି ହେବ । କିନ୍ତୁ ଠାକୁର ପୂର୍ବଥର ପରି ଏଥର ମଧ୍ୟ ବ୍ରାହ୍ମଣୀଙ୍କର ଉପଦେଶ ରକ୍ଷାକରି ପାରି ନ ଥିଲେ । ବ୍ରାହ୍ମଣୀ ଯେ ଏଥିରେ ଅତ୍ୟନ୍ତ ଦୁଃଖିତା ହୋଇଥିଲେ, ତାହା ବୁଝି ହୁଏ । କିନ୍ତୁ ସେତିକିରେ ଏକଥାର ପରିସମାପ୍ତି ହୋଇ ନ ଥିଲା । ଏହି ଘଟଣାରେ ତାଙ୍କର ଅଭିମାନ ପ୍ରତିହତ ହୋଇ କ୍ରମେ ଅହଂକାରରେ ପରିଣତ ହୋଇଥିଲା ଏବଂ କିଛି କାଳ ପାଇଁ ତାହା ତାଙ୍କୁ ଠାକୁରଙ୍କ ପ୍ରତି ଶ୍ରଦ୍ଧାବିହୀନା କରିଥିଲା । ହୃଦୟଙ୍କ ନିକଟରୁ ଶୁଣିଛୁ, ବେଳେବେଳେ ସେ ଏକଥାର ପ୍ରକାଶ୍ୟ ପରିଚୟ ପର୍ଯ୍ୟନ୍ତ ପ୍ରଦାନ କରୁଥିଲେ । ଯଥା—ଆଧ୍ୟାତ୍ମିକ ବିଷୟରେ କୌଣସି ପ୍ରଶ୍ନ ତାଙ୍କ ନିକଟରେ ଉଠାଇ ଯଦି କେହି କହେ, ଶ୍ରୀରାମକୃଷ୍ଣଦେବଙ୍କୁ ଏକଥା ପଚାରି ତାଙ୍କର ମତାମତ ଗ୍ରହଣ କରିବେ, ଏଥିରେ ବ୍ରାହ୍ମଣୀ କ୍ରୋଧିତା ହୋଇ କହୁଥିଲେ, ''ସେ ପୁଣି କ'ଣ କହିବ ? ତାର ଚକ୍ଷୁଦାନ ତ ମୁଁ ହିଁ କରିଅଛି !'' ଅଥବା ସାମାନ୍ୟ କାରଣରେ ଏବଂ ବେଳେବେଳେ ବିନା କାରଣରେ ଘରର ସ୍ତ୍ରୀ ଲୋକମାନଙ୍କ ଉପରେ ଅସନ୍ତୁଷ୍ଟା ହୋଇ ତିରସ୍କାର କରୁଥିଲେ । ତାସତ୍ତ୍ୱେ ଠାକୁର ତାଙ୍କର ଏପରି କଥା ବା ଅନ୍ୟାୟ ଅତ୍ୟାଚାରରେ ଅବିଚଳିତ ରହିଥିଲେ ଏବଂ ତାଙ୍କୁ ପୂର୍ବପରି ଭକ୍ତିଶ୍ରଦ୍ଧା କରିବାରୁ ବିରତ ହୋଇ ନ ଥିଲେ । ଠାକୁରଙ୍କ ନିର୍ଦ୍ଦେଶରେ ଶ୍ରୀମତୀ ମାତାଠାକୁରାଣୀ ଶ୍ୱଶ୍ରୂତୁଲ୍ୟା ଜାଣି ଭକ୍ତିପ୍ରୀତି ସହିତ ସର୍ବଦା ବ୍ରାହ୍ମଣୀଙ୍କ ସେବାରେ ନିଯୁକ୍ତା ରହିଥିଲେ ଏବଂ ତାଙ୍କର କୌଣସି କଥା ବା କାର୍ଯ୍ୟର କେବେହେଲେ ପ୍ରତିବାଦ କରୁ ନ ଥିଲେ ।

**ଅଭିମାନ ଓ ଅହଂକାର ବୃଦ୍ଧିରେ ବ୍ରାହ୍ମଣୀଙ୍କର ବୁଦ୍ଧିନାଶ :**

ଅଭିମାନ, ଅହଂକାର ବୃଦ୍ଧି ପାଇଲେ ବୁଦ୍ଧିମାନ ମନୁଷ୍ୟର ମଧ୍ୟ ମତିଭ୍ରମ ହୋଇଥାଏ । ସୁତରାଂ ଏପରି ଅହଂକାର ପ୍ରତି ପଦରେ ପ୍ରତିହତ ହେବା ଦେଖି ମନୁଷ୍ୟ ଏହାର ବିପରୀତ ଫଳ ଅବଶ୍ୟମ୍ଭାବୀ ବୋଲି ଜାଣିପାରେ ଏବଂ ଏହାକୁ ପରିତ୍ୟାଗପୂର୍ବକ ନିଜ କଲ୍ୟାଣସାଧନର ଅବସର ଲାଭ କରେ । ବିଦୂଷୀ ସାଧିକା ବ୍ରାହ୍ମଣୀଙ୍କର ମଧ୍ୟ ସେତେବେଳେ ଏପରି ହୋଇଥିଲା, ଅହଂକାରର ବଶବର୍ତ୍ତିନୀ ହୋଇ ସେ 'ଯେଖାନେ ଯେମନ୍, ସେଖାନେ ତେମନ (ଯେଉଁଠାରେ ଯେପରି ସେଠାରେ ସେପରି) ବ୍ୟବହାର କରି ନ ପାରି ଏହି ସମୟରେ ଦିନେ ବିଷମ ଅନର୍ଥ ଘଟାଇଥିଲେ ।

---

୧. ଗୁରୁଭାବ—ପୂର୍ବାର୍ଦ୍ଧ, ୨ୟ ଅଧ୍ୟାୟ ।

## ଉକ୍ତ ବିଷୟକ ଘଟଣା :

ଶ୍ରୀନିବାସ ଶଙ୍ଖାରି କଥା ଆମେ ଏହାପୂର୍ବରୁ ଉଲ୍ଲେଖ କରିଅଛୁ । ଉଚ୍ଚଜାତିରେ ଜନ୍ମ ନ ହୋଇଥିଲେ ମଧ୍ୟ ଶ୍ରୀନିବାସ ଭଗବତ୍ ଭକ୍ତିରେ ଅନେକ ବ୍ରାହ୍ମଣଙ୍କ ଅପେକ୍ଷା ବଡ଼ ଥିଲେ । ଶ୍ରୀଶ୍ରୀରଘୁବୀରଙ୍କର ପ୍ରସାଦ ପାଇବା ନିମିତ୍ତ ସେ ଦିନେ ଏହି ସମୟରେ ଠାକୁରଙ୍କ ନିକଟକୁ ଆସିଥିଲେ । ଭକ୍ତ ଶ୍ରୀନିବାସଙ୍କୁ ନିକଟରେ ପାଇ ଠାକୁର ଏବଂ ତାଙ୍କର ପରିବାରବର୍ଗ ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ । ଭକ୍ତିମତୀ ବ୍ରାହ୍ମଣୀ ମଧ୍ୟ ଶ୍ରୀନିବାସଙ୍କର ବିଶ୍ୱାସଭକ୍ତି ଦେଖି ପରିତୁଷ୍ଟା ହୋଇଥିଲେ । ମଧ୍ୟାହ୍ନ କାଳ ପର୍ଯ୍ୟନ୍ତ ନାନା ଭକ୍ତିପ୍ରସଙ୍ଗରେ ଅତିବାହିତ ହେଲା ଏବଂ ଶ୍ରୀଶ୍ରୀରଘୁବୀରଙ୍କ ଭୋଗରାଗାଦି ସମ୍ପୂର୍ଣ୍ଣ ହେଲା ପରେ ଶ୍ରୀନିବାସ ପ୍ରସାଦ ପାଇବାକୁ ବସିଲେ । ଭୋଜନ ପରେ ପ୍ରଚଳିତ ପ୍ରଥାନୁସାରେ ସେ ନିଜ ଉଚ୍ଛିଷ୍ଟ ପରିଷ୍କାର କରିବାକୁ ପ୍ରବୃତ୍ତ ହେବାରୁ ବ୍ରାହ୍ମଣୀ ତାଙ୍କୁ ନିଷେଧ କଲେ ଏବଂ କହିଲେ, ‘‘ଆମେ ଏହା କରିବୁ ।’’ ବ୍ରାହ୍ମଣୀ ବାରମ୍ବାର ଏପରି କହିବାରୁ ଶ୍ରୀନିବାସ ଅଗତ୍ୟା ଉକ୍ତକାର୍ଯ୍ୟରୁ ନିରସ୍ତ ହୋଇ ନିଜ ଘରକୁ ଫେରିଗଲେ ।

## ବ୍ରାହ୍ମଣୀଙ୍କ ସହିତ ହୃଦୟଙ୍କର କଳି :

ସାମାଜିକ ପ୍ରଥା ପ୍ରବଳ ଥିବା ପଲ୍ଲୀଗ୍ରାମମାନଙ୍କରେ ସାମାନ୍ୟ ସାମାଜିକ ନିୟମ ଭଙ୍ଗ ହେଲେ ଅନେକ ସମୟରେ ବିଷମ ଗଣ୍ଡଗୋଳ ସୃଷ୍ଟି ହୋଇଥାଏ । ଏସମୟରେ ମଧ୍ୟ ଏପରି ହେବାର ଉପକ୍ରମ ହେଲା । କାରଣ ବ୍ରାହ୍ମଣକନ୍ୟା ଭୈରବୀ ଶ୍ରୀନିବାସଙ୍କର ଉଚ୍ଛିଷ୍ଟ ଉଠାଇବେ, ଏବିଷୟ ନେଇ ଠାକୁରଙ୍କୁ ଦର୍ଶନ କରିବାକୁ ଆସିଥିବା ପଲ୍ଲୀବାସିନୀ ବ୍ରାହ୍ମଣକନ୍ୟାମାନେ ବିଶେଷ ଆପତ୍ତି କରିବାକୁ ଲାଗିଲେ । ଭୈରବୀ ବ୍ରାହ୍ମଣୀ ସେମାନଙ୍କର ଆପତ୍ତିକୁ ସ୍ୱୀକାର କଲେ ନାହିଁ । କ୍ରମେ ଗଣ୍ଡଗୋଳ ବଢ଼ିବାରୁ ଠାକୁରଙ୍କ ଭଣଜା ହୃଦୟ ଏହା ଶୁଣିପାରିଲେ । ସାମାନ୍ୟ ବିଷୟ ନେଇ ଭୀଷଣ କଳହ ହେବାର ସମ୍ଭାବନା ଦେଖି ହୃଦୟ ବ୍ରାହ୍ମଣୀଙ୍କୁ ସେହି କାର୍ଯ୍ୟରୁ ବିରତ ହେବାକୁ କହିଲେ ମଧ୍ୟ ସେ ତାଙ୍କ କଥା ଗ୍ରହଣ କଲେ ନାହିଁ । ସେତେବେଳେ ବ୍ରାହ୍ମଣୀ ଓ ହୃଦୟଙ୍କ ମଧ୍ୟରେ ତୁମୂଳ ବିବାଦ ଉପସ୍ଥିତ ହେଲା । ହୃଦୟ ଉତ୍ତେଜିତ ହୋଇ କହିଲେ, ‘‘ଏପରି କଲେ ତୁମକୁ ଏଘରେ ରହିବାକୁ ଦେବି ନାହିଁ ।’’ ବ୍ରାହ୍ମଣୀ ମଧ୍ୟ ଛାଡ଼ିବାର ପାତ୍ରୀ ନୁହଁନ୍ତି, କହିଲେ — ‘‘ଘରେ ନ ରଖିଲେ କ୍ଷତି କ’ଣ ? ଶୀତଳାଙ୍କ ଘରେ ମନସା ଶୋଇପଡ଼ିବେ !’’[୧] ଏତିକି ବେଳେ ଘରର ଅନ୍ୟମାନେ ମଧ୍ୟସ୍ଥ ହୋଇ ନାନା ଅନୁନୟବିନୟରେ ବ୍ରାହ୍ମଣୀଙ୍କୁ ଉକ୍ତ କାର୍ଯ୍ୟରୁ କ୍ଷାନ୍ତ କରି ବିବାଦର ଶାନ୍ତି ଘଟାଇଥିଲେ ।

୧. ଶୀତଳାଙ୍କ ଘରେ ଅର୍ଥାତ୍ ଶୀତଳା ଦେବୀଙ୍କ ମନ୍ଦିରରେ । ମନସା ହେଉଛନ୍ତି ସର୍ପଦେବତା । ବ୍ରାହ୍ମଣୀ ଏହି ଭାବରେ ନିଜକୁ କ୍ରୋଧିତ ସାପ ସହିତ ତୁଳନା କରିଛନ୍ତି । (ଏହାର ଭାବାର୍ଥ ହେଉଛି ଘରେ ରହିବାକୁ ନ ଦେଲେ ମନ୍ଦିରରେ ରହିବି ।)

## ବ୍ରାହ୍ମଣୀଙ୍କର ନିଜର ଭୁଲ ବୁଝିପାରି ଅପରାଧର ଆଶଙ୍କା ତଥା ଅନୁତାପ ଓ କ୍ଷମାପ୍ରାର୍ଥନା କରି କାଶୀ ଗମନ :

ଅଭିମାନିନୀ ବ୍ରାହ୍ମଣୀ ସେଦିନ ନିରସ୍ତା ହୋଇଥିଲେ ମଧ୍ୟ ଅନ୍ତରରେ ପ୍ରଚଣ୍ଡ ଆଘାତ ପାଇଥିଲେ । କ୍ରୋଧର ଉପଶମ ହେବାରୁ ସେ ଶାନ୍ତ ଚିତ୍ତରେ ଚିନ୍ତା କରି ନିଜର ଦୋଷ ବୁଝିପାରିଲେ ଏବଂ ଭାବିଲେ, ଏଠାରେ ଯେହେତୁ ଏପରି ମତିଭ୍ରମ ହେଉଅଛି, ତେଣୁ ଅତଃପର ଏଠାରେ ତାଙ୍କର ଆଉ ଅବସ୍ଥାନ କରିବା ଶ୍ରେୟଃ ନୁହେଁ । ସଦସଦ୍‌ବିଚାରସମ୍ପନ୍ନ ବିବେକୀ ସାଧକ ଯେତେବେଳେ ଅନ୍ତରଦର୍ଶନରେ ନିଯୁକ୍ତ ହୁଅନ୍ତି, ଚିତ୍ତର କୌଣସି ମଳିନ ଭାବ ସେତେବେଳେ ତାଙ୍କ ନିକଟରେ ଆତ୍ମଗୋପନ କରିପାରେ ନାହିଁ—ବ୍ରାହ୍ମଣୀଙ୍କର ମଧ୍ୟ ଏବେ ତଦ୍ରୂପ ହୋଇଥିଲା । ଠାକୁରଙ୍କ ପ୍ରତି ତାଙ୍କର ଭାବ ପରିବର୍ତ୍ତନର ବିଚାର କରି ସେ ତାହାର ମୂଳରେ ମଧ୍ୟ ଆତ୍ମଦୋଷ ଦେଖିପାରିଲେ ଏବଂ ମନେ ମନେ ସାତିଶୟ ଅନୁତପ୍ତା ହେଲେ । ଏହାର କେତେଦିନ ପରେ ସେ ଭକ୍ତିସହକାରେ ବିବିଧ ଫୁଲମାଳ ସ୍ୱହସ୍ତରେ ଗୁନ୍ଥି ଓ ଚନ୍ଦନଚର୍ଚ୍ଚିତ କରି ଶ୍ରୀଗୌରାଙ୍ଗଜ୍ଞାନରେ ଠାକୁରଙ୍କୁ ସୁନ୍ଦର ବେଶରେ ସଜାଇଲେ ଏବଂ ସର୍ବାନ୍ତଃକରଣରେ କ୍ଷମା ପ୍ରାର୍ଥନା କଲେ ! ପରେ ସଂଯତା ହୋଇ ମନ-ପ୍ରାଣ ଈଶ୍ୱରଙ୍କୁ ଅର୍ପଣପୂର୍ବକ କାମାରପୁକୁର ତ୍ୟାଗ କରି କାଶୀଧାମ ଅଭିମୁଖେ ଗମନ କଲେ । ଛଅବର୍ଷରୁ କିଛି ଅଧିକ ସମୟ ଠାକୁରଙ୍କ ସହିତ ରହିବା ପରେ ବ୍ରାହ୍ମଣୀ ତାଙ୍କ ନିକଟରୁ ବିଦାୟ ନେଇଥିଲେ ।

## ଠାକୁରଙ୍କର କଲିକତା ପ୍ରତ୍ୟାବର୍ତ୍ତନ :

ଏପରି ସାତମାସ କାମାରପୁକୁରରେ ଅତିବାହିତ କରି ସମ୍ଭବତଃ ୧୮୬୮ ଖ୍ରୀଷ୍ଟାବ୍ଦ ଅକ୍ଟୋବର-ନଭେମ୍ବର ମାସରେ ଠାକୁର ପୁନର୍ବାର ଦକ୍ଷିଣେଶ୍ୱର ପ୍ରତ୍ୟାଗମନ କଲେ । ତାଙ୍କର ଶରୀର ସେତେବେଳେ ପୁର୍ବପରି ସୁସ୍ଥ ଓ ସବଳ ହୋଇଯାଇଥିଲା । ଦକ୍ଷିଣେଶ୍ୱର ଫେରିବାର ସ୍ୱଳ୍ପକାଳ ପରେ ତାଙ୍କ ଜୀବନରେ ଗୋଟିଏ ବିଶେଷ ଘଟଣା ଘଟିଥିଲା । ସେ କଥା ଆମେ ଏବେ ପାଠକଙ୍କୁ କହିବୁ ।

# ଅଷ୍ଟାଦଶ ଅଧ୍ୟାୟ

## ତୀର୍ଥଦର୍ଶନ ଏବଂ ହୃଦୟରାମଙ୍କ କଥା

### ଠାକୁରଙ୍କର ତୀର୍ଥଯାତ୍ରା ସ୍ଥିର ହେବା :

ମଥୁରବାବୁ ଏହି ସମୟରେ ଭାରତର ଉତ୍ତର-ପଶ୍ଚିମାଞ୍ଚଳରେ ପୁଣ୍ୟ ତୀର୍ଥସମସ୍ତ ଦର୍ଶନ କରିବାକୁ ଅଭିଳାଷୀ ହୋଇଥିଲେ । ତାଙ୍କର ପରିବାରବର୍ଗ ଏବଂ ଗୁରୁପୁତ୍ରାଦି ଅନେକ ବ୍ୟକ୍ତି ତାଙ୍କ ସାଙ୍ଗରେ ଯିବାର ଠିକ୍ ହୋଇଥିଲା । ସସ୍ତ୍ରୀକ ମଥୁରମୋହନ ଠାକୁରଙ୍କୁ ସାଙ୍ଗରେ ନେବାକୁ ବିଶେଷ ରୂପରେ ଅନୁରୋଧ କଲେ । ଫଳରେ ବୃଦ୍ଧାମାତା[1] ଏବଂ ଭଣଜା ହୃଦୟଙ୍କୁ ସାଙ୍ଗରେ ଧରି ଠାକୁର ତାଙ୍କ ସହିତ ଯିବାକୁ ସମ୍ମତ ହେଲେ ।

### ତୀର୍ଥଯାତ୍ରାର ସମୟ ନିରୂପଣ :

ଏହାପରେ ଏକ ଶୁଭଦିନ ଦେଖି, ମଥୁରବାବୁ ଠାକୁରପ୍ରମୁଖ ସମସ୍ତଙ୍କୁ ସଙ୍ଗରେ ନେଇ ଯାତ୍ରା କଲେ । ତାହା ସମ୍ଭବତଃ ୧୮୬୮ ଖ୍ରୀଷ୍ଟାବ୍ଦ ଜାନୁୟାରୀ ୨୭ ତାରିଖ ହେବ । ଠାକୁରଙ୍କର ତୀର୍ଥଯାତ୍ରା-ସମ୍ବନ୍ଧରେ ଅନେକ କଥା ଆମେମାନେ ପାଠକଙ୍କୁ ଅନ୍ୟତ୍ର[2] କହିଛୁ । ସେଥିପାଇଁ ହୃଦୟଙ୍କ ନିକଟରୁ ସେସମ୍ବନ୍ଧରେ ଯାହା ଶୁଣିଥିଲୁ, ସେବିଷୟ କେବଳ ଏଠାରେ ଉଲ୍ଲେଖ କରିବୁ ।

### ଉକ୍ତ ଯାତ୍ରାର ବନ୍ଦୋବସ୍ତ :

ହୃଦୟ କହୁଥିଲେ, ଶତାଧିକ ବ୍ୟକ୍ତିଙ୍କୁ ସଙ୍ଗରେ ନେଇ ମଥୁରବାବୁ ଏହି ସମୟରେ ତୀର୍ଥଯାତ୍ରା କରିଥିଲେ । ଦ୍ୱିତୀୟ ଶ୍ରେଣୀର ଗୋଟିଏ ବଗି ଓ ତୃତୀୟ ଶ୍ରେଣୀର ତିନୋଟି ବଗି ରେଳକମ୍ପାନୀଠାରୁ ରିଜର୍ଭ କରାଯାଇଥିଲା ଏବଂ ବନ୍ଦୋବସ୍ତ ହୋଇଥିଲା କଲିକତାଠାରୁ କାଶୀଯିବା ମଧ୍ୟରେ ଯେ କୌଣସି ସ୍ଥାନରେ ଉକ୍ତ ଚାରିଖଣ୍ଡ ବଗି ଇଚ୍ଛାମୁତାବକ କାଟିନେଇ ମଥୁରବାବୁ ତାଙ୍କ ଇଚ୍ଛାନୁସାରେ କିଛିଦିନ ଅବସ୍ଥାନ କରିପାରିବେ ।

### ବୈଦ୍ୟନାଥଦର୍ଶନ ଏବଂ ଦରିଦ୍ର ସେବା :

ଦେଓଘରଠାରେ ବୈଦ୍ୟନାଥଜୀଙ୍କୁ ଦର୍ଶନ ଓ ପୂଜାଦି କରିବା ପାଇଁ ମଥୁରବାବୁ କିଛି ଦିନ ସେଠାରେ କଟାଇଥିଲେ । ଗୋଟିଏ ବିଶେଷ ଘଟଣା ଏଠାରେ ଘଟିଥିଲା । ଏହି ସ୍ଥାନରେ ଗୋଟିଏ ଦରିଦ୍ର ପଲ୍ଲୀର ସ୍ତ୍ରୀ-ପୁରୁଷମାନଙ୍କର ଦୁର୍ଦ୍ଦଶା

---

୧. କେହି କେହି କହନ୍ତି, ଠାକୁରଙ୍କର ମାତା ତାଙ୍କ ସହିତ ତୀର୍ଥଗମନ କରି ନାହାନ୍ତି । ହୃଦୟ କିନ୍ତୁ ଆମମାନଙ୍କୁ ଅନ୍ୟ ପ୍ରକାର କହିଥିଲେ ।

୨. ଗୁରୁଭାବ—ଉତ୍ତରାର୍ଦ୍ଧ, ୩ୟ ଅଧ୍ୟାୟ ।

ଦେଖି ଠାକୁରଙ୍କ ହୃଦୟ କରୁଣାରେ ବିଗଳିତ ହୋଇଥିଲା ଏବଂ ମଥୁରବାବୁଙ୍କୁ କହି ସେ ସେମାନଙ୍କୁ ଗୋଟିଏ ଦିନ ଭୋଜନ ଏବଂ ପ୍ରତ୍ୟେକଙ୍କୁ ଖଣ୍ଡିଏ କରି ବସ୍ତ୍ର ପ୍ରଦାନ କରିଥିଲେ ।[୧]

## ରାସ୍ତାରେ ବିଘ୍ନ :

ବୈଦ୍ୟନାଥରୁ ମଥୁରବାବୁ ଏକାଥରେ କାଶୀଧାମରେ ଯାଇ ପହଞ୍ଚିଥିଲେ । ପଥ ମଧ୍ୟରେ ସେପରି କୌଣସି ଉଲ୍ଲେଖଯୋଗ୍ୟ ଘଟଣା ଘଟି ନ ଥିଲା । କେବଳ କାଶୀ ସନ୍ନିକଟ କୌଣସି ଏକ ସ୍ଥାନରେ କାର୍ଯ୍ୟାନ୍ତରରେ ଗାଡ଼ିରୁ ଓହ୍ଲାଇ ଶ୍ରୀରାମକୃଷ୍ଣଦେବ ଏବଂ ହୃଦୟ ଗାଡ଼ିରେ ଉଠି ନ ଥିବା ବେଳେ ଗାଡ଼ିଛାଡ଼ି ଦେଇଥିଲା । ମଥୁରବାବୁ ବ୍ୟସ୍ତ ହୋଇ କାଶୀରୁ ଟେଲିଗ୍ରାମ କଲେ ଯେପରି ହେଉ ତାଙ୍କୁ ପରବର୍ତ୍ତୀ ଗାଡ଼ିରେ ପଠାଇବାକୁ; କିନ୍ତୁ ପରବର୍ତ୍ତୀ ଗାଡ଼ିପାଇଁ ତାଙ୍କୁ ଅପେକ୍ଷା କରିବାକୁ ପଡ଼ିଲା ନାହିଁ । ରେଲ୍‌ୱେ କମ୍ପାନୀର ଜନୈକ ବିଶିଷ୍ଟ କର୍ମଚାରୀ ଶ୍ରୀଯୁକ୍ତ ରାଜେନ୍ଦ୍ର ଲାଲ ବନ୍ଦୋପାଧ୍ୟାୟ କୌଣସି କାର୍ଯ୍ୟର ତତ୍ତ୍ୱାବଧାନ ନିମିତ୍ତ ଏକ ସ୍ୱତନ୍ତ୍ର (Special) ଗାଡ଼ିରେ କିଛି ସମୟ ପରେ ସେଠାକୁ ଯାଇଥିଲେ । ଠାକୁର ଓ ହୃଦୟଙ୍କୁ ସେଠାରେ ଦେଖି ନିଜ ଗାଡ଼ିରେ ଉଠାଇ ନେଇ କାଶୀରେ ଛାଡ଼ି ଦେଇଥିଲେ । ରାଜେନ୍ଦ୍ରବାବୁ କଲିକତାର ବାଗବଜାରରେ ସେତେବେଳେ ରହୁଥିଲେ ।

କାଶୀଧାମରେ ପହଞ୍ଚି ମଥୁରବାବୁ କେଦାରଘାଟ ନିକଟରେ ପାଖାପାଖି ଦୁଇଟି ଘର ଭଡ଼ାରେ ନେଇଥିଲେ । ପୂଜା, ଦାନ ପ୍ରଭୃତି ସମସ୍ତ ବିଷୟରେ ସେ ଏଠାରେ ମୁକ୍ତ ହସ୍ତରେ ବ୍ୟୟ କରିଥିଲେ ।[୨] ଏହି କାରଣରୁ ଏଠାରେ ଥିବାବେଳେ ସେ ବାହାରକୁ କେଉଁ ସ୍ଥାନକୁ ଯିବା ସମୟରେ ରୂପାର ଛତ୍ର ଓ ଅନ୍ୟାନ୍ୟ ରାଜସିକ ଉପକରଣ ସହ ଅଗ୍ରପଶ୍ଚାତରେ ଦରୱାନ୍‌ମାନେ ଯିବା ଦେଖି ସେଠାକାର ଲୋକମାନେ ତାଙ୍କୁ ଜଣେ ରାଜରାଜୁଡ଼ା ବୋଲି ଧାରଣା କରୁଥିଲେ ।

## କେଦାରଘାଟରେ ଅବସ୍ଥାନ ଓ ବିଶ୍ୱନାଥ–ଦର୍ଶନ :

ଏଠାରେ ଥିବାବେଳେ ଠାକୁର ପାଲିଙ୍କିରେ ବସି ପ୍ରାୟ ସବୁଦିନ ବାବା ବିଶ୍ୱନାଥଙ୍କୁ ଦର୍ଶନ କରିବାକୁ ଯାଉଥିଲେ । ହୃଦୟ ତାଙ୍କ ସଙ୍ଗେ ଯାଉଥିଲେ । ସେଠାକୁ ଯିବାବେଳେ ଠାକୁର ବାଟରେ ଭାବାବିଷ୍ଟ ହୋଇ ପଡୁଥିଲେ, ଦେବଦର୍ଶନ କାଳର କଥା କହିବାର ଆବଶ୍ୟକତା ନାହିଁ । ଏପରି ସମସ୍ତ ଦେବସ୍ଥାନରେ ତାଙ୍କର ଭାବାବେଶ ହେଉଥିଲେ ମଧ୍ୟ କେଦାରନାଥଙ୍କ ମନ୍ଦିରରେ ତାଙ୍କର ବିଶେଷ ଭାବାବେଶ ହେଉଥିଲା ।

---

୧. ଗୁରୁଭାବ—ପୂର୍ବାର୍ଦ୍ଧ, ୭ମ ଅଧ୍ୟାୟ ।
୨. ଗୁରୁଭାବ—ଉତ୍ତରାର୍ଦ୍ଧ, ୩ୟ ଅଧ୍ୟାୟ ।

## ଠାକୁର ଓ ଶ୍ରୀତ୍ରୈଲଙ୍ଗ ସ୍ୱାମୀ :

ଦେବସ୍ଥାନ ବ୍ୟତୀତ ଠାକୁର କାଶୀର ବିଖ୍ୟାତ ସାଧୁମାନଙ୍କୁ ଦର୍ଶନ କରିବାକୁ ଯାଉଥିଲେ । ସେସମୟରେ ମଧ୍ୟ ହୃଦୟ ତାଙ୍କ ନିକଟରେ ରହିଥାଆନ୍ତି । ଏହିପରି ପରମହଂସାଗ୍ରଣୀ ଶ୍ରୀଯୁକ୍ତ ତ୍ରୈଲଙ୍ଗ ସ୍ୱାମୀଜୀଙ୍କୁ ଦର୍ଶନ କରିବାକୁ ସେ ଏକାଧିକ ଥର ଯାଇଥିଲେ । ସ୍ୱାମୀଜୀ ସେତେବେଳେ ମୌନାବଲମ୍ବନପୂର୍ବକ ମଣିକର୍ଣ୍ଣିକା ଘାଟରେ ରହୁଥିଲେ । ପ୍ରଥମ ଦର୍ଶନ ଦିନ ସ୍ୱାମୀଜୀ ନିଜର ନସ୍ୟଦାନୀ ଠାକୁରଙ୍କର ସମ୍ମୁଖରେ ଧାରଣପୂର୍ବକ ଠାକୁରଙ୍କୁ ଅଭ୍ୟର୍ଥନା ଓ ସମ୍ମାନ ପ୍ରଦର୍ଶନ କରିଥିଲେ ଏବଂ ଠାକୁର ତାଙ୍କର ଇନ୍ଦ୍ରିୟ ଏବଂ ଅବୟବ ସମସ୍ତର ଗଠନ ଲକ୍ଷ୍ୟ କରି ହୃଦୟଙ୍କୁ କହିଥିଲେ, ''ଏହାଙ୍କଠାରେ ଯଥାର୍ଥ ପରମହଂସଙ୍କର ସବୁ ଲକ୍ଷଣ ପ୍ରକାଶ ପାଉଛି ଏବଂ ସେ ସାକ୍ଷାତ୍ ବିଶ୍ୱେଶ୍ୱର ।'' ଶ୍ରୀତ୍ରୈଲଙ୍ଗ ସ୍ୱାମୀଜୀ ସେତେବେଳେ ମଣ୍ଡିକର୍ଣ୍ଣିକା ଘାଟ ପାର୍ଶ୍ୱରେ ଅନ୍ୟ ଗୋଟିଏ ଘାଟ ପକ୍‌କା କରି ଦେବା ପାଇଁ ସଂକଳ୍ପ କରିଥିଲେ । ଠାକୁରଙ୍କର ଅନୁରୋଧରେ ହୃଦୟ କୋଦାଳରେ କିଛି ମାଟି ଏଠାରେ ପକାଇ ଏହି କାର୍ଯ୍ୟରେ ସହାୟତା କରିଥିଲେ । ତା'ପରେ ଠାକୁର ଦିନେ ସ୍ୱାମୀଜୀଙ୍କୁ ଦେଖିବାକୁ ଯାଇ ସ୍ୱହସ୍ତରେ ତାଙ୍କୁ ପାୟସାନ୍ନ ଖୁଆଇ ଦେଇଥିଲେ ।[୧]

## ପ୍ରୟାଗ ଧାମରେ ଠାକୁରଙ୍କର ଆଚରଣ :

କାଶୀରେ ପାଞ୍ଚସାତ ଦିନ ରହି ଠାକୁର ମଥୁରଙ୍କ ସହିତ ପ୍ରୟାଗ ଗମନପୂର୍ବକ ପୁଣ୍ୟସଙ୍ଗମରେ ସ୍ନାନକରି ତ୍ରିରାତ୍ର ବାସ କରିଥିଲେ । ମଥୁରବାବୁ ପ୍ରଭୃତି ସମସ୍ତେ ସେଠାରେ ଶାସ୍ତ୍ରୀୟ ବିଧାନାନୁସାରେ ମସ୍ତକ ମୁଣ୍ଡନ କରିଥିଲେ ମଧ୍ୟ ଠାକୁର ତାହା କରି ନ ଥିଲେ । ସେ କହିଲେ, ''ମୋର ମସ୍ତକ ମୁଣ୍ଡନ କରିବାର ଆବଶ୍ୟକତା ନାହିଁ ।'' ପ୍ରୟାଗରୁ ମଥୁରବାବୁ ପୁନରାୟ କାଶୀ ଫେରି ସେଠାରେ ପନ୍ଦର ଦିନ ରହି ଶ୍ରୀବୃନ୍ଦାବନ ଦର୍ଶନରେ ଯାଇଥିଲେ ।

## ଶ୍ରୀବୃନ୍ଦାବନରେ ନିଧୁବନ ଇତ୍ୟାଦି ସ୍ଥାନ ଦର୍ଶନ :

ଶ୍ରୀବୃନ୍ଦାବନରେ ମଥୁରବାବୁ ନିଧୁବନ ନିକଟରେ ଗୋଟିଏ ଘରେ ରହୁଥିଲେ । କାଶୀପରି ଏଠାରେ ମଧ୍ୟ ସେ ମୁକ୍ତହସ୍ତରେ ଦାନ କରିଥିଲେ ଏବଂ ପତ୍ନୀଙ୍କ ସହ ଦେବସ୍ଥାନଗୁଡ଼ିକ ଦର୍ଶନ କରିବାକୁ ଯାଇ ପ୍ରତ୍ୟେକ ମନ୍ଦିରରେ କେତେଖଣ୍ଡ ଗିନି (ସ୍ୱର୍ଣ୍ଣମୁଦ୍ରା) ପ୍ରଣାମୀସ୍ୱରୂପ ପ୍ରଦାନ କରିଥିଲେ । ନିଧୁବନ ଛଡ଼ା ଠାକୁର ଏଠାରେ ରାଧାକୁଣ୍ଡ, ଶ୍ୟାମକୁଣ୍ଡ ଏବଂ ଗିରିଗୋବର୍ଦ୍ଧନ ଦର୍ଶନ ମଧ୍ୟ କରିଥିଲେ । ଗିରିଗୋବର୍ଦ୍ଧନଠାରେ ସେ ଭାବାବେଶରେ ଗିରିଶୃଙ୍ଗ ଆରୋହଣ କରିଥିଲେ । ଏଠାରେ ସେ ଖ୍ୟାତନାମା ସାଧକସାଧିକାମାନଙ୍କୁ ଦର୍ଶନ କରିଥିଲେ

---

୧. ଗୁରୁଭାବ—ଉତ୍ତରାର୍ଦ୍ଧ, ଏବଂ ଶ୍ରୀଶ୍ରୀରାମକୃଷ୍ଣ ପୋଥି, ପୃଷ୍ଠା-୧୪୫ ।

ଏବଂ ନିଧୁବନରେ ଗଙ୍ଗାମାତାଙ୍କ ଦର୍ଶନଲାଭ କରି ପରମ ପରିତୁଷ୍ଟ ହୋଇଥିଲେ । ହୃଦୟଙ୍କୁ ତାଙ୍କର ଶରୀରର ଲକ୍ଷଣସବୁ ଦେଖାଇ ଠାକୁର କହିଥିଲେ, ''ଏହାଙ୍କର ବିଶେଷ ଉଚ୍ଚାବସ୍ଥା ଲାଭ ହୋଇଅଛି ।''

**କାଶୀପ୍ରତ୍ୟାଗମନ ଏବଂ ସେଠାରେ ରହିବା :**

ପ୍ରାୟ ପନ୍ଦରଦିନ ଶ୍ରୀବୃନ୍ଦାବନରେ ରହି ମଥୁରବାବୁପ୍ରମୁଖ ସମସ୍ତେ ପୁନରାୟ କାଶୀଧାମକୁ ଆସିଥିଲେ ଏବଂ ବିଶ୍ୱନାଥଙ୍କର ବିଶେଷ ବେଶ ଦର୍ଶନ ପାଇଁ ୧୮୬୮ ଖ୍ରୀଷ୍ଟାବ୍ଦ ଏପ୍ରିଲ-ମଇ ପର୍ଯ୍ୟନ୍ତ ସେଠାରେ ରହିଥିଲେ । ଏହି ସମୟରେ ଠାକୁର ଏଠାରେ ସୁବର୍ଣ୍ଣମୟୀ ଅନ୍ନପୂର୍ଣ୍ଣା ପ୍ରତିମା ଦର୍ଶନ କରିଥିଲେ ।

**କାଶୀରେ ବ୍ରାହ୍ମଣୀଙ୍କୁ ଦର୍ଶନ—ବ୍ରାହ୍ମଣୀଙ୍କର ଶେଷକଥା :**

କାଶୀରେ ଯୋଗେଶ୍ୱରୀ ନାମ୍ନୀ ଭୈରବୀ ବ୍ରାହ୍ମଣୀଙ୍କ ସହିତ ଠାକୁରଙ୍କର ପୁନର୍ବାର ଦେଖା ହୋଇଥିଲା ଏବଂ ଚୌଷଠିଯୋଗୀନୀ ନାମକ ପଲ୍ଲୀସ୍ଥିତ ତାଙ୍କର କୁଟୀରକୁ ସେ କେତେଥର ଯାଇଥିଲେ । ବ୍ରାହ୍ମଣୀ ଏହି ସମୟରେ ମୋକ୍ଷଦା ନାମ୍ନୀ ଜଣେ ସ୍ତ୍ରୀଲୋକଙ୍କ ସହିତ ବାସ କରୁଥିଲେ । ସେହି ରମଣୀଙ୍କର ଭକ୍ତି-ବିଶ୍ୱାସଦର୍ଶନରେ ଠାକୁର ଅତ୍ୟନ୍ତ ପରିତୁଷ୍ଟ ହୋଇଥିଲେ । ଶ୍ରୀବୃନ୍ଦାବନ ଯିବା ସମୟରେ ବ୍ରାହ୍ମଣୀ ଠାକୁରଙ୍କ ସହିତ ଯାଇଥିଲେ । ବ୍ରାହ୍ମଣୀଙ୍କୁ ଠାକୁର ଏବେଠାରୁ ଶ୍ରୀବୃନ୍ଦାବନରେ ରହିବାକୁ କହିଥିଲେ । ହୃଦୟ କହୁଥିଲେ, ଠାକୁର ସେଠାରୁ ଫେରିବାର ସ୍ୱଳ୍ପକାଳ ପରେ ବ୍ରାହ୍ମଣୀ ଶ୍ରୀବୃନ୍ଦାବନଠାରେ ଦେହରକ୍ଷା କରିଥିଲେ ।

**ବୀଣା ବାଦ୍ୟକାର ମହେଶଙ୍କୁ ଦେଖିବା ପାଇଁ ଯିବା :**

ଶ୍ରୀବୃନ୍ଦାବନଠାରେ ଅବସ୍ଥାନ ସମୟରେ ଠାକୁରଙ୍କର ବୀଣାବାଦ୍ୟ ଶୁଣିବାକୁ ଇଚ୍ଛା ହୋଇଥିଲା, କିନ୍ତୁ ସେସମୟରେ ସେଠାରେ କୌଣସି ବୀଣାବାଦକ ନ ଥିବାରୁ ଏହା ସମ୍ଭବ ହୋଇ ନ ଥିଲା । କାଶୀ ଫେରିବା ପରେ ତାଙ୍କ ମନରେ ପୁଣି ବୀଣାବାଦନ ଶୁଣିବାକୁ ଇଚ୍ଛା ହେଲା, ଏବଂ ଶ୍ରୀଯୁକ୍ତ ମହେଶ ଚନ୍ଦ୍ର ସରକାର ନାମକ ଜଣେ ଅଭିଜ୍ଞ ବୀଣାକାରଙ୍କ ଘରକୁ ହୃଦୟଙ୍କ ସହିତ ଯାଇ ତାଙ୍କୁ ବୀଣାବାଦନ ଶୁଣାଇବାକୁ ଅନୁରୋଧ କଲେ । ମହେଶବାବୁ କାଶୀରେ ମଦନପୁରା ନାମକ ପଲ୍ଲୀରେ ଅବସ୍ଥାନ କରୁଥିଲେ । ଠାକୁରଙ୍କ ଅନୁରୋଧରେ ସେ ସେଦିନ ପରମ ଆନନ୍ଦରେ ଅନେକ ସମୟ ପର୍ଯ୍ୟନ୍ତ ବୀଣା ବଜାଇ ଥିଲେ । ବୀଣାର ମଧୁର ଝଙ୍କାର ଶୁଣିବା ମାତ୍ରେ ଠାକୁର ଭାବାବିଷ୍ଟ ହୋଇଥିଲେ, ପରେ ଅର୍ଦ୍ଧବାହ୍ୟ ଦଶା ହେବାରୁ ତାଙ୍କୁ ଶ୍ରୀଶ୍ରୀଜଗଦମ୍ବାଙ୍କ ନିକଟରେ 'ମା, ମୋତେ ହୋସ୍ ଦେ, ମୁଁ ଭଲ କରି ବୀଣା ଶୁଣିବି' — ଏହିପରି ପ୍ରାର୍ଥନା କରିବା ଶୁଣାଯାଇଥିଲା । ଏପରି ପ୍ରାର୍ଥନା ପରେ ସେ ବାହ୍ୟ ଭାବଭୂମିରେ ଅବସ୍ଥାନ କରିବାକୁ ସମର୍ଥ ହୋଇଥିଲେ ଏବଂ

ଆନନ୍ଦରେ ବୀଣାବାଦନ ଶୁଣି ଏହାର ସୁରର ସହିତ ନିଜ ସ୍ୱର ମିଳାଇ ଗୀତ ଗାଇ ଥିଲେ । ଅପରାହ୍ଣ ପାଞ୍ଚଟାରୁ ରାତି ଆଠଟା ପର୍ଯ୍ୟନ୍ତ ଏପରି ଆନନ୍ଦରେ ଅତିବାହିତ କରି ମହେଶବାବୁଙ୍କ ଅନୁରୋଧରେ ସେ ସେଠାରେ ସାମାନ୍ୟ ଜଳଯୋଗ କରି ମଥୁରଙ୍କ ନିକଟକୁ ଫେରିଥିଲେ । ମହେଶବାବୁ ତଦବଧି ଠାକୁରଙ୍କୁ ପ୍ରତ୍ୟହ ଦର୍ଶନ କରିବାକୁ ଆସୁଥିଲେ । ଠାକୁର କହୁଥିଲେ—ବୀଣା ବଜାଉ ବଜାଉ ମହେଶବାବୁ ଏକାବେଳକେ ମଗ୍ନ ହୋଇ ଉଠୁଥିଲେ ।

### ଦକ୍ଷିଣେଶ୍ୱର ପ୍ରତ୍ୟାବର୍ତ୍ତନ ଏବଂ ଠାକୁରଙ୍କର ଆଚରଣ :

କାଶୀରୁ ଶ୍ରୀଯୁକ୍ତ ମଥୁର ଗୟାଧାମ ଯିବା ପାଇଁ ଇଚ୍ଛା ପ୍ରକାଶ କରିଥିଲେ । କିନ୍ତୁ ଠାକୁରଙ୍କ ଏଥିରେ ବିଶେଷ ଆପତ୍ତି ଥିବାରୁ[୧] ସେ ସେହି ସଂକଳ୍ପ ପରିତ୍ୟାଗ କରି କଲିକତାକୁ ଫେରି ଆସିଥିଲେ । ହୃଦୟ କହୁଥିଲେ, ଏପରି ଚାରି ମାସ କାଳ ତୀର୍ଥଭ୍ରମଣ କରି ସନ ୧୨୭୫ ବଙ୍ଗାବ୍ଦ (୧୮୬୮ ଖ୍ରୀଷ୍ଟାବ୍ଦ) ଜ୍ୟେଷ୍ଠ ମାସର ମଧ୍ୟଭାଗରେ ମଥୁରବାବୁଙ୍କ ସହିତ ପୁନରାୟ ଦକ୍ଷିଣେଶ୍ୱର ଫେରିଥିଲେ । ଶ୍ରୀବୃନ୍ଦାବନରୁ ଠାକୁର ରାଧାକୁଣ୍ଡ ଓ ଶ୍ୟାମକୁଣ୍ଡର ଧୂଳି ଆଣିଥିଲେ । ଦକ୍ଷିଣେଶ୍ୱର ଆସି ସେ ଏଥିରୁ କିଛି ପଞ୍ଚବଟୀର ଚତୁର୍ଦ୍ଦିଗରେ ବିଞ୍ଚି ଦେଇଥିଲେ ଏବଂ ଅବଶିଷ୍ଟ ଅଂଶ ନିଜର ସାଧନକୁଟୀର ମଧ୍ୟରେ ପୋତି କହିଥିଲେ—"ଆଜିଠାରୁ ଏହିସ୍ଥାନ ଶ୍ରୀବୃନ୍ଦାବନତୁଲ୍ୟ ଦେବଭୂମି ହେଲା ।" ହୃଦୟ କହୁଥିଲେ, ଏହି ଘଟଣାର ଅଳ୍ପଦିନ ପରେ ସେ ବିଭିନ୍ନ ସ୍ଥାନରୁ ବୈଷ୍ଣବ ଗୋସ୍ୱାମୀ ଏବଂ ଭକ୍ତମାନଙ୍କୁ ମଥୁରବାବୁଙ୍କ ଦ୍ୱାରା ନିମନ୍ତ୍ରିତ କରାଇ ଆଣି ପଞ୍ଚବଟୀରେ ମହୋତ୍ସବର ଆୟୋଜନ କରିଥିଲେ । ମଥୁରବାବୁ ସେସମୟରେ ଗୋସ୍ୱାମୀମାନଙ୍କୁ ଷୋଳଟଙ୍କା ଏବଂ ବୈଷ୍ଣବ ଭକ୍ତମାନଙ୍କୁ ଏକଟଙ୍କା କରି ଦକ୍ଷିଣା ପ୍ରଦାନ କରିଥିଲେ ।

### ହୃଦୟଙ୍କର ପତ୍ନୀବିୟୋଗ ଏବଂ ବୈରାଗ୍ୟ :

ତୀର୍ଥରୁ ଫେରିବାର ଅଳ୍ପଦିନ ପରେ ହୃଦୟଙ୍କ ପତ୍ନୀବିୟୋଗ ହୋଇଥିଲା । ଏହି ଘଟଣାରେ ତାଙ୍କର ମନ ସଂସାର ପ୍ରତି କିଛିକାଳ ପାଇଁ ବୈରାଗ୍ୟସମ୍ପନ୍ନ ହୋଇଉଠିଲା । ଆମେ ପୂର୍ବରୁ କହିଛୁ, ହୃଦୟରାମ ଭାବୁକ ନ ଥିଲେ । ନିଜର କ୍ଷୁଦ୍ର ସଂସାରର ଶ୍ରୀବୃଦ୍ଧିକରି ଯଥାସମ୍ଭବ ଭୋଗ-ସୁଖରେ କାଳଯାପନ କରିବା ତାଙ୍କର ଜୀବନର ଆଦର୍ଶ ଥିଲା । ଠାକୁରଙ୍କ ନିରନ୍ତର ସଙ୍ଗଲାଭରେ ତାଙ୍କ ମନରେ ବେଳେବେଳେ ଅନ୍ୟ ପ୍ରକାର ଭାବ ଉଦୟ ହେଉଥିଲେ ମଧ୍ୟ ଏହା କ୍ଷଣସ୍ଥାୟୀ ଥିଲା । ଭୋଗବାସନା ପରିତୃପ୍ତ କରିବାର କୌଣସି ପ୍ରକାର ସୁଯୋଗ ଆସିଲେ ହିଁ ହୃଦୟ ସବୁକିଛି ଭୁଲି ତା'ପଛରେ ଧାଉଁଥିଲେ ଏବଂ ଯେପର୍ଯ୍ୟନ୍ତ ଏହା ପ୍ରାପ୍ତ ନ ହେଉଥିଲା ସେ ପର୍ଯ୍ୟନ୍ତ ତାଙ୍କ ମନରେ ଅନ୍ୟ ଚିନ୍ତା ପ୍ରବେଶ କରୁ ନ ଥିଲା ।

---

୧. ଗୁରୁଭାବ—ଉତ୍ତରାର୍ଦ୍ଧ, ୭ମ ଅଧ୍ୟାୟ ।

ସେଥିପାଇଁ ଠାକୁରଙ୍କର ସମଗ୍ର ସାଧନା ହୃଦୟ ଦକ୍ଷିଣେଶ୍ୱରଠାରେ ଥିବାବେଳେ ଅନୁଷ୍ଠିତ ହୋଇଥିଲେ ମଧ୍ୟ, ସେ ତାହାର ସ୍ୱଳ୍ପମାତ୍ର ଦେଖିବାକୁ ଓ ବୁଝିବାକୁ ସମର୍ଥ ହୋଇଥିଲେ । ଏପରି ହେଲେ ମଧ୍ୟ ହୃଦୟ ତାଙ୍କ ମାମୁଁଙ୍କୁ ଯଥାର୍ଥ ଭଲ ପାଉଥିଲେ ଏବଂ ତାଙ୍କର ଆବଶ୍ୟକ ଅନୁଯାୟୀ ସେବାରେ କୌଣସି ପ୍ରକାର ତ୍ରୁଟି କରୁ ନ ଥିଲେ । ଏହା ଦ୍ୱାରା ହୃଦୟଙ୍କର ସାହସ, ବୁଦ୍ଧି ଏବଂ କାର୍ଯ୍ୟକୁଶଳତା ବିଶେଷ ପ୍ରସ୍ଫୁଟିତ ହୋଇଥିଲା । ଆହୁରି ମଧ୍ୟ ବିଖ୍ୟାତ ସାଧକମାନଙ୍କ ନିକଟରୁ ମାମୁଁଙ୍କର ଅଲୌକିକତ୍ୱ ଶୁଣି ଏବଂ ତାଙ୍କଠାରେ ଦୈବଶକ୍ତିସମୂହର ପ୍ରକାଶ-ଦର୍ଶନରେ ତାଙ୍କ ମନରେ ଏକ ବିଶେଷ ବଳ ସଞ୍ଚାର ହୋଇଥିଲା । ସେ ଭାବିଥିଲେ, ମାମୁଁ ଯେତେବେଳେ ତାଙ୍କର ଏତେ ନିଜର ଏବଂ ସେବାଦ୍ୱାରା ଯଦି ସେ ତାଙ୍କର ବିଶେଷ କୃପାପାତ୍ର ହୋଇଛନ୍ତି, ତେଣୁ ଆଧ୍ୟାତ୍ମିକ ରାଜ୍ୟର ସମୁଦାୟ ଫଳ ତାଙ୍କର ଏକ ପ୍ରକାର କରାୟତ୍ତ ରହିଅଛି । ତେଣୁ ଯେତେବେଳେ ତାଙ୍କର ଏସମସ୍ତ ଲାଭ କରିବାକୁ ମନ ହେବ, ମାମୁଁ ନିଜ ଦୈବ ଶକ୍ତି ପ୍ରଭାବରେ ତାଙ୍କୁ ସେସମସ୍ତ ଲାଭ କରାଇଦେବେ । ଅତଏବ ପରକାଳ ସମ୍ବନ୍ଧରେ ତାଙ୍କର ଭାବିବାର ପ୍ରୟୋଜନ ନାହିଁ । ସେ ଭାବିଥିଲେ କିଛି ଦିନ ସଂସାର ସୁଖ ଭୋଗକରି ପାରତ୍ରିକ ବିଷୟରେ ମନୋନିବେଶ କରିବେ । ପତ୍ନୀ-ବିୟୋଗ-ବିଧୁର ହୃଦୟ ଭାବିଲେ, ଏବେ ସେହି ସମୟ ଉପସ୍ଥିତ ହୋଇଅଛି । ସେ ପୂର୍ବାପେକ୍ଷା ନିଷ୍ଠାର ସହିତ ଶ୍ରୀଶ୍ରୀଜଗଦମ୍ବାଙ୍କର ପୂଜାରେ ମନୋନିବେଶ କଲେ, ପରିଧାନ ଲୁଗା ଓ ପଇତା ଖୋଲି ଦେଇ ବେଳେ ବେଳେ ଧ୍ୟାନ କରିବାକୁ ଲାଗିଲେ ଏବଂ ଠାକୁରଙ୍କ ପାଖରେ ଜିଦ୍ ଧରି ବସିଲେ, ତାଙ୍କଠାରେ ଆଧ୍ୟାତ୍ମିକ ଉପଲବ୍ଧିସମୂହ ଯେପରି ଉପସ୍ଥିତ ହୁଏ, ତାହା କରିଦେବାକୁ ହେବ । ଠାକୁର ତାଙ୍କୁ ଯେତେ ବୁଝାଇଲେ ଯେ, ତାଙ୍କର ଏସବୁ କରିବାର ଆବଶ୍ୟକତା ନାହିଁ, କେବଳ ଠାକୁରଙ୍କ ସେବାରେ ହିଁ ସେ ସମସ୍ତ ଫଳ ଲାଭ କରିବେ ଏବଂ ହୃଦୟ ଓ ସେ ଉଭୟ ଯଦି ଦିବାରାତ୍ର ଭଗବଦ୍‌ଭାବରେ ବୁଡ଼ି ଆହାର-ନିଦ୍ରା ଆଦି ସକଳ ଚେଷ୍ଟା ଭୁଲି ରହନ୍ତି, ତା'ହେଲେ କିଏ କାହାକୁ ଦେଖିବ, ଇତ୍ୟାଦି—ହୃଦୟ କିନ୍ତୁ ଏକଥାରେ କର୍ଣ୍ଣପାତ କଲେ ନାହିଁ । ଅଗତ୍ୟା ଠାକୁର କହିଲେ, ''ମା'ର ଯାହା ଇଚ୍ଛା, ତାହା ହେଉ, ମୋର ଇଚ୍ଛାରେ କ'ଣ କିଛି ହୁଏ ରେ !—ମା' ହିଁ ମୋର ବୁଦ୍ଧିକୁ ଓଲଟ ପାଲଟ କରି ମୋତେ ଏପରି ଅବସ୍ଥାରେ ଆଣି ଅଦ୍ଭୁତ ଉପଲବ୍ଧି ସବୁ କରାଇଦେଇଛନ୍ତି—ତେଣୁ ମା'ର ଯଦି ଇଚ୍ଛା ହୁଏ ତୋର ମଧ୍ୟ ହେବ ।''

### ହୃଦୟଙ୍କର ଭାବାବେଶ :

ଏପରି କଥାବାର୍ତ୍ତାର କିଛିଦିନ ପରେ ପୂଜା ଏବଂ ଧ୍ୟାନସମୟରେ ହୃଦୟଙ୍କର ଜ୍ୟୋତିର୍ମୟ ଦେବମୂର୍ତ୍ତିମାନଙ୍କୁ ଦର୍ଶନ ଏବଂ ଅର୍ଦ୍ଧବାହ୍ୟଭାବ ହେବାକୁ ଲାଗିଲା ।

ମଥୁରବାବୁ ହୃଦୟଙ୍କୁ ଦିନେ ଏପରି ଭାବାବିଷ୍ଟ ଦେଖି ଠାକୁରଙ୍କୁ କହିଲେ— "ହୃଦୁର ପୁଣି ଏପରି କଣ ଅବସ୍ଥା ହେଲା, ବାବା ?" ଠାକୁର ତାଙ୍କୁ ବୁଝାଇ କହିଲେ, "ହୃଦୟ ଲୋକଦେଖାଣିଆ ଏପରି କରୁ ନାହିଁ—ଟିକେ-ଅଧେ ଦର୍ଶନ ପାଇଁ ସେ ମା'କୁ ବ୍ୟାକୁଳ ହୋଇ ଧରିଥିଲା, ତେଣୁ ଏପରି ହେଉଅଛି । ଏପରି ଦେଖାଇ ବୁଝାଇ ମା' ପୁଣି ତାକୁ ଥଣ୍ଡା କରିଦେବେ ।" ମଥୁରବାବୁ କହିଲେ, "ବାବା, ଏସମସ୍ତ ତୁମରି ଖେଳ, ତୁମେ ହିଁ ହୃଦୟକୁ ଏପରି ଅବସ୍ଥା ଦେଇଛ, ତୁମେ ହିଁ ଏବେ ତାର ମନ ଥଣ୍ଡା କରିଦିଅ—ଆମେ ଉଭୟ ନନ୍ଦୀ-ଭୃଙ୍ଗୀଙ୍କ ପରି ତୁମ ପାଖରେ ରହିବୁ, ସେବା କରିବୁ, ଆମର ଏପରି ହେବା କ'ଣ ଦରକାର ?"

### ହୃଦୟଙ୍କର ଅଦ୍ଭୁତ ଦର୍ଶନ :

ମଥୁରଙ୍କ ସହିତ ଠାକୁରଙ୍କର ଏପରି କଥାବାର୍ତ୍ତା ହେବାର ଅଳ୍ପ ଦିନ ପରେ ଦିନେ ରାତିରେ ଠାକୁରଙ୍କୁ ପଞ୍ଚବଟୀ ଆଡ଼କୁ ଯିବାର ଦେଖି, ତାଙ୍କର ଦରକାର ହୋଇପାରେ ଭାବି ହୃଦୟ ଲୋଟା ଓ ଗାମୁଛା ଧରି ତାଙ୍କ ପଛେ ପଛେ ଯିବାକୁ ଲାଗିଲେ । ଯାଉ ଯାଉ ହୃଦୟଙ୍କର ଏକ ଅଦ୍ଭୁତ ଦର୍ଶନ ହେଲା । ସେ ଦେଖିବାକୁ ଲାଗିଲେ, ଠାକୁର ସ୍ଥୂଳ ରକ୍ତମାଂସ ଦେହଧାରୀ ମନୁଷ୍ୟ ନୁହନ୍ତି, ତାଙ୍କର ଦେହ ନିଃସୃତ ଅପୂର୍ବ ଜ୍ୟୋତିରେ ପଞ୍ଚବଟୀ ଆଲୋକିତ ହୋଇ ଉଠିଛି ଏବଂ ଚାଲିବା ସମୟରେ ତାଙ୍କର ଜ୍ୟୋତିର୍ମୟ ପଦଯୁଗଳ ଭୂମିସ୍ପର୍ଶ ନ କରି ଶୂନ୍ୟରେ ହିଁ ତାଙ୍କୁ ବହନ କରୁଅଛି ! ଚକ୍ଷୁ ଦୋଷରୁ ଏପରି ଦେଖୁଛନ୍ତି ଭାବି ହୃଦୟ ବାରମ୍ବାର ଆଖି ମଳି ଚତୁର୍ପାର୍ଶ୍ୱସ୍ଥ ପଦାର୍ଥଗୁଡ଼ିକ ନିରୀକ୍ଷଣ କରି ପୁନରାୟ ଠାକୁରଙ୍କ ଆଡ଼କୁ ଦେଖିବାକୁ ଲାଗିଲେ, କିନ୍ତୁ କେଉଁଥିରେ ମଧ୍ୟ କିଛି ହେଲା ନାହିଁ —ବୃକ୍ଷ, ଲତା, ଗଙ୍ଗା, କୁଟୀର ପ୍ରଭୃତି ପଦାର୍ଥସବୁ ଦେଖିପାରିଲେ ମଧ୍ୟ ପୂର୍ବବତ୍ ଠାକୁରଙ୍କୁ ପୁନଃ ପୁନଃ ସେହିପରି ହିଁ ଦେଖିବାକୁ ଲାଗିଲେ ! ସେତେବେଳେ ବିସ୍ମିତ ହୋଇ ହୃଦୟ ଭାବିଲେ, 'ମୋ ଭିତରେ କ'ଣ କିଛି ପରିବର୍ତ୍ତନ ହେଲା, ଯାହାପାଇଁ ମୁଁ ଏପରି ଦେଖୁଛି ?' ଏପରି ଭାବି ସେ ନିଜଆଡ଼କୁ ଦେଖିବାମାତ୍ରେ ତାଙ୍କର ମନେ ହେଲା ସେ ମଧ୍ୟ ଦିବ୍ୟ ଦେହଧାରୀ ଜ୍ୟୋତିର୍ମୟ ଦେବାନୁଚର, ସାକ୍ଷାତ୍ ଦେବତାଙ୍କ ସାଙ୍ଗରେ ରହି ଚିରକାଳ ତାଙ୍କର ସେବା କରୁଅଛନ୍ତି । ମନେହେଲା, ସେ ଯେପରି ଏହି ଦେବତାଙ୍କର ଜ୍ୟୋତିଃଘନ-ଅଙ୍ଗସମ୍ଭୂତ ଅଂଶବିଶେଷ, ଏବଂ ତାଙ୍କର ସେବାପାଇଁ ହିଁ ତାଙ୍କର ଭିନ୍ନ ଶରୀରଧାରଣପୂର୍ବକ ପୃଥକଭାବରେ ଅବସ୍ଥିତି । ଏପରି ଦର୍ଶନ କରି ଏବଂ ନିଜ ଜୀବନର ଏପରି ରହସ୍ୟ ହୃଦୟଙ୍ଗମ କରି ତାଙ୍କ ଅନ୍ତରରେ ଆନନ୍ଦର ପ୍ରବଳ ବନ୍ୟା ପ୍ରବାହିତ ହେଲା । ସେ ନିଜକୁ ଭୁଲି, ସଂସାର ଭୁଲି ଏବଂ ଲୋକମାନେ ତାଙ୍କୁ ଉନ୍ମାଦ କହିବେ, ସେକଥା ଭୁଲି ଅର୍ଦ୍ଧବାହ୍ୟ ଭାବାବେଶରେ ଉନ୍ମତ୍ତ ପରି ଚିତ୍କାର କରି ବାରମ୍ବାର କହି ଚାଲିଲେ—

''ଓ ରାମକୃଷ୍ଣ, ଓ ରାମକୃଷ୍ଣ, ଆମେ ତ ମଣିଷ ନୁହଁ, ଆମେ ଏଠାରେ କାହିଁକି ରହିବା ? ଚାଲ ଦେଶ ଦେଶ ଯାଇ, ଜୀବଉଦ୍ଧାର କରିବା ! ତୁମେ ଯାହା, ମୁଁ ମଧ ତାହା !''

ଠାକୁର କହିଥିଲେ, ''ତାକୁ ଏପରି ଚିତ୍କାର କରିବା ଦେଖି କହିଲି, 'ଆରେ ଚୁପ୍ ରହ, ଏପରି କ'ଣ କହୁଛୁ, କ'ଣ ଗୋଟେ ହେଲା ବୋଲି ଲୋକମାନେ ଧାଇଁ ଆସିବେ ।' କିନ୍ତୁ ସେ କ'ଣ ତାହା ଶୁଣୁଛି ! ତେଣୁ ଶୀଘ୍ର ତା ନିକଟକୁ ଆସି ତାର ବକ୍ଷ ସ୍ପର୍ଶ କରି କହିଲି, 'ଦେ ମା' ଶଳାକୁ ଜଡ଼ କରିଦେ ।'

## ହୃଦୟଙ୍କର ମନର ଜଡ଼ତ୍ୱପ୍ରାପ୍ତି :

ହୃଦୟ କହୁଥିଲେ, ଠାକୁର ଏପରି କହିବା ମାତ୍ରେ ତାଙ୍କର ପୂର୍ବୋକ୍ତ ଦର୍ଶନ ଏବଂ ଆନନ୍ଦ ଯେପରି କେଉଁଠି ଲୁପ୍ତ ହେଲା ଏବଂ ସେ ଆଗେ ଯେମିତି ଥିଲେ, ପୁଣି ସେପରି ହୋଇଗଲେ । ଅପୂର୍ବ ଆନନ୍ଦରୁ ସହସା ବିଚ୍ୟୁତ ହୋଇ ତାଙ୍କର ମନ ବିଷାଦରେ ପୂର୍ଣ୍ଣ ହେଲା ଏବଂ ସେ କାନ୍ଦି କାନ୍ଦି ଠାକୁରଙ୍କୁ କହିବାକୁ ଲାଗିଲେ, ''ମାମୁଁ, ତୁମେ ଏପରି କଲ କାହିଁକି, କାହିଁକି ଜଡ଼ ହେବାକୁ କହିଲ, ଏପରି ଦର୍ଶନାନନ୍ଦ ମୋର ଆଉ କ'ଣ ହେବ ନାହିଁ ?'' ଠାକୁର ସେଥିରେ ତାଙ୍କୁ କହିଲେ, ''ମୁଁ କ'ଣ ତୋତେ ସମ୍ପୂର୍ଣ୍ଣ ଜଡ଼ ହେବାକୁ କହିଛି ? ତୁ ଏବେ ସ୍ଥିର ହୋଇ ରହ— ଏହିକଥା କହିଛି । ସାମାନ୍ୟ ଦର୍ଶନ ଲାଭ କରି ତୁ ଯେଉଁ କାଣ୍ଡ କରି ବସିଲୁ, ସେଥିପାଇଁ ତ' ମୋତେ ଏପରି କହିବାକୁ ହେଲା । ମୁଁ ଯେ ଚବିଶ୍ ଘଣ୍ଟା କେତେ କ'ଣ ଦେଖୁଛି, ମୁଁ କ'ଣ ଏପରି ଗୋଳମାଳ କରେ ? ତୋ'ର ଏବେ ଏପରି ଦର୍ଶନ କରିବାର ସମୟ ହୋଇ ନାହିଁ, ଏବେ ସ୍ଥିର ହୋଇ ରହ, ସମୟ ହେଲେ ପୁଣି କେତେ କ'ଣ ଦେଖିବୁ !''

## ହୃଦୟଙ୍କର ସାଧନାରେ ବିଘ୍ନ :

ଠାକୁରଙ୍କ ପୂର୍ବୋକ୍ତ କଥାରେ ହୃଦୟ ନୀରବ ହେଲେ ମଧ ନିତାନ୍ତ କ୍ଷୁଣ୍ଣ ହେଲେ । ପରେ ଅହଂକାରର ବଶବର୍ତ୍ତୀ ହୋଇ ସେ ଭାବିଲେ, ଯେପରି ହେଉ ସେ ସେହିପରି ଦର୍ଶନ ପୁନର୍ବାର ଲାଭ କରିବା ପାଇଁ ଚେଷ୍ଟା କରିବେ । ତେଣୁ ସେ ଧାନ ଓ ଜପର ମାତ୍ରା ବଢ଼ାଇ ଦେଲେ ଏବଂ ରାତିରେ ପଞ୍ଚବଟୀ ତଳକୁ ଯାଇ ଠାକୁର ଯେଉଁଠାରେ ବସି ଜପ-ଧାନ କରୁଥିଲେ, ସେହି ସ୍ଥାନରେ ବସି ଜଗଦମ୍ବାଙ୍କୁ ଡାକିବେ, ଏପରି ମନସ୍ଥ କଲେ । ଏହା ଭାବି ଦିନେ ସେ ଗଭୀର ରାତିରେ ଶଯ୍ୟାତ୍ୟାଗପୂର୍ବକ ପଞ୍ଚବଟୀ ଗଲେ ଏବଂ ଯାଇ ଠାକୁରଙ୍କ ଆସନରେ ବସି ଧାନ କରିବାକୁ ଲାଗିଲେ । ଏହାର କିଛିକ୍ଷଣ ପରେ ଠାକୁରଙ୍କ ମନରେ ପଞ୍ଚବଟୀତଳକୁ ଆସିବାର ବାସନା ହେବାରୁ ସେ ମଧ ସେଦିଗକୁ ଆସିବାକୁ ଲାଗିଲେ ଏବଂ ସେଠାରେ ପହଞ୍ଚୁ ନ ପହଞ୍ଚୁ ଶୁଣିବାକୁ ପାଇଲେ, ହୃଦୟ କାତର ଭାବରେ ଚିତ୍କାର

କରି ତାଙ୍କୁ ଡାକୁଛି, ''ମାମୁଁ, ମାମୁଁ ପୋଡ଼ିହୋଇ ମଲି, ପୋଡ଼ିହୋଇ ମଲି !'' ତ୍ରସ୍ତପଦରେ ଅଗ୍ରସର ହୋଇ ଠାକୁର ତାଙ୍କ ନିକଟରେ ପହଞ୍ଚି ପଚାରିଲେ, ''କିରେ, କ'ଣ ହେଲା ?'' ହୃଦୟ ଯନ୍ତ୍ରଣାରେ ଅସ୍ଥିର ହୋଇ କହିବାକୁ ଲାଗିଲେ, ''ମାମୁଁ ଏଠାରେ ଧ୍ୟାନ କରିବାକୁ ବସିଲା ମାତ୍ରେ କିଏ ଯେପରି ଏକ ଗାମଲା ନିଆଁ ମୋ ଉପରେ ଢାଳିଦେଲା, ଅସହ୍ୟ ଦାହ-ଯନ୍ତ୍ରଣା ହେଉଛି !'' ଠାକୁର ତାଙ୍କର ଶରୀରରେ ହାତ ବୁଲାଇ କହିଲେ, ''ଯା, ଥଣ୍ଡା ହୋଇଯିବ, ତୁ କାହିଁକି ଏପରି କରୁଛୁ କହତ ? ତୋତେ କହିଥିଲି ମୋର ସେବା କଲେ ହିଁ ତୋର ସବୁ ହେବ ।'' ହୃଦୟ କହୁଥିଲେ, ଠାକୁରଙ୍କ ହସ୍ତସ୍ପର୍ଶରେ ବାସ୍ତବିକ୍ ତାଙ୍କର ସମସ୍ତ ଯନ୍ତ୍ରଣା ତତ୍କ୍ଷଣାତ୍ ଶାନ୍ତ ହେଲା । ଏହାପରେ ସେ ଆଉ କେବେ ପଞ୍ଚବଟୀ ତଳକୁ ଧ୍ୟାନ କରିବାକୁ ଯାଉ ନ ଥିଲେ ଏବଂ ତାଙ୍କ ମନରେ ବିଶ୍ୱାସ ହେଲା ଠାକୁର ତାଙ୍କୁ ଯାହା କହିଛନ୍ତି, ତାର ଅନ୍ୟଥା କଲେ ତାଙ୍କର ଭଲ ହେବ ନାହିଁ ।

### ହୃଦୟଙ୍କର ଦୁର୍ଗାପୂଜା :

ଠାକୁରଙ୍କ କଥାରେ ବିଶ୍ୱାସ ସ୍ଥାପନ କରି ହୃଦୟ ଏବେ ଅନେକାଂଶରେ ଶାନ୍ତିଲାଭ କଲେ ମଧ୍ୟ ମନ୍ଦିରର ଦୈନନ୍ଦିନ କର୍ମଗୁଡ଼ିକ ତାଙ୍କୁ ପୂର୍ବପରି ରୁଚିକର ବୋଧ ହେଲା ନାହିଁ । ତାଙ୍କର ମନ କୌଣସି ନୂତନ କର୍ମ କରି ନବୋଲ୍ଲାସ ଲାଭ କରିବାକୁ ଅନୁସନ୍ଧାନ କରିବାକୁ ଲାଗିଲା । ସନ ୧୨୭୫ ସାଲର ଆଶ୍ୱିନ ମାସ (୧୮୬୮ ଖ୍ରୀଷ୍ଟାବ୍ଦ) ଆଗତ ଦେଖି ସେ ନିଜ ଘରେ ଶାରଦୀୟା ପୂଜା କରିବାକୁ ମନସ୍ଥ କଲେ । ହୃଦୟରାମଙ୍କର ଜ୍ୟେଷ୍ଠ ବୈମାତ୍ରେୟ ଭ୍ରାତା ଗଙ୍ଗାନାରାୟଣଙ୍କର ସେତେବେଳକୁ ମୃତ୍ୟୁ ହୋଇଯାଇଥିଲା ଏବଂ ରାଘବ ମଥୁରବାବୁଙ୍କର ଜମିଦାରୀରେ ଖଜଣା ଆଦାୟ କାର୍ଯ୍ୟରେ ନିଯୁକ୍ତ ରହି ବେଶ୍ କିଛି ଅର୍ଥ ଉପାର୍ଜନ କରୁଥିଲେ । ସୁସମୟ ଫେରିଥିବାରୁ ଘରେ ନୂଆ କରି ଚଣ୍ଡୀ-ମଣ୍ଡପ ତିଆରି ହେବା ସମୟରେ ଗଙ୍ଗାନାରାୟଣ ଇଚ୍ଛା ପ୍ରକାଶ କରିଥିଲେ, ଥରେ ସେ ଜଗଦମ୍ବାଙ୍କୁ ଆଣି ସେଠାରେ ବସାଇବେ; କିନ୍ତୁ ତାଙ୍କର ସେ ଇଚ୍ଛା ପୂର୍ଣ୍ଣ ହୋଇ ନ ଥିଲା । ହୃଦୟ ତାଙ୍କର ଉକ୍ତ ଇଚ୍ଛା ସ୍ମରଣପୂର୍ବକ ଏହା ପୂର୍ଣ୍ଣ କରିବାକୁ ଯତ୍ନବାନ ହେଲେ । କର୍ମୀ ହୃଦୟଙ୍କର ଉକ୍ତ କାର୍ଯ୍ୟରେ ଶାନ୍ତିଲାଭର ସମ୍ଭାବନା ବୁଝି ଠାକୁର ଏକଥାରେ ସମ୍ମତ ହେଲେ ଏବଂ ମଥୁରବାବୁ ହୃଦୟଙ୍କ ଏପରି ଅଭିପ୍ରାୟ ଜାଣିପାରି ତାଙ୍କୁ ଆର୍ଥିକ ସାହାଯ୍ୟ କରିଥିଲେ । ମଥୁରବାବୁ ଏପରି ଅର୍ଥ ସାହାଯ୍ୟ କରିଥିଲେ ହେଁ ପୂଜା ସମୟରେ ଠାକୁରଙ୍କୁ ନିଜ ଘରେ ରଖିବା ନିମିତ୍ତ ବିଶେଷ ଆଗ୍ରହ ପ୍ରକାଶ କରିବାକୁ ଲାଗିଲେ । ହୃଦୟ ଏଥିରେ କ୍ଷୁଣ୍ଣମନରେ ପୂଜା କରିବା ପାଇଁ ଏକାକୀ ଗ୍ରାମକୁ ଯିବାକୁ ପ୍ରସ୍ତୁତ ହେଲେ । ଯିବାବେଳେ ହୃଦୟଙ୍କୁ କ୍ଷୁଣ୍ଣ ଦେଖି ଠାକୁର ତାଙ୍କୁ କହିଥିଲେ, ''ତୁ ଦୁଃଖ କରୁଛୁ କାହିଁକି ? ମୁଁ ପ୍ରତିଦିନ

ସୂକ୍ଷ୍ମ ଶରୀରରେ ତୋର ପୂଜା ଦେଖିବାକୁ ଯିବି, ମୋତେ ଅନ୍ୟ କେହି ଦେଖି ପାରବେ ନାହିଁ, ମାତ୍ର ତୁ ଦେଖିପାରିବୁ । ତୁ ଅନ୍ୟ ଏକ ବ୍ରାହ୍ମଣକୁ ତନ୍ତ୍ରଧାରକ ରଖି ନିଜେ ନିଜ ଭାବ ଅନୁସାରେ ପୂଜା କରିବୁ ଏବଂ ପୂର୍ଣ୍ଣ ଉପବାସ ନ କରି ମଧ୍ୟାହ୍ନରେ କ୍ଷୀର, ଗଙ୍ଗାଜଳ ଓ ମିଶ୍ରି ସରବତ ପାନ କରିବୁ । ଏପରି ପୂଜା କଲେ ଜଗଦମ୍ବା ତୋ'ର ପୂଜା ନିଶ୍ଚୟ ଗ୍ରହଣ କରିବେ ।'' ଏପରି ଭାବରେ ଠାକୁର, କାହା ଦ୍ୱାରା ପ୍ରତିମା ଗଢ଼ାଇବାକୁ ହେବ, କାହାକୁ ତନ୍ତ୍ରଧାରକ କରିବାକୁ ହେବ, କିପରି ଭାବରେ ଅନ୍ୟ ସମସ୍ତ କାର୍ଯ୍ୟ କରିବାକୁ ହେବ—ସେ ସମସ୍ତ କଥା ତନ୍ନ ତନ୍ନ କରି ତାଙ୍କୁ କହିଦେଲେ ଫଳରେ ହୃଦୟ ମହାନନ୍ଦରେ ପୂଜା କରିବା ପାଇଁ ଯାତ୍ରା କଲେ ।

## ଦୁର୍ଗାପୂଜା ଉତ୍ସବ ସମୟରେ ହୃଦୟ ଠାକୁରଙ୍କୁ ଦେଖିବା :

ଘରେ ପହଞ୍ଚି ହୃଦୟ ଠାକୁରଙ୍କର କଥାନୁସାରେ ସମସ୍ତ ଆୟୋଜନ କଲେ ଏବଂ ଷଷ୍ଠୀଦିନ ଦେବୀଙ୍କର ବୋଧନ, ଅଧିବାସ ଇତ୍ୟାଦି କାର୍ଯ୍ୟ ଶେଷକରି ନିଜେ ପୂଜାରେ ବ୍ରତୀ ହେଲେ । ସପ୍ତମୀବିହିତ ପୂଜା ସାରି ରାତିରେ ନୀରାଜନ କରିବା ସମୟରେ ହୃଦୟ ଦେଖିଲେ, ଠାକୁର ଜ୍ୟୋତିର୍ମୟ ଶରୀରରେ ପ୍ରତିମାଙ୍କ ପାର୍ଶ୍ୱରେ ଭାବାବିଷ୍ଟ ହୋଇ ଦଣ୍ଡାୟମାନ ହୋଇଛନ୍ତି । ହୃଦୟ କହୁଥିଲେ, ଏପରି ପ୍ରତିଦିନ ସେହି ସମୟରେ ଏବଂ ସନ୍ଧିପୂଜା ସମୟରେ ସେ ଦେବୀପ୍ରତିମା ପାର୍ଶ୍ୱରେ ଠାକୁରଙ୍କର ଦିବ୍ୟଦର୍ଶନ ଲାଭ କରି ମହା ଉତ୍ସାହରେ ପୂର୍ଣ୍ଣ ହୋଇଥିଲେ । ପୂଜା ଶେଷ ହେବାର ଅଳ୍ପ ଦିନପରେ ହୃଦୟ ଦକ୍ଷିଣେଶ୍ୱରକୁ ଫେରିଲେ ଏବଂ ସେହି ବିଷୟର ସମସ୍ତ କଥା ଠାକୁରଙ୍କୁ କହିଲେ । ଠାକୁର ସେଥିରେ ତାଙ୍କୁ କହିଥିଲେ, ''ଆରତି ଓ ସନ୍ଧିପୂଜା ସମୟରେ ତୋ'ର ପୂଜା ଦେଖିବା ପାଇଁ ପ୍ରାଣ ବ୍ୟାକୁଳ ହୋଇ ମୋର ଭାବ ହୋଇଯାଉଥିଲା ଏବଂ ଅନୁଭବ କରୁଥିଲି ଯେପରି ଜ୍ୟୋତିର୍ମୟ ଶରୀରରେ ଜ୍ୟୋତିର୍ମୟ ପଥ ଦେଇ ତୋ'ର ଚଣ୍ଡୀମଣ୍ଡପରେ ଉପସ୍ଥିତ ହୋଇଅଛି ।''

## ଦୁର୍ଗାପୂଜା ଉତ୍ସବର ଶେଷକଥା :

ହୃଦୟ କହୁଥିଲେ, ଠାକୁର ତାଙ୍କୁ ଥରେ ଭାବାବିଷ୍ଟ ହୋଇ କହିଥିଲେ, ''ତୁ ତିନିବର୍ଷ ପୂଜା କରିବୁ ।''—ଘଟଣା ମଧ୍ୟ ବାସ୍ତବିକ ସେହିପରି ହୋଇଥିଲା । ଠାକୁରଙ୍କର କଥା ନ ଶୁଣି ଚତୁର୍ଥ ଥର ପୂଜାର ଆୟୋଜନ କରିବାକୁ ଯାଇ ଏପରି ବିଘ୍ନ ଘଟିଲା ଯେ, ଶେଷରେ ବାଧହୋଇ ତାଙ୍କୁ ପୂଜା ବନ୍ଦ କରିବାକୁ ପଡ଼ିଥିଲା । ଯାହାହେଉ, ପ୍ରଥମ ବର୍ଷ ପୂଜାର କିଛିଦିନ ପରେ ହୃଦୟ ପୁନର୍ବାର ଦାରପରିଗ୍ରହ କରି ପୂର୍ବପରି ଦକ୍ଷିଣେଶ୍ୱରର ପୂଜାକାର୍ଯ୍ୟରେ ଏବଂ ଠାକୁରଙ୍କର ସେବାରେ ମନୋନିବେଶ କରିଥିଲେ ।

# ଊନବିଂଶ ଅଧ୍ୟାୟ

## ସ୍ୱଜନବିୟୋଗ

### ରାମକୁମାରଙ୍କର ପୁତ୍ର ଅକ୍ଷୟଙ୍କ କଥା :

ଠାକୁରଙ୍କର ଅଗ୍ରଜ ରାମକୁମାରଙ୍କର ପୁତ୍ର ଅକ୍ଷୟ ସହିତ ଆମେ ଏହାପୂର୍ବରୁ ପାଠକମାନଙ୍କୁ ସାମାନ୍ୟଭାବରେ ପରିଚିତ କରାଇଛୁ । ପୂଜ୍ୟପାଦ ଆଚାର୍ଯ୍ୟ ଶ୍ରୀମତ୍ ତୋତାପୁରୀଙ୍କର ଦକ୍ଷିଣେଶ୍ୱର ଆସିବାର ସ୍ୱଳ୍ପଦିନ ପରେ ୧୮୬୮ ଖ୍ରୀଷ୍ଟାବ୍ଦର ପ୍ରଥମ ଭାଗରେ ଅକ୍ଷୟ ଦକ୍ଷିଣେଶ୍ୱର ଆସି ବିଷ୍ଣୁମନ୍ଦିରରେ ପୂଜକର ପଦ ଗ୍ରହଣ କରିଥିଲେ । ସେତେବେଳେ ତାଙ୍କର ବୟସ ସତର ବର୍ଷ ହେବ । ତାଙ୍କ ସମ୍ବନ୍ଧରେ କେତୋଟି କଥା ଏଠାରେ କହିବା ପ୍ରୟୋଜନ ।

### ଅକ୍ଷୟଙ୍କ ରୂପ :

ଜନ୍ମ ହେବା ବେଳେ ଅକ୍ଷୟଙ୍କ ମା'ଙ୍କର ମୃତ୍ୟୁ ହେବାରୁ ମାତୃହୀନ ବାଳକ ନିଜ ଆତ୍ମୀୟବର୍ଗଙ୍କର ବିଶେଷ ଆଦରର ପାତ୍ର ହୋଇଥିଲେ । ୧୮୫୨ ଖ୍ରୀଷ୍ଟାବ୍ଦରେ ଠାକୁରଙ୍କର କଲିକତାକୁ ପ୍ରଥମ ଆଗମନ ସମୟରେ ଅକ୍ଷୟଙ୍କ ବୟସ ତିନି ଚାରି ବର୍ଷ ମାତ୍ର ଥିଲା । ତେଣୁ କଲିକତା ଆସିବା ପୂର୍ବରୁ ଦୁଇ ତିନି ବର୍ଷ ବୟସ ପର୍ଯ୍ୟନ୍ତ ଠାକୁର ଅକ୍ଷୟକୁ କ୍ରୋଡ଼ରେ ଧରି ମଣିଷ କରିବାକୁ ଓ ସର୍ବଦା ଆଦରଯତ୍ନ କରିବାକୁ ସୁଯୋଗ ପାଇଥିଲେ । କିନ୍ତୁ ପିତା ରାମକୁମାର ଅକ୍ଷୟକୁ କେବେହେଲେ କୋଳ କରି ନ ଥିଲେ, କାରଣ ପଚାରିଲେ ସେ କହୁଥଲେ, ''ମାୟା ବଢ଼ାଇବାର ପ୍ରୟୋଜନ ନାହିଁ; ଏପିଲା ବଞ୍ଚିବ ନାହିଁ'' ! ପରେ ଠାକୁର ଯେତେବେଳେ ସଂସାର ଭୁଲି, ନିଜକୁ ଭୁଲି ସାଧନାରେ ନିମଗ୍ନ ରହିଲେ, ସେତେବେଳେ ସୁନ୍ଦର ଶିଶୁ ତାଙ୍କ ଅଲକ୍ଷ୍ୟରେ କୈଶୋର ଅତିକ୍ରମପୂର୍ବକ ଯୌବନରେ ପଦାର୍ପଣ କରି ଅଧିକତର ପ୍ରିୟଦର୍ଶନ ହୋଇ ଉଠିଥିଲେ । ଠାକୁର ଏବଂ ତାଙ୍କର ଆତ୍ମୀୟମାନଙ୍କଠାରୁ ଶୁଣିଥିଲୁ ଅକ୍ଷୟ ଅତି ସୁପୁରୁଷ ଥିଲେ । ସେମାନେ କହୁଥିଲେ, ଅକ୍ଷୟଙ୍କ ଦେହର ବର୍ଣ୍ଣ ଯେପରି ଉଜ୍ଜ୍ୱଳ ଥିଲା, ଅଙ୍ଗପ୍ରତ୍ୟଙ୍ଗର ଗଠନ ମଧ୍ୟ ସେପରି ସୁଠାମ ଏବଂ ସୁଲଳିତ ଥିଲା — ଦେଖିଲେ ଜୀବନ୍ତ ଶିବମୂର୍ତ୍ତି ବୋଲି ଜଣାପଡୁଥିଲେ ।

### ଅକ୍ଷୟଙ୍କର ଶ୍ରୀରାମଚନ୍ଦ୍ରଙ୍କଠାରେ ଭକ୍ତି ଏବଂ ସାଧନାନୁରାଗ :

ବାଲ୍ୟକାଳରୁ ଅକ୍ଷୟଙ୍କର ମନ ଶ୍ରୀରାମଚନ୍ଦ୍ରଙ୍କ ପ୍ରତି ବିଶେଷ ଅନୁରକ୍ତ ଥିଲା । କୁଳଦେବତା ରଘୁବୀରଙ୍କ ସେବାରେ ସେ ପ୍ରତିଦିନ ଅନେକ ସମୟ କଟାଉଥିଲେ । ତେଣୁ ଦକ୍ଷିଣେଶ୍ୱର ଆସି ଯେତେବେଳେ ସେ ପୂଜାକାର୍ଯ୍ୟରେ ବ୍ରତୀ ହେଲେ, ସେତେବେଳେ ତାଙ୍କର ମନ ମୁତାବକ କାର୍ଯ୍ୟରେ ହିଁ ନିଯୁକ୍ତ

ହୋଇଥିଲେ । ଠାକୁର କହୁଥିଲେ, ''ଶ୍ରୀଶ୍ରୀରାଧାଗୋବିନ୍ଦଜୀଙ୍କ ପୂଜା କରିବାକୁ ବସି ଅକ୍ଷୟ ଧ୍ୟାନରେ ଏପରି ତନ୍ମୟ ହେଉଥିଲେ ଯେ, ସେସମୟରେ ବିଷ୍ଣୁଘରେ ଅନେକ ଲୋକଙ୍କର ସମାଗମ ହେଲେ ମଧ୍ୟ ସେ ଜାଣିପାରୁ ନ ଥିଲେ— ଦୁଇଘଣ୍ଟା କାଳ ଏପରି ଅତିବାହିତ ହେବାପରେ ତାଙ୍କର ହୋସ୍ ଆସୁଥିଲା !'' ହୃଦୟଙ୍କ ନିକଟରୁ ଶୁଣିଛୁ ମନ୍ଦିରର ନିତ୍ୟ ପୂଜା ସୁସମ୍ପନ୍ନ କରିବା ପରେ ଅକ୍ଷୟ ପଞ୍ଚବଟୀତଳକୁ ଆସି ଅନେକ ସମୟ ଶିବପୂଜାରେ ଅତିବାହିତ କରୁଥିଲେ; ପରେ ସ୍ୱହସ୍ତରେ ରନ୍ଧନ କରି ଭୋଜନ-ସମାପନାନ୍ତେ ଶ୍ରୀମଦ୍‌ଭାଗବତ ପାଠରେ ନିବିଷ୍ଟ ହେଉଥିଲେ । ଏହା ବ୍ୟତୀତ ନବାନୁରାଗର ପ୍ରେରଣାରେ ସେ ଏହି ସମୟରେ ନ୍ୟାସ ଓ ପ୍ରାଣାୟାମ ଏତେ ଅତିମାତ୍ରାରେ କରୁଥିଲେ ଯେ ତାଙ୍କର କଣ୍ଠତାଲୁଦେଶ ଫୁଲି ଉଠି ବେଳେବେଳେ ରକ୍ତ ନିର୍ଗତ ହେଉଥିଲା । ଅକ୍ଷୟଙ୍କର ଏପରି ଭକ୍ତି ଏବଂ ଈଶ୍ୱରଙ୍କଠାରେ ଅନୁରାଗ ତାଙ୍କୁ ଠାକୁରଙ୍କର ବିଶେଷ ପ୍ରିୟପାତ୍ର କରିଥିଲା ।

### ଅକ୍ଷୟଙ୍କର ବିବାହ :

ଏପରି ବର୍ଷ ପରେ ବର୍ଷ ଗଡ଼ିଯାଇ ୧୮୬୯ ଖ୍ରୀଷ୍ଟାବ୍ଦର ଅର୍ଦ୍ଧାଧିକ ଅତୀତ ହେଲା । ଅକ୍ଷୟଙ୍କର ଦାଦା ରାମେଶ୍ୱର ଅକ୍ଷୟଙ୍କ ମନର ଭାବ ବୁଝି ତାଙ୍କ ବିବାହ ଦେବା ପାଇଁ ପାତ୍ରୀ ଅନ୍ୱେଷଣ କରିବାକୁ ଲାଗିଲେ । କାମାରପୁକୁରର ଅନତିଦୂରରେ କୁଚେକୋଲ ନାମକ ଗ୍ରାମରେ ଉପଯୁକ୍ତା ପାତ୍ରୀ ସନ୍ଧାନ ପାଇ ରାମେଶ୍ୱର ଅକ୍ଷୟଙ୍କୁ ନେବା ପାଇଁ ଦକ୍ଷିଣେଶ୍ୱର ଆସିଲେ, ସେତେବେଳେ ଚୈତ୍ର ମାସ । ଚୈତ୍ର ମାସରେ ଯାତ୍ରା ନିଷିଦ୍ଧ ବୋଲି ଆପତ୍ତି ଉଠିଲେ ମଧ୍ୟ ରାମେଶ୍ୱର ତାହା ମାନିଲେ ନାହିଁ । ସେ କହିଲେ, ବିଦେଶରୁ ନିଜ ଘରକୁ ଆସିବାରେ ଏହି ନିଷେଧ ବଚନ ମାନିବାର ଦରକାର ନାହିଁ । ଘରକୁ ଫେରିବାର ଅନତିକାଳ ପରେ ୧୨୭୬ ସାଲ (୧୮୬୯ ଖ୍ରୀଷ୍ଟାବ୍ଦ) ବୈଶାଖ ମାସରେ ଅକ୍ଷୟର ବିବାହ ହେଲା ।

### ବିବାହ ପରେ ଅକ୍ଷୟଙ୍କର କଠିନ ପୀଡ଼ା ଓ ତାଙ୍କର ଦକ୍ଷିଣେଶ୍ୱରକୁ ପ୍ରତ୍ୟାବର୍ତ୍ତନ :

ବିବାହର କେତେମାସ ପରେ ଶ୍ୱଶୁରାଳୟକୁ ଯାଇ ଅକ୍ଷୟଙ୍କର କଠିନ ପୀଡ଼ା ହେଲା । ଶ୍ରୀଯୁକ୍ତ ରାମେଶ୍ୱର ଖବର ପାଇ ତାଙ୍କୁ କାମାରପୁକୁର ଆଣିଲେ ଏବଂ ଚିକିତ୍ସାଦ୍ୱାରା ଆରୋଗ୍ୟ କରାଇ ପୁନରାୟ ଦକ୍ଷିଣେଶ୍ୱରକୁ ପଠାଇଲେ । ଏଠାକୁ ଆସି ସେ ପୂର୍ବସ୍ୱାସ୍ଥ୍ୟ ଫେରି ପାଇଲେ ଏବଂ ସ୍ୱାସ୍ଥ୍ୟର ବିଶେଷ ଉନ୍ନତି ହେଉଅଛି ବୋଲି ବୋଧ ହେବାକୁ ଲାଗିଲା । କିନ୍ତୁ ଏପରି ସମୟରେ ଦିନେ ତାଙ୍କୁ ପୁଣି ଜ୍ୱର ହେଲା । ଡାକ୍ତର-ବୈଦ୍ୟ କହିଲେ, ସାମାନ୍ୟ ଜ୍ୱର, ଶୀଘ୍ର ଭଲ ହୋଇଯିବ ।

**ଅକ୍ଷୟଙ୍କ ଦ୍ୱିତୀୟ ଥର ପୀଡ଼ା—**
**ଅକ୍ଷୟଙ୍କ ମୃତ୍ୟୁ ଘଟଣା ଠାକୁରଙ୍କୁ ପୂର୍ବରୁ ଜଣାଥିଲା :**

ହୃଦୟ କହୁଥିଲେ, ଅକ୍ଷୟ ଶ୍ୱଶୁର ଘରେ ଯାଇ ରୋଗାକ୍ରାନ୍ତ ହେବାଶୁଣି ଠାକୁର ଏହା ପୂର୍ବରୁ କହିଥିଲେ, ‘‘ହୃଦୁ, ଲକ୍ଷଣ ବଡ଼ ଖରାପ, ରାକ୍ଷସଗଣବିଶିଷ୍ଟା କୌଣସି କନ୍ୟା ସହିତ ବିବାହ ହୋଇଅଛି, ପିଲାଟା ମରିଯିବ ଦେଖିପାରୁଛି !’’ ତିନି ଚାରି ଦିନ ବିତିଗଲେ ମଧ୍ୟ ଅକ୍ଷୟର ଜ୍ୱର ଛାଡ଼ିଲା ନାହିଁ ଦେଖି ଠାକୁର ହୃଦୟଙ୍କୁ ଡାକି କହିଲେ, ‘‘ହୃଦୁ, ଡାକ୍ତରମାନେ ବୁଝିପାରୁ ନାହାନ୍ତି ଯେ ଅକ୍ଷୟର ବିକାର ହୋଇଅଛି, ତେଣୁ ଭଲ ଚିକିତ୍ସକ ଡକାଇ ମନ ବୁଝିବା ପାଇଁ ଚିକିତ୍ସାକର, କିନ୍ତୁ ପିଲାଟା ବଞ୍ଚିବ ନାହିଁ ।’’

**ଅକ୍ଷୟ ବଞ୍ଚିବେ ନାହିଁ ଶୁଣି ହୃଦୟଙ୍କ ଆଶଙ୍କା ଓ ଆଚରଣ :**

ହୃଦୟ କହୁଥିଲେ, ଠାକୁରଙ୍କର ଏକଥା ଶୁଣି ମୁଁ କହିଲି, ‘ଛି ଛି ମାମୁଁ, ତୁମ ମୁହଁରୁ ଏପରି କଥା କାହିଁକି ବାହାରିଲା ?’ —ଏହାର ଉତ୍ତରରେ ସେ କହିଲେ, ‘‘ମୁଁ କ’ଣ ଇଚ୍ଛା କରି ଏକଥା କହିଲି ? ମା’ ଯେପରି ଜଣାନ୍ତି ଓ କୁହାନ୍ତି, ଇଚ୍ଛା ନ ଥିଲେ ମଧ୍ୟ ମୋତେ ସେପରି କହିବାକୁ ପଡ଼େ । ମୋର କ’ଣ ଇଚ୍ଛା ଅକ୍ଷୟର ମୃତ୍ୟୁ ହେଉ ?’’

**ଅକ୍ଷୟଙ୍କ ମୃତ୍ୟୁ ଏବଂ ଠାକୁରଙ୍କର ଆଚରଣ :**

ଠାକୁରଙ୍କର ଏପରି କଥା ଶୁଣି ହୃଦୟ ବିଶେଷ ଉଦ୍‌ବିଗ୍ନ ହୋଇପଡ଼ିଲେ ଏବଂ ଭଲ ଭଲ ଚିକିତ୍ସକମାନଙ୍କୁ ଅଣାଇ ଅକ୍ଷୟଙ୍କ ପୀଡ଼ା–ଆରୋଗ୍ୟ ହେବା ନିମିତ୍ତ ନାନାପ୍ରକାର ଚେଷ୍ଟା କଲେ । କିନ୍ତୁ ରୋଗ କ୍ରମଶଃ ବୃଦ୍ଧି ପାଇବାକୁ ଲାଗିଲା । ଏପରି ପ୍ରାୟ ମାସେକାଳ ଭୋଗିବା ପରେ ଅକ୍ଷୟଙ୍କର ଅନ୍ତିମକାଳ ଆଗତ ଦେଖି ଠାକୁର ତାଙ୍କର ଶଯ୍ୟା ପାର୍ଶ୍ୱରେ ଉପସ୍ଥିତ ହୋଇ କହିଲେ, ‘‘ଅକ୍ଷୟ, କହ ଗଙ୍ଗା ନାରାୟଣ ଓଁ ରାମ !’’ ଅକ୍ଷୟ ଏକ ଦୁଇ କରି ତିନିଥର ସେହି ମନ୍ତ୍ର ଆବୃତ୍ତି କରିବା ପରେ ତାଙ୍କର ପ୍ରାଣବାୟୁ ଦେହରୁ ନିଷ୍କ୍ରାନ୍ତ ହେଲା । ହୃଦୟଙ୍କ ନିକଟରୁ ଶୁଣିଥିଲୁ, ଅକ୍ଷୟର ମୃତ୍ୟୁ ପରେ ହୃଦୟ ଯେତେ କାନ୍ଦିଥିଲେ, ଠାକୁର ଭାବାବିଷ୍ଟ ହୋଇ ସେତିକି ହସିବାକୁ ଲାଗିଲେ !

**ଅକ୍ଷୟଙ୍କ ମୃତ୍ୟୁରେ ଠାକୁରଙ୍କର ମନ କଷ୍ଟ :**

ପ୍ରିୟଦର୍ଶନ ପୁତ୍ରସଦୃଶ ଅକ୍ଷୟଙ୍କ ମୃତ୍ୟୁ ଉଚ୍ଚ ଭାବଭୂମିରୁ ଦର୍ଶନ କରି ଠାକୁର ଏପରି ହସୁଥିଲେ ମଧ୍ୟ ପ୍ରାଣରେ ବିଷମ ଆଘାତ ଯେ ଅନୁଭବ କରି ନାହାନ୍ତି, ତାହା ନୁହେଁ । ବହୁକାଳପରେ ଆମମାନଙ୍କ ନିକଟରେ ଏହି ଘଟଣା ଉଲ୍ଲେଖ କରି ସେ ସମୟ ସମୟରେ କହିଥିଲେ ଯେ, ସେହି ସମୟରେ

ଭାବାବେଶରେ ମୃତ୍ୟୁକୁ ଅବସ୍ଥାନ୍ତର ପ୍ରାପ୍ତି ମାତ୍ର ବୋଲି ଦେଖିବାକୁ ପାଇଥିଲେ ମଧ୍ୟ ଭାବଭଙ୍ଗ ହେଲାପରେ ସାଧାରଣ ଭୂମିରେ ଅବରୋହଣ କରିବା କାଳରେ ଅକ୍ଷୟଙ୍କ ବିୟୋଗରେ ସେ ବିଶେଷ ଅଭାବ ବୋଧ କରିଥିଲେ ।[୧] ଅକ୍ଷୟଙ୍କ ଦେହତ୍ୟାଗ ମଥୁରବାବୁଙ୍କର ବୈଠକଖାନା ଗୃହରେ ହୋଇଥିଲା ବୋଲି ସେ ଏହାପରେ ଆଉ କେବେହେଲେ ସେଠାରେ ବାସ କରିପାରି ନ ଥିଲେ ।

## ଠାକୁରଙ୍କର ଭାଇ ରାମେଶ୍ୱରଙ୍କର ପୂଜକପଦ ଗ୍ରହଣ :

ଅକ୍ଷୟଙ୍କର ମୃତ୍ୟୁପରେ ଠାକୁରଙ୍କର ମଧ୍ୟମଗ୍ରଜ ରାମେଶ୍ୱର ଭଟ୍ଟାଚାର୍ଯ୍ୟ ଦକ୍ଷିଣେଶ୍ୱର କାଳୀମନ୍ଦିରରେ ରାଧାଗୋବିନ୍ଦଜୀଉଙ୍କ ପୂଜକପଦ ଗ୍ରହଣ କରିଥିଲେ । କିନ୍ତୁ ସଂସାରର ସମସ୍ତ ପ୍ରକାର ତତ୍ତ୍ୱାବଧାନ ତାଙ୍କ ଉପରେ ନ୍ୟସ୍ତ ଥିବାରୁ ସେ ସବୁ ସମୟରେ ଦକ୍ଷିଣେଶ୍ୱରରେ ରହିପାରୁ ନ ଥିଲେ । ବିଶ୍ୱାସୀ ବ୍ୟକ୍ତି ହାତରେ ଉକ୍ତକାର୍ଯ୍ୟର ଭାରାର୍ପଣପୂର୍ବକ ସେ ମଝିରେ ମଝିରେ କାମାରପୁକୁରକୁ ଯାଉଥିଲେ । ଶୁଣିଛୁ, ଶ୍ରୀରାମଚନ୍ଦ୍ର ଚଟ୍ଟୋପାଧ୍ୟାୟ ଏବଂ ଦୀନନାଥ ନାମକ ଜଣେ ବ୍ୟକ୍ତି ସେ ସମୟରେ ତାଙ୍କର ସ୍ଥଳାଭିଷିକ୍ତ ହୋଇ ସେହି କାର୍ଯ୍ୟ ସମ୍ପନ୍ନ କରୁଥିଲେ ।

## ମଥୁରବାବୁଙ୍କ ସହିତ ଠାକୁରଙ୍କର ରାଣାଘାଟ ଯିବା ଏବଂ ସେଠାରେ ଦରିଦ୍ରନାରାୟଣ ସେବା :

ଅକ୍ଷୟଙ୍କର ମୃତ୍ୟୁର ଅଳ୍ପଦିନ ପରେ ଶ୍ରୀଯୁକ୍ତ ମଥୁର ଠାକୁରଙ୍କୁ ସଙ୍ଗରେ ନେଇ ନିଜର ଜମିଦାରୀ ମହଲକୁ ଏବଂ ଗୁରୁଗୃହକୁ ଗମନ କରିଥିଲେ । ଠାକୁରଙ୍କ ମନରୁ ଅକ୍ଷୟଙ୍କ ବିୟୋଗଜନିତ ଅଭାବବୋଧ ପ୍ରଶମିତ କରିବା ପାଇଁ ହିଁ ବୋଧହୁଏ ସେ ଏପରି ଉପାୟ ଅବଲମ୍ବନ କରିଥିଲେ । କାରଣ ପରମଭକ୍ତ ମଥୁର ଗୋଟିଏ ଦିଗରେ ଯେପରି ଠାକୁରଙ୍କୁ ଦେବତା ଜ୍ଞାନରେ ସମସ୍ତ ବିଷୟରେ ତାଙ୍କର ଅନୁବର୍ତ୍ତୀ ହୋଇ ଚଳୁଥିଲେ, ସେପରି ଅନ୍ୟ ଦିଗରେ ତାଙ୍କୁ ସାଂସାରିକ ବିଷୟରେ ଅନଭିଜ୍ଞ ବାଳକ ବୋଧ କରି ସର୍ବତୋଭାବରେ ରକ୍ଷଣୀୟ ବୋଲି ବିଚାର କରୁଥିଲେ । ମଥୁରବାବୁଙ୍କର ଜମିଦାରୀ ମହଲ ପରିଦର୍ଶନରେ ଯାଇ ଠାକୁର ଗୋଟିଏ ଜାଗାରେ ପଲ୍ଲୀବାସୀ ସ୍ତ୍ରୀ–ପୁରୁଷମାନଙ୍କର ଦୁର୍ଦ୍ଦଶା ଓ ଅଭାବ ଦେଖି ସେମାନଙ୍କର ଦୁଃଖରେ କାତର ହୋଇପଡ଼ିଲେ ଏବଂ ମଥୁରବାବୁଙ୍କ ଦ୍ୱାରା ସେମାନଙ୍କୁ ନିମନ୍ତ୍ରଣ କରି ପ୍ରତ୍ୟେକଙ୍କୁ 'ମୁଣ୍ଡ ପାଇଁ ତେଲ, ଖଣ୍ଡିଏ କରି ନୁଆ ଲୁଗା ଏବଂ ଦିନକ ପାଇ ଉଦରପୂର୍ଣ୍ଣ ଭୋଜନ' ଦାନ କରାଇଥିଲେ । ହୃଦୟ କହିଥିଲେ, ରାଣାଘାଟ ନିକଟସ୍ଥ କଲାଇଘାଟ ନାମକ ସ୍ଥାନରେ ଉକ୍ତ ଘଟଣା ଘଟିଥିଲା । ମଥୁରବାବୁ ଏହି ସମୟରେ ଠାକୁରଙ୍କୁ ସଙ୍ଗରେ ନେଇ ନୌକା କରି ଚୂର୍ଣ୍ଣି ନଦୀର କେନାଲରେ ଭ୍ରମଣ କରୁଥିଲେ ।

---

୧. ଗୁରୁଭାବ—ପୂର୍ବାର୍ଦ୍ଧ, ୧ମ ଅଧ୍ୟାୟ ।

## ମଥୁରବାବୁଙ୍କର ନିଜ ଘର ଏବଂ ଗୁରୁଗୃହ ଦର୍ଶନ :

ହୃଦୟଙ୍କ ନିକଟରୁ ଶୁଣିଛି, ସାତକ୍ଷୀରାର ନିକଟରେ ସୋନାବେଡ଼େ ନାମକ ଗ୍ରାମରେ ମଥୁରଙ୍କର ପୈତୃକ ବାସସ୍ଥାନ ଥିଲା । ଏହି ଗ୍ରାମର ସନ୍ନିକଟ ସମସ୍ତଗ୍ରାମ ସେତେବେଳେ ମଥୁରବାବୁଙ୍କର ଜମିଦାରୀଭୁକ୍ତ ଥିଲା । ଠାକୁରଙ୍କୁ ସଙ୍ଗରେ ନେଇ ମଥୁର ଏହି ସମୟରେ ସେହି ସ୍ଥାନକୁ ଯାଇଥିଲେ । ଏଠାରୁ ତାଙ୍କର ଗୁରୁଗୃହ ଅଧିକ ଦୂରବର୍ତ୍ତୀ ନ ଥିଲା । ବିଷୟସମ୍ପତ୍ତି ବିଭାଗ ନେଇ ଏହି ସମୟରେ ଗୁରୁବଂଶୀୟମାନଙ୍କ ମଧ୍ୟରେ ବିବାଦ ଚାଲୁଥିଲା । ମଥୁରବାବୁଙ୍କୁ ଉକ୍ତ ବିବାଦ ମେଣ୍ଟାଇବା ପାଇଁ ସେମାନେ ଆମନ୍ତ୍ରଣ କରିଥିଲେ । ଗ୍ରାମର ନାମ ତାଲାମାଗରୋ । ମଥୁରବାବୁ ସେଠାକୁ ଯିବାବେଳେ ଠାକୁର ଓ ହୃଦୟଙ୍କୁ ନିଜ ହସ୍ତୀ ଉପରେ ଆରୋହଣ କରାଇ ସ୍ୱୟଂ ଶିବିକାରେ ଆରୋହଣ କରି ଯାଇଥିଲେ । ମଥୁରଙ୍କ ଗୁରୁପୁତ୍ରଗଣଙ୍କର ସଯତ୍ନ ପରିଚର୍ଯ୍ୟାରେ କିଛି ସପ୍ତାହ ଏଠାରେ ଅତିବାହିତ କରି ଠାକୁର ଦକ୍ଷିଣେଶ୍ୱର ପୁନରାୟ ଫେରି ଆସିଥିଲେ ।[୧]

## କଲୁଟୋଲାର ହରିସଭାରେ ଠାକୁରଙ୍କର ଶ୍ରୀଚୈତନ୍ୟଦେବଙ୍କର ଆସନ ଅଧିକାର ଓ କାଲନା, ନବଦ୍ୱୀପ ଆଦି ଦର୍ଶନ :

ମଥୁରବାବୁଙ୍କର ପୈତୃକ ବାସସ୍ଥାନ ଏବଂ ଗୁରୁସ୍ଥାନ ପରିଦର୍ଶନ କରି ଫେରିବାର ଅଳ୍ପଦିନ ପରେ ଠାକୁରଙ୍କୁ ନେଇ କଲିକତାର କଲୁଟୋଲା ନାମକ ଗ୍ରାମରେ ଏକ ବିଶେଷ ଘଟଣା ଘଟିଥିଲା । ପୂର୍ବୋକ୍ତ ପଲ୍ଲୀବାସୀ ଶ୍ରୀଯୁକ୍ତ କାଳୀନାଥ ଦତ୍ତ ବା ଧରଙ୍କର ଘରଠାରେ ସେତେବେଳେ ହରିସଭାର ଅଧିବେଶନ ହେଉଥିଲା । ଠାକୁର ନିମନ୍ତ୍ରିତ ହୋଇ ସେଠାକୁ ଯାଇ ଭାବାବେଶରେ ଶ୍ରୀଶ୍ରୀମହାପ୍ରଭୁଙ୍କ ନିମିତ୍ତ ନିର୍ଦ୍ଦିଷ୍ଟ ଆସନ ଗ୍ରହଣ କରିଥିଲେ । ଏହି ଘଟଣାର ବିସ୍ତାରିତ ବିବରଣ ଆମେ ପାଠକଙ୍କୁ ଅନ୍ୟତ୍ର ଦେଇଅଛୁ ।[୨] ଏହାର ଅନତିକାଳ ପରେ ଠାକୁର ଶ୍ରୀନବଦ୍ୱୀପଧାମ ଦର୍ଶନ କରିବାକୁ ଇଚ୍ଛା ପ୍ରକାଶ କରିବାରୁ ମଥୁରବାବୁ ତାଙ୍କୁ ସଙ୍ଗରେ ନେଇ କାଲନା, ନବଦ୍ୱୀପ ପ୍ରଭୃତି ସ୍ଥାନକୁ ଯାଇଥିଲେ । କାଲନାକୁ ଯାଇ ଠାକୁର କିପରି ଭଗବାନଦାସ ବାବାଜୀ ନାମକ ସିଦ୍ଧ ଭକ୍ତଙ୍କ ସହିତ ମିଳିତ ହୋଇଥିଲେ ଏବଂ ନବଦ୍ୱୀପରେ ପହଞ୍ଚି ତାଙ୍କର କିପରି ଅଦ୍ଭୁତ ଦର୍ଶନ ହୋଇଥିଲା, ସେସମସ୍ତ ଆମେ ଅନ୍ୟତ୍ର କହିଛୁ । ସମ୍ଭବତଃ ୧୮୭୦ ଖ୍ରୀଷ୍ଟାବ୍ଦରେ ଠାକୁର ସେସମସ୍ତ ପୁଣ୍ୟ ସ୍ଥାନକୁ ଯାଇଥିଲେ । ନବଦ୍ୱୀପ ନିକଟରେ

---

୧. ହୃଦୟ କହିଥିଲେ, ଯିବା ସମୟରେ ରାସ୍ତା ଖରାପ ଥିଲା ବୋଲି ଶ୍ରୀଯୁକ୍ତ ମଥୁର ଠାକୁରଙ୍କୁ ସବାରୀରେ ବସାଇ ସ୍ୱୟଂ ହାତି ଉପରେ ଯାତ୍ରା କରିଥିଲେ ଏବଂ ଗ୍ରାମରେ ପହଞ୍ଚିବା ପରେ ଠାକୁରଙ୍କ କୌତୁହଳ-ପରିତୃପ୍ତି ପାଇଁ ତାଙ୍କୁ କେବେ କେବେ ହାତୀ ଉପରେ ବସାଇଥିଲେ ।

୨. ଗୁରୁଭାବ—ଉତ୍ତରାର୍ଦ୍ଧ, ୩ୟ ଅଧ୍ୟାୟ ।

ଗଙ୍ଗାର ପଠା ଦେଇଯିବା ବେଳେ ଠାକୁରଙ୍କର ଯେପରି ଗଭୀର ଭାବାବେଶ ଉପସ୍ଥିତ ହୋଇଥିଲା, ନବଦ୍ୱୀପଠାରେ ସେପରି ହୋଇ ନ ଥିଲା । ମଥୁରବାବୁ ଏବିଷୟର କାରଣ ପଚାରିବାରୁ ଠାକୁର କହିଥିଲେ, ଶ୍ରୀଶ୍ରୀଚୈତନ୍ୟଦେବଙ୍କର ଲୀଳାସ୍ଥଳ ପୁରାତନ ନବଦ୍ୱୀପ ଗଙ୍ଗାଗର୍ଭରେ ଲୀନ ହୋଇଯାଇଛି; ଏହି ସବୁ 'ପଠା ବା ଚଡ଼ା'ର ସ୍ଥାନରେ ସେ ସମସ୍ତ ବିଦ୍ୟମାନ ଥିଲା, ତେଣୁ ସେଠାରେ ପହଞ୍ଚି ତାଙ୍କର ଗଭୀର ଭାବାବେଶ ହୋଇଥିଲା ।

## ମଥୁରବାବୁଙ୍କର ନିଷ୍କାମ ଭକ୍ତି :

ଏକାଦିକ୍ରମେ ଚଉଦ ବର୍ଷ ଧରି ଠାକୁରଙ୍କ ସେବାରେ ସର୍ବାନ୍ତଃକରଣରେ ନିଯୁକ୍ତ ରହି ମଥୁରବାବୁଙ୍କର ମନ ଏବେ କେତେଦୂର ନିଷ୍କାମ ଭାବରେ ଉପନୀତ ହୋଇଥିଲା, ସେବିଷୟରେ ଦୃଷ୍ଟାନ୍ତସ୍ୱରୂପ ହୃଦୟ ଆମକୁ ଗୋଟିଏ ଘଟଣା କହିଥିଲେ । ପାଠକଙ୍କୁ ଏଠାରେ ତାହା କହୁଛୁ ।

## ଉକ୍ତବିଷୟକ ଦୃଷ୍ଟାନ୍ତ :

ଥରେ ମଥୁରବାବୁ ଶରୀରର ସନ୍ଧିସ୍ଥଳବିଶେଷରେ ଫୋଟକା ହୋଇ ଶଯ୍ୟାଗତ ହୋଇଥିଲେ । ଠାକୁରଙ୍କୁ ଏହି ସମୟରେ ଦେଖିବାକୁ ତାଙ୍କର ଅତିଶୟ ଆଗ୍ରହ ଦେଖି ହୃଦୟ ଏକଥା ଠାକୁରଙ୍କୁ କହିଲେ ଠାକୁର ଶୁଣି କହିଲେ, ''ମୁଁ ଯାଇ କ'ଣ କରିବି, ତାକୁ ଆରୋଗ୍ୟ କରି ଦେବାର ମୋର କ'ଣ ଶକ୍ତି ଅଛି ?'' ଠାକୁର ନ ଯିବା ଦେଖି ମଥୁର ଲୋକ ପଠାଇ ବାରମ୍ବାର କାତର ପ୍ରାର୍ଥନା ଜଣାଇବାକୁ ଲାଗିଲେ । ତାଙ୍କର ଏପରି ବ୍ୟାକୁଳତାରେ ଠାକୁରଙ୍କୁ ଅଗତ୍ୟା ଯିବାକୁ ହେଲା । ଠାକୁର ପହଞ୍ଚିବାରୁ ମଥୁରଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେ ଅତ୍ୟନ୍ତ କଷ୍ଟରେ ବିଛଣାରୁ ଉଠି ତକିଆ ଆଉଜି ବସିଲେ ଏବଂ କହିଲେ, ''ବାବା, ଟିକେ ପଦଧୂଳି ଦିଅ ।''

ଠାକୁର କହିଲେ, ''ମୋର ପାଦଧୂଳି ନେଲେ କ'ଣ ହେବ, ଏଥିରେ ତୁମର ଘା' କ'ଣ ଆରୋଗ୍ୟ ହେବ ? ''

ମଥୁରବାବୁ ଉତ୍ତର ଦେଲେ, ''ବାବା, ମୁ କ'ଣ ଏପରି ତୁମର ପଦଧୂଳି ନେଇ ଘା' ଭଲ କରିବା ପାଇଁ ଚାହୁଁଛି ? ସେଥିପାଇଁ ତ ଡାକ୍ତର ଅଛନ୍ତି । ମୁଁ ଭବସାଗର ପାର ହେବା ପାଇଁ ତୁମର ଶ୍ରୀଚରଣର ଧୂଳି ଚାହୁଁଛି ।''

ଏକଥା ଶୁଣିବା ମାତ୍ରେ ଠାକୁର ଭାବାବିଷ୍ଟ ହୋଇ ପଡ଼ିଲେ । ମଥୁରବାବୁ ଏତିକିବେଳେ ତାଙ୍କର ପାଦରେ ମସ୍ତକ ସ୍ଥାପନପୂର୍ବକ ନିଜକୁ କୃତାର୍ଥ ଜ୍ଞାନ କଲେ । ତାଙ୍କର ଦୁଇ ନୟନରୁ ଅନନ୍ଦାଶ୍ରୁ ନିର୍ଗତ ହେବାକୁ ଲାଗିଲା ।

## ଠାକୁରଙ୍କ ସହିତ ମଥୁରଙ୍କର ଗଭୀର ପ୍ରେମ ସମ୍ବନ୍ଧ :

ମଥୁରବାବୁ ଠାକୁରଙ୍କୁ ଏବେ କେତେଦୂର ଭକ୍ତିବିଶ୍ୱାସ କରୁଥିଲେ ସେ ବିଷୟରେ ନାନା କଥା ଆମେ ଠାକୁରଙ୍କଠାରୁ ଏବଂ ହୃଦୟଙ୍କ ନିକଟରୁ ଶୁଣିଛୁ । ଗୋଟିଏ କଥାରେ କହିଲେ, ସେ ତାଙ୍କୁ ଇହକାଳ ଏବଂ ପରକାଳର ସମ୍ବଳ ଓ ଗତି ବୋଲି ଦୃଢ଼ ଧାରଣା କରି ନେଇଥିଲେ । ଅନ୍ୟପକ୍ଷରେ ଠାକୁରଙ୍କର କୃପା ମଧ୍ୟ ତାଙ୍କ ପ୍ରତି ସେପରି ଅସୀମ ଥିଲା । ସ୍ୱାଧୀନଚେତା ଠାକୁର ମଥୁରବାବୁଙ୍କର କୌଣସି କାର୍ଯ୍ୟରେ ବେଳେବେଳେ ବିରକ୍ତ ହେଲେ ମଧ୍ୟ ଏସବୁ ଭୁଲି ପୁଣି ତାଙ୍କର ସମସ୍ତ ଅନୁରୋଧ ରକ୍ଷାପୂର୍ବକ ତାଙ୍କର ଐହିକ ଓ ପାରତ୍ରିକ କଲ୍ୟାଣ ନିମନ୍ତେ ଚେଷ୍ଟା କରୁଥିଲେ । ଠାକୁର ଏବଂ ମଥୁରଙ୍କର ସମ୍ବନ୍ଧ ଯେ କେତେ ଗଭୀର ପ୍ରେମପୂର୍ଣ୍ଣ ଏବଂ ଅବିଚ୍ଛେଦ୍ୟ ଥିଲା, ତାହା ନିମ୍ନଲିଖିତ ଘଟଣାରୁ ବୁଝିହେବ ।

## ଉକ୍ତବିଷୟକ ଦୃଷ୍ଟାନ୍ତ :

ଦିନେ ଠାକୁର ଭାବାବିଷ୍ଟ ହୋଇ ମଥୁରବାବୁଙ୍କୁ କହିଲେ, 'ମଥୁର ତୁମେ ଯେତେଦିନ (ଜୀବିତ) ଥିବ, ମୁଁ ସେତେଦିନ ଏଠାରେ (ଦକ୍ଷିଣେଶ୍ୱର କାଳୀମନ୍ଦିରରେ) ରହିବି ।' ମଥୁରବାବୁ ଏକଥା ଶୁଣି ଆତଙ୍କିତ ହୋଇ ପଡ଼ିଲେ । କାରଣ ସେ ଜାଣିଥିଲେ, ସାକ୍ଷାତ୍ ଜଗଦମ୍ବା ହିଁ ଠାକୁରଙ୍କର ଶରୀର ଅବଲମ୍ବନରେ ତାଙ୍କୁ ଏବଂ ତାଙ୍କର ପରିବାରବର୍ଗଙ୍କୁ ସର୍ବଦା ରକ୍ଷା କରୁଛନ୍ତି— ସୁତରାଂ ଠାକୁରଙ୍କର ଏପରି କଥା ଶୁଣି ବୁଝିଲେ, ତାଙ୍କ ଅବର୍ତ୍ତମାନରେ ଠାକୁର ତାଙ୍କର ପରିବାରବର୍ଗଙ୍କୁ ତ୍ୟାଗ କରିଦେବେ । ଅନନ୍ତର ସେ ଦୀନ ଭାବରେ ଠାକୁରଙ୍କୁ କହିଲେ, 'ସେ କି କଥା ବାବା, ମୋର ପତ୍ନୀ ଏବଂ ପୁତ୍ର ଦ୍ୱାରକାନାଥ ମଧ୍ୟ ତୁମକୁ ତ ବିଶେଷ ଭକ୍ତି କରନ୍ତି ।' ମଥୁରଙ୍କୁ କାତର ଦେଖି ଠାକୁର କହିଲେ, 'ଆଚ୍ଛା ତୁମର ପତ୍ନୀ ଏବଂ ଦୋୟରି (ଦ୍ୱାରକାନାଥ) ଯେତେଦିନ ଥିବେ, ମୁଁ ସେତେଦିନ ରହିବି !' ଘଟଣାଟି ମଧ୍ୟ ଠିକ୍ ଏପରି ହୋଇଥିଲା । ଶ୍ରୀମତୀ ଜଗଦମ୍ବା ଦାସୀ ଓ ଦ୍ୱାରକାନାଥଙ୍କର ଦେହାବସାନର ଅଳ୍ପଦିନ ପରେ ଠାକୁର ଚିରକାଳ ନିମିତ୍ତ ଦକ୍ଷିଣେଶ୍ୱର ପରିତ୍ୟାଗ କରିଥିଲେ । ଶ୍ରୀମତୀ ଜଗଦମ୍ବା ଦାସୀ ୧୮୮୧ ଖ୍ରୀଷ୍ଟାବ୍ଦରେ ମୃତ୍ୟୁ ମୁଖରେ ପତିତ ହୋଇଥିଲେ ।[୧] ଏହା ପରେ ତିନିବର୍ଷରୁ ସାମାନ୍ୟ ଅଧିକ କିଛି ଦିନ ଠାକୁର ଦକ୍ଷିଣେଶ୍ୱରରେ ଅବସ୍ଥାନ କରିଥିଲେ ।

---

୧. ''Jagadamba died on or about 1st January, 1881, intestate, leaving defendant Trayluksha, then the only son of Mathura, her surviving.'' Quoted form Plaintiff's statement in High Court, Suit No. 203 of 1889.

## ଉକ୍ତବିଷୟକ ଦ୍ୱିତୀୟ ଦୃଷ୍ଟାନ୍ତ :

ଅନ୍ୟ ଏକ ଦିନ ମଥୁରବାବୁ ଠାକୁରଙ୍କୁ କହିଥିଲେ, 'କାହାନ୍ତି ବାବା, ତୁମେ ଯେ କହିଥିଲ ତୁମର ଭକ୍ତମାନେ ଆସିବେ, କିନ୍ତୁ ସେମାନେ ତ କେହି ଏପର୍ଯ୍ୟନ୍ତ ଆସିଲେ ନାହିଁ ?'' ଠାକୁର ଏକଥା ଶୁଣି କହିଲେ, 'କେଜାଣି ବାବୁ, ମା' ସେମାନଙ୍କୁ କେବେ ଆଣିବେ—ସେମାନେ ସବୁ ଆସିବେ, ଏକଥା ମୋତେ ମା' ନିଜେ ଜଣାଇଛନ୍ତି । ଅନ୍ୟ ସବୁ ଯାହା ଦେଖାଇଛନ୍ତି, ସେସବୁ ଗୋଟି ଗୋଟି କରି ସତ ହୋଇଛି, ଏକଥା କାହିଁକି ସତ ହେଉ ନାହିଁ କିଏ ଜାଣେ !' ଏକଥା କହି ଠାକୁର ବିଷଣ୍ଣ ମନରେ ଭାବିଲେ ତାଙ୍କର ଏହି ଦର୍ଶନଟି କ'ଣ ଭୁଲ ହୋଇଗଲା ? ମଥୁର ଠାକୁରଙ୍କୁ ବିଷଣ୍ଣ ଦେଖି ମନରେ ବିଶେଷ ଦୁଃଖ ପାଇଲେ । ଭାବିଲେ ଏକଥା ତାଙ୍କର କହିବାଟା ଠିକ୍ ହୋଇ ନାହିଁ । ପରେ ବାଳକଭାବାପନ୍ନ ଠାକୁରଙ୍କୁ ସାନ୍ତ୍ୱନା ଦେବାପାଇଁ କହିଲେ, 'ସେମାନେ ଆସନ୍ତୁ କି ନ ଆସନ୍ତୁ, ବାବା, ମୁଁ ତ ତୁମର ଚିର ଅନୁଗତ ଭକ୍ତ ହୋଇ ରହିଛି—ତେବେ ତୁମର ଦର୍ଶନ ସତ୍ୟ ହେଲା ନାହିଁ କିପରି ? ମୁଁ ଏକୁଟିଆ ଶହେ ଜଣ ଭକ୍ତଙ୍କ ସହିତ ସମାନ, ତେଣୁ ମା' କହିଥିଲେ ଅନେକ ଭକ୍ତ ଆସିବେ ।'' ଠାକୁର କହିଲେ, 'କେଜାଣି ବାବୁ, ତୁମେ ଯାହା କହିଛ ତା ବୋଧହୁଏ ହେବ !' ମଥୁର ଏପ୍ରସଙ୍ଗରେ ଆଉ ଆଗକୁ ନ ବଢ଼ି ଅନ୍ୟ କଥା ପକାଇ ଠାକୁରଙ୍କୁ ଭୁଲାଇ ଦେଇଥିଲେ ।

## ମଥୁରବାବୁଙ୍କର ଏପରି ନିଷ୍କାମ ଭକ୍ତି ଲାଭ କରିବାରେ ଆଶ୍ଚର୍ଯ୍ୟ କିଛି ନାହିଁ—ଏସମ୍ବନ୍ଧରେ ଶାସ୍ତ୍ରୀୟ ମତ :

ଠାକୁରଙ୍କ ନିରନ୍ତର ସଙ୍ଗଗୁଣରେ ମଥୁରଙ୍କ ମନରେ କେତେଦୂର ଭାବପରିବର୍ତ୍ତନ ଘଟିଥିଲା, ତାହା ଆମେ 'ଗୁରୁଭାବ' ଗ୍ରନ୍ଥର ଅନେକ ସ୍ଥଳରେ ପାଠକଙ୍କୁ କହିଛୁ । ଶାସ୍ତ୍ର କହନ୍ତି, ମୁକ୍ତ ପୁରୁଷଙ୍କର ସେବକମାନେ ତଦନୁଷ୍ଠିତ ଶୁଭ କର୍ମସମୂହର ଫଳର ଅଧିକାରୀ ହୁଅନ୍ତି । ଅତଏବ ଅବତାରପୁରୁଷଙ୍କର ସେବକମାନେ ଯେ ବିବିଧ ଦୈବୀ ସମ୍ପଦର ଅଧିକାରୀ ହେବେ, ଏଥିରେ ବୈଚିତ୍ର୍ୟ କ'ଣ ?

## ମଥୁରଙ୍କ ଦେହତ୍ୟାଗ :

ସମ୍ପଦ–ବିପଦ, ସୁଖ–ଦୁଃଖ, ମିଳନ–ବିୟୋଗ, ଜୀବନ–ମୃତ୍ୟୁରୂପକ ତରଙ୍ଗସମାକୁଳ କାଳର ଅନନ୍ତ ପ୍ରବାହ କ୍ରମେ ୧୮୭୧ ଖ୍ରୀଷ୍ଟାବ୍ଦ ଧରାଧାମରେ ଉପସ୍ଥିତ ହେଲା । ଠାକୁରଙ୍କ ସହିତ ମଥୁରଙ୍କର ସମ୍ବନ୍ଧ ଘନିଷ୍ଠତର ହୋଇ ଏହି ବର୍ଷ ପଞ୍ଚଦଶ ବର୍ଷରେ ପଦାର୍ପଣ କଲା । ବୈଶାଖ, ଜ୍ୟେଷ୍ଠ ଅତୀତ ହୋଇ ଆଷାଢ଼ ମାସର ଅଧାଦିନ ଅତୀତ ଗର୍ଭରେ ଲୀନ ହେଲା, ଏହି ସମୟରେ ଶ୍ରୀଯୁକ୍ତ ମଥୁର

ଜ୍ୱରରୋଗରେ ଶଯ୍ୟାଶାୟୀ ହେଲେ । କ୍ରମେ ଏହା ବୃଦ୍ଧି ହୋଇ ସାତ ଆଠ ଦିନରେ ବିକାରରେ ପରିଣତ ହେଲା ଏବଂ ମଥୁରଙ୍କର ବାକ୍‌ରୋଧ ହେଲା । ଠାକୁର ଆଗରୁ ହିଁ ବୁଝିଥିଲେ, ମା' ତାଙ୍କର ଭକ୍ତଙ୍କୁ ତାଙ୍କର ସ୍ନେହପୂର୍ଣ୍ଣ କୋଳରେ ଗ୍ରହଣ କରୁଛନ୍ତି—ମଥୁରଙ୍କର ଭକ୍ତିବ୍ରତର ଉଦ୍‌ଯାପନ ହୋଇଅଛି । ସେଥିପାଇଁ ହୃଦୟଙ୍କୁ ପ୍ରତିଦିନ ଦେଖିବାକୁ ପଠାଉଥିଲେ ମଧ ସ୍ୱୟଂ ମଥୁରଙ୍କୁ ଦର୍ଶନ କରିବାକୁ ଦିନେ ମଧ ଗଲେ ନାହିଁ । କ୍ରମେ ଶେଷଦିନ ଉପସ୍ଥିତ ହେଲା—ଅନ୍ତିମକାଳ ଆଗତ ଦେଖି ମଥୁରଙ୍କୁ କାଳୀଘାଟ ନିଆଗଲା । ସେଦିନ ଠାକୁର ହୃଦୟଙ୍କୁ ମଧ ଦେଖିବାକୁ ପଠାଇଲେ ନାହିଁ, କିନ୍ତୁ ଅପରାହ୍ଣ ହେବାରୁ ଦୁଇ ତିନ ଘଣ୍ଟାକାଳ ଗଭୀର ଭାବରେ ନିମଗ୍ନ ରହିଲେ ଏବଂ ଜ୍ୟୋତିର୍ମୟବର୍ତ୍ମରେ ଦିବ୍ୟ ଶରୀରରେ ଭକ୍ତଙ୍କ ପାର୍ଶ୍ୱରେ ଉପନୀତ ହୋଇ ତାଙ୍କୁ କୃତାର୍ଥ କଲେ—ବହୁପୁଣ୍ୟାର୍ଜିତ ଲୋକରେ ତାଙ୍କୁ ସ୍ୱୟଂ ଆରୂଢ଼ କରାଇଲେ ।

### ଠାକୁରଙ୍କର ଭାବାବେଶରେ ଉକ୍ତ ଘଟଣା ଦର୍ଶନ :

ଭାବଭଙ୍ଗ ପରେ ଠାକୁର ହୃଦୟଙ୍କୁ ପାଖକୁ ଡାକିଲେ (ସେତେବେଳେ ପାଞ୍ଚଟା ବାଜି ଯାଇଥାଏ) ଏବଂ କହିଲେ, "ଶ୍ରୀଶ୍ରୀଜଗଦମ୍ବାଙ୍କର ସଖୀମାନେ ମଥୁରକୁ ସାଦରରେ ଦିବ୍ୟ ରଥରେ ଉଠାଇ ନେଇଗଲେ—ତାହାର ତେଜ ଶ୍ରୀଶ୍ରୀଦେବୀ ଲୋକକୁ ଗମନ କଲା ।" ପରେ ଗଭୀର ରାତ୍ରିରେ କାଳୀମନ୍ଦିରର କର୍ମଚାରୀମାନେ ଫେରି ଆସି ହୃଦୟଙ୍କୁ ସମ୍ବାଦ ଦେଲେ, ମଥୁରବାବୁ ଅପରାହ୍ଣ ପାଞ୍ଚଟା ସମୟରେ ଦେହରକ୍ଷା କରିଛନ୍ତି ।[୧] ଏହି ପ୍ରକାରରେ ପୁଣ୍ୟଲୋକକୁ ଗମନ କଲେ ମଧ ଭୋଗ-ବାସନା ସମ୍ପୂର୍ଣ୍ଣ କ୍ଷୟ ନ ହୋଇଥିବାରୁ ପରମଭକ୍ତ ମଥୁରଙ୍କୁ ପୁନରାୟ ଧରାଧାମରେ ଫେରି ଆସିବାକୁ ହେବ, ଠାକୁରଙ୍କ ଶ୍ରୀମୁଖରୁ ଏକଥା ଆମେମାନେ ଅନ୍ୟସମୟରେ ଶୁଣିଅଛୁ ଏବଂ ପାଠକଙ୍କୁ ଅନ୍ୟତ୍ର କହିଅଛୁ ।[୨]

---

୧. "Mathura Mohan Biswas died in July, 1871, intestate, leaving his surviving Jagadamba, sole widow, Bhupal since deceased, a son by his another wife who had predeceased him-and Dwarka Nath Biswas since deceased defendant Trayluksha Nath and Thakurdas alias Dhurmadas, three sons by the said Jagadamba."

Quoted from plaintiff's statement in High Court Suit No. 230 of 1889-Shyama Charan Biswas vs. Trayluksha Nath Biswas, Gurudas, Kalidas, Durgadas and Kumudini.

୨. ଗୁରୁଭାବ—ପୂର୍ବାର୍ଦ୍ଧ, ୭ମ ଅଧ୍ୟାୟ ।

# ବିଂଶ ଅଧ୍ୟାୟ

## ଷୋଡ଼ଶୀ–ପୂଜା

ମଥୁର ଚାଲିଗଲେ, ଦକ୍ଷିଣେଶ୍ୱର କାଳୀବାଡ଼ୀରେ ମାନବର ଜୀବନ-ପ୍ରବାହ କିନ୍ତୁ ସମଭାବରେ ପ୍ରବାହିତ ହେବାକୁ ଲାଗିଲା । ଦିନ, ମାସ ଅତୀତ ହୋଇ କ୍ରମେ ଛଅମାସ ବିତିଗଲା ଏବଂ ୧୨୭୮ ସାଲର (୧୮୭୨ ଖ୍ରୀଷ୍ଟାବ୍ଦ) ଫାଲ୍‌ଗୁନ ମାସ ପହଞ୍ଚିଲା । ଠାକୁରଙ୍କ ଜୀବନରେ ଗୋଟିଏ ବିଶେଷ ଘଟଣା ଏହି ସମୟରେ ଘଟିଥିଲା । ଏହା ଜାଣିବାକୁ ହେଲେ ଆମମାନଙ୍କୁ ଜୟରାମବାଟୀ ଗ୍ରାମରେ ଠାକୁରଙ୍କର ଶ୍ୱଶୁରାଳୟକୁ ଥରେ ଯିବାକୁ ହେବ ।

### ବିବାହ ପରେ ଠାକୁରଙ୍କୁ ପ୍ରଥମ ଦର୍ଶନ ସମୟରେ ଶ୍ରୀଶ୍ରୀମା' ବାଳିକା ମାତ୍ର ଥିଲେ :

ଆମେ ଏହାପୂର୍ବରୁ କହିଛୁ ୧୮୬୭ ଖ୍ରୀଷ୍ଟାବ୍ଦରେ ଠାକୁର ଯେତେବେଳେ ବ୍ରାହ୍ମଣୀ ଭୈରବୀ ଏବଂ ହୃଦୟକୁ ସାଙ୍ଗରେ ଧରି ନିଜର ଜନ୍ମସ୍ଥାନ କାମାରପୁକୁର ଗ୍ରାମକୁ ଆସିଥିଲେ, ସେତେବେଳେ ତାଙ୍କର ଆତ୍ମୀୟା ରମଣୀଗଣ ତାଙ୍କର ପତ୍ନୀଙ୍କୁ ସେଠାକୁ ଆଣିଥିଲେ । କହିବାକୁ ଗଲେ ବିବାହ ପରେ ଏହି ସମୟରେ ଶ୍ରୀଶ୍ରୀମାତାଠାକୁରାଣୀଙ୍କର ପ୍ରଥମ ସ୍ୱାମୀସନ୍ଦର୍ଶନ ହୋଇଥିଲା । କାମାରପୁକୁର ଅଞ୍ଚଳର ବାଳିକାମାନଙ୍କ ସହିତ କଲିକତାର ବାଳିକାମାନଙ୍କୁ ତୁଳନା କରିବାର ସୁଯୋଗ ଯେଉଁମାନେ ପାଇଛନ୍ତି, ସେମାନେ ଦେଖିଛନ୍ତି, କଲିକତା ଅଞ୍ଚଳରେ ବାଳିକାମାନଙ୍କର ଦେହ ଓ ମନର ପରିଣତି ସ୍ୱଳ୍ପ ବୟସରେ ହୋଇଥାଏ, କିନ୍ତୁ କାମାରପୁକୁର ପ୍ରଭୃତି ଗ୍ରାମମାନଙ୍କରେ ବାଳିକାମାନଙ୍କର ସେପରି ହୋଇ ନ ଥାଏ । ଚଉଦ ଏବଂ ବେଳେ ବେଳେ ପନ୍ଦର ଓ ଷୋଳ ବର୍ଷର ବାଳିକାମାନଙ୍କର ମଧ୍ୟ ସେଠାରେ ଯୌବନାବସ୍ଥା ପୂର୍ଣ୍ଣ ଭାବରେ ଆସି ନ ଥାଏ ଏବଂ ଶରୀର ପରି ମନର ପରିଣତି ମଧ୍ୟ ବିଳମ୍ବରେ ହୋଇଥାଏ ।

### ଗ୍ରାମ୍ୟ ବାଳିକାମାନଙ୍କର ବିଳମ୍ବରେ ଶରୀର–ମନର ପରିଣତି ହୋଇଥାଏ :

ପିଞ୍ଜରାବଦ୍ଧ ପକ୍ଷିଣୀମାନଙ୍କ ପରି ସ୍ୱଳ୍ପପରିସର ସ୍ଥାନରେ କାଳଯାପନ କରିବାକୁ ବାଧ୍ୟ ନ ହୋଇ, ପବିତ୍ର ନିର୍ମଳ ଗ୍ରାମ୍ୟ ବାୟୁ ସେବନ ଏବଂ ଗ୍ରାମ ମଧ୍ୟରେ ଯଥା ତଥା ସ୍ୱଚ୍ଛନ୍ଦ ବିହାରପୂର୍ବକ ସ୍ୱାଭାବିକଭାବରେ ଜୀବନ ଅତିବାହିତ କରିବାରୁ ବୋଧହୁଏ ଏପରି ହୋଇଥାଏ ।

### ଠାକୁରଙ୍କୁ ପ୍ରଥମଥର ଦେଖି ଶ୍ରୀଶ୍ରୀମା'ଙ୍କର ମନର ଭାବ :

ପ୍ରାୟ ଚଉଦବର୍ଷ ବୟସରେ ପ୍ରଥମଥର ସ୍ୱାମୀସନ୍ଦର୍ଶନ ସମୟରେ ଶ୍ରୀମତୀ ମାତାଠାକୁରାଣୀ ନିତାନ୍ତ ବାଳିକାସ୍ୱଭାବସମ୍ପନ୍ନା ଥିଲେ । ଦାମ୍ପତ୍ୟ-ଜୀବନର ଗଭୀର ଉଦ୍ଦେଶ୍ୟ ଏବଂ ଦାୟିତ୍ୱବୋଧ ବୁଝିବା ପାଇଁ ଶକ୍ତି ତାଙ୍କଠାରେ ସେତେବେଳେ ବିକାଶୋନ୍ମୁଖ ହୋଇଥିଲା । ପବିତ୍ରା ବାଳିକା ଦେହବୁଦ୍ଧିବିରହିତ ଠାକୁରଙ୍କର ଦିବ୍ୟ ସଙ୍ଗ ଏବଂ ନିଃସ୍ୱାର୍ଥ ଆଦରଯତ୍ନଲାଭରେ ସେହି ସମୟରେ ଅନିର୍ବଚନୀୟ ଆନନ୍ଦରେ ଉଲ୍ଲସିତା ହୋଇଉଠିଥିଲେ । ଠାକୁରଙ୍କର ସ୍ତ୍ରୀଭକ୍ତମାନଙ୍କ ନିକଟରେ ସେ ଏହି ଉଲ୍ଲାସ କଥା ଅନେକ ସମୟରେ ପ୍ରକାଶ କରି କହିଥିଲେ, ''ହୃଦୟମଧ୍ୟରେ ଆନନ୍ଦର ପୂର୍ଣ୍ଣକୁମ୍ଭ ଯେପରି ସ୍ଥାପିତ ହୋଇରହିଛି, ସେହି ସମୟରେ ସର୍ବଦା ଏପରି ଅନୁଭବ କରୁଥିଲି — ସେହି ଧୀର ସ୍ଥିର ଦିବ୍ୟ ଉଲ୍ଲାସରେ ଅନ୍ତର କେତେଦୂର କିପରି ପୂର୍ଣ୍ଣ ରହୁଥିଲା ତାହା କଥାରେ ବୁଝାଇ ହେବ ନାହିଁ ।''

### ଉପରୋକ୍ତ ଭାବନେଇ ଶ୍ରୀଶ୍ରୀମା'ଙ୍କର ଜୟରାମବାଟୀରେ ରହିବା କଥା :

କେତେ ମାସ ପରେ ଠାକୁର ଯେତେବେଳେ କାମାରପୁକୁରରୁ କଲିକତା ଫେରିଲେ, ବାଳିକା ସେତେବେଳେ ଅନନ୍ତ ଆନନ୍ଦସମ୍ପଦର ଅଧିକାରିଣୀ ହୋଇଛନ୍ତି — ଏହିପରି ଅନୁଭବ କରୁ କରୁ ପିତ୍ରାଳୟକୁ ଫେରି ଆସିଲେ । ପୂର୍ବୋକ୍ତ ଉଲ୍ଲାସର ଉପଲବ୍ଧିରେ ତାଙ୍କର ଚାଲିଚଳନ, ଆଚରଣାଦି ସକଳ ଚେଷ୍ଟା ଭିତରେ ଏବେ ଏକ ପରିବର୍ତ୍ତନ ଯେ ସମୁପସ୍ଥିତ ହୋଇଥିଲା, ଏକଥା ଆମେ ବେଶ୍ ବୁଝିପାରୁ । କିନ୍ତୁ ସାଧାରଣ ମାନବ ଏହା ଦେଖିପାରିଥିଲେ କି ନାହିଁ ସନ୍ଦେହ । କାରଣ ଏହା ତାଙ୍କୁ ଚପଳା ନ କରି ଶାନ୍ତସ୍ୱଭାବା କରିଥିଲା, ପ୍ରଗଲ୍ଭା ନ କରି ଚିନ୍ତାଶୀଳା କରିଥିଲା, ସ୍ୱାର୍ଥଦୃଷ୍ଟି-ନିବଦ୍ଧା ନ କରି ନିଃସ୍ୱାର୍ଥ-ପ୍ରେମିକା କରିଥିଲା ଏବଂ ଅନ୍ତରରୁ ସର୍ବପ୍ରକାର ଅଭାବବୋଧ ତିରୋହିତ କରି ମନୁଷ୍ୟଙ୍କର ଦୁଃଖ କଷ୍ଟ ସହିତ ଅନନ୍ତ ସମବେଦନାସମ୍ପନ୍ନା କରି କ୍ରମେ ତାଙ୍କୁ କରୁଣାର ସାକ୍ଷାତ୍ ପ୍ରତିମାରେ ପରିଣତ କରିଥିଲା । ମାନସିକ ଉଲ୍ଲାସପ୍ରଭାବରେ ଅଶେଷ ଶାରୀରିକ କଷ୍ଟକୁ ତାଙ୍କର କଷ୍ଟ ବୋଲି ମନେ ହେଉ ନ ଥିଲା ଏବଂ ଆତ୍ମୀୟବର୍ଗଙ୍କ ନିକଟରୁ ଆଦର-ଯତ୍ନର ପ୍ରତିଦାନ ନ ପାଇଲେ ମନରେ ଦୁଃଖ ଆସୁ ନ ଥିଲା । ଏପରି ସମସ୍ତ ବିଷୟରେ ଅଳ୍ପରେ ସନ୍ତୁଷ୍ଟ ରହି ବାଳିକା ନିଜ ମଧ୍ୟରେ ନିଜେ ବୁଡ଼ି ରହି ସେତେବେଳେ ପିତ୍ରାଳୟରେ କାଳ କଟାଇବାକୁ ଲାଗିଲେ । କିନ୍ତୁ ଶରୀର ସେଠାରେ ଥିଲେ ମଧ୍ୟ ତାଙ୍କର ମନ ଠାକୁରଙ୍କର ପଦାନୁସରଣ କରି ଏବେଠାରୁ ଦକ୍ଷିଣେଶ୍ୱରରେ ହିଁ ରହିଥିଲା । ଠାକୁରଙ୍କୁ ଦେଖିବା ପାଇଁ ଏବଂ ତାଙ୍କ ନିକଟରେ ପହଞ୍ଚିବା ପାଇଁ ବେଳେବେଳେ ମନରେ ପ୍ରବଳ ବାସନା ଉଦୟ ହେଉଥିଲେ ମଧ୍ୟ

ସେ ତାହା ସମ୍ବରଣପୂର୍ବକ ଧୈର୍ଯ୍ୟାବଲମ୍ବନ କରୁଥିଲେ; ଭାବୁଥିଲେ, ପ୍ରଥମ ଦର୍ଶନରେ ଯିଏ ତାଙ୍କୁ କୃପା କରି ଏତେ ଭଲପାଇଥିଲେ, ସେ ତାଙ୍କୁ ଭୁଲିବେ ନାହିଁ—ସମୟ ଆସିଲେ ହିଁ ସେ ତାଙ୍କୁ ନିଜ ନିକଟକୁ ଡାକିନେବେ । ଏହିପରି ଦିନପରେ ଦିନ ଗଡ଼ିଚାଲିଲା ଏବଂ ହୃଦୟରେ ବିଶ୍ୱାସ ସ୍ଥିର ରଖି ସେ ସେହି ଶୁଭ ଦିନର ପ୍ରତୀକ୍ଷା କରିବାକୁ ଲାଗିଲେ ।

## ଏହି ସମୟରେ ଶ୍ରୀଶ୍ରୀମା'ଙ୍କର ମନୋବେଦନାର କାରଣ ଏବଂ ଦକ୍ଷିଣେଶ୍ୱରକୁ ଯିବାର ସଂକଳ୍ପ :

ଗୋଟିକ ପରେ ଗୋଟିଏ କରି ଚାରି ବର୍ଷ ବିତିଗଲା । ଆଶା ଏବଂ ପ୍ରତୀକ୍ଷାର ପ୍ରବଳ ପ୍ରବାହ ବାଳିକାର ମନରେ ସମଭାବରେ ପ୍ରବାହିତ ହେବାକୁ ଲାଗିଲା । ତାଙ୍କର ଶରୀର କିନ୍ତୁ ମନ ପରି ସମଭାବରେ ରହିଲା ନାହିଁ, ଦିନକୁ ଦିନ ପରିବର୍ତ୍ତିତ ହୋଇ ୧୨୭୮ ବଙ୍ଗାବ୍ଦ (୧୮୭୨ ଖ୍ରୀଷ୍ଟାବ୍ଦ) ପୌଷ ମାସରେ ଏହା ତାଙ୍କୁ ଅଷ୍ଟାଦଶ ବର୍ଷିୟା ଯୁବତୀରେ ପରିଣତ କଲା । ଦେବତୁଲ୍ୟ ସ୍ୱାମୀଙ୍କର ପ୍ରଥମ ସନ୍ଦର୍ଶନଜନିତ ଆନନ୍ଦ ତାଙ୍କୁ ଜୀବନର ଦୈନନ୍ଦିନ ସୁଖ-ଦୁଃଖରୁ ବହୁ ଉଚ୍ଚରେ ଉଠାଇ ରଖିଥିଲେ ମଧ୍ୟ ସଂସାରରେ ଆବିଳତାହୀନ ଆନନ୍ଦ କେଉଁଠି ଅଛି ?—ଗ୍ରାମର ପୁରୁଷ ଲୋକମାନେ ପରସ୍ପର ଭିତରେ କଥାବାର୍ତ୍ତା ହେଲା ବେଳେ ଯେତେବେଳେ ତାଙ୍କ ସ୍ୱାମୀଙ୍କୁ ଉନ୍ମତ୍ତ ବୋଲି କହୁଥିଲେ, 'ପିନ୍ଧିବା ଲୁଗା ଫୋପାଡ଼ି ଦେଇ ହରି ହରି କହି ବୁଲୁଛନ୍ତି' ବୋଲି ନାନାକଥା ଆଲୋଚନା କରୁଥିଲେ, ଅଥବା ସମବୟସ୍କା ରମଣୀଗଣ ଯେତେବେଳେ ତାଙ୍କୁ ପାଗଳର ସ୍ତ୍ରୀ କହି, କରୁଣା ବା ଉପେକ୍ଷାର ପାତ୍ରୀ ବିବେଚନା କରୁଥିଲେ, ସେତେବେଳେ ମୁହଁରେ କିଛି ନ କହିଲେ ମଧ୍ୟ ତାଙ୍କର ଅନ୍ତରରେ ପ୍ରଚଣ୍ଡ ବ୍ୟଥା ଉପସ୍ଥିତ ହେଉଥିଲା । ଉନ୍ମନା ହୋଇ ସେ ସେତେବେଳେ ଚିନ୍ତା କରୁଥିଲେ—'ତେବେ କ'ଣ ପୂର୍ବେ ଯେପରି ଦେଖିଥିଲି, ସେ ଆଉ ସେପରି ନାହାନ୍ତି ? ଲୋକେ ଯେପରି କହୁଛନ୍ତି, ତାଙ୍କର କ'ଣ ସେହିପରି ଅବସ୍ଥା ହୋଇଅଛି ? ଭଗବାନଙ୍କ ଇଚ୍ଛାରେ ଯଦି ସେପରି ହୋଇଥାଏ, ତା'ହେଲେ ମୋର ଆଉ ଏଠାରେ ରହିବା ଉଚିତ୍ ନୁହେଁ, ତାଙ୍କ ପାଖରେ ରହି ତାଙ୍କ ସେବା କରିବା ମୋର କର୍ତ୍ତବ୍ୟ ।' ବହୁତ ଚିନ୍ତା କରି କରି ସେ ସ୍ଥିର କଲେ, ସେ ଦକ୍ଷିଣେଶ୍ୱର ସ୍ୱୟଂ ଗମନପୂର୍ବକ ଚକ୍ଷୁକର୍ଣ୍ଣର ବିବାଦଭଞ୍ଜନ କରିବେ, ତା'ପରେ ଯାହା କର୍ତ୍ତବ୍ୟ ବୋଲି ବିବେଚିତ ହେବ, ସେପରି କରିବେ ।

**ଉକ୍ତ ସଂକଳ୍ପ କାର୍ଯ୍ୟରେ ପରିଣତ କରିବାର ବନ୍ଦୋବସ୍ତ :**

ଫାଲ୍‌ଗୁନ ମାସର ଦୋଳପୂର୍ଣ୍ଣିମାରେ[୧] ଶ୍ରୀଚୈତନ୍ୟଦେବ ଜନ୍ମଗ୍ରହଣ କରିଥିଲେ । ପୁଣ୍ୟତୋୟା ଜାହ୍ନବୀରେ ସ୍ନାନ କରିବା ପାଇଁ ସେଦିନ ବଙ୍ଗର ଦୂରଦୂରାନ୍ତରୁ ବହୁତ ଲୋକ କଲିକତା ଆସିଥାଆନ୍ତି । ଶ୍ରୀଶ୍ରୀମାତାଠାକୁରାଣୀଙ୍କର ଦୂରସମ୍ପର୍କୀୟା କେତେଜଣ ରମଣୀ ସେବର୍ଷ ଗଙ୍ଗାରେ ସ୍ନାନ ନିମିତ୍ତ ସେହି ସମୟରେ କଲିକତା ଆଗମନ କରିବାକୁ ଏହାପୂର୍ବରୁ ସ୍ଥିର କରିଥିଲେ । ସେ ସେମାନଙ୍କ ସହିତ ଗଙ୍ଗାସ୍ନାନକୁ ଯିବାର ଅଭିପ୍ରାୟ ପ୍ରକାଶ କଲେ । ତାଙ୍କର ବାପାଙ୍କର ଅନୁମତି ନ ହେଲେ ତାଙ୍କୁ ନେବା ଯୁକ୍ତିଯୁକ୍ତ ହେବ ନାହିଁ ଭାବି ଉକ୍ତ ରମଣୀମାନେ ତାଙ୍କର ପିତା ଶ୍ରୀଯୁକ୍ତ ରାମଚନ୍ଦ୍ର ମୁଖୋପାଧ୍ୟାୟଙ୍କୁ ଏବିଷୟରେ ପଚାରିଲେ । ବୁଦ୍ଧିମାନ ପିତା ଏହା ଶୁଣି ବୁଝିପାରିଲେ ଯେ ତାଙ୍କର ଝିଅ କାହିଁକି କଲିକତା ଯିବାକୁ ଚାହୁଁଛି; ତେଣୁ ସେ ଭାବିଲେ ନିଜେ ତାଙ୍କ ଝିଅକୁ ନେଇ କଲିକତା ଯିବେ । ମନରେ ଏକଥା ସ୍ଥିର କରି ଯିବା ପାଇଁ ସମସ୍ତ ବନ୍ଦୋବସ୍ତ କଲେ ।

**ନିଜ ପିତାଙ୍କ ସହିତ ଶ୍ରୀଶ୍ରୀମା'ଙ୍କର ପଦବ୍ରଜରେ ଗଙ୍ଗାସ୍ନାନ କରିବାକୁ କଲିକତା ଯିବା ଏବଂ ବାଟରେ ଜ୍ୱର :**

ସେତେବେଳେ ରେଲ କମ୍ପାନୀ ସୌଜନ୍ୟରୁ ସୁଦୂର କାଶୀ, ବୃନ୍ଦାବନ କଲିକତାର ଅତି ସନ୍ନିକଟ ହୋଇଥିଲେ ମଧ୍ୟ ଠାକୁରଙ୍କ ଜନ୍ମସ୍ଥାନ କାମାରପୁକୁର ଓ ଜୟରାମବାଟୀ ଏଥିରୁ ବଞ୍ଚିତ ରହି ଯେଉଁ ଦୂରକୁ ସେହି ଦୂରରେ ଥିଲା । ସେହି ସମୟରେ ବିଷ୍ଣୁପୁର ବା ତାରକେଶ୍ୱର କୌଣସି ସ୍ଥାନରେ ରେଳପଥ ପ୍ରସ୍ତୁତ ହୋଇ ନ ଥିଲା ଏବଂ ଘାଟାଲକୁ ମଧ୍ୟ ବାଷ୍ପୀୟ ଜଳଯାନ କଲିକତା ସହିତ ଯୁକ୍ତ କରି ନ ଥିଲା । ସୁତରାଂ ଶିବିକା ଅଥବା ପଦବ୍ରଜରେ ଗମନାଗମନ ବ୍ୟତୀତ ସେହି ସମସ୍ତ ଗ୍ରାମର ଲୋକଙ୍କର ଅନ୍ୟ ଉପାୟ ନ ଥିଲା ଏବଂ ଜମିଦାର ପ୍ରଭୃତି ଧନୀଲୋକ ବ୍ୟତୀତ ମଧ୍ୟବିତ୍ତ ଗୃହସ୍ଥମାନେ ସମସ୍ତେ ହିଁ ଶେଷୋକ୍ତ ଉପାୟ ଅବଲମ୍ବନ କରୁଥିଲେ । ଅତଏବ କନ୍ୟା ଏବଂ ସଙ୍ଗୀଗଣଙ୍କ ସହିତ ଶ୍ରୀରାମଚନ୍ଦ୍ର ଦୂରପଥ ପଦବ୍ରଜରେ ଅତିବାହିତ କରିବାକୁ ଲାଗିଲେ । ଧାନ୍ୟକ୍ଷେତ୍ର ପରେ ଧାନ୍ୟକ୍ଷେତ୍ର ଏବଂ ମଝିରେ ମଝିରେ କମଳପୂର୍ଣ୍ଣ ଜଳାଶୟସକଳ ଦେଖୁ ଦେଖୁ, ଅଶ୍ୱତ୍‌ଥ, ବଟ ପ୍ରଭୃତି ବୃକ୍ଷରାଜିର ଶୀତଳ ଛାୟା ଅନୁଭବ କରୁ କରୁ ସେମାନେ ସମସ୍ତେ ପ୍ରଥମ ଦୁଇ–ତିନ ଦିନ ଆନନ୍ଦରେ ପଥ ଚାଲିବାକୁ ଲାଗିଲେ । କିନ୍ତୁ ଗନ୍ତବ୍ୟ ସ୍ଥଳରେ ପହଞ୍ଚିବା ପର୍ଯ୍ୟନ୍ତ ଏହି ଆନନ୍ଦ ରହିଲା ନାହିଁ । ପଥଶ୍ରମରେ ଅନଭ୍ୟସ୍ତା କନ୍ୟା ପଥମଧ୍ୟରେ ଗୋଟିଏ ସ୍ଥାନରେ ପ୍ରଚଣ୍ଡ ଜ୍ୱରରେ ଆକ୍ରାନ୍ତା

---

୧. ୧୨୭୮ ବଙ୍ଗାବ୍ଦର ଦୋଳପୂର୍ଣ୍ଣିମା ୧୩ ଚୈତ୍ର ପଡ଼ିଥିଲା (୨୫ ମାର୍ଚ୍ଚ ୧୮୭୨ ଖ୍ରୀ.)

ହୋଇ ଶ୍ରୀରାମଚନ୍ଦ୍ରଙ୍କୁ ବିଶେଷ ଚିନ୍ତାନ୍ୱିତ କଲେ । କନ୍ୟାଙ୍କର ଏପରି ଅବସ୍ଥାରେ ଅଗ୍ରସର ହେବା ଅସମ୍ଭବ ବୁଝି ସେ ପାନ୍ଥଶାଳାରେ ଆଶ୍ରୟ ନେଲେ ।

**ପୀଡ଼ିତା ଅବସ୍ଥାରେ ଶ୍ରୀଶ୍ରୀମା'ଙ୍କର ଅଦ୍ଭୁତ ଦର୍ଶନର ବିବରଣ :**

ପଥ ମଧ୍ୟରେ ଏପରି ପୀଡ଼ିତା ହେବାରୁ ଶ୍ରୀମତୀ ମାତାଠାକୁରାଣୀଙ୍କର ଅନ୍ତଃକରଣରେ କେତେ ବେଦନା ହୋଇଥିଲା, ତାହା କହିବାର ନୁହେଁ । କିନ୍ତୁ ଏକ ଅଦ୍ଭୁତ ଦର୍ଶନ ଉପସ୍ଥିତ ହୋଇ ଏହି ସମୟରେ ତାଙ୍କୁ ଆଶ୍ୱସ୍ତା କରିଥିଲା । ଉକ୍ତ ଦର୍ଶନର କଥା ସେ ପରେ ସ୍ତ୍ରୀଭକ୍ତମାନଙ୍କୁ ବେଳେବେଳେ ନିମ୍ନଲିଖିତ ଭାବରେ କହିଛନ୍ତି—

''ଜ୍ୱରରେ ଯେତେବେଳେ ମୁଁ ସମ୍ପୂର୍ଣ୍ଣ ଅଚେତ ଏବଂ ଲଜ୍ଜାରହିତ ହୋଇ ପଡ଼ିରହିଛି, ସେତେବେଳେ ଦେଖିଲି ପାର୍ଶ୍ୱରେ ଜଣେ ରମଣୀ ଆସି ବସିଲେ— ତାଙ୍କର ବର୍ଣ୍ଣ କଳା, କିନ୍ତୁ ଏପରି ସୁନ୍ଦର ରୂପ କେବେ ଦେଖି ନ ଥିଲି !—ପାଖରେ ବସି ମୋ ମୁଣ୍ଡକୁ ଓ ଶରୀରକୁ ଆଉଁସିବାକୁ ଲାଗିଲେ—ତାଙ୍କର ନରମ ଥଣ୍ଡା ହାତ ସ୍ପର୍ଶରେ ମୋର ଶରୀରର ଜ୍ୱାଳା କମିବାକୁ ଲାଗିଲା । ପଚାରିଲି, 'ତୁମେ କେଉଁଠୁ ଆସିଛ ଗୋ ?' ରମଣୀ କହିଲେ, 'ମୁଁ ଦକ୍ଷିଣେଶ୍ୱରରୁ ଆସିଛି ।' ଏହା ଶୁଣି ଆଶ୍ଚର୍ଯ୍ୟ ହୋଇ କହିଲି, 'ଦକ୍ଷିଣେଶ୍ୱରରୁ ? ମୁଁ ଭାବିଥିଲି ଦକ୍ଷିଣେଶ୍ୱର ଯିବି, ତାଙ୍କୁ (ଠାକୁରଙ୍କୁ) ଦେଖିବି, ତାଙ୍କର ସେବା କରିବି । କିନ୍ତୁ ବାଟରେ ଜ୍ୱର ହେବାରୁ ମୋ ଭାଗ୍ୟରେ ସେ ସବୁ ଆଉ ହେଲା ନାହିଁ ।' ରମଣୀ କହିଲା, ''ସେ କ'ଣ ! ତୁମେ ନିଶ୍ଚୟ ଦକ୍ଷିଣେଶ୍ୱର ଯିବ, ଭଲ ହୋଇ ସେଠାକୁ ଯିବ, ତାଙ୍କୁ ଦେଖିବ । ତୁମ ପାଇଁ ତ ମୁଁ ତାଙ୍କୁ ସେଠାରେ ଅଟକାଇ ରଖିଛି ।' ମୁଁ କହିଲି, ତୁମେ ମୋର କ'ଣ ହେବ ଗୋ ?' ଝିଅଟି କହିଲା, ମୁଁ ତୁମର ଭଉଣୀ ହେବି ।' ମୁଁ କହିଲି, ସତରେ ? ସେଥିପାଇଁ ତୁମେ ଆସିଛ !' ଏପରି କଥାବାର୍ତ୍ତା ହୋଇ ଶୋଇପଡ଼ିଲି !''

**ରାତିରେ ଜ୍ୱର ଥିବା ଅବସ୍ଥାରେ ଶ୍ରୀଶ୍ରୀମା'ଙ୍କର ଦକ୍ଷିଣେଶ୍ୱରରେ ପହଞ୍ଚିବା ଏବଂ ଠାକୁରଙ୍କର ଆଚରଣ :**

ପ୍ରାତଃକାଳରେ ଉଠି ଶ୍ରୀରାମଚନ୍ଦ୍ର ଦେଖିଲେ, କନ୍ୟାର ଜ୍ୱର ଛାଡ଼ିଯାଇଛି । ରାସ୍ତାରେ ନିରୁପାୟ ହୋଇ ବସି ରହିବା ଅପେକ୍ଷା ସେ ତାଙ୍କୁ ନେଇ ଧୀରେ ଧୀରେ ଯିବା ଶ୍ରେୟଃ ବିବେଚନା କଲେ । ରାତ୍ରିର ପୂର୍ବୋକ୍ତ ଦର୍ଶନରେ ଉତ୍ସାହିତ ହୋଇ ଶ୍ରୀମତୀ ମାତାଠାକୁରାଣୀ ତାଙ୍କର ସେହି ପରାମର୍ଶ ସାଗ୍ରହରେ ଅନୁମୋଦନ କଲେ । କିଛିଦୂର ଗଲାପରେ ଗୋଟିଏ ଶିବିକା ମଧ୍ୟ ମିଳିଗଲା । ତାଙ୍କର ପୁନରାୟ ଜ୍ୱର ଆସିଲା, କିନ୍ତୁ ପୂର୍ବ ଦିବସ ଭଳି ପ୍ରବଳ ବେଗରେ ନ ଆସିବାରୁ ସେ ତାହାର ପ୍ରକୋପରେ ସମ୍ପୂର୍ଣ୍ଣ ଅକ୍ଷମ ହୋଇପଡ଼ିଲେ ନାହିଁ । ସେହି ବିଷୟରେ ମଧ୍ୟ କାହାକୁ

କିଛି କହିଲେ ନାହିଁ । କ୍ରମେ ପଥ ଶେଷ ହେଲା ଏବଂ ରାତି ନଅଟାରେ ଶ୍ରୀଶ୍ରୀମା' ଦକ୍ଷିଣେଶ୍ୱରରେ ଠାକୁରଙ୍କ ସମୀପରେ ପହଞ୍ଚିଲେ ।

ଠାକୁର ତାହାଙ୍କୁ ସହସା ଏପରି ରୋଗାକ୍ରାନ୍ତ ହୋଇ ଆସିବା ଦେଖି ବିଶେଷ ଉଦ୍‌ବିଗ୍ନ ହୋଇ ପଡ଼ିଲେ । ଥଣ୍ଡା ଲାଗିଲେ ଜ୍ୱର ବଢ଼ିପାରେ ଭାବି ନିଜ ଗୃହରେ ଭିନ୍ନ ଶଯ୍ୟାରେ ତାଙ୍କ ଶୟନର ବନ୍ଦୋବସ୍ତ କଲେ ଏବଂ ଦୁଃଖ କରି ବାରମ୍ବାର କହିବାକୁ ଲାଗିଲେ, "ତୁମେ ଏତେଦିନ ପରେ ଆସିଲ ? ଆଉ କ'ଣ ମୋର ସେଜବାବୁ (ମଥୁରବାବୁ) ଅଛନ୍ତି ଯେ, ତୁମର ଯତ୍ନ ନେବ ?" ଔଷଧ, ପଥ୍ୟ ଆଦିର ବିଶେଷ ବନ୍ଦୋବସ୍ତରେ ତିନି ଚାରି ଦିନ ମଧ୍ୟରେ ହିଁ ଶ୍ରୀଶ୍ରୀମାତାଠାକୁରାଣୀ ଆରୋଗ୍ୟ ଲାଭ କଲେ । ଏହିଁ ତିନି-ଚାରିଦିନ ଠାକୁର ତାଙ୍କୁ ଦିବାରାତ୍ର ନିଜଘରେ ରଖି ଔଷଧପଥ୍ୟାଦି ସମସ୍ତ ବିଷୟରେ ସ୍ୱୟଂ ତତ୍ତ୍ୱାବଧାନ କଲେ, ପରେ ନହବତ ଘରେ, ନିଜ ଜନନୀଙ୍କ ନିକଟରେ ତାଙ୍କର ରହିବାର ବନ୍ଦୋବସ୍ତ କରିଦେଲେ ।

## ଠାକୁରଙ୍କର ଏପରି ବ୍ୟବହାରରେ ଶ୍ରୀଶ୍ରୀମା'ଙ୍କର ଆନନ୍ଦ ଏବଂ ସେଠାରେ ଅବସ୍ଥାନ :

ଚକ୍ଷୁକର୍ଣ୍ଣର ବିବାଦ ମେଣ୍ଟିଲା, ପରକଥାକୁ ବିଶ୍ୱାସ କରି ଯେଉଁ ସନ୍ଦେହ ମେଘ ସଦୃଶ ବିଶ୍ୱାସ-ସୂର୍ଯ୍ୟକୁ ଆବୃତ କରିବାକୁ ଉପକ୍ରମ କରିଥିଲା, ଠାକୁରଙ୍କର ଯତ୍ନ-ପ୍ରବୃଦ୍ଧ ଅନୁରାଗ ପବନରେ ତାହା ଛିନ୍ନଭିନ୍ନ ହୋଇ ବର୍ତ୍ତମାନ କେଉଁଆଡ଼େ ବିଲୀନ ହୋଇଗଲା ! ଶ୍ରୀମତୀ ମାତାଠାକୁରାଣୀ ପ୍ରାଣେ ପ୍ରାଣେ ବୁଝିଲେ, ଠାକୁର ପୂର୍ବେ ଯେପରି ଥିଲେ ବର୍ତ୍ତମାନ ମଧ ତଦ୍ରୂପ ଅଛନ୍ତି—ସଂସାରୀ ମାନବ ନ ବୁଝି ତାଙ୍କ ସମ୍ବନ୍ଧରେ ନାନା ରଟନା କରିଛନ୍ତି । ଦେବତା ଦେବତା ହିଁ ଅଛନ୍ତି ଏବଂ ବିସ୍ମୃତ ହେବା ଦୂରରେ ଥାଉ, ତାଙ୍କ ପ୍ରତି ପୂର୍ବପରି ସମାନଭାବରେ କୃପାପରବଶ ରହିଛନ୍ତି । ଅତଏବ କର୍ତ୍ତବ୍ୟ ସ୍ଥିର ହେବାକୁ ବିଳମ୍ବ ହେଲା ନାହିଁ । ପ୍ରାଣର ଉଲ୍ଲାସରେ ସେ ନହବତରେ ରହି ଦେବତା ଓ ଦେବଜନନୀଙ୍କର ସେବାରେ ନିଯୁକ୍ତା ହେଲେ—ଏବଂ ତାଙ୍କର ପିତା କନ୍ୟାର ଆନନ୍ଦରେ ଆନନ୍ଦିତ ହୋଇ କିଛିଦିନ ସେହି ସ୍ଥାନରେ ଅବସ୍ଥାନ କରି ହୃଷ୍ଟଚିତ୍ତରେ ନିଜ ଗ୍ରାମକୁ ପ୍ରତ୍ୟାବର୍ତ୍ତନ କଲେ ।

## ଠାକୁରଙ୍କର ନିଜର ବ୍ରହ୍ମ ବିଜ୍ଞାନର ପରୀକ୍ଷା ଏବଂ ପତ୍ନୀଙ୍କୁ ଶିକ୍ଷାପ୍ରଦାନ :

୧୮୬୭ ଖ୍ରୀଷ୍ଟାବ୍ଦରେ କାମାରପୁକୁରରେ ଅବସ୍ଥାନ କରିବା ସମୟରେ ଶ୍ରୀମତୀ ମାତାଠାକୁରାଣୀଙ୍କର ଆଗମନରେ ଠାକୁରଙ୍କ ମନରେ ଯେଉଁ ଚିନ୍ତାପରମ୍ପରାର ଉଦୟ ହୋଇଥିଲା ତାହା ଆମେ ପାଠକଙ୍କୁ କହିସାରିଛୁ । ବ୍ରହ୍ମଜ୍ଞାନରେ ଦୃଢ଼ ପ୍ରତିଷ୍ଠାଲାଭସମ୍ବନ୍ଧୀୟ ଆଚାର୍ଯ୍ୟ ଶ୍ରୀମତ୍ ତୋତାପୁରୀଙ୍କର କଥା ବିଚାର କରି ସେ ସେହି ସମୟରେ ନିଜ ସାଧନଲବ୍ଧ ଜ୍ଞାନର ପରୀକ୍ଷା

କରିବାକୁ ଏବଂ ପତ୍ନୀ ପ୍ରତି ନିଜ କର୍ତ୍ତବ୍ୟ–ପରିପାଳନରେ ଅଗ୍ରସର ହୋଇଥିଲେ । କିନ୍ତୁ ସେହି ସମୟରେ ତଦୁଭୟ ଅନୁଷ୍ଠାନର ଆରମ୍ଭ ମାତ୍ର କରି ତାଙ୍କୁ କଲିକତା ଫେରିବାକୁ ହୋଇଥିଲା । ଶ୍ରୀମତୀ ମାତାଠାକୁରାଣୀଙ୍କୁ ନିକଟରେ ପାଇ ସେ ବର୍ତ୍ତମାନ ପୁନର୍ବାର ଏହି ଦୁଇଟି ବିଷୟରେ ମନୋନିବେଶ କଲେ ।

**ଏହା ପୂର୍ବରୁ ଠାକୁରଙ୍କର ଏପରି ଅନୁଷ୍ଠାନ ନ କରିବାର କାରଣ :**

ପ୍ରଶ୍ନ ଉଠିପାରେ—ପତ୍ନୀଙ୍କୁ ସଙ୍ଗରେ ନେଇ ଦକ୍ଷିଣେଶ୍ୱର ଆସି ସେ ଏହା ପୂର୍ବରୁ ସେପରି କରିପାରିଥାଆନ୍ତେ, କିନ୍ତୁ ତାହା କରି ନାହାନ୍ତି କାହିଁକି ? ଉତ୍ତରରେ କହିବାକୁ ହୁଏ—ସାଧାରଣ ମାନବ ସେହିପ୍ରକାର କରିଥାନ୍ତେ, ସନ୍ଦେହ ନାହିଁ; ଠାକୁର ସେହି ଶ୍ରେଣୀଭୁକ୍ତ ନ ଥିଲେ ବୋଲି ସେହି ପ୍ରକାର ଆଚରଣ କରି ନାହାନ୍ତି । ଈଶ୍ୱରଙ୍କ ପ୍ରତି ସମ୍ପୂର୍ଣ୍ଣ ନିର୍ଭର କରି ଯେଉଁମାନେ ଜୀବନରେ ପ୍ରତିକ୍ଷଣ ପ୍ରତି କାର୍ଯ୍ୟ କରିବାକୁ ଅଭ୍ୟସ୍ତ ହୋଇଛନ୍ତି, ସେମାନେ ସ୍ୱୟଂ ଚିନ୍ତା କରି କଦାପି କୌଣସି କାର୍ଯ୍ୟରେ ଅଗ୍ରସର ହୁଅନ୍ତି ନାହିଁ । ଆତ୍ମକଲ୍ୟାଣ ବା ଅନ୍ୟର କଲ୍ୟାଣସାଧନ କରିବାକୁ ସେମାନେ ଆମମାନଙ୍କ ପରି ପରିଚ୍ଛିନ୍ନ, କ୍ଷୁଦ୍ର ବୁଦ୍ଧିର ସହାୟତା ନ ନେଇ ଶ୍ରୀଭଗବାନଙ୍କର ବିରାଟ ବୁଦ୍ଧିର ସହାୟତା ଓ ଇଙ୍ଗିତର ପ୍ରତୀକ୍ଷା କରିଥାଆନ୍ତି । ସେଥିପାଇଁ ସ୍ୱେଚ୍ଛାରେ ପରୀକ୍ଷା ଦେବାକୁ ସେମାନେ ସର୍ବଥା ପରାଙ୍‌ମୁଖ ହୁଅନ୍ତି । କିନ୍ତୁ ବିରାଟ ଇଚ୍ଛାର ଅନୁଗାମୀ ହୋଇ ଚାଲୁ ଚାଲୁ ଯଦି କେବେ ପରୀକ୍ଷା ଦେବାର ସମୟ ସ୍ୱତଃ ଉପସ୍ଥିତ ହୁଏ, ତେବେ ସେମାନେ ସେହି ପରୀକ୍ଷା ପ୍ରଦାନ ପାଇଁ ସାନନ୍ଦରେ ଅଗ୍ରସର ହୁଅନ୍ତି । ଠାକୁର ସ୍ୱଇଚ୍ଛାରେ ନିଜ ବ୍ରହ୍ମଜ୍ଞାନର ଗଭୀରତା ପରୀକ୍ଷା କରିବାକୁ ଅଗ୍ରସର ହୋଇ ନାହାନ୍ତି । କିନ୍ତୁ ଯେତେବେଳେ ଦେଖିଲେ ପତ୍ନୀ କାମାରପୁକୁରରୁ ତାଙ୍କ ନିକଟକୁ ଆଗମନ କରିଛନ୍ତି ଏବଂ ତାଙ୍କ ପ୍ରତି ନିଜ କର୍ତ୍ତବ୍ୟ ପ୍ରତିପାଳନରେ ଅଗ୍ରସର ହେଲେ ତାହାଙ୍କୁ ସେହି ବିଷୟରେ ପରୀକ୍ଷା ପ୍ରଦାନ କରିବାକୁ ହେବ, ସେତେବେଳେ ହିଁ ସେହି କାର୍ଯ୍ୟରେ ପ୍ରବୃତ୍ତ ହୋଇଛନ୍ତି । ପୁଣି ଈଶ୍ୱରଙ୍କ ଇଚ୍ଛାରେ ଏହି ପରିସ୍ଥିତି ଚାଲି ଯାଇ ଯେତେବେଳେ ତାଙ୍କୁ କଲିକତା ଆଗମନ କାରଣରୁ ପତ୍ନୀଙ୍କ ନିକଟରୁ ଦୂରରେ ରହିବାକୁ ପଡ଼ିଲା, ସେତେବେଳେ ସେ ଏହି ସୁଯୋଗ ପୁନରାନୟନ ପାଇଁ ସ୍ୱତଃପ୍ରବୃତ୍ତ ହେଲେ ନାହିଁ । ଶ୍ରୀମତୀ ମାତାଠାକୁରାଣୀ ଯେତେଦିନ ସ୍ୱୟଂ ନ ଆସିଥିଲେ, ସେତେଦିନ ପର୍ଯ୍ୟନ୍ତ ତାଙ୍କୁ ଦକ୍ଷିଣେଶ୍ୱର ଆନୟନ ପାଇଁ କିଛି ମାତ୍ର ଚେଷ୍ଟା କଲେ ନାହିଁ । ସାଧାରଣ ବୁଦ୍ଧି ସହାୟରେ ଆମେ ଠାକୁରଙ୍କ ଆଚରଣରେ ଏହି ସାମଞ୍ଜସ୍ୟ କରିପାରୁ; ତଦ୍‌ଭିନ୍ନ କହିପାରୁ ଯେ, ଯୋଗଦୃଷ୍ଟି ସହାୟରେ ସେ ବିଦିତ ହୋଇଥିଲେ ଯେ, ସେପରି କରିବା ହିଁ ଈଶ୍ୱରଙ୍କ ଅଭିପ୍ରେତ ।

## ଠାକୁରଙ୍କର ଶିକ୍ଷାଦାନର ପ୍ରଣାଳୀ ଏବଂ ଶ୍ରୀଶ୍ରୀମା'ଙ୍କ ସହିତ ଏହି ସମୟର ଆଚରଣ :

ସେ ଯାହାହେଉ, ପତ୍ନୀଙ୍କ ପ୍ରତି କର୍ତ୍ତବ୍ୟ ପାଳନପୂର୍ବକ ପରୀକ୍ଷା ପ୍ରଦାନର ସମୟ ହୋଇଥିବା ଦେଖି ଠାକୁର ଏବେ ସେବିଷୟରେ ସାନନ୍ଦରେ ଅଗ୍ରସର ହେଲେ ଏବଂ ସମୟ ପାଇଲେ ହିଁ ମାତାଠାକୁରାଣୀଙ୍କୁ ମାନବ ଜୀବନର ଉଦ୍ଦେଶ୍ୟ ଏବଂ କର୍ତ୍ତବ୍ୟ ସମ୍ବନ୍ଧରେ ସମସ୍ତ ପ୍ରକାର ଶିକ୍ଷାପ୍ରଦାନ କରିବାକୁ ଲାଗିଲେ । ଶୁଣାଯାଏ, ସେ ଏହି ସମୟରେ ହିଁ ମାତାଠାକୁରାଣୀଙ୍କୁ କହିଥିଲେ, ''ଜହ୍ନମାମୁଁ ଯେପରି ସମସ୍ତଙ୍କର ମାମୁଁ, ସେହିପରି ଈଶ୍ୱର ସମସ୍ତଙ୍କ ଆପଣାର, ତାଙ୍କୁ ଡାକିବାକୁ ସମସ୍ତଙ୍କର ଅଧିକାର ଅଛି; ଯିଏ ଡାକିବ ସେ ତାକୁ ଦର୍ଶନ ଦେଇ କୃତାର୍ଥ କରିବେ, ତୁମେ ଯଦି ଡାକିବ, ତୁମେ ମଧ୍ୟ ତାଙ୍କର ଦେଖା ପାଇବ ।'' କେବଳ ଉପଦେଶ ପ୍ରଦାନ କରି ଠାକୁରଙ୍କ ଶିକ୍ଷାଦାନର ଅବସାନ ହେଉ ନ ଥିଲା; କିନ୍ତୁ ଶିଷ୍ୟଙ୍କୁ ନିକଟରେ ରଖି ଭଲପାଇ ସର୍ବତୋଭାବରେ ନିଜର କରିନେଇ ସେ ତାଙ୍କୁ ପ୍ରଥମେ ଉପଦେଶ ପ୍ରଦାନ କରୁଥିଲେ, ପରେ ଶିଷ୍ୟ ଏହା କେତେଦୂର କାର୍ଯ୍ୟରେ ପ୍ରତିପାଳନ କରୁଛି ସେବିଷୟରେ ସର୍ବଦା ତୀକ୍ଷ୍ଣଦୃଷ୍ଟି ରଖୁଥିଲେ ଏବଂ ଭ୍ରମବଶତଃ ସେ ବିପରୀତ କାର୍ଯ୍ୟ କଲେ ତାଙ୍କୁ ବୁଝାଇ ସଂଶୋଧନ କରି ଦେଉଥିଲେ । ଶ୍ରୀମତୀ ମାତାଠାକୁରାଣୀଙ୍କ ସମ୍ବନ୍ଧରେ ସେ ଯେ ବର୍ତ୍ତମାନ ପୂର୍ବୋକ୍ତ ପ୍ରଣାଳୀ ଅବଲମ୍ବନ କରିଥିଲେ, ତାହା ବୁଝିହୁଏ । ପ୍ରଥମଦିନରୁ ପରମସ୍ନେହରେ ସେ ତାଙ୍କୁ କେତେଦୂର ଆପଣାର କରି ନେଇଥିଲେ, ତାହା ଆଗମନମାତ୍ରେ ତାଙ୍କୁ ନିଜ ଗୃହରେ ବାସ କରିବାକୁ ଦେବା ଏବଂ ଆରୋଗ୍ୟ ଲାଭ କଲାପରେ ପ୍ରତ୍ୟହ ରାତିରେ ନିଜର ଶଯ୍ୟାରେ ଶୟନ କରିବାର ଅନୁମତି ପ୍ରଦାନ କରିବାରୁ ତାହା ବିଶେଷରୂପେ ହୃଦୟଙ୍ଗମ ହୁଏ । ମାତାଠାକୁରାଣୀଙ୍କ ସହିତ ଠାକୁରଙ୍କର ଏହି ସମୟର ଦିବ୍ୟ ଆଚରଣର କଥା ଆମେ ପାଠକଙ୍କୁ ଅନ୍ୟତ୍ର କହିଅଛୁଁ[୧] ସେଥିପାଇଁ ଆମେ ଏଠାରେ ତାର ପୁନରୁଲ୍ଲେଖ କରିବୁ ନାହିଁ । ଗୋଟିଏ ଦୁଇଟି କଥା, ଯାହା ଏହାପୂର୍ବରୁ କୁହାଯାଇ ନାହିଁ କେବଳ ତାହା ହିଁ କହିବୁ ।

## ଶ୍ରୀଶ୍ରୀମା'ଙ୍କୁ ଠାକୁର କିପରି ଭାବରେ ଦେଖୁଥିଲେ :

ଶ୍ରୀମତୀ ମାତାଠାକୁରାଣୀ ଏହି ସମୟରେ ଦିନେ ଠାକୁରଙ୍କର ପଦସେବା କରୁ କରୁ ତାଙ୍କୁ ପଚାରିଥିଲେ, ''ମୋତେ ତୁମର କ'ଣ ବୋଲି ବୋଧ ହୁଏ ?'' ଏହାର ଉତ୍ତରରେ ଠାକୁର କହିଥିଲେ, ''ଯେଉଁ ମା' ମନ୍ଦିରରେ ଅଛନ୍ତି ସେ ଏହି ଶରୀରକୁ ଜନ୍ମ ଦେଇଛନ୍ତି ଏବଂ ସମ୍ପ୍ରତି ନହବତରେ ବାସ କରୁଅଛନ୍ତି ଏବଂ ସେ

---

୧. ଗୁରୁଭାବ—ପୂର୍ବାର୍ଦ୍ଧ, ୪ର୍ଥ ଅଧ୍ୟାୟ ।

ହିଁ ବର୍ତ୍ତମାନ ମୋର ପଦସେବା କରୁଛନ୍ତି ! ତୁମକୁ ସାକ୍ଷାତ୍ ଆନନ୍ଦମୟୀଙ୍କ ରୂପ ବୋଲି ସତରେ ଦେଖିବାକୁ ପାଏ !''

### ଠାକୁରଙ୍କର ନିଜ ମନର ସଂଯମ ପରୀକ୍ଷା :

ଅନ୍ୟ ଏକ ଦିନ ଶ୍ରୀଶ୍ରୀମା'ଙ୍କୁ ନିଜ ପାର୍ଶ୍ୱରେ ନିଦ୍ରିତା ଦେଖି ଠାକୁର ଆପଣା ମନକୁ ସମ୍ବୋଧନ କରି ଏହିପରି ବିଚାରରେ ପ୍ରବୃତ୍ତ ହୋଇଥିଲେ— ''ମନ, ଏହାର ନାମ ସ୍ତ୍ରୀଶରୀର, ଲୋକମାନେ ଏହାକୁ ପରମ ଉପାଦେୟ ଭୋଗ୍ୟବସ୍ତୁ ବୋଲି ଜାଣନ୍ତି ଏବଂ ଭୋଗ କରିବା ନିମିତ୍ତ ସର୍ବକ୍ଷଣ ଲାଳାୟିତ ହୋଇଥାନ୍ତି; କିନ୍ତୁ ଏହାକୁ ଗ୍ରହଣ କଲେ ଦେହରେ ହିଁ ଆବଦ୍ଧ ରହିବାକୁ ପଡ଼େ, ସଚ୍ଚିଦାନନ୍ଦ ଈଶ୍ୱରଙ୍କୁ ଲାଭ କରାଯାଇପାରେ ନାହିଁ; ଭାବର ଘରେ ଚୋରି କର ନାହିଁ, ପେଟରେ ଗୋଟିଏ କଥା ମୁହଁରେ ଅନ୍ୟ ଗୋଟିଏ କଥା ରଖ ନାହିଁ, ସତ କୁହ, ତୁ ଏହା ଗ୍ରହଣ କରିବାକୁ ଚାହୁଁ ଅଥବା ଈଶ୍ୱରଙ୍କୁ ଚାହୁଁ ? ଯଦି ଏହାକୁ ଚାହୁଁ ତ ଏହା ତୋର ସମ୍ମୁଖରେ ରହିଛି ଗ୍ରହଣ କର ।'' ଏପରି ବିଚାରପୂର୍ବକ ଠାକୁର ଶ୍ରୀଶୀମାତାଠାକୁରାଣୀଙ୍କର ଅଙ୍ଗ ସ୍ପର୍ଶ କରିବାକୁ ଉଦ୍ୟତ ହେବା ମାତ୍ରେ ମନ କୁଣ୍ଠିତ ହୋଇ ସହସା ସମାଧିପଥରେ ଏପରି ବିଲୀନ ହୋଇଗଲା ଯେ, ସେରାତ୍ରରେ ତାହା ଆଉ ସାଧାରଣ ଭାବଭୂମିରେ ଅବରୋହଣ କଲା ନାହିଁ । ଈଶ୍ୱରଙ୍କର ନାମ ଶ୍ରବଣ କରାଇ ପରଦିନ ବହୁକଷ୍ଟରେ ତାଙ୍କର ଚୈତନ୍ୟ ସମ୍ପାଦନ କରାଇବାକୁ ପଡ଼ିଥିଲା ।

### ପତ୍ନୀଙ୍କ ସହିତ ଠାକୁରଙ୍କର ଆଚରଣ ସଦୃଶ ଆଚରଣ କୌଣସି ଅବତାରପୁରୁଷ କରି ନାହାନ୍ତି—ଏହାର ଫଳ :

ଏହପରି ପୂର୍ଣ୍ଣଯୌବନ ଠାକୁର ଏବଂ ନବଯୌବନସମ୍ପନ୍ନା ଶ୍ରୀଶ୍ରୀମାତାଠାକୁରାଣୀଙ୍କର ଏହି ସମୟର ଦିବ୍ୟ ଲୀଳାବିଳାସ ସମ୍ବନ୍ଧରେ ଯେଉଁ ସମସ୍ତ କଥା ଆମେ ଠାକୁରଙ୍କ ନିକଟରୁ ଶ୍ରବଣ କରିଅଛୁ, ତାହା ଜଗତର ଆଧ୍ୟାତ୍ମିକ ଇତିହାସରେ ଅନ୍ୟ କୌଣସି ମହାପୁରୁଷଙ୍କ ସମ୍ବନ୍ଧରେ ଶ୍ରବଣ କରାଯାଇ ନାହିଁ । ଏଥିରେ ମୁଗ୍ଧ ହୋଇ ମାନବ-ହୃଦୟ ସ୍ୱତଃ ହିଁ ଏମାନଙ୍କର ଦେବତ୍ୱରେ ବିଶ୍ୱାସବାନ ହୋଇ ଉଠେ ଏବଂ ଅନ୍ତରର ଭକ୍ତି-ଶ୍ରଦ୍ଧା ଏମାନଙ୍କର ଶ୍ରୀପାଦପଦ୍ମରେ ଅର୍ପଣ କରିବାକୁ ବାଧ୍ୟ ହୁଏ । ଦେହବୋଧାଦିରହିତ ଠାକୁରଙ୍କର ପ୍ରାୟ ସମସ୍ତ ରାତି ଏହି ସମୟରେ ସମାଧିରେ ଅତିବାହିତ ହେଉଥିଲା ଏବଂ ସମାଧିରୁ ବ୍ୟୁତ୍ଥିତ ହୋଇ ବାହ୍ୟଭୂମିରେ ଅବରୋହଣ କଲେ ମଧ୍ୟ ତାଙ୍କର ମନ ଏତେ ଉଚ୍ଚରେ ଅବସ୍ଥାନ କରୁଥିଲା ଯେ, ସାଧାରଣ ମନୁଷ୍ୟ ପରି ଦେହବୁଦ୍ଧି ଏଥିରେ କ୍ଷଣକ ପାଇଁ ମଧ୍ୟ ଉଦିତ ହେଉ ନ ଥିଲା ।

### ଶ୍ରୀଶ୍ରୀମା'ଙ୍କର ଅଲୌକିକତ୍ୱ ସମ୍ବନ୍ଧରେ ଠାକୁରଙ୍କର କଥା :

ଏହିପରି ଦିନ ପରେ ଦିନ, ମାସ ପରେ ମାସ[୧] ଅତୀତ ହୋଇ କ୍ରମେ ବର୍ଷକରୁ ଅଧିକ କାଳ ଅତୀତ ହେଲା—ମାତ୍ର ଏହି ଅଦ୍ଭୁତ ଠାକୁର ଏବଂ ଠାକୁରାଣୀଙ୍କର ସଂଯମର ବନ୍ଧ ଭଙ୍ଗ ହେଲା ନାହିଁ।—କ୍ଷଣକ ପାଇଁ ଭୁଲରେ ମଧ୍ୟ ସେମାନଙ୍କର ମନ, ପ୍ରିୟ ବୋଧ କରି ଦେହର ରମଣକାମନା କଲା ନାହିଁ। ଏହି ସମୟର କଥା ସ୍ମରଣ କରି ଠାକୁର ପରେ ଆମମାନଙ୍କୁ ବେଳେବେଳେ କହିଥିଲେ, ''ସେ (ଶ୍ରୀଶ୍ରୀମାତାଠାକୁରାଣୀ) ଯଦି ଏତେ ଭଲ ହୋଇ ନ ଥାଆନ୍ତେ, ଆତ୍ମହରା ହୋଇ ସେତେବେଳେ ମୋତେ ଆକ୍ରମଣ କରିଥାଆନ୍ତେ, ତେବେ ସଂଯମର ବନ୍ଧ ଭାଙ୍ଗି ଦେହବୁଦ୍ଧି ଆସିଥାଆନ୍ତା କି ନାହିଁ, କିଏ କହିପାରିବ ? ବିବାହ ପରେ ମା'ଙ୍କୁ (ଜଗଦମ୍ବାଙ୍କୁ) ବ୍ୟାକୁଳ ହୋଇ କହିଥିଲି, 'ମା' ମୋର ପତ୍ନୀ ଭିତରୁ କାମଭାବ ସମ୍ପୂର୍ଣ୍ଣ ଦୂର କରି ଦେ'—ତାର (ଶ୍ରୀଶ୍ରୀମାର) ସଙ୍ଗେ ଏକାଠି ବାସକରି ଏହି ସମୟରେ ବୁଝିଥିଲି, ମା' ସତକୁ ସତ ସେକଥା ଶ୍ରବଣ କରିଥିଲେ।''

### ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଠାକୁରଙ୍କର ସଂକଳ୍ପ :

ଏକବର୍ଷରୁ ଅଧିକ ସମୟ ଅତିବାହିତ ହେଲେ ମଧ୍ୟ ମନରେ କ୍ଷଣକ ପାଇଁ ଯେତେବେଳେ ଦେହବୁଦ୍ଧିର ଉଦୟ ହେଲା ନାହିଁ, ଏବଂ ଶ୍ରୀମତୀ ମାତାଠାକୁରାଣୀଙ୍କୁ କେତେବେଳେ ଜଗଦମ୍ବାଙ୍କର ଅଂଶ ଭାବରେ ଏବଂ କେତେବେଳେ ସଚ୍ଚିଦାନନ୍ଦ ସ୍ୱରୂପ ଆତ୍ମା ବା ବ୍ରହ୍ମଭାବରେ ଗ୍ରହଣ କରିବା ବ୍ୟତୀତ ଅନ୍ୟ କୌଣସି ଭାବରେ ଦେଖିବାକୁ ବା ଭାବିବାକୁ ଯେତେବେଳେ ସମର୍ଥ ହେଲେ ନାହିଁ, ସେତେବେଳେ ଠାକୁର ବୁଝିଲେ ଶ୍ରୀଶ୍ରୀଜଗନ୍ମାତା କୃପାକରି ତାଙ୍କୁ ପରୀକ୍ଷାରେ ଉତ୍ତୀର୍ଣ୍ଣ କରାଇଛନ୍ତି ଏବଂ ମା'ଙ୍କ କୃପାରେ ତାଙ୍କର ମନ ଏବେ ସହଜ ସ୍ୱାଭାବିକ ଭାବରେ ଦିବ୍ୟ ଭାବଭୂମିରେ ଆରୂଢ଼ ହୋଇ ସର୍ବଦା ଅବସ୍ଥାନ କରୁଅଛି। ଶ୍ରୀଶ୍ରୀଜଗନ୍ମାତାଙ୍କ ପ୍ରସାଦରେ ସେ ବର୍ତ୍ତମାନ ପ୍ରାଣେ ପ୍ରାଣେ ଅନୁଭବ କଲେ ଯେ, ତାଙ୍କର ସାଧନା ସମ୍ପୂର୍ଣ୍ଣ ହୋଇଅଛି ଏବଂ ଶ୍ରୀଶ୍ରୀଜଗନ୍ମାତାଙ୍କର ଶ୍ରୀପାଦପଦ୍ମରେ ମନ ଏତେଦୂର ତନ୍ମୟ ହୋଇଅଛି ଯେ, ଜ୍ଞାତ ବା ଅଜ୍ଞାତସାରରେ ମା'ଙ୍କ ଇଚ୍ଛାର ବିରୋଧୀ କୌଣସି ଇଚ୍ଛା ସେଥିରେ ଉଦୟ ହେବାର ସମ୍ଭାବନା ନାହିଁ। ଅତଃପର ଶ୍ରୀଶ୍ରୀଜଗଦମ୍ବାଙ୍କର ନିୟୋଗରେ ତାଙ୍କ ପ୍ରାଣରେ ଏକ ଅଦ୍ଭୁତ ବାସନାର

---

୧. 'ଶ୍ରୀଶ୍ରୀମା'ଙ୍କ କଥାରେ ଅଛି, ''ଦକ୍ଷିଣେଶ୍ୱରରେ ଦେଢ଼ମାସ ରହିବା ପରେ ହିଁ ଠାକୁର ଷୋଡ଼ଶୀପୂଜା କରିଥିଲେ।'' ଶ୍ରୀଶଶିଭୂଷଣ ଘୋଷ ପ୍ରଣୀତ 'ଶ୍ରୀରାମକୃଷ୍ଣଦେବ' ଗ୍ରନ୍ଥର ୩୩୧ ପୃଷ୍ଠାରେ ଶ୍ରୀଶ୍ରୀସାରଦାଦେବୀଙ୍କର ଦକ୍ଷିଣେଶ୍ୱର ଆସିବାର ୩ ମାସ ମଧ୍ୟରେ ହିଁ ଷୋଡ଼ଶୀପୂଜାର ଉଲ୍ଲେଖ ଅଛି। ଅଧିକନ୍ତୁ 'ଶ୍ରୀଶ୍ରୀମା'ଙ୍କ କଥା'ରେ ଏବଂ 'ଶ୍ରୀଶ୍ରୀରାମକୃଷ୍ଣ କଥାମୃତ'ରେ ୮ ମାସ ଏକତ୍ର ଶୟନର ଉଲ୍ଲେଖ ଅଛି। 'ଗୁରୁଭାବ—ପୂର୍ବାର୍ଦ୍ଧରେ ମଧ୍ୟ ୮ ମାସ ଏକତ୍ର ଶୟନର କଥା ସମର୍ଥିତ ହୁଏ। — ପ୍ର.

ଉଦୟ ହେଲା ଏବଂ କିଛିମାତ୍ର ଦ୍ୱିଧା ନ କରି ସେ ଏବେ ଏହାକୁ କାର୍ଯ୍ୟରେ ପରିଣତ କଲେ । ଠାକୁର ଓ ଶ୍ରୀଶ୍ରୀମାତାଠାକୁରାଣୀଙ୍କ ନିକଟରୁ ଏବିଷୟରେ ବେଳେବେଳେ ଯାହା ଜାଣିପାରିଛୁ, ସେକଥା ହିଁ ଏବେ ସମ୍ବନ୍ଧଭାବରେ ଆମେ ପାଠକଙ୍କୁ କହିବୁ ।

## ଷୋଡ଼ଶୀ-ପୂଜାର ଆୟୋଜନ :

ସନ ୧୨୮୦ ସାଲର ଜ୍ୟେଷ୍ଠ ମାସରୁ ଅଧାରୁ ଅଧିକ ଗତ ହୋଇଅଛି ।[୧] ଆଜି ଅମାବାସ୍ୟା, ଫଳହାରିଣୀ କାଳିକାପୂଜାର ପୁଣ୍ୟଦିବସ (୨୫ ମଇ ୧୮୭୩ ଖ୍ରୀଷ୍ଟାବ୍ଦ) । ତେଣୁ ଦକ୍ଷିଣେଶ୍ୱର ମନ୍ଦିରରେ ଆଜି ବିଶେଷ ପର୍ବ । ଠାକୁର ଶ୍ରୀଶ୍ରୀଜଗଦମ୍ବାଙ୍କୁ ପୂଜା କରିବା ମାନସରେ ଆଜି ବିଶେଷ ଆୟୋଜନ କରିଅଛନ୍ତି । କିନ୍ତୁ ସେହି ଆୟୋଜନ ମନ୍ଦିରରେ ନ ହୋଇ ତାଙ୍କର ଇଚ୍ଛାନୁସାରେ ଗୁପ୍ତଭାବରେ ତାଙ୍କର ଗୃହରେ ହିଁ ହୋଇଅଛି । ପୂଜା ସମୟରେ ଦେବୀଙ୍କୁ ବସିବାକୁ ଦେବା ପାଇଁ ଆଲିମ୍ପନଭୂଷିତ ଗୋଟିଏ ପୀଢ଼ା ପୂଜକଙ୍କ ଆସନର ଦକ୍ଷିଣ ପାର୍ଶ୍ୱରେ ସ୍ଥାପିତ ହୋଇଅଛି । ସୂର୍ଯ୍ୟ ଅସ୍ତହେଲେ, ତିମିରାବଗୁଣ୍ଠନରେ ଅମାବାସ୍ୟାର ନିଶି ସମାଗତା ହେଲା । ଠାକୁରଙ୍କର ଭଣଜା ହୃଦୟଙ୍କୁ ଆଜି ରାତ୍ରିକାଳରେ ମନ୍ଦିରରେ ଦେବୀଙ୍କ ବିଶେଷ ପୂଜା କରିବାକୁ ହେବ, ସୁତରାଂ ଠାକୁରଙ୍କ ପୂଜାର ଆୟୋଜନରେ ଯଥାସାଧ୍ୟ ସହାୟତା କରି ସେ ମନ୍ଦିରକୁ ଚାଲିଗଲେ ଏବଂ ରାଧାଗୋବିନ୍ଦଙ୍କର ରାତ୍ରିକାଳର ସେବା-ପୂଜା ସମାପନ ପରେ ଦୀନୁ ପୂଜାରୀ ଆସି ଠାକୁରଙ୍କୁ ସେହି ବିଷୟରେ ସହାୟତା କରିବାକୁ ଲାଗିଲେ । ଦେବୀଙ୍କର ରହସ୍ୟ ପୂଜାର ସମସ୍ତ ଆୟୋଜନ ସମ୍ପୂର୍ଣ୍ଣ ହେବାକୁ ରାତି ନଅଟା ବାଜିଗଲା । ଶ୍ରୀମତୀ ମାତାଠାକୁରାଣୀଙ୍କୁ ପୂଜାସମୟରେ ଉପସ୍ଥିତ ରହିବାକୁ ଠାକୁର ଏହାପୂର୍ବରୁ କହି ପଠାଇଥିଲେ, ସେ ମଧ୍ୟ ସେହି ଗୃହରେ ଆସି ଏସମୟରେ ଉପସ୍ଥିତ ହେଲେ । ଠାକୁର ପୂଜାରେ ବସିଲେ ।

## ଶ୍ରୀଶ୍ରୀମା'ଙ୍କୁ ଅଭିଷେକପୂର୍ବକ ଠାକୁରଙ୍କର ପୂଜା-ସମ୍ପାଦନ :

ପୂଜା ସାମଗ୍ରୀ ସମସ୍ତ ସଂଶୋଧିତ ହୋଇ ପୂର୍ବକୃତ୍ୟ ସମ୍ପାଦିତ ହେଲା । ଠାକୁର ଏଥର ଆଲିମ୍ପନଭୂଷିତ ପିଢ଼ାରେ ଶ୍ରୀଶ୍ରୀମା'ଙ୍କୁ ଉପବେଶନ ପାଇଁ ଇଙ୍ଗିତ କଲେ । ପୂଜା ଦର୍ଶନ କରୁ କରୁ ଶ୍ରୀମତୀ ମାତାଠାକୁରାଣୀ ଏହାପୂର୍ବରୁ ଅର୍ଦ୍ଧବାହ୍ୟଦଶା ପ୍ରାପ୍ତ ହୋଇଥିଲେ । ସୁତରାଂ କ'ଣ କରୁଛନ୍ତି, ତାହା ସମ୍ୟକ୍ ନ ବୁଝି ମନ୍ତ୍ରମୁଗ୍ଧସଦୃଶ ସେ ଏବେ ପୂର୍ବମୁଖରେ ଉପବିଷ୍ଟ ଠାକୁରଙ୍କର ଦକ୍ଷିଣଭାଗରେ ଉତ୍ତରାସ୍ୟା ହୋଇ ଉପବିଷ୍ଟା ହେଲେ । ସମ୍ମୁଖସ୍ଥ କଳସର ମନ୍ତ୍ରପୂତ ବାରି ଦ୍ୱାରା

---

୧. 'ଶ୍ରୀଶ୍ରୀମା'ଙ୍କ କଥା', ୨ୟ ଭାଗ, ଦ୍ରଷ୍ଟବ୍ୟ ।

ଠାକୁର ବାରମ୍ବାର ଶ୍ରୀମା'ଙ୍କୁ ଯଥାବିଧାନରେ ଅଭିଷିକ୍ତା କଲେ । ଅନନ୍ତର ମନ୍ତ୍ର ଶ୍ରବଣ କରାଇ ସେ ବର୍ତ୍ତମାନ ପ୍ରାର୍ଥନା ମନ୍ତ୍ର ଉଚ୍ଚାରଣ କଲେ—

''ହେ ବାଳେ, ହେ ସର୍ବଶକ୍ତିର ଅଧିଶ୍ୱରୀ ମାତଃ ତ୍ରିପୁରାସୁନ୍ଦରୀ, ସିଦ୍ଧିଦ୍ୱାର ଉନ୍ମୁକ୍ତ କର, ଏହାଙ୍କର (ଶ୍ରୀଶ୍ରୀମା'ଙ୍କର) ଶରୀର ମନକୁ ପବିତ୍ର କରି ତାଙ୍କଠାରେ ଆବିର୍ଭୂତା ହୋଇ, ସର୍ବକଲ୍ୟାଣ ସାଧନ କର !''

## ପୂଜା ଶେଷରେ ସମାଧି ଓ ଠାକୁରଙ୍କର ଜପ–ପୂଜାଦି ଦେବୀଙ୍କ ଚରଣରେ ସମର୍ପଣ :

ଅତଃପର ଶ୍ରୀଶ୍ରୀମା'ଙ୍କର ଅଙ୍ଗରେ ମନ୍ତ୍ରସମୂହର ଯଥାବିଧାନରେ ନ୍ୟାସପୂର୍ବକ ଠାକୁର ସାକ୍ଷାତ୍ ଦେବୀଜ୍ଞାନରେ ତାଙ୍କୁ ଷୋଡ଼ଶୋପଚାରରେ ପୂଜା କଲେ ଏବଂ ଭୋଗ ନିବେଦନ କରି ନିବେଦିତ ବସ୍ତୁ ସକଳର କିୟଦଂଶ ସ୍ୱହସ୍ତରେ ତାଙ୍କ ମୁଖରେ ପ୍ରଦାନ କଲେ । ବାହ୍ୟଜ୍ଞାନତିରୋହିତ ହୋଇ ଶ୍ରୀଶ୍ରୀମା' ସମାଧିସ୍ଥା ହେଲେ ! ଠାକୁର ମଧ ଅର୍ଦ୍ଧବାହ୍ୟଦଶାରେ ମନ୍ତ୍ର ଉଚ୍ଚାରଣ କରୁ କରୁ ସମ୍ପୂର୍ଣ୍ଣ ସମାଧି ମଗ୍ନ ହେଲେ । ସମାଧିସ୍ଥ ପୂଜକ ସମାଧିସ୍ଥା ଦେବୀଙ୍କ ସହିତ ଆତ୍ମସ୍ୱରୂପରେ ପୂର୍ଣ୍ଣଭାବରେ ମିଳିତ ଓ ଏକୀଭୂତ ହୋଇଗଲେ ।

କେତେ ସମୟ କଟିଗଲା । ନିଶାର ଦ୍ୱିତୀୟ ପ୍ରହରର ବହୁକ୍ଷଣ ଅତୀତ ହେଲା । ଆତ୍ମାରାମ ଠାକୁରଙ୍କର ଏଥର ବାହ୍ୟସଂଜ୍ଞାର କିଛି କିଛି ଲକ୍ଷଣ ଦେଖାଗଲା । ପୂର୍ବପରି ଅର୍ଦ୍ଧବାହ୍ୟଦଶା ପ୍ରାପ୍ତ ହୋଇ ସେ ଏବେ ଦେବୀଙ୍କୁ ଆତ୍ମନିବେଦନ କଲେ । ଅନନ୍ତର ଆପଣା ସହିତ ସାଧନାର ଫଳ ଏବଂ ଜପର ମାଳା ପ୍ରଭୃତି ସର୍ବସ୍ୱ ଶ୍ରୀଶ୍ରୀଦେବୀଙ୍କର ପାଦପଦ୍ମରେ ଚିରକାଳ ପାଇଁ ବିସର୍ଜନପୂର୍ବକ ମନ୍ତ୍ର ଉଚ୍ଚାରଣ କରୁ କରୁ ତାଙ୍କୁ ପ୍ରଣାମ କଲେ—

''ହେ ସର୍ବମଙ୍ଗଳର ମଙ୍ଗଳସ୍ୱରୂପେ, ହେ ସର୍ବକର୍ମନିଷ୍ପନ୍ନକାରିଣୀ, ହେ ଶରଣଦାୟିନୀ ତ୍ରିନୟନି ଶିବ–ଗୃହିଣୀ ଗୌରୀ, ହେ ନାରାୟଣୀ, ତୁମକୁ ପ୍ରଣାମ, ତୁମକୁ ପ୍ରଣାମ କରୁଛି ।''

ପୂଜାଶେଷ ହେଲା—ମୂର୍ତ୍ତିମତୀ ବିଦ୍ୟାରୂପିଣୀ ମାନବୀଙ୍କର ଦେହାବଲମ୍ବନରେ ଈଶ୍ୱରୀଙ୍କର ଉପାସନାପୂର୍ବକ ଠାକୁରଙ୍କର ସାଧନାର ପରିସମାପ୍ତି ହେଲା—ତାଙ୍କର ଦେବ–ମାନବତ୍ୱ ସର୍ବତୋଭାବରେ ସମ୍ପୂର୍ଣ୍ଣତା ଲାଭ କଲା ।

## ଠାକୁରଙ୍କର ନିରନ୍ତର ସମାଧି ପାଇଁ ଶ୍ରୀଶ୍ରୀମା'ଙ୍କର ନିଦ୍ରାରେ ବ୍ୟାଘାତ ହେବାରୁ ଅନ୍ୟତ୍ର ଶୟନ ଏବଂ କାମାରପୁକୁର ପ୍ରତ୍ୟାଗମନ :

ଷୋଡ଼ଶୀ–ପୂଜା ପରେ ଶ୍ରୀଶ୍ରୀମାତାଠାକୁରାଣୀ ପ୍ରାୟ ପାଞ୍ଚମାସ କାଳ ଠାକୁରଙ୍କ ନିକଟରେ ଅବସ୍ଥାନ କରିଥିଲେ । ପୂର୍ବପରି ଏହି ସମୟରେ ସେ ଠାକୁର ଏବଂ ଠାକୁରଙ୍କ ମା'ଙ୍କର ସେବାରେ ନିଯୁକ୍ତା ରହି ଦିବାଭାଗ ନହବତ ଘରେ ଅତିବାହିତ କରି ରାତ୍ରିକାଳରେ ଠାକୁରଙ୍କର ଶଯ୍ୟା ପାର୍ଶ୍ୱରେ ଶୟନ କରୁଥିଲେ । ଦିବାରାତ୍ର ଠାକୁରଙ୍କର ଭାବ ସମାଧିର ବିରାମ ନ ଥିଲା ଏବଂ ବେଳେବେଳେ ନିର୍ବିକଳ୍ପ ସମାଧିରେ ତାଙ୍କର ମନ ସହସା ଏପରି ବିଲୀନ ହେଉଥିଲା ଯେ, ମୃତର ଲକ୍ଷଣସମୂହ ତାଙ୍କଦେହରେ ପ୍ରକାଶିତ ହେଉଥିଲା । କେତେବେଳେ ଠାକୁରଙ୍କର ଏପରି ସମାଧି ହୋଇଯିବ, ଏହି ଆଶଙ୍କାରେ ଶ୍ରୀଶ୍ରୀମା'ଙ୍କର ରାତ୍ରିକାଳରେ ନିଦ୍ରା ହେଉ ନ ଥିଲା । ବହୁକ୍ଷଣ ସମାଧିସ୍ଥ ହେବାପରେ ମଧ୍ୟ ଠାକୁରଙ୍କର ସଂଜ୍ଞା ହେଉ ନାହିଁ ଦେଖି ଭୀତା ଓ କିଂକର୍ତ୍ତବ୍ୟବିମୂଢ଼ା ହୋଇ ସେ ଥରେ ରାତ୍ରିରେ ହୃଦୟ ଏବଂ ଅନ୍ୟ ସମସ୍ତଙ୍କର ନିଦ୍ରାଭଙ୍ଗ କରିଥିଲେ । ପରେ ହୃଦୟ ଆସି ବହୁକ୍ଷଣ ନାମ ଶୁଣାଇବାରୁ ଠାକୁରଙ୍କର ସମାଧିଭଙ୍ଗ ହୋଇଥିଲା । ସମାଧିଭଙ୍ଗପରେ ଠାକୁର ସମସ୍ତ କଥା ଶୁଣି ଶ୍ରୀଶ୍ରୀମା'ଙ୍କର ରାତ୍ରିକାଳରେ ପ୍ରତ୍ୟହ ନିଦ୍ରାର ବ୍ୟାଘାତ ହେଉଅଛି ଜାଣି ନହବତରେ ତାଙ୍କ ଜନନୀଙ୍କ ନିକଟରେ ମାତା ଠାକୁରାଣୀଙ୍କର ଶୟନର ବନ୍ଦୋବସ୍ତ କରିଦେଲେ । ଏହିପରି ପ୍ରାୟ ଏକ ବର୍ଷ ଚାରିମାସ କାଳ ଠାକୁରଙ୍କ ନିକଟରେ ଦକ୍ଷିଣେଶ୍ୱରରେ ଅତିବାହିତ କରି ୧୨୮୦ ସାଲର ପ୍ରାରମ୍ଭର କୌଣସି ସମୟରେ (୧୮୭୩ ଖ୍ରୀଷ୍ଟାବ୍ଦ, ଅକ୍ଟୋବର ମାସରେ) ଶ୍ରୀଶ୍ରୀମା' କାମାରପୁକୁର ପ୍ରତ୍ୟାଗମନ କରିଥିଲେ ।[୧]

---

୧. 'ଶ୍ରୀଶ୍ରୀମା'ଙ୍କ କଥା', ୨ୟ ଭାଗ ।

# ଏକବିଂଶ ଅଧ୍ୟାୟ

## ସାଧକଭାବର ଶେଷକଥା

### ଷୋଡ଼ଶୀ–ପୂଜା ପରେ ଠାକୁରଙ୍କର ସାଧନା–ବାସନାର ନିବୃତ୍ତି :

ଷୋଡ଼ଶୀ–ପୂଜା ସମ୍ପନ୍ନ କରି ଠାକୁରଙ୍କର ସାଧନ–ଯଜ୍ଞ ସମ୍ପୂର୍ଣ୍ଣ ହେଲା । ଈଶ୍ୱରାନୁରାଗରୂପକ ଯେଉଁ ପୁଣ୍ୟବହ୍ନି ହୃଦୟରେ ନିରନ୍ତର ପ୍ରଜ୍ୱଳିତ ରହି ତାଙ୍କୁ ଦୀର୍ଘ ଦ୍ୱାଦଶ ବର୍ଷ ଅସ୍ଥିର କରି ନାନାଭାବରେ ସାଧନାରେ ପ୍ରବୃତ୍ତ କରାଇଥିଲା ଏବଂ ସେସବୁ ସାଧନାର ପରେ ମଧ୍ୟ ସମ୍ପୂର୍ଣ୍ଣରୂପରେ ଶାନ୍ତ ହେବାକୁ ଦେଇ ନ ଥିଲା, ପୂର୍ଣ୍ଣାହୁତି ପ୍ରାପ୍ତ ହୋଇ ଏତେ ଦିନରେ ତାହା ପ୍ରଶାନ୍ତ ଭାବ ଧାରଣ କଲା । ସେପରି ନ ହେବାର କୌଣସି କାରଣ ନ ଥିଲା, କାରଣ ଠାକୁରଙ୍କର ନିଜର କହିବାର ଏବେ ଆଉ କ'ଣ ଅଛି, ଯାହା ସେ ସାଧନ–ଯଜ୍ଞରେ ଏହାପୂର୍ବରୁ ଆହୁତି ପ୍ରଦାନ ନ କରିଛନ୍ତି ? — ଧନ, ମାନ, ନାମ, ଯଶ ଆଦି ପୃଥିବୀର ସମସ୍ତ ଭୋଗାକାଙ୍କ୍ଷା ବହୁପୂର୍ବରୁ ହିଁ ସେ ସେଥିରେ ବିସର୍ଜନ ଦେଇଛନ୍ତି । ହୃଦୟ, ପ୍ରାଣ, ମନ, ବୁଦ୍ଧି, ଚିତ୍ତ, ଅହଙ୍କାର ଆଦି ସମସ୍ତଙ୍କୁ ସାଧନ–ଯଜ୍ଞର କରାଳ ମୁଖରେ ଗୋଟି ଗୋଟି କରି ଆହୁତି ଦେଇଛନ୍ତି ! — କେବଳ ବିବିଧ ସାଧନପଥରେ ଅଗ୍ରସର ହୋଇ ନାନାଭାବରେ ଶ୍ରୀଶ୍ରୀଜଗନ୍ମାତାଙ୍କୁ ଦେଖିବାର ବାସନା ଥିଲା — ତାହା ମଧ୍ୟ ଏବେ ସେ ସେଥିରେ ନିଃଶେଷରେ ଅର୍ପଣ କଲେ ! ଅତଏବ ପ୍ରଶାନ୍ତ ନ ହୋଇ ତାହା ଏବେ ଆଉ କ'ଣ କରିବ ?

### କାରଣ, ସର୍ବଧର୍ମମତର ସାଧନା ସମ୍ପୂର୍ଣ୍ଣ କଲାପରେ ଆଉ କ'ଣ କରିବେ :

ଠାକୁର ଦେଖିଲେ, ଶ୍ରୀଶ୍ରୀଜଗଦମ୍ବା ତାଙ୍କର ପ୍ରାଣର ବ୍ୟାକୁଳତା ଦେଖି ତାଙ୍କୁ ସର୍ବପ୍ରଥମେ ଦର୍ଶନ ଦାନ କରି କୃତାର୍ଥ କରିଛନ୍ତି — ପରେ, ନାନା ଅଦ୍ଭୁତ ଗୁଣସମ୍ପନ୍ନ ବ୍ୟକ୍ତିମାନଙ୍କ ସହିତ ପରିଚିତ କରାଇ ବିଭିନ୍ନ ଶାସ୍ତ୍ରୀୟ ପଥରେ ଅଗ୍ରସର କରାଇ ଏହି ଦର୍ଶନ ପରୀକ୍ଷା କରିବାର ସୁଯୋଗ ଦେଇଛନ୍ତି — ଅତଏବ ତାଙ୍କ ନିକଟରୁ ସେ ଆଉ କ'ଣ ଚାହିଁବେ ! ଦେଖିଲେ ଚଉଷଠି ପ୍ରକାର ତନ୍ତ୍ରର ସମସ୍ତ ସାଧନ ଗୋଟି ଗୋଟି କରି ସମ୍ପନ୍ନ ହୋଇଅଛି, ବୈଷ୍ଣବତନ୍ତ୍ରୋକ୍ତ ପଞ୍ଚଭାବାଶ୍ରିତ ଯେତେ ପ୍ରକାର ସାଧନପଥ ଭାରତରେ ପ୍ରବର୍ତ୍ତିତ ଅଛି ସେସକଳ ଯଥାବିଧି ଅନୁଷ୍ଠିତ ହୋଇଅଛି, ସନାତନ ବୈଦିକ ମାର୍ଗାନୁସାରୀ ହୋଇ ସନ୍ନ୍ୟାସଗ୍ରହଣପୂର୍ବକ ଶ୍ରୀଶ୍ରୀଜଗଦମ୍ବାଙ୍କର ନିର୍ଗୁଣ ନିରାକାର ରୂପର ଦର୍ଶନ ହୋଇଅଛି ଏବଂ ଶ୍ରୀଶ୍ରୀଜଗନ୍ମାତାଙ୍କର ଅଚିନ୍ତ୍ୟ–ଲୀଳାରେ — ଭାରତର ବାହାରେ ଉଦ୍ଭୂତ ଇସ୍‌ଲାମ ମତର ସାଧନାରେ ପ୍ରବର୍ତ୍ତିତ

ହୋଇ ମଧ୍ୟ ଯଥାଯଥ ଫଳ ହସ୍ତଗତ ହୋଇଅଛି—ସୁତରାଂ ଶ୍ରୀଶ୍ରୀଜଗଦମ୍ବାଙ୍କ ନିକଟରେ ସେ ଏବେ ଆଉ କ'ଣ ଦେଖିବାକୁ ବା ଶୁଣିବାକୁ ଚାହିଁବେ !

## ଶ୍ରୀଶ୍ରୀ ଈଶା-ପ୍ରବର୍ତ୍ତିତ ଧର୍ମରେ ଠାକୁରଙ୍କର ଅଦ୍ଭୁତ ଉପାୟରେ ସିଦ୍ଧିଲାଭ :

ଏହି ସମୟର ବର୍ଷେ ପରେ କିନ୍ତୁ ଠାକୁରଙ୍କର ମନ ପୁଣି ଅନ୍ୟ ଏକ ସାଧନପଥରେ ଶ୍ରୀଶ୍ରୀଜଗଦମ୍ବାଙ୍କୁ ଦର୍ଶନ କରିବା ପାଇଁ ଉନ୍ମୁଖ ହୋଇଥିଲା । ସେତେବେଳେ ସେ ଶ୍ରୀଯୁକ୍ତ ଶମ୍ଭୁଚରଣ ମଲ୍ଲିକଙ୍କ ସହିତ ପରିଚିତ ହୋଇଥିଲେ ଏବଂ ତାଙ୍କ ନିକଟରୁ ବାଇବେଲ ଶ୍ରବଣପୂର୍ବକ ଶ୍ରୀଶ୍ରୀଈଶାଙ୍କର ପବିତ୍ର ଜୀବନର ଏବଂ ସମ୍ପ୍ରଦାୟ-ପ୍ରବର୍ତ୍ତନର କଥା ଜାଣିପାରିଛନ୍ତି । ସେହି ବାସନା ମନରେ ଈଷନ୍ମାତ୍ର ଉଦୟ ହେଉ ନ ହେଉଣୁ ଶ୍ରୀଶ୍ରୀଜଗଦମ୍ବା ତାହା ଅଦ୍ଭୁତ ଉପାୟରେ ପୂର୍ଣ୍ଣ କରି ତାଙ୍କୁ କୃତାର୍ଥ କରିଥିଲେ । ସେଥିପାଇଁ ତାଙ୍କୁ କୌଣସି ପ୍ରକାର ବିଶେଷ ଚେଷ୍ଟା କରିବାକୁ ପଡ଼ି ନ ଥିଲା । ଘଟଣା ଏହିପରି ହୋଇଥିଲା, ଦକ୍ଷିଣେଶ୍ୱର କାଳୀମନ୍ଦିରର ଦକ୍ଷିଣପାର୍ଶ୍ୱରେ ଯଦୁଲାଲ ମଲ୍ଲିକଙ୍କର ଉଦ୍ୟାନବାଟୀ ଅବସ୍ଥିତ । ଠାକୁର ସେଠାକୁ ବେଳେବେଳେ ବୁଲାବୁଲି କରିବାକୁ ଯାଉଥିଲେ । ଯଦୁଲାଲ ଏବଂ ତାଙ୍କର ମାତା ଠାକୁରଙ୍କୁ ଦର୍ଶନ କରିବା ପରଠାରୁ ତାଙ୍କୁ ବିଶେଷ ଭକ୍ତି ଶ୍ରଦ୍ଧା କରୁଥିଲେ, ସୁତରାଂ ଉଦ୍ୟାନରେ ସେମାନେ ଉପସ୍ଥିତ ନ ରହିଲେ ମଧ୍ୟ ଠାକୁର ସେଠାକୁ ବୁଲିବାକୁ ଗଲେ କର୍ମଚାରୀଗଣ ବାବୁଙ୍କର ବୈଠକଖାନା ଉନ୍ମୁକ୍ତ କରି ତାଙ୍କୁ ସେଠାରେ କିଛି ସମୟ ବସିବାକୁ ଓ ବିଶ୍ରାମ କରିବାକୁ ଅନୁରୋଧ କରୁଥିଲେ । ଉକ୍ତ ବୈଠକଖାନାକାନ୍ଥରେ ଅନେକଗୁଡ଼ିଏ ଉତ୍ତମ ଚିତ୍ର ଶୋଭିତ ଥିଲା । ତନ୍ମଧ୍ୟରେ ମାତୃକ୍ରୋଡ଼ରେ ଅବସ୍ଥିତ ଶ୍ରୀଶ୍ରୀଈଶାଙ୍କର ଗୋଟିଏ ବାଳଗୋପାଳମୂର୍ତ୍ତି ମଧ୍ୟ ଥିଲା । ଠାକୁର କହୁଥିଲେ, ସେ ଦିନେ ଉକ୍ତ ଘରେ ବସି ଏହି ଫଟୋଟିକୁ ତନ୍ମୟ ହୋଇ ଦେଖୁଥିଲେ ଏବଂ ଶ୍ରୀଶ୍ରୀଈଶାଙ୍କର ଅଦ୍ଭୁତ ଜୀବନ କଥା ଭାବୁଥିଲେ, ଏତିକି ବେଳେ ସେ ଦେଖିଲେ ଛବିଟି ଯେପରି ଜୀବନ୍ତ ଜ୍ୟୋତିର୍ମୟ ହୋଇ ଉଠିଅଛି ଏବଂ ସେହି ଅଦ୍ଭୁତ ଦେବଜନନୀ ଓ ଦେବଶିଶୁଙ୍କର ଅଙ୍ଗରୁ ଜ୍ୟୋତିରଶ୍ମିସମୂହ ତାଙ୍କର ଅନ୍ତରରେ ପ୍ରବିଷ୍ଟ ହୋଇ ତାଙ୍କର ମାନସିକ ଭାବସମୂହ ଆମୂଳ ପରିବର୍ତ୍ତନ କରି ଦେଉଅଛି ! ଜନ୍ମଗତ ହିନ୍ଦୁସଂସ୍କାରସମୂହ ଅନ୍ତରର ନିଭୃତ କୋଣରେ ଲୀନ ହୋଇ ଭିନ୍ନ ସଂସ୍କାରସମୂହ ସେଥିରେ ଉଦୟ ହେଉଅଛି ଦେଖି ଠାକୁର ସେତେବେଳେ ନାନାଭାବରେ ନିଜକୁ ସମ୍ଭାଳିବାକୁ ଚେଷ୍ଟା କରିବାକୁ ଲାଗିଲେ ଏବଂ ଶ୍ରୀଶ୍ରୀଜଗଦମ୍ବାଙ୍କୁ କାତର ହୋଇ କହିବାକୁ ଲାଗିଲେ—''ମା, ମୋତେ ଏପରି କ'ଣ କରୁଛୁ !'' କିନ୍ତୁ କେଉଁଥିରେ କିଛି ହେଲା ନାହିଁ । ସେହି ସଂସ୍କାର ତରଙ୍ଗ ପ୍ରବଳବେଗରେ ଉତ୍ଥିତ ହୋଇ ତାଙ୍କ ମନର ହିନ୍ଦୁସଂସ୍କାରସମୂହକୁ

ସମ୍ପୂର୍ଣ୍ଣ ବୁଡ଼ାଇ ଦେଲା । ସେତେବେଳେ ହିନ୍ଦୁ ଦେବଦେବୀମାନଙ୍କ ପ୍ରତି ଠାକୁରଙ୍କର ଅନୁରାଗ, ଭଲ ପାଇବା କେଉଁଆଡ଼େ ବିଲୀନ ହୋଇଗଲା ଏବଂ ଶ୍ରୀଶ୍ରୀଈଶାଙ୍କର ଏବଂ ତାଙ୍କ ପ୍ରବର୍ତ୍ତିତ ସମ୍ପ୍ରଦାୟ ପ୍ରତି ପୂର୍ଣ୍ଣ ଶ୍ରଦ୍ଧା ଓ ବିଶ୍ୱାସ ଆସି ହୃଦୟ ଅଧିକାରପୂର୍ବକ ଖ୍ରୀଷ୍ଟିୟ ପାଦ୍ରୀସମୂହ ପ୍ରାର୍ଥନାମନ୍ଦିରରେ ଶ୍ରୀଶ୍ରୀଈଶାଙ୍କର ମୂର୍ତ୍ତି ସମ୍ମୁଖରେ ଧୂପଦୀପ ଦାନ କରୁଛନ୍ତି ଓ ଅନ୍ତରର ବ୍ୟାକୁଳତା କାତର ପ୍ରାର୍ଥନାରେ ନିବେଦନ କରୁଛନ୍ତି—ଏହି ସମସ୍ତ ବିଷୟ ଠାକୁରଙ୍କର ଦର୍ଶନ ହେବାକୁ ଲାଗିଲା । ଠାକୁର ଦକ୍ଷିଣେଶ୍ୱର ମନ୍ଦିରକୁ ଫେରି ନିରନ୍ତର ଏହି ସମସ୍ତ ବିଷୟର ଧ୍ୟାନରେ ହିଁ ମଗ୍ନ ରହିଲେ ଏବଂ ଶ୍ରୀଶ୍ରୀ ଜଗନ୍ମାତାଙ୍କ ମନ୍ଦିରକୁ ଯାଇ ତାଙ୍କୁ ଦର୍ଶନ କରିବା କଥା ସମ୍ପୂର୍ଣ୍ଣ ଭୁଲିଗଲେ । ତିନି ଦିନ ପର୍ଯ୍ୟନ୍ତ ଏହି ଭାବତରଙ୍ଗ ତାଙ୍କ ଉପରେ ଏହିପରି ପ୍ରଭୁତ୍ୱ କରି ବର୍ତ୍ତମାନ ରହିଲା । ପରେ ତୃତୀୟ ଦିବସର ଅବସାନରେ ଠାକୁରେ ପଞ୍ଚବଟୀ ତଳେ ବୁଲୁ ବୁଲୁ ଦେଖିଲେ, ଏକ ଅଦୃଷ୍ଟପୂର୍ବ ଦେବମାନବ, ସୁନ୍ଦର ଗୌରବର୍ଣ୍ଣ, ସ୍ଥିରଦୃଷ୍ଟିରେ ତାଙ୍କୁ ଅବଲୋକନ କରୁ କରୁ ତାଙ୍କ ଆଡ଼କୁ ଅଗ୍ରସର ହେଉଛନ୍ତି । ଠାକୁର ତାଙ୍କୁ ଦେଖି ବୁଝିପାରିଲେ ସେ ବିଦେଶୀ ଏବଂ ବିଜାତିସମ୍ଭୂତ । ଦେଖିଲେ, ବିଶ୍ରାନ୍ତ ନୟନଯୁଗଳ ତାଙ୍କର ମୁଖର ଅପୂର୍ବ ଶୋଭା ସମ୍ପାଦନ କରୁଅଛି ଏବଂ ନାସିକା 'ସାମାନ୍ୟ ଚେପ୍‌ଟା' ହୋଇଥିଲେ ମଧ୍ୟ ଏଥିରେ ତାଙ୍କର ସେହି ସୌନ୍ଦର୍ଯ୍ୟର କିଛି ମାତ୍ର ବ୍ୟତିକ୍ରମ ସାଧିତ ହେଉ ନାହିଁ । ସେହି ସୌମ୍ୟ ମୁଖମଣ୍ଡଳର ଅପୂର୍ବ ଦେବଭାବ ଦେଖି ଠାକୁର ମୁଗ୍ଧ ହୋଇଗଲେ ଏବଂ ବିସ୍ମିତ ହୃଦୟରେ ଭାବିବାକୁ ଲାଗିଲେ—ଏ କିଏ ? ଦେଖୁ ଦେଖୁ ଉକ୍ତ ମୂର୍ତ୍ତି ତାଙ୍କ ନିକଟକୁ ଆଗମନ କଲେ ଏବଂ ଠାକୁରଙ୍କର ପୂତ ହୃଦୟର ଅନ୍ତସ୍ଥଳରୁ ଧ୍ୱନିତ ହେବାକୁ ଲାଗିଲା, 'ଈଶାମସି—ଦୁଃଖ-ଯାତନାରୁ ଜୀବକୂଳକୁ ଉଦ୍ଧାର ନିମିତ୍ତ ଯିଏ ହୃଦୟର ଶୋଣିତ ଦାନ କରି ମାନବହସ୍ତରେ ଅଶେଷ ନିର୍ଯାତନ ସହ୍ୟ କରିଥିଲେ, ସେହି ଈଶ୍ୱରାଭିନ୍ନ ପରମ ଯୋଗୀ ଓ ପ୍ରେମିକ ଖ୍ରୀଷ୍ଟ ଈଶାମସି !' ସେହି ଦେବମାନବ ଈଶା, ଠାକୁରଙ୍କୁ ଆଲିଙ୍ଗନ କରି ତାଙ୍କର ଶରୀରରେ ଲୀନ ହେଲେ ଏବଂ ଭାବାବିଷ୍ଟ ହୋଇ ବାହ୍ୟଜ୍ଞାନ ହରାଇ ଠାକୁରଙ୍କର ମନ ସଗୁଣ ବିରାଟବ୍ରହ୍ମ ସହିତ କେତେକ୍ଷଣ ଏକୀଭୂତ ହୋଇ ରହିଲା ! ଏପରି ଭାବରେ ଶ୍ରୀଶ୍ରୀଈଶାଙ୍କର ଦର୍ଶନଲାଭ କରି ଠାକୁର ତାଙ୍କର ଅବତାରତ୍ୱ ସମ୍ବନ୍ଧରେ ନିଃସନ୍ଦିଗ୍ଧ ହୋଇଥିଲେ ।

### ଶ୍ରୀଶ୍ରୀଈଶାସମ୍ବନ୍ଧୀୟ ଠାକୁରଙ୍କର ଦର୍ଶନ କିପରି ସତ୍ୟ ବୋଲି ପ୍ରମାଣିତ ହୋଇଥିଲା :

ଏହାର ବହୁକାଳ ପରେ ଆମେ ଯେତେବେଳେ ଠାକୁରଙ୍କୁ ଦର୍ଶନ କରିବାକୁ ଯାଉଥିଲୁ, ସେତେବେଳେ ସେ ଦିନେ ଶ୍ରୀଶ୍ରୀଈଶାଙ୍କ ପ୍ରସଙ୍ଗ ଉତ୍‌ଥାପନ କରି

ଆମକୁ କହିଥିଲେ, ''ହଁ ରେ, ତୁମେ ତ ବାଇବେଲ ପଢ଼ିଛ, କୁହ ତ ସେଥିରେ ଈଶାଙ୍କର ଶାରୀରିକ ଗଠନ ସମ୍ବନ୍ଧରେ କ'ଣ ଲେଖାଅଛି ? ସେ ଦେଖିବାକୁ କିପରି ଥିଲେ ?'' ଆମେ କହିଲୁ, ''ମହାଶୟ, ଏକଥା ବାଇବେଲରେ କୌଣସି ସ୍ଥାନରେ ଉଲ୍ଲିଖିତ ଦେଖି ନାହୁଁ; ତେବେ ଈଶା ଇହୁଦି ଜାତିରେ ଜନ୍ମଗ୍ରହଣ କରିଥିଲେ । ଅତଏବ ନିଶ୍ଚୟ ସେ ସୁନ୍ଦର ଗୌରବର୍ଣ୍ଣ ହୋଇଥିବେ ଏବଂ ତାଙ୍କର ଚକ୍ଷୁ ବିଶ୍ରାନ୍ତ ଏବଂ ନାସିକା ଦୀର୍ଘ ଓ ତୀକ୍ଷ୍ଣ ହୋଇଥିବ !'' ଠାକୁର ଶୁଣି କହିଲେ, କିନ୍ତୁ ମୁଁ ତ ଦେଖିଛି ତାଙ୍କର ନାକ ଟିକେ ଚେପଟା ! କାହିଁକି ଏପରି ଦେଖିଲି କିଏ ଜାଣେ !'' ଠାକୁରଙ୍କର ସେହି କଥାରେ ସେତେବେଳେ କିଛି ନ କହିଲେ ମଧ୍ୟ ଆମେ ଭାବିଥିଲୁ ତାଙ୍କର ଭାବାବେଶରେ ଦୃଷ୍ଟ ମୂର୍ତ୍ତି ଈଶାଙ୍କର ବାସ୍ତବିକ୍ ମୂର୍ତ୍ତି ସହିତ କିପରି ମିଶିବ ? ଇହୁଦୀଜାତୀୟ ପୁରୁଷମାନଙ୍କ ପରି ଈଶାଙ୍କର ନାସିକା ତୀକ୍ଷ୍ଣ ଥିବ ନିଶ୍ଚୟ । ମାତ୍ର ଠାକୁରଙ୍କର ଶରୀରରକ୍ଷାର କିଛିକାଳ ପରେ ଜାଣିଲୁ ଯେ, ଈଶାଙ୍କର ଶାରୀରିକ ଗଠନ ସମ୍ବନ୍ଧରେ ତିନିପ୍ରକାରର ବିବରଣ ଲିପିବଦ୍ଧ ଅଛି ଏବଂ ତା'ମଧ୍ୟରେ ଗୋଟିକରେ ତାଙ୍କର ନାସିକା ସାମାନ୍ୟ ଚେପ୍ଟା ଥିବା ଉଲ୍ଲିଖିତ ଅଛି ।

### ଭଗବାନ ବୁଦ୍ଧଙ୍କର ଅବତାରତ୍ୱ ଓ ତାଙ୍କର ଧର୍ମମତସମ୍ବନ୍ଧରେ ଠାକୁରଙ୍କର କଥା :

ଠାକୁରଙ୍କର ଏହିପରି ପୃଥିବୀରେ ପ୍ରଚଳିତ ପ୍ରଧାନ ପ୍ରଧାନ ଯାବତୀୟ ଧର୍ମମତଗୁଡ଼ିକରେ ସିଦ୍ଧ ହେବା ଜାଣି ପାଠକଙ୍କ ମନରେ ପ୍ରଶ୍ନ ଉଦୟ ହୋଇପାରେ, ଶ୍ରୀଶ୍ରୀବୁଦ୍ଧଦେବଙ୍କ ସମ୍ବନ୍ଧରେ ଠାକୁରଙ୍କର କିପରି ଧାରଣା ଥିଲା । ସେଥିପାଇଁ ଏହି ପ୍ରସଙ୍ଗରେ ଆମମାନଙ୍କର ଯାହା ଜଣା ଅଛି ତାହା ଏଠାରେ ଲିପିବଦ୍ଧ କରିବା ଭଲ । ଭଗବାନ ଶ୍ରୀବୁଦ୍ଧଦେବଙ୍କ ସମ୍ବନ୍ଧରେ ଠାକୁର ସାଧାରଣ ହିନ୍ଦୁମାନେ ଯେପରି ବିଶ୍ୱାସ କରିଥାଆନ୍ତି ସେହିପରି ବିଶ୍ୱାସ କରୁଥିଲେ; ଅର୍ଥାତ୍ ଶ୍ରୀବୁଦ୍ଧଦେବଙ୍କୁ ସେ ଈଶ୍ୱରଙ୍କର ଅବତାର ବୋଲି ସର୍ବଦା ଶ୍ରଦ୍ଧା ଏବଂ ପୂଜା ଅର୍ପଣ କରୁଥିଲେ ଏବଂ ପୁରୀଧାମସ୍ଥ ଶ୍ରୀଶ୍ରୀଜଗନ୍ନାଥ-ସୁଭଦ୍ରା-ବଳଭଦ୍ରରୂପକ ତ୍ରିରତ୍ନମୂର୍ତ୍ତିରେ ଶ୍ରୀଭଗବାନ ବୁଦ୍ଧାବତାରଙ୍କ ପ୍ରକାଶ ଅଦ୍ୟାପି ବର୍ତ୍ତମାନ ବୋଲି ବିଶ୍ୱାସ କରୁଥିଲେ । ଶ୍ରୀଶ୍ରୀଜଗନ୍ନାଥଦେବଙ୍କର ପ୍ରସାଦରେ ଭେଦବୁଦ୍ଧିର ଲୋପ ହୋଇ ମାନବସାଧାରଣଙ୍କର ଜାତିବୁଦ୍ଧି ବିରହିତ ହେବା-ରୂପକ ଉକ୍ତ ଧାମର ମାହାତ୍ମ୍ୟ କଥା ଶୁଣି ସେ ସେଠାକୁ ଯିବାପାଇଁ ଉତ୍ସୁକ ହୋଇଥିଲେ । କିନ୍ତୁ ସେଠାକୁ ଗଲେ ନିଜ ଶରୀରନାଶର ସମ୍ଭାବନା ଜାଣିପାରି ଏବଂ ଯୋଗଦୃଷ୍ଟିସହାୟରେ ଶ୍ରୀଶ୍ରୀଜଗଦମ୍ବାଙ୍କର ଏବିଷୟରେ ଅନ୍ୟପ୍ରକାରର ଅଭିପ୍ରାୟ ବୁଝି ଉକ୍ତ ସଂକଳ୍ପ ପରିତ୍ୟାଗ କରିଥିଲେ ।[୧] ଗଙ୍ଗାବାରିକୁ ସାକ୍ଷାତ୍ ବ୍ରହ୍ମବାରି ବୋଲି

୧. ଗୁରୁଭାବ—ଉତ୍ତରାର୍ଦ୍ଧ, ୩ୟ ଅଧ୍ୟାୟ ।

ଠାକୁର ସତତ ବିଶ୍ୱାସ କରୁଥିବା କଥା ଆମେ ଇତିପୂର୍ବରୁ ଉଲ୍ଲେଖ କରିଅଛୁ, ଶ୍ରୀଶ୍ରୀଜଗନ୍ନାଥଦେବଙ୍କର ପ୍ରସାଦୀ ଅନ୍ନଗ୍ରହଣରେ ମନୁଷ୍ୟର ବିଷୟାସକ୍ତ ମନ ତତ୍କ୍ଷଣାତ୍ ପବିତ୍ର ହୋଇଥାଏ ଏବଂ ଆଧ୍ୟାତ୍ମିକ ଭାବଧାରଣର ଉପଯୋଗୀ ହୋଇଥାଏ, ଏହି କଥାରେ ମଧ୍ୟ ସେ ସେହିପରି ଦୃଢ଼ ବିଶ୍ୱାସ ରଖୁଥିଲେ । ବିଷୟୀ ଲୋକଙ୍କ ସହିତ କିଛି ସମୟ ଅତିବାହିତ କରିବାକୁ ବାଧ୍ୟ ହେଲେ ସେ ତାହାପରେ ସାମାନ୍ୟ ଗଙ୍ଗାଜଳ ଓ 'ନିର୍ମାଲ୍ୟ' ମହାପ୍ରସାଦ ଗ୍ରହଣ କରୁଥିଲେ ଏବଂ ତାଙ୍କର ଶିଷ୍ୟମାନଙ୍କୁ ମଧ୍ୟ ସେପରି କରିବାକୁ କହୁଥିଲେ । ଶ୍ରୀଭଗବାନ ବୁଦ୍ଧଙ୍କ ଅବତାରତ୍ୱରେ ଠାକୁରଙ୍କର ବିଶ୍ୱାସ ସମ୍ବନ୍ଧରେ ଉପରୋକ୍ତ କଥାଗୁଡ଼ିକ ବ୍ୟତୀତ ଆଉ ଗୋଟିଏ କଥା ମଧ୍ୟ ଆମେ ଜାଣିପାରିଥିଲୁ । ଠାକୁରଙ୍କର ପରମ ଅନୁଗତ ଭକ୍ତ ମହାକବି ଶ୍ରୀଗିରିଶଚନ୍ଦ୍ର ଘୋଷ ମହାଶୟ ଶ୍ରୀଶ୍ରୀବୁଦ୍ଧାବତାରର ଲୀଳାମୟ ଜୀବନ ଯେତେବେଳେ ନାଟକ ଆକାରରେ ପ୍ରକାଶିତ କଲେ, ସେତେବେଳେ ଠାକୁର ତାହା ଶ୍ରବଣ କରି କହିଥିଲେ, ''ଶ୍ରୀଶ୍ରୀବୁଦ୍ଧଦେବ ଈଶ୍ୱରଙ୍କର ଅବତାର ଥିଲେ ନିଶ୍ଚୟ, ତାଙ୍କର ପ୍ରବର୍ତ୍ତିତ ମତରେ ଓ ବୈଦିକ ଜ୍ଞାନମାର୍ଗରେ କୌଣସି ପ୍ରଭେଦ ନାହିଁ ।'' ଆମମାନଙ୍କର ଧାରଣା, ଠାକୁର ଯୋଗଦୃଷ୍ଟି ସହାୟରେ ହିଁ ଏହା ଜାଣି ସେହିପରି କହିଥିଲେ ।

### ଠାକୁରଙ୍କର ଜୈନ ଏବଂ ଶିଖ୍ ଧର୍ମମତରେ ଭକ୍ତି–ବିଶ୍ୱାସ :

ଜୈନ ଧର୍ମର ପ୍ରବର୍ତ୍ତକ ତୀର୍ଥଙ୍କରମାନଙ୍କର ଏବଂ ଶିଖ୍ ଧର୍ମର ପ୍ରବର୍ତ୍ତକ ଗୁରୁ ନାନକଙ୍କଠାରୁ ଆରମ୍ଭ କରି ଗୁରୁଗୋବିନ୍ଦଙ୍କ ପର୍ଯ୍ୟନ୍ତ ଦଶଗୁରୁଙ୍କ ସମ୍ବନ୍ଧରେ ଅନେକ କଥା ଠାକୁର ପର–ଜୀବନରେ ଜୈନ ଏବଂ ଶିଖ୍ ଧର୍ମାବଲମ୍ବୀମାନଙ୍କ ନିକଟରୁ ଶୁଣିଥିଲେ । ଏଥିରେ ତାଙ୍କର ଏସମସ୍ତ ସମ୍ପ୍ରଦାୟ ପ୍ରବର୍ତ୍ତକଙ୍କ ଉପରେ ବିଶେଷ ଭକ୍ତିଶ୍ରଦ୍ଧାର ଉଦୟ ହୋଇଥିଲା । ଅନ୍ୟାନ୍ୟ ଦେବଦେବୀଙ୍କର ଆଲେଖ୍ୟ ସହିତ ତାଙ୍କର ଘରର ଏକପାର୍ଶ୍ୱରେ ମହାବୀର ତୀର୍ଥଙ୍କରଙ୍କ ଏକ ପ୍ରସ୍ତରମୟୀ ପ୍ରତିମୂର୍ତ୍ତି ଏବଂ ଶ୍ରୀଶ୍ରୀଈଶାଙ୍କର ଏକ ଫଟୋଚିତ୍ର ସ୍ଥାପିତ ଥିଲା । ପ୍ରତ୍ୟହ ପ୍ରାତଃ ଏବଂ ସନ୍ଧ୍ୟାରେ ଠାକୁର ଏହି ସମସ୍ତ ଆଲେଖ୍ୟ ଓ ମୂର୍ତ୍ତି ସମ୍ମୁଖରେ ଧୂପ ପ୍ରଦାନ କରୁଥିଲେ । ସେହିପରି ବିଶେଷ ଶ୍ରଦ୍ଧାଭକ୍ତି ପ୍ରଦର୍ଶନ କରୁଥିଲେ ମଧ୍ୟ ଆମେ ତାଙ୍କୁ ତୀର୍ଥଙ୍କରମାନଙ୍କୁ ଅଥବା ଦଶଗୁରୁଙ୍କ ମଧ୍ୟରେ କାହାକୁ ମଧ୍ୟ ଈଶ୍ୱରଙ୍କ ଅବତାର ବୋଲି ନିର୍ଦ୍ଦେଶ କରିବାର ଶୁଣି ନାହୁଁ । ଶିଖ୍ମାନଙ୍କର ଦଶଗୁରୁଙ୍କ ସମ୍ବନ୍ଧରେ ଠାକୁର କହୁଥିଲେ, ''ସେମାନେ ସମସ୍ତେ ଜନକ ଋଷିଙ୍କର ଅବତାର— ଶିଖ୍ମାନଙ୍କ ନିକଟରୁ ଶୁଣିଛି, ରାଜର୍ଷି ଜନକଙ୍କର ମନରେ ମୁକ୍ତିଲାଭ କରିବା ପୂର୍ବରୁ ଲୋକକଲ୍ୟାଣ ସାଧନ କରିବାର କାମନା ଉଦୟ ହୋଇଥିଲା ଏବଂ ସେଥିପାଇଁ ସେ ନାନକଙ୍କଠାରୁ ଆରମ୍ଭ କରି ଗୋବିନ୍ଦଙ୍କ ପର୍ଯ୍ୟନ୍ତ ଦଶ ଗୁରୁରୂପରେ ଦଶଥର

ଜନ୍ମଗ୍ରହଣ କରି ଶିଖ୍ ଜାତି ମଧ୍ୟରେ ଧର୍ମସଂସ୍ଥାପନପୂର୍ବକ ପରଂବ୍ରହ୍ମଙ୍କ ସହିତ ଚିରକାଳ ନିମିତ୍ତ ମିଳିତ ହୋଇଥିଲେ; ଶିଖ୍‌ମାନଙ୍କର ଏହି କଥା ମିଥ୍ୟା ହେବାର କୌଣସି କାରଣ ନାହିଁ ।''

## ସର୍ବଧର୍ମମତରେ ସିଦ୍ଧ ହୋଇ ଠାକୁରଙ୍କର ଅସାଧାରଣ ଉପଲବ୍ଧିସମୂହର ଆବୃତ୍ତି :

ସେ ଯାହାହେଉ, ସର୍ବ ସାଧନାରେ ସିଦ୍ଧିଲାଭ କରି ଠାକୁରଙ୍କର କେତେଗୁଡ଼ିଏ ଅସାଧାରଣ ଉପଲବ୍ଧି ହୋଇଥିଲା । ଏହି ଉପଲବ୍ଧିଗୁଡ଼ିକର କେତେକ ଠାକୁରଙ୍କର ନିଜ ସମ୍ବନ୍ଧରେ ଥିଲା ଏବଂ କେତେଗୁଡ଼ିଏ ସାଧାରଣ ଆଧ୍ୟାତ୍ମିକ ବିଷୟ ସମ୍ବନ୍ଧରେ ଥିଲା । ସେସବୁର କିଛି କିଛି ଆମେ ବର୍ତ୍ତମାନ ଗ୍ରନ୍ଥରେ ଏହାପୂର୍ବରୁ ପାଠକଙ୍କୁ କହିଥିଲେ ମଧ୍ୟ ପ୍ରଧାନ ପ୍ରଧାନଗୁଡ଼ିକର ଏଠାରେ ଉଲ୍ଲେଖ କରୁଛୁ । ସାଧନକାଳର ଅବସାନରେ ଠାକୁର ଶ୍ରୀଶ୍ରୀଜଗନ୍ମାତାଙ୍କ ସହିତ ନିତ୍ୟଯୁକ୍ତ ହୋଇ ଭାବମୁଖରେ ରହିବା ସମୟରେ ସେହି ଉପଲବ୍ଧିଗୁଡ଼ିକର ସମ୍ୟକ୍ ଅର୍ଥ ହୃଦୟଙ୍ଗମ କରିଥିଲେ ବୋଲି ଆମମାନଙ୍କର ଧାରଣା । ସେ ଯୋଗଦୃଷ୍ଟି ସହାୟରେ ଏହି ସମସ୍ତ ଉପଲବ୍ଧି ପ୍ରତ୍ୟକ୍ଷ କରିଥିଲେ ମଧ୍ୟ ସାଧାରଣ ମାନବ ବୁଦ୍ଧିରେ ଏସବୁ ସମ୍ବନ୍ଧରେ ଯେତେଟା ବୁଝି ହୁଏ, ତାହା ମଧ୍ୟ ଆମେ ପାଠକଙ୍କୁ କହିବାକୁ ଚେଷ୍ଟା କରିବୁ ।

### (୧) ସେ ଈଶ୍ୱରାବତାର :

ପ୍ରଥମ—ଠାକୁରଙ୍କର ଧାରଣା ହୋଇଥିଲା ସେ ଈଶ୍ୱରଙ୍କର ଅବତାର, ଆଧିକାରିକ ପୁରୁଷ, ତାଙ୍କର ସାଧନ-ଭଜନ ଅନ୍ୟ ପାଇଁ ସାଧିତ ହୋଇଅଛି । ନିଜ ସହିତ ଅପର ସାଧକ-ଜୀବନର ତୁଳନା କରି ସେ ଉଭୟର ବିଶେଷ ପାର୍ଥକ୍ୟ ସାଧାରଣ ଦୃଷ୍ଟିରେ ବୁଝିପାରିଥିଲେ । ଠାକୁର ଦେଖିଥିଲେ, ସାଧାରଣ ସାଧକ ଗୋଟିଏ ମାତ୍ର ଭାବ ସହାୟରେ ସାରା ଜୀବନ ଚେଷ୍ଟାକରି ଈଶ୍ୱରଙ୍କର ଦର୍ଶନଲାଭପୂର୍ବକ ଶାନ୍ତିର ଅଧିକାରୀ ହୁଏ; କିନ୍ତୁ ତାଙ୍କର ସେପରି ନ ହୋଇ ଯେତେଦିନ ପର୍ଯ୍ୟନ୍ତ ସେ ସମସ୍ତ ଧର୍ମ-ମତର ସାଧନା ନ କରିଥିଲେ, ସେତେଦିନ କୌଣସି ପ୍ରକାରରେ ଶାନ୍ତ ହୋଇପାରି ନ ଥିଲେ ଏବଂ ପ୍ରତ୍ୟେକ ମତର ସାଧନାରେ ସିଦ୍ଧ ହେବାକୁ ତାଙ୍କର ଅତି ଅଳ୍ପ ସମୟ ଲାଗିଥିଲା । କାରଣ ବ୍ୟତୀତ କାର୍ଯ୍ୟର ଉତ୍ପତ୍ତି ଅସମ୍ଭବ; ପୂର୍ବୋକ୍ତ ବିଷୟର କାରଣ ଅନୁସନ୍ଧାନ ହିଁ ଠାକୁରଙ୍କୁ ଏବେ ଯୋଗାରୂଢ଼ କରାଇ ତାହାର କାରଣ ଅନୁଭବ କରାଇଥିଲା । ଠାକୁରଙ୍କୁ ଏହା ଜ୍ଞାତ ହୋଇଥିଲା ସେ ଶୁଦ୍ଧ-ବୁଦ୍ଧ-ମୁକ୍ତ -ସ୍ୱଭାବ ସର୍ବଶକ୍ତିମାନ ଈଶ୍ୱରଙ୍କର ବିଶେଷ ଅବତାର ବୋଲି ହିଁ ତାଙ୍କର ଏପରି ହୋଇଅଛି ଏବଂ ସେ ବୁଝିଥିଲେ ଯେ, ତାଙ୍କର ଅଦୃଷ୍ଟପୂର୍ବ ସାଧନାସମୂହ ଆଧ୍ୟାତ୍ମିକ ରାଜ୍ୟରେ ନୂତନ

ଆଲୋକ ଆନୟନପୂର୍ବକ ଜୀବର କଲ୍ୟାଣସାଧନ ନିମିତ୍ତ ଅନୁଷ୍ଠିତ ହୋଇଅଛି, ତାଙ୍କର ବ୍ୟକ୍ତିଗତ ଅଭାବମୋଚନ ପାଇଁ ନୁହେଁ ।

## (୨) ତାଙ୍କର ମୁକ୍ତି ନାହିଁ :

ଦ୍ୱିତୀୟ—ତାଙ୍କର ଧାରଣା ହୋଇଥିଲା, ଅନ୍ୟ ଜୀବଙ୍କ ସଦୃଶ ତାଙ୍କର ମୁକ୍ତି ହେବ ନାହିଁ । ସାଧାରଣ ଯୁକ୍ତିସହାୟରେ ଏକଥା ବୁଝିବାରେ ବିଳମ୍ବ ହୁଏ ନାହିଁ । କାରଣ ଯିଏ ଈଶ୍ୱରଙ୍କଠାରୁ ସର୍ବଦା ଅଭିନ୍ନ—ତାଙ୍କର ଅଂଶ ବିଶେଷ, ସେ ତ ସର୍ବଦା ହିଁ ଶୁଦ୍ଧ-ବୁଦ୍ଧ-ମୁକ୍ତ-ସ୍ୱଭାବ, ତାଙ୍କର ଅଭାବ ବା ପରିଚ୍ଛିନ୍ନତା ନାହିଁ; ତେଣୁ ମୁକ୍ତି କିପରି ହେବ ? ଈଶ୍ୱରଙ୍କର ଜୀବକଲ୍ୟାଣସାଧନ-ରୂପକ କର୍ମ ଯେତେଦିନ ଥିବ ସେତେ ଦିନ ତାଙ୍କୁ ମଧ୍ୟ ଯୁଗେ ଯୁଗେ ଅବତୀର୍ଣ୍ଣ ହୋଇ ଏସମସ୍ତ କରିବାକୁ ହେବ—ଅତଏବ ତାଙ୍କର ମୁକ୍ତି କିପରି ହେବ ? ଠାକୁର ଯେପରି କହୁଥିଲେ, ‘‘ସରକାରୀ କର୍ମଚାରୀଙ୍କୁ ଜମିଦାରୀର ଯେଉଁଠାରେ ଗୋଳମାଳ ଉପସ୍ଥିତ ହେବ ସେଠାକୁ ହିଁ ଯିବାକୁ ହେବ ।’’ ଯୋଗଦୃଷ୍ଟି ସହାୟରେ ସେ ନିଜ ସମ୍ବନ୍ଧରେ କେବଳ ଯେ ଏହି କଥା ଜାଣିଥିଲେ ତା ନୁହେଁ, ମାତ୍ର ଉତ୍ତର-ପଶ୍ଚିମ କୋଣ ଦେଖାଇ ଆମକୁ ଅନେକ ସମୟରେ କହିଥିଲେ ଆଗାମୀ ଥର ତାଙ୍କୁ ସେହି ଦିଗରେ ଆସିବାକୁ ପଡ଼ିବ । ଆମମାନଙ୍କ ମଧ୍ୟରୁ କେହି କେହିଂ[୧] କହନ୍ତି, ସେ ସେମାନଙ୍କୁ ସେହି ଆଗମନର ସମୟ ନିରୂପଣ ମଧ୍ୟ କରି କହିଥିଲେ, ଦୁଇଶତ ବର୍ଷ ପରେ ସେହି ଦିଗକୁ ଆସିବାକୁ ହେବ, ସେତେବେଳେ ଅନେକେ ମୁକ୍ତି ଲାଭ କରିବେ; ଏବଂ ଯେଉଁମାନେ ସେତେବେଳେ ମୁକ୍ତିଲାଭ ନ କରିବେ, ସେମାନଙ୍କୁ ଏଥିପାଇଁ ଅନେକ କାଳ ଅପେକ୍ଷା କରିବାକୁ ପଡ଼ିବ !’’

## (୩) ନିଜର ଦେହରକ୍ଷାର ସମୟ ଜାଣିପାରିବା :

ତୃତୀୟ—ଯୋଗାରୂଢ଼ ହୋଇ ଠାକୁର ନିଜର ଦେହରକ୍ଷାର କାଳ ବହୁ ଆଗରୁ ଜାଣି ପାରିଥିଲେ । ଦକ୍ଷିଣେଶ୍ୱରରେ ଶ୍ରୀମତୀ ମାତାଠାକୁରାଣୀଙ୍କୁ ଏବିଷୟରେ ଦିନେ ସେ ଭାବାବେଶରେ ଏପରି କହିଥିଲେ—

‘‘ଯେତେବେଳେ ଦେଖିବ ଯାହା ତାହା ହାତରୁ ଖାଇବି, କଲିକତାରେ ରାତ୍ରିଯାପନ କରିବି ଓ ଖାଦ୍ୟର ଅଗ୍ରଭାଗ ଅନ୍ୟକୁ ଖୁଆଇ ପରେ ସ୍ୱୟଂ ଅବଶିଷ୍ଟାଂଶ ଗ୍ରହଣ କରିବି, ସେତେବେଳେ ଜାଣିବ ଦେହରକ୍ଷା କରିବାର ସମୟ ନିକଟବର୍ତ୍ତୀ ହୋଇଅଛି ।’’—ଠାକୁରଙ୍କର ପୂର୍ବୋକ୍ତ କଥା ଅକ୍ଷରେ ଅକ୍ଷରେ ସତ୍ୟ ହୋଇଥିଲା ।

---

୧. ମହାକବି ଶ୍ରୀଗିରିଶଚନ୍ଦ୍ର ଘୋଷ ପ୍ରଭୃତି ।

ଆଉ ଦିନେ ଭାବାବିଷ୍ଟ ହୋଇ ଠାକୁର ଶ୍ରୀଶ୍ରୀମା'ଙ୍କୁ ଦକ୍ଷିଣେଶ୍ୱରରେ କହିଥିଲେ, ''ଶେଷ ସମୟରେ ଆଉ କିଛି ଖାଇବି ନାହିଁ, କେବଳ ପାୟସାନ୍ନ ଖାଇବି''—ଏହା ସତ୍ୟ ହେବା କଥା ଆମେ ପୂର୍ବେ କହିଛୁ ।[୧]

ଆଧ୍ୟାତ୍ମିକ ବିଷୟ ସମ୍ବନ୍ଧରେ ଠାକୁରଙ୍କର ଦ୍ୱିତୀୟ ପ୍ରକାରର ଉପଲବ୍ଧିଗୁଡ଼ିକ ଏବେ ଆମେ ଲିପିବଦ୍ଧ କରିବୁ—

### (୪) ସବୁ ଧର୍ମ ସତ୍ୟ—ଯେତେ ମତ ସେତେ ପଥ :

ପ୍ରଥମ—ସବୁ ମତର ସାଧନରେ ସିଦ୍ଧିଲାଭ କରି ଠାକୁରଙ୍କ ଦୃଢ଼ ଧାରଣା ହୋଇଥିଲା, 'ସବୁ ଧର୍ମ ସତ୍ୟ—ଯେତେ ମତ ସେତେ ପଥ' । ଯୋଗବୁଦ୍ଧି ଏବଂ ସାଧାରଣ ବୁଦ୍ଧି ଉଭୟ ସାହାଯ୍ୟରେ ଠାକୁର ଯେ ଏହି କଥା ବୁଝିଥିଲେ, ଏହା ବୁଝାଯାଏ । କାରଣ ସମସ୍ତ ପ୍ରକାର ଧର୍ମମତର ସାଧନାରେ ଅଗ୍ରସର ହୋଇ ସେଗୁଡ଼ିକ ପ୍ରତ୍ୟେକଟିର ଯଥାର୍ଥ ଫଳ ଜୀବନରେ ପ୍ରତ୍ୟକ୍ଷ କରିଥିଲେ । ଯୁଗାବତାର ଠାକୁରଙ୍କର ତାହା ପ୍ରଚାରପୂର୍ବକ ପୃଥିବୀର ଧର୍ମ-ବିରୋଧ ଓ ଧର୍ମଗ୍ଲାନି ନିବାରଣ ନିମିତ୍ତ ଯେ ବର୍ତ୍ତମାନ କାଳରେ ଆଗମନ, ଏକଥା ବୁଝିବାରେ ବିଳମ୍ବ ହୁଏ ନାହିଁ । କାରଣ, କୌଣସି ଈଶ୍ୱରାବତାର ଏହାପୂର୍ବରୁ ସାଧନାସହାୟରେ ସେହି କଥା ନିଜ ଜୀବନରେ ପୂର୍ଣ୍ଣ ଉପଲବ୍ଧିପୂର୍ବକ ଜଗତକୁ ସେହି ବିଷୟରେ ଶିକ୍ଷା ପ୍ରଦାନ କରିନାହାନ୍ତି । ଆଧ୍ୟାତ୍ମିକ ମତର ଉଦାରତା ନେଇ ସମସ୍ତ ଅବତାରଙ୍କର ସ୍ଥାନନିର୍ଦ୍ଦେଶ କରିବାକୁ ହେଲେ, ସେହି ବିଷୟ ପ୍ରଚାର ନିମିତ୍ତ ଠାକୁରଙ୍କୁ ନିଃସନ୍ଦେହରେ ସର୍ବୋଚ୍ଚ ଆସନ ପ୍ରଦାନ କରିବାକୁ ହୋଇଥାଏ ।

### (୫) ଦ୍ୱୈତ, ବିଶିଷ୍ଟାଦ୍ୱୈତ ଏବଂ ଅଦ୍ୱୈତମତ ମାନବକୁ ଅବସ୍ଥାଭେଦରେ ଅବଲମ୍ବନ କରିବାକୁ ହେବ :

ଦ୍ୱିତୀୟ—ଦ୍ୱୈତ, ବିଶିଷ୍ଟାଦ୍ୱୈତ ଓ ଅଦ୍ୱୈତ ମତ ପ୍ରତ୍ୟେକ ମାନବର ଆଧ୍ୟାତ୍ମିକ ଉନ୍ନତି ସଙ୍ଗେ ସଙ୍ଗେ ସ୍ୱତଃ ଆସି ଉପସ୍ଥିତ ହୁଏ—ଅତଏବ ଠାକୁର କହୁଥିଲେ, ଏସବୁ ପରସ୍ପରବିରୋଧୀ ନୁହଁନ୍ତି, କିନ୍ତୁ ମାନବ ମନର ଆଧ୍ୟାତ୍ମିକ ଉନ୍ନତି ଓ ଅବସ୍ଥାସାପେକ୍ଷ । ଠାକୁରଙ୍କର ଏହି ପ୍ରକାର ପ୍ରତ୍ୟକ୍ଷଗୁଡ଼ିକ ଅନନ୍ତ ଶାସ୍ତ୍ର ବୁଝିବା ନିମିତ୍ତ ଯେ କେତେଦୂର ସହାୟତା କରିବ, ତାହା ସ୍ୱଳ୍ପ-ଚିନ୍ତାରେ ଉପଲବ୍ଧି ହୁଏ । ବେଦ-ଉପନିଷଦ ଆଦି ଶାସ୍ତ୍ରରେ ପୂର୍ବୋକ୍ତ ତିନି ମତର କଥା ଋଷିଗଣକର୍ତ୍ତୃକ ଲିପିବଦ୍ଧ ହୋଇଥିବାରୁ ଯେଉଁ ଅନନ୍ତ ଗଣ୍ଡଗୋଳ ସୃଷ୍ଟିକରି ଶାସ୍ତ୍ରୋକ୍ତ ଧର୍ମମାର୍ଗକୁ ଜଟିଳ କରି ରଖିଛି, ତାହା କହିବାର ନୁହେଁ । ପ୍ରତ୍ୟେକ ସମ୍ପ୍ରଦାୟ ଋଷିମାନଙ୍କର ଏହି ତିନି ପ୍ରକାରର ପ୍ରତ୍ୟକ୍ଷ ଏବଂ ଉକ୍ତିଗୁଡ଼ିକୁ ସାମଞ୍ଜସ୍ୟ କରି ନ ପାରି ଭାଷାକୁ ବଦଳାଇ ଏସବୁ ଏକ ହିଁ ଭାବାତ୍ମକ ବୋଲି ପ୍ରତିପନ୍ନ କରିବାକୁ ଯଥାସାଧ୍ୟ ଚେଷ୍ଟା

---

୧. ଗୁରୁଭାବ—ପୂର୍ବାର୍ଦ୍ଧ, ୨ୟ ଅଧ୍ୟାୟ ।

କରିଛନ୍ତି । ଟୀକାକାରମାନଙ୍କର ଏହି ପ୍ରକାର ଚେଷ୍ଟାରେ ଫଳ ଏହା ହିଁ ହୋଇଛି ଯେ, ଶାସ୍ତ୍ରବିଚାର କହିଲେ ହିଁ ଲୋକଙ୍କ ମନରେ ଏକ ପ୍ରଚଣ୍ଡ ଭୀତିର ସଞ୍ଚାର ହୋଇଥାଏ । ଏହି ଭୀତିରୁ ଶାସ୍ତ୍ରରେ ଅବିଶ୍ୱାସ ଏବଂ ଏହା ଫଳରେ ଭାରତର ଆଧ୍ୟାତ୍ମିକ ଅବନତି ଉପସ୍ଥିତ ହୋଇଛି । ଯୁଗାବତାର ଠାକୁରଙ୍କର ସେଥିପାଇଁ ଏହି ତିନି ମତକୁ ଅବସ୍ଥାବିଶେଷରେ ସ୍ୱୟଂ ଉପଲବ୍ଧି କରି ସେଗୁଡ଼ିକର ସେହି ପ୍ରକାର ଅଦ୍ଭୁତ ସାମଞ୍ଜସ୍ୟର କଥା ପ୍ରଚାରର ପ୍ରୟୋଜନ ହୋଇଥିଲା । ତାଙ୍କର ଏହି ମୀମାଂସା ସର୍ବଦା ସ୍ମରଣ ରଖିବା ଆମମାନଙ୍କର ଶାସ୍ତ୍ରରେ ପ୍ରବେଶାଧିକାର-ଲାଭର ଏକମାତ୍ର ପଥ । ଏହି ବିଷୟରେ ତାଙ୍କର କେତୋଟି ଉକ୍ତି ଏଠାରେ ଲିପିବଦ୍ଧ କରୁଅଛୁ—

"ଅଦ୍ୱୈତଭାବ ଶେଷ କଥା ବୋଲି ଜାଣିବ, ଏହା ବାକ୍ୟ-ମନର ଅତୀତ ଉପଲବ୍ଧିର ବିଷୟ ।

"ମନ-ବୁଦ୍ଧି-ସହାୟରେ ବିଶିଷ୍ଟାଦ୍ୱୈତ ପର୍ଯ୍ୟନ୍ତ କୁହାଯାଇପାରେ ଏବଂ ବୁଝାଯାଇପାରେ; ସେତେବେଳେ ନିତ୍ୟ ଯେପରି ନିତ୍ୟ, ଲୀଳା ମଧ୍ୟ ସେହିପରି ନିତ୍ୟ—ଚିନ୍ମୟ ନାମ, ଚିନ୍ମୟ ଧାମ, ଚିନ୍ମୟ ଶ୍ୟାମ !

"ବିଷୟବୁଦ୍ଧିପ୍ରବଳ ସାଧାରଣ ମାନବ ପକ୍ଷରେ ଦ୍ୱୈତଭାବ, ନାରଦ-ପଞ୍ଚରାତ୍ରର ଉପଦେଶ ଅନୁଯାୟୀ ଉଚ୍ଚ ନାମ-ସଂକୀର୍ତ୍ତନ ଇତ୍ୟାଦି ପ୍ରଶସ୍ତ ।"

### (୬) କର୍ମଯୋଗ-ଅବଲମ୍ବନରେ ସାଧାରଣ ମାନବର ଉନ୍ନତି ହେବ :

ତୃତୀୟ—କର୍ମ ସମ୍ବନ୍ଧରେ ଠାକୁର ଏପରି ସୀମା ନିର୍ଦ୍ଦେଶ କରି କହୁଥିଲେ—"ସତ୍ତ୍ୱଗୁଣୀ ବ୍ୟକ୍ତିର କର୍ମ ସ୍ୱଭାବତଃ ତ୍ୟାଗ ହୋଇଯାଏ—ଚେଷ୍ଟାକଲେ ମଧ୍ୟ ସେ ଆଉ କର୍ମ କରିପାରେ ନାହିଁ, ଅଥବା ଈଶ୍ୱର ତାଙ୍କୁ ତାହା କରିବାକୁ ଦିଅନ୍ତି ନାହିଁ । ଯଥା, ଗୃହସ୍ଥ ବଧୂଙ୍କର ଗର୍ଭବୃଦ୍ଧି ସଙ୍ଗେ ସଙ୍ଗେ କର୍ମତ୍ୟାଗ ଏବଂ ପୁତ୍ର ହେଲେ ସମସ୍ତ ପ୍ରକାରର ଗୃହକର୍ମ ତ୍ୟାଗ କରି ତାକୁ ସମ୍ଭାଳିବାରେ ବ୍ୟସ୍ତ ରହିବା । କିନ୍ତୁ ଅନ୍ୟ ସମସ୍ତ ମାନବଙ୍କ ପକ୍ଷରେ ଈଶ୍ୱରଙ୍କ ଉପରେ ନିର୍ଭର କରି ସଂସାରରେ ଯେତେ କିଛି କର୍ମ, ବଡ଼ଲୋକ ଘରର ଦାସଦାସୀ ଭାବରେ ସମ୍ପାଦନ କରିବାର ଚେଷ୍ଟା ହିଁ କର୍ତ୍ତବ୍ୟ ଅଟେ । ଏପରି କରିବାର ନାମ ହିଁ କର୍ମଯୋଗ । ଯେତେଟା ସାଧ୍ୟ ଈଶ୍ୱରଙ୍କର ନାମ, ଜପ ଓ ଧ୍ୟାନ କରିବା ଏବଂ ପୂର୍ବୋକ୍ତ ରୂପରେ ସମସ୍ତ କର୍ମ ସମ୍ପାଦନ କରିବା—ଏହା ହିଁ ପଥ ।

### (୭) ଉଦାରମତରେ ସମ୍ପ୍ରଦାୟ ପ୍ରବର୍ତ୍ତନ କରିବାକୁ ହେବ :

ଚତୁର୍ଥ—ଠାକୁରଙ୍କର ଉପଲବ୍ଧି ହୋଇଥିଲା, ଶ୍ରୀଶ୍ରୀଜଗଦମ୍ବାଙ୍କ ହସ୍ତରେ ଯନ୍ତ୍ରସ୍ୱରୂପ ହୋଇ ନିଜ ଜୀବନରେ ପ୍ରକାଶିତ ଉଦାର ମତର ବିଶେଷ ଭାବରେ

ଅଧିକାରୀ ନୂତନ ସମ୍ପ୍ରଦାୟ ତାଙ୍କୁ ପ୍ରବର୍ତ୍ତିତ କରିବାକୁ ହେବ । ଏହି ବିଷୟରେ ଠାକୁର ପ୍ରଥମେ ଯାହା ଦେଖିଥିଲେ ତାହା ମଥୁରବାବୁଙ୍କର ଜୀବିତାବସ୍ଥାରେ । ସେ ସେତେବେଳେ ତାଙ୍କୁ କହିଥିଲେ, ଶ୍ରୀଶ୍ରୀଜଗଦମ୍ବା ତାଙ୍କୁ ଦେଖାଇଛନ୍ତି ଯେ, ତାଙ୍କ ନିକଟକୁ ଧର୍ମଲାଭ କରିବା ପାଇଁ ଅନେକ ଭକ୍ତ ଆସିବେ । ପରେ ଏହି ବିଷୟ ଯେ ସତ୍ୟ ହୋଇଥିଲା ତାହା କହିବା ବାହୁଲ୍ୟମାତ୍ର । କାଶୀପୁର ବଗିଚାରେ ଅବସ୍ଥାନକାଳରେ ଠାକୁର ନିଜର ଛାୟାମୂର୍ତ୍ତି (Photograph) ଦେଖୁ ଦେଖୁ ଆମମାନଙ୍କୁ କହିଥିଲେ, ''ଏହା ଅତି ଉଚ୍ଚ ଯୋଗାବସ୍ଥାର ମୂର୍ତ୍ତି—କାଳକ୍ରମେ ଏହି ମୂର୍ତ୍ତିର[1] ଘରେ ଘରେ ପୂଜା ହେବ ।''

## (୮) ଯାହାଙ୍କର ଶେଷଜନ୍ମ, ସେମାନେ ତାଙ୍କର ମତ ଗ୍ରହଣ କରିବେ :

ପଞ୍ଚମ—ଯୋଗଦୃଷ୍ଟି ସହାୟରେ ଜାଣିପାରି ଠାକୁରଙ୍କର ଦୃଢ଼ ଧାରଣା ହୋଇଥିଲା, ଯାହାଙ୍କର ଶେଷଜନ୍ମ, ସେମାନେ ତାଙ୍କ ନିକଟକୁ (ଧର୍ମଲାଭ କରିବାକୁ) ଆସିବେ ।' ଏହି ବିଷୟରେ ଆମମାନଙ୍କର ମତାମତ ଆମେ[2] ଅନ୍ୟତ୍ର ପାଠକଙ୍କୁ କହିଥିବାରୁ ତାହାର ପୁନରୁଲ୍ଲେଖ ନିଷ୍ପ୍ରୟୋଜନ ।

## ତିନିଜଣ ବିଶିଷ୍ଟ ଶାସ୍ତ୍ରଜ୍ଞ ସାଧକ ଠାକୁରଙ୍କୁ ଭିନ୍ନ ଭିନ୍ନ ସମୟରେ ଦେଖି ଯେଉଁ ମତ ପ୍ରକାଶ କରିଥିଲେ :

ଠାକୁରଙ୍କର ସାଧନକାଳରେ ବିଭିନ୍ନ ସମୟରେ ତିନିଜଣ ବିଶେଷ ଶାସ୍ତ୍ରଜ୍ଞ ସାଧକ ତାଙ୍କ ନିକଟକୁ ଆସି ତାଙ୍କର ଆଧ୍ୟାତ୍ମିକ ଅବସ୍ଥା ସ୍ୱଚକ୍ଷୁରେ ଦର୍ଶନପୂର୍ବକ ତଦ୍‌ବିଷୟରେ ଆଲୋଚନା କରିବାର ଅବକାଶ ଲାଭ କରିଥିଲେ । ଠାକୁର ତନ୍ତ୍ର ସାଧନାରେ ସିଦ୍ଧ ହେବା ପରେ ପଣ୍ଡିତ ପଦ୍ମଲୋଚନ ତାଙ୍କୁ ଦର୍ଶନ କରିଥିଲେ—ଠାକୁର ବୈଷ୍ଣବ ତନ୍ତ୍ରୋକ୍ତ ସାଧନାରେ ସିଦ୍ଧିଲାଭ କଲାପରେ ପଣ୍ଡିତ ବୈଷ୍ଣବଚରଣ ତାଙ୍କର ଦର୍ଶନଲାଭ କରିଥିଲେ—ଏବଂ ଗୌରୀ ପଣ୍ଡିତ ଦିବ୍ୟସାଧନଶ୍ରୀସମ୍ପନ୍ନ ଠାକୁରଙ୍କୁ ସାଧନାକାଳର ଅବସାନରେ ଦେଖି କୃତାର୍ଥ ହୋଇଥିଲେ । ଠାକୁରଙ୍କୁ ଦେଖି ପଣ୍ଡିତ ପଦ୍ମଲୋଚନ କହିଥିଲେ, ''ଆପଣଙ୍କ ଭିତରେ ମୁଁ ଈଶ୍ୱରୀୟ ଆବିର୍ଭାବ ଏବଂ ଶକ୍ତି ଦେଖୁଛି ।'' ବୈଷ୍ଣବଚରଣ ସଂସ୍କୃତ ଭାଷାରେ ସ୍ତବ ରଚନା କରି ଭାବାବିଷ୍ଟ ଠାକୁରଙ୍କ ସମ୍ମୁଖରେ ତାଙ୍କର ଅବତାରତ୍ୱ କୀର୍ତ୍ତନ କରିଥିଲେ । ପଣ୍ଡିତ ଗୌରୀକାନ୍ତ ଠାକୁରଙ୍କୁ ଦେଖି କହିଥିଲେ, ''ଶାସ୍ତ୍ରରେ ଯେଉଁ ସବୁ ଉଚ୍ଚ ଆଧ୍ୟାତ୍ମିକ ଅବସ୍ଥା କଥା ପାଠ କରିଅଛି, ସେ ସମସ୍ତ ତୁମଠାରେ ସାକ୍ଷାତ୍ ବର୍ତ୍ତମାନ ଦେଖୁଛି । ତାହା ଛଡ଼ା ଶାସ୍ତ୍ରରେ ଯାହା ଲିପିବଦ୍ଧ ନାହିଁ, ଏହି ପ୍ରକାର ଉଚ୍ଚ

---

୧. ଠାକୁରଙ୍କର ବସି ସମାଧିସ୍ଥ ହୋଇଥିବା ଫଟୋଚିତ୍ର ।

୨. ଗୁରୁଭାବ—ଉତ୍ତରାର୍ଦ୍ଧ, ୪ର୍ଥ ଅଧ୍ୟାୟ ।

ଅବସ୍ଥାସମୂହର ପ୍ରକାଶ ମଧ୍ୟ ତୁମଠାରେ ବିଦ୍ୟମାନ ଦେଖୁଅଛି — ତୁମର ଅବସ୍ଥା ବେଦବେଦାନ୍ତାଦି ଶାସ୍ତ୍ରଗୁଡ଼ିକୁ ଅତିକ୍ରମ କରି ବହୁଦୂର ଅଗ୍ରସର ହୋଇଅଛି । ତୁମେ ମନୁଷ୍ୟ ନୁହଁ, ଅବତାରସକଳଙ୍କର ଯେଉଁଥିରୁ ଉତ୍ପତ୍ତି ହୁଏ, ସେହି ବସ୍ତୁ ତୁମ ଭିତରେ ରହିଅଛି !'' ଠାକୁରଙ୍କର ଅଲୌକିକ ଜୀବନ-କଥା ଏବଂ ପୂର୍ବୋକ୍ତ ଅପୂର୍ବ ଉପଲବ୍ଧିସମୂହର ଆଲୋଚନା କରି ବିଶେଷ ରୂପରେ ହୃଦୟଙ୍ଗମ ହୁଏ ଯେ, ସେହି ସବୁ ସାଧକ ପଣ୍ଡିତାଗ୍ରଣୀଗଣ ତାହାଙ୍କୁ ବୃଥା ଚାଟୁବାଦ କରି ପୂର୍ବୋକ୍ତ କଥାଗୁଡ଼ିକ କହିଯାଇ ନାହାନ୍ତି । ସେହି ସମସ୍ତ ପଣ୍ଡିତଙ୍କର ଦକ୍ଷିଣେଶ୍ୱର ଆଗମନ କାଳ ନିମ୍ନଲିଖିତ ଭାବରେ ନିରୂପିତ ହୋଇଛି —

**ଉକ୍ତ ପଣ୍ଡିତମାନଙ୍କର ଦକ୍ଷିଣେଶ୍ୱର ଆଗମନକାଳ ନିରୂପଣ :**

ଦକ୍ଷିଣେଶ୍ୱରରେ ପ୍ରଥମଥର ଅବସ୍ଥାନକାଳରେ ଶ୍ରୀଶ୍ରୀମାତାଠାକୁରାଣୀ ଗୌରୀ ପଣ୍ଡିତଙ୍କୁ ସେଠାରେ ଦେଖିଥିଲେ । ପୁଣି, ମଥୁରବାବୁ ଜୀବିତ ଥିବା ବେଳେ ଗୌରୀ ପଣ୍ଡିତ ଯେ ଦକ୍ଷିଣେଶ୍ୱର ଆଗମନ କରିଥିଲେ, ସେକଥା ଆମେ ଠାକୁରଙ୍କ ନିକଟରୁ ଶ୍ରବଣ କରିଛୁ । ଅତଏବ ବୋଧହୁଏ, ଶ୍ରୀଯୁକ୍ତ ଗୌରୀ ୧୮୭୧ ଖ୍ରୀଷ୍ଟାବ୍ଦର କୌଣସି ସମୟରେ ଦକ୍ଷିଣେଶ୍ୱର ଆଗମନପୂର୍ବକ ୧୮୭୩ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଠାକୁରଙ୍କ ନିକଟରେ ଅବସ୍ଥାନ କରିଥିଲେ । ଶାସ୍ତ୍ରଜ୍ଞାନ ଲାଭ କରି ନିଜ ଜୀବନରେ ଯେଉଁମାନେ ସେହି ଜ୍ଞାନ ପରିଣତ କରିବାକୁ ଚେଷ୍ଟା କରୁଥିଲେ, ଏପରି ସାଧକ ପଣ୍ଡିତମାନଙ୍କୁ ଦେଖିବାପାଇଁ ଠାକୁରଙ୍କର ନିରନ୍ତର ଆଗ୍ରହ ଥିଲା । ଭଟ୍ଟାଚାର୍ଯ୍ୟ ଶ୍ରୀଯୁକ୍ତ ଗୌରୀକାନ୍ତ ତର୍କଭୂଷଣ ପୂର୍ବୋକ୍ତ ଶ୍ରେଣୀଭୁକ୍ତ ଥିଲେ ବୋଲି ହିଁ ଠାକୁରଙ୍କର ତାଙ୍କୁ ଦେଖିବାକୁ ଅଭିଳାଷ ହୋଇଥିଲା ଏବଂ ମଥୁରବାବୁଙ୍କ ଦ୍ୱାରା ନିମନ୍ତ୍ରଣ କରାଇ ସେ ତାଙ୍କୁ ଦକ୍ଷିଣଶ୍ୱରକୁ ଆଣିଥିଲେ । ପଣ୍ଡିତ ମହାଶୟଙ୍କର ବାସସ୍ଥାନ ଠାକୁରଙ୍କର ଜନ୍ମଭୂମି ନିକଟରେ ଇଁଦେଶ ନାମକ ଗ୍ରାମରେ ଥିଲା । ହୃଦୟଙ୍କର ଭାଇ ରାମରତନ ମଥୁରବାବୁଙ୍କର ନିମନ୍ତ୍ରଣ ପତ୍ର ନେଇ ଶ୍ରୀଯୁକ୍ତ ଗୌରୀକାନ୍ତଙ୍କୁ ଦକ୍ଷିଣେଶ୍ୱର ଶ୍ରୀମନ୍ଦିରକୁ ଆନୟନ କରିଥିଲେ । ଗୌରୀ ପଣ୍ଡିତଙ୍କର ସାଧନପ୍ରସୂତ ଅଦ୍ଭୁତ ଶକ୍ତି କଥା ଏବଂ ଦକ୍ଷିଣେଶ୍ୱର ଆଗମନପୂର୍ବକ ଠାକୁରଙ୍କୁ ଦେଖି ତାଙ୍କ ମନରେ କ୍ରମେ ପ୍ରବଳ ବୈରାଗ୍ୟର ଉଦୟ ହୋଇ ସେ ଯେଉଁ ଭାବରେ ସଂସାରତ୍ୟାଗ କରିଥିଲେ ସେସମସ୍ତ ଆମେ ପାଠକଙ୍କୁ ଅନ୍ୟତ୍ର[୧] କହିଅଛୁ ।

'ରାଣୀ ରାସମଣିଙ୍କର ଜୀବନବୃତ୍ତାନ୍ତ' ଶୀର୍ଷକ ଗ୍ରନ୍ଥରେ ଶ୍ରୀଯୁକ୍ତ ମଥୁରଙ୍କର ଅନ୍ନମେରୁ-ଅନୁଷ୍ଠାନର ସମୟ ୧୮୬୪ ଖ୍ରୀଷ୍ଟାବ୍ଦ ବୋଲି ନିରୂପିତ ହୋଇଛି । ପଣ୍ଡିତ ପଦ୍ମଲୋଚନଙ୍କୁ ଏହି ସମୟରେ ଦକ୍ଷିଣେଶ୍ୱରକୁ ନିମନ୍ତ୍ରଣ କରି ଆଣି ଦାନ ଗ୍ରହଣ କରିବା ପାଇଁ ଶ୍ରୀଯୁକ୍ତ ମଥୁରଙ୍କର ଆଗ୍ରହ କଥା ଆମେ ଠାକୁରଙ୍କ ନିକଟରୁ

୧. ଗୁରୁଭାବ — ଉତ୍ତରାର୍ଦ୍ଧ, ୧ମ ଅଧ୍ୟାୟ ।

ଶୁଣିଛୁ । ଅତଏବ ବେଦାନ୍ତବିଦ୍ ଭଟ୍ଟାଚାର୍ଯ୍ୟ ଶ୍ରୀଯୁକ୍ତ ପଦ୍ମଲୋଚନ ତର୍କାଳଙ୍କାର ମହାଶୟଙ୍କର ଠାକୁରଙ୍କ ନିକଟକୁ ଆଗମନକାଳ ୧୮୬୪ ଖ୍ରୀଷ୍ଟାବ୍ଦ ବୋଲି ଧରାଯାଇପାରେ ।

ଶ୍ରୀଯୁକ୍ତ ଉତ୍ସବାନନ୍ଦ ଗୋସ୍ୱାମୀଙ୍କର ପୁତ୍ର ପଣ୍ଡିତ ବୈଷ୍ଣବଚରଣଙ୍କର ଦକ୍ଷିଣେଶ୍ୱର ଆଗମନ କାଳ ସହଜରେ ହିଁ ନିରୂପିତ ହୁଏ । କାରଣ, ଭୈରବୀ ବ୍ରାହ୍ମଣୀ ଶ୍ରୀମତୀ ଯୋଗେଶ୍ୱରୀଙ୍କ ସହିତ ଏବଂ ପରେ ଭଟ୍ଟାଚାର୍ଯ୍ୟ ଶ୍ରୀଯୁକ୍ତ ଗୌରୀକାନ୍ତ ତର୍କଭୂଷଣଙ୍କ ସହିତ ଦକ୍ଷିଣେଶ୍ୱର ମନ୍ଦିରରେ ତାଙ୍କର ଠାକୁରଙ୍କର ଅଲୌକିକତ୍ୱ ସମ୍ବନ୍ଧରେ ଆଲୋଚନା ହେବାର କଥା ଆମେ ଠାକୁରଙ୍କ ନିକଟରୁ ଶୁଣିଛୁ । ବ୍ରାହ୍ମଣୀଙ୍କ ପରି ସେ ମଧ୍ୟ ଠାକୁରଙ୍କର ଶରୀରମନରେ ବୈଷ୍ଣବଶାସ୍ତ୍ରୋକ୍ତ ମହାଭାବର ଲକ୍ଷଣସମୁଦାୟ ପ୍ରକାଶିତ ଦେଖିଥିଲେ ଏବଂ ସ୍ତମ୍ଭିତ ହୃଦୟରେ ଶ୍ରୀଯୁକ୍ତା ବ୍ରାହ୍ମଣୀଙ୍କ ସହିତ ଏକମତ ହୋଇ ଠାକୁରଙ୍କ ରୂପରେ ଶ୍ରୀଗୌରାଙ୍ଗଦେବ ପୁନର୍ବାର ଅବତୀର୍ଣ୍ଣ ବୋଲି ନିର୍ଣ୍ଣୟ କରିଥିଲେ । ଠାକୁରଙ୍କ ନିକଟରୁ ପୂର୍ବୋକ୍ତ କଥାଗୁଡ଼ିକ ଶୁଣି ମନେ ହୁଏ, ଶ୍ରୀଯୁକ୍ତ ବୈଷ୍ଣବଚରଣ ୧୮୬୫ ଖ୍ରୀଷ୍ଟାବ୍ଦରେ ଠାକୁରଙ୍କର ମଧୁରଭାବ-ସାଧନାରେ ସିଦ୍ଧହେବା ପରେ ତାଙ୍କ ନିକଟକୁ ଆସି ୧୮୭୩ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଦକ୍ଷିଣେଶ୍ୱରକୁ ବେଳେବେଳେ ଆସୁଥିଲେ ।

### ଠାକୁରଙ୍କର ନିଜର ସାଙ୍ଗୋପାଙ୍ଗମାନଙ୍କୁ ଦେଖିବାର ବାସନା ଓ ଆହ୍ୱାନ :

ପୂର୍ବୋକ୍ତ ସମସ୍ତ ଉପଲବ୍ଧି କରିବା ପରେ ଈଶ୍ୱରପ୍ରେରିତ ହୋଇ ଠାକୁରଙ୍କ ମନରେ ଏକ ଅଭିନବ ବାସନା ପ୍ରବଳ ଭାବରେ ଉଦୟ ହୋଇଥିଲା । ଯୋଗାରୂଢ଼ ହୋଇ ପୂର୍ବପରିଦୃଷ୍ଟ ଭକ୍ତମାନଙ୍କୁ ଦେଖିବା ପାଇଁ ଏବଂ ସେମାନଙ୍କ ଅନ୍ତରରେ ନିଜ ଧର୍ମଶକ୍ତି ସଞ୍ଚାର କରିବା ନିମିତ୍ତ ସେ ବିଶେଷଭାବରେ ବ୍ୟାକୁଳ ହୋଇପଡ଼ିଥିଲେ । ଠାକୁର କହୁଥିଲେ, ‘‘ସେହି ବ୍ୟାକୁଳତାର ସୀମା ନ ଥିଲା । ଦିବା ଭାଗରେ ସର୍ବଦା ସେହି ବ୍ୟାକୁଳତା ହୃଦୟରେ କୌଣସିରୂପରେ ଧାରଣ କରି ରହୁଥିଲି । ବିଷୟୀ ଲୋକମାନଙ୍କର ମିଥ୍ୟା ବିଷୟ ପ୍ରସଙ୍ଗ ଶୁଣି ଯେତେବେଳେ ବିଷବତ୍ ବୋଧ ହେଉଥିଲା, ସେତେବେଳେ ଭାବୁଥିଲି, ସେମାନେ ସମସ୍ତେ ଆସିଲେ ଈଶ୍ୱରୀୟ କଥା କହି ପ୍ରାଣ ଶୀତଳ କରିବି, ଶ୍ରବଣ ସାର୍ଥକ କରିବି, ନିଜ ଆଧ୍ୟାତ୍ମିକ ଉପଲବ୍ଧିଗୁଡ଼ିକ ସେମାନଙ୍କୁ କହି ଅନ୍ତରର ବୋଝ ଲଘୁ କରିବି । ସେହିପରି ପ୍ରତ୍ୟେକ ବିଷୟରେ ସେମାନଙ୍କର ଆଗମନ କଥାର ଉଦ୍ଦୀପନା ହୋଇ ସେମାନଙ୍କ ବିଷୟରେ ନିରନ୍ତର ଚିନ୍ତା କରୁଥିଲି—କାହାକୁ କ’ଣ କହିବି, କାହାକୁ କ’ଣ ଦେବି, ସେସବୁ କଥା ଭାବି ପ୍ରସ୍ତୁତ ହୋଇ ରହୁଥିଲି । କିନ୍ତୁ ଦିବାବସାନରେ ଯେତେବେଳେ ସନ୍ଧ୍ୟାର ସମାଗମ ହେଉଥିଲା, ସେତେବେଳେ ଧୈର୍ଯ୍ୟର ବନ୍ଧ

ଦେଇ ସେହି ବ୍ୟାକୁଳତାକୁ ଆଉ ଧରି ରଖିପାରୁ ନ ଥିଲି, ମନେ ହେଉଥିଲା ଯେପରି ଆଉ ଗୋଟିଏ ଦିନ ଚାଲିଗଲା, ସେମାନେ କେହି ହେଲେ ଆସିଲେ ନାହିଁ । ଯେତେବେଳେ ଦେବାଳୟ ଆଳତିର ଶଙ୍ଖ-ଘଣ୍ଟା ଧ୍ୱନିରେ ମୁଖରିତ ହୋଇ ଉଠୁଥିଲା, ସେତେବେଳେ ବାବୁମାନଙ୍କର ଘରର ଛାତ ଉପରକୁ ଯାଇ ହୃଦୟର ଯନ୍ତ୍ରଣାରେ ଅସ୍ଥିର ହୋଇ କ୍ରନ୍ଦନ କରୁ କରୁ ଉଚ୍ଚସ୍ୱରରେ—'ତୁମେ ସବୁ କିଏ କେଉଁଠି ଅଛ, ଆସରେ; ତୁମମାନଙ୍କୁ ନ ଦେଖି ଆଉ ରହିପାରୁ ନାହିଁ'—କହି ଚିତ୍କାର କରି ଗଗନ ପୂର୍ଣ୍ଣ କରୁଥିଲି ! ମା, ତା'ର ବାଳକକୁ ଦେଖିବା ପାଇଁ ଏପରି ବ୍ୟାକୁଳତା ଅନୁଭବ କରେ କି ନାହିଁ ସନ୍ଦେହ; ସଖା ସଖାର ସହିତ ଏବଂ ପ୍ରଣୟୀଯୁଗଳ ପରସ୍ପର ସହିତ ମିଳନ ପାଇଁ କେବେହେଲେ ଏପରି ବ୍ୟାକୁଳ ହୁଅନ୍ତି କି ନାହିଁ ବୋଲି ଶୁଣି ନାହିଁ—ଏପରି ବ୍ୟାକୁଳତାରେ ପ୍ରାଣ ଚଞ୍ଚଳ ହେଉଥିଲା । ସେପରି ହେବାର କେତେଦିନ ପରେ ହିଁ ଭକ୍ତମାନେ ଜଣେ ଜଣେ ଆସିବାକୁ ଲାଗିଲେ ।''

ସେହି ପ୍ରକାରରେ ଠାକୁରଙ୍କର ବ୍ୟାକୁଳ ଆହ୍ୱାନରେ ଭକ୍ତମାନଙ୍କର ଦକ୍ଷିଣେଶ୍ୱର ଆଗମନ ପୂର୍ବରୁ କେତୋଟି ବିଶେଷ ଘଟଣା ଘଟିଥିଲା । ବର୍ତ୍ତମାନର ଗ୍ରନ୍ଥ ସହିତ ଏସମସ୍ତର ମୁଖ୍ୟଭାବରେ ସମ୍ବନ୍ଧ ନ ଥିବାରୁ ଆମେ ଏଗୁଡ଼ିକୁ ପରିଶିଷ୍ଟରେ ଲିପିବଦ୍ଧ କରୁଛୁ ।

# ପରିଶିଷ୍ଟ

## ଷୋଡ଼ଶୀ–ପୂଜା ପରଠାରୁ ପୂର୍ବପରିଦୃଷ୍ଟ ଅନ୍ତରଙ୍ଗ ଭକ୍ତମାନଙ୍କର ଆଗମନ ସମୟର ପୂର୍ବ ପର୍ଯ୍ୟନ୍ତ ଠାକୁରଙ୍କ ଜୀବନର ପ୍ରଧାନ ପ୍ରଧାନ ଘଟଣାବଳୀ ।

### ରାମେଶ୍ୱରଙ୍କର ମୃତ୍ୟୁ :

ଆମେ ପାଠକଙ୍କୁ କହିଛୁ ଷୋଡ଼ଶୀ ପୂଜାପରେ ଶ୍ରୀଶ୍ରୀମାତାଠାକୁରାଣୀ ସନ ୧୨୮୦ ସାଲର (୧୮୭୩ ଖ୍ରୀଷ୍ଟାବ୍ଦ, ଅକ୍ଟୋବର) କାର୍ତ୍ତିକ ମାସରେ କାମାରପୁକୁରକୁ ପ୍ରତ୍ୟାଗମନ କରିଥିଲେ । ଶ୍ରୀଶ୍ରୀମା'ଙ୍କର ଏଠାରେ ପହଞ୍ଚିବାର ଅଳ୍ପ ଦିନ ପରେ ଠାକୁରଙ୍କର ମଧ୍ୟମାଗ୍ରଜ ଶ୍ରୀଯୁକ୍ତ ରାମେଶ୍ୱର ଭଟ୍ଟାଚାର୍ଯ୍ୟ ଟାଇଫଏଡ୍ ରୋଗରେ ମୃତ୍ୟୁମୁଖରେ ପତିତ ହେଲେ । ଠାକୁରଙ୍କର ପିତାଙ୍କ ବଂଶରେ ପ୍ରତ୍ୟେକ ସ୍ତ୍ରୀ–ପୁରୁଷଙ୍କର ଭିତରେ ହିଁ ଆଧ୍ୟାତ୍ମିକତାର ବିଶେଷ ପ୍ରକାଶ ଥିଲା । ଶ୍ରୀଯୁକ୍ତ ରାମେଶ୍ୱରଙ୍କ ସମ୍ବନ୍ଧରେ ସେ ବିଷୟରେ ଯାହା ଶୁଣିଛୁ, ତାହା ଏଠାରେ ଉଲ୍ଲେଖ କରୁଛୁ ।

### ରାମେଶ୍ୱରଙ୍କର ଉଦାର ପ୍ରକୃତି :

ରାମେଶ୍ୱର ଅତ୍ୟନ୍ତ ଉଦାର ପ୍ରକୃତିର ଲୋକ ଥିଲେ । ସନ୍ନ୍ୟାସୀ–ଫକୀର ଇତ୍ୟାଦି ଦ୍ୱାର ସମ୍ମୁଖରେ ଉପସ୍ଥିତ ହୋଇ ଯାହା ମାଗୁଥିଲେ, ତାହା ଯଦି ଘରେ ଥାଏ, ତେବେ ସେ ତାଙ୍କୁ ସଙ୍ଗେ ସଙ୍ଗେ ପ୍ରଦାନ କରୁଥିଲେ । ତାଙ୍କର ଆତ୍ମୀୟ ସ୍ୱଜନଙ୍କଠାରୁ ଶୁଣିଛୁ, ସେହି ପ୍ରକାର କୌଣସି ଫକୀର ଆସି କହୁଥିଲେ ରୋଷେଇ କରିବା ପାଇଁ ମୋର ଗୋଟିଏ ଡେକ୍‌ଚି ଦରକାର, କେହି କହୁଥିଲେ ମୋର ଲୋଟା ବା ଜଳପାତ୍ରର ଅଭାବ, କେହି କହୁଥିଲେ ମୋର କମ୍ବଳ ଖଣ୍ଡିଏ ଦରକାର— ରାମେଶ୍ୱର ତତ୍‌କ୍ଷଣାତ୍ ସେସବୁ ଘରୁ ଆଣି ସେମାନଙ୍କୁ ଦେଉଥିଲେ । ଘରେ ଯଦି କେହି ଆପତ୍ତି କରନ୍ତି, ରାମେଶ୍ୱର ଶାନ୍ତଭାବରେ କହୁଥିଲେ– 'ନେଇ ଯାଆନ୍ତୁ ନା', କିଛି କୁହ ନାହିଁ, ସେପରି ଦ୍ରବ୍ୟ ପୁଣି କେତେ ଆସିବ ଚିନ୍ତା କାହିଁକି ? ଜ୍ୟୋତିଷ ଶାସ୍ତ୍ରରେ ରାମେଶ୍ୱରଙ୍କର କିଛି ଜ୍ଞାନ ମଧ୍ୟ ଥିଲା ।

### ରାମେଶ୍ୱରଙ୍କର ମୃତ୍ୟୁର ସମ୍ଭାବନା ଠାକୁର ପୂର୍ବରୁ ଜାଣିପାରି ତାଙ୍କୁ ସତର୍କ କରିବା :

ଦକ୍ଷିଣେଶ୍ୱରରୁ ରାମେଶ୍ୱର ଶେଷଥର ପାଇଁ ଘରକୁ ଯିବା ସମୟରେ, ସେ ଆଉ ଯେ ସେଠାରୁ ଫେରିବେ ନାହିଁ ଏକଥା ଠାକୁର ଜାଣି ପାରିଥିଲେ ଏବଂ ଭାବାବେଶରେ କହିଥିଲେ— 'ଘରକୁ ଯାଉଛ, ଯାଅ, କିନ୍ତୁ ସ୍ତ୍ରୀଙ୍କ ସହିତ ଶୟନ

କରିବ ନାହିଁ; ତା' ହେଲେ ତୁମର ପ୍ରାଣରକ୍ଷା କଠିନ ହେବ ।' ସେହି ବିଷୟ ଠାକୁରଙ୍କ ମୁହଁରୁ ଆମମାନଙ୍କ ଭିତରୁ କେହି କେହି ଶୁଣିଥିଲେ ।[୧]

### ରାମେଶ୍ୱରଙ୍କର ମୃତ୍ୟୁ ସମ୍ବାଦ ପାଇ ମା'ଙ୍କର ଜୀବନରକ୍ଷା କଠିନ ହେବ ଭାବି ଠାକୁରଙ୍କର ପ୍ରାର୍ଥନା ଓ ତାହାର ଫଳ :

ରାମେଶ୍ୱର ଘରେ ପହଞ୍ଚିବାର କିଛି ଦିନ ପରେ ଖବର ଆସିଲା, ସେ ପୀଡ଼ିତ । ଠାକୁର ସେକଥା ଶୁଣି ହୃଦୟଙ୍କୁ କହିଥିଲେ—"ସେ ନିଷେଧ ମାନିଲେ ନାହିଁ, ତାଙ୍କର ପ୍ରାଣରକ୍ଷା ହେବା କଷ୍ଟକର !" ଏଘଟଣାର ପାଞ୍ଚସାତ ଦିନ ପରେ ଖବର ଆସିଲା, ଶ୍ରୀଯୁକ୍ତ ରାମେଶ୍ୱର ପରଲୋକ ଗମନ କରିଛନ୍ତି । ତାଙ୍କର ମୃତ୍ୟୁ ସମ୍ବାଦରେ ଠାକୁର ତାଙ୍କର ବୃଦ୍ଧାମାତାଙ୍କର ପ୍ରାଣରେ ବିଷମ ଆଘାତ ଲାଗିବ ବୋଲି ବିଶେଷ ଚିନ୍ତାନ୍ୱିତ ହୋଇଥିଲେ ଏବଂ ମନ୍ଦିରକୁ ଯାଇ ଜନନୀଙ୍କୁ ପୁତ୍ର ଶୋକରୁ ରକ୍ଷା କରିବା ପାଇଁ ଶ୍ରୀଶ୍ରୀଜଗଦମ୍ବାଙ୍କ ନିକଟରେ କାତର ପ୍ରାର୍ଥନା କରିଥିଲେ । ଠାକୁରଙ୍କର ଶ୍ରୀମୁଖରୁ ଶୁଣିଛି, ଏପରି ପ୍ରାର୍ଥନା କରିବା ପରେ ସେ ଜନନୀଙ୍କୁ ସାନ୍ତ୍ୱନାପ୍ରଦାନ ନିମିତ୍ତ ମନ୍ଦିରରୁ ନହବତକୁ ଗଲେ ଏବଂ ସଜଳ ନୟନରେ ତାହାଙ୍କୁ ସେହି ଦୁଃସମ୍ବାଦ ନିବେଦନ କଲେ । ଠାକୁର କହୁଥିଲେ, "ଭାବିଥିଲି, ମା' ଏ ଖବର ଶୁଣି ସମ୍ପୂର୍ଣ୍ଣ ହତଜ୍ଞାନ ହେବେ ଏବଂ ତାଙ୍କର ପ୍ରାଣରକ୍ଷା କଷ୍ଟକର ହେବ, କିନ୍ତୁ ଦେଖିଲି, ତା'ର ସମ୍ପୂର୍ଣ୍ଣ ବିପରୀତ ହେଲା । ମା' ସେହି କଥାଶୁଣି ଅଳ୍ପ ଦୁଃଖ ପ୍ରକାଶପୂର୍ବକ 'ସଂସାର ଅନିତ୍ୟ, ସମସ୍ତଙ୍କର ହିଁ ଦିନେ ମୃତ୍ୟୁ ନିଶ୍ଚିତ, ଅତଏବ ଶୋକ କରିବା ବୃଥା'—ଇତ୍ୟାଦି କହି ମୋତେ ହିଁ ଶାନ୍ତ କରିବାକୁ ଲାଗିଲେ । ଦେଖିଲି, ତାନପୁରାରେ ଚାବିକୁ ଟାଣି ସୁର ଯେପରି ଉଚ୍ଚକୁ ଉଠାଇ ଦିଅନ୍ତି, ଶ୍ରୀଶ୍ରୀଜଗଦମ୍ବା ସେପରି ମା'ଙ୍କ ମନକୁ ଉଚ୍ଚ ସୁରରେ ବାନ୍ଧି ରଖିଛନ୍ତି, ପାର୍ଥିବ ଶୋକଦୁଃଖ ସେଥିପାଇଁ ତାଙ୍କୁ ସ୍ପର୍ଶ କରିପାରୁ ନାହିଁ । ସେପରି ଦେଖି ଶ୍ରୀଶ୍ରୀଜଗନ୍ମାତାଙ୍କୁ ବାରମ୍ବାର ପ୍ରଣାମ କଲି ଏବଂ ନିଶ୍ଚିନ୍ତ ହେଲି ।"

### ମୃତ୍ୟୁ ଉପସ୍ଥିତ ଜାଣି ରାମେଶ୍ୱରଙ୍କର ଆଚରଣ :

ରାମେଶ୍ୱର ପାଞ୍ଚ-ସାତଦିନ ପୂର୍ବରୁ ନିଜ ମୃତ୍ୟୁକାଳ ଜାଣି ପାରିଥିଲେ ଏବଂ ଆତ୍ମୀୟଗଣଙ୍କୁ ସେହି କଥା କହି ନିଜ ସତ୍କାର ଓ ଶ୍ରାଦ୍ଧ ପାଇଁ ସମସ୍ତ ବ୍ୟବସ୍ଥା କରି ରଖିଥିଲେ । ଘର ସାମନାରେ ଗୋଟିଏ ଆମ୍ବଗଛ କୌଣସି କାରଣରୁ କଟାହେଉଥିବା ଦେଖି କହିଥିଲେ—"ଭଲ ହେଲା, ମୋର କାମରେ ଲାଗିବ ।" ମୃତ୍ୟୁର କିଛି ସମୟ ପୂର୍ବ ପର୍ଯ୍ୟନ୍ତ ସେ ଶ୍ରୀରାମଚନ୍ଦ୍ରଙ୍କର ପୂତ ନାମ ଉଚ୍ଚାରଣ କରିଥିଲେ, ପରେ ଚେତନା ହରାଇ ଅଳ୍ପକ୍ଷଣ ରହିଲା ପରେ ତାଙ୍କର ପ୍ରାଣବାୟୁ ଦେହରୁ ନିଷ୍କ୍ରାନ୍ତ ହୋଇଥିଲା । ମୃତ୍ୟୁ ପୂର୍ବରୁ ରାମେଶ୍ୱର ଆତ୍ମୀୟବର୍ଗଙ୍କୁ ଅନୁରୋଧ

---

୧. ସ୍ୱାମୀ ପ୍ରେମାନନ୍ଦଜୀ ମହାରାଜ ।

କରିଥିଲେ, ତାଙ୍କର ଦେହକୁ ଶ୍ମଶାନ ମଧ୍ୟରେ ଅଗ୍ନିସାତ୍ ନ କରି ତାହା ପାର୍ଶ୍ୱବର୍ତ୍ତୀ ରାସ୍ତା ଉପରେ ଯେପରି ଅଗ୍ନିସାତ୍ କରାହୁଏ । କାରଣ ପଚାରିବାରୁ କହିଥିଲେ, କେତେ ସାଧୁ ଲୋକ ସେହି ରାସ୍ତା ଉପର ଦେଇ ଚାଲିବେ । ସେମାନଙ୍କର ପଦରଜରେ ମୋର ସଦ୍‌ଗତି ହେବ । ରାମେଶ୍ୱରଙ୍କର ମୃତ୍ୟୁ ଗଭୀର ରାତ୍ରିରେ ହୋଇଥିଲା ।

## ମୃତ୍ୟୁ ପରେ ରାମେଶ୍ୱରଙ୍କର ନିଜ ବନ୍ଧୁ ଗୋପାଳଙ୍କ ସହିତ କଥୋପକଥନ :

ଗ୍ରାମର ଗୋପାଳ ନାମକ ଏକ ବ୍ୟକ୍ତିଙ୍କ ସହିତ ରାମେଶ୍ୱରଙ୍କର ବହୁ ଦିନ ଧରି ବିଶେଷ ସୌହୃଦ୍ୟ ଥିଲା । ଗୋପାଳ କହୁଥିଲେ, ତାଙ୍କର ମୃତ୍ୟୁ ଯେଉଁଦିନ ଯେଉଁ ସମୟରେ ହୋଇଥିଲା, ସେହିଦିନ ଠିକ୍ ସେହି ସମୟରେ ସେ ତାହାଙ୍କ ଗୃହଦ୍ୱାରରେ କେହି ଶବ୍ଦ କରିବା ଶୁଣି ପଚାରିବାରୁ ଉତ୍ତର ପାଇଥିଲେ, 'ମୁଁ ରାମେଶ୍ୱର, ଗଙ୍ଗାସ୍ନାନ କରିବାକୁ ଯାଉଛି, ଘରେ ରଘୁବୀର ରହିଲେ ତାଙ୍କର ସେବାରେ ଯେପରି କିଛି ଅସୁବିଧା ନ ହୁଏ, ସେବିଷୟରେ ତୁମେ ନଜର ରଖିବ !' ଗୋପାଳ ବନ୍ଧୁଙ୍କ ଆହ୍ୱାନରେ ଦ୍ୱାର ଖୋଲିବାକୁ ଯିବାବେଳେ ପୁଣି ଶୁଣିଲେ, 'ମୋର ଶରୀର ନାହିଁ, ଅତଏବ ଦ୍ୱାର ଖୋଲିଲେ ମଧ୍ୟ ତୁମେ ମୋତେ ଦେଖିବାକୁ ପାଇବ ନାହିଁ ।' ଗୋପାଳ ତଥାପି ଦ୍ୱାର ଖୋଲି ଯେତେବେଳେ କାହାରିକୁ କେଉଁଠି ଦେଖିପାରିଲେ ନାହିଁ, ସେତେବେଳେ ସମ୍ବାଦ ସତ୍ୟ କି ମିଥ୍ୟା—ଜାଣିବା ପାଇଁ ରାମେଶ୍ୱରଙ୍କ ଘରକୁ ଗଲେ ଏବଂ ଦେଖିଲେ, ସତ୍ୟ ସତ୍ୟ ହିଁ ରାମେଶ୍ୱରଙ୍କର ଦେହତ୍ୟାଗ ହୋଇଛି ।

## ଠାକୁରଙ୍କ ଭ୍ରାତୁଷ୍ପୁତ୍ର ରାମଲାଲଙ୍କ ଦକ୍ଷିଣେଶ୍ୱର ଆଗମନ ଓ ପୂଜକର ପଦଗ୍ରହଣ—ଚାନକେର ଅନ୍ନପୂର୍ଣ୍ଣା ମନ୍ଦିର :

ରାମେଶ୍ୱରଙ୍କର ଜ୍ୟେଷ୍ଠପୁତ୍ର ଶ୍ରୀଯୁକ୍ତ ରାମଲାଲ ଚଟ୍ଟୋପାଧ୍ୟାୟ କହୁଥିଲେ, ତାଙ୍କର ପିତାଙ୍କର ମୃତ୍ୟୁ ୧୨୮୦ ସାଲ (୧୮୭୩ ଖ୍ରୀଷ୍ଟାବ୍ଦ) ମାର୍ଗଶୀର ୨୭ ଦିନ ହୋଇଥିଲା ଏବଂ ସେତେବେଳେ ତାଙ୍କର ବୟସ ଅନ୍ଦାଜ ୪୮ ବର୍ଷ ହୋଇଥିଲା । ପିତାଙ୍କର ଅସ୍ଥି ସଞ୍ଚୟପୂର୍ବକ କଲିକତା ନିକଟବର୍ତ୍ତୀ ବୈଦ୍ୟବାଟି ନାମକ ସ୍ଥାନକୁ ଆସି ସେ ତାହା ଗଙ୍ଗାରେ ବିସର୍ଜନ କରିଥିଲେ । ପରେ ଦକ୍ଷିଣେଶ୍ୱରରେ ଠାକୁରଙ୍କ ନିକଟକୁ ଆସିବା ପାଇଁ ଏହି ସ୍ଥାନରୁ ନୌକାରେ ଗଙ୍ଗା ପାର ହୋଇଥିଲେ । ଗଙ୍ଗାପାର ହେବା ସମୟରେ ବାରାକ୍‌ପୁର ଆଡ଼କୁ ଦୃଷ୍ଟିପାତ କରି ଦେଖିବାକୁ ପାଇଥିଲେ, ମଥୁରବାବୁଙ୍କର ପତ୍ନୀ ଶ୍ରୀମତୀ ଜଗଦମ୍ବା ଦାସୀ ସେଠାରେ ଯେଉଁ ମନ୍ଦିରରେ ଅନ୍ନପୂର୍ଣ୍ଣା ଦେବୀଙ୍କୁ ପରେ ପ୍ରତିଷ୍ଠା କରିଥିଲେ ତାହାର ଅର୍ଦ୍ଧେକଭାଗ ମାତ୍ର ନିର୍ମିତ ହୋଇଅଛି । ଅନନ୍ତର ସନ ୧୨୮୧ ସାଲ ଚୈତ୍ର ୩୦ ଦିନ, ଇଂରାଜୀ

୧୮୭୫ ମସିହା ଏପ୍ରିଲ ୧୨ ତାରିଖରେ ସେହି ମନ୍ଦିରରେ ଦେବୀ ପ୍ରତିଷ୍ଠିତ ହୋଇଥିଲେ । ରାମେଶ୍ୱରଙ୍କର ମୃତ୍ୟୁପରେ ତାଙ୍କ ପୁତ୍ର ରାମଲାଲ ଦକ୍ଷିଣେଶ୍ୱର କାଳୀମନ୍ଦିରରେ ପୂଜକ ପଦ ସ୍ୱୀକାର କରିଥିଲେ ।

### ଠାକୁରଙ୍କର ଦ୍ୱିତୀୟ ରସଦ୍ଦାର ଶ୍ରୀଯୁକ୍ତ ଶମ୍ଭୁଚରଣ ମଲ୍ଲିକଙ୍କର କଥା :

ମଥୁରବାବୁଙ୍କର ମୃତ୍ୟୁପରେ କଲିକତାର ସିନ୍ଦୁରିୟାପଟି–ପଲ୍ଲୀ–ନିବାସୀ ଶ୍ରୀଯୁକ୍ତ ଶମ୍ଭୁଚରଣ ମଲ୍ଲିକ ମହାଶୟ ଠାକୁରଙ୍କ ସହିତ ପରିଚିତ ହୋଇ ତାଙ୍କୁ ବିଶେଷ ରୂପେ ଭକ୍ତି ଶ୍ରଦ୍ଧା କରିବାକୁ ଆରମ୍ଭ କଲେ ।[୧] ଶମ୍ଭୁବାବୁ ଏହାପୂର୍ବରୁ ବ୍ରାହ୍ମସମାଜ ପ୍ରବର୍ତ୍ତିତ ଧର୍ମମତରେ ବିଶେଷ ଅନୁରାଗସମ୍ପନ୍ନ ଥିଲେ ଏବଂ ତାଙ୍କର ଅଜସ୍ର ଦାନ ନିମିତ୍ତ ସେ କଲିକତାବାସୀ ସମସ୍ତଙ୍କର ପରିଚିତ ହୋଇ ଉଠିଥିଲେ । ଠାକୁରଙ୍କ ପ୍ରତି ଶମ୍ଭୁବାବୁଙ୍କର ଭକ୍ତି ଏବଂ ଭଲପାଇବା ଦିନକୁ ଦିନ ଅତି ଗଭୀର ଭାବ ଧାରଣ କରିଥିଲା ଏବଂ କେତେ ବର୍ଷ ଧରି ସେ ତାଙ୍କର ସେବା କରି ଧନ୍ୟ ହୋଇଥିଲେ । ଠାକୁରଙ୍କର ଏବଂ ଶ୍ରୀମତୀ ମାତାଠାକୁରାଣୀଙ୍କର ଯେତେବେଳେ ଯାହା ଆବଶ୍ୟକ ହେଉଥିଲା, ଶମ୍ଭୁବାବୁ ସେସମସ୍ତ ପରମ ଆନନ୍ଦରେ ପୂରଣ କରୁଥିଲେ । ଶ୍ରୀଯୁକ୍ତ ଶମ୍ଭୁବାବୁ ଠାକୁରଙ୍କୁ 'ଗୁରୁଜୀ' ବୋଲି ସମ୍ବୋଧନ କରୁଥିଲେ । ଠାକୁର ସେଥିରେ ବିରକ୍ତ ହୋଇ ବେଳେବେଳେ କହୁଥିଲେ, ''କିଏ କାହାର ଗୁରୁ ? ତୁମେ ମୋର ଗୁରୁ !'' ଶମ୍ଭୁବାବୁ ଏଥିରେ କ୍ଷାନ୍ତ ନ ହୋଇ ସବୁବେଳେ ତାଙ୍କୁ ସେହିପରି ସମ୍ବୋଧନ କରୁଥିଲେ । ଠାକୁରଙ୍କର ଦିବ୍ୟ ସଙ୍ଗଗୁଣରେ ଶମ୍ଭୁବାବୁ ଯେ ଆଧ୍ୟାତ୍ମିକ ମାର୍ଗରେ ବିଶେଷ ଆଲୋକ ଦେଖିବାକୁ ପାଇଥିଲେ ଏବଂ ତାହାର ପ୍ରଭାବରେ ତାଙ୍କର ଧର୍ମବିଶ୍ୱାସସମୂହ ଯେଉଁ ପୂର୍ଣ୍ଣତା ଓ ସଫଳତା ଲାଭ କରିଥିଲା, ତାହା ତାଙ୍କର ଠାକୁରଙ୍କୁ ସେହିପରି ସମ୍ବୋଧନରୁ ହୃଦୟଙ୍ଗମ ହୁଏ । ଶମ୍ଭୁବାବୁଙ୍କ ପତ୍ନୀ ମଧ୍ୟ ଠାକୁରଙ୍କୁ ସାକ୍ଷାତ ଦେବତାଜ୍ଞାନରେ ଭକ୍ତି କରୁଥିଲେ ଏବଂ ଶ୍ରୀଶ୍ରୀମାତାଠାକୁରାଣୀ ଦକ୍ଷିଣେଶ୍ୱରରେ ଥିଲେ ତାଙ୍କୁ ପ୍ରତି 'ଜୟ ମଙ୍ଗଳବାର' ଦିନ ନିଜଘରକୁ ନେଇ ଷୋଡ଼ଶ ଉପଚାରରେ ତାଙ୍କର ଶ୍ରୀଚରଣପୂଜା କରୁଥିଲେ ।

---

୧. ଠାକୁରଙ୍କ ଭକ୍ତମାନଙ୍କ ମଧ୍ୟରୁ କେହି କେହି କହନ୍ତି, ସେମାନେ ଠାକୁରଙ୍କୁ କହିବାର ଶୁଣିଥିଲେ ଯେ, ମଥୁରବାବୁଙ୍କ ମୃତ୍ୟୁ ପରେ ପାନିହାଟିନିବାସୀ ଶ୍ରୀଯୁକ୍ତ ମଣିମୋହନ ସେନ୍ ତାଙ୍କର ପ୍ରୟୋଜନୀୟ ଦ୍ରବ୍ୟାଦି ଯୋଗାଇବାର ଭାର ନେଇଥିଲେ । ଶ୍ରୀଯୁକ୍ତ ମଣିମୋହନ ସେତେବେଳେ ଠାକୁରଙ୍କ ପ୍ରତି ବିଶେଷ ଶ୍ରଦ୍ଧାବାନ ହୋଇଥିଲେ ଏବଂ ସର୍ବଦା ତାଙ୍କ ନିକଟକୁ ଯିବାଆସିବା କରୁଥିଲେ । ତାଙ୍କ ପରେ ଶମ୍ଭୁବାବୁ ଏହି ସେବାଭାର ଗ୍ରହଣ କରିଥିଲେ । ଆମମାନଙ୍କର ମନେ ହୁଏ, ଶମ୍ଭୁବାବୁଙ୍କୁ ଠାକୁର ସ୍ୱୟଂ ନିଜର ଦ୍ୱିତୀୟ ରସଦଦାର ବୋଲି ଯେତେବେଳେ ନିର୍ଦ୍ଦେଶ କରିଛନ୍ତି, ସେଥିପାଇଁ ମଣିବାବୁ ଠାକୁରଙ୍କର ସେବାଭାର ଗ୍ରହଣ କଲେ ମଧ୍ୟ ଅଧିକ କାଳ ଏହା ସମ୍ପନ୍ନ କରିପାରି ନାହାନ୍ତି ।

## ଶ୍ରୀଶ୍ରୀମା'ଙ୍କ ନିମିତ୍ତ ଶମ୍ଭୁବାବୁ ଘର ତିଆରି କରିଦେବା, କ୍ୟାପ୍ଟେନ୍‌ଙ୍କର ଏଥିରେ ସାହାଯ୍ୟ, ଉକ୍ତ ଗୃହରେ ଠାକୁରଙ୍କର ଗୋଟିଏ ଦିନ ରହଣି :

ଶ୍ରୀଶ୍ରୀମାତାଠାକୁରାଣୀଙ୍କର ଦ୍ୱିତୀୟ ଥର ଦକ୍ଷିଣେଶ୍ୱର ଆଗମନ ବୋଧହୁଏ ପ୍ରାୟ ୧୨୮୧ ସାଲ (୧୮୭୪ ଖ୍ରୀଷ୍ଟାବ୍ଦ) ବୈଶାଖ ମାସରେ ହୋଇଥିଲା । ପୂର୍ବପରି ସେ ନହବତ ଘରେ ଠାକୁରଙ୍କର ମା'ଙ୍କ ସହିତ ବାସ କରୁଥିଲେ । ଶମ୍ଭୁବାବୁ ସେହିକଥା ଜାଣିପାରି ଏବଂ ସଂକୀର୍ଣ୍ଣ ନହବତ ଘରଟିରେ ରହିବାକୁ ତାଙ୍କର କଷ୍ଟ ହେଉଛି ଅନୁମାନ କରି ଦକ୍ଷିଣେଶ୍ୱର ମନ୍ଦିର ନିକଟରେ କିଛି ଜମି ଟ.୨୫୦.୦୦ ପ୍ରଦାନ ପୂର୍ବକ ପଟ୍ଟା କରି ନେଲେ ଏବଂ ସେଠାରେ ଖଣ୍ଡିଏ ସୁପ୍ରଶସ୍ତ ଚାଳଘର କରିଦେବାକୁ ସଂକଳ୍ପ କଲେ । ସେତେବେଳେ କ୍ୟାପ୍ଟେନ୍-ଉପାଧିପ୍ରାପ୍ତ ନେପାଳ-ରାଜ ସରକାରଙ୍କ କର୍ମଚାରୀ ବିଶ୍ୱନାଥ ଉପାଧ୍ୟାୟ ମହାଶୟ ଠାକୁରଙ୍କ ନିକଟକୁ ଗମନାଗମନ କରୁଥିଲେ ଏବଂ ତାଙ୍କ ପ୍ରତି ବିଶେଷ ଶ୍ରଦ୍ଧାସମ୍ପନ୍ନ ହୋଇଉଠିଥିଲେ । କ୍ୟାପ୍ଟେନ୍ ବିଶ୍ୱନାଥ ଶମ୍ଭୁବାବୁଙ୍କର ଉକ୍ତ ଘର କରିବାର ସଂକଳ୍ପ ଶୁଣି ଏଥିପାଇଁ ଯେତେ କାଠ ଦରକାର ତାହା ସେ ଯୋଗାଇବେ ବୋଲି ପ୍ରତିଶ୍ରୁତ ଦେଲେ । ନେପାଳ-ରାଜସରକାରଙ୍କର ଶାଳକାଠର କାରବାରର ଭାର ସେତେବେଳେ କ୍ୟାପ୍ଟେନ୍‌ଙ୍କ ହସ୍ତରେ ନ୍ୟସ୍ତ ଥିବାରୁ, ତାହା ଦେବା ତାଙ୍କ ପାଇଁ ବିଶେଷ ବ୍ୟୟସାଧ ନ ଥିଲା । ଗୃହନିର୍ମାଣ ଆରମ୍ଭ ହେଲେ ଶ୍ରୀଯୁକ୍ତ ବିଶ୍ୱନାଥ ଗଙ୍ଗାର ଅପର ପାର୍ଶ୍ୱରେ ବେଲୁଡ଼ ଗ୍ରାମସ୍ଥ ତାଙ୍କର କାଠଗୋଦାମରୁ ତିନିଭେଳା ଶାଳକାଠ ପଠାଇ ଦେଲେ । କିନ୍ତୁ ରାତ୍ରରେ ଗଙ୍ଗାରେ ପ୍ରବଳଭାବରେ ଜୁଆର ଆସିବାରୁ ସେଥିରୁ ଗୋଟିଏ ଭେଳା ଭାସିଗଲା । ହୃଦୟ ସେଥିରେ ଅସନ୍ତୁଷ୍ଟ ହୋଇ ଶ୍ରୀଶ୍ରୀମା'ଙ୍କୁ 'ଭାଗ୍ୟହୀନା' ବୋଲି ନିର୍ଦ୍ଦେଶ କରିଥିଲେ । ସେ ଯାହାହେଉ, ଗୋଟିଏ ଭେଳା ଭାସିଯିବା କଥା ଶୁଣି କ୍ୟାପ୍ଟେନ୍ ଆଉ ଗୋଟିଏ ଭେଳା କାଠ ପରେ ପଠାଇଦେଲେ ଏବଂ ଗୃହ ନିର୍ମାଣ ସମ୍ପୂର୍ଣ୍ଣ ହୋଇଥିଲା । ଅତଃପର ଉକ୍ତ ଗୃହରେ ଶ୍ରୀଶ୍ରୀମାତାଠାକୁରାଣୀ ପ୍ରାୟ ଏକବର୍ଷ ବାସ କରିଥିଲେ । ଗୃହ କର୍ମରେ ସାହାଯ୍ୟ କରିବା ପାଇଁ ଏବଂ ସର୍ବଦା ଶ୍ରୀଶ୍ରୀମା'ଙ୍କ ସହିତ ରହିବା ପାଇଁ ଜଣେ ରମଣୀଙ୍କୁ ସେତେବେଳେ ନିଯୁକ୍ତା କରାହୋଇଥିଲା । ଶ୍ରୀଶ୍ରୀମା' ଏହି ଗୃହରେ ରନ୍ଧନ କରି ଠାକୁରଙ୍କ ପାଇଁ ନାନାବିଧ ଖାଦ୍ୟ ପ୍ରତ୍ୟହ ଦକ୍ଷିଣେଶ୍ୱର ମନ୍ଦିରକୁ ନେଇ ଯାଉଥିଲେ ଏବଂ ତାଙ୍କ ଭୋଜନାନ୍ତେ ପୁନରାୟ ଏଠାକୁ ଫେରି ଆସୁଥିଲେ । ତାଙ୍କର ସନ୍ତୋଷ ଓ ତତ୍ତ୍ୱାବଧାନ ନିମିତ୍ତ ଠାକୁର ମଧ ଦିବାଭାଗରେ କେବେକେବେ ସେହି ଗୃହକୁ ଆଗମନ କରୁଥିଲେ ଏବଂ କିଛିକାଳ ତାଙ୍କ ନିକଟରେ ରହି ପୁନରାୟ ମନ୍ଦିରକୁ ଫେରି ଆସୁଥିଲେ । ଦିନେମାତ୍ର ସେହି ନିୟମର ବ୍ୟତିକ୍ରମ ହୋଇଥିଲା । ସେଦିନ ଅପରାହ୍ଣରେ ଠାକୁର ଶ୍ରୀଶ୍ରୀମା'ଙ୍କ ନିକଟକୁ ଆଗମନମାତ୍ରେ ଗଭୀର ରାତ୍ର ପର୍ଯ୍ୟନ୍ତ ଏପରି ମୂଷଳଧାରାରେ ବର୍ଷା ଆରମ୍ଭ

ହେଲା ଯେ, ମନ୍ଦିରକୁ ଫେରିବା ସମ୍ପୂର୍ଣ୍ଣ ଅସମ୍ଭବ ହୋଇ ହେଲା । ତେଣୁ ସେହି ରାତ୍ରରେ ସେ ସେଠାରେ ବାସ କରିବାକୁ ବାଧ୍ୟ ହେଲେ ଏବଂ ଶ୍ରୀଶ୍ରୀମା' ତାଙ୍କୁ ଝୋଳଭାତ ରାନ୍ଧି ଭୋଜନ କରାଇଥିଲେ ।

## ଏହି ଗୃହରେ ବାସ କରିବା ସମୟରେ ଶ୍ରୀଶ୍ରୀମା'ଙ୍କର କଠିନ ପୀଡ଼ା ଓ ଜୟରାମବାଟୀ ଗମନ :

ଏହି ଘରେ ଗୋଟିଏ ବର୍ଷ ରହିବା ପରେ ଶ୍ରୀଶ୍ରୀମାତାଠାକୁରାଣୀ ଆମାଶୟ ରୋଗରେ କଠିନଭାବରେ ଆକ୍ରାନ୍ତା ହେଲେ । ଶମ୍ଭୁବାବୁ ତାଙ୍କୁ ଆରୋଗ୍ୟ କରିବା ପାଇଁ ବିଶେଷ ଯତ୍ନ କରିବାକୁ ଲାଗିଲେ । ତାଙ୍କ ଦ୍ୱାରା ନିଯୁକ୍ତ ପ୍ରସାଦ ଡାକ୍ତର ଏହି ସମୟରେ ଶ୍ରୀଶ୍ରୀମା'ଙ୍କୁ ଚିକିତ୍ସା କରିଥିଲେ । ରୋଗ ଅଳ୍ପ ମାତ୍ରାରେ ଉପଶମ ହେଲେ ଶ୍ରୀଶ୍ରୀମା' ତାଙ୍କ ପିତ୍ରାଳୟ ଜୟରାମବାଟୀ ଗ୍ରାମକୁ ଗଲେ । ସମ୍ଭବତଃ ସନ ୧୨୮୨ ବଙ୍ଗାବ୍ଦ (୧୮୭୬ ଖ୍ରୀଷ୍ଟାବ୍ଦ) ଆଶ୍ୱିନ ମାସରେ ଏହି ଘଟଣା ଘଟିଥିଲା । କିନ୍ତୁ ସେଠାକୁ ଯିବାର ଅଳ୍ପଦିନ ପରେ ପୁଣି ସେ ଏହି ରୋଗରେ ଶଯ୍ୟାଶାୟିନୀ ହେଲେ । କ୍ରମେ ଏହା ଏତେ ବୃଦ୍ଧି ହେଲା ଯେ, ତାଙ୍କର ଶରୀରରକ୍ଷା ସଂଶୟର ବିଷୟ ହେଲା । ଶ୍ରୀଶ୍ରୀମାତାଠାକୁରାଣୀଙ୍କର ପୂଜ୍ୟପାଦ ପିତା ଶ୍ରୀରାମଚନ୍ଦ୍ର ସେତେବେଳେ ମାନବଲୀଳା ସମ୍ବରଣ କରିଥିଲେ; ସୁତରାଂ ତାଙ୍କର ଜନନୀ ଏବଂ ଭ୍ରାତୃବର୍ଗ ହିଁ ତାଙ୍କର ଯଥାସାଧ୍ୟ ସେବା କରିବାକୁ ଲାଗିଲେ । ଶୁଣିଅଛୁ, ଠାକୁର ସେହି ସମୟରେ ତାଙ୍କର ନିଦାରୁଣ ପୀଡ଼ା କଥା ଶୁଣି ହୃଦୟଙ୍କୁ କହିଥିଲେ, "ତାହେଲେ ତ ହୃଦେ, ସେ (ଶ୍ରୀଶ୍ରୀମା) କେବଳ ଆସିବ ଓ ଯିବ, ମନୁଷ୍ୟଜନ୍ମର କିଛି ହିଁ କରିବା ହେବ ନାହିଁ !"

## ସିଂହବାହିନୀଙ୍କ ପାଖରେ ଅଧିଆ ପଡ଼ି ଔଷଧ ପ୍ରାପ୍ତି :

ରୋଗର ଯେତେବେଳେ କୌଣସି ପ୍ରକାର ଉପଶମ ହେଲା ନାହିଁ, ସେତେବେଳେ ଶ୍ରୀଶ୍ରୀମା'ଙ୍କର ପ୍ରାଣରେ ଦେବୀଙ୍କ ନିକଟରେ ଅଧିଆ ପଡ଼ିବାକୁ ମନ ହେଲା ଏବଂ ତାଙ୍କର ଜନନୀ ଓ ଭ୍ରାତୃଗଣ ଜାଣିଲେ ଏଥିରେ ବାଧା ପ୍ରଦାନ କରିପାରନ୍ତି ଭାବି ସେ କାହାକୁ କିଛି ନ କହି ଗ୍ରାମ୍ୟଦେବୀ ସିଂହବାହିନୀଙ୍କ ମନ୍ଦିରକୁ ଯାଇ ସେହି ଉଦ୍ଦେଶ୍ୟରେ ପ୍ରାୟୋପବେଶନ କରି ପଡ଼ି ରହିଲେ । କେତେ ଘଣ୍ଟା କାଳ ଏପରି ପଡ଼ି ରହିବା ପରେ ହିଁ ଦେବୀ ପ୍ରସନ୍ନା ହୋଇ ତାଙ୍କୁ ଆରୋଗ୍ୟ ନିମିତ୍ତ ଔଷଧ ନିର୍ଦ୍ଦେଶ କରି ଦେଇଥିଲେ ।

ଦେବୀଙ୍କର ଆଦେଶରେ ଉକ୍ତ ଔଷଧ-ସେବନ ମାତ୍ରେ ହିଁ ତାଙ୍କ ରୋଗର ଉପଶମ ହେଲା ଏବଂ ଧୀରେ ଧୀରେ ତାଙ୍କର ଶରୀର ପୂର୍ବପରି ସବଳ ହୋଇଉଠିଲା । ଶ୍ରୀଶ୍ରୀମା'ଙ୍କର ଅଧିଆ ପଡ଼ିବା ଏବଂ ଔଷଧପ୍ରାପ୍ତି ସମୟଠାରୁ

ସେହି ଦେବୀ ବିଶେଷ ଜାଗ୍ରତା ବୋଲି ଚତୁଃପାର୍ଶ୍ୱସ୍ଥ ଗ୍ରାମସମୂହରେ ପ୍ରତିପତ୍ତି ଲାଭ କରିଥିଲେ ।

**ମୃତ୍ୟୁ ସମୟରେ ଶମ୍ଭୁବାବୁଙ୍କର ନିର୍ଭୀକ ବ୍ୟବହାର :**

ପ୍ରାୟ ଦୀର୍ଘ ଚାରିବର୍ଷ କାଳ ଠାକୁର ଓ ଶ୍ରୀଶ୍ରୀମା'ଙ୍କର ସେହି ଭାବରେ ସେବା କରିବା ପରେ ଶମ୍ଭୁବାବୁ ରୋଗାକ୍ରାନ୍ତ ହୋଇ ଶଯ୍ୟାଶାୟୀ ହେଲେ । ପୀଡ଼ିତ ଅବସ୍ଥାରେ ଠାକୁର ତାଙ୍କୁ ଦିନେ ଦେଖିବାକୁ ଯାଇଥିଲେ ଏବଂ ଫେରି ଆସି କହିଲେ, ''ଶମ୍ଭୁର ପ୍ରଦୀପରେ ତୈଳ ନାହିଁ !'' ଠାକୁରଙ୍କ କଥା ସତ୍ୟରେ ପରିଣତ ହେଲା — ବହୁମୂତ୍ରରୋଗରୁ ବିକାର ଉପସ୍ଥିତ ହୋଇ ଶ୍ରୀଯୁକ୍ତ ଶମ୍ଭୁବାବୁ ଦେହ ରକ୍ଷା କଲେ । ଶମ୍ଭୁବାବୁ ପରମ ଉଦାର, ତେଜସ୍ୱୀ ଏବଂ ଈଶ୍ୱରଭକ୍ତ ଥିଲେ । ପୀଡ଼ିତାବସ୍ଥାରେ ତାଙ୍କର ମନର ପ୍ରସନ୍ନତା ଦିନକ ପାଇଁ ମଧ୍ୟ ନଷ୍ଟ ହୋଇ ନ ଥିଲା । ମୃତ୍ୟୁର କେତେଦିନ ପୂର୍ବରୁ ସେ ହୃଦୟଙ୍କୁ ହୃଷ୍ଟଚିତ୍ତରେ କହିଥିଲେ, ''ମରଣ ପାଇଁ ମୋର ସାମାନ୍ୟ ଚିନ୍ତା ନାହିଁ, ମୁଁ ଗଣ୍ଠିଲି ବାନ୍ଧି ପ୍ରସ୍ତୁତ ହୋଇ ବସି ରହିଛି !'' ଶମ୍ଭୁବାବୁଙ୍କ ସହିତ ପରିଚୟ ହେବାର ବହୁ ପୂର୍ବରୁ ଠାକୁର ଯୋଗାରୂଢ଼ ଅବସ୍ଥାରେ ଦେଖିଥିଲେ, ଶ୍ରୀଶ୍ରୀଜଗଦମ୍ବା ଶମ୍ଭୁଙ୍କୁ ହିଁ ତାଙ୍କର ଦ୍ୱିତୀୟ ରସଦଦାର ରୂପରେ ମନୋନୀତ କରିଛନ୍ତି ଏବଂ ଦେଖିବା ମାତ୍ରେ ତାଙ୍କୁ ଠାକୁର ସେହି ବ୍ୟକ୍ତି ବୋଲି ଚିହ୍ନି ପାରିଥିଲେ ।

**ଠାକୁରଙ୍କ ଜନନୀ ଚନ୍ଦ୍ରମଣି ଦେବୀଙ୍କର ଅନ୍ତିମ ଅବସ୍ଥା ଏବଂ ମୃତ୍ୟୁ :**

ରୋଗାକ୍ରାନ୍ତା ହୋଇ ଶ୍ରୀଶ୍ରୀମାତାଠାକୁରାଣୀ ପିତ୍ରାଳୟକୁ ଯିବାର କେତେମାସ ପରେ ଠାକୁରଙ୍କର ଜୀବନରେ ଏକ ବିଶେଷ ଘଟଣା ଘଟିଥିଲା । ସନ ୧୨୮୨ ବଙ୍ଗାବ୍ଦରେ (୧୮୭୬ ଖ୍ରୀଷ୍ଟାବ୍ଦ) ୮୫ ବର୍ଷ ବୟସରେ ଶ୍ରୀମତୀ ଚନ୍ଦ୍ରାଦେବୀ ପ୍ରାଣତ୍ୟାଗ କରିଥିଲେ । ଶୁଣାଯାଏ ଶ୍ରୀରାମକୃଷ୍ଣଦେବଙ୍କର ଜନ୍ମତିଥି ଦିବସରେ ସେହି ଘଟଣା ଘଟିଥିଲା । ଏହାର କିଛି ଦିନ ପୂର୍ବରୁ ବୃଦ୍ଧାବସ୍ଥା କାରଣରୁ ତାଙ୍କର ଇନ୍ଦ୍ରିୟ ଓ ମନର ଶକ୍ତିସମୂହ ଅନେକାଂଶରେ ଲୁପ୍ତ ହୋଇଥିଲା । ତାଙ୍କର ମୃତ୍ୟୁ ସମ୍ବାଦ ଆମେ ହୃଦୟଙ୍କ ନିକଟରୁ ଯେପରି ଶୁଣିଥିଲୁ, ସେହିପରି ଲିପିବଦ୍ଧ କରୁଅଛୁ —

ସେହି ଘଟଣାର ଚାରିଦିନ ପୂର୍ବରୁ ହୃଦୟ କିଛି ଦିନ ପାଇଁ ଛୁଟି ନେଇ ତାଙ୍କ ଘରକୁ ଯିବାକୁ ପ୍ରସ୍ତୁତ ହେଉଥିଲେ । ଘରକୁ ଯିବା ପୂର୍ବରୁ ଗୋଟିଏ ଅଜଣା ଆଶଙ୍କାରେ ତାଙ୍କର ପ୍ରାଣ ଚଞ୍ଚଳ ହୋଇ ଉଠିଥିଲା ଏବଂ ଠାକୁରଙ୍କୁ ଛାଡ଼ି ତାଙ୍କର କୌଣସି ପ୍ରକାରରେ ଯିବାକୁ ଇଚ୍ଛା ହେଲା ନାହିଁ । ଠାକୁରଙ୍କୁ ଏକଥା କହିବାରୁ ସେ କହିଲେ, ତାହାହେଲେ ଯିବାର ଆବଶ୍ୟକତା ନାହିଁ । ଏହାପରେ ତିନିଦିନ ନିର୍ବିଘ୍ନରେ ବିତିଗଲା ।

ଠାକୁର ପ୍ରତ୍ୟହ ତାଙ୍କ ଜନନୀଙ୍କ ନିକଟକୁ କିଛି ସମୟ ପାଇଁ ଯାଇ ତାଙ୍କ ସେବା ସ୍ୱହସ୍ତରେ ଯଥାସାଧ୍ୟ ସମ୍ପାଦନ କରୁଥିଲେ । ହୃଦୟ ମଧ୍ୟ ଏପରି କରୁଥିଲେ ଏବଂ 'କାଳୀର ମା' ନାମ୍ନୀ ଚାକରାଣୀ ଦିବାଭାଗରେ ପ୍ରାୟ ସର୍ବଦା ବୃଦ୍ଧାଙ୍କ ନିକଟରେ ରହୁଥିଲା । ହୃଦୟଙ୍କୁ ବୃଦ୍ଧା ଏହି ସମୟରେ ପସନ୍ଦ କରୁ ନ ଥିଲେ । ଅକ୍ଷୟଙ୍କ ମୃତ୍ୟୁଠାରୁ ହିଁ ବୃଦ୍ଧାଙ୍କ ମନରେ କେମିତି ଗୋଟିଏ ଧାରଣା ହୋଇଥିଲା ଯେ, ହୃଦୟ ହିଁ ଅକ୍ଷୟଙ୍କୁ ମାରି ପକାଇଛି ଏବଂ ଠାକୁରଙ୍କୁ ଓ ତାଙ୍କ ପତ୍ନୀଙ୍କୁ ମାରି ପକାଇବାକୁ ଚେଷ୍ଟା କରୁଅଛି । ସେଥିପାଇଁ ବୃଦ୍ଧା ଠାକୁରଙ୍କୁ ବେଳେବେଳେ ସତର୍କ କରି ଦେଉଥିଲେ, କହୁଥିଲେ—''ହୃଦୁର କଥା କେବେ ଶୁଣିବୁ ନାହିଁ !'' ଜରାଜୀର୍ଣ୍ଣ ହୋଇ ବୁଦ୍ଧିଭ୍ରଂଶର ପରିଚୟ ଅନ୍ୟ ନାନା ବିଷୟରେ ମଧ୍ୟ ଦେଖାଯାଉଥିଲା । ଯଥା—ଦକ୍ଷିଣେଶ୍ୱର ବଗିଚା ସନ୍ନିକଟରେ ହିଁ ଆଲମବଜାର ଝୋଟକଳ । ମଧ୍ୟାହ୍ନରେ ସେହି କଳର କର୍ମଚାରୀମାନଙ୍କୁ କିଛିକ୍ଷଣ ପାଇଁ ଛୁଟି ଦିଆଯାଉଥିଲା ଏବଂ ଅଧଘଣ୍ଟା ପରେ ହୁଇସିଲ୍ ବଜାଇ ପୁନରାୟ କାମରେ ଲଗାଯାଏ । କଳର ହୁଇସିଲ୍ ଶବ୍ଦକୁ ବୃଦ୍ଧା ବୈକୁଣ୍ଠର ଶଙ୍ଖଧ୍ୱନି ବୋଲି ସ୍ଥିର କରିଥିଲେ ଏବଂ ଯେତେ ସମୟ ପର୍ଯ୍ୟନ୍ତ ସେହି ଧ୍ୱନି ଶୁଣିବାକୁ ପାଉ ନ ଥିଲେ, ସେ ଆହାରରେ ବସୁ ନ ଥିଲେ । ସେବିଷୟରେ ଅନୁରୋଧ କଲେ କହୁଥିଲେ—''ବର୍ତ୍ତମାନ କ'ଣ ଖାଇବି, ଏପର୍ଯ୍ୟନ୍ତ ଶ୍ରୀଶ୍ରୀଲକ୍ଷ୍ମୀନାରାୟଣଙ୍କର ଭୋଗ ଲାଗି ନାହିଁ, ବୈକୁଣ୍ଠର ଶଙ୍ଖ ବାଜି ନାହିଁ, ବର୍ତ୍ତମାନ କ'ଣ ଖାଆନ୍ତି ?'' କାରଖାନାରେ ଯେଉଁ ଦିନ ଛୁଟି ରହେ ସେଦିନ ହୁଇସିଲ୍ ବାଜେ ନାହିଁ, ଫଳରେ ବୃଦ୍ଧାଙ୍କୁ ଆହାରରେ ବସାଇବା ସେଦିନ କଷ୍ଟକର ହେଉଥିଲା; ହୃଦୟ ଏବଂ ଠାକୁରଙ୍କୁ ସେଦିନ ନାନା ଉପାୟ ଉଦ୍ଭାବନ କରି ବୃଦ୍ଧାଙ୍କୁ ଆହାର କରାଇବାକୁ ପଡୁଥିଲା ।

ଏହିପରି ଚତୁର୍ଥ ଦିନ ସମାଗତ ହେଲା; ବୃଦ୍ଧାଙ୍କର ଅସୁସ୍ଥତାର କୌଣସି ଲକ୍ଷଣ ଦେଖାଗଲା ନାହିଁ । ସନ୍ଧ୍ୟା ପରେ ଠାକୁର ତାଙ୍କ ନିକଟକୁ ଯାଇ ତାଙ୍କର ପୂର୍ବ ଜୀବନର ନାନାପ୍ରକାରର କଥା ଉତ୍ଥାପନ ଓ ଗଳ୍ପ କରି ବୃଦ୍ଧାଙ୍କର ମନ ଆନନ୍ଦପୂର୍ଣ୍ଣ କଲେ । ରାତି ଦୁଇ ପ୍ରହରରେ ଠାକୁର ତାଙ୍କୁ ଶୟନ କରାଇ ନିଜର କୋଠରୀକୁ ଫେରି ଆସିଲେ ।

ତା'ପରଦିନ ପ୍ରଭାତ ହୋଇ କ୍ରମେ ଆଠଟା ବାଜିଲା । ବୃଦ୍ଧା ତଥାପି ଘରର ଦ୍ୱାର ଉନ୍ମୁକ୍ତ କରି ବାହାରକୁ ଆସିଲେ ନାହିଁ । 'କାଳୀର ମା' ନହବତର ଉପର ଘର ଦରଜା ପାଖରେ ଯାଇ ବହୁତ ଡକାଡକି କଲା, କିନ୍ତୁ ବୃଦ୍ଧାଙ୍କଠାରୁ କୌଣସି ଉତ୍ତର ମିଳିଲା ନାହିଁ । ଦ୍ୱାରରେ କାନ ଦେଇ କାଳୀର ମା' ଶୁଣିଲା ତାଙ୍କ କଣ୍ଠରୁ କିପରି ଏକ ବିକୃତ ଶବ୍ଦ ବାହାରୁଛି ! ତେଣୁ ସେ ଭୟଭୀତ ହୋଇ ଠାକୁର ଏବଂ ହୃଦୟଙ୍କୁ ଏକଥା କହିଲା । ହୃଦୟ ଯାଇ କୌଶଳରେ ବାହାରପଟୁ ଦ୍ୱାରର ଅର୍ଗଳ ଖୋଲି ଦେଖିଲେ, ବୃଦ୍ଧା ସଂଜ୍ଞାରହିତ ହୋଇ ପଡ଼ିରହିଛନ୍ତି । ସେତେବେଳେ ହୃଦୟ

କବିରାଜୀ ଔଷଧ ଆଣି ତାଙ୍କର ଜିହ୍ୱାରେ ଦେଲେ ଏବଂ ମଧ୍ୟେ ମଧ୍ୟେ ବିନ୍ଦୁ ବିନ୍ଦୁ କରି ଦୁଗ୍ଧ ଏବଂ ଗଙ୍ଗାଜଳ ତାଙ୍କୁ ପାନ କରାଇବାକୁ ଲାଗିଲେ । ତିନିଦିନ ଏପରି ରହିବା ପରେ ବୃଦ୍ଧାଙ୍କର ଅନ୍ତିମ କାଳ ଉପସ୍ଥିତ ଦେଖି ତାଙ୍କୁ ଅନ୍ତର୍ଜଳି କରାଗଲା ଏବଂ ଠାକୁରେ ଫୁଲ, ଚନ୍ଦନ ଏବଂ ତୁଳସୀ ନେଇ ତାଙ୍କର ପାଦପଦ୍ମରେ ଅଞ୍ଜଳି ପ୍ରଦାନ କଲେ । ପରେ ସନ୍ନ୍ୟାସୀ ହୋଇଥିବାରୁ ଠାକୁରଙ୍କ ପାଇଁ ଏହା ନିଷିଦ୍ଧ ଥିବାରୁ ଠାକୁରଙ୍କ ଭ୍ରାତୁଷ୍ପୁତ୍ର ରାମଲାଲ ତାଙ୍କ ସ୍ଥାନରେ ବୃଦ୍ଧାଙ୍କର ଅନ୍ତିମ ସଂସ୍କାର କଲେ । ଅନନ୍ତର ଅଶୌଚ ଉତ୍ତୀର୍ଣ୍ଣ ହେଲେ ଠାକୁରଙ୍କର ନିର୍ଦ୍ଦେଶରେ ରାମଲାଲ ହିଁ ବୃଷୋତ୍ସର୍ଗ କରି ଠାକୁରଙ୍କର ଜନନୀଙ୍କର ଶ୍ରାଦ୍ଧକ୍ରିୟା ଯଥାରୀତି ସମ୍ପାଦନ କଲେ ।

## ମାତୃବିୟୋଗ ହେଲେ ଠାକୁର ତର୍ପଣ କରିବାକୁ ଯାଇ ଉକ୍ତ କାର୍ଯ୍ୟରେ ଅସଫଳ ହେବା—ତାଙ୍କର ଗଳିତ-କର୍ମାବସ୍ଥା :

ମାତୃବିୟୋଗ ହେବାରୁ ଠାକୁର ଶାସ୍ତ୍ରୀୟ ବିଧାନ ଅନୁସାରେ ସନ୍ନ୍ୟାସଗ୍ରହଣର ମର୍ଯ୍ୟାଦା ରକ୍ଷାକରି ଅଶୌଚଗ୍ରହଣାଦି କୌଣସି କାର୍ଯ୍ୟ କରି ନାହାନ୍ତି । ଜନନୀଙ୍କର ପୁତ୍ରୋଚିତ କୌଣସି କାର୍ଯ୍ୟ କଲି ନାହିଁ ଭାବି ଦିନେ ସେ ତର୍ପଣ କରିବାକୁ ଅଗ୍ରସର ହୋଇଥିଲେ । କିନ୍ତୁ ଅଞ୍ଜଳି ଭର୍ତ୍ତି କରି ଜଳ ଧରିବା ମାତ୍ରେ ଭାବାବେଶ ଉପସ୍ଥିତ ହୋଇ ତାଙ୍କର ଅଙ୍ଗୁଳି ସକଳ ଅସଂଲଗ୍ନ ଓ ଶିଥିଳ ହୋଇ ସମସ୍ତ ଜଳ ହସ୍ତରୁ ପଡ଼ିଯାଇଥିଲା । ବାରମ୍ବାର ଚେଷ୍ଟା କରି ମଧ୍ୟ ସେ ଏଥିରେ କୃତକାର୍ଯ୍ୟ ହୋଇ ପାରିଲେ ନାହିଁ ଏବଂ ଦୁଃଖିତ ଅନ୍ତରରେ କ୍ରନ୍ଦନ କରି ପରଲୋକଗତା ଜନନୀଙ୍କୁ ନିଜର ଅସାମର୍ଥ୍ୟ ନିବେଦନ କଲେ । ପରେ ଜଣେ ପଣ୍ଡିତଙ୍କଠାରୁ ଶୁଣିଥିଲେ, ଗଳିତ-କର୍ମ ଅବସ୍ଥା ହେଲେ, ଅଥବା ଆଧ୍ୟାତ୍ମିକ ଉନ୍ନତିରେ ସ୍ୱଭାବତଃ କର୍ମ ସମ୍ପୂର୍ଣ୍ଣ ପରିତ୍ୟାଗ ହେଲେ ସେହିପରି ହୋଇଥାଏ; ଶାସ୍ତ୍ରବିହିତ କର୍ମ କରି ନ ପାରିଲେ ମଧ୍ୟ ଏପରି ବ୍ୟକ୍ତିଙ୍କୁ ଦୋଷ ସ୍ପର୍ଶ କରେ ନାହିଁ ।

## ଠାକୁରଙ୍କର କେଶବବାବୁଙ୍କୁ ଦେଖିବାକୁ ଯିବା :

ଠାକୁରଙ୍କର ମାତୃବିୟୋଗର ଏକବର୍ଷ ପୂର୍ବରୁ ଶ୍ରୀଶ୍ରୀଜଗଦମ୍ବାଙ୍କ ଇଚ୍ଛାରେ ତାଙ୍କ ଜୀବନରେ ଗୋଟିଏ ବିଶେଷ ଘଟଣା ଘଟିଥିଲା । ୧୮୭୫ ଖ୍ରୀଷ୍ଟାବ୍ଦର ମାର୍ଚ୍ଚ ମାସରେ ଠାକୁରଙ୍କର ପ୍ରାଣରେ ଭାରତବର୍ଷୀୟ ବ୍ରାହ୍ମସମାଜର ନେତା ଶ୍ରୀଯୁକ୍ତ କେଶବଚନ୍ଦ୍ର ସେନ ମହାଶୟଙ୍କୁ ଦେଖିବାର ବାସନା ଉଦିତ ହୋଇଥିଲା । ଯୋଗାରୂଢ଼ ଠାକୁର ଏହି ବିଷୟରେ ଶ୍ରୀଶ୍ରୀଜଗନ୍ମାତାଙ୍କର ଇଙ୍ଗିତ ଦେଖିଥିଲେ ଏବଂ ଶ୍ରୀଯୁକ୍ତ କେଶବ ସେତେବେଳେ କଲିକତାଠାରୁ କିଛି ମାଇଲ ଉତ୍ତରରେ ବେଲଘରିଆ ନାମକ ସ୍ଥାନରେ ଶ୍ରୀଯୁକ୍ତ ଜୟଗୋପାଳ ସେନ୍ ମହାଶୟଙ୍କର ଉଦ୍ୟାନ ବାଟିକାରେ ସଶିଷ୍ୟ ସାଧନଭଜନରେ ନିଯୁକ୍ତ ଥିବାର ଜାଣିପାରି

ହୃଦୟଙ୍କୁ ସାଙ୍ଗରେ ଧରି ସେହି ଉଦ୍ୟାନରେ ଉପସ୍ଥିତ ହୋଇଥିଲେ । ହୃଦୟଙ୍କ ନିକଟରୁ ଶୁଣିଥିଲି, ସେମାନେ କ୍ୟାପ୍ଟେନ୍ ବିଶ୍ୱନାଥ ଉପାଧ୍ୟାୟଙ୍କର ଗାଡ଼ିରେ ଯାଇଥିଲେ ଏବଂ ଅପରାହ୍ଣ ପ୍ରାୟ ଏକ ଘଟିକା ସମୟରେ ସେଠାରେ ପହଞ୍ଚିଥିଲେ । ଠାକୁରଙ୍କର ପରିଧାନରେ ସେଦିନ ଗୋଟିଏ ଲାଲ ଧଡ଼ିଥିବା ଲୁଗାଥିଲା ଏବଂ ତା'ର କୁଞ୍ଚର କାନିଟି ତାଙ୍କ ବାମ କାନ୍ଧରେ ଲମ୍ବି ପୃଷ୍ଠଦେଶରେ ଝୁଲୁଥିଲା ।

**ବେଲଘରିଆ ଉଦ୍ୟାନରେ କେଶବ :**

ଗାଡିରୁ ଓହ୍ଲାଇ ହୃଦୟ ଦେଖିଲେ, ଶ୍ରୀଯୁକ୍ତ କେଶବ ଅନୁଚରବର୍ଗଙ୍କ ସହିତ ଉଦ୍ୟାନମଧ୍ୟସ୍ଥ ପୁଷ୍କରିଣୀର ଘାଟରେ ବସିଛନ୍ତି । ଆଗକୁ ଯାଇ ସେ ତାଙ୍କୁ କହିଲେ, ''ମୋ ମାମୁଁ ହରିକଥା ଓ ହରିଗୁଣଗାନ ଶୁଣିବାକୁ ବହୁତ ଭଲ ପାଆନ୍ତି ଏବଂ ଏହା ଶୁଣୁ ଶୁଣୁ ମହାଭାବ ହୋଇ ତାଙ୍କର ସମାଧି ହୋଇଥାଏ; ଆପଣଙ୍କ ନାମ ଶୁଣି ଆପଣଙ୍କ ମୁଖରୁ ଈଶ୍ୱରଗୁଣାନୁକୀର୍ତ୍ତନ ଶୁଣିବାକୁ ସେ ଏଠାକୁ ଆଗମନ କରିଛନ୍ତି, ଆପଣଙ୍କର ଆଦେଶ ମିଳିଲେ ମୁଁ ତାଙ୍କୁ ଏଠାକୁ ନେଇ ଆସିବି ।'' ଶ୍ରୀଯୁକ୍ତ କେଶବ ସମ୍ମତିପ୍ରକାଶ କରିବାରୁ ହୃଦୟ ଗାଡ଼ିରୁ ଓହ୍ଲାଇ ଠାକୁରଙ୍କୁ ସାଙ୍ଗରେ ଧରି ସେଠାରେ ପହଞ୍ଚିଲେ । କେଶବ ପ୍ରଭୃତି ସମସ୍ତେ ଠାକୁରଙ୍କୁ ଦେଖିବାକୁ ଏପର୍ଯ୍ୟନ୍ତ ଉଦ୍‌ଗ୍ରୀବ ଥିଲେ, କିନ୍ତୁ ତାଙ୍କୁ ଦେଖି ସ୍ଥିର କଲେ ଏଜଣେ ସାଧାରଣ ବ୍ୟକ୍ତି ମାତ୍ର ।

**କେଶବଙ୍କ ସହିତ ପ୍ରଥମ ଆଳାପ :**

ଠାକୁର କେଶବଙ୍କ ନିକଟରେ ପହଞ୍ଚି କହିଲେ, ''ବାବୁ, ତୁମେମାନେ ପରା ଈଶ୍ୱରଙ୍କୁ ଦର୍ଶନ କରିଥାଅ । ସେହି ଦର୍ଶନ କିପରି, ତାହା ଜାଣିବାକୁ ବାସନା, ସେଥିପାଇଁ ତୁମମାନଙ୍କ ନିକଟକୁ ଆସିଅଛି ।'' ଏପରି ଭାବରେ ସତ୍‌ପ୍ରସଙ୍ଗ ଆରମ୍ଭ ହେଲା । ଠାକୁରଙ୍କର ପୂର୍ବୋକ୍ତ କଥା ଉତ୍ତରରେ ଶ୍ରୀଯୁକ୍ତ କେଶବ କ'ଣ କହିଥିଲେ କହିପାରିବୁ ନାହିଁ, କିନ୍ତୁ କିଛି ସମୟ ପରେ ଠାକୁର ଯେ ''କେ ଜାଣେ କାଲୀ କେମନ—ଷଡ଼ଦର୍ଶନେ ନା ପାଏ ଦରଶନ''(କାଳୀ କିପରି କିଏ ଜାଣେ, ଷଡ୍‌ଦର୍ଶନରେ ବି ତାଙ୍କ ବିଷୟରେ କିଛି ଜାଣି ହୁଏ ନାହିଁ) ରାମପ୍ରସାଦଙ୍କ ଏହି ସଙ୍ଗୀତଟି ଗାଇ ଗାଇ ସମାଧିସ୍ଥ ହୋଇଥିଲେ, ଏକଥା ଆମେ ହୃଦୟଙ୍କଠାରୁ ଶୁଣିଛୁ । ଠାକୁରଙ୍କର ଭାବାବସ୍ଥା ଦେଖି ସେତେବେଳେ କେଶବ ପ୍ରଭୃତି ସମସ୍ତେ ଏହା ଆଧ୍ୟାତ୍ମିକ ଉଚ୍ଚ ଅବସ୍ଥା ବୋଲି ମନେକରି ନାହାନ୍ତି; ଭାବିଥିଲେ ତାହା ଏକ ମିଥ୍ୟା ଛଳ ଅଥବା ମସ୍ତିଷ୍କର ବିକାର ପ୍ରସୂତ । ସେ ଯାହାହେଉ, ଠାକୁରଙ୍କର ବାହ୍ୟଚୈତନ୍ୟ ଆଣିବା ପାଇଁ ହୃଦୟ ତାଙ୍କର କର୍ଣ୍ଣରେ ଓଁକାର ଧ୍ୱନି ଶୁଣାଇବାକୁ ଲାଗିଲେ ଏବଂ ଏହା ଶୁଣୁ ଶୁଣୁ ତାଙ୍କର ମୁଖମଣ୍ଡଳ ମଧୁର ହାସ୍ୟରେ ଉଜ୍ଜ୍ୱଳ ହୋଇ ଉଠିଲା । ସେହି ପ୍ରକାରରେ ଅର୍ଦ୍ଧବାହ୍ୟ ଅବସ୍ଥା ପ୍ରାପ୍ତ ହୋଇ ଠାକୁର ଏବେ ଗଭୀର ଆଧ୍ୟାତ୍ମିକ ବିଷୟଗୁଡ଼ିକ ସାମାନ୍ୟ ସାମାନ୍ୟ ଦୃଷ୍ଟାନ୍ତ ସାହାଯ୍ୟରେ

ଏପରି ସରଳ ଭାଷାରେ ବୁଝାଇବାକୁ ଲାଗିଲେ ଯେ, ସମସ୍ତେ ମୁଗ୍ଧ ହୋଇ ତାଙ୍କର ମୁହଁକୁ ଚାହିଁ ବସି ରହିଲେ । ସ୍ନାନାହାରର ସମୟ ଅତୀତ ହୋଇ କ୍ରମେ ପୁନରାୟ ଉପାସନାର ସମୟ ଉପସ୍ଥିତ ହୋଇଛି, ସେକଥା କାହାର ମଧ୍ୟ ମନେ ରହିଲା ନାହିଁ । ଠାକୁର ସେମାନଙ୍କର ଏପରି ଭାବଦେଖି କହିଥିଲେ, ''ଗୋରୁ ପଲରେ ଅନ୍ୟ କୌଣସି ପଶୁ ପହଞ୍ଚିଗଲେ ସେମାନେ ତାକୁ ଶିଙ୍ଗରେ ମାରିବାକୁ ଯା'ନ୍ତି, ମାତ୍ର ଗୋରୁ ଆସିଲେ ତାକୁ ଚଟାଚଟି କରିଥାଆନ୍ତି—ଆମମାନଙ୍କର ଆଜି ସେହିପରି ହୋଇଅଛି ।'' ଅନନ୍ତର କେଶବଙ୍କୁ ସମ୍ବୋଧନ କରି ଠାକୁର କହିଲେ, ''ତୁମର ଲାଞ୍ଜ ଖସିଛି !'' ଶ୍ରୀଯୁକ୍ତ କେଶବଙ୍କର ଅନୁଚରବର୍ଗ ଏକଥାର ଅର୍ଥ ହୃଦୟଙ୍ଗମ କରି ନ ପାରି ଅସନ୍ତୁଷ୍ଟ ହୋଇଛନ୍ତି ଦେଖି ଠାକୁର ଏହି କଥାର ଅର୍ଥ ବୁଝାଇ ସମସ୍ତଙ୍କୁ ମୋହିତ କରିଥିଲେ । କହିଥିଲେ, ''ଦେଖ, ବେଙ୍ଗଫୁଲାର ଯେତେଦିନ ଲାଞ୍ଜ ଥାଏ ସେ ଜଳରେ ହିଁ ଥାଏ, ସ୍ଥଳକୁ ଉଠିପାରେ ନାହିଁ; ମାତ୍ର ଲାଞ୍ଜ ଯେତେବେଳେ ଖସିପଡ଼େ ସେ ଜଳରେ ରହିପାରେ, ସ୍ଥଳରେ ମଧ୍ୟ ବିଚରଣ କରିପାରେ—ସେହିପରି ମନୁଷ୍ୟର ଯେତେଦିନ ଅବିଦ୍ୟାରୂପକ ଲାଞ୍ଜ ଥାଏ, ସେତେଦିନ ସେ ସଂସାର-ଜଳରେ ହିଁ କେବଳ ରହିପାରେ; ସେହି ଲାଞ୍ଜ ଖସିପଡ଼ିଲେ, ସଂସାର ଏବଂ ସଚ୍ଚିଦାନନ୍ଦ ଉଭୟ ବିଷୟରେ ହିଁ ଇଚ୍ଛା ଅନୁସାରେ ବିଚରଣ କରିପାରେ । କେଶବ, ତୁମର ମନ ଏବେ ଏପରି ହୋଇଅଛି; ତାହା ସଂସାରରେ ରହିପାରେ ଏବଂ ସଚ୍ଚିଦାନନ୍ଦଙ୍କ ଆଡ଼କୁ ମଧ୍ୟ ଯାଇପାରେ !'' ଏପରି ନାନାପ୍ରକାର ପ୍ରସଙ୍ଗରେ ଅନେକକ୍ଷଣ ଅତିବାହିତ କରି ସେଦିନ ଠାକୁର ଦକ୍ଷିଣେଶ୍ୱରକୁ ଫେରି ଆସିଲେ !

**ଠାକୁର ଏବଂ କେଶବଙ୍କର ଘନିଷ୍ଠ ସମ୍ବନ୍ଧ :**

ଠାକୁରଙ୍କର ଦର୍ଶନ ଲାଭ ପରେ ଶ୍ରୀଯୁକ୍ତ କେଶବଙ୍କର ମନ ତାଙ୍କ ପ୍ରତି ଏତେ ଦୂର ଆକୃଷ୍ଟ ହୋଇଥିଲା ଯେ, ଏବେଠାରୁ ସେ ପ୍ରାୟତଃ ଠାକୁରଙ୍କର ପୁଣ୍ୟ ଦର୍ଶନଲାଭ କରି କୃତାର୍ଥ ହେବା ପାଇଁ ଦକ୍ଷିଣେଶ୍ୱର ମନ୍ଦିରକୁ ଆଗମନ କରୁଥିଲେ ଏବଂ ବେଳେବେଳେ ତାଙ୍କୁ ତାଙ୍କର କଲିକତାସ୍ଥିତ 'କମଳକୁଟୀର' ନାମକ ବାସଗୃହକୁ ନେଇଯାଇ ତାଙ୍କର ଦିବ୍ୟସଙ୍ଗଲାଭରେ ନିଜକୁ ସୌଭାଗ୍ୟବାନ ବିବେଚନା କରୁଥିଲେ । ଠାକୁର ଏବଂ କେଶବଙ୍କ ସମ୍ବନ୍ଧ କ୍ରମେ ଏତେ ଗଭୀର ଭାବ ଧାରଣ କରିଥିଲା ଯେ, ପରସ୍ପର ପରସ୍ପରଙ୍କୁ କିଛି ଦିନ ନ ଦେଖିଲେ ଉଭୟେ ବିଶେଷ ଅଭାବ ବୋଧ କରୁଥିଲେ, ସେତେବେଳେ ଠାକୁର କଲିକତାରେ ତାଙ୍କ ନିକଟକୁ ଯାଉଥିଲେ, ଅଥବା ଶ୍ରୀଯୁକ୍ତ କେଶବ ଦକ୍ଷିଣେଶ୍ୱରକୁ ଆସୁଥିଲେ । ଏହାଛଡ଼ା ବ୍ରାହ୍ମସମାଜର ଉତ୍ସବ ସମୟରେ ପ୍ରତିବର୍ଷ ଠାକୁରଙ୍କ ନିକଟକୁ ଆସି ଅଥବା ଠାକୁରଙ୍କୁ ନେଇ ଯାଇ ତାଙ୍କ ସହିତ ଈଶ୍ୱରପ୍ରସଙ୍ଗରେ ଗୋଟିଏ ଦିନ

ଅତିବାହିତ କରିବା ଶ୍ରୀଯୁକ୍ତ କେଶବ ଉକ୍ତ ଉତ୍ସବର ଏକ ଅଙ୍ଗ ହିସାବରେ ପରିଗଣିତ କରୁଥିଲେ । ସେହିପରି ଅନେକ ଥର ସେ ଜାହାଜରେ କୀର୍ତ୍ତନ କରୁ କରୁ ସଦଳବଳ ଦକ୍ଷିଣେଶ୍ୱରକୁ ଆଗମନପୂର୍ବକ ଠାକୁରଙ୍କୁ ସେଥିରେ ଉଠାଇ ନେଇ ତାଙ୍କର ଅମୃତମୟ ଉପଦେଶ ଶୁଣୁ ଶୁଣୁ ଗଙ୍ଗାବକ୍ଷରେ ବିଚରଣ କରୁଥିଲେ ।

**ଦକ୍ଷିଣେଶ୍ୱରକୁ ଆସି କେଶବଙ୍କର ଆଚରଣ :**

ଦକ୍ଷିଣେଶ୍ୱର ଆଗମନକାଳରେ ଶ୍ରୀଯୁକ୍ତ କେଶବ ଶାସ୍ତ୍ରୀୟ ପ୍ରଥା ସ୍ମରଣ କରି କଦାପି ରିକ୍ତ ହସ୍ତରେ ଆସୁ ନ ଥିଲେ, ଫଳ-ମୂଳ ଇତ୍ୟାଦି ଆନୟନପୂର୍ବକ ଠାକୁରଙ୍କ ସମ୍ମୁଖରେ ରଖି ଅନୁଗତ ଶିଷ୍ୟ ସଦୃଶ ତାଙ୍କର ପଦପ୍ରାନ୍ତରେ ଉପବିଷ୍ଟ ହୋଇ ବାକ୍ୟାଳାପରେ ପ୍ରବୃତ୍ତ ହେଉଥିଲେ । ଠାକୁର ରହସ୍ୟ କରି ତାଙ୍କୁ ଥରେ କହିଥିଲେ, "କେଶବ, ତୁମେ ଏତେଲୋକଙ୍କୁ ବକ୍ତୃତାରେ ମୁଗ୍ଧ କରିଥାଅ, ମୋତେ କିଛି କୁହ ?" ଏକଥାରେ ଶ୍ରୀଯୁକ୍ତ କେଶବ ବିନୀତ ଭାବରେ ଉତ୍ତର ଦେଇଥିଲେ, "ମହାଶୟ, ମୁଁ କ'ଣ କମାର ଦୋକାନରେ ଛୁଞ୍ଚି ବିକ୍ରି କରିବି ! ଆପଣ କୁହନ୍ତୁ, ମୁଁ ଶୁଣିବି । ଆପଣଙ୍କ ମୁହଁର ଦୁଇ ଚାରୋଟି କଥା ଲୋକଙ୍କୁ କହିବାମାତ୍ରେ ସେମାନେ ମୁଗ୍ଧ ହୁଅନ୍ତି ।"

**ଠାକୁରଙ୍କର କେଶବଙ୍କୁ ବ୍ରହ୍ମ ଓ ବ୍ରହ୍ମଶକ୍ତି ଅଭେଦ ଏବଂ ଭାଗବତ, ଭକ୍ତ, ଭଗବାନ—ତିନିରେ ଏକ, ଏକରେ ତିନି ବୁଝାଇବା :**

ଠାକୁର ଦିନେ କେଶବଙ୍କୁ ଦକ୍ଷିଣେଶ୍ୱରରେ ବୁଝାଇଥିଲେ ଯେ, ବ୍ରହ୍ମଙ୍କର ଅସ୍ତିତ୍ୱ ସ୍ୱୀକାର କଲେ ସଙ୍ଗେ ସଙ୍ଗେ ବ୍ରହ୍ମଶକ୍ତିର ଅସ୍ତିତ୍ୱ ମଧ୍ୟ ସ୍ୱୀକାର କରିବାକୁ ହୁଏ ଏବଂ ବ୍ରହ୍ମ ଓ ବ୍ରହ୍ମଶକ୍ତି ସର୍ବଦା ଅଭେଦଭାବରେ ଅବସ୍ଥିତ । ଶ୍ରୀଯୁକ୍ତ କେଶବ ଠାକୁରଙ୍କର ଏହି କଥା ଅଙ୍ଗୀକାର କରିଥିଲେ । ଏହାପରେ ଠାକୁର ତାଙ୍କୁ କହିଥିଲେ ଯେ, ବ୍ରହ୍ମ ଓ ବ୍ରହ୍ମଶକ୍ତିଙ୍କ ସମ୍ବନ୍ଧ ପରି ଭାଗବତ, ଭକ୍ତ ଓ ଭଗବାନ-ରୂପକ ତିନୋଟି ପଦାର୍ଥ ଅଭିନ୍ନ ବା ନିତ୍ୟଯୁକ୍ତ—ଭାଗବତ, ଭକ୍ତ, ଭଗବାନ—ତିନିରେ ଏକ, ଏକରେ ତିନି । କେଶବ ତାଙ୍କର ସେହି କଥା ବୁଝି ତାହା ମଧ୍ୟ ଅଙ୍ଗୀକାର କରିନେଲେ । ଅତଃପର ଠାକୁର ତାଙ୍କୁ କହିଲେ, "ଗୁରୁ, କୃଷ୍ଣ ଓ ବୈଷ୍ଣବ ତିନୋଟି ଏକ ଏବଂ ଏକରେ ତିନୋଟି—ତୁମକୁ ଏବେ ମୁଁ ଏକଥା ବୁଝାଇ ଦେଉଛି ।" କେଶବ ଏହିକଥାରେ କ'ଣ ଚିନ୍ତାକଲେ ଜଣାଯାଏ ନାହିଁ, ମାତ୍ର ବିନମ୍ର ଭାବରେ କହିଲେ, "ମହାଶୟ, ପୂର୍ବରେ ଯାହା କହିଛନ୍ତି, ତା'ଠାରୁ ଆଉ ଅଧିକ ଅଗ୍ରସର ହୋଇପାରୁ ନାହିଁ; ଅତଏବ ଏହି ପ୍ରସଙ୍ଗ ଏବେ ଆଉ ଉତ୍‌ଥାପନର ପ୍ରୟୋଜନ ନାହିଁ ।" ଠାକୁର ମଧ୍ୟ ସେଥିରେ କହିଲେ, "ବେଶ୍ ବେଶ୍, ବର୍ତ୍ତମାନ ଏପର୍ଯ୍ୟନ୍ତ ଥାଉ ।" ସେହିପରି ପାଶ୍ଚାତ୍ୟଭାବରେ ଭାବିତ ଶ୍ରୀଯୁକ୍ତ କେଶବଙ୍କ ମନ ଠାକୁରଙ୍କର ଦିବ୍ୟ ସଙ୍ଗଲାଭରେ ଜୀବନର ବିଶେଷ ଆଲୋକ ଉପଲବ୍ଧି କରିଥିଲା

ଏବଂ ବୈଦିକ ଧର୍ମର ସାରରହସ୍ୟ ଦିନକୁ ଦିନ ବୁଝିପାରି ସାଧନାରେ ନିମଗ୍ନ ହୋଇଥିଲା । ଠାକୁରଙ୍କ ସହିତ ପରିଚିତ ହେବାପରଠାରୁ ତାଙ୍କର ଧର୍ମମତ ଦିନକୁ ଦିନ ପରିବର୍ତ୍ତିତ ହେବାରୁ ସେକଥା ବିଶେଷ ରୂପରେ ହୃଦୟଙ୍ଗମ ହୁଏ ।

**୧୮୭୮ ମସିହା ମାର୍ଚ୍ଚ ୬ ତାରିଖରେ କୁଚବିହାର ବିବାହ— ଏହି ସମୟରେ ଆଘାତ ପାଇ କେଶବଙ୍କର ଆଧାତ୍ମିକ ଗଭୀରତା ଲାଭ—ଏହି ବିବାହ ସମ୍ବନ୍ଧରେ ଠାକୁରଙ୍କ ମତ :**

ଆଘାତ ନ ପାଇଲେ ମାନବ ମନ ସଂସାରରୁ ଉତ୍‌ଥିତ ହୋଇ ଈଶ୍ୱରଙ୍କୁ ନିଜର ସର୍ବସ୍ୱ ବୋଲି ଧାରଣା କରିବାରେ ସମର୍ଥ ହୁଏ ନାହିଁ । ଠାକୁରଙ୍କ ସହିତ ପରିଚିତ ହେବାର ପ୍ରାୟ ତିନିବର୍ଷ ପରେ ଶ୍ରୀଯୁକ୍ତ କେଶବ କୁଚବିହାର ପ୍ରଦେଶର ରାଜାଙ୍କ ସହିତ ନିଜର କନ୍ୟାଙ୍କର ବିବାହ କରାଇ ସେହିପରି ଆଘାତପ୍ରାପ୍ତ ହୋଇଥିଲେ । ସେହି ବିବାହ ନେଇ ଭାରତବର୍ଷୀୟ ବ୍ରାହ୍ମସମାଜରେ ବିଶେଷ ଆନ୍ଦୋଳନ ହୋଇ ତାହାକୁ ଦୁଇଭାଗରେ ବିଭକ୍ତ କରିଦେଲା ଏବଂ ଶ୍ରୀଯୁକ୍ତ କେଶବଙ୍କର ବିରୋଧୀମାନେ ନିଜକୁ ପୃଥକ୍ କରି 'ସାଧାରଣ ବ୍ରାହ୍ମସମାଜ' ନାମ ଦେଇ ଅନ୍ୟ ଏକ ନୂତନ ସମାଜ ସୃଷ୍ଟି କଲେ । ଠାକୁର ଦକ୍ଷିଣେଶ୍ୱରରେ ଥାଇ ସାମାନ୍ୟ କଥାରେ ଉଭୟ ଦଳମଧ୍ୟରେ ଏହିପରି ବିରୋଧ ଶ୍ରବଣ କରି ମର୍ମାହତ ହୋଇଥିଲେ । କନ୍ୟାର ବିବାହଯୋଗ୍ୟ ବୟସ ସମ୍ବନ୍ଧୀୟ ବ୍ରାହ୍ମ ସମାଜର ନିୟମ ଶୁଣି ସେ କହିଥିଲେ, "ଜନ୍ମ, ମୃତ୍ୟୁ, ବିବାହ ଈଶ୍ୱରଙ୍କର ଇଚ୍ଛାଧୀନ ବିଷୟ । ଏହାକୁ କଠିନ ନିୟମରେ ନିବଦ୍ଧ କରିବା ଚଳେ ନାହିଁ, କେଶବ କାହିଁକି ଏପରି କଲେ !" କୁଚବିହାର-ବିବାହ କଥା ଉଠାଇ ଯଦି କେହି ଶ୍ରୀଯୁକ୍ତ କେଶବଙ୍କର ନିନ୍ଦାବାଦ କରୁଥିଲେ, ତାହାହେଲେ ଠାକୁର ତାଙ୍କୁ ଉତ୍ତରରେ କହୁଥିଲେ, "କେଶବ ଏଥିରେ ନିନ୍ଦନୀୟ ଏପରି କ'ଣ କଲେ ? କେଶବ ସଂସାରୀ, ନିଜର ପୁତ୍ରକନ୍ୟାମାନଙ୍କର ଯେଉଁଥିରେ କଲ୍ୟାଣ ହେବ, ତାହା କରିବେ ନାହିଁ ? ସଂସାରୀ ବ୍ୟକ୍ତି ଧର୍ମପଥରେ ରହି ଏପରି କଲେ ନିନ୍ଦାର କଥା କ'ଣ ଅଛି ? ଏଥିରେ କେଶବ ଧର୍ମହାନିକର କିଛି ହିଁ କରି ନାହାନ୍ତି, ପରନ୍ତୁ ପିତାର କର୍ତ୍ତବ୍ୟ ପାଳନ କରିଛନ୍ତି ।" ଠାକୁର ସେହିପରି ସଂସାର ଧର୍ମ ଦିଗରୁ ଦେଖି କେଶବକୃତ ସେହି ଘଟଣା ନିର୍ଦ୍ଦୋଷ ବୋଲି ସର୍ବଦା ପ୍ରତିପନ୍ନ କରୁଥିଲେ । ସେ ଯାହାହେଉ, କୁଚବିହାର-ବିବାହ ଘଟଣାରେ ବିଷମ ଆଘାତପ୍ରାପ୍ତ ହୋଇ, ଶ୍ରୀଯୁକ୍ତ କେଶବ ନିଜ ମଧ୍ୟରେ ନିଜେ ମଗ୍ନ ରହି ଦିନକୁ ଦିନ ଆଧାତ୍ମିକ ଉନ୍ନତିପଥରେ ଅଗ୍ରସର ହୋଇଥିଲେ, ତଦ୍‌ବିଷୟରେ ସନ୍ଦେହ ନାହିଁ ।

### ଠାକୁରଙ୍କର ଭାବ କେଶବ ସମ୍ପୂର୍ଣ୍ଣ ରୂପେ ଧରିପାରି ନ ଥିଲେ, ଠାକୁରଙ୍କ ସମ୍ବନ୍ଧରେ କେଶବଙ୍କର ଦୁଇପ୍ରକାରର ଆଚରଣ :

ପାଶ୍ଚାତ୍ୟ ଭାବରେ ଭାବିତ ଶ୍ରୀଯୁକ୍ତ କେଶବ ଠାକୁରଙ୍କର ବିଶେଷ ସ୍ନେହ, ଶ୍ରଦ୍ଧା ଏବଂ ଭଲପାଇବାର ପାତ୍ର ହୋଇ ଏବଂ ତାଙ୍କୁ ଦେଖିବାର ବିଶେଷ ସୁଯୋଗ ପାଇ ମଧ, ତାହାଙ୍କୁ ସମ୍ୟକ୍ ବୁଝିଥିଲେ କି ନାହିଁ, ସନ୍ଦେହ । କାରଣ ଦେଖାଯାଏ, ଗୋଟିଏ ପକ୍ଷରେ ସେ ଠାକୁରଙ୍କୁ ଜୀବନ୍ତ ଧର୍ମମୂର୍ତ୍ତି ବୋଲି ଜ୍ଞାନ କରୁଥିଲେ — ନିଜ ଘରକୁ ତାଙ୍କୁ ନେଇ ସେ ଯେଉଁଠାରେ ଶୟନ, ଭୋଜନ, ଉପବେଶନ ଓ ସମାଜର କଲ୍ୟାଣ ଚିନ୍ତା କରୁଥିଲେ, ସେହି ସମସ୍ତ ସ୍ଥାନ ଠାକୁରଙ୍କୁ ସ୍ୱୟଂ ଦେଖାଇ ଆଶୀର୍ବାଦ କରିବାକୁ କହୁଥିଲେ, ଯଦ୍ଦ୍ୱାରା କି ଏହି ସମସ୍ତ ସ୍ଥାନର କେଉଁଠି ହେଲେ ବସି ତାଙ୍କର ମନ ଯେପରି ଈଶ୍ୱରଙ୍କୁ ଭୁଲି ସଂସାରଚିନ୍ତା ନ କରେ — ପୁଣି ସେ ଯେଉଁଠାରେ ବସି ଈଶ୍ୱରଙ୍କର ଚିନ୍ତା କରୁଥିଲେ, ଠାକୁରଙ୍କୁ ସେହି ସ୍ଥାନକୁ ନେଇ ତାଙ୍କର ଶ୍ରୀପାଦପଦ୍ମରେ ପୁଷ୍ପାଞ୍ଜଳି ଅର୍ପଣ କରିଥିଲେ ।[୧] ଦକ୍ଷିଣେଶ୍ୱରକୁ ଆସି 'ଜୟ ବିଧାନର ଜୟ' ବୋଲି କହି ଠାକୁରଙ୍କୁ ପ୍ରଣାମ କରିବା ଆମମାନଙ୍କ ମଧ୍ୟରୁ ଅନେକ ତାହାଙ୍କୁ ଦେଖିଛନ୍ତି ।

### ନବବିଧାନ ଓ ଠାକୁରଙ୍କର ମତ :

ସେହିପରି ଅନ୍ୟଦିଗରେ ପୁଣି ଦେଖାଯାଇଛି, ସେ ଠାକୁରଙ୍କର 'ସର୍ବ ଧର୍ମ ସତ୍ୟ — ଯେତେ ମତ, ସେତେ ପଥ' — ଏହି କଥା ସମ୍ୟକ୍ ଭାବରେ ଗ୍ରହଣ କରି ନ ପାରି ନିଜ ବୁଦ୍ଧି ଦ୍ୱାରା ସମସ୍ତ ଧର୍ମମତର ସାରାଂଶ ଗ୍ରହଣ କରି ଏବଂ ଅସାର ଭାଗ ପରିତ୍ୟାଗପୂର୍ବକ 'ନବବିଧାନ' ଆଖ୍ୟା ଦେଇ ଏକ ନୂତନ ମତ ସ୍ଥାପନ କରିବାକୁ ସଚେଷ୍ଟ ହୋଇଥିଲେ । ଠାକୁରଙ୍କ ସହିତ ପରିଚିତ ହେବାର କିଛିଦିନ ପରେ ତାଙ୍କର ଉକ୍ତ ମତର ପ୍ରଚାରରୁ ଏହା ପ୍ରତୀତି ହୁଏ ଯେ, ଶ୍ରୀଯୁକ୍ତ କେଶବ ଠାକୁରଙ୍କର ସର୍ବଧର୍ମମତସମ୍ବନ୍ଧୀୟ ଚରମ ମୀମାଂସାକୁ ଏପରି ଆଂଶିକ ଭାବରେ ପ୍ରଚାର କରିଥିଲେ ।

### ଭାରତର ଜାତୀୟ ସମସ୍ୟା ଠାକୁର ହିଁ ସମାଧାନ କରିଛନ୍ତି :

ପାଶ୍ଚାତ୍ୟ ବିଦ୍ୟା ଏବଂ ସଭ୍ୟତାର ପ୍ରବଳ ତରଙ୍ଗ ଆସି ଭାରତର ପ୍ରାଚୀନ ବ୍ରହ୍ମବିଦ୍ୟା ଓ ସାମାଜିକ ରୀତି-ନୀତି ପ୍ରଭୃତିର ଯେତେବେଳେ ଆମୂଳ ପରିବର୍ତ୍ତନ କରିବାକୁ ଲାଗିଲା, ସେତେବେଳେ ଭାରତର ପ୍ରତ୍ୟେକ ମନୀଷୀ ପ୍ରାଚ୍ୟ ଏବଂ ପାଶ୍ଚାତ୍ୟର ଶିକ୍ଷା ଓ ଧର୍ମ ପ୍ରଭୃତି ମଧ୍ୟରେ ଏକ ସାମଞ୍ଜସ୍ୟ ଆଣିବାକୁ ସଚେଷ୍ଟ ହୋଇଥିଲେ । ଶ୍ରୀଯୁକ୍ତ ରାମମୋହନ ରାୟ, ମହର୍ଷି ଦେବେନ୍ଦ୍ରନାଥ, ବ୍ରହ୍ମାନନ୍ଦ, ଓ

---

୧. ଶ୍ରୀଯୁକ୍ତ ବିଜୟକୃଷ୍ଣ ଗୋସ୍ୱାମୀ ମହାଶୟଙ୍କ ନିକଟରୁ ଆମେମାନେ ଏହି ଘଟଣା ଶୁଣିଛୁ ।

କେଶବ ପ୍ରଭୃତି ମନୀଷିଗଣ ବଙ୍ଗଦେଶରେ ଯେପରି ଏହି ଚେଷ୍ଟାରେ ଜୀବନପାତ କରିଛନ୍ତି, ଭାରତର ଅନ୍ୟତ୍ର ମଧ୍ୟ ସେହିପରି ଅନେକ ମହାତ୍ମା ଏପରି କରିଥିବା କଥା ଶ୍ରୁତିଗୋଚର ହୁଏ । କିନ୍ତୁ ଠାକୁରଙ୍କର ଆବିର୍ଭାବ ପୂର୍ବରୁ ସେମାନଙ୍କ ମଧ୍ୟରୁ କେହି ମଧ୍ୟ ସେହି ବିଷୟର ସମ୍ପୂର୍ଣ୍ଣ ଭାବରେ ସମାଧାନ କରିପାରି ନ ଥିଲେ । ଠାକୁର ନିଜ ଜୀବନରେ ଭାରତର ଧର୍ମମତସମୂହର ସାଧନା ଯଥାଯଥ ସମ୍ପନ୍ନ କରି ଏବଂ ଏସବୁର ପ୍ରତ୍ୟେକଟିରେ ସାଫଲ୍ୟ ଲାଭ କରି ବୁଝିଥିଲେ ଯେ, ଭାରତର ଧର୍ମ ଭାରତର ଅବନତିର କାରଣ ନୁହେଁ; ତାହାର କାରଣ ଅନ୍ୟତ୍ର ଅନୁସନ୍ଧାନ କରିବାକୁ ହେବ । ସେ ଦେଖାଇଥିଲେ ଯେ, ଏହି ଧର୍ମ ଉପରେ ଭିତ୍ତି କରି ହିଁ ଭାରତର ସମାଜ,ରୀତି, ନୀତି, ସଭ୍ୟତା ଆଦି ସମସ୍ତ ବିଷୟ ଦଣ୍ଡାୟମାନ ରହି ପ୍ରାଚୀନକାଳରେ ଭାରତକୁ ଗୌରବସମ୍ପଦରେ ପ୍ରତିଷ୍ଠିତ କରିଥିଲା । ଏବେ ମଧ୍ୟ ସେହି ଧର୍ମର ସେହି ଜୀବନ୍ତ ଶକ୍ତି ରହିଅଛି ଏବଂ ଏହାକୁ ସର୍ବତୋଭାବରେ ଅବଲମ୍ବନ କରି ଆମେ ସମସ୍ତ ବିଷୟରେ ସଚେଷ୍ଟ ହେଲେ ତେବେ ହିଁ ସିଦ୍ଧକାମ ହୋଇପାରିବା, ନଚେତ୍ ନୁହେଁ । ଏହି ଧର୍ମ ଯେ ମନୁଷ୍ୟକୁ କେତେଦୂର ଉଦାର କରିପାରେ, ତାହା ଠାକୁର ସର୍ବାଗ୍ରେ ନିଜ ଜୀବନାଦର୍ଶରେ ଦେଖାଇଗଲେ, ପରେ ପାଶ୍ଚାତ୍ୟଭାବରେ ଭାବିତ ନିଜର ଶିଷ୍ୟବର୍ଗଙ୍କର—ବିଶେଷତଃ ସ୍ୱାମୀ ବିବେକାନନ୍ଦଙ୍କ ଭିତରେ ସେହି ଉଦାର ଧର୍ମଶକ୍ତି ସଞ୍ଚାରପୂର୍ବକ ସେମାନଙ୍କୁ ସଂସାରର ସମସ୍ତ କାର୍ଯ୍ୟ କିପରି ଭାବରେ ଧର୍ମର ସହାୟକରୂପେ ସମ୍ପନ୍ନ କରିବାକୁ ହେବ, ତଦ୍‌ବିଷୟରେ ଶିକ୍ଷାପ୍ରଦାନପୂର୍ବକ ଭାରତର ପୂର୍ବୋକ୍ତ ଜାତୀୟ ସମସ୍ୟାର ଏକ ଅପୂର୍ବ ସମାଧାନ କରିଦେଲେ । ସବୁ ଧର୍ମମତର ସାଧନାରେ ସାଫଲ୍ୟଲାଭ କରି ଠାକୁର ଯେପରି ପୃଥିବୀର ଆଧ୍ୟାତ୍ମିକ ବିରୋଧ ତିରୋହିତ କରିବାର ଉପାୟ ନିର୍ଦ୍ଧାରଣ କରିଯାଇଛନ୍ତି—ସେପରି ଭାରତୀୟ ସମସ୍ତ ଧର୍ମମତର ସାଧନାରେ ସିଦ୍ଧ ହୋଇ ଭାରତର ଧର୍ମବିରୋଧ ନାଶପୂର୍ବକ କେଉଁ ବିଷୟ ଅବଲମ୍ବନ କରିବା ଯୋଗୁଁ ଆମମାନଙ୍କର ଜାତୀୟତା ପୂର୍ବରୁ ପ୍ରତିଷ୍ଠିତ ହୋଇ ରହିଅଛି ଏବଂ ଭବିଷ୍ୟତରେ ରହିବ, ସେହି ବିଷୟରେ ମଧ୍ୟ ନିର୍ଦ୍ଦେଶ କରିଯାଇଛନ୍ତି ।

**କେଶବଙ୍କ ଦେହତ୍ୟାଗରେ ଠାକୁରଙ୍କର ଆଚରଣ :**

ସେ ଯାହାହେଉ, ଶ୍ରୀଯୁକ୍ତ କେଶବଙ୍କ ପ୍ରତି ଠାକୁରଙ୍କର ଭଲ ପାଇବା କେତେଦୂର ଗଭୀର ଥିଲା, ତାହା ଆମେ ୧୮୮୪ ମସିହା ଜାନୁୟାରୀ ମାସରେ କେଶବଙ୍କର ଶରୀର-ରକ୍ଷା ପରେ ଠାକୁରଙ୍କର ଆଚରଣରୁ ସମ୍ୟକ ହୃଦୟଙ୍ଗମ କରିପାରୁ । ଠାକୁର କହିଥିଲେ, 'ଏହି ଖବର ଶୁଣି ମୁଁ ତିନିଦିନ ଶଯ୍ୟାତ୍ୟାଗ କରି ପାରି ନ ଥିଲି । ମନେ ହୋଇଥିଲା, ଯେପରି ମୋର ଗୋଟିଏ ଅଙ୍ଗ (ପକ୍ଷାଘାତରେ) ପଡ଼ିଯାଇଛି ।'

## ଠାକୁରଙ୍କ ସଂକୀର୍ତ୍ତନରେ ଶ୍ରୀଗୌରାଙ୍ଗଦେବଙ୍କୁ ଦର୍ଶନ :

କେଶବଙ୍କ ସହିତ ପ୍ରଥମ ପରିଚୟ ପରେ ଠାକୁରଙ୍କ ଜୀବନର ଅନ୍ୟ ଗୋଟିଏ ଘଟଣା ଉଲ୍ଲେଖ କରି ଆମେ ବର୍ତ୍ତମାନ ଅଧ୍ୟାୟର ପରିସମାପ୍ତି କରିବୁ । ଠାକୁରଙ୍କର ସେହି ସମୟରେ ଶ୍ରୀଶ୍ରୀଚୈତନ୍ୟଦେବଙ୍କର ସର୍ବଜନ-ମୋହକର ନଗରକୀର୍ତ୍ତନ ଦେଖିବାକୁ ବାସନା ହୋଇଥିଲା । ଶ୍ରୀଶ୍ରୀଜଗଦମ୍ବା ସେତେବେଳେ ତାଙ୍କୁ ନିମ୍ନଲିଖିତଭାବରେ ସେବିଷୟ ଦେଖାଇ ପୂର୍ଣ୍ଣମନୋରଥ କରିଥିଲେ— ନିଜ ଘରର ବାହାରେ ଛିଡ଼ା ହୋଇ ଠାକୁର ଦେଖିଥିଲେ, ପଞ୍ଚବଟୀ ଆଡୁ ଅଦ୍ଭୁତ ସଂକୀର୍ତ୍ତନତରଙ୍ଗ ତାଙ୍କ ଆଡ଼କୁ ଅଗ୍ରସର ହୋଇ ଦକ୍ଷିଣେଶ୍ୱର-ଉଦ୍ୟାନର ପ୍ରଧାନ ଫାଟକ ଦିଗକୁ ପ୍ରବାହିତ ହେଉଛି ଏବଂ ବୃକ୍ଷାନ୍ତରାଳରେ ଲୀନ ହୋଇଯାଉଛି; ଦେଖିଲେ, ନବଦ୍ୱୀପଚନ୍ଦ୍ର ଶ୍ରୀଶ୍ରୀଗୌରାଙ୍ଗଦେବ, ଶ୍ରୀନିତ୍ୟାନନ୍ଦ ଓ ଶ୍ରୀଅଦ୍ୱୈତ ପ୍ରଭୁଙ୍କୁ ସାଙ୍ଗରେ ଧରି ଈଶ୍ୱର ପ୍ରେମରେ ତନ୍ମୟ ହୋଇ, ସେହି ଜନତରଙ୍ଗର ମଧ୍ୟଭାଗରେ ଧୀର ପଦରେ ଆଗମନ କରୁଛନ୍ତି, ଏବଂ ଚତୁର୍ପାର୍ଶ୍ୱସ୍ଥ ସମସ୍ତେ ତାଙ୍କର ପ୍ରେମରେ ତନ୍ମୟ ହୋଇ କେହି ଅବଶଭାବରେ ଏବଂ କେହି ବା ଉଦ୍ଦାମ ତାଣ୍ଡବରେ ଆପଣାର ଅନ୍ତରର ଉଲ୍ଲାସ ପ୍ରକାଶ କରୁଛନ୍ତି । ଏତେ ଲୋକ ହୋଇଛନ୍ତି ଯେ, ମନେ ହେଉଛି ଲୋକଙ୍କର ଯେପରି ଅନ୍ତ ନାହିଁ । ସେହି ଅଦ୍ଭୁତ ସଂକୀର୍ତ୍ତନ ଦଳ ଭିତରେ କେତେଗୁଡ଼ିଏ ମୁଖ ଠାକୁରଙ୍କର ସ୍ମୃତିପଟରେ ଉଜ୍ଜ୍ୱଳ ବର୍ଣ୍ଣରେ ଅଙ୍କିତ ହୋଇ ଯାଇଥିଲା ଏବଂ ଏହି ଦର୍ଶନର କିଛି କାଳ ପରେ ସେମାନଙ୍କୁ ନିଜ ଭକ୍ତ ରୂପରେ ଆଗମନ କରିବା ଦେଖି, ଠାକୁର ସେମାନଙ୍କ ସମ୍ବନ୍ଧରେ ସ୍ଥିର ସିଦ୍ଧାନ୍ତ କରିଥିଲେ ଯେ, ପୂର୍ବଜୀବନରେ ସେମାନେ ଶ୍ରୀଚୈତନ୍ୟଦେବଙ୍କର ସହଚର ଥିଲେ ।

## ଠାକୁରଙ୍କର ଫୁଲୁଇ-ଶ୍ୟାମବଜାରକୁ ଯିବା ଏବଂ ଅପୂର୍ବ କୀର୍ତ୍ତନାନନ୍ଦ—ଏଘଟଣାର ସମୟ ନିରୂପଣ :

ସେ ଯାହାହେଉ, ଏହି ଦର୍ଶନର କିଛିକାଳ ପରେ ଠାକୁର କାମାରପୁକୁର ଏବଂ ହୃଦୟଙ୍କର ଘର ଶିହଡ଼ ଗ୍ରାମକୁ ଯାଇଥିଲେ । ଶିହଡ଼ ଗ୍ରାମର କିଛି ଦୂରରେ ଫୁଲୁଇ-ଶ୍ୟାମବଜାର ନାମକ ସ୍ଥାନ ଅଛି । ସେଠାରେ ଅନେକ ବୈଷ୍ଣବ ବସତି ଅଛି ଏବଂ ସେମାନେ ନିତ୍ୟ କୀର୍ତ୍ତନ ଆଦି କରି ଉକ୍ତ ସ୍ଥାନଟିକୁ ଆନନ୍ଦପୂର୍ଣ୍ଣ କରନ୍ତି ଶୁଣି ଠାକୁରଙ୍କର ସେଠାକୁ ଯାଇ କୀର୍ତ୍ତନ ଶୁଣିବାକୁ ଅଭିଳାଷ ହେଲା । ଶ୍ୟାମବଜାର ଗ୍ରାମ ନିକଟରେ ବେଲ୍‌ଟେ ନାମକ ଗ୍ରାମ ଅବସ୍ଥିତ । ଏହି ଗ୍ରାମର ଶ୍ରୀଯୁକ୍ତ ନଟବର ଗୋସ୍ୱାମୀ ଠାକୁରଙ୍କୁ ଏହାପୂର୍ବରୁ ଦେଖିଥିଲେ ଏବଂ ତାଙ୍କ ଗୃହରେ ପଦଧୂଳି ଦେବା ପାଇଁ ନିମନ୍ତ୍ରଣ କରିଥିଲେ । ଠାକୁର ସେତେବେଳେ ହୃଦୟଙ୍କୁ ସଙ୍ଗରେ ନେଇ ତାଙ୍କ ଗୃହକୁ ଯାଇ ସାତଦିନ ଅବସ୍ଥାନପୂର୍ବକ

ଶ୍ୟାମବଜାରର ବୈଷ୍ଣବମାନଙ୍କର କୀର୍ତ୍ତନାନନ୍ଦ ଦର୍ଶନ କରିଥିଲେ । ଏହି ସ୍ଥାନର ଶ୍ରୀଯୁକ୍ତ ଈଶାନଚନ୍ଦ୍ର ମଲ୍ଲିକ୍ ତାଙ୍କ ସହିତ ପରିଚିତ ହୋଇ ତାଙ୍କୁ ନିଜ ଗୃହରେ କୀର୍ତ୍ତନାନନ୍ଦରେ ସାଦରେ ଆହ୍ୱାନ କରିଥିଲେ । କୀର୍ତ୍ତନବେଳେ ଠାକୁରଙ୍କ ଅପୂର୍ବ ଭାବ ଦେଖି ବୈଷ୍ଣବମାନେ ବିଶେଷ ଆକର୍ଷଣ ଅନୁଭବ କରୁଥିଲେ ଏବଂ କ୍ରମେ ସର୍ବତ୍ର ସେହି କଥା ପ୍ରଚାର ହୋଇଗଲା । କେବଳ ଶ୍ୟାମବଜାର ଗ୍ରାମରେ ହିଁ ଯେ ସେହି କଥା ପ୍ରଚାର ହୋଇଥିଲା, ତାହା ନୁହେଁ । ରାମଜୀବନପୁର, କୃଷ୍ଣଗଞ୍ଜ ପ୍ରଭୃତି ଚତୁଃପାର୍ଶ୍ୱସ୍ଥ ଦୂରଦୂରାନ୍ତରର ଗ୍ରାମମାନଙ୍କରେ ମଧ୍ୟ ସେହି କଥା ପ୍ରଚାର ହୋଇଥିଲା । କ୍ରମେ ସେହି ସବୁ ଗ୍ରାମରୁ ଦଳ ଦଳ ସଂକୀର୍ତ୍ତନ-ଦଳ ତାଙ୍କ ସହିତ ଆନନ୍ଦ କରିବାକୁ ଆଗମନପୂର୍ବକ ଶ୍ୟାମବଜାରକୁ ଅତ୍ୟନ୍ତ ଜନାକୀର୍ଣ୍ଣ କଲେ ଏବଂ ଦିନରାତି କୀର୍ତ୍ତନ ଚାଲିଲା । କ୍ରମେ ପ୍ରଚାର ହେଲା ଯେ, ଜଣେ ଭଗବଦ୍‌ଭକ୍ତ ଏହିକ୍ଷଣରେ ମୃତ ଏବଂ ପରକ୍ଷଣରେ ହିଁ ଜୀବିତ ହୋଇ ଉଠୁଛନ୍ତି ! ସେତେବେଳେ ଠାକୁରଙ୍କୁ ଦର୍ଶନ କରିବା ପାଇଁ ଲୋକେ ଗଛ ଉପରେ ଚଢ଼ି, ଘରର ଚାଳ ଉପରେ ଉଠି ଆହାର-ନିଦ୍ରା ଭୁଲି ଉଦ୍‌ଗ୍ରୀବ ହୋଇ ରହିଲେ । ଏହିପରି ସାତ ଦିନ ସାତରାତ୍ରି ସେଠାରେ ଆନନ୍ଦର ବନ୍ୟା ପ୍ରବାହିତ ହୋଇ ଲୋକେ ଠାକୁରଙ୍କୁ ଦେଖିବା ପାଇଁ ଏବଂ ତାଙ୍କର ପାଦସ୍ପର୍ଶ କରିବା ପାଇଁ ଏପରି ଉନ୍ମତ୍ତ ହୋଇ ଉଠିଥିଲେ ଯେ, ଠାକୁର ସ୍ନାନ ଆହାରର ଅବକାଶ ମଧ୍ୟ ପାଉ ନ ଥିଲେ ! ପରେ ହୃଦୟ ତାହାଙ୍କୁ ନେଇ ଲୁଚି ଶିହଡ଼ ପଳାଇ ଆସିବାରୁ ସେହି ଆନନ୍ଦମେଳାର ଅବସାନ ହେଲା । ଶ୍ୟାମବଜାର ଗ୍ରାମର ଈଶାନ ଚୌଧୁରୀ, ନଟବର ଗୋସ୍ୱାମୀ, ଈଶାନ ମଲ୍ଲିକ, ଶ୍ରୀନାଥ ମଲ୍ଲିକ ପ୍ରଭୃତି ବ୍ୟକ୍ତିମାନେ ଏବଂ ସେମାନଙ୍କର ବଂଶଧରଗଣ ସେହି ଘଟଣା କଥା ଏବେ ମଧ୍ୟ ଉଲ୍ଲେଖ କରିଥାନ୍ତି ଏବଂ ଠାକୁରଙ୍କୁ ବିଶେଷ ଭକ୍ତି-ଶ୍ରଦ୍ଧା ପ୍ରଦର୍ଶନ କରନ୍ତି । କୃଷ୍ଣଗଞ୍ଜର ପ୍ରସିଦ୍ଧ ଖୋଳବାଦକ ଶ୍ରୀଯୁକ୍ତ ରାଇଚରଣ ଦାସଙ୍କ ସହିତ ମଧ୍ୟ ଠାକୁରଙ୍କର ପରିଚୟ ହୋଇଥିଲା । ତାଙ୍କ ଖୋଳବାଦନ ଶୁଣିଲେ ହିଁ ଠାକୁରଙ୍କର ଭାବାବେଶ ହେଉଥିଲା । ଘଟଣାଟିର ପୂର୍ବୋକ୍ତ ବିବରଣ ଆମେ କିୟଦଂଶ ଠାକୁରଙ୍କ ନିକଟରୁ ଏବଂ କିୟଦଂଶ ହୃଦୟଙ୍କଠାରୁ ଶୁଣିଥିଲୁ । ଏହି ଘଟଣାର ସମୟ ନିରୂପଣ କରିବାକୁ ନିମ୍ନଲିଖିତ ଭାବରେ ସକ୍ଷମ ହୋଇଅଛୁ—

ସିନ୍ଥିର ବରାହନଗର-ଆଲମବଜାର-ନିବାସୀ ଠାକୁରଙ୍କର ପରମଭକ୍ତ ଶ୍ରୀଯୁକ୍ତ ମହେନ୍ଦ୍ରଲାଲ ପାଲ କବିରାଜ ମହାଶୟ କେଶବବାବୁଙ୍କ ପରେ ଠାକୁରଙ୍କର ଦର୍ଶନଲାଭ କରିଥିଲେ । ସେ ଆମମାନଙ୍କୁ କହିଥିଲେ ଯେ, ଠାକୁରଙ୍କୁ ଯେତେବେଳେ ସେ ପ୍ରଥମେ ଦର୍ଶନ କରିବାକୁ ଗଲେ, ସେତେବେଳେ ଠାକୁର ସେହି ଘଟଣା ପରେ ଶିହଡ଼ରୁ ଅଳ୍ପ ଦିନ ପୂର୍ବରୁ ଫେରିଥିଲେ । ଠାକୁର ସେଦିନ ଶ୍ରୀଯୁକ୍ତ ମହେନ୍ଦ୍ରବାବୁଙ୍କ ନିକଟରେ ଫୁଲୁଇ-ଶ୍ୟାମବଜାରର କଥା କହିଥିଲେ ।

ଯୋଗାନନ୍ଦ ସ୍ୱାମୀଜୀଙ୍କର ଘର ଦକ୍ଷିଣେଶ୍ୱର ମନ୍ଦିରର ଅନତିଦୂରରେ ଥିଲା । ସେଥିପାଇଁ ତାଙ୍କ କଥା ଛାଡ଼ି ଦେଲେ ଠାକୁରଙ୍କ ଦ୍ୱାରା ଚିହ୍ନିତ ଭକ୍ତଗଣ ୧୮୭୯ ମସିହାରୁ ତାଙ୍କ ନିକଟକୁ ଆଗମନ କରିବାକୁ ଆରମ୍ଭ କରିଥିଲେ । ସ୍ୱାମୀ ବିବେକାନନ୍ଦ ୧୮୮୧ ମସିହାରେ ଠାକୁରଙ୍କ ନିକଟକୁ ଆସିଥିଲେ । ୧୮୮୧ ମସିହା ଜାନୁୟାରୀ ପହିଲାରେ ମଥୁରବାବୁଙ୍କର ପତ୍ନୀ ଶ୍ରୀମତୀ ଜଗଦମ୍ବା ଦାସୀଙ୍କର ମୃତ୍ୟୁ ହେଲା । ସେହି ଘଟଣାର ପ୍ରାୟ ଛଅମାସ ପରେ ହୃଦୟ ବୁଦ୍ଧିହୀନତାବଶତଃ ମଥୁରବାବୁଙ୍କର ସ୍ୱଳ୍ପବୟସ୍କା ପୌତ୍ରୀର ଚରଣ ପୂଜା କରିବାରୁ କନ୍ୟାର ପିତା ତାହାର ଅକଲ୍ୟାଣ ଆଶଙ୍କା କରି ବିଶେଷ ରୁଷ୍ଟ ହୋଇ ହୃଦୟଙ୍କୁ କାଳୀମନ୍ଦିର କାର୍ଯ୍ୟରୁ ଚିରଦିନ ପାଇଁ ବହିଷ୍କାର କରଥିଲେ ।

# ଗ୍ରନ୍ଥ-ପରିଚୟ

ଶ୍ରୀରାମକୃଷ୍ଣଲୀଳାପ୍ରସଙ୍ଗର ଗୁରୁଭାବ ପ୍ରକାଶିତ ହେଲା । ଠାକୁରଙ୍କର ସାଧନକାଳ ସମୟଠାରୁ ବିଶେଷ ଭାବରେ ପ୍ରକଟ ହେବାର ପୂର୍ବ ପର୍ଯ୍ୟନ୍ତ ଜୀବନର ଘଟଣାବଳୀ ହିଁ ଏଥିରେ ପ୍ରଧାନତଃ ସନ୍ନିବେଶିତ ହୋଇଛି । ତେବେ କେବଳ ଏହି ସମସ୍ତ ଘଟଣା କିମ୍ବା ଠାକୁରଙ୍କର ଏହି ସମୟର କାର୍ଯ୍ୟକଳାପ ଲିପିବଦ୍ଧ କରି ଆମେମାନେ କ୍ଷାନ୍ତ ହୋଇ ନାହୁଁ । ଯେଉଁ ମନର ଭାବ ଦ୍ୱାରା ପରିଚାଳିତ ହୋଇ, ଯେଉଁ ଉଦ୍ଦେଶ୍ୟରେ ସେ ଏହି ସମସ୍ତ କାର୍ଯ୍ୟର ଅନୁଷ୍ଠାନ କରିଥିଲେ ସେଗୁଡ଼ିକର ମଧ୍ୟ ଯଥାଯଥ ଆଲୋଚନା କରିଛୁ । କାରଣ, ଶରୀର ଓ ମନର ସମଷ୍ଟିଭୂତ ମାନବର ଜୀବନ ଇତିହାସ କେବଳ ତାହାର ଜଡ଼ ଦେହ ଓ ତତ୍କୃତ କାର୍ଯ୍ୟକଳାପର ପୁଙ୍ଖାନୁପୁଙ୍ଖ ଅନୁଶୀଳନ ଦ୍ୱାରା ମିଳେ ନାହିଁ । ଜଡ଼ବାଦୀ ପାଶ୍ଚାତ୍ୟଲେଖକ, ଜୀବନୀ ଓ ଇତିହାସ ଲେଖିବାକୁ ଯାଇ ପ୍ରଧାନତଃ ଘଟଣାବଳୀର ସଂଗ୍ରହ ହିଁ ଦକ୍ଷତାର ପରିଚୟ ଦିଏ ଏବଂ ଆତ୍ମବାଦୀ ହିନ୍ଦୁ ମାନସିକ-ଭାବସମୂହର ସୁନିପୁଣ ସଂସ୍ଥାନରେ ହିଁ ମନୋନିବେଶ କରେ । ଆମମାନଙ୍କର ଧାରଣା, ଏହି ଉଭୟ ଭାବର ସମ୍ମିଳନରେ ହିଁ ଯଥାର୍ଥ ଜୀବନୀ ବା ଇତିହାସ ସମ୍ଭବ ତେଣୁ ସର୍ବଦା ମାନସିକ ଇତିହାସକୁ ସମ୍ମୁଖରେ ରଖି ଭୌତିକ କାର୍ଯ୍ୟଗୁଡ଼ିକ ଲିପବଦ୍ଧ କରିବା ଉଚିତ୍ ।

ଆଉ ଗୋଟିଏ କଥା, ଶ୍ରୀରାମକୃଷ୍ଣଦେବଙ୍କ ଅଲୌକିକ ଜୀବନ ଆମେମାନେ ବର୍ତ୍ତମାନ ଗ୍ରନ୍ଥରେ ଶାସ୍ତ୍ରସହାୟତାରେ ମଧ୍ୟ ଅନେକସ୍ଥଳରେ ଅନୁଶୀଳନ କରିଅଛୁ; ତାଙ୍କର ଅସାଧାରଣ ମନୋଭାବ, ଅନୁଭବ ଓ କାର୍ଯ୍ୟକଳାପ ସହିତ ଭଗବାନ ଶ୍ରୀକୃଷ୍ଣ, ବୁଦ୍ଧ, ଶଙ୍କର, ଚୈତନ୍ୟ ପ୍ରଭୃତି ଭାରତର ଏବଂ ଈଶାଦି ଭାରତେତର ଦେଶର ମହାପୁରୁଷମାନଙ୍କର ଅନୁଭବ ଏବଂ କାର୍ଯ୍ୟକଳାପ ତୁଳନାରେ ଆଲୋଚନା କରିବାକୁ ବାଧ୍ୟ ହୋଇଛୁ । କାରଣ ଠାକୁର ଆମମାନଙ୍କ ନିକଟରେ ସ୍ପଷ୍ଟଭାବରେ ବାରମ୍ବାର ନିର୍ଦ୍ଦେଶ କରି କହିଥିଲେ ଯେ, ପୂର୍ବ ପୂର୍ବ ଯୁଗରେ, ''ଯିଏ ରାମ, ଯିଏ କୃଷ୍ଣ (ଇତ୍ୟାଦି ହୋଇଥିଲେ) ସେ ହିଁ ଇଦାନୀଂ (ନିଜ ଶରୀର ଦେଖାଇ) ଏହି ଖୋଳ ଭିତରେ ରହିଛନ୍ତି !''—ଏବଂ ''ଏଠାର (ଠାକୁରଙ୍କର) ଅନୁଭବସମୂହ ବେଦ-ବେଦାନ୍ତକୁ ଅତିକ୍ରମ କରିଯାଇଛି !'' ବାସ୍ତବିକ 'ଭାବମୁଖ'ରେ ଅବସ୍ଥିତ ଶ୍ରୀରାମକୃଷ୍ଣଦେବଙ୍କର ଜୀବନ ଯେତେଦୂର ସମ୍ଭବ ନିରପେକ୍ଷଭାବରେ ଆଲୋଚନା କରିବାକୁ ଅଗ୍ରସର ହୋଇ ଆମମାନଙ୍କୁ ବାଧ୍ୟ ହୋଇ ସ୍ୱୀକାର କରିବାକୁ ହୋଇଛି ଯେ, ଏହିପରି ଅଲୌକିକ ଜୀବନ ଆଧ୍ୟାତ୍ମିକ ଜଗତରେ ଏହା ପୂର୍ବରୁ ଆଉ ଦେଖାଯାଇ ନାହିଁ ।

ପୁନଶ୍ଚ ପୂର୍ବ ପୂର୍ବ ଅବତାରମାନଙ୍କର ମତାନୁଗ ହୋଇ ସମସ୍ତ ପ୍ରକାର ସାଧନମାର୍ଗରେ ସ୍ୱଳ୍ପକାଳ ମଧ୍ୟରେ ସିଦ୍ଧିଲାଭ କରି ସେ 'ଯେତେ ମତ ସେତେ ପଥ'—ରୂପକ ଯେଉଁ ନୂତନ ତତ୍ତ୍ୱର ଆବିଷ୍କାର ଏବଂ ଲୋକହିତାର୍ଥ ଘୋଷଣା କରିଛନ୍ତି, ସେହି ବିଷୟ ଆଲୋଚନା କରି ଆମେମାନେ ତାହାଙ୍କୁ ପୂର୍ବ ପୂର୍ବ ଯୁଗରେ ଆବିର୍ଭୂତ ସମସ୍ତ ଅବତାରପୁରୁଷମାନଙ୍କର ଘନୀଭୂତ ସମଷ୍ଟି ଓ ନବ ଅଭିବ୍ୟକ୍ତି ବୋଲି ବୁଝିବାକୁ ବାଧ୍ୟ ହୋଇଅଛୁ । ବାସ୍ତବିକ ଶ୍ରୀରାମକୃଷ୍ଣଦେବଙ୍କର ଅଦୃଷ୍ଟପୂର୍ବ ପବିତ୍ର ଜୀବନର ଆଲୋଚନା ଯେତେ ଆମେମାନେ କରିଛୁ, ସେତେ ହିଁ ତାହାଙ୍କୁ ବୈଦିକ ସାର୍ବଜନୀନ ଓ ସନାତନ ଅଧ୍ୟାତ୍ମଭାବ ବୃକ୍ଷର ସାରସମଷ୍ଟିସମୁଦ୍ଭୂତ ପ୍ରଥମୋତ୍ପନ୍ନ ଫଳସ୍ୱରୂପରେ ହିଁ ନିର୍ଦ୍ଧାରିତ କରିବାକୁ ବାଧ୍ୟ ହୋଇଛୁ ।

ଶ୍ରୀରାମକୃଷ୍ଣପଦାଶ୍ରିତ ପୂଜ୍ୟପାଦ ସ୍ୱାମୀ ବିବେକାନନ୍ଦଙ୍କ ଧର୍ମପ୍ରଚାର ପରଠାରୁ ଶ୍ରୀରାମକୃଷ୍ଣ-ଜୀବନକଥା ଜାଣିବା ପାଇଁ ଜନସାଧାରଣଙ୍କର ଆଗ୍ରହ ଦେଖି ବର୍ତ୍ତମାନ କାଳରେ ଅନେକେ ଅନେକ କଥା ତାଙ୍କ ସମ୍ବନ୍ଧରେ ଲିପିବଦ୍ଧ କଲେ ମଧ୍ୟ ସେହି ଅଲୌକିକ ଜୀବନ ସହିତ ସନାତନ ହିନ୍ଦୁ ବା ବୈଦିକ ଧର୍ମର ଯେଉଁ ନିଗୂଢ଼ ସମ୍ବନ୍ଧ ରହିଛି, ତାହା ସ୍ପଷ୍ଟ ନିର୍ଦ୍ଦେଶ କରି କେହି ମଧ୍ୟ ଏପର୍ଯ୍ୟନ୍ତ ତାହାର ଅନୁଶୀଳନ କରିନାହାନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ଫଳରେ ଶ୍ରୀରାମକୃଷ୍ଣଦେବ ଯେପରି ସନାତନ ହିନ୍ଦୁଧର୍ମଠାରୁ ବିଚ୍ଛିନ୍ନ ପୃଥକ ଏକ ବ୍ୟକ୍ତି ଏବଂ ସାମ୍ପ୍ରଦାୟିକ ମତବିଶେଷର ହିଁ ସୃଷ୍ଟି କରି ଯାଇଛନ୍ତି — ଏହିପରି ବିପରୀତ ଧାରଣା ସେହି ସମସ୍ତ ପୁସ୍ତକ ପାଠଦ୍ୱାରା ମନରେ ଉଦିତ ହୋଇଥାଏ । ପୁନଶ୍ଚ ସେହି ସମସ୍ତ ଗ୍ରନ୍ଥରୁ ଅନେକଗୁଡ଼ିଏ ଠାକୁରଙ୍କର ଜୀବନ ଆଖ୍ୟାୟିକା ସମ୍ବନ୍ଧରେ ନାନା ଭ୍ରମପ୍ରମାଦପୂର୍ଣ୍ଣ ଏବଂ ଅନ୍ୟଗୁଡ଼ିକରେ ସେହି ସକଳ ଜୀବନ ଘଟଣାର ପ୍ରକୃତ ଅର୍ଥ ଏବଂ ପୂର୍ବାପର ସମ୍ବନ୍ଧ ଓ ପାରମ୍ପର୍ଯ୍ୟ ଲକ୍ଷିତ ହୁଏ ନାହିଁ । ଜନସାଧାରଣଙ୍କର ସେହି ଭାବ କିଞ୍ଚିତ ଦୂର କରିବା ପାଇଁ ସେହି ମହଦୁଦାର ଜୀବନ ଆମମାନଙ୍କ ନିକଟରେ ଯେଉଁ ଭାବରେ ପ୍ରତିଭାତ ହୋଇଛି ଏବଂ ଯେଉଁ ଭାବୋପଲବ୍ଧି କରି ସ୍ୱାମୀ ବିବେକାନନ୍ଦପ୍ରମୁଖ ଆମେମାନେ ଠାକୁରଙ୍କ ଶ୍ରୀପାଦପଦ୍ମରେ ଜୀବନ ଉତ୍ସର୍ଗ କରିଅଛୁ, ସେଥିରୁ ଅଳ୍ପକିଛି ସ୍ୱାମୀ ବିବେକାନନ୍ଦଙ୍କର ପଦାନୁଗ ହୋଇ ବର୍ତ୍ତମାନ ଗ୍ରନ୍ଥରେ ପାଠକମାନଙ୍କୁ କହିବାକୁ ପ୍ରଯତ୍ନ କରିଛୁ । ଠାକୁରଙ୍କର ଅଲୌକିକ ଜୀବନାଦର୍ଶ ଯଦି ଏହାଦ୍ୱାରା କିଞ୍ଚିତ ଯଥାର୍ଥ ଭାବରେ ମଧ୍ୟ ଅଙ୍କିତ ହୋଇଥାଏ, ତେବେ ଏହା ତାହାଙ୍କର ଅପାର କରୁଣାରୁ ହୋଇଛି; ଏବଂ ଯାହା କିଛି ଅସଂପୂର୍ଣ୍ଣତା ଓ ଅଙ୍ଗହାନିତ୍ୱ ରହିଯାଇଛି, ତାହା ଆମମାନଙ୍କର ବୁଝିବାର ଏବଂ କହିବାର ଦୋଷରୁ ହୋଇଛି, ପାଠକମାନେ ଏହି କଥା ବୁଝିନେବେ । ଭବିଷ୍ୟତରେ ଠାକୁରଙ୍କର ଅମୂଲ୍ୟ ଜୀବନର ପୂର୍ବ ଓ ଶେଷଭାଗର ପରିଚୟରେ ମଧ୍ୟ ଏହିଭାବରେ ପାଠକମାନଙ୍କୁ ଉପହାର ଦେବାର ଆମମାନଙ୍କର ଇଚ୍ଛା ରହିଲା । ବର୍ତ୍ତମାନ 'ଭାବମୁଖ'ରେ ଅବସ୍ଥିତ ଦୂରବଗାହୀ ଶ୍ରୀରାମକୃଷ୍ଣ-ଜୀବନର ସନାତନ ବୈଦିକ ଧର୍ମ ସହିତ ନିଗୂଢ଼ ସମ୍ବନ୍ଧାଲୋଚନା କରି ସ୍ୱାମୀ ବିବେକାନନ୍ଦ ଯେଉଁ ସୂତ୍ରଗୁଡ଼ିକ ନିବଦ୍ଧ କରିଯାଇଛନ୍ତି, ତାହା ହିଁ ଏଠାରେ ପାଠକମାନଙ୍କର ନୟନଗୋଚର କରି ଆମେ ଗ୍ରନ୍ଥାରମ୍ଭରେ ପ୍ରବୃତ୍ତ ହେଲୁ ।[୧]

ଅଳମିତି —
ବିନୀତ
**ଗ୍ରନ୍ଥକାର**

---

୧. ସମ୍ପୂର୍ଣ୍ଣ 'ଶ୍ରୀରାମକୃଷ୍ଣଲୀଳାପ୍ରସଙ୍ଗ' ଲେଖିବା ସମୟରେ ଗ୍ରନ୍ଥକାର ଏହି 'ଗୁରୁଭାବ-ପୂର୍ବାର୍ଦ୍ଧ' ସର୍ବପ୍ରଥମ ଲେଖିଥିଲେ । ତାପରେ କ୍ରମାନୁସାରେ 'ଗୁରୁଭାବ-ଉତ୍ତରାର୍ଦ୍ଧ', 'ସାଧକଭାବ', 'ପୂର୍ବକଥା ତଥା ବାଲ୍ୟଜୀବନ', ଏବଂ 'ଶ୍ରୀରାମକୃଷ୍ଣଦେବଙ୍କ ଦିବ୍ୟଭାବ ଏବଂ ନରେନ୍ଦ୍ରନାଥ'ର ରଚନା କରିଥିଲେ । — ପ୍ରକାଶକ

# ହିନ୍ଦୁଧର୍ମ ଓ ଶ୍ରୀରାମକୃଷ୍ଣ

ଆଚଣ୍ଡାଲାପ୍ରତିହତରୟୋ ୟସ୍ୟ ପ୍ରେମପ୍ରବାହଃ
ଲୋକାତୀତୋଽପ୍ୟହହ ନ ଜହୌ ଲୋକକଲ୍ୟାଣମାର୍ଗମ୍ ।
ତ୍ରୈଲୋକ୍ୟେଽପ୍ୟପ୍ରତିମମହିମା ଜାନକୀପ୍ରାଣବନ୍ଧଃ
ଭକ୍ତ୍ୟା ଜ୍ଞାନଂ ବୃତବରବପୁଃ ସୀତୟା ୟୋ ହି ରାମଃ ॥
ସ୍ତବ୍ଧୀକୃତ୍ୟ ପ୍ରଳୟକଳିତଂ ବାହବୋତ୍ଥଂମହାନ୍ତଂ
ହିତ୍ୱା ରାତ୍ରିଂ ପ୍ରକୃତିସହଜାମନ୍ଧତାମିସ୍ରମିଶ୍ରାମ୍ ।
ଗୀତଂ ଶାନ୍ତଂ ମଧୁରମପି ୟଃ ସିଂହନାଦଂ ଜଗର୍ଜ୍ଜ
ସୋଽୟଂ ଜାତଃ ପ୍ରଥିତପୁରୁଷୋ ରାମକୃଷ୍ଣସ୍ତ୍ୱିଦାନୀମ୍ ॥[୧]

ଶାସ୍ତ୍ର ଶବ୍ଦଟି ଅନାଦି ଅନନ୍ତ 'ବେଦ'କୁ ବୁଝାଏ । ଧର୍ମଶାସନ ନିମନ୍ତେ ଏହି ବେଦ ହିଁ ଏକମାତ୍ର ସକ୍ଷମ ।

ପୁରାଣାଦି ଅନ୍ୟାନ୍ୟ ପୁସ୍ତକ ସ୍ମୃତିଶବ୍ଦବାଚ୍ୟ; ଏବଂ ସେମାନଙ୍କର ପ୍ରାମାଣ୍ୟ, ସେହି ପର୍ଯ୍ୟନ୍ତ, ଯେଉଁ ପର୍ଯ୍ୟନ୍ତ ସେମାନେ ଶ୍ରୁତିକୁ ଅନୁସରଣ କରନ୍ତି ।

'ସତ୍ୟ'ଦୁଇପ୍ରକାର :(୧) ଯାହା ମାନବ-ସାଧାରଣ-ପଞ୍ଚେନ୍ଦ୍ରିୟ-ଗ୍ରାହ୍ୟ ଓ ତଦୁପସ୍ଥାପିତ ଅନୁମାନଦ୍ୱାରା ଗୃହୀତ । (୨) ଯାହା ଅତୀନ୍ଦ୍ରିୟ ସୂକ୍ଷ୍ମ ଯୋଗଜ ଶକ୍ତିଗ୍ରାହ୍ୟ ।

ପ୍ରଥମ ଉପାୟଦ୍ୱାରା ସଙ୍କଳିତ ଜ୍ଞାନକୁ 'ବିଜ୍ଞାନ' କୁହାଯାଏ । ଦ୍ୱିତୀୟ ପ୍ରକାରରେ ସଙ୍କଳିତ ଜ୍ଞାନକୁ 'ବେଦ' କହନ୍ତି ।

'ବେଦ' ନାମଧେୟ ଅନାଦି ଅନନ୍ତ ଅଲୌକିକ ଜ୍ଞାନରାଶି ସର୍ବଦା ବିଦ୍ୟମାନ; ସୃଷ୍ଟିକର୍ତ୍ତା ସ୍ୱୟଂ ତାହାର ସହାୟତାରେ ଏହି ଜଗତର ସୃଷ୍ଟି-ସ୍ଥିତି-ପ୍ରଳୟ କରୁଛନ୍ତି।

ସେହି ଅତୀନ୍ଦ୍ରିୟ ଶକ୍ତି ଯେଉଁ ପୁରୁଷଙ୍କଠାରେ ଆବିର୍ଭୂତ ହୁଏ, ତାଙ୍କ ନାମ ଋଷି ଓ ସେହି ଶକ୍ତିଦ୍ୱାରା ସେ ଯେଉଁ ଅଲୌକିକ ସତ୍ୟ ଉପଲବ୍ଧି କରନ୍ତି, ତାହାର ନାମ 'ବେଦ'।

ଏହି ଋଷିତ୍ୱ ଏବଂ ବେଦଦ୍ରଷ୍ଟୃତ୍ୱ ଲାଭ କରିବା ହିଁ ଯଥାର୍ଥ ଧର୍ମାନୁଭୂତି । ସାଧକର ଜୀବନରେ ଯେତେଦିନ ଏହାର ଉନ୍ମେଷ ନ ହୋଇଛି, ସେତେଦିନ

---

୧. [ଭାବାର୍ଥ :—ଯାହାଙ୍କର ପ୍ରେମ ଆଚଣ୍ଡାଳ ସମସ୍ତଙ୍କ ପାଇଁ ଅବାରିତ, ଯିଏ ଲୋକାତୀତ ହୋଇ ମଧ ସର୍ବଦା ଲୋକ-କଲ୍ୟାଣରେ ରତ; ଯିଏ ଜାନକୀଙ୍କର ପ୍ରାଣବନ୍ଧୁ, ଯାହାଙ୍କର କୌଣସି ଉପମା ନାହିଁ; ଭକ୍ତମାନଙ୍କ ଦ୍ୱାରା ପରିବେଷ୍ଟିତ ଓ ଜ୍ଞାନମୟ ଶରୀରଧାରୀ ଯିଏ ଶ୍ରୀରାମ ରୂପରେ ଅବତାର ଗ୍ରହଣ କରିଥିଲେ; ଯିଏ କୁରୁକ୍ଷେତ୍ରରେ ପ୍ରଳୟର ହୁଙ୍କାରରେ ସମସ୍ତଙ୍କୁ ସ୍ତବ୍ଧ କରିଥିଲେ ଏବଂ ସମସ୍ତଙ୍କ ମୋହ-ଅନ୍ଧକାର ଦୂର କରିଦେଇଥିଲେ, ଯାହାଙ୍କ ମୁଖରୁ ପବିତ୍ର ଗୀତା ନିଃସୃତ ହୋଇଥିଲା, ସେହି ପରମପୁରୁଷ ଏବେ ସଂସାରରେ ରାମକୃଷ୍ଣ ନାମରେ ଜନ୍ମ ଗ୍ରହଣ କରିଛନ୍ତି ।]

ପର୍ଯ୍ୟନ୍ତ ଧର୍ମ କେବଳ 'କଥାର କଥା' ଓ ଧର୍ମରାଜ୍ୟର ପ୍ରଥମ ସୋପାନରେ ମଧ୍ୟ ତାହାର ପଦସ୍ଥିତି ହୋଇ ନାହିଁ ବୋଲି ଜାଣିବାକୁ ହେବ ।

ସମସ୍ତ ଦେଶ-କାଳ-ପାତ୍ର **ବ୍ୟାପୀ** ବେଦର ଶାସନ, ଅର୍ଥାତ୍ ବେଦର ପ୍ରଭାବ ଦେଶବିଶେଷରେ, କାଳବିଶେଷରେ କିମ୍ବା ପାତ୍ରବିଶେଷରେ ବଦ୍ଧ ନୁହେଁ ।

ସାର୍ବଜନୀନ ଧର୍ମର ବ୍ୟାଖ୍ୟାତା ଏକମାତ୍ର 'ବେଦ'।

ଅଲୌକିକ ଜ୍ଞାନବେତ୍ତୃତ୍ୱ କିଞ୍ଚିତ୍ ପରିମାଣରେ ଅସ୍ମଦ୍ଦେଶୀୟ ଇତିହାସ ପୁରାଣାଦି ପୁସ୍ତକରେ ଓ ମ୍ଲେଚ୍ଛାଦିଦେଶୀୟ ଧର୍ମପୁସ୍ତକସମୂହରେ ଯଦ୍ୟପି ବର୍ତ୍ତମାନ, ତଥାପି ଅଲୌକିକ ଜ୍ଞାନରାଶିର ସର୍ବପ୍ରଥମ, ସମ୍ପୂର୍ଣ୍ଣ ଏବଂ ଅବିକୃତ ସଂଗ୍ରହ ବୋଲି ଆର୍ଯ୍ୟ ଜାତି ମଧ୍ୟରେ ପ୍ରସିଦ୍ଧ 'ବେଦ' ନାମଧେୟ ଚତୁର୍ବିଭକ୍ତ ଅକ୍ଷରରାଶି, ସର୍ବତୋଭାବରେ ସର୍ବୋଚ୍ଚ ସ୍ଥାନର ଅଧିକାରୀ, ସମଗ୍ର ଜଗତର ପୂଜାର୍ହ ଏବଂ ଆର୍ଯ୍ୟ ବା ମ୍ଲେଚ୍ଛ ସମସ୍ତ ଧର୍ମପୁସ୍ତକର ପ୍ରମାଣଭୂମି ।

ଆର୍ଯ୍ୟ ଜାତିର ଆବିଷ୍କୃତ ଉକ୍ତ ବେଦନାମକ ଶବ୍ଦରାଶି ସମ୍ବନ୍ଧରେ ଏହା ମଧ୍ୟ ବୁଝିବାକୁ ହେବ ଯେ, ତନ୍ମଧ୍ୟରେ ଯାହା ଲୌକିକ, ଅର୍ଥବାଦ ବା ଐତିହ୍ୟ ନୁହେଁ ତାହା ହିଁ 'ବେଦ'।

ଏହି ବେଦରାଶି ଜ୍ଞାନକାଣ୍ଡ ଓ କର୍ମକାଣ୍ଡ ଦୁଇ ଭାଗରେ ବିଭକ୍ତ । କର୍ମକାଣ୍ଡରେ କ୍ରିୟା ଓ ଫଳସମୂହ ମାୟାଧିକୃତ ଜଗତ ମଧ୍ୟରେ ସର୍ବକାଳ ଅବସ୍ଥିତ ବୋଲି ଦେଶ, କାଳ, ପାତ୍ରାଦି ନିୟମାଧୀନରେ ତାହାର ପରିବର୍ତ୍ତନ ହୋଇଅଛି, ହେଉଅଛି ଓ ହେବ । ସାମାଜିକ ରୀତିନୀତି ମଧ୍ୟ ଏହି କର୍ମକାଣ୍ଡ ଉପରେ ଉପସ୍ଥାପିତ ବୋଲି କାଳେ କାଳେ ପରିବର୍ତ୍ତିତ ହେଉଅଛି ଓ ହେବ । ଲୋକାଚାରସକଳ ମଧ୍ୟ ସତ୍ଶାସ୍ତ୍ର ଏବଂ ସଦାଚାରର ଅବିରୋଧୀ ହୋଇ ଯୁଗଯୁଗରେ ଗୃହୀତ ହୋଇଅଛି ଓ ହେବ । ସତ୍ଶାସ୍ତ୍ରବିଗର୍ହିତ ଓ ସଦାଚାରବିରୋଧୀ ଏକମାତ୍ର ଲୋକାଚାରର ବଶବର୍ତ୍ତୀ ହେବା ହିଁ ଆର୍ଯ୍ୟଜାତିର ଅଧଃପତନର ଗୋଟିଏ ପ୍ରଧାନ କାରଣ ।

ଜ୍ଞାନକାଣ୍ଡ ଅଥବା ବେଦାନ୍ତଭାଗ ହିଁ—ନିଷ୍କାମକର୍ମ, ଯୋଗ, ଭକ୍ତି ଓ ଜ୍ଞାନର ସହାୟତାରେ—ମୁକ୍ତିପ୍ରଦ ଏବଂ ମାୟାରୂପି ସମୁଦ୍ରକୁ ପାରକରାଇବାରେ ନେତାପଦରେ ସର୍ବକାଳ ପ୍ରତିଷ୍ଠିତ ରହିଅଛି; ଏବଂ ଦେଶ, କାଳ, ପାତ୍ରାଦିଦ୍ୱାରା ସର୍ବଥା ଅପ୍ରତିହତ ଥିବା କାରଣରୁ ତାହା ହିଁ ସାର୍ବଲୌକିକ, ସାର୍ବଭୌମିକ ଓ ସାର୍ବକାଳିକ ଧର୍ମର ଏକମାତ୍ର ଉପଦେଷ୍ଟା ।

ମନୁସ୍ମୃତିଆଦି ଶାସ୍ତ୍ର କର୍ମକାଣ୍ଡକୁ ଅଶ୍ରୟ କରି ଦେଶ-କାଳ-ପାତ୍ରଭେଦରେ ବିଚାର କରି ସାମାଜିକ କଲ୍ୟାଣକର କର୍ମର ଶିକ୍ଷା ପ୍ରଧାନତଃ ଦେଇଛନ୍ତି । ପୁରାଣାଦି ଓ ତନ୍ତ୍ରଗ୍ରନ୍ଥ, ବେଦାନ୍ତ-ନିହିତ ତତ୍ତ୍ୱସକଳ ନେଇ ଅବତାରାଦିଙ୍କ ମହାନ୍ ଚରିତ୍ରବର୍ଣ୍ଣନ ମାଧ୍ୟମରେ ଏସବୁ ତତ୍ତ୍ୱର ବିସ୍ତୃତ ବ୍ୟାଖ୍ୟାନ ହିଁ କରୁଛନ୍ତି; ଏବଂ

ଅନନ୍ତ ଭାବମୟ ପ୍ରଭୁ ଭଗବାନଙ୍କର କୌଣସି କୌଣସି ଭାବକୁ ମୁଖ୍ୟ କରି ସେହି ସେହି ଭାବର ଉପଦେଶ ଦେଇଛନ୍ତି ।

କିନ୍ତୁ କାଳବଶରେ ସଦାଚାରଭ୍ରଷ୍ଟ, ବୈରାଗ୍ୟବିହୀନ, ଏକମାତ୍ର ଲୋକାଚାରନିଷ୍ଠ ଓ କ୍ଷୀଣବୁଦ୍ଧି ଆର୍ଯ୍ୟସନ୍ତାନ—ଏହିସବୁ ଭାବବିଶେଷର ବିଶେଷ ଶିକ୍ଷା ଦେବା ପାଇଁ ଆପାତପ୍ରତିଯୋଗୀ ପରି ଅବସ୍ଥିତ ଓ ଅଳ୍ପବୁଦ୍ଧି ମାନବ ପାଇଁ ବହୁବିସ୍ତାରିତ ଭାଷାରେ ସ୍ଥୂଳଭାବରେ ବୈଦାନ୍ତିକ ସୂକ୍ଷ୍ମତତ୍ତ୍ୱର ପ୍ରଚାରକାରୀ—ପୁରାଣାଦିର ମର୍ମଗ୍ରହଣରେ ଅସମର୍ଥ । ଅନନ୍ତଭାବର ସମଷ୍ଟି ଅଖଣ୍ଡ ସନାତନ ଧର୍ମକୁ ବହୁଖଣ୍ଡରେ ବିଭକ୍ତ ଏବଂ ସାମ୍ପ୍ରଦାୟିକ ଈର୍ଷା ଓ କ୍ରୋଧ ପ୍ରଜ୍ୱଳିତ କରି ତନ୍ମଧ୍ୟରେ ପରସ୍ପରକୁ ଆହୁତି ଦେବା ପାଇଁ ସତତ ଚେଷ୍ଟିତ ରହି ଏହି ଧର୍ମଭୂମି ଭାରତବର୍ଷକୁ ପ୍ରାୟ ନରକଭୂମିରେ ପରିଣତ କରିଥିଲେ । ଯେତେବେଳେ ଏହି ମହାନ୍ ସଙ୍କଟ ଉପସ୍ଥିତ ହେଲା ଠିକ୍ ସେତେବେଳେ ଆର୍ଯ୍ୟଜାତିର ପ୍ରକୃତ ଧର୍ମ କ'ଣ ଏବଂ ସତତ-ବିବଦମାନ, ଆପାତଦୃଷ୍ଟିରେ ବହୁଧା-ବିଭକ୍ତ, ସର୍ବଥା-ବିପରୀତ-ଆଚାରସଙ୍କୁଳ ସମ୍ପ୍ରଦାୟରେ ସମାଚ୍ଛନ୍ନ, ସ୍ୱଦେଶୀର ଭ୍ରାନ୍ତିସ୍ଥାନ ଓ ବିଦେଶୀର ଘୃଣାସ୍ପଦ ହିନ୍ଦୁଧର୍ମ ନାମକ ଯୁଗଯୁଗାନ୍ତରବ୍ୟାପୀ ବିଖଣ୍ଡିତ ଓ ଦେଶକାଳଯୋଗରେ ଇତସ୍ତତଃ ବିକ୍ଷିପ୍ତ ଧର୍ମଖଣ୍ଡ ସମଷ୍ଟି ମଧ୍ୟରେ ଯଥାର୍ଥ ଏକତା କେଉଁଠି ତାହା ଦେଖାଇବାକୁ ଏବଂ କାଳବଶରେ ନଷ୍ଟ ଏହି ସନାତନ ଧର୍ମର ସାର୍ବଲୌକିକ ଓ ସାର୍ବଦେଶିକସ୍ୱରୂପ ସ୍ୱୀୟ ଜୀବନରେ ନିହିତ କରି ସନାତନ ଧର୍ମର ଜୀବନ୍ତ ଉଦାହରଣସ୍ୱରୂପ ହୋଇ ଲୋକହିତାୟ ସର୍ବସମକ୍ଷରେ ନିଜ ଜୀବନ ପ୍ରଦର୍ଶନ କରିବା ପାଇଁ ଭଗବାନ ଶ୍ରୀରାମକୃଷ୍ଣଦେବ ଅବତୀର୍ଣ୍ଣ ହୋଇଛନ୍ତି ।

ଅନାଦିକାଳରୁ ବିଦ୍ୟମାନ, ସୃଷ୍ଟି-ସ୍ଥିତି-ଲୟକର୍ତ୍ତାଙ୍କର ସହଯୋଗୀ ଶାସ୍ତ୍ର, କେଉଁ ପ୍ରକାରରେ ଐହିକ ସଂସ୍କାରସମୂହକୁ ଯେଉଁମାନେ ସମ୍ପୂର୍ଣ୍ଣ ପରିତ୍ୟାଗ କରିଛନ୍ତି ସେହି ଋଷିମାନଙ୍କ ହୃଦୟରେ ସ୍ୱତଃ ଆବିର୍ଭୂତ ହୁଅନ୍ତି ତାହା ଦେଖାଇବା ପାଇଁ ଏବଂ ଏହି ପ୍ରକାରେ ଶାସ୍ତ୍ର ପ୍ରମାଣୀକୃତ ହେଲେ ଧର୍ମର ପୁନରୁଦ୍ଧାର, ପୁନଃସ୍ଥାପନ ଓ ପୁନଃପ୍ରଚାର ହେବ ଏଥିପାଇଁ ବେଦମୂର୍ତ୍ତି ଭଗବାନ ଏହି କଳେବରରେ ବହିଃଶିକ୍ଷା ପ୍ରାୟ ସମ୍ପୂର୍ଣ୍ଣ ଉପେକ୍ଷା କରିଛନ୍ତି ।

ବେଦ—ଅର୍ଥାତ୍ ପ୍ରକୃତ ଧର୍ମର, ଏବଂ ବ୍ରାହ୍ମଣତ୍ୱ—ଅର୍ଥାତ୍ ଧର୍ମ ଶିକ୍ଷକତ୍ୱର ରକ୍ଷା ପାଇଁ ଭଗବାନ ଯେ ବାରମ୍ବାର ଶରୀର ଧାରଣ କରନ୍ତି, ଏହା ସ୍ମୃତ୍ୟାଦିରେ ପ୍ରସିଦ୍ଧ ଅଛି ।

ପ୍ରପତିତ ନଦୀର ଜଳରାଶି ସମଧିକ ବେଗବାନ ହୁଏ, ପୁନରୁତ୍ଥିତ ତରଙ୍ଗ ସମଧିକ ବିସ୍ତାରିତ ହୁଏ, ତଦ୍ରୂପ ପ୍ରତ୍ୟେକ ପତନ ପରେ ଆର୍ଯ୍ୟସମାଜ ମଧ୍ୟ ଶ୍ରୀଭଗବାନଙ୍କର କାରୁଣିକ ନିୟନ୍ତୃତ୍ୱରେ ବିଗତାମୟ ହୋଇ ପୂର୍ବାପେକ୍ଷା ଅଧିକତର ଯଶସ୍ୱୀ ଓ ବୀର୍ଯ୍ୟବାନ ହେଉଅଛି, ଏହା ଇତିହାସ ପ୍ରସିଦ୍ଧ ।

ପ୍ରତ୍ୟେକ ପତନ ପରେ ଆମମାନଙ୍କର ପୁନରୁତ୍‌ଥିତ ସମାଜ ଅନ୍ତର୍ନିହିତ ସନାତନ ପୂର୍ଣ୍ଣତ୍ୱକୁ ସମଧିକ ପ୍ରକାଶିତ କରୁଅଛି ଏବଂ ସର୍ବଭୂତ ଅନ୍ତର୍ଯ୍ୟାମୀ ପ୍ରଭୁ ମଧ ପ୍ରତ୍ୟେକ ଅବତାରରେ ଆତ୍ମସ୍ୱରୂପକୁ ସମଧିକ ଅଭିବ୍ୟକ୍ତ କରୁଛନ୍ତି ।

ବାରମ୍ବାର ଏହି ଭାରତଭୂମି ମୂର୍ଚ୍ଛାପନ୍ନା ହୋଇଥିଲା ଏବଂ ବାରମ୍ବାର ଭାରତର ଭଗବାନ ଆତ୍ମାଭିବ୍ୟକ୍ତି ଦ୍ୱାରା ଏହାକୁ ପୁନରୁଜ୍ଜୀବିତା କରିଛନ୍ତି ।

କିନ୍ତୁ ଅତି ଅଳ୍ପ ଅବଶିଷ୍ଟ, ପ୍ରାୟ ସମାପ୍ତ ହେବାକୁ ବସିଥିବା ବର୍ତ୍ତମାନର ଗଭୀର ବିଷାଦରଜନୀ ପରି କୌଣସି ଅମାନିଶା ଏହାପୂର୍ବରୁ ଏହି ପୁଣ୍ୟଭୂମିକୁ ସମାଚ୍ଛନ୍ନ କରି ନାହିଁ । ଏହି ପତନର ଗଭୀରତାରେ ପ୍ରାଚୀନ ପତନ ସମସ୍ତ ଗୋଷ୍ପଦତୁଲ୍ୟ ।

ସେଥିପାଇଁ ଏହି ପ୍ରବୋଧନର ସମୁଜ୍ଜ୍ୱଳତାରେ ଆର୍ଯ୍ୟସମାଜର ପୂର୍ବପୂର୍ବ ଯୁଗର ବୋଧନସମୂହ ସୂର୍ଯ୍ୟାଲୋକରେ ତାରକାବଳୀ ପରି ମହିମାବିହୀନ ହେବ ଏବଂ ତାହାର ଏହି ପୁନରୁତ୍‌ଥାନର ମହାବୀର୍ଯ୍ୟ ସମକ୍ଷରେ ପୂର୍ବ ପୂର୍ବ ଯୁଗର ପୁନଃ ପୁନର୍ଲବ୍‌ଧ ପ୍ରାଚୀନ ବୀର୍ଯ୍ୟ ବାଳଲୀଳା ପ୍ରାୟ ହୋଇଯିବ ।

ସନାତନ ଧର୍ମର ସମଗ୍ର-ଭାବସମଷ୍ଟି, ବର୍ତ୍ତମାନର ପତନାବସ୍ଥା କାଳରେ ଅଧିକାରୀହୀନତା ଯୋଗୁ ଇତସ୍ତତଃ ବିକ୍ଷିପ୍ତ ହୋଇ କ୍ଷୁଦ୍ର କ୍ଷୁଦ୍ର ସଂପ୍ରଦାୟ ଆକାରରେ କେଉଁଠି ଆଂଶିକ ଭାବରେ ପରିଲକ୍ଷିତ ଏବଂ କେଉଁଠି ବା ସମ୍ପୂର୍ଣ୍ଣ ଲୁପ୍ତ ହୋଇଥିଲା ।

ଏହି ନବୋତ୍‌ଥାନର ନୂତନ ବଳରେ ବଳୀୟାନ ମାନବସନ୍ତାନ ଯେ ସେହି ବିଖଣ୍ଡିତ ଓ ବିକ୍ଷିପ୍ତ ଅଧ୍ୟାତ୍ମବିଦ୍ୟା ସମଷ୍ଟିକୃତକରି ନିଜ ଜୀବନରେ ଧାରଣା ଓ ଅଭ୍ୟାସ କରିବାକୁ ଏବଂ ଲୁପ୍ତ ବିଦ୍ୟାର ମଧ ପୁନରାବିଷ୍କାର କରିବାକୁ ସମର୍ଥ ହେବ, ଏହାର ହିଁ ନିଦର୍ଶନସ୍ୱରୂପ ପରମ କାରୁଣିକ ଶ୍ରୀଭଗବାନ ବର୍ତ୍ତମାନ ଯୁଗରେ ସର୍ବଯୁଗାପେକ୍ଷା ସମଧିକ ସଂପୂର୍ଣ୍ଣ, ସର୍ବଭାବସମନ୍ୱିତ, ସର୍ବବିଦ୍ୟାସହାୟ, ଯୁଗାବତାରରୂପ ପ୍ରକାଶ କଲେ ।

ଅତଏବ ଏହି ମହାଯୁଗର ପ୍ରତ୍ୟୁଷରେ ସର୍ବଭାବର ସମନ୍ୱୟ ପ୍ରଚାରିତ ହେଉଛି ଏବଂ ଏହି ଅସୀମ ଅନନ୍ତ ଭାବ, ଯାହା ସନାତନ ଶାସ୍ତ୍ର ଓ ଧର୍ମରେ ନିହିତ ରହି ମଧ ଏତେଦିନ ପ୍ରଚ୍ଛନ୍ନ ଥିଲା, ତାହା ପୁନରାବିଷ୍କୃତ ହୋଇ ଉଚ୍ଚ ନିନାଦରେ ଜନସମାଜରେ ଘୋଷିତ ହେଉଛି ।

ଏହି ନବ-ଯୁଗଧର୍ମ ସମଗ୍ର ଜଗତର, ବିଶେଷତଃ ଭାରତବର୍ଷର କଲ୍ୟାଣର ନିଦାନ; ଏବଂ ଏହି ନବ-ଯୁଗଧର୍ମ ପ୍ରବର୍ତ୍ତକ ଭଗବାନ ଶ୍ରୀରାମକୃଷ୍ଣ ପୂର୍ବକାଳୀନ ଶ୍ରୀଯୁଗଧର୍ମ-ପ୍ରବର୍ତ୍ତକମାନଙ୍କର ପୁନଃସଂସ୍କୃତ ପ୍ରକାଶ ! —ହେ ମାନବ, ଏହା ବିଶ୍ୱାସ କର, ଧାରଣା କର !

ହେ ମାନବ, ମୃତ ବ୍ୟକ୍ତି ପୁନରାଗତ ହୁଏ ନାହିଁ—ଗତ ରାତ୍ରି ପୁନର୍ବାର ଆସେ ନାହିଁ—ବିଗତୋଚ୍ଛ୍ୱାସ ପୂର୍ବରୂପ ଆଉ ପ୍ରଦର୍ଶନ କରେ ନାହିଁ—ଜୀବ ମଧ୍ୟ ଦୁଇଥର ଏକ ଦେହ ଧାରଣ କରେ ନାହିଁ। ଅତଏବ ଅତୀତର ପୂଜାରୁ ଆମେମାନେ ତୁମମାନଙ୍କୁ ପ୍ରତ୍ୟକ୍ଷର ପୂଜାକୁ ଆହ୍ୱାନ କରୁଛୁ—ଗତାନୁଶୋଚନାରୁ ବର୍ତ୍ତମାନ ପ୍ରଯତ୍ନରେ ଆହ୍ୱାନ କରୁଛୁ—ଲୁପ୍ତ ପନ୍ଥାର ପୁନରୁଦ୍ଧାରରେ ବୃଥା ଶକ୍ତିକ୍ଷୟରୁ, ସଦ୍ୟନିର୍ମିତ ବିଶାଳ ଓ ସନ୍ନିକଟ ପଥକୁ ଆହ୍ୱାନ କରୁଛୁ; ବୁଦ୍ଧିମାନ୍, ବୁଝିନିଅ !

ଯେଉଁ ଶକ୍ତିର ଉନ୍ମେଷମାତ୍ରେ ଦିଗଦିଗନ୍ତବ୍ୟାପୀ ପ୍ରତିଧ୍ୱନି ଜାଗରିତା ହୋଇଛି, ତାହାର ପୂର୍ଣ୍ଣାବସ୍ଥା କଳ୍ପନାରେ ଅନୁଭବ କର; ଏବଂ ବୃଥା ସନ୍ଦେହ, ଦୁର୍ବଳତା ଓ ଦାସଜାତିସୁଲଭ ଈର୍ଷାଦ୍ୱେଷ ତ୍ୟାଗ କରି ଏହି ମହାଯୁଗଚକ୍ର-ପରିବର୍ତ୍ତନରେ ସହାୟତା କର !

ଆମେମାନେ ପ୍ରଭୁଙ୍କର ଦାସ, ପ୍ରଭୁଙ୍କର ପୁତ୍ର, ପ୍ରଭୁଙ୍କର ଲୀଳାର ସହାୟକ —ଏହି ବିଶ୍ୱାସ ହୃଦୟରେ ଦୃଢ଼ ଭାବରେ ଧାରଣ କରି କାର୍ଯ୍ୟକ୍ଷେତ୍ରରେ ଅବତୀର୍ଣ୍ଣ ହୁଅ !

—ସ୍ୱାମୀ ବିବେକାନନ୍ଦ

# ପ୍ରଥମ ଅଧ୍ୟାୟ

## ଭାବମୁଖରେ ଶ୍ରୀରାମକୃଷ୍ଣ

ଯେ ଚୈବ ସାତ୍ତ୍ୱିକା ଭାବା ରାଜସାସ୍ତାମସାଶ୍ଚ ଯେ ।
ମତ୍ତ ଏବେତି ତାନ୍ ବିଦ୍ଧି ନ ତ୍ୱହଂ ତେଷୁ ତେ ମୟି ।।
ତ୍ରିଭିର୍ଗୁଣମୟୈର୍ଭାବୈରେଭିଃ ସର୍ବମିଦଂ ଜଗତ୍ ।
ମୋହିତଂ ନାଭିଜାନାତି ମାମେଭ୍ୟଃ ପରମବ୍ୟୟମ । – ଗୀତା ୭/୧୨–୧୩

### ଠାକୁରଙ୍କ କଥାର ଗଭୀର ତାତ୍ପର୍ଯ୍ୟ :

ଦ୍ୱାଦଶବର୍ଷବ୍ୟାପୀ ଅଦୃଷ୍ଟପୂର୍ବ ଅଲୌକିକ ତପସ୍ୟା ଶେଷରେ ଶ୍ରୀଶ୍ରୀଜଗଦମ୍ବା ଠାକୁରଙ୍କୁ କହିଲେ—''ଆରେ, ତୁ ଭାବମୁଖରେ ରହ''; ଠାକୁର ମଧ୍ୟ ତାହା ହିଁ କରିଛନ୍ତି—ଏକଥା ଏବେ ଅନେକଙ୍କୁ ଜଣା । କିନ୍ତୁ ଭାବମୁଖରେ ରହିବା ଯେ କ'ଣ ଏବଂ ଏହାର ଅର୍ଥ ଯେ କେତେ ଗଭୀର ତାହା ବୁଝିବା ଓ ବୁଝାଇବା ଅତ୍ୟନ୍ତ କଠିନ । ଅଠେଇଶ ବର୍ଷ ପୂର୍ବେ ସ୍ୱାମୀ ବିବେକାନନ୍ଦ ଦିନେ ଜନୈକ ବନ୍ଧୁ ଶ୍ରୀଯୁକ୍ତ ହରମୋହନ ମିତ୍ରଙ୍କୁ କହିଥିଲେ, ''ଠାକୁରଙ୍କର ଗୋଟିଏ ଗୋଟିଏ କଥାକୁ ଅବଲମ୍ବନ କରି ଝୁଡ଼ି-ଝୁଡ଼ି ଦର୍ଶନଗ୍ରନ୍ଥ ଲେଖାଯାଇପାରେ ।'' ବନ୍ଧୁ ଜଣକ ଏହା ଶୁଣି ଅବାକ୍ ହୋଇ କହିଲେ—''ସତେ ! ଆମେମାନେ ତ ଠାକୁରଙ୍କ କଥାର ଏତେ ଗଭୀର ଭାବ ବୁଝିପାରୁ ନାହୁଁ ! ତାଙ୍କର କୌଣସି ଗୋଟିଏ କଥା ଏହି ଭାବରେ ମୋତେ ବୁଝାଇ କହିବେ କି ?''

ସ୍ୱାମୀଜୀ—ବୁଝିବାର ବୁଦ୍ଧି ଥିଲେ ତ ବୁଝିବ । ଆଚ୍ଛା, ଠାକୁରଙ୍କର ଯେ କୌଣସି ଗୋଟିଏ କଥା କୁହ, ମୁଁ ବୁଝାଉଛି ।

ବନ୍ଧୁ—ବେଶ; ସର୍ବଭୂତେ ନାରାୟଣ ଦେଖା ସମ୍ବନ୍ଧରେ ଉପଦେଶ ଦେଇ ଠାକୁର 'ହାତୀ-ନାରାୟଣ ଓ ମାହୁନ୍ତ-ନାରାୟଣ'ର ଯେଉଁ ଗଳ୍ପଟି କହିଛନ୍ତି ସେହିଟିକୁ ବୁଝାଇ କୁହ ।

ସ୍ୱାମୀଜୀ ମଧ୍ୟ ତତ୍କ୍ଷଣାତ୍ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଉଭୟବିଧ ପଣ୍ଡିତମାନଙ୍କ ଭିତରେ ଆବହମାନକାଳ ଧରି, ସ୍ୱାଧୀନ ଇଚ୍ଛା ଓ ଅଦୃଷ୍ଟବାଦ ଅଥବା ପୁରୁଷକାର ଓ ଭଗବତ୍ ଇଚ୍ଛା ନେଇ ଯେଉଁ ବାଦାନୁବାଦ ଚାଲି ଆସୁଛି ଅଥଚ ତା'ର କୌଣସି ଏକ ସ୍ଥିର ମୀମାଂସା ହୋଇପାରୁ ନାହିଁ, ସେହି ସମସ୍ତ କଥା ଉତ୍ଥାପନ କଲେ ଏବଂ ଠାକୁରଙ୍କର ସେହି ଗଳ୍ପଟି ଯେ ସେହି ବିବାଦର ଏକ ଅପୂର୍ବ ସମାଧାନ, ତାହା ସରଳ ଭାଷାରେ ତିନିଦିନ ଧରି ବନ୍ଧୁଙ୍କୁ ବୁଝାଇ କହିଥିଲେ ।

### ସମସ୍ତ ଅବତାରପୁରୁଷମାନଙ୍କର କଥା ହିଁ ଏହିପରି :

ଗଭୀର ଭାବରେ ଚିନ୍ତା କରି ଦେଖିଲେ ବାସ୍ତବିକ୍ ଠାକୁରଙ୍କର ଅତି ସାମାନ୍ୟ ସାମାନ୍ୟ ଦୈନିକ ବ୍ୟବହାର ଓ ଉପଦେଶ ଭିତରେ ଏପରି ଗଭୀର ଅର୍ଥ ଦେଖି ଆଶ୍ଚର୍ଯ୍ୟ ହେବାକୁ ପଡ଼ିଥାଏ । ଅବତାରପୁରୁଷମାନଙ୍କର ପ୍ରତ୍ୟେକଙ୍କ ସମ୍ବନ୍ଧରେ ଏହି କଥା ସତ୍ୟ । ସେମାନଙ୍କ ଜୀବନାଲୋଚନାରେ ଏହା ସ୍ପଷ୍ଟ ଦେଖିବାକୁ ମିଳେ । ଆଚାର୍ଯ୍ୟ ଶଙ୍କର ପ୍ରଭୃତି ଯେଉଁ ଜଣେ ଦୁଇଜଣ ମହାପୁରୁଷଙ୍କୁ ବିପକ୍ଷଦଳର କୁତର୍କଜାଲ ଛିନ୍ନ-ଭିନ୍ନ କରି ଧର୍ମସଂସ୍ଥାପନ କରିବାକୁ ହୋଇଥିଲା, ସେମାନଙ୍କର କଥା ଛାଡ଼ିଦେଲେ, ଅନ୍ୟ ସମସ୍ତ ମହାପୁରୁଷମାନଙ୍କର ଜୀବନରେ ହିଁ ଦେଖାଯାଏ, ସେମାନେ ସରଳ କଥାରେ, ମର୍ମସ୍ପର୍ଶୀ ଛୋଟ-ଛୋଟ ଗଳ୍ପ, ଉପମା ବା ରୂପକ ସହାୟରେ ଯାହା କହିବାର କହିଛନ୍ତି ଓ ବୁଝାଇ ଦେଇଛନ୍ତି । ଲମ୍ବା-ଚଉଡ଼ା କଥା, ଦୀର୍ଘ ଦୀର୍ଘ ସମାସ ପ୍ରଭୃତିର ପାଖ ମାଡ଼ି ନାହାନ୍ତି । କିନ୍ତୁ ସେହି ସିଧା ସରଳ କଥାର, ସେହି ଛୋଟ ଛୋଟ ଉପମା ଭିତରେ ଏତେ ଭାବ ଓ ମାନବସାଧାରଣଙ୍କୁ ଉଚ୍ଚ ଆଦର୍ଶରେ ପହଞ୍ଚାଇ ଦେବାର ଏତେ ଶକ୍ତି ରହିଅଛି ଯେ, ଆମେ ହଜାର ହଜାର ବର୍ଷ ଧରି ଚେଷ୍ଟା କରି ମଧ୍ୟ ସେମାନଙ୍କର ଭାବର ଅନ୍ତ ବା ଶକ୍ତିର ସୀମା ଏବେ ମଧ୍ୟ ନିରୂପଣ କରିପାରିଲୁ ନାହିଁ । ଯେତେ ଦେଖୁ ସେତେ ଉଚ୍ଚରୁ ଉଚ୍ଚତର ଭାବ ଦେଖିବାକୁ ପାଉ, ଯେତେ ସେସବୁ ଚିନ୍ତନକରୁ ସେତେ ହିଁ ମନ 'ଅନିତ୍ୟ ଅଶୁଭ' ସଂସାରର ରାଜତ୍ୱ ଛାଡ଼ି ଉର୍ଦ୍ଧ୍ୱରୁ ଉର୍ଦ୍ଧ୍ୱତର ଦେଶକୁ ଉଠୁଥାଏ, ଏବଂ 'ପରମପଦପ୍ରାପ୍ତି', 'ବ୍ରାହ୍ମୀସ୍ଥିତି', 'ମୋକ୍ଷ' ବା 'ଭଗବତ୍‌ଦର୍ଶନ' ଆଡ଼କୁ—କାରଣ ଏକ ବସ୍ତୁକୁ ହିଁ ନାନାଭାବରେ ଦେଖି ମହାପୁରୁଷଗଣ ଏହି ସମସ୍ତ ନାନା ନାମରେ ନିର୍ଦ୍ଦେଶ କରିଛନ୍ତି—ଯିଏ ଯେତେ ଅଗ୍ରସର ହୋଇଥାଏ, ସିଏ ସେତେ ସେହି ସମସ୍ତ ସାଦା ସିଧା କଥାର ଗଭୀର ଭାବ ପ୍ରାଣେ ପ୍ରାଣେ ବୁଝିପାରିଥାଏ ।

### ଦୃଷ୍ଟାନ୍ତ—ଗିରିଶଙ୍କୁ ଓକାଲତନାମା ଦେବାକୁ କହିବା :

ଏହା ହିଁ ନିୟମ । ଠାକୁରଙ୍କର କଥା ଓ ବ୍ୟବହାର ସମ୍ବନ୍ଧରେ ମଧ୍ୟ ଏହି ନିୟମର ବ୍ୟତିକ୍ରମ ଦେଖାଯାଏ ନାହିଁ । ତାଙ୍କର କଥାଗୁଡ଼ିକ ପୂର୍ବେ ଯେଉଁ ଭାବରେ ବୁଝୁଥିଲୁ, ଏବେ ସେଗୁଡ଼ିକରେ ଆହୁରି କେତେ କେତେ ଗଭୀର ଭାବ ଦେଖିବାକୁ ପାଉ ! ଦୃଷ୍ଟାନ୍ତସ୍ୱରୂପ ଏଠାରେ ଗୋଟିଏ କଥା କହିଲେ ହିଁ ଚଳିବ । ଶ୍ରୀଯୁକ୍ତ ଗିରିଶ ଠାକୁରଙ୍କ ନିକଟକୁ କେତେଥର ଯିବା-ଆସିବା କଲା ପରେ ଦିନେ ତାଙ୍କୁ ସମ୍ପୂର୍ଣ୍ଣ ଭାବରେ ଆତ୍ମସମର୍ପଣ କରି କହିଲେ — ''ଏବେଠାରୁ ମୁଁ କ'ଣ କରିବି ?''

ଠାକୁର—''ଯାହା କରୁଛ ତାହା ହିଁ କରୁଥାଅ । ଏବେ ଏପାଖ (ଭଗବାନ) ସେପାଖ (ସଂସାର) ଦୁଇଦିଗ ରଖି ଚାଲ, ତାପରେ ଯେତେବେଳେ ଗୋଟିଏ

ଦିଗ ଭାଙ୍ଗିଯିବ ସେତେବେଳେ ଯାହା ହେବାର ହେବ । ତେବେ ସକାଳ ଓ ସନ୍ଧ୍ୟା ତାଙ୍କର ସ୍ମରଣ-ମନନଟା ରଖିବ ।'' —ଏହା କହିସାରି ଗିରିଶଙ୍କ ଆଡ଼କୁ ଚାହିଁଲେ, ଯେପରି ତାଙ୍କର ଉତ୍ତର ପ୍ରତୀକ୍ଷା କରୁଛନ୍ତି ।

## ଗିରିଶଙ୍କର ମନର ଅବସ୍ଥା :

ଗିରିଶ ଏହାଶୁଣି ବିଷଣ୍ଣମନରେ ଭାବିବାକୁ ଲାଗିଲେ, 'ମୋର ଯେଉଁ ପ୍ରକାର କାମ ସେଥିରେ ମୁଁ ମୋର ନିତ୍ୟକର୍ମର, ଯଥା—ସ୍ନାନ-ଆହାର-ନିଦ୍ରା ପ୍ରଭୃତିର ଗୋଟିଏ ନିୟମିତ ସମୟ ରଖିପାରୁ ନାହିଁ । ସକାଳେ ଓ ସନ୍ଧ୍ୟାରେ ସ୍ମରଣ-ମନନ କରିବାକୁ ନିଶ୍ଚୟ ଭୁଲିଯିବି । ତା'ହେଲେ ତ ମୁସ୍କିଲ୍— ଶ୍ରୀଗୁରୁଙ୍କର ଆଜ୍ଞା ଲଙ୍ଘନରେ ମହାଦୋଷ ଓ ଅନିଷ୍ଟ ହେବ । ଅତଏବ ଏକଥା କିପରି ସ୍ୱୀକାର କରିବି ? ସଂସାରରେ ଅନ୍ୟ କାହା ପାଖରେ କଥା ଦେଇ ସେକଥା ନ ରଖି ପାରିଲେ ଦୋଷ ହୋଇଥାଏ, ତେବେ ଯାହାକୁ ପରକାଳର ରକ୍ଷାକର୍ତ୍ତା ବୋଲି ଗ୍ରହଣ କରିଛି ତାଙ୍କଠାରେ ଏପରି ଆଚରଣ କରିବି ?' ଗିରିଶ ନିଜର ମନର କଥାଗୁଡ଼ିକ ପ୍ରକାଶ କରିବାକୁ ମଧ୍ୟ କୁଣ୍ଠିତ ହେଲେ । ପୁଣି ଭାବିଲେ, 'କିନ୍ତୁ ଠାକୁର ମୋତେ ତ ଅନ୍ୟ କୌଣସି ଏକ ବିଶେଷ କଠିନ କାମ କରିବାକୁ କହି ନାହାନ୍ତି । ଅନ୍ୟ କାହାକୁ ଏକଥା କହିଥିଲେ ଆନନ୍ଦର ସହିତ ସ୍ୱୀକାର କରିଥାନ୍ତେ ।' କିନ୍ତୁ ସେ କ'ଣ କରିବେ, ନିଜର ଏକାନ୍ତ ବହିର୍ମୁଖ ଅବସ୍ଥା ଠିକ୍ ଠିକ୍ ଦେଖିପାରି ବୁଝୁଥିଲେ ଯେ, ଧର୍ମକର୍ମର ଏତିକି ମାତ୍ର ପ୍ରତିଦିନ କରିବା ଯେପରି ତାଙ୍କର ସାମର୍ଥ୍ୟର ଅତୀତ । ପୁଣି ନିଜର ସ୍ୱଭାବ ଆଡ଼େ ଚାହିଁ ଦେଖିବାକୁ ପାଇଲେ— 'କୌଣସି ପ୍ରକାର ବ୍ରତ ବା ନିୟମରେ, 'ଚିରକାଳ ନିମିତ୍ତ ଆବଦ୍ଧ ହେଲି'—ଏକଥା ମନେ କଲେ ଯେପରି ଅଣନିଃଶ୍ୱାସୀ ହୋଇପଡ଼ିବି ଏବଂ ଯେତେକ୍ଷଣ ଏନିୟମ ଭଙ୍ଗ ନ ହୁଏ ସେତେକ୍ଷଣ ଯେପରି ପ୍ରାଣରେ ଅଶାନ୍ତି । ଆଜୀବନ ଏପରି ଘଟିଅଛି । ନିଜ ଇଚ୍ଛାରେ ଭଲମନ୍ଦ ଯାହା ହୁଏ ତାହା କରିବାରେ କିଛି ଅସୁବିଧା ନାହିଁ, କିନ୍ତୁ ଯେଉଁ ମୁହୂର୍ତ୍ତରେ ମନ ହେବ ଯେ, ବାଧ୍ୟ ହୋଇ ମୋତେ ଅମୁକ କାମଟା କରିବାକୁ ହେଉଛି ବା ହେବ, ସଙ୍ଗେ ସଙ୍ଗେ ମନ ଅମାନିଆ ହେବ । ତେଣୁ ବାସ୍ତବରେ ନିଜର ନିତାନ୍ତ ଅପାରଗତା ଓ ଅସହାୟ ଅବସ୍ଥା ଉପଲବ୍ଧି କରୁ କରୁ କାତର ହୋଇ ଚୁପ୍ ରହିଲେ—'କରିବି' ବା 'କରିପାରିବି ନାହିଁ' କିଛି ହେଲେ କହିପାରିଲେ ନାହିଁ । ପୁଣି ଏତେ ସହଜ କାମଟି କରିପାରିବେ ନାହିଁ, ଏକଥା ଲଜ୍ଜାରେ କହିବେ ବା କିପରି—କହିଲେ ମଧ୍ୟ ଠାକୁର ଓ ଉପସ୍ଥିତ ସମସ୍ତେ କ'ଣ ମନେ କରିବେ ? ତାଙ୍କର ଏକାନ୍ତ ଅସହାୟ ଅବସ୍ଥା କଥା ହୁଏତ ବୁଝିପାରିବେ ନାହିଁ, ମୁହଁ ଫିଟାଇ ନ କହିଲେ ବି ମନରେ ନିଶ୍ଚୟ ଭାବିବେ—ସେ ଢଙ୍ଗକରି କଥାଗୁଡ଼ିକ କହୁଛନ୍ତି ।

ଠାକୁରେ, ଗିରିଶଙ୍କୁ ଏପରି ନୀରବ ରହିବା ଦେଖି, ତାଙ୍କ ଆଡ଼େ ଚାହିଁଲେ ଏବଂ ତାଙ୍କର ମନୋଗତ ଭାବ ବୁଝି କହିଲେ, ''ଆଚ୍ଛା, ତାହା ଯଦି ନ ପାର, ଖାଇବା ଓ ଶୋଇବା ପୂର୍ବରୁ ତାଙ୍କର ନାମ ଥରେ ସ୍ମରଣ କରିବ ।''

ଗିରିଶ ନୀରବ । ଭାବିଲେ ଏହା କ'ଣ କରିପାରିବେ । ଦେଖିଲେ— କେଉଁଦିନ ସକାଳ ଦଶଟାରେ ତ କେଉଁ ଦିନ ଉପରବେଳା ପାଞ୍ଚଟାରେ ଭୋଜନ କରନ୍ତି; ରାତି ଖାଇବା ସମ୍ବନ୍ଧରେ ମଧ୍ୟ ସେହିପରି ନିୟମ । ଆହୁରି ମଧ୍ୟ ମାଲିମକଦ୍ଦମାରେ ପଡ଼ି ଏପରି ଦିନ କଟିଛି ଯେ, ଖାଇ ବସିଛନ୍ତି ବୋଲି ତାଙ୍କର ହୋସ୍ ନ ଥାଏ ! କେବଳ ଉଦ୍‌ବିଗ୍ନ ଚିତ୍ତରେ ଭାବୁଛନ୍ତି—'ବାରିଷ୍ଟରଙ୍କୁ ଯେଉଁ ପାଉଣା ପଠାଇଛି ତାହା ଠିକ୍ ସମୟରେ ତାଙ୍କ ପାଖରେ ପହଞ୍ଚିଲା କି ନାହିଁ ଖବର ପାଇଲି ନାହିଁ, ମକଦ୍ଦମା ସମୟରେ ସେ ଯଦି ଉପସ୍ଥିତ ନ ହୁଅନ୍ତି ତେବେ ତ ବିପଦ ଇତ୍ୟାଦି । ତେଣୁ ଯୋଗକୁ ଏପରି ଦିନ ଯଦି ଆସେ— ଯାହାକି ଅସମ୍ଭବ ନୁହେଁ —ତାହେଲେ ସେଦିନ ଭଗବାନଙ୍କୁ ସ୍ମରଣ-ମନନ କରିବାକୁ ତ ନିଶ୍ଚୟ ଭୁଲିଯିବେ ! ହାୟ ହାୟ, ଠାକୁରେ ଏତେ ସହଜ କାମ କରିବାକୁ କହୁଛନ୍ତି, ଅଥଚ ସେ 'କରିବି' କହିପାରୁ ନାହାଁନ୍ତି ! ଗିରିଶ ବିଷମ ସମସ୍ୟାରେ ପଡ଼ି ସ୍ଥିର, ନୀରବ ରହିଲେ, ଆଉ ତାଙ୍କର ପ୍ରାଣ ମଧ୍ୟରେ ଯେପରି ଏକ ଚିନ୍ତା, ଭୟ ଓ ନୈରାଶ୍ୟର ଝଡ଼ ବହିବାକୁ ଲାଗିଲା । ଠାକୁର ଗିରିଶଙ୍କ ଆଡ଼କୁ ଆଉଥରେ ଚାହିଁ ହସି ହସି ଏଥର କହିଲେ—''ତୁ କହିବୁ, 'ତା ମଧ୍ୟ ଯଦି ନ ପାରିବି'—ଆଚ୍ଛା, ତେବେ ମୋତେ ଓକାଲତନାମା[୧] ଦେ ।'' ଠାକୁରଙ୍କର ସେତେବେଳେ ଅର୍ଦ୍ଧବାହ୍ୟଦଶା !

**ଓକାଲତନାମା ଦେବା ପରେ ଗିରିଶଙ୍କର ମନର ଅବସ୍ଥା :**

କଥାଟି ମନମୁତାବକ ହେଲା । ଗିରିଶଙ୍କ ପ୍ରାଣ ଥଣ୍ଡା ହେଲା । କେବଳ ଥଣ୍ଡା ହେଲା ତା ନୁହେଁ, ଠାକୁରଙ୍କର ଅପାର କରୁଣା କଥା ଭାବି ତାଙ୍କ ଉପରେ ଭଲ ପାଇବା ଓ ବିଶ୍ୱାସ ଏକାବେଳକେ ଅନନ୍ତଧାରାରେ ଉଚ୍ଛୁଳି ଉଠିଲା । ଗିରିଶ ଭାବିଲେ, ଯାହାହେଉ—ନିୟମବନ୍ଧନଗୁଡ଼ିକୁ ବାଘ ମନେ ହୁଏ, ତାଭିତରେ ଆଉ ପଡ଼ିବାକୁ ହେଲା ନାହିଁ । ଏଣିକି ଯାହା ହିଁ କରେନା କାହିଁକି ମନରେ ଦୃଢ଼ ବିଶ୍ୱାସ କଲେ ହେଲା ଯେ, ଠାକୁର ତାଙ୍କର ଅସୀମ ଦିବ୍ୟଶକ୍ତି ବଳରେ କୌଣସି ନା କୌଣସି ଉପାୟରେ ତାଙ୍କୁ ଉଦ୍ଧାର କରିବେ ।'

---

୧. ଅର୍ଥାତ୍ ଭାର ଦେ । ବିଷୟକର୍ମରେ ଜଣେବ୍ୟକ୍ତି ତାଙ୍କର ହୋଇ କାମ କରିବାର କ୍ଷମତା ବା ଅଧିକାର ଅନ୍ୟ କାହାକୁ ଦେଲେ ସେ ବ୍ୟକ୍ତି ତାହାର ହୋଇ ସମସ୍ତ ଦିଆ-ନିଆ କରନ୍ତି, ରସିଦ ଚିଠିପତ୍ର ଲେଖି ଏବଂ ତାଙ୍କର ନାମରେ ସେ ସମସ୍ତ ଦସ୍ତଖତ କରି ନିମ୍ନରେ 'ଓ (ଓକାଲତନାମା ପ୍ରାପ୍ତ)'—ଅମୁକ ବୋଲି ନିଜର ନାମ ଲେଖନ୍ତି ।

## ଓକାଲତନାମା ଭଲପାଇବାର ବନ୍ଧନ :

ଶ୍ରୀଯୁକ୍ତ ଗିରିଶ ସେତେବେଳେ ଓକାଲତନାମା ବା ଠାକୁରଙ୍କ ଉପରେ ସମସ୍ତ ଭାର ଦେବାର ଏହି ଅର୍ଥ ବୁଝିଲେ ଯେ, ତାଙ୍କୁ ନିଜେ ଚେଷ୍ଟା ବା ସାଧନ-ଭଜନ କରି କୌଣସି ବିଷୟ ଛାଡ଼ିବାକୁ ହେବ ନାହିଁ; ଠାକୁରେ ହିଁ ତାଙ୍କର ମନରୁ ସମସ୍ତ ବିଷୟ ନିଜର ଶକ୍ତି ବଳରେ ଛଡ଼ାଇ ନେବେ । କିନ୍ତୁ ନିୟମର ବନ୍ଧନ ବେକରେ ପକାଇବା ଅସହ୍ୟ ବୋଧ କରି ତା' ପରିବର୍ତ୍ତେ ଯେ ପୁଣି ତଦପେକ୍ଷା ଶତଗୁଣ ଅଧିକ ଭଲପାଇବାର ବନ୍ଧନ ସ୍ୱେଚ୍ଛାରେ ବେକରେ ପକାଇଲେ ତାହା ସେତେବେଳେ ବୁଝିପାରିଲେ ନାହିଁ । ଭଲ ବା ମନ୍ଦ ଯେଉଁ ଅବସ୍ଥାରେ ପଡ଼ନ୍ତୁ ନା କାହିଁକି, ଯଶ ଅପଯଶ ଯାହା ହିଁ ଆସୁ ନା କାହିଁକି, ଦୁଃଖ-କଷ୍ଟ ଯେତେ ହିଁ ଉପସ୍ଥିତ ହେଉ ନା କାହିଁକି, ନିଃଶବ୍ଦରେ ତାହା ସହ୍ୟ କରିବା ଛଡ଼ା ତା ବିରୁଦ୍ଧରେ ତାଙ୍କର ଯେ କହିବାର ବା କରିବାର କିଛି ହିଁ ରହିଲା ନାହିଁ, ସେକଥା ସେତେବେଳେ ସୂକ୍ଷ୍ମ ଦୃଷ୍ଟିରେ ଦେଖିଲେ ନାହିଁ; ଦେଖିବାର ଶକ୍ତି ମଧ୍ୟ ହେଲା ନାହିଁ । ଅନ୍ୟ ସମସ୍ତ ଚିନ୍ତା ମନରୁ ଦୂରେଇ ଦେଇ କେବଳ ଶ୍ରୀରାମକୃଷ୍ଣଙ୍କର ଅପାର କରୁଣା ଦେଖିବାକୁ ଲାଗିଲେ ! ତାହା ସହିତ ଶ୍ରୀରାମକୃଷ୍ଣଙ୍କୁ ଆଧାର କରି ତାଙ୍କ ହୃଦୟରେ ଶତଗୁଣ ଅହଂକାର ଜାଗ୍ରତ ହେଲା । ମନେହେଲା—'ସଂସାରରେ ଯିଏ ଯାହା କହୁ, ଯେତେ ହିଁ ଘୃଣା କରୁ, ଇଏ ତ ସବୁ ସମୟରେ ସକଳ ଅବସ୍ଥାରେ ମୋର— ତେବେ ଆଉ ଚିନ୍ତା କ'ଣ ? କାହାକୁ ଡରିବି ?' ଭକ୍ତିଶାସ୍ତ୍ର[୧] ଏହି ଅହଙ୍କାରକୁ ଯେ ସାଧନ ମଧ୍ୟରେ ଗଣ୍ୟ କରନ୍ତି ଏବଂ ମାନବର ବହୁଭାଗ୍ୟରେ ଏହା ଆସେ ବୋଲି କହନ୍ତି ତାହା ସେତେବେଳେ ସେ କିପରି ଜାଣିବେ ? ଯାହାହେଉ ଶ୍ରୀଯୁକ୍ତ ଗିରିଶ ଏବେ ନିଶ୍ଚିନ୍ତ ଏବଂ ତାଙ୍କର ଖାଇବାବେଳେ, ଶୋଇବାବେଳେ ବସିବାବେଳେ ସେହି ଗୋଟିଏ ଚିନ୍ତା—'ଶ୍ରୀରାମକୃଷ୍ଣ ମୋର ସମ୍ପୂର୍ଣ୍ଣ ଭାର ନେଇଛନ୍ତି'— ସର୍ବଦା ଏକଥା ମନରେ ରହି ତାଙ୍କୁ ଯେ ଠାକୁରଙ୍କ ଧ୍ୟାନ କରାଇ ନେଉଛି ଏବଂ ତାଙ୍କର ସମସ୍ତ କର୍ମ ଓ ମନୋଭାବ ଉପରେ ଏକ ପ୍ରକାର ଛାପ ପକାଇ ଆଧିପତ୍ୟ ବିସ୍ତାର କରି ତାଙ୍କଠାରେ ଆମୁଳପରିବର୍ତ୍ତନ ଆଣିଦେଉଛି, ତାହା ନ ବୁଝିପାରିଲେ ମଧ୍ୟ ସେ ସୁଖୀ—କାରଣ ସେ (ଶ୍ରୀରାମକୃଷ୍ଣଦେବ) ଯେ ତାଙ୍କୁ ଭଲପାନ୍ତି ଏବଂ ଆପଣାଠାରୁ ମଧ୍ୟ ଆପଣାର !

## ଏହାପରେ ଗିରିଶଙ୍କର ଶିକ୍ଷା :

ଠାକୁର ସର୍ବଦା ଶିକ୍ଷା ଦେଇଛନ୍ତି, 'କଦାପି କାହାର ଭାବ ନଷ୍ଟ କରିବା ଉଚିତ୍ ନୁହେଁ ଏବଂ ପ୍ରତ୍ୟେକ ଭକ୍ତଙ୍କ ସହିତ ସେ ଏପରି ବ୍ୟବହାର ସର୍ବଦା କରୁଥିଲେ । ଶ୍ରୀଯୁକ୍ତ ଗିରିଶଙ୍କୁ ପୂର୍ବୋକ୍ତ ଭାବ ଦେଇ ଏବେଠାରୁ ଏହି ଭାବର

---

୧. ନାରଦଭକ୍ତିସୂତ୍ର ।

ଉପଯୋଗୀ ଶିକ୍ଷା ମଧ୍ୟ ତାଙ୍କୁ ଦେବାକୁ ଲାଗିଲେ । ଦିନେ ଶ୍ରୀଯୁକ୍ତ ଗିରିଶ ଠାକୁରଙ୍କ ସମ୍ମୁଖରେ କୌଣସି ଏକ ସାମାନ୍ୟ ବିଷୟରେ 'ମୁଁ କରିବି' କହିବାରୁ ଠାକୁର କହି ଉଠିଲେ, ''ଆହେ ଏ କ'ଣ ? ଏପରି ଭାବରେ 'ମୁଁ କରିବି' ବୋଲି କହିଲ କାହିଁକି ? ଯଦି ନ କରିପାର ? କହିବ—ଈଶ୍ୱରଙ୍କର ଇଚ୍ଛା ହେଲେ କରିବି ।'' ଗିରିଶ ମଧ୍ୟ ବୁଝିଲେ 'ଠିକ୍ କଥା; ମୁଁ ଯେତେବେଳେ ଭଗବାନଙ୍କ ଉପରେ ସମସ୍ତ ବିଷୟରେ ସମ୍ପୂର୍ଣ୍ଣ ଭାର ଅର୍ପଣ କରିଛି ଏବଂ ସେ ମଧ୍ୟ ସେହି ଭାର ଗ୍ରହଣ କରିଛନ୍ତି, ତେବେ ସେ ଯଦି ଏକାର୍ଯ୍ୟ ମୋ ଦ୍ୱାରା କରାହେବା ଉଚିତ ବା ମଙ୍ଗଳକର ବୋଲି କରିବାକୁ ଦିଅନ୍ତି ତେବେ ହିଁ ତ' କରିପାରିବି ?' ଏପରି ବୁଝି ସେବେଠାରୁ ମୁଁ କରିବି, ଯିବି ଇତ୍ୟାଦି କହିବା ଓ ଭାବିବାଗୁଡ଼ିକ ତ୍ୟାଗ କରିବାକୁ ଲାଗିଲେ ।

**ଗିରିଶଙ୍କ ଠାକୁରଙ୍କୁ ଓକାଲତନାମା ଦେବାର ଗୂଢ଼ ଅର୍ଥବୋଧ :**

ଏହିପରି ଦିନ ପରେ ଦିନ ବିତିବାକୁ ଲାଗିଲା । କ୍ରମେ ଠାକୁରଙ୍କର ଅଦର୍ଶନ ହେଲା; ସ୍ତ୍ରୀ-ପୁତ୍ରାଦିଙ୍କ ବିୟୋଗ ଆଦି ନାନାପ୍ରକାର ଦୁଃଖ କଷ୍ଟ ଆସି ଉପସ୍ଥିତ ହେଲା; ତାଙ୍କର ମନ ପୂର୍ବପରି ପ୍ରତି କଥାରେ କହିବାକୁ ଲାଗିଲା— 'ସେ (ଶ୍ରୀରାମକୃଷ୍ଣଦେବ) ଏପରି ହେବା ତୋ ପକ୍ଷରେ ମଙ୍ଗଳକର ବୋଲି ହିଁ ସେହି ସକଳ ହେବାକୁ ଦେଉଛନ୍ତି ।' ତୁ ତାଙ୍କ ଉପରେ ସମସ୍ତଭାର ଅର୍ପଣ କରିଛୁ, ସେ ମଧ୍ୟ ତାହା ଗ୍ରହଣ କରିଛନ୍ତି; ତେବେ, କେଉଁ ପଥ ଦେଇ ସେ ତୋତେ ନେଇଯିବେ, ତାହା ତ ତୋତେ ଲେଖାପଢ଼ା କରି କହିନାହାନ୍ତି ? ସେ ଏହି ପଥ ହିଁ ତୋ ପକ୍ଷରେ ସହଜ ବୁଝି, ସେହିପଥରେ ନେଉଛନ୍ତି, ସେଥିରେ ତୋର 'ନା' କହିବା ବା ବିରକ୍ତ ହେବାର ତ କଥା ନୁହେଁ । ତେବେ କ'ଣ ତାଙ୍କ ଉପରେ ଭାର ଦେବାଟା ଗୋଟିଏ ମୁହଁର କଥା ବୋଲି କହିଥିଲି ?' ଇତ୍ୟାଦି । ଏପରି ଭାବରେ ଯେତେଦିନ ଗଡ଼ି ଚାଲିଲା, ସେତେ ହିଁ ଗିରିଶଙ୍କ ତାଙ୍କ ଉପରେ ଭାର ଦେବାର ଗୁଢ଼ ଅର୍ଥ ହୃଦୟଙ୍ଗମ ହେବାକୁ ଲାଗିଲା । ଏବେ ମଧ୍ୟ କ'ଣ ତା'ର ସମ୍ପୂର୍ଣ୍ଣ ଅର୍ଥ ବୁଝିହୋଇଛି ? ଶ୍ରୀଯୁକ୍ତ ଗିରିଶକୁ ପଚାରିଲେ ସେ କହନ୍ତି, ''ଏବେ ମଧ୍ୟ ଢେର୍ ବାକି ଅଛି ! ଓକାଲତନାମା ଦେବା ଭିତରେ ଯେ ଏତେ କଥା ଅଛି ସେତେବେଳେ କ'ଣ ତାହା ବୁଝିଛି ! ଏବେ ଦେଖୁଛି ଯେ ସାଧନ-ଭଜନ-ଜପ-ତପରୂପକ କାର୍ଯ୍ୟର ଗୋଟିଏ ସମୟରେ ଅନ୍ତ ଅଛି, କିନ୍ତୁ ଯେ ଓକାଲତନାମା ଦେଇଛି ତାହାର କାର୍ଯ୍ୟର ଆଉ ଅନ୍ତ ନାହିଁ—ତାଙ୍କୁ ପ୍ରତିପଦରେ, ପ୍ରତି ନିଃଶ୍ୱାସରେ ଦେଖିବାକୁ ହୁଏ ତାଙ୍କ (ଭଗବାନଙ୍କ)ଉପରେ ଭାର ରଖି ତାଙ୍କ ବଳରେ ପାଦଟି, ନିଃଶ୍ୱାସଟି ପକାଇଲି, ନା ଏହି 'ମୁଁ'ଟାର ବଳରେ ତାହା କଲି !''

## କେବଳ ଅବତାର ହିଁ ଓକାଲତନାମା ନେଇପାରନ୍ତି, ସେହି ବିଷୟକ ଦୃଷ୍ଟାନ୍ତ :

ଏହି ଚୁକ୍ତି ପ୍ରସଙ୍ଗରେ ନାନାପ୍ରକାର କଥା ମନରେ ଉଦୟ ହେଉଛି । ଜଗତର ଇତିହାସରେ ଦେଖିବାକୁ ମିଳେ ଭଗବାନ ଯୀଶୁ, ଚୈତନ୍ୟ ପ୍ରଭୃତି ମହାପୁରୁଷଗଣ ହିଁ କେବେ କେବେ କାହାକୁ ସେହିପରି ଅଭୟ ଦେଇଛନ୍ତି । ସାଧାରଣ ଗୁରୁଙ୍କର ଏପରି କରିବାର ସାମର୍ଥ୍ୟ ବା ଅଧିକାର ନାହିଁ । ସାଧାରଣ ଗୁରୁ ବା ସାଧୁମାନେ ମନ୍ତ୍ର-ତନ୍ତ୍ର ବା କ୍ରିୟାବିଶେଷ, ଯାହାଦ୍ୱାରା ସେମାନେ ନିଜେ ଆଧ୍ୟାତ୍ମିକ ଉନ୍ନତି ଲାଭ କରିଛନ୍ତି, ସେସବୁ କେବଳ ଅନ୍ୟକୁ କହିଦେଇପାରନ୍ତି । ଅଥବା ପବିତ୍ରଭାବରେ ନିଜେ ଜୀବନଯାପନ କରି, ଲୋକଙ୍କୁ ପବିତ୍ରତା ଦିଗରେ ଆକୃଷ୍ଟ କରିପାରନ୍ତି । କିନ୍ତୁ ନାନା ବନ୍ଧନରେ ବାନ୍ଧିହୋଇ ମନୁଷ୍ୟ ଯେତେବେଳେ ଅସହାୟ ହୋଇପଡ଼େ, ଯେତେବେଳେ 'ଏପରି କର' ବୋଲି କହିଲେ ସେ ହତାଶ ହୋଇ କହିଉଠେ, 'କରିବି କିପରି ? କରିବାର ଶକ୍ତି ଦେଲେ ତ କରିବି', ସେତେବେଳେ ତାହାକୁ ସାହାଯ୍ୟ କରିବା ସାଧାରଣ ଗୁରୁଙ୍କର ସାଧ୍ୟାତୀତ । 'ତୁମର ଦୁଷ୍କୃତିର ସମସ୍ତ ଭାର ନେଲି, ମୁଁ ହିଁ ତୋ'ର ହୋଇ ସେହି ସମସ୍ତର ଫଳ ଭୋଗ କରିବି'—ଏକଥା ସାଧାରଣ ମାନବ କହିବା ଓ ତଦ୍ରୂପ କରିବା ସାଧ୍ୟାତୀତ । ମାନବହୃଦୟରେ ଧର୍ମର ଏହିପରି ଗ୍ଲାନି ଉପସ୍ଥିତ ହେଲେ ହିଁ କୃପା କରି ଶ୍ରୀଭଗବାନ ଅବତୀର୍ଣ୍ଣ ହୋଇଥାଆନ୍ତି ଏବଂ ତାର ହୋଇ ଫଳଭୋଗ କରି ତାକୁ ସେହି ବନ୍ଧନର ଆବର୍ତ୍ତରୁ ଉଦ୍ଧାର କରନ୍ତି । କିନ୍ତୁ ସେପରି କଲେ ମଧ୍ୟ ସେ ତାକୁ ସମ୍ପୂର୍ଣ୍ଣ ଛାଡ଼ି ଦିଅନ୍ତି ନାହିଁ । ଶିକ୍ଷା ନିମନ୍ତେ ତା ମାଧ୍ୟମରେ କିଛି ନା କିଛି କରାଇ ନିଅନ୍ତି । ଠାକୁର ଯେପରି କହୁଥିଲେ—"ସେମାନଙ୍କର (ଅବତାରପୁରୁଷମାନଙ୍କର) କୃପାରେ ମନୁଷ୍ୟର ଦଶ ଜନ୍ମର ଭୋଗ ଗୋଟିଏ ଜନ୍ମରେ ହୋଇଯାଏ ।" ବ୍ୟକ୍ତି ସମ୍ବନ୍ଧରେ ଯେପରି, ଜାତି ସମ୍ବନ୍ଧରେ ମଧ୍ୟ ଏହା ସେହିପରି ସତ୍ୟ । ଏହା ହିଁ ଗୀତାରେ—ବିଶ୍ୱରୂପଦର୍ଶନ ନିମିତ୍ତ ଅର୍ଜୁନଙ୍କ ଦିବ୍ୟଚକ୍ଷୁଲାଭ ବୋଲି, ପୁରାଣରେ—ଶ୍ରୀଭଗବାନଙ୍କର କୃପାଲାଭ ବୋଲି, ବୈଷ୍ଣବ ଶାସ୍ତ୍ରରେ—ଜଗାଇ-ମାଧାଇର ଉଦ୍ଧାରସାଧନ ବା ପାଷଣ୍ଡଦଳନ ବୋଲି, ଏବଂ ଖ୍ରୀଷ୍ଟିୟାନ ଧର୍ମରେ—ଈଶାଙ୍କର ଅନ୍ୟର ଭୋଗ ନିଜ କାନ୍ଧରେ ନେଇ ଭଗବାନଙ୍କର କୋପଶମନ କରିବା (Atonement) ବୋଲି ନିର୍ଦ୍ଦିଷ୍ଟ ହୋଇଛି । ଶ୍ରୀରାମକୃଷ୍ଣଙ୍କ ଜୀବନରେ ଯଦି ଏହାର ଆଭାସ ପାଇ ନ ଥାଆନ୍ତୁ, ତାହାହେଲେ ଏକଥା ଯେ ସତ୍ୟ ତାହା କେବେହେଲେ ବୁଝିପାରି ନ ଥାନ୍ତୁ ।

### ଓକାଲତନାମା ସମ୍ବନ୍ଧରେ ଠାକୁରଙ୍କର ଦର୍ଶନ :

କଲିକତାର ଶ୍ୟାମପୁକୁରଠାରେ ଗଳାରୋଗର ଚିକିତ୍ସା ନିମିତ୍ତ ଆସି ଠାକୁର ଯେତେବେଳେ ରହିଥିଲେ, ସେତେବେଳେ ଦିନେ ଦେଖିଥିଲେ—ତାଙ୍କର ନିଜର ସୂକ୍ଷ୍ମଶରୀର ସ୍ଥୂଳ ଶରୀରରୁ ବାହାରି ବାହାରେ ବୁଲୁଛି ! ଠାକୁର କହିଥିଲେ, ''ଦେଖିଲି ତା'ର ପିଠିସାରା ଘା' ହୋଇଅଛି ! ଭାବିଲି କାହିଁକି ଏପରି ହେଲା ? ସେଥିରେ ମା' ଦେଖାଇ ଦେଲେ—ଯାହା ତାହା କରି ଆସିଥିବା ଲୋକମାନେ ଛୁଅନ୍ତି, ଆଉ ତାଙ୍କର ଦୁର୍ଦ୍ଦଶା ଦେଖି ମନରେ ଦୟା ହୁଏ—ସେହି ସମସ୍ତ (ଦୁଷ୍କର୍ମର ଫଳ) ନେବାକୁ ପଡ଼େ ! ସେହି ସବୁ ଗ୍ରହଣ କରି ଏପରି ହୋଇଅଛି । ସେଥିପାଇଁ ତ' ନିଜର (ଗଳା ଦେଖାଇ) ଏହା ହୋଇଅଛି; ନ ହେଲେ ଏଶରୀର କେବେ କିଛି ଅନ୍ୟାୟ କରି ନାହିଁ—ଏତେ (ରୋଗ) ଭୋଗ କାହିଁକି ?'' ଆମେ ଶୁଣି ଅବାକ୍ ! ଭାବିବାକୁ ଲାଗିଲୁ—ବାସ୍ତବିକ ତା'ହେଲେ କ'ଣ ଜଣେ ଅନ୍ୟର କୃତକର୍ମର ଫଳଭୋଗ କରି ତାକୁ ଧର୍ମପଥରେ ଅଗ୍ରସର କରି ଦେଇପାରେ ? ଅନେକେ ସେତେବେଳେ ଠାକୁରଙ୍କର ସେହି କଥା ଶୁଣି ତାଙ୍କୁ ଭଲ ପାଉଥିବାରୁ ଭାବିଥିଲେ—'ହାୟ ହାୟ, କାହିଁକି ଆମେମାନେ ଠାକୁରଙ୍କୁ ମିଥ୍ୟା-ପ୍ରବଞ୍ଚନାଦି ନାନା ଦୁଷ୍କର୍ମ କରି ଆସି ଛୁଇଁଲୁ ! ଆମ ପାଇଁ ତାଙ୍କର ଏତେ ଭୋଗ, ଏତେ କଷ୍ଟ । ଆଉ କେବେହେଲେ ଠାକୁରଙ୍କର ଦେବଶରୀର ସ୍ପର୍ଶ କରିବୁ ନାହିଁ ।'

### ଠାକୁରଙ୍କର ଧବଳକୁଷ୍ଠ ଆରୋଗ୍ୟ କରିବା :

ଏହା ସମ୍ବନ୍ଧରେ ଠାକୁରଙ୍କର ଅନ୍ୟ ଗୋଟିଏ କଥା ଏଠାରେ ମନେ ପଡୁଛି । ଥରେ ଜଣେ କୁଷ୍ଠ ରୋଗାକ୍ରାନ୍ତ (ଧବଳ ବା ଶ୍ୱେତକୁଷ୍ଠ) ବ୍ୟକ୍ତି ଆସି ଠାକୁରଙ୍କୁ କାତର ହୋଇ କହିଲା ଯେ, ସେ ଥରେ ତା ଦେହରେ ହାତ ବୁଲାଇ ଦେଲେ ହିଁ ତାହାର ଏରୋଗରୁ ନିଷ୍କୃତି ମିଳିବ । ଠାକୁର ତା ପ୍ରତି କୃପାପରବଶ ହୋଇ କହିଲେ, ''ମୁଁ ତ କିଛି ଜାଣେ ନାହିଁ, ବାବୁ; ଆଚ୍ଛା, ତେବେ ତୁମେ ଯଦି କହୁଛ, ହାତ ବୁଲାଇ ଦେଉଛି । ମା'ଙ୍କର ଯଦି ଇଚ୍ଛା ହୁଏ ତ ଭଲ ହୋଇଯିବ ।''—ଏହା କହି ତା ଦେହରେ ହାତ ବୁଲାଇ ଦେଲେ । ସେ ଦିନସାରା ଠାକୁରଙ୍କର ହାତରେ ଏପରି ଯନ୍ତ୍ରଣା ହେଲା ଯେ, ସେ ଅସ୍ଥିର ହୋଇ ଜଗଦମ୍ବାଙ୍କୁ କହିଲେ, ''ମା' ମୁଁ ଆଉ କେବେ ଏପରି କାମ କରିବି ନାହିଁ ।'' ଠାକୁର କହୁଥିଲେ, ''ତା'ର ରୋଗ ଭଲ ହୋଇଗଲା—କିନ୍ତୁ ତା'ର ଭୋଗଟା (ନିଜର ଦେହ ଦେଖାଇ) ଏହା ଉପର ଦେଇ ଗଲା ।'' ଠାକୁରଙ୍କ ଜୀବନର ଏସମସ୍ତ ଘଟଣାରୁ ମନେହୁଏ, ବେଦ, ବାଇବେଲ, କୋରାନ, ପୁରାଣ, ତନ୍ତ୍ର-ମନ୍ତ୍ର ପ୍ରଭୃତି ଆଧ୍ୟାତ୍ମିକ ଶାସ୍ତ୍ରସମୂହ ଶ୍ରୀରାମକୃଷ୍ଣଙ୍କର ଜୀବନାଲୋକ-ସହାୟରେ ବୁଝିଲେ ଏଯୁଗରେ ଅତି ସହଜରେ

ବୁଝିହୁଏ । ଠାକୁର ମଧ୍ୟ ଆମକୁ କହିଛନ୍ତି—"ଆରେ, ନବାବୀ ଅମଳର ଟଙ୍କା ବାଦଶାହୀ ଅମଳରେ ଚଳେ ନାହିଁ !"

### ଓକାଲତନାମା ଦେବା ସହଜ ନୁହେଁ :

ଆପାତଦୃଷ୍ଟିରେ ମନେହୁଏ, ଓକାଲତନାମା ଦେବା ଖୁବ୍ ସହଜ କଥା—ଦେଲେ ହିଁ ହେଲା ଆଉ କ'ଣ । ମଣିଷ ପ୍ରବୃତ୍ତିର ଦାସ, ଧର୍ମକର୍ମ କରିବାକୁ ଆସି ମଧ୍ୟ କେବଳ ସୁବିଧା ଖୋଜେ—କିପରି ଏପାଖ-ସେପାଖ, ସଂସାରସୁଖ ଓ ଭଗବଦାନନ୍ଦ, ଉଭୟ ପାଇପାରିବ ତାହା ହିଁ କେବଳ ଦେଖେ । ସଂସାରର ଭୋଗସୁଖଗୁଡ଼ିକ ଏତେ ମଧୁର, ଏତେ ଅମୃତୋପମ ବୋଲି ବୋଧ କରେ ଯେ, ସେଗୁଡ଼ିକୁ ଛାଡ଼ିବାର କଥା ମନରେ ଆସିଲେ ହିଁ ଦଶଦିଗ ଶୂନ୍ୟ ଦେଖେ, ମନେକରେ ତାହେଲେ କ'ଣ ନେଇ ରହିବି । ସେଥିପାଇଁ ଆଧ୍ୟାତ୍ମିକ ଜଗତରେ ଓକାଲତନାମା ଦେବା କଥା ଶୁଣି ସେ ଡେଇଁ ଉଠେ । ମନେ କରେ, ତେବେ ଆଉ କ'ଣ ? ମୁଁ ଚୋରି, ଠକାମି ଇତ୍ୟାଦି ଯାହାଇଚ୍ଛା ତାହାକରି ସଂସାରରେ ସୁଖଭୋଗ କରେ ଏବଂ ଶ୍ରୀଚୈତନ୍ୟ, ଯୀଶୁ ବା ଶ୍ରୀରାମକୃଷ୍ଣ, ମୁଁ ପରକାଳରେ ଯେପରି ସୁଖୀ ହୋଇପାରେ, ତାହା ଦେଖନ୍ତୁ; କାରଣ ଦିନେ ନା ଦିନେ ତ ମରିବାକୁ ହେବ । ସେ ବୁଝେ ନାହିଁ ଯେ ତାହା ଆଉ କିଛି ନୁହେଁ, କେବଳ ଦୁଷ୍ଟ ମନର ଜୁଆଚୋରି—ବୁଝେ ନାହିଁ ଯେ ସେହିଭାବରେ ସେ ନିରନ୍ତର ନିଜକୁ ନିଜେ ହିଁ ଠକାଉଛି । ବୁଝେ ନାହିଁ ଯେ, ଏହା ଆଉ କିଛି ନୁହେଁ, କେବଳ ନିଜର ଦୁଷ୍କୃତିସମୂହର ଭୀଷଣ ମୂର୍ତ୍ତି ଦେଖିବାକୁ ହେବ ବୋଲି ସ୍ୱଇଚ୍ଛାରେ ଆଖିରେ ଅନ୍ଧପୁଟୁଳି ବାନ୍ଧି ସର୍ବନାଶ ଆଡ଼କୁ ଅଗ୍ରସର ହେବା—ବୁଝେ ନାହିଁ ଯେ ଏହି ଅନ୍ଧପୁଟୁଳିକୁ ଦିନେ କେହି ଜଣେ ଜୋର୍ କରି ଖୋଲି ଦେବ ଏବଂ ସେ ଅକୂଳ ପାରାବାର ଦେଖିବ—ଦେଖିବ ଜୁଆଚୋରର ଓକାଲତନାମା କେହି ନେଇ ନାହାନ୍ତି ! ହାୟ ମାନବ ! କେତେ ପ୍ରକାରରେ ତୁମେ ନିଜକୁ ନିଜେ ଠକାଉଛ ଓ ମନେ କରୁଛ ଯେ, 'ଜିତି ଗଲି !' ଧନ୍ୟ ମହାମାୟା ! ତୁମେ କି ଭେଲିକି ଯେ ମାନବ ମନରେ ଲଗାଇଛ ! ଶ୍ରୀରାମପ୍ରସାଦ ତାଙ୍କର ସ୍ୱରଚିତ ଗୀତରେ ତୁମକୁ ସମ୍ବୋଧନ କରି ଯାହା କହିଛନ୍ତି ତାହା ବାସ୍ତବିକ ସମ୍ପୂର୍ଣ୍ଣ ସତ୍ୟ—

"ସାବାସ ମା' ଦକ୍ଷିଣାକାଳୀ, ଭୁବନ ଭେଲକି ଲାଗିଯେ ଦିଲି<br>
ତୋର ଭେଲକିର ଗୁଟି ଚରଣ ଦୁଟି ଭବେର ଭାଗ୍ୟେ ଫେଲେ ଦିଲି ।<br>
ଏମନ ବାଜିକରେର ମେୟେ, ରାଖଲି ବାବାରେ ପାଗଲ ସାଜାୟେ<br>
ନିଜେ ଗୁଣମୟୀ ହୟେ ପୁରୁଷ ପ୍ରକୃତି ହଲି ।<br>
ମନେତେ ତାଇ ସନ୍ଦ କରି, ଯେ ଚରଣ ପାୟନି ତ୍ରିପୁରାରି,<br>
ପ୍ରସାଦ ରେ ସେଇ ଚରଣ ପାବି ?—ତୁଇଓ ବୁଝି ପାଗଲ ହଲି !"

[ଗୀତର ଭାବାର୍ଥ ହେଉଛି :—''ମା' ଦକ୍ଷିଣାକାଳୀ, ତୁମେ ଧନ୍ୟ ! ତୁମେ ସଂସାରରୂପୀ ଜାଦୁର ବିସ୍ତାର କରିଛ । ଜାଦୁର ଗୋଟିସ୍ୱରୂପ ତୁମେ ନିଜର ଶ୍ରୀଚରଣ ଦୁଇଟି ସଂସାରରେ ସୌଭାଗ୍ୟ ପାଇଁ ପ୍ରଦାନ କରିଛ । ତୁମେ ଏପରି ଜାଦୁଗରର ଝିଅ ଯେ ବାପାଙ୍କୁ ପାଗଳ କରି ରଖିଛ ଏବଂ ନିଜେ ଗୁଣମୟୀ ହୋଇ ପୁରୁଷ ତଥା ପ୍ରକୃତି ରୂପରେ ପରିଣତ ହୋଇଛ । ତେଣୁ ମୋ ମନରେ ସନ୍ଦେହ ହେଉଛି ଯେ, ତ୍ରିପୁରାରୀ ଯେଉଁ ଚରଣ ପ୍ରାପ୍ତ କରି ନାହାନ୍ତି, ଆରେ ରାମପ୍ରସାଦ (କବି ନିଜକୁ କହୁଛନ୍ତି) ତୁ କ'ଣ ପାଗଳ ହେଲୁ; ସେହି ଚରଣ ତୋତେ କିପରି ପ୍ରାପ୍ତ ହେବ ?]

### କେଉଁ ଅବସ୍ଥାରେ ଓକାଲତନାମା ଦିଆଯାଇପାରେ :

ଓକାଲତନାମା ଚାହିଁଲେ ହିଁ ଦେଇ ହୁଏ ନାହିଁ । ନାନା ଉଦ୍ୟମ ଅଧ୍ୟବସାୟ ଫଳରେ ମନରେ ଓକାଲତନାମା ଦେବା ଅବସ୍ଥା ଆସି ଉପସ୍ଥିତ ହେଲେ, ତେବେ ଯାଇ ମାନବ ତାହା ଠିକ ଠିକ୍ ଦେଇପାରେ; ଏବଂ ସେତେବେଳେ ହିଁ ଶ୍ରୀଭଗବାନ ତାହାର ଭାର ନେଇଥାନ୍ତି । ସୁଖୀ ହେବା ଆଶାରେ ସଂସାରର ନାନାକାର୍ଯ୍ୟରେ ଦଉଡ଼ାଦଉଡ଼ି କରି, ମାନବ ଯେତେବେଳେ ପ୍ରକୃତରେ ଦେଖେ—''ପ୍ରାଣହୀନ ଛାୟା ପଛରେ ସେ ଦୌଡୁଛି'', ସାଧନ-ଭଜନ-ଜପ-ତପ କରି ମାନବ ଯେତେବେଳେ ପ୍ରାଣେ ପ୍ରାଣେ ବୁଝିପାରେ ଯେ ଅନନ୍ତ ଭଗବାନଙ୍କୁ ପାଇବାକୁ ଏହା କଦାପି ଉପଯୁକ୍ତ ମୂଲ୍ୟ ହୋଇପାରେ ନାହିଁ, ଅଦମ୍ୟ ଉଦ୍ୟମରେ ପାହାଡ଼ କାଟି ପଥ କରିନେବି ଭାବି ସମସ୍ତ ବିଷୟରେ ଲାଗି ମାନବ ଯେତେବେଳେ ବୁଝିପାରେ ତା'ର କୌଣସି କ୍ଷମତା ହିଁ ନାହିଁ, ସେତେବେଳେ ସେ 'କିଏ କେଉଁଠି ଅଛ, ରକ୍ଷାକର' ବୋଲି କାତର କଣ୍ଠରେ ଡାକୁଥାଏ ଏବଂ ସେତେବେଳେ ହିଁ ଶ୍ରୀଭଗବାନ ତା'ର ଓକାଲତନାମା ଗ୍ରହଣ କରିଥାଆନ୍ତି ।

### ମନର ଚାଲାକି ପ୍ରତି ସାବଧାନ :

ନତୁବା ସାଧନ ଭଜନ କରିବାକୁ ବା ଶ୍ରୀଭଗବାନଙ୍କୁ ଡାକିବାକୁ ମୋତେ ଭଲ ଲାଗେ ନାହିଁ, ଯଥେଚ୍ଛାଚାର କରିବାକୁ ଭଲ ଲାଗେ, ଅତଏବ ତାହାହିଁ କରିବି, ଓ କେହି ସେହି ବିଷୟରେ ପ୍ରତିବାଦ କଲେ କହିବି—'କାହିଁକି ? ମୁଁ ତ ଭଗବାନଙ୍କୁ ଓକାଲତନାମା ଦେଇଛି ? ସେ ମୋତେ ଏପରି କରାଉଛନ୍ତି, ତେଣୁ ମୁଁ କ'ଣ କରିବି? ମନଟା କାହିଁକି ସେ ଫେରାଇ ଦେଉନାହାନ୍ତି ?'—ଏ ଓକାଲତନାମା କେବଳ ଅନ୍ୟକୁ ଠକିବାର ଏବଂ ନିଜେ ମଧ୍ୟ ଠକାମୀରେ ପଡ଼ିବାର ଓକାଲତନାମା; ସେଥିରେ 'ଇତୋ ନଷ୍ଟସ୍ତତୋ ଭ୍ରଷ୍ଟଃ' ହେବାକୁ ହୁଏ ।

## ଓକାଲତନାମାର ଶେଷକଥା :

ଅନ୍ୟ ଏକ ଦିଗରୁ କଥାଟିର ଆଲୋଚନା କଲେ ଆହୁରି ପରିଷ୍କାର ବୁଝି ହେବ । ଆଚ୍ଛା ବୁଝାଗଲା — ତୁମେ ଓକାଲତନାମା ଦେଇଛ, ତୁମର ଶ୍ରୀଭଗବାନଙ୍କୁ ଡାକିବାର ବା ସାଧନ-ଭଜନ କରିବାର କୌଣସି ଆବଶ୍ୟକତା ନାହିଁ । କିନ୍ତୁ ଠିକ୍ ଠିକ୍ ଓକାଲତନାମା ଦେଲେ ତୁମର ପ୍ରାଣେ ପ୍ରାଣେ ସର୍ବକ୍ଷଣ ତାଙ୍କର କରୁଣାର କଥା ଉଦୟ ହେବ ହିଁ ହେବ — ମନେହେବ ଯେ, ଏହି ଅପାର ସଂସାରସମୁଦ୍ରରେ ପଡ଼ି ଏତେଦିନ ଉବୁଟୁବୁ ହେଉଥିଲି, ଆହା, ସେ ମୋତେ କୃପା କରି ଉଦ୍ଧାର କରିଅଛନ୍ତି ! କହିଲ ଦେଖି, ଏପରି ଅନୁଭବରେ ତାଙ୍କ ପ୍ରତି ତୁମର କେତେଟା ଭକ୍ତି ତଥା ଭଲପାଇବାର ଭାବ ଉଦୟ ହେବ ! ତୁମର ହୃଦୟ ତାଙ୍କ ପ୍ରତି କୃତଜ୍ଞତା ଓ ଭଲପାଇବାରେ ପୂର୍ଣ୍ଣ ହୋଇ ସର୍ବକ୍ଷଣ ହିଁ ଯେ ତାଙ୍କର କଥା ଭାବୁଥିବ ଓ ତାଙ୍କର ନାମ ନେଉଥିବ — ଏହା କରିବାକୁ ତୁମକୁ ଆଉ କେହି କହିବା ଦରକାର ହେବ ନାହିଁ । ସର୍ପ ସଦୃଶ କ୍ରୁର ପ୍ରାଣୀ ମଧ୍ୟ ଆଶ୍ରୟଦାତାଙ୍କ ପ୍ରତି କୃତଜ୍ଞ ହୋଇ ବାସ୍ତୁସାପ ହୋଇଥାଏ ଓ ଗୃହର କାହାକୁ ଦଂଶନ କରେ ନାହିଁ । ତୁମର ହୃଦୟ କ'ଣ ଏହାଠାରୁ ମଧ୍ୟ ନୀଚ ଯେ, ଯିଏ ତୁମର ଇହକାଳ ଓ ପରକାଳର ଭାର ଗ୍ରହଣ କଲେ, ତଥାପି ତାଙ୍କ ପ୍ରତି କୃତଜ୍ଞତା ଓ ଭଲପାଇବାରେ ପୂର୍ଣ୍ଣ ହେଲା ନାହିଁ ? ଅତଏବ ଓକାଲତନାମା ଦେଇ ଯଦି ଦେଖ — ତୁମକୁ ଭଗବାନଙ୍କୁ ଡାକିବାକୁ ଭଲ ଲାଗେ ନାହିଁ, ତାହେଲେ ବୁଝ ତୁମର ଓକାଲତନାମା ଦେବା ହୋଇ ନାହିଁ ଏବଂ ସେ ମଧ୍ୟ ତୁମର ଭାର ଗ୍ରହଣ କରି ନାହାନ୍ତି । 'ଓକାଲତନାମା ଦେଇଛି' ବୋଲି ନିଜକୁ ଆଉ ଠକ ନାହିଁ ଏବଂ ଅପାପବିଦ୍ଧ, ନିଷ୍କଳଙ୍କ ଭଗବାନଙ୍କ ଉପରେ ସ୍ୱକୃତ ଦୁଷ୍କୃତିର କାଳିମା ଅର୍ପଣ କର ନାହିଁ । ଏଥିରେ ନିଜର ସମୂହ କ୍ଷତି ଓ ଅମଙ୍ଗଳ । ଠାକୁରଙ୍କର ଜଣେ 'ବ୍ରାହ୍ମଣର ଗୋହତ୍ୟା' ଗଳ୍ପଟି ମନେ ରଖ !

## ଠାକୁରଙ୍କ ଦ୍ୱାରା କଥିତ ଜଣେ ବ୍ରାହ୍ମଣ ଓ ଗୋହତ୍ୟାର ଗଳ୍ପ :

ଜଣେ ବ୍ରାହ୍ମଣ ଅନେକ ଯତ୍ନ ଓ ପରିଶ୍ରମ କରି ଗୋଟିଏ ସୁନ୍ଦର ବଗିଚା କରିଥିଲା । ନାନା ଜାତିର ଫୁଲଫଳ ଗଛ ଲଗାଇଥିଲା । ସେଗୁଡ଼ିକ ଧୀରେ ଧୀରେ ବଢ଼ି ପରିପୁଷ୍ଟ ହୋଇ ଉଠୁଛି ଦେଖି ବ୍ରାହ୍ମଣର ଆନନ୍ଦର ସୀମା ରହିଲା ନାହିଁ । ଦିନେ ବଗିଚାର ଫାଟକ ଖୋଲା ଥିବାରୁ ଗୋଟିଏ ଗାଈ ଆସି ସେହି ଗଛଗୁଡ଼ିକୁ ମୋଡ଼ି ମାଡ଼ି ଖାଇବାକୁ ଲାଗିଲା । ବ୍ରାହ୍ମଣ ସେତେବେଳେ କାର୍ଯ୍ୟବଶତଃ ଅନ୍ୟ ଆଡ଼େ ଯାଇଥିଲା । ଫେରି ଆସି ଦେଖିଲା ଯେ ଗାଈଟି ଗଛଗୁଡ଼ିକୁ ଖାଇଯାଉଛି । ଅତ୍ୟନ୍ତ କ୍ରୋଧିତ ହୋଇ ତାକୁ ଗୋଡ଼ାଇ ଯେମିତି ଏକ ଠେଙ୍ଗାରେ ମାରିଛି, ସଙ୍ଗେ ସଙ୍ଗେ ମର୍ମସ୍ଥାନରେ ଆଘାତ ପାଇବାରୁ ଗାଈଟି ମରିଗଲା ! ବ୍ରାହ୍ମଣର ପ୍ରାଣରେ ଭୟ ହେଲା — ହିନ୍ଦୁ ହୋଇ ଗୋହତ୍ୟା କଲି ? ଗୋହତ୍ୟା ତୁଲ୍ୟ ଯେ ପାପ

ନାହିଁ ! ବ୍ରାହ୍ମଣ ଟିକିଏ ବେଦାନ୍ତ ପଢ଼ିଥିଲା । ଦେଖିଥିଲା, ସେଥିରେ ଲେଖାଅଛି ଯେ, ବିଶେଷ ବିଶେଷ ଦେବତାଙ୍କ ଶକ୍ତିରେ ଶକ୍ତିମାନ ହୋଇ ମନୁଷ୍ୟର ଇନ୍ଦ୍ରିୟ ସକଳ ସ୍ୱ-ସ୍ୱ କାର୍ଯ୍ୟ କରିଥାଏ । ଯଥା—ସୂର୍ଯ୍ୟଙ୍କ ଶକ୍ତିରେ ଚକ୍ଷୁ ଦେଖେ, ପବନର ଶକ୍ତିରେ କର୍ଣ୍ଣ ଶୁଣେ, ଇନ୍ଦ୍ରଙ୍କ ଶକ୍ତିରେ ହସ୍ତ କାର୍ଯ୍ୟ କରେ, ଇତ୍ୟାଦି । ବ୍ରାହ୍ମଣର ସେହି କଥାଗୁଡ଼ିକ ଏବେ ମନେ ପଡ଼ିବାରୁ ଭାବିଲା—'ତେବେ ତ' ମୁଁ ଗୋହତ୍ୟା କରି ନାହିଁ । ଇନ୍ଦ୍ରଙ୍କ ଶକ୍ତିରେ ହସ୍ତ ଚାଳିତ ହୋଇଅଛି—ଇନ୍ଦ୍ର ହିଁ ତେବେ ଗୋହତ୍ୟା କରିଛନ୍ତି ! କଥାଟି ମନରେ ପକ୍କାକରି ବ୍ରାହ୍ମଣ ନିଶ୍ଚିନ୍ତ ହେଲା ।

ଏଆଡ଼େ ଗୋହତ୍ୟା-ପାପ ବ୍ରାହ୍ମଣର ଶରୀରରେ ପ୍ରବେଶ କରିବାକୁ ଆସିଲା, ମାତ୍ର ବ୍ରାହ୍ମଣର ମନ ତାକୁ ତଡ଼ିଦେଲା । କହିଲା, ''ଯା, ଏଠାରେ ତୁମର ସ୍ଥାନ ନାହିଁ; ଗୋହତ୍ୟା ଇନ୍ଦ୍ର କରିଛନ୍ତି, ତାଙ୍କ ପାଖକୁ ଯାଅ ।'' ତେଣୁ ପାପ ଇନ୍ଦ୍ରଙ୍କୁ ଧରିବାକୁ ଗଲା । ଇନ୍ଦ୍ର ପାପକୁ କହିଲେ, ''ଟିକିଏ ଅପେକ୍ଷା କର, ମୁଁ ଯାଇ ବ୍ରାହ୍ମଣ ସହିତ ଦିପଦ କଥା ହୋଇ ଆସେ, ତାପରେ ମୋତେ ଧରିବ ।''—ଏକଥା କହି ଇନ୍ଦ୍ର ମାନବରୂପ ଧାରଣ କରି ବ୍ରାହ୍ମଣଙ୍କ ବଗିଚାରେ ପ୍ରବେଶ କଲେ ଓ ଦେଖିଲେ ବ୍ରାହ୍ମଣ ଅଦୂରରେ ଛିଡ଼ା ହୋଇ ବୃକ୍ଷମାନଙ୍କୁ ତଦାରଖ କରୁଛନ୍ତି । ଇନ୍ଦ୍ର ଉଦ୍ୟାନର ଶୋଭା ଦେଖି ବ୍ରାହ୍ମଣର କାନରେ ପଡ଼ିବା ଭଳି ପ୍ରଶଂସା କରୁ କରୁ ଧୀର ପଦରେ ବ୍ରାହ୍ମଣ ନିକଟକୁ ଅଗ୍ରସର ହେବାକୁ ଲାଗିଲେ । କହିଲେ—''ଆହା, କେଡ଼େ ସୁନ୍ଦର ବଗିଚା, କି ଦାୟିତ୍ୱ ସହକାରେ ଗଛଗୁଡ଼ିକ ଲଗାଯାଇଛି, ଯେଉଁଠି ଯାହା ଦରକାର ଠିକ୍ ସେଠାରେ ତାହା ଲଗାହୋଇଛି !'' ଏହି ପ୍ରକାର କଥା କହୁ କହୁ ବ୍ରାହ୍ମଣ ନିକଟକୁ ଯାଇ ପଚାରିଲେ— ''ମହାଶୟ, କହିପାରିବେ କି ଏହି ବଗିଚାଟି କାହାର? ଏପରି ସୁନ୍ଦର ଭାବରେ ଗଛଗୁଡ଼ିକୁ କିଏ ଲଗାଇଛି?'' ବ୍ରାହ୍ମଣ ଉଦ୍ୟାନର ପ୍ରଶଂସା ଶୁଣି ଆନନ୍ଦରେ ଗଦ୍‌ଗଦ୍ ହୋଇ କହିଲା—''ଆଜ୍ଞା, ଏବଗିଚାଟି ମୋର; ମୁଁ ଏସମସ୍ତ ଲଗାଇଛି; ଆସନ୍ତୁ ନା, ଭଲ କରି ବୁଲି ଦେଖନ୍ତୁ ।'' ଏପରି ଉଦ୍ୟାନ ବିଷୟରେ ନାନା କଥା କହୁ କହୁ ଇନ୍ଦ୍ରଙ୍କୁ ଉଦ୍ୟାନ ମଧ୍ୟରେ ବୁଲାଇ ଦେଖାଇବାକୁ ଲାଗିଲା ଏବଂ କ୍ରମେ ଭୁଲବଶତଃ ଗାଈଟି ଯେଉଁଠାରେ ମରିପଡ଼ିଥିଲା ସେଠାରେ ପହଞ୍ଚିଗଲା । ସେତେବେଳେ ଇନ୍ଦ୍ର ଯେପରି ଚମକି ଯାଇ ପଚାରିଲେ— ''ରାମ, ରାମ, ଏଠାରେ କିଏ ଗୋହତ୍ୟା କଲା ?'' ବ୍ରାହ୍ମଣ, ଏତେକ୍ଷଣ ବଗିଚାର ସମସ୍ତ ଜିନିଷ 'ମୁଁ କରିଛି, ମୁଁ କରିଛି' ବୋଲି କହି ଆସୁଥିଲା; ମାତ୍ର ଗୋହତ୍ୟା କିଏ କଲା ପ୍ରଶ୍ନରେ ସମ୍ପୂର୍ଣ୍ଣ ନିର୍ବାକ—ଚୁପ୍ ! ସେତେବେଳେ ଇନ୍ଦ୍ର ନିଜରୂପ ଧାରଣପୂର୍ବକ ବ୍ରାହ୍ମଣକୁ କହିଲେ, ''ତେବେରେ ଭଣ୍ଡ, ଉଦ୍ୟାନରେ ଯାହା କିଛି ଭଲ ସବୁ ତୁମେ କରିଛ, କିନ୍ତୁ ଗୋହତ୍ୟାଟି ମୁଁ କରିଛି ? ନେ ତୋର ଗୋହତ୍ୟାକୃତ ପାପ ।'' ଏହା କହି ଇନ୍ଦ୍ର ଅନ୍ତର୍ହିତ ହେଲେ ଏବଂ ପାପ ଆସି ବ୍ରାହ୍ମଣର ଶରୀର ଅଧିକାର କଲା ।

## ସାଧକର ମନର ଉନ୍ନତି ସହିତ ଠାକୁରଙ୍କ କଥାର ଗଭୀର ଅର୍ଥବୋଧ :

ଏବେ ଓକାଲତନାମା କଥା ଛାଡ଼ି ଆମେ ପୂର୍ବ ପ୍ରସଙ୍ଗକୁ ଅନୁସରଣ କରିବା । ଠାକୁରଙ୍କର ପ୍ରତ୍ୟେକ ଭକ୍ତଙ୍କୁ ପଚାରିଲେ ସେମାନେ ମୁକ୍ତକଣ୍ଠରେ ସ୍ୱୀକାର କରିବେ, ଠାକୁରଙ୍କର କଥାଗୁଡ଼ିକର ପୂର୍ବେ ସେମାନେ ଯେଉଁ ଅର୍ଥଗ୍ରହଣରେ ସମର୍ଥ ହେଉଥିଲେ, ଏବେ ଯେତେ ଦିନ ଯାଉଛି ସେତେ ସେଗୁଡ଼ିକ ଭିତରେ ଆହୁରି କେତେ ଗଭୀର ଅର୍ଥ ତାଙ୍କ କୃପାରୁ ବୁଝିପାରୁଛନ୍ତି । ଆହୁରି ମଧ ଠାକୁରଙ୍କର ଅନେକ କଥା ବା ବ୍ୟବହାର, ଯାହାର ଅର୍ଥ ଆମେ ସେତେବେଳେ କିଛି ହିଁ ବୁଝିପାରି ନ ଥିଲୁ, କେବଳ ଶୁଣି ଯାଇଥିଲୁ, ଏବେ ସେଗୁଡ଼ିକ ଭିତରେ ଅପୂର୍ବ ଅର୍ଥ ଓ ଭାବ ଉପଲବ୍ଧି କରି ଆମକୁ ଅବାକ୍ ହେବାକୁ ପଡ଼ିଥାଏ !

## କାଳେ ହେବ :

ଠାକୁରଙ୍କ କଥା ହିଁ ଥିଲା —''ଆରେ, କାଳକ୍ରମେ ହେବ, ସମୟ ଆସିଲେ ବୁଝିବୁ । ମଞ୍ଜିଟା ମାଟିରେ ପୋତିଲେ କ'ଣ ସଙ୍ଗେ ସଙ୍ଗେ ଫଳ ମିଳିବ ? ଆଗେ ଅଙ୍କୁର ହେବ, ତା'ପରେ ଚାରା ଗଛ ହେବ, ତା'ପରେ ସେହି ଗଛ ବଡ଼ ହୋଇ ସେଥିରେ ଫୁଲ ଫୁଟିବ, ତା'ପରେ ଫଳ —ସେହି ପ୍ରକାରର । ତେବେ ଲାଗି ରହିବାକୁ ପଡ଼ିବ, ଛାଡ଼ିଦେଲେ ହେବ ନାହିଁ; ଏହି ଗୀତରେ କ'ଣ ଅଛି ଶୁଣ ।'' ଏହା କହି ଠାକୁର ମଧୁର କଣ୍ଠରେ ଗାଇବାକୁ ଲାଗିଲେ—

ହରି ସୋଁ ଲାଗି ରହୋ ରେ ଭାଇ ।<br>
ତେରା ବନତ-ବନତ ବନି ଜାଈ - ତେରା ବିଗଡ଼ୀ ବାତ ବନି ଜାଈ ।।<br>
ଅଙ୍କା ତରେ ବଙ୍କା ତରେ ତରେ ସୁଜନ କସାଈ ।<br>
(ଔର) ସୁଗ୍ଗା ପଢ଼ାକେ ଗଣିକା ତର ଗୟୀ, ତର ଗୟୀ ମୀରାବାଈ ।।<br>
ଦୌଲତ ଦୁନିଆ ମାଲ ଖଜାନା, ବନିୟା ବୈଲ ଚଲାୟୀ ।<br>
(ଔର) ଏକ ବାତ କା ଟଂଟା ପଡ଼େ ତୋ ଖୋଜ ଖବର ନହିଁ ପାୟୀ ।।<br>
ଐସୀ ଭକ୍ତି କର ଘଟ ଭୀତର, ଛୋଡ଼ କପଟ ଚତୁରାଈ ।<br>
ସେବା ବନ୍ଦି ଔର ଅଧୀନତା ସହଜ ମିଲେ ରଘୁରାଈ ।।

[ଗୀତର ଭାବାର୍ଥ ହେଉଛି :—ହରିଙ୍କ ସାଥିରେ ସଂଯୁକ୍ତ ହୋଇ ରୁହ, ଧିରେ ଧିରେ ତୁମେ ମନୁଷ୍ୟ ଜୀବନର ଉଦ୍ଦେଶ୍ୟ ସାଧନ କରିନେବ ଓ ତୁମର ସମସ୍ତ ସମସ୍ୟାର ସମାଧାନ ହୋଇଯିବ । ରଙ୍କା, ବଙ୍କା ଓ ସଦନ କସାଇ ହରି ନାମରେ ଭବସାଗର ପାର ହୋଇଗଲେ ଏପରିକି ନିଜ ଶୁଆକୁ ହରି ନାମ ଶିଖାଇ ଗଣିକା ମଧ ମୁକ୍ତି ଲାଭ କଲା । ମୀରାବାଈକୁ ମଧ ଭଗବାନ ମୁକ୍ତି ପ୍ରଦାନ କରିଥିଲେ । ସଂସାରୀ ଲୋକ ନିଜର ଧନସମ୍ପତ୍ତି ଶଗଡ଼ ଗାଡ଼ିରେ ନେଇଯାଆନ୍ତି, କିନ୍ତୁ କାଳଚକ୍ରର ପ୍ରଭାବରେ ସବୁ କିଛି ବିନଷ୍ଟ ହୋଇଯାଏ । କପଟ ଚତୁରତା ଛାଡ଼ି

ପବିତ୍ର ହୃଦୟରେ ଭଗବାନଙ୍କୁ ଭକ୍ତି କର । ସେବା, ପୂଜା ଓ ଶରଣାଗତି ଦ୍ୱାରା ସହଜରେ ଭଗବାନ ଲାଭ ହୁଏ । କବୀର ଦାସ କହୁଛନ୍ତି, ହେ ମନୁଷ୍ୟଗଣ, ମୋତେ ଗୁରୁଦେବ ବତାଇଛନ୍ତି ଏହି ଦୁନିଆ ଚାରିଦିନ ପାଇଁ ତେଣୁ ସଦାସର୍ବଦା ରାମଙ୍କଠାରେ ମନ ଲଗାଇ ରୁହ ।]

**ସାଧନାରେ ଲାଗିରହିବା ଆବଶ୍ୟକ :**

ଗୀତ ଗାଇ ପୁଣି କହିଲେ, ''ତାଙ୍କର ସେବା, ବନ୍ଦନା ଓ ଅଧୀନତା— ଅର୍ଥାତ୍ ଦୀନଭାବ, ଏହାକୁ ନେଇ ବିଶ୍ୱାସରେ ପଡ଼ିରହିଲେ ସବୁ ହେବ, ତାଙ୍କର ଦର୍ଶନ ପାଇବ ହିଁ ପାଇବ । ତାହା ନ କରି ଛାଡ଼ିଦେଲେ କିନ୍ତୁ ସେହି ପର୍ଯ୍ୟନ୍ତ ହିଁ ହେଲା । ଜଣେ ଚାକିରୀ କରି କଷ୍ଟେ-ମଷ୍ଟେ କିଛି କିଛି ଟଙ୍କା ଜମା କରୁଥିଲା । ଦିନେ ସେ ଜମା ଟଙ୍କାକୁ ଗଣିବାରୁ ଦେଖିଲା ହଜାରେ ଟଙ୍କା ହୋଇଛି । ତେଣୁ ଆନନ୍ଦରେ ଆହ୍ଲାଦିତ ହୋଇ ମନେକଲା, ତେବେ ଚାକିରୀ କାହିଁକି କରିବି ? ଏକହଜାର ଟଙ୍କା ତ ହେଲାଣି, ଆଉ କ'ଣ ? ଏହା କହି ଚାକିରୀ ଛାଡ଼ି ଦେଲା । ଅତି ଛୋଟ ଆଧାର, ଅତି ଅଳ୍ପ ଆଶା ! ଅଳ୍ପରେ ସେ ଫୁଲି ଉଠିଲା, ଧରାକୁ ସରା ଜ୍ଞାନ କଲା । ତା'ପରେ—ହଜାରେ ଟଙ୍କା ଖର୍ଚ୍ଚ କରିବାକୁ କେତେଦିନ ଲାଗିବ ? କିଛିଦିନରେ ହିଁ ସରିଗଲା । ସେତେବେଳେ ଦୁଃଖ-କଷ୍ଟରେ ଚାକିରୀ ପାଇଁ ହତାଶ ଭାବରେ ଘୁରି ବୁଲିବାକୁ ଲାଗିଲା । ଏପରି କଲେ ଚଳିବ ନାହିଁ, ତାଙ୍କର (ଭଗବାନଙ୍କ) ଦୁଆରେ ପଡ଼ିରହିବାକୁ ହେବ; ତେବେ ତ ହେବ ।''

**ନରମା ଭକ୍ତି ତ୍ୟାଗ କର :**

କେତେବେଳେ କେତେବେଳେ ଗୀତଟିର ଦ୍ୱିତୀୟପଦ—'ତେରା ବନତ୍ ବନତ୍ ବନିଯାଇ' ଅର୍ଥାତ୍ ଭକ୍ତି କରୁ କରୁ ଫଳ ମିଳିବ—ଗାଉ ଗାଉ କହିଉଠୁଥିଲେ— ''ଦୂର୍ ଶଳା ! 'ବନତ ବନତ' କ'ଣ ? ଏପରି ନରମା ଭକ୍ତି କରନ୍ତି ନାହିଁ । ମନରେ ଜୋର କରିବାକୁ ହୁଏ—ଏହିକ୍ଷଣି ହେବ, ଏହିକ୍ଷଣି ତାଙ୍କୁ ପାଇବି । ନରମା ଭକ୍ତିରେ କ'ଣ ତାଙ୍କୁ ପାଇହୁଏ ?''

**ଭାବଘନମୂର୍ତ୍ତି ଠାକୁରଙ୍କର ପ୍ରତ୍ୟେକ ଭାବ ସହିତ ଦୈହିକ ପରିବର୍ତ୍ତନ :**

ଠାକୁରଙ୍କୁ ଦେଖିଲେ ହିଁ ବାସ୍ତବିକ ମନେ ହେଉଥିଲା, ଯେପରି ଏକ ଜ୍ୱଳନ୍ତ ଭାବଘନମୂର୍ତ୍ତି !—ଯେପରି ପୁଞ୍ଜୀକୃତ ଧର୍ମଭାବରାଶି ଏକତ୍ର ସମ୍ବଦ୍ଧ ହୋଇ ଜମାଟ ବାନ୍ଧି ରହିଅଛି ବୋଲି ହିଁ ଆମେ ତାଙ୍କର ଗୋଟିଏ ଆକାର ଓ ରୂପ ଦେଖିବାକୁ ପାଉଛୁ ! ମନର ଭାବ-ପରିବର୍ତ୍ତନ ସଙ୍ଗେ ସଙ୍ଗେ ଶରୀରର ପରିବର୍ତ୍ତନ ହେବା କଥା ଆମେ କହିଥାଉ ଏବଂ କ୍ୱଚିତ୍ କେବେ ଟିକେ ଅଧେ

ପ୍ରତ୍ୟକ୍ଷ କରିଥାଉ; କିନ୍ତୁ ମନର ଭାବତରଙ୍ଗ ଯେ ଶରୀରରେ ଏତେଟା ପରିବର୍ତ୍ତନ ଆଣିଦେଇପାରେ, ତାହା କେବେ ସ୍ୱପ୍ନରେ ସୁଦ୍ଧା ଭାବି ନାହୁଁ । ନିର୍ବିକଳ୍ପ ସମାଧିରେ 'ମୁଁ' ଜ୍ଞାନର ସମ୍ପୂର୍ଣ୍ଣ ଲୋପ ହେଲା—ଆଉ ସଙ୍ଗେ ସଙ୍ଗେ ଠାକୁରଙ୍କର ହାତର ନାଡ଼ୀ, ହୃଦୟର ସ୍ପନ୍ଦନ, ସବୁ ବନ୍ଦ ହୋଇଗଲା; ଶ୍ରୀଯୁକ୍ତ ମହେନ୍ଦ୍ରଲାଲ ସରକାର ପ୍ରଭୃତି ଡାକ୍ତରମାନେ ଯନ୍ତ୍ର ସାହାଯ୍ୟରେ ପରୀକ୍ଷା କରି ମଧ୍ୟ ହୃତ୍‌ପିଣ୍ଡର କାର୍ଯ୍ୟ କିଛି ପାଇଲେ ନାହିଁ ।[୧] ସେଥିରେ ମଧ୍ୟ ସନ୍ତୁଷ୍ଟ ନ ହୋଇ ଜନୈକ ଡାକ୍ତର ବନ୍ଧୁ ଠାକୁରଙ୍କ ଚକ୍ଷୁର ତାରା ବା ମଣିକୁ ଆଙ୍ଗୁଳିରେ ସ୍ପର୍ଶ କଲେ—ତଥାପି ଏହା ମୃତବ୍ୟକ୍ତି ପରି କିଛି ମାତ୍ର ସଙ୍କୁଚିତ ହେଲା ନାହିଁ ! 'ସଖୀଭାବ'-ସାଧନକାଳରେ ନିଜକୁ ଶ୍ରୀକୃଷ୍ଣଙ୍କର ଦାସୀ ବୋଲି ଭାବି ଭାବି ମନ ତନ୍ମୟ ହେବା ସଙ୍ଗେ ସଙ୍ଗେ ଶରୀରରେ ମଧ୍ୟ ସ୍ତ୍ରୀ-ସୁଲଭ ଭାବ ଉଠିବା-ବସିବା, ଛିଡ଼ାହେବା, କଥା କହିବା ପ୍ରଭୃତି ପ୍ରତ୍ୟେକ କାର୍ଯ୍ୟରେ ଏପରି ପ୍ରକାଶ ପାଇବାକୁ ଲାଗିଲା ଯେ, ଶ୍ରୀଯୁକ୍ତ ମଥୁରାନାଥ ପ୍ରଭୃତି ଯେଉଁମାନେ ଚବିଶ ଘଣ୍ଟା ଠାକୁରଙ୍କ ସହିତ ଉଠାବସା କରୁଥିଲେ, ସେମାନେ ମଧ୍ୟ ତାଙ୍କୁ ଦେଖି ଅନେକଥର କୌଣସି ଆଗନ୍ତୁକ ସ୍ତ୍ରୀଲୋକ ବୋଲି ଭ୍ରମରେ ପଡ଼ିଲେ । ଏପରି କେତେ ଯେ ଘଟଣା ଆମେ ଦେଖିଛୁ ଏବଂ ଠାକୁରଙ୍କର ନିଜ ମୁହଁରୁ ଶୁଣିଛୁ—ଯେଉଁଥିରେ ବର୍ତ୍ତମାନର ମନୋବିଜ୍ଞାନ ଓ ଶାରୀରବିଜ୍ଞାନର ଧରାବନ୍ଧା ନିୟମଗୁଡ଼ିକ ବଦଳିବା ପ୍ରୟୋଜନ ହୁଏ । ସେସମସ୍ତ କଥା କହିଲେ ମଧ୍ୟ ଲୋକେ କ'ଣ ବିଶ୍ୱାସ କରିବେ ?

**ଠାକୁରଙ୍କ ସମସ୍ତଙ୍କର ସବୁପ୍ରକାର ଭାବ ବୁଝିପାରିବାର କ୍ଷମତା :**

କିନ୍ତୁ ସର୍ବାପେକ୍ଷା ଆଶ୍ଚର୍ଯ୍ୟର ବିଷୟ ଦେଖିଛି ଠାକୁରଙ୍କର ଭାବରାଜ୍ୟର ସର୍ବତ୍ର ବିଚରଣ କରିବାର କ୍ଷମତା ଓ ଛୋଟବଡ଼ ସବୁପ୍ରକାର ଭାବ ବୁଝିପାରିବାର ଶକ୍ତି । ବାଳକ, ଯୁବକ, ବୃଦ୍ଧ ସମସ୍ତଙ୍କର ମନୋଭାବ—ବିଷୟୀ, ସାଧୁ, ଜ୍ଞାନୀ, ଭକ୍ତ, ସ୍ତ୍ରୀ, ପୁରୁଷ ସମସ୍ତଙ୍କର ହୃଦ୍‌ଗତ ଭାବ ଜାଣି କିଏ କେଉଁ ପଥରେ କେତେଦୂର ଧର୍ମ ରାଜ୍ୟରେ ଅଗ୍ରସର ହୋଇଛି, ପୂର୍ବ ସଂସ୍କାର ଅନୁସାରେ ଏହି ପଥଦେଇ ଅଗ୍ରସର ହେବାକୁ ତା'ର କି ପ୍ରକାର ସାଧନାର ବର୍ତ୍ତମାନ ପ୍ରୟୋଜନ, ସମସ୍ତକଥା ଠାକୁର ବୁଝିପାରୁଥିଲେ ଓ ପ୍ରତ୍ୟେକଙ୍କର ଅବସ୍ଥା ଅନୁସାରେ ଠିକ୍ ଠିକ୍ ବ୍ୟବସ୍ଥା କରିପାରୁଥିଲେ । ଦେଖି ଶୁଣି ମନେ ହୁଏ, ଠାକୁର ଯେପରି ମାନବମନରେ ଯେତେପ୍ରକାର ଭାବ ଉଠିଅଛି, ବା ଉଠିପାରେ ଅଥବା ପରେ ଉଠିବ, ସେସମସ୍ତ ଭାବ ହିଁ ନିଜ ଜୀବନରେ ଅନୁଭବ କରିଛନ୍ତି ଏବଂ ସେହି ସମସ୍ତ ଭାବର ପ୍ରତ୍ୟେକଟି ତାଙ୍କ ନିଜ ମନ ଭିତରେ ଆବିର୍ଭାବ ହୋଇ ତିରୋଭାବକାଳ ପର୍ଯ୍ୟନ୍ତ ପଛକୁ ପଛ ତାଙ୍କର ଯେଉଁ ଯେଉଁ ଅବସ୍ଥା ହୋଇଥିଲା ତାହା ମଧ୍ୟ ପୁଙ୍ଖାନୁପୁଙ୍ଖ ସ୍ମରଣ କରି

୧. ଗଳାରୋଗର ଚିକିତ୍ସା ପାଇଁ ଠାକୁର ଯେତେବେଳେ ଶ୍ୟାମପୁକୁର ବସାରେ ଥିଲେ, ସେତେବେଳେ ଆମମାନଙ୍କ ସମ୍ମୁଖରେ ଏହି ପରୀକ୍ଷା ହୋଇଥିଲା ।

ରଖି ପାରିଛନ୍ତି ! ସେଥିପାଇଁ ଇତରସାଧାରଣ ମାନବ, ଯିଏ ଯେତେବେଳେ ଆସି ଯେଉଁ ଭାବରେ କଥା କହୁଥାଏ, ନିଜର ସେହି ସକଳ ପୂର୍ବାନୁଭୂତ ଭାବ ସହିତ ମିଳାଇ ତତ୍‌କ୍ଷଣାତ୍ ତାହା ଧରି ପାରୁଥିଲେ, ବୁଝିପାରୁଥିଲେ ଏବଂ ତଦନୁଯାୟୀ ବିଧାନ କରୁଥିଲେ । ସମସ୍ତ ବିଷୟରେ ହିଁ ଏହିପ୍ରକାରର ହେଉଥିଲା । ମାୟାମୋହ, ସଂସାର-ତାଡ଼ନା, ତ୍ୟାଗ-ବୈରାଗ୍ୟର ଅନୁଷ୍ଠାନ ପ୍ରଭୃତି ସମସ୍ତ ବିଷୟରେ କେହି କୌଣସି ଅବସ୍ଥାରେ ପଡ଼ି ସେଥିରୁ ଉଦ୍ଧାର ପାଇବାର ପଥ ଖୋଜି ନ ପାଇ କାତର-ଜିଜ୍ଞାସୁ ହୋଇ ଆସିଲେ ଠାକୁର ମାର୍ଗର ସନ୍ଧାନ ତ ଦେଉଥିଲେ, ପୁଣି ଅନେକ ସମୟରେ ସଙ୍ଗେ ସଙ୍ଗେ ନିଜର ସେହି ଅବସ୍ଥାରେ ପଡ଼ି ଯେପରି ଅନୁଭୂତି ହୋଇଥିଲା ତାହା ମଧ୍ୟ କହୁଥିଲେ । କହୁଥିଲେ, ‘‘ଆରେ, ମୋର ସେତେବେଳେ ଏପରି ହୋଇଥିଲା ଓ ମୁଁ ଏପରି କରିଥିଲି’’ ଇତ୍ୟାଦି । ଏପରି କରିବା ଦ୍ୱାରା ଜିଜ୍ଞାସୁ ମନରେ କେତେ ଭରସାର ଉଦୟ ହେଉଥିଲା ଏବଂ ଠାକୁର ତାଙ୍କ ପାଇଁ ଯେଉଁ ପଥ ନିର୍ଦ୍ଦିଷ୍ଟ କରିଦେଉଥିଲେ, କେତେଦୂର ବିଶ୍ୱାସ ଓ ଉତ୍ସାହରେ ସେ ସେହି ପଥରେ ଅଗ୍ରସର ହେଉଥିଲା ସେକଥା କହିବା ଅନାବଶ୍ୟକ । କେବଳ ସେତିକି ନୁହେଁ, ଏହିରୂପରେ ନିଜର ଜୀବନର ଘଟଣା କହୁଥିବାରୁ ଜିଜ୍ଞାସୁର ମନେ ହେଉଥିଲା ଯେ, ଠାକୁର ତାକୁ କେତେ ଭଲ ପାଆନ୍ତି ! —ନିଜର ମନର କଥା ସବୁ କହନ୍ତି ! ଗୋଟିଏ ଦୁଇଟି ଦୃଷ୍ଟାନ୍ତରୁ ଏବିଷୟ ସମ୍ୟକ୍ ବୁଝିହେବ ।

**୧ମ ଦୃଷ୍ଟାନ୍ତ—ମଣିମୋହନଙ୍କର ପୁତ୍ରଶୋକ କଥା :**

ସିନ୍ଦୁରିୟାପଟିର ଶ୍ରୀଯୁକ୍ତ ମଣିମୋହନ ମଲ୍ଲିକଙ୍କର ଗୋଟିଏ ଯୋଗ୍ୟ ପୁତ୍ରର ମୃତ୍ୟୁ ହେଲା । ମଣିମୋହନ ପୁତ୍ରର ସତ୍କାର କରି ହିଁ ଠାକୁରଙ୍କ ନିକଟରେ ଆସି ଉପସ୍ଥିତ ହେଲେ । ଠାକୁରଙ୍କୁ ଅଭିବାଦନ କରି ବିମର୍ଷଭାବରେ ଘରର ଗୋଟିଏ ପାଖରେ ବସିଲେ । ଦେଖିଲେ, ଘରେ ସ୍ତ୍ରୀ-ପୁରୁଷ ଅନେକଜଣ ଜିଜ୍ଞାସୁ ଭକ୍ତ ବସିଛନ୍ତି ଏବଂ ଠାକୁର ସେମାନଙ୍କ ସହିତ ନାନା ସତ୍‌ପ୍ରସଙ୍ଗ କରୁଛନ୍ତି । ବସିବାର ଅଳ୍ପକ୍ଷଣ ପରେ ହିଁ ଠାକୁରଙ୍କର ଦୃଷ୍ଟି ତାଙ୍କ ଉପରେ ପଡ଼ିଲା ଏବଂ ସେ ମୁଣ୍ଡ ହଲାଇ ପଚାରିଲେ, ‘‘କିଗୋ ? ଆଜି ଏପରି ଶୁଖିଲା ଦେଖାଯାଉଛ କାହିଁକି ?’’ ମଣିମୋହନ ଗଦ୍‌ଗଦ୍ କଣ୍ଠରେ ଉତ୍ତର ଦେଲେ—(ପୁତ୍ରର ନାମ ଧରି) ଅମୁକର ଆଜି ମୃତ୍ୟୁ ହୋଇଗଲା ।

ବୃଦ୍ଧ ମଣିମୋହନଙ୍କର ସେହି ରୁକ୍ଷବେଶ ଓ ଶୋକନିରୁଦ୍ଧ କଣ୍ଠସ୍ୱର ଶୁଣି ଗୃହ ଅଭ୍ୟନ୍ତରସ୍ଥ ସମସ୍ତେ ସ୍ତମ୍ଭିତ ଓ ନୀରବ ହେଲେ ! ସମସ୍ତେ ହିଁ ବୁଝିଲେ, ବୃଦ୍ଧଙ୍କର ହୃଦୟରେ ସେହି ଗଭୀର ମର୍ମବେଦନା ଓ ଉତ୍ତାଳ ଶୋକାବେଗ ବାକ୍ୟରେ ରୁଦ୍ଧ ହେବାର ନୁହେଁ । ତଥାପି ବୃଦ୍ଧଙ୍କର ବିଳାପ ଓ କ୍ରନ୍ଦନରେ ବ୍ୟଥିତ ହୋଇ—ସଂସାରର ଧାରା ହିଁ ଏହିପରି, ସମସ୍ତେ ଦିନେ ମରିବେ, ଏବଂ ଯାହା ହୋଇଛି

ସହସ୍ର କ୍ରନ୍ଦନରେ ମଧ୍ୟ ତାହା ଫେରିବାର ନୁହେଁ, ଅତଏବ ଶୋକ ପରିତ୍ୟାଗ କର, ସହ୍ୟକର—ଏହିପରି ନାନା କଥାରେ ତାଙ୍କୁ ଶାନ୍ତ କରିବାକୁ ଲାଗିଲେ । ସୃଷ୍ଟିର ପ୍ରାକ୍‌କାଳରୁ ହିଁ ମନୁଷ୍ୟ ଶୋକସନ୍ତପ୍ତ ନରନାରୀଙ୍କୁ ଏହି ପ୍ରକାରର କଥା କହି ସାନ୍ତ୍ୱନା ଦେଇଆସିଛି; କିନ୍ତୁ ହାୟ, କେତୋଟି ଲୋକର ପ୍ରାଣ ଏଥିରେ ଶାନ୍ତ ହୋଇଛି ? କାହିଁକି ବା ହେବ ? ମନ, ମୁଖ ଏବଂ ଅନୁଷ୍ଠିତ କର୍ମ—ତିନୋଟି ପଦାର୍ଥ ଗୋଟିଏ ଭାବରେ ଭାବିତ ହେଲେ ତେବେ ହିଁ ଆମର ଉଚ୍ଚାରିତ ବାକ୍ୟସମୂହ ଅପରର ପ୍ରାଣସ୍ପର୍ଶ କରି ସେଥିରେ ସମଭାବର ତରଙ୍ଗ ଉତ୍‌ଥାପିତ କରିପାରେ । ଏଠାରେ ଯେ ତାହାର ଏକାନ୍ତ ଅଭାବ ! ଆମେ ମୁହଁରେ ସଂସାର ଅନିତ୍ୟ ବୋଲି କହି ପ୍ରତିଟି ଚିନ୍ତା ଓ କାର୍ଯ୍ୟରେ ତା'ର ବିପରୀତ ଅନୁଷ୍ଠାନ କରିଥାଉ; ସ୍ୱପ୍ନ ପରି ସଂସାର ଅନିତ୍ୟ ବୋଲି ଭାବିବାକୁ ଅନ୍ୟକୁ ଉପଦେଶ ଦେଇ, ନିଜେ ସର୍ବଦା ପ୍ରାଣେ ପ୍ରାଣେ ତାହାକୁ ନିତ୍ୟ ବୋଲି ଭାବୁ ଏବଂ ଚିରକାଳ ପାଇଁ ଏଠାରେ ରହିବାର ବନ୍ଦୋବସ୍ତ କରିଥାଉ । ଆମର କଥାରେ ସେ ଶକ୍ତି କେଉଠୁଁ ଆସିବ ?

ଅନ୍ୟ ସମସ୍ତେ ମଣିମୋହନଙ୍କୁ ଏପରି ନାନା କଥା କହିଲେ ମଧ୍ୟ ଠାକୁର ଏକ୍ଷେତ୍ରରେ ଅନେକକ୍ଷଣ କୌଣସି କଥା ନ କହି ମଣିମୋହନଙ୍କର ଶୋକୋଚ୍ଛ୍ୱାସ କେବଳ ଶୁଣିବାକୁ ଲାଗିଲେ । ତାଙ୍କର ସେହି ସମୟର ସେହି ଉଦାସୀନ ଭାବ ଦେଖି କେହିକେହି ବିସ୍ମିତ ହୋଇ ଭାବିବାକୁ ମଧ୍ୟ ଲାଗିଲେ—ଏହାଙ୍କର ହୃଦୟ କି କଠୋର, କି କରୁଣାଶୂନ୍ୟ !

ବୃଦ୍ଧଙ୍କର କଥା ଶୁଣୁ ଶୁଣୁ କେତେ ସମୟ ପରେ ଠାକୁର ଅର୍ଦ୍ଧବାହ୍ୟଦଶା ପ୍ରାପ୍ତହେଲେ ଏବଂ ସହସା ତାଳ ପକେଇ ଛିଡ଼ା ହୋଇ ଶ୍ରୀଯୁକ୍ତ ମଣିମୋହନଙ୍କୁ ଲକ୍ଷ୍ୟ କରି ଅପୂର୍ବ ତେଜ ସହିତ ଗୀତ ଆରମ୍ଭ କଲେ—

ଜୀବ ସାଜ ସମରେ ।
ଐ ଦେଖ୍ ରଣବେଶେ କାଲ ପ୍ରବେଶେ ତୋର ଘରେ ।
ଆରୋହଣ କରି ମହାପୁଣ୍ୟ ରଥେ, ଭଜନ ସାଧନ ଦୁଟୋ ଅଶ୍ୱ ଜୁଡେ ତାତେ
ଦିୟେ ଜ୍ଞାନ ଧନୁକେ ଟାନ, ଭକ୍ତି-ବ୍ରହ୍ମବାଣ ସଂଯୋଗ କର ରେ ।
ଆର ଏକ ଯୁକ୍ତି ଆଛେ ଶୁନ ସୁସଙ୍ଗତି,
ସବ ଶତ୍ରୁ ନାଶେର ଚାଇନେ ରଥରଥୀ
ରଣଭୂମି ଯଦି କରେନ ଦାଶରଥି ଭାଗୀରଥୀର ତୀରେ ।।

[ଗୀତର ଭାବାର୍ଥ ହେଉଛି : ''ହେ ଜୀବ, ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇଯାଅ । ଏହି ଦେଖ ରଣବେଶ ଧାରଣ କରି କାଳ ତୁମ ଘରେ ପ୍ରବେଶ କରୁଛି । ମହାପୁଣ୍ୟରୂପକ ରଥରେ ଚଢ଼ି, ସାଧନ-ଭଜନ ନାମକ ଦୁଇ ଘୋଡ଼ାଙ୍କୁ ସେଥିରେ ଯୋଚି, ଜ୍ଞାନ ଧନୁଷର ଟଙ୍କାର ଦେଇ ଭକ୍ତିରୂପକ ବ୍ରହ୍ମବାଣକୁ ସଂଯୋଗ କର । କବି ଦାଶରଥି

କହୁଛନ୍ତି ଆଉ ଗୋଟିଏ ଭଲ ଉପାୟ ଅଛି ଶୁଣ, ଯଦି ଭାଗୀରଥୀର ତଟ ରଣଭୂମି ହେବ ତାହାହେଲେ ସମସ୍ତ ଶତ୍ରୁମାନଙ୍କର ବିନାଶ ପାଇଁ ରଥ ଓ ରଥିଙ୍କର କୌଣସି ଆବଶ୍ୟକତା ନାହିଁ ।'']

ଗୀତର ବୀରତ୍ୱବ୍ୟଞ୍ଜକ ସ୍ୱର ଓ ତଦନୁରୂପ ଅଙ୍ଗଭଙ୍ଗୀ ଠାକୁରଙ୍କ ନୟନରୁ ନିଃସୃତ ବୈରାଗ୍ୟ ଓ ତେଜର ସହିତ ମିଳିତ ହୋଇ ସମସ୍ତଙ୍କ ପ୍ରାଣରେ ସେତେବେଳେ ଏକ ଅପୂର୍ବ ଆଶା ଓ ଉଦ୍ୟମର ସ୍ରୋତ ପ୍ରବାହିତ କଲା । ସମସ୍ତଙ୍କର ମନ ସେତେବେଳେ ଶୋକ-ମୋହର ରାଜ୍ୟରୁ ଉତ୍ଥିତ ହୋଇ ଏକ ଅପୂର୍ବ ଇନ୍ଦ୍ରିୟାତୀତ, ସଂସାରାତୀତ, ବିମଳ ଈଶ୍ୱରୀୟ ଆନନ୍ଦରେ ପୂର୍ଣ୍ଣ ହେଲା । ମଣିମୋହନ ମଧ୍ୟ ତାହା ପ୍ରାଣେ ପ୍ରାଣେ ଅନୁଭବ କରି ଶୋକ-ତାପ ଭୁଲି ଏବେ ସ୍ଥିର, ଗମ୍ଭୀର, ଶାନ୍ତ ହେଲେ !

ଗୀତ ସମାପ୍ତ ହେଲା — କିନ୍ତୁ ଗୀତୋକ୍ତ କେତୋଟି ବାକ୍ୟ ସାହାଯ୍ୟରେ ଠାକୁର ଯେଉଁ ଦିବ୍ୟ ଭାବତରଙ୍ଗ ଉତ୍ଥାପିତ କରିଥିଲେ, ସେଥିରେ ଘରଟି ବହୁକ୍ଷଣ ଧରି ସ୍ପନ୍ଦିତ ହେବାକୁ ଲାଗିଲା । ଈଶ୍ୱର ହିଁ ଏକମାତ୍ର ଆପଣାର, ମନ-ପ୍ରାଣ ତାଙ୍କୁ ଅର୍ପଣ କଲି — ସେ କୃପା କରନ୍ତୁ, ଦର୍ଶନ ଦିଅନ୍ତୁ — ଏହି ଭାବରେ ଆତ୍ମହରା ହୋଇ ସମସ୍ତେ ସ୍ଥିର ହୋଇବସିରହିଲେ । କିଛି ସମୟ ପରେ ଠାକୁରଙ୍କର ସମାଧି ଭଙ୍ଗ ହେଲା । ସେ ମଣିମୋହନଙ୍କ ନିକଟରେ ବସି କହିବାକୁ ଲାଗିଲେ —

''ଆହା ! ପୁତ୍ରଶୋକ ପରି ଆଉ କିଛି ଯନ୍ତ୍ରଣା ଅଛିକି ? ପୁତ୍ରଶରୀର ଏହି ଶରୀରରୁ ହିଁ ଉତ୍ପନ୍ନ ହୋଇଥାଏ କି ନା ? ତେଣୁ ଶରୀର ସହିତ ସମ୍ବନ୍ଧ- ଯେତେଦିନ ଶରୀର ଥାଏ, ସେତେଦିନ ସମ୍ବନ୍ଧ ଥାଏ ।''

ଏହା କହି ନିଜର ଭ୍ରାତୁଷ୍ପୁତ୍ର ଅକ୍ଷୟର ମୃତ୍ୟୁର କଥା ଦୃଷ୍ଟାନ୍ତସ୍ୱରୂପ ତାଙ୍କୁ କହିବାକୁ ଲାଗିଲେ । ଏପରି ବିମର୍ଷ-ଗମ୍ଭୀର ଭାବରେ କଥାଗୁଡ଼ିକ କହିବାକୁ ଲାଗିଲେ ଯେ, ସ୍ପଷ୍ଟ ବୋଧ ହେବାକୁ ଲାଗିଲା ସେ ଯେପରି ନିଜ ଆତ୍ମୀୟର ମୃତ୍ୟୁ ଚକ୍ଷୁର ସାମନାରେ ଦେଖୁଛନ୍ତି ! କହିଲେ, ''ଅକ୍ଷୟ ମଲା — ସେତେବେଳେ କିଛି ହେଲା ନାହିଁ । କିପରି ମଣିଷ ମରେ, ବେଶ୍ ଠିଆ ହୋଇ ଦେଖିଲି । ଦେଖିଲି — ଯେପରି ଖୋଳ ମଧ୍ୟରେ ତଲ୍‌ୱାର ଥିଲା, ତାହାକୁ ଖୋଳରୁ ବାହାର କରି ନେଲେ; ତଲୱାରର କିଛି ହେଲା ନାହିଁ — ଯେପରି ଥିଲା ସେପରି ରହିଲା, ଖୋଳଟା ପଡ଼ିରହିଲା ! ଏହା ଦେଖି ଖୁବ୍ ଆନନ୍ଦ ହେଲା — ଖୁବ୍ ହସିଲି, ଖୁବ୍ ଗୀତ ଗାଇଲି, ନାଚିଲି ! ତା'ର ଶରୀରଟା ପୋଡ଼ି ଦେଇ ଆସିଲେ ! ତା'ପର ଦିନ (ଘରର ପୂର୍ବରେ, କାଳିବାଡ଼ୀର ଅଗଣା ସାମନା ବାରଣ୍ଡା ଆଡ଼େ ଦେଖାଇ) ଏଠାରେ ଛିଡ଼ାହୋଇଛି ଆଉ ଦେଖୁଛି ଯେ, ଯେପରି ପ୍ରାଣ ଭିତରଟା ଗାମୁଛା ଚିପୁଡ଼ିଲା ପରି ଚିପୁଡ଼ି ହୋଇଯାଉଛି, ଅକ୍ଷୟ ପାଇଁ ପ୍ରାଣଟା ଏପରି କରୁଛି ! ଭାବିଲି , ମା, ଏଠାରେ (ମୋର) ପିନ୍ଧିବା କପଡ଼ା ସହିତ ସମ୍ବନ୍ଧ ନାହିଁ, ପୁତୁରା

ସଙ୍ଗରେ କେତେ ଅବା ସମ୍ବନ୍ଧ ଥିଲା ! ଏଠାରେ (ମୋର) ଯେତେବେଳେ ଏପରି ହେଉଛି, ଗୃହୀମାନଙ୍କର ଶୋକରେ କ'ଣ ନ ହୁଏ ! ମୋତେ ସେହି ଅନୁଭବ କରାଉଛନ୍ତୁ, ଠିକ୍ ଅଛି !''

କିଛିକ୍ଷଣ ପରେ ଠାକୁର ପୁଣି କହିବାକୁ ଲାଗିଲେ, ''ତେବେ କ'ଣ ଜାଣିଛ ? ଯେଉଁମାନେ ତାଙ୍କୁ (ଭଗବାନଙ୍କୁ) ଧରିଥାନ୍ତି ସେମାନେ ଏପରି ବିଷମ ଶୋକରେ ମଧ୍ୟ ସମ୍ପୂର୍ଣ୍ଣ ଭାଙ୍ଗିପଡ଼ି ନ ଥାନ୍ତି । ଟିକେ ଅସ୍ତବ୍ୟସ୍ତ ହୋଇ ସମ୍ଭାଳି ଯାଆନ୍ତି । ଚୂନାମାଛ ପରି ଆଧାରଗୁଡ଼ିକ ଏକାବେଳକେ ଅସ୍ଥିର ହୋଇଉଠନ୍ତି କିମ୍ବା ବୁଡ଼ିଯାଆନ୍ତି । ଦେଖି ନାହଁ ? ଗଙ୍ଗାରେ ଷ୍ଟିମର ଚାଲିଲେ ଜଳ ମଧ୍ୟରେ ଥିବା କେଉଟଙ୍କ ଛୋଟଡଙ୍ଗାଗୁଡ଼ିକର କ'ଣ ହୁଏ ? ମନେହୁଏ ଯେପରି ବୁଡ଼ିଯିବ— ଆଉ ସମ୍ଭାଳିପାରିବ ନାହିଁ । କେଉଁଟା ହୁଏତ ଓଲଟି ପଡ଼ିଲା । କିନ୍ତୁ ବଡ଼ ବଡ଼ ଡଙ୍ଗାଗୁଡ଼ିକ ଦୁଇ ଚାରିଥର ଟଳମଳ ହୋଇ ଯେମିତିକୁ ସେମିତି ସ୍ଥିର ହେଲା । କିନ୍ତୁ ଦୁଇ-ଚାରିଥର ଟଳମଳ ହେବାକୁ ହିଁ ହେବ ।''

ପୁଣି କିଛିକ୍ଷଣ ବିମର୍ଷ-ଗମ୍ଭୀର ଭାବରେ ରହି ଠାକୁର କହିବାକୁ ଲାଗିଲେ, ''କେତେଦିନ ପାଇଁ ଏହି ସଂସାରର ଏସମସ୍ତଙ୍କ (ପୁତ୍ରାଦିଙ୍କ) ସହିତ ସମ୍ବନ୍ଧ ! ମନୁଷ୍ୟ ସୁଖର ଆଶାରେ ସଂସାର କରେ—ବିଭାଘର ହେଲା, ପିଲା ହେଲେ ସେହି ପିଲା ପୁଣି ବଡ଼ ହେଲା, ତା'ର ବିଭାଘର ହେଲା—କେତେ ଦିନ ବେଶ୍ ଚାଲିଲା । ତା'ପରେ ଏହାର ଦେହଖରାପ, ସେ ମରିଗଲା, ଏହା ବିଗିଡ଼ିଲା— ସେତେବେଳେ ନାନା ପ୍ରକାର ଚିନ୍ତାରେ ଚିତ୍ତ ବିଚଳିତ ହୋଇଉଠେ । ଯେମିତି ଯେମିତି ସଂସାରରେ ନୈରାଶ୍ୟ ଆସେ ସେମିତି ଆକ୍ରୋଶ ବଢ଼ିଚାଲେ । ଦେଖି ନାହଁ ? —ଚୂଲିର ନିଆଁରେ କଞ୍ଚା ଡାଳଗୁଡ଼ିକ ପ୍ରଥମେ ବେଶ୍ ଜଳେ । ତାପରେ କାଠଟା ଯେତେ ପୋଡ଼ୁଥାଏ କାଠର ସବୁ ରସ ପଛକୁ ଠେଲି ହୋଇ ଫୁଟୁଥାଏ ଆଉ ଚେଁ-ଚାଁ, ଫୁସ୍ ଫାସ୍ ନାନାପ୍ରକାରର ଶବ୍ଦ ହେଉଥାଏ—ଠିକ୍ ସେହିପରି ।'' ଏହିପରି ସଂସାରର ଅନିତ୍ୟତା ଓ ଅସାରତା, ଏବଂ ଶ୍ରୀଭଗବାନଙ୍କର ଶରଣାପନ୍ନ ହେବାରେ ହିଁ ଏକମାତ୍ର ସୁଖ—ଇତ୍ୟାଦି ବିଷୟରେ ନାନାକଥା କହି ମଣିମୋହନଙ୍କୁ ବୁଝାଇବାକୁ ଲାଗିଲେ । ମଣିମୋହନ ମଧ୍ୟ ନିଜକୁ ସମ୍ଭାଳି କହିଲେ, ''ଏଇଥିପାଇଁ ତ ଆପଣଙ୍କ ନିକଟକୁ ଧାଇଁ ଆସିଥିଲି । ବୁଝିଲି—ଏହି ଜ୍ୱାଳା ଆଉ କେହି ଶାନ୍ତ କରିପାରିବେ ନାହିଁ ।''

ଆମେମାନେ ସେତେବେଳେ ଠାକୁରଙ୍କର ଏହି ଅଦୃଷ୍ଟପୂର୍ବ ବ୍ୟବହାର ଦେଖି ଅବାକ୍ ହୋଇ ଭାବିବାକୁ ଲାଗିଲୁ—ଏହାଙ୍କୁ ହିଁ ଆମେ ଟିକିଏ ପୂର୍ବରୁ କଠୋର ଓ ଉଦାସୀନ ବୋଲି ଭାବିଥିଲୁ । ଯିଏ ଯଥାର୍ଥ ମହତ୍, ତାଙ୍କର ଛୋଟ ଛୋଟ କର୍ମଗୁଡ଼ିକ ସାଧାରଣ ଲୋକଙ୍କ ପରି ହୋଇ ନ ଥାଏ । ଛୋଟ-ବଡ଼ ପ୍ରତ୍ୟେକ କାର୍ଯ୍ୟରେ ତାଙ୍କର ମହତ୍ତ୍ୱର ପରିଚୟ ମିଳିଥାଏ । ଏହିମାତ୍ର କିଛିକ୍ଷଣ

ପୂର୍ବରୁ ସମାଧି ବା ଈଶ୍ୱରଙ୍କ ସହିତ ଐକ୍ୟ ଉପଲବ୍ଧିରେ ଯାହାଙ୍କର ହୃଦୟର ସ୍ପନ୍ଦନପର୍ଯ୍ୟନ୍ତ ବନ୍ଦ ହୋଇଯାଇଥିଲା, ଇଏ କ'ଣ ସେହି ବ୍ୟକ୍ତି ? ସେହି ଠାକୁର କ'ଣ ବାସ୍ତବିକ ମଣିମୋହନଙ୍କର ଅବସ୍ଥାର ସହିତ ସହାନୁଭୂତିରେ ଜଣେ ସାଧାରଣ ମଣିଷ ପରି ହୋଇଯାଇଛନ୍ତି ? 'ମାୟା ହେ'—ଏପରି ଛୋଟ କଥା କହି ବୃଦ୍ଧଙ୍କର କଥା ଇଏ ତ ଉଡ଼ାଇ ଦେଇପାରି ଥାଆନ୍ତେ ? ସେ କ୍ଷମତା ଯେ ଏହାଙ୍କର ନାହିଁ ତାହା ତ' ନୁହେଁ । କିନ୍ତୁ ସେପରି ମହତ୍ତ୍ୱ ପ୍ରଦର୍ଶନ କରିଥିଲେ ଆମେ ବୁଝିଥାଆନ୍ତୁ ଯେ, ଇଏ ଯେତେ ବଡ଼ ବା ଯାହା କିଛି ହୁଅନ୍ତୁ ପଛେ, ଲୋକଗୁରୁ—ଜଗତ୍‌ଗୁରୁ ଠାକୁର ନୁହଁନ୍ତି । ବୁଝିଥାଆନ୍ତୁ, ସାଧାରଣ ମନୁଷ୍ୟର ଭାବ ବୁଝିବା ପାଇଁ ଏହାଙ୍କର କ୍ଷମତା ନାହିଁ ଏବଂ କହିଥାଆନ୍ତୁ, ସ୍ତ୍ରୀ-ପୁତ୍ରଙ୍କ ପ୍ରତି ମମତାରେ ଦୁର୍ବଳ ମାନବ ଆମମାନଙ୍କ ପରି ଅସହାୟ ଅବସ୍ଥାରେ ଇଏ ଯଦି ଥରେ ମାତ୍ର ପଡ଼ିଥାଆନ୍ତେ, ତେବେ କିପରି ମାୟାର ଖେଳରେ ଉଦାସୀନ ରହିପାରିଥାଆନ୍ତେ, ତାହା ଦେଖିଥାଆନ୍ତୁ ।

ପରମୁହୂର୍ତ୍ତରେ ହୁଏତ କୌଣସି ଯୁବକ ଆସି ବିଷଣ୍ଣଚିତ୍ତରେ ଠାକୁରଙ୍କୁ ପଚାରିଲେ, ''ମହାଶୟ, କାମ କିପରି ଯିବ ? ଏତେ ଚେଷ୍ଟା କରି ମଧ୍ୟ, ବେଳେବେଳେ ଇନ୍ଦ୍ରିୟଚାଞ୍ଚଲ୍ୟ ଓ କୁଭାବ ମନରେ ଉପସ୍ଥିତ ହୋଇ ବଡ଼ ଅଶାନ୍ତି ଆସିଥାଏ ।''

**୨ୟ ଦୃଷ୍ଟାନ୍ତ—କାମ ଦୂର କରିବା ସମ୍ବନ୍ଧରେ ଠାକୁରଙ୍କର କଥା :**

ଠାକୁର—''ଆରେ, ଭଗବାନଙ୍କ ଦର୍ଶନ ନ ହେଲେ କାମ ପୂରାପୂରି ଯାଏ ନାହିଁ । ତାହା (ଭଗବଦ୍ଦର୍ଶନ) ହେଲେ ମଧ୍ୟ ଶରୀର ଯେତେଦିନ ରହେ ସେତେଦିନ ଟିକେ ଅଧେ ରହେ, ତେବେ ମୁଣ୍ଡ ଟେକିପାରେ ନାହିଁ । ତୁ କ'ଣ ମନେକରୁଛୁ ମୋର ମଧ୍ୟ ସମ୍ପୂର୍ଣ୍ଣ ଯାଇଛି ? ଗୋଟିଏ ସମୟରେ ମନେ ହେଉଥିଲା ଯେ କାମକୁ ଜୟ କରିଛି । ତା'ପରେ ପଞ୍ଚବଟୀରେ ବସିଛି, ଏମିତି କାମର ତୋଡ଼ ଆସିଲା ଯେ, ଯେପରି ଆଉ ସମ୍ଭାଳିପାରିବି ନାହିଁ ! ତା'ପରେ ଧୂଳିରେ ମୁହଁ ଘଷି କାନ୍ଦି କାନ୍ଦି ମା'କୁ କହିଲି, 'ମା, ବଡ଼ ଅନ୍ୟାୟ କରିଛି, ଆଉ କେବେ ଭାବିବି ନାହିଁ ଯେ କାମ ଜୟ କରିଛି'—ସେତେବେଳେ ଯାଇ ସ୍ଥିର ହେଲି । କ'ଣ ଜାଣିଛୁ—(ତୁମମାନଙ୍କର) ଏବେ ଯୌବନର ବନ୍ୟା ଆସିଛି ! ତେଣୁ ବନ୍ଧ ଦେଇପାରୁ ନାହଁ । ବଢ଼ି ଯେତେବେଳେ ଆସେ ସେତେବେଳେ ବନ୍ଧ-ଫନ୍ଧ କ'ଣ ମାନେ ? ବନ୍ୟା ବନ୍ଧ ଭାଙ୍ଗି ଉଛୁଳି ବହୁଥାଏ, ଲୋକଙ୍କର ଧାନ-ଜମିରେ ବାଉଁଶେ ଉଚ୍ଚପାଣି ଠିଆ ହୋଇଯାଏ ! ତେବେ କହେ—କଳିରେ ମନର ପାପ, ପାପ ନୁହେଁ । ମନରେ ଥରେ ଅଧେ କେତେବେଳେ କୁଭାବ ଯଦି ଆସିଯାଏ ତେବେ—'କାହିଁକି ଆସିଲା' ବୋଲି ବସି ବସି ତାହା ଭାବିବୁ କାହିଁକି ? ଏସମସ୍ତ

କେତେବେଳେ କେତେବେଳେ ଶରୀରର ଧର୍ମ ଯୋଗୁଁ ଆସେ ଯାଏ—ଏହାକୁ ଶୌଚ-ପରିସ୍ରା ପରି ମନେ କରିବୁ । ଶୌଚ-ପରିସ୍ରାର ବେଗ ଆସିଥିଲା ବୋଲି ଲୋକ କ'ଣ ମଥାରେ ହାତଦେଇ ବସେ ? ସେହିପରି ଏହି ଭାବଗୁଡ଼ିକୁ ଅତି ସାମାନ୍ୟ, ତୁଚ୍ଛ, ହେୟ ଜ୍ଞାନ କରି ମନରେ ଆଉ ଆଣିବୁ ନାହିଁ । ଆଉ ଈଶ୍ୱରଙ୍କ ନିକଟରେ ଖୁବ୍ ପ୍ରାର୍ଥନା କରିବୁ, ହରିନାମ କରିବୁ ଓ ତାଙ୍କକଥା ହିଁ ଭାବିବୁ । ଏଭାବଗୁଡ଼ିକ ଆସିଲା କି ଗଲା—ସେଆଡ଼କୁ ନଜର ଦେବୁ ନାହିଁ । ଏହାପରେ ଏଗୁଡ଼ିକ କ୍ରମେ କ୍ରମେ ଆୟତ୍ତକୁ ଆସିବ ।'' ଯୁବକ ପାଖରେ ଠାକୁର ଯେପରି ଏବେ ଯୁବକ ହିଁ ହୋଇଯାଇଛନ୍ତି !

**୩ୟ ଦୃଷ୍ଟାନ୍ତ—ଯୋଗାନନ୍ଦଙ୍କୁ ଏହି ବିଷୟରେ ଉପଦେଶ :**

ଏହି ପ୍ରସଙ୍ଗରେ ଶ୍ରୀଯୁକ୍ତ ଯୋଗେନଙ୍କ କଥା ମନେପଡୁଛି । ସ୍ୱାମୀ ଯୋଗାନନ୍ଦ, ଯାହାଙ୍କ ପରି ଇନ୍ଦ୍ରିୟଜିତ୍ ପୁରୁଷ ବିରଳ, ଦିନେ ଠାକୁରଙ୍କୁ ଦକ୍ଷିଣେଶ୍ୱରରେ ଏହି ପ୍ରଶ୍ନ କଲେ । ତାଙ୍କର ବୟସ ସେତେବେଳେ ଅଳ୍ପ, ବୋଧହୁଏ ୧୪, ୧୫ ବର୍ଷ ହେବ । ସେ ଅଳ୍ପ ଦିନ ଧରି ଠାକୁରଙ୍କ ପାଖକୁ ଯିବା ଆସିବା କରୁଥାଆନ୍ତି । ସେହି ସମୟରେ ନାରାୟଣ ନାମକ ଏକ ହଠଯୋଗୀ ଦକ୍ଷିଣେଶ୍ୱରରେ ପଞ୍ଚବଟୀ ତଳେ କୁଟୀରରେ ରହି ନେତି-ଧୌତି[୧] ଇତ୍ୟାଦି କ୍ରିୟା ଦେଖାଇ କାହାକୁ କାହାକୁ କୌତୁହଳରେ ଆକୃଷ୍ଟ କରୁଥିଲେ । ଯୋଗେନ୍ ସ୍ୱାମୀଜୀ କହୁଥିଲେ, ସେ ମଧ୍ୟ କୌତୁହଳୀଙ୍କ ମଧ୍ୟରେ ଜଣେ ଥିଲେ ଏବଂ ଏସମସ୍ତ କ୍ରିୟା ଦେଖି ଭାବିଥିଲେ, ଏସବୁ ନକଲେ ବୋଧହୁଏ କାମ ଯାଏ ନାହିଁ ଏବଂ ଭଗବତ୍‌ଦର୍ଶନ ହୁଏ ନାହିଁ । ତେଣୁ ସେ ପ୍ରଶ୍ନ କରି ବଡ଼ ଆଶାକରି ଭାବିଥିଲେ, ଠାକୁର କୌଣସି ଗୋଟିଏ ଆସନ-ଫାସନ କହିଦେବେ, ବା ହରିଡ଼ା ବା ଆଉ କିଛି ଖାଇବାକୁ କହିବେ ବା ପ୍ରାଣାୟାମର କୌଣସି କ୍ରିୟା ଶିଖାଇ ଦେବେ । ଯୋଗେନ୍ ସ୍ୱାମୀଜୀ କହୁଥିଲେ—''ଠାକୁରେ ମୋ ପ୍ରଶ୍ନର ଉତ୍ତରରେ କହିଲେ, 'ଖୁବ୍ ହରିନାମ କରିବୁ, ତାହେଲେ ଯିବ ।' କଥାଟା ଆଦୌ ମୋର ମନ ଲାଖି ହେଲା ନାହିଁ । ମନେ ମନେ ଭାବିଲି — ଇଏ ବୋଧେ କ୍ରିୟା-ଫ୍ରିୟା ଜାଣନ୍ତି ନାହିଁ, ତେଣୁ ଗୋଟେ ଯାହା ତାହା କହିଦେଲେ । ହରିନାମ କଲେ ପୁଣି କାମ ଯିବ ! ତା'ହେଲେ ଏତେ ଲୋକ କରୁଛନ୍ତି, ଯାଉ ନାହିଁ କାହିଁକି ? ତା ପରେ ଦିନେ କାଳୀବାଡ଼ୀର ବଗିଚାକୁ ଆସି ପ୍ରଥମେ ଠାକୁରଙ୍କ ପାଖକୁ ନ ଯାଇ ପଞ୍ଚବଟୀରେ

---

୧. ଦୁଇ ଆଙ୍ଗୁଳି ଚଉଡ଼ା ଓ ଦଶ ପନ୍ଦର ହାତ ଲମ୍ବା ଗୋଟିଏ କପଡ଼ା ଜଳରେ ଭିଜାଇ ଆସ୍ତେ ଆସ୍ତେ ଗିଳି ଦେବା ଓ ପରେ ତାହା ପୁଣି ଟାଣି ବାହାର କରିବାର ନାମ ନେତି । ଏବଂ ୨/୩ ସେର ଜଳ ପିଇ ପୁନଶ୍ଚ ବାନ୍ତି କରିବାର ନାମ ଧୌତି । ଗୁହ୍ୟଦ୍ୱାର ଦେଇ ଜଳ ଟାଣି ବାହାର କରିବାକୁ ମଧ୍ୟ ଧୌତି କୁହାଯାଏ । ସେମାନଙ୍କ ମତରେ ଏହାଦ୍ୱାରା ଶରୀରରେ ରୋଗ ଆସିପାରେ ନାହିଁ ଏବଂ ଶରୀର ଦୃଢ଼ ହୁଏ ।

ହଠଯୋଗୀଙ୍କ ନିକଟରେ ଠିଆହୋଇ ତାଙ୍କ କଥାବାର୍ତ୍ତା ମୁଗ୍ଧ ହୋଇ ଶୁଣୁଛି, ଏପରି ସମୟରେ ଦେଖିଲି ଯେ ଠାକୁର ସ୍ୱୟଂ ସେଠାରେ ଉପସ୍ଥିତ । ମୋତେ ଦେଖିବାରୁ ଡାକି ମୋର ହାତଧରି ନିଜଘର ଆଡ଼କୁ ଯାଉ ଯାଉ କହିବାକୁ ଲାଗିଲେ, 'ତୁ ସେଠାକୁ କାହିଁକି ଯାଇଥିଲୁ ? ସେଠାକୁ ଯିବୁ ନାହିଁ । ଏସବୁ (ହଠଯୋଗ କ୍ରିୟା) ଶିଖିଲେ ଓ କଲେ ଶରୀର ଉପରେ ହିଁ ମନ ପଡ଼ିରହିବ । ଭଗବାନଙ୍କ ଆଡ଼କୁ ଯିବ ନାହିଁ ।' ମୁଁ କିନ୍ତୁ ଠାକୁରଙ୍କ କଥା ସବୁ ଶୁଣି ଭାବିଲି— କାଳେ ମୁଁ ଏହାଙ୍କର (ଠାକୁରଙ୍କର) ପାଖକୁ ଆଉ ନ ଆସିବି, ସେଥିପାଇଁ ଏସମସ୍ତ କଥା କହୁଛନ୍ତି । ମୋର ବରାବର ହିଁ ନିଜକୁ ଖୁବ୍ ବୁଦ୍ଧିମାନ ବୋଲି ଧାରଣା ଥିଲା, ତେଣୁ ବୁଦ୍ଧିର ପ୍ରଭାବରେ ଏମିତି ଭାବିଲି ଆଉ କ'ଣ । ମୁଁ ତାଙ୍କ ନିକଟକୁ ଆସେ ବା ନ ଆସେ ସେଥିରେ ଯେ ତାଙ୍କର (ଠାକୁରଙ୍କର) କିଛି ହିଁ ଲାଭ-ଲୋକସାନ ନାହିଁ— ଏକଥା ସେତେବେଳେ ମନରେ ମଧ୍ୟ ଆସିଲା ନାହିଁ । ଏପରି ଦୁଷ୍ଟ ସନ୍ଦିଗ୍ଧ ମନ ଥିଲା । ଠାକୁରଙ୍କ କୃପାର ଶେଷ ନାହିଁ, ସେଥିପାଇଁ ଏତେ ସମସ୍ତ ଅନ୍ୟାୟ ଭାବ ମନରେ ଆଣି ମଧ୍ୟ ସ୍ଥାନ ପାଇଥିଲି । ତା'ପରେ ଭାବିଲି — ଇଏ (ଠାକୁର) ଯାହା କହୁଛନ୍ତି, ତାହା କରି ଦେଖେ ନା କାହିଁକି —କ'ଣ ହୁଏ ? ଏହା ଭାବି ଏକାଗ୍ର ଚିତ୍ତରେ ଖୁବ୍ ହରିନାମ କରିବାକୁ ଲାଗିଲି । ବାସ୍ତବିକ ଅଳ୍ପଦିନରେ ହିଁ, ଠାକୁର ଯେପରି କହିଥିଲେ, ସେପରି ପ୍ରତ୍ୟକ୍ଷ ଫଳ ପାଇବାକୁ ଲାଗିଲି ।''

### ୪ର୍ଥ ଦୃଷ୍ଟାନ୍ତ–ମଣିମୋହନଙ୍କର ଆତ୍ମୀୟାଙ୍କ କଥା :

ଏହିପରି ସମସ୍ତଙ୍କର ଅବସ୍ଥା ଓ ଭାବ ବୁଝିପାରିବା କଥାର ଅନେକ ଦୃଷ୍ଟାନ୍ତ ଦିଆଯାଇପାରେ । ସିନ୍ଦୁରିୟାପଟିର ମଲ୍ଲିକ୍ ମହାଶୟଙ୍କ କଥା ଏହାପୂର୍ବରୁ କୁହାଯାଇଅଛି, ତାଙ୍କର ଭକ୍ତିମତୀ ଜନୈକା ଆତ୍ମୀୟା ମଧ୍ୟ ଠାକୁରଙ୍କ ନିକଟକୁ ଯିବା ଆସିବା କରୁଥିଲେ । ଦିନେ ଆସି ସେ ବିଶେଷ କାତର ଭାବରେ ଜଣାଇଲେ ଯେ, ଭଗବାନଙ୍କର ଧ୍ୟାନ କରି ବସିଲେ ସଂସାରର ଚିନ୍ତା, ଏହାର କଥା, ତା'ର ମୁହଁ ଇତ୍ୟାଦି ମନେପଡ଼ି ବଡ଼ ଅଶାନ୍ତି ଆସୁଛି । ଠାକୁର ସଙ୍ଗେ ସଙ୍ଗେ ତା'ର ଭାବ ବୁଝିପାରିଲେ; ବୁଝିଲେ, ସେ କାହାକୁ ବୋଧହୁଏ ଭଲ ପାଆନ୍ତି — ଯାହାର କଥା ଓ ମୁହଁ ମନେ ପଡ଼େ । ପଚାରିଲେ, ''କାହାର ମୁହଁ ମନେପଡ଼େ ଗୋ ? ସଂସାରରେ କାହାକୁ ଭଲ ପାଅ କହ ଦେଖି ?'' ସେ ଉତ୍ତର ଦେଲେ, ''ଗୋଟିଏ ଛୋଟ ଭ୍ରାତୁଷ୍ପୁତ୍ରକୁ'' — ଯାହାକୁ ସେ ମଣିଷ କରୁଥିଲେ । ଠାକୁରେ କହିଲେ, ''ବେଶ୍ ତ, ତାପାଇଁ ଯାହା କିଛି କରିବ, ତାକୁ ଖୁଆଇଦେବା, କପଡ଼ା ପିନ୍ଧାଇ ଦେବା ଇତ୍ୟାଦି ସବୁ, ଗୋପାଳ ଭାବି କର । ଯେପରି ଗୋପାଳ-ରୂପୀ ଭଗବାନ ତା ଭିତରେ ରହିଛନ୍ତି — ତୁମେ ତାଙ୍କୁ ହିଁ ଖୁଆଉଛ, ପିନ୍ଧାଉଛ, ସେବା କରୁଛ — ଏଇପ୍ରକାର ଭାବ ନେଇ କର । ମଣିଷର କରୁଛି ବୋଲି ଭାବିବ କାହିଁକି ? ଯେପରି

ଭାବ ସେପରି ଲାଭ ।'' ଶୁଣିବାକୁ ପାଇଥିଲୁ ସେପରି କରିବାରୁ ଅଳ୍ପଦିନ ଭିତରେ ତାଙ୍କର ବିଶେଷ ମାନସିକ ଉନ୍ନତି, ଏପରିକି ଭାବସମାଧି ମଧ୍ୟ ହୋଇଥିଲା ।

**ଠାକୁରଙ୍କର ସ୍ତ୍ରୀ-ଜାତିର ସବୁପ୍ରକାର ମନୋଭାବ ବୁଝିପାରିବାର କ୍ଷମତା ଓ ଏହାର କାରଣ :**

ଠାକୁରଙ୍କର ନିଜର ପୁରୁଷ ଶରୀର ଥିଲା, ସେଥିପାଇଁ ତାଙ୍କର ପୁରୁଷଙ୍କ ଭାବ ବୁଝିବା ବିଷୟ ବୁଝାଯାଇଥାଏ । କିନ୍ତୁ କୋମଳତା, ସନ୍ତାନବାତ୍ସଲ୍ୟ ପ୍ରଭୃତି ମନୋଭାବ ନିମିତ୍ତ ଭଗବାନ ଯାହାଙ୍କଠାରେ ପୁରୁଷ ଅପେକ୍ଷା ଗୋଟିଏ ଅଙ୍ଗ ଅଧିକ ଦେଇଛନ୍ତି ସେହି ସ୍ତ୍ରୀଜାତିର ସମସ୍ତ ଭାବ ଠାକୁର କିପରି ଠିକ୍ ଠିକ୍ ବୁଝୁଥିଲେ, ତାହା ଭାବିଲେ ଆଶ୍ଚର୍ଯ୍ୟର ସୀମା ରହେ ନାହିଁ । ଠାକୁରଙ୍କର ସ୍ତ୍ରୀ-ଭକ୍ତମାନେ କହୁଥିଲେ, ''ଠାକୁରଙ୍କୁ, ଆମମାନଙ୍କର ପୁରୁଷ ବୋଲି ଅନେକ ସମୟରେ ମନେ ହେଉ ନ ଥିଲା । ମନେ ହେଉଥିଲା — ଯେପରି ସେ ଆମମାନଙ୍କ ମଧ୍ୟରୁ ଜଣେ । ସେଥିପାଇଁ ପୁରୁଷଙ୍କ ନିକଟରେ ଆମମାନଙ୍କର ଯେପରି ଲଜ୍ଜା ସଙ୍କୋଚ ଆସେ, ଠାକୁରଙ୍କ ନିକଟରେ ସେସମସ୍ତ କିଛି ଆସୁ ନ ଥିଲା । ଯଦିବା କେତେବେଳେ ଆସୁଥିଲା ତତ୍‌କ୍ଷଣାତ୍ ତାହା ଭୁଲି ଯାଉଥିଲୁ ଓ ପୁଣି ନିଃସଙ୍କୋଚରେ ମନକଥା ଖୋଲି କହୁଥିଲୁ ।'' 'ଭଗବାନ ଶ୍ରୀକୃଷ୍ଣଙ୍କର ମୁଁ ସଖୀ ବା ଦାସୀ' —ଏହି ଭାବନା ଦୀର୍ଘକାଳ ଭାବି ଭାବି ତନ୍ମୟ ହୋଇ 'ମୁଁ ପୁରୁଷ' ଏଭାବଟି ଠାକୁର ସମ୍ପୂର୍ଣ୍ଣ ଭୁଲି ଯାଇଥିଲେ ବୋଲି ହିଁ କ'ଣ ସେପରି ହେଉଥିଲା ? ପତଞ୍ଜଳି ତାଙ୍କର ଯୋଗସୂତ୍ରରେ କହିଛନ୍ତି, 'ତୁମର ମନରୁ ହିଂସା ଯଦି ସମ୍ପୂର୍ଣ୍ଣ ଭାବରେ ତ୍ୟାଗ ହୁଏ, ତା'ହେଲେ ମନୁଷ୍ୟର କଥା କ'ଣ, ବାଘ, ସାପ ପ୍ରଭୃତି ଜଗତରେ କେହି ମଧ୍ୟ ତୁମକୁ ଆଉ ହିଂସା କରିବେ ନାହିଁ ! ତୁମକୁ ଦେଖି ସେମାନଙ୍କ ମନରେ ହିଂସା-ପ୍ରବୃତ୍ତିର ଉଦୟ ହେବ ନାହିଁ । ହିଂସା ପରି କାମ-କ୍ରୋଧାଦି ଅନ୍ୟ ସମସ୍ତ ବିଷୟ ତଦ୍ରୂପ ବୁଝିବାକୁ ହେବ । ପୁରାଣରେ ଏବିଷୟରେ ଅନେକ ଦୃଷ୍ଟାନ୍ତ ମିଳିଥାଏ । ଗୋଟିଏ କହିଲେ ହିଁ ଚଳିବ । ମାୟାହୀନ ନିଷ୍କଳଙ୍କ ଯୁବକ ଶୁକଦେବ ଭଗବଦ୍‌ଭାବରେ ଅହରହ ନିମଗ୍ନ ରହି ସଂସାର ଛାଡ଼ି ଯାଉଛନ୍ତି, ଏବଂ ବୃଦ୍ଧ ପିତା ବ୍ୟାସ ପୁତ୍ରମାୟାରେ ଅନ୍ଧ ହୋଇ 'କେଉଁଠାକୁ ଯାଉଛ, କେଉଁଠାକୁ ଯାଉଛ' କହୁ କହୁ ପଶ୍ଚାତ୍ ଧାବନ କରୁଛନ୍ତି । ପଥ ମଧ୍ୟରେ ସରୋବର ତୀରରେ ବସ୍ତ୍ର ରଖି ଅପ୍ସରାଗଣ ସ୍ନାନ କରୁଥିଲେ । ଶୁକଦେବଙ୍କୁ ଦେଖି ସେମାନଙ୍କ ମନରେ କିଛିମାତ୍ର ସଙ୍କୋଚ ବା ଲଜ୍ଜାର ଉଦୟ ହେଲା ନାହିଁ — ଯେପରି ସ୍ନାନ କରୁଥିଲେ ସେପରି କରିବାକୁ ଲାଗିଲେ । କିନ୍ତୁ ବୃଦ୍ଧ ବ୍ୟାସ ସେଠାରେ ଉପସ୍ଥିତ ହେଲାମାତ୍ରେ ସମସ୍ତେ ସସମ୍ଭ୍ରମରେ ଶରୀର ବସ୍ତ୍ରାଚ୍ଛାଦିତ କଲେ । ବ୍ୟାସ ଭାବିଲେ — 'ଆଶ୍ଚର୍ଯ୍ୟ ! ମୋର ଯୁବକ ପୁତ୍ର ଆଗରେ ଗଲେ, ତାଙ୍କୁ ଦେଖି କେହି ଲଜ୍ଜା ବୋଧ କଲେ ନାହିଁ,

ଆଉ ମୁଁ ବୃଦ୍ଧ, ମୋତେ ଦେଖି ଏତେ ଲଜ୍ଜା !' କାରଣ ପଚାରିବାରୁ ସେମାନେ କହିଲେ, ''ଶୁକ ଏତେ ପବିତ୍ର ଯେ, 'ସେ ଆତ୍ମା' ଏହି ଚିନ୍ତା ହିଁ ତାଙ୍କର ସର୍ବକ୍ଷଣ ରହିଛି ! ତାଙ୍କର ନିଜର ସ୍ତ୍ରୀ ଶରୀର କି ପୁରୁଷ ଶରୀର, ଏବିଷୟରେ ଆଦୌ ହୋସ୍ ନାହିଁ ! ତେଣୁ ତାଙ୍କୁ ଦେଖି ଲଜ୍ଜା ଆସିଲା ନାହିଁ । ଆଉ ତୁମେ ବୃଦ୍ଧ, ରମଣୀଙ୍କର ହାବଭାବ ଓ କଟାକ୍ଷର ଅନେକ ପରିଚୟ ପାଇଅଛ ଓ ରୂପଲାବଣ୍ୟର ଅନେକ ବର୍ଣ୍ଣନା ମଧ୍ୟ କରିଅଛ; ତୁମର ଶୁକଙ୍କ ସଦୃଶ ସ୍ତ୍ରୀ-ପୁରୁଷରେ ଆତ୍ମଦୃଷ୍ଟି ନାହିଁ ଏବଂ ହେବ ମଧ୍ୟ ନାହିଁ; ତେଣୁ ତୁମକୁ ଦେଖି ଆମର ପୁରୁଷବୁଦ୍ଧିର ଉଦୟ ହେବାରୁ ସଙ୍ଗେ ସଙ୍ଗେ ଲଜ୍ଜା ଆସିଲା ।''

## ସ୍ତ୍ରୀଜାତିର ଠାକୁରଙ୍କ ନିକଟରେ ସର୍ବଦା ନିଃସଙ୍କୋଚ ବ୍ୟବହାରର କାରଣ :

ଠାକୁରଙ୍କ ସମ୍ବନ୍ଧରେ ଠିକ୍ ସେହି କଥା ହିଁ ମନେହୁଏ । ତାଙ୍କର ଜ୍ୱଳନ୍ତ ଆତ୍ମଜ୍ଞାନ ଏବଂ ସ୍ତ୍ରୀ-ପୁରୁଷ ସମସ୍ତଙ୍କ ଭିତରେ, ସର୍ବଭୂତରେ ଆତ୍ମଦୃଷ୍ଟିର ଫଳସ୍ୱରୂପ ତାଙ୍କ ନିକଟରେ ଥିବା ସମୟରେ ସମସ୍ତଙ୍କ ମନ ଏତେ ଉଚ୍ଚରେ ଉଠି ରହୁଥିଲା ଯେ, 'ମୁଁ ପୁରୁଷ, ସେ ସ୍ତ୍ରୀ'—ଏ ସମସ୍ତ ଭାବ ଅନେକ ସମୟରେ ମନରେ ଉଠୁ ନ ଥିଲା । ତେଣୁ ପୁରୁଷମାନଙ୍କ ପରି ସ୍ତ୍ରୀଜାତିର ମଧ୍ୟ ତାଙ୍କ ନିକଟରେ ସଙ୍କୋଚ କରିବାର କୌଣସି କାରଣ ନ ଥିଲା । କେବଳ ସେତିକି ନୁହେଁ, ଠାକୁରଙ୍କ ସଂସର୍ଗରେ ଏହି ଆତ୍ମଦୃଷ୍ଟି ସେମାନଙ୍କ ଭିତରେ ସେହି ସମୟରେ ଏପରି ବଦ୍ଧମୂଳ ହୋଇଯାଉଥିଲା ଯେ, ଯେଉଁ ସମସ୍ତ କାର୍ଯ୍ୟକୁ ମହିଳାମାନେ ଅସୀମ ସାହସର କର୍ମ ଭାବୁଥିଲେ ଓ କେହି କହିଲେ ମଧ୍ୟ ତାହା କରିପାରୁ ନ ଥିଲେ, ଠାକୁରଙ୍କ କଥାରେ ସେହି ସମସ୍ତ କର୍ମ ଅନାୟାସରେ ସମ୍ପନ୍ନ କରୁଥିଲେ । ସମ୍ଭ୍ରାନ୍ତ ବଂଶୀୟା ସ୍ତ୍ରୀଲୋକ ଯେଉଁମାନେ ଗାଡି-ପାଲିଙ୍କି ବ୍ୟତୀତ କେଉଁଠାକୁ ଗମନାଗମନ କରୁ ନ ଥିଲେ, ଠାକୁରଙ୍କ ଆଜ୍ଞାରେ ସେମାନେ ମଧ୍ୟ ବେଳେବେଳେ ତାଙ୍କ ସହିତ ଦିନରେ ପଦବ୍ରଜରେ ସଦର ରାସ୍ତାଦେଇ ଗଙ୍ଗାକୂଳ ପର୍ଯ୍ୟନ୍ତ ଅନାୟାସରେ ଚାଲିଚାଲି ଆସି ନୌକା କରି ଦକ୍ଷିଣେଶ୍ୱର କାଳୀମନ୍ଦିରକୁ ଗମନ କରୁଥିଲେ; କେବଳ ସେତିକି ନୁହେଁ, ସେଠାକୁ ଯାଇ ଠାକୁରଙ୍କ ଆଜ୍ଞାରେ ନିକଟସ୍ଥ ବଜାରରୁ ସଉଦା କିଣି ଆଣି ସନ୍ଧ୍ୟା ସମୟରେ ପୁନରାୟ ଚାଲି ଚାଲି କଲିକତାରେ ନିଜ ନିଜର ଗୃହକୁ ଫେରୁଥିଲେ । ଏହି ବିଷୟରେ ଗୋଟିଏ ଦୁଇଟି ଦୃଷ୍ଟାନ୍ତ ଏଠାରେ ଦେଲେ ଏହା ବେଶ୍ ବୁଝାଯିବ ।

## ଏହା ସମ୍ବନ୍ଧରେ ପ୍ରଥମ ଦୃଷ୍ଟାନ୍ତ :

୧୮୮୪ ଖ୍ରୀଷ୍ଟାବ୍ଦର ଭାଦ୍ରବ ବା ଆଶ୍ୱିନ ମାସ । ଶ୍ରୀଶ୍ରୀମା' ସେତେବେଳେ ପିତ୍ରାଳୟ ଜୟରାମବାଟୀ ଯାଇଥାଆନ୍ତି । ଶ୍ରୀଯୁକ୍ତ ବଳରାମ ବସୁ ତାଙ୍କର ପିତାଙ୍କ

ସହିତ ବୃନ୍ଦାବନ ଯାଇଥିଲେ । ସାଙ୍ଗରେ ଶ୍ରୀଯୁକ୍ତ ରାଖାଲ (ସ୍ୱାମୀ ବ୍ରହ୍ମାନନ୍ଦ), ଶ୍ରୀଯୁକ୍ତ ଗୋପାଳ (ସ୍ୱାମୀ ଅଦ୍ୱୈତାନନ୍ଦ) ପ୍ରଭୃତି ଓ ଅନ୍ୟାନ୍ୟ ଅନେକଜଣ ସ୍ତ୍ରୀ-ପୁରୁଷ ଯାଇଥାଆନ୍ତି । ବାଗବଜାରର ଜଣେ ସମ୍ଭ୍ରାନ୍ତ ବଂଶୀୟା ସ୍ତ୍ରୀଲୋକଙ୍କର—ଯିଏ ଠାକୁରଙ୍କୁ କେବେ ଦେଖି ନ ଥିଲେ, ତାଙ୍କ କଥା କେବଳ ଶୁଣିଥିଲେ—ଠାକୁରଙ୍କୁ ଦର୍ଶନ ନିମିତ୍ତ ଆସିବାକୁ ବିଶେଷ ଇଚ୍ଛା ହେଲା; ତାଙ୍କର ପରିଚିତା ଜଣେ ସ୍ତ୍ରୀଲୋକଙ୍କ ନିକଟରେ ଏହି କଥା କହିଲେ । ପରିଚିତା ସ୍ତ୍ରୀ-ଭକ୍ତଟି ଦୁଇବର୍ଷ ଧରି ଠାକୁରଙ୍କ ନିକଟକୁ ଯିବା ଆସିବା କରୁଛନ୍ତି, ତେଣୁ ତାଙ୍କ ନିକଟରେ ଏକଥା କହିଲେ । ପରାମର୍ଶ ପରେ ସ୍ଥିର କରି ପରଦିନ ନୌକା ଦ୍ୱାରା ଉଭୟେ ଦକ୍ଷିଣେଶ୍ୱରରେ ଉପସ୍ଥିତ ହେଲେ । ଦେଖିଲେ—ଠାକୁରଙ୍କ ଘରର ଦ୍ୱାର ବନ୍ଦ । ଘରର ଉତ୍ତର ପଟ କାନ୍ଥରେ ଥିବା ଦୁଇଟି ଫାଙ୍କରେ ଉଙ୍କି ମାରି ଦେଖିଲେ—ଠାକୁରେ ବିଶ୍ରାମ କରୁଛନ୍ତି । ତେଣୁ ନହବତ ଘରେ, ଯେଉଁଠାରେ ଶ୍ରୀଶ୍ରୀମା' ରହୁଥିଲେ, ସେଠାରେ ଯାଇ ବସି ଅପେକ୍ଷା କଲେ । କିଛିକ୍ଷଣ ପରେ ଠାକୁର ଉଠି, ଉତ୍ତର ଦରଜା ଖୋଲି ନହବତ ଘରର ଦୋତାଲାର ବାରଣ୍ଡାରେ ସେମାନେ ବସିଥିବାର ଦେଖି "ଆରେ, ତୁମେମାନେ ଏଠାକୁ ଆସ" ବୋଲି ଡାକିଲେ । ସ୍ତ୍ରୀ-ଭକ୍ତମାନେ ଆସି ଆସନ ଗ୍ରହଣ କରିବା ପରେ ଠାକୁର ଖଟ ଉପରୁ ଓହ୍ଲାଇ ଆସି ପରିଚିତା ସ୍ତ୍ରୀ-ଭକ୍ତଙ୍କ ପାଖରେ ଯାଇ ବସିଲେ । ସେଥିରେ ସେ ସଙ୍କୁଚିତା ହୋଇ ଘୁଞ୍ଚିଯାଇ ବସିବା ଉପକ୍ରମ କରିବାରୁ ଠାକୁର କହିଲେ, "ଲଜ୍ଜା କାହିଁକି ? ଲଜ୍ଜା, ଘୃଣା, ଭୟ, ଏହି ତିନୋଟି ରହିଲେ ନୁହଁ । (ହାତହଲାଇ) ତୁମେ ଯାହା, ମୁଁ ମଧ୍ୟ ତାହା । ତେବେ (ଦାଢ଼ିର ଚୂଳଗୁଡ଼ିକ ଦେଖାଇ) ଏଗୁଡ଼ିକ ଅଛି ବୋଲି ଲଜ୍ଜା ହେଉଛି, ନୁହେଁ ?"

ଏପରି କହି ଭଗବତ୍ ପ୍ରସଙ୍ଗ ପକାଇ ନାନାକଥାର ଉପଦେଶ ଦେବାକୁ ଲାଗିଲେ । ସ୍ତ୍ରୀ-ଭକ୍ତମାନେ ମଧ୍ୟ ସ୍ତ୍ରୀ-ପୁରୁଷ-ଭେଦ ଭୁଲିଯାଇ ନିଃସଙ୍କୋଚରେ ପ୍ରଶ୍ନ କରିବାକୁ ଓ ଶୁଣିବାକୁ ଲାଗିଲେ । ଅନେକ ସମୟ କଥାବାର୍ତ୍ତା ପରେ ବିଦାୟ ସମୟରେ ଠାକୁର କହିଲେ, "ସପ୍ତାହରେ ଥରେ ଆସ । ନୂଆ ନୂଆ ଏଠାକୁ ଯିବା-ଆସିବା ବେଶୀ କରିବାକୁ ହୁଏ ।" କିନ୍ତୁ ସମ୍ଭ୍ରାନ୍ତବଂଶୀୟା ହେଲେ ମଧ୍ୟ ଗରିବ ଦେଖି ନୌକା ବା ଗାଡିଭଡ଼ା ପ୍ରତି ଥର କେଉଁଠୁ ପାଇବେ ଭାବି ଠାକୁରେ ପୁଣି କହିବାକୁ ଲାଗିଲେ, ଆସିବା ସମୟରେ "୩/୪ ଜଣ ମିଶି ନୌକା କରି ଆସିବ । ପୁଣି ଯିବା ସମୟରେ ଏଠାରୁ ଚାଲି ଚାଲି ବରାହନଗର ଯାଇ ସମସ୍ତେ ମିଶି ଗାଡ଼ି ଭଡ଼ା କରିବ ।" କହିବା ବାହୁଲ୍ୟ, ସ୍ତ୍ରୀ-ଭକ୍ତମାନେ ତାପରଠାରୁ ତାହା ହିଁ କରିବାକୁ ଲାଗିଲେ ।

### ଏହା ସମ୍ବନ୍ଧରେ ଦ୍ୱିତୀୟ ଦୃଷ୍ଟାନ୍ତ :

ଆଉ ଜଣେ ଆମକୁ ଦିନେ କହିଥିଲେ—''ଭୋଲା ଗୁଡ଼ିଆ ଦୋକାନରେ ବେଶ୍ ସର କରିଥିଲା । ଠାକୁର ସର ଖାଇବାକୁ ଭଲ ପାଆନ୍ତି ଜାଣିଥିଲୁ, ତେଣୁ ବଡ଼ ସର ଖଣ୍ଡେ କିଣି ଆମେ ପାଞ୍ଚ ଜଣ ମିଶି ନୌକା କରି ଦକ୍ଷିଣେଶ୍ୱରରେ ଉପସ୍ଥିତ ହେଲୁ । ଓଃ ମା, ଆସି ଶୁଣିଲୁ ଯେ ଠାକୁର କଲିକତା ଯାଇଛନ୍ତି । ସମସ୍ତେ ହତାଶ ହୋଇ ବସିପଡ଼ିଲୁ । କ'ଣ ହେବ ? ରାମଲାଲ ଦାଦା ଥିଲେ—ତାଙ୍କୁ ଠାକୁରେ କେଉଁଠାକୁ ଯାଇଛନ୍ତି ବୋଲି ପଚାରିବାରୁ, ସେ କହିଲେ, କମ୍ବୁଲିଆଟୋଲାର ମାଷ୍ଟର ମହାଶୟଙ୍କ[1] ଘରକୁ ଯାଇଛନ୍ତି । ଅ—ର ମା' ଶୁଣି କହିଲେ, 'ତାଙ୍କ ଘର ମୁଁ ଜାଣେ, ମୋର ବାପଘର ପାଖରେ—ଯିବ ? ଚାଲ ଯିବା; ଏଠି ବସି ଆଉ କ'ଣ କରିବା ?' ସମସ୍ତେ ସେକଥାରେ ରାଜିହେଲେ । ରାମଲାଲ ଦାଦାଙ୍କ ହାତରେ ସରଖଣ୍ଡିକ ଦେଇ କହିଗଲି, 'ଠାକୁରେ ଆସିଲେ ତାଙ୍କୁ ଦେବେ ।' ନୌକା ତ ଛାଡ଼ିଦେଇଛୁ—ତେଣୁ ଚାଲି ଚାଲି ସମସ୍ତେ ଗଲୁ । କିନ୍ତୁ ଏପରି ଠାକୁରଙ୍କ ଇଚ୍ଛା, ଆଲମ୍‌ବଜାର ପର୍ଯ୍ୟନ୍ତ ଯାଇ ଗୋଟିଏ ଫେରନ୍ତାଗାଡ଼ି ପାଇଗଲୁ । ଭଡ଼ା କରି ସମସ୍ତେ ଶ୍ୟାମପୁକୁରକୁ ଆସିଲୁ । ଆସି ପୁଣି ବିପଦ, ଅ—ର ମା' ଘର ଚିହ୍ନିପାରିଲେ ନାହିଁ । ଶେଷରେ ବୁଲି ବୁଲି ତାଙ୍କ ବାପଘର ସାମନାରେ ଗାଡି ରଖି ଗୋଟିଏ ଚାକରକୁ ଡାକି ଆଣିଲେ । ସେ ସାଙ୍ଗରେ ଆସି ଘର ଦେଖାଇ ଦେବାରୁ ଘର ପାଇଲୁ । ଅ—ର ମା'କୁ ଦୋଷ କ'ଣ ଦେବୁ, ସେ ଆମଠାରୁ ୩, ୪ ବର୍ଷ ଛୋଟ, ସେତେବେଳେ ୨୬, ୨୭ ବର୍ଷ ପରି ହେବ । ବୋହୂଟା ରାସ୍ତାରେ କେବେ ବାହାରି ନାହିଁ, ଆହୁରି ମଧ୍ୟ ଗଳି ଭିତରେ ଘର—ତେଣୁ ସେ କିପରି ଚିହ୍ନିବ ?

''ଯା'ହେଉ ତାଙ୍କ ଘରେ ତ ପହଞ୍ଚିଗଲୁ, ସେତେବେଳେ ମାଷ୍ଟରଙ୍କର ପରିବାର ସହିତ ଚିହ୍ନା ଜଣା ହୋଇ ନାହିଁ । ଘର ଭିତରେ ପଶି ଦେଖିଲୁ ଗୋଟିଏ ଛୋଟ ବଖରାରେ ତକ୍ତପୋଷ ଉପରେ ଠାକୁର ବସିଛନ୍ତି, ପାଖରେ କେହି ନାହାନ୍ତି । ଆମକୁ ଦେଖି ହସି ହସି କହିଲେ, 'ତୁମେ ସବୁ ଏଠାକୁ କିପରି ଆସିଲ ?' ଆମେ ତାଙ୍କୁ ପ୍ରଣାମ କରି ସମସ୍ତ କଥା କହିଲୁ । ସେ ଅତ୍ୟନ୍ତ ଖୁସି ହୋଇ ଘର ଭିତରେ ବସିବାକୁ କହିଲେ ଓ ଅନେକ କଥାବାର୍ତ୍ତା କରିବାକୁ ଲାଗିଲେ । ଏବେ ସମସ୍ତେ କହନ୍ତି, ସ୍ତ୍ରୀଲୋକମାନଙ୍କୁ ସେ ପଦସ୍ପର୍ଶ କରିବାକୁ ଦେଉ ନ ଥିଲେ ! ପାଖକୁ ଯିବାକୁ ଦେଉ ନ ଥିଲେ । ଆମେ ଶୁଣି ହସୁ ଓ ମନେକରୁ—ଆମେ ଏବେ ବି ମରି ନାହୁଁ ! ତାଙ୍କର ଯେ କି ଦୟା ଥିଲା, ତାହା କିଏ ଜାଣିବ ! ସ୍ତ୍ରୀ-ପୁରୁଷରେ ସମାନ ଭାବ ! ତେବେ ସ୍ତ୍ରୀଲୋକଙ୍କର ସାନ୍ନିଧ୍ୟ ବେଶୀକ୍ଷଣ ସହ୍ୟ କରିପାରୁ ନ

---

୧. ଠାକୁରଙ୍କର ପରମ ଭକ୍ତ ଶ୍ରୀଯୁକ୍ତ ମହେନ୍ଦ୍ରନାଥ ଗୁପ୍ତ—ଯିଏ 'ଶ୍ରୀଶ୍ରୀରାମକୃଷ୍ଣ କଥାମୃତ' ପ୍ରକାଶ କରି ଜନ ସାଧାରଣଙ୍କ କୃତଜ୍ଞତାଭାଜନ ହୋଇଛନ୍ତି—ସେତେବେଳେ କଲିକତାର କମ୍ବୁଲିଆଟୋଲାରେ ଗୋଟିଏ ଘରଭଡ଼ା ନେଇ ରହୁଥିଲେ ।

ଥିଲେ, ବେଶୀସମୟ ରହିଲେ କହନ୍ତି, ''ଯାଓ-ଗୋ, ଏବେ ଟିକେ ମନ୍ଦିର ଯାଇ ଦର୍ଶନ କରିଆସ ।' ପୁରୁଷମାନଙ୍କୁ ମଧ୍ୟ ସେପରି କହିବା ଆମେ ଶୁଣିଛୁ ।

''ଛାଡ଼ ଆମେ ତ ବସି କଥା ହେଉଛୁ । ଆମ ଭିତରୁ ଯେଉଁ ଦୁଇଜଣ ବୟସ୍କ ଥିଲେ ସେମାନେ କବାଟ ସାମନାରେ ବସିଥାଆନ୍ତି, ଆମେ ତିନିଜଣ ଘର ଭିତରେ, ଗୋଟିଏ କ'ଣରେ ବସିଛୁ; ଏପରି ସମୟରେ ଠାକୁର ଯାହାକୁ 'ମୋଟା ବ୍ରାହ୍ମଣ' କହୁଥିଲେ (ଶ୍ରୀଯୁକ୍ତ ପ୍ରାଣକୃଷ୍ଣ ମୁଖୋପାଧ୍ୟାୟ) ସେ ଆସି ଉପସ୍ଥିତ । ବାହାରି ଯିବୁ—ତା'ର ଉପାୟ ନ ଥିଲା ! କେଉଁଠିକୁ ଯିବୁ ! ବୁଢ଼ୀମାନେ କବାଟ ସାମନାରେ ଗୋଟିଏ ଝରକା ଥିଲା, ସେଠାରେ ବସିରହିଲେ, ଆମେ ତିନିଜଣ ଠାକୁରେ ଯେଉଁ ତକ୍ତପୋଷ ଉପରେ ବସିଥିଲେ ତା ତଳେ ପଶି କୌଣସି ପ୍ରକାରରେ ମୁହଁ ମାଡ଼ି ଶୋଇ ରହିଲୁ, ମଶାଙ୍କ ଦଂଶନରେ ସର୍ବାଙ୍ଗ ଫୁଲି ଉଠିଲା, କ'ଣ କରିବୁ, ହଲିବାର ଉପାୟ ନାହିଁ, ସ୍ଥିର ହୋଇ ପଡ଼ିରହିଲୁ । କଥାବାର୍ତ୍ତା ହୋଇ ବ୍ରାହ୍ମଣ ଜଣଙ୍କ ପ୍ରାୟ ଏକ ଘଣ୍ଟା ପରେ ଚାଲିଗଲେ, ସେତେବେଳେ ଆମେ ବାହାରିଲୁ !—ତା'ପରେ ଯାହା ହସ !

''ତା'ପରେ ଜଳଯୋଗ ପାଇଁ ଠାକୁରଙ୍କୁ ଘର ଭିତରକୁ ନିଆଗଲା । ସେତେବେଳେ ତାଙ୍କ ସଙ୍ଗରେ ଘର ଭିତରକୁ ଗଲୁ । ପରେ ଖାଇସାରି କିଛିକ୍ଷଣ ପରେ ଠାକୁର ଗାଡ଼ିରେ ବସିଲେ (ଦକ୍ଷିଣେଶ୍ୱର ଫେରିଯିବା ପାଇଁ); ତା'ପରେ ସମସ୍ତେ ଚାଲି ଚାଲି ଘରକୁ ଫେରିଲୁ । ସେତେବେଳେ ରାତି ନଅଟା ହେବ ।

**ସ୍ତ୍ରୀ-ଭକ୍ତମାନଙ୍କ ପ୍ରତି ଠାକୁରଙ୍କର ସମାନ କୃପା :**

''ତା'ପର ଦିନ ପୁଣି ଦକ୍ଷିଣେଶ୍ୱର ଗଲୁ । ସେଠାରେ ପହଞ୍ଚିବା ମାତ୍ରେ ଠାକୁର ପାଖକୁ ଆସି କହିଲେ, ''ଆହେ, ତୁମେ ଆଣିଥିବା ସର ପ୍ରାୟ ସବୁ ଖାଇଦେଇଛି, ଟିକେ ବଳିଗଲା; କିଛି ଅସୁସ୍ଥ ଲାଗି ନାହିଁ, କେବଳ ପେଟଟା ସାମାନ୍ୟ ଗରମ ହୋଇଯାଇଛି ।' ଆମେ ତ ଏହା ଶୁଣି ଅବାକ୍ ! ତାଙ୍କର ପେଟରେ କିଛି ସହେ ନାହିଁ, ଆଉ ଗୋଟେ ସର ସେ ଥରକେ ପ୍ରାୟ ସବୁ ଖାଇ ଦେଇଛନ୍ତି ! ତାପରେ ଶୁଣିଲୁ—ଭାବାବସ୍ଥାରେ ଖାଇଛନ୍ତି । ଶୁଣିଲୁ—ମାଷ୍ଟର ମହାଶୟଙ୍କ ଘରେ ଖାଇସାରି ରାତି ସାଢ଼େଦଶଟାରେ ପହଞ୍ଚଲେ; ତା'ର କିଛିକ୍ଷଣ ପରେ ତାଙ୍କର ଭାବହେଲା ଓ ଅର୍ଦ୍ଧବାହ୍ୟଦଶାରେ ରାମଲାଲଦାଦାଙ୍କୁ କହିଲେ, 'ଭାରି ଭୋକ ଲାଗୁଛି, ଘରେ କ'ଣ ଅଛି ଆଣି ଦେ ।' ଏହାଶୁଣି ରାମଲାଲଦାଦା ମୁଁ ଆଣିଥିବା ସର ଖଣ୍ଡିକ ଆଣି ସାମନାରେ ଦେଲେ, ଓ ଠାକୁର ତାହା ପ୍ରାୟ ସବୁଟା ଖାଇଦେଲେ ! ଭାବାବସ୍ଥାରେ ତାଙ୍କର ବେଳେବେଳେ ଏପରି ଅସମ୍ଭବ ଭାବରେ ଭୋଜନ କରିବା ଓ ହଜମ କରିବା କଥା, ମା'ଙ୍କ ପାଖରୁ ଓ ଲକ୍ଷ୍ମୀ ଦିଦିଙ୍କ ପାଖରୁ ଶୁଣିଥିଲୁ, ସେମାନଙ୍କ କଥା ମନେ ପଡ଼ିଲା । ଏତେ କୃପା ଆମେ

ତାଙ୍କଠାରୁ ପାଇଛୁ ! ସେ ଯେ କି ଦୟା, ତାହା କହି ବୁଝାଇ ହେବ ନାହିଁ ! ଆଉ ତାଙ୍କର କି ଆକର୍ଷଣ, କିପରି ଆମେମାନେ ଯାଉଥିଲୁ, କରୁଥିଲୁ—ସେକଥା ଆମେ ମଧ୍ୟ ଜାଣୁନା ବା ବୁଝୁନା । ଏବେ ତ ଆଉ ସେପରି କେଉଁଠାକୁ ଚାଲି ଚାଲି ଅଚିହ୍ନା ଲୋକ ଘରକୁ ସାଧୁ ଦର୍ଶନ କରିବାକୁ ବା ଧର୍ମକଥା ଶୁଣିବାକୁ ଯାଇପାରୁ ନାହୁଁ ! ତାହା ଯାହାଙ୍କ ଶକ୍ତିରେ କରୁଥିଲୁ ସେଶକ୍ତି ତାଙ୍କ ସଙ୍ଗରେ ଚାଲିଯାଇଛି ! ତାଙ୍କୁ ହରାଇ ଯେ ଆମେ କାହିଁକି ବଞ୍ଚିଅଛୁ, ତା' ଜାଣୁନା !''

ଏପରି ଆହୁରି ଅନେକ ଦୃଷ୍ଟାନ୍ତ ଦିଆଯାଇପାରେ । ଯେଉଁମାନେ ଘର ବାହାରକୁ କେବେ ଯାଇ ନାହାନ୍ତି—ତାଙ୍କ ଦ୍ୱାରା ବଜାରରୁ ସଉଦା କରାଇ ଆଣିଛନ୍ତି, ଅଭିମାନ ଓ ଅହଂଙ୍କାର ଯିବ ବୋଲି ସାଧାରଣ ଭିକାରୀଙ୍କ ପରି ଲୋକମାନଙ୍କର ଘର ଘର ଯାଇ ଭିକ୍ଷା କରାଇଛନ୍ତି, ସାଙ୍ଗରେ ନେଇ ପେନେଟିର ମହୋତ୍ସବ ଇତ୍ୟାଦି ଦେଖାଇ ଆଣିଛନ୍ତି ଏବଂ ସେମାନେ ମଧ୍ୟ ମନରେ କୌଣସି ଦ୍ୱିଧା ନ ରଖି ମହାନନ୍ଦରେ ଯାହା ଠାକୁର କହିଛନ୍ତି, ତାହା ହିଁ କରିଛନ୍ତି ! ଭାବି ଦେଖିଲେ ଏହା କିଛି କମ୍ କଥା ନୁହେଁ; ସେହି ପ୍ରବଳ ଜ୍ଞାନତରଙ୍ଗ ସମ୍ମୁଖରେ ସମସ୍ତଙ୍କର ଭେଦଜ୍ଞାନପ୍ରସୂତ ଦ୍ୱିଧାଭାବ ସେହିସମୟ ପାଇଁ ଭାସିଯାଉଥିଲା । ସେହି ଉଜ୍ଜ୍ୱଳ ଭାବଘନତନୁ ଠାକୁରଙ୍କ ମଧ୍ୟରେ ସମସ୍ତେ ନିଜ ନିଜ ଭାବର ପୂର୍ଣ୍ଣ ଆଦର୍ଶ ଦେଖିବାକୁ ପାଇ ନିଜକୁ କୃତାର୍ଥ ଜ୍ଞାନ କରିଛନ୍ତି ! ପୁରୁଷ ପୁରୁଷତ୍ୱର ପୂର୍ଣ୍ଣ ବିକାଶ ଦେଖି ନତଶିର ହୋଇଛନ୍ତି; ସ୍ତ୍ରୀ ସ୍ତ୍ରୀଜନସୁଲଭ ସମସ୍ତଭାବର ବିକାଶ ତାଙ୍କଠାରେ ଦେଖିପାରି ନିଃସଙ୍କୋଚରେ ତାହାଙ୍କୁ ନିଜଠାରୁ ମଧ୍ୟ ବେଶୀ ନିଜର ଜ୍ଞାନ କରିଛନ୍ତି !

### ଠାକୁରଙ୍କର ସ୍ତ୍ରୀସୁଲଭ ହାବଭାବ ଅନୁକରଣ :

ସ୍ତ୍ରୀଜାତିସୁଲଭ ହାବଭାବ ଆଦି ଠାକୁର ବେଳେବେଳେ ଆମ ସମ୍ମୁଖରେ ନକଲ କରୁଥିଲେ । ତାହା ଏପରି ସ୍ୱାଭାବିକ ହେଉଥିଲା ଯେ, ଆମେ ଆଶ୍ଚର୍ଯ୍ୟ ହୋଇଯାଉଥିଲୁ । ଜନୈକା ସ୍ତ୍ରୀ-ଭକ୍ତ ସେହି ସମ୍ବନ୍ଧରେ ଦିନେ ଆମକୁ କହିଥିଲେ, ଠାକୁର ଦିନେ ସେମାନଙ୍କ ସାମନାରେ, ସ୍ତ୍ରୀଲୋକମାନେ ପୁରୁଷମାନଙ୍କୁ ଦେଖିଲେ ଯେପରି ହାବଭାବ କରନ୍ତି, ତାହା ଦେଖାଇବାକୁ ଆରମ୍ଭ କଲେ—''ସେ ମୁଣ୍ଡର ଲୁଗା ଟାଣିବା, କାନ ପାଖରୁ କେଶ ସଜାଡ଼ିବା, ଛାତିରେ ଲୁଗା ଢାଙ୍କି ଦେବା, ଢଙ୍ଗ କରି ନାନା ପ୍ରକାର କଥା କହିବା—ସବୁ ଏକଦମ୍ ଠିକ୍ ଠିକ୍ । ଏହା ଦେଖି ଆମେ ହସିବାକୁ ଲାଗିଲୁ, କିନ୍ତୁ ମନରେ ଲଜ୍ଜା ଓ କଷ୍ଟ ମଧ୍ୟ ହେଲା, କାରଣ ଠାକୁର ସ୍ତ୍ରୀଲୋକମାନଙ୍କୁ ଏପରି ହେୟ ଜ୍ଞାନ କରୁଛନ୍ତି । ଭାବିଲୁ—ସବୁ ସ୍ତ୍ରୀଲୋକମାନେ କ'ଣ ସେହିପରି ? ଯା'ହେଉ ଆମେମାନେ ଯେହେତୁ ସ୍ତ୍ରୀଲୋକ, ତେଣୁ ସ୍ତ୍ରୀଲୋକଙ୍କୁ ସେହିପରି କରି ବ୍ୟାଖ୍ୟା କଲେ ମନରେ କଷ୍ଟ ହୋଇପାରେ ।

ଓଃ ମା, ଠାକୁର ସଙ୍ଗେ ସଙ୍ଗେ ଆମ ମନର ଭାବ ବୁଝିପାରିଲେ ! ଆଉ କହିଲେ, 'ଆଗୋ, ତୁମମାନଙ୍କୁ ଏପରି କହୁ ନାହିଁ । ତୁମେ ସବୁ ତ ଅବିଦ୍ୟାଶକ୍ତି ନୁହଁ; ସେସବୁ କାର୍ଯ୍ୟ ଅବିଦ୍ୟାଶକ୍ତିମାନେ କରିଥାନ୍ତି !''

**ଠାକୁରଙ୍କଠାରେ ସ୍ତ୍ରୀ-ପୁରୁଷ ଉଭୟ ଭାବର ଏକତ୍ର ସମାବେଶ :**

ଠାକୁରଙ୍କଠାରେ ସ୍ତ୍ରୀ-ପୁରୁଷ ଉଭୟ ଭାବର ଏହିପ୍ରକାର ଏକତ୍ର ସମାବେଶ ତାଙ୍କର ପ୍ରତ୍ୟେକ ଭକ୍ତ ହିଁ କିଛି-ନା-କିଛି ଉପଲବ୍ଧି କରିଛନ୍ତି । ଶ୍ରୀଯୁକ୍ତ ଗିରିଶ ଏପରି ଉପଲବ୍ଧି କରି ଦିନେ ଠାକୁରଙ୍କୁ ପଚାରିଲେ, ''ମହାଶୟ, ଆପଣ ପୁରୁଷ ନା ପ୍ରକୃତି ?'' ଠାକୁର ହସି ତଦୁତ୍ତରରେ କହିଲେ, ''ଜାଣେ ନାହିଁ ।'' ଠାକୁର ଏହି କଥା ଆମ୍ଭଙ୍କ ପୁରୁଷମାନେ ଯେପରି କହିଥାଆନ୍ତି, 'ମୁଁ ପୁରୁଷ ନୁହେଁ, ସ୍ତ୍ରୀ ମଧ୍ୟ ନୁହେଁ' —ସେହି ଭାବରେ କହିଲେ, ଅଥବା ନିଜ ଭିତରେ ଉଭୟ ଭାବର ସମାନ ସମାବେଶ ଦେଖି କହିଥିଲେ, ସେକଥା ବର୍ତ୍ତମାନ କିଏ ମୀମାଂସା କରିବ ?

**ଭାବମୁଖରେ ରହୁଥିବାରୁ ହିଁ ଠାକୁର ସମସ୍ତଙ୍କର ଭାବ ବୁଝିବାକୁ ସମର୍ଥ ହେଉଥିଲେ :**

ଏହିପରି ଭାବମୟ ଠାକୁର ଭାବମୁଖରେ ରହି ସ୍ତ୍ରୀମାନଙ୍କ ପାଖରେ ସ୍ତ୍ରୀ ଓ ପୁରୁଷମାନଙ୍କ ପାଖରେ ପୁରୁଷ ହୋଇ ସେମାନଙ୍କ ପ୍ରତ୍ୟେକଙ୍କର ସମସ୍ତ ଭାବ ଠିକ୍ ଠିକ୍ ବୁଝିପାରୁଥିଲେ । ଆମମାନଙ୍କ ମଧ୍ୟରୁ କେତେଜଣଙ୍କ ପାଖରେ ଏହି କଥା ସେ ସ୍ୱୟଂ ବ୍ୟକ୍ତ କରିଛନ୍ତି । ପରମ ଭକ୍ତିମତୀ ଜନୈକା ମହିଳା[୧] ଭକ୍ତ ଆମମାନଙ୍କୁ କହିଥିଲେ, ଠାକୁର ତାଙ୍କୁ ଦିନେ କହିଥିଲେ, ''ଲୋକଙ୍କ ଆଡ଼କୁ ଚାହିଁ—କିଏ କିପରି ବୁଝିପାରେ, କିଏ ଭଲ, କିଏ ମନ୍ଦ, କିଏ ସୁଜନ୍ମା, କିଏ କୁଜନ୍ମା, କିଏ ଜ୍ଞାନୀ କିଏ ଭକ୍ତ, କାହାର (ଧର୍ମଲାଭ) ହେବ ଓ କାହାର ହେବ ନାହିଁ—ସବୁ ଜାଣିପାରେ; କିନ୍ତୁ ସେମାନଙ୍କ ମନରେ କଷ୍ଟ ହେବ ବୋଲି କହେ ନାହିଁ !'' ଭାବମୁଖରେ ରହିବାରୁ ସମଗ୍ର ଜଗତ ହିଁ ତାଙ୍କ ନିକଟରେ ସବୁ ସମୟରେ ଭାବମୟ ବୋଲି ପ୍ରତୀତ ହେଉଥିଲା । ତାଙ୍କର ବୋଧ ହେଉଥିଲା ଯେ, ସ୍ତ୍ରୀ-ପୁରୁଷ, ଗୋରୁ-ଘୋଡ଼ା, କାଠ-ମାଟି ସବୁକିଛି ଯେପରି, ବିରାଟ ମନର ଗୋଟିଏ ଗୋଟିଏ ଭିନ୍ନ ଭିନ୍ନ ଭାବସମଷ୍ଟି ରୂପରେ ପ୍ରକାଶିତ ହେଉଛି ଏବଂ ବିଲୀନ ହେଉଛି ଏବଂ ଏହି ଭାବାବରଣ ଭିତର ଦେଇ ଅନନ୍ତ ଅଖଣ୍ଡ ଚିଦାକାଶ କେଉଁଠାରେ ଅଳ୍ପ କେଉଁଠାରେ ଅଧିକ ପରିମାଣରେ ପ୍ରକାଶିତ ରହିଅଛି; ପୁଣି କେଉଁଠାରେ ଅବା ଆବରଣର ନିବିଡ଼ତାରେ ସମ୍ପୂର୍ଣ୍ଣ ଆଚ୍ଛନ୍ନ ହୋଇ ଯେପରି ନାହିଁ ବୋଲି ବୋଧ ହେଉଅଛି ! ଆନନ୍ଦମୟୀଙ୍କର ନିଷ୍କଳଙ୍କ ମାନସପୁତ୍ର ଠାକୁର ଜଗଦମ୍ବାଙ୍କର ପାଦପଦ୍ମରେ ସ୍ୱଇଚ୍ଛାରେ ଶରୀର-ମନ, ଚିତ୍ତବୃତ୍ତି ଆଦି ସର୍ବସ୍ୱ

---

୧. ସ୍ୱାମୀ ପ୍ରେମାନନ୍ଦଜୀଙ୍କର ମାତାଠାକୁରାଣୀ ।

ଅର୍ପଣ କରି ସମାଧି ବଳରେ ଅଶରୀରୀ ଆନନ୍ଦସ୍ୱରୂପ ପ୍ରାପ୍ତ ହୋଇ ତାଙ୍କ ସହିତ ଚିରକାଳ ପାଇଁ ମିଳିତ ହେବାପାଇଁ ଯାତ୍ରା କରିଥିଲେ, କିନ୍ତୁ ସେଠାରେ ପହଞ୍ଚି ଜଗନ୍ମାତାଙ୍କର ଅନ୍ୟ ପ୍ରକାରର ଇଚ୍ଛା ଜାଣିପାରିଥିଲେ ଏବଂ ତାଙ୍କର ହିଁ ଆଜ୍ଞା ଶିରୋଧାର୍ଯ୍ୟ କରି ଦ୍ୱୈତାଦ୍ୱୈତବିବର୍ଜିତ ଅନିର୍ବଚନୀୟ ଅବସ୍ଥାରେ ଲୀନ ନିଜ ମନକୁ ଜୋର କରି ପୁଣି ବିଦ୍ୟା ଆବରଣରେ ଆବୃତ୍ତ କରି ପ୍ରତିନିୟତ ମା'ଙ୍କ ଆଦେଶ ପାଳନ କରିବାକୁ ଲାଗିଲେ ! ଅନନ୍ତଭାବମୟୀ ଜଗତ୍‌ଜନନୀ ମଧ୍ୟ ଠାକୁରଙ୍କ ପ୍ରତି ପ୍ରସନ୍ନା ହୋଇ ଠାକୁରଙ୍କୁ ଦେହଧାରୀ କରି ରଖି ମଧ୍ୟ ଏକତ୍ୱର ଏତେ ଉଚ୍ଚସ୍ତରରେ ତାଙ୍କର ମନକୁ ସବୁ ସମୟରେ ସ୍ଥାପିତ କରିଥିଲେ ଯେ, ଅନନ୍ତ ବିରାଟ ମନରେ ଯେତେକିଛି ଭାବର ଉଦୟ ହେଉଅଛି, ସେସମସ୍ତ ଭାବ ସେହି ଅବସ୍ଥାରୁ ତାଙ୍କର ନିଜସ୍ୱ ହୋଇ ସବୁ ସମୟରେ ଅନୁଭୂତ ହେଉଥିଲା ଏବଂ ଏତେଦୂର ଆୟତ୍ତାଧିନ ହୋଇ ରହୁଥିଲା ଯେ, ଦେଖିଲେ ମନେ ହେଉଥିଲା— ଯିଏ ମାତା ସେ ହିଁ ସନ୍ତାନ ଏବଂ ଯିଏ ସନ୍ତାନ ସେ ହିଁ ମାତା— 'ଚିନ୍ମୟ ଧାମ, ଚିନ୍ମୟ ନାମ, ଚିନ୍ମୟ ଶ୍ୟାମ !'

ଆମେ ଯେତିକି କହିପାରିଲୁ ସେତିକି କହିଲୁ; ପାଠକ, ଏଥର ତୁମେମାନେ ଭାବିଦେଖ ଅନନ୍ତଭାବମୟ ଏହି ଠାକୁର କିଏ ?

# ଦ୍ୱିତୀୟ ଅଧ୍ୟାୟ

## ଭାବ, ସମାଧି ଓ ଦର୍ଶନ ସମ୍ବନ୍ଧରେ କେତୋଟି କଥା

ସର୍ବଗୁହ୍ୟତମଂ ଭୂୟଃ ଶୃଣୁ ମେ ପରମଂ ବଚଃ
ଇଷ୍ଟୋଽସି ମେ ଦୃଢ଼ମିତି ତତୋ ବକ୍ଷ୍ୟାମି ତେ ହିତମ୍ ॥

—ଗୀତା, ୧୮/୬୪

ଠାକୁରଙ୍କର ଆବିର୍ଭାବ ବା ପ୍ରକାଶ ପୂର୍ବରୁ କଲିକତାର ଶିକ୍ଷିତ ବା ଅଶିକ୍ଷିତ ସମସ୍ତେ ଯେ ଭାବ, ସମାଧି ବା ଆଧ୍ୟାତ୍ମିକ ରାଜ୍ୟର ଅପୂର୍ବ ଦର୍ଶନ ଉପଲବ୍ଧିସମୂହ ସମ୍ବନ୍ଧରେ ସମ୍ପୂର୍ଣ୍ଣ ଭାବରେ ଅଜ୍ଞ ଥିଲେ, ଏକଥା କହିଲେ ଅତ୍ୟୁକ୍ତି ହେବ ନାହିଁ । ଅଶିକ୍ଷିତ ଜନସାଧାରଣଙ୍କର ଏହା ସମ୍ବନ୍ଧରେ ଭୟ-ବିସ୍ମୟ-ସମ୍ଭୂତ ଗୋଟିଏ କିମ୍ଭୂତକିମାକାର ଧାରଣା ଥିଲା; ଏବଂ ନବୀନ ଶିକ୍ଷିତସମ୍ପ୍ରଦାୟ ସେତେବେଳେ ଧର୍ମଜ୍ଞାନ-ବିବର୍ଜିତ ବିଦେଶୀ ଶିକ୍ଷାର ସ୍ରୋତରେ ସମ୍ପୂର୍ଣ୍ଣରୂପେ ପ୍ରବାହିତ ହୋଇ ଏପରି ଦର୍ଶନାଦି ହେବା ଅସମ୍ଭବ ବା ମସ୍ତିଷ୍କର ବିକାରପ୍ରସୂତ ବୋଲି ମନେ କରୁଥିଲେ । ଆଧ୍ୟାତ୍ମିକ ରାଜ୍ୟର ଭାବସମାଧିରୁ ଉତ୍ପନ୍ନ ଶାରିରୀକ ବିକାରସମୂହ ସେମାନଙ୍କ ଦୃଷ୍ଟିରେ ମୂର୍ଚ୍ଛା ଓ ଶାରିରୀକ ରୋଗ ବୋଲି ହିଁ ପ୍ରତିଭାତ ହେଉଥିଲା ! ବର୍ତ୍ତମାନ ସମୟରେ ଏହି ଚିନ୍ତାଧାରାର ଅନେକ ପରିବର୍ତ୍ତନ ହେଲେ ମଧ୍ୟ ଭାବ ଏବଂ ସମାଧି-ରହସ୍ୟ ଯଥାଯଥ ବୁଝିବାକୁ ଏବେ ମଧ୍ୟ ଅତି କମ୍ ଲୋକ ସକ୍ଷମ । ଶ୍ରୀରାମକୃଷ୍ଣଦେବଙ୍କର ଭାବମୁଖରେ ରହିବା କିଞ୍ଚିତ ମାତ୍ର ବୁଝିବାକୁ ହେଲେ ସମାଧିତତ୍ତ୍ୱ ସମ୍ବନ୍ଧରେ ସାଧାରଣ ଜ୍ଞାନ ରହିବା ନିତାନ୍ତ ଆବଶ୍ୟକ । ସେଥିପାଇଁ ଏହା ବିଷୟରେ କିଛି କିଛି ଆମେ ଏଥର ପାଠକଙ୍କୁ ବୁଝାଇବା ପାଇଁ ଚେଷ୍ଟା କରିବୁ ।

### ସମାଧି ମସ୍ତିଷ୍କର ବିକାର ନୁହେଁ :

ସାଧାରଣ ମାନବ ଯାହା ଉପଲବ୍ଧି କରେ ନାହିଁ ତାହାକୁ ହିଁ ଆମେ ସଚରାଚର 'ବିକାର' ବୋଲି କହିଥାଉ । ଧର୍ମଜଗତର ସୂକ୍ଷ୍ମ ଉପଲବ୍ଧିସମୂହ କିନ୍ତୁ କେବେହେଲେ ସାଧାରଣ ମାନବମନର ଅନୁଭବର ବିଷୟ ହୋଇପାରେ ନାହିଁ; ଏଥିନିମିତ୍ତ ଶିକ୍ଷା, ଦୀକ୍ଷା ଓ ନିରନ୍ତର ଅଭ୍ୟାସାଦିର ପ୍ରୟୋଜନ । ଏସମସ୍ତ ଅସାଧାରଣ ଦର୍ଶନ ଓ ଅନୁଭବ ଇତ୍ୟାଦି ସାଧକକୁ ଦିନକୁ ଦିନ ପବିତ୍ର କରେ ଓ ନିତ୍ୟ ନୂତନ ବଳରେ ବଳୀୟାନ ଏବଂ ନୂଆ ନୂଆ ଭାବରେ ପୂର୍ଣ୍ଣ କରି କ୍ରମେ ଚିରଶାନ୍ତିର ଅଧିକାରୀ କରିଥାଏ । ତେଣୁ ଏସମସ୍ତ ଦର୍ଶନ ଇତ୍ୟାଦିକୁ 'ବିକାର' ବୋଲି କହିବା ଯୁକ୍ତିସଙ୍ଗତ କି ? 'ବିକାର' ମାତ୍ରେ ମନୁଷ୍ୟକୁ ଦୁର୍ବଳ କରେ ଓ ତାର ବୁଦ୍ଧି ହ୍ରାସ କରେ, ଏହା ସମସ୍ତଙ୍କୁ ହିଁ ସ୍ୱୀକାର କରିବାକୁ ହେବ । ଧର୍ମଜଗତର

ଦର୍ଶନ ତଥା ଅନୁଭୂତିଗୁଡ଼ିକର ଫଳ ଯେତେବେଳେ ଏହାର ସମ୍ପୂର୍ଣ୍ଣ ବିପରୀତ, ସେତେବେଳେ ସେଗୁଡ଼ିକର କାରଣ ମଧ୍ୟ ସମ୍ପୂର୍ଣ୍ଣ ବିପରୀତ ବୋଲି କହିବାକୁ ପଡ଼ିବ ଏବଂ ସେଥିପାଇଁ ଏସବୁକୁ ମସ୍ତିଷ୍କ-ବିକାର ବା ରୋଗ ବୋଲି କଦାପି କହି ହେବ ନାହିଁ ।

**ସମାଧି ଦ୍ୱାରା ହିଁ ଧର୍ମ ଲାଭ ହୁଏ ଏବଂ ଚିରଶାନ୍ତି ମିଳିଥାଏ :**

ବିଶେଷ ବିଶେଷ ଧର୍ମାନୁଭୂତିଗୁଡ଼ିକ ସେହିପରି ଦର୍ଶନାଦି ଦ୍ୱାରା ହିଁ ଚିରକାଳ ଅନୁଭୂତ ହୋଇଆସିଛି । ତେବେ ଯେପର୍ଯ୍ୟନ୍ତ ମନର ସମସ୍ତ ବୃତ୍ତି ନିରୁଦ୍ଧ ହୋଇ ମାନବ ନିର୍ବିକଳ୍ପ ଅବସ୍ଥାରେ ଉପନୀତ ଏବଂ ଅଦ୍ୱୈତଭାବରେ ଅବସ୍ଥିତ ହୁଏ, ସେ ପର୍ଯନ୍ତ ସେ ଆଧ୍ୟାତ୍ମିକ ଜଗତର ଚିରଶାନ୍ତିର ଅଧିକାରୀ ହୋଇପାରେ ନାହିଁ । ଶ୍ରୀରାମକୃଷ୍ଣଦେବ ଯେପରି କହୁଥିଲେ—"ଗୋଟିଏ କଣ୍ଟା ଫୋଡ଼ି ହୋଇଗଲେ ଅନ୍ୟ ଏକ କଣ୍ଟା ସାହାଯ୍ୟରେ ତାକୁ ବାହାର କରି ଦୁଇଟି ଯାକ କଣ୍ଟା ପକାଇ ଦେବାକୁ ହୋଇଥାଏ ।" ଶ୍ରୀଭଗବାନଙ୍କୁ ଭୁଲି ଏହି ଜଗତ-ରୂପକ ବିକାର ଉପସ୍ଥିତ ହୋଇଅଛି । ଏହି ସମସ୍ତ ନାନା ରୂପରସାଦିର ଅନୁଭବରୂପକ ବିକାର ଧର୍ମଜଗତରେ ପୂର୍ବୋକ୍ତ ଦର୍ଶନାନୁଭବାଦି ଦ୍ୱାରା ପ୍ରତିହତ ହୋଇ ମନୁଷ୍ୟକୁ କ୍ରମଶଃ ସେହି ଅଦ୍ୱୈତାନୁଭୂତିରେ ଉପସ୍ଥିତ କରେ । ସେତେବେଳେ **'ରସୋ ବୈ ସଃ'**—ଏହି ଋଷିବାକ୍ୟର ଉପଲବ୍ଧି ହୋଇ ମାନବ ଧନ୍ୟ ହୁଏ । ଏହା ହିଁ ପ୍ରଣାଳୀ । ଧର୍ମ ଜଗତର ଯେତେ କିଛି ମତ, ଅନୁଭବ, ଦର୍ଶନ ଇତ୍ୟାଦି ସବୁକିଛି ସେହି ଲକ୍ଷ୍ୟ ପଥରେ ହିଁ ମାନବକୁ ଅଗ୍ରସର କରାଏ । ସ୍ୱାମୀ ବିବେକାନନ୍ଦ ଏସମସ୍ତ ଦର୍ଶନଗୁଡ଼ିକୁ, ସାଧକ ତା'ର ଲକ୍ଷ୍ୟ ଅଭିମୁଖରେ କେତେଦୂର ଅଗ୍ରସର ହେଲା, ତା'ର ପରିଚାୟକସ୍ୱରୂପ ବୋଲି (mile-stones on the way to progress) ନିର୍ଦ୍ଦେଶ କରିଛନ୍ତି । ଅତଏବ ପାଠକ ଯେପରି ମନେ ନ କରନ୍ତି, କୌଣସି ବିଶେଷ ଭାବର କିଞ୍ଚିତ୍ ପ୍ରାବଲ୍ୟରେ ଅଥବା ଧ୍ୟାନ ସହାୟରେ ଗୋଟିଏ ଦୁଇଟି ଦେବମୂର୍ତ୍ତି ଦର୍ଶନ କଲେ ହିଁ ଧର୍ମର 'ଇତି' ହେଲା ! ତାହାହେଲେ ବିଷମ ଭ୍ରମରେ ପତିତ ହେବାକୁ ପଡ଼ିବ । ସାଧକମାନେ ଧର୍ମଜଗତରେ ଏପରି ବିଷମ ଭ୍ରମରେ ପତିତ ହୋଇ ହିଁ ଲକ୍ଷ୍ୟ ହରାଇଥାଆନ୍ତି ଏବଂ ଲକ୍ଷ୍ୟ ହରାଇ ଏକଦେଶୀ-ଭାବାପନ୍ନ ହୋଇ ପରସ୍ପର ପ୍ରତି ହିଂସା-ଦ୍ୱେଷ ଇତ୍ୟାଦିରେ ପୂର୍ଣ୍ଣ ହୋଇପଡ଼ନ୍ତି । ଶ୍ରୀଭଗବାନଙ୍କଠାରେ ଭକ୍ତି କରିବାକୁ ଯାଇ ଏପରି ଭ୍ରମ ଉପସ୍ଥିତ ହେଲେ ହିଁ ମନୁଷ୍ୟ 'ଉଗ୍ର', 'ଏକବାଗିଆ' ହୋଇଥାଏ । ଏହି ଦୋଷ ହିଁ ଭକ୍ତିପଥରେ ବିଷମ କଣ୍ଟକସ୍ୱରୂପ ଏବଂ ଏହା ମାନବର 'ହୀନବୁଦ୍ଧି'ରୁ ସୃଷ୍ଟି ହୋଇଥାଏ ।

## ଦେବମୂର୍ତ୍ତି ଇତ୍ୟାଦି ଦର୍ଶନ ନ ହେଲେ ଯେ ଧର୍ମପଥରେ ଅଗ୍ରସର କରି ହୁଏ ନାହିଁ, ତାହା ନୁହେଁ :

ଆହୁରି ମଧ୍ୟ ଏହିପରି ଦର୍ଶନାଦିରେ ବିଶ୍ୱାସୀ ହୋଇ ଅନେକେ ବୁଝିଥାଆନ୍ତି ଯେ, ଯାହାର ଏପରି ଦର୍ଶନ ହୋଇ ନାହିଁ, ସେ ଧାର୍ମିକ ନୁହେଁ । ଧର୍ମ ଓ ଲକ୍ଷ୍ୟବିହୀନ ଅଦ୍ଭୁତ-ଦର୍ଶନ-ପିପାସା (miracle mongering) ସେମାନଙ୍କ ନିକଟରେ ଗୋଟିଏ କଥା ବୋଲି ପ୍ରତିଭାତ ହୋଇଥାଏ । କିନ୍ତୁ ସେହି ପ୍ରକାର ପିପାସାରେ ଧର୍ମଲାଭ ନ ହୋଇ ମାନବ ଦିନକୁ ଦିନ ସମସ୍ତ ବିଷୟରେ ଦୁର୍ବଳ ହୋଇପଡ଼େ । ଯାହାଦ୍ୱାରା ଏକନିଷ୍ଠ ବୁଦ୍ଧି ଓ ଚରିତ୍ରବଳ ନ ଆସେ, ଯେଉଁଥିରେ ମାନବ ପବିତ୍ରତାର ଦୃଢ଼ଭୂମିରେ ଦଣ୍ଡାୟମାନ ହୋଇ ସତ୍ୟ ନିମିତ୍ତ ସମଗ୍ର ଜଗତକୁ ତୁଚ୍ଛ କରି ନ ପାରେ, ଯେଉଁଥିରେ କାମଗନ୍ଧହୀନ ନ ହୋଇ ମାନବ ଦିନକୁ ଦିନ ନାନା ବାସନା-କାମନାରେ ଜଡ଼ୀଭୂତ ହୁଏ, ତାହା ଧର୍ମରାଜ୍ୟର ବହିର୍ଭୂତ । ଅପୂର୍ବ ଦର୍ଶାନାଦି ଯଦି ତୁମର ଜୀବନରେ ସେହିପରି ଫଳ ପ୍ରସବ ନ କରେ, ଅଥଚ ଦର୍ଶନାଦି ମଧ୍ୟ ହେଉଥାଏ, ତେବେ ଜାଣିବାକୁ ହେବ— ତୁମେ ଏବେ ମଧ୍ୟ ଧର୍ମରାଜ୍ୟର ବାହାରେ ରହିଅଛ, ତୁମର ଏସମସ୍ତ ଦର୍ଶନାଦି ମସ୍ତିଷ୍କ-ବିକାରଜନିତ, ତାହାର କିଛି ମୂଲ୍ୟ ନାହିଁ । କିନ୍ତୁ ଯଦି ଅପୂର୍ବ ଦର୍ଶନାଦି ନ କରି ମଧ୍ୟ ତୁମେ ସେହିପ୍ରକାର ବଳରେ ବଳୀୟାନ୍ ହେଉଅଛ, ତେବେ ବୁଝିବ ତୁମେ ଠିକ୍ ବାଟରେ ଚାଲୁଅଛ, ସମୟାନୁକ୍ରମେ ଯଥାର୍ଥ ଦର୍ଶନାଦି ମଧ୍ୟ ତୁମର ଉପସ୍ଥିତ ହେବ ।

## ତ୍ୟାଗ, ବିଶ୍ୱାସ ଓ ଚରିତ୍ରର ବଳ ହିଁ ଧର୍ମଲାଭର ପରିଚାୟକ :

ଶ୍ରୀରାମକୃଷ୍ଣଦେବଙ୍କର ଭକ୍ତମାନଙ୍କ ଭିତରେ ଅନେକଙ୍କର ଭାବ ସମାଧି ହେଉଛି, କିନ୍ତୁ ତାଙ୍କ ନିକଟକୁ ଅନେକ ଦିନ ଯିବା-ଆସିବା କରି ମଧ୍ୟ ଏପରି କିଛି ହେଲା ନାହିଁ ଦେଖି ଆମର ଜନୈକ ବନ୍ଧୁ[୧] ଏକ ସମୟରେ ବିଶେଷ ବ୍ୟାକୁଳ ହେଲେ ଏବଂ ଶ୍ରୀରାମକୃଷ୍ଣ ଦେବଙ୍କ ନିକଟରେ ସଜଳନୟନରେ ଉପସ୍ଥିତ ହୋଇ ପ୍ରାଣର କାତରତା ନିବେଦନ କଲେ । ଶ୍ରୀରାମକୃଷ୍ଣଦେବ ସେଥିରେ ତାଙ୍କୁ ବୁଝାଇ କହିଲେ, ''ତୁ ପିଲାଟା ତ' ଭାରୀ ବୋକା; ଭାବିଛୁ, କେବଳ ଏହାହେଲେ ହିଁ ସବୁ ହୋଇଗଲା ? ଏହା ଖୁବ୍ ବଡ଼ ଜିନିଷ ? ଠିକ୍ ଠିକ୍ ତ୍ୟାଗ, ବିଶ୍ୱାସ ଏହାଠାରୁ ଢେର ବଡ଼ ଜିନିଷ ବୋଲି ଜାଣିବୁ । ନରେନ୍ଦ୍ରର (ସ୍ୱାମୀ ବିବେକାନନ୍ଦଙ୍କର) ଏସବୁ ତ ବିଶେଷ ହୁଏ ନାହିଁ; କିନ୍ତୁ ଦେଖ ତ—ତା'ର କି ତ୍ୟାଗ, କି ବିଶ୍ୱାସ, କିପରି ମନର ତେଜ ଓ ନିଷ୍ଠା !''

---

୧. ଶ୍ରୀଯୁକ୍ତ ଗୋପାଳ ଚନ୍ଦ୍ର ଘୋଷ ।

## 'ପକ୍କା ମୁଁ' ଓ ଶୁଦ୍ଧ ବାସନା । ଜୀବନ୍ମୁକ୍ତ, ଆଧିକାରିକ ବା ଈଶ୍ୱରକୋଟି ଓ ଜୀବକୋଟି :

ଏକନିଷ୍ଠ ବୁଦ୍ଧି, ଦୃଢ଼ବିଶ୍ୱାସ ଓ ଐକାନ୍ତିକ ଭକ୍ତି ସହାୟରେ ସାଧକର ଯେତେବେଳେ ବାସନାସମୂହ କ୍ଷୀଣ ହୋଇ ଶ୍ରୀଭଗବାନଙ୍କ ସହିତ ଅଦ୍ୱୈତଭାବରେ ଅବସ୍ଥାନର ସମୟ ଆସି ଉପସ୍ଥିତ ହୁଏ, ସେତେବେଳେ ପୂର୍ବ-ସଂସ୍କାର-ବଶତଃ କାହା କାହା ମନରେ କେବେକେବେ, 'ମୁଁ ଲୋକ-କଲ୍ୟାଣ ସାଧନ କରିବି, ଯାହାଦ୍ୱାରା ବହୁ ଲୋକ ସୁଖୀ ହୋଇ ପାରିବେ ତାହା କରିବି'—ଏପରି ଶୁଦ୍ଧ ବାସନା ଉଦୟ ହୋଇଥାଏ । ଏହି ବାସନାବଶ ଯୋଗୁଁ ସାଧକ ଆଉ ପୂର୍ଣ୍ଣରୂପରେ ଅଦ୍ୱୈତଭାବରେ ଅବସ୍ଥାନ କରିପାରେ ନାହିଁ । ସେହି ଉଚ୍ଚ ଭାବଭୂମିରୁ କିଞ୍ଚିତ୍ ମାତ୍ର ନିମ୍ନଗାମୀ ହୋଇ 'ମୁଁ, ମୋର'-ରାଜ୍ୟକୁ ପୁନରାୟ ଆଗମନ କରେ । କିନ୍ତୁ ସେହି 'ମୁଁ' ଶ୍ରୀଭଗବାନଙ୍କର ଦାସ, ସନ୍ତାନ ବା ଅଂଶ 'ମୁଁ' ଏହିପରି ଶ୍ରୀଭଗବାନଙ୍କ ସହିତ ଏକ ଘନିଷ୍ଠ ସମ୍ବନ୍ଧ ନେଇ ସର୍ବଦା ରହିଥାଏ । ସେହି 'ମୁଁ' ଦ୍ୱାରା ଆଉ ଅହର୍ନିଶି କାମ-କାଞ୍ଚନର ସେବା କରିବା ଚଳେ ନାହିଁ । ସେହି 'ମୁଁ' ଶ୍ରୀଭଗବାନଙ୍କୁ ଏକମାତ୍ର ସାରତତ୍ତ୍ୱ ଜାଣି ସଂସାରର ରୂପ-ରସାଦି-ଭୋଗ ପାଇଁ ଲାଳାୟିତ ହୁଏ ନାହିଁ । ଯେତିକି ମାତ୍ର ରୂପ-ରସାଦିବିଷୟ-ଗ୍ରହଣ ତାହାର ଉଦ୍ଦେଶ୍ୟ ବା ଲକ୍ଷ୍ୟର ସହାୟକ, ସେତିକି କେବଳ ସେ ଇଚ୍ଛା ଅନୁଯାୟୀ ଗ୍ରହଣ କରିଥାଏ, ଏହି ପର୍ଯ୍ୟନ୍ତ । ଯେଉଁମାନେ ପୂର୍ବେ ବଦ୍ଧ ଥିଲେ, ପରେ ସାଧନ କରି ସିଦ୍ଧିଲାଭ କରିଛନ୍ତି ଏବଂ ଜୀବନର ଅବଶିଷ୍ଟ କାଳ କୌଣସି ପ୍ରକାରେ ଭଗବଦ୍‌ଭାବରେ କଟାଉଛନ୍ତି, ସେମାନଙ୍କୁ ହିଁ 'ଜୀବନ୍ମୁକ୍ତ' କୁହାଯାଏ । ଯେଉଁମାନେ ଈଶ୍ୱରଙ୍କ ସହିତ ସେହିପରି ବିଶିଷ୍ଟ ସମ୍ବନ୍ଧର ଭାବ ନେଇ ହିଁ ଜନ୍ମଗ୍ରହଣ କରିଛନ୍ତି ଏବଂ ଏହି ଜନ୍ମରେ କୌଣସି ସମୟରେ ହିଁ ସାଧାରଣ ମାନବ ପରି ବନ୍ଧନଯୁକ୍ତ ହୋଇ ନାହାଁନ୍ତି, ସେହିମାନେ ହିଁ ଶାସ୍ତ୍ରରେ 'ଆଧିକାରିକ ପୁରୁଷ', 'ଈଶ୍ୱରକୋଟି' ବା 'ନିତ୍ୟମୁକ୍ତ' ପ୍ରଭୃତି ଶବ୍ଦରେ ଅଭିହିତ ହୋଇଛନ୍ତି । ଆହୁରି ଗୋଟିଏ ଗୋଷ୍ଠୀର ସାଧକ ଅଛନ୍ତି, ଯେଉଁମାନେ ଅଦ୍ୱୈତଭାବ ଲାଭ କରିବା ପରେ ଏଜନ୍ମରେ ବା ପରଜନ୍ମରେ ସଂସାରରେ ଲୋକ କଲ୍ୟାଣ କରିବାକୁ ମଧ୍ୟ ଆଉ ଫେରି ନ ଥାନ୍ତି—ଏମାନେ ହିଁ 'ଜୀବକୋଟି' ବୋଲି ଅଭିହିତ ହୋଇଥାଆନ୍ତି ଓ ଏମାନଙ୍କର ସଂଖ୍ୟା ଅଧିକ ବୋଲି ଆମେ ଗୁରୁଙ୍କ ମୁଖରୁ ଶୁଣିଅଛୁ ।

## ଅଦ୍ୱୈତଭାବ ଉପଲବ୍ଧିର ତାରତମ୍ୟ :

ପୁଣି ଯେଉଁମାନେ ପୂର୍ବୋକ୍ତ ରୂପେ ଅଦ୍ୱୈତଭାବ-ଲାଭ ପରେ ଲୋକକଲ୍ୟାଣ ନିମିତ୍ତ ସମାଧିଭୂମିରୁ ଓହ୍ଲାଇ ଆସନ୍ତି, ସେହି ସମସ୍ତ ସାଧକମାନଙ୍କ ଭିତରେ ମଧ୍ୟ ଅଖଣ୍ଡସଚ୍ଚିଦାନନ୍ଦସ୍ୱରୂପ ଜଗତକାରଣଙ୍କ ସହିତ ଅଦ୍ୱୈତଭାବ

ଉପଲବ୍ଧି କରିବାର ତାରତମ୍ୟ ଅଛି । କେହି ସେହି ଭାବସମୁଦ୍ର ଦୂରରୁ ଦର୍ଶନ କରିଛନ୍ତି ମାତ୍ର, କେହି ବା ଆହୁରି ନିକଟକୁ ଯାଇ ସ୍ପର୍ଶ କରିଛନ୍ତି ମାତ୍ର, କେହିବା ଏହି ସମୁଦ୍ରର ଜଳ ଅଳ୍ପ-ସ୍ୱଳ୍ପ ପାନ କରିଛନ୍ତି । ଶ୍ରୀରାମକୃଷ୍ଣଦେବ ଯେପରି କହୁଥିଲେ, ''ଦେବର୍ଷି ନାରଦ ଦୂରରୁ ଏହି ସମୁଦ୍ର ଦର୍ଶନ କରି ଫେରିଛନ୍ତି, ଶୁକଦେବ ତିନିଥର ମାତ୍ର ସ୍ପର୍ଶ କରିଛନ୍ତି, ଆଉ ଜଗତ୍‌ଗୁରୁ ଶିବ ତିନି ଗଣ୍ଡୁଷ ଜଳ ପାନ କରି ଶବ ହୋଇ ପଡ଼ିରହିଛନ୍ତି !'' ଏହି ଅଦ୍ୱୈତଭାବରେ ଅଳ୍ପକ୍ଷଣ ପାଇଁ ତନ୍ମୟ ହେବାକୁ ହିଁ 'ନିର୍ବିକଳ୍ପ ସମାଧି' କୁହାଯାଏ ।

**ଶାନ୍ତ, ଦାସ୍ୟାଦିଭାବର ଗଭୀରତାରେ ସବିକଳ୍ପ ସମାଧି :**

ଅଦ୍ୱୈତଭାବ-ଉପଲବ୍ଧିର ଯେପରି ତାରତମ୍ୟ ଅଛି, ସେହିପରି ନିମ୍ନସ୍ତରରେ ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟାଦି ଭାବସମୂହର ଅଥବା ଯେଉଁ ଭାବସମୂହ ଅଦ୍ୱୈତଭାବରେ ସାଧକକୁ ଉପନୀତ କରେ, ସେସବୁର ଉପଲବ୍ଧି କରିବା ଭିତରେ ମଧ୍ୟ ତାରତମ୍ୟ ଅଛି । କେହି ଏହାର କୌଣସିଟି ସମ୍ପୂର୍ଣ୍ଣ ଭାବରେ ଉପଲବ୍ଧି କରି କୃତାର୍ଥ ହୋଇ ଥାଆନ୍ତି, ପୁଣି କେହି ଏହାର ଆଭାସ ମାତ୍ର ହିଁ ପାଇଥାଆନ୍ତି । ଏହି ନିମ୍ନସ୍ତରର ଭାବଗୁଡ଼ିକ ମଧ୍ୟରେ କୌଣସି ଗୋଟିଏର ସମ୍ପୂର୍ଣ୍ଣ ଉପଲବ୍ଧି ହିଁ 'ସବିକଳ୍ପ ସମାଧି' ନାମରେ ଯୋଗଶାସ୍ତ୍ରରେ ନାମିତ ହୋଇଅଛି ।

**ମାନସିକ ଓ ଆଧ୍ୟାତ୍ମିକ ଭାବରେ ଶାରୀରିକ ବିକାର ଅବଶ୍ୟମ୍ଭାବୀ । ଭାବସମାଧିର ଗଭୀରତା କିପରି ଜଣାଯାଇଥାଏ :**

ଉଚ୍ଚସ୍ତରର ଅଦ୍ୱୈତଭାବ ବା ନିମ୍ନସ୍ତରର ସବିକଳ୍ପଭାବ, ସମସ୍ତ ପ୍ରକାର ଭାବରେ ହିଁ ସାଧକର ଅପୂର୍ବ ଶାରୀରିକ ପରିବର୍ତ୍ତନ ଏବଂ ଅଦ୍ଭୁତ ଦର୍ଶନାଦି ଆସି ଉପସ୍ଥିତ ହୁଏ । ଏହି ଶରୀରବିକାର ଓ ଅଦ୍ଭୁତ ଦର୍ଶନାଦିର ପ୍ରକାଶ ଭିନ୍ନ ଭିନ୍ନ ଭାବରେ ପରିଲକ୍ଷିତ ହୁଏ । କାହାର ସାମାନ୍ୟ ଉପଲବ୍ଧିରେ ହିଁ ଶାରୀରିକ ବିକାର ଓ ଦର୍ଶନାଦି ଦେଖାଯାଏ, ଆଉ କାହାର ଅତି ଗଭୀରଭାବରେ ଏସମସ୍ତ ଭାବ ଉପଲବ୍ଧି ହେଲେ ମଧ୍ୟ ଶାରୀରିକ ବିକାର ଏବଂ ଦର୍ଶନାଦି ଅତି ଅଳ୍ପ ହିଁ ଦେଖାଯାଏ । ଶ୍ରୀରାମକୃଷ୍ଣଦେବ ଯେପରି କହୁଥିଲେ, ''ଛୋଟ ପୋଖରୀର ଅଳ୍ପ ଜଳରେ ଯଦି ଗୋଟିଏ-ଦୁଇଟା ହାତୀ ପଶନ୍ତି, ତେବେ ଜଳ ଉଚ୍ଛୁଳି ପଡ଼େ, କିନ୍ତୁ ବଡ଼ ସରୋବରର ଗଭୀର ଜଳରେ କୋଡ଼ିଏ ଗଣ୍ଡା ହାତୀ ପଶିଲେ ମଧ୍ୟ ଜଳ ସ୍ଥିର ରହିଥାଏ ।'' ଅତଏବ ଶାରୀରିକ ବିକାର ଓ ଦର୍ଶନାଦି ଯେ ଭାବର ଗଭୀରତାର ଧ୍ରୁବ ଲକ୍ଷଣ, ତାହା ମଧ୍ୟ ନୁହେଁ । ଭାବର ଗଭୀରତା ଯଦି ମାପିବାକୁ ହୁଏ, ତେବେ ପୂର୍ବରୁ ଯେପରି କୁହାଯାଇଛି—ନିଷ୍ଠା, ତ୍ୟାଗ, ଚରିତ୍ର ବଳ, ବିଷୟ-କାମନାର ହ୍ରାସ ପ୍ରଭୃତି ଦେଖି ହିଁ ଅନୁମାନ କରିବାକୁ ହେବ । ଭାବସମାଧିରେ କେତେ ଖାଦ ଅଛି, ତାହା କେବଳ ଏହି କଷ୍ଟିପଥରରେ ହିଁ ପରୀକ୍ଷିତ ହୋଇପାରେ, ତାଛଡ଼ା

ଆଉ ଅନ୍ୟ ଉପାୟ ନାହିଁ । ଅତଏବ ଏଥିରୁ ବେଶ୍ ବୁଝାଯାଉଛି ଯେ, ଯେଉଁମାନେ ସମସ୍ତ ପ୍ରକାରର ବିଷୟବାସନା-ବର୍ଜିତ ହୋଇ ଶୁଦ୍ଧ-ବୁଦ୍ଧ-ମୁକ୍ତ-ସ୍ୱଭାବ ପ୍ରାପ୍ତ ହୋଇଛନ୍ତି, ସେମାନଙ୍କ ଭିତରେ ହିଁ କେବଳ ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ବା ମଧୁର—ଯେକୌଣସି ଭାବର ଯଥାଯଥ ସର୍ବାଙ୍ଗସମ୍ପୂର୍ଣ୍ଣ ଛବି ଦେଖିପାରିବା ସମ୍ଭବ; କିନ୍ତୁ ଯେଉଁମାନେ କାମକାଞ୍ଚନ-ବାସନାବିଜଡ଼ିତ, ସେମାନଙ୍କ ଭିତରେ ନୁହେଁ । କାମାନ୍ଧ କାମନାର ଆକର୍ଷଣ ହିଁ ବୁଝେ—କାମଗନ୍ଧରହିତ ଯେଉଁ ମନର ଆବେଗ, ତାହା ସେ କିପରି ବୁଝିବ ?

### ସବୁପ୍ରକାରର ଭାବ ସମ୍ପୂର୍ଣ୍ଣ ଉପଲବ୍ଧି କରିବାକୁ ଅବତାରମାନେ ହିଁ ସକ୍ଷମ । ଦୃଷ୍ଟାନ୍ତ—ଠାକୁରଙ୍କ ସମାଧି ବିଷୟ :

ଭାବସମାଧିର ଦାର୍ଶନିକ ତତ୍ତ୍ୱ ଶ୍ରୀଗୁରୁଙ୍କ ମୁଖରୁ ଆମେ ଯେପରି ଶୁଣିଅଛୁ, ତାହା ହିଁ ଏଠାରେ ସଂକ୍ଷେପରେ ବର୍ଣ୍ଣନା କରିବାକୁ ଚେଷ୍ଟା କରୁଅଛୁ । ଆହୁରି କେତୋଟି କଥା ଏସମ୍ବନ୍ଧରେ କହିବା ଏଠାରେ ପ୍ରୟୋଜନ । ତାହାହେଲେ ପାଠକ ତାହା ବିଶଦଭାବରେ ବୁଝିପାରିବେ । ସାଧକମାନଙ୍କ ମଧ୍ୟରେ ଶାନ୍ତ ଦାସ୍ୟାଦି ଓ ଅଦ୍ୱୈତ-ଭାବୋପଲବ୍ଧିର ତାରତମ୍ୟ ଦେଖାଯିବା ସମ୍ବନ୍ଧରେ ଯେଉଁ ସମସ୍ତ କଥା ପୂର୍ବରୁ କୁହାଗଲା, ସେଥିରେ ଯେପରି କେହି ମନେ ନ କରନ୍ତି ଯେ, ଈଶ୍ୱରାବତାରମାନେ ମଧ୍ୟ ଭାବରାଜ୍ୟରେ କୌଣସି ପ୍ରକାରର ଗଣ୍ଡି ଭିତରେ ଆବଦ୍ଧ ଥାଆନ୍ତି । ସେମାନେ ଶାନ୍ତ-ଦାସ୍ୟାଦି ଯେତେବେଳେ ଯେଉଁ ଭାବ ଇଚ୍ଛା କରନ୍ତି, ତାହା ପୂର୍ଣ୍ଣମାତ୍ରାରେ ନିଜ ଜୀବନରେ ପ୍ରଦର୍ଶନ କରିପାରନ୍ତି, ତା'ଛଡ଼ା ଅଦ୍ୱୈତଭାବ ଅବଲମ୍ବନରେ ଭଗବାନଙ୍କ ସହିତ ଏକତ୍ୱାନୁଭବରେ ଏତେଦୂର ଅଗ୍ରସର ହୋଇ ପାରନ୍ତି ଯେ, ଜୀବନ୍ମୁକ୍ତ, ନିତ୍ୟମୁକ୍ତ ବା ଈଶ୍ୱରକୋଟି କୌଣସି ପ୍ରକାରର ଜୀବଙ୍କର ତାହା ଆୟତ୍ତସାଧ୍ୟ ନୁହେଁ । ରସସ୍ୱରୂପ, ଆନନ୍ଦସ୍ୱରୂପ ସହିତ ଏତେଦୂର ଏକତ୍ୱରେ ଅଗ୍ରସର ହୋଇ ପୁନଶ୍ଚ ସେଠାରୁ ବିଯୁକ୍ତ ହେବା ଏବଂ 'ମୁଁ ଓ ମୋର' ରାଜ୍ୟକୁ ପୁନରାୟ ଓହ୍ଲାଇ ଆସିବା—ସାଧାରଣ ଜୀବ ପାଇଁ କଦାପି ସମ୍ଭବପର ନୁହେଁ । ଏହା କେବଳ ଅବତାରପ୍ରଥିତ ପୁରୁଷମାନଙ୍କ ପକ୍ଷରେ ସମ୍ଭବ । ସେମାନଙ୍କର ଅଦୃଷ୍ଟପୂର୍ବ ଉପଲବ୍ଧିସମୂହ ଲିପିବଦ୍ଧ କରି ହିଁ ଆଧ୍ୟାତ୍ମିକ ଜଗତରେ ବେଦାଦି ସର୍ବଶାସ୍ତ୍ରର ଉତ୍ପତ୍ତି ହୋଇଅଛି । ଅତଏବ ସେମାନଙ୍କର ଆଧ୍ୟାତ୍ମିକ ଉପଲବ୍ଧିଗୁଡ଼ିକ ଅନେକ ସ୍ଥଳରେ ଯେ ବେଦାଦିଶାସ୍ତ୍ରନିବଦ୍ଧ ଉପଲବ୍ଧିଗୁଡ଼ିକୁ ଅତିକ୍ରମ କରିବ—ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ଶ୍ରୀରାମକୃଷ୍ଣଦେବ ଯେପରି କହୁଥିଲେ, "ଏଠାକାର ଅବସ୍ଥା (ମୋର ଉପଲବ୍ଧି) ବେଦ ବେଦାନ୍ତରେ ଯାହା ଲେଖାଅଛି, ସେଗୁଡ଼ିକୁ ଅନେକ ପଛରେ ପକାଇ ଆଗେଇ ଯାଇଛି !" ଶ୍ରୀରାମକୃଷ୍ଣଦେବ ଏହି ଶ୍ରେଣୀର ପୁରୁଷମାନଙ୍କ ମଧ୍ୟରେ ଅଗ୍ରଣୀ ଥିଲେ ବୋଲି

ନିରନ୍ତର ଛଅମାସ କାଳ ଅଦ୍ୱୈତ ଭାବରେ ପୂର୍ଣ୍ଣରୂପରେ ଅବସ୍ଥାନ କରି ମଧ୍ୟ, ପୁନଶ୍ଚ 'ବହୁଜନହିତାୟ' ଲୋକଶିକ୍ଷା ନିମନ୍ତେ, 'ମୁଁ ମୋର' ରାଜ୍ୟରେ ଫେରିବାକୁ ସମର୍ଥ ହୋଇଥିଲେ । ଏହା ବଡ଼ ଅଦ୍ଭୁତ କଥା । ଏହା ସମ୍ବନ୍ଧରେ କେତୋଟି କଥା ପାଠକଙ୍କୁ ଏଠାରେ କହିବା ଅସଙ୍ଗତ ହେବ ନାହିଁ ।

### ବେଦାନ୍ତ-ଚର୍ଚ୍ଚା କରିବାକୁ ବ୍ରାହ୍ମଣୀଙ୍କ ନିଷେଧ :

ଶ୍ରୀମତ୍ ତୋତାପୁରୀଙ୍କ ନିକଟରୁ ସନ୍ନ୍ୟାସ ଗ୍ରହଣ କରିବା ପରେ ଠାକୁରଙ୍କ ତୃତୀୟ ଦିନରେ ବେଦାନ୍ତ-ଶାସ୍ତ୍ରୋକ୍ତ ନିର୍ବିକଳ୍ପ ସମାଧି ବା ଭଗବାନଙ୍କ ସହିତ ଅଦ୍ୱୈତଭାବରେ ଅବସ୍ଥାନର ଚରମ ଉପଲବ୍ଧି ହୋଇଥିଲା । ସେହି ସମୟରେ ଠାକୁରଙ୍କ ତନ୍ତ୍ରୋକ୍ତ ସବୁ ପ୍ରକାରର ସାଧନା ହୋଇ ସାରିଥିଲା ଏବଂ ଯିଏ ସେହି ସମସ୍ତ ସାଧନା ସମୟରେ ବୈଧ ଦ୍ରବ୍ୟାଦି ସଂଗ୍ରହ କରି ଏବଂ ସମସ୍ତ ଦ୍ରବ୍ୟର ବ୍ୟବହାରପ୍ରଣାଳୀ ପ୍ରଭୃତି ଦେଖାଇ ତାଙ୍କୁ ସହାୟତା କରିଥିଲେ, ସେହି ବିଦୁଷୀ ଭୈରବୀ ମଧ୍ୟ (ଠାକୁର ତାଙ୍କୁ ଆମ ପାଖରେ 'ବ୍ରାହ୍ମଣୀ' ବୋଲି କହୁଥିଲେ) ଦକ୍ଷିଣେଶ୍ୱରରେ ଠାକୁରଙ୍କ ନିକଟରେ ରହୁଥିଲେ । କାରଣ, ଠାକୁରଙ୍କ ଶ୍ରୀମୁଖରୁ ଆମେ ଶୁଣିଅଛୁ, ଉକ୍ତ 'ବ୍ରାହ୍ମଣୀ' ବା ଭୈରବୀ ତାଙ୍କୁ ଶ୍ରୀମତ୍ ତୋତାପୁରୀଙ୍କ ସହିତ ଘନିଷ୍ଠ ଭାବରେ ମିଳାମିଶା କରିବାକୁ ନିଷେଧ କରି କହୁଥିଲେ— ''ବାବା, ଏହାଙ୍କ ସଙ୍ଗରେ ଏତେ ମିଳାମିଶା କର ନାହିଁ, ଏହାଙ୍କର ସବୁ ଶୁଷ୍କ ଭାବ; ତେଣୁ ତାଙ୍କ ସହିତ ଏତେ ମିଳାମିଶା କଲେ ତୁମର ଭାବ-ପ୍ରେମ ଇତ୍ୟାଦି କିଛି ରହିବ ନାହିଁ ।'' କିନ୍ତୁ ଠାକୁର ଏହି କଥାରେ ତିଳେମାତ୍ର ବିଚଳିତ ନ ହୋଇ ଅହର୍ନିଶି ସେତେବେଳେ ବେଦାନ୍ତ-ବିଚାର ଓ ଉପଲବ୍ଧିରେ ନିମଗ୍ନ ରହୁଥିଲେ ।

### ଠାକୁରଙ୍କର ନିର୍ବିକଳ୍ପ ଭୂମିରେ ସର୍ବଦା ରହିବାର ସଂକଳ୍ପ ଓ ଉକ୍ତ ଭୂମିର ସ୍ୱରୂପ :

ଏଗାର ମାସ ଦକ୍ଷିଣେଶ୍ୱରରେ ଅବସ୍ଥାନ କରି ଶ୍ରୀମତ୍ ତୋତାପୁରୀ ଚାଲିଗଲେ । ଠାକୁରଙ୍କର ସେତେବେଳେ ଦୃଢ଼ ସଂକଳ୍ପ ହେଲା— 'ମୁଁ ମୋର' ରାଜ୍ୟରେ ଆଉ ନ ରହି ନିରନ୍ତର ଭଗବାନଙ୍କ ସହିତ ଏକତ୍ୱାନୁଭବରେ ବା ଅଦ୍ୱୈତଜ୍ଞାନରେ ଅବସ୍ଥାନ କରିବି ଏବଂ ସେ ତଦ୍ରୂପ ଆଚରଣ ମଧ୍ୟ କରିବାକୁ ଲାଗିଲେ । ତାହା ବଡ଼ ଅପୂର୍ବ କଥା— ସେତେବେଳେ ଶରୀର ଯେ ଅଛି, ଠାକୁରଙ୍କର ସେବିଷୟରେ ଆଦୌ ହୋସ୍ ନ ଥିଲା । ଖାଇବି, ଶୋଇବି, ଶୌଚାଦି କରିବି— ଏସମସ୍ତ କଥା ମଧ୍ୟ ମନରେ ଆସୁ ନ ଥିଲା । ତେଣୁ ଅନ୍ୟମାନଙ୍କ ସହିତ କଥାବାର୍ତ୍ତା କରିବା— ସେ ତ ଅନେକ ଦୂରର କଥା ! ସେହି ଅବସ୍ଥାରେ 'ମୁଁ ମୋର' ନାହିଁ— 'ତୁମେ ତୁମର' ମଧ୍ୟ ନାହିଁ ! 'ଦୁଇ' ନାହିଁ; ଏକ ମଧ୍ୟ ନାହିଁ !

କାରଣ, 'ଦୁଇ' ର ସ୍ମୃତି ରହିଲେ ସିନା 'ଏକ'ର ଉପଲବ୍ଧି ହେବ । ସେଠାରେ ମନର ସମସ୍ତ ବୃତ୍ତି ସ୍ଥିର—ଶାନ୍ତ ! କେବଳ—

କିମପି ସତତବୋଧଂ କେବଲାନନ୍ଦରୂପଂ
ନିରୂପମମତିବେଲଂ ନିତ୍ୟମୁକ୍ତଂ ନିରୀହମ୍ ।
ନିରବଧିଗଗନାଭଂ ନିଷ୍କଲଂ ନିର୍ବିକଲ୍ପଂ
ହୃଦି କଲୟତି ବିଦ୍ୱାନ୍ ବ୍ରହ୍ମପୂର୍ଣ୍ଣଂ ସମାଧୌ ।।
ପ୍ରକୃତି ବିକୃତି ଶୂନ୍ୟଂ ଭାବନାତୀତ ଭାବଂ ।[୧]

* *

କେବଳ ଆନନ୍ଦ ! ଆନନ୍ଦ ! —ତା'ର ଦିଗ ନାହିଁ, ଦେଶ ନାହିଁ, ଅବଲମ୍ବନ ନାହିଁ, ରୂପ ନାହିଁ, ନାମ ନାହିଁ । କେବଳ ଅଶରୀରୀ ଆତ୍ମା ନିଜର ଅନିର୍ବଚନୀୟ ଆନନ୍ଦମୟ ଅବସ୍ଥାରେ, ମନବୁଦ୍ଧିର ଗୋଚରରେ ଅବସ୍ଥିତ ଯେତେପ୍ରକାରର ଭାବରାଶି ଅଛି, ସେସମସ୍ତର ଅତୀତ ଏକ ପ୍ରକାର ଭାବାତୀତ ଭାବରେ ଅବସ୍ଥିତ ! ଯାହାକୁ ଶାସ୍ତ୍ର 'ଆତ୍ମା ସହିତ ଆତ୍ମାର ରମଣ' ବୋଲି ସୂଚାଇଛନ୍ତି ! —ଏହିପରି ଏକ ଅନିର୍ବଚନୀୟ ଅବସ୍ଥାର ଉପଲବ୍ଧି ଠାକୁରଙ୍କର ସେତେବେଳେ ନିରନ୍ତର ହୋଇଥିଲା ।

**ଠାକୁରଙ୍କ ମନର ଅଦ୍ଭୁତ ଗଠନ :**

ଠାକୁର କହୁଥିଲେ, ବେଦାନ୍ତର ନିର୍ବିକଳ୍ପ ସମାଧି-ଉପଲବ୍ଧିରେ ଉଠିବା ପଥରେ ସଂସାରର କୌଣସି ପଦାର୍ଥ ବା କୌଣସି ସମ୍ବନ୍ଧ ତାଙ୍କର ଅନ୍ତରାୟ ହୋଇ ନାହିଁ । କାରଣ, ପୂର୍ବରୁ ହିଁ ତ ସେ ଶ୍ରୀଶ୍ରୀଜଗଦମ୍ବାଙ୍କ ଶ୍ରୀପାଦପଦ୍ମ ସାକ୍ଷାତ୍କାର କରିବା ନିମିତ୍ତ ସର୍ବପ୍ରକାର ଭୋଗବାସନା ତ୍ୟାଗ କରିଥିଲେ । ''ମା, ଏଇ ନେ ତୋର ଜ୍ଞାନ, ଏଇ ନେ ତୋର ଅଜ୍ଞାନ—ଏଇ ନେ ତୋର ଧର୍ମ, ଏଇ ନେ ତୋର ଅଧର୍ମ—ଏଇ ନେ ତୋର ଭଲ, ଏଇ ନେ ତୋର ମନ୍ଦ—ଏଇ ନେ ତୋର ପାପ, ଏଇ ନେ ତୋର ପୁଣ୍ୟ—ଏଇ ନେ ତୋର ଯଶ, ଏଇ ନେ ତୋର ଅଯଶ—ମୋତେ ତୋର ଶ୍ରୀଚରଣରେ ଶୁଦ୍ଧା-ଭକ୍ତି ଦେ, ଦେଖା ଦେ''—ଏହା କହି ମନରୁ ଠିକ୍ ଠିକ୍ ସମସ୍ତ ପ୍ରକାରର କାମନା ବାସନା ଶ୍ରୀଶ୍ରୀଜଗଦମ୍ବାଙ୍କୁ ଭଲପାଇ ତାଙ୍କ ପାଇଁ ତ୍ୟାଗ କରିଥିଲେ । ହାୟ, ସେହି ଏକାଙ୍ଗୀ ଭକ୍ତି-ପ୍ରେମର କଥା ଆମେ ଉପଲବ୍ଧି କରିବା ଦୂରରେ ଥାଉ, ଟିକିଏ ହେଲେ କଳ୍ପନା ମଧ୍ୟ କ'ଣ କରିପାରିବୁ ? ଆମେ ମୁହଁରେ ଯଦି କେତେବେଳେ ଭଗବାନଙ୍କୁ କହୁ, 'ଠାକୁରେ ଏଇ ନିଅ ମୋର ସର୍ବସ୍ୱ, କିନ୍ତୁ ଏପରି କହିବା ପରେ ପୁଣି କାର୍ଯ୍ୟ ସମୟରେ ଠାକୁରଙ୍କୁ ଭୁଲି ସେସମସ୍ତ 'ମୋର-ମୋର' କହିଥାଉ, ଲାଭ-ଲୋକସାନ ହିସାବ କରୁ ।

---

୧. ବିବେକଚୂଡ଼ାମଣି, ୪୦୮-୪୦୯

ପ୍ରତି କାର୍ଯ୍ୟରେ 'ଲୋକେ କ'ଣ କହିବେ' ଭାବି, ନାନାପ୍ରକାର ଖୋଳତାଡ଼, ଦୌଡ଼ାଦୌଡ଼ି କରୁ; ଭବିଷ୍ୟତର ଭାବନା ଭାବି କେତେବେଳେ ଅତଳ ସମୁଦ୍ରରେ, ପୁଣି କେତେବେଳେ ଆନନ୍ଦରେ ଭାସୁଥାଉ; ଏବଂ ମନେ ମନେ ଏକଥା ସ୍ଥିର ନିଶ୍ଚୟ କରି ବସିଅଛୁ ଯେ, ଦୁନିଆଟା ଆମେ ଆମ ଉଦ୍ୟମରେ ସମ୍ପୂର୍ଣ୍ଣ ଓଲଟପାଲଟ କରି ନ ପାରିଲେ ମଧ୍ୟ କିଛିଟା ପରିବର୍ତ୍ତନ ଅବଶ୍ୟ କରିପାରିବୁ । ଠାକୁରଙ୍କ ତ ଆମପରି ଲୁଆଚୋର ମନ ନ ଥିଲା; ସେ ଯେମିତି କହିଲେ, ''ମା, ଏଇ ତୋର ଦେଇଥିବା ଜିନିଷ, ତୁ ନେ,''—ସଙ୍ଗେ ସଙ୍ଗେ ସେହି ସମୟରୁ ତାଙ୍କର ମନ ଆଉ ସେସମସ୍ତ ପ୍ରତି ଲାଳସାପୂର୍ଣ୍ଣ ଦୃଷ୍ଟିପାତ କଲା ନାହିଁ ! ''କହି ପକାଇଲି କ'ଣ କରିବି ? ନ କହିଲେ ତ ହୋଇଥାଆନ୍ତା ।'' —ମନରେ ଏପରି ଭାବ ମଧ୍ୟ ସେବେଠାରୁ ଆଉ ଉଦିତ ହେଲା ନାହିଁ ! ସେଥିପାଇଁ ଦେଖିବାକୁ ପାଉ, ଠାକୁର ଯେତେବେଳେ ଯାହା ଶ୍ରୀଶ୍ରୀଜଗଦମ୍ବାଙ୍କୁ ଦେଇଛନ୍ତି ତାହା ଆଉ କେବେ 'ମୋର' ନିଜର ବୋଲି କହିପାରି ନାହାନ୍ତି ।

### ଠାକୁରଙ୍କର ସତ୍ୟ ନିଷ୍ଠା :

ଏଠାରେ ସେହି ବିଷୟରେ ଅନ୍ୟ ଏକ କଥା ମଧ୍ୟ ଆମେ ପାଠକଙ୍କୁ କହିବାକୁ ଇଚ୍ଛା କରୁଛୁ । ଠାକୁର ଶ୍ରୀଶ୍ରୀ ଜଗନ୍ମାତାଙ୍କୁ ଧର୍ମାଧର୍ମ, ପୁଣ୍ୟ-ପାପ, ଭଲ-ମନ୍ଦ, ଯଶ-ଅଯଶ ପ୍ରଭୃତି ଶରୀର-ମନର ସର୍ବସ୍ୱ ଅର୍ପଣ କରି ମଧ୍ୟ 'ମା, ଏଇ ନେ ତୋର ସତ୍ୟ, ଏଇ ନେ ତୋର ମିଥ୍ୟା—ଏକଥାଟି କହିପାରି ନାହାନ୍ତି । ଏହାର କାରଣ ଠାକୁର ନିଜ ମୁଖରେ ଆମ ନିକଟରେ ଥରେ ବ୍ୟକ୍ତ କରିଥିଲେ । କହିଥିଲେ, ଏପରି ଭାବରେ ସତ୍ୟ ତ୍ୟାଗ କଲେ ''ଶ୍ରୀଶ୍ରୀଜଗନ୍ମାତାଙ୍କୁ ସର୍ବସ୍ୱ ଯେ ଅର୍ପଣ କଲି—ଏହି ସତ୍ୟଟି ରଖିବି କିପରି ?'' ବାସ୍ତବିକ୍ ସର୍ବସ୍ୱ ଅର୍ପଣ କରି ମଧ୍ୟ ସେ କେତେ ସତ୍ୟନିଷ୍ଠ ଥିଲେ, ତାହା ଆମେ ତାଙ୍କଠାରେ ଦେଖିଅଛୁ । ଯେଉଁଦିନ ଯେଉଁଠାକୁ ଯିବେ ବୋଲି କହିଥାଆନ୍ତି, ସେହିଦିନ ଠିକ୍ ସମୟରେ ସେଠାରେ ଉପସ୍ଥିତ ହୋଇଛନ୍ତି; ଯାହା ନିକଟରୁ ଯେଉଁ ଜିନିଷ ନେବେ ବୋଲି କହିଛନ୍ତି, ତାଙ୍କ ବ୍ୟତୀତ ଅନ୍ୟ କାହାଠାରୁ ତାହା ନେଇପାରି ନାହାନ୍ତି । ଯେଉଁଦିନ କହିଛନ୍ତି ଅମୁକ ଜିନିଷଟା ଖାଇବି ନାହିଁ, ବା ଅମୁକ କାମ କରିବି ନାହିଁ, ସେହିଦିନଠାରୁ ଆଉ ତାହା କରିପାରି ନାହାନ୍ତି । ଠାକୁର କହୁଥିଲେ, ''ଯାହାର ସତ୍ୟନିଷ୍ଠା ଅଛି, ସେ ସତ୍ୟସ୍ୱରୂପ ଭଗବାନଙ୍କୁ ପାଏ । ଯାହାର ସତ୍ୟନିଷ୍ଠା ଅଛି, ମା' ତା'ର କଥା କଦାପି ମିଥ୍ୟା ହେବାକୁ ଦିଅନ୍ତି ନାହିଁ ।'' ବାସ୍ତବିକ୍ ଏବିଷୟରେ କେତେ କେତେ ଦୃଷ୍ଟାନ୍ତ ଆମେ ତାଙ୍କ ଜୀବନରେ ଦେଖିଛୁ ! କେତୋଟି କଥା ପାଠକଙ୍କୁ ଏଠାରେ ଜଣାଇଲେ ମନ୍ଦ ହେବ ନାହିଁ ।

**ଏବିଷୟରେ ପ୍ରଥମ ଦୃଷ୍ଟାନ୍ତ :**

ଦକ୍ଷିଣେଶ୍ୱରରେ ଦିନେ ପରମା ଭକ୍ତିମତୀ ଗୋପାଳର ମା' ଠାକୁରଙ୍କୁ ଭାତରାନ୍ଧି ଖୁଆଇବା ପାଇଁ ଚାହିଁଥିଲେ । ସବୁ ପ୍ରସ୍ତୁତ; ଠାକୁର ଖାଇବାକୁ ବସିଲେ । ବସି ଦେଖିଲେ ଭାତଗୁଡ଼ିକ ଟାଣ ଅଛି—ସୁସିଦ୍ଧ ହୋଇ ନାହିଁ । ଠାକୁରେ ବିରକ୍ତ ହେଲେ ଏବଂ କହିଲେ, ''ଏ ଭାତ ମୁଁ କ'ଣ ଖାଇପାରିବି ? ଏହାଙ୍କ ହାତରୁ ଆଉ କେବେ ଭାତ ଖାଇବି ନାହିଁ ।'' ''ଠାକୁରଙ୍କ ମୁହଁରୁ ଏକଥା ବାହାରିବାରୁ ସମସ୍ତେ ଭାବିଲେ, ଠାକୁର ଗୋପାଳର ମା'କୁ ଭବିଷ୍ୟତରେ ସତର୍କ କରିବା ନିମିତ୍ତ ଏପରି କହି କେବଳ ଭୟ ଦେଖାଉଛନ୍ତି; ନ ହେଲେ ଗୋପଳର ମାକୁ ସେ ଯେପରି ଆଦର-ଯତ୍ନ କରନ୍ତି, ସେଥିରେ ସେ ତାଙ୍କ ହାତରୁ ଆଉ ଖାଇବେ ନାହିଁ— ଏହା କ'ଣ ହୋଇପାରେ ? କିଛିକ୍ଷଣ ପରେ ପୁଣି ସେ ଗୋପାଳର ମା'କୁ କ୍ଷମା କରିବେ ଏବଂ ସେହି କଥା ଉପରେ ଆଉ କୌଣସି ଆଲୋଚନା ହେବ ନାହିଁ । କିନ୍ତୁ ଫଳ ତା'ର ସମ୍ପୂର୍ଣ୍ଣ ବିପରୀତ ହେଲା । କାରଣ, ଏହାର ଅଳ୍ପଦିନ ପରେ ହିଁ ଠାକୁରଙ୍କ ଗଳାରେ ରୋଗ ଦେଖାଦେଲା । କ୍ରମେ ଏହା ବଢ଼ି ଠାକୁରଙ୍କର ଭାତ ଖାଇବା ବନ୍ଦ ହେଲା ଏବଂ ଗୋପାଳର ମା' ହାତରୁ ଆଉ ଦିନେ ମଧ୍ୟ ଭାତ ଖାଇବା ହେଲା ନାହିଁ ।

**ଏବିଷୟରେ ଦ୍ୱିତୀୟ ଦୃଷ୍ଟାନ୍ତ :**

ଦିନେ ଠାକୁର ଦକ୍ଷିଣେଶ୍ୱରରେ ଭାବାବସ୍ଥାରେ କହୁଛନ୍ତି, ''ଏହାପରେ ଆଉ କିଛି ଖାଇବି ନାହିଁ, କେବଳ ପାୟସାନ୍ନ, କେବଳ ପାୟସାନ୍ନ ।'' ସେହି ସମୟରେ ଶ୍ରୀଶ୍ରୀମା' ଠାକୁରଙ୍କ ଖାଇବା ନେଇ ଆସୁଥିଲେ । ଏହିକଥା ଶୁଣିପାରି ଏବଂ ଠାକୁରଙ୍କ ଶ୍ରୀମୁଖରୁ ଯେଉଁ କଥା ଯେତେବେଳେ ବାହାରେ ତାହା କେବେ ନିରର୍ଥକ ହୁଏ ନାହିଁ ଜାଣି, ଭୟରେ କହିଲେ—''ମୁଁ ମାଛର ଝୋଳ ଭାତ ରାନ୍ଧି ଦେବି ଖାଇବେ,—ପାୟସ କାହିଁକି ?'' ଠାକୁର ସେପରି ଭାବାବସ୍ଥାରେ କହିଉଠିଲେ, ''ନା—ପାୟସାନ୍ନ ।'' ତା'ର ଅଳ୍ପ ଦିନ ପରେ ଠାକୁରଙ୍କ ଗଳାରେ ରୋଗ ହେବାରୁ ବାସ୍ତବିକ୍ ଆଉ କୌଣସି ବ୍ୟଞ୍ଜନାଦି ଖାଇପାରିଲେ ନାହିଁ— କେବଳ ଦୁଧଭାତ, ଦୁଧ-ବାର୍ଲି ଇତ୍ୟାଦି ଖାଇ ଦିନ ବିତାଇବାକୁ ଲାଗିଲେ ।

**ଏବିଷୟରେ ତୃତୀୟ ଦୃଷ୍ଟାନ୍ତ :**

କଲିକତାର ପ୍ରସିଦ୍ଧ ଦାନଶୀଳ ଧନୀ ୰ଶମ୍ଭୁଚନ୍ଦ୍ର ମଲ୍ଲିକ ମହାଶୟଙ୍କୁ ଠାକୁର ତାଙ୍କର ଚାରିଜଣ 'ରସଦଦାର'ଙ୍କ ମଧ୍ୟରେ ଦ୍ୱିତୀୟ ରସଦଦାର ବୋଲି ନିର୍ଦ୍ଦେଶ କରିଥିଲେ । ରାଣୀ ରାସମଣିଙ୍କର କାଳୀମନ୍ଦିର ନିକଟରେ ତାଙ୍କର ଗୋଟିଏ ବଗିଚା ଥିଲା । ଏଠାରେ ସେ ଭଗବତ-ଚର୍ଚ୍ଚାରେ ଠାକୁରଙ୍କ ସହିତ ଅନେକ

ସମୟ ବିତାଉଥିଲେ । ଏହି ବଗିଚା ମଧ୍ୟରେ ତାଙ୍କ ଦ୍ୱାରା ପ୍ରତିଷ୍ଠିତ ଗୋଟିଏ ଦାତବ୍ୟ ଔଷଧାଳୟ ମଧ୍ୟ ଥିଲା । ଶ୍ରୀରାମକୃଷ୍ଣଦେବଙ୍କର ପେଟ ବେମାର ପ୍ରାୟ ଲାଗି ରହୁଥିଲା । ଦିନେ ଏପରି ପେଟ ଖରାପ କଥା ଶମ୍ଭୁବାବୁ ଜାଣିପାରି ତାଙ୍କୁ ଟିକିଏ ଅଫିମ ସେବନ କରିବାକୁ କହିଲେ ଏବଂ ରାସମଣିଙ୍କର ବଗିଚାକୁ ଫେରିବା ସମୟରେ ଏହା ତାଙ୍କ ନିକଟରୁ ନେବା ପାଇଁ ପରାମର୍ଶ ଦେଲେ । ଠାକୁର ମଧ୍ୟ ସେକଥାରେ ସମ୍ମତି ପ୍ରଦାନ କଲେ । ତାପରେ କଥାବାର୍ତ୍ତାରେ ଏକଥା ଉଭୟେ ଭୁଲିଗଲେ ।

**ଜଗଦମ୍ବା 'ବେତାଳରେ ପାଦ ପକାଇବାକୁ' ଦିଅନ୍ତି ନାହିଁ :**

ଶମ୍ଭୁବାବୁଙ୍କ ନିକଟରୁ ବିଦାୟ ନେଇ ବାଟରେ ଆସିବା ବେଳେ ଠାକୁରଙ୍କର ଏକଥା ମନେ ପଡ଼ିଲା ଏବଂ ଅଫିମ ନେବା ପାଇଁ ପୁନରାୟ ଫେରିଆସି ଦେଖିଲେ, ଶମ୍ଭୁବାବୁ ଘର ଭିତରକୁ ଯାଇଛନ୍ତି । ଠାକୁର ଏଥିପାଇଁ ତାଙ୍କୁ ନ ଡକାଇ ତାଙ୍କର କର୍ମଚାରୀଙ୍କ ନିକଟରୁ ଟିକିଏ ଅଫିମ ନେଇ ରାସମଣିଙ୍କ ବଗିଚାକୁ ଫେରିଲେ । କିନ୍ତୁ ବାଟରେ ଆସିବା ମାତ୍ରେ ଠାକୁରଙ୍କର କିପରି ଏକ ଭ୍ରମ ହେବାରୁ ରାସ୍ତା ଆଉ ଦେଖିପାରିଲେ ନାହିଁ ! ରାସ୍ତା କଡ଼ରେ ଯେଉଁ ନାଳ ଥିଲା, ତାହା ଆଡ଼କୁ କିଏ ଯେପରି ତାଙ୍କ ପାଦକୁ ଟାଣିବାକୁ ଲାଗିଲା ! ଠାକୁରେ ଭାବିଲେ — ଇଏ କ'ଣ ? ଏହା ତ ରାସ୍ତା ନୁହେଁ ! ପୁଣି ରାସ୍ତା ମଧ୍ୟ ସେ ଖୋଜି ପାଉ ନାହାନ୍ତି । ଅଗତ୍ୟା କୌଣସି ପ୍ରକାରରେ ଦିଗ ଭୁଲ ହୋଇଛି ଭାବି, ପୁଣି ଶମ୍ଭୁବାବୁଙ୍କ ବଗିଚା ଆଡ଼କୁ ଅନାଇ ଦେଖିଲେ — ସେ ଦିଗରେ ରାସ୍ତା ବେଶ୍ ଦେଖାଯାଉଅଛି । ଭାବିଚିନ୍ତି ପୁନରାୟ ଶମ୍ଭୁବାବୁଙ୍କ ବଗିଚାର ଫାଟକ ନିକଟକୁ ଆସି ସେଠାରୁ ଭଲ ଭାବେ ଲକ୍ଷ୍ୟକରି ପୁନରାୟ ଅତି ସାବଧାନରେ ରାସମଣିଙ୍କ ବଗିଚା ଆଡ଼କୁ ଆଗେଇବାକୁ ଲାଗିଲେ । କିନ୍ତୁ ପାଦେ ଦୁଇପାଦ ଆସିଛନ୍ତି କି ନାହିଁ ପୁଣି ପୂର୍ବପରି ଅବସ୍ଥା ହେଲା — ବାଟ ଦେଖିପାରିଲେ ନାହିଁ । ବିପରୀତ ଦିଗରେ ପାଦ ପୁଣି ଟାଣି ହେଉଛି ! ଏପରି କେତେଥର ହେବାପରେ ଠାକୁରଙ୍କ ମନେ ପଡ଼ିଲା — ''ଓଃ ଶମ୍ଭୁ କହିଥିଲେ, 'ମୋ ନିକଟରୁ ଅଫିମ ନେଇଯିବେ'; ତାହା ନ କରି, ମୁଁ ତାଙ୍କୁ ନ କହି ତାଙ୍କର କର୍ମଚାରୀଙ୍କ ନିକଟରୁ ଏହା ମାଗି ନେଇଯାଉଛି ! ସେଥିପାଇଁ ମା' ମୋତେ ଯିବାକୁ ଦେଉନାହାନ୍ତି ! କର୍ମଚାରୀର ଶମ୍ଭୁଙ୍କ ଆଦେଶ ବ୍ୟତୀତ ଦେବା ଉଚିତ୍ ନୁହେଁ, ପୁଣି ମୋର ମଧ୍ୟ ଶମ୍ଭୁ ଯେପରି କହିଛନ୍ତି ତାଙ୍କ ନିକଟରୁ ହିଁ ନେବା ଉଚିତ୍ ଥିଲା । ତାହା ନ କରି ଯେଉଁ ଭାବରେ ମୁଁ ଅଫିମ ନେଇଯାଉଛି, ଏଥିରେ ମିଥ୍ୟା ଓ ଚୋରି ଏଇ ଦୁଇଟି ଦୋଷ ହୋଇଅଛି; ସେଥିପାଇଁ ମା' ମୋତେ ଏପରି ବୁଲାଉଛନ୍ତି, ଫେରିବାକୁ ଦେଉନାହାନ୍ତି !'' ଏକଥା ମନରେ ଭାବି ଶମ୍ଭୁବାବୁଙ୍କର ଔଷଧାଳୟକୁ ପୁନର୍ବାର ଫେରି ଦେଖିଲେ ଯେ, ସେ କର୍ମଚାରୀ ମଧ୍ୟ ସେଠାରେ

ନାହିଁ—ସେ ଖାଇବାକୁ ଅନ୍ୟତ୍ର ଯାଇଛି । ତେଣୁ ଝରକା ଫାଙ୍କରେ ଅଫିମ ପୁଡ଼ିଆଟି ଔଷଧାଳୟ ମଧ୍ୟକୁ ପକାଇ ଦେଇ ଉଚ୍ଚସ୍ୱରରେ କହିଲେ, ''ଆଗୋ, ଏଇ ତୁମମାନଙ୍କର ଅଫିମ ରହିଲା !'' —ଏହା କହି ରାସମଣିଙ୍କ ବଗିଚା ଆଡ଼କୁ ଚାଲିଲେ । ଏଥର ଯିବା ସମୟରେ ଆଉ ଭ୍ରମ ହେଲା ନାହିଁ; ରାସ୍ତା ବେଶ୍ ପରିଷ୍କାର ଦେଖାଗଲା; ସହଜରେ ଚାଲିଗଲେ । ଠାକୁର କହିଲେ, ''ମା' ଉପରେ ସମ୍ପୂର୍ଣ୍ଣ ଭାର ଦେଇଛି କି ନାହିଁ' ? —ତେଣୁ ମା' ହାତ ଧରି ରହିଛନ୍ତି । ଟିକିଏ ମଧ୍ୟ ବେତାଳରେ ପାଦ ପକାଇବାକୁ ଦିଅନ୍ତି ନାହିଁ ।'' ଏପରି କେତେ ଯେ ଦୃଷ୍ଟାନ୍ତ ଆମେ ଠାକୁରଙ୍କ ନିକଟରୁ ଶୁଣିଅଛୁ ! ଚମତ୍କାର ଘଟଣା ! ଆମେ କ'ଣ ଏପରି ସତ୍ୟନିଷ୍ଠା, ଏପରି ସର୍ବାଙ୍ଗୀନ ନିର୍ଭରତାର ଅଳ୍ପ ମଧ୍ୟ କଳ୍ପନାରେ ଅନୁଭବ କରିପାରିବୁ କି ? ଏହା କ'ଣ ସେହି ପ୍ରକାରର ନିର୍ଭରତା, ଯାହା ଠାକୁରେ ଆମମାନଙ୍କୁ କଥାଛଳରେ ବାରମ୍ବାର କହୁଥିଲେ, ''ସେ ଦେଶରେ (ଠାକୁରଙ୍କ ଜନ୍ମସ୍ଥାନ କାମାରପୁକୁରରେ) ଜମି ମଧ୍ୟରେ ହିଡ଼ରାସ୍ତା । ତା' ଉପରଦେଇ ସମସ୍ତେ ଗୋଟିଏ ଗାଁରୁ ଅନ୍ୟ ଗାଁକୁ ଯାଇଥାଆନ୍ତି । ସରୁ ହିଡ଼ରାସ୍ତା—ଚାଲିଲାବେଳେ କାଳେ ପଡ଼ିଯିବ, ସେଥିପାଇଁ ବାପ ଛୋଟ ପୁଅକୁ କାଖକରି ନେଉଛି, ଆଉ ବଡ଼ ପୁଅଟି ଟିକେ ସିଆଣିଆ ବୋଲି ବାପର ହାତ ଧରି ଯାଉଛି । ଯାଉ ଯାଉ ଗୋଟିଏ ଶଙ୍ଖଚିଲ ବା ଆଉ କିଛି ଦେଖି ପିଲା ଯୋଡ଼ିକ ଆନନ୍ଦରେ ତାଳି ମାରିଲେ । କୋଳର ପୁଅଟି ଜାଣେ ବାପା ତାକୁ ଧରିଛନ୍ତି, ନିର୍ଭୟରେ ଆନନ୍ଦ କରି କରି ଯାଉଛି । କିନ୍ତୁ ଯେଉଁ ପୁଅଟି ବାପର ହାତଧରି ଯାଉଥିଲା, ସେ ଯେମିତି ରାସ୍ତା କଥା ଭୁଲି ହାତତାଳି ଦେବାକୁ ଯାଇଛି—ସଙ୍ଗେ ସଙ୍ଗେ ପଡ଼ିଯାଇ କାନ୍ଦି ଉଠିଲା ! ସେହିପରି ମା' ଯାହାର ହାତ ଧରିଛନ୍ତି, ତା'ର ଆଉ ଭୟ ନାହିଁ; କିନ୍ତୁ ଯିଏ ମା'ର ହାତ ଧରିଛି, ତା'ର ଭୟ ଅଛି—ହାତ ଛାଡ଼ିଲେ ହିଁ ପଡ଼ିଯିବ ।''

**ଠାକୁରଙ୍କର ନିର୍ବିକଳ୍ପ ଭୂମିରେ ଆରୂଢ଼ ହେବା ପଥରେ ଅନ୍ତରାୟ :**

ଏହିପରି ଈଶ୍ୱରାନୁରାଗର ପ୍ରାବଲ୍ୟରେ ସଂସାରର କୌଣସି ବସ୍ତୁ ବା ବ୍ୟକ୍ତି ଉପରେ ମନର ବିଶେଷ ଆକର୍ଷଣ ବା ପଶ୍ଚାତ୍‌ଟାଣ ନ ଥିଲା ବୋଲି ହିଁ ନିର୍ବିକଳ୍ପ ସମାଧିଲାଭ ପଥରେ ସାଂସାରିକ କୌଣସି ପ୍ରକାରର କାମନା-ବାସନା ଅନ୍ତରାୟ ହୋଇ ନାହିଁ । କେବଳ, ଠାକୁର ଯାହାଙ୍କୁ ଏତେ ଦିନଧରି ଭକ୍ତି ସହକାରେ ପୂଜା କରି, ଭଲ ପାଇ ଜଗତର ଏକମାତ୍ର ସାରବସ୍ତୁ ଓ ପରଲୋକର ତ୍ରାଣକର୍ତ୍ତା ବୋଲି ଜ୍ଞାନ କରି ଆସିଥିଲେ—ଶ୍ରୀଶ୍ରୀଜଗଦମ୍ବାଙ୍କର ସେହି 'ସୌମ୍ୟା-ସୌମ୍ୟତରା ଶେଷସୌମେଭ୍ୟସ୍ତ୍ୱତିସୁନ୍ଦରୀ' ମୂର୍ତ୍ତି ହିଁ ବାଧକ ହୋଇଥିଲା ! ଠାକୁର କହୁଥିଲେ, ''ମନକୁ ଗୋଟାଇ ଏକକରି ଆଣିବା ସଙ୍ଗେ ସଙ୍ଗେ ମା'ଙ୍କର ମୂର୍ତ୍ତି ଆସି ସାମନାରେ ଦଣ୍ଡାୟମାନ ହେଉଥିଲା !—ସେତେବେଳେ ତାଙ୍କୁ ତ୍ୟାଗକରି

ତାଙ୍କୁ ପାରି ହୋଇ ଆଗେଇବାକୁ ଇଚ୍ଛା ହେଉ ନ ଥିଲା । ଯେତେଥର ମନରୁ ସମସ୍ତ ଜିନିଷ ତ୍ୟାଗ କରି ନିରାଲମ୍ବ ହୋଇ ରହିବାକୁ ଚେଷ୍ଟାକଲି, ସେତେଥର ସେପରି ହେଲା । ଶେଷରେ ଭାବିଚିନ୍ତି ମନରେ ଖୁବ୍ ଜୋର ଆଣି, ଜ୍ଞାନକୁ ଅସି ଭାବି, ସେହି ଅସି ଦେଇ ସେହି ମୂର୍ତ୍ତିକୁ ମନେ ମନେ ଦୁଇଖଣ୍ଡ କରି କାଟିଦେଲି ! ସେତେବେଳେ ମନରେ ଆଉ କିଛି ରହିଲା ନାହିଁ—ହୁ ହୁ କରି ଏକାଥରକେ ନିର୍ବିକଳ୍ପ ଅବସ୍ଥାରେ ପହଞ୍ଚିଗଲି ।'' ଆମ ନିକଟରେ ଏସବୁ ଯେପରି ଅର୍ଥହୀନ କଥା ମାତ୍ର । କାରଣ, କେବେ ତ ଜଗଦମ୍ବାଙ୍କର କୌଣସି ମୂର୍ତ୍ତି ବା ଭାବ ଠିକ୍ ଭାବରେ ନିଜର କରି ନାହୁଁ । କାହାକୁ ତ କେବେ ହେଲେ ପ୍ରାଣଭରି ଭଲ ପାଇବାକୁ ଶିଖି ନାହୁଁ । ଆମର ସେହି ପ୍ରକାରର ପୂର୍ଣ୍ଣ ଭଲ ପାଇବା, ମନର ଅନ୍ତଃସ୍ଥଳ ପର୍ଯ୍ୟନ୍ତ ବ୍ୟାପୀ ଭଲ ପାଇବା, କେବଳ ଏହି ମାଂସପିଣ୍ଡର ଶରୀର ଓ ମନ ଉପରେ ଆବଦ୍ଧ ରହିଛି ! ସେଥିପାଇଁ ମୃତ୍ୟୁରେ କିମ୍ବା ମନର ହଠାତ୍ ଆମୂଳ ପରିବର୍ତ୍ତନରେ ଆମର ଏତେ ଭୟ ହୋଇଥାଏ ! ଠାକୁରଙ୍କର ତ ତାହା ନ ଥିଲା । ସଂସାରରେ ଏକମାତ୍ର ଜଗଦମ୍ବାଙ୍କ ପାଦପଦ୍ମକୁ ସାର ବୋଲି ମନରେ ଜାଣିଥିଲେ, ଏବଂ ସେହି ପାଦପଦ୍ମ ଧ୍ୟାନ କରି ତାଙ୍କର ଶ୍ରୀମୂର୍ତ୍ତିର ଦିବାନିଶି ସେବା କରି ହିଁ ସେ କାଳ କଟାଉଥିଲେ; ଫଳରେ ଏହି ମୂର୍ତ୍ତିକୁ ଯେତେବେଳେ ଥରେ କୌଣସି ପ୍ରକାରରେ ମନରୁ ଅପସାରିତ କଲେ, ସେତେବେଳେ ମନ କ'ଣ ନେଇ ସଂସାରରେ ରହିବ ? ସମ୍ପୂର୍ଣ୍ଣ ଅବଲମ୍ବନବିହୀନ ହୋଇ, ବୃତ୍ତିରହିତ ହୋଇ ନିର୍ବିକଳ୍ପ ଅବସ୍ଥାରେ ପହଞ୍ଚିଗଲା । ପାଠକ, ଏକଥା ବୁଝି ନ ପାର ପଛେ, ଥରେ ମାତ୍ର କଳ୍ପନା କରିବାକୁ ଚେଷ୍ଟାକର । ତା'ହେଲେ ବୁଝିପାରିବ, ଠାକୁର ଶ୍ରୀଶ୍ରୀଜଗନ୍ମାତାଙ୍କୁ କେତେଦୂର ଆପଣାର କରିପାରିଥିଲେ—କିପରି 'ସାଢ଼େ ଷୋହଳ ଅଣା' ମନ ଦେଇ ସେ ଜଗଦମ୍ବାଙ୍କୁ ଭଲ ପାଇଥିଲେ !

### ଏକୋଇଶ ଦିନ ଯେଉଁ ଭାବରେ ରହିଲେ ଶରୀର ନଷ୍ଟ ହୁଏ, ସେହି ଭାବରେ ଛଅମାସ ରହିବା :

ଏହି ନିର୍ବିକଳ୍ପ ଅବସ୍ଥାରେ ଛଅମାସ କାଳ ନିରନ୍ତର ଶ୍ରୀରାମକୃଷ୍ଣଦେବ ଅବସ୍ଥାନ କରିଥିଲେ । ଠାକୁର କହୁଥିଲେ, ''ଯେଉଁ ଅବସ୍ଥାରେ ସାଧାରଣ ଜୀବ ପହଞ୍ଚିଲେ ଆଉ ଫେରିପାରେ ନାହିଁ, ଏକୋଇଶି ଦିନ ମାତ୍ର ଶରୀର ରହି ଗଛରୁ ଶୁଖିଲା ପତ୍ର ପଡ଼ିବା ପରି ଖସିପଡ଼େ, ସେହି ଅବସ୍ଥାରେ ଛଅମାସ ଥିଲି । କେବେ ଯେ କିପରି ଦିନ ଆସେ ରାତି ଯାଏ, ତା'ର ଠିକଣା ରହୁ ନ ଥିଲା ! ମୃତ ମଣିଷର ନାକ ମୁହଁରେ ଯେପରି ମାଛି ପଶେ, ସେପରି ପଶୁଥିଲା; କିନ୍ତୁ ତାହା ଜାଣିପାରୁ ନ ଥିଲି । ମୁଣ୍ଡର ବାଳ ଧୂଳି ଧୂଷରିତ ହୋଇ ଜଟାବାନ୍ଧି ଯାଇଥିଲା ! ହୁଏତ ଅଜାଣତରେ ଶୌଚାଦି ହୋଇଯାଇଛି ତା'ର ମଧ୍ୟ ହୋସ୍ ନ ଥିଲା ! ଶରୀର

କ'ଣ ଆଉ ରହିଥାଆନ୍ତା ? —ସେହି ସମୟରେ ହିଁ ଯାଇଥାଆନ୍ତା । ତେବେ ଏହି ସମୟରେ ଜଣେ ସାଧୁ ଆସିଥିଲେ । ତାଙ୍କ ହାତରେ ରୁଲ୍‌ବାଡ଼ି ପରି ଗୋଟିଏ ଲାଠି ଥିଲା । ସେ ମୋର ଅବସ୍ଥା ଦେଖି ଚିହ୍ନିଥିଲେ ଓ ବୁଝିପାରିଥିଲେ ଯେ, ଏହି ଶରୀର ଦେଇ ମା'ଙ୍କର ଅନେକ କାର୍ଯ୍ୟ କରିବାକୁ ଏବେ ମଧ୍ୟ ବାକି ଅଛି, ଏହାକୁ ରଖିପାରିଲେ ଅନେକ ଲୋକଙ୍କର କଲ୍ୟାଣ ହେବ ! ତେଣୁ ଖାଇବା ସମୟରେ ଖାଇବା ଜିନିଷ ଆଣି, ପିଟି ପିଟି ହୋସ୍ ଆଣିବାକୁ ଚେଷ୍ଟା କରୁଥିଲେ । ଟିକିଏ ହୋସ୍ ହେବାର ଦେଖିଲେ ହିଁ ମୁହଁରେ ଖାଦ୍ୟ ଗୁଞ୍ଜି ଦେଉଥିଲେ । ଏହିପରି କୌଣସି ଦିନ ପେଟରେ କିଛି ପଡ଼େ, କେଉଁ ଦିନ ପଡ଼େ ନାହିଁ । ଏହି ଭାବରେ ଛଅମାସ ଯାଇଛି ! ତା'ପରେ ଏହି ଅବସ୍ଥାର କେତେ ଦିନ ପରେ ମା'ଙ୍କ କଥା ଶୁଣିବାକୁ ପାଇଲି—'ଭାବମୁଖରେ ରହ, ଲୋକଶିକ୍ଷା ନିମିତ୍ତ ଭାବମୁଖରେ ରହ ।' ତା'ପରେ ବେମାରି ହେଲା—ରକ୍ତ-ଆମାଶୟ । ପେଟ ମୋଡ଼ି ହୋଇ ଅତ୍ୟନ୍ତ ଯନ୍ତ୍ରଣା । ସେହି ଯନ୍ତ୍ରଣା ପ୍ରାୟ ଛଅମାସ ଭୋଗିବା ପରେ ଯାଇ ଶରୀର ମଧ୍ୟକୁ ଧିରେ ଧିରେ ମନ ଓହ୍ଲାଇଲା—ସାଧାରଣ ମନୁଷ୍ୟ ପରି ହୋସ୍ ହେଲା ! ନତୁବା ମଝିରେ ମଝିରେ ମନ ଆପେ ଆପେ ଧାଇଁ ଯାଇ ସେହି ନିର୍ବିକଳ୍ପ ଅବସ୍ଥାକୁ ଚାଲି ଯାଉଥିଲା !''

**ଠାକୁରଙ୍କର ସମାଧି ସମ୍ବନ୍ଧରେ 'କ୍ୟାପ୍ଟେନ'ଙ୍କର କଥା :**

ବାସ୍ତବିକ୍ ଠାକୁରଙ୍କର ଶରୀରତ୍ୟାଗର ଦଶ-ବାରବର୍ଷ ପୂର୍ବରୁ ମଧ୍ୟ ତାଙ୍କ ଦର୍ଶନଲାଭ ଯେଉଁମାନଙ୍କ ଭାଗ୍ୟରେ ହୋଇଥିଲା, ସେମାନଙ୍କଠାରୁ ଶୁଣିଛୁ ସେତେବେଳେ ମଧ୍ୟ ଠାକୁରଙ୍କ କଥାବାର୍ତ୍ତା ଶୁଣିବା ସେମାନଙ୍କ ଭାଗ୍ୟରେ ବିଶେଷ ଘଟୁ ନ ଥିଲା । ଚବିଶ ଘଣ୍ଟା ଭାବସମାଧି ଲାଗିରହିଛି ! କଥା କିଏ କହିବ ? ନେପାଳ ରାଜସରକାରଙ୍କ କର୍ମଚାରୀ ଶ୍ରୀବିଶ୍ୱନାଥ ଉପାଧ୍ୟାୟ—ଯାହାଙ୍କୁ ଠାକୁରେ 'କାପ୍ତାନ୍' ବୋଲି ଡାକୁଥିଲେ—ସେହି ମହାଶୟଙ୍କ ମୁହଁରୁ ଆମେ ଶୁଣିଛୁ, ସେ ତିନି ଦିନ୍ ତିନି ରାତି ଠାକୁରଙ୍କୁ ନିରନ୍ତର ସମାଧିମଗ୍ନ ଥିବାର ଦେଖିଥିଲେ ! ସେ ଆହୁରି ମଧ୍ୟ କହିଥିଲେ, ସେହିପରି ବହୁକାଳବ୍ୟାପୀ ଗଭୀର ସମାଧି ସମୟରେ ଠାକୁରଙ୍କର ଶ୍ରୀଅଙ୍ଗରେ—ଗ୍ରୀବାଦେଶରୁ ମେରୁଦଣ୍ଡର ଶେଷ ପର୍ଯ୍ୟନ୍ତ ଏବଂ ଜାନୁଠାରୁ ପଦତଳ ପର୍ଯ୍ୟନ୍ତ, ଉପରରୁ ନିମ୍ନ ଆଡ଼କୁ—ମଧ୍ୟେ ମଧ୍ୟେ, ଗାଈଘିଅ ମାଲିଶ କରାଯାଉଥିଲା ଏବଂ ସେହିପରି କରାଗଲେ, ସମାଧିର ଉଚ୍ଚଭାବଭୂମିରୁ 'ମୁଁ ମୋର' ରାଜ୍ୟକୁ ପୁଣି ଅବତରଣ କରିବାକୁ ଠାକୁରଙ୍କର ସୁବିଧା ବୋଧ ହେଉଥିଲା ।

## ଏହି ସମ୍ବନ୍ଧରେ ଠାକୁରଙ୍କର ନିଜ କଥା :

ଆମମାନଙ୍କ ନିକଟରେ ଠାକୁର କେତେଥର ନିଜେ କହିଛନ୍ତି, ''ଏଠାକାର ମନର ସ୍ୱାଭାବିକ ଗତି ଊର୍ଦ୍ଧ୍ୱଦିଗକୁ (ନିର୍ବିକଳ୍ପ ଆଡ଼କୁ) । ସମାଧି ହେଲେ ଆଉ ଓହ୍ଲାଇବାକୁ ଚାହେଁ ନାହିଁ । ସେଥିପାଇଁ ଜୋର୍ କରି ମନକୁ ଓହ୍ଲାଇବାକୁ ହୁଏ । କୌଣସି ପ୍ରକାରର ସାଂସାରିକ ବାସନା ନ ଧରିଲେ ଓହ୍ଲାଇ ଆସିବାର ଜୋର୍ ହୁଏ ନାହିଁ । ତେଣୁ 'ତମାଖୁ ଖାଇବି', 'ପାଣି ପିଇବି', 'ସୁକ୍ତ' (ସନ୍ତୁଳା) ଖାଇବି', 'ଅମୁକକୁ ଦେଖିବି', 'କଥା କହିବି'—ଏପରି ଛୋଟଛୋଟ ବାସନା ମନରେ ଆଣି ବାରମ୍ବାର ସେକଥାକୁ ଦୋହରାଇଲେ ମନ ଧିରେ ଧିରେ ତଳକୁ (ଶରୀରରେ) ଓହ୍ଲାଇ ଥାଏ । ପୁଣି ଓହ୍ଲାଉ ଓହ୍ଲାଉ ହୁଏତ ସେ ଆଡ଼କୁ (ଊର୍ଦ୍ଧ୍ୱକୁ) ମନ ଦଉଡ଼ିଲା । ପୁଣି ତାକୁ ସେତେବେଳେ ସେହିପରି ବାସନା ଦେଇ ଓହ୍ଲାଇ ଆଣିବାକୁ ହୋଇଥାଏ !'' କି ଚମତ୍କାର ଘଟଣା ! ଆମେ ଏହା ଶୁଣି ସ୍ତମ୍ଭିତ ହୋଇ ବସି ରହୁଥିଲୁ, ଆଉ ଭାବୁଥିଲୁ 'ଅଦ୍ୱୈତ ଜ୍ଞାନ କାନିରେ ବାନ୍ଧି ଯାହା ଇଚ୍ଛା ତାହା କର'—କଥାର ଅର୍ଥ ଯଦି ଏହା ହୁଏ, ତା'ହେଲେ ସେପରି କରିବା ଆମ ଜୀବନରେ ସମ୍ଭବ କି ! ଶରଣାଗତ ହୋଇ ରହିବା ହିଁ ଦେଖୁଛୁ ଆମର ଏକମାତ୍ର ଉପାୟ । ତାହା କରିବାକୁ ଯାଇ ମଧ୍ୟ କିଛି ଦିନ ପରେ ଦେଖିଲୁ, ବିଷମ ହାଙ୍ଗାମା ! ସେହି ପଥ ଆଶ୍ରୟ କରିବାକୁ ଯାଇ ଦୁଷ୍ଟ ମନଟି ମଝିରେ ମଝିରେ କହିଉଠେ— ମୋତେ ଠାକୁର ସମସ୍ତଙ୍କ ଅପେକ୍ଷା ଅଧିକ ଭଲ ପାଇବେ ନାହିଁ କାହିଁକି ? ନରେନ୍ଦ୍ରନାଥଙ୍କୁ ଯେତେ ଭଲ ପାଆନ୍ତି ମୋତେ ମଧ୍ୟ କାହିଁକି ସେତେ ଭଲପାଇବେ ନାହିଁ ? ମୁଁ ତା' ଅପେକ୍ଷା କେଉଁଥିରେ ଛୋଟ ?—ଇତ୍ୟାଦି ! ଯାହା ହେଉ ଏବେ ସେବିଷୟ ଥାଉ—ଆମେ ଆଲୋଚନାର ବିଷୟ ଅନୁସରଣ କରିବା ।

## ମନୋଭାବପ୍ରସୂତ ଶାରୀରିକ ପରିବର୍ତ୍ତନ ସମ୍ବନ୍ଧରେ ପ୍ରାଚ୍ୟ ଓ ପାଶ୍ଚାତ୍ୟର ମତ :

ଉଚ୍ଚସ୍ତରର ଭାବ ଏବଂ ସମାଧିତତ୍ତ୍ୱ ସମ୍ବନ୍ଧରେ ଆମେ ଠାକୁରଙ୍କ ନିକଟରୁ ଯେତେଦୂର ବୁଝିଅଛୁ, ବର୍ତ୍ତମାନ ତାହା ହିଁ କିଛି କିଛି ପାଠକଙ୍କୁ କହି 'ଭାବମୁଖ' ଅବସ୍ଥା ଯେ କ'ଣ, ତାହା ବୁଝାଇବାକୁ ଚେଷ୍ଟା କରିବୁ । ପୂର୍ବେ କୁହାଯାଇଛି— ଉଚ୍ଚନୀଚ ଆଦି ଯେଉଁଭାବ ମନରେ ଆସୁନା କାହିଁକି, ତାହା ସହିତ କୌଣସି ନା କୌଣସି ପ୍ରକାରର ଶାରୀରିକ ପରିବର୍ତ୍ତନ ମଧ୍ୟ ଅବଶ୍ୟମ୍ଭାବୀ । ଏହା ବୁଝାଇବାକୁ ହୁଏ ନାହିଁ—ନିତ୍ୟ ପ୍ରତ୍ୟକ୍ଷର ବିଷୟ । କ୍ରୋଧର ଉଦୟରେ ଏକ ପ୍ରକାରର, ଭଲ ପାଇବା ସମୟରେ ଅନ୍ୟ ପ୍ରକାରର—ଏହିପରି ନିତ୍ୟ ଅନୁଭୂତ ସାଧାରଣ ଭାବସମୂହର ଆଲୋଚନାରେ ହିଁ ତାହା ସହଜରେ ବୁଝି ହୁଏ । ପୁଣି ସତ୍ ବା ଅସତ୍ କୌଣସି ପ୍ରକାର ଚିନ୍ତାର ସବିଶେଷ ଆଧିକ୍ୟ କାହା ମନରେ

ରହିଲେ ତାହାର ଶରୀରରେ ମଧ୍ୟ ଏତେ ପରିବର୍ତ୍ତନ ଆସି ଉପସ୍ଥିତ ହୁଏ ଯେ, ତାକୁ ଦେଖିଲେ ହିଁ ଲୋକେ ବୁଝିପାରନ୍ତି—ଏହାର ଏପରି ପ୍ରକୃତି । 'ଅମୁକ ଲୋକଙ୍କୁ ଦେଖିଲେ ହିଁ ମନେ ହୁଏ ରାଗୀ, କାମୁକ ବା ସାଧୁ'—ଏପରି କଥାର ନିତ୍ୟ ବ୍ୟବହାର ହେବା ହିଁ ସେହି ବିଷୟର ପ୍ରମାଣ । ଆହୁରି ମଧ୍ୟ ଦାନବତୁଲ୍ୟ ବିକଟାକୃତି, ବିକୃତ-ସ୍ୱଭାବାପନ୍ନ ଲୋକ ଯଦି କୌଣସି କାରଣରୁ ସତ୍‌ଚିନ୍ତାରେ, ସାଧୁଭାବରେ ନିରନ୍ତର ଛଅମାସ କାଳ କଟାଏ ତାହାର ଶାରୀରିକ ଗଠନ ପୂର୍ବାପେକ୍ଷା କେତେ କୋମଳ ଓ ସରଳ ହୋଇଆସେ, ତାହା ମଧ୍ୟ ବୋଧହୁଏ ଆମ ଭିତରେ ଅନେକଙ୍କର ପ୍ରତ୍ୟକ୍ଷର ବିଷୟ ହୋଇଅଛି ।

**କୁଣ୍ଡଳିନୀ ହେଉଛି ସଞ୍ଚିତ ପୂର୍ବସଂସ୍କାରର ଆବାସସ୍ଥାନ ଓ ସେସମସ୍ତର ନାଶ କିପରି ହୁଏ :**

ପାଶ୍ଚାତ୍ୟ ଶରୀରତତ୍ତ୍ୱବିଦ୍ କହନ୍ତି ଯେ, ଯେଉଁ ପ୍ରକାରଭାବ ତୁମ ମନରେ ଉଠୁନା କାହିଁକି, ଏହା ତୁମର ମସ୍ତିଷ୍କରେ ଚିରକାଳ ପାଇଁ ଗୋଟିଏ ଦାଗ ଆଙ୍କିଦେବ । ଏହିପରି ଭଲ ଓ ମନ୍ଦ ଦୁଇପ୍ରକାର ଭାବର ଦୁଇପ୍ରକାର ଦାଗର ସମଷ୍ଟିର ସ୍ୱଳ୍ପାଧିକ୍ୟ ନେଇ ହିଁ ତୁମର ଚରିତ୍ର ଗଠିତ ଓ ତୁମେ ଭଲ ବା ମନ୍ଦ ଲୋକ ବୋଲି ପରିଗଣିତ ହୁଅ । ପ୍ରାଚ୍ୟର, ବିଶେଷତଃ ଭାରତର ଯୋଗୀ-ଋଷିମାନେ କହନ୍ତି, ସେହି ଦୁଇ ପ୍ରକାର ଭାବ ମସ୍ତିଷ୍କରେ ଦୁଇ ପ୍ରକାର ଦାଗ ଅଙ୍କିତ କରି ହିଁ ଶେଷ ହୁଏ ନାହିଁ—ଭବିଷ୍ୟତରେ ପୁନରାୟ ଭଲମନ୍ଦ କର୍ମରେ ପ୍ରବୃତ୍ତ କରିପାରେ ଏପରି ସୂକ୍ଷ୍ମ ପ୍ରେରଣାଶକ୍ତିରେ ପରିଣତ ହୋଇ ମେରୁଦଣ୍ଡର ଶେଷଭାଗରେ ଅବସ୍ଥିତ 'ମୂଳାଧାର' ନାମକ ମେରୁଚକ୍ରରେ ନିତ୍ୟ ଅବସ୍ଥାନ କରୁଥାଏ; ଜନ୍ମଜନ୍ମାନ୍ତରରେ ସଞ୍ଚିତ ଏହିପରି ପ୍ରେରଣା ଶକ୍ତିସମୂହର ତାହା ହିଁ ଆବାସଭୂମି । ଏହି ସମସ୍ତର ନାମ ହିଁ ସଂସ୍କାର ବା ପୂର୍ବସଂସ୍କାର ଏବଂ ଏକମାତ୍ର ଭଗବାନଙ୍କର ସାକ୍ଷାତ୍ ପ୍ରତ୍ୟକ୍ଷ ହେଲେ କିମ୍ବା ନିର୍ବିକଳ୍ପ ସମାଧି ହେଲେ ହିଁ ଏହାର ନାଶ ହୋଇଥାଏ । ନତୁବା ଦେହରୁ ଦେହାନ୍ତରକୁ ଯିବା ସମୟରେ ମଧ୍ୟ ଜୀବ ଏହି ସଂସ୍କାରର ପୁଟୁଳିଟି 'ବାୟୁର୍ଗନ୍ଧାନିବାଶୟାତ୍' ଭଳି ସଙ୍ଗରେ ନେଇଯାଏ ।

**ଶରୀର ଓ ମନର ସମ୍ବନ୍ଧ :**

ଅଦ୍ୱୈତଜ୍ଞାନ ବା ଭଗବାନଙ୍କର ପ୍ରତ୍ୟକ୍ଷ ସାକ୍ଷାତ୍‌କାର ହେବାର ପୂର୍ବପର୍ଯ୍ୟନ୍ତ ଶରୀର ଓ ମନର ପୂର୍ବୋକ୍ତ ଘନିଷ୍ଠ ସମ୍ବନ୍ଧ ଥାଏ । ଶରୀରରେ କିଛି ହେଲେ ମନରେ ଆଘାତ ଲାଗେ, ପୁଣି ମନରେ କିଛି ହେଲେ ଶରୀରରେ ଆଘାତ ଅନୁଭବ ହୋଇଥାଏ । ପୁଣି ବ୍ୟକ୍ତିର ଶରୀର-ମନ ପରି, ବ୍ୟକ୍ତିର ସମଷ୍ଟି—ସମଗ୍ର ମାନବ ଜାତିର ଶରୀର ଓ ମନରେ ଏହିପ୍ରକାର ସମ୍ବନ୍ଧ ବିଦ୍ୟମାନ । ତୁମ ଶରୀର ଓ ମନର ଘାତ ପ୍ରତିଘାତ, ମୋର ଓ ଅନ୍ୟ ସମସ୍ତଙ୍କ ଶରୀର-ମନରେ

ଲାଗିଥାଏ । ଏହି ରୂପେ ବାହ୍ୟ ଓ ଅନ୍ତର, ସ୍ଥୂଳ ଓ ସୂକ୍ଷ୍ମ ଜଗତ ନିତ୍ୟ ସମ୍ବନ୍ଧରେ ଅବସ୍ଥିତ ଓ ପରସ୍ପର ପରସ୍ପରଙ୍କ ପ୍ରତି ନିରନ୍ତର ଘାତ-ପ୍ରତିଘାତ କରୁଅଛି । ସେଥିପାଇଁ ଦେଖାଯାଏ—ଯେଉଁଠାରେ ସମସ୍ତେ ଶୋକାକୁଳ, ସେଠାରେ ତୁମମନରେ ମଧ୍ୟ ଶୋକର ଉଦୟ ହେବ । ଯେଉଁଠାରେ ସମସ୍ତେ ଭକ୍ତିମାନ, ସେଠାରେ ତୁମ ମନରେ ବିନା ଚେଷ୍ଟାରେ ଭକ୍ତିଭାବ ଆସିବ । ଏପରି ଅନ୍ୟାନ୍ୟ ବିଷୟ ବୁଝିବାକୁ ହେବ ।

**ଭାବସମୂହ ସଂକ୍ରାମକ ବୋଲି ସାଧୁସଙ୍ଗର ପ୍ରୟୋଜନ :**

ସେଥିପାଇଁ ଦେଖାଯାଏ ଶାରୀରିକ ରୋଗ ଓ ସ୍ୱାସ୍ଥ୍ୟ ପରି ମାନସିକ ବିକାଶ ଓ ଭାବସମୂହର ମଧ୍ୟ ସଂକ୍ରାମିକା ଶକ୍ତି ଅଛି । ଏଗୁଡ଼ିକ ମଧ୍ୟ ଅଧିକାରୀ ଭେଦରେ ସଂକ୍ରମଣ କରିଥାଏ । ଭଗବତ୍ ଅନୁରାଗ ଉଦ୍ଦୀପିତ କରିବା ନିମିତ୍ତ ଶାସ୍ତ୍ର ସାଧୁସଙ୍ଗର ଏତେ ମାହାତ୍ମ୍ୟ କୀର୍ତ୍ତନ କରିଛନ୍ତି । ସେଥିପାଇଁ ଠାକୁର ଯେଉଁମାନେ ତାହାଙ୍କ ନିକଟକୁ ଥରେ ଯାଉଥିଲେ ସେମାନଙ୍କୁ କହୁଥିଲେ ''ଏଠାକୁ ଯିବା-ଆସିବା କରିବ; ପ୍ରଥମେ ପ୍ରଥମେ ଏଠାକୁ ବେଶୀ ବେଶୀ ଯିବା ଆସିବା କରିବାକୁ ହୁଏ'' ଇତ୍ୟାଦି । ସେ କଥା ବର୍ତ୍ତମାନ ଥାଉ ।

**ଏକନିଷ୍ଠା-ପ୍ରସୂତ ଶାରୀରିକ ପରିବର୍ତ୍ତନ :**

ସାଧାରଣ ମାନସିକ ଭାବସମୂହ ପରି ଭଗବାନଙ୍କ ପ୍ରତି ଏକାନ୍ତ ଏକନିଷ୍ଠ ତୀବ୍ର ଅନୁରାଗରେ ଯେଉଁ ସମସ୍ତ ଭାବ ମନରେ ଉଦୟ ହୁଏ, ସେସମସ୍ତ ମଧ୍ୟ ଅପୂର୍ବ ଶାରୀରିକ ପରିବର୍ତ୍ତନ ଆଣି ଦେଇଥାଏ । ଯଥା—ଏପରି ଅନୁରାଗ ଉପସ୍ଥିତ ହେଲେ ସାଧକର ରୂପରସାଦି ଉପରେ ଆକର୍ଷଣ କମିଯାଏ—ଅଳ୍ପାହାର, ସ୍ୱଳ୍ପନିଦ୍ରା ହୁଏ—ଖାଦ୍ୟ ବିଶେଷରେ ରୁଚି ଓ ଅନ୍ୟ ପ୍ରକାର ଖାଦ୍ୟରେ ବିତୃଷ୍ଣା ଉପସ୍ଥିତ ହୋଇଥାଏ—ସ୍ତ୍ରୀ ପୁତ୍ରାଦି ଯେଉଁମାନଙ୍କ ସହିତ ମାୟିକ ସମ୍ବନ୍ଧ ତାକୁ ଭଗବାନଙ୍କଠାରୁ ବିମୁଖ କରିଥାଏ, ସେସମସ୍ତ ବିଷବତ୍ ପରିତ୍ୟାଗ କରିବାକୁ ଇଚ୍ଛା ହୁଏ, ବାୟୁପ୍ରଧାନ ପ୍ରକୃତି ହୋଇଥାଏ—ଇତ୍ୟାଦି; ଏବିଷୟରେ ଠାକୁର ଯେପରି କହନ୍ତି, ''ବିଷୟୀ ଲୋକର ସାନ୍ନିଧ୍ୟ ସହିପାରେ ନାହିଁ, ଆତ୍ମୀୟ ସ୍ୱଜନଙ୍କର ସଂସର୍ଗରେ ଯେପରି ଦମ୍ ବନ୍ଦ ହୋଇ ପ୍ରାଣ ବାହାରି ଯିବା ପରି ହୁଏ''; ପୁଣି କହୁଥିଲେ, ''ଈଶ୍ୱରଙ୍କୁ ଯିଏ ଠିକ୍ ଭାବରେ ଡାକେ, ତା'ର ଶରୀରରେ ମହାବାୟୁ ସରସର ହୋଇ ମୁଣ୍ଡକୁ ଉଠିବ ହିଁ ଉଠିବ'' ଇତ୍ୟାଦି ।

**ଭକ୍ତିପଥ ଓ ଯୋଗମାର୍ଗର ସାମଞ୍ଜସ୍ୟ :**

ଅତଏବ ଦେଖାଯାଉଛି, ଭଗବତ୍ ଅନୁରାଗରେ ଯେଉଁ ସମସ୍ତ ମାନସିକ ପରିବର୍ତ୍ତନ ବା ଭାବ ଆସି ଉପସ୍ଥିତ ହୁଏ, ସେସବୁ ମଧ୍ୟରେ ଗୋଟିଏ ଗୋଟିଏ

ଶାରୀରିକ ପ୍ରତିକୃତି ବା ରୂପ ଅଛି । ମନର ଅବସ୍ଥା ଦେଖି ବୈଷ୍ଣବତନ୍ତ୍ର ଏପରି ସବୁ ପ୍ରକାରର ଭାବକୁ ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଓ ମଧୁର — ଏହି ପାଞ୍ଚଭାଗରେ ବିଭକ୍ତ କରିଛନ୍ତି; ଏବଂ ଏସମସ୍ତ ମାନସିକ ବିକାରକୁ ଆଶ୍ରୟ କରି ଯେଉଁ ସବୁ ଶାରୀରିକ ପରିବର୍ତ୍ତନ ଉପସ୍ଥିତ ହୁଏ, ତାହାର ବିଭିନ୍ନତା ଦେଖି ଯୋଗଶାସ୍ତ୍ର ମେରୁଦଣ୍ଡ ଓ ମସ୍ତିଷ୍କ ଅନ୍ତର୍ଗତ କୁଣ୍ଡଳିନୀଶକ୍ତି ଏବଂ ଷଟ୍‌ଚକ୍ରାଦିର ବର୍ଣ୍ଣନା କରିଛନ୍ତି ।

### କୁଣ୍ଡଳିନୀ କାହାକୁ କୁହାଯାଏ ଏବଂ ତା'ର ସୁପ୍ତ ଏବଂ ଜାଗ୍ରତ ଅବସ୍ଥା :

କୁଣ୍ଡଳୀ ବା କୁଣ୍ଡଳିନୀଶକ୍ତିର ସଂକ୍ଷିପ୍ତ ପରିଚୟ ଆମେ ଏହା ପୂର୍ବରୁ ଦେଇଅଛୁ । ଇହ ଜନ୍ମରେ ଏବଂ ପୂର୍ବ ପୂର୍ବ ଜନ୍ମ ଜନ୍ମାନ୍ତରରେ ଯେତେ ମାନସିକ ପରିବର୍ତ୍ତନ ବା ଭାବ ଜୀବର ଉପସ୍ଥିତ ହେଉଅଛି ବା ହୋଇଥିଲା, ସେସବୁର ସୂକ୍ଷ୍ମ ଶାରୀରିକ ପ୍ରତିକୃତି ଅବଲମ୍ବନରେ ଅବସ୍ଥିତ ମହା ଓଜସ୍ୱିନୀ ପ୍ରେରଣାଶକ୍ତିକୁ ହିଁ, ପତଞ୍ଜଳିପ୍ରମୁଖ ଋଷିଗଣ ଆଖ୍ୟା ପ୍ରଦାନ କରିଛନ୍ତି । ଯୋଗୀମାନେ କହନ୍ତି, ଏହା ବଦ୍ଧଜୀବଠାରେ ସମ୍ପୂର୍ଣ୍ଣ ସୁପ୍ତ ବା ଅପ୍ରକାଶିତ ଅବସ୍ଥାରେ ଥାଏ । ଏହାର ଏପରି ସୁପ୍ତ ଅବସ୍ଥାରେ ହିଁ ଜୀବର ସ୍ମୃତି, କଳ୍ପନା ପ୍ରଭୃତି ବୃତ୍ତିର ଉଦୟ ହୋଇଥାଏ । ଏହା ଯଦି କୌଣସି ମତେ ସମ୍ପୂର୍ଣ୍ଣ ଜାଗରିତ ବା ପ୍ରକାଶ ଅବସ୍ଥା ପ୍ରାପ୍ତ ହୁଏ, ତେବେ ହିଁ ଜୀବକୁ ପୂର୍ଣ୍ଣଜ୍ଞାନଲାଭରେ ପ୍ରେରଣ କରି ଶ୍ରୀଭଗବାନଙ୍କ ସାକ୍ଷାତକାର କରାଏ । ଯଦି କୁହାଯାଏ, ସୁପ୍ତାବସ୍ଥାରେ କୁଣ୍ଡଳିନୀ ଶକ୍ତିରୁ କିପରି ସ୍ମୃତି–କଳ୍ପନା ପ୍ରଭୃତିର ଉଦୟ ହୋଇପାରେ? ତାହାର ଉତ୍ତରରେ କହିବାକୁ ହେବ, ସୁପ୍ତ ହେଲେବି ବାହାରର ରୂପରସାଦି ପଦାର୍ଥ ପଞ୍ଚେନ୍ଦ୍ରିୟ–ଦ୍ୱାର ଦେଇ ନିରନ୍ତର ମସ୍ତିଷ୍କରେ ଯେଉଁ ଆଘାତ କରୁଛି ସେଥିପାଇଁ ଟିକିଏ ଅଧେ କ୍ଷଣମାତ୍ର ସ୍ଥାୟୀ ଚେତନା ଆସି ଏଠାରେ ଉପସ୍ଥିତ ହୁଏ । ଯେପରି ମଶା କାମୁଡୁଥିବା ନିଦ୍ରିତ ବ୍ୟକ୍ତିର ହସ୍ତ ସ୍ୱତଃ ମଶା–କାମୁଡ଼ା ସ୍ଥାନରେ କୁଣ୍ଡାଇ ଥାଏ, ଠିକ୍ ସେହିପରି ।

### ଜାଗରିତା କୁଣ୍ଡଳିନୀର ଗତି — ଷଟ୍‌ଚକ୍ରଭେଦ ଓ ସମାଧି :

ଯୋଗୀମାନେ କହନ୍ତି, ମସ୍ତିଷ୍କମଧ୍ୟଗତ ବ୍ରହ୍ମରନ୍ଧ୍ରସ୍ଥ ଅବକାଶ ବା ଆକାଶରେ ଅଖଣ୍ଡସଚ୍ଚିଦାନନ୍ଦସ୍ୱରୂପ ପରମାତ୍ମା ବା ଭଗବାନ ଜ୍ଞାନସ୍ୱରୂପରେ ଅବସ୍ଥାନ କରୁଛନ୍ତି । ତାଙ୍କ ପ୍ରତି ପୂର୍ବୋକ୍ତ କୁଣ୍ଡଳିନୀଶକ୍ତିର ବିଶେଷ ଅନୁରାଗ ଅଥବା ଭଗବାନ ତାହାଙ୍କୁ ନିରନ୍ତର ଆକର୍ଷଣ କରୁଛନ୍ତି । କିନ୍ତୁ ଜାଗରିତା ନ ଥିବାରୁ କୁଣ୍ଡଳିନୀଶକ୍ତିର ସେହି ଆକର୍ଷଣ ଅନୁଭବ ହେଉ ନାହିଁ । ଜାଗରିତା ହେବା ମାତ୍ରେ ଏହା ଭଗବାନଙ୍କର ସେହି ଆକର୍ଷଣ ଅନୁଭବ କରିବ ଏବଂ ତାଙ୍କର ନିକଟତର ହେବ । ଏପରି କୁଣ୍ଡଳିନୀର ଭଗବାନଙ୍କ ନିକଟସ୍ଥ ହେବାର ପଥ ଆମମାନଙ୍କର ପ୍ରତ୍ୟେକଙ୍କର ଶରୀରରେ ବିଦ୍ୟମାନ । ମସ୍ତିଷ୍କରୁ ଆରମ୍ଭ ହୋଇ ମେରୁଦଣ୍ଡ

ମଧ୍ୟଦେଇ ଏହିପଥ ମେରୁଦଣ୍ଡର ମୂଳରେ 'ମୂଳାଧାର' ନାମକ ମେରୁଚକ୍ର ପର୍ଯ୍ୟନ୍ତ ଆସିଅଛି । ଏହି ପଥ ହିଁ ଯୋଗଶାସ୍ତ୍ର–କଥିତ ସୁଷୁମ୍ନାମାର୍ଗ । ପାଶ୍ଚାତ୍ୟ ଶରୀରତତ୍ତ୍ୱବିତ୍ ଏହି ପଥକୁ ହିଁ Canal Centralis (ମଧ୍ୟପଥ) ବୋଲି ନିର୍ଦ୍ଦେଶ କରିଛନ୍ତି, କିନ୍ତୁ ଏହାର କୌଣସି ଆବଶ୍ୟକତା ବା କାର୍ଯ୍ୟକାରିତା ଏପର୍ଯ୍ୟନ୍ତ ଖୋଜି ପାଇ ନାହାନ୍ତି । ଏହି ପଥଦେଇ ହିଁ କୁଣ୍ଡଳିନୀ ପୂର୍ବେ ପରମାତ୍ମାଙ୍କଠାରୁ ବିଯୁକ୍ତା ହୋଇ ମସ୍ତିଷ୍କରୁ ମେରୁଚକ୍ରରେ ବା ମୂଳାଧାରରେ ଆସି ଉପସ୍ଥିତ ହୋଇ ନିଦ୍ରିତା ହୋଇଅଛି । ପୁନଶ୍ଚ ଏହି ପଥ ଦେଇ ହିଁ ମେରୁଦଣ୍ଡ ମଧ୍ୟରେ ଉପରକୁ ଉପର ଅବସ୍ଥିତ ଛଅଟି ଚକ୍ର କ୍ରମେ କ୍ରମେ ଅତିକ୍ରମ କରି ପରିଶେଷରେ ମସ୍ତିଷ୍କରେ ଆସି ଉପନୀତ ହୁଏ ।[୧] କୁଣ୍ଡଳିନୀ ଜାଗରିତା ହୋଇ ଗୋଟିଏ ଚକ୍ରରୁ ଅନ୍ୟ ଚକ୍ରରେ ଯେତେବେଳେ ଆସି ଉପସ୍ଥିତ ହୁଏ, ସେତେବେଳେ ଜୀବର ଗୋଟିଏ ଗୋଟିଏ ପ୍ରକାରର ଅଭୂତପୂର୍ବ ଉପଲବ୍ଧି ହୋଇଥାଏ; ଏବଂ ଏହିପରି ଯେତେବେଳେ ଏହା ମସ୍ତିଷ୍କରେ ଉପନୀତ ହୁଏ, ସେତେବେଳେ ଜୀବର ଧର୍ମବିଜ୍ଞାନର ଚରମ ଉପଲବ୍ଧି ବା ଅଦ୍ୱୈତଜ୍ଞାନରେ 'କାରଣଂ କାରଣାନାଂ' (କାରଣର ମଧ୍ୟ କାରଣ) ପରମାତ୍ମାଙ୍କ ସହିତ ତନ୍ମୟତ୍ୱ ଆସେ । ସେତେବେଳେ ହିଁ ଜୀବର ଚରମଭାବର ଉପଲବ୍ଧି ହୋଇଥାଏ କିମ୍ବା ଯେଉଁ ମହାଭାବ ଅବଲମ୍ବନରେ ଅନ୍ୟ ସମସ୍ତ ଭାବ ମାନବ ମନରେ ସର୍ବକ୍ଷଣ ଉଦିତ ହେଉଅଛି, ସେହି 'ଭାବାତୀତ ଭାବ'ରେ ତନ୍ମୟ ହୋଇ ଅବସ୍ଥାନକରିବା ଭଳି ଅବସ୍ଥା ଆସିଥାଏ ।

### ସେହି ସମ୍ବନ୍ଧରେ ଠାକୁରଙ୍କର ଅନୁଭବ :

କେତେ ସରଳ କଥା ମାଧ୍ୟମରେ ଠାକୁର ଆମକୁ ଯୋଗର ଏସମସ୍ତ ଜଟିଳ ତତ୍ତ୍ୱ ବୁଝାଉଥିଲେ ! କହୁଥିଲେ, ''ଦେଖ, ସର୍‌ସର୍ କରି କ'ଣ ଗୋଟାଏ ପାଦରୁ ମଥା ଉପରକୁ ଉଠେ ! ଯେପର୍ଯ୍ୟନ୍ତ ତାହା ମଥାରେ ନ ପହଞ୍ଚେ ସେପର୍ଯ୍ୟନ୍ତ ହୋସ୍ ଥାଏ; ଆଉ ଯେମିତି ତାହା ମଥାରେ ପହଞ୍ଚେ ସଙ୍ଗେସଙ୍ଗେ ସବୁକିଛି ଭୁଲିଯାଏ, ସେତେବେଳେ ଆଉ ଦେଖିବା ଶୁଣିବା କିଛି ରହେ ନାହିଁ, କଥା କ'ଣ କହିବି ! କିଏ କଥା କହିବ ? —'ମୁଁ ' 'ତୁମେ' ଏପରି ବୁଦ୍ଧି ହିଁ ଚାଲିଯାଏ ! ମନେହୁଏ ତୁମମାନଙ୍କୁ ସବୁ କହିବି—ତାହା ଉଠୁ ଉଠୁ କେତେ କ'ଣ ଦର୍ଶନ ହୁଏ ସବୁ କଥା କହିବି । ଯେପର୍ଯ୍ୟନ୍ତ ତାହା (ହୃଦୟ ଓ କଣ୍ଠ ଦେଖାଇ) ଏଠାକୁ ବା ଏପର୍ଯ୍ୟନ୍ତ

---

୧. ଯୋଗଶାସ୍ତ୍ରରେ ଏହି ଛଅଟି ମେରୁଚକ୍ରର ନାମ ଓ ବିଶେଷ ବିଶେଷ ଅବସ୍ଥାନସ୍ଥଳ ପର୍ଯ୍ୟାୟକ୍ରମେ ନିର୍ଦ୍ଦିଷ୍ଟ ହୋଇଛି । ଯଥା—(୧) ମେରୁଦଣ୍ଡର ଶେଷଭାଗରେ 'ମୂଳାଧାର', (୨) ତାଉପରକୁ ଲିଙ୍ଗମୂଳରେ 'ସ୍ୱାଧିଷ୍ଠାନ', (୩) ତାଉପରକୁ ନାଭିସ୍ଥଳରେ 'ମଣିପୁର', (୪) ତାଉପରକୁ ହୃଦୟରେ 'ଅନାହତ', (୫) ତାଉପରକୁ କଣ୍ଠଦେଶରେ 'ବିଶୁଦ୍ଧ', (୬) ତାଉପରକୁ ଭ୍ରୂମଧ୍ୟରେ 'ଆଜ୍ଞା', ଅବଶ୍ୟ ଏହି ଛଅଟି ଚକ୍ର ହିଁ ମେରୁଦଣ୍ଡମଧ୍ୟସ୍ଥ ସୁଷୁମ୍ନା ପଥରେ ହିଁ ଅବସ୍ଥିତ, ଅତଏବ 'ହୃଦୟ' 'କଣ୍ଠ' ଇତ୍ୟାଦି ଶବ୍ଦ ଦ୍ୱାରା ସେମାନଙ୍କର ବିପରୀତରେ ଅବସ୍ଥିତ ମେରୁଦଣ୍ଡମଧ୍ୟସ୍ଥ ସ୍ଥଳ ହିଁ ଲକ୍ଷିତ ହୋଇଅଛି ବୋଲି ବୁଝିବାକୁ ହେବ ।

ଅତି ଜୋରରେ ଉଠୁଛି, ସେପର୍ଯ୍ୟନ୍ତ କହିପାରେ ଓ କହେ; କିନ୍ତୁ ଯେମିତି ତାହା (କଣ୍ଠ ଦେଖାଇ) ଏଠାରୁ ଛାଡ଼ି ଉପରେ ଉଠିଲା, ସେତେବେଳେ ଯେପରି କିଏ ମୁହଁକୁ ଚାପିଧରେ, ସେହି ଅବସ୍ଥାରେ ସବୁ ବିସ୍ମରଣ ହୋଇଯାଏ—ସମ୍ଭାଳିପାରେ ନାହିଁ ! (କଣ୍ଠ ଦେଖାଇ) ଏହାର ଉପରକୁ ଗଲେ କିପ୍ରକାର ଦର୍ଶନ ହୁଏ ତାହା କହିବାକୁ ଯାଇ ଯେମିତି ଭାବେ କିପରି ଦର୍ଶନ ହେଉଛି କହିବି, ସେତିକିବେଳେ ମନ ହଠାତ୍ ଉପରକୁ ଉଠିଯାଏ—ଆଉ କହି ହୁଏ ନାହିଁ !''

**ଠାକୁରଙ୍କର ନିର୍ବିକଳ୍ପ ସମାଧି ସମୟର ଅନୁଭବ କହିବାର ଚେଷ୍ଟା :**

ଆହା, କେତେଦିନ ଯେ ଠାକୁର କଣ୍ଠର ଉପରିସ୍ଥ ଚକ୍ରକୁ ମନ ଉଠିଲେ କିପରି ଦର୍ଶନ ଇତ୍ୟାଦି ହୁଏ, ତାହା ଅଶେଷ ପ୍ରୟାସପୂର୍ବକ ଆମମାନଙ୍କ ନିକଟରେ କହିବାକୁ ଯାଇ ଅପାରଗ ହୋଇଛନ୍ତି, ତାହା କହିହେବ ନାହିଁ ! ଆମର ଜଣେ ବନ୍ଧୁ କହନ୍ତି, ''ଦିନେ ଏପରି ଖୁବ୍ ଜୋର କରି କହିଲେ, 'ଆଜି ତୁମ ପାଖରେ ସବୁକଥା କହିବି, ଟିକିଏ ବି ଲୁଚାଇବି ନାହିଁ'—ଏହା କହି ଆରମ୍ଭ କରି ହୃଦୟ ଓ କଣ୍ଠ ପର୍ଯ୍ୟନ୍ତ ସମସ୍ତ ଚକ୍ରଗୁଡ଼ିକର କଥା ବେଶ୍ କହିଲେ, ତାପରେ ଭ୍ରୂମଧ୍ୟସ୍ଥଳ ଦେଖାଇ କହିଲେ, 'ଏଠାକୁ ମନ ଉଠିଲେ ହିଁ ପରମାତ୍ମାଙ୍କର ଦର୍ଶନ ହୁଏ ଏବଂ ଜୀବର ସମାଧି ହୁଏ । ସେତେବେଳେ ପରମାତ୍ମା ଓ ଜୀବାତ୍ମାଙ୍କ ମଧ୍ୟରେ କେବଳ ଗୋଟିଏ ସ୍ୱଚ୍ଛ ପତଳା ପରଦାମାତ୍ର ବ୍ୟବଧାନ ରହିଥାଏ । ସେ ସେତେବେଳେ ଏହି ପ୍ରକାର ଦେଖେ'—କହି ଯେମିତି ପରମାତ୍ମାଙ୍କ ଦର୍ଶନର କଥା ବିଶେଷ କରି କହିବାକୁ ଚେଷ୍ଟା କଲେ, ସଙ୍ଗେ ସଙ୍ଗେ ସମାଧିସ୍ଥ ହୋଇଗଲେ । ସମାଧି ଭାଙ୍ଗିଲା ପରେ ପୁନର୍ବାର କହିବାକୁ ଚେଷ୍ଟା କଲେ, ପୁନରାୟ ସମାଧିସ୍ଥ ହୋଇଗଲେ ! ଏପରି ବାରମ୍ବାର ଚେଷ୍ଟା ପରେ ସଜଳନୟନରେ ଆମକୁ କହିଲେ, 'ଆରେ, ମୋର ତ ମନ ଚାହୁଁଛି ସବୁକଥା କହେ, ଟିକିଏ ହେଲେ ତୁମ ନିକଟରେ ଲୁଚାଇବି ନାହିଁ, କିନ୍ତୁ ମା' କୌଣସି ମତେ କହିବାକୁ ଦେଲେ ନାହିଁ—ମୁହଁଟାକୁ ଚାପିଧରିଲେ !' ଆମେ ଅବାକ୍ ହୋଇ ଭାବିବାକୁ ଲାଗିଲୁ—ଏ କିପରି ଘଟଣା ଦେଖୁଛୁ ! କହିବେ ବୋଲି, ସେ ଏତେ ଚେଷ୍ଟା କରୁଛନ୍ତି; ନ କହି ପାରିବାରୁ ତାଙ୍କର କଷ୍ଟ ହେବା ବୁଝୁଛୁ, କିନ୍ତୁ କୌଣସି ଭାବରେ ପାରୁନାହାନ୍ତି—ମା' କିନ୍ତୁ ଭାରି ଦୁଷ୍ଟ ! ଇଏ ଭଲକଥା କହିବେ, ଭଗବତ୍ ଦର୍ଶନ କଥା କହିବେ, ମା' ମୁହଁ ଚାପି ଧରିବ କାହିଁକି ? ସେତେବେଳେ ଆଉ କ'ଣ ବୁଝିବୁ ଯେ, ମନ-ବୁଦ୍ଧି ସାହାଯ୍ୟରେ ଯାହାସବୁ କୁହାବୋଲା ହୁଏ, ସେମାନଙ୍କର ଦୌଡ଼ ବେଶୀ ଦୂର ପର୍ଯ୍ୟନ୍ତ ନୁହେଁ; ଏବଂ ସେମାନେ ଯେତେଦୂର ଦଉଡ଼ାଇ ପାରନ୍ତି ତା ବାହାରକୁ ନ ଗଲେ ପରମାତ୍ମାଙ୍କର ପୂର୍ଣ୍ଣ ଦର୍ଶନ ହୁଏ ନାହିଁ ! ଠାକୁର ଯେ ଆମମାନଙ୍କ

ପ୍ରତି ସ୍ନେହବଶତଃ ଅସମ୍ଭବକୁ ସମ୍ଭବ କରିବାକୁ ଚେଷ୍ଟା କରୁଛନ୍ତି—ଏକଥା କ'ଣ ସେତେବେଳେ ବୁଝିପାରୁଥିଲୁ ?''

**ସମାଧିପଥରେ କୁଣ୍ଡଳିନୀର ପାଞ୍ଚପ୍ରକାରର ଗତି :**

କୁଣ୍ଡଳିନୀଶକ୍ତି ସୁଷୁମ୍ନା ପଥରେ ଉଠିବା ସମୟରେ ଯେପରି ଅନୁଭବ ହୁଏ, ସେସମ୍ବନ୍ଧରେ ଠାକୁର ଆହୁରି ବିଶେଷ କରି କହୁଥିଲେ, ''ଦେଖ, ତାହା ସର୍ ସର୍ କରି ମୁଣ୍ଡ ଉପରକୁ ଉଠେ, କିନ୍ତୁ ସବୁ ସମୟରେ ଗୋଟିଏ ପ୍ରକାର ଭାବରେ ଉଠେ ନାହିଁ । ଶାସ୍ତ୍ରରେ ତା'ର ପାଞ୍ଚପ୍ରକାର ଗତିର କଥା ଅଛି—ଯଥା, (୧) **ପିପୀଲିକାଗତି**—ଯେପରି ପିମ୍ପୁଡ଼ିଗୁଡ଼ିକ ମୁହଁରେ ଖାଇବା ଜିନିଷଧରି ଧାଡ଼ିବାନ୍ଧି ସଲସଲ କରି ଯାଆନ୍ତି, ସେହିପରି ପାଦଠାରୁ ଗୋଟେ ସଲସଲ ଆରମ୍ଭ ହୋଇ କ୍ରମେ କ୍ରମେ ଧୀରେ ଧୀରେ ଉପରକୁ ଉଠି ମଥା ପର୍ଯ୍ୟନ୍ତ ଯାଏ ଏବଂ ସମାଧି ହୁଏ ! (୨) **ମଣ୍ଡୁକଗତି**—ମଣ୍ଡୁକଗୁଡ଼ିକ ଯେମିତି ଫକ୍ ଫକ—ଫକ୍ ଫକ ଫକ ହୋଇ, ଦୁଇ ତିନିଥର ଡେଇଁ ଟିକିଏ ରହିଯାଏ, ପୁଣି ଦୁଇ-ତିନିଥର ଡେଇଁ ପୁଣି ଟିକେ ରହିଯାଏ, ସେପରି କରି କ'ଣ ଗୋଟେ ପାଦଠାରୁ ମଥାକୁ ଉଠୁଛି ବୋଲି ବୁଝାଯାଏ; ଆଉ ଯେଉଁକ୍ଷଣି ମୁଣ୍ଡକୁ ଉଠେ ସଙ୍ଗେ ସଙ୍ଗେ ସମାଧି ହୋଇଯାଏ ! (୩) **ସର୍ପଗତି**—ସାପ ଯେପରି ଲମ୍ବା ହୋଇ ବା ଚକାହୋଇ ଚୁପ୍ କରି ପଡ଼ିଥାଏ, ତା ସାମନାରେ ଖାଦ୍ୟ (ଶିକାର) ଦେଖିଲେ ବା ଭୟ ପାଇଲେ, ଯେପରି କିଲ୍‌ବିଲ୍ କରି ଅଙ୍କାବଙ୍କା ଭାବରେ ଛୁଟିଯାଏ, ସେହିପରି ତାହା ଏକାଥରକେ ମଥାକୁ ଉଠିଯାଏ ଓ ତତ୍‌କ୍ଷଣାତ୍ ସମାଧି ହୁଏ ! (୪) **ପକ୍ଷୀଗତି**—ପକ୍ଷୀ ଯେପରି ଗୋଟିଏ ଜାଗାରୁ ଅନ୍ୟ ଜାଗାକୁ ଯାଇ ବସିବା ସମୟରେ ଫଡ୍ କରି ଉଡ଼ି କେତେବେଳେ ଟିକିଏ ଉପରକୁ ଉଠେ ତ ପୁଣି କେତେବେଳେ ଟିକିଏ ତଳକୁ ଓହ୍ଲାଇଥାଏ, କିନ୍ତୁ କେଉଁଠି ବିଶ୍ରାମ କରେ ନାହିଁ, ଏକାବେଳକେ ଯେଉଁଠି ବସିବ ବୋଲି ମନେ କରିଥାଏ ସେଠାରେ ଯାଇ ବସେ, ସେହିପରି ତାହା ମଥାକୁ ଉଠେ ଏବଂ ସମାଧି ହୁଏ ! (୫) **ମର୍କଟ ଗତି**—ମାଙ୍କଡ଼ ଯେମିତି ଗୋଟିଏ ଗଛରୁ ଅନ୍ୟ ଗଛକୁ ଯିବାବେଳେ 'ହୁପ୍' 'ହୁପ୍' କରି ଗୋଟିଏ ଡାଳରୁ ଅନ୍ୟ ଡାଳକୁ ଡିଅନ୍ତି ଓ ପୁଣି ସେ ଡାଳରୁ 'ହୁପ୍' କରି ଅନ୍ୟ ଡାଳରେ ପଡ଼ନ୍ତି—ଏହି ପ୍ରକାରରେ ଦୁଇ ତିନି ଲମ୍ଫରେ ଯେଉଁଠାରେ ବସିବାକୁ ଭାବିଥାଏ ସେଠାରେ ପହଞ୍ଚିଯାଏ, ସେହିପରି ଏହା ମଧ୍ୟ ଦୁଇ ତିନି ଡିଆଁରେ ମଥାକୁ ଉଠିଯାଏ ଏବଂ ସମାଧି ହୁଏ ।''

## ବେଦାନ୍ତର ସପ୍ତଭୂମି ଓ ପ୍ରତ୍ୟେକ ଭୂମିରେ ଅନୁଭୂତି ଆଧ୍ୟାତ୍ମିକ ଦର୍ଶନ ସମ୍ବନ୍ଧରେ ଠାକୁରଙ୍କ କଥା :

କୁଣ୍ଡଳିନୀଶକ୍ତି ସୁଷୁମ୍ନା ପଥ ଦେଇ ଉଠିବା ବେଳେ ପ୍ରତି ଚକ୍ରରେ କେଉଁ କେଉଁ ପ୍ରକାରର ଦର୍ଶନ ହୁଏ ସେବିଷୟରେ ଠାକୁର କହୁଥିଲେ, ''ବେଦାନ୍ତରେ ସପ୍ତ ଭୂମିର କଥା ଅଛି । ପ୍ରତି ଭୂମିରେ ଅଲଗା ଦର୍ଶନ ହୁଏ । ମନ ସ୍ୱଭାବତଃ ନିମ୍ନର ତିନି ଭୂମିରେ ଯିବା-ଆସିବା କରେ, ସେହି ଆଡ଼େ ହିଁ ଦୃଷ୍ଟି ଥାଏ— ଗୁହ୍ୟ, ଲିଙ୍ଗ, ନାଭି—ଖାଇବା, ପିନ୍ଧିବା, ରମଣ ଇତ୍ୟାଦି । ସେହି ତିନି ଭୂମି ଛାଡ଼ି ଯଦି ହୃଦୟକୁ ଉଠେ ତେବେ ତାର ଜ୍ୟୋତି ଦର୍ଶନ ହୁଏ । କିନ୍ତୁ ହୃଦୟକୁ କେବେ କେବେ ଉଠିଲେ ମଧ୍ୟ ମନ ପୁଣି ତଳର ତିନି ଭୂମି—ଗୁହ୍ୟ, ଲିଙ୍ଗ ଓ ନାଭିକୁ ଓହ୍ଲେଇ ଆସେ । ହୃଦୟ ଛାଡ଼ି ଯଦି କାହାର ମନ କଣ୍ଠକୁ ଉଠେ ତାହାହେଲେ ସେ ଈଶ୍ୱରଙ୍କ କଥା ଛଡ଼ା ଆଉ କୌଣସି କଥା—ଯେପରି ବିଷୟ କଥା କହିପାରେ ନାହିଁ । ସେତେବେଳେ ମୋର ଏପରି ହେଉଥିଲା—ଯଦି କିଏ ବିଷୟ କଥା କହେ, ସେତେବେଳେ ମନେ ହେଉଥିଲା କିଏ ଯେପରି ମଥାରେ ଲାଠିଦ୍ୱାରା ପ୍ରହାର କରୁଛି; ସେତେବେଳେ ଦୂରକୁ ଅର୍ଥାତ୍ ପଞ୍ଚବଟୀକୁ ପଳାଇଯାଉଥିଲି, ଯେଉଁଠାରେ ଏସମସ୍ତ କଥା ଶୁଣିବାକୁ ପାଇବି ନାହିଁ । ବିଷୟୀ ଦେଖିଲେ ଭୟରେ ଲୁଚୁଥିଲି ! ଆତ୍ମୀୟସ୍ୱଜନମାନଙ୍କୁ କାଳକୂପ ସଦୃଶ ମନେ ହେଉଥିଲା— ମନେ ହେଉଥିଲା ସେମାନେ ଯେପରି ଟାଣି କୂପ ମଧ୍ୟରେ ପକାଇବାକୁ ଚେଷ୍ଟା କରୁଛନ୍ତି, ପଡ଼ିଯିବି ଆଉ ଉଠିପାରବି ନାହିଁ । ଦମ୍ ବନ୍ଦ ହୋଇ ଯାଉଥିଲା, ମନେ ହେଉଥିଲା ଯେପରି ପ୍ରାଣ ବାହାରିଯାଉଛି—ସେଠାରୁ ପଳାଇ ଆସିଲେ ହିଁ ଶାନ୍ତି ! —କଣ୍ଠକୁ ଉଠିଲେ ମଧ୍ୟ ମନ ପୁଣି ଗୁହ୍ୟ, ଲିଙ୍ଗ ଓ ନାଭିକୁ ଓହ୍ଲାଇ ଯାଇପାରେ, ସେତେବେଳେ ମଧ୍ୟ ସାବଧାନରେ ରହିବାକୁ ହୁଏ । ତା'ପରେ କଣ୍ଠ ଛାଡ଼ି ଯଦି କାହାର ମନ ଭ୍ରୂମଧ୍ୟକୁ ଉଠେ ତେବେ ଆଉ ପଡ଼ିଯିବାର ଭୟ ନାହିଁ । ସେତେବେଳେ ପରମାତ୍ମା ଦର୍ଶନ ହୋଇ ନିରନ୍ତର ସମାଧିସ୍ଥ ରହେ । ସେଠାର ଓ ସହସ୍ରାର ମଧ୍ୟରେ ଗୋଟିଏ ମାତ୍ର କାଚପରି ସ୍ୱଚ୍ଛ ପରଦାର ଆବରଣ ଥାଏ । ସେତେବେଳେ ପରମାତ୍ମା, ଏତେ ନିକଟରେ ଯେ, ମନେହୁଏ ଯେପରି ତାଙ୍କ ସହିତ ମିଶିଯାଇଛି; ଏକ ହୋଇଯାଇଛି; କିନ୍ତୁ ସେତେବେଳେ ମଧ୍ୟ ଏକ ହୋଇ ନାହିଁ । ଏଠାରୁ ମନ ଯଦି ଓହ୍ଲାଏ ତେବେ ଅତିବେଶୀରେ କଣ୍ଠ ବା ହୃଦୟ ପର୍ଯ୍ୟନ୍ତ ଓହ୍ଲାଏ—ତା'ର ନିମ୍ନକୁ ଆଉ ଓହ୍ଲାଇପାରେ ନାହିଁ । ଜୀବକୋଟିମାନେ ଏହିଠାରୁ ଆଉ ଓହ୍ଲାଇ ନ ଥାନ୍ତି—ଏକୋଇଶ ଦିନ ନିରନ୍ତର ସମାଧିରେ ରହିବାପରେ ଏହି ଆବରଣଟି ବା ପରଦାଟି ଭେଦ ହୋଇଯାଏ ଏବଂ ପରମାତ୍ମାଙ୍କ ସହିତ ସମ୍ପୂର୍ଣ୍ଣ ଭାବରେ ମିଳିତ ହୋଇଯା'ନ୍ତି । ସହସ୍ରାରରେ ପରମାତ୍ମାଙ୍କ ସଙ୍ଗରେ ସମ୍ପୂର୍ଣ୍ଣ ଏକ ହୋଇଯିବା ହିଁ ସପ୍ତମ ଭୂମିକୁ ଉଠିବା ।''

**ଠାକୁରଙ୍କର ଶୁଣି ମନେରଖିବାର ଅଦ୍ଭୁତ ଶକ୍ତି :**

ଠାକୁରଙ୍କର ଏସମସ୍ତ ବେଦ-ବେଦାନ୍ତ, ଯୋଗ-ବିଜ୍ଞାନର କଥା କହିବା ଶୁଣି ଆମମାନଙ୍କ ମଧ୍ୟରୁ କେହି କେହି ମଧ୍ୟ କେବେକେବେ ତାଙ୍କୁ ପଚାରୁଥିଲେ, 'ମହାଶୟ, ଆପଣ ତ ଲେଖାପଢ଼ାର କେବେ ପାଖ ମାଡ଼ନ୍ତି ନାହିଁ, ଏତେସବୁ ଜାଣିଲେ କିପରି ?' ଅଦ୍ଭୁତ ଠାକୁରଙ୍କର, ଏହି ଅଦ୍ଭୁତ ପ୍ରଶ୍ନରେ ମଧ୍ୟ ବିରକ୍ତି ନାହିଁ ! ଟିକେ ହସିଦେଇ କହୁଥିଲେ, ''ନିଜେ ପଢ଼ି ନାହିଁ, କିନ୍ତୁ ସେସବୁ ଅନେକ ଶୁଣିଛି ! ସେ ସବୁ ମନେଅଛି ! ଅନ୍ୟମାନଙ୍କ ପାଖରୁ, ଭଲ ଭଲ ପଣ୍ଡିତମାନଙ୍କ ପାଖରୁ ବେଦ-ବେଦାନ୍ତ, ଦର୍ଶନ-ପୁରାଣ ଆଦି ସବୁ ଶୁଣିଛି । ଶୁଣି, ତା ଭିତରେ କ'ଣ ଅଛି ଜାଣି, ତାପରେ ସେଗୁଡ଼ିକୁ (ଗ୍ରନ୍ଥଗୁଡ଼ିକୁ) ଦଉଡ଼ି ସାହାଯ୍ୟରେ ମାଳାକରି ଗୁନ୍ଥି ଗଳାରେ ପିନ୍ଧିପକାଇଛି—'ଏଇ ନେ ତୋ'ର ଶାସ୍ତ୍ର-ପୁରାଣ, ମୋତେ ଶୁଦ୍ଧା ଭକ୍ତି ଦେ' କହି ମା'ଙ୍କ ପାଦପଦ୍ମରେ ସମର୍ପଣ କରିଦେଇଛି ।''

**ଠାକୁରଙ୍କର ଅଦ୍ୱୈତଭାବ ସହଜରେ ବୁଝାଇବା :**

ବେଦାନ୍ତର ଅଦ୍ୱୈତଭାବ ବା ଭାବାତୀତ ଭାବ ସମ୍ବନ୍ଧରେ ଠାକୁର କହୁଥିଲେ, ''ଏହା ସବା ଶେଷକଥା । କିପରି ଜାଣିଛୁ ? —ଯେପରି ଅନେକ ଦିନର ପୁରୁଣା ଚାକର । ମାଲିକ ତା'ର ଗୁଣରେ ଖୁସି ହୋଇ ତା'ର ସମସ୍ତ କଥାରେ ବିଶ୍ୱାସ କରେ, ସମସ୍ତ ବିଷୟରେ ପରାମର୍ଶ କରେ । ଦିନେ ଖୁବ୍ ଖୁସି ହୋଇ ତା'ର ହାତଧରି ନିଜ ଆସନରେ ବସାଇବାକୁ ଗଲେ ! ଚାକର ସଙ୍କୋଚ କରି କହେ 'କ'ଣ କରୁଛ, କ'ଣ କରୁଛ', ମାତ୍ର ସେ ଏପରି କହିଲେ ମଧ୍ୟ ମାଲିକ ଜୋର୍ କରି ତାକୁ ଟାଣି ବସାଇ କହେ, 'ଆରେ, ବସୁନୁ ! ତୁ ଯିଏ, ମୁଁ ମଧ୍ୟ ସିଏ'—ସେହିପରି ।''

**ଏହି ବିଷୟକ ଦୃଷ୍ଟାନ୍ତ—ସ୍ୱାମୀ ତୁରୀୟାନନ୍ଦ :**

ଆମର ଜନୈକ ବନ୍ଧୁ[୧] ଏକ ସମୟରେ ବେଦାନ୍ତ ଚର୍ଚ୍ଚାରେ ବିଶେଷ ମନୋନିବେଶ କରିଥିଲେ, ଠାକୁରେ ସେତେବେଳେ ବିଦ୍ୟମାନ ଥିଲେ ଏବଂ ତାଙ୍କର ଆକୁମାର ବ୍ରହ୍ମଚର୍ଯ୍ୟ, ଭକ୍ତି, ନିଷ୍ଠା ପ୍ରଭୃତି ପାଇଁ ତାଙ୍କୁ ବିଶେଷ ଭାବରେ ଭଲ ପାଉଥିଲେ । ବେଦାନ୍ତଚର୍ଚ୍ଚା ଓ ଧ୍ୟାନଭଜନ ଆଦିରେ ନିବିଷ୍ଟ ହୋଇ ବନ୍ଧୁ ଜଣକ ପୂର୍ବରୁ ଯେପରି ଘନ ଘନ ଯିବାଆସିବା କରୁଥିଲେ ସେପରି କିଛିଦିନ କରିନାହାନ୍ତି ବା କରିପାରି ନାହାନ୍ତି । ଠାକୁରଙ୍କର ତୀକ୍ଷ୍ଣ ଦୃଷ୍ଟିରେ ସେକଥା ଅଦେଖା ହୋଇ ନାହିଁ । ବନ୍ଧୁଙ୍କ ସହିତ ଯାତାୟତ କରୁଥିବା ଜଣେ ବ୍ୟକ୍ତିଙ୍କୁ ଦକ୍ଷିଣେଶ୍ୱରରେ ଏକାକୀ ଦେଖି ଠାକୁରେ ପଚାରିଲେ, ''କିରେ ! ତୁ ଯେ ଏକୁଟିଆ—ସେ ଆସି ନାହିଁ ?'' ସେ ବ୍ୟକ୍ତି ଜଣକ ଉତ୍ତର ଦେଲେ, ''ସେ ଏବେ ଖୁବ୍ ବେଦାନ୍ତଚର୍ଚ୍ଚାରେ

---

୧. ସ୍ୱାମୀ ତୁରୀୟାନନ୍ଦ ।

ମନ ଦେଇଛି । ଦିନରାତି ପାଠ, ବିଚାର, ତର୍କ ନେଇ ବସିଛି । ସେଥିପାଇଁ ବୋଧହୁଏ ସମୟ ନଷ୍ଟ ହେବ ବୋଲି ଆସୁ ନାହିଁ ।'' ଠାକୁର ଏକଥା ଶୁଣି ଆଉ କିଛି କହିଲେ ନାହିଁ ।

**ବେଦାନ୍ତ ଆଉ କ'ଣ ? ବ୍ରହ୍ମ ସତ୍ୟ, ଜଗତ୍ ମିଥ୍ୟା—ଏହି ଧାରଣା :**

ଏହାର କିଛିଦିନ ପରେ ହିଁ, ଆମେ ଯାହା କଥା କହୁଛୁ ସେ ଠାକୁରଙ୍କୁ ଦର୍ଶନ କରିବାକୁ ଦକ୍ଷିଣେଶ୍ୱର ଆସିଲେ । ତାଙ୍କୁ ଦେଖି ଠାକୁର କହିଲେ, ''ଆହେ, ତୁମେ କ'ଣ ଆଜି କାଲି ଖୁବ୍ ବେଦାନ୍ତ ବିଚାର କରୁଛ, ତାହା ଭଲ, ଠିକ୍ ଅଛି । ବେଦାନ୍ତ ବିଚାର ମାନେ ଏହି—ବ୍ରହ୍ମସତ୍ୟ, ଜଗତ ମିଥ୍ୟା—ନା ଆଉ କିଛି ?''

ବନ୍ଧୁ—ଆଜ୍ଞା ହଁ, ଆଉ କ'ଣ ?

ବନ୍ଧୁ କହିଲେ, ବାସ୍ତବିକ୍ ଠାକୁର ସେଦିନ ସେହି କେତୋଟି କଥାରେ ବେଦାନ୍ତ ସମ୍ବନ୍ଧରେ ତାଙ୍କର ଚକ୍ଷୁ ଯେପରି ସମ୍ପୂର୍ଣ୍ଣ ଖୋଲି ଦେଇଥିଲେ । କଥାଗୁଡ଼ିକ ଶୁଣି ସେ ବିସ୍ମିତ ହୋଇ ଭାବିଥିଲେ —ଠିକ୍ ତ, ଏହି କେତୋଟି କଥା ହୃଦୟରେ ଧାରଣା ହେଲେ ବେଦାନ୍ତର ସମସ୍ତ କଥା ବୁଝାହୋଇଗଲା !

ଠାକୁର—ଶ୍ରବଣ, ମନନ, ନିଦିଧ୍ୟାସନ । ବ୍ରହ୍ମ ସତ୍ୟ, ଜଗତ୍‌ମିଥ୍ୟା—ଆଗେ ଶୁଣିଲ; ତା'ପରେ ମନନ—ବିଚାର କରି ମନେ ମନେ ପକ୍କା କଲ; ତା'ପରେ ନିଦିଧ୍ୟାସନ—ମିଥ୍ୟା ବସ୍ତୁ ଜଗତକୁ ତ୍ୟାଗ କରି ସଦ୍‌ବସ୍ତୁ ବ୍ରହ୍ମର ଧ୍ୟାନରେ ମନ ଲଗାଇଲ—ଏଇ । କିନ୍ତୁ ତା ନ ହୋଇ ଶୁଣିଲି, ବୁଝିଲି କିନ୍ତୁ ଯେଉଁଟା ମିଥ୍ୟା ତାହାକୁ ଛାଡ଼ିବାକୁ ଚେଷ୍ଟା କଲି ନାହିଁ—ତା'ହେଲେ କ'ଣ ହେବ ? ତାହା ହେଉଛି ସଂସାରୀଙ୍କର ଜ୍ଞାନ ପରି; ସେପରି ଜ୍ଞାନରେ ବସ୍ତୁ ଲାଭ ହୁଏ ନାହିଁ । ଧାରଣା ଦରକାର, ତ୍ୟାଗ ଦରକାର—ତେବେ ହେବ । ତା' ନ ହେଲେ, ମୁହଁରେ କହୁଛି, 'କଣ୍ଟା ନାହିଁ, ଖୁଞ୍ଚା ନାହିଁ', କିନ୍ତୁ ଯେମିତି ହାତ ଦେଇଛି, ଚଟ୍‌କରି କଣ୍ଟାଫୁଟି ଉହୁଃ ଉହୁଃ କରିବାକୁ ହେବ । ମୁହଁରେ କହୁଛ, 'ଜଗତ ନାହିଁ, ଅସତ୍—ଏକମାତ୍ର ବ୍ରହ୍ମ ହିଁ ଅଛନ୍ତି' ଇତ୍ୟାଦି, କିନ୍ତୁ ଯେମିତି ଜଗତର ରୂପରାଶି ସମ୍ମୁଖରେ ଆସିଲା ସଙ୍ଗେ ସଙ୍ଗେ ସେଗୁଡିକ ସତ୍ୟଜ୍ଞାନ ହୋଇ ବନ୍ଧନରେ ପଡ଼ିଲ । ପଞ୍ଚବଟୀକୁ ଜଣେ ସାଧୁ ଆସିଥିଲେ । ସେ ଲୋକମାନଙ୍କ ସହିତ ଖୁବ୍ ବେଦାନ୍ତ-ଚର୍ଚ୍ଚା କରୁଥିଲା । ତା'ପରେ ଶୁଣିଲି, ସେ ଜଣେ ସ୍ତ୍ରୀଲୋକ ସହିତ ଲଟପଟ ହେଉଛି । ଥରେ ଶୌଚ ପାଇଁ ଯାଉଛି, ଦେଖିଲି ସେ ବସିଅଛି । କହିଲି, 'ତୁମେ ଏତେ ବେଦାନ୍ତ-ଚର୍ଚ୍ଚା କର ପୁଣି ଏସବୁ କ'ଣ ?' ସେ କହିଲେ, 'ସେଥିରେ କ'ଣ ଅଛି ? ମୁଁ ତୁମକୁ ବୁଝାଇ ଦେବି ସେଥିରେ ଦୋଷ ନାହିଁ । ଯେତେବେଳେ ଜଗତଟା ତ୍ରିକାଳରେ ମିଥ୍ୟା ହେଲା, ସେତେବେଳେ ଏହା କ'ଣ ସତ୍ୟ ହେବ ? ଏହା ମଧ୍ୟ ମିଥ୍ୟା ।'

'ମୁଁ ଶୁଣି ବିରକ୍ତ ହୋଇ କହିଲି, 'ତୁମର ବେଦାନ୍ତ ଜ୍ଞାନରେ ମୁଁ ପରିସ୍ରା କରୁଛି !' ଏସବୁ ହେଉଛନ୍ତି ସଂସାରୀ, ବିଷୟୀ ଜ୍ଞାନୀଙ୍କର ଜ୍ଞାନ । ଏଜ୍ଞାନ ଜ୍ଞାନ ହିଁ ନୁହେଁ ।

ବନ୍ଧୁ କହିଲେ, ସେଦିନ ଏହି ପର୍ଯ୍ୟନ୍ତ କଥା ହେଲା । ଠାକୁରେ ତାଙ୍କୁ ସାଙ୍ଗରେ ନେଇ ପଞ୍ଚବଟୀ ତଳେ ବୁଲୁବୁଲୁ ଏକଥାଗୁଡ଼ିକ କହିଲେ । ଏହାପୂର୍ବରୁ ତାଙ୍କର ଧାରଣା ଥିଲା—ଉପନିଷଦ୍, ପଞ୍ଚଦଶୀ ଇତ୍ୟାଦି ନାନା ପ୍ରକାର ଜଟିଳ ଗ୍ରନ୍ଥ ଅଧ୍ୟୟନ ନ କଲେ, ସାଂଖ୍ୟ, ନ୍ୟାୟ ଇତ୍ୟାଦି ଦର୍ଶନରେ ବ୍ୟୁତ୍ପତ୍ତି ଲାଭ ନ କଲେ, ବେଦାନ୍ତ କେବେହେଲେ ବୁଝିହେବ ନାହିଁ ଏବଂ ମୁକ୍ତିଲାଭ ମଧ୍ୟ ସୁଦୂରପରାହତ ରହିବ । ଠାକୁରଙ୍କ ସେଦିନର କଥାରୁ ହିଁ ବୁଝିଲେ, ବେଦାନ୍ତର ଯେତେ କିଛି ବିଚାର ସବୁ ଏହି ଧାରଣାଟି ହୃଦୟରେ ଦୃଢ଼ କରିବା ନିମିତ୍ତ । ଝୁଡ଼ି ଝୁଡ଼ି ଦର୍ଶନ ଓ ବିଚାର ଗ୍ରନ୍ଥ ପଢ଼ି ଯଦି କାହାର ମନରେ 'ବ୍ରହ୍ମ ସତ୍ୟ, ଜଗତ ମିଥ୍ୟା' କଥାଟି ନିଶ୍ଚିତ ରୂପରେ ଧାରଣା ନ ହେଲା, ତେବେ ଏସମସ୍ତ ପଢ଼ିବା ନ ପଢ଼ିବା ଉଭୟ ସମାନ । ଠାକୁରଙ୍କ ନିକଟରୁ ସେ ସେଦିନ ବିଦାୟ ଗ୍ରହଣ କଲେ ଏବଂ ସେହିଦିନରୁ ଗ୍ରନ୍ଥପାଠ ଇତ୍ୟାଦି ଅପେକ୍ଷା ସାଧନ-ଭଜନରେ ହିଁ ଅଧିକ ମନୋନିବେଶ କରିବେ—ଏପରି ନାନାପ୍ରକାର କଥା ଭାବି ଭାବି କଲିକତା ଫେରିଗଲେ । ଏହିପରି ସେ ସାଧନା ସାହାଯ୍ୟରେ, ଈଶ୍ୱର ପ୍ରତ୍ୟକ୍ଷ କରିବାର ସଂକଳ୍ପ ମନରେ ସ୍ଥିର ଧାରଣା କରି, ସେବେଠାରୁ ତଦନୁରୂପ କାର୍ଯ୍ୟରେ ବିଶେଷ ଭାବରେ ମନୋନିବେଶ କଲେ ।

ଠାକୁର କଲିକତାରେ କାହା ଘରକୁ ଆସିଲେ, ଅଳ୍ପକ୍ଷଣ ମଧ୍ୟରେ ସେ ଖବର ତାଙ୍କର ବିଶିଷ୍ଟ ଭକ୍ତଗଣଙ୍କ ମଧ୍ୟରେ ପହଞ୍ଚି ଯାଉଥିଲା । କେତେଗୁଡ଼ିଏ ଲୋକ ଯେ ଏକାର୍ଯ୍ୟର ବିଶେଷ ଭାବରେ ଭାର ଗ୍ରହଣ କରି ଏକଥା ସମସ୍ତଙ୍କୁ ଜଣାଉଥିଲେ ତାହା ନୁହେଁ । କିନ୍ତୁ ଭକ୍ତମାନଙ୍କର ପ୍ରାଣ ଠାକୁରଙ୍କୁ ସର୍ବଦା ଦର୍ଶନ କରିବା ନିମିତ୍ତ ଏତେ ଉନ୍ମୁଖ ହୋଇ ରହୁଥିଲା ଏବଂ କାର୍ଯ୍ୟଯୋଗୁଁ ଦକ୍ଷିଣେଶ୍ୱରରେ ତାହାଙ୍କୁ ଦର୍ଶନ କରିବାକୁ ଯାଇ ନ ପାରିଲେ ପରସ୍ପର ଘରେ ସବୁବେଳେ ଯାଆ ଆସ କରି ତାଙ୍କ କଥାବାର୍ତ୍ତା ଏତେ ଆନନ୍ଦ ଅନୁଭବ କରୁଥିଲେ ଯେ, ସେମାନଙ୍କ ଭିତରୁ କେହି ଜଣେ କୌଣସି ପ୍ରକାରେ ତାଙ୍କର ଆଗମନ-ସମ୍ବାଦ ଜାଣିପାରିଲେ ଅତି ଅଳ୍ପ ସମୟ ମଧ୍ୟରେ ଏକଥା ଏମୁହଁରୁ ସେ ମୁହଁ ହୋଇ ଅନେକଙ୍କ ମଧ୍ୟରେ ବିନା ଚେଷ୍ଟାରେ ମୁହଁରେ ମୁହଁରେ ରାଷ୍ଟ୍ର ହୋଇଯାଉଥିଲା । ଠାକୁରଙ୍କ ଶକ୍ତିରେ ଭକ୍ତଗଣ, ପରସ୍ପର ମଧ୍ୟରେ କିପରି ଯେ ଏକ ଅନିର୍ବଚନୀୟ ପ୍ରେମ ବନ୍ଧନରେ ଆବଦ୍ଧ ହୋଇଥିଲେ, ତାହା ପାଠକମାନଙ୍କୁ ବୁଝାଇବା ଅତ୍ୟନ୍ତ ଦୁଷ୍କର । କଲିକତାର ବାଗବଜାର, ସିମ୍ଲା ଓ ଆହିରୀଟୋଲା ପଲ୍ଲୀରେ ଠାକୁରଙ୍କର ଅନେକ ଭକ୍ତ ବାସ କରୁଥିଲେ । ସେଥିପାଇଁ ଏହି ତିନୋଟି ସ୍ଥାନକୁ ହିଁ ଠାକୁରଙ୍କ ଆଗମନ

ଅଧିକାଂଶ ସମୟରେ ହେଉଥିଲା । ତନ୍ମଧ୍ୟରେ ବାଗବଜାରକୁ ତାଙ୍କର ବେଶୀ ସମୟରେ ଆଗମନ ହେଉଥିଲା ।

ପୂର୍ବୋକ୍ତ ଘଟଣାର କିଛିଦିନ ପରେ ଠାକୁର ଦିନେ ବାଗବଜାରର ୰ବଳରାମ ବସୁ ମହାଶୟଙ୍କ ଘରକୁ ଶୁଭାଗମନ କରିଥିଲେ । ବାଗବଜାର ଅଞ୍ଚଳର ଭକ୍ତଗଣ ଏସମ୍ବାଦ ପାଇ ଅନେକେ ସେଠାରେ ଉପସ୍ଥିତ ହେଲେ । ଆମର ପୂର୍ବୋକ୍ତ ବନ୍ଧୁ (ସ୍ୱାମୀ ତୁରୀୟାନନ୍ଦ)ଙ୍କର ଘର ଅତି ନିକଟରେ ଥିଲା । ଠାକୁର ତାଙ୍କର କଥା ପଚାରିବା ମାତ୍ରେ ପଡ଼ାର ପରିଚିତ ଜନୈକ ପ୍ରତିବେଶୀ ଯୁବକ ଯାଇ ତତ୍‌କ୍ଷଣାତ୍ ତାଙ୍କୁ ଡାକି ଆଣିଲେ । ବଳରାମବାବୁଙ୍କର ଦୋତାଲା ଘରେ ପ୍ରଶସ୍ତ ବୈଠକଖାନାରେ ପ୍ରବେଶ କରି ବନ୍ଧୁ ଜଣକ ବହୁ ଭକ୍ତମଣ୍ଡଳୀପରିବୃତ ଠାକୁରଙ୍କୁ ଦର୍ଶନ କଲେ ଏବଂ ତାଙ୍କୁ ପ୍ରଣାମ କରି ନିକଟରେ ଗୋଟିଏ ପାଖରେ ବସିଲେ । ଠାକୁର ମଧ୍ୟ ତାଙ୍କୁ ସହାସ୍ୟ କୁଶଳପ୍ରଶ୍ନ କରି ଉପସ୍ଥିତ ପ୍ରସଙ୍ଗରେ କଥାବାର୍ତ୍ତା କରିବାକୁ ଲାଗିଲେ ।

ଗୋଟିଏ-ଦୁଇଟି କଥାର ଭାବରୁ ହିଁ ବନ୍ଧୁ ବୁଝିପାରିଲେ ଯେ, ଠାକୁର ଉପସ୍ଥିତ ସମସ୍ତଙ୍କୁ ବୁଝାଉଛନ୍ତି—ଜ୍ଞାନ କୁହ, ଭକ୍ତି କୁହ, ଦର୍ଶନ କୁହ, ଏସବୁ କିଛି ଈଶ୍ୱରଙ୍କର ବିନା କୃପାରେ ହୋଇପାରିବ ନାହିଁ । ଏହା ଶୁଣୁ ଶୁଣୁ ତାଙ୍କର ମନେହେବାକୁ ଲାଗିଲା, ଠାକୁର ତାଙ୍କ ମନର ଭୁଲ୍ ଧାରଣାଟି ଦୂର କରିବା ପାଇଁ ଯେମିତି ଏହି ପ୍ରସଙ୍ଗ ଉଠାଇଛନ୍ତି । ତାଙ୍କର ମନେହେଲା ଠାକୁର ଏସମ୍ବନ୍ଧରେ ଯାହାକିଛି କହୁଛନ୍ତି, ସେ ସମସ୍ତ ତାଙ୍କୁ ହିଁ ଲକ୍ଷ୍ୟ କରି କହୁଛନ୍ତି ।

**ଈଶ୍ୱରଙ୍କ କୃପା ଭିନ୍ନ ଈଶ୍ୱରଲାଭ ହୁଏ ନାହିଁ :**

ବନ୍ଧୁ ଶୁଣିଲେ, ଠାକୁର କହୁଛନ୍ତି—"କ'ଣ ଜାଣିଛ ? କାମ-କାଞ୍ଚନକୁ ଠିକ୍ ଠିକ୍ ମିଥ୍ୟା ଭଳି ବୋଧ ହେବା, ଜଗତଟା ତିନିକାଳରେ ଅସତ୍ ବୋଲି ଠିକ୍ ଠିକ୍ ମନରେ ଧାରଣା ହେବା କ'ଣ କମ୍ କଥା ? ପୁଣି ତାଙ୍କର ଦୟା ନ ହେଲେ କ'ଣ ହେବ ? ସେ କୃପା କରି ଏପରି ଧାରଣା ଯଦି କରିଦିଅନ୍ତି ତା'ହେଲେ ହୁଏ, ନ ହେଲେ ମନୁଷ୍ୟ ନିଜେ ସାଧନ କରି ତାହା କ'ଣ ଧାରଣା କରିପାରିବ ? ତା'ର କେତେ ବା ଶକ୍ତି ? ସେହି ଶକ୍ତିରେ କେତେ ଚେଷ୍ଟା କରିପାରିବ ?" ଏହିପରି ଈଶ୍ୱରଙ୍କର ଦୟା କଥା କହି କହି ତାଙ୍କର ସମାଧି ହେଲା । କିଛିକ୍ଷଣ ପରେ ଅର୍ଦ୍ଧବାହ୍ୟଦଶା ପ୍ରାପ୍ତ ହୋଇ କହିବାକୁ ଲାଗିଲେ, "ଗୋଟିଏ ଠିକ୍ କରିପାରେ ନାହିଁ, ପୁଣି ଆଉ ଗୋଟିଏ କରିବାକୁ ଚାହେଁ !" ଏହି କଥାଗୁଡ଼ିକ କହି ହିଁ ଠାକୁର ସେହି ପ୍ରକାର ଭାବ ଅବସ୍ଥାରେ ଗାଇବାକୁ ଆରମ୍ଭ କଲେ—

"ଓରେ କୁଶୀଲବ, କରିସ କି ଗୌରବ,
ଧରା ନ ଦିଲେ କି ପାରିସ ଧରିତେ ।"

[ଗୀତର ଭାବାର୍ଥ ହେଉଛି:— ''ହେ କୁଶଲବ, ତୁମେ କେଉଁ କଥାରେ ଗର୍ବ କରୁଛ ? ଯଦି ମୁଁ ସ୍ୱୟଂ ଧରା ଦେଇ ନ ଥାନ୍ତି, ତାହେଲେ ତୁମେମାନେ କ'ଣ ମୋତେ କେବେ ଧରିପାରିଥାଆନ୍ତ ?'']

ଗାଉ ଗାଉ ଠାକୁରଙ୍କର ଉଭୟ ଚକ୍ଷୁରୁ ଅଶ୍ରୁଧାରା ଏପରି ବୋହିଲା ଯେ, ବିଛଣାର ଅନେକାଂଶ ଭିଜିଗଲା ! ବନ୍ଧୁ ସେହି ଅପୂର୍ବ ଶିକ୍ଷାରେ ଦ୍ରବୀଭୂତ ହୋଇ ବିକଳଭାବେ କାନ୍ଦିବାକୁ ଲାଗିଲେ । କେତେ ସମୟ ପରେ ଦୁଇଜଣ ପ୍ରକୃତିସ୍ଥ ହେଲେ । ବନ୍ଧୁ କହୁଥିଲେ, ''ସେଶିକ୍ଷା ଚିରଦିନ ପାଇଁ ମୋର ହୃଦୟରେ ଅଙ୍କିତ ହୋଇରହିଅଛି । ସେହିଦିନଠାରୁ ବୁଝିଲି, ଈଶ୍ୱରଙ୍କର କୃପାବିନା କାହାର କିଛି ହେବାର ନୁହେଁ ।''

## ଶଶଧର ପଣ୍ଡିତ ଠାକୁରଙ୍କୁ ଯୋଗ ଶକ୍ତି ବଳରେ ରୋଗ ନିବାରଣ କରିବାକୁ କହିବାରୁ ଠାକୁରଙ୍କର ଉତ୍ତର :

ଠାକୁରଙ୍କର ଅଦ୍ୱୈତଜ୍ଞାନସମ୍ବନ୍ଧୀୟ ଗଭୀରତା ବିଷୟରେ ଆଉ ଗୋଟିଏ କଥା ଏଠାରେ ଆମେ ନ କହି ରହିପାରୁ ନାହୁଁ । ଠାକୁର ସେତେବେଳେ ଅସୁସ୍ଥ— କାଶୀପୁରର ବଗିଚାରେ ଅଛନ୍ତି—ରୋଗ ବହୁତ ବଢ଼ିଯାଇଛି । ଶ୍ରୀଯୁକ୍ତ ଶଶଧର ତର୍କଚୂଡ଼ାମଣିଙ୍କ ସହିତ କେତେଜଣ ଠାକୁରଙ୍କର ଅସୁସ୍ଥତା କଥା ଶୁଣି ଦେଖିବାକୁ ଆସିଲେ । ପଣ୍ଡିତ ମହାଶୟ ଠାକୁରଙ୍କୁ କଥାରେ କଥାରେ କହିଲେ, ''ମହାଶୟ, ଶାସ୍ତ୍ରରେ ପଢ଼ିଛି ଆପଣଙ୍କ ପରି ପୁରୁଷ ଇଚ୍ଛାମାତ୍ରକେ ଶାରୀରିକ ରୋଗ ଉପଶମ କରିପାରନ୍ତି । ରୋଗ ଉପଶମ ହେଉ ମନେକରି ମନକୁ ଏକାଗ୍ର କରି ଥରେମାତ୍ର ଅସୁସ୍ଥ ସ୍ଥାନରେ କିଛି ସମୟ ରଖିଲେ ସବୁ ଆରାମ ହୋଇଯାଏ । ଆପଣ ଏପରି ଥରେ କଲେ ହୁଅନ୍ତା ନାହିଁ ?''

## ସ୍ୱାମୀ ବିବେକାନନ୍ଦ ପ୍ରଭୃତି ଭକ୍ତମାନଙ୍କର ଠାକୁରଙ୍କୁ ଏବିଷୟରେ ଅନୁରୋଧ ଓ ଠାକୁରଙ୍କର ଉତ୍ତର:

ଠାକୁର କହିଲେ, ''ତୁମେ ପଣ୍ଡିତ ହୋଇ ଏପରି କଥା କିପରି କୁହ ? ଯେଉଁ ମନକୁ ସଚ୍ଚିଦାନନ୍ଦଙ୍କୁ ଦେଇଛି, ତାକୁ ସେଠାରୁ ନେଇଆସି ଏହି ଭଙ୍ଗା ହାଡ଼-ମାଂସର ପିଞ୍ଜରାଟା ଉପରେ ଦେବାକୁ ଆଉ କ'ଣ ପ୍ରବୃତ୍ତି ହୁଏ ?'' ପଣ୍ଡିତ ମହାଶୟ ନିରୁତ୍ତର ରହିଲେ; କିନ୍ତୁ ସ୍ୱାମୀ ବିବେକାନନ୍ଦପ୍ରମୁଖ ଭକ୍ତଗଣ, ନିଶ୍ଚେଷ୍ଟ ହୋଇ ରହିଲେ ନାହିଁ । ପଣ୍ଡିତ ମହାଶୟଙ୍କର ପ୍ରତ୍ୟାଗମନ ପରେ ଠାକୁରଙ୍କୁ ଏପରି କରିବା ପାଇଁ ଏକାବେଳକେ ଜିଦ୍ ଧରି ବସିଲେ । କହିଲେ, '' ଆମମାନଙ୍କ ପାଇଁ ଆପଣଙ୍କୁ ରୋଗ ଭଲ କରିବାକୁ ହିଁ ହେବ ।''

ଠାକୁର—''ମୋର କ'ଣ ଇଚ୍ଛା ଯେ, ମୁଁ ରୋଗରେ ପଡ଼ି ଭୋଗୁଥାଏ; ମୁଁ ତ ଇଚ୍ଛା କରେ ଏହା ଭଲ ହୋଇଯାଉ, କିନ୍ତୁ ତାହା ହେଉଛି କାହିଁ ? ରୋଗ ଭଲ ହେବା, ନ ହେବା, ସବୁ ମା'ର ଇଚ୍ଛା ।''

ସ୍ୱାମୀ ବିବେକାନନ୍ଦ—ତେବେ ମା'ଙ୍କୁ କୁହନ୍ତୁ ଭଲ କରି ଦେବାକୁ, ସେ ଆପଣଙ୍କ କଥା ଶୁଣିବେ ହିଁ ଶୁଣିବେ ।

ଠାକୁର—ତୁମେ ସବୁ କହୁଛ, କିନ୍ତୁ ଏକଥା ମୋ ମୁହଁରୁ ଯେ ବାହାରୁ ନାହିଁ ରେ !

ସ୍ୱାମୀଜୀ—ତାହା ହେବ ନାହିଁ ମହାଶୟ, ଆପଣଙ୍କୁ କହିବାକୁ ହିଁ ହେବ । ଆମ ପାଇଁ କହିବାକୁ ହେବ ।

ଠାକୁର—ଆଚ୍ଛା ଦେଖିବି, ପାରିବି ତ କହିବି ।

କେତେଘଣ୍ଟା ପରେ ସ୍ୱାମୀଜୀ ପୁନର୍ବାର ଠାକୁରଙ୍କ ନିକଟକୁ ଆସି ପଚାରିଲେ, ''ମହାଶୟ, କହିଥିଲେ ? ମା' କ'ଣ କହିଲେ ?''

ଠାକୁର—ମା'କୁ କହିଲି(ଗଳାର କ୍ଷତ ଦେଖାଇ) , 'ଏଇଟା ପାଇଁ କିଛି ଖାଇପାରୁ ନାହିଁ; ଯେଉଁଥିରେ ଦି'ଟା ଖାଇପାରିବି ସେମିତି କରିଦେ ।'' ମା' ତୁମ ସମସ୍ତଙ୍କୁ ଦେଖାଇ କହିଲେ—'କାହିଁକି ? ଏଇ ତ, ଏତେ ମୁହଁରେ ଖାଉଛୁ ।' ମୁଁ ଆଉ ଲଜ୍ଜାରେ କଥା କହିପାରିଲି ନାହିଁ ।

## ଠାକୁରଙ୍କର ଅଦ୍ୱୈତଭାବର ଗଭୀରତା:

କିପରି ଅଦ୍ଭୁତ ଦେହ ବୁଦ୍ଧିର ଅଭାବ ! କିପରି ଅପୂର୍ବ ଅଦ୍ୱୈତ ଜ୍ଞାନରେ ଅବସ୍ଥାନ ! ସେତେବେଳେ ଛଅମାସ କାଳ ଠାକୁରଙ୍କର ପ୍ରତିଦିନର ଆହାର, ବୋଧହୁଏ ଚାରି ପାଞ୍ଚ ଛଟାଙ୍କି(ଏକ ସେରର ଷୋହଳ ଭାଗରୁ ଏକ ଭାଗ) ବାର୍ଲି (ସିଝା ଯବର ପାଣି)ମାତ୍ର, କିନ୍ତୁ ସେହି ଅବସ୍ଥାରେ ଜଗନ୍ମାତା ଯେମିତି କହିଲେ, 'ଏଇ ଯେ ଏତେ ମୁଖରେ ଖାଉଛୁ', ସଙ୍ଗେ ସଙ୍ଗେ ''କି କୁକର୍ମ କରିଛି, ଏହି କ୍ଷୁଦ୍ର ଶରୀରକୁ 'ମୁଁ' କହୁଛି !''—ମନେକରି ଠାକୁର ଲଜ୍ଜାରେ ନତମସ୍ତକ ଓ ନିରୁତ୍ତର ହୋଇଥିଲେ । ହେ ପାଠକ, ଏପରି ଭାବ କ'ଣ କଳ୍ପନାରେ ମଧ୍ୟ କିଞ୍ଚିତ୍ ମାତ୍ର ଆଣିପାରିବ କି ?

## ଠାକୁର ସମସ୍ତ ପ୍ରକାର ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା :

କି ଅଦ୍ଭୁତ ଠାକୁରଙ୍କ ଦର୍ଶନ ଆମ ଭାଗ୍ୟରେ ଘଟିଛି ! ଜ୍ଞାନ-ଭକ୍ତି, ଯୋଗ-କର୍ମ, ପୁରୁଣା-ନୂଆ, ସମସ୍ତ ପ୍ରକାର ଧର୍ମଭାବର କି ଅଦୃଷ୍ଟପୂର୍ବ ସାମଞ୍ଜସ୍ୟ ଆମେ ତାଙ୍କଠାରେ ପ୍ରତ୍ୟକ୍ଷ ନ କରିଛୁ ! ଉପନିଷଦ୍‌କାର ଋଷିମାନେ କହିଛନ୍ତି, ଠିକ୍ ଠିକ୍ ବ୍ରହ୍ମଜ୍ଞାନୀ ପୁରୁଷ ସର୍ବଜ୍ଞ ଓ ସତ୍ୟ ସଂକଳ୍ପ ହୋଇଥାଆନ୍ତି । ସଂକଳ୍ପ ବା ଇଚ୍ଛାମାତ୍ରେ ହିଁ ତାଙ୍କର ଇଚ୍ଛା, ବାହ୍ୟଜଗତର ସମସ୍ତ ପଦାର୍ଥ, ସମସ୍ତ

ଶକ୍ତି ମୁଣ୍ଡପାତି ମାନିନିଅନ୍ତି ଓ ସେହି ଭାବରେ ପରିବର୍ତ୍ତିତ ହୁଅନ୍ତି । ଅତଏବ ଉକ୍ତ ପୁରୁଷଙ୍କର ନିଜର ଶରୀର-ମନ ଯେ ସେପରି କରିବ, ଏଥିରେ ବିଚିତ୍ର କ'ଣ ଅଛି ! ଉପନିଷଦକାରଙ୍କର ଏହି ବାକ୍ୟର ସତ୍ୟତା ପରୀକ୍ଷା କରିବା ସାଧାରଣ ମନୁଷ୍ୟର ଆୟତ୍ତସାଧ୍ୟ ନୁହେଁ—ତେବେ ଏକଥା ବେଶ୍ କୁହାଯାଇପାରେ ଯେ, ଯେତେଦୂର ପରୀକ୍ଷା କରିବା ଆମର କ୍ଷୁଦ୍ର ଶକ୍ତିରେ ସମ୍ଭବ, ଆମେମାନେ ସମସ୍ତ ବିଷୟରେ ସେହିପରି ଠାକୁରଙ୍କୁ ପରୀକ୍ଷା କରୁଥିଲୁ ଏବଂ କୌଣସି ପରୀକ୍ଷାରେ କିଛି ଅଭାବ ବା ତ୍ରୁଟି ହୋଇ ନାହିଁ । କିନ୍ତୁ ଠାକୁର ପ୍ରତିଥର ସେସମସ୍ତ ପରୀକ୍ଷାରେ ହସି ହସି ଅବଲୀଳାକ୍ରମେ ଉତ୍ତୀର୍ଣ୍ଣ ହୋଇ ଯେପରି ଥଟ୍ଟା କରି କହୁଥିଲେ, "ଏବେ ବି ଅବିଶ୍ୱାସ ! ବିଶ୍ୱାସ କର—ପକ୍କାକରି ଧର—ଯିଏ ରାମ, ଯିଏ କୃଷ୍ଣ ହୋଇଥିଲେ, ସେ ହିଁ ଇଦାନୀଂ (ନିଜର ଶରୀରକୁ ଦେଖାଇ) ଏହି ଖୋଳ ମଧ୍ୟରେ ଅଛନ୍ତି—ତେବେ ଏଥର ଗୁପ୍ତ ଭାବରେ ଆସିଛନ୍ତି ! ଯେପରି ରାଜାଙ୍କର ଛଦ୍ମବେଶରେ ନିଜରାଜ୍ୟ-ପରିଦର୍ଶନ କରିବା ! ଯେମିତି ଜଣା-ଜଣି, ଶୁଣା-ଶୁଣି ହେବାମାତ୍ରେ ତତ୍‌କ୍ଷଣାତ୍ ସେ ସେଠାରୁ ଚାଲିଯାନ୍ତି;—ସେହିପରି !"—ଆଉ କ'ଣ !

### ଠାକୁରଙ୍କର ଭାବାବସ୍ଥାରେ ଦେଖିଥିବା ବିଷୟଗୁଡ଼ିକ ବାହ୍ୟ ଜଗତରେ ସତ୍ୟ ହେବାର ଦେଖାଯିବା :

ଠାକୁରଙ୍କ ଜୀବନର ଅନେକ ଘଟଣା ଉପନିଷଦ୍‌ରେ ଥିବା ସେହି ବିଷୟରେ ଆମମାନଙ୍କର ଆଖି ଫିଟାଇ ଦିଏ । ସାଧାରଣତଃ ଦେଖାଯାଏ, ମାନବ ମନରେ ଯେତେ ପ୍ରକାର ଭାବର ଉଦୟ ହୁଏ ସେଗୁଡ଼ିକ ପ୍ରକୃତପକ୍ଷେ ତାହାର ହିଁ 'ସ୍ୱସଂବେଦ୍ୟ' ଅର୍ଥାତ୍ ଏହି ସମସ୍ତ ଭାବର ପରିମାଣ, ତୀବ୍ରତା ଆଦି ସେ ନିଜେ ଠିକ୍ ଭାବରେ ଜାଣିପାରେ, ଅନ୍ୟଠାରେ କେବଳ ଭାବର ବାହ୍ୟିକ ବିକାଶ ଦେଖି ଏସମସ୍ତର କେବଳ ଅନୁମାନ କରିଥାଏ । ଭାବ-ସମାଧିର ଏପରି ସ୍ୱଭାବ ସ୍ୱସଂବେଦ୍ୟ ପ୍ରକୃତି (Subjective nature) ସମସ୍ତଙ୍କର ଅନୁଭବର ବିଷୟ । ସମସ୍ତେ ଜାଣନ୍ତି ଭାବସମୂହ ଅନ୍ୟାନ୍ୟ ଚିନ୍ତାସମୂହ ସଦୃଶ ମାନସିକ ବିକାର ବା ଶକ୍ତି-ପ୍ରକାଶ ମାତ୍ର—ମନରେ ହିଁ ଏଗୁଡ଼ିକର ଉଦୟ, ମନରେ ହିଁ ଲୟ; ବାହ୍ୟ ଜଗତରେ ଏହାର ଛବି ଅଥବା ଅନୁରୂପ ପ୍ରତିକୃତି ଦେଖିବା କିମ୍ବା ଦେଖାଇବା ଅସମ୍ଭବ । କିନ୍ତୁ ଠାକୁରଙ୍କର ଅନେକ ଭାବସମାଧିରେ ଏହାର ବିପରୀତ ଦେଖାଯାଏ ।

### ଏହି ବିଷୟକ ଦୃଷ୍ଟାନ୍ତ—ପଞ୍ଚବଟୀରେ ବାଡ଼ ଦେବା ଇତ୍ୟାଦି :

ଧରାଯାଉ ସାଧନା-କାଳରେ ଠାକୁରଙ୍କ ସ୍ୱହସ୍ତରୋପିତ ପଞ୍ଚବଟୀର ଚାରାଗଛଗୁଡ଼ିକୁ ଛେଳି, ଗାଈ ଖାଇଯାଉଛନ୍ତି ଦେଖି, ଏହି ସ୍ଥାନର ଚତୁର୍ଦ୍ଦିଗରେ

ବାଡ଼ ଦେବାକୁ ତାଙ୍କର ଇଚ୍ଛା ହେବା ଏବଂ ତା'ର କିଛି କ୍ଷଣ ପରେ ହିଁ ଗଙ୍ଗାରେ ଜୁଆର ଆସିବାରୁ ଏହି ବାଡ଼ ତିଆରି ପାଇଁ ସମସ୍ତ ଆବଶ୍ୟକୀୟ ଦ୍ରବ୍ୟାଦି, କେତେଗୁଡ଼ିଏ କାଠ ଖୁଣ୍ଟ, ବାଡ଼, ନଡ଼ିଆ ରସି, ଏପରିକି ଗୋଟିଏ କଟୁରୀ ପର୍ଯ୍ୟନ୍ତ—ସେହି ସ୍ଥାନରେ ଭାସି ଭାସି ଆସି ଲାଗିବା ଏବଂ କାଳୀମନ୍ଦିରର ଭର୍ତ୍ତାଭାରୀ ନାମକ ମାଳି ସାହାଯ୍ୟରେ ସେହିବେଢ଼ା-ନିର୍ମାଣ ! ଅଥବା ଧର—ରାସମଣିଙ୍କର ଜାମାତା ମଥୁରାନାଥଙ୍କ ସହିତ ତର୍କରେ ତାଙ୍କର କହିଥିବା କଥା ''ଈଶ୍ୱରଙ୍କ ଇଚ୍ଛାରେ ସବୁ ହୋଇପାରେ—ନାଲି ଫୁଲ ଗଛରେ ଧଳାଫୁଲ ଫୁଟିପାରେ,'' ଏବଂ ମଥୁରାନାଥଙ୍କର ତାହା ଅସ୍ୱୀକାର କରିବା ଏବଂ ଠିକ୍ ତା' ପରଦିନ ମନ୍ଦିରର ବଗିଚାରେ ଥିବା ମନ୍ଦାରଗଛର ଗୋଟିଏ ଡାଳରେ ଦୁଇଟି ଏପରି ଫୁଲ ଦେଖାଯିବା, ଏବଂ ଫୁଲ ସହିତ ଉକ୍ତ ଡାଳଟିକୁ ଭାଙ୍ଗିଆଣି ମଥୁରାନାଥଙ୍କୁ ଦେବା ! ଅଥବା ଧର—ତନ୍ତ୍ର, ବେଦାନ୍ତ, ବୈଷ୍ଣବ ଇସ୍‌ଲାମ ଆଦି ଯେତେବେଳେ ଯେଉଁ ମତର ସାଧନା କରିବାର ଅଭିଳାଷ ଠାକୁରଙ୍କ ପ୍ରାଣରେ ଉଦୟ ହୁଏ, ସେତେବେଳେ ସେହି ସେହି ମତର ଜଣେ ଜଣେ ସିଦ୍ଧ ବ୍ୟକ୍ତିଙ୍କର ଦକ୍ଷିଣେଶ୍ୱର କାଳୀମନ୍ଦିରରେ ଉପସ୍ଥିତ ହେବା ଏବଂ ତାଙ୍କୁ ସେହି ସେହି ମତରେ ଦୀକ୍ଷିତ କରିବା ! ଅଥବା ଧର—ଠାକୁରଙ୍କର ଭକ୍ତମାନଙ୍କର ଆହ୍ୱାନ ଓ ସେମାନେ ଉପସ୍ଥିତ ହେଲେ ସେମାନଙ୍କର ପ୍ରତ୍ୟେକଙ୍କୁ ଠାକୁର ଚିହ୍ନିପାରି ଗ୍ରହଣ କରିବା—ଏପରି ଅନେକ କଥାର ଉଲ୍ଲେଖ କରାଯାଇପାରେ । ଅନୁଧାବନ କଲେ ଏସମସ୍ତ ଘଟଣାରୁ ଏହା ଦେଖିବାକୁ ମିଳିଥାଏ ଯେ, ଠାକୁରଙ୍କର ମାନସିକ ଭାବର ଅନେକଗୁଡ଼ିଏ ସାଧାରଣ ମାନବମନର ଭାବଗୁଡ଼ିକ ସଦୃଶ କେବଳ ମାନସିକ ଚିନ୍ତା ବା ପ୍ରକାଶ ରୂପରେ ପର୍ଯ୍ୟବସିତ ନ ଥିଲା । କିନ୍ତୁ ବାହ୍ୟ ଜଗତର ଅନ୍ତର୍ଗତ ଘଟଣାବଳୀ ସେ ସମସ୍ତ ଦ୍ୱାରା ଆମମାନଙ୍କର ଅପରିଜ୍ଞାତ କୌଣସି ଏକ ନିୟମବଶରେ ସେହିପରି ଭାବରେ ପରିବର୍ତ୍ତିତ ହେଉଥିଲା ! ଆମେ ଉକ୍ତ ସତ୍ୟର ଆଭାସ ଦେଖାଇ ଛାଡ଼ିଦେଲୁ । ଏଥିରୁ ପାଠକମାନେ ଯାହାର ଯେପରି ଅଭିରୁଚି ସେମାନେ ସେପରି ମନନ ଅଥବା ଅନୁମାନ କରନ୍ତୁ—କିନ୍ତୁ ଘଟଣା ସତରେ ଏହି ପ୍ରକାରର ଥିଲା ।

**ପ୍ରତ୍ୟେକ ଭକ୍ତଙ୍କ ସହିତ ଠାକୁରଙ୍କର ବିଭିନ୍ନ ଭାବର ସମ୍ବନ୍ଧ:**

ପୂର୍ବରୁ କୁହାଯାଇଛି, ଠାକୁର ନିର୍ବିକଳ୍ପସମାଧି-ଅବସ୍ଥା ସମୟ ବ୍ୟତୀତ ଅନ୍ୟ ସମୟରେ ମଧ୍ୟ 'ଭାବମୁଖ'ରେ ରହୁଥିଲେ । ଏଥିପାଇଁ ଦେଖାଯାଏ ସେ ତାଙ୍କର ସମୀପାଗତ ପ୍ରତ୍ୟେକ ପ୍ରକାର ଭକ୍ତଙ୍କ ସହିତ ଗୋଟିଏ-ଗୋଟିଏ ଭିନ୍ନ ଭିନ୍ନ ଭାବର ସମ୍ବନ୍ଧ ସ୍ଥାପନ କରି ବରାବର ସେହି ସେହି ସମ୍ବନ୍ଧ ଅକ୍ଷୁଣ୍ଣ ରଖୁଥିଲେ । ଶ୍ରୀଶ୍ରୀଜଗଦମ୍ବାଙ୍କର ହ୍ଲାଦିନୀ (ଆନନ୍ଦପ୍ରଦାନକାରୀ) ଓ ସନ୍ଧିନୀ (ପୋଷଣ

ପ୍ରଦାନକାରୀ) ଶକ୍ତିର ବିଶେଷ ବିକାଶକ୍ଷେତ୍ରସ୍ୱରୂପ ଯେତେ ସ୍ତ୍ରୀ-ଜାତିଙ୍କ ସହିତ ଠାକୁରଙ୍କର ଆଜୀବନ ମାତୃ-ସମ୍ବନ୍ଧର କଥା ଏବେ ସାଧାରଣରେ ପ୍ରସିଦ୍ଧ । କିନ୍ତୁ ପୁରୁଷଭକ୍ତମାନଙ୍କର ପ୍ରତ୍ୟେକଙ୍କ ସହିତ ତାଙ୍କର ଏପରି ଗୋଟିଏ ଗୋଟିଏ ସମ୍ବନ୍ଧ ରଖିବାର କଥା ବୋଧହୁଏ ଏବେ ମଧ୍ୟ ସାଧାରଣରେ ଅଜଣା । ସେଥିପାଇଁ ଏହା ସମ୍ବନ୍ଧରେ କିଛି କଥା ଏଠାରେ କହିବା ଅପ୍ରାସଙ୍ଗିକ ହେବ ନାହିଁ । ସାଧାରଣତଃ ଠାକୁର ତାଙ୍କର ଭକ୍ତମାନଙ୍କୁ ଦୁଇ ଭାଗ ବା ଶ୍ରେଣୀରେ ବିଭକ୍ତ କରୁଥିଲେ— ଶିବ-ଅଂଶ ସମ୍ଭୁତ ଓ ବିଷ୍ଣୁ-ଅଂଶ ସମ୍ଭୁତ । ଏହି ଦୁଇଶ୍ରେଣୀର ଭକ୍ତମାନଙ୍କର ପ୍ରକୃତି, ଆଚାର-ବ୍ୟବହାର, ଭଜନାନୁରାଗ ପ୍ରଭୃତି ସମସ୍ତ ବିଷୟରେ ପାର୍ଥକ୍ୟ ଅଛି ବୋଲି ନିର୍ଦ୍ଦେଶ କରୁଥିଲେ ଓ ନିଜେ ତାହା ସମ୍ୟକ୍ ରୂପେ ବୁଝିପାରୁଥିଲେ— କିନ୍ତୁ ଏହି ପାର୍ଥକ୍ୟ ଯେ କ'ଣ, ତାହା ବିଶେଷ କରି ପାଠକମାନଙ୍କୁ ବୁଝାଇବା ପ୍ରାୟ ଆମର ସାଧ୍ୟାତୀତ ।

### ଭକ୍ତମାନଙ୍କ ମଧ୍ୟରେ ଦୁଇଶ୍ରେଣୀ :

ଅତଏବ ସଂକ୍ଷେପରେ ପାଠକ ଏହା ହିଁ ବୁଝିନିଅନ୍ତୁ ଯେ, ଶିବ ଓ ବିଷ୍ଣୁ-ଚରିତ୍ର ଯେପରି ଦୁଇ ଆଦର୍ଶର ଛାଞ୍ଚ (Type or Model) ଏବଂ ଏହି ଦୁଇଟି ଭିନ୍ନ ଛାଞ୍ଚରେ ଯେପରି ଭକ୍ତମାନଙ୍କର ପ୍ରତ୍ୟେକଙ୍କର ମାନସିକ ପ୍ରକୃତି ଗଠିତ— ଏହି ପର୍ଯ୍ୟନ୍ତ । ଏସମସ୍ତ ଭକ୍ତମାନଙ୍କ ସହିତ ଠାକୁରଙ୍କର ଶାନ୍ତ ଦାସ୍ୟ ସଖ୍ୟ ବାତ୍ସଲ୍ୟାଦି ସମସ୍ତ ପ୍ରକାର ଭାବର ସମ୍ବନ୍ଧ ସ୍ଥାପିତ ଥିଲା— ଅବଶ୍ୟ ବିଭିନ୍ନ ଭକ୍ତଙ୍କ ସହିତ ବିଭିନ୍ନ ଭାବର ସମ୍ବନ୍ଧ ସ୍ଥାପିତ ଥିଲା । ଯଥା, ଶ୍ରୀଯୁକ୍ତ ନରେନ୍ଦ୍ରନାଥ ବା ସ୍ୱାମୀ ବିବେକାନନ୍ଦଙ୍କ କଥାରେ ଠାକୁର କହୁଥିଲେ, ''ନରେନ୍ଦ୍ର ଯେପରି ମୋର ଶଶୁର ଘର—(ନିଜକୁ ଦେଖାଇ) ଏହାର ଭିତରେ ଯିଏ ଅଛି ସେ ଯେପରି ସ୍ତ୍ରୀରୂପ, ଆଉ (ନରେନ୍ଦ୍ରଙ୍କୁ ଦେଖାଇ) ତାହାର ଭିତରେ ଯିଏ ଅଛି ସେ ଯେପରି ପୁରୁଷ ରୂପ''; ଶ୍ରୀଯୁକ୍ତ ବ୍ରହ୍ମାନନ୍ଦଜୀ ବା ରାଖାଲ ମହାରାଜଙ୍କୁ ଠିକ୍ ଠିକ୍ ନିଜର ପୁତ୍ର ସ୍ଥାନୀୟ ବିବେଚନା କରୁଥିଲେ— ସନ୍ନ୍ୟାସୀ ଓ ଗୃହୀ ବିଶେଷ ବିଶେଷ ଭକ୍ତମାନଙ୍କର ପ୍ରତ୍ୟେକଙ୍କ ସହିତ ଠାକୁରଙ୍କର ଏପରି ଗୋଟିଏ ଗୋଟିଏ ବିଶେଷ ଭାବ ବା ସମ୍ବନ୍ଧ ଥିଲା ଏବଂ ସାଧାରଣ ଭକ୍ତମାନଙ୍କର ପ୍ରତ୍ୟେକଙ୍କ ପ୍ରତି ଠାକୁରଙ୍କର ନାରାୟଣବୁଦ୍ଧି ସର୍ବଦା ସ୍ଥିର ରହିଥିବାରୁ ସେମାନଙ୍କ ସହିତ ଯେ, ସେ ଶାନ୍ତ ଭାବରେ ସମ୍ବନ୍ଧ ଅବଲମ୍ବନ କରିରହୁଥିଲେ, ଏକଥା କହିବା ବାହୁଲ୍ୟ ।

### ଭକ୍ତମାନଙ୍କ ପ୍ରକୃତି ଦେଖି ଠାକୁର ପ୍ରତ୍ୟେକଙ୍କ ସହିତ ଭାବ ସମ୍ବନ୍ଧ ଯୋଡ଼ି ଥିଲେ:

ଭକ୍ତମାନଙ୍କ ପ୍ରତ୍ୟେକଙ୍କର ଅନ୍ତରର ପ୍ରକୃତି ଦେଖି ଠାକୁରଙ୍କର ସେମାନଙ୍କ ସହିତ ଏପରି ଭାବ ବା ସମ୍ବନ୍ଧ ସ୍ଥାପିତ ହୋଇଥାଏ । କାରଣ ଠାକୁର କହୁଥିଲେ,

''ମନୁଷ୍ୟମାନଙ୍କ ଅନ୍ତର ମଧ୍ୟରେ କ'ଣ ଅଛି, ସେ ଦେଖିପାରନ୍ତି; ଯେପରି କାଚ ଆଲମାରି ଭିତରେ ଯେଉଁ ଯେଉଁ ଜିନିଷ ଥାଏ ସବୁ ଦେଖାଯାଏ, ଏହା ଠିକ୍ ସେହିପରି ।'' ଯାହାର ଯେପରି ପ୍ରକୃତି ସେ ତା'ର ବିପରୀତ ଆଚରଣ କଦାପି କରିପାରିବ ନାହିଁ—ଫଳରେ ଭକ୍ତମାନଙ୍କ ମଧ୍ୟରୁ କେହି ମଧ୍ୟ ଠାକୁରଙ୍କର ଏହି ସମ୍ବନ୍ଧ ବା ଭାବର ବିପରୀତରେ ଗମନ ବା ଆଚରଣ କରିବା ସମ୍ଭବ ନ ଥିଲା । ଯଦି କେବେ କେହି ଅନ୍ୟ କାହାର ଦେଖାଦେଖି ବିପରୀତ ଭାବର ଆଚରଣ କରୁଥିଲେ ଠାକୁର ତାଙ୍କ ଉପରେ ବିରକ୍ତ ହେଉଥିଲେ ଏବଂ ତାଙ୍କର ଭୁଲ୍‌ଟିକୁ ଭଲ ଭାବରେ ବୁଝାଇ ଦେଉଥିଲେ । ଯଥା, ଠାକୁର ଶ୍ରୀଯୁକ୍ତ ଗିରିଶଙ୍କୁ ଭୈରବ କହୁଥିଲେ । ଦକ୍ଷିଣେଶ୍ୱରରେ କାଳୀମାତାଙ୍କ ମନ୍ଦିରରେ ଭାବସମାଧିରେ ତାହାଙ୍କୁ ଦିନେ ଏପରି ଦେଖିଥିଲେ । ଶ୍ରୀଯୁକ୍ତ ଗିରିଶଙ୍କର ଅନେକ ଅଳି ଓ କଠିନ ଭାଷା ସେ ହସିହସି ସହ୍ୟ କରୁଥିଲେ—କାରଣ ତାଙ୍କର ଏପରି ଭାଷାର ଆବରଣରେ ଅପୂର୍ବ କୋମଳତା ଓ ଏକାନ୍ତ-ନିର୍ଭରତାର ଭାବ ଯେ ଲୁକ୍କାୟିତ ତାହା ସେ ଦେଖିବାକୁ ପାଉଥିଲେ । ଗିରିଶଙ୍କୁ ଦେଖାଦେଖି ଠାକୁରଙ୍କର ଜନୈକ ପ୍ରିୟ ଭକ୍ତ ଦିନେ ଏପରି ଭାଷା ପ୍ରୟୋଗ କରିବାରୁ ଠାକୁର ତା ଉପରେ ବିଶେଷ ବିରକ୍ତ ହୋଇଥିଲେ ଏବଂ ପରେ ତାହାର ଭୁଲ ତାଙ୍କୁ ବୁଝାଇ ଦେଇଥିଲେ । ଅସ୍ତୁ, ଏବେ ସେସବୁ କଥା ଛାଡ଼ି ଆମର ଆଲୋଚନାର ବିଷୟ ନେଇ ଆଗେଇବା ।

## ଠାକୁର ଭକ୍ତମାନଙ୍କୁ କେତେ ପ୍ରକାରରେ ଧର୍ମପଥରେ ଅଗ୍ରସର କରାଇଥିଲେ :

ଭାବମୁଖରେ ଅବସ୍ଥିତ ଠାକୁର ଏହିପରି ଭାବରେ ସ୍ତ୍ରୀ ବା ପୁରୁଷ ପ୍ରତ୍ୟେକ ଭକ୍ତଙ୍କର ନିଜ ନିଜର ପ୍ରକୃତିଗତ ଆଧ୍ୟାତ୍ମିକ ଭାବ ସମ୍ୟକ୍ ବୁଝି ସେମାନଙ୍କ ସହିତ ସେମାନଙ୍କର ଭାବ ଅନୁସାରେ ଗୋଟିଏ ସପ୍ରେମ ସମ୍ବନ୍ଧ ସବୁ ସମୟ ପାଇଁ ଯୋଡ଼ି ରଖୁଥିଲେ । ସେହି ସେହି ଭାବ ସମ୍ବନ୍ଧ ଆଶ୍ରୟରେ ସେମାନେ ପ୍ରତ୍ୟେକଙ୍କୁ ଭଗବତ୍‌ଦର୍ଶନଲାଭର ପଥରେ ଯେ କିପରି କେତେ ପ୍ରକାରରେ ଅଗ୍ରସର କରାଇ ଦେଉଥିଲେ, ତାହାର କିଞ୍ଚିତ୍ ପରିଚୟ ଏଠାରେ ପାଠକମାନଙ୍କୁ ଜଣାଇ ଆମେ ଏହି ଅଧ୍ୟାୟଟି ସମାପ୍ତ କରିବୁ । ଅଦ୍ୱୈତ ଭାବଭୂମିରୁ ଅବତରଣ କରି ଠାକୁର ସ୍ୱୟଂ ସଖ୍ୟ, ବାତ୍ସଲ୍ୟ ଓ ମଧୁର-ରସୋପଲବ୍ଧି ନିମିତ୍ତ ସାଧନା କରି ସେହି ସେହି ଭାବର ପରାକାଷ୍ଠା ପ୍ରାପ୍ତ ହୋଇଥିଲେ । ଏହାର ଅନେକ ଦିନ ପରେ ଯେତେବେଳେ ଭକ୍ତମାନେ ଅନେକେ ତାଙ୍କ ନିକଟରେ ଉପସ୍ଥିତ ହେଉଥିଲେ, ସେତେବେଳେ ଦିନେ ଠାକୁରଙ୍କର ଭାବାବସ୍ଥାରେ ଇଚ୍ଛା ହୁଏ ଭକ୍ତମାନଙ୍କର ମଧ୍ୟ ଭାବ ସମାଧି ହେଉ ଏବଂ ଜଗଦମ୍ବାଙ୍କ ନିକଟରେ ଏହି ବିଷୟରେ ପ୍ରାର୍ଥନା କରିଥିଲେ । ତାହାପରେ ହିଁ ଭକ୍ତମାନଙ୍କ ମଧ୍ୟରେ କାହାର କାହାର ଏପରି

ହେଉଥିଲା । ସେହି ପ୍ରକାର ଭାବ ଅବସ୍ଥାରେ ସେମାନଙ୍କର ବାହ୍ୟଜଗତ ଓ ଦେହାଦିବୋଧ କେତେକାଂଶରେ କମି ଯାଉଥିଲା ଏବଂ ଅନ୍ତରରେ କୌଣସି ଏକ ବିଶେଷ ଭାବପ୍ରବାହ, ଯଥା—କୌଣସି ମୂର୍ତ୍ତିଚିନ୍ତା, ଏତେ ପରିସ୍ଫୁଟ ହେଉଥିଲା ଯେ, ସେହି ମୂର୍ତ୍ତି ଯେପରି ଜୀବନ୍ତ ରୂପରେ ତାଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ହସୁଛନ୍ତି, କଥା କହୁଛନ୍ତି ଇତ୍ୟାଦି ଦେଖିବାକୁ ପାଉଥିଲେ । ଭଜନ-ସଙ୍ଗୀତ ଇତ୍ୟାଦି ଶୁଣିଲେ ହିଁ ପ୍ରଧାନତଃ ସେମାନଙ୍କର ଏପରି ହେଉଥିଲା ।

**ଭକ୍ତମାନଙ୍କର ଦେବଦେବୀଙ୍କ ମୂର୍ତ୍ତି ଦର୍ଶନ ଓ ଜନୈକ ଭକ୍ତଙ୍କ ବୈକୁଣ୍ଠ ଦର୍ଶନ :**

ଠାକୁରଙ୍କ ଆଉ ଗୋଟିଏ ଦଳ ଭକ୍ତ ଥିଲେ ଯେଉଁମାନଙ୍କର ସଙ୍ଗୀତ-ଭଜନ ଆଦି ଶୁଣିଲେ ଏପରି ହେଉ ନ ଥିଲା, କିନ୍ତୁ ଧ୍ୟାନ କରିବା ସମୟରେ ଦେବମୂର୍ତ୍ତିମାନଙ୍କର ଦର୍ଶନ ହେଉଥିଲା । ପ୍ରଥମରେ କେବଳ ଦର୍ଶନ ହିଁ ହେଉଥିଲା, ପରେ ଧ୍ୟାନ ଯେତେ ଗାଢ଼ ବା ଗଭୀର ହେଉଥିଲା, ସେତେବେଳେ ଏହି ମୂର୍ତ୍ତିମାନଙ୍କର, ହଲଚଲ ହେବା ଓ କଥା କହିବା ଇତ୍ୟାଦି ମଧ୍ୟ ସେମାନେ ଦେଖିବାକୁ ପାଉଥିଲେ । ପୁଣି କେହି କେହି ମଧ୍ୟ ପ୍ରଥମେ ପ୍ରଥମେ ନାନାପ୍ରକାରର ଦର୍ଶନାଦି କରୁଥିଲେ, ମାତ୍ର ଧ୍ୟାନ ଆହୁରି ଗଭୀର ହେଲେ, ଏପରି ଦର୍ଶନାଦି କରୁ ନ ଥିଲେ । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଏହି ଯେ, ଶ୍ରୀରାମକୃଷ୍ଣ ଏମାନଙ୍କର ପ୍ରତ୍ୟେକଙ୍କର ଦର୍ଶନ ଓ ଅନୁଭବ ଇତ୍ୟାଦିର କଥାଶୁଣି ବୁଝିପାରୁଥିଲେ, କିଏ କେଉଁ ଶ୍ରେଣୀର ଏବଂ କାହା ପକ୍ଷରେ କ'ଣ ପ୍ରୟୋଜନ ଏବଂ ପରେ ସେମାନେ କି ପ୍ରକାର ଦର୍ଶନାଦି କରିବେ । ଦୃଷ୍ଟାନ୍ତସ୍ୱରୂପ ଆମେ ଏଠାରେ ଜଣଙ୍କର କଥା କହୁଛୁ । ଆମର ଜଣେ ବନ୍ଧୁ[୧] ଶ୍ରୀରାମକୃଷ୍ଣଦେବଙ୍କ ଦ୍ୱାରା ଉପଦିଷ୍ଟ ହୋଇ ଧ୍ୟାନାଦି କରିବାକୁ ଆରମ୍ଭ କଲେ ଏବଂ ପ୍ରାରମ୍ଭରେ ଧ୍ୟାନ ସମୟରେ ଇଷ୍ଟମୂର୍ତ୍ତି ବିଭିନ୍ନ ଭାବରେ ସନ୍ଦର୍ଶନ ମଧ୍ୟ କରିବାକୁ ଲାଗିଲେ । ସେ ଯାହା ଯାହା ଦେଖୁଥିଲେ, କେତେ ଦିନ ପରେ ଦକ୍ଷିଣେଶ୍ୱର ଆସି, ତାହା ଠାକୁରଙ୍କୁ ଜଣାଉଥିଲେ । ଠାକୁର ଶୁଣି କହୁଥିଲେ, ''ବେଶ୍ ହୋଇଅଛି,'' ଅଥବା ''ଏପରି କରୁଥା'' ଇତ୍ୟାଦି । ପରେ ଦିନେ ସେହି ବନ୍ଧୁ ମହୋଦୟ ଧ୍ୟାନ ସମୟରେ ଦେଖିଲେ, ଯେତେ ପ୍ରକାର ଦେବଦେବୀଙ୍କର ମୂର୍ତ୍ତି ଗୋଟିଏ ମୂର୍ତ୍ତିଙ୍କ ଅଙ୍ଗରେ ମିଳିତ ହୋଇଗଲେ । ଠାକୁରଙ୍କୁ ଏକଥା ନିବେଦନ କରିବାରୁ ଠାକୁର କହିଲେ, ''ଯା, ତୋ'ର ବୈକୁଣ୍ଠଦର୍ଶନ ହୋଇଗଲା । ଏହାପରେ ଆଉ ଦର୍ଶନ ହେବ ନାହିଁ ।'' ଆମର ବନ୍ଧୁ କହିଥିଲେ, ''ବାସ୍ତବିକ୍ ତାହା ହିଁ ହେଲା—ଧ୍ୟାନ କରୁ କରୁ କୌଣସି ମୂର୍ତ୍ତି ଆଉ ଦେଖିବାକୁ ପାଉ ନ ଥିଲି । ଶ୍ରୀଭଗବାନଙ୍କ ସର୍ବବ୍ୟାପକତା ଆଦି ଅନ୍ୟ ପ୍ରକାରର ଉଚ୍ଚ ଭାବସମୂହ ଆସି ହୃଦୟ ଅଧିକାର କରୁଥିଲା, ମୋତେ କିନ୍ତୁ ସେତେବେଳେ ମୂର୍ତ୍ତି

୧. ସ୍ୱାମୀ ଅଭେଦାନନ୍ଦ

ଦର୍ଶନ କରିବାକୁ ଭଲ ଲାଗୁଥାଏ, ତେଣୁ ଯେଉଁଥିରେ ଏପରି ଆହୁରି ଦର୍ଶନ ହେବ ସେଥିପାଇଁ ଚେଷ୍ଟା ମଧ ଖୁବ୍ କରୁଥିଲି; ମାତ୍ର ଚେଷ୍ଟା କଲେ କ'ଣ ହେବ, କୌଣସି ପ୍ରକାରରେ ଆଉ କୌଣସି ମୂର୍ତ୍ତି ଦର୍ଶନ ହେଉ ନ ଥିଲା !''

### ସାକାରବାଦୀଙ୍କ ପ୍ରତି ଠାକୁରଙ୍କ ଉପଦେଶ, ରେଶମର ରସି ଓ ଅଖଣ୍ଡ ପ୍ରଦୀପ :

ସାକାରବାଦୀ ଭକ୍ତମାନଙ୍କୁ ଠାକୁର କହୁଥିଲେ, ''ଧାନ କରିବା ସମୟରେ ଭାବିବ, ମନକୁ ରେଶମର ରସି ଦ୍ୱାରା ଇଷ୍ଟଙ୍କର ପାଦପଦ୍ମରେ ଏପରି ବାନ୍ଧିରଖିଛ, ଯେପରି ସେଠାରୁ ଆଉ କେଉଁଠାକୁ ଯାଇ ନ ପାର । ରେଶମର ଦଉଡ଼ି କାହିଁକି କହୁଛି ?—ତାଙ୍କ ପାଦପଦ୍ମ ବହୁତ ନରମ । ଅନ୍ୟ ଦଉଡ଼ି ଦେଇ ବାନ୍ଧିଲେ କଷ୍ଟହେବ ।'' ସେଥିପାଇଁ ପୁଣି କହୁଥିଲେ, ''ଧାନ କରିବା ସମୟରେ ଇଷ୍ଟଙ୍କ ଚିନ୍ତା କରି ତା'ପରେ ଅନ୍ୟ ସମୟରେ କ'ଣ ଭୁଲି ରହିବ ? କିଛିଟା ମନ ସେ ଆଡ଼େ ସର୍ବଦା ରଖିବ । ଦେଖିଛ ତ, ଦୁର୍ଗାପୂଜା ସମୟରେ ଗୋଟିଏ ଯଜ୍ଞ-ପ୍ରଦୀପ (ଅଖଣ୍ଡ ଦୀପ) ଜଳାଇବାକୁ ପଡ଼େ । ଠାକୁରଙ୍କ ପାଖରେ ସର୍ବଦା ଗୋଟିଏ ଜ୍ୟୋତି ରଖିବାକୁ ହୋଇଥାଏ, ତାହାକୁ କେତେବେଳେ ହେଲେ ଲିଭିବାକୁ ଦିଆଯାଏ ନାହିଁ । ଲିଭିଲେ ଗୃହସ୍ଥର ଅକଲ୍ୟାଣ ହୁଏ । ସେହିପରି ଇଷ୍ଟଙ୍କୁ ହୃଦୟପଦ୍ମରେ ଆଣି ବସାଇ, ଚିନ୍ତାରୂପକ ଯଜ୍ଞ-ପ୍ରଦୀପ ସର୍ବଦା ଜଳାଇ ରଖିବାକୁ ହୁଏ । ସଂସାରର କାର୍ଯ୍ୟ କରୁକରୁ ମଝିରେ ମଝିରେ ଭିତରକୁ ଚାହିଁ ଦେଖିବାକୁ ହୁଏ ସେ ପ୍ରଦୀପଟି ଜଳୁଛି କି ନାହିଁ ?''

### ଧାନ କରିବା ପୂର୍ବରୁ ମନକୁ ଧୋଇଦେବା :

ପୁଣି କହୁଥିଲେ, ''ମୁଁ, ସେତେବେଳେ ଇଷ୍ଟଚିନ୍ତା କରିବା ଆଗେ ଭାବୁଥିଲି, ଯେପରି ମନର ଭିତରଟାକୁ ଭଲ କରି ଧୋଇ ଦେଉଛି ! ମନ ଭିତରେ ବିଭିନ୍ନ ଆବର୍ଜନା, ମଇଳା-ମାଟି (ଚିନ୍ତା, ବାସନା ଇତ୍ୟାଦି) ରହଛି କି ନାହିଁ ? ସେଗୁଡ଼ିକ ସବୁ ଭଲ କରି ଧୋଇ ଧାଇ ସଫାକରି ତା ଭିତରେ ଇଷ୍ଟଙ୍କୁ ଆଣି ବସାଉଛି !—ଏହିପରି କରିବ !'' ଇତ୍ୟାଦି ।

### ସାକାର ବଡ଼ ନା ନିରାକାର ବଡ଼ :

ଶ୍ରୀରାମକୃଷ୍ଣ ଥରେ ଶ୍ରୀଭଗବାନଙ୍କର ସାକାର ଓ ନିରାକାର ଭାବଚିନ୍ତା-ସମ୍ବନ୍ଧରେ ଆମକୁ କହିଥିଲେ, ''କେହି ସାକାର ମାଧମରେ ନିରାକାରରେ ପହଞ୍ଚେ, ପୁଣି କେହି ନିରାକାର ମାଧମରେ ସାକାରରେ ପହଞ୍ଚେ ।'' ଠାକୁରଙ୍କର ପରମଭକ୍ତ ଶ୍ରୀଯୁକ୍ତ ଗିରିଶଚନ୍ଦ୍ରଙ୍କ ଘରେ ବସି ଦିନେ ଆମର ଜଣେ ବନ୍ଧୁ[୧]

---

୧. ଶ୍ରୀଯୁକ୍ତ ଦେବେନ୍ଦ୍ରନାଥ ବସୁ ।

ଠାକୁରଙ୍କୁ ପଚାରିଲେ—'ମହାଶୟ, ସାକାର ବଡ଼ ନା ନିରାକାର ବଡ଼ ?' ତା'ର ଉତ୍ତରରେ ଠାକୁର କହିଲେ, ''ନିରାକାର ଦୁଇପ୍ରକାରର ଅଛି, ପାଚିଲା ଓ କଞ୍ଚା । ପାଚିଲା ନିରାକାର ଉଚ୍ଚ ଭାବ, ଏହା ଠିକ୍; ସାକାର ଧରି ସେହି ନିରାକାରରେ ପହଞ୍ଚିବାକୁ ହୁଏ । କଞ୍ଚା ନିରାକାରରେ ଆଖି ବୁଜିଲେ ହିଁ ଅନ୍ଧକାର—ଯେପରି ବ୍ରାହ୍ମମାନଙ୍କର ।''[୧]

**ସାକାର ଓ ନିରାକାରର ସାମଞ୍ଜସ୍ୟ :**

ପାଶ୍ଚାତ୍ୟ-ଶିକ୍ଷା ଫଳରେ ଏପରି କଞ୍ଚା ନିରାକାର ଧରି ସାଧନାରେ ଅଗ୍ରସର ହେଉଥିବା ଠାକୁରଙ୍କ ଆଉ ଦଳେ ଭକ୍ତ ମଧ୍ୟ ଥିଲେ । ସେମାନଙ୍କୁ ଠାକୁରେ ଖ୍ରୀଷ୍ଟିୟାନ ପାଦ୍ରୀମାନଙ୍କ ପରି ସାକାରଭାବ ଚିନ୍ତାର ନିନ୍ଦା ଅଥବା ଭଗବାନଙ୍କର ସାକାରମୂର୍ତ୍ତି ଆଦି ଅବଲମ୍ବନରେ ସାଧନାରେ ଅଗ୍ରସର ଭକ୍ତଗଣଙ୍କୁ, 'ପୌତ୍ତଳିକ', 'ଅନ୍ଧବିଶ୍ୱାସୀ' ଇତ୍ୟାଦି କହି ଦ୍ୱେଷ କରିବାକୁ ନିଷେଧ କରୁଥିଲେ । କହୁଥିଲେ, ''ଆରେ, ସେ ସାକାର ଅଟନ୍ତି ପୁଣି ନିରାକାର ମଧ୍ୟ, ତା'ଛଡ଼ା ଆହୁରି ମଧ୍ୟ କେତେ କ'ଣ ତାହା କିଏ ଜାଣେ ? ସାକାର କିପରି ଜାଣିଛ— ଯେପରି ଜଳ ଓ ବରଫ । ଜଳ ଜମି ବରଫ ହୁଏ; ବରଫର ଭିତରେ ଓ ବାହାରେ ଜଳ । ଜଳ ବ୍ୟତୀତ ବରଫ ଆଉ କିଛି ନୁହେଁ । କିନ୍ତୁ ଦେଖ, ଜଳର ରୂପ ନାହିଁ (କୌଣସି ଏକ ବିଶେଷ ଆକାର ନାହିଁ), କିନ୍ତୁ ବରଫର ଆକାର ଅଛି । ସେହିପରି ଭକ୍ତିହିମରେ ଅଖଣ୍ଡ ସଚ୍ଚିଦାନନ୍ଦସାଗରର ଜଳ ଜମିଯାଇ ବରଫ ପରି ନାନା ଆକାର ଧାରଣ କରେ ।'' ଠାକୁରଙ୍କର ଏହି ଦୃଷ୍ଟାନ୍ତଟି ଯେ ଶ୍ରୀଭଗବାନଙ୍କର ସାକାର ନିରାକାର ଉଭୟ ଭାବର ଏକତ୍ର ଏକ ସମୟରେ ସମାବେଶ ସମ୍ଭବପର ବୋଲି ଧାରଣା କରାଇ କେତେ ଲୋକଙ୍କର ମନରେ ଶାନ୍ତି ଦେଇଛି, ତାହା କହିବାର ନୁହେଁ ।

**ସ୍ୱାମୀ ବିବେକାନନ୍ଦ ଓ ଅନ୍ଧବିଶ୍ୱାସ :**

ଏଠାରେ ଆଉ ଏକ କଥା ନ କହି ରହିପାରୁ ନାହୁଁ । ଠାକୁରଙ୍କର କଞ୍ଚା ନିରାକାରବାଦୀ ଭକ୍ତଗଣଙ୍କ ମଧ୍ୟରେ ସର୍ବପ୍ରଧାନ ଥିଲେ ସ୍ୱାମୀ ବିବେକାନନ୍ଦ— କେବଳ ସେହି ଦଳର କାହିଁକି ଠାକୁର ତାହାଙ୍କୁ ସବୁ ଦଳର ବା ଶ୍ରେଣୀର ସମସ୍ତ

---

୧. ସତ୍ୟର ଅପଳାପ ନ କରିବା ପାଇଁ ଏହି କଥାଟି ଆମେମାନେ ପ୍ରକାଶ କରିଛୁ ବୋଲି କେହି ଯେପରି ମନେ ନ କରନ୍ତି ଯେ, ଠାକୁର ବର୍ତ୍ତମାନର ବ୍ରାହ୍ମସମାଜ ବା ବ୍ରହ୍ମଜ୍ଞାନୀମାନଙ୍କର ନିନ୍ଦା କରୁଥିଲେ । କୀର୍ତ୍ତନାନ୍ତେ ଯେତେବେଳେ ସମସ୍ତ ସମ୍ପ୍ରଦାୟର ସମସ୍ତ ଭକ୍ତମାନଙ୍କୁ ପ୍ରଣାମ କରୁଥିଲେ, ସେତେବେଳେ 'ଆଧୁନିକ ବ୍ରହ୍ମଜ୍ଞାନୀମାନଙ୍କୁ ପ୍ରଣାମ'—ଏହି କଥାଟି ଠାକୁର ବାରମ୍ବାର କହୁଥିବା ଆମେମାନେ ଶୁଣିଛୁ । ସୁବିଖ୍ୟାତ ବ୍ରାହ୍ମସମାଜର ନେତା ଭକ୍ତପ୍ରବର କେଶବ ସେନ୍ ହିଁ ସର୍ବପ୍ରଥମ ଠାକୁରଙ୍କର କଥା କଲିକତାର ଜନସାଧାରଣଙ୍କ ମଧ୍ୟରେ ପ୍ରଚାର କରିଥିଲେ, ଏକଥା ସମସ୍ତେ ଜାଣନ୍ତି ଏବଂ ଠାକୁରଙ୍କର ସନ୍ନ୍ୟାସୀ ଭକ୍ତମାନଙ୍କ ମଧ୍ୟରୁ ସ୍ୱାମୀ ବିବେକାନନ୍ଦପ୍ରମୁଖ କେତେଜଣ ବ୍ରାହ୍ମସମାଜ ନିକଟରେ ଚିରଋଣୀ, ଏକଥା ମଧ୍ୟ ସେମାନେ ମୁକ୍ତ କଣ୍ଠରେ ସ୍ୱୀକାର କରିଥାନ୍ତି ।

ଭକ୍ତମାନଙ୍କ ଅଗ୍ରରେ ଆସନ ପ୍ରଦାନ କରୁଥିଲେ । ତାଙ୍କର ସେତେବେଳେ ପାଶ୍ଚାତ୍ୟଶିକ୍ଷା ଓ ବ୍ରାହ୍ମସମାଜର ପ୍ରଭାବରେ ସାକାରବାଦୀମାନଙ୍କ ଉପରେ ଟିକିଏ–ଅଧେ କଠିନ କଟାକ୍ଷ କେବେ କେବେ ପ୍ରକାଶ ପାଉଥିଲା । ତର୍କ ସମୟରେ ହିଁ ସେହି ଭାବଟି ତାଙ୍କଠାରେ ବିଶେଷ ପରିଲକ୍ଷିତ ହେଉଥିଲା । ଠାକୁରେ କିନ୍ତୁ ସମୟ ସମୟରେ ତାଙ୍କ ସହିତ କୌଣସି କୌଣସି ସାକାରବାଦୀ ଭକ୍ତର ଘୋରତର ତର୍କ ଲଗାଇ ଦେଇ ମଜା ଦେଖୁଥିଲେ । ଏପରି ତର୍କରେ ସ୍ୱାମୀଜୀଙ୍କ ସାମନାରେ କେହି ଛିଡ଼ା ହୋଇ ପାରୁ ନ ଥିଲେ । ଏବଂ ସ୍ୱାମୀଜୀଙ୍କର ତୀକ୍ଷ୍ଣ ଯୁକ୍ତି ସମ୍ମୁଖରେ ନିରୁତ୍ତର ହୋଇ କେହି କେହି ମନେ ମନେ କ୍ଷୁଣ୍ଣ ମଧ୍ୟ ହେଉଥିଲେ । ଠାକୁର ମଧ୍ୟ ସେକଥା ଅନ୍ୟମାନଙ୍କ ନିକଟରେ ଅନେକ ସମୟରେ ଆନନ୍ଦର ସହିତ କହୁଥିଲେ, ‘‘ଅମୁକର କଥାଗୁଡ଼ିକ ନରେନ୍ଦ୍ର ସେଦିନ କଚ୍ କଚ୍ କରି କାଟିଦେଲା !— କି ବୁଦ୍ଧି !’’ ଇତ୍ୟାଦି । କିନ୍ତୁ ସାକାରବାଦୀ ଗିରିଶଙ୍କ ସହିତ ତର୍କରେ ସ୍ୱାମୀଜୀଙ୍କୁ ଦିନେ ନିରୁତ୍ତର ହେବାକୁ ପଡ଼ିଥିଲା । ସେଦିନ ଠାକୁରେ ଶ୍ରୀଯୁକ୍ତ ଗିରିଶଙ୍କର ବିଶ୍ୱାସ ଆହୁରି ଦୃଢ଼ ଓ ପୁଷ୍ଟ କରିବାପାଇଁ ହିଁ ଯେପରି ତାଙ୍କ ସପକ୍ଷରେ ଥିଲେ ବୋଲି ଆମମାନଙ୍କର ହୃଦ୍‌ବୋଧ ହୋଇଥିଲା ! ସେ ଯାହାହେଉ, ସ୍ୱାମୀ ବିବେକାନନ୍ଦ ଦିନେ ଭଗବାନଙ୍କଠାରେ ବିଶ୍ୱାସ ସମ୍ବନ୍ଧରେ କଥା କହିବା ବେଳେ ଠାକୁରଙ୍କ ନିକଟରେ ସାକାରବାଦୀମାନଙ୍କର ବିଶ୍ୱାସକୁ ‘ଅନ୍ଧବିଶ୍ୱାସ’ କହି ନିର୍ଦ୍ଦେଶ କରିଥିଲେ । ଠାକୁର ଏହାର ଉତ୍ତରରେ ତାଙ୍କୁ କହିଲେ, ‘‘ଆଚ୍ଛା, ଅନ୍ଧବିଶ୍ୱାସ କାହାକୁ କହୁଛୁ ମୋତେ ବୁଝାଇପାରିବୁ ? ବିଶ୍ୱାସର ତ ସମସ୍ତଟା ଅନ୍ଧ; ବିଶ୍ୱାସର କ’ଣ ଚକ୍ଷୁ ଅଛି ? ହୁଏତ କୁହ, ‘ବିଶ୍ୱାସ’, ଆଉ ନ ହେଲେ କୁହ ‘ଜ୍ଞାନ’ । ତା ନୁହେଁ, ବିଶ୍ୱାସ ଭିତରେ କେତେଗୁଡ଼ିକ ଅନ୍ଧ ଆଉ କେତେଗୁଡ଼ିକର ଚକ୍ଷୁ ଅଛି— ଇଏ ପୁଣି କିପରି କଥା ?’’ ସ୍ୱାମୀ ବିବେକାନନ୍ଦ କହୁଥିଲେ, ‘‘ବାସ୍ତବିକ୍ ସେଦିନ ମୁଁ, ଠାକୁରଙ୍କୁ ଅନ୍ଧବିଶ୍ୱାସର ଅର୍ଥ ବୁଝାଇବାକୁ ଯାଇ ଅଡୁଆରେ ପଡ଼ିଯାଇଥିଲି । ଏହି କଥାର କୌଣସି ଅର୍ଥ ହିଁ ଖୋଜି ପାଇ ନାହିଁ । ଠାକୁରଙ୍କର କଥା ହିଁ ଠିକ୍ ବୋଲି ବୁଝି, ସେଦିନଠାରୁ ତାହା କହିବା ଛାଡ଼ି ଦେଇଛି ।’’

**ନିରାକାରବାଦୀଙ୍କ ପ୍ରତି ଉପଦେଶ :**

କଞ୍ଚା ନିରାକାରବାଦୀମାନଙ୍କୁ ମଧ୍ୟ ଠାକୁରେ ସାକାରବାଦୀମାନଙ୍କ ସହିତ ସମାନ ଚକ୍ଷୁରେ ଦେଖୁଥିଲେ । ସେମାନଙ୍କୁ ମଧ୍ୟ କିପରି ଭାବରେ ଧ୍ୟାନ କଲେ ସହାୟକ ହେବ କହି ଦେଉଥିଲେ । କହୁଥିଲେ, ‘‘ଦେଖ, ମୁଁ ସେତେବେଳେ ଭାବୁଥାଏ, ଭଗବାନ ଯେପରି ସମୁଦ୍ର ଜଳପରି ସବୁ ଜାଗା ପୂର୍ଣ୍ଣ କରିରହିଛନ୍ତି, ଆଉ ମୁଁ ଯେପରି ଗୋଟିଏ ମାଛ—ସେହି ସଚ୍ଚିଦାନନ୍ଦ–ସାଗରରେ ବୁଡୁଛି, ଭାସୁଛି, ପହଁରୁଛି ! ପୁଣି କେତେବେଳେ ମନେ ହେଉଥିଲା ମୁଁ ଯେପରି ଗୋଟିଏ

କୁମ୍ଭ, ସେହି ଜଳରେ ବୁଡ଼ିରହିଛି, ଏବଂ ମୋର ଭିତରେ ବାହାରେ ସେହି ଅଖଣ୍ଡ ସଚ୍ଚିଦାନନ୍ଦ ପୂର୍ଣ୍ଣ ହୋଇ ରହିଛନ୍ତି ।''

**ଠାକୁରଙ୍କର ନିଜମୂର୍ତ୍ତି ଧ୍ୟାନ କରିବାକୁ ଉପଦେଶ :**

ଆହୁରି ମଧ୍ୟ କହୁଥିଲେ, ''ଦେଖ, ଧ୍ୟାନ କରିବାକୁ ବସିବା ପୂର୍ବରୁ ଥରେ (ନିଜକୁ ଦେଖାଇ) ଏହାକୁ ଭାବିନେବୁ । କାହିଁକି କହୁଛି ?—ଏହା ଉପରେ ତୁମର ବିଶ୍ୱାସ ଅଛି ତ' ? ଏହାକୁ ଭାବିଲେ ହିଁ ତାଙ୍କୁ (ଭଗବାନଙ୍କୁ) ମନେ ପଡ଼ିଯିବ । ଯେପରି ଗାଈପଲ ଦେଖିଲେ ହିଁ ଗାଈ ଜଗୁଆଳି ମନେ ପଡ଼େ, ଛୁଆଟିଏ ଦେଖିଲେ ତା'ର ବାପାଙ୍କ କଥା ମନେପଡ଼େ, ଓକିଲ ଦେଖିଲେ କଚେରୀ କଥା ମନେ ପଡ଼େ, ସେହିପରି—ବୁଝିଲ କି ନାହିଁ ? ମନ ବିଭିନ୍ନ ଜାଗାରେ ଖେଳାଇ ହୋଇରହେ ତ', ଏହାକୁ ଭାବିଲେ ମନ ଗୋଟିଏ ଜାଗାକୁ ଗୋଟାଇ ହୋଇ ଚାଲିଆସିବ, ଏବଂ ସେହି ମନରେ ଈଶ୍ୱରଙ୍କୁ ଚିନ୍ତାକଲେ ସେଥିରେ ଠିକ୍ ଠିକ୍ ଧ୍ୟାନ ହେବ—ଏଥିପାଇଁ କହୁଛି ।''

**'କଞ୍ଚା ମୁଁ ଓ ପକ୍କା ମୁଁ' । ଗୋଟିଏ ଭାବ ନିଷ୍ଠା ସହକାରେ ଧରିଲେ ଈଶ୍ୱରଙ୍କ ଉପରେ ଜୋର୍ ଚଳେ :**

ଆହୁରି କହୁଥିଲେ, ''ଯାହାକୁ ଭଲ ଲାଗେ, ଯେଉଁ ଭାବ ଭଲ ଲାଗେ, ଜଣଙ୍କୁ ବା ଗୋଟିଏକୁ ପକ୍କା କରି ଧର ତେବେ ତ ଆଣ୍ଟ ହେବ । 'ସେ ଯେ ଭାବର ବିଷୟ, ଭାବ ବ୍ୟତୀତ ଅଭାବ କ'ଣ ଧରିପାରିବ ।'—ଭାବ ଦରକାର । ଗୋଟିଏ ଭାବନେଇ ତାଙ୍କୁ ଡାକିବାକୁ ହୁଏ । 'ଯେପରି ଭାବ ସେପରି ଲାଭ, ମୂଳକଥା ହେଉଛି ବିଶ୍ୱାସ । ଭାବରୁ ପ୍ରେମର ଉଦୟ ହୁଏ ।'—ଭାବ ଦରକାର, ବିଶ୍ୱାସ ଦରକାର, ନିଷ୍ଠା ସହକାରେ ଧରିବା ଦରକାର—ତେବେ ତ ହେବ । ଭାବ କାହାକୁ କହନ୍ତି ଜାଣ ? –ତାଙ୍କ (ଈଶ୍ୱରଙ୍କ) ସାଥିରେ କୌଣସି ସମ୍ବନ୍ଧ ସ୍ଥାପନ କରିବାକୁ ଭାବ କହନ୍ତି । ସେହି ସମ୍ବନ୍ଧ ସବୁ ସମୟରେ ମନେରଖିବ, ଯେପରି—ମୁଁ ତାଙ୍କର ଦାସ, ମୁଁ ତାଙ୍କର ସନ୍ତାନ, ମୁଁ ତାଙ୍କର ଅଂଶ; ଏହା ହେଉଛି ପକ୍କା ମୁଁ, ବିଦ୍ୟାର ମୁଁ—ଏହି ଭାବନାକୁ ଖାଇବା ଶୋଇବା ବସିବା ସବୁ ସମୟରେ ସ୍ମରଣ ରଖିବ; ଆଉ ଏହି ଯେ, ମୁଁ ବ୍ରାହ୍ମଣ, ମୁଁ କରଣ, ମୁଁ ଅମୁକର ପୁତ୍ର, ମୁଁ ଅମୁକର ବାପା—ଏସମସ୍ତ ଅବିଦ୍ୟାର ମୁଁ; ଏଗୁଡ଼ିକ ଛାଡ଼ିବାକୁ ହେବ, ତ୍ୟାଗ କରିବାକୁ ହେବ—ଏଗୁଡ଼ିକ ଦ୍ୱାରା ଅଭିମାନ-ଅହଂକାର ବଢ଼ି ବନ୍ଧନ ସୃଷ୍ଟି ହୋଇଥାଏ । ସ୍ମରଣ ଓ ମନନ ସର୍ବଦା ରଖିବା ଦରକାର, ମନର କିଛି ଅଂଶ ସବୁ ସମୟରେ ତାଙ୍କ ଆଡ଼କୁ ଉନ୍ମୁଖ ରଖିବ—ତେବେ ତ ହେବ । ଗୋଟିଏ ଭାବ ପକ୍କା କରି ଧରି, ତାଙ୍କୁ ନିଜର କରିନେବାକୁ ହେବ, ତେବେ ହିଁ ତାଙ୍କ ଉପରେ ଜୋର ଚଳିବ । ହେଇ ଦେଖୁନ, ଯେତେବେଳେ ନୂଆ ନୂଆ ଭାବ ହୁଏ, ସେତେବେଳେ ଲୋକମାନେ, 'ଆଙ୍ଗ୍ଧା',

'ଆପଣ' କହିଥାଆନ୍ତି; ସେହି ଭାବ ଯେମିତି ବଢ଼ିଲା, ସହଜରେ 'ତୁମେ ତୁମେ' କହନ୍ତି—ସେତେବେଳେ ଆଉ 'ଆପଣ ଫାପଣ'ଗୁଡ଼ାକ କହିହୁଏ ନାହିଁ; ତାହା' ପୁଣି ଯେତେବେଳେ ବଢ଼ିଲା, ସେତେବେଳେ ଆଉ 'ତୁମେ ଫୁମେ'ରେ ରହି ନ ଥାଏ—ସେତେବେଳେ 'ତୁ ମୁଁ' ! ତାଙ୍କୁ ଅତି ଆପଣାର କରିନେବାକୁ ହେବ, ତେବେ ତ ହେବ ।

**ନଷ୍ଟା ସ୍ତ୍ରୀଲୋକର ଦୃଷ୍ଟାନ୍ତ :**

ଯେପରି ନଷ୍ଟା ସ୍ତ୍ରୀଲୋକ ନୂଆ କରି ପରପୁରୁଷକୁ ଭଲପାଇବାକୁ ଶିଖୁଛି—ସେତେବେଳେ କେତେ ଲୁଚାଲୁଚି, କେତେ ଭୟ, କେତେ ଲଜ୍ଜା, ତାପରେ ସେହି ଭାବ ଯେମିତି ବଢ଼ିଲା, ସେତେବେଳେ ଆଉ କିଛି ନାହିଁ ! ସେତେବେଳେ ତା'ର ହାତଧରି ସମସ୍ତଙ୍କ ସାମନାରେ କୁଳତ୍ୟାଗ କରି ବାହାରେ ଆସି ଠିଆ ହେଲା ! ସେତେବେଳେ ଯଦି ସେପୁରୁଷଟି ତାକୁ ଆଦର-ଯତ୍ନ ନ କରେ, ଛାଡ଼ିଯିବାକୁ ଚାହେଁ, ତେବେ ତା'ର ଗଳାରେ ଲୁଗା ପକାଇ ଟାଣି ଧରି କହେ 'ତୋ ଯୋଗୁଁ ମୁଁ ରାସ୍ତାକୁ ଆସିଲି, ଏବେ ତୁ ଖାଇବାକୁ ଦେବୁ କି ନାହିଁ କହ ।' ସେହିପରି, ଯିଏ ଭଗବାନଙ୍କ ପାଇଁ ସବୁ ଛାଡ଼ିଛି, ତାଙ୍କୁ ନିଜର କରିନେଇଛି ସେ ତାଙ୍କ ଉପରେ ଜୋର୍ କରି କହେ, 'ତୁମ ପାଇଁ ସବୁ ଛାଡ଼ିଲି, ଏବେ ଦେଖା ଦେବ କି ନାହିଁ, କହ !''

**ଏହି ଜନ୍ମରେ ଈଶ୍ୱର ଲାଭ କରିବି—**
**ମନରେ ଏପରି ଦୃଢ଼ ବିଶ୍ୱାସ ରଖିବା ଦରକାର :**

କାହାର ଭଗବତ ଅନୁରାଗରେ ନିଷ୍ଠା କମିଛି ଦେଖିଲେ ଠାକୁର କହୁଥିଲେ, ''ଏ ଜନ୍ମରେ ନ ହେଉ ପରଜନ୍ମରେ ପାଇବି, ଇଏ କି କଥା ? ଏପରି ନରମ ଭକ୍ତି ଭଲ ନୁହେଁ । ତା'ଙ୍କ କୃପାରେ ତାଙ୍କୁ ଏହି ଜନ୍ମରେ ହିଁ ପାଇବି, ବର୍ତ୍ତମାନ ହିଁ ପାଇବି—ମନରେ ଏପରି ଜୋର୍ ରଖିବାକୁ ହୁଏ, ବିଶ୍ୱାସ ରଖିବାକୁ ହୁଏ, ତା ନ ହେଲେ କ'ଣ ହେବ ? ଗ୍ରାମର ଚାଷୀମାନେ ବଳଦ କିଣିବାକୁ ଗଲେ ପ୍ରଥମେ ବଳଦର ଲାଙ୍ଗୁଡ଼ରେ ହାତ ଦେଇଥାଆନ୍ତି, କେତେକ ବଳଦ ଅଛନ୍ତି ଲାଞ୍ଜରେ ହାତ ଦେଲେ କିଛି କରନ୍ତି ନାହିଁ, ଶୋଇଯାଆନ୍ତି—ଏଥିରୁ ସେ ବୁଝେ ସେହି ବଳଦ ଭଲ ନୁହେଁ । କିନ୍ତୁ ଯାହାର ଲାଞ୍ଜରେ ହାତ ଦେଲା ମାତ୍ରେ ଛଟ୍‌ପଟ୍ ହୋଇ ଡେଇଁ ଉଠିଥାଏ—ସେପରି ବଳଦ ଖୁବ୍ କାମ କରିବ ବୋଲି ବୁଝାଯାଏ—ସେହି ବଳଦଗୁଡ଼ିକ ମଧ୍ୟରୁ ନିଜର ପସନ୍ଦ ଅନୁସାରେ କିଣିଥାଏ । ଏହିପରି ଅଳସୁଆ ଭାବ ଭଲ ନୁହେଁ; ଜୋର୍ ଆଣ, ବିଶ୍ୱାସ କରି କୁହ—ତାଙ୍କୁ ପାଇବି ହିଁ ପାଇବି, ଏହିକ୍ଷଣି ପାଇବି—ତେବେ ତ' ହେବ ।''

### ଗୋଟିଏ ଗୋଟିଏ କରି ବାସନା ତ୍ୟାଗ କରିବା ଦରକାର :

ପୁଣି କହୁଥିଲେ, ''କାମ-ବାସନାଗୁଡ଼ିକ ସବୁ ଗୋଟିଏ ଗୋଟିଏ କରି ଛାଡ଼, ତେବେ ତ ହେବ । ଏସବୁଗୁଡ଼ାକ ଗୋଟିଏ ଗୋଟିଏ କରି ଛାଡ଼ିବ—ନା ଆହୁରି ବଢ଼ାଇ ଚାଲିବ ! —ତା'ହେଲେ କିପରି ହେବ ?''

### ଚାର ଦେଇ ମାଛ ଧରିବା ପରି ଅଧ୍ୟବସାୟ ଦରକାର :

ଯେତେବେଳେ ଧ୍ୟାନ-ଭଜନ, ପ୍ରାର୍ଥନା ଇତ୍ୟାଦିରେ ଶ୍ରୀଭଗବାନଙ୍କର ଅନୁଭୂତି ନ ପାଇ ମନ ନିରାଶା ସାଗରରେ ଭାସୁଥିଲା, ସେତେବେଳେ ସାକାର ନିରାକାର ଉଭୟବାଦୀମାନଙ୍କୁ ଠାକୁର କହୁଥିଲେ, ''ମାଛ ଧରିବାକୁ ଗଲେ ପ୍ରଥମେ ଚାର କରିବାକୁ ହେବ । ହୁଏତ ଚାର କରି ବନଶି ପକାଇ ବସି ରହିଛ—ମାଛର କୌଣସି ଚିହ୍ନ ବର୍ଣ୍ଣ ଦେଖାଯାଉ ନାହିଁ, ମନେ ହେଉଛି ପୋଖରୀରେ ମାଛ ନାହିଁ । ତା'ପରେ ହୁଏତ ଦିନେ ଦେଖିଲ ଗୋଟେ ବଡ଼ ମାଛ ଡେଇଁଲା—ଏବେ ବିଶ୍ୱାସ ହେଲା ପୋଖରୀରେ ମାଛ ଅଛି । ତା'ପରେ ହୁଏ ତ' ଦିନେ ବନଶିରେ ବନ୍ଧା ପଟିଟା ହଲିଲା—ତେଣୁ ମନେହେଲା, ଚାରରେ ମାଛ ଲାଗିଛି । ତା'ପରେ ହୁଏ ତ' ଦିନେ ପଟିଟା ବୁଡ଼ିଗଲା, ଟେକି ଦେଖିଲା ବେଳକୁ—ମାଛ ଚାର ଖାଇ ପଳାଇଛି; ପୁନର୍ବାର ଚାର ଗୁନ୍ଧି ବନଶି ପକାଇ ଖୁବ୍ ସାବଧାନରେ ବସି ରହିଲ । ତା'ପରେ ଦିନେ ଯେମିତି ଚାର ଖାଇଛି, ସଙ୍ଗେ ସଙ୍ଗେ ଟାଣି ଆଣିଲା ବେଳକୁ ମାଛ କୂଳକୁ ଉଠିଆସିଲା ।''

### ଭଗବାନଙ୍କ କାନ ପତଳା—ସବୁ ଶୁଣି ପାରନ୍ତି :

ଠାକୁର ବେଳେ ବେଳେ କହୁଥିଲେ, ''ସେ ଖୁବ୍ କାନପତଳା, ସବୁ ଶୁଣିପାରନ୍ତି । ଯେତେ ଡାକିଛ, ସବୁ ଶୁଣିଛନ୍ତି । ଦିନେ ନା ଦିନେ ଦେଖା ଦେବେ ହିଁ ଦେବେ । ଅନ୍ତତଃ ମୃତ୍ୟୁ ସମୟରେ ଦେଖା ଦେବେ ।'' କାହାକୁ ମଧ୍ୟ କହୁଥିଲେ—''ସାକାର ବା ନିରାକାର ଯଦି ଠିକ୍ କରି ଧରି ନ ପାର, ତେବେ ଏହିପରି ପ୍ରାର୍ଥନା କର ଯେ, 'ହେ ଭଗବାନ, ତୁମେ ସାକାର କି ନିରାକାର ମୁଁ ବୁଝିପାରୁ ନାହିଁ; ତୁମେ ଯାହାବି ହୁଅ ନା କାହିଁକି ମୋତେ କୃପାକର, ଦେଖାଦିଅ' ।'' ପୁଣି କାହାକୁ ମଧ୍ୟ କହୁଥିଲେ—''ସତରେ ଈଶ୍ୱରଙ୍କ ଦେଖା ମିଳେରେ, ଏଇ ଯେପରି ତୁ ଓ ମୁଁ ବସି କଥା ହେଉଛେ, ଏପରି ଭାବରେ ତାଙ୍କୁ ଦେଖାଯାଏ, ତାଙ୍କ ସହିତ କଥା କହିହୁଏ—କହୁଛି, ମୋ ରାଣ ପକାଇ କହୁଛି !''

## ଗଭୀର ଭାବପ୍ରବଣତାର ସହିତ ଠାକୁରଙ୍କର ସମସ୍ତ ବିଷୟରେ ଦୃଷ୍ଟି ରଖିବା :

ଆଉ ଗୋଟିଏ କଥା — ଚବିଶ ଘଣ୍ଟା 'ଭାବମୁଖ'ରେ ରହିଲେ ଭାବୁକତାର ଏତେ ବୃଦ୍ଧି ହୁଏ ଯେ, ତାହା ଦ୍ୱାରା ଆଉ ସଂସାରର ଅନ୍ୟ କୌଣସି କର୍ମ କରିବା ହୁଏ ନାହିଁ, ଅଥବା ସେ ସଂସାରର ଛୋଟ ଛୋଟ ଘଟଣା ମନେରଖିପାରେ ନାହିଁ — ସର୍ବତ୍ର ଆମେ ଏପରି ହିଁ ଦେଖିବାକୁ ପାଉ । ଏହାର ଦୃଷ୍ଟାନ୍ତ, ଧର୍ମ ଜଗତରେ ତ କଥା ହିଁ ନାହିଁ, ବିଜ୍ଞାନ, ରାଜନୀତି ବା ଅନ୍ୟ ସବୁ ସ୍ଥାନରେ ମଧ୍ୟ ବିଶେଷ ମନସ୍ୱୀ ପୁରୁଷମାନଙ୍କର ଜୀବନାଲୋଚନାରେ ଦେଖିବାକୁ ମିଳିଥାଏ । ଦେଖାଯାଏ, ସେମାନେ ହୁଏତ ନିଜର ଅଙ୍ଗସଂସ୍କାର ବା ନିତ୍ୟବ୍ୟବହାର୍ଯ୍ୟ ଜିନିଷ-ପତ୍ରଗୁଡ଼ିକ ଯଥାଯଥ ସ୍ଥାନରେ ରଖିବା ଇତ୍ୟାଦି ସାମାନ୍ୟ ବିଷୟଗୁଡ଼ିକରେ ଏକାନ୍ତ ଅପଟୁ ଥିଲେ । କିନ୍ତୁ ଠାକୁରଙ୍କ ଜୀବନରେ ଦେଖିବାକୁ ମିଳେ ଯେ, ଏତେ ଅଧିକ ଭାବପ୍ରବଣତାର ଭିତରେ ମଧ୍ୟ ତାଙ୍କର ଏପରି ସାମାନ୍ୟ ବିଷୟଗୁଡ଼ିକରେ ମଧ୍ୟ ତୀକ୍ଷ୍ଣ ଦୃଷ୍ଟି ରହୁଥିଲା । ଯେତେବେଳେ ହୋସ୍ ନ ଥାଏ, ସେତେବେଳେ ନିଜର ଦେହ ବା ଜଗତ-ସଂସାରର କୌଣସି ବସ୍ତୁ ବା ବ୍ୟକ୍ତିଙ୍କ ପ୍ରତି ହୋସ୍ ନ ଥାଏ — ଯେପରି ସମାଧିରେ; କିନ୍ତୁ ଯେତେବେଳେ ହୋସ୍ ଥାଏ, ସେତେବେଳେ ସମସ୍ତ ବିଷୟରେ ହୋସ୍ ରହିଥାଏ ! ଏହା କିଛି କମ୍ ଆଶ୍ଚର୍ଯ୍ୟର କଥା ନୁହେଁ ! ଏଠାରେ ଗୋଟିଏ ଦୁଇଟି ମାତ୍ର ଏପରି ଦୃଷ୍ଟାନ୍ତର ଆମେ ଉଲ୍ଲେଖ କରିବୁ ।

## ଏବିଷୟରେ ଦୃଷ୍ଟାନ୍ତ :

ଦିନେ ଠାକୁର ଦକ୍ଷିଣେଶ୍ୱରରୁ ବଳରାମବାବୁଙ୍କ ଘରକୁ ଯାଉଥିଲେ; ସାଙ୍ଗରେ ନିଜର ପୁତୁରା ରାମଲାଲ ଓ ସ୍ୱାମୀ ଯୋଗାନନ୍ଦ ମଧ୍ୟ ଥିଲେ । ସମସ୍ତେ ଗାଡ଼ିରେ ଉଠିଲେ । ଗାଡ଼ି ଛାଡ଼ି ବଗିଚାର 'ଗେଟ୍' ପର୍ଯ୍ୟନ୍ତ ଯାଇଛି, ଠାକୁରେ ଯୋଗାନନ୍ଦଙ୍କୁ ପଚାରିଲେ — ''କିରେ, ଗାଧୋଇବା ପାଇଁ ଲୁଗା, ଗାମୁଛା ଆଣିଛ ତ' ? — ସେତେବେଳେ ସକାଳ ହୋଇଥିଲା ।

ସ୍ୱାମୀ ଯୋଗାନନ୍ଦ — ନା ମହାଶୟ, ଗାମୁଛା ଆଣିଛି, କିନ୍ତୁ ଲୁଗା ଖଣ୍ଡିକ ଆଣିବାକୁ ଭୁଲିଯାଇଛି । ସେମାନେ (ବଳରାମବାବୁ) ଆପଣଙ୍କ ପାଇଁ ଗୋଟିଏ ନୁଆ ଲୁଗା ଦେଖି ଶୁଣି ଦେବେ ନାହିଁ ?

ଠାକୁର — ଏ ତୋର କିପରି କଥା ? ଲୋକ କହିବେ, କେଉଁଠୁ ଗୋଟେ କାଙ୍ଗାଳ ଆସିଛି । ତାଙ୍କର କଷ୍ଟହେବ, ଅସୁବିଧାରେ ପଡ଼ିବେ — ଯା, ଗାଡ଼ି ରଖି ଯାଇ ନେଇଆ । ସୁତରାଂ ସ୍ୱାମୀ ଯୋଗାନନ୍ଦ ସେହିପରି କଲେ ।

ଠାକୁର କହିଲେ — ଭଲଲୋକ, ଲକ୍ଷ୍ମୀମନ୍ତ ଲୋକ ଘରକୁ ଆସିଲେ ସବୁ ବିଷୟରେ କିପରି ସୁଧାର ହୋଇଯାଏ, କାହାକୁ କୌଣସି ପ୍ରକାରର ଝାମେଲାରେ

ପଡ଼ିବାକୁ ହୁଏ ନାହିଁ । ଆଉ କାଙ୍ଗାଳ, ଅଲକ୍ଷ୍ମୀଗୁଡ଼ିକ ଆସିଲେ ସମସ୍ତ ବିଷୟରେ ଝାମେଲା ଭୋଗିବାକୁ ହୁଏ; ଯେଉଁ ଦିନ ଘରେ କିଛି ନାହିଁ, କେହି ଆସିଲେ ଗୃହସ୍ଥଙ୍କୁ ବିଶେଷ କଷ୍ଟ ପାଇବାକୁ ହେବ, ଠିକ୍ ସେହିଦିନ ସେ ଆସି ଉପସ୍ଥିତ ହୁଏ ।

**ଏବିଷୟରେ ଦ୍ୱିତୀୟ ଦୃଷ୍ଟାନ୍ତ :**

ଶ୍ରୀଯୁକ୍ତ ପ୍ରତାପ ହାଜରା ନାମକ ଜଣେ ବ୍ୟକ୍ତି ଠାକୁରଙ୍କ ସମୟରେ ଦକ୍ଷିଣେଶ୍ୱରରେ ଅନେକଦିନ ସାଧୁଭାବରେ ବିତାଇଥିଲେ । ଆମେ ସମସ୍ତେ ଏହାଙ୍କୁ ହାଜରା ମହାଶୟ ବୋଲି ଡାକୁଥିଲୁ । ଇଏ ମଧ୍ୟ ବେଳେବେଳେ କଲିକତାର ଭକ୍ତମାନଙ୍କ ନିକଟକୁ ଠାକୁରଙ୍କ ସହିତ ଆସୁଥିଲେ । ଥରେ ଏପରି ଆସି ଫେରିବାବେଳେ ନିଜର ଗାମୁଛା ଖଣ୍ଡିକ ଭୁଲି କଲିକତାରେ ଛାଡ଼ିଦେଲେ । ଦକ୍ଷିଣେଶ୍ୱରରେ ପହଞ୍ଚି ଏକଥା ଜାଣିପାରି ଠାକୁର ତାଙ୍କୁ କହିଲେ— ''ଭଗବାନଙ୍କର ନାମରେ ମୋର ପିନ୍ଧିଥିବା ଲୁଗାର ହୋସ୍ ନ ଥାଏ, କିନ୍ତୁ ମୁଁ ତ ଦିନେ ହେଲେ ବି ନିଜର ଗାମୁଛା ବା ବଟୁଆ କଲିକତାରେ ଭୁଲି ଆସି ନ ଥାଏ । ଆଉ ତୁମର ଟିକେ ଜପ କରି ଏତେ ଭୁଲ !''

**ଏବିଷୟରେ ତୃତୀୟ ଦୃଷ୍ଟାନ୍ତ—ଶ୍ରୀଶ୍ରୀ ମା'ଙ୍କ ପ୍ରତି ଉପଦେଶ :**

ଶ୍ରୀଶ୍ରୀମା'ଙ୍କୁ ଠାକୁର ଶିଖାଇଥିଲେ—''ଗାଡ଼ିରେ ବା ନୌକାରେ ଯିବା ସମୟରେ ପ୍ରଥମେ ଉଠିବ, ଆଉ ଓହ୍ଲାଇବା ସମୟରେ, କେଉଁ ଜିନିଷଟା ନେବାକୁ ଭୁଲିଯାଇଛ କି ନାହିଁ ଦେଖି ସମସ୍ତେ ଓହ୍ଲାଇବା ପରେ ଓହ୍ଲାଇବ ।'' ଠାକୁରଙ୍କର ଅତି ସାମାନ୍ୟ ବିଷୟରେ ମଧ୍ୟ ଏତେ ନଜର ଥିଲା ।

**ଏବିଷୟରେ ଶେଷକଥା :**

ଏହିପରି 'ଭାବମୁଖରେ' ନିରନ୍ତର ରହି ମଧ୍ୟ ଠାକୁରଙ୍କର ଆବଶ୍ୟକୀୟ ସମସ୍ତ ବିଷୟରେ ହୋସ୍ ରହୁଥିଲା । ଯେଉଁ ଜିନିଷଟି ଯେଉଁଠାରେ ରଖିବା କଥା ସେସବୁ ସେହିଠାରେ ରଖୁଥିଲେ, ନିଜର ଲୁଗାପଟା, ବଟୁଆ ପ୍ରଭୃତି ସବୁ ନିତ୍ୟ ବ୍ୟବହାର୍ଯ୍ୟ ଜିନିଷର ନିଜେ ନଜର ରଖୁଥିଲେ । କେଉଁଠାକୁ ଯିବା ଆସିବା ସମୟରେ ସମସ୍ତ ଜିନିଷ ଆଣିବାରେ ଭୁଲ ହୋଇଛି କି ନାହିଁ ତା'ର ସନ୍ଧାନ ନେଉଥିଲେ । ଭକ୍ତମାନଙ୍କର ମାନସିକ ଭାବସମୂହର ଯେପରି ପୁଙ୍ଖାନୁପୁଙ୍ଖ ସନ୍ଧାନ ରଖୁଥିଲେ, ସେପରି ସେମାନଙ୍କର ସଂସାରର ସମସ୍ତ ବିଷୟର ସନ୍ଧାନ ରଖି କେଉଁଥିରେ ସେମାନଙ୍କର ବାହ୍ୟିକ ସମସ୍ତ ବିଷୟ ମଧ୍ୟ ସାଧନାର ଅନୁକୂଳ ହୋଇପାରିବ ସେବିଷୟରେ ନିରନ୍ତର ଚିନ୍ତା କରୁଥିଲେ !

### ଠାକୁର ଭାବରାଜ୍ୟର ମୂର୍ତ୍ତିମାନ ରାଜା ଥିଲେ :

ଠାକୁରଙ୍କର କଥା ଅନୁଧାବନ କଲେ ବୁଝାଯାଏ, ସେ ଯେପରି ସର୍ବପ୍ରକାର ଭାବର ମୂର୍ତ୍ତିମାନ ସମଷ୍ଟି ଥିଲେ । ଭାବରାଜ୍ୟର ଏତେ ବଡ଼ ରାଜା ମାନବଜଗତରେ ଆଉ କେବେ ମଧ ଦେଖାଯାଇ ନାହିଁ । ଭାବମୟ ଠାକୁର ଭାବମୁଖରେ ଅବସ୍ଥାନ କରି ନିର୍ବିକଳ୍ପ ଅଦ୍ୱୈତଭାବରୁ ସବିକଳ୍ପ ସମସ୍ତ ପ୍ରକାର ଭାବର ପୂର୍ଣ୍ଣ ପ୍ରକାଶ ନିଜେ ଦେଖାଇ ସବୁ ଶ୍ରେଣୀର, ଭକ୍ତମାନଙ୍କୁ ସ୍ୱ ସ୍ୱ ପଥର ଓ ଗନ୍ତବ୍ୟ-ସ୍ଥଳର ସମ୍ବାଦ ଦେଇ ଅନ୍ଧକାରରେ ଅପୂର୍ବ ଜ୍ୟୋତି, ନିରାଶାରେ ଅଦୃଷ୍ଟପୂର୍ବ ଆଶା ଏବଂ ସଂସାରର ନିଦାରୁଣ ଦୁଃଖ କଷ୍ଟ ଭିତରେ ନିରୁପମ ଶାନ୍ତି ଆଣି ଦେଉଥିଲେ । ଠାକୁର ସେସମସ୍ତଙ୍କର କିପରି ଭରସାର ସ୍ଥଳ ଥିଲେ ତାହା କହି ବୁଝେଇ ହୁଏ ନାହିଁ ।

### ମାନବମନ ଉପରେ ତାଙ୍କର ଅପୂର୍ବ ଆଧିପତ୍ୟ ବିଷୟରେ ସ୍ୱାମୀ ବିବେକାନନ୍ଦଙ୍କ କଥା :

ମନରାଜ୍ୟରେ ତାଙ୍କର ଯେ କି ପ୍ରବଳ ପ୍ରତାପ ଦେଖାଯାଇଛି, ତାହା କହିବା ଅସମ୍ଭବ । ସ୍ୱାମୀ ବିବେକାନନ୍ଦ କହୁଥିଲେ—''ମନର ବାହାରେ ଜଡ଼-ଶକ୍ତିସମୂହକୁ ଯେକୌଣସି ଉପାୟରେ ଆୟତ୍ତ କରି କୌଣସି ଗୋଟିଏ ଅଦ୍ଭୁତ କଥା (miracle) ଦେଖାଇବା ବେଶୀ ବଡ଼ କଥା ନୁହେଁ—କିନ୍ତୁ ଏଇ ଯେ ପାଗଳ ବ୍ରାହ୍ମଣ ଲୋକଙ୍କର ମନଗୁଡ଼ିକୁ କାଦୁଅ ପରି ହାତରେ ନେଇ ଭାଙ୍ଗନ୍ତି, ପିଟନ୍ତି, ଗଢ଼ନ୍ତି, ସ୍ପର୍ଶମାତ୍ରକେ ହିଁ ନୂତନ ଛାଞ୍ଚରେ ପକାଇ ନୂତନ ଭାବରେ ପୂର୍ଣ୍ଣ କରନ୍ତି, ଏହାଠାରୁ ବଡ଼ ଆଶ୍ଚର୍ଯ୍ୟର କଥା (miracle) ମୁଁ ଆଉ କିଛି ଦେଖି ନାହିଁ !''

# ତୃତୀୟ ଅଧ୍ୟାୟ

## ଶ୍ରୀରାମକୃଷ୍ଣଦେବଙ୍କ ଗୁରୁଭାବ

ଆଶ୍ଚର୍ଯ୍ୟବତ୍ ପଶ୍ୟତି କଶ୍ଚିଦେନ-
ମାଶ୍ଚର୍ଯ୍ୟବଦ୍ବଦତି ତଥୈବ ଚାନ୍ୟଃ ।
ଆଶ୍ଚର୍ଯ୍ୟବଚ୍ଚୈନମନ୍ୟଃ ଶୃଣୋତି
ଶ୍ରୁତ୍ୱାପ୍ୟେନଂ ବେଦ ନ ଚୈବ କଶ୍ଚିତ୍ ।। —ଗୀତା, ୨/୨୯

**ଠାକୁର 'ଗୁରୁ' 'ବାବା' ବା 'କର୍ତ୍ତା' ବୋଲି ସମ୍ବୋଧିତ ହେଲେ ବିରକ୍ତ ହେଉଥିଲେ । ତେବେ ଗୁରୁଭାବ ତାଙ୍କଠାରେ କିପରି ସମ୍ଭବ ?**

ଠାକୁରଙ୍କୁ ଯେଉଁମାନେ ଦୁଇଚାରିଥର ମାତ୍ର ଦେଖିଛନ୍ତି ଅଥବା ତାଙ୍କ ସହିତ ବିଶେଷ ଘନିଷ୍ଠ ଭାବରେ ପରିଚୟ ହୋଇ ନାହାନ୍ତି, ଉପରେ ଉପରେ ମାତ୍ର ଦେଖିଛନ୍ତି, ସେମାନେ ଗୁରୁଭାବରେ ଭକ୍ତମାନଙ୍କ ସହିତ ଠାକୁରଙ୍କ ଲୀଳାର କଥା କୌଣସି ବ୍ୟକ୍ତିଙ୍କଠାରୁ ଶୁଣିବାକୁ ପାଇଲେ ବହୁତ ଆଶ୍ଚର୍ଯ୍ୟ ହେଉଥିଲେ । ଭାବୁଥିଲେ, 'ଲୋକଟା ସମ୍ପୂର୍ଣ୍ଣ ମିଥ୍ୟା କଥାଗୁଡ଼ାକ କହୁଛି ।' ପୁଣି ଯେତେବେଳେ ଦେଖୁଥିଲେ ଅନେକେ ହିଁ ସେହି ଭାବର କଥା କହୁଛନ୍ତି ସେତେବେଳେ ମନେ କରୁଥିଲେ, ''ଏମାନେ ସବୁ ଗୋଟାଏ ମତଲବ କରି ଦଳ ବାନ୍ଧିଛନ୍ତି, ଆଉ ଶ୍ରୀରାମକୃଷ୍ଣଙ୍କୁ ଠାକୁର କରି ତୋଳିଛନ୍ତି; ତିନିଶହ ତେତିଶ କୋଟି ଉପରେ ପୁଣି ଗୋଟାଏ ବଢ଼ାଉଛନ୍ତି ! କାହିଁକିରେ ବାବୁ, ଏତେ ସବୁ ଠାକୁର କ'ଣ ତୁମମାନଙ୍କ କଥା ଶୁଣୁ ନାହାନ୍ତି ? ଯାହାକୁ ଇଚ୍ଛା, ଯେତେ ଜଣଙ୍କୁ ଇଚ୍ଛା, ଏହାଙ୍କ ଭିତରୁ ନିଅ ନା—ପୁଣି ଗୋଟିଏ ବଢ଼ାଇବା କ'ଣ ଦରକାର ? କି ଆଶ୍ଚର୍ଯ୍ୟ ଏମାନେ ଥରେ ମାତ୍ର ଭାବନ୍ତି ନାହିଁ ଯେ, ମିଥ୍ୟାକଥାଗୁଡ଼ିକ ଧରାପଡ଼ିଲେ ଏପରି ପବିତ୍ର ଲୋକଟି ଉପରେ ଲୋକଙ୍କର ଭକ୍ତି ପୂର୍ଣ୍ଣରୂପରେ କ୍ଷୁଣ୍ଣ ହେବ ! ଆମେ ମଧ୍ୟ ତାଙ୍କୁ ଦେଖିଛୁ ! —ସମସ୍ତଙ୍କଠାରେ ବିନୟୀ, ନମ୍ରଭାବ—ଏକଦମ୍ ଯେପରି ମାଟିର ମଣିଷ, ଯେପରି ସମସ୍ତଙ୍କଠାରୁ ଛୋଟ—ଟିକିଏ ହେଲେ ଅହଂକାର ନାହିଁ ! ତା'ପରେ ଆଉ ଗୋଟିଏ କଥା, ଯାହା ତୁମେମାନେ ମଧ୍ୟ କୁହ ଏବଂ ଆମେ ମଧ୍ୟ ଦେଖିଛୁ ଯେ, 'ଗୁରୁ', 'ବାବା' କିମ୍ବା 'କର୍ତ୍ତା' କହି ତାଙ୍କୁ କେହି ସମ୍ବୋଧନ କଲେ ସେ ଆଦୌ ସହିପାରୁ ନ ଥିଲେ; କହି ଉଠୁଥିଲେ, 'ଈଶ୍ୱର ହିଁ ଏକମାତ୍ର ଗୁରୁ, ପିତା ଓ କର୍ତ୍ତା—ମୁଁ ହୀନରୁ ହୀନ, ଦାସର ଦାସ, ତୁମ ଦେହର ଗୋଟିଏ ଛୋଟଲୋମ ସଦୃଶ—ଗୋଟିଏ ବଡ଼ ଲୋମର ସମାନ ମଧ୍ୟ ନୁହେଁ !' —ଏପରି କହି ହୁଏତ ତା'ର ପାଦର ଧୂଳି ନେଇ ନିଜ ମଥାରେ ଦେଉଥିଲେ ! ଏପରି ଦୀନଭାବ କେଉଁଠାରେ କେହି ଦେଖିଛି ? ଆଉ ସେହି ଲୋକକୁ ଏମାନେ 'ଗୁରୁ', 'ଠାକୁର' —ଯାହା ଇଚ୍ଛା ତାହା କହୁଛନ୍ତି ଓ ଯାହା ନୁହେଁ ତାହା କରୁଛନ୍ତି !''

**ସର୍ବଭୂତରେ ନାରାୟଣ-ବୁଦ୍ଧି ସ୍ଥିର ଥିବାରୁ ଠାକୁରଙ୍କର ଦାସ-ଭାବ ସ୍ୱାଭାବିକ :**

ଏପରି ଅନେକ ବାଦାନୁବାଦ ଅସମ୍ଭବ ନୁହେଁ ବୋଲି ଆମେ ଠାକୁରଙ୍କର ଗୁରୁଭାବ-ସମ୍ବନ୍ଧରେ ଯାହା ଦେଖିଅଛୁ ଏବଂ ଶୁଣିଅଛୁ ସେବିଷୟରେ କିଛି କହିବାକୁ ପ୍ରବୃତ୍ତ ହେଲୁ । କାରଣ ବାସ୍ତବିକ ଠାକୁରେ ଯେତେବେଳେ ସାଧାରଣ ଭାବରେ ରହୁଥିଲେ, ସେତେବେଳେ ଆବ୍ରହ୍ମସ୍ତମ୍ବପର୍ଯ୍ୟନ୍ତ ସର୍ବଭୂତରେ ଠିକ୍ ଠିକ୍ ନାରାୟଣ-ବୁଦ୍ଧି ସ୍ଥିର ରଖି ମନୁଷ୍ୟର କଥା ଛାଡ଼, ସମସ୍ତ ପ୍ରାଣୀଙ୍କର 'ମୁଁ ଦାସ' ଏହି ଭାବନେଇ ରହୁଥିଲେ; ସେତେବେଳେ ସେ ନିଜକୁ ହୀନରୁ ହୀନ, ଦୀନରୁ ଦୀନ ଜ୍ଞାନରେ ସମସ୍ତଙ୍କର ପଦଧୂଳି ଗ୍ରହଣ କରୁଥିଲେ; ଏବଂ ସେସମୟରେ ସେ 'ଗୁରୁ', 'କର୍ତ୍ତା' ବା 'ବାବା' ବୋଲି ସମ୍ବୋଧିତ ହେଲେ ସହିପାରୁ ନ ଥିଲେ ।

**କିନ୍ତୁ ଦିବ୍ୟ-ଭାବାବେଶରେ ଠାକୁରଙ୍କଠାରେ ଗୁରୁଭାବର ଲୀଳା ନିତ୍ୟ ଦେଖା ଯାଉଥିଲା । ଠାକୁରଙ୍କର ସେତେବେଳର ବ୍ୟବହାରରେ ଭକ୍ତମାନଙ୍କର କ'ଣ ମନେ ହେଉଥିଲା :**

କିନ୍ତୁ ସାଧାରଣ ଭାବରେ ଅବସ୍ଥାନ ସମୟରେ ଏପରି କଲେ ମଧ୍ୟ ଠାକୁରଙ୍କର ଗୁରୁଭାବର ଅପୂର୍ବ ଲୀଳା କଥା କିପରି ଭାବରେ ଅସ୍ୱୀକାର କରିହେବ ? ସେହି ଅଦୃଷ୍ଟପୂର୍ବ ଦିବ୍ୟଭାବାବେଶରେ ଯେତେବେଳେ ସେ ଯନ୍ତ୍ରସ୍ୱରୂପ ହୋଇ, କାହାକୁ ମଧ୍ୟ ସ୍ପର୍ଶ ମାତ୍ରେ ହିଁ ସମାଧି, ଗଭୀର ଧ୍ୟାନ ବା ଭଗବଦ୍ ଆନନ୍ଦର ଅଭୂତପୂର୍ବ ନିଶାର ଝୁଙ୍କରେ[୧] ନିମଗ୍ନ କରୁଥିଲେ, ଅଥବା କୌଣସି ଏକ ଆଧ୍ୟାତ୍ମିକ ଶକ୍ତିବଳରେ ତାହାର ମନର ତମୋଗୁଣ ବା ମଳିନତାକୁ ଏତେଟା ଟାଣି ନେଉଥିଲେ ଯେ, ସେ ତତକ୍ଷଣାତ୍ ପୂର୍ବରୁ ଯେପରି କେବେହେଲେ ଅନୁଭବ କରି ନାହିଁ, ସେପ୍ରକାର ଗୋଟିଏ ମନର ଏକାଗ୍ରତା, ପବିତ୍ରତା ଓ ଆନନ୍ଦ ଲାଭ କରୁଥିଲା ଏବଂ ନିଜକୁ କୃତାର୍ଥ ଜ୍ଞାନ କରି ଠାକୁରଙ୍କର ଚରଣ ତଳେ ଚିରଦିନ ପାଇଁ ଆତ୍ମନିବେଦନ କରୁଥିଲା — ସେତେବେଳେ ଠାକୁରଙ୍କୁ ଦେଖିଲେ ମନେ ହେଉଥିଲା ଯେ, ଇଏ ପୂର୍ବର ସେହି ଦୀନର ଦୀନ ଠାକୁର ନୁହଁନ୍ତି; ଏହାଙ୍କଠାରେ କୌଣସି ଏକ ଐଶ୍ୱରିକ ଶକ୍ତି ସ୍ୱେଚ୍ଛାରେ ବା ଲୀଳାରେ ପ୍ରକଟିତ ହୋଇ ତାଙ୍କୁ ଆତ୍ମହରା କରି ଏପରି କରାଉଛି; ଇଏ ପ୍ରକୃତରେ ଅଜ୍ଞାନତିମିରରେ ଅନ୍ଧ, ତ୍ରିତାପରେ ତାପିତ, ଭବରୋଗଗ୍ରସ୍ତ ଅସହାୟ ମାନବର ଗୁରୁ, ତ୍ରାତା ଏବଂ

---

୧. ବାସ୍ତବିକ ସେତେବେଳେ ଅଧିକ ପରିମାଣରେ ସିଦ୍ଧି ଖାଇଲେ ଯେପରି ନିଶା ହୁଏ, ସେପରି ଏକ ନିଶାର ଘୋର ଉପସ୍ଥିତ ହେଉଥିଲା । କାହାର କାହାର ପାଦ ଟଳମଳ ହେବାର ଦେଖିଛୁ । ଠାକୁରଙ୍କ ବିଷୟରେ କ'ଣ କହିବା ! ସେହି ନିଶାର ପ୍ରଭାବରେ ପାଦ ଏପରି ଟଳମଳ ହେଉଥିଲା ଯେ, ଆମମାନଙ୍କୁ ମଧ୍ୟ ସେତେବେଳେ କାହାକୁ ଧରି ଚାଲିବାକୁ ହେଉଥିଲା । ଲୋକମାନେ ଭାବନ୍ତି, ସତରେ ନିଶା ଖାଇଛନ୍ତି ।

ଭଗବାନଙ୍କର ପରମ ପଦର ଦର୍ଶୟିତା ! ଭକ୍ତମାନେ ଠାକୁରଙ୍କର ଏହି ଅବସ୍ଥାକୁ ଲକ୍ଷ୍ୟ କରି ଗୁରୁ, କୃପାମୟ, ଭଗବାନ ପ୍ରଭୃତି ଶବ୍ଦ ବ୍ୟବହାର କରୁଥିଲେ । ଆପାତବିରୁଦ୍ଧ ବୋଲି ମନେହେଲେ ମଧ୍ୟ ଯଥାର୍ଥ ଦୀନଭାବ ଏବଂ ଏହି ଦିବ୍ୟ ଐଶ୍ୱରିକ ଗୁରୁଭାବ ଯେ ଏକତ୍ର ଜଣଙ୍କଠାରେ ଅବସ୍ଥାନ କରିପାରେ, ତାହା ଆମେ ବର୍ତ୍ତମାନ ଯୁଗରେ ଭଗବାନ ଶ୍ରୀରାମକୃଷ୍ଣଙ୍କଠାରେ ଯଥାର୍ଥରେ ଦେଖିଛୁ; ଏବଂ ଦେଖିଛୁ ବୋଲି ଉଭୟ କିପରି ଏକାଠି ଗୋଟିଏ ମନରେ ରହିଥାଏ ସେବିଷୟରେ ଯାହା ବୁଝିଅଛୁ ସେସମସ୍ତ ପାଠକଙ୍କୁ ଉପହାର ଦେବାକୁ ଚେଷ୍ଟା କରୁଅଛୁ ।

**ଭାବମୟ ଠାକୁରଙ୍କର ଭାବର ଇତି ନାହିଁ :**

ଏପରି ଚେଷ୍ଟା କଲେ ମଧ୍ୟ ଯେତିକି ମାତ୍ର ବୁଝିଅଛୁ ସେଗୁଡ଼ିକ ଠିକ୍ ଭାବରେ ବୁଝାଇପାରିବୁ କି ନାହିଁ ଜାଣେ ହିଁ । ପୁନଶ୍ଚ ସମ୍ୟକ୍ ଭାବରେ ବୁଝିବା କିମ୍ବା ବୁଝାଇବା, ଲେଖକ ଓ ପାଠକ ଉଭୟଙ୍କର ହିଁ ସାଧ୍ୟାତୀତ; କାରଣ ଭାବମୁଖରେ ଅବସ୍ଥିତ ଠାକୁରଙ୍କର ଭାବର ଇୟତ୍ତା ନାହିଁ । ଠାକୁର କହୁଥିଲେ, "ଶ୍ରୀଭଗବାନଙ୍କର 'ଇତି' ନାହିଁ ।" ଆମମାନଙ୍କର ପ୍ରତ୍ୟକ୍ଷ ଏହି ଅଲୌକିକ ପୁରୁଷଙ୍କର ମଧ୍ୟ ସେହିପରି ଭାବର 'ଇତି' ନାହିଁ ।

**ସାଧାରଣ ଲୋକଙ୍କର ବିଶ୍ୱାସ—ଠାକୁର ଭକ୍ତ ଥିଲେ ଜ୍ଞାନୀ ନ ଥିଲେ । 'ଭାବମୁଖରେ ରହିବା' କେତେବେଳେ କିପରି ସମ୍ଭବ ହୁଏ ବୁଝିପାରିଲେ, ଏକଥା କୁହାଯାଇପାରିବ ନାହିଁ :**

ସଚରାଚର ଲୋକମାନେ ଠାକୁର 'ଭାବମୁଖରେ' ରହିଥିବା ଶୁଣିଲେ ହିଁ ଭାବିବସନ୍ତି ଯେ, ସେ ଜ୍ଞାନୀ ନ ଥିଲେ । ଭଗବତ୍ ଅନୁରାଗ ଓ ବିରହରେ ମନରେ ଯେଉଁ ସୁଖ ଦୁଃଖ ଆଦି ଭାବ ଆସି ଉପସ୍ଥିତ ହୁଏ, ତାହାକୁ ନେଇ ସବୁବେଳେ ସର୍ବକ୍ଷଣ ରହିଥାଆନ୍ତି । କିନ୍ତୁ 'ଭାବମୁଖରେ ରହିବା' କିପରି ଜିନିଷ ବା କିପରି ଅବସ୍ଥାରେ ଏହା ସମ୍ଭବ, ତାହା ଯଦି ଆମେ ବୁଝିପାରିବୁ ତେବେ ବର୍ତ୍ତମାନର ବିଷୟଟି ବୁଝିପାରିବୁ; ସେଥିପାଇଁ 'ଭାବମୁଖରେ ରହିବା' ଅବସ୍ଥାଟିର ସଂକ୍ଷିପ୍ତ ଆଲୋଚନା ଏଠାରେ ଆଉଥରେ ଅନ୍ୟପ୍ରକାରରେ କରାହେଉ । ପାଠକ ମନେ ମନେ ଭାବି ନିଅନ୍ତୁ—ତିନିଦିନର ସାଧନାରେ ଠାକୁରଙ୍କର ନିର୍ବିକଳ୍ପ ସମାଧି ହୋଇଥିଲା ।

**'ମୁଁ'-ବୋଧ ଆଶ୍ରୟରେ ମାନସିକ ବୃତ୍ତିସମୂହର ଉଦୟ । ଏହାର ଆଂଶିକ ଲୋପରେ ସବିକଳ୍ପ ଓ ପୂର୍ଣ୍ଣ ଲୋପରେ ନିର୍ବିକଳ୍ପ ସମାଧି ହୁଏ । ସମାଧି, ମୂର୍ଚ୍ଛା ଓ ସୁଷୁପ୍ତିର ପ୍ରଭେଦ :**

ପ୍ରଶ୍ନ—ନିର୍ବିକଳ୍ପ ସମାଧି କ'ଣ ?

ଉତ୍ତର—ମନକୁ ସମ୍ପୂର୍ଣ୍ଣ ଭାବରେ ସଂକଳ୍ପ-ବିକଳ୍ପରହିତ ଅବସ୍ଥାକୁ ଆନୟନ କରିବା ।

ପ୍ରଶ୍ନ—ସଂକଳ୍ପ-ବିକଳ୍ପ କାହାକୁ କହନ୍ତି ?

ଉତ୍ତର—ବାହ୍ୟ ଜଗତର ରୂପରସାଦି ବିଷୟସମୂହର ଜ୍ଞାନ ବା ଅନୁଭବ, ସୁଖ-ଦୁଃଖାଦି ଭାବ, କଳ୍ପନା, ବିଚାର, ଅନୁମାନ ପ୍ରଭୃତି ମାନସିକ ଚେଷ୍ଟା ଏବଂ ଇଚ୍ଛା କିମ୍ବା 'ଏହା କରିବି', 'ତାହା ବୁଝିବି', 'ଏହା ଭୋଗ କରିବି', 'ତାହା ତ୍ୟାଗ କରିବି' ଇତ୍ୟାଦି ମନର ସମସ୍ତ ବୃତ୍ତିଗୁଡ଼ିକର ନାମ ସଂକଳ୍ପ-ବିକଳ୍ପ ।

ପ୍ରଶ୍ନ—କେଉଁ ଜିନିଷ ଯୋଗୁଁ ବୃତ୍ତି ଉଠେ ?

ଉତ୍ତର—'ମୁଁ' 'ମୁଁ' ଏହି ଜ୍ଞାନ ବା ବୋଧ ଯୋଗୁଁ ବୃତ୍ତି ଉଠେ । 'ମୁଁ'-ବୋଧ ଯଦି ଚାଲିଯାଏ ବା କିଛିକ୍ଷଣ ପାଇଁ ଏକାବେଳକେ ବନ୍ଦ ହୋଇଯାଏ, ତେବେ ସେସମୟରେ କୌଣସି ବୃତ୍ତି ମନରେ ଉଠେ ନାହିଁ ବା ରାଜତ୍ୱ କରିପାରେ ନାହିଁ ।

ପ୍ରଶ୍ନ—ମୂର୍ଚ୍ଛା ବା ଗଭୀର ନିଦ୍ରାସମୟରେ ମଧ୍ୟ 'ମୁଁ'-ର ବୋଧ ନ ଥାଏ—ତେବେ କ'ଣ ନିର୍ବିକଳ୍ପ ସମାଧିଟି ଏପରି ଗୋଟିଏ ଅବସ୍ଥା ?

ଉତ୍ତର—ନା; ମୂର୍ଚ୍ଛା ବା ସୁଷୁପ୍ତିରେ 'ମୁଁ'-ବୋଧଟି ଭିତରେ ଭିତରେ ରହିଥାଏ, ତେବେ ମସ୍ତିଷ୍କରୂପ(brain) ଯେଉଁ ଯନ୍ତ୍ରଟିର ସହାୟତାରେ ମନ 'ମୁଁ' 'ମୁଁ' କରେ ତାହା କିଛି କ୍ଷଣ ପାଇଁ କେତେକାଂଶରେ ଜଡ଼ଭାବାପନ୍ନ ହୁଏ ବା ଚୁପ ରହିଥାଏ, ଏତିକି ମାତ୍ର ଫରକ—ଭିତରେ ବୃତ୍ତିଗୁଡ଼ିକ କାର୍ଯ୍ୟ କରୁଥାଏ—ଠାକୁରେ ଯେପରି ଦୃଷ୍ଟାନ୍ତ ଦେଇଥାଆନ୍ତି, ''ପାରା ମଟର ଖାଇ ଗଳା ଫୁଲାଇ ବସିଥାଏ ବା ଘୁଁ ଘୁଁ ଶବ୍ଦକରେ—ତୁମେ ମନେ କରୁଛ ତା'ର ଗଳା ମଧ୍ୟରେ କିଛି ନାହିଁ— କିନ୍ତୁ ତାର ଗଳାରେ ହାତ ଦେଇ ଦେଖିବ—ତେବେ ଦେଖିବ ମଟର ଭରି ରହିଛି !''

**ସମାଧିର ଫଳ—ଜ୍ଞାନ ଓ ଆନନ୍ଦର ବୃଦ୍ଧି ଏବଂ ଭଗବଦ୍ଦର୍ଶନ :**

ପ୍ରଶ୍ନ—ମୂର୍ଚ୍ଛା ବା ସୁଷୁପ୍ତିରେ 'ମୁଁ' ବୋଧଟି ଏପରି ରହିଥାଏ ବୋଲି ବୁଝିବ କିପରି ?

ଉତ୍ତର—ଫଳ ଦେଖି; ଯଥା—ଏହି ସମୟରେ ହୃଦୟର ସ୍ପନ୍ଦନ, ହାତର ନାଡ଼ି ଓ ରକ୍ତସଞ୍ଚାଳନ ପ୍ରଭୃତି ବନ୍ଦ ହୁଏ ନାହିଁ—ଏ ସମସ୍ତ ଶାରୀରିକ କ୍ରିୟା ମଧ୍ୟ 'ମୁଁ'-ବୋଧକୁ ଆଶ୍ରୟ କରି ହୁଏ; ଦ୍ୱିତୀୟ କଥା, ମୂର୍ଚ୍ଛା ଓ ସୁଷୁପ୍ତିର ବାହ୍ୟିକ ଲକ୍ଷଣ କେତେକାଂଶରେ ସମାଧିପରି ହେଲେ ମଧ୍ୟ ଏସମସ୍ତ ଅବସ୍ଥାରୁ ମନୁଷ୍ୟ ଯେତେବେଳେ ଜାଗ୍ରତ ବା ସାଧାରଣ ଅବସ୍ଥାକୁ ଆସେ, ସେତେବେଳେ ତା'ର ମନରେ ଜ୍ଞାନ ଓ ଆନନ୍ଦର ମାତ୍ରା ପୂର୍ବପରି ରହିଥାଏ, କିଛି ମାତ୍ର ବଢ଼ି ନ ଥାଏ

ବା କମି ନ ଥାଏ — କାମୁକର ଯେପରି କାମ ସେହିପରି ଥାଏ, କ୍ରୋଧୀର ଯେପରି କ୍ରୋଧ ସେପରି ଥାଏ, ଲୋଭୀର ଲୋଭ ସମାନ ଥାଏ ଇତ୍ୟାଦି । ନିର୍ବିକଳ୍ପ ସମାଧିର ଅବସ୍ଥା ଲାଭ ହେଲେ ଏସମସ୍ତ ବୃତ୍ତି ଆଉ ମୁଣ୍ଡ ଟେକିପାରେ ନାହିଁ; ଅପୂର୍ବ ଜ୍ଞାନ ଓ ଅସୀମ ଆନନ୍ଦ ଉପସ୍ଥିତ ହୁଏ ଏବଂ ଜଗତ୍‌କାରଣ ଭଗବାନଙ୍କର ସାକ୍ଷାତ୍ ଦର୍ଶନରେ ମନରେ ଆଉ ପରକାଳ ଅଛି କି ନାହିଁ, ଭଗବାନ ଅଛନ୍ତି କି ନାହାନ୍ତି, ସେସବୁର ସନ୍ଦେହ ବା ସଂଶୟ ଉଠେ ନାହିଁ ।

ପ୍ରଶ୍ନ — ଆଚ୍ଛା ବୁଝିଲି — ଠାକୁରଙ୍କର ନିର୍ବିକଳ୍ପ ସମାଧିରେ କିଛି ସମୟ 'ମୁଁ'ବୋଧ ସମ୍ପୂର୍ଣ୍ଣ ଲୟ ହେଲା — ତାହାପରେ ?

ଉତ୍ତର — ତା'ପରେ, ଏପରି 'ମୁଁ'ବୋଧର ଲୋପ ହୋଇ କାରଣରୂପିଣୀ, ଶ୍ରୀଶ୍ରୀଜଗନ୍ମାତାଙ୍କର କିଛିକ୍ଷଣ ପାଇଁ ସାକ୍ଷାତ ଦର୍ଶନରେ ଠାକୁର ତୃପ୍ତ ନ ହୋଇ ସଦା-ସର୍ବଦା ସେହି ଅବସ୍ଥାରେ ରହିବାକୁ ଚେଷ୍ଟା କରିବାକୁ ଲାଗିଲେ ।

ପ୍ରଶ୍ନ — ସେହି ଚେଷ୍ଟା ଫଳରେ ଠାକୁରଙ୍କ ମନର କିପରି ଅବସ୍ଥା ହେଲା ଏବଂ ଶରୀରରେ କିପରି ଲକ୍ଷଣସବୁ ପ୍ରକାଶ ପାଇଲା ?

## ଠାକୁରଙ୍କର ଛଅ ମାସପର୍ଯ୍ୟନ୍ତ ନିର୍ବିକଳ୍ପ ସମାଧିରେ ରହିବା ସମୟରେ ଦର୍ଶନ ଓ ଅନୁଭବ :

ଉତ୍ତର — କେତେବେଳେ 'ମୁଁ'-ବୋଧର ଲୋପ ହୋଇ ଶରୀରରେ ମୃତବ୍ୟକ୍ତିର ଲକ୍ଷଣଗୁଡ଼ିକ ପ୍ରକାଶିତ ହୋଇ, ଅନ୍ତରରେ ଜଗଦମ୍ବାଙ୍କର ପୂର୍ଣ୍ଣବାଧାଶୂନ୍ୟ ସାକ୍ଷାତ୍ ଦର୍ଶନ ହେଉଥିଲା ଏବଂ କେତେବେଳେ ଅତି ଅଳ୍ପ 'ମୁଁ'-ବୋଧ ଉଦିତ ହୋଇ ଶରୀରରେ ଜୀବନର ଲକ୍ଷଣ ଟିକେଅଧେ ପ୍ରକାଶ ପାଇବା ଓ ସତ୍ତ୍ୱଗୁଣର ଅତିଶୟ ପ୍ରାବଲ୍ୟରେ ଶୁଦ୍ଧ ସ୍ୱଚ୍ଛ ପବିତ୍ର ମନରୂପକ ବ୍ୟବଧାନ ବା ପର୍ଦ୍ଦା ମଧ୍ୟ ଦେଇ ଶ୍ରୀଶ୍ରୀଜଗଦମ୍ବାଙ୍କର କିଞ୍ଚିତ୍ ବାଧାଯୁକ୍ତ ଦର୍ଶନ ହେଉଥିଲା; — ଏହିପରି କେତେବେଳେ 'ମୁଁ'-ବୋଧର ଲୋପ ସହିତ ମନର ବୃତ୍ତିସକଳର ସମ୍ପୂର୍ଣ୍ଣ ଲୟ ଓ ଶ୍ରୀଶ୍ରୀଜଗଦମ୍ବାଙ୍କର ପୂର୍ଣ୍ଣ ଦର୍ଶନ ଓ କେତେବେଳେ 'ମୁଁ'-ବୋଧର ସାମାନ୍ୟ ଉଦୟ ଯୋଗୁଁ ମନର ସମସ୍ତ ବୃତ୍ତିର ଈଷତ୍ ପ୍ରକାଶ ଓ ସଙ୍ଗେସଙ୍ଗେ ଶ୍ରୀଶ୍ରୀଜଗଦମ୍ବାଙ୍କର ଈଷତ୍ ଆବରିତ ପୂର୍ଣ୍ଣ ଦର୍ଶନ ହେଉଥିଲା । ଏହିପରି ବାରମ୍ବାର ହେବାକୁ ଲାଗିଲା ।

ପ୍ରଶ୍ନ — କେତେଦିନ ଧରି ଠାକୁର ଏପରି ଚେଷ୍ଟା କରିଥିଲେ ?

ଉତ୍ତର — ନିରନ୍ତର ଛଅମାସ ପର୍ଯ୍ୟନ୍ତ ।

## 'ମୁଁ'–ବୋଧର ସମ୍ପୂର୍ଣ୍ଣ ଲୋପ ସତ୍ତ୍ୱେ ସେହି ସମୟରେ ତାଙ୍କର ଶରୀର ରହିଲା କିପରି ?

ପ୍ରଶ୍ନ — କ'ଣ କହୁଛନ୍ତି ? ତେବେ ତାଙ୍କର ଶରୀର ରହିଲା କିପରି ? କାରଣ, ଛଅମାସ ନ ଖାଇଲେ ମନୁଷ୍ୟର ଦେହ ତ ରହିବ ନାହିଁ ଏବଂ ତୁମେ କହୁଛ ଯେତିକି ଶରୀର ବୋଧ ଆସିଲେ ଆହାରାଦି କାର୍ଯ୍ୟ କରିବା ସମ୍ଭବ, ଠାକୁରଙ୍କର ସେହି କାଳରେ ବେଳେବେଳେ 'ମୁଁ'–ବୋଧର ଉଦୟ ହେଲେ ମଧ୍ୟ ସେତେଟା କଦାପି ଆସି ନାହିଁ ।

ଉତ୍ତର — ସତରେ ଠାକୁରଙ୍କ ଶରୀର ରହି ନ ଥାଆନ୍ତା ଏବଂ 'ଶରୀରଟି କିଛି କାଳ ରହୁ' ଏପରି ଇଚ୍ଛାର ଲେଶମାତ୍ର ସେତେବେଳେ ଠାକୁରଙ୍କର ମନରେ ନ ଥିଲା । କିନ୍ତୁ ଜଗଦମ୍ବା ଠାକୁରଙ୍କର ଶରୀର ସହାୟତାରେ ନିଜର ଅଦ୍ଭୁତ ଆଧ୍ୟାତ୍ମିକ ଶକ୍ତିର ବିକାଶ ଦେଖାଇ, ବହୁଜନ–କଲ୍ୟାଣ ସାଧନ କରିବେ ବୋଲି ଦୈବ ଇଚ୍ଛାରେ ତାଙ୍କ ଶରୀର ରକ୍ଷା ହୋଇଥିଲା ।

## ଜନୈକ ଯୋଗୀ ସାଧୁଙ୍କର ଆଗମନ ଓ ଠାକୁରଙ୍କ ଅବସ୍ଥା ବୁଝି ତାଙ୍କୁ ଜୋର୍ କରି ଖୁଆଇବା :

ପ୍ରଶ୍ନ — ସେକଥା ଠିକ୍, କିନ୍ତୁ ଏହି ଛଅମାସ କାଳ ଜଗଦମ୍ବା ନିଜେ ମୂର୍ତ୍ତି ପରିଗ୍ରହ କରି ଆସି ଠାକୁରଙ୍କୁ କ'ଣ ଜୋର୍ କରି ଖୁଆଇ ଦେଉଥିଲେ ?

ଉତ୍ତର — ଘଟଣାଟି କେତେକାଂଶରେ ଠିକ୍ ସେହିପରି; କାରଣ, ଏହି ସମୟରେ ଜଣେ ସାଧୁ କେଉଁଠାରୁ ମନକୁ ମନ ଆସି ଜୁଟିଲେ । ସେ ଠାକୁରଙ୍କର ଏପରି ମୃତକଳ୍ପ ଅବସ୍ଥା ଯେ  ଯୋଗସାଧନା ବା ଶ୍ରୀଭଗବାନଙ୍କ ସହିତ ଏକତ୍ୱାନୁଭବର ଫଳ ତାହା ସମ୍ୟକ୍ ବୁଝିପାରିଥିଲେ । ସେ ହିଁ ସେହି ଛଅମାସ କାଳ ଦକ୍ଷିଣେଶ୍ୱର କାଳୀମନ୍ଦିରରେ ରହି ସମୟ ସମୟରେ ଠାକୁରଙ୍କ ଶ୍ରୀଅଙ୍ଗରେ ଆଘାତ କରି ଟିକିଏ ଅଧେ ହୋସ୍ ଆଣିବାକୁ ଚେଷ୍ଟା କରୁଥିଲେ; ଟିକିଏ ହୋସ୍ ଆସିବା ଦେଖିଲେ ଗୁଣ୍ଡେ ଅଥବା ଦୁଇ ଗୁଣ୍ଡା ଯାହା ପାରୁଥିଲେ, ଖୁଆଇ ଦେଉଥିଲେ । ସମ୍ପୂର୍ଣ୍ଣ ଅପରିଚିତ ଜଡ଼ପ୍ରାୟ ମୃତ୍‌କଳ୍ପ ଗୋଟିଏ ଲୋକକୁ ଏପରି ବଞ୍ଚାଇ ରଖିବାରେ ସେ ସାଧୁଙ୍କର ଏତେ ଆଗ୍ରହ, ଏତେ ମଥାବ୍ୟଥା କାହିଁକି ହୋଇଥିଲା ଜଣା ନାହିଁ, ତେବେ ଏପରି ଘଟଣାବଳୀକୁ ହିଁ ଆମେ ଭଗବତ୍‌ଇଚ୍ଛାରେ ସାଧିତ ହେଉଅଛି ବୋଲି ଭାବିଥାଉ । ଅତଏବ ଶ୍ରୀଶ୍ରୀଜଗଦମ୍ବାଙ୍କର ସାକ୍ଷାତ୍ ଇଚ୍ଛା ଓ ଶକ୍ତିରେ ହିଁ ଯେ ଏପରି ଅସମ୍ଭବ ସମ୍ଭବ ହୋଇ ଠାକୁରଙ୍କର ଶରୀରଟି ରକ୍ଷା ପାଇଥିଲା, ଏହାଛଡ଼ା ଆଉ କ'ଣ କୁହାଯିବ ?

## ଶ୍ରୀଶ୍ରୀଜଗଦମ୍ବାଙ୍କର ଆଦେଶ — 'ଭାବମୁଖରେ' ରହ :

ପ୍ରଶ୍ନ — ଆଚ୍ଛା, ବୁଝିଲୁ, କିନ୍ତୁ ତା'ପରେ କ'ଣ ହେଲା ?

ଉତ୍ତର— ତାପରେ, ଶ୍ରୀଶ୍ରୀଜଗଦମ୍ବା ବା ଭଗବାନ ବା ଯେଉଁ ବିରାଟ ଚୈତନ୍ୟ ଓ ବିରାଟ ଶକ୍ତି ଜଗତ ରୂପରେ ପ୍ରକାଶିତ ଅଛନ୍ତି, ଏବଂ ଜଡ଼ ଚୈତନ୍ୟ ସମସ୍ତଙ୍କ ମଧ୍ୟରେ ଓତପ୍ରୋତ ଭାବରେ ଅନୁପ୍ରବିଷ୍ଟ ହୋଇ ଆପାତତଃ ବିଭିନ୍ନ ନାମରୂପରେ ଅବସ୍ଥାନ କରୁଛନ୍ତି ସେ ଠାକୁରଙ୍କୁ ଆଦେଶ ଦେଲେ — 'ଭାବମୁଖରେ ରହ !'

**ଏକମେବାଦ୍ୱିତୀୟମ୍-ବସ୍ତୁରେ ନିର୍ଗୁଣ ଓ ସଗୁଣ ଭାବରେ ସ୍ୱଗତ-ଭେଦ ଏବଂ ଜଗତ୍‌ବ୍ୟାପୀ ବିରାଟ 'ମୁଁ'ତ୍ୱ ହିଁ ବର୍ତ୍ତମାନ । ଏହି ବିରାଟ 'ମୁଁ'ତ୍ୱ ହିଁ ଈଶ୍ୱର ବା ଶ୍ରୀଶ୍ରୀଜଗଦମ୍ବାଙ୍କର 'ମୁଁ'ତ୍ୱ ଏବଂ ଏହା ଦ୍ୱାରା ହିଁ ଜଗତର କାର୍ଯ୍ୟ ନିଷ୍ପନ୍ନ ହୁଏ :**

ପ୍ରଶ୍ନ — ଏହାର ତାତ୍ପର୍ଯ୍ୟ କ'ଣ ?

ଉତ୍ତର — କହୁଛି ଶୁଣ, କିନ୍ତୁ ଠାକୁରଙ୍କର ଏସମୟର କଥା ବୁଝିବାକୁ ହେଲେ କଳ୍ପନା ସାହାଯ୍ୟରେ ଯେତେଦୂର ସମ୍ଭବ ତାଙ୍କର ଅବସ୍ଥାଟା ଥରେ ଭାବି ନେବା ଆବଶ୍ୟକ । ପୂର୍ବରୁ କହିଛି, ଠାକୁରଙ୍କର ସେହି ସମୟରେ କେତେବେଳେ 'ମୁଁ'-ଜ୍ଞାନର ଲୋପ ଏବଂ କେତେବେଳେ ତାହାର ଈଷତ୍ ପ୍ରକାଶ ହେଉଥିଲା । ଯେତେବେଳେ 'ମୁଁ'-ବୋଧର ଏପରି ଈଷତ୍ ପ୍ରକାଶ ହେଉଥିଲା ସେତେବେଳେ ଠାକୁରଙ୍କ ନିକଟରେ ଜଗତଟା, ଆମେ ଯେପରି ଦେଖୁ ସେପରି ଦେଖାଯାଉ ନ ଥିଲା । ଦେଖାଯାଉଥିଲା, ଯେପରି ଗୋଟିଏ ବିରାଟ ମନରେ ନାନାପ୍ରକାରର ଭାବ ତରଙ୍ଗ ଉଠୁଛି, ଭାସୁଛି, କ୍ରୀଡ଼ା କରୁଛି ଏବଂ ପୁଣି ଲୟ ହୋଇଯାଉଛି ! ଅନ୍ୟମାନଙ୍କ କଥା ଛାଡ଼, ଠାକୁରଙ୍କର ନିଜର ଶରୀର, ମନ ଓ ମୁଁତ୍ୱବୋଧ ମଧ୍ୟ ସେହି ବିରାଟ-ମନର ଏକ ତରଙ୍ଗ ପରି ବୋଧ ହେଉଥିଲା । ପାଶ୍ଚାତ୍ୟ ଜଡ଼ବାଦୀ ପଣ୍ଡିତମୂର୍ଖଙ୍କ ଦଳ ଯେଉଁ ଜଗତ୍‌ଚୈତନ୍ୟ ଓ ଶକ୍ତିକୁ ନିଜର ବୁଦ୍ଧି ଓ ବୁଦ୍ଧିପ୍ରସୂତ ଯନ୍ତ୍ରାଦି ସାହାଯ୍ୟରେ ମାପିବାକୁ ଯାଇ କହନ୍ତି 'ଏହା ଏକ ହେଲେ ମଧ୍ୟ ଜଡ଼,' ଠାକୁର ଏହି ଅବସ୍ଥାରେ ପହଞ୍ଚି ତାଙ୍କର ହିଁ ସାକ୍ଷାତ୍‌ସ୍ୱରୂପ ଦର୍ଶନ ବା ଅନୁଭବ କରିଥିଲେ — ଜୀବନ୍ତ, ଜାଗ୍ରତ, ଏକମେବାଦ୍ୱିତୀୟମ୍, ଇଚ୍ଛା ଓ କ୍ରିୟାର ହିଁ ପ୍ରସୂତି, ଅନନ୍ତ କୃପାମୟୀ ଜଗଜ୍ଜନନୀ ! ଆହୁରି ଦେଖିଲେ — ସେହି ଏକମେବାଦ୍ୱିତୀୟମ୍, ନିର୍ଗୁଣ ଓ ସଗୁଣ ଭାବରେ ନିଜକୁ ନିଜେ ବିଭକ୍ତ ରଖିବା — ଏହାକୁ ହିଁ ଶାସ୍ତ୍ରରେ ସ୍ୱଗତଭେଦ ବୋଲି କହିଛନ୍ତି — ସେଥିରେ ଏକ ଆବ୍ରହ୍ମସ୍ତମ୍ବପର୍ଯ୍ୟନ୍ତ ବ୍ୟାପୀ ବିରାଟ 'ମୁଁ ତ୍ୱ' ବିକଶିତ ରହିଅଛି ! କେବଳ ତାହା ହିଁ ନୁହେଁ, ସେହି ବିରାଟ 'ମୁଁ' ରହିବାରୁ ହିଁ ବିରାଟ ମନରେ ଅନନ୍ତ ଭାବତରଙ୍ଗ ଉଠୁଛି; ଆଉ ସେହି ଭାବତରଙ୍ଗ ହିଁ ସ୍ୱଳ୍ପାଧିକ ପରିମାଣରେ ଖଣ୍ଡ ଖଣ୍ଡ ଭାବରେ ଦେଖିବାକୁ ପାଇ, ମନୁଷ୍ୟର କ୍ଷୁଦ୍ର କ୍ଷୁଦ୍ର 'ମୁଁ'ଗୁଡ଼ିକ ବାହ୍ୟ ଜଗତ ଓ ବାହ୍ୟଜଗତର ଭିନ୍ନ ଭିନ୍ନ ପଦାର୍ଥ ବୋଲି ଧରୁଛନ୍ତି ଓ କୁହାବୋଲା ଇତ୍ୟାଦି କରୁଛନ୍ତି ! ଠାକୁରେ

ଦେଖିଲେ ବୃହତ୍ 'ମୁଁ'ର ଶକ୍ତିରେ ହିଁ ମାନବର କ୍ଷୁଦ୍ର 'ମୁଁ'ଗୁଡ଼ିକ ରହିଅଛି ଓ ନିଜ ନିଜ କାର୍ଯ୍ୟ କରୁଅଛି ଏବଂ ବୃହତ୍ 'ମୁଁ'କୁ ଦେଖିବାକୁ ଓ ଧରିବାକୁ ପାଉ ନାହାନ୍ତି ବୋଲି ହିଁ କ୍ଷୁଦ୍ର 'ମୁଁ'ଗୁଡ଼ିକ ଭ୍ରମରେ ପଡ଼ି ନିଜକୁ ସ୍ୱାଧୀନ ଇଚ୍ଛା ଓ କ୍ରିୟାଶକ୍ତିମାନ ବୋଲି ମନେ କରୁଛନ୍ତି । ଏହି ଦୃଷ୍ଟିହୀନତାକୁ ହିଁ ଶାସ୍ତ୍ର ଅବିଦ୍ୟା ଓ ଅଜ୍ଞାନ କହନ୍ତି ।

**ଏହି ବିରାଟ 'ମୁଁ'ତ୍ୱର ହିଁ ନାମ 'ଭାବମୁଖ', କାରଣ ସଂସାରର ସମସ୍ତ ପ୍ରକାରର ଭାବ, ଏହାକୁ ହିଁ ଆଶ୍ରୟ କରି ଉଦୟ ହେଉଅଛି :**

ନିର୍ଗୁଣ ଓ ସଗୁଣର ମଧ୍ୟସ୍ଥଳରେ ଏହିପରି ଯେ ବିରାଟ 'ମୁଁ'ତ୍ୱ ବିଦ୍ୟମାନ, ଏହା ହିଁ 'ଭାବମୁଖ'—କାରଣ ଏହା ରହିଥିବାରୁ ବିରାଟ ମନରେ ଅନନ୍ତ ଭାବର ସ୍ଫୁରଣ ହେଉଅଛି । ଏହି ବିରାଟ 'ମୁଁ'ତ୍ୱ ହିଁ ଜଗଜ୍ଜନନୀଙ୍କର 'ମୁଁ'ତ୍ୱ ବା ଈଶ୍ୱରଙ୍କର 'ମୁଁ'ତ୍ୱ । ଉକ୍ତ ବିରାଟ 'ମୁଁ' ତ୍ୱ ସ୍ୱରୂପ ବର୍ଣ୍ଣନା କରିବାକୁ ଯାଇ ଗୌଡ଼ୀୟ ବୈଷ୍ଣବାଚାର୍ଯ୍ୟଗଣ କହିଛନ୍ତି, ଅଚିନ୍ତ୍ୟଭେଦାଭେଦସ୍ୱରୂପ ଜ୍ୟୋତିର୍ଘନ ମୂର୍ତ୍ତି ଭଗବାନ ଶ୍ରୀକୃଷ୍ଣ ।

**ପୂର୍ଣ୍ଣ ନିର୍ବିକଳ୍ପ ଏବଂ ଈଷତ୍ ସବିକଳ୍ପ ବା 'ଭାବମୁଖ' ଅବସ୍ଥାରେ ଠାକୁରଙ୍କର ଅନୁଭବ ଓ ଦର୍ଶନ :**

ଠାକୁରଙ୍କ 'ମୁଁ'ତ୍ୱ ଜ୍ଞାନର ଯେତେବେଳେ ସମ୍ପୂର୍ଣ୍ଣ ଲୋପ ହେଉଥିଲା ସେତେବେଳେ ଏହି ବିରାଟ 'ମୁଁ'ତ୍ୱର ସୀମାପାରରେ ଅବସ୍ଥିତ ଜଗଦମ୍ବା ନିର୍ଗୁଣ ଭାବରେ ଅବସ୍ଥାନ କରୁଥିଲେ—ସେତେବେଳେ ଏହି ବିରାଟ 'ମୁଁ' ଓ ତା'ର ଅନନ୍ତ ଭାବ ତରଙ୍ଗ ଯାହାକୁ ଆମେ ଜଗତ୍ କହୁଅଛୁ, ତା'ର କିଛିମାତ୍ର ଅସ୍ତିତ୍ୱ ଅନୁଭବ ହେଉ ନ ଥିଲା । ପୁଣି ଯେତେବେଳେ ଠାକୁରଙ୍କର 'ମୁଁ' ଜ୍ଞାନର ଉନ୍ମେଷ ହେଉଥିଲା ସେତେବେଳେ ସେ, ଶ୍ରୀଶ୍ରୀଜଗଦମ୍ବାଙ୍କର ନିର୍ଗୁଣ ଭାବ ସହିତ ସଂଯୁକ୍ତ ଏହି ସଗୁଣ ବିରାଟ 'ମୁଁ' ଓ ତଦ୍‌ଅନ୍ତର୍ଗତ ଭାବତରଙ୍ଗସମୂହ ଦେଖୁଥିଲେ । ଅଥବା ନିର୍ଗୁଣ ଭାବରେ ଉଠିବା ମାତ୍ରେ ସଙ୍ଗେ ସଙ୍ଗେ ଠାକୁରଙ୍କର ଅନୁଭବର ଏହି ଏକମେବାଦ୍ୱିତୀୟମ୍ ଭିତରେ ସ୍ୱଗତଭେଦର ଅସ୍ତିତ୍ୱ ମଧ୍ୟ ଲୋପ ହେଉଥିଲା; ଏବଂ ଯେତେବେଳେ ସେହି ସଗୁଣ ବିରାଟ 'ମୁଁ'ତ୍ୱର ବୋଧ କରୁଥିଲେ, ସେତେବେଳେ ଦେଖୁଥିଲେ—ଯିଏ ବ୍ରହ୍ମ ସେ ହିଁ ଶକ୍ତି, ଯିଏ ନିର୍ଗୁଣ ସେ ହିଁ ସଗୁଣ, ଯିଏ ପୁରୁଷ ସେ ହିଁ ପ୍ରକୃତି, ଯେଉଁ ସାପ ସ୍ଥିର ଥିଲେ ସେ ଏବେ ଚାଲୁଅଛି, ଅଥବା ଯିଏ ସ୍ୱରୂପରେ ନିର୍ଗୁଣ ସେ ପୁଣି ଲୀଳାରେ ସଗୁଣ ! ଶ୍ରୀଶ୍ରୀଜଗଦମ୍ବାଙ୍କର ଏହି ନିର୍ଗୁଣ-ସଗୁଣ ଉଭୟ ଭାବରେ ଜଡ଼ିତ ସ୍ୱରୂପର ପୂର୍ଣ୍ଣଦର୍ଶନ ପାଇବା ପରେ ଠାକୁର ଆଦେଶ ପାଇଲେ 'ଭାବମୁଖରେ ରୁହ'—ଅର୍ଥାତ୍ 'ମୁଁ'ତ୍ୱର ସମ୍ପୂର୍ଣ୍ଣ ଲୋପ କରି ନିର୍ଗୁଣ ଭାବରେ ଅବସ୍ଥାନ କର ନାହିଁ; କିନ୍ତୁ ଯାହାଠାରୁ ସମସ୍ତପ୍ରକାର ବିଶ୍ୱଭାବର ଉତ୍ପତ୍ତି ହେଉଅଛି ସେହି ବିରାଟ 'ମୁଁ' ହିଁ ତୁ; ତାଙ୍କ ଇଚ୍ଛାରେ ତୁମର ଇଚ୍ଛା, ତାଙ୍କ

କାର୍ଯ୍ୟ ହିଁ ତୁମର କାର୍ଯ୍ୟ—ଏହି ଭାବ ଠିକ୍ ଠିକ୍ ସର୍ବଦା ପ୍ରତ୍ୟକ୍ଷ ଅନୁଭବ କରି ଜୀବନଯାପନ କର ଓ ଲୋକକଲ୍ୟାଣ ସାଧନ କର ।

**'ଭାବମୁଖରେ ରୁହ'—କଥାର ଅର୍ଥ :**

ଅତଏବ ଭାବମୁଖରେ ରହିବାର ଅର୍ଥ ହିଁ ହେଉଛି—ମନରେ ସର୍ବତୋଭାବରେ, ସବୁ ସମୟରେ ସବୁ ଅବସ୍ଥାରେ ଦେଖିବା, ଧାରଣା ବା ବୋଧ କରିବା ଯେ ମୁଁ ସେହି 'ବିରାଟ ମୁଁ' ବା 'ପକ୍କା ମୁଁ' । ଭାବମୁଖ ଅବସ୍ଥାରେ ପହଞ୍ଚିଲେ, ମୁଁ ଅମୁକର ସନ୍ତାନ, ଅମୁକର ପିତା, ବ୍ରାହ୍ମଣ ବା ଶୂଦ୍ର ଇତ୍ୟାଦି ସମସ୍ତ କଥା ସମ୍ପୂର୍ଣ୍ଣ ଭାବରେ ମନରୁ ନିଶ୍ଚିହ୍ନ ହୋଇଯାଏ ଏବଂ 'ମୁଁ ସେହି ବିଶ୍ୱବ୍ୟାପୀ ମୁଁ' ''ଏହି କଥାଟି ସର୍ବଦା ମନରେ ଅନୁଭବ ହୁଏ; ତେଣୁ ଠାକୁର ଆମକୁ ବାରମ୍ବାର ଶିକ୍ଷା ଦେଉଥିଲେ—''ଆଗୋ, ମୁଁ ଅମୁକର ପୁଅ, ମୁଁ ଅମୁକର ବାପା, ମୁଁ ବ୍ରାହ୍ମଣ, ମୁଁ ଶୂଦ୍ର, ମୁଁ ପଣ୍ଡିତ, ମୁଁ ଧନୀ—ଏ ସମସ୍ତ କଞ୍ଚା ମୁଁ; ଏହା ବନ୍ଧନ ନେଇଆସେ । ଏସବୁ ଛାଡ଼ି ମନେ କରିବ ମୁଁ ତାଙ୍କର (ଭଗବାନଙ୍କର) ଦାସ, ମୁଁ ତାଙ୍କର ଭକ୍ତ, ମୁଁ ତାଙ୍କର ସନ୍ତାନ, ମୁଁ ତାଙ୍କର ଅଂଶ । ଏହି ଭାବଟି ମନରେ ପକ୍କା କରି ରଖିବ ।'' ଅଥବା କହୁଥିଲେ—''ଆରେ, ଅଦ୍ୱୈତଜ୍ଞାନ କାନିରେ ବାନ୍ଧି ଯାହା ଇଚ୍ଛା ତାହା କର !''

**ସାଧକର ଆଧ୍ୟାତ୍ମିକ ଉନ୍ନତିରେ ଦ୍ୱୈତ, ବିଶିଷ୍ଟାଦ୍ୱୈତ ଓ ଅଦ୍ୱୈତ ଭାବ ଗୋଟିଏ ପରେ ଗୋଟିଏ କ୍ରମାନ୍ୱୟରେ ଆସି ଉପସ୍ଥିତ ହୁଏ :**

ପାଠକ ହୁଏତ କହିବେ, ଠାକୁର କ'ଣ ତାହେଲେ ଠିକ୍ ଠିକ୍ ଅଦ୍ୱୈତବାଦୀ ନ ଥିଲେ ? ଶ୍ରୀଶ୍ରୀଜଗଦମ୍ବାଙ୍କର ମଧ୍ୟରେ ସ୍ୱଗତଭେଦ ସ୍ୱୀକାର କରି ଠାକୁର ଯେତେବେଳେ ଜଗନ୍ମାତାଙ୍କର ନିର୍ଗୁଣ ସଗୁଣ ଦୁଇ ଭାବରେ ଅବସ୍ଥାନ ଦେଖୁଥିଲେ, ସେତେବେଳେ କହିବାକୁ ହେବ ସେ ଆଚାର୍ଯ୍ୟ ଶଙ୍କରଙ୍କ ପ୍ରତିଷ୍ଠିତ ଅଦ୍ୱୈତବାଦ, ଯେଉଁଥିରେ ଜଗତର ଅସ୍ତିତ୍ୱ ହିଁ ସ୍ୱୀକୃତ ହୋଇ ନାହିଁ, ତାହା ମାନୁ ନ ଥିଲେ ? ତା ନୁହେଁ ! ଠାକୁର ଅଦ୍ୱୈତ, ବିଶିଷ୍ଟାଦ୍ୱୈତ ଓ ଦ୍ୱୈତ ସମସ୍ତ ଭାବ ବା ମତକୁ ମାନୁଥିଲେ । ତେବେ କହୁଥିଲେ, ଏହି ତିନି ପ୍ରକାର ମତ ମାନବ ମନର ଉନ୍ନତିର ଅବସ୍ଥା ଅନୁସାରେ ଗୋଟିଏ ପରେ ଗୋଟିଏ ଆସି ଉପସ୍ଥିତ ହୁଏ । ଗୋଟିଏ ଅବସ୍ଥାରେ ଦ୍ୱୈତ ଭାବ ଆସେ—ସେତେବେଳେ ଅନ୍ୟ ଦୁଇଟି ଭାବ ହିଁ ମିଥ୍ୟାବୋଲି ବୋଧ ହୁଏ । ଧର୍ମୋନ୍ନତିର ଉଚ୍ଚତର ସୋପାନରେ ଉଠି ଅନ୍ୟ ଅବସ୍ଥାରେ ବିଶିଷ୍ଟାଦ୍ୱୈତବାଦ ଆସେ—ସେତେବେଳେ ନିତ୍ୟ ନିର୍ଗୁଣ ବସ୍ତୁ ଲୀଳାରେ ସର୍ବଦା ସଗୁଣ ହୋଇ ରହିଅଛନ୍ତି, ଏହି ପ୍ରକାର ବୋଧ ହୁଏ । ସେତେବେଳେ ଦ୍ୱୈତବାଦ ତ ମିଥ୍ୟାବୋଧ ହୁଏ ହିଁ, ପୁଣି ଅଦ୍ୱୈତବାଦରେ ଯେଉଁ ସତ୍ୟ ନିହିତ ଅଛି ତାହା ମଧ୍ୟ ମନରେ ଉପଲବ୍ଧି ହୁଏ ନାହିଁ । ପୁଣି

ମାନବ ଯେତେବେଳେ ଧର୍ମୋନ୍ନତିର ଶେଷ ସୀମାରେ ସାଧନଦ୍ୱାରା ପହଞ୍ଚେ, ସେତେବେଳେ ଶ୍ରୀଶ୍ରୀଜଗଦମ୍ବାଙ୍କର ନିର୍ଗୁଣରୂପର ହିଁ କେବଳ ଉପଲବ୍ଧି କରି ତାଙ୍କଠାରେ ଅଦ୍ୱୈତଭାବରେ ଅବସ୍ଥାନ କରେ । ସେତେବେଳେ ମୁଁ-ତୁ, ଜୀବ-ଜଗତ୍, ଭକ୍ତି-ମୁକ୍ତି, ପାପ-ପୁଣ୍ୟ, ଧର୍ମାଧର୍ମ — ସମସ୍ତ ଏକାକାର ହୋଇଯାଏ !

**ଏହି ବିଷୟରେ ମହାଜ୍ଞାନୀ ହନୁମାନଙ୍କର କଥା :**

ଏହି ପ୍ରସଙ୍ଗରେ ଠାକୁର ଦାସ୍ୟଭାବର ଉଜ୍ଜ୍ୱଳ ନିଦର୍ଶନ ମହାଜ୍ଞାନୀ ହନୁମାନଙ୍କର ଏସମ୍ବନ୍ଧୀୟ ଉପଲବ୍ଧିକୁ ଦୃଷ୍ଟାନ୍ତସ୍ୱରୂପ କହୁଥିଲେ । କହୁଥିଲେ, ''ଶ୍ରୀରାମଚନ୍ଦ୍ର କୌଣସି ଏକ ସମୟରେ ନିଜର ଦାସ ହନୁମାନଙ୍କୁ ପଚାରିଥିଲେ, 'ତୁମେ ମୋତେ କେଉଁ ଭାବରେ ଦେଖ, ବା ଭାବନା ଓ ପୂଜାକର ?' ହନୁମାନ ତାହାର ଉତ୍ତରରେ କହିଥିଲେ, 'ହେ ରାମ, ଯେତେବେଳେ ମୁଁ ଦେହ ବୁଦ୍ଧିରେ ଥାଏ ଅଥବା ମୁଁ ଏହି ଦେହ ଏହିପରି ଅନୁଭବ କରେ, ସେତେବେଳେ ଦେଖେ — ତୁମେ ପ୍ରଭୁ, ମୁଁ ଦାସ; ତୁମେ ସେବ୍ୟ, ମୁଁ ସେବକ; ତୁମେ ପୂଜ୍ୟ, ମୁଁ ପୂଜକ; ଯେତେବେଳେ ମୁଁ ମନ, ବୁଦ୍ଧି ଓ ଆତ୍ମାବିଶିଷ୍ଟ ଜୀବାତ୍ମା ବୋଲି ନିଜକୁ ବୋଧ କରିଥାଏ, ସେତେବେଳେ ଦେଖେ — ତୁମେ ପୂର୍ଣ୍ଣ, ମୁଁ ଅଂଶ; ପୁଣି ଯେତେବେଳେ ମୁଁ ଉପାଧିରହିତ ଶୁଦ୍ଧ ଆତ୍ମା, ସମାଧିରେ ଏହି ଭାବ ନେଇ ରହେ, ସେତେବେଳେ ଦେଖେ — ତୁମେ ଯାହା, ମୁଁ ମଧ୍ୟ ତାହା — ତୁମେ ଓ ମୁଁ ଏକ, କୌଣସି ଭେଦ ନାହିଁ ।''

**ଅଦ୍ୱୈତଭାବ ଚିନ୍ତା, କଳ୍ପନା ଓ ବାକ୍ୟର ଅତୀତ; ଯେପର୍ଯ୍ୟନ୍ତ କଥାବାର୍ତ୍ତା ଅଛି ସେପର୍ଯ୍ୟନ୍ତ ନିତ୍ୟ ଓ ଲୀଳା, ଈଶ୍ୱରଙ୍କର ଉଭୟ ଭାବ ନେଇ ରହିବାକୁ ହେବ :**

ଠାକୁର କହୁଥିଲେ, ''ଯିଏ ଠିକ୍ ଠିକ୍ ଅଦ୍ୱୈତବାଦୀ ସେ ଚୁପ୍ ହୋଇଯାଏ ! ଅଦ୍ୱୈତବାଦ କହିବାର ବିଷୟ ନୁହେଁ । କହିବାକୁ ଗଲେ ହିଁ ଦୁଇଟି ଆସିଯାଏ, ଭାବନା-କଳ୍ପନା ଯେପର୍ଯ୍ୟନ୍ତ ସେପର୍ଯ୍ୟନ୍ତ ଭିତରେ ମଧ୍ୟ ଦୁଇଟି ରହିବ — ସେପର୍ଯ୍ୟନ୍ତ ଅଦ୍ୱୈତଜ୍ଞାନ ଠିକ୍ ଠିକ୍ ହୋଇ ନାହିଁ । ଜଗତରେ ଏକମାତ୍ର ବ୍ରହ୍ମବସ୍ତୁ ବା ଶ୍ରୀଶ୍ରୀଜଗଦମ୍ବାଙ୍କର ନିର୍ଗୁଣ ଭାବଟି ଉଚ୍ଛିଷ୍ଟ ହୋଇ ନାହିଁ ।'' ଅର୍ଥାତ୍ ମନୁଷ୍ୟର ମୁଖନିଃସୃତ ହୋଇ ନାହିଁ, ଅଥବା ମନୁଷ୍ୟ ଏହାକୁ ଭାଷା ଦ୍ୱାରା ପ୍ରକାଶ କରିପାରି ନାହିଁ । କାରଣ ଏଭାବ ମନୁଷ୍ୟର ମନ ଓ ବୁଦ୍ଧିର ଅତୀତ; ବାକ୍ୟରେ ତାହା କିପରି କହି ହେବ କିମ୍ବା ବୁଝାଇ ହେବ ? ଅଦ୍ୱୈତଭାବ ସମ୍ବନ୍ଧରେ ଠାକୁର ସେଥିପାଇଁ ବାରମ୍ବାର କହୁଥିଲେ, ''ଆରେ, ତାହା ଶେଷକଥା ରେ ।'' ଅତଏବ ଦେଖାଯାଉଛି ଠାକୁର କହୁଥିଲେ, ''ଯେତେକ୍ଷଣ 'ମୁଁ-ତୁ' 'କହିବା-ବୋଲିବା' ପ୍ରଭୃତି ରହିଅଛି ସେତେକ୍ଷଣ ନିର୍ଗୁଣ-ସଗୁଣ , ନିତ୍ୟ ଓ ଲୀଳା — ଉଭୟ ଭାବ

ହିଁ କାର୍ଯ୍ୟରେ ମାନିବାକୁ ହେବ । ଅଦ୍ୱୈତଭାବ ମୁହଁରେ କହିଲେ ମଧ୍ୟ କାର୍ଯ୍ୟରେ, ବ୍ୟବହାରରେ, ତୁମକୁ ବିଶିଷ୍ଟାଦ୍ୱୈତବାଦୀ ରହିବାକୁ ହେବ ।'' ଏସମ୍ବନ୍ଧରେ ଠାକୁର ଆହୁରି ଅନେକ ଦୃଷ୍ଟାନ୍ତ ଦେଉଥିଲେ । କହୁଥିଲେ—

**ଏ ବିଷୟରେ ଠାକୁରଙ୍କର କେତୋଟି ଦୃଷ୍ଟାନ୍ତ । ଯଥା—ଗୀତର ଅନୁଲୋମ–ବିଲୋମ; ବେଲ, କଦଳୀ ମଞ୍ଜା ଓ ପିଆଜ ଚୋପା :**

''ଯେପରି ଗୀତର ଅନୁଲୋମ-ବିଲୋମ—ସା ରେ ଗା ମା ପା ଧା ନି ସା କରି ସୁର ଉଠାଇ ଦେଇ ସା ନି ଧା ପା ମା ଗା ରେ ସା—କରି ସୁର ଓହ୍ଲାଇ ଥାଆନ୍ତି । ସମାଧିରେ ଅଦ୍ୱୈତ-ବୋଧଟି ଅନୁଭବ କରି ପୁଣି ଅବରୋହଣ କରି 'ମୁଁ'-ବୋଧଟିକୁ ନେଇ ରହିବାକୁ ହୁଏ । ଯେପରି ବେଲଟିଏ ହାତରେ ଧରି ବିଚାର କରିବା ଯେ, ଖୋଳ, ମଞ୍ଜି, ଶସ—ଏହାର କେଉଁଟା ବେଲ । ପ୍ରଥମେ, ଖୋଳଟାକୁ ଅସାର ବୋଲି ପକାଇ ଦେଲି, ମଞ୍ଜିଗୁଡ଼ିକ ମଧ୍ୟ ଏପରି କଲି; କିନ୍ତୁ ଶସକୁ ଅଲଗା କରି କହିଲି, ଏଇଟା ବେଲର ସାର—ଏଇଟି ହିଁ ଠିକ୍ ବେଲ । ତାପରେ ପୁଣି ବିଚାର ଆସିଲା ଯେ ଯାହାର ଶସ ତାହାର ହିଁ ଖୋଳ ଓ ମଞ୍ଜି—ଖୋଳ, ମଞ୍ଜି ଏବଂ ଶସ ସମସ୍ତ ଏକତ୍ର କରି ହିଁ ବେଲ; ସେହିପରି ନିତ୍ୟ ଈଶ୍ୱରଙ୍କୁ ପ୍ରତ୍ୟକ୍ଷ କରି ତାପରେ ବିଚାର—ଯିଏ ନିତ୍ୟ ସେ ହିଁ ଲୀଳାର ଜଗତ !

''ଯେପରି ମଞ୍ଜାର ଖୋଳ ଛଡ଼ାଇ ଛଡ଼ାଇ ମଝିରେ ପହଞ୍ଚିଲି ଆଉ ସେଇଟାକୁ ସାର ଭାବିଲି ! ତାପରେ ବିଚାର ଆସିଲା—ଖୋଳର ହିଁ ମଞ୍ଜା, ମଞ୍ଜାର ହିଁ ଖୋଳ—ଦୁଇଟି ମିଶି ମଞ୍ଜା ।

''ଯେପରି ପିଆଜର ଖୋଳପା ଛଡ଼ାଉ ଛଡ଼ାଉ ଶେଷରେ କିଛି ରହେ ନାହିଁ, ସେହିପରି ମୁଁ କିଏ ବିଚାରରେ ପ୍ରବୃତ୍ତ ହୋଇ 'ମୁଁ ଶରୀର ନୁହେଁ, ମନ ନୁହେଁ, ବୁଦ୍ଧି ନୁହେଁ' ଏହିପରି କ୍ରମଶଃ ଏଗୁଡ଼ିକ ପୃଥକ୍ କରିଦେବା ପରେ ଏହି ଅନୁଭବ ହୁଏ ଯେ 'ମୁଁ' ବୋଲି କିଛି ଗୋଟେ ଅଲଗା ଜିନିଷ ନାହିଁ—ନିଃସନ୍ଦେହ ସବୁକିଛି ସେ (ଈଶ୍ୱର) ହିଁ ଅଛନ୍ତି । ଯେପରି ଗଙ୍ଗାର କିଛି ଜଳକୁ ବେଢାଦେଇ ଆବଦ୍ଧ କରି ଘେରି—ଏଇଟା 'ମୋର ଗଙ୍ଗା' ବୋଲି କହିବା !''

ଏ ସମସ୍ତ କଥା ବର୍ତ୍ତମାନ ଥାଉ, ଆମେ ପୂର୍ବ ବିଷୟର ଅନୁସରଣ କରିବା ।

**ଭାବମୁଖ, ନିର୍ଗୁଣ ଅବସ୍ଥାରୁ କେତେପାଦ ନିମ୍ନରେ ଅବସ୍ଥିତ ଥିଲେ ମଧ୍ୟ ସେହି ଅବସ୍ଥାରେ ଅଦ୍ୱୈତ ବସ୍ତୁର ବିଶେଷ ଅନୁଭବ ଥାଏ । ସେହି ଅବସ୍ଥାରେ କିପରି ଅନୁଭବ ହୁଏ—ଠାକୁରଙ୍କର ଦୃଷ୍ଟାନ୍ତ :**

ଭାବମୁଖରେ ରହି ଯେତେବେଳେ ବିଶ୍ୱବ୍ୟାପୀ ମୁଁତ୍ୱର ସଠିକ୍ ଅନୁଭବ ହୋଇଯାଏ ସେତେବେଳେ 'ଏକ'ରୁ 'ବହୁ'ର ବିକାଶ ଦେଖି ଠାକୁର

ଶ୍ରୀଶ୍ରୀଜଗଦମ୍ବାଙ୍କର ନିର୍ଗୁଣଭାବଠାରୁ କେତେ ପାଦ ତଳେ ବିଦ୍ୟା-ମାୟାର ରାଜ୍ୟରେ ଯେ ବିଚରଣ କରୁଥିଲେ, ଏକଥା ଆଉ କହିବାକୁ ହେବ ନାହିଁ । କିନ୍ତୁ ସେହି ରାଜ୍ୟରେ ମଧ୍ୟ 'ଏକ'ର ବିକାଶ ଓ ଅନୁଭବ ଏତେ ଅଧିକ ଯେ, ଏହି ବ୍ରହ୍ମାଣ୍ଡରେ ଯିଏ ଯାହା କରୁଛି, ଭାବୁଛି, କହୁଛି, ସେସମସ୍ତ ମୁଁ କରୁଛି, ଭାବୁଛି, କହୁଛି, ବୋଲି ଠାକୁରଙ୍କର ଠିକ୍ ଠିକ୍ ମନେ ହେଉଥିଲା ! ଏହି ଅବସ୍ଥାର ଅଳ୍ପ ବା ଆଭାସ ମାତ୍ରର ଅନୁଭବ ମଧ୍ୟ ଅତି ଅଦ୍ଭୁତ ! ଠାକୁର କହିଥିଲେ, ଦିନେ ଘାସ ଉପର ଦେଇ ଜଣେ ଚାଲିଯିବାରୁ ତାଙ୍କର ଛାତିରେ ବିଷମ ଆଘାତ ଲାଗିଲା !—ଯେପରି ତାଙ୍କର ଛାତି ଉପରେ ଚଢ଼ି ସେ ଚାଲୁଅଛି ! ବାସ୍ତବିକ୍ ସେତେବେଳେ ତାଙ୍କର ଛାତିରେ ରକ୍ତ ଜମି କଳାଦାଗ ହେବାରୁ ସେ ଯନ୍ତ୍ରଣାରେ ଛଟପଟ କରିଥିଲେ ।

**ବିଦ୍ୟା-ମାୟା ରାଜ୍ୟରେ ଆହୁରି ନିମ୍ନସ୍ତରକୁ ଅବତରଣ କଲେ ହିଁ ମୁଁ ଈଶ୍ୱରଙ୍କର ଦାସ, ଭକ୍ତ, ସନ୍ତାନ ବା ଅଂଶ ବୋଲି ଅନୁଭବ ହୁଏ :**

ଏହି ଅବସ୍ଥାରୁ ମାୟାର ରାଜ୍ୟରେ ଆହୁରି ନିମ୍ନସ୍ତରକୁ ଓହ୍ଲାଇ ଆସି ଯେତେବେଳେ ରହୁଥିଲେ, ସେତେବେଳେ ଠାକୁରଙ୍କର ମନରେ 'ମୁଁ ଶ୍ରୀଶ୍ରୀଜଗଦମ୍ବାଙ୍କର ଦାସ, ଭକ୍ତ, ସନ୍ତାନ କିମ୍ବା ଅଂଶ'—ଏହି ଭାବଟି ସର୍ବଦା ଜାଗରୂକ ରହୁଥିଲା । ଏହାଠାରୁ ଆହୁରି ନିମ୍ନରେ ଅବିଦ୍ୟା ମାୟାର ଅର୍ଥାତ୍ କାମ, କ୍ରୋଧ, ଲୋଭ, ମୋହ ଇତ୍ୟାଦିର ରାଜତ୍ୱ । ସେରାଜ୍ୟକୁ ଠାକୁର ଯତ୍ନପୂର୍ବକ ନିରନ୍ତର ଅଭ୍ୟାସ ଦ୍ୱାରା ତ୍ୟାଗ କରିଥିବାରୁ ତାଙ୍କର ମନ ଆଉ ସେ ଆଡ଼କୁ କେବେ ଓହ୍ଲାଉ ନ ଥିଲା, ବା ଶ୍ରୀଶ୍ରୀଜଗଦମ୍ବା ତାଙ୍କୁ ସେଠାକୁ ଓହ୍ଲାଇବାକୁ ଦେଉ ନ ଥିଲେ । ଠାକୁର ଯେପରି କହୁଥିଲେ, ''ଯିଏ ମା'ଙ୍କ ଉପରେ ଏକାନ୍ତ ନିର୍ଭର କରିଛି, ମା' ତା'ର ପାଦ ବେତାଳରେ ପଡ଼ିବାକୁ ଦିଅନ୍ତି ନାହିଁ ।''

**ଠାକୁରଙ୍କର କଞ୍ଚା 'ମୁଁ'ର ସମ୍ପୂର୍ଣ୍ଣ ବିନାଶ ହୋଇ ପକ୍କା 'ମୁଁ' ରେ ଅନେକ ସମୟ ଅବସ୍ଥିତି । ଏହି ଅବସ୍ଥାରେ ତାଙ୍କର ଗୁରୁଭାବ ପ୍ରକାଶ ପାଉଥିଲା । ଅତଏବ ଦୀନଭାବ ଓ ଗୁରୁଭାବ ଅବସ୍ଥାନୁସାରେ ଗୋଟିଏ ବ୍ୟକ୍ତିଙ୍କଠାରେ ଆସିବା ଅସମ୍ଭବ ନୁହେଁ :**

ଅତଏବ ବୁଝାଯାଉଛି, ନିର୍ବିକଳ୍ପ-ସମାଧି ଲାଭ ପରେ ଠାକୁରଙ୍କର ଭିତରର ଛୋଟ 'ମୁଁ' ବା କଞ୍ଚା 'ମୁଁ'ର ସମ୍ପୂର୍ଣ୍ଣ ଲୋପ ହୋଇଥିଲା । ଆଉ ଯେଉଁ 'ମୁଁ' ଟିକକ ଥିଲା ସେହିଟି ନିଜକୁ ବଡ଼ 'ମୁଁ' ବା 'ପକ୍କା 'ମୁଁ'ରେ ସ୍ଥାୟୀ ଭାବରେ ଚିର ସଂଯୁକ୍ତ ଦେଖୁଥିଲା—କେତେବେଳେ ନିଜକୁ ସେହି ବିଶ୍ୱବ୍ୟାପୀ 'ମୁଁ'ର ଅଙ୍ଗ ବା ଅଂଶ ଭାବରେ ଦେଖୁଥିଲା, ପୁନଃଶ୍ଚ ତାହାର ନିକଟ, ନିକଟତର, ନିକଟତମ ଦେଶରେ

ପହଞ୍ଚି ସେହି ବିଶ୍ୱବ୍ୟାପୀ 'ମୁଁ'ରେ ଲୀନ ହୋଇଯାଉଥିଲା । ଏହିପରି ଭାବରେ ହିଁ ଠାକୁରଙ୍କର ସକଳ ମନର ସମସ୍ତଭାବ ଆୟତ୍ତୀଭୂତ ହେଉଥିଲା । କାରଣ ଏହି ବୃହତ୍ 'ମୁଁ'କୁ ଆଶ୍ରୟ କରି ଜଗତର ସମସ୍ତ ମନର ଯେତେପ୍ରକାର ଭାବ ଉଠୁଅଛି । ଠାକୁର ଏହି ବିଶ୍ୱବ୍ୟାପୀ 'ମୁଁ'କୁ ଆଶ୍ରୟ କରି ସର୍ବଦା ରହିପାରୁଥିଲେ ବୋଲି ହିଁ ବିଶ୍ୱମନରେ ଯେତେ ଭାବତରଙ୍ଗ ଉଠୁଅଛି, ସେସମସ୍ତ ଧରିବାକୁ ଓ ବୁଝିବାକୁ ସକ୍ଷମ ହେଉଥିଲେ । ଏପରି ଉଚ୍ଚାବସ୍ଥାରେ 'ମୁଁ ଭଗବାନଙ୍କର ଅଂଶ', ବୋଲି ଠାକୁରଙ୍କର ଭାବ ମଧ୍ୟ କ୍ରମଶଃ ଲୀନ ହୋଇ ଯାଉଥିଲା, ଏବଂ 'ବିଶ୍ୱବ୍ୟାପୀ ମୁଁ' ବା ଶ୍ରୀଶ୍ରୀ ଜଗନ୍ମାତାଙ୍କର 'ମୁଁ'ତ୍ୱ ହିଁ ଠାକୁରଙ୍କ ମଧ୍ୟ ଦେଇ ପ୍ରକାଶିତ ହୋଇ ନିଗ୍ରହାନୁଗ୍ରହ-ସମର୍ଥ ଗୁରୁରୂପରେ ପ୍ରତିଭାତ ହେଉଥିଲା ! ବାସ୍ତବରେ ଠାକୁରଙ୍କୁ ଦେଖିଲେ ସେତେବେଳେ 'ଦୀନରୁ ଦୀନ' ବୋଲି ବୋଧ ହେଉ ନ ଥିଲା । ସେତେବେଳେ ଠାକୁରଙ୍କର ଚାଲିଚଳନ, ଅନ୍ୟମାନଙ୍କ ସହିତ ବ୍ୟବହାର ପ୍ରଭୃତି ସମସ୍ତ କ୍ରିୟାକଳାପ ଅନ୍ୟ ଆକାର ଧାରଣ କରୁଥିଲା । ସେତେବେଳେ କଳ୍ପତରୁସମ ହୋଇ ସେ ଭକ୍ତଙ୍କୁ ପଚାରୁଥିଲେ, "ତୁ କ'ଣ ଚାହୁଁଛୁ ?"— ସତେ ଯେପରି ଭକ୍ତଙ୍କର ଯାହା ଆକାଙ୍କ୍ଷା ତତ୍କ୍ଷଣାତ୍ ଅମାନୁଷୀ ଶକ୍ତିବଳରେ ପୂରଣ କରିବାକୁ ତତ୍ପର ଅଛନ୍ତି ! ଦକ୍ଷିଣେଶ୍ୱରରେ ବିଶେଷ ବିଶେଷ ଭକ୍ତମାନଙ୍କୁ କୃପା କରିବା ନିମିତ୍ତ ଏହିପରି ଭାବାପନ୍ନ ହେଉଥିବାର ଠାକୁରଙ୍କୁ ଆମେ ନିତ୍ୟ ଦେଖିଅଛୁ; ତାସହିତ ଦେଖିଛୁ, ୧୮୮୬ ଖ୍ରୀଷ୍ଟାବ୍ଦରେ ଜାନୁୟାରୀ ୧ତାରିଖରେ ଠାକୁରଙ୍କ କୃପା ବିତରଣ । ସେଦିନ ଠାକୁରେ ଏହି ପ୍ରକାର ଭାବାପନ୍ନ ହୋଇ ସେସମୟରେ ଉପସ୍ଥିତ ଭକ୍ତମାନଙ୍କୁ ସ୍ପର୍ଶ କରି ତାଙ୍କର ଅଭ୍ୟନ୍ତରର ଧର୍ମଭାବ ବା ଧର୍ମଶକ୍ତି ସଞ୍ଚାରିତ ବା ସୁପ୍ତ ଧର୍ମଭାବକୁ ଜାଗ୍ରତ କରି ଦେଇଥିଲେ ! ତାହା ଏକ ଅପୂର୍ବ କଥା—ଏଠାରେ ଉଲ୍ଲେଖ କଲେ ମନ୍ଦ ହେବ ନାହିଁ ।

### ଗୁରୁଭାବରେ ଠାକୁରଙ୍କର ଇଚ୍ଛା ଓ ସ୍ପର୍ଶମାତ୍ରେ ଅନ୍ୟ ବ୍ୟକ୍ତିଙ୍କଠାରେ ଧର୍ମଶକ୍ତି ଜାଗ୍ରତ କରିଦେବାର ଦୃଷ୍ଟାନ୍ତ—୧୮୮୬ ଖ୍ରୀଷ୍ଟାବ୍ଦ ଜାନୁୟାରୀ ୧ ତାରିଖର ଘଟଣା :

୧୮୮୬ ମସିହାର ଜାନୁୟାରୀ ୧ତାରିଖ, ପୌଷ ମାସ । ଦୁଇସପ୍ତାହରୁ କିଛି ଅଧିକ ହେବ ଭକ୍ତମାନେ ଶ୍ରୀଯୁକ୍ତ ମହେନ୍ଦ୍ରଲାଲ ସରକାର ଡାକ୍ତର ମହାଶୟଙ୍କର ପରାମର୍ଶ ଅନୁସାରେ ଠାକୁରଙ୍କୁ କଲିକତାର ଉତ୍ତର କାଶୀପୁରରେ ରାଣୀ କାତ୍ୟାୟନୀଙ୍କର ଜାମାତା ଗୋପାଳବାବୁଙ୍କର ବଗିଚା ଘରେ ଆଣି ରଖିଥିଲେ । ଡାକ୍ତର କହିଥିଲେ କଲିକତାର ଜଳବାୟୁ ଅପେକ୍ଷା ବଗିଚାର ବାୟୁ ନିର୍ମଳ ଏବଂ ଯେତେଦୂର ସମ୍ଭବ ନିର୍ମଳ ବାୟୁ ପ୍ରବାହିତ ସ୍ଥାନରେ ରହିଲେ, ଠାକୁରଙ୍କର ଗଳାରୋଗର ଉପଶମ ହୋଇପାରେ । ବଗିଚାଗୃହକୁ ଆସିବାର କେତେଦିନ ପରେ ହିଁ ଡାକ୍ତର ରାଜେନ୍ଦ୍ରଲାଲ ଦତ୍ତ ଠାକୁରଙ୍କୁ ଦେଖିବାକୁ ଆସିଲେ ଏବଂ

ଲାଇକୋପୋଡିୟମ୍ (୨୦୦) ଔଷଧ ପ୍ରୟୋଗ କଲେ । ଏଥିରେ କଣ୍ଠରୋଗର କିଛିଟା ଉପକାର ମଧ୍ୟ ହେଲା । ଠାକୁର କିନ୍ତୁ ଏଠାକୁ ଆସିବା ପରେ ଦୋ'ତାଲାରୁ ତଳକୁ ଦିନେ ମଧ୍ୟ ଓହ୍ଲାଇ ନ ଥିଲେ ବା ବଗିଚାରେ ବୁଲିବାକୁ ଯାଇ ନ ଥିଲେ । ସେଦିନ ଶରୀରଟା ଅନେକ ଭଲ ଥିବାରୁ ଅପରାହ୍ଣରେ ବଗିଚାରେ ବୁଲିବାକୁ ସେ ଇଚ୍ଛା ପ୍ରକାଶ କଲେ । ଫଳରେ ଭକ୍ତମାନେ ବିଶେଷ ଆନନ୍ଦିତ ହେଲେ ।

ସ୍ୱାମୀ ବିବେକାନନ୍ଦଙ୍କର ସେତେବେଳେ ତୀବ୍ର ବୈରାଗ୍ୟ—ସାଂସାରିକ ଉନ୍ନତିକାମନାସମୂହ ତ୍ୟାଗ କରି ସେ ଠାକୁରଙ୍କ ନିକଟରେ ବାସ କରୁଥିଲେ ଏବଂ ତାଙ୍କଦ୍ୱାରା ଉପଦିଷ୍ଟ ହୋଇ ଶ୍ରୀଭଗବାନଙ୍କର ଦର୍ଶନ ନିମିତ୍ତ ନାନା ପ୍ରକାର ସାଧନ କରୁଥିଲେ । ସାରା ରାତି ସେ ବୃକ୍ଷ ତଳେ ଧୁନି ବା ଅଗ୍ନି ଜାଳି ଧ୍ୟାନ, ଜପ, ଭଜନ, ପାଠ ଇତ୍ୟାଦିରେ ନିମଗ୍ନ ରହୁଥିଲେ ! ଅନ୍ୟ କେତେଜଣ ଭକ୍ତ ମଧ୍ୟ, ଯଥା—ଛୋଟ ଗୋପାଳ, କାଳୀ (ଅଭେଦାନନ୍ଦ) ଇତ୍ୟାଦି, ଆବଶ୍ୟକୀୟ ଦ୍ରବ୍ୟାଦି ଆଣି ତାଙ୍କୁ ଏଥିରେ ସାହାଯ୍ୟ କରୁଥିଲେ ଏବଂ ନିଜେ ମଧ୍ୟ ଯଥାସାଧ୍ୟ ଧ୍ୟାନ-ଭଜନ କରୁଥିଲେ । ଗୃହୀ ଭକ୍ତମାନେ ବିଷୟ-କର୍ମାଦିରେ ନିଯୁକ୍ତ ରହିବାରୁ ସର୍ବଦା ଠାକୁରଙ୍କ ନିକଟରେ ରହିପାରୁ ନ ଥିଲେ; ସୁବିଧା ପାଇଲେ ହିଁ ଯିବାଆସିବା କରୁଥିଲେ ଏବଂ ଯେଉଁମାନେ ଠାକୁରଙ୍କ ସେବାରେ ନିରନ୍ତର ବ୍ୟାପୃତ, ସେମାନଙ୍କ ଆହାରାଦି ସମସ୍ତ ବିଷୟର ବନ୍ଦୋବସ୍ତ କରୁଥିଲେ ଓ ସୁବିଧାହେଲେ ବେଳେବେଳେ ଦିନେ ବା ଅଧଦିନ ରହିଯାଉଥିଲେ । ସେଦିନ ଇଂରାଜୀ ବର୍ଷର ପ୍ରଥମ ଦିନ ବୋଲି ଛୁଟି ଥିବାରୁ ଅନେକେ ହିଁ କାଶୀପୁର ବଗିଚାରେ ଉପସ୍ଥିତ ହୋଇଥିଲେ ।

ଅପରାହ୍ଣ ସମୟ ତିନିଟା ବାଜି ଯାଇଥିଲା । ଠାକୁର ଲାଲଧଡ଼ି ଧୋତି, ଗୋଟିଏ ଫତୁଆ, ଲାଲ୍ ଧଡ଼ିଥିବା ଗୋଟିଏ ମୋଟା ଚାଦର, କାନ ଘୋଡ଼ାଉ ଥିବା ଟୋପି ଓ ଚପଲ ପିନ୍ଧି ସ୍ୱାମୀ ଅଭୂତାନନ୍ଦଙ୍କ ସହିତ ଉପର ମହଲାରୁ ଧୀରେ ଧୀରେ ତଳକୁ ଓହ୍ଲାଇଲେ ଏବଂ ତଳମହଲାର ହଲ ଘରଟିକୁ ଦେଖି ପଶ୍ଚିମ ଦରଜା ଦେଇ ବଗିଚା ଆଡ଼କୁ ବୁଲିବାକୁ ବାହାରିଲେ । ଗୃହୀ ଭକ୍ତମାନଙ୍କ ମଧ୍ୟରୁ କେହି କେହି ଠାକୁରଙ୍କର ବୁଲିଯିବା ଦେଖି ଅତି ଆନନ୍ଦରେ ତାଙ୍କର ପଛେ ପଛେ ଯିବାକୁ ଲାଗିଲେ । ଶ୍ରୀଯୁକ୍ତ ନରେନ୍ଦ୍ରପ୍ରମୁଖ(ସ୍ୱାମୀ ବିବେକାନନ୍ଦ) ବାଳକ ବା ଯୁବକ ଭକ୍ତମାନେ ସମସ୍ତେ ରାତ୍ରି ଜାଗରଣରେ କ୍ଳାନ୍ତ ହୋଇ ହଲଘର ପାଖରେ ଯେଉଁ ଛୋଟ କୋଠରୀ ଥିଲା ତା ମଧ୍ୟରେ ଶୋଇଥିଲେ । ଶ୍ରୀଯୁକ୍ତ ଲାଟୁ (ସ୍ୱାମୀ ଅଦ୍ଭୁତାନନ୍ଦ) ଭକ୍ତମାନଙ୍କର ଏପରି ଯିବା ଦେଖି ଠାକୁରଙ୍କ ସହିତ ନିଜେ ଆଉ ଅଧିକ ଦୂର ଯିବା ଅନାବଶ୍ୟକ ବୁଝି ହଲ୍ଘରର ସମ୍ମୁଖରେ ଥିବା କ୍ଷୁଦ୍ର ପୁଷ୍କରିଣୀର ଦକ୍ଷିଣ ପାଖ ପର୍ଯ୍ୟନ୍ତ ଆସି ଫେରିଗଲେ ଏବଂ ଅନ୍ୟ ଜଣେ ଯୁବକ ଭକ୍ତଙ୍କୁ ଡାକି

ନେଇ ଦୋତାଲାରେ ଠାକୁରଙ୍କ ଘରଟି ଝଡ଼ାଝଡ଼ି କରି ପରିଷ୍କାର କରିବାରେ ଓ ଠାକୁରଙ୍କ ବିଛଣା ପ୍ରଭୃତି ଖରାରେ ଦେବା କାର୍ଯ୍ୟରେ ବ୍ୟସ୍ତ ରହିଲେ ।

ଗୃହୀ ଭକ୍ତମାନଙ୍କ ମଧ୍ୟରେ ଶ୍ରୀଯୁକ୍ତ ଗିରିଶଙ୍କର ସେତେବେଳେ ପ୍ରବଳ ଅନୁରାଗ ଥିଲା । ଠାକୁର କୌଣସି ଗୋଟିଏ ସମୟରେ ତାଙ୍କର ଅଦ୍ଭୁତ ବିଶ୍ୱାସର ଭୂୟସୀ ପ୍ରଶଂସା କରି ଅନ୍ୟ ଭକ୍ତମାନଙ୍କୁ କହିଥିଲେ, ''ଗିରିଶର ପାଞ୍ଚ ସୁଉକି ପାଞ୍ଚ ଅଣାର ବିଶ୍ୱାସ ! ଏହାପରେ ଲୋକମାନେ ତାଙ୍କ ଅବସ୍ଥା ଦେଖି ଅବାକ୍ ହେବେ !'' ବିଶ୍ୱାସ-ଭକ୍ତିର ପ୍ରବଳ ପ୍ରେରଣାରେ ଗିରିଶ ସେବେଠାରୁ ଠାକୁର ସାକ୍ଷାତ୍ ଭଗବାନ — ଜୀବଙ୍କ ଉଦ୍ଧାର ନିମିତ୍ତ କୃପାକରି ଅବତୀର୍ଣ୍ଣ ବୋଲି ଅନୁକ୍ଷଣ ଦେଖୁଥିଲେ ଏବଂ ଠାକୁର ତାଙ୍କୁ ବାରଣ କଲେ ମଧ୍ୟ ତାଙ୍କର ଏଧାରଣା ସମସ୍ତଙ୍କ ନିକଟରେ ପ୍ରକାଶ୍ୟରେ କହି ବୁଲୁଥିଲେ । ଗିରିଶ ମଧ୍ୟ ସେଦିନ ବଗିଚାରେ ଉପସ୍ଥିତ ଥିଲେ ଏବଂ ଶ୍ରୀଯୁକ୍ତ ରାମପ୍ରମୁଖ ଅନ୍ୟ କେତେକ ଗୃହୀଭକ୍ତଙ୍କ ସହିତ ଗୋଟିଏ ଆମ୍ବଗଛ ତଳେ ବସି କଥୋପକଥନ କରୁଥିଲେ ।

ଠାକୁର ଭକ୍ତଗଣପରିବୃତ ହୋଇ ଉଦ୍ୟାନ ମଧ୍ୟସ୍ଥ ପଥ ଦେଇ ବଗିଚାର ଗେଟ୍ ଆଡ଼କୁ ଧିରେ ଧିରେ ଅଗ୍ରସର ହେଉ ହେଉ ପ୍ରାୟ ମଝି ରାସ୍ତାରେ ଆସି ରାସ୍ତା ପାର୍ଶ୍ୱ ଆମ୍ବଗଛର ଛାଇରେ ଶ୍ରୀଯୁକ୍ତ ରାମ ଓ ଶ୍ରୀଯୁକ୍ତ ଗିରିଶଙ୍କୁ ଦେଖିବାକୁ ପାଇଲେ ଏବଂ ଗିରିଶଙ୍କୁ ସମ୍ବୋଧନ କରି କହିଲେ, ''ଗିରିଶ, ତୁମେ କ'ଣ ଦେଖିଛ (ମୋ ସମ୍ବନ୍ଧରେ) ଯେ ଏତେକଥା (ମୁଁ ଅବତାର ଇତ୍ୟାଦି) ଯାହାକୁ ତାହାକୁ କହି ବୁଲୁଛ ?''

ସହସା ଏହି ରୂପରେ ଜିଜ୍ଞାସିତ ହୋଇ ମଧ୍ୟ ଗିରିଶଙ୍କର ବିଶ୍ୱାସ ଟଳିଲା ନାହିଁ । ସେ ସସମ୍ଭ୍ରମରେ ଉଠି ରାସ୍ତା ଉପରକୁ ଆସି ଠାକୁରଙ୍କର ପାଦତଳେ ଆଣ୍ଠୁମାଡ଼ି ହାତଯୋଡ଼ି ଉପବିଷ୍ଟ ହେଲେ ଏବଂ ଗଦ୍‌ଗଦ୍ କଣ୍ଠରେ କହିଲେ, ''ବ୍ୟାସ ବାଲ୍ମୀକି ଯାହାଙ୍କର କଥା କହି ଶେଷ କରିପାରି ନାହାନ୍ତି ମୁଁ ତାଙ୍କ ସମ୍ବନ୍ଧରେ ଅଧିକ ଆଉ କ'ଣ କହିପାରିବି !''

ଗିରିଶଙ୍କର ଏପରି ଅଦ୍ଭୁତ ବିଶ୍ୱାସର କଥା ଶୁଣି ଠାକୁରଙ୍କର ସର୍ବାଙ୍ଗ ରୋମାଞ୍ଚିତ ହୋଇଉଠିଲା ଏବଂ ମନ ଉଚ୍ଚଭୂମିକୁ ଉଠି ସେ ସମାଧିସ୍ଥ ହେଲେ । ଗିରିଶ ମଧ୍ୟ ସେତେବେଳେ ଠାକୁରଙ୍କର ସେହି ଦେବଭାବରେ ପ୍ରଦୀପ୍ତ ମୁଖମଣ୍ଡଳ ଦେଖି ଉଲ୍ଲସିତ ହୋଇ ଚିତ୍କାର କରି ''ଜୟ ରାମକୃଷ୍ଣ'' ''ଜୟ ରାମକୃଷ୍ଣ'' ବୋଲି ବାରମ୍ବାର ପଦଧୂଳି ଗ୍ରହଣ କରିବାକୁ ଲାଗିଲେ ।

ଇତିମଧ୍ୟରେ ଠାକୁର ଅର୍ଦ୍ଧବାହ୍ୟ-ଦଶାରେ ହାସ୍ୟମୁଖରେ ଉପସ୍ଥିତ ସମସ୍ତଙ୍କ ଆଡ଼କୁ ଚାହିଁ କହିଲେ, ''ତୁମମାନଙ୍କୁ ଆଉ କ'ଣ କହିବି, ତୁମମାନଙ୍କର ସମସ୍ତଙ୍କର ଚୈତନ୍ୟ ହେଉ !'' ଭକ୍ତଗଣ ସେ ଅଭୟବାଣୀ ଶୁଣି ଆନନ୍ଦରେ ଜୟ ଜୟ ଧ୍ୱନି କରି କିଏ ପ୍ରଣାମ, କିଏ ପୁଷ୍ପ ବର୍ଷଣ ଏବଂ କିଏ ବା ଆସି ପଦସ୍ପର୍ଶ

କରିବାକୁ ଲାଗିଲେ । ପ୍ରଥମ ଜଣକ ପଦସ୍ପର୍ଶ କରି ଠିଆ ହେବା ମାତ୍ରେ ଠାକୁର ସେହିପରି ଅର୍ଦ୍ଧବାହ୍ୟ ଅବସ୍ଥାରେ ତାଙ୍କର ବକ୍ଷ ସ୍ପର୍ଶକରି ତଳୁ ଉପର ପର୍ଯ୍ୟନ୍ତ ହସ୍ତ ସଞ୍ଚାଳନ କରି କହିଲେ, ‘‘ଚୈତନ୍ୟ ହେଉ !’’ ଦ୍ୱିତୀୟ ବ୍ୟକ୍ତି ଆସି ପ୍ରଣାମ କରି ଉଠିବା ମାତ୍ରେ ତାଙ୍କୁ ମଧ୍ୟ ସେହି ପ୍ରକାର କଲେ ! ତୃତୀୟ ବ୍ୟକ୍ତିଙ୍କୁ ମଧ୍ୟ ସେହି ପ୍ରକାର କଲେ ! ଚତୁର୍ଥଙ୍କୁ ମଧ୍ୟ ସେହିପରି କଲେ ! ଏହିପରି ସମାଗତ ଭକ୍ତଗଣଙ୍କୁ ଜଣ ଜଣ କରି ସ୍ପର୍ଶ କରିବାକୁ ଲାଗିଲେ । ସେହି ଅଦ୍ଭୁତ ସ୍ପର୍ଶରେ ପ୍ରତ୍ୟେକଙ୍କର ଭିତରେ ଅପୂର୍ବ ଭାବାନ୍ତର ଉପସ୍ଥିତ ହୋଇ କେହି ହସିବାକୁ, କେହି କାନ୍ଦିବାକୁ, କେହି ବା ଧ୍ୟାନ କରିବାକୁ, ପୁଣି କିଏ ନିଜେ ଆନନ୍ଦରେ ପରିପୂର୍ଣ୍ଣ ହୋଇ ଅହେତୁକ-ଦୟାନିଧି ଠାକୁରଙ୍କର କୃପାଲାଭ କରି ଧନ୍ୟ ହେବାପାଇଁ ଅନ୍ୟମାନଙ୍କୁ ଚିତ୍କର କରି ଡାକିବାକୁ ଲାଗିଲେ ! ସେହି ଚିତ୍କାର ଓ ଜୟଧ୍ୱନିରେ ତ୍ୟାଗୀ ଭକ୍ତମାନେ କେହି ନିଦ୍ରା ତ୍ୟାଗ କରି, ଅନ୍ୟକେହି ଯେଉଁକାମ କରୁଥିଲେ ତାହା ଛାଡ଼ି ଦୌଡ଼ିଆସି ଦେଖିଲେ, ଉଦ୍ୟାନ ପଥ ମଝିରେ ସମସ୍ତେ ଠାକୁରଙ୍କୁ ଘେରି ଯେପରି ପାଗଳଙ୍କ ପରି ବ୍ୟବହାର କରୁଛନ୍ତି ! ଏବଂ ଦେଖି ହିଁ ବୁଝିଲେ, ଦକ୍ଷିଣେଶ୍ୱରରେ ବିଶେଷ ବିଶେଷ ବ୍ୟକ୍ତିଙ୍କ ପ୍ରତି କୃପାରେ ଠାକୁରଙ୍କର ଦିବ୍ୟଭାବାବେଶରେ ଯେଉଁ ଅଦୃଷ୍ଟପୂର୍ବ ଲୀଳାର ଅଭିନୟ ହେଉଥିଲା, ଆଜି ଏଠାରେ ସମସ୍ତଙ୍କ ପ୍ରତି କୃପାରେ ସେହି ଲୀଳାଭିନୟ ପୁନଃ ପ୍ରକାଶିତ ହୋଇଛି ! ତ୍ୟାଗୀ ଭକ୍ତମାନେ ଆସୁ ଆସୁ ଠାକୁରଙ୍କର ସେଅବସ୍ଥା ପରିବର୍ତ୍ତିତ ହୋଇ ପୁଣି ସାଧାରଣ ସହଜ ଭାବ ଉପସ୍ଥିତ ହେଲା ।

### ଠାକୁରଙ୍କର ଏପରି ସ୍ପର୍ଶରେ ଭକ୍ତମାନଙ୍କର ପ୍ରତ୍ୟେକଙ୍କର ଦର୍ଶନ ଓ ଅନୁଭବ :

ପରେ ଗୃହୀ ଭକ୍ତମାନଙ୍କ ମଧ୍ୟରେ ଏବିଷୟରେ ଅନେକଙ୍କୁ ଏହି ସମୟରେ କିପରି ଅନୁଭବ ହୋଇଥିଲା ପଚାରିବାରୁ ଜଣାଗଲା, କାହାର ଭାଙ୍ଗନିଶାପରି ଏକ ନିଶା ଓ ଆନନ୍ଦ ହୋଇଥିଲା — କାହାର ବା ଚକ୍ଷୁମୁଦ୍ରିତ କରିବା ମାତ୍ରେ ଯେଉଁ ମୂର୍ତ୍ତିନିତ୍ୟଧ୍ୟାନ କରୁଥିଲେ ଅଥଚ ଦର୍ଶନ ପାଉ ନ ଥିଲେ, ଅନ୍ତରରେ ସେହି ମୂର୍ତ୍ତିର ଜାଜ୍ୱଲ୍ୟ ଦର୍ଶନ — କାହାରି ଅବା ଭିତରେ ପୂର୍ବରୁ ଅନନୁଭୂତ ଏକ ପଦାର୍ଥ ବା ଶକ୍ତି ଯେପରି ସଡ୍ ସଡ୍ କରି ଉପରକୁ ଉଠୁଅଛି, ଏହି ପ୍ରକାର ବୋଧ ଓ ଆନନ୍ଦ ଏବଂ କାହାର ଅବା ପୂର୍ବରୁ ଯାହା କେବେ ଦେଖି ନାହାନ୍ତି ଚକ୍ଷୁମୁଦ୍ରିତ କଲେ ସେହିପରି ଗୋଟିଏ ଜ୍ୟୋତିର ଦର୍ଶନ ଓ ଆନନ୍ଦାନୁଭବ ହେଉଥିଲା ! ଦର୍ଶନାଦି ପ୍ରତ୍ୟେକଙ୍କର ଭିନ୍ନ ଭିନ୍ନ ହେଲେ ମଧ୍ୟ ଏକ ଅସାଧାରଣ ଦିବ୍ୟଆନନ୍ଦରେ ପରିପୂର୍ଣ୍ଣ ହୋଇଯିବା ଅନୁଭବଟି ସମସ୍ତଙ୍କର ହୋଇଥିବା ଜଣାଯାଇଥିଲା । କେବଳ ସେତିକି ନୁହଁ, ଠାକୁରଙ୍କର ଅନ୍ତରର ଅମାନୁଷୀ ଶକ୍ତିବିଶେଷ ହିଁ ଯେ ବାହ୍ୟ ସ୍ପର୍ଶଦ୍ୱାରା

ସଞ୍ଚାରିତ ହୋଇ ପ୍ରତ୍ୟେକ ଭକ୍ତଙ୍କ ଭିତରେ ଏପରି ଅପୂର୍ବ ମାନସିକ ଅନୁଭବ ଓ ପରିବର୍ତ୍ତନ ଆଣିଦେଲା, ତାହା ସମସ୍ତଙ୍କର ଦୃଢ଼ ଧାରଣା ବୋଲି ବୁଝାଯାଇଥିଲା ।

### କେତେବେଳେ କାହାକୁ କୃପା କରି ଠାକୁର ଏପରି ସ୍ପର୍ଶ କରିବେ ତାହା ବୁଝାଯାଉ ନ ଥିଲା :

ଉପସ୍ଥିତ ଭକ୍ତମାନଙ୍କ ମଧ୍ୟରେ ଦୁଇଜଣଙ୍କୁ କେବଳ ଠାକୁର "ଏବେ ନୁହେଁ" ବୋଲି ଏପରି ସ୍ପର୍ଶ କରି ନାହାନ୍ତି ! ସେମାନେ ହିଁ କେବଳ ଏହି ଆନନ୍ଦର ଦିନରେ ନିଜକୁ ହତଭାଗ୍ୟ ମନେକରି ବିଷଣ୍ଣ ହୋଇଥିଲେ ।[୧] ଏହାଦ୍ୱାରା ଏବିଷୟ ମଧ୍ୟ ବୁଝାଯାଇଥିଲା ଯେ, କେତେବେଳେ କାହାପ୍ରତି କୃପାରେ ଠାକୁରଙ୍କ ମଧ୍ୟ ଦେଇ ଏହି ଦିବ୍ୟ ଶକ୍ତିର ପ୍ରକାଶ ହେବ ତା'ର କିଛି ସ୍ଥିରତା ନାହିଁ ! ସାଧାରଣ ଅବସ୍ଥାରେ ଠାକୁର ନିଜେ ମଧ୍ୟ ତାହା ଜାଣିପାରୁଥିଲେ ବା ବୁଝିପାରୁଥିଲେ କି ନାହିଁ ତାହା ସନ୍ଦେହ ।

### କଞ୍ଚା 'ମୁଁ'ର ଲୋପ ବା ନାଶ ହେଲେ ଗୁରୁଭାବ ପ୍ରକାଶର କଥା ସମସ୍ତ ଧର୍ମ ଶାସ୍ତ୍ରରେ ଅଛି :

ଅତଏବ ବେଶ୍ ବୁଝାଯାଉଅଛି, କଞ୍ଚା ବା ଛୋଟ 'ମୁଁ'ତ୍ୱକୁ ସମ୍ପୂର୍ଣ୍ଣରୂପେ ବିସର୍ଜନ କରିପାରିଥିଲେ ବୋଲି ହିଁ ଠାକୁର 'ବିଶ୍ୱବ୍ୟାପୀ ମୁଁ' ବା ଶ୍ରୀଶ୍ରୀଜଗଦମ୍ବାଙ୍କର ଶକ୍ତିପ୍ରକାଶର ମହାନ ଯନ୍ତ୍ର ସ୍ୱରୂପ ହୋଇପାରିଥିଲେ ! ଏବଂ ଏହି କଞ୍ଚା 'ମୁଁ'କୁ ସମ୍ପୂର୍ଣ୍ଣ ତ୍ୟାଗ କରି ଯଥାର୍ଥ 'ଦୀନର ଦୀନ' ଅବସ୍ଥାରେ ଉପନୀତ ହୋଇଥିଲେ ବୋଲି ଠାକୁରଙ୍କ ଭିତର ଦେଇ ଶ୍ରୀଶ୍ରୀଜଗନ୍ମାତାଙ୍କର ଲୋକଗୁରୁ, ଜଗତଗୁରୁ ଭାବଟିର ଏପରି ଅପୂର୍ବ ବିକାଶ ସମ୍ଭବ ହୋଇଥିଲା ! ଏହିପରି 'ମୁଁ'ତ୍ୱର ଲୋପ ଦ୍ୱାରା ଗୁରୁଭାବ ବା ଗୁରୁଶକ୍ତିର ବିକାଶ ଯେ ସବୁ ଧର୍ମର ସମସ୍ତ ଅବତାର ପୁରୁଷଗଣଙ୍କର ଜୀବନରେ ଉପସ୍ଥିତ ହୋଇଥିଲା, ଜଗତର ଧର୍ମ ଇତିହାସ ଏବିଷୟରେ ଚିରକାଳ ସାକ୍ଷ୍ୟ ଦେଉଅଛି ।

### ଗୁରୁଭାବ ମାନବୀୟ ଭାବ ନୁହେଁ—ସାକ୍ଷାତ୍ ଜଗଦମ୍ବାଙ୍କ ଭାବ, ମନୁଷ୍ୟର ଶରୀର ଓ ମନକୁ ଯନ୍ତ୍ରସ୍ୱରୂପ ଅବଲମ୍ବନ କରି ପ୍ରକାଶିତ ହୁଏ :

ଗୁରୁଙ୍କଠାରେ ମନୁଷ୍ୟ ବୁଦ୍ଧି କଲେ ଧର୍ମଲାଭ ବା ଈଶ୍ୱରଲାଭ ହୁଏ ନାହିଁ, ଏହା ଆବହମାନ କାଳରୁ ଶୁଣିଆସୁଛୁ । 'ଗୁରୁର୍ବ୍ରହ୍ମା ଗୁରୁର୍ବିଷ୍ଣୁ ଗୁରୁର୍ଦେବୋ ମହେଶ୍ୱରଃ'—ଇତ୍ୟାଦି ସ୍ତୁତି-କଥା ଆମେମାନେ ଚିରକାଳ ବିଶ୍ୱାସ ବା ଅବିଶ୍ୱାସ ସହିତ ମନ୍ତ୍ରଦୀକ୍ଷାଦାତା ଗୁରୁଙ୍କ ଉଦ୍ଦେଶ୍ୟରେ ଉଚ୍ଚାରଣ କରିଆସିଛୁ । ଅନେକେ ବିଦେଶୀ ଶିକ୍ଷାର ଇନ୍ଦ୍ରଜାଲରେ ପଡ଼ି ନିଜର ଜାତୀୟ ଶିକ୍ଷା ଓ ଭାବକୁ

---

୧. ପରେ ଦିନେ ଠାକୁର ସେମାନଙ୍କୁ ମଧ୍ୟ ଏହିପରି ସ୍ପର୍ଶ କରିଥିଲେ ।

ବିସର୍ଜନ ଦେଇ କୌଣସି ମାନବଙ୍କୁ ଏପରି କହିବା ମହାପାପ ମଧ୍ୟରେ ଗଣ୍ୟ କରି ଅନେକ ବାଦାନୁବାଦ କରିବାକୁ ମଧ୍ୟ ପଶ୍ଚାତ୍‌ପଦ ହୁଅନ୍ତି ନାହିଁ ! କାରଣ ଆଉ ସେତେବେଳେ ବୁଝେ ଯେ, କୌଣସି କୌଣସି ମାନବ-ଶରୀରକୁ ଆଶ୍ରୟ କରି ପ୍ରକାଶ ପାଇଲେ ମଧ୍ୟ ଗୁରୁଭାବଟି ମାନବୀୟ ଭାବରାଜ୍ୟର ଅନ୍ତର୍ଗତ ହିଁ ନୁହେଁ । ପୁଣି କିଏ ବା ସେତେବେଳେ ଜାଣିପାରେ ଯେ, ଶରୀର ରକ୍ଷାର ଉପଯୋଗୀ ଜଳବାୟୁ, ଆହାର ପ୍ରଭୃତି ନିତ୍ୟ ଆବଶ୍ୟକୀୟ ବସ୍ତୁସମୂହ ସଦୃଶ, ମାୟାପାଶରେ ଆବଦ୍ଧ ତ୍ରିତାପରେ ତାପିତମାନଙ୍କ ମନରେ ସମସ୍ତ ଜ୍ୱାଳା-ନିବାରଣ ଓ ଶାନ୍ତିଲାଭର ଉପାୟସ୍ୱରୂପ ହୋଇ ଶ୍ରୀଶ୍ରୀ ଜଗନ୍ମାତା ସ୍ୱୟଂ ଏହି ଭାବ ଓ ଶକ୍ତିରୂପରେ ଶୁଦ୍ଧ, ବୁଦ୍ଧ, ଅହଂକାରଶୂନ୍ୟ ମନୁଷ୍ୟର ମନ ମଧ୍ୟଦେଇ ପୂର୍ଣ୍ଣରୂପରେ ପ୍ରକାଶିତ ଅଛନ୍ତି ? ପୁଣି କିଏ ବା ସେତେବେଳେ ଧାରଣା କରେ ଯେ, ଯାହାର ମନ ଯେତେଟା ପରିମାଣରେ ଅହଂକାର ତ୍ୟାଗ କରିପାରେ ବା 'କଞ୍ଚା ମୁଁ'କୁ ଛାଡ଼ିପାରେ ସେତେ ପରିମାଣରେ ସେ ଏହିଭାବ ଓ ଶକ୍ତି ପ୍ରକାଶର ଯନ୍ତ୍ରସ୍ୱରୂପ ହୋଇଥାଏ ! ସାଧାରଣ ମନୁଷ୍ୟ ମନରେ ଏହି ଦିବ୍ୟଭାବର 'ନାମମାତ୍ର' ପ୍ରକାଶ, ତେଣୁ ଆମେ ସେତେଟା ଧରିପାରୁ ନାହୁଁ ବା ଛୁଇଁପାରୁ ନାହୁଁ । କିନ୍ତୁ ଭଗବାନ ଶ୍ରୀକୃଷ୍ଣ, ବୁଦ୍ଧ, ଚୈତନ୍ୟ, ଶଙ୍କର, ଯୀଶୁ ପ୍ରଭୃତି ପୂର୍ବ ପୂର୍ବ ଯୁଗାବତାର ଏବଂ ବର୍ତ୍ତମାନ ଯୁଗରେ ଶ୍ରୀରାମକୃଷ୍ଣଙ୍କଠାରେ ଏହି ଦିବ୍ୟଶକ୍ତିର ଏପରି ଅପୂର୍ବ ପ୍ରକାଶ ଯେତେବେଳେ ବହୁଭାଗ୍ୟ ଫଳରେ କାହାର ନୟନଗୋଚର ହୁଏ, ସେତେବେଳେ ସେ ମର୍ମେ ମର୍ମେ ବୁଝିଥାଏ ଯେ, ଏପରି ଶକ୍ତି ପ୍ରକାଶ ମାନବର ନୁହେଁ—ସାକ୍ଷାତ୍ ଈଶ୍ୱରଙ୍କର ! ସେତେବେଳେ ହିଁ ଭବରୋଗଗ୍ରସ୍ତ ପଥଭ୍ରାନ୍ତ ଜିଜ୍ଞାସୁ ମନୁଷ୍ୟର ମୋହ ଓ ମଳିନତା ଅପସାରିତ ହୁଏ ଏବଂ ସେ କହିଉଠେ, 'ହେ ଗୁରୁ, ତୁମେ କଦାପି ମନୁଷ୍ୟ ନୁହଁ—ତୁମେ ହିଁ ସେ !'

### ଈଶ୍ୱର କରୁଣାବଶତଃ ଏହି ଭାବ ଅବଲମ୍ବନରେ ମନୁଷ୍ୟ-ମନର ଅଜ୍ଞାନମୋହ ଦୂର କରନ୍ତି । ସେଥିପାଇଁ ଗୁରୁଭକ୍ତି ଓ ଈଶ୍ୱରଭକ୍ତି ଏକାକଥା :

ଅତଏବ ଏଥିରୁ ବୁଝାଯାଉଛି, ଶ୍ରୀଶ୍ରୀ ଜଗନ୍ମାତା ଯେଉଁ ଭାବ ଅବଲମ୍ବନରେ ମନୁଷ୍ୟ ମନର ସମସ୍ତ ପ୍ରକାର ଅଜ୍ଞାନ ମଳିନତା ଦୂର କରନ୍ତି, ସେହି ଉଚ୍ଚଭାବର ହିଁ ନାମ ଗୁରୁଭାବ ବା ଗୁରୁଶକ୍ତି । ଏହି ଭାବକୁ ହିଁ ଶାସ୍ତ୍ର ଗୁରୁ ନାମରେ ନିର୍ଦ୍ଦେଶ କରିଛନ୍ତି, ଓ ମାନବକୁ ତାହା ପ୍ରତି ମନର ଷୋଳଅଣା ଶ୍ରଦ୍ଧା, ଭକ୍ତି ଓ ବିଶ୍ୱାସ ଅର୍ପଣ କରିବାକୁ କହିଛନ୍ତି । କିନ୍ତୁ ସ୍ଥୂଳବୁଦ୍ଧି, ଭକ୍ତି-ଶ୍ରଦ୍ଧା ଇତ୍ୟାଦି ଶିଖିବାକୁ ଆରମ୍ଭ କରିଛି, ଏପରି ମାନବ ମନ ଏକ ଅଶରୀରୀ ଭାବକୁ ଧରିବାକୁ, ଛୁଇଁବାକୁ, ଭଲପାଇବାକୁ ସମର୍ଥ ହୁଏ ନାହିଁ; ସେଥିପାଇଁ ଦୀକ୍ଷାଦାତା ମାନବକୁ ଗୁରୁ ବୋଲି ଭକ୍ତି କରିବାକୁ ଶାସ୍ତ୍ର କହିଥାଏ । ସେଥିପାଇଁ ଯେଉଁମାନେ କହନ୍ତି, ଆମେ

ଗୁରୁଭାବକୁ ଶ୍ରଦ୍ଧାଭକ୍ତି କରିପାରୁ, କିନ୍ତୁ ଯେଉଁ ଦେହଟି ଆଶ୍ରୟ କରି ଏହି ଭାବ ଆମ ନିକଟରେ ପ୍ରକାଶିତ ହୁଏ ତାକୁ ଭକ୍ତି-ମାନ୍ୟ କାହିଁକି କରିବୁ—ଏ ଭାବ ତ ତାଙ୍କର ନୁହେଁ ? ସେମାନଙ୍କୁ ଆମେ କହିବୁ—'ଭାଇ, ସେପରି କରିପାରିବ ତ କର, କିନ୍ତୁ ଦେଖ ଯେପରି ମନର ଜୁଆ ଚୋରିରେ ଠକି ନ ଯାଅ । ଶକ୍ତି ବା ଭାବ ଏବଂ ଯାହାର ଅବଲମ୍ବନରେ ଏହି ଭାବ ପ୍ରକାଶିତ ହୁଏ ସେହି ଉଭୟଙ୍କୁ ପୃଥକ୍ ପୃଥକ୍ ଭାବରେ ରହିଥିବାର କେବେ ତୁମେ ଦେଖି ନାହଁ, ତେବେ କିପରି ଅଗ୍ନି ଓ ଅଗ୍ନିର ଦାହିକା ଶକ୍ତିକୁ ପୃଥକ୍ କରି ଗୋଟିଏକୁ ଗ୍ରହଣ ଓ ଶ୍ରଦ୍ଧାଭକ୍ତି କରିବ ଏବଂ ଅନ୍ୟଟିକୁ ତ୍ୟାଗ କରିବ; ତାହା ତୁମେ କହିପାରିବ ନାହିଁ !' ଯିଏ ଯାହାକୁ ଭଲପାଏ ବା ଭକ୍ତି କରେ ସେ ପ୍ରେମାସ୍ପଦର ବ୍ୟବହୃତ ଅତି ନଗଣ୍ୟ ପଦାର୍ଥଟିକୁ ମଧ୍ୟ ହୃଦୟରେ ଧାରଣ କରିଥାଏ । ତାହାଙ୍କ ବ୍ୟବହୃତ ଫୁଲ ବା ଲୁଗାପଟା ମଧ୍ୟ ସେ ପବିତ୍ର ବୋଲି ବୋଧ କରେ । ସେ ଯେଉଁ ବାଟ ଦେଇ ଚାଲିଯାଆନ୍ତି, ସେଠାର ମାଟି ମଧ୍ୟ ତାହାନିକଟରେ ବହୁମୂଲ୍ୟବାନ ଓ ବହୁ ଆଦରର ପଦାର୍ଥ ବୋଲି ମନେହୁଏ । ତେବେ ସେ ଯେଉଁ ଶରୀରରେ ଅବସ୍ଥାନ କରି ପୂଜା ଗ୍ରହଣ କରନ୍ତି ଓ ତାହାକୁ କୃପା କରନ୍ତି, ସେଶରୀର ପ୍ରତି ଯେ ଶ୍ରଦ୍ଧା ଓ ଭକ୍ତି ହେବ—ଏହା କ'ଣ ବୁଝାଇ କହିବାକୁ ହେବ ? ଯେଉଁମାନେ ଗୁରୁଭାବକୁ ଏପରି ବୁଝନ୍ତି ନାହିଁ, ସେମାନେ ଏପରି କଥା କହିଥାଆନ୍ତି । କିନ୍ତୁ ଯାହାର ଗୁରୁଭାବ ପ୍ରତି ଠିକ୍ ଠିକ୍ ଭକ୍ତି ହେବ, ତା'ର ଏହି ଭାବର ଆଧାର ଗୁରୁଙ୍କର ଶରୀର ପ୍ରତି ମଧ୍ୟ ଭକ୍ତି ଓ ଶ୍ରଦ୍ଧାର ବିକାଶ ହେବ ହିଁ ହେବ । ଠାକୁର ଏହି ବିଷୟଟି ବିଭୀଷଣଙ୍କର ଭକ୍ତିର ଦୃଷ୍ଟାନ୍ତ ଦେଇ ଆମମାନଙ୍କୁ ବୁଝାଇଥିଲେ । ଯଥା—

### ଗୁରୁଭକ୍ତି ବିଷୟରେ ଠାକୁରଙ୍କ ଉପଦେଶ—<br>ବିଭୀଷଣଙ୍କ ଗୁରୁଭକ୍ତି କଥା :

ଶ୍ରୀରାମଚନ୍ଦ୍ରଙ୍କର ମାନବଲୀଳାସମ୍ବରଣର ବହୁକାଳ ପରେ କୌଣସି ସମୟରେ ନୌକାବୁଡ଼ିବାରୁ ଜଣେ ଲୋକ ଲଙ୍କା ଉପକୂଳରେ ସମୁଦ୍ର ତରଙ୍ଗ ଦ୍ୱାରା ନିକ୍ଷିପ୍ତ ହେଲା । ବିଭୀଷଣ ତ' ଅମର, ତେଣୁ ସେ ତିନିକାଳ ଧରି ଲଙ୍କାରେ ରାଜତ୍ୱ କରୁଥିଲେ—ତାଙ୍କ ନିକଟରେ ଏହି ଖବର ପହଞ୍ଚିଲା । ସୁକୋମଳ ମାନବଦେହ ରୂପକ ଖାଦ୍ୟର ଆଗମନ ସମ୍ବାଦରେ ସଭା ମଧ୍ୟରେ ଥିବା ଅନେକ ରାକ୍ଷସଙ୍କର ଜିହ୍ୱାରେ ଜଳ ଆସିଲା । କିନ୍ତୁ ଏସମ୍ବାଦ ପାଇବା ମାତ୍ରେ ରାଜା ବିଭୀଷଣଙ୍କର ଏକ ଅପୂର୍ବ ଭାବାନ୍ତର ଉପସ୍ଥିତ ହେଲା । ସେ ଅଶ୍ରୁପୂର୍ଣ୍ଣ ନେତ୍ରରେ ଭକ୍ତି-ଗଦ୍-ଗଦ୍ କଣ୍ଠରେ ବାରମ୍ବାର କହିବାକୁ ଲାଗିଲେ, 'ଅହୋ ଭାଗ୍ୟ !' ରାକ୍ଷସଗଣ ତାଙ୍କର ଭାବ ବୁଝି ନ ପାରି ଅବାକ୍ ହେଲେ ! ତା'ପରେ ବିଭୀଷଣ ସେମାନଙ୍କୁ ବୁଝାଇ କହିଲେ, 'ଯେଉଁ ମନୁଷ୍ୟ ଶରୀର ମୋର ପ୍ରଭୁ ଶ୍ରୀରାମଚନ୍ଦ୍ର ଧାରଣ କରି

ଲଙ୍କାରେ ପଦାର୍ପଣ କରିଥିଲେ ଏବଂ ମୋତେ କୃତାର୍ଥ କରିଥିଲେ, ବହୁଦିନ ପରେ ଆଜି ପୁଣି ସେହି ମନୁଷ୍ୟ ଶରୀର ଦେଖିବାକୁ ମିଳିବ—ଏହା କ'ଣ କମ୍ ଭାଗ୍ୟର କଥା ! ମୋର ମନେହୁଏ, ଯେପରି ସାକ୍ଷାତ୍ ରାମଚନ୍ଦ୍ର ପୁନରାୟ ସେହି ରୂପରେ ଆସିଛନ୍ତି !' ଏକଥା କହି ରାଜା ବିଭୀଷଣ ମନ୍ତ୍ରୀ ଓ ସଭାସଦ୍‌ଗଣଙ୍କୁ ସଙ୍ଗରେ ନେଇ ସମୁଦ୍ର ଉପକୂଳରେ ଆସି ଉପସ୍ଥିତ ହେଲେ ଏବଂ ବହୁ ସମ୍ମାନ ତଥା ଆଦର କରି ଉକ୍ତ ମାନବକୁ ନିଜର ପ୍ରାସାଦକୁ ନେଇଗଲେ । ପରେ ତାଙ୍କୁ ସିଂହାସନରେ ବସାଇ ସପରିବାର ଅନୁଗତ ଦାସ ଭାବରେ ତାଙ୍କର ସେବା ଓ ବନ୍ଦନାଦି କରିବାକୁ ଲାଗିଲେ ! ଏହିପରି ତାଙ୍କୁ ଲଙ୍କାରେ କିଛି ଦିନ ରଖି, ନାନାପ୍ରକାର ଧନରତ୍ନ ଉପହାର ପ୍ରଦାନ କରି ସଜଳନୟନରେ ବିଦାୟ ଦେଲେ ଏବଂ ଅନୁଚରବର୍ଗଙ୍କ ଦ୍ୱାରା ତାଙ୍କୁ ତାଙ୍କ ଗୃହରେ ପହଞ୍ଚାଇ ଦେଲେ ।

### ଠିକ୍ ଠିକ୍ ଭକ୍ତିରେ ଅତି ତୁଚ୍ଛ ବିଷୟରେ ମଧ୍ୟ ଈଶ୍ୱରଙ୍କ ଉଦ୍ଦୀପନା ହୁଏ । 'ଏହି ମାଟିରେ ମୃଦଙ୍ଗ ହୁଏ'— କହିବାମାତ୍ରେ ଶ୍ରୀଚୈତନ୍ୟଙ୍କର ଭାବ :

ଗଳ୍ପଟି କହି ଠାକୁର ପୁଣି କହିଲେ, ଠିକ୍ ଠିକ୍ ଭକ୍ତି ହେଲେ ଏପରି ହୁଏ । ସାମାନ୍ୟ ଜିନିଷରୁ ମଧ୍ୟ ଭକ୍ତଠାରେ ଈଶ୍ୱରଙ୍କ ପାଇଁ ଉଦ୍ଦୀପନା ହୋଇ ଭାବରେ ବିଭୋର ହୁଏ । ଶୁଣି ନାହଁ—ଏହି ମାଟିରେ ମୃଦଙ୍ଗ ହୁଏ ବୋଲି ଶୁଣି ଚୈତନ୍ୟଦେବଙ୍କର ଭାବ ହୋଇଥିଲା । ଥରେ ଗୋଟିଏ ସ୍ଥାନ ଦେଇ ଯାଉ ଯାଉ ଚୈତନ୍ୟଦେବ ଶୁଣିଲେ ଯେ ସେହି ଗ୍ରାମର ଲୋକମାନେ ହରି ସଂକୀର୍ତ୍ତନରେ ବ୍ୟବହାର ହେଉଥିବା ମୃଦଙ୍ଗ ତିଆରି କରନ୍ତି ଓ ତାହା ବିକ୍ରି କରି ଜୀବିକାନିର୍ବାହ କରନ୍ତି । ଏହା ଶୁଣି ହିଁ ସେ କହି ଉଠିଲେ, 'ଏହି ମାଟିରେ ମୃଦଙ୍ଗ ତିଆରି ହୁଏ !'—କହି ବାହ୍ୟଜ୍ଞାନ ଶୂନ୍ୟ ହୋଇଗଲେ ! କାହିଁକି ନା ଉଦ୍ଦୀପନା ହେଲା; 'ଏହି ମାଟିରେ ମୃଦଙ୍ଗ ତିଆରି ହୁଏ, ସେହି ମୃଦଙ୍ଗ ବଜାଇ ହରିନାମ କରାଯାଏ, ସେହି ହରି ସମସ୍ତଙ୍କ ପ୍ରାଣର ପ୍ରାଣ—ସୁନ୍ଦରଠାରୁ ସୁନ୍ଦର ।'—ହଠାତ୍ ଏତେକଥା ମନରେ ଆସି ଚିତ୍ତ ସ୍ଥିର ହୋଇଗଲା । ସେହିପ୍ରକାର ଯାହାର ଗୁରୁଭକ୍ତି ହୁଏ ତା'ର ଗୁରୁଙ୍କର ଆତ୍ମୀୟ-କୁଟୁମ୍ବମାନଙ୍କୁ ଦେଖିଲେ ତ' ଗୁରୁଙ୍କର ଉଦ୍ଦୀପନା ହେବ ହିଁ, ତା'ସହିତ ଯେଉଁ ଗ୍ରାମରେ ଗୁରୁଙ୍କ ଘର ସେହିଗ୍ରାମର ଲୋକଙ୍କୁ ଦେଖିଲେ ମଧ୍ୟ ସେହିପରି ଉଦ୍ଦୀପନା ହୋଇ ସେମାନଙ୍କୁ ପ୍ରଣାମ କରେ, ପାଦର ଧୂଳି ନେଇଥାଏ, ଭୋଜନ କରାଏ ଏବଂ ସେବାକରେ । ଏହି ଅବସ୍ଥା ହେଲେ ଗୁରୁଙ୍କର ଦୋଷ ଆଉ ଦେଖାଯାଏ ନାହିଁ । ସେତେବେଳେ ଏକଥା କୁହାଯାଇପାରେ—

'ଯଦ୍ୟପି ଗୁରୁ ମୋର ଶୁଣ୍ଡିଘର ଯାଏ ।
ତଥାପି ମୋର ଗୁରୁ ନିତ୍ୟାନନ୍ଦ ରାୟ ॥'[୧]

---

୧. ଅର୍ଥାତ୍ ନିତ୍ୟାନନ୍ଦସ୍ୱରୂପ ଶ୍ରୀଭଗବାନ ବା ଈଶ୍ୱର ।

ନ ହେଲେ ମନୁଷ୍ୟ ମାତ୍ରେ ହିଁ ଦୋଷ–ଗୁଣ ଥାଏ । ସେ ତା'ର ଭକ୍ତିରେ କିନ୍ତୁ ସେତେବେଳେ ମନୁଷ୍ୟକୁ ମନୁଷ୍ୟ ଭାବରେ ଦେଖେ ନା, ଭଗବାନ ଭାବରେ ହିଁ ଦେଖେ ! ଯେପରି କାମଳ ରୋଗ ହେଲେ ଆଖିକୁ ସବୁକିଛି ହଳଦୀଆରଙ୍ଗ ଦେଖାଯାଏ—ସେତେବେଳେ ତା'ର ଭକ୍ତି ସେହିପରି ତାକୁ ଦେଖାଇଦିଏ ଯେ, ଈଶ୍ୱର ହିଁ ସବୁ—ସେ ହିଁ ଗୁରୁ, ପିତା, ମାତା, ମନୁଷ୍ୟ, ଗୋରୁ, ଜଡ଼, ଚେତନ ସବୁ ହୋଇଛନ୍ତି ।''

ଦକ୍ଷିଣେଶ୍ୱରରେ ଦିନେ ଜଣେ ସରଳ ଉଦ୍ଧତ ଯୁବକ ଭକ୍ତ[୧] ଠାକୁର ଯେଉଁ ବିଷୟଟି ତାଙ୍କୁ କହୁଥିଲେ, ସେବିଷୟରେ ନାନା ପ୍ରକାର ଆପତ୍ତି ତର୍କ ଉତ୍ଥାପନ କରୁଥିଲେ ! ଠାକୁର ତିନିଚାରି ଥର ତାଙ୍କୁ ଏବିଷୟରେ କହିଲେ ମଧ୍ୟ ସେ ଯେତେବେଳେ ବିଚାର କରିବାକୁ ଲାଗିଲେ, ଠାକୁରେ ସେତେବେଳେ ତାଙ୍କୁ ସୁମିଷ୍ଟ ଭର୍ତ୍ସନା କରି କହିଲେ, ''ତୁମେ କିପରି ହୋ ? ମୁଁ କହୁଛି ଆଉ ତୁମେ କଥାଟା ଗ୍ରହଣ କରୁ ନାହଁ !'' ଏହି କଥା ଯୁବକଙ୍କର ହୃଦୟକୁ ସ୍ପର୍ଶ କଲା । ସେ କହିଲେ, ''ଆପଣ ଯେତେବେଳେ କହୁଛନ୍ତି ମୁଁ ଅବଶ୍ୟ ଗ୍ରହଣ କଲି । ପୂର୍ବର କଥା ଗୁଡ଼ିକ ଯୁକ୍ତିଛଳରେ କହୁଥିଲି ।''

**ଅର୍ଜ୍ଜୁନଙ୍କର ଗୁରୁଭକ୍ତିର କଥା :**

ଠାକୁର ଏକଥା ଶୁଣି ପ୍ରସନ୍ନ ବଦନରେ ହସି ହସି କହିଲେ, ''ଗୁରୁଭକ୍ତି କିପରି ଜାଣ ? ଗୁରୁ ଯାହା କହିବେ ତାହା ତତ୍‌କ୍ଷଣାତ୍ ଦେଖିବାକୁ ପାଇବ—ସେ ଭକ୍ତି ଅର୍ଜ୍ଜୁନଙ୍କର ଥିଲା । ଦିନେ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କ ସହିତ ରଥରେ ବସି ବୁଲୁ ବୁଲୁ ଆକାଶକୁ ଚାହିଁ କହିଲେ, 'ଦେଖ ସଖା, କିପରି ଏକ ଦଳ ପାରା ଉଡୁଛନ୍ତି' ଅର୍ଜ୍ଜୁନ ସେଆଡ଼କୁ ଦେଖି କହିଲେ, 'ହଁ ସଖା ପାରାଗୁଡ଼ିକ ଅତି ସୁନ୍ଦର !' ପରମୁହୂର୍ତ୍ତରେ ଶ୍ରୀକୃଷ୍ଣ ପୁନର୍ବାର ଦେଖି କହିଲେ, 'ନା ସଖା, ଏମାନେ ତ ପାରା ନୁହନ୍ତି ।'ଅର୍ଜ୍ଜୁନ ଦେଖି କହିଲେ, 'ଠିକ ତ' ସଖା, ସେଗୁଡ଼ିକ ପାରା ନୁହେଁ ।' କଥାଟି ଏଥର ବୁଝ— ଅର୍ଜ୍ଜୁନ ପରମ ସତ୍ୟନିଷ୍ଠ, ତେଣୁ ସେ କ'ଣ ଆଉ ଶ୍ରୀକୃଷ୍ଣଙ୍କୁ ଖୋସାମତ୍ କରି ଏପରି କଥା କହିଥିଲେ ? କିନ୍ତୁ ଶ୍ରୀକୃଷ୍ଣଙ୍କ କଥାରେ ତାଙ୍କର ଏତେ ବିଶ୍ୱାସଭକ୍ତି ଯେ, ଶ୍ରୀକୃଷ୍ଣ ଯେମିତି କହିଲେ, ଅର୍ଜ୍ଜୁନ ମଧ୍ୟ ଠିକ୍ ଠିକ୍ ସେମିତି ଦେଖିବାକୁ ପାଇଲେ !''

---

୧. ଶ୍ରୀଯୁକ୍ତ ବୈକୁଣ୍ଠନାଥ ସାନ୍ୟାଲ ।

**ଈଶ୍ୱରୀୟ ଭାବରୂପରେ ଗୁରୁ ଏକ । ତଥାପି ନିଜ ଗୁରୁଙ୍କଠାରେ ଭକ୍ତି, ବିଶ୍ୱାସ ଓ ନିଷ୍ଠା ଦରକାର । ଏହି ବିଷୟରେ ହନୁମାନଙ୍କର କଥା :**

ଶାସ୍ତ୍ର ଯାହାକୁ ଅଜ୍ଞାନଅନ୍ଧକାର-ଦୂରୀକରଣସମର୍ଥ ଗୁରୁ ବୋଲି ନିର୍ଦ୍ଦେଶ କରିଛନ୍ତି ତାହା ପୂର୍ବୋକ୍ତରୂପରେ ଐଶ୍ୱରିକ ଭାବବିଶେଷ ବୋଲି ନିର୍ଣ୍ଣୀତ ହେଲେ ସଙ୍ଗେ ସଙ୍ଗେ ଆଉ ଗୋଟିଏ କଥା ମଧ୍ୟ ସତ୍ୟ ବୋଲି ସ୍ୱୀକାର କରିବାକୁ ହୁଏ । ତାହା ଏହି—ଗୁରୁ ଅନେକ ନୁହନ୍ତି, ଏକ; ଏବଂ ଯେଉଁ ଯେଉଁ ଶରୀର ଅବଲମ୍ବନରେ ଈଶ୍ୱରଙ୍କର ଏହି ଭାବ ପ୍ରକାଶିତ ହୁଏ ତାହା ଭିନ୍ନ ଭିନ୍ନ ହେଲେ ହେଁ ତୁମର ଗୁରୁ—ମୋର ଗୁରୁ ପୃଥକ ନୁହଁନ୍ତି; ଭାବରୂପରେ ଏକ । ମାଟିର ମୂର୍ତ୍ତିରେ ଦ୍ରୋଣଙ୍କୁ ଆଚାର୍ଯ୍ୟରୂପରେ ଗ୍ରହଣ ଓ ଭକ୍ତିପୂର୍ବକ ଏକଲବ୍ୟଙ୍କର ଧନୁର୍ବିଦ୍ୟାଶିକ୍ଷାଲାଭରୂପକ ମହାଭାରତୀୟ କଥାଟି ଏହାର ଦୃଷ୍ଟାନ୍ତସ୍ୱରୂପ ବୋଲି କୁହାଯାଇପାରେ । ଅବଶ୍ୟ ଏକଥାଟି ଯୁକ୍ତି ଯୁକ୍ତ ହେଲେ ମଧ୍ୟ ଠିକ୍ ଠିକ୍ ଭାବରେ ଏହା ହୃଦୟଙ୍ଗମ ହେବା ଅନେକ ସମୟ ଓ ସାଧନସାପେକ୍ଷ ଏବଂ ପୁଣି ହୃଦୟଙ୍ଗମ ହେଲେ ମଧ୍ୟ ଯେପର୍ଯ୍ୟନ୍ତ ମନୁଷ୍ୟର ନିଜର ଦେହବୋଧ ଥାଏ, ସେପର୍ଯ୍ୟନ୍ତ ଶରୀରର ଭିତର ଦେଇ ଗୁରୁଶକ୍ତି ତାଙ୍କୁ କୃପା କରନ୍ତି, ସେହି ଶରୀର ଅବଲମ୍ବନରେ ହିଁ ଶ୍ରୀଗୁରୁଙ୍କ ପୂଜା କରିବା ଭିନ୍ନ ଅନ୍ୟ ଉପାୟ ନାହିଁ । ଠାକୁର ଏହାର ଦୃଷ୍ଟାନ୍ତରେ ନିଷ୍ଠା-ଭକ୍ତିର ଜ୍ୱଳନ୍ତ ନିଦର୍ଶନ ହନୁମାନଙ୍କର କଥା ଆମମାନଙ୍କୁ କହିଥିଲେ । ଯଥା—

ଲଙ୍କାଯୁଦ୍ଧରେ ଶ୍ରୀରାମଚନ୍ଦ୍ର ଓ ତାଙ୍କର ଭ୍ରାତା ଲକ୍ଷ୍ମଣ ମହାବୀର ମେଘନାଦଙ୍କ ଦ୍ୱାରା ନାଗପାଶରେ ଆବଦ୍ଧ ହେବାରୁ ଏକ ସମୟରେ ଶ୍ରୀରାମଚନ୍ଦ୍ର ଏଥିରୁ ମୁକ୍ତି ପାଇବା ପାଇଁ, ନାଗକୂଳର ଚିରଶତ୍ରୁ ଗରୁଡ଼ଙ୍କୁ ସ୍ମରଣ କରି ଆନୟନ କଲେ । ଗରୁଡ଼ଙ୍କୁ ଦେଖିବା ମାତ୍ରେ ନାଗକୁଳ ଭୟଭୀତ ହୋଇ ପଳାୟନ କଲେ । ଶ୍ରୀରାମଚନ୍ଦ୍ର ନିଜର ଭକ୍ତ ଗରୁଡ଼ଙ୍କ ପ୍ରତି ପ୍ରସନ୍ନ ହୋଇ ଗରୁଡ଼ଙ୍କ ଦ୍ୱାରା ଚିରକାଳ ପୂଜିତ ଇଷ୍ଟମୂର୍ତ୍ତି ବିଷ୍ଣୁରୂପରେ ତା ସମ୍ମୁଖରେ ଆବିର୍ଭୂତ ହୋଇ ତାକୁ ବୁଝାଇ ଦେଲେ—ଯିଏ ବିଷ୍ଣୁ ସେ ଏବେ ଶ୍ରୀରାମଚନ୍ଦ୍ରଙ୍କ ରୂପରେ ଅବତୀର୍ଣ୍ଣ ! ହନୁମାନଙ୍କୁ ଶ୍ରୀରାମଚନ୍ଦ୍ରଙ୍କର ଏପରି ବିଷ୍ଣୁମୂର୍ତ୍ତି ପରିଗ୍ରହ କରିବା ଭଲ ଲାଗିଲା ନାହିଁ ଏବଂ କେତେବେଳେ ସେ ପୁନରାୟ ରାମରୂପ ଧାରଣ କରିବେ ଏହି କଥା ଭାବିବାକୁ ଲାଗିଲେ । ହନୁମାନଙ୍କର ମନ କଥା ବୁଝିବାରେ ଶ୍ରୀରାମଚନ୍ଦ୍ରଙ୍କର ବିଳମ୍ବ ହେଲା ନାହିଁ । ସେ ଗରୁଡ଼ଙ୍କୁ ବିଦାୟ ଦେବା ପରେ ପୁନରାୟ ରାମରୂପ ଧାରଣ କରି ହନୁମାନଙ୍କୁ ପଚାରିଲେ, "ବତ୍ସ, ମୋର ବିଷ୍ଣୁରୂପ ଦେଖି ତୁମର ଏପରି ଭାବନା ହେଲା କାହିଁକି ? ତୁମେ ମହାଜ୍ଞାନୀ, ତୁମର ତ ଜାଣିବାକୁ ଓ ବୁଝିବାକୁ ବାକି ନାହିଁ ଯେ, ଯିଏ ରାମ ସିଏ ବିଷ୍ଣୁ ?" ହନୁମାନ ଏହି ପ୍ରଶ୍ନର ଉତ୍ତର ବିନୀତ

ଭାବରେ ଦେଲେ, ''ଏକଥା ସତ ଯେ, ଏକ ପରମାତ୍ମା ହିଁ ଉଭୟ ରୂପ ପରିଗ୍ରହଣ କରିଅଛନ୍ତି, ସେଥିପାଇଁ ଶ୍ରୀନାଥ ଓ ଜାନକୀନାଥଙ୍କ ମଧ୍ୟରେ କୌଣସି ପ୍ରଭେଦ ନାହିଁ, କିନ୍ତୁ ତଥାପି ମୋର ପ୍ରାଣ ସତତ ଜାନକୀନାଥଙ୍କର ଦର୍ଶନ ହିଁ ଚାହେଁ; କାରଣ ସେ ହିଁ ମୋର ସର୍ବସ୍ୱ ! ସେହି ମୂର୍ତ୍ତି ଭିତର ଦେଇ ହିଁ ମୁଁ ଭଗବାନଙ୍କର ପ୍ରକାଶ ଦେଖି କୃତାର୍ଥ ହୋଇଅଛି—

''ଶ୍ରୀନାଥେ ଜାନକୀନାଥେ ଅଭେଦଃ ପରମାତ୍ମନି ।
ତଥାପି ମମ ସର୍ବସ୍ୱଃ ରାମଃ କମଲଲୋଚନଃ ॥''

## ସମସ୍ତ ମନୁଷ୍ୟଙ୍କ ମଧ୍ୟରେ ଗୁରୁଭାବ ସୁପ୍ତଭାବରେ ରହିଛି :

ଏହିପରି ଗୁରୁଭାବଟି ଶ୍ରୀଶ୍ରୀଜଗନ୍ମାତାଙ୍କର ଶକ୍ତିବିଶେଷ ଓ ସେହି ଶକ୍ତି ସମସ୍ତ ମାନବଙ୍କ ମନରେ ହିଁ ସୁପ୍ତ ବା ବ୍ୟକ୍ତ ଭାବରେ ନିହିତ ରହିଅଛି ବୋଲି ଗୁରୁଭକ୍ତି ପରାୟଣ ସାଧକ ଶେଷରେ ଏପରି ଏକ ଅବସ୍ଥାରେ ଉପନୀତ ହୋଇଥାଆନ୍ତି ଯେ, ସେତେବେଳେ ସେହି ଶକ୍ତି ତାଙ୍କର ନିଜ ଭିତର ଦେଇ ପ୍ରକାଶିତ ହୋଇ ଧର୍ମର ଜଟିଳ ନିଗୁଢ଼ ତତ୍ତ୍ୱସମୂହ ତାଙ୍କୁ ବୁଝାଇ ଦେଇଥାଏ । ସେତେବେଳେ ସାଧକକୁ ଆଉ ବାହାରର କାହାକୁ ପଚାରି ଧର୍ମ ବିଷୟକ କୌଣସି ସନ୍ଦେହ ମୋଚନ କରିବାକୁ ହୋଇ ନ ଥାଏ । ଗୀତାରେ ଶ୍ରୀଭଗବାନ ଅର୍ଜ୍ଜୁନଙ୍କୁ କହିଛନ୍ତି—

ଯଦା ତେ ମୋହକଲିଲଂ ବୁଦ୍ଧିର୍ବ୍ୟତିତରିଷ୍ୟତି ।
ତଦା ଗନ୍ତାସି ନିର୍ବେଦଂ ଶ୍ରୋତବ୍ୟସ୍ୟ ଶ୍ରୁତସ୍ୟ ଚ ॥—ଗୀତା, ୨/୫୨

ଯେତେବେଳେ ତୁମର ବୁଦ୍ଧି ଅଜ୍ଞାନ-ମୋହ ଆଦିରୁ ବିମୁକ୍ତ ହେବ ସେତେବେଳେ ଏହା ଶୁଣିବା ଉଚିତ, ଏହି କଥା ଶାସ୍ତ୍ରରେ ଅଛି ଇତ୍ୟାଦି କଥାରେ ତୁମର ଆଉ ପ୍ରୟୋଜନ ରହିବ ନାହିଁ, ତୁମେ ଏସବୁର ବାହାରକୁ ଯାଇ ନିଜେ ସବୁକିଛି ବୁଝିପାରିବ । ସାଧକର ସେତେବେଳେ ଏପରି ଅବସ୍ଥା ସ୍ୱତଃ ଆସି ଉପସ୍ଥିତ ହୋଇଥାଏ ।

## ଠାକୁରଙ୍କର କଥା—''ଶେଷରେ ମନ ହିଁ ଗୁରୁ ହୁଏ'' :

ଠାକୁରେ ଏହି ଅବସ୍ଥାକୁ ଲକ୍ଷ୍ୟ କରି କହୁଥିଲେ, ''ଶେଷରେ ମନ ହିଁ ଗୁରୁ ହୋଇଥାଏ ବା ଗୁରୁର କାମ କରେ । ମନୁଷ୍ୟ ଗୁରୁ କାନରେ ମନ୍ତ୍ର ଦିଅନ୍ତି; (କିନ୍ତୁ) ଜଗଦ୍‌ଗୁରୁ ପ୍ରାଣରେ ମନ୍ତ୍ର ଦିଅନ୍ତି ।'' କିନ୍ତୁ ସେହି ମନ ଓ ଏହି ମନ ମଧ୍ୟରେ ପ୍ରଭେଦ ଅନେକ । ସେସମୟର ମନ ଶୁଦ୍ଧସତ୍ତ୍ୱ ପବିତ୍ର ହୋଇ ଈଶ୍ୱରଙ୍କର ଉଚ୍ଚ ଶକ୍ତି ପ୍ରକାଶର ଯନ୍ତ୍ରସ୍ୱରୂପ ହୁଏ, ପୁଣି ଏସମୟର ମନ ଈଶ୍ୱରଙ୍କଠାରୁ ବିମୁଖ ହୋଇ ଭୋଗସୁଖ ଓ କାମକ୍ରୋଧାଦିରେ ହିଁ ମାତି ରହିବାକୁ ଚାହେଁ ।

### "ଗୁରୁ ସଖି ପରି":

ଠାକୁରେ କହୁଥିଲେ, "ଗୁରୁ ସଖୀ ପରି — ଯେତେଦିନ ପର୍ଯ୍ୟନ୍ତ ଶ୍ରୀକୃଷ୍ଣଙ୍କ ସହିତ ଶ୍ରୀରାଧାଙ୍କର ମିଳନ ହୋଇ ନାହିଁ, ସେତେଦିନ ପର୍ଯ୍ୟନ୍ତ ସଖୀର କାମ ଶେଷ ହୋଇ ନ ଥାଏ, ସେହିପରି ଯେତେଦିନ ପର୍ଯ୍ୟନ୍ତ ଇଷ୍ଟଙ୍କ ସହିତ ସାଧକର ମିଳନ ହୋଇ ନାହିଁ, ସେତେଦିନ ପର୍ଯ୍ୟନ୍ତ ଗୁରୁଙ୍କର କାର୍ଯ୍ୟର ଶେଷ ନାହିଁ । ଏହିପରି ମହାମହିମାନ୍ୱିତ ଶ୍ରୀଗୁରୁ ଜିଜ୍ଞାସୁ ଭକ୍ତର ହାତଧରି ଉଚ୍ଚରୁ ଉଚ୍ଚତର ଭାବରାଜ୍ୟରେ ଆରୋହଣ କରାନ୍ତି ଏବଂ ପରିଶେଷରେ ତାହାକୁ ଇଷ୍ଟମୂର୍ତ୍ତି ସମ୍ମୁଖରେ ଆଣି କହନ୍ତି, 'ହେ ଶିଷ୍ୟ, ଏହି ଦେଖ !' ଏହା କହି ଅନ୍ତର୍ହିତ ହୋଇଥାଆନ୍ତି ।"

### "ଶେଷରେ ଗୁରୁ ଇଷ୍ଟଙ୍କଠାରେ ଲୟ ହୁଅନ୍ତି । ଗୁରୁ, କୃଷ୍ଣ, ବୈଷ୍ଣବ — ତିନି ହିଁ ଏକ, ଏକ ହିଁ ତିନି" :

ଠାକୁରଙ୍କୁ ଦିନେ ଏପରି କହିବା ଶୁଣି ଜଣେ ଅନୁଗତ ଭକ୍ତ 'ଶ୍ରୀଗୁରୁଙ୍କ ସହିତ ବିଚ୍ଛେଦ ଦିନେ ନା ଦିନେ ଅନିବାର୍ଯ୍ୟ' ଭାବି ବ୍ୟଥିତ ହୃଦୟରେ ପଚାରିଲେ — "ଗୁରୁ ସେତେବେଳେ କେଉଁଠାକୁ ଯାଆନ୍ତି ମହାଶୟ ?" ଠାକୁର ତା'ର ଉତ୍ତରରେ କହିଲେ, "ଗୁରୁ ଇଷ୍ଟଙ୍କ ମଧ୍ୟରେ ଲୟ ହୁଅନ୍ତି । ଗୁରୁ, କୃଷ୍ଣ, ବୈଷ୍ଣବ — ତିନିରେ ଏକ, ଏକରେ ତିନି ।"

# ଚତୁର୍ଥ ଅଧ୍ୟାୟ

## ଗୁରୁଭାବର ପ୍ରଥମ ବିକାଶ

ଅବଜାନନ୍ତି ମାଂ ମୂଢ଼ା ମାନୁଷୀଂ ତନୁମାଶ୍ରିତମ୍ ।
ପରଂ ଭାବମଜାନନ୍ତୋ ମମ ଭୂତମହେଶ୍ୱରମ୍ ॥ —ଗୀତା-୯/୧୧

**ବାଲ୍ୟକାଳରୁ ଠାକୁରଙ୍କ ଜୀବନରେ ଗୁରୁଭାବର ପରିଚୟ ମିଳେ :**

ଠାକୁରଙ୍କ ଭିତରେ ଗୁରୁଭାବର ପ୍ରକାଶ ବାଲ୍ୟାବଧି ହିଁ ଦେଖିବାକୁ ମିଳିଥିଲା। ତେବେ ଯୌବନରେ ନିର୍ବିକଳ୍ପ-ସମାଧିଲାଭ ପରେ ଏହି ଭାବର ଯେ ପୂର୍ଣ୍ଣ ବିକାଶ ହୋଇଥିଲା, ତାହା ମଧ୍ୟ ସ୍ୱୀକାର କରିବାକୁ ହୁଏ । ବାଲ୍ୟାବଧି ତାଙ୍କଠାରେ ସେହି ଭାବର ପ୍ରକାଶ କହିବାରେ କେହି ଯେପରି ମନେ ନ କରନ୍ତି ଯେ, ଆମେ ଠାକୁରଙ୍କୁ ବଡ଼ କରି ଦେଖାଇବା ପାଇଁ କଥାଟି ଅତିରଞ୍ଜିତ କରି କହୁଅଛୁ । ଯଥାର୍ଥରେ ନିରପେକ୍ଷ ଭାବରେ ଯଦି କେହି ଠାକୁରଙ୍କର ଜୀବନ ଆଲୋଚନା କରନ୍ତି ତା'ହେଲେ ଦେଖିବାକୁ ପାଇବେ, ଏହି ଦୋଷରେ କେତେବେଳେ ମଧ୍ୟ ତାଙ୍କୁ ଲିପ୍ତ ହେବାକୁ ପଡ଼ିବ ନାହିଁ । ଏହି ଅଦ୍ଭୁତ ଅଲୌକିକ ଜୀବନର ଘଟଣାବଳୀ ଯିଏ ଯେତେଦୂର ପାରନ୍ତି ବିଚାର କରି ଦେଖନ୍ତୁ ନା କାହିଁକି, ଦେଖିବେ ବିଚାରଶକ୍ତି ହିଁ ପରିଶେଷରେ ହାରମାନି ସ୍ତମ୍ଭିତ ଓ ମୁଗ୍ଧ ହୋଇ ରହିଅଛି ! ଆମମାନଙ୍କ ମନ ମଧ୍ୟ କମ୍ ସନ୍ଦିଗ୍ଧ ନ ଥିଲା; ଆମମାନଙ୍କ ଭିତରୁ ଅନେକେ ଠାକୁରଙ୍କୁ ଯେଉଁଭାବରେ ପରୀକ୍ଷା କରିଛନ୍ତି ବର୍ତ୍ତମାନ ସମୟରେ କାହାର ମନ-ବୁଦ୍ଧିରେ ସେପରି ଭାବନା ଉଠିବ କି ନାହିଁ ବୋଲି ଆମର ସନ୍ଦେହ । ସେହି ପ୍ରକାରରେ ଠାକୁରଙ୍କୁ ସନ୍ଦେହ କରିବା ଏବଂ ପରୀକ୍ଷା କରିବାକୁ ଯାଇ ନିଜେ ହିଁ ପରାଜିତ ହୋଇ ଲଜ୍ଜାରେ ଅଧୋବଦନ ହେବା ଆମମାନଙ୍କ ମଧ୍ୟରୁ କେତେଲୋକଙ୍କର ଭାଗ୍ୟରେ ଯେ ଘଟିଥିଲା, ତାହା କହିହେବ ନାହିଁ । 'ଲୀଳାପ୍ରସଙ୍ଗରେ' ଏହି ବିଷୟର ସ୍ୱଳ୍ପ ଆଭାସ ଆମେ ପୂର୍ବରୁ ପାଠକଙ୍କୁ ଦେଇଅଛୁ, ପରେ ଆହୁରି ଅନେକ କଥା ଜଣାଇବୁ । ପାଠକ ସେତେବେଳେ ନିଜେ ବୁଝିପାରିବେ; ସେଥିପାଇଁ ଏବେ ଆଉ ଅଧିକ କହିବାର ଆବଶ୍ୟକତା ନାହିଁ ।

**''ଆଗେ ଫଳ, ତା'ପରେ ଫୁଲ ।'' ସମସ୍ତ ଅବତାରପୁରୁଷଙ୍କ ଜୀବନରେ ଏହି ଭାବ ବିଦ୍ୟମାନ ଥାଏ :**

''ଆଗେ ଫଳ, ତାପରେ ଫୁଲ—ଯେପରି କଖାରୁ''—ଠାକୁର ଏହି କଥାଟି ନିତ୍ୟମୁକ୍ତ ଈଶ୍ୱରକୋଟିମାନଙ୍କର ଜୀବନପ୍ରସଙ୍ଗରେ ସର୍ବଦା ହିଁ ବ୍ୟବହାର କରୁଥିଲେ । ଅର୍ଥାତ୍—ଏପରି ପୁରୁଷମାନେ ଜଗତକୁ ଆସି କୌଣସି ବିଷୟରେ ସିଦ୍ଧହେବା ନିମିତ୍ତ ଯାହା କିଛି ସାଧନା କରନ୍ତି, ତାହା କେବଳ ଇତର-

ସାଧାରଣଙ୍କୁ ବୁଝାଇଦେବା ପାଇଁ ଯେ, ଏହି ବିଷୟରେ ଏହି ପ୍ରକାର ଫଳଲାଭ ପାଇବାକୁ ହେଲେ ଏହିପ୍ରକାର ଚେଷ୍ଟା ସେମାନଙ୍କୁ କରିବାକୁ ହେବ । କାରଣ ଏପରି ପୁରୁଷମାନଙ୍କର ଜୀବନାଲୋଚନା କଲେ ଦେଖିବାକୁ ମିଳିଥାଏ ଯେ, ଯେଉଁ ଜ୍ଞାନଲାଭ ନିମିତ୍ତ ସେମାନେ ଏତେଚେଷ୍ଟା ଜୀବନରେ କରିଥାଆନ୍ତି, ସେହି ଜ୍ଞାନ ଜୀବନରେ ବିଦ୍ୟମାନ ରହିଲେ ସମସ୍ତ କର୍ମ ଯେପରି ଭାବରେ କରାଯାଏ, ଏହି ସମସ୍ତ ପୁରୁଷମାନେ ବାଲ୍ୟକାଳରୁ ଠିକ୍ ତଦ୍ରୂପ ବ୍ୟବହାର ହିଁ ସର୍ବତ୍ର ସମସ୍ତ ବିଷୟରେ କରିଆସିଛନ୍ତି । ସତେ ଯେପରି ଏହି ଜ୍ଞାନ ଲାଭ କରିବାର ଫଳ ସେମାନେ ପୂର୍ବରୁ ଆତ୍ମସାତ୍ କରି ରଖିଅଛନ୍ତି । ନିତ୍ୟମୁକ୍ତମାନଙ୍କ ସମ୍ବନ୍ଧରେ ହିଁ ଯେତେବେଳେ ଏକଥା ସତ୍ୟ, ସେତେବେଳେ ଈଶ୍ୱରାବତାରଙ୍କର କଥା ହିଁ ନାହିଁ । ସେମାନଙ୍କ ଜୀବନରେ ଏପରି ଜ୍ଞାନର ପ୍ରକାଶ ଆଜୀବନ ଦେଖିବାକୁ ମିଳିଥାଏ । ସମସ୍ତ ଦେଶରେ ସମସ୍ତ ଯୁଗରେ ଈଶ୍ୱରାବତାରମାନଙ୍କ ସମ୍ବନ୍ଧରେ ହିଁ ଶାସ୍ତ୍ର ଏକଥା ସତ୍ୟ ବୋଲି ଲିପିବଦ୍ଧ କରିଅଛି । ପୁଣି ଏହା ମଧ୍ୟ ଦେଖାଯାଏ ଯେ, ଭିନ୍ନ ଭିନ୍ନ ଯୁଗର ଈଶ୍ୱରାବତାରମାନଙ୍କର ଅନେକ ବ୍ୟବହାର ମଧ୍ୟରେ ଏକ ସାମଞ୍ଜସ୍ୟ ଅଛି । ଯଥା — ସ୍ପର୍ଶଦ୍ୱାରା ଧର୍ମଜୀବନ ସଞ୍ଚାରର କଥା — ଯୀଶୁ, ଶ୍ରୀଚୈତନ୍ୟ ଓ ଶ୍ରୀରାମକୃଷ୍ଣ ସମସ୍ତଙ୍କର ଜୀବନରେ ଏହା ଦେଖିବାକୁ ମିଳେ । ସେହିପରି ସେମାନଙ୍କର ଜନ୍ମଗ୍ରହଣ ସମୟରେ ବିଶେଷ ବିଶେଷ ଧର୍ମପରାୟଣ ବ୍ୟକ୍ତିଙ୍କର ଅଲୌକିକ ଉପାୟରେ ସେହି ବିଷୟରେ ଜ୍ଞାନ ହେବା କଥା ବାଲ୍ୟକାଳରୁ ସେମାନଙ୍କ ଭିତରେ ଗୁରୁଭାବ ପ୍ରକାଶିତ ହେବାର କଥା, ସେମାନେ ଯେ ସାଧାରଣ ମନୁଷ୍ୟକୁ ଉନ୍ନତ କରିବା ନିମନ୍ତେ ବିଶେଷ ବିଶେଷ ପଥ ପ୍ରଦର୍ଶନ କରିବାକୁ କୃପାକରି ଅବତୀର୍ଣ୍ଣ ହୋଇଛନ୍ତି, ଏହି ବିଷୟଟି ବାଲ୍ୟାବଧି ଉପଲବ୍ଧି କରିବା ପ୍ରଭୃତି ଅନେକ କଥା ହିଁ ସମାନ ଦେଖିବାକୁ ମିଳେ । ଅତଏବ ଠାକୁରଙ୍କ ଜୀବନରେ ବାଲ୍ୟକାଳରୁ ଗୁରୁଭାବର ପ୍ରକାଶ ହେବା ଶୁଣି ଆଶ୍ଚର୍ଯ୍ୟ ହେବାର କୌଣସି କାରଣ ନାହିଁ । କାରଣ 'ଅବତାର' ପୁରୁଷମାନଙ୍କର ସ୍ତର ବା ଶ୍ରେଣୀ ହିଁ ଏକ ବ୍ୟତିକ୍ରମ । ସାଧାରଣ ମନୁଷ୍ୟ ଜୀବନରେ ଏପରି ଘଟଣା କେବେ ସମ୍ଭବ ହୁଏ ନାହିଁ ବୋଲି ଅବତାରପୁରୁଷମାନଙ୍କର ଜୀବନରେ ଏପରି ହେବା ଅସମ୍ଭବ ମନେ କଲେ ମହା ଭ୍ରମରେ ପତିତ ହେବାକୁ ପଡ଼ିବ ।

**ଠାକୁରଙ୍କ ଜୀବନରେ ଗୁରୁଭାବର ପ୍ରଥମ ବିକାଶ — କାମାରପୁକୁରରେ ଲାହାବାବୁଙ୍କ ଘରେ ପଣ୍ଡିତସଭାରେ ଶାସ୍ତ୍ର ବିଚାର :**

ଠାକୁରଙ୍କ ଜୀବନରେ ଗୁରୁଭାବର ପ୍ରଥମ ଜ୍ୱଳନ୍ତ ନିଦର୍ଶନ ତାଙ୍କର ଜନ୍ମଭୂମି କାମାରପୁକୁରରେ ଦେଖିବାକୁ ମିଳିଥିଲା । ତାଙ୍କର ସେତେବେଳେ ଉପନୟନ ହୋଇଯାଇଛି; ଅତଏବ ବୟସ ୯/୧୦ ବର୍ଷ ହେବ । ଗ୍ରାମର ଜମିଦାର

ଲାହାବାବୁଙ୍କ ଘରେ ଶ୍ରାଦ୍ଧଉପଲକ୍ଷେ ସେଅଞ୍ଚଳର ଖ୍ୟାତନାମା ପଣ୍ଡିତମାନଙ୍କୁ ନିମନ୍ତ୍ରଣ କରାହୋଇଥିଲା ଏବଂ ଅନେକ ପଣ୍ଡିତଙ୍କର ଏକତ୍ର ସମାବେଶ ହେଲେ ଯାହା ହୁଏ, ସେହିଭଳି ବିଭିନ୍ନ ବିଷୟରେ ଖୁବ୍ ତର୍କ ଆରମ୍ଭ ହୋଇଥିଲା । ଅନେକ ତର୍କ ପରେ ମଧ୍ୟ କୌଣସି ଗୋଟିଏ ଶାସ୍ତ୍ରୀୟ-ପ୍ରଶ୍ନର ମୀମାଂସା ହେଉ ନ ଥିଲା । ଏପରି ସମୟରେ ବାଳକ ଗଦାଧର ବା ଶ୍ରୀରାମକୃଷ୍ଣ, ପରିଚିତ ଜଣୈକ ପଣ୍ଡିତଙ୍କୁ କହିଲେ, ‘‘କଥାଟାର ଏପରି ଭାବରେ ମୀମାଂସା ହୋଇପାରିବ ନାହିଁ କି ?’’ ସଭା ସମୟରେ ଗ୍ରାମର ଅନେକ ପିଲା କୌତୁହଳବଶତଃ ସେଠାକୁ ଆସିଥିଲେ ଏବଂ ନାନାପ୍ରକାର ଅଙ୍ଗଭଙ୍ଗୀ ଦ୍ୱାରା ପଣ୍ଡିତମାନଙ୍କର ଉଚ୍ଚସ୍ୱରରେ ବାକ୍‌ଯୁଦ୍ଧର ବିନ୍ଦୁମାତ୍ର ଅର୍ଥବୋଧ ନ ହେବାରୁ କେହି କେହି ଏହାକୁ ରଙ୍ଗରସ ଭାବି ହସୁଥିଲେ, କେହି ବା ବିରକ୍ତ ହୋଇ ପଣ୍ଡିତମାନଙ୍କର ଅଙ୍ଗଭଙ୍ଗୀର ଅନୁକରଣ କରି ହାସ୍ୟକୌତୁକ କରୁଥିଲେ, ଆଉ ମଧ୍ୟ କେହି କେହି ଏକଥାରେ ମନ ନ ଦେଇ ଖେଳ କୌତୁକରେ ମାତିଥିଲେ । ମାତ୍ର ଉକ୍ତ ଅପୂର୍ବ ବାଳକଟି ଯେ ପଣ୍ଡିତମାନଙ୍କର ସମସ୍ତ କଥା ଧୈର୍ଯ୍ୟ ସହକାରେ ଶୁଣିଛି, ବୁଝିଛି ଓ ମନରେ ଭାବି ଏକ ସୁମୀମାଂସାରେ ଉପନୀତ ହୋଇଅଛି, ଏହା ଭାବି ପଣ୍ଡିତ ଜଣକ ପ୍ରଥମେ ଅବାକ୍ ହୋଇଗଲେ; ଏହାପରେ ନିଜର ପରିଚିତ ପଣ୍ଡିତମାନଙ୍କ ନିକଟରେ ଗଦାଧରଙ୍କ ମୀମାଂସା କଥା କହିବାକୁ ଲାଗିଲେ; ତାହାପରେ ସେମାନେ ସମସ୍ତେ ତାହା ହିଁ ସେହି ବିଷୟର ଏକମାତ୍ର ମୀମାଂସା ବୁଝି ଅନ୍ୟାନ୍ୟ ସମସ୍ତ ପଣ୍ଡିତମାନଙ୍କୁ ସେହି ବିଷୟ ବୁଝାଇ କହିଲେ । ସେତେବେଳେ ସେହି ପ୍ରଶ୍ନର ତାହା ହିଁ ଯେ ଏକମାତ୍ର ସମାଧାନ ତାହା ସମସ୍ତେ ହିଁ ଏକବାକ୍ୟରେ ସ୍ୱୀକାର କଲେ । କାହାର ତୀକ୍ଷ୍ଣ ବୁଦ୍ଧି ଏହି ଅପୂର୍ବ ସମାଧାନ ପ୍ରଥମ ଦେଖିବାକୁ ପାଇଲା, ତାହାର ଅନୁସନ୍ଧାନ କରିବାକୁ ଲାଗିଲେ; ଏବଂ ଯେତେବେଳେ ନିଶ୍ଚିତ ରୂପେ ଜାଣିପାରିଲେ, ବାଳକ ଗଦାଧର ହିଁ ତାହା କରିଛି, ସେତେବେଳେ କେହି କେହି ସ୍ତମ୍ଭିତ ହୋଇ ବାଳକକୁ ଦୈବୀଶକ୍ତିସମ୍ପନ୍ନ ଭାବି ତା’ ଆଡ଼କୁ ଚାହିଁ ରହିଲେ, ଆହୁରି ମଧ୍ୟ କେହି ବା ଆନନ୍ଦିତହୋଇ ବାଳକକୁ କୋଳକୁ ନେଇ ଆଶୀର୍ବାଦ କରିବାକୁ ଲାଗିଲେ !

**ଈଶାଙ୍କର ଜୀବନରେ ଏପରି ଘଟଣା ।**
**ଜେରୁଜେଲମର ଯାଭେ ମନ୍ଦିର :**

ଏହା ସମ୍ବନ୍ଧରେ ଆଉ କିଛି ଆଲୋଚନା ଆବଶ୍ୟକ । ଖ୍ରୀଷ୍ଟିଆନ ଧର୍ମ -ପ୍ରବର୍ତ୍ତକ ଭଗବାନଙ୍କ ଅବତାର ଈଶାଙ୍କର ଜୀବନରେ ଠିକ୍ ଏପରି ଗୋଟିଏ କଥା ବାଇବେଲଂରେ ଲିପିବିଦ୍ଧ ଅଛି । ତାଙ୍କର ବୟସ ସେତେବେଳେ ବାରବର୍ଷ, ତାଙ୍କର ଦରିଦ୍ର ତଥା ଧର୍ମପରାୟଣ ପିତାମାତା ୟୁସୁଫ୍ ଓ ମେରି ସେହି ସମୟରେ ତାଙ୍କୁ ନେଇ ଅନ୍ୟାନ୍ୟ ଯାତ୍ରୀମାନଙ୍କ ସହିତ ପଦବ୍ରଜରେ ନିଜର ବାସସ୍ଥାନ ଗ୍ୟାଲିଲି

୧. ଲ୍ୟୁକ ୨—୪୨

ପ୍ରଦେଶସ୍ଥ ନାଜାରେଥ୍ ନାମକ ପ୍ରସିଦ୍ଧ ଗ୍ରାମରୁ ଜେରୁଜେଲମ ତୀର୍ଥର ସୁବିଖ୍ୟାତ ମନ୍ଦିରରେ ଦେବାର୍ଚ୍ଚନ ଓ ପୂଜା ବଳି ଇତ୍ୟାଦି ଦେବାପାଇଁ ଯାତ୍ରା କରିଥିଲେ । ଇହୁଦୀମାନଙ୍କର ଏହି ତୀର୍ଥ ହିନ୍ଦୁମାନଙ୍କର ତୀର୍ଥପରି ଥିଲା । ଏଠାରେ ସୁବର୍ଣ୍ଣ ବାକ୍ସରେ ୟାଭେ। ଦେବତାଙ୍କର ଆବିର୍ଭାବ ଭକ୍ତ-ସାଧକ ପ୍ରତ୍ୟକ୍ଷ କରି ନିଜକୁ କୃତାର୍ଥ ଜ୍ଞାନ କରୁଥିଲେ; ଏବଂ ଏହାର ସମ୍ମୁଖରେ ଗୋଟିଏ ବେଦୀ ଉପରେ ଧୂପ, ଝୁଣା ଜଳାଇ ପତ୍ର-ପୁଷ୍ପ-ଫଳ-ମୂଳ ଓ ମେଷ-ପାରା ପ୍ରଭୃତି ପଶୁ ପକ୍ଷୀ ଇତ୍ୟାଦି ବଳିଦେଇ ଉକ୍ତ ଦେବତାଙ୍କର ପୂଜା କରୁଥିଲେ । ହିନ୍ଦୁମାନଙ୍କର କାମାକ୍ଷା ପୀଠ ଓ ବିନ୍ଧ୍ୟବାସିନୀ ପ୍ରଭୃତି ତୀର୍ଥରେ ଏପରି ପାରା ଇତ୍ୟାଦି ପକ୍ଷୀ ବଳି ପ୍ରଦାନର ପ୍ରଥା ଏପର୍ଯ୍ୟନ୍ତ ପ୍ରଚଳିତ ଅଛି ।

## ସେକାଳର ଇହୁଦୀ ତୀର୍ଥଯାତ୍ରୀ :

ଇୟୁସୁଫ୍ ଓ ମେରୀ ଶାସ୍ତ୍ରାନୁସାରେ ଦର୍ଶନ, ପୂଜା, ବଳି ଓ ହୋମାଦି କ୍ରିୟା ସମ୍ପନ୍ନ କରି ସଙ୍ଗୀମାନଙ୍କ ସହିତ ନିଜର ଗ୍ରାମ ଅଭିମୁଖେ ଯାତ୍ରା କଲେ । ସେ ସମୟରେ ନାନାଦେଶରୁ ଜେରୁଜେଲମ ଦର୍ଶନରେ ଆଗତ ଯାତ୍ରୀମାନଙ୍କର ଅବସ୍ଥା, ଅନେକାଂଶରେ, ରେଳ ହେବା ପୂର୍ବରୁ ପଦବ୍ରଜରେ ପୁରୀ ପ୍ରଭୃତି ତୀର୍ଥ ଦର୍ଶନରେ ଯିବା ଯାତ୍ରୀଙ୍କ ପରି ଥିଲା । ମଝିରେ ମଝିରେ ବୃକ୍ଷ-କୂପ-ତଡ଼ାଗାଦିଶୋଭିତ ଏକ ସୁଦୀର୍ଘପଥ, ଏବଂ ତାସହିତ ମଝିରେ ମଝିରେ ବିଶ୍ରାମସ୍ଥାନ, ଚଟୀ ଧର୍ମଶାଳା ଆଦିର ଅଭାବ ନ ଥିଲା ବୋଲି ଶୁଣାଯାଏ । ତୀର୍ଥଯାତ୍ରୀମାନଙ୍କର ସହଚର ପଣ୍ଡା, ଚାଉଳ-ଡାଲି-ଅଟା ପ୍ରଭୃତି ନିତାନ୍ତ ଆବଶ୍ୟକୀୟ ଖାଦ୍ୟଦ୍ରବ୍ୟାଦିର ପ୍ରାପ୍ତିସ୍ଥାନ ତେଜରାତି ଦୋକାନ, ଧୂଳି, ଧର୍ମଭାବବିସ୍ମରଣକାରୀ ନିଦ୍ରାଳସ୍ୟର ବୈରୀ ହୋଇଥିବାରୁ ଯାତ୍ରୀମାନଙ୍କର ପରମବନ୍ଧୁ ମଶା, ବିଶେଷ ବିଶେଷ ଅଞ୍ଚଳର ଦସ୍ୟୁ-ତସ୍କରାଦିଠାରୁ ପରସ୍ପର ସାହାଯ୍ୟ ଲାଭ କରିପାରିବେ ବୋଲି ଯାତ୍ରୀମାନଙ୍କର ଦଳବଦ୍ଧ ହୋଇ ଗମନ ଏବଂ ପରିଶେଷରେ ସେହି ଯାତ୍ରୀମାନଙ୍କର ଏକାନ୍ତ ଈଶ୍ୱରନିର୍ଭରତା ଓ ଭଗବଦ୍‌ଭକ୍ତି—ଏସମସ୍ତ ବିଦ୍ୟମାନ ଥିଲା ।

## ୟାଭେ-ମନ୍ଦିରରେ ଈଶାଙ୍କର ଶାସ୍ତ୍ରବାଖ୍ୟା :

ଈଶାଙ୍କର ପିତା-ମାତା ନିଜର ଦଳରେ ପ୍ରତ୍ୟାବର୍ତ୍ତନ ସମୟରେ ଈଶାଙ୍କୁ ପାଖରେ ନ ଦେଖି ଭାବିଲେ, ବୋଧହୁଏ ବାଳକ ଅନ୍ୟ କୌଣସି ଯାତ୍ରୀଦଳ ସହିତ ଦଳର ପଛରେ ଆସୁଛନ୍ତି । କିନ୍ତୁ ଅନେକ ଦୂର ଆସି ମଧ୍ୟ ଯେତେବେଳେ ଈଶାଙ୍କୁ ଦେଖିପାରିଲେ ନାହିଁ, ସେତେବେଳେ ବିଶେଷ ଚିନ୍ତିତ ହୋଇ ତନ୍ନ ତନ୍ନ କରି ଦଳ ମଧ୍ୟରେ ଅନ୍ୱେଷଣ କରି ଦେଖିଲେ ଈଶା ସେମାନଙ୍କ ସହିତ ନାହିଁ । ଏଣୁ ଅତ୍ୟନ୍ତ ବ୍ୟାକୁଳ ହୋଇ ପୁଣି ଜେରୁଜେଲମ ଅଭିମୁଖେ ପ୍ରତ୍ୟାବର୍ତ୍ତନ କଲେ । ସେଠାରେ ନାନା ସ୍ଥାନରେ ଅନୁସନ୍ଧାନ କରି ମଧ୍ୟ କେଉଁଠାରେ ମଧ୍ୟ ବାଳକର

ସନ୍ଧାନ ପାଇ ପାରିଲେ ନାହିଁ । ପରିଶେଷରେ ମନ୍ଦିର ମଧ୍ୟରେ ଖୋଜିବାକୁ ଯାଇ ଦେଖିଲେ ବାଳକ ଈଶା ଶାସ୍ତ୍ରଜ୍ଞ ସାଧକମାନଙ୍କ ଭିତରେ ବସି ଶାସ୍ତ୍ରବିଚାର କରୁଅଛି ଏବଂ ଶାସ୍ତ୍ରର ଜଟିଳ ପ୍ରଶ୍ନଗୁଡ଼ିକର (ଯାହା ପଣ୍ଡିତମାନେ ସମାଧାନ କରିପାରୁ ନ ଥିଲେ) ଅପୂର୍ବ ବ୍ୟାଖ୍ୟା କରି ସମସ୍ତଙ୍କୁ ମୋହିତ କରୁଅଛି ।

**ପଣ୍ଡିତ ମାକ୍ସମୁଲରଙ୍କର ମତ ଖଣ୍ଡନ :**

ପଣ୍ଡିତ ମାକ୍ସମୁଲରଙ୍କ ସ୍ୱରଚିତ ଶ୍ରୀରାମକୃଷ୍ଣଙ୍କ ଜୀବନୀରେ ଶ୍ରୀରାମକୃଷ୍ଣଙ୍କର ପୂର୍ବୋକ୍ତ ବାଲ୍ୟଲୀଳା ସହିତ ଈଶାଙ୍କର ବାଲ୍ୟଲୀଳାର ସାମଞ୍ଜସ୍ୟ ପାଇ ଏବିଷୟର ସତ୍ୟତାରେ ବିଶେଷ ସନ୍ଦିହାନ ହୋଇଥିଲେ । କେବଳ ସେତିକି ନୁହେଁ, ଟିକିଏ କଟାକ୍ଷ କରିକହିଥିଲେ ଯେ, ଶ୍ରୀରାମକୃଷ୍ଣଙ୍କର ଇଂରାଜୀ ଭାଷାରେ ଅଭିଜ୍ଞ ଶିଷ୍ୟମାନେ ଗୁରୁଙ୍କର ମାନ ବଢ଼ାଇବା ପାଇଁ ଈଶାଙ୍କର ବାଲ୍ୟଲୀଳା କଥାଟି ଶ୍ରୀରାମକୃଷ୍ଣଙ୍କ ସହିତ ଇଚ୍ଛା କରି ଯୋଡ଼ି ଦେଇଛନ୍ତି । ପଣ୍ଡିତ ଏପରି ନିଜର ତୀକ୍ଷ୍ଣ ବୁଦ୍ଧିମତ୍ତାର ପରିଚୟ ଦେଲେ ମଧ୍ୟ ଆମେ ନାଚାର, କାରଣ ଶ୍ରୀରାମକୃଷ୍ଣଙ୍କର ଏପରି ବାଲ୍ୟଲୀଳା କଥା ଆମେ ଠାକୁରଙ୍କର ଜନ୍ମଭୂମି କାମାରପୁକୁରର ଅନେକ ବୃଦ୍ଧ ବ୍ୟକ୍ତିଙ୍କ ମୁହଁରୁ ଶୁଣିଅଛୁ ଏବଂ ଠାକୁରେ ନିଜେ ମଧ୍ୟ କେତେବେଳେ କେତେବେଳେ ଏବିଷୟ ଆମମାନଙ୍କ ମଧ୍ୟରୁ କାହା କାହା ନିକଟରେ ନିଜ ମୁହଁରେ କହିଛନ୍ତି । ଏହି ପର୍ଯ୍ୟନ୍ତ ବର୍ଣ୍ଣନା କରି ଏବିଷୟରେ କ୍ଷାନ୍ତ ରହିବା ଉଚିତ ।

**ଠାକୁର ବିବାହ କାହିଁକି କଲେ ? ଆତ୍ମୀୟ ସ୍ୱଜନଙ୍କ ଅନୁରୋଧରେ ?—ନା :**

ଠାକୁରଙ୍କ ଜୀବନ ଆଲୋଚନା କରିବାକୁ ଯାଇ ସମସ୍ତଙ୍କର ମନରେ ଗୋଟିଏ ପ୍ରଶ୍ନ ଉଠିଥାଏ—ଠାକୁର କାହିଁକି ବିବାହ କଲେ ? ସ୍ତ୍ରୀଙ୍କ ସହିତ ଯାହାର କୌଣସି ସମୟରେ ଶାରୀରିକ ସମ୍ବନ୍ଧ ରଖିବାର ସଙ୍କଳ୍ପ ନ ଥିଲା, ସେ କାହିଁକି ବିବାହ କଲେ, ଏହାର କାରଣ ବାସ୍ତବରେ ଖୋଜି ପାଇବା କଠିନ । ଯଦି କୁହାଯାଏ ଯୌବନରେ ପଦାର୍ପଣ କରି ଠାକୁର ଭଗବାନ, ଭଗବାନ କରି ଉନ୍ମାଦ ପରି ହେବାରୁ ଆତ୍ମୀୟମାନେ ଜୋର କରି ବିବାହ ଦେଲେ, ଏହାର ଉତ୍ତରରେ ଆମେ କହିବୁ, ଏକଥା ଠିକ୍ ନୁହେଁ । ଜୋର କରି ତାଙ୍କୁ ପିଲାଟି ଦିନରୁ କେହି କୌଣସି କାମ କରାଇପାରି ନାହାନ୍ତି । ଯେତେବେଳେ ଯାହା କରିବେ ବୋଲି ମନରେ ଭାବିଥାଆନ୍ତି, ତାହା କୌଣସି ନା କୌଣସି ଉପାୟରେ ନିଶ୍ଚିତ ଭାବରେ ସାଧିତ କରୁଥିଲେ । ଉପନୟନ ସମୟରେ ଧନୀନାମକ ଏକ କମାର ଜାତିର ମହିଳାଙ୍କୁ ଭିକ୍ଷା ମାତା କରିବାରେ ହିଁ ଏହା ଦେଖାଯାଏ । କାମାରପୁକୁରରେ କଲିକତା ପରି ସମାଜ-ବନ୍ଧନ ଶିଥିଳ ନ ଥିଲା ଯେ, ଯାହାର ଯାହାଇଚ୍ଛା ତାହା

ହିଁ କରିବ; ଠାକୁରଙ୍କର ପିତାମାତା ମଧ୍ୟ କମ୍ ସ୍ୱଧର୍ମନିଷ୍ଠ ନ ଥିଲେ, ବଂଶଗତ ପ୍ରଥା ମଧ୍ୟ ଥିଲା ଯେ, କୌଣସି ନା କୌଣସି ବ୍ରାହ୍ମଣ କନ୍ୟାକୁ ଭିକ୍ଷାମାତା ରୂପେ ନିର୍ଦ୍ଦିଷ୍ଟ କରିବା ଏବଂ ବାଳକ ଗଦାଧରଙ୍କର ଅଭିଭାବକମାନେ ସମସ୍ତେ ହିଁ ବାଳକର କମାରକନ୍ୟା ନିକଟରୁ ପ୍ରଥମ ଭିକ୍ଷା ଗ୍ରହଣ କରିବା ବିରୋଧରେ ଥିଲେ । ତଥାପି କେବଳ ଗଦାଧରର ଜିଦ୍‌ରେ ଧନୀର ଭିକ୍ଷାମାତା ହେବା ସାବ୍ୟସ୍ତ ହୋଇଥିଲା—ଏହା କିଛି କମ୍ ଆଶ୍ଚର୍ଯ୍ୟର ବିଷୟ ନୁହେଁ ! ଏହପରି ସମସ୍ତ ଘଟଣାବଳୀ ଯେତେବେଳେ ଦେଖିବାକୁ ମିଳେ, ଠାକୁରଙ୍କର ଇଚ୍ଛା ଓ କଥାଗୁଡ଼ିକ ଅନ୍ୟ ସମସ୍ତଙ୍କର ବିପରୀତ ଭାବ ଓ ଇଚ୍ଛାକୁ ଚିରକାଳ ବଦଳାଇ ଦେଇଛି, ତେଣୁ କିପରି କହିବୁ ଯେ ତାଙ୍କର ଜୀବନର ଏତେ ବଡ଼ ଘଟଣା ଆତ୍ମୀୟମାନଙ୍କର ଇଚ୍ଛା ବା ଅନୁରୋଧରେ ହୋଇଛି ?

### ଭୋଗବାସନା ଥିଲା ବୋଲି ?—ନା :

ପୁଣି ଯଦି କୁହାଯାଏ, ''ଈଶ୍ୱରଙ୍କ ପ୍ରତି ଅନୁରାଗରେ ସର୍ବସ୍ୱ ତ୍ୟାଗର ଭାବ ଯେ ଠାକୁରଙ୍କର ଆଜୀବନ ଥିଲା'', ଏକଥା ସ୍ୱୀକାର କରିବାର ଆବଶ୍ୟକତା କ'ଣ ? ଏକଥାଟି ସ୍ୱୀକାର ନ କରି ଯଦି କୁହାଯାଏ ଯେ, ସାଧାରଣ ମନୁଷ୍ୟଙ୍କ ପରି ଠାକୁରଙ୍କର ବିବାହ କରି ସଂସାର-ସୁଖଭୋଗ କରିବାର ଇଚ୍ଛା ପ୍ରଥମରେ ଥିଲା, କିନ୍ତୁ ଯୌବନରେ ପଦାର୍ପଣ କରି ତାଙ୍କର ମନର ଗତିର ହଠାତ୍ ଆମୂଳ ପରିବର୍ତ୍ତନ ଆସିଲା; ସଂସାର-ବୈରାଗ୍ୟ ଓ ଈଶ୍ୱରାନୁରାଗର ଏକ ପ୍ରବଳ ଝଡ଼ ତାଙ୍କର ପ୍ରାଣରେ ପ୍ରବାହିତ ହୋଇ ତାଙ୍କୁ ଏପରି ଆତ୍ମହରା କରିଦେଲା ଯେ, ତାଙ୍କର ପୂର୍ବର ବାସନାସମୂହ ଚିରକାଳ ପାଇଁ ସମ୍ପୂର୍ଣ୍ଣ ଉଭେଇ ଗଲା । ଠାକୁରଙ୍କର ବିବାହ, ସେହି ବିରାଗ-ଅନୁରାଗର ଝଡ଼ ପ୍ରବାହିତ ହେବାର ପୂର୍ବରୁ ହୋଇଥିଲା ବୋଲି କହିଲେ ଏସମସ୍ତ କଥାର ଅନ୍ତ ହୋଇଯିବ ! ଆମେ କହୁ— ଏହି କଥା ବେଶ୍ ଯୁକ୍ତିଯୁକ୍ତ ବୋଧ ହେଲେ ହେଁ ଏହାର ବିରୁଦ୍ଧରେ କେତେଗୁଡ଼ିଏ ଅଖଣ୍ଡନୀୟ ଆପତ୍ତି ଅଛି ।

### ବିବାହର ପାତ୍ରୀ ଅନ୍ୱେଷଣ ସମୟରେ ଠାକୁରଙ୍କ କଥା— ''କୁଟା ବନ୍ଧାହୋଇ ରହିଛି, ଯାଇ ଦେଖ ।'' ଅତଏବ ନିଜ ଇଚ୍ଛାରେ ବିବାହ କରିବା :

ପ୍ରଥମତଃ—ଚବିଶ ବର୍ଷ ବୟସରେ ଠାକୁରଙ୍କର ବିବାହ ହୁଏ, ସେତେବେଳେ ବୈରାଗ୍ୟର ଝଡ଼ ତାଙ୍କ ପ୍ରାଣରେ ତୁମୁଳ ଭାବରେ ପ୍ରବାହିତ ହେଉଥିଲା । ଆହୁରି ମଧ୍ୟ ନିଜ ପାଇଁ ଯିଏ ଆଜୀବନ କାହାକୁ ସାମାନ୍ୟ କଷ୍ଟ ଦେବାକୁ କୁଣ୍ଠିତ ହେଉଥିଲେ, ସେ ଯେ କିଛି ମାତ୍ର ନ ଭାବି ଜଣେ ପରଘରର ଝିଅର ଚିରକାଳ ଦୁଃଖ-ଭୋଗର ସମ୍ଭାବନା ବୁଝି ମଧ୍ୟ ଏକାର୍ଯ୍ୟରେ ଅଗ୍ରସର

ହୋଇଥିଲେ, ଏହା ହୋଇ ନ ପାରେ । ଦ୍ୱିତୀୟ କଥା—ଠାକୁରଙ୍କ ଜୀବନରେ କୌଣସି ଘଟଣା ଯେ ନିରର୍ଥକ ହୋଇ ନାହିଁ, ଏକଥା ଆମେ ଯେତେ ବିଚାର କରି ଦେଖୁ ସେତେ ବୁଝିପାରୁ । ତୃତୀୟରେ—ସେ ଇଚ୍ଛା କରି ଯେ ବିବାହ କରିଥିଲେ ଏକଥା ସୁନିଶ୍ଚିତ; କାରଣ ବିବାହର ପାତ୍ରୀ ଅନୁସନ୍ଧାନ ସମୟରେ ନିଜର ଭଣଜା ହୃଦୟ ଓ ଘରର ଅନ୍ୟସମସ୍ତଙ୍କୁ ସେ କହିଥିଲେ ଯେ, ତାଙ୍କର ବିବାହ ଜୟରାମବାଟୀ ନିବାସୀ ଶ୍ରୀଯୁକ୍ତ ରାମଚନ୍ଦ୍ର ମୁଖୋପାଧ୍ୟାୟଙ୍କ କନ୍ୟା ସହିତ ହେବ—ଏହା ପୂର୍ବରୁ ନିର୍ଦ୍ଦିଷ୍ଟ ଅଛି । ଏହା ଶୁଣି ପାଠକ ଆଶ୍ଚର୍ଯ୍ୟ ହେବେ, ଅଥବା ଅବିଶ୍ୱାସ କରି କହିବେ—"ଏହା କେବଳ ଅଦ୍ଭୁତ କଥାର ଅବତାରଣା ! ବିଂଶ ଶତାବ୍ଦୀରେ ଏହା କ'ଣ ସମ୍ଭବ ?" ଏହାର ଉତ୍ତରରେ ଆମକୁ କହିବାକୁ ହେବ, "ତୁମେ ବିଶ୍ୱାସ କର ବା ନ କର ବାବୁ, କିନ୍ତୁ ଏଘଟଣାଟି ବାସ୍ତବରେ ଏପରି ହୋଇଥିଲା । ଏବେ ମଧ୍ୟ ଅନେକେ ବଞ୍ଚିଛନ୍ତି ଯେଉଁମାନେ ଏବିଷୟରେ ସାକ୍ଷ୍ୟ ଦେବେ । ଅନୁସନ୍ଧାନ କରି ଦେଖୁ ନାହଁ କାହିଁକି ?" ପାତ୍ରୀ ଖୋଜାରେ ଯେତେବେଳେ କୌଣସି ପାତ୍ରୀ ଆତ୍ମୀୟମାନଙ୍କର ମନମୁତାବକ ହେଉ ନ ଥିଲା, ସେତେବେଳେ ଠାକୁର ସ୍ୱୟଂ କହିଥିଲେ ଯେ ଅମୁକ ଗ୍ରାମର ଅମୁକ ଲୋକଙ୍କର ଝିଅଟି କୁଟାବନ୍ଧା[୧] ହୋଇ ରଖାହୋଇଛି, ଯାଇ ଦେଖ !" ଅତଏବ ଏଥିରୁ ବୁଝାଯାଉଛି ଯେ, ଠାକୁର ଜାଣିପାରିଥିଲେ, ତାଙ୍କର ବିବାହ କେଉଁଠାରେ କାହାର ଝିଅ ସହିତ ହେବ । ସେ ସେଥିରେ କୌଣସି ଆପତ୍ତି କରିନାହାନ୍ତି । ଅବଶ୍ୟ ଏପରି ଜାଣିପାରିବା ତାଙ୍କର ଭାବସମାଧି ସମୟରେ ହିଁ ହୋଇଥିଲା ।

## ପ୍ରାରବ୍ଧ କର୍ମ ଭୋଗ ପାଇଁ କ'ଣ ଠାକୁରଙ୍କ ବିବାହ ?

ତେବେ ଠାକୁରଙ୍କର ବିବାହ କରିବାର ଅର୍ଥ କ'ଣ ? ଶାସ୍ତ୍ରଜ୍ଞ କୌଣସି ପାଠକ ଆମ କଥାରେ ହୁଏତ ବିରକ୍ତ ହୋଇ କହିବେ—ତୁମେ ତ ଅତ୍ୟନ୍ତ ଅଳ୍ପବୁଦ୍ଧିସମ୍ପନ୍ନ ଜଣାପଡୁଛ ! ସାମାନ୍ୟ କଥାକୁ ନେଇ ଏତେ ଖୋଳତାଡ଼ କରୁଛ ? ଶାସ୍ତ୍ର-ଫାସ୍ତ୍ର ଟିକିଏ ଅଧେ ଦେଖି ସାଧୁ-ମହାପୁରୁଷଙ୍କର ଜୀବନର ଘଟଣା ଲେଖିବା ପାଇଁ କଲମ ଧରିବାକୁ ହୁଏ । ଶାସ୍ତ୍ର କହେ—ଈଶ୍ୱର ଦର୍ଶନ ବା ପୂର୍ଣ୍ଣ ଜ୍ଞାନ ହେଲେ, ଜୀବର ସଞ୍ଚିତ ଓ ଆଗାମୀ କର୍ମର କ୍ଷୟ ହୁଏ, କିନ୍ତୁ ପ୍ରାରବ୍ଧ କର୍ମର ଭୋଗ ଜୀବର ଜ୍ଞାନ ଲାଭ ହେଲେ ମଧ୍ୟ ଏହି ଦେହରେ ହିଁ କରିବାକୁ

---

୧. ଗ୍ରାମାଞ୍ଚଳରେ ପ୍ରଥା ଅଛି, କାକୁଡ଼ି ପ୍ରଭୃତି ଗଛର ଯେଉଁ ଫଳଟି ଭଲ ହୋଇଥାଏ ତାହା ଭଗବାନଙ୍କୁ ଭୋଗ ଦେବା ପାଇଁ କୃଷକ ମନେ କରେ ଏବଂ ମନେ ରଖିବା ପାଇଁ ତାହା ଉପରେ ଗୋଟିଏ କୁଟା ବାନ୍ଧି ଚିହ୍ନିତ କରି ରଖେ । ଏପରି କରିବା ଦ୍ୱାରା କୃଷକ ନିଜେ କିମ୍ବା ତାହାର ପରିବାରର ଅନ୍ୟ କେହି ଭୁଲ୍‌ବଶତଃ ମଧ୍ୟ ତାହା ତୋଳି ବିକ୍ରୟ କରନ୍ତି ନାହିଁ । ଠାକୁର ଏହି କଥା ସ୍ମରଣ କରି ଏପରି କଥା କହିଛନ୍ତି । ଅର୍ଥ-ଅମୁକର ଝିଅ ସହିତ ତାଙ୍କର ବିବାହ ହେବ ଏକଥା ପୂର୍ବରୁ ସ୍ଥିର ହୋଇଛି; ଅଥବା ଅମୁକ କନ୍ୟା ତାଙ୍କର ବିବାହର ପାତ୍ରୀ ସ୍ୱରୂପ ଦୈବକର୍ତ୍ତୃକ ରକ୍ଷିତ ଅଛି ।

ହୁଏ । ଗୋଟିଏ ବ୍ୟାଧର ପିଠିରେ ବନ୍ଧା ତୂଣୀରରେ କେତେଗୁଡ଼ିଏ ତୀର ଅଛି, ସେଥିମଧ୍ୟରୁ ହାତରେ ଗୋଟିଏ ତୀର ନେଇ ବର୍ତ୍ତମାନ ଛାଡ଼ିବ ବୋଲି ନେଇଛି, ଆଉ ଗୋଟିଏ ତୀର ବୃକ୍ଷ ଉପରେ ବସିଥିବା ପକ୍ଷୀଟିକୁ ଲକ୍ଷ୍ୟକରି ଏହି ମାତ୍ର ଛାଡ଼ିଛି । ମନେକର ଏହି ସମୟରେ ବ୍ୟାଧର ମନରେ ଅକସ୍ମାତ୍ ବୈରାଗ୍ୟର ଉଦୟ ହେବାରୁ ସେ ଭାବିଲା ଆଉ ହିଂସା କରିବି ନାହିଁ । ହାତର ତୀରଟି ସେ ପକାଇଦେଲା, ପିଠି ପଟେ ତୂଣୀର ମଧ୍ୟରେ ଥିବା ତୀରଗୁଡ଼ିକ ମଧ୍ୟ ପକାଇ ଦେଲା, କିନ୍ତୁ ଯେଉଁ ତୀରଟି ସେ ପକ୍ଷୀଟିକୁ ଲକ୍ଷ୍ୟ କରି ଛାଡ଼ି ଦେଇଥିଲା ସେହି ତୀରଟିକୁ ଫେରାଇଆଣିପାରିବ କି ? ପିଠିପଟର ତୀରଗୁଡ଼ିକ ଯେପରି ତା'ର ଜନ୍ମଜନ୍ମାନ୍ତରର ସଞ୍ଚିତ କର୍ମ ଏବଂ ହାତରେ ଧରିଥିବା ତୀରଟି ଆଗାମୀ କର୍ମ, ଅର୍ଥାତ୍ ସେହି କର୍ମ ଯାହା ବର୍ତ୍ତମାନ ହେବାକୁ ଯାଉଛି — ସେହି ଉଭୟ କର୍ମଗୁଡ଼ିକ ଜ୍ଞାନଲାଭରେ ନାଶ ହୁଏ । କିନ୍ତୁ ଯେଉଁ ତୀରଟି ସେ ଛାଡ଼ିଦେଇଛି ତାହା ତା'ର ପ୍ରାରବ୍ଧ କର୍ମ । ତେଣୁ ତା'ର ଫଳ ଭୋଗ କରିବାକୁ ହିଁ ହେବ । ଶ୍ରୀରାମକୃଷ୍ଣଦେବଙ୍କ ପରି ମହାପୁରୁଷମାନେ କେବଳ ପ୍ରାରବ୍ଧ କର୍ମ ହିଁ ଶରୀରରେ ଭୋଗ କରିଥାଆନ୍ତି । ଏହି ଫଳଭୋଗ ଅବଶ୍ୟମ୍ଭାବୀ; ଏବଂ ସେମାନେ ଜାଣିପାରନ୍ତି ଯେ, ସେମାନଙ୍କର ପ୍ରାରବ୍ଧ ଅନୁସାରେ ସେମାନଙ୍କର ଜୀବନ କାଳରେ କିଭଳି ଘଟଣା ଘଟିବ । ତେଣୁ ବାସ୍ତବରେ ଶ୍ରୀରାମକୃଷ୍ଣଦେବଙ୍କର ଏପରି ନିଜର ବିବାହ କେଉଁ ପାତ୍ରୀ ସହିତ କେଉଁଠାରେ ହେବ, ତାହା କହିଦେବା କିଛି ବିଚିତ୍ର ନୁହେଁ ।

### ନା — ଯଥାର୍ଥ ଜ୍ଞାନୀ ପୁରୁଷଙ୍କର ପ୍ରାରବ୍ଧ ଭୋଗ କରିବା ନ କରିବା ଇଚ୍ଛାଧୀନ :

ଏହି ବିଷୟର ଉତ୍ତରରେ ଆମେ କହିବୁ — ଅବଶ୍ୟ ଶାସ୍ତ୍ରଜ୍ଞାନ ସମ୍ବନ୍ଧରେ ଆମେମାନେ ବାସ୍ତବରେ ନିତାନ୍ତ ଅନଭିଜ୍ଞ । କିନ୍ତୁ ଯେତିକି ଜାଣିଛୁ, ସେଥିରେ ଯଥାର୍ଥ ଜ୍ଞାନୀ ପୁରୁଷଙ୍କୁ ସମସ୍ତ ପ୍ରାରବ୍ଧ କର୍ମ ଫଳ ଭୋଗିବାକୁ ପଡ଼ି ନ ଥାଏ । କାରଣ ସୁଖ-ଦୁଃଖ ଇତ୍ୟାଦି ଯେଉଁ ମନ ଭୋଗ କରିବ, ସେହି ମନ ସେ ଚିରକାଳ ପାଇଁ ଈଶ୍ୱରଙ୍କଠାରେ ଅର୍ପଣ କରିଥାଆନ୍ତି — ସେଥିରେ ଆଉ ସୁଖ-ଦୁଃଖର ସ୍ଥାନ କେଉଁଠି ? ତେବେ ଯଦି କୁହାଯାଏ — ତାଙ୍କର ଶରୀରର ପ୍ରାରବ୍ଧ ଭୋଗ ହୁଏ, ତେବେ ମଧ୍ୟ କିପରି ହେବ ? ସେ ଯଦି ଇଚ୍ଛା କରି ଅଳ୍ପ କିଛି ମୁଁତ୍ୱ କୌଣସି ବିଶେଷ କାରଣରେ — ଯଥା, ପରୋପକାରାଦି ନିମିତ୍ତ ରଖି ଦିଅନ୍ତି, ତେବେ ହିଁ ତାଙ୍କର ପୁଣି ଶରୀର ଓ ମନର ଉପଲବ୍ଧି ହୁଏ ଏବଂ ସଙ୍ଗେ ସଙ୍ଗେ ପ୍ରାରବ୍ଧ କର୍ମର ଭୋଗ ହୋଇଥାଏ । ଅତଏବ ଯଥାର୍ଥ ଜ୍ଞାନୀପୁରୁଷ ଇଚ୍ଛା କଲେ ପ୍ରାରବ୍ଧର ଭୋଗ ବା ତ୍ୟାଗ କରିପାରନ୍ତି; ତାଙ୍କର ଏପରି କ୍ଷମତା ଆସି ଉପସ୍ଥିତ

ହୋଇଥାଏ । ସେଥିପାଇଁ ହିଁ ସେମାନଙ୍କୁ 'ଲୋକଜିତ୍‌', 'ମୃତ୍ୟୁଞ୍ଜୟ', 'ସର୍ବଜ୍ଞ' ଇତ୍ୟାଦି ନାମରେ ଅଭିହିତ କରାଯାଏ ।

**ଠାକୁରଙ୍କର ତ କଥା ହିଁ ନାହିଁ; କାରଣ, ତାଙ୍କର କଥା— 'ଯିଏ ରାମ, ଯିଏ କୃଷ୍ଣ, ସେ ହିଁ ଇଦାନୀଂ ରାମକୃଷ୍ଣ' :**

ଆଉ ଗୋଟିଏ କଥା—ଶ୍ରୀରାମକୃଷ୍ଣଦେବଙ୍କର ନିଜର ଅନୁଭବ ଯଦି ବିଶ୍ୱାସ କରିବାକୁ ହୁଏ, ତେବେ ତାଙ୍କୁ ସାଧାରଣ ଜ୍ଞାନୀପୁରୁଷ ବୋଲି କହିହେବ ନାହିଁ; ଏହି ଶ୍ରେଣୀ ମଧ୍ୟରେ ତାଙ୍କୁ ସ୍ଥାନ ଦିଆଯାଇ ନ ପାରେ କାହିଁକି ନା ତାଙ୍କଠାରୁ ବାରମ୍ବାର ଶୁଣାଯାଇଛି, ''ଯିଏ ରାମ, ଯିଏ କୃଷ୍ଣ, ସେ ହିଁ ଇଦାନୀଂ ରାମକୃଷ୍ଣ'', ଅର୍ଥାତ୍‌ ଯିଏ ପୂର୍ବରୁ ରାମରୂପରେ ଏବଂ କୃଷ୍ଣରୂପରେ ଅବତୀର୍ଣ୍ଣ ହୋଇଥିଲେ, ସେ ହିଁ ବର୍ତ୍ତମାନ ଯୁଗରେ ଶ୍ରୀରାମକୃଷ୍ଣ ଶରୀରରେ ଅବତୀର୍ଣ୍ଣ ହୋଇ ଅପୂର୍ବ ଲୀଳାର ବିସ୍ତାର କରୁଛନ୍ତି ! ଏହାକୁ ବିଶ୍ୱାସ କଲେ ତାଙ୍କୁ ନିତ୍ୟ-ଶୁଦ୍ଧ-ବୁଦ୍ଧ-ମୁକ୍ତସ୍ୱଭାବ ଈଶ୍ୱରାବତାର ବୋଲି ସ୍ୱୀକାର କରିବାକୁ ହେବ ଏବଂ ଏପରି କଲେ, ତାଙ୍କୁ ପ୍ରାରବ୍ଧ ଇତ୍ୟାଦି କୌଣସି କର୍ମର ବଶୀଭୂତ ବୋଲି କହିହେବ ନାହିଁ । ଅତଏବ ଠାକୁରଙ୍କର ବିବାହ ସମ୍ବନ୍ଧରେ ଅନ୍ୟପ୍ରକାର ମୀମାଂସା ଯୁକ୍ତିଯୁକ୍ତ ମନେକରୁ ଏବଂ ତାହା ହିଁ ଏଠାରେ ଉଲ୍ଲେଖ କରୁଛୁ ।

**ବିବାହର କଥା ନେଇ ଠାକୁରଙ୍କର ରଙ୍ଗରସ :**

ବିବାହ କଥା ଆମମାନଙ୍କ ନିକଟରେ ଉତ୍‌ଥାପନ କରି ଠାକୁର ଅନେକ ସମୟରେ ହାସ-ପରିହାସ କରୁଥିଲେ, ଏହା ଅତ୍ୟନ୍ତ ମଧୁର ଥିଲା । ଦକ୍ଷିଣେଶ୍ୱରରେ ଦିନେ ଠାକୁରେ ମଧ୍ୟାହ୍ନ ଭୋଜନ କରିବାକୁ ବସି ଅଛନ୍ତି; ନିକଟରେ ଶ୍ରୀଯୁକ୍ତ ବଳରାମ ବସୁ ଓ ଅନ୍ୟାନ୍ୟ କେତେଜଣ ଭକ୍ତ ବସି ତାଙ୍କ ସହିତ ନାନାପ୍ରକାର କଥା ହେଉଥାଆନ୍ତି । ଠାକୁରଙ୍କର ଭ୍ରାତୁଷ୍ପୁତ୍ର ରାମଲାଲଙ୍କର ବିବାହ ଯୋଗୁଁ ଶ୍ରୀଶ୍ରୀମାତା ଠାକୁରାଣୀ ସେଦିନ କେତେମାସ ପାଇଁ କାମାରପୁକୁର ଯାତ୍ରା କରିଥିଲେ ।

ଠାକୁର—(ବଳରାମବାବୁଙ୍କୁ ଲକ୍ଷ୍ୟ କରି) ଆଚ୍ଛା, ପୁଣି ବିଭାଘର କାହିଁକି ହେଲା କହିଲ ? ସ୍ତ୍ରୀ ପୁଣି କ'ଣ ପାଇଁ ହେଲା ? ପିନ୍ଧିବା ଲୁଗାର ଠିକଣା ନାହିଁ— ପୁଣି ସ୍ତ୍ରୀ କାହିଁକି ?

ବଳରାମ ଈଷତ୍‌ ହସି ଚୁପ୍‌ ରହିଲେ ।

ଠାକୁର—ଓଃ ବୁଝିଛି; (ଥାଳିରୁ ଟିକିଏ ଖାଦ୍ୟ ନେଇ ବଳରାମଙ୍କୁ ଦେଖାଇ) ଏଇ—ଏହାରି ପାଇଁ ହୋଇଛି । ନ ହେଲେ କିଏ ଆଉ ଏପରି ରାନ୍ଧି ଦିଅନ୍ତା, କହିଲ ? (ବଳରାମବାବୁ ପ୍ରଭୃତି ଭକ୍ତମାନଙ୍କର ହସ) ହଁ ହେ, କିଏ ଆଉ ଏପରି ଖାଇବା ପିଇବା ଦେଖନ୍ତା । ଏମାନେ ସବୁ ଆଜି ଚାଲିଗଲେ—

(କିଏ ଚାଲିଗଲେ ଭକ୍ତମାନେ ବୁଝି ନ ପାରିବାରୁ) ରାମଲାଲର ଖୁଡ଼ୀ ଗୋ; ରାମଲାଲର ବାହାଘର ହେବ—ସେଥିପାଇଁ ସବୁ କାମାରପୁକୁର ଗଲେ । ଠିଆ ହୋଇ ଦେଖିଲି, ମନରେ କିଛି ହେଲା ନାହିଁ ! ସତ କହୁଛି; ମନେହେଲା ଯେପରି ଅନ୍ୟର କେହି ଗଲେ; କିନ୍ତୁ ପରେ ଭାବିଲି କିଏ ରାନ୍ଧିଦେବ । କାହିଁକି ଜାଣ ? —କାରଣ ସବୁ ପ୍ରକାର ଖାଇବା ତ ପେଟରେ ଯାଏ ନାହିଁ ଏବଂ ସବୁ ସମୟରେ ଖାଇବାର ହୋସ୍ ମଧ ରହେ ନାହିଁ । ସେ (ଶ୍ରୀଶ୍ରୀମା) ବୁଝିପାରେ କିପରି ଖାଇବା ପେଟକୁ ସହିବ; ଏଇଟା ସେଇଟା କରିଦିଏ; ତେଣୁ ମନେ ହେଲା— କିଏ କରିଦେବ !

**ଦଶପ୍ରକାରର ସଂସ୍କାର ପୂର୍ଣ୍ଣ କରିବା ପାଇଁ ସାଧାରଣ ଆଚାର୍ଯ୍ୟମାନଙ୍କର ବିବାହ କରିବା । ଠାକୁରଙ୍କ ବିବାହ ମଧ କ'ଣ ସେଥିପାଇଁ ?—ନା :**

ଦକ୍ଷିଣେଶ୍ୱରରେ ଦିନେ ଠାକୁର ବିବାହର କଥା ଉଠାଇ କହିଲେ, ''ବାହାହେବାକୁ କାହିଁକି ହୁଏ ଜାଣିଛ ? ବ୍ରାହ୍ମଣ ଶରୀରରେ ଦଶପ୍ରକାରର ସଂସ୍କାର ଅଛି—ବିବାହ ତା ମଧରେ ଗୋଟିଏ । ଏହି ଦଶପ୍ରକାରର ସଂସ୍କାର ହେଲେ ତେବେ ଆଚାର୍ଯ୍ୟ ହୋଇପାରିବ ।'' ଆଉ ମଧ କେତେବେଳେ କେତେବେଳେ କହୁଥିଲେ, ''ଯିଏ ପରମହଂସ ହୁଏ, ପୂର୍ଣ୍ଣଜ୍ଞାନୀ ହୁଏ, ସେ ହାଡ଼ି-ମେହେନ୍ତରର ଅବସ୍ଥାରୁ ରାଜା-ମହାରାଜା, ସମ୍ରାଟର ଅବସ୍ଥା ପର୍ଯ୍ୟନ୍ତ ସବୁ ଭୋଗ କରି ଦେଖି ଆସିଛି । ନ ହେଲେ ଠିକ୍ ଠିକ୍ ବୈରାଗ୍ୟ ଆସିବ କାହିଁକି ? ଯେଉଁଟା ଦେଖି ନାହିଁ (ଭୋଗ କରି ନାହିଁ), ସେହିଟିକୁ ମନ ଦେଖିବାକୁ ଚାହିଁବ ଓ ଚଞ୍ଚଳ ହେବ— ବୁଝିଲ ? ଗୋଟି ସବୁ ଘର ବୁଲି ବୁଲି ଯଥାସ୍ଥାନକୁ ଯାଏ, ଖେଳ ସମୟରେ ଦେଖି ନାହିଁ ? ଏହା ଠିକ୍ ସେହିପରି ।''

**ଧର୍ମର ଅବିରୁଦ୍ଧ ଭୋଗ ସହାୟରେ ତ୍ୟାଗରେ ପହଞ୍ଚିବା ପାଇଁ ହିନ୍ଦୁଙ୍କ ବିବାହ :**

ସାଧାରଣ ଗୁରୁମାନଙ୍କର ବିବାହ କରିବାର ଏପରି କାରଣ ଠାକୁର ନିର୍ଦ୍ଦେଶ କଲେ ମଧ, ଠାକୁରଙ୍କର ନିଜର ବିବାହର ବିଶେଷ କାରଣ ଯାହା ଆମେ ବୁଝିଛୁ, ତାହା ହିଁ ବର୍ତ୍ତମାନ କହିବୁ । ବିବାହ ଭୋଗ ପାଇଁ ନୁହେଁ—ଏହା ଶାସ୍ତ୍ର ଆମକୁ ପ୍ରତି ପଦରେ ଶିକ୍ଷା ଦେଉଛନ୍ତି । ଈଶ୍ୱରଙ୍କର ସୃଷ୍ଟିରକ୍ଷାରୂପକ ନିୟମ- ପ୍ରତିପାଳନ ଓ ଗୁଣବାନ୍ ପୁତ୍ର ଉତ୍ପାଦନ କରି ସମାଜର କଲ୍ୟାଣ ସାଧନ କରିବା ହିଁ ହିନ୍ଦୁର ବିବାହରୂପକ କର୍ମର ଉଦ୍ଦେଶ୍ୟ ହେବା ଉଚିତ୍—ଶାସ୍ତ୍ର ବାରମ୍ବାର ଏକଥା କହିଛନ୍ତି । କିନ୍ତୁ ଏଥିରେ କ'ଣ ତା'ର ନିଜର ସ୍ୱାର୍ଥ କିଛିମାତ୍ର ରହିବ ନାହିଁ—ଶାସ୍ତ୍ର ଏପରି ଅସମ୍ଭବ କଥା କୁହନ୍ତି ? ସେ କଥା ନୁହଁ । ଶାସ୍ତ୍ରକାର ଋଷିମାନେ ଦୁର୍ବଳ

ମନୁଷ୍ୟ ଚରିତ୍ରର ଅଭ୍ୟନ୍ତର ପର୍ଯ୍ୟନ୍ତ ଦେଖି ବୁଝିଥିଲେ ଯେ ଦୁର୍ବଳ ମନୁଷ୍ୟ ସ୍ୱାର୍ଥ ବ୍ୟତୀତ ଏଜଗତରେ ଆଉ କୌଣସି କଥା ବୁଝେ ନାହିଁ; ଲାଭ-କ୍ଷତି ନ ବୁଝି ଅତି ସାମାନ୍ୟ କାର୍ଯ୍ୟରେ ମଧ୍ୟ ସେ ଅଗ୍ରସର ହୁଏ ନାହିଁ । ଶାସ୍ତ୍ରକାର ଏକଥା ବୁଝିଲେ ମଧ୍ୟ ଯେଉଁ ପୂର୍ବୋକ୍ତ ଆଦେଶ କରିଅଛନ୍ତି ତାହାର କାରଣ—ସେ ଏକଥା ମଧ୍ୟ ବୁଝିଛନ୍ତି ଯେ, ଏହି ସ୍ୱାର୍ଥଟିକୁ ଯଦି ଏକ ମହାନ ଉଦ୍ଦେଶ୍ୟର ସହିତ ସର୍ବଦା ଜଡ଼ିତ ରଖାଯାଇପାରେ ତେବେ ହିଁ ମଙ୍ଗଳ; ନତୁବା ମନୁଷ୍ୟକୁ ପୁନଃ ପୁନଃ ଜନ୍ମ-ମୃତ୍ୟୁର ବନ୍ଧନରେ ପଡ଼ି ଅଶେଷ ଦୁଃଖଭୋଗ କରିବାକୁ ହେବ । ନିଜର ନିତ୍ୟମୁକ୍ତ ଆତ୍ମସ୍ୱରୂପ ଭୁଲିଯାଇ ମନୁଷ୍ୟ ଇନ୍ଦ୍ରିୟର ଦ୍ୱାର ଦେଇ ବାହ୍ୟଜଗତର ରୂପରସାଦି ଭୋଗ କରିବା ନିମିତ୍ତ ଧାବମାନ ହେଉଅଛି; ଏବଂ ସେ ମନେକରୁଛି ଯେ, ଏସବୁ ଅତ୍ୟନ୍ତ ମଧୁର, ଅତ୍ୟନ୍ତ ମନୋରମ; କିନ୍ତୁ ଜଗତର ପ୍ରତ୍ୟେକ ସୁଖ ହିଁ ଯେ ଦୁଃଖ ସହିତ ଚିର ସଂଯୁକ୍ତ, ସୁଖ ଭୋଗ କରିବାକୁ ଗଲେ ତା' ସାଙ୍ଗରେ ଦୁଃଖକୁ ନେବାକୁ ହେବ—ଏ ବିଷୟ କେତେଜଣ ଲୋକ ବୁଝିଛନ୍ତି ବା ବୁଝିପାରିବେ ?

### ବିଚାରଶୀଳ ହୋଇ ଭୋଗ କରୁ କରୁ ଦିନେ ନା ଦିନେ ବୋଧ ହୁଏ—''ଦୁଃଖର ମୁକୁଟ ପିନ୍ଧି ସୁଖ ଆସେ'' :

ସ୍ୱାମୀ ବିବେକାନନ୍ଦ କହିଛନ୍ତି, ''ଦୁଃଖର ମୁକୁଟ ମଥାରେ ପିନ୍ଧି ସୁଖ ଆସି ମନୁଷ୍ୟ ସମ୍ମୁଖରେ ଦଣ୍ଡାୟମାନ ହୋଇଥାଏ'' —ମନୁଷ୍ୟ ସେତେବେଳେ ସୁଖକୁ ନେଇ ହିଁ ବ୍ୟସ୍ତ ! ତା'ର ମୁଣ୍ଡରେ ଯେଉଁ ଦୁଃଖର ମୁକୁଟ, ତାକୁ ନିଜର ବୋଲି ଗ୍ରହଣ କଲେ ପରିଣାମରେ ଦୁଃଖକୁ ବହନ କରିବାକୁ ପଡ଼ିବ—ଏକଥା ସେ ଭାବିବାର ଅବସର ପାଏ ନାହିଁ ! ଶାସ୍ତ୍ର ଏଥିପାଇଁ ତାକୁ ସ୍ମରଣ କରାଇ କହେ, ଆରେ, 'ସୁଖଲାଭ ନିଜର ସ୍ୱାର୍ଥ—ଏକଥା କାହିଁକି ଭାବୁଛୁ ? ସୁଖ କିମ୍ବା ଦୁଃଖରୁ ଗୋଟିକୁ ନେଲେ ଅନ୍ୟଟି ମଧ୍ୟ ନେବାକୁ ହେବ ! ସ୍ୱାର୍ଥକୁ ଏକ ଉଚ୍ଚସ୍ତରରେ ରଖି କାହିଁକି ଭାବୁ ନାହୁଁ ଯେ, ସୁଖ ହିଁ ମୋର ଶିକ୍ଷକ, ଦୁଃଖ ମଧ୍ୟ ମୋର ଶିକ୍ଷକ; ତେଣୁ ଯାହା ଦ୍ୱାରା ଏହି ଉଭୟଙ୍କ ହାତରୁ ଚିରକାଳ ପାଇଁ ପରିତ୍ରାଣ ମିଳିଯିବ—ତାହା ହିଁ ମୋର ସ୍ୱାର୍ଥ ବା ଜୀବନର ଉଦ୍ଦେଶ୍ୟ ।' ଅତଏବ ଏଥିରୁ ବୁଝାଯାଉଛି ଯେ ବୈବାହିକ ଜୀବନରେ ବିଚାରଶୀଳ ଭୋଗ ଦ୍ୱାରା ଏବଂ ସୁଖଦୁଃଖପୂର୍ଣ୍ଣ ନାନା ଅବଶ୍ୟମ୍ଭାବୀ ଅବସ୍ଥାର ଅନୁଭବ ଦ୍ୱାରା କ୍ଷଣଭଙ୍ଗୁର ସଂସାରର ସମସ୍ତ ଆପାତସୁଖ ଉପରେ ବିରକ୍ତ ହୋଇ ଯେଉଁଥିରେ ଜୀବ ଈଶ୍ୱରଙ୍କ ପ୍ରତି ଅନୁରାଗରେ ପୂର୍ଣ୍ଣ ହୁଏ ଏବଂ ତାଙ୍କୁ ହିଁ ଏକମାତ୍ର ସାରସର୍ବସ୍ୱ ଜାଣି ତାଙ୍କର ଦର୍ଶନ ଲାଭ ନିମିତ୍ତ ମହାଉତ୍ସାହର ସହିତ ଅଗ୍ରସର ହୁଏ, ଏହି ଶିକ୍ଷା ଦେବା ହିଁ ଶାସ୍ତ୍ରକାରମାନଙ୍କର ଉଦ୍ଦେଶ୍ୟ ।

## ଭୋଗସୁଖ ତ୍ୟାଗ କରିବାକୁ ମନକୁ କିପରି ବୁଝାଇବାକୁ ହୁଏ, ସେବିଷୟରେ ଠାକୁରଙ୍କର ଉପଦେଶ :

ବିଚାର କରୁ କରୁ ସଂସାରର କୌଣସି ବିଷୟ ଭୋଗ କରିବାକୁ ଗଲେ ଯେ ମନ ସେବିଷୟ ତ୍ୟାଗ କରିବ, ଏହା ନିଶ୍ଚିତ; ଏଥିପାଇଁ ଠାକୁରେ କହୁଥିଲେ ‘‘ଆରେ, ସଦସଦ୍‌ବିଚାର ଦରକାର । ସବୁ ସମୟରେ ବିଚାର କରି ମନକୁ କହିବାକୁ ହୁଏ ଯେ, ରେ ମନ ତୁ ଏହି ଜିନିଷକୁ ଭୋଗ କରିବୁ, ଏହା ଖାଇବୁ, ତାହା ପିନ୍ଧିବୁ ବୋଲି ବ୍ୟସ୍ତ ହେଉଛୁ—କିନ୍ତୁ ଯେଉଁ ପଞ୍ଚଭୂତରେ ଆଳୁ, ପୋଟଳ, ଚାଉଳ, ଡାଲି ଇତ୍ୟାଦି ତିଆରି ହୋଇଛି, ସେହି ପଞ୍ଚଭୂତରେ ହିଁ ପୁଣି ସନ୍ଦେଶ, ରସଗୋଲା ଇତ୍ୟାଦି ତିଆରି ହୋଇଛି; ଯେଉଁ ପଞ୍ଚଭୂତର ହାଡ଼-ମାଂସ ରକ୍ତ-ମଜ୍ଜାରେ ନାରୀର ସୁନ୍ଦର ଶରୀର ହୋଇଛି, ସେଥିରେ ହିଁ ତୁମର ଓ ସମସ୍ତ ମନୁଷ୍ୟଙ୍କର, ପୁଣି ଗୋରୁ, ଛେଳି, ମେଣ୍ଢା ଇତ୍ୟାଦି ପ୍ରାଣୀଙ୍କର ମଧ୍ୟ ଶରୀର ହୋଇଛି; ତେବେ କାହିଁକି ସେସବୁ ପାଇବା ପାଇଁ ହାଇଁ-ପାଇଁ କରୁଛୁ ? ଏଥିରେ ତ ସଚ୍ଚିଦାନନ୍ଦ ଲାଭ ହେବ ନାହିଁ ! ଏଥିରେ ମଧ୍ୟ ଯଦି ନ ମାନେ ବିଚାର କରୁ କରୁ ଥରେ-ଦୁଇଥର ଭୋଗ କରି ତାହା ତ୍ୟାଗ କରିବାକୁ ହୁଏ । ଧରାଯାଉ, ରସଗୋଲା ଖାଇବ ବୋଲି ମନରେ ଭାରୀ ଇଚ୍ଛା ହେଉଛି, କୌଣସି ପ୍ରକାରରେ ମନ ମାନୁ ନାହିଁ—ଯେତେ ବିଚାର କରୁଛ ସବୁ ଭାସିଯାଉଛି; ସେତେବେଳେ କିଛି ରସଗୋଲା ଆଣି ପାଟିରେ ପୂରାଇ ଏପଟେ ସେପଟେ ଚୋବାଇ ଖାଉ ଖାଉ ମନକୁ କହିବ—ରେ ମନ, ଏହାର ନାମ ରସଗୋଲା; ଏହା ମଧ୍ୟ ଆଳୁ ପୋଟଳ ପରି ପଞ୍ଚଭୂତର ବିକାରରେ ତିଆରି ହୋଇଛି; ଏହାକୁ ଖାଇଲେ, ଏହା ମଧ୍ୟ ଶରୀରରେ ରକ୍ତ-ମାଂସ, ମଜ୍ଜା-ମଳ-ମୂତ୍ର ସୃଷ୍ଟି କରିବ; ଯେତେ ସମୟ ପାଟିରେ ଅଛି ମିଠାଲାଗିବ—ଗଳା ତଳକୁ ଗଲେ ସେହି ଆସ୍ୱାଦର କଥା ମନେ ରହିବ ନାହିଁ, ପୁଣି ଯଦି ବେଶୀ ଖାଇବ ଦେହ ଅସୁସ୍ଥ ହେବ; ଏଥିପାଇଁ ଏତେ ଲାଳାୟିତ ହେଉଛୁ ! ଛିଃ ଛିଃ ! —ଏହିତ ଖାଇଲ, ଆଉ ଖାଇବାକୁ ଇଚ୍ଛା କର ନାହିଁ । (ସନ୍ନ୍ୟାସୀ ଭକ୍ତମାନଙ୍କୁ ଲକ୍ଷ୍ୟ କରି) ଛୋଟ ଛୋଟ ବିଷୟଗୁଡ଼ିକୁ ଏହିପରି ବିଚାରବୁଦ୍ଧି ସହ ଭୋଗ କରି ତ୍ୟାଗ କରିବା ଚଳିବ, କିନ୍ତୁ ବଡ଼ବଡ଼ ବିଷୟଗୁଡ଼ିକୁ ଏହିପରି କରିବା ଚଳିବ ନାହିଁ, ଭୋଗ କରିବାକୁ ଗଲେ ବନ୍ଧନରେ ପଡ଼ିବାକୁ ହୁଏ । ସେଥିପାଇଁ ବଡ଼ ବଡ଼ ବାସନାକୁ ବିଚାର କରି, ସେଥିରେ ଦୋଷ ଦେଖି, ମନରୁ ତଡ଼ିବାକୁ ହୁଏ ।’’

## ବୈବାହିକ ଜୀବନରେ ବ୍ରହ୍ମଚର୍ଯ୍ୟ ପାଳନ କରିବାର ପ୍ରଥା ଉଚ୍ଛେଦ ହେବାରୁ ହିଁ ହିନ୍ଦୁର ଏବେ ଜାତୀୟ ଅବନତି :

ଶାସ୍ତ୍ର ବିବାହର ଏପରି ଉଚ୍ଚ ଉଦ୍ଦେଶ୍ୟର ଉପଦେଶ କଲେ ମଧ୍ୟ କେତେଜଣଙ୍କ ମନରେ ସେକଥା ଆଜିକାଲି ସ୍ଥାନ ପାଉଛି ? କେତେ ଜଣ ବିବାହିତ ଜୀବନରେ ଯଥାସାଧ୍ୟ ବ୍ରହ୍ମଚର୍ଯ୍ୟ ପାଳନ କରି ନିଜକୁ ଏବଂ ଜନ-ସମାଜକୁ ଧନ୍ୟ କରିଥାଆନ୍ତି ? କେତେଜଣ ସ୍ତ୍ରୀ, ସ୍ୱାମୀ ପାଖରେ ଠିଆ ହୋଇ ତାଙ୍କୁ ଈଶ୍ୱରଲାଭ କଥା ଦୂରେ ଥାଉ ଲୋକହିତକର ଉଚ୍ଚ ବ୍ରତରେ ପ୍ରେରଣା ଦେଇଥାନ୍ତି ? ସେହିପରି କେତେଜଣ ପୁରୁଷ 'ତ୍ୟାଗ ହିଁ ଜୀବନର ଉଦ୍ଦେଶ୍ୟ' ଜାଣି ସ୍ତ୍ରୀଙ୍କୁ ତାହା ଶିକ୍ଷା ଦେଇଥାନ୍ତି ? ହାୟ ଭାରତ ! ପାଶ୍ଚାତ୍ୟର ଭୋଗସର୍ବସ୍ୱ ଜଡ଼ବାଦ ଧୀରେ ଧୀରେ ତୁମର ଅସ୍ଥି-ମଜ୍ଜାଗତ ହୋଇ ତୁମକୁ କିପରି ମେରୁଦଣ୍ଡହୀନ ପଶୁ ବିଶେଷରେ ପରିଣତ କରିଅଛି, ତାହା ଥରେ ଭାବି ଦେଖ ! ଶ୍ରୀରାମକୃଷ୍ଣ ତାଙ୍କର ସନ୍ନ୍ୟାସୀ-ଭକ୍ତଗଣଙ୍କୁ ବର୍ତ୍ତମାନ ବିବାହିତ ଜୀବନର ଦୋଷ ଦେଖାଇ କହୁଥିଲେ, ''ଆରେ, (ଭୋଗକୁ ସର୍ବସ୍ୱ ଜ୍ଞାନ ବା ଜୀବନର ଉଦ୍ଦେଶ୍ୟ କରିବା ଯଦି ଦୋଷ ହୁଏ, ତେବେ ବିବାହ ସମୟରେ) ଗୋଟିଏ ଫୁଲ ଫୋପାଡି ତାହାକଲେ କ'ଣ ଶୁଦ୍ଧ ହୋଇଗଲା—ତା'ର ଦୋଷ କଟିଗଲା ?'' ବାସ୍ତବିକ୍ ବିବାହିତ ଜୀବନରେ ଇନ୍ଦ୍ରିୟପରାୟଣତା ଆଉ କେବେ ଏତେ ପ୍ରବଳ ହୋଇଥିଲା କି ନାହିଁ ସନ୍ଦେହ । ଇନ୍ଦ୍ରିୟ-ପରିତୃପ୍ତି ଭିନ୍ନ ବିବାହର ଯେ ଅନ୍ୟ ଏକ ମହାପବିତ୍ର, ମହତ୍ ଉଦ୍ଦେଶ୍ୟ ଅଛି—ଏକଥା ଆମେ ଆଜିକାଲି ଏକପ୍ରକାର ଭୁଲିଯାଇଛୁ, ଏବଂ ଦିନକୁ ଦିନ ଏହି କାରଣରୁ ପଶୁଠାରୁ ମଧ୍ୟ ଅଧମ ହେବାକୁ ଯାଉଛୁ ! ନବ୍ୟ ଭାରତ-ଭାରତୀଙ୍କର ଏହି ପଶୁତ୍ୱ ଘୁଞ୍ଚାଇବା ପାଇଁ ହିଁ ଲୋକଗୁରୁ ଶ୍ରୀରାମକୃଷ୍ଣଙ୍କର ବିବାହ । ତାଙ୍କ ଜୀବନର ସମସ୍ତ କର୍ମପରି ବିବାହରୂପକ କର୍ମ ମଧ୍ୟ ଲୋକକଲ୍ୟାଣ ନିମିତ୍ତ ଅନୁଷ୍ଠିତ ।

## ନିଜେ ଅନୁଷ୍ଠାନ କରି ଦେଖାଇ ଏହି ଆଦର୍ଶକୁ ପୁନରାୟ ପ୍ରଚଳିତ କରିବା ନିମିତ୍ତ ଠାକୁରଙ୍କ ବିବାହ :

ଠାକୁର କହୁଥିଲେ, ''ଏଠାର (ତାଙ୍କ ଦ୍ୱାରା) ଯାହା କିଛି କରାହେଉଛି ସେସବୁ ତୁମମାନଙ୍କ ପାଇଁ । ଆରେ, ମୁଁ ଷୋହଳଅଣା କଲେ ତେବେ ଯାଇ ତୁମେମାନେ ଗୋଟିଏ ଅଣା କର ! ଆଉ ମୁଁ ଯଦି ଠିଆ ହୋଇ ପରିସ୍ରା କରେ ତୁମେ ଶଳାଗୁଡ଼ାକ ବୁଲି ବୁଲି ସେପରି କରିବ ।'' ଏଥିପାଇଁ ଠାକୁରଙ୍କର ବିବାହିତ ଜୀବନର କର୍ତ୍ତବ୍ୟ ବହନ କରି ମହାନ ଆଦର୍ଶ ସମସ୍ତଙ୍କ ଚକ୍ଷୁ ସମ୍ମୁଖରେ ଅନୁଷ୍ଠାନ କରି ଦେଖାଇଦେଇଛନ୍ତି । ଠାକୁର ଯଦି ସ୍ୱୟଂ ବିବାହ ନ କରି ଥାଆନ୍ତେ ତାହେଲେ ଗୃହସ୍ଥ କହିଥାଆନ୍ତେ, 'ବିବାହ ତ କରିନାହାନ୍ତି, ତେଣୁ ଏତେ ବ୍ରହ୍ମଚର୍ଯ୍ୟ କଥା

କହୁଛନ୍ତି । ସ୍ତ୍ରୀକୁ ନିଜର କରି ଏକାସାଙ୍ଗରେ ଏକାଠି କେବେ ତ ରହି ନାହାନ୍ତି, ତେଣୁ ଆମକୁ ଲମ୍ବା ଲମ୍ବା ଉପଦେଶ ଦେଇ ଚାଲିଛନ୍ତି ।' ସେଥିପାଇଁ ଠାକୁର ଯେ କେବଳ ବିବାହ କରିଥିଲେ ସେ କଥା ନୁହଁ, ଶ୍ରୀଶ୍ରୀ ଜଗନ୍ମାତାଙ୍କର ପୂର୍ଣ୍ଣଦର୍ଶନଲାଭ ପରେ ଯେତେବେଳେ ଦିବ୍ୟଉନ୍ମାଦ ଅବସ୍ଥା ତାଙ୍କର ସହଜ ହୋଇଗଲା, ସେତେବେଳେ ପୂର୍ଣ୍ଣ ଯୌବନା ବିବାହିତା ସ୍ତ୍ରୀକୁ ଦକ୍ଷିଣେଶ୍ୱରକୁ ଅଣାଇ ନିଜ ପାଖରେ ରଖିଲେ, ଏବଂ ତାଙ୍କଠାରେ ଜଗଦମ୍ବାଙ୍କର ଆବିର୍ଭାବ ସାକ୍ଷାତ୍ ପ୍ରତ୍ୟକ୍ଷ କରି ତାଙ୍କୁ ଶ୍ରୀଶ୍ରୀଷୋଡ଼ଶୀ ମହାବିଦ୍ୟା–ଜ୍ଞାନରେ ପୂଜା ଓ ଆତ୍ମନିବେଦନ କଲେ, ଆଠମାସ କାଳ ନିରନ୍ତର ଏକତ୍ର ବାସ ଓ ତାଙ୍କ ସହିତ ଗୋଟିଏ ଶଯ୍ୟାରେ ଶୟନ ପର୍ଯ୍ୟନ୍ତ କଲେ ଏବଂ ସ୍ତ୍ରୀର ଶିକ୍ଷା ଏବଂ ପ୍ରାଣର ଶାନ୍ତି ଓ ଆନନ୍ଦ ନିମିତ୍ତ ଏହାପରେ କାମାରପୁକୁର ଏବଂ ବେଳେବେଳେ ଶ୍ୱଶୁରାଳୟ ଜୟରାମବାଟୀକୁ ସ୍ୱୟଂ ଯାଇ ମାସେ ଦୁଇମାସ ଅତିବାହିତ କରିବାକୁ ଲାଗିଲେ !

### ସ୍ତ୍ରୀଙ୍କ ସହିତ ଠାକୁରଙ୍କର ଶରୀର–ସମ୍ବନ୍ଧ–ରହିତ ଅଦୃଷ୍ଟପୂର୍ବ ପ୍ରେମସମ୍ବନ୍ଧ । ଶ୍ରୀଶ୍ରୀମା'ଙ୍କର ଏହି ବିଷୟର କଥା :

ଦକ୍ଷିଣେଶ୍ୱରରେ ଯେତେବେଳେ ଠାକୁର ନିଜ ସ୍ତ୍ରୀଙ୍କ ସହିତ ଏପରି ଏକତ୍ର ବାସ କରୁଥିଲେ, ସେସମୟର କଥା ସ୍ମରଣ କରି ଶ୍ରୀଶ୍ରୀମା', ପରବର୍ତ୍ତୀ ସମୟରେ ମଧ୍ୟ ସ୍ତ୍ରୀ ଭକ୍ତମାନଙ୍କୁ କହୁଥିଲେ, ''ସେ ଯେ କି ଅପୂର୍ବ ଦିବ୍ୟଭାବରେ ରହୁଥିଲେ ତାହା କହି ବୁଝାଇ ହେବ ନାହିଁ ! କେତେବେଳେ ଭାବର ଅବସ୍ଥାରେ କେତେ କ'ଣ କଥା, କେତେବେଳେ ହସ, କେତେବେଳେ କାନ୍ଦଣା, କେତେବେଳେ ସମାଧିରେ ସ୍ଥିର ହୋଇଯିବା— ଏହିପରି, ସମସ୍ତରାତି ବିତିଯାଉଥିଲା ! ତାହା କିପରି ଏକ ଅଦ୍ଭୁତ ଆବେଶ ! ତାହା ଦେଖି, ଭୟରେ ମୋର ସର୍ବଶରୀର କମ୍ପୁଥିଲା ଏବଂ ଭାବୁଥିଲି କେତେବେଳେ ରାତି ପାହିବ ! ଭାବସମାଧିର କଥା ସେତେବେଳେ ତ କିଛି ବୁଝି ନ ଥିଲି; ଦିନେ ତାଙ୍କର ସମାଧି ଭଙ୍ଗ ହେବା ନ ଦେଖି କାନ୍ଦିକାନ୍ଦି ହୃଦୟକୁ ଡାକି ପଠାଇଲି । ସେ ଆସି କାନରେ ନାମ ଶୁଣାଉ ଶୁଣାଉ ତାଙ୍କର ଚୈତନ୍ୟ ଉଦୟ ହେଲା ! ତାପରେ ଏପରି ଭୟରେ କଷ୍ଟ ପାଉଛି ଦେଖି ସେ ନିଜେ ଶିଖାଇ ଦେଲେ—ଏହି ପ୍ରକାରର ଭାବ ଦେଖିଲେ—ଏହିପରି ନାମ ଶୁଣାଇବ, ଏପରି ଦେଖିଲେ ଏହି ବୀଜ ଶୁଣାଇବ । ସେତେବେଳେ ଆଉ ସେତେ ଭୟ ହେଉ ନ ଥିଲା, ସେହିପରି ଶୁଣାଇଲେ ହିଁ ତାଙ୍କର ହୋସ୍ ଫେରୁଥିଲା । ତାପରେ ଅନେକ ଦିନ ଏପରି ଅତୀତ ହେଲେ ମଧ୍ୟ, କେତେବେଳେ ତାଙ୍କର ଭାବସମାଧି ହେବ ଭାବି ସାରାରାତି ନ ଶୋଇ ଚେଇଁ ରହୁଥିଲି—ସେ ଏହା ଦିନେ ଜାଣିପାରି ମୋତେ ନହବତରେ ଶୋଇବାକୁ କହିଲେ । ପରମ ଆରାଧ୍ୟା ଶ୍ରୀଶ୍ରୀମା' କହୁଥିଲେ, ଏପରିକି ଦୀପରେ ସଳିତାଟିକୁ କି ଭାବରେ ରଖିବାକୁ

ହେବ, ଘରର ପ୍ରତ୍ୟେକ ବ୍ୟକ୍ତି କିଏ କିପରି ଲୋକ ଓ କାହାସଙ୍ଗରେ କିପରି ବ୍ୟବହାର କରିବାକୁ ହେବ, ଅନ୍ୟର ଘରକୁ ଯାଇ କିପରି ବ୍ୟବହାର କରିବାକୁ ହେବ ଇତ୍ୟାଦି ସଂସାରର ସମସ୍ତ କଥା ସହିତ, ଭଜନ, କୀର୍ତ୍ତନ, ଧ୍ୟାନ, ସମାଧି ଓ ବ୍ରହ୍ମଜ୍ଞାନର କଥା ପର୍ଯ୍ୟନ୍ତ ସମସ୍ତ ବିଷୟ ଠାକୁରେ ତାଙ୍କୁ ଶିକ୍ଷା ଦେଇଥିଲେ ।

### ଗୃହୀ ମାନବଗଣଙ୍କ ଶିକ୍ଷା ପାଇଁ ହିଁ ଠାକୁରଙ୍କର ଏହିପରି ପ୍ରେମଲୀଳାଭିନୟ :

ହେ ଗୃହୀ ମାନବ, ତୁମ ମଧ୍ୟରୁ କେତେଜଣ ଏପରି ଭାବରେ ନିଜ ନିଜ ସ୍ତ୍ରୀକୁ ଶିକ୍ଷା ଦେଇଥାଅ ? ତୁଚ୍ଛ ଶରୀରସମ୍ବନ୍ଧଟା ଯଦି ଆଜିଠାରୁ କୌଣସି କାରଣରୁ ଚାଲିଯାଏ, ତା'ହେଲେ ତୁମ ଭିତରୁ କେତେଜଣ ସ୍ତ୍ରୀକୁ ଏପରି ମାନ୍ୟ, ଭକ୍ତି ଓ ନିଃସ୍ୱାର୍ଥ ଭଲପାଇବା ଆଜୀବନ ଦେଇପାରିବ ? ସେଥିପାଇଁ କହେ, ଏହି ଅପୂର୍ବ ଯୁଗାବତାରଙ୍କର ବିବାହ କରି, ଦିନକପାଇଁ ମଧ୍ୟ ଶରୀର ସମ୍ବନ୍ଧ ନ କରି, ସ୍ତ୍ରୀ ସହିତ ଏହି ଅଦ୍ଭୁତ, ଅଦୃଷ୍ଟପୂର୍ବ ପ୍ରେମଲୀଳାର ବିସ୍ତାର କେବଳ ତୁମମାନଙ୍କ ପାଇଁ ଉଦ୍ଦିଷ୍ଟ । ଠାକୁର ଏପରି କରିବାର ଉଦ୍ଦେଶ୍ୟ ହେଉଛି, ତୁମମାନଙ୍କୁ ଶିକ୍ଷାଦେବା ପାଇଁ ଯେ, ଇନ୍ଦ୍ରିୟପରତା ବ୍ୟତୀତ ବିବାହର ଅନ୍ୟ ମହୋଚ୍ଚ ଉଦ୍ଦେଶ୍ୟ ଅଛି ଏବଂ ଏହି ଉଚ୍ଚ ଆଦର୍ଶରେ ଲକ୍ଷ୍ୟ ସ୍ଥିର ରଖି ଯେଉଁଥିରେ ତୁମେ ମଧ୍ୟ ବିବାହିତ ଜୀବନରେ ବ୍ରହ୍ମଚର୍ଯ୍ୟ ଯଥାସାଧ୍ୟ ଅନୁଷ୍ଠାନ କରି ସ୍ତ୍ରୀ-ପୁରୁଷ ଧନ୍ୟ ହୋଇପାର ଏବଂ ମହାମେଧାବୀ, ମହାତେଜସ୍ୱୀ ଗୁଣବାନ ସନ୍ତାନର ପିତାମାତା ହୋଇ ଭାରତର ବର୍ତ୍ତମାନ ହୀନବୀର୍ଯ୍ୟ, ହତଶ୍ରୀ, ହୃତ୍‌ଶକ୍ତିକ ସମାଜକୁ ଧନ୍ୟ କରିପାର, ଶ୍ରୀରାମଚନ୍ଦ୍ର, ଶ୍ରୀକୃଷ୍ଣ, ବୁଦ୍ଧ, ଯୀଶୁ, ଶ୍ରୀଶଙ୍କର, ଶ୍ରୀଚୈତନ୍ୟ ପ୍ରଭୃତି ରୂପରେ ପୂର୍ବ ପୂର୍ବ ଯୁଗମାନଙ୍କରେ ଯେଉଁ ଲୀଳା ଲୋକଗୁରୁମାନଙ୍କର ଜଗତକୁ ଦେଖାଇବାର ପ୍ରୟୋଜନ ହୋଇ ନାହିଁ, ତାହା ହିଁ ଏହି ଯୁଗରେ ତୁମ ପ୍ରୟୋଜନ ନିମିତ୍ତ ଶ୍ରୀରାମକୃଷ୍ଣ-ଶରୀରରେ ପ୍ରଦର୍ଶିତ ହୋଇଅଛି । ଆଜୀବନବ୍ୟାପୀ କଠୋର ତପସ୍ୟା ଓ ସାଧନାବଳରେ ବିବାହବନ୍ଧନର ଅଦୃଷ୍ଟପୂର୍ବ ପବିତ୍ର 'ଛାଞ୍ଚ' ଜଗତରେ ଏହା ପ୍ରଥମ ପ୍ରସ୍ତୁତ ହୋଇଅଛି । ଏବେ, ଠାକୁର ଯେପରି କହୁଥିଲେ— ତୁମେମାନେ ନିଜ ନିଜ ଜୀବନ ସେହି ଆଦର୍ଶ ଛାଞ୍ଚରେ ପକାଅ, ଏବଂ ନୂତନ ଭାବରେ ଗଠନ କରିନିଅ ।

### ଠାକୁରଙ୍କର ଆଦର୍ଶରେ ବିବାହିତ ଜୀବନ ଗଠନ କରିବାକୁ ଏବଂ ଅନ୍ତତଃ ଆଂଶିକଭାବରେ ବ୍ରହ୍ମଚର୍ଯ୍ୟ ପାଳନ କରିବାକୁ ହେବ । ନତୁବା ଆମର କଲ୍ୟାଣ ନାହିଁ :

'କିନ୍ତୁ'—ଗୃହରେ ଆସକ୍ତ ମନୁଷ୍ୟ ଏବେ ମଧ୍ୟ କହୁଅଛି—'କିନ୍ତୁ—!' ଓଃ, ବୁଝିଛି; ଏବଂ ସ୍ୱାମୀ ବିବେକାନନ୍ଦ ଆମକୁ ସାଧନ-ଭଜନ ସମ୍ବନ୍ଧରେ

ଯେପରି କହୁଥିଲେ, ତାହା ହିଁ ତଦୁତ୍ତରରେ କହୁଛି—''ତୁମେ ମନେକରିଛ ବୋଧହୁଏ ପ୍ରତ୍ୟେକ ଜଣେ ଜଣେ ରାମକୃଷ୍ଣ ପରମହଂସ ହେବ ? ତା ନୁହେଁ, ସେହି ଷାଠିଏ ମହଣ ଘିଅ ହେବ ନାହିଁ କି, ରାଧା ନାଚିବେ ନାହିଁ । ରାମକୃଷ୍ଣ ପରମହଂସ ଜଗତରେ ଜଣେ ମାତ୍ର ହୁଅନ୍ତି—ବନସ୍ତରେ ଗୋଟିଏ ମାତ୍ର ସିଂହ ହିଁ ଥାଏ ।'' ହେ ଗୃହୀ-ମାନବ, ଆମେ ମଧ୍ୟ ତୁମର 'କିନ୍ତୁ' ର ଉତ୍ତରରେ ସେହିପରି କହୁଅଛୁ—ଠାକୁରଙ୍କ ପରି ସ୍ତ୍ରୀ ସହିତ ବାସ କରି ଅଖଣ୍ଡ ବ୍ରହ୍ମଚର୍ଯ୍ୟ ରଖିବା ତୁମର ଯେ ସାଧ୍ୟାତୀତ ତାହା ଠାକୁର ଭଲ ଭାବରେ ଜାଣିଥିଲେ ଏବଂ ଜାଣି ମଧ୍ୟ ଯେ ସେ ସେହି ପ୍ରକାର କରି ତୁମକୁ ଦେଖାଇଦେଲେ, ତାହା କେବଳ ତୁମେ ଅନ୍ତତଃ ଆଂଶିକ ଭାବରେ ଏହାର ଅନୁଷ୍ଠାନ କରିବ ବୋଲି । କିନ୍ତୁ, ଜାଣିବ, ସେହି ଉଚ୍ଚ ଆଦର୍ଶର ଅନୁଷ୍ଠାନ କରି ଯଦି ତୁମେ ସ୍ତ୍ରୀଜାତିକୁ ଜଗଦମ୍ବାଙ୍କର ସାକ୍ଷାତ୍ ପ୍ରତିରୂପ ବୋଲି ନ ଦେଖ ଏବଂ ହୃଦୟର ଯଥାସାଧ୍ୟ ନିଃସ୍ୱାର୍ଥ ଭଲ ପାଇବା ନ ଦେଇପାର, ଜଗତର ମାତୃସ୍ଥାନୀୟା ସ୍ତ୍ରୀମାନଙ୍କୁ ତୁମର ଭୋଗ ବିଳାସର ସାମଗ୍ରୀ ଭାବରେ ପରାଧୀନା ଦାସୀ ମନେକରି ଚିରକାଳ ପଶୁଭାବରେ ହିଁ ଦେଖୁଥାଅ, ତେବେ ତୁମର ଅନ୍ୟ ଗତି ନାହିଁ; ତୁମର ବିନାଶ ଧ୍ରୁବ ଏବଂ ଅତି ନିକଟରେ । ଶ୍ରୀକୃଷ୍ଣଙ୍କର କଥା ଉପେକ୍ଷା କରି ଯଦୁ ବଂଶର କ'ଣ ହେଲା, ତାହା ଭାବ; ଈଶାଙ୍କର କଥା ଉପେକ୍ଷା କରି ଇହୁଦୀ ଜାତିର କି ଦୁର୍ଦ୍ଦଶା; ତାହା ସ୍ମରଣ ରଖ । ଯୁଗାବତାରଙ୍କୁ ଉପେକ୍ଷା କରିବା ସବୁକାଳରେ ହିଁ ଜାତିସମୂହର ଧ୍ୱଂସର କାରଣ ହୋଇଅଛି ।

### ବିବାହ କରି ଠାକୁରଙ୍କର ସମ୍ପୂର୍ଣ୍ଣ ଶରୀର-ସମ୍ବନ୍ଧରହିତ ହେବା ବିଷୟରେ କେତକ ଆପତ୍ତି ଓ ତାହାର ଖଣ୍ଡନ :

ଆଉ ଏକ ପ୍ରଶ୍ନର ଉତ୍ତର ଏଠାରେ ଦେଇ ଆମେ ବିବାହବନ୍ଧନର ମାଧ୍ୟମରେ ଠାକୁରଙ୍କର ଗୁରୁଭାବର ଅଦୃଷ୍ଟପୂର୍ବ ବିକାଶର କଥା ଶେଷ କରି ସେହି ବିଷୟର ଅନ୍ୟ ସମସ୍ତ କଥା କହିବୁ । ରୂପ-ରସାଦି ବିଷୟର ଦାସ, ବହିର୍ମୁଖ ମାନବମନରେ ଏବେ ମଧ୍ୟ ନିଶ୍ଚିତ ଭାବନା ହେଉଅଛି ଯେ, ଠାକୁରେ ଯଦି ବିବାହ କଲେ, ତେବେ ଅନ୍ତତଃ ଗୋଟିଏ ସନ୍ତାନ ଉତ୍ପାଦନ କରି ସ୍ତ୍ରୀ ସହିତ ଶାରୀରିକ ସମ୍ବନ୍ଧ ତ୍ୟାଗ କରିଥିଲେ ଭଲ ହୋଇଥାଆନ୍ତା । ସେପରି କଲେ ଭଗବାନଙ୍କର ସୃଷ୍ଟିରକ୍ଷା କରିବା ଯେ ମନୁଷ୍ୟମାତ୍ରେ ହିଁ କର୍ତ୍ତବ୍ୟ, ତାହା ଦେଖାଇବା ହୋଇଥାଆନ୍ତା ଏବଂ ତା' ସହିତ ଶାସ୍ତ୍ରମର୍ଯ୍ୟାଦା ମଧ୍ୟ ରକ୍ଷା ହୋଇଥାଆନ୍ତା । କାରଣ ଶାସ୍ତ୍ର କହେ—ବିବାହିତା ପତ୍ନୀଙ୍କଠାରୁ ଅନ୍ତତଃ ଗୋଟିଏ ସନ୍ତାନ ଉତ୍ପାଦନ କରିବାକୁ ହେବ । ସେଥିରେ ପିତୃଋଣରୁ ମନୁଷ୍ୟର ନିଷ୍କୃତି ହୁଏ । ଏହାର ଉତ୍ତରରେ ଆମେ କହିବୁ—

ପ୍ରଥମତଃ, ଆମେ ଯେତିକି ଟିକିଏ ଦେଖୁ, ଶୁଣୁ ବା ଚିନ୍ତା ଓ କଳ୍ପନା କରୁ, ସୃଷ୍ଟି ବାସ୍ତବିକ କ'ଣ ସେତିକି ? ବୈଚିତ୍ର୍ୟ ହିଁ ସୃଷ୍ଟିର ନିୟମ । ଆଜି ଏହି ମୁହୂର୍ତ୍ତରୁ ଯଦି ଆମେ ସମସ୍ତେ ସବୁ ବିଷୟରେ ଏକ ପ୍ରକାର ଚିନ୍ତା ଓ କାର୍ଯ୍ୟର ଅନୁଷ୍ଠାନ କରୁ, ତାହେଲେ ସୃଷ୍ଟି ଧ୍ୱଂସ ହେବାକୁ ବେଶୀ ବିଳମ୍ବ ହେବ ନାହିଁ । ତାପରେ ଗୋଟିଏ ପ୍ରଶ୍ନ କରୁଛି—ସୃଷ୍ଟିରକ୍ଷାର ସମସ୍ତ ନିୟମଗୁଡ଼ିକ କ'ଣ ତୁମେ ଜାଣିଅଛ ଏବଂ ସୃଷ୍ଟିରକ୍ଷା କରିବାକୁ ଯାଇ ହିଁ କ'ଣ ତୁମେ ଆଜି ବ୍ରହ୍ମଚର୍ଯ୍ୟବିହୀନ ? ଛାତିରେ ହାତ ରଖି ଉତ୍ତର ଦିଅ; ଦେଖ, ଠାକୁର ଯେପରି କହୁଥିଲେ—''ଭାବର ଘରେ ଯେପରି ଚୋରି ନ ହୁଏ ।'' ଧରିନେଲି ସୃଷ୍ଟିରକ୍ଷାର ସେହି ନିୟମଟି ତୁମେ ପାଳନ କରୁଛ । ଅନ୍ୟକୁ ଏକଥା କହିବାର ତୁମର କି ଅଧିକାର ଅଛି ? ବ୍ରହ୍ମଚର୍ଯ୍ୟ ବା ଉଚ୍ଚାଙ୍ଗର ମାନସିକ ଶକ୍ତିବିକାଶ ପାଇଁ ସାଧାରଣ ବିଷୟରେ ଶକ୍ତିକ୍ଷୟ ନ କରିବା ମଧ୍ୟ ସୃଷ୍ଟି-ମଧ୍ୟଗତ ଏକ ନିୟମ । ସମସ୍ତେ ଯଦି ତୁମପରି ନିମ୍ନାଙ୍ଗର ଶକ୍ତି ବିକାଶରେ ବ୍ୟସ୍ତ ରହିବେ, ତେବେ ଉଚ୍ଚାଙ୍ଗ ଆଧ୍ୟାତ୍ମିକ ବିକାଶ କିଏ ଦେଖାଇବ ? ଏପରି ଶକ୍ତିର ବିକାଶ ତାହେଲେ ତ' ଲୋପ ପାଇଯିବ ।

ଦ୍ୱିତୀୟତଃ, ଶାସ୍ତ୍ର ମଧ୍ୟରୁ ମନଲାଖି କଥାଗୁଡ଼ିକ ବାଛିନେବା ହିଁ ଆମର ସ୍ୱଭାବ । ସନ୍ତାନ ଉତ୍ପାଦନ ବିଷୟକ କଥାଟି ମଧ୍ୟ ସେହିପରି ବାଛି ନିଆଯାଇଥାଏ । କାରଣ, ଶାସ୍ତ୍ର ଅଧିକାରୀଭେଦରେ ପୁଣି କହିଥାଏ, 'ଯଦହରେବ ବିରଜେତ୍ ତଦହରେବ ପ୍ରବ୍ରଜେତ୍'—ଯେତେବେଳେ ଭଗବାନଙ୍କଠାରେ ଅନୁରାଗ ବଢ଼ି ସଂସାରରେ ବୈରାଗ୍ୟ ଉଦୟ ହେବ, ସେତେବେଳେ ହିଁ ସଂସାର ତ୍ୟାଗ କରିବ । ଅତଏବ ଠାକୁରେ ଯଦି ତୁମ ମତରେ ଚାଲିଥାଆନ୍ତେ, ତାହେଲେ ଏହି ଶାସ୍ତ୍ରବଚନର ମର୍ଯ୍ୟାଦାଟି ରକ୍ଷା କିଏ କରିଥାନ୍ତା ? ପିତୃ-ଋଣ ପରିଶୋଧ କରିବା ସମ୍ବନ୍ଧରେ ମଧ୍ୟ ସେହି କଥା । ଶାସ୍ତ୍ର କହନ୍ତି—ଯଥାର୍ଥ ସନ୍ନ୍ୟାସୀ ତା'ର ଉର୍ଦ୍ଧ୍ୱସ୍ଥ ସପ୍ତପୁରୁଷ ଓ ଅଧସ୍ତନ ସପ୍ତପୁରୁଷଙ୍କୁ ନିଜର ପୁଣ୍ୟବଳରେ ଉଦ୍ଧାର କରିଥାନ୍ତି । ଅତଏବ ଠାକୁରଙ୍କର ପିତୃଋଣ ପରିଶୋଧ ହେଲା ନାହିଁ ଭାବି ଆମମାନଙ୍କର କାତର ହେବାର ପ୍ରୟୋଜନ ନାହିଁ ।

### ଗୁରୁଭାବର ପ୍ରେରଣାରେ ଯେ ଠାକୁରଙ୍କର ବିବାହ—ତାହାର ପରିଚୟ ଶ୍ରୀଶ୍ରୀମା'ଙ୍କର ଠାକୁରଙ୍କୁ ଜଗଦମ୍ବାଜ୍ଞାନରେ ଆଜୀବନ ପୂଜା କରିବାରେ ହିଁ ବୁଝାଯାଏ :

ଅତଏବ ବୁଝାଯାଉଛି, ଠାକୁରଙ୍କର ଜୀବନରେ ବିବାହବନ୍ଧନ କେବଳ ଆମମାନଙ୍କର ଶିକ୍ଷା ପାଇଁ ହୋଇଥିଲା । ବିବାହିତ ଜୀବନର କି ଉଚ୍ଚ, ପବିତ୍ର ଆଦର୍ଶ ସେ ଆମ ପାଇଁ ରଖିଯାଇଛନ୍ତି, ତା'ର କିଞ୍ଚିତ୍ ପରିଚୟ ଶ୍ରୀଶ୍ରୀମା'ଙ୍କର ଠାକୁରଙ୍କୁ ସାକ୍ଷାତ୍ ଜଗନ୍ମାତାଜ୍ଞାନରେ ଆଜୀବନ ପୂଜା କରିବା କଥାରୁ ହିଁ ବୁଝାଯାଏ । ମନୁଷ୍ୟ ଅନ୍ୟସମସ୍ତଙ୍କ ନିକଟରେ ନିଜର ଦୁର୍ବଳତା ଆବରିତ ରଖି

ପାରିଲେ ମଧ୍ୟ, ସ୍ତ୍ରୀ ନିକଟରେ କେବେ ତାହା ଲୁଚାଇ ରଖିପାରେ ନାହିଁ—ଏହା ହିଁ ସଂସାରର ନିୟମ । ଠାକୁର ଏବିଷୟରେ ବେଳେବେଳେ ଆମକୁ କହୁଥିଲେ ''ଯାହା ସବୁ ଦେଖୁଛ ବଡ଼-ବଡ଼ିଆ ବାବୁ—କିଏ ଜଜ୍, କିଏ ମାଜିଷ୍ଟ୍ରେଟ୍ ସବୁ ବାହାରର ଲୋକଦେଖା—ମାତ୍ର ସ୍ତ୍ରୀ ନିକଟରେ ସବୁ କେଞ୍ଚୁଆ, ଖାଣ୍ଟି ଗୋଲାମ ! ଅନ୍ତଃପୁରରୁ କୌଣସି ହୁକୁମ ହେଲେ, ଅନ୍ୟାୟ ହେଉପଛେ ତାହା ରଦ୍ଦ କରିବାର କ୍ଷମତା କାହାର ନାହିଁ !'' ଅତଏବ କାହାର ବିବାହିତା ପତ୍ନୀ ଯଦି ତା'ର ପବିତ୍ର, ଉଚ୍ଚ ଜୀବନ ଦେଖି ତାକୁ ଅକପଟରେ ହୃଦୟର ଭକ୍ତି ପ୍ରଦାନ କରେ ଏବଂ ଆଜୀବନ ଈଶ୍ୱରଜ୍ଞାନରେ ପୂଜା କରେ, ତାହେଲେ ନିଶ୍ଚିତ ଭାବରେ ବୁଝାଯାଏ, ସେ ଲୋକଟି ବାହାରେ ଯେଉଁ ଆଦର୍ଶ ଦେଖାଏ, ସେଥିରେ କିଛିମାତ୍ର ମିଥ୍ୟା ନାହିଁ । ଠାକୁରଙ୍କ ସମ୍ବନ୍ଧରେ ସେଥିପାଇଁ ଆମେ ଏକଥା ଯେତେ ନିଶ୍ଚିତ କରି କହିପାରୁ, ସେପରି ଅନ୍ୟ କାହା ସମ୍ବନ୍ଧରେ ନୁହେଁ । ପରିଣୀତା ପତ୍ନୀଙ୍କ ସହିତ ଠାକୁରଙ୍କର ଅପୂର୍ବ ପ୍ରେମଲୀଳାର ଅନେକ କଥା କହିବାକୁ ଥିଲେ ମଧ୍ୟ, ଏହା ତା'ର ସ୍ଥାନ ନୁହେଁ । ସେଥିପାଇଁ ଏଠାରେ ବୈବାହିକ-ଜୀବନ ମାଧ୍ୟମରେ ଠାକୁରଙ୍କର ଅଦ୍ଭୁତ ଗୁରୁଭାବ-ବିକାଶର କିଞ୍ଚିତ୍ ଆଭାସମାତ୍ର ଦେଇ ଆମେ କ୍ଷାନ୍ତ ହେଲୁ ।

# ପଞ୍ଚମ ଅଧ୍ୟାୟ

## ଯୌବନରେ ଗୁରୁଭାବ

ନାହଂ ପ୍ରକାଶଃ ସର୍ବସ୍ୟ ଯୋଗମାୟାସମାବୃତଃ ।
ମୂଢୋଽୟଂ ନାଭିଜାନାତି ଲୋକୋ ମାମଜମବ୍ୟୟମ୍ ।। — ଗୀତା ୭/୨୫

### ଗୁରୁ ବା ନେତା ହେବା ମନୁଷ୍ୟର ଇଚ୍ଛାଧୀନ ନୁହେଁ :

ଯେଉଁଦିନଠାରୁ ଠାକୁର ଦକ୍ଷିଣେଶ୍ୱରରେ ଶ୍ରୀଶ୍ରୀଜଗଦମ୍ବାଙ୍କର ପୂଜାରେ ବ୍ରତୀ ହୋଇ ସେଠାରେ ଅବସ୍ଥାନ କଲେ, ସେହିଦିନଠାରୁ ଠାକୁରଙ୍କ ଜୀବନରେ ଗୁରୁଭାବର ବିଶେଷ ବିକାଶ ଆରମ୍ଭ ହୋଇଥିଲା । ଠାକୁର ସେତେବେଳେ ସାଧନାରେ ନିମଗ୍ନ ଥିଲେ — ଈଶ୍ୱରପ୍ରେମରେ ଉନ୍ମାଦଙ୍କ ପରି ଅବସ୍ଥା ଥିଲା । କିନ୍ତୁ ତାହା ହେଲେ କ'ଣ ହେବ ? ଯିଏ ଗୁରୁ, ସେ ଚିରକାଳ ପାଇଁ ଗୁରୁ — ଯିଏ ନେତା, ସେ ବାଲ୍ୟକାଳରୁ ହିଁ ନେତା । ଲୋକେ କମିଟି କରି ପରାମର୍ଶ କରି ଯେ ତାଙ୍କୁ ଗୁରୁ ବା ନେତାଙ୍କ ଆସନ ଛାଡ଼ି ଦିଅନ୍ତି, ତାହା ନୁହେଁ । ସେ ଯେତେବେଳେ ଆସି ଲୋକସମାଜରେ ଦଣ୍ଡାୟମାନ ହୁଅନ୍ତି, ସାଧାରଣ ମାନବର ମନ ତାଙ୍କ ପ୍ରତି ଭକ୍ତିପୂର୍ଣ୍ଣ ହୁଏ । ମଥାନତ କରି ସେମାନେ ତାଙ୍କ ନିକଟରୁ ଶିକ୍ଷା ଗ୍ରହଣ ଏବଂ ତାଙ୍କର ଆଜ୍ଞା ପାଳନ କରିଥାନ୍ତି — ଏହା ହିଁ ନିୟମ । ସ୍ୱାମୀ ବିବେକାନନ୍ଦ କହୁଥିଲେ, ମଣିଷ ମଣିଷକୁ ନେତା ବା ଗୁରୁ କରି ତିଆରି କରେ ନାହିଁ; ତାହା ନୁହେଁ, ଯେଉଁମାନେ ଗୁରୁ ବା ନେତା ହୁଅନ୍ତି, ସେମାନେ ସେହି ଅଧିକାର ନେଇ ହିଁ ଜନ୍ମ ଗ୍ରହଣ କରିଥାନ୍ତି । 'A leader is always born and never created' — ସେଥିପାଇଁ ଦେଖାଯାଏ, ସାଧାରଣ ଲୋକ ଯେଉଁ କାର୍ଯ୍ୟ କଲେ ସମାଜ ଉତ୍‌କ୍ଷିପ୍ତ ହୋଇ ଦଣ୍ଡବିଧାନ କରେ, ଲୋକଗୁରୁମାନେ ସେହିସମସ୍ତ କଲେ ମଧ୍ୟ ଲୋକେ ଅବନତ ଶିରରେ ସେମାନଙ୍କର ପଦାନୁସରଣ କରିଥାନ୍ତି । ଗୀତାରେ ଭଗବାନ ଶ୍ରୀକୃଷ୍ଣ ଏସମ୍ବନ୍ଧରେ କହିଛନ୍ତି —

'ସ ଯତ୍ ପ୍ରମାଣଂ କୁରୁତେ ଲୋକସ୍ତଦନୁବର୍ତତେ ।'

— ସେ ଯାହା କିଛି କରନ୍ତି, ତାହା ହିଁ ସତ୍‌କାର୍ଯ୍ୟର ପ୍ରମାଣ ବା ପରିମାପକ ହୋଇଯାଏ ଏବଂ ଜନସାଧାରଣ ସେହିପରି ଆଚରଣ କରିଥାନ୍ତି । ଏହା କିନ୍ତୁ ବଡ଼ ଆଶ୍ଚର୍ଯ୍ୟର କଥା ଯେ, ବାସ୍ତବରେ ଚିରକାଳ ସେହିପରି ହୋଇଆସିଛି ଏବଂ ପରେ ମଧ୍ୟ ହେଉଥିବ । ଶ୍ରୀକୃଷ୍ଣ କହିଲେ, 'ଆଜିଠାରୁ ଇନ୍ଦ୍ରଙ୍କର ପୂଜା ବନ୍ଦ ହୋଇ ଗୋବର୍ଦ୍ଧନଙ୍କର ପୂଜା ହେଉ' — ଲୋକମାନେ ତାହା ହିଁ କରିବାକୁ ଲାଗିଲେ ! ବୁଦ୍ଧ କହିଲେ, 'ଆଜିଠାରୁ ପଶୁହିଂସା ବନ୍ଦ ହେଉ' ସଙ୍ଗେ ସଙ୍ଗେ 'ଯଜ୍ଞରେ ହତ୍ୟାହେବା ନିମିତ୍ତ ପଶୁଗଣର ସୃଷ୍ଟି,' 'ଯଜ୍ଞାର୍ଥେ ପଶବୋ ସୃଷ୍ଟାଃ'

ରୂପକ ନିୟମଟିକୁ ସମାଜ ବଦଳାଇ ଦେଲା ! ଯୀଶୁ ମହାପବିତ୍ର ଉପବାସ ଦିନରେ ଶିଷ୍ୟମାନଙ୍କୁ ଭୋଜନ କରିବାକୁ ଅନୁମତି ପ୍ରଦାନ କଲେ—ତାହା ହିଁ ନିୟମ ହୋଇଗଲା ! ମହମ୍ମଦ ବହୁ ବିବାହ କଲେ, ତଥାପି ଲୋକେ ତାଙ୍କୁ ଧର୍ମବୀର, ତ୍ୟାଗୀ ଓ ନେତା ବୋଲି ମାନ୍ୟ କରିବାକୁ ଲାଗିଲେ ! ସାଧାରଣ ହେଉ ବା ମହତ୍ ହେଉ ସମସ୍ତ ବିଷୟରେ ହିଁ ସେହିପରି—ସେମାନେ ଯାହା କହନ୍ତି ଓ କରନ୍ତି, ତାହା ହିଁ ସଦାଚାର ହୋଇଥାଏ ।

**ଲୋକଗୁରୁମାନଙ୍କ ମଧ୍ୟରେ ବିରାଟ ଭାବମୁଖୀ ମୁଁତ୍ୱର ବିକାଶ ସହଜରେ ଆସି ଉପସ୍ଥିତ ହୁଏ, ସାଧାରଣ ଲୋକଙ୍କର ଏପରି ହୋଇ ନ ଥାଏ :**

କାହିଁକି ଯେ ଏପରି ହୁଏ ଆମେ ତାହା ମଧ୍ୟ ଏହା ପୂର୍ବରୁ କହିଅଛୁ—ଲୋକଗୁରୁମାନଙ୍କର କ୍ଷୁଦ୍ର ସ୍ୱାର୍ଥପର 'ମୁଁ'ତ୍ୱ ଚିରକାଳ ପାଇଁ ସମ୍ପୂର୍ଣ୍ଣ ବିନଷ୍ଟ ହୋଇ ତାହା ସ୍ଥାନରେ ବିରାଟଭାବମୁଖୀ 'ମୁଁ'ତ୍ୱର ବିକାଶ ଉପସ୍ଥିତ ହୁଏ । ସେହି 'ମୁଁ'ତ୍ୱର ସ୍ୱଭାବ ହେଉଛି ସମସ୍ତଙ୍କର କଲ୍ୟାଣ କରିବା । ଫୁଲ ଫୁଟିଲେ ଭଅଁର ଯେପରି ନିଜେ ଜାଣିପାରି ମଧୁଲୋଭରେ ସେଠାକୁ ଆସି ପହଞ୍ଚିଯାଏ, ଫୁଲକୁ ଆଉ ଭଅଁର ନିକଟକୁ ସାଦର ନିମନ୍ତ୍ରଣ ପଠାଇବାକୁ ହୁଏ ନାହିଁ, ସେହିପରି ଯେଉଁ ମୁହୂର୍ତ୍ତରେ କାହା ଭିତରେ ଏହି ବିରାଟ 'ମୁଁ'ତ୍ୱର ବିକାଶ ହୁଏ, ସେହିକ୍ଷଣି ସଂସାରରେ ତାପିତ ଲୋକମାନେ ଆପେ ହିଁ ତାହା କିପରି ଜାଣିପାରି ଶାନ୍ତିଲାଭ ନିମିତ୍ତ ଧାଇଁ ଆସନ୍ତି ! ସାଧାରଣ ମନୁଷ୍ୟ ମଧ୍ୟରେ ଏହି ବିରାଟ 'ମୁଁ'ତ୍ୱର ସାମାନ୍ୟ ବିକାଶ ଅନେକ କଷ୍ଟରେ ଆସିଥାଏ । କିନ୍ତୁ ଲୋକଗୁରୁମାନଙ୍କର ଜୀବନରେ ବାଲ୍ୟାବସ୍ଥାରୁ ହିଁ ତାହାର କିଛି ନା କିଛି ବିକାଶ, ଯୌବନରେ ଅଧିକତର ପ୍ରକାଶ ଏବଂ ପରିଶେଷରେ ପୂର୍ଣ୍ଣ ପ୍ରକାଶର ଅଦ୍ଭୁତ ଲୀଳାସକଳ ଦେଖି ଆମେ ସ୍ତମ୍ଭିତ ହୋଇ ଈଶ୍ୱରଙ୍କ ସହିତ ସେମାନଙ୍କୁ ସମ୍ପୂର୍ଣ୍ଣ ଅପୃଥକ୍‌ଭାବରେ ଦେଖିଥାଉ । କାରଣ ସେତେବେଳେ ସେହି ଅମାନବ-ଭାବପ୍ରକାଶ ସେମାନଙ୍କଠାରେ ଏତେ ସହଜ ହୋଇଯାଇଥାଏ ଯେ, ତାହା ଖାଇବା-ପିନ୍ଧିବା, ଚଲା-ବୁଲା, ନିଃଶ୍ୱାସ-ପ୍ରଶ୍ୱାସ ନେବାପରି ଏକ ସାଧାରଣ ନିତ୍ୟକର୍ମ ହୋଇଯାଏ । ସୁତରାଂ ସାଧାରଣ ମନୁଷ୍ୟ କ'ଣ କରିବ ?—ସେ ଦେଖେ ଯେ, ତା'ର କ୍ଷୁଦ୍ର ସ୍ୱାର୍ଥର ମାପକାଠି ଦ୍ୱାରା ସେମାନଙ୍କର ଦେବଚରିତ୍ର ମାପି ହୁଏ ନାହିଁ ଏବଂ ସେଥିପାଇଁ କିଂକର୍ତ୍ତବ୍ୟବିମୂଢ଼ ହୋଇ ସେମାନଙ୍କୁ ଦେବତାଜ୍ଞାନରେ ଭକ୍ତି ଓ ବିଶ୍ୱାସ କରି ତାଙ୍କର ଶରଣାପନ୍ନ ହୋଇଥାଏ ।

## ଠାକୁରଙ୍କ ଜୀବନରେ ଗୁରୁଭାବର ପୂର୍ଣ୍ଣ ବିକାଶ ହୋଇ ତାହା ସହଜ ଭାବରେ କେତେବେଳେ ରୂପାନ୍ତରିତ ହୋଇଥିଲା :

ଠାକୁରଙ୍କ ଜୀବନ ଆଲୋଚନାରେ ଆମେ ଏପରି ଦେଖିବାକୁ ପାଉ— ଯୌବନରେ ସାଧକ ଅବସ୍ଥାରେ ଦିନ ପରେ ଦିନ ଏହି ଭାବର କ୍ରମେ କ୍ରମେ ବିକାଶ ହୋଇ ବାରବର୍ଷର କଠୋର ସାଧନାନ୍ତେ ସେହି ଭାବର ପୂର୍ଣ୍ଣ ପ୍ରକାଶ ହୋଇ ତାହା ଏକାବେଳକେ ସହଜ ଭାବ ହୋଇଯାଉଥିଲା । ସେସମୟରେ କେତେବେଳେ ସିଏ ଯେ କେଉଁ 'ମୁଁ'-ବୁଦ୍ଧିରେ ରହିଅଛନ୍ତି ବା କେତେବେଳେ ଯେ ତାଙ୍କଠାରେ ବିରାଟ 'ମୁଁ'ତ୍ୱର ସହାୟରେ ଗୁରୁଭାବାବେଶ ହେଉଥିଲା, ତାହା ଅନେକ ସମୟରେ ସାଧାରଣ ମାନବର ମନ-ବୁଦ୍ଧିର ଗୋଚର ହେଉ ନ ଥିଲା । କିନ୍ତୁ ତାହା ସେହିଭାବର ପୂର୍ଣ୍ଣ ପରିଣତ ଅବସ୍ଥାର କଥା, ତେଣୁ ଯେଉଁ ସ୍ଥାନରେ ତାହା ପ୍ରାସଙ୍ଗିକ ହେବ ସେହି ସ୍ଥାନରେ ହିଁ ତାହାର ବିଶେଷ ପରିଚୟ ମିଳିବ । ବର୍ତ୍ତମାନ ଏବେ ଯୌବନରେ ସାଧକ ଅବସ୍ଥାରେ ସେହି ଭାବରେ ଆତ୍ମହରା ହୋଇ ସେ ଅନେକ ସମୟରେ ଯେପରି ଆଚରଣ କରୁଥିଲେ, ତାହାର କିଛି କଥା ପାଠକଙ୍କୁ ପ୍ରଥମେ କହିବା ଆବଶ୍ୟକ ।

## ସାଧନାକାଳରେ ସେହି ଭାବ—ରାଣୀ ରାସମଣି ଓ ତାଙ୍କର ଜ୍ୱାଇଁ ମଥୁରଙ୍କ ସହିତ ବ୍ୟବହାର :

ଯୌବନରେ ଠାକୁରଙ୍କର ଗୁରୁଭାବର ପ୍ରଥମ ବିକାଶ ଦକ୍ଷିଣେଶ୍ୱର କାଳୀମନ୍ଦିରର ପ୍ରତିଷ୍ଠାତ୍ରୀ ରାଣୀ ରାସମଣି ଓ ତାଙ୍କର ଜାମାତା ମଥୁରାନାଥ ବା ମଥୁରବାବୁଙ୍କୁ ନେଇ ଦେଖିବାକୁ ମିଳେ । ଅବଶ୍ୟ ଏହି ଦୁଇଜଣଙ୍କ ମଧ୍ୟରୁ କାହାକୁ ହେଲେ ଦେଖିବା ଆମମାନଙ୍କର ଭାଗ୍ୟରେ ଘଟି ନାହିଁ । ତେବେ ଠାକୁରଙ୍କ ନିଜ ମୁହଁରୁ ଯାହା ଶୁଣାଯାଇଛି, ସେଥିରୁ ବେଶ୍ ବୁଝାଯାଏ ଯେ, ପ୍ରଥମ ଦର୍ଶନରୁ ଏମାନଙ୍କର ମନରେ ଠାକୁରଙ୍କ ପ୍ରତି ଭଲ ପାଇବା ଉଦୟ ହୋଇ କ୍ରମେ କ୍ରମେ ଏହା ଏତେ ଗଭୀର ଭାବ ଧାରଣ କରିଥିଲା ଯେ, ଏପରି ଅନ୍ୟ କେଉଁଠି ଦେଖାଯାଏ ନାହିଁ । ମନୁଷ୍ୟକୁ ମନୁଷ୍ୟ ଯେ ଏତେଟା ଭକ୍ତି-ବିଶ୍ୱାସ କରିପାରେ, ଏତେଟା ଭଲପାଇପାରେ, ତାହା ଆମମାନଙ୍କର ଅନେକଙ୍କ ମନରେ ବୋଧହୁଏ ଧାରଣା ନ ହୋଇ ଏକ ଅଳୀକ କାହାଣୀ ସଦୃଶ ମନେହେବ ! ଅଥଚ ଉପରେ ଉପରେ ଦେଖିଲେ ଠାକୁର ସେତେବେଳେ ଜଣେ ସାଧାରଣ ନଗଣ୍ୟ ପୂଜକ ବ୍ରାହ୍ମଣ ମାତ୍ର ଏବଂ ସେମାନେ ଜାତିରେ ଉଚ୍ଚବଂଶୀୟ ନ ଥିଲେ ମଧ୍ଧ ଧନ, ମାନ, ବିଦ୍ୟା ଓ ବୁଦ୍ଧିରେ ସମାଜର ଅଗ୍ରଣୀ ଥିଲେ ବୋଲି କହିବାକୁ ହେବ ।

## ଠାକୁରଙ୍କର ଅପୂର୍ବ ସ୍ୱଭାବ :

ପୁନଶ୍ଚ ଠାକୁରଙ୍କର ସ୍ୱଭାବ ମଧ୍ୟ ବାଲ୍ୟକାଳରୁ ଅତି ବିଚିତ୍ର ! ଧନ, ମାନ, ବିଦ୍ୟା, ବୁଦ୍ଧି, ନାମ ଶେଷରେ ବଡ଼ ବଡ଼ ଉପାଧି ପ୍ରଭୃତି ଯେଉଁ ସମସ୍ତ ନେଇ ଲୋକମାନେ ଲୋକଙ୍କୁ ବଡ଼ ବୋଲି ଗଣ୍ୟ କରନ୍ତି, ତାହାଙ୍କ ଦୃଷ୍ଟିରେ ଏବଂ ଧାରଣାରେ ଚିରକାଳ ସେଗୁଡ଼ିକ ବିଶେଷ ମୂଲ୍ୟବାନ ନ ଥିଲା । ଠାକୁରେ କହୁଥିଲେ, ''ମନୁମେଣ୍ଟ ଉପରକୁ ଉଠି ଦେଖିଲେ ତିନିତାଲା ଚାରିତାଲା ଘର, ଉଚ୍ଚ ଉଚ୍ଚ ଗଛ, ଜମିଉପରର ଘାସ ସବୁକିଛି ସମାନ ହୋଇଯାଇଥିବା ପରି ଦେଖାଯାଏ ।'' ଆମେ ମଧ୍ୟ ଦେଖୁ, ଠାକୁରଙ୍କର ନିଜର ମନ ବାଲ୍ୟକାଳରୁ ସତ୍ୟନିଷ୍ଠା ଓ ଈଶ୍ୱର ଅନୁରାଗ-ସହାୟରେ ସର୍ବଦା ଏତେ ଉଚ୍ଚରେ ଉଠି ରହୁଥିଲା ଯେ ସେଠାରୁ ଧନ-ମାନ-ବିଦ୍ୟା ଆଦିର ଟିକେ-ଅଧେ ତାରତମ୍ୟ — ଯାହାକୁ ନେଇ ଆମେ ଗର୍ବରେ ଫୁଲି ଫାଟି ପଡ଼ିବା ପରି ହେଉ ଓ 'ଧରାକୁ ସରା ଜ୍ଞାନ' କରୁ — ସବୁ ଏକ ପ୍ରକାର ଦେଖା ଯାଉଥିଲା ! ଅଥବା ଠାକୁରଙ୍କ ମନ, ଚିରକାଳ ପ୍ରତ୍ୟେକ କାର୍ଯ୍ୟକୁ କାହିଁକି କରିବି ଏବଂ ପ୍ରତ୍ୟେକ ବ୍ୟକ୍ତି ଓ ପଦାର୍ଥ ସହିତ ସମ୍ବନ୍ଧର ଚରମ ପରିଣତିରେ କ'ଣ ହେବ ତାହା ଭାବି ଏବଂ ଅନ୍ୟର ସେହପରି ବିଷୟରେ କିପରି ଅବସ୍ଥା ହୋଇଅଛି ତାହା ଦେଖି ଏକ ବଦ୍ଧମୂଳ ଧାରଣା ପୂର୍ବରୁ ହିଁ ହୋଇଯାଉଥିଲା । ସୁତରାଂ ଏସମସ୍ତ ବିଷୟ ଯେ ଉଦ୍ଦେଶ୍ୟ ଓ ଚରମପରିଣତି ଲୁଚାଇ ମଧୁର ଛଦ୍ମବେଶରେ ତାହାଙ୍କୁ ଭୁଲାଇ ଅନ୍ତତଃ କିଛି କାଳ ପାଇଁ ମଧ୍ୟ ତୁଚ୍ଛାରେ ବୁଲାଇବ, ତାହାର କୌଣସି ରାସ୍ତା ନ ଥିଲା । ପାଠକ କହିବେ, 'କିନ୍ତୁ ଏପରି ବୁଦ୍ଧିରେ ସମସ୍ତ ବିଷୟର ଦୋଷଗୁଡ଼ିକ ହିଁ ପ୍ରଥମେ ଆଖିରେ ପଡ଼ି ମନୁଷ୍ୟକୁ ଜଡ଼ଭାବାପନ୍ନ କରି ତୋଳିବ, ଜଗତର କୌଣସି କାର୍ଯ୍ୟ କରିବାକୁ ବା ଅଗ୍ରସର ହେବାକୁ ଦେବ ନାହିଁ ।' ବାସ୍ତବରେ ହିଁ ତାହା । ମନଯଦି ପୂର୍ବରୁ ବାସନାଶୂନ୍ୟ ବା ପବିତ୍ର ନ ହୋଇଥାଏ ଏବଂ ଈଶ୍ୱରଲାଭରୂପକ ମହତ ଉଦ୍ଦେଶ୍ୟ ଯଦି ଏହାର ମୂଳ ହୋଇ ନ ଥାଏ, ତାହେଲେ ଏପରି ବୁଦ୍ଧି ହିଁ ମନୁଷ୍ୟକୁ କିଂକର୍ତ୍ତବ୍ୟବିମୂଢ଼ କରି ଉଦ୍ୟମରହିତ ଏବଂ କେତେବେଳେ ଉଚ୍ଛୃଙ୍ଖଳ ଓ ଯଥେଚ୍ଛାଚାରୀ କରିଦେଇଥାଏ । କିନ୍ତୁ ପବିତ୍ରତା ଓ ଉଚ୍ଚଲକ୍ଷ୍ୟରେ ଯଦି ମନର ସୁର ବନ୍ଧାଥାଏ, ତେବେ ଏପରି ସମସ୍ତ ବିଷୟର ଅନ୍ତଃସ୍ଥଳସ୍ପର୍ଶୀ ଏହି ଦୋଷଦର୍ଶୀ ବୁଦ୍ଧି ହିଁ ମନୁଷ୍ୟକୁ ଈଶ୍ୱର-ଦର୍ଶନର ମାର୍ଗରେ ଦ୍ରୁତପଦରେ ଅଗ୍ରସର କରାଇଦିଏ । ଗୀତାରେ ଭଗବାନ ଶ୍ରୀକୃଷ୍ଣ ଏଥିପାଇଁ ଶ୍ରଦ୍ଧାଭକ୍ତିସମ୍ପନ୍ନ ମନୁଷ୍ୟକୁ ହିଁ ସର୍ବଦା ସଂସାରରେ 'ଜନ୍ମ-ମୃତ୍ୟୁ-ଜରା-ବ୍ୟାଧି-ଦୁଃଖ-ଦୋଷାନୁଦର୍ଶନ' କରି ବୈରାଗ୍ୟବାନ୍ ହେବାକୁ କହିଛନ୍ତି । ଠାକୁରଙ୍କ ଚରିତ୍ରରେ ବାଲ୍ୟକାଳରୁ ଏହି ଦୋଷଦୃଷ୍ଟି କେତେଦୂର ପରିସ୍ଫୁଟ ତାହା ଦେଖ । ଲେଖା-ପଢ଼ା କରିବାକୁ ଯାଇ କେଉଁଠି 'ତର୍କାଳଙ୍କାର', 'ବିଦ୍ୟାବାଗୀଶ' ପ୍ରଭୃତି ଉପାଧି ଓ ନାମଯଶ ଆଡ଼କୁ ଦୃଷ୍ଟି ପଡ଼ିବ, ତାହା ନ ହୋଇ ଦେଖିବାକୁ

ପାଇଲେ, ବଡ଼ ବଡ଼ 'ତର୍କବାଗୀଶ', 'ନ୍ୟାୟଚଞ୍ଚୁ' ମହାଶୟଗଣ ନ୍ୟାୟ-ବେଦାନ୍ତ ସମ୍ବନ୍ଧରେ ଲମ୍ବା ଲମ୍ବା କଥା କହି ଧନୀଲୋକଙ୍କ ଦ୍ୱାରରେ ଖୋସାମତି କରି ଚାଉଳ-କଦଳୀ ବାନ୍ଧିବା ବା ଜୀବିକାର ସଂସ୍ଥାନ କରିବା ! ବିବାହ କରିବାକୁ ଯାଇ କେଉଁଠି ସଂସାରର ଭୋଗସୁଖ ଆମୋଦ-ପ୍ରମୋଦ ଆଡ଼େ ନଜର ପଡ଼ିବ, ତା ନ ହୋଇ ସେ ଦେଖିଲେ ଦୁଇ ଦିନର ସୁଖ ପାଇଁ ଚିରଦିନ ପାଇଁ ବନ୍ଧନ ବେକରେ ବାନ୍ଧିବ, ଅଭାବବୃଦ୍ଧି କରି ଅର୍ଥ ଚିନ୍ତାରେ ଧାଁ ଦଉଡ଼ କରି ବୁଲିବା ଓ ସେହି ଦୁଇଦିନର ସୁଖର ମଧ୍ୟ ଅନିଶ୍ଚୟତା ! ଅର୍ଥ ଦ୍ୱାରା ସଂସାରର ସବୁ କରିବାକୁ ଓ ସବୁ ହୋଇପାରେ ଦେଖି କେଉଁଠି ଅଣ୍ଟାଭିଡ଼ି ରୋଜଗାରରେ ଲାଗିପଡ଼ିବେ — ତାହା ନ କରି, ଦେଖିଲେ, ଅର୍ଥରେ କେବଳ ଭାତ, ଡାଲି, ବସ୍ତ୍ର ଓ ଇଟା, ମାଟି, କାଠ ହିଁ ଲାଭ ହୋଇପାରେ, କିନ୍ତୁ ଈଶ୍ୱର ଲାଭ ହୁଏ ନାହିଁ ! ସଂସାରରେ ଗରିବ-ଦୁଃଖୀଙ୍କ ପ୍ରତି ଦୟାପରବଶ ହୋଇ ପରର ଦୁଃଖ ମୋଚନ କରି 'ଦାତା', 'ପରୋପକାରୀ' ଇତ୍ୟାଦି ନାମ କିଣିବେ, ତାହା ନୁହେଁ — ଦେଖିଲେ, ଆଜୀବନ ଚେଷ୍ଟା ଫଳରେ ଅତି ଜୋର୍‌ରେ ଦୁଇଚାରୋଟି ଫ୍ରୀ-ସ୍କୁଲ ଓ ଦୁଇଚାରୋଟି ଦାତବ୍ୟ ଡାକ୍ତରଖାନା, ଅତିବେଶିରେ ଦୁଇଚାରୋଟି ଅତିଥିଶାଳା ସ୍ଥାପନ କରାଯାଇପାରେ; ତାପରେ ମୃତ୍ୟୁ ଓ ଜଗତରେ ଯେଉଁ ଅଭାବକୁ ସେହି ଅଭାବ ହିଁ ରହିଲା ! — ଏହିପରି ସବୁ ବିଷୟରେ ବୁଝିବାକୁ ହେବ ।

## ଧନୀ ଓ ପଣ୍ଡିତମାନେ ଠାକୁରଙ୍କୁ ଚିହ୍ନିପାରିବା କଠିନ; ଏହାର କାରଣ :

ଏପରି ସ୍ୱଭାବାପନ୍ନ ଠାକୁରଙ୍କୁ ବାସ୍ତବ କ୍ଷେତ୍ରରେ ଠିକ୍ ଠିକ୍ ଧରିବା ବା ବୁଝିବା ସାଧାରଣ ମନୁଷ୍ୟ ପକ୍ଷରେ ଅତ୍ୟନ୍ତ କଠିନ, ବିଶେଷ କରି ବିଦ୍ୟାଭିମାନୀ ଓ ଧନୀମାନଙ୍କ ପକ୍ଷରେ; କାରଣ, ସ୍ପଷ୍ଟକଥା ସଂସାରରେ କାହା ନିକଟରୁ ଶୁଣିବାକୁ ନ ପାଇ, ଲୋକମାନ୍ୟ ଓ ଧନ ମଦରେ ଶୁଣିବାର କ୍ଷମତା ପର୍ଯ୍ୟନ୍ତ ସେମାନେ ଅନେକ ସ୍ଥଳରେ ହରାଇ ବସନ୍ତି । ଫଳରେ ସେମାନେ ଠାକୁରଙ୍କୁ ଅନେକ ସମୟ ନ ବୁଝିପାରି ଯେ ଅସଭ୍ୟ, ପାଗଳ ବା ଅହଂକାରୀ ମନେ କରୁଥିଲେ, ଏହା ବିଚିତ୍ର ନୁହେଁ । ସେଥିପାଇଁ ରାଣୀ ରାସମଣି ଓ ମଥୁରବାବୁଙ୍କର ଭକ୍ତି ଓ ଭଲ ପାଇବା ଦେଖି ଆହୁରି ଆଶ୍ଚର୍ଯ୍ୟ ହେବାକୁ ପଡ଼ିଥାଏ ! ମନେହୁଏ, ଈଶ୍ୱରଙ୍କ କୃପାରୁ ମହାଭାଗ୍ୟୋଦୟ ହୋଇଥିଲା ବୋଲି ସେମାନେ କେବଳ ଠାକୁରଙ୍କ ଉପରେ ଭଲପାଇବା ଯେ ଅକ୍ଷୁଣ୍ଣ ରଖିପାରିଥିଲେ ତାହା ନୁହେଁ, ଉପରନ୍ତୁ ତାଙ୍କର ଦିବ୍ୟ ଗୁରୁଭାବର ପରିଚୟ ଦିନକୁ ଦିନ ପ୍ରାପ୍ତ ହୋଇ ତାଙ୍କର ଶ୍ରୀଚରଣରେ ସର୍ବତୋଭାବରେ ଆତ୍ମସମର୍ପଣ କରିବାକୁ ସମର୍ଥ ହୋଇଥିଲେ ! ନତୁବା ଯେଉଁ ଠାକୁରେ କାଳୀମନ୍ଦିର-ପ୍ରତିଷ୍ଠା ଦିନରେ ନିଜର ଅଗ୍ରଜ ପୂଜାରେ ବ୍ରତୀ ହୋଇ

ଶ୍ରୀଶ୍ରୀଜଗଦମ୍ବାଙ୍କର ପ୍ରସାଦ ଭୋଜନ କଲେ ମଧ୍ୟ ଶୂଦ୍ରାନ୍ନ ଭୋଜନ କରିବାକୁ ହେବ ବୋଲି ସେ ସେଠାରେ ଉପବାସ ରହିଥିଲେ ଏବଂ ପରେ ମଧ୍ୟ କିଛି ଦିନ ପର୍ଯ୍ୟନ୍ତ ସେହି କାରଣରୁ କାଳୀମନ୍ଦିରର ଗଙ୍ଗାକୂଳରେ ସ୍ୱହସ୍ତରେ ରୋଷେଇ କରି ଭୋଜନ କରୁଥିଲେ, ଯେଉଁ ଠାକୁରଙ୍କୁ ମଥୁରବାବୁ ବାରମ୍ବାର ଡାକିଲେ ମଧ୍ୟ ବିଷୟୀ ଲୋକ ବୋଲି ତାଙ୍କ ସହିତ ଆଳାପ କରିବାକୁ କୁଣ୍ଠିତ ହେଉଥିଲେ ଏବଂ ପରେ ମା'କାଳୀଙ୍କର ପୂଜାରେ ବ୍ରତୀ ହେବା ନିମିତ୍ତ ତାଙ୍କର ସାଦର ଅନୁରୋଧ ବାରମ୍ବାର ପ୍ରତ୍ୟାଖ୍ୟାନ କରିଥିଲେ, ଅଭିମାନ ଏବଂ ଧନ ମଦ ତ୍ୟାଗ କରି ସେହି ଠାକୁରଙ୍କୁ ପ୍ରଥମରୁ ଭଲପାଇବା ଏବଂ ବରାବର ସେହି ଭାବ ଠିକ୍ ରଖିବା ରାଣୀ ରାସମଣି ଓ ମଥୁରବାବୁଙ୍କ ପକ୍ଷରେ କଣ ସମ୍ଭବ ହୋଇଥାନ୍ତା ?

**ବିବାହ ପରେ ଠାକୁରଙ୍କ ଅବସ୍ଥା । ମଥୁର ଏହା ଲକ୍ଷ୍ୟ କରି କ୍ରମଶଃ ତାଙ୍କ ପ୍ରତି ଆକୃଷ୍ଟ ହେବା । ଅନ୍ୟ ସାଧାରଣ ଲୋକଙ୍କର ଠାକୁରଙ୍କ ବିଷୟରେ ମତାମତ :**

ଠାକୁରଙ୍କର ସେତେବେଳେ ବିବାହ ହୋଇସାରିଥିଲା—ସେ ପୂର୍ଣ୍ଣ ଯୌବନ ଥିଲେ । ବିବାହ ପରେ ଦକ୍ଷିଣେଶ୍ୱର ପ୍ରତ୍ୟାଗମନ କରି ସେ ମା'କାଳୀଙ୍କ ପୂଜାରେ ବ୍ରତୀ ହେଲେ; ଏବଂ ପୂଜାରେ ବ୍ରତୀ ହୋଇ ହିଁ ପୁଣି ଈଶ୍ୱର ପ୍ରେମରେ ପାଗଳ ସଦୃଶ ହୋଇଗଲେ । ଈଶ୍ୱର ଲାଭ ହେଲା ନାହିଁ ବୋଲି କେତେବେଳେ ଭୂମିରେ ଗଡ଼ି ମୁହଁ ଘସି 'ମା' 'ମା' ବୋଲି ଏତେ କାନ୍ଦୁଥିଲେ ଯେ, ଲୋକେ ଦଉଡ଼ି ଆସୁଥିଲେ ! ଲୋକମାନେ ବ୍ୟଥିତ ହୋଇ କୁହାକୁହି ହେଉଥିଲେ, ଆହା, ନିଶ୍ଚୟ ଲୋକଟିର କୌଣସି ଉତ୍କଟ ରୋଗ ହୋଇଅଛି; ପେଟରେ ଶୂଳବ୍ୟଥା ହେଲେ ଏପରି ଅସ୍ଥିରତା ଆସେ ।' କେତେବେଳେ ପୂଜା ସମୟରେ ଫୁଲ ସବୁ ନିଜ ମୁଣ୍ଡରେ ରଖି ନିସ୍ପନ୍ଦ ହୋଇଯାଉଥିଲେ । କେତେବେଳେ ସାଧକମାନଙ୍କର ପଦାବଳୀ ଉନ୍ମତ୍ତ ଭାବରେ ବହୁ ସମୟ ଧରି ଗାନ କରୁଥିଲେ । ଏହା ବ୍ୟତୀତ ଯେତେବେଳେ କିଛିଟା ସାଧାରଣ ଭାବରେ ରହୁଥିଲେ ସେତେବେଳେ ଯାହା ସହିତ ଯେପରି ବ୍ୟବହାର କରିବା ଉଚିତ, ଯାହାକୁ ଯେପରି ମାନ ସମ୍ମାନ ଦେବା ଉଚିତ୍, ସେସବୁ ପୂର୍ବପରି ହିଁ କରୁଥିଲେ । କିନ୍ତୁ ଜଗନ୍ମାତାଙ୍କ ଧ୍ୟାନରେ ଯେତେବେଳେ ଏପରି ଭାବାବେଶ ହେଉଥିଲା—ଏବଂ ସେହି ଭାବାବେଶ ଦିନ ମଧ୍ୟରେ ଥରେ-ଅଧେ, ଟିକେ-ଅଧେ ହେଉଥିଲା, ତା ନୁହଁ—ସେତେବେଳେ ଠାକୁରଙ୍କ ବ୍ୟବହାରରେ କୌଣସି ଠିକ୍ ଠିକଣା ରହୁ ନ ଥିଲା, ସେତେବେଳେ କାହାକଥା ଶୁଣୁ ନ ଥିଲେ କିମ୍ବା ଉତ୍ତର ଦେଉ ନ ଥିଲେ । କିନ୍ତୁ ସେତେବେଳେ ମଧ୍ୟ ତାଙ୍କର ଦେବଚରିତ୍ରର ମାଧୁର୍ଯ୍ୟ ଲୋକେ ଅନେକ ସମୟରେ ପାଉଥିଲେ । ସେତେବେଳେ ଯଦି କେହି କହେ, 'ମା'ଙ୍କର ଟିକେ ଭଜନ ଶୁଣାଅ'—ସଙ୍ଗେ

ସଙ୍ଗେ ଠାକୁର ତାଙ୍କ ପ୍ରୀତି ପାଇଁ ମଧୁର କଣ୍ଠରେ ଗାନ ଧରୁଥିଲେ ଓ ଗାଉ ଗାଉ ଗୀତର ଭାବରେ ବିହ୍ୱଳ ହୋଇ ଆତ୍ମହରା ହୋଇଯାଉଥିଲେ ।

ଏହାପୂର୍ବରୁ ହିଁ ରାଣୀ ରାସମଣି ଓ ମଥୁରବାବୁଙ୍କ କାନରେ ହୀନବୁଦ୍ଧି ନିମ୍ନପଦସ୍ଥ କର୍ମଚାରୀ ଏବଂ ମନ୍ଦିରର ପ୍ରଧାନ କର୍ମଚାରୀ ଖାଜାଞ୍ଚି ମହାଶୟ ପୂଜା ସମୟରେ ଠାକୁରଙ୍କର ଅନାଚାରର ଅନେକ କଥା ଉଠାଇ କହୁଥିଲେ, 'ଛୋଟ ଭଟ୍ଟାଚାର୍ଯ୍ୟ[୧] ସବୁ ମାଟି କରୁଛନ୍ତି; ମା'ଙ୍କର(କାଳୀଙ୍କର) ପୂଜା, ଭୋଗରାଗ କିଛି ହେଉ ନାହିଁ; ଏବଂ ଏପରି ଅନାଚାର କଲେ ମା' କ'ଣ ଭୋଗ ଗ୍ରହଣ କରିବେ ?' —ଇତ୍ୟାଦି । କିନ୍ତୁ ଏପରି କହିଲେ ମଧ୍ୟ ତା'ର କିଛି ଫଳ ହେଉ ନ ଥିଲା; କାରଣ, ମଥୁରବାବୁ ନିଜେ କାହାକୁ କିଛି ନ କହି ମଝିରେ ମଝିରେ ହଠାତ୍ ମନ୍ଦିରକୁ ଆସି ଲୁଚି ଲୁଚି ଠାକୁରଙ୍କର ପୂଜା ସମୟରେ ଭକ୍ତିବିହ୍ୱଳ, ବାଳକପରି ବ୍ୟବହାର ଓ ଶ୍ରୀଶ୍ରୀଜଗଦମ୍ବାଙ୍କ ପ୍ରତି ଅଳି ଅନୁରୋଧାଦି ଦେଖି ଆଖିରୁ ଲୁହ ଗଡ଼ାଇ ସେମାନଙ୍କୁ ଆଦେଶ ଦେଉଥିଲେ ଯେ— "ଛୋଟ ଭଟ୍ଟାଚାର୍ଯ୍ୟ ମହାଶୟ ଯେଉଁ ଭାବରେ ଯାହା କରନ୍ତୁ ନା କାହିଁକି, ତୁମେମାନେ ତାଙ୍କୁ ବାଧା ଦେବ ନାହିଁ ବା କୌଣସି କଥା କହିବ ନାହିଁ । ପ୍ରଥମେ ମୋତେ ଜଣାଇବ ପରେ ମୁଁ ଯେପରି କହିବି ସେପରି କରିବ ।"

ରାଣୀ ରାସମଣି ମଧ୍ୟ ବେଳେବେଳେ ଆସି ମା'ଙ୍କର ଶୃଙ୍ଗାର (ଫୁଲର ସାଜସଜା) ଇତ୍ୟାଦି ଦେଖି ଏବଂ ଠାକୁରଙ୍କର ମଧୁର କଣ୍ଠରେ ମା'ଙ୍କର ନାମଶୁଣି ଏପରି ମୋହିତ ହେଉଥିଲେ ଯେ, ସେ ଯେତେବେଳେ ମନ୍ଦିରକୁ ଆସୁଥିଲେ, ସେତେବେଳେ ଛୋଟ ଭଟ୍ଟାଚାର୍ଯ୍ୟଙ୍କୁ ପାଖକୁ ଡାକି ମା'ଙ୍କର ଗୀତ କରିବାକୁ ଅନୁରୋଧ କରୁଥିଲେ । ଠାକୁର ମଧ୍ୟ ଗୀତ ଗାଉ ଗାଉ କାହାକୁ ଶୁଣାଉଛନ୍ତି ସେକଥା ଏକାବେଳକେ ଭୁଲି ଭାବରେ ବିଭୋର ହୋଇ ଶ୍ରୀଶ୍ରୀଜଗଦମ୍ବାଙ୍କୁ ହିଁ ଯେପରି ଶୁଣାଉଛନ୍ତି, ସେହି ଭାବରେ ଗୀତ ଗାଉଥିଲେ । ଏହିପରି ଦିନପରେ ଦିନ ଗଡ଼ିଯାଉଛି, ଜଗତରୂପକ ବୃହତ୍ ସଂସାର ସଦୃଶ ମନ୍ଦିରର କ୍ଷୁଦ୍ର ସଂସାରରେ ମଧ୍ୟ ଯିଏ ଯାହାର କାମ ନେଇ ବ୍ୟସ୍ତ ଏବଂ ସାଂସାରିକ କାର୍ଯ୍ୟକ୍ରମ ଓ ସ୍ୱାର୍ଥଚିନ୍ତା ବ୍ୟତୀତ ଯେତେବେଳେ ଟିକିଏ ସମୟ ମିଳେ ସେତେବେଳେ ପରନିନ୍ଦା ପରଚର୍ଚ୍ଚା ପରି ରୁଚିକର ବିଷୟସମସ୍ତ ଆଲୋଚନା କରି ନିଜ ନିଜ ମନର ଅବସାଦ ଦୂର କରିଥାଆନ୍ତି । ତେଣୁ ବାସ୍ତବ କ୍ଷେତ୍ରରେ ଛୋଟ ଭଟ୍ଟାଚାର୍ଯ୍ୟଙ୍କ ଭିତରେ ଈଶ୍ୱର ପ୍ରେମରେ କି ପରିବର୍ତ୍ତନ ହେଉଅଛି, ତାହାର ଖବର କିଏ ରଖେ ? 'ସେ ଏକ ଉନ୍ମାଦ, ବାବୁଙ୍କର କିପରି ଏକ ସୁନଜର ପଡ଼ିଥିବାରୁ, ଏପର୍ଯ୍ୟନ୍ତ ଚାକିରୀଟି ଅଛି; ତା ମଧ୍ୟ କେତେ ଦିନ ରହିବ ? କେଉଁ ଦିନ ଏପରି ଏକ କାଣ୍ଡ କରି ବସିବେ ଓ ତଡ଼ା

---

୧. ଠାକୁରଙ୍କ ଅଗ୍ରଜଙ୍କୁ 'ବଡ଼ ଭଟ୍ଟାଚାର୍ଯ୍ୟ' ବୋଲି ଡକାଯାଉଥିବାରୁ, ସେତେବେଳେ ଠାକୁର ଏହି ନାମରେ ନିର୍ଦ୍ଦିଷ୍ଟ ହେଉଥିଲେ ।

ଖାଇବେ ! ବଡ଼ଲୋକର ମିଜାଜର—ଠିକ୍ ଠିକଣା କ'ଣ ଥାଏ ? ଖୁସିହେବାକୁ ଯେତେ ସମୟ କ୍ରୋଧିତ ହେବାକୁ ମଧ୍ୟ ସେତିକି ସମୟ'—ଠାକୁରଙ୍କ ସମ୍ବନ୍ଧରେ ଏହିପରି କଥାବାର୍ତ୍ତା କର୍ମଚାରୀମାନଙ୍କ ଭିତରେ ବେଳେବେଳେ ହେଉଥିଲା । ଠାକୁରଙ୍କର ଭଣଜା ତଥା ସେବକ ହୃଦୟ ମଧ୍ୟ ଏହାପୂର୍ବରୁ ମନ୍ଦିରରେ ଆସି ଜୁଟିଥିଲେ ।

**ଗୁରୁଭାବରେ ଠାକୁରଙ୍କର ରାଣୀ ରାସମଣିଙ୍କୁ ଦଣ୍ଡବିଧାନ :**

ଗୋଟିଏ ଦିନର ଘଟଣା, ରାଣୀ ରାସମଣି ନିଜେ ଠାକୁରବାଡ଼ି ଆସିଥିଲେ । କର୍ମଚାରୀମାନେ ସମସ୍ତେ ଅସ୍ତବ୍ୟସ୍ତ । ଯିଏ ଠକଙ୍କ ଗୁରୁ ସେ ମଧ୍ୟ ଆଜି ନିଜର କର୍ତ୍ତବ୍ୟ ଅତି ଯତ୍ନର ସହିତ କରୁଛି । ଗଙ୍ଗାରେ ସ୍ନାନ କରି ରାଣୀ କାଳୀଘରକୁ ଦର୍ଶନ କରିବାକୁ ଆସିଲେ । ସେତେବେଳେ କାଳୀଙ୍କର ପୂଜା ଓ ବେଶ ସରିଯାଇଛି । ଜଗନ୍ମାତାଙ୍କୁ ପ୍ରଣାମ କରି ରାଣୀ ମନ୍ଦିର ମଧ୍ୟରେ ଶ୍ରୀମୂର୍ତ୍ତିଙ୍କ ନିକଟସ୍ଥିତ ଆସନରେ ଆହ୍ନିକ-ପୂଜା କରିବାକୁ ବସିଲେ ଏବଂ ଛୋଟ ଭଟ୍ଟାଚାର୍ଯ୍ୟ ବା ଠାକୁରଙ୍କୁ ଦେଖି ମା'ଙ୍କର ନାମ ଗାଇବାକୁ ଅନୁରୋଧ କଲେ । ଠାକୁର ରାଣୀଙ୍କ ନିକଟରେ ବସି ଭାବରେ ବିହ୍ୱଳ ହୋଇ ରାମପ୍ରସାଦ, କମଳାକାନ୍ତ ପ୍ରଭୃତି ସାଧକମାନଙ୍କର ପଦାବଳୀ ଗାଇବାକୁ ଲାଗିଲେ; ରାଣୀ ପୂଜା ଜପାଦି କରୁ କରୁ ଏସବୁ ଶୁଣିବାକୁ ଲାଗିଲେ । କିଛିକ୍ଷଣ ଏପରି ଭାବରେ କଟିଲା ପରେ ଠାକୁର ହଠାତ୍ ଗାନ ବନ୍ଦ କରି ବିରକ୍ତ ହୋଇ ଉଗ୍ରଭାବରେ ରୁକ୍ଷ ସ୍ୱରରେ କହିଉଠିଲେ, 'କେବଳ ଏହି ଭାବନା, ଏଠାରେ ମଧ୍ୟ ଏହି ଚିନ୍ତା ?' —ଏହା କହି ରାଣୀଙ୍କ କୋମଳ ଅଙ୍ଗରେ ଚପେଟାଘାତ କଲେ ! ସନ୍ତାନର କୌଣସି ପ୍ରକାର ଅନ୍ୟାୟ ଆଚରଣ ଦେଖି ପିତା ଯେପରି କ୍ରୋଧିତ ହୋଇ ଦଣ୍ଡବିଧାନ କରନ୍ତି, ଠାକୁରଙ୍କର ମଧ୍ୟ ଠିକ୍ ଏହି ଭାବଥିଲା ! କିନ୍ତୁ କିଏ ସେ କଥା ବୁଝିବ !

**ତାହାର ଫଳ :**

ମନ୍ଦିରର କର୍ମଚାରୀ ଓ ରାଣୀଙ୍କର ପରିଚାରିକାମାନେ ସମସ୍ତେ ହଇଚଇ କରିଉଠିଲେ । ଦ୍ୱାରପାଳ ଅସ୍ତବ୍ୟସ୍ତ ହୋଇ ଠାକୁରଙ୍କୁ ଧରିବାକୁ ଧାଇଁ ଆସିଲା । ବାହାରର କର୍ମଚାରୀମାନେ ମଧ୍ୟ ମନ୍ଦିର ମଧ୍ୟରେ ଏତେ ପାଟିତୁଣ୍ଡ କିଏ କରୁଛି ଭାବି କୌତୁହଳରେ ସେଠାକୁ ଆସିଲେ । କିନ୍ତୁ ଏହି ଗଣ୍ଡଗୋଳର ପ୍ରଧାନ କାରଣ ଯେଉଁମାନେ—ଠାକୁର ଓ ରାଣୀ ରାସମଣି—ସେମାନେ ଉଭୟେ ହିଁ ବର୍ତ୍ତମାନ ସ୍ଥିର ଓ ଗମ୍ଭୀର ! କର୍ମଚାରୀମାନଙ୍କର ପାଟିତୁଣ୍ଡ ଧାଁଧପଡ଼ ପ୍ରତି ସମ୍ପୂର୍ଣ୍ଣ ଉଦାସୀନ ରହି ଠାକୁର ସ୍ଥିର ହୋଇ ବସିଛନ୍ତି ଓ ତାଙ୍କ ମୁହଁରେ ସ୍ମିତ ହାସ୍ୟ ପ୍ରକାଶ ପାଉଛି । ଶ୍ରୀଶ୍ରୀଜଗଦମ୍ବାଙ୍କର ଧ୍ୟାନ ନ କରି ଆଜି ବାରମ୍ବାର ଗୋଟିଏ ବିଶେଷ ମକଦ୍ଦମାର ଫଳାଫଳର ବିଷୟ ଚିନ୍ତା କରୁଥିଲେ—ରାଣୀ ରାସମଣି ନିଜର ଅନ୍ତର ପରୀକ୍ଷା

ଦ୍ୱାରା ଏହା ବୁଝିପାରି ଈଷତ୍ ଅପ୍ରତିଭ ଓ ଅନୁତାପରେ ଗମ୍ଭୀର ହେଲେ ! ପୁଣି ଠାକୁର ଏକଥା କିପରି ଜାଣିପାରିଲେ ଭାବି ରାଣୀଙ୍କର ଏହିଭାବ ସହିତ କେତେକ ବିସ୍ମୟର ଭାବ ମଧ୍ୟ ମନରେ ଉଠୁଥିଲା ! ପରେ କର୍ମଚାରୀମାନଙ୍କର ପାଟିତୁଣ୍ଡରେ ରାଣୀ ପ୍ରକୃତିସ୍ଥ ହେଲେ ଓ ନିରପରାଧ ଠାକୁରଙ୍କ ପ୍ରତି, ଏହି ଘଟଣାରେ ସମ୍ପୃକ୍ତ ଲୋକମାନଙ୍କର ଅତ୍ୟାଚାର ହେବା ସମ୍ଭାବନା ବୁଝି ସମସ୍ତଙ୍କୁ ଗମ୍ଭୀର ଭାବରେ ଆଦେଶ ଦେଲେ, ''ଭଟ୍ଟାଚାର୍ଯ୍ୟ ମହାଶୟଙ୍କର କୌଣସି ଦୋଷ ନାହିଁ । ତୁମେମାନେ ତାଙ୍କୁ କିଛି କହିବ ନାହିଁ ।'' ପରେ ମଥୁରବାବୁ ମଧ୍ୟ ନିଜର ଶାଶୁଠାକୁରାଣୀଙ୍କଠାରୁ ଘଟଣାର ସବୁକଥା ଆଦ୍ୟୋପାନ୍ତ ଶୁଣି କର୍ମଚାରୀମାନଙ୍କ ଉପରେ ଉପରୋକ୍ତ ହୁକୁମ୍ କାଏମ ରଖିଲେ । ଏଥିରେ ସେମାନଙ୍କ ମଧ୍ୟରୁ କେତେକ ଦୁଃଖିତ ହେଲେ; କିନ୍ତୁ କ'ଣ କରିବେ, 'ବଡ଼ଲୋକର ବଡ଼ କଥା, ଆମର ସେଥିରେ କ'ଣ କରିବାର ଅଛି', ଭାବି ଚୁପ୍ ରହିଲେ ।

### ଶ୍ରୀଚୈତନ୍ୟ ଓ ଈଶାଙ୍କର ଜୀବନରେ ଏପରି ଘଟଣା :

ଘଟଣାଟି ଶୁଣି ପାଠକ ହୁଏତ ମନେ କରିବେ—ଏ ପୁଣି କିପରି ଗୁରୁଭାବ ? ଜଣକୁ ମାରିବାଟା କେଉଁ ଗୁରୁଭାବର ପ୍ରକାଶ ? ଆମେ କହୁ ଜଗତର ଧର୍ମ ଇତିହାସ ପଢ଼, ଦେଖିବ ଲୋକଗୁରୁ ଆଚାର୍ଯ୍ୟମାନଙ୍କର ଜୀବନରେ ଏପରି ଘଟଣାର କଥା ଉଲ୍ଲିଖିତ ଅଛି, ଶ୍ରୀଶ୍ରୀଚୈତନ୍ୟ ମହାପ୍ରଭୁଙ୍କର ଜୀବନରେ କାଜିଦଳନ, ଗୁରୁଭାବରେ ଆତ୍ମହରା ହୋଇ ଅଦ୍ୱୈତ ପ୍ରଭୁଙ୍କୁ ପ୍ରହାର କରି ଭକ୍ତିଦାନ ପ୍ରଭୃତିର କଥା ସ୍ମରଣ କର । ଭାବିଦେଖ, ମହାମହିମ ଈଶାଙ୍କର ଜୀବନରେ ମଧ୍ୟ ଏପରି ଘଟଣାର ଅଭାବ ନାହିଁ ।

ଶିଷ୍ୟ ପରିବୃତ ଈଶା ଜେରୁଜେଲମର 'ଯାଭେ' ଦେବତାଙ୍କ ମନ୍ଦିରରେ ଦର୍ଶନ-ପୂଜା କରିବା ପାଇଁ ଉପସ୍ଥିତ ଥିଲେ । ବାରାଣସୀ ଓ ଶ୍ରୀବୃନ୍ଦାବନ ଆଦି ତୀର୍ଥର ଦେବସ୍ଥାନ ସମସ୍ତ ଦର୍ଶନ କରିବାକୁ ଯାଇ ହିନ୍ଦୁମାନଙ୍କ ମନରେ ଯେପରି ଅପୂର୍ବ ପବିତ୍ର ଭାବର ଉଦୟ ହୁଏ, ଇହୁଦୀମାନଙ୍କର ମନରେ ଜେରୁଜେଲମର ମନ୍ଦିର-ଦର୍ଶନରେ ଠିକ୍ ସେହିପରି ହେବାରେ ସନ୍ଦେହ କ'ଣ ? ତାପରେ ପୁଣି ଭାବମୁଖରେ ଅବସ୍ଥିତ ଈଶାଙ୍କର ମନ ! ଦୂରରୁ ମନ୍ଦିର ଦର୍ଶନରେ ଈଶା ଭଗବତ୍ ପ୍ରେମରେ ବିଭୋର ହୋଇ ଦେବଦର୍ଶନ କରିବାକୁ ଛୁଟିଆସିଲେ । ମନ୍ଦିରର ବାହାରେ, ଦ୍ୱାରରେ, ପ୍ରାଙ୍ଗଣ ମଧ୍ୟରେ କେତେଲୋକ କେତେ ଉପାୟରେ ଦିପଇସା ରୋଜଗାର କରିବା ପାଇଁ ଦୁନିଆଦାରିରେ ବ୍ୟସ୍ତ । ପଣ୍ଡା ପୁରୋହିତମାନେ ଦେବଦର୍ଶନ ହେଉ କି ନ ହେଉ ଦିପଇସା ଯାତ୍ରୀମାନଙ୍କ ନିକଟରୁ ଠକେଇ ନେବା ପାଇଁ ବ୍ୟସ୍ତ । ପୁଣି ଦୋକାନୀ ଓ ପସରା ମେଲାଇଥିବା ବ୍ୟକ୍ତିମାନେ ପୂଜାରେ

ପଶୁ-ପୁଷ୍ପାଦି ଦ୍ରବ୍ୟ ସମ୍ଭାର ଛଡ଼ା ଅନ୍ୟାନ୍ୟ ଜିନିଷପତ୍ର ବିକ୍ରି କରି କିଛି ଅଧିକ ଲାଭ ପାଇବେ, ଏହି ଚିନ୍ତାରେ ମଗ୍ନ । ଭଗବାନଙ୍କର ମନ୍ଦିର ତାଙ୍କ ସମ୍ମୁଖରେ ବିଦ୍ୟମାନ—ଏକଥା ଭାବିବାକୁ କାହାର ମୁଣ୍ଡବିନ୍ଧା ହେଉଅଛି ? ଯାହା ହେଉ, ଭାବରେ ବିଭୋର ଈଶାଙ୍କର ଚକ୍ଷୁରେ ମନ୍ଦିର ପ୍ରବେଶ ସମୟରେ ଏସମସ୍ତ ପଡ଼ି ନ ଥିଲା । ଶୀଘ୍ର ମନ୍ଦିର ମଧ୍ୟରେ ପ୍ରବେଶ କରି ଆନନ୍ଦରେ ଦେବଦର୍ଶନ କରି ଉତ୍‌ଫୁଲ୍ଲିତ ହେଲେ ଏବଂ ପ୍ରାଣର ପ୍ରାଣ ଆତ୍ମାର ଆତ୍ମା ରୂପରେ ସେ ଅନ୍ତରରେ ରହିଛନ୍ତି ଦେଖିପାରି ଆତ୍ମହରା ହେଲେ । ମନ୍ଦିର ମଧ୍ୟସ୍ଥ ସମସ୍ତ ବସ୍ତୁ ଓ ବ୍ୟକ୍ତିଙ୍କୁ ନିଜଠାରୁ ନିଜର ବୋଲି ମନେ କରିବାକୁ ଲାଗିଲେ; କାରଣ ଏଠାକୁ ଆସି ସେ ପ୍ରାଣାରାମଙ୍କର ଦର୍ଶନ ପାଇଛନ୍ତି ! ପରେ ଯେତେବେଳେ ତଳକୁ ଓହ୍ଲାଇ ଅନ୍ତରର ଭାବର ପ୍ରକାଶ ବାହାରେ ଥିବା ବ୍ୟକ୍ତି ଓ ବସ୍ତୁମାନଙ୍କରେ ଦେଖିବାକୁ ଗଲେ, ସେତେବେଳେ ଦେଖିଲେ ସବୁକିଛି ବିପରୀତ । କେହି ତାଙ୍କର ପ୍ରାଣପତିଙ୍କ ସେବାରେ ନିଯୁକ୍ତ ନାହାନ୍ତି; ସମସ୍ତେ କାମକାଞ୍ଚନର ସେବାରେ ବ୍ୟାପୃତ ଅଛନ୍ତି ! ସେତେବେଳେ ନିରାଶା ଓ ଦୁଃଖରେ ତାଙ୍କ ହୃଦୟ ଭରିଗଲା, ଭାବିଲେ—ଏ କ'ଣ ? ତୁମେମାନେ ବାହାରେ, ସଂସାର ମଧ୍ୟରେ ଯାହା କରୁଛ କର, କିନ୍ତୁ ଯେଉଁଠାରେ ଈଶ୍ୱରଙ୍କର ବିଶେଷ ପ୍ରକାଶ—ସେଠାରେ ଏସମସ୍ତ ଦୁନିଆଦାରି କାହିଁକି ? ଏଠାକୁ ଆସି କିପରି ତାଙ୍କର ଚିନ୍ତା କରି ସଂସାରର ଜ୍ୱାଳା ଦୂର କରିବ, ସେକଥା ନ କରି ଏଠାରେ ମଧ୍ୟ ସଂସାରକୁ ଆଣି ପୁରାଇଛ ! —ଏକଥା ଭାବି ତାଙ୍କର ମନରେ କ୍ରୋଧ ଜାତ ହେଲା ଏବଂ ସେ ବେତଧରି ଉଗ୍ର ମୂର୍ତ୍ତି ଧାରଣ କରି ସମସ୍ତ ଦୋକାନୀ, ଫେରିବାଲାମାନଙ୍କୁ ବଳପୂର୍ବକ ମନ୍ଦିରରୁ ବାହାର କରିଦେଲେ । ସେମାନେ ମଧ୍ୟ ତାଙ୍କ କଥାରେ କ୍ଷଣିକ ଚୈତନ୍ୟ ଲାଭ କରି ଯଥାର୍ଥ ଦୁଷ୍କର୍ମ କରିଥିବା ଭାବି ତରବର ହୋଇ ମନ୍ଦିର ବାହାରକୁ ଚାଲିଗଲେ; ଅତି ବଦ୍ଧ ଜୀବ—ଯାହାର କଥାରେ ଚୈତନ୍ୟ ହେଲା ନାହିଁ, ସେମାନେ ତାଙ୍କର ବେତମାଡ଼ରେ ଏପରି ଜ୍ଞାନ ଲାଭ କରି ବାହାରିଗଲେ । କିନ୍ତୁ କେହି ହେଲେ କ୍ରୋଧିତ ହୋଇ ତାଙ୍କ ଉପରେ ଅତ୍ୟାଚାର କରିବାକୁ ସାହସ କଲେ ନାହିଁ ।

ଭଗବାନ ଶ୍ରୀକୃଷ୍ଣଙ୍କର ଜୀବନରେ ମଧ୍ୟ ଏହିପରି ଆହତ ବ୍ୟକ୍ତିର ଜ୍ଞାନଲାଭ ହୋଇ ତାଙ୍କୁ ଭଗବଦ୍‌ବୁଦ୍ଧିରେ ସ୍ତବସ୍ତୁତି କରିବା କଥା ବିଦ୍ୟମାନ । ଅତି ବଦ୍ଧଜୀବମାନଙ୍କର ତାଙ୍କ ପ୍ରତି ଅତ୍ୟାଚାର କରିବାକୁ ଆସି ତାଙ୍କର ହସରେ ବା କଥାରେ ସ୍ତମ୍ଭିତ ଓ ହତବୁଦ୍ଧି ହୋଇଯିବାର କଥା ପ୍ରଭୃତି ଘଟଣା ଦେଖିବାକୁ ମିଳିଥାଏ । ଯାହା ହେଉ, ସେସମସ୍ତ ପୌରାଣିକ କଥାକୁ ବିଶ୍ରାମ ଦିଆଯାଉ ।

## ଗୁରୁଭାବର ପ୍ରେରଣାରେ ଆତ୍ମହରା ଠାକୁରଙ୍କର ଅଦ୍ଭୁତ ପ୍ରକାରରେ ଶିକ୍ଷା ପ୍ରଦାନ ଓ ରାଣୀ ରାସମଣିଙ୍କର ସୌଭାଗ୍ୟ :

ଗୁରୁଭାବରେ ସମ୍ପୂର୍ଣ୍ଣ ଆତ୍ମହରା ଠାକୁର ଯେ କିପରି ଭାବରେ ଅନ୍ୟମାନଙ୍କ ସହିତ ବ୍ୟବହାର ଓ ଶିକ୍ଷାଦି ପ୍ରଦାନ କରୁଥିଲେ, ଏହି ଘଟଣାଟି ତାହାର ଜ୍ୱଳନ୍ତ ନିଦର୍ଶନ । ଘଟଣାଟିକୁ ଚିନ୍ତା କରି ଦେଖିଲେ ଏହା କିଛି କମ୍ କଥା ବୋଲି ବୋଧ ହୁଏ ନାହିଁ । କେଉଁଠି ଏକ ସାମାନ୍ୟ ବେତନଭୋଗୀ ନଗଣ୍ୟ ପୂଜାରୀ ବ୍ରାହ୍ମଣ ଏବଂ କେଉଠି ରାଣୀ ରାସମଣି—ଯାହାଙ୍କ ଧନ, ମାନ, ବୁଦ୍ଧି, ସାହସ ଓ ପ୍ରତାପରେ କଲିକତାର ସେତେବେଳର ମହା ମହା ବୁଦ୍ଧିମାନ ବ୍ୟକ୍ତିଗଣ ମଧ୍ୟ ସ୍ତମ୍ଭିତ ! ଏପରି ଦରିଦ୍ର ବ୍ରାହ୍ମଣ ଯେ ତାଙ୍କର ସାମନାରେ ଠିଆ ହୋଇ ପାରିବେ ନାହିଁ, ଏହା ହିଁ ସ୍ଥିର ସିଦ୍ଧାନ୍ତ କରିବାକୁ ହୁଏ । ଅଥବା ଯଦି କେତେବେଳେ କେଉଁ କାରଣରୁ ତାଙ୍କର ନିକଟସ୍ଥ ହୁଅନ୍ତି ତେବେ ଚାଟୁକାରିତା ପ୍ରଭୃତି ଉପାୟରେ ତାଙ୍କର ତିଳାର୍ଦ୍ଧେ ସନ୍ତୋଷ ଉତ୍ପାଦନ କରାଇପାରିଲେ ନିଜକୁ କୃତାର୍ଥ ଜ୍ଞାନ କରିବେ ଏବଂ ସେଥିପାଇଁ ସୁଯୋଗର ଅପେକ୍ଷା କରିବେ । ଏହା ନ ହୋଇ ସମ୍ପୂର୍ଣ୍ଣ ଏହାର ବିପରୀତ ! ତାଙ୍କର ଅନ୍ୟାୟ ଆଚରଣର କେବଳ ପ୍ରତିବାଦ ନୁହଁ, ଶାରୀରିକ ଦଣ୍ଡ ବିଧାନ ! ଠାକୁରଙ୍କ ତରଫରୁ ଦେଖିଲେ ଏହା ଯେପରି ସାମାନ୍ୟ ଆଶ୍ଚର୍ଯ୍ୟର କଥା ନୁହେଁ ବୋଲି ମନେ ହୁଏ, ରାଣୀଙ୍କ ତରଫରୁ ବିବେଚନା କଲେ ଉକ୍ତ ବ୍ୟବହାରରେ ତାଙ୍କ ମନରେ କ୍ରୋଧ-ଅଭିମାନ ହିଂସା ଆଦିର ଉଦୟ ହେଲା ନାହିଁ, ଏହା ମଧ୍ୟ କମ୍ ଆଶ୍ଚର୍ଯ୍ୟର କଥା ନୁହେଁ ବୋଲି ମନେ ହୁଏ । ତେବେ ପୂର୍ବେ ଯେପରି ଆମେମାନେ କହି ଆସିଛୁ—ସ୍ୱାର୍ଥଗନ୍ଧହୀନ ବିରାଟ 'ମୁଁ'ତ୍ୱର ସାହାଯ୍ୟରେ ଯେତେବେଳେ ମହାପୁରୁଷମାନଙ୍କ ମନରେ ଏପରି ଗୁରୁଭାବ ଆସି ଉପସ୍ଥିତ ହୁଏ, ସେତେବେଳେ ଇଚ୍ଛା ନ ଥିଲେ ମଧ୍ୟ ସାଧାରଣ ମନୁଷ୍ୟକୁ ତାଙ୍କ ନିକଟରେ ନତଶିର ହେବାକୁ ପଡ଼ିବ ହିଁ ପଡ଼ିବ, ରାଣୀ ରାସମଣିଙ୍କ ସଦୃଶ ଭକ୍ତିମତୀ ସାତ୍ତ୍ୱିକ ପ୍ରକୃତିର ବ୍ୟକ୍ତିବିଶେଷଙ୍କ କଥା କିଛି କହିବାର ନାହିଁ । ପୁଣି ମଧ୍ୟ ଛୋଟ ଛୋଟ ସ୍ୱାର୍ଥନିବଦ୍ଧଦୃଷ୍ଟି, ମାନବ-ମନ ସେତେବେଳେ ତାଙ୍କର କୃପା ଓ ଶକ୍ତି ବଳରେ ଉନ୍ନତ ହୋଇ ସେମାନେ ଯାହା କରିବାକୁ କହିଥାଆନ୍ତି ସେଥିରେ ନିଜର ହିଁ ପ୍ରକୃତ ସ୍ୱାର୍ଥ—ଏକଥା ନିଜେ ନିଜେ ହିଁ ବୁଝିପାରେ । ତେଣୁ ବାସ୍ତବକ୍ଷେତ୍ରରେ ସେହିପରି କରିବା ଛଡ଼ା ଅନ୍ୟ ଉପାୟ ନ ଥାଏ । ଆଉ ଗୋଟିଏ କଥା ଠାକୁର ଯେପରି କହୁଥିଲେ—"ତାଙ୍କର (ଈଶ୍ୱରଙ୍କର) ବିଶେଷ ଅଂଶ ଭିତରେ ନ ରହିଲେ କୌଣସି ବିଷୟରେ କେହି କେବେ ବଡ଼ ହୋଇପାରିବ ନାହିଁ କିମ୍ବା ମାନ, ଯଶ ଓ କ୍ଷମତା ପ୍ରଭୃତି ହଜମ[୧] କରିପାରିବ ନାହିଁ !" ସାତ୍ତ୍ୱିକ-ପ୍ରକୃତିସମ୍ପନ୍ନା

---

୧. ମାନ ଯଶ ପ୍ରଭୃତି ହଜମ କରିବା ଅର୍ଥାତ୍ ସେହି ସମସ୍ତ ଲାଭ କରି ମଧ୍ୟ ମୁଣ୍ଡ ଠିକ୍ ରଖିବା; ଅହଂକାରର ବଶବର୍ତ୍ତୀ ହୋଇ ସେ ସବୁର ଅପବ୍ୟବହାର ନ କରିବା ।

ରାଣୀଙ୍କ ଭିତରେ ଏପରି ଐଶୀ ଶକ୍ତି ବିଦ୍ୟମାନ ଥିଲା ବୋଲି ହିଁ ସେହି ପ୍ରକାର କଠୋର ଭାବରେ ପ୍ରକାଶିତ ହେଲେ ମଧ୍ୟ ଠାକୁରଙ୍କର ଗୁରୁଭାବର କୃପା ଗ୍ରହଣ କରିପାରିଥିଲେ । ଠାକୁର କହୁଥିଲେ, ''ରାଣୀ ରାସମଣି ଶ୍ରୀଶ୍ରୀଜଗଦମ୍ବାଙ୍କର ଅଷ୍ଟସଖୀଙ୍କ ମଧ୍ୟରେ ଅନ୍ୟତମ ! ଧରାଧାମରେ ତାଙ୍କର ପୂଜା-ପ୍ରଚାର ନିମିତ୍ତ ସେ ଆସିଥିଲେ । ଜମିଦାରୀର ଦଲିଲ-ପତ୍ରାଦି ଦସ୍ତଖତ କରିବା ପାଇଁ ତାଙ୍କର ଯେଉଁ ସିଲ୍‌ମୋହର ଥିଲା—ସେଥିରେ ଲେଖାଥିଲା, 'କାଳୀପଦ-ଅଭିଳାଷୀ, ଶ୍ରୀମତୀ ରାସମଣି ଦାସୀ' । ରାଣୀଙ୍କର ପ୍ରତିଟି କାର୍ଯ୍ୟରେ ଏପରି ଜଗନ୍ମାତାଙ୍କ ଉପରେ ଅଚଳା ଭକ୍ତି ପ୍ରକାଶ ପାଉଥିଲା ।''

**ଈଶ୍ୱରଙ୍କଠାରେ ତନ୍ମୟ ମନର ଲକ୍ଷଣ ସମ୍ବନ୍ଧରେ ଶାସ୍ତ୍ରମତ :**

ଆଉ ଗୋଟିଏ କଥା—ସର୍ବତୋଭାବରେ ଈଶ୍ୱରଙ୍କଠାରେ ତନ୍ମୟ ମନର ବିଭିନ୍ନ ଭାବରେ ଅବସ୍ଥାନ କଥା ଶାସ୍ତ୍ରରେ ଲିପିବଦ୍ଧ ହୋଇଅଛି । ଆଚାର୍ଯ୍ୟ ଶଙ୍କର ତାଙ୍କ ଦ୍ୱାରା ରଚିତ, 'ବିବେକଚୂଡ଼ାମଣି' ଗ୍ରନ୍ଥରେ ଏହି ବିଷୟ ସୁନ୍ଦର ଭାବରେ ବର୍ଣ୍ଣନା କରିଅଛନ୍ତି—

ଦିଗମ୍ବରୋ ବାପି ଚ ସାମ୍ବରୋ ବା ତ୍ୱଗମ୍ବରୋ ବାପି ଚିଦାମ୍ବରସ୍ଥଃ ।
ଉନ୍ମତ୍ତବଦ୍ୱାପି ଚ ବାଲବଦ୍ୱା ପିଶାଚବଦ୍ୱାପି ଚରତ୍ୟବନ୍ୟାମ୍ ।।୫୪୦।।

—ଈଶ୍ୱର ଲାଭ ବା ଜ୍ଞାନଲାଭରେ ସିଦ୍ଧକାମ ପୁରୁଷମାନଙ୍କର କେହି ବା ଜ୍ଞାନରୂପକ ବସ୍ତ୍ରମାତ୍ର ପରିଧାନ କରି ସମ୍ପୂର୍ଣ୍ଣ ଉଲଗ୍ନ ହୋଇ, ପୁଣି କେହିବା ବଲ୍‌କଲ ବା ସାଧାରଣ ଲୋକ ସଦୃଶ ବସ୍ତ୍ର ପରିଧାନ କରି, କେହି ବା ଉନ୍ମାଦ ସଦୃଶ ପୁଣି କେହିବା ବହିର୍ଦୃଷ୍ଟିରେ କାମକାଞ୍ଚନ ଗନ୍ଧହୀନ ବାଳକ, ବା ଶୌଚାଚାର ବିବର୍ଜିତ ପିଶାଚ ପରି ପୃଥିବୀରେ ବିଚରଣ କରିଥାଆନ୍ତି ।

**ଲୋକଗୁରୁମାନଙ୍କର ଏବଂ ବିଶେଷତଃ ଶ୍ରୀରାମକୃଷ୍ଣଦେବଙ୍କର ବ୍ୟବହାର ବୁଝିବା ଏତେ କଠିନ କାହିଁକି ?**

ବିରାଟ 'ମୁଁ'ତ୍ୱର ସହିତ ତନ୍ମୟ ଭାବରେ ଅନେକ ସମୟ ଅବସ୍ଥାନ କରିବା ଯୋଗୁଁ ସାଧାରଣ ଲୋକଙ୍କ ଦୃଷ୍ଟିରେ ଏମାନଙ୍କ ଏପରି ଅବସ୍ଥା ଲକ୍ଷିତ ହୋଇଥାଏ । କିନ୍ତୁ ଈଶ୍ୱରଙ୍କର ଅଜ୍ଞାନଅନ୍ଧକାର-ଦୂରୀକରଣସମର୍ଥ ଗୁରୁଭାବ ଏମାନଙ୍କର ଭିତର ଦେଇ ବିଶେଷ ଭାବରେ ପ୍ରକାଶିତ ହୁଏ । କାରଣ ପୂର୍ବରୁ କୁହାଯାଇଅଛି—କ୍ଷୁଦ୍ର ସ୍ୱାର୍ଥମୟ 'ମୁଁ'ତ୍ୱର ବିଲୋପ ବା ବିନାଶ ହିଁ ଜଗତ୍‌ବ୍ୟାପୀ ବିରାଟ 'ମୁଁ'ତ୍ୱ ଏବଂ ତା ସହିତ ଲୋକକଲ୍ୟାଣସାଧନକାରୀ ଶ୍ରୀଗୁରୁଭାବର ପ୍ରକାଶ । ଏହି ସମସ୍ତ ଜ୍ଞାନୀ ପୁରୁଷମାନଙ୍କ ମଧ୍ୟରେ ପୁଣି ଯେଉଁମାନେ ଈଶ୍ୱରଙ୍କ ଇଚ୍ଛାରେ ସର୍ବଦା ଗୁରୁ ବା ଋଷିପଦବୀରେ ଅବସ୍ଥାନ କରନ୍ତି, ସେମାନଙ୍କୁ ଅନ୍ୟମାନଙ୍କ ଶିକ୍ଷା ନିମିତ୍ତ ସଦ୍‌ବିଷୟରେ ତୀବ୍ର ଅନୁରାଗ, ଅସଦ୍ ବିଷୟରେ

ତୀବ୍ର ବିରାଗ ବା କ୍ରୋଧ, ଆଚାର, ନିଷ୍ଠା, ନିୟମ, ତର୍କ, ଯୁକ୍ତି, ଶାସ୍ତ୍ରଜ୍ଞାନ ବା ପାଣ୍ଡିତ୍ୟ ସମସ୍ତ ଭାବ ହିଁ ଅବସ୍ଥା ଅନୁସାରେ ସାଧାରଣ ଲୋକଙ୍କ ପରି ଦେଖାଇବାକୁ ହୋଇଥାଏ । 'ଦେଖାଇବାକୁ ହୁଏ' ଏଥିପାଇଁ କୁହାଯାଉଛି ଯେ, 'ଭିତରେ ଏକମେବାଦ୍ୱିତୀୟମ୍' ବ୍ରହ୍ମଭାବରେ ଭଲମନ୍ଦ, ଧର୍ମାଧର୍ମ, ପାପପୁଣ୍ୟାଦି ମାୟାରାଜ୍ୟର ଅନ୍ତର୍ଗତ ସମସ୍ତ ପଦାର୍ଥରେ ଓ ଭାବରେ ଏକାକାର ଜ୍ଞାନ ବା ଦୃଷ୍ଟି ପୂର୍ଣ୍ଣଭାବରେ ଥିଲେ ମଧ୍ୟ, ଅନ୍ୟକୁ ମାୟାରାଜ୍ୟର ପରପାରକୁ ଯିବାର ପଥ ଦେଖାଇବା ନିମିତ୍ତ ଏସମସ୍ତ ଭାବ ଧରି ସେମାନେ କାଳଯାପନ କରିଥାଆନ୍ତି । ସାଧାରଣ ଗୁରୁ ବା ଋଷିମାନଙ୍କର ହିଁ ଯେତେବେଳେ ସେ ପ୍ରକାର ଲୋକକଲ୍ୟାଣ ପାଇଁ ଅନେକ ସମୟ କାଳଯାପନ କରିବାକୁ ହୁଏ, ସେତେବେଳେ ଈଶ୍ୱରାବତାର ବା ଜଗତ୍‌ଗୁରୁପଦବୀସ୍ଥ ଆଚାର୍ଯ୍ୟମାନଙ୍କର କଥା କ'ଣ ବା କହିବା । ଏଥିପାଇଁ ସେମାନଙ୍କୁ ବୁଝିବା, ଧରିବା ସାଧାରଣ ମନୁଷ୍ୟର ଏତେ କଷ୍ଟ ହୋଇଉଠିଥାଏ; ବିଶେଷତଃ ବର୍ତ୍ତମାନ ଯୁଗାବତାର ଶ୍ରୀରାମକୃଷ୍ଣଦେବଙ୍କର ଚେଷ୍ଟା ଓ ବ୍ୟବହାରାଦି ଧରିବା ଓ ବୁଝିବା ଏକ ଦୂରୂହ କାର୍ଯ୍ୟ । କାରଣ ଅବତାରମାନଙ୍କଠାରେ ଯେଉଁ ସମସ୍ତ ବାହ୍ୟିକ ଐଶ୍ୱର୍ଯ୍ୟ, ଶକ୍ତି ବା ବିଭୂତିର ପ୍ରକାଶ ଶାସ୍ତ୍ରରେ ଏଯାବତ୍ ଲିପିବଦ୍ଧ ଅଛି, ସେସବୁ ତାଙ୍କଠାରେ ଏତେ ଗୁପ୍ତ ଭାବରେ ପ୍ରକାଶିତ ଥିଲା ଯେ, ଯଥାର୍ଥ ତତ୍ତ୍ୱଜିଜ୍ଞାସୁ ହୋଇ ତାଙ୍କର କୃପା ଲାଭ କରି ତାଙ୍କ ସହିତ ବିଶେଷ ଘନିଷ୍ଠ ସମ୍ବନ୍ଧରେ ନିବଦ୍ଧ ନ ହେଲେ, ଏହାଙ୍କୁ ଦୁଇ-ଚାରିଥର ଉପର ଉପର ଅଳ୍ପ ସ୍ୱଳ୍ପ ମାତ୍ର ଦେଖି କାହାର ମଧ୍ୟ ତାଙ୍କର ଏସମସ୍ତ ଗୁଣର ପରିଚୟ ପାଇବାର ଉପାୟ ନ ଥିଲା । ଦେଖ ନା, ବାହ୍ୟିକ କେଉଁ ଗୁଣ ଦେଖି ତୁମେ ତାଙ୍କ ପ୍ରତି ଆକୃଷ୍ଟ ହେବ ? ବିଦ୍ୟାରେ—ସମ୍ପୂର୍ଣ୍ଣ ନିରକ୍ଷର କହିଲେ ଅତ୍ୟୁକ୍ତି ହେବ ନାହିଁ ! ଶ୍ରୁତିଧରତ୍ୱ ଗୁଣରେ ବେଦ ବେଦାନ୍ତ ଆଦି ସମସ୍ତ ଶାସ୍ତ୍ର ଶୁଣି ଯେ ସେ ସମ୍ପୂର୍ଣ୍ଣ ଆୟତ୍ତ କରି ରଖିଛନ୍ତି, ଏକଥା ତୁମେ କିପରି ବୁଝିବ ? ବୁଦ୍ଧିରେ କ'ଣ ତାଙ୍କୁ ଧରିବ ?' ''ମୁଁ କିଛି ନୁହେଁ, ମୁଁ କିଛି ଜାଣି ନାହିଁ—ସବୁ ମୋର ମା' ଜାଣେ''—ସବୁସମୟରେ ଏହିପରି ବୁଦ୍ଧି ଯାହାଙ୍କଠାରେ ପ୍ରକାଶ, ତାଙ୍କ ନିକଟକୁ ତୁମେ କେଉଁ ବିଷୟରେ ବୁଦ୍ଧି ନେବାକୁ ଯିବ ? ପୁଣି ନେବାକୁ ଗଲେ ମଧ୍ୟ ସେ ଯେତେବେଳେ କହିବେ, ''ମା'ଙ୍କୁ ପଚାର, ସେ କହିବେ'', ତାହେଲେ ତୁମେ କ'ଣ ତାଙ୍କ କଥାରେ ବିଶ୍ୱାସ ସ୍ଥିର ରଖି ଏପରି କରିପାରିବ ? ତୁମେ ଭାବିବ—''କ'ଣ ପରାମର୍ଶ ଦେଲେ ! ଏକଥା ତ ଆମେ 'କଥାମାଳା' 'ବୋଧୋଦୟ'[୧] ପଢ଼ିବା ସମୟରୁ ହିଁ ଶୁଣି ଆସିଛୁ—ଈଶ୍ୱର ସର୍ବଜ୍ଞ ଓ ସର୍ବଶକ୍ତିମାନ ନିରାକାର ଚୈତନ୍ୟସ୍ୱରୂପ, ଇଚ୍ଛା କଲେ ସମସ୍ତ ବିଷୟ ଜଣାଇ ଓ ବୁଝାଇ ଦେଇପାରନ୍ତି; କିନ୍ତୁ ଏକଥା ନେଇ କାର୍ଯ୍ୟ କରିବାକୁ

୧. ସେହି ସମୟରେ ବଙ୍ଗଳାରେ ଏହି ଦୁଇଟି ଗ୍ରନ୍ଥ ସର୍ବପ୍ରଥମେ ପିଲାଙ୍କୁ ପଢ଼ା ହେଉଥିଲା । ଯେପରି ଓଡ଼ିଆରେ ବର୍ଣ୍ଣବୋଧ ପୁସ୍ତକ ।

ଗଲେ କ'ଣ ଚଳିବ ?'' ଧନରେ, ନାମ-ଯଶରେ କ'ଣ ତାଙ୍କୁ ଧରିବ ? —ଠାକୁରଙ୍କର ନିଜର ଏସମସ୍ତ କେବେ ଥିଲା ! ଖାଲି ସେତିକି ନୁହେଁ ଏସମସ୍ତ ତ ତ୍ୟାଗ କରିବାକୁ ପ୍ରଥମରୁ ହିଁ ଉପଦେଶ ଦେଉଥିଲେ ! ଏହିପରି ସବୁ ବିଷୟରେ ବୁଝିବାକୁ ହେବ । କେବଳ ତାଙ୍କର ପବିତ୍ରତା, ଈଶ୍ୱରାନୁରାଗ ଓ ପ୍ରେମ ଦେଖି ତାଙ୍କ ପ୍ରତି ଆକୃଷ୍ଟ ହୋଇ ତାଙ୍କୁ ବୁଝିପାରିବାର ଏକମାତ୍ର ଉପାୟ ଥିଲା । ଏଥିରେ ତୁମେ ଯଦି ଆକୃଷ୍ଟ ହେଲ ତ ହେଲ । ନେ ହେଲେ ତାଙ୍କୁ ଧରିବା ଓ ବୁଝିବା ତୁମ ପକ୍ଷରେ ସୁଦୂରପରାହତ ! ସେଥିପାଇଁ କହୁ, ରାଣୀ ରାସମଣି ଯେ ଏପରି କଠୋର ଭାବରେ ପ୍ରକାଶିତ ଠାକୁରଙ୍କର ଗୁରୁଭାବ ଧରିପାରିଲେ ଏବଂ ସେ ଏପରି ଭାବରେ ଶିକ୍ଷାଦାନ କଲେ ମଧ୍ୟ ତାହା ଅଭିମାନ-ଅହଂକାରରେ ଭସାଇ ନ ଦେଇ ହୃଦୟରେ ଧାରଣ କରି ଧନ୍ୟ ହେଲେ—ଏହା ତାଙ୍କର କିଛି କମ୍ ସୌଭାଗ୍ୟର କଥା ନୁହେଁ ।

# ଷଷ୍ଠ ଅଧ୍ୟାୟ

## ଗୁରୁଭାବ ଓ ମଥୁରାନାଥ

ହନ୍ତ ତେ କଥୟିଷ୍ୟାମି ଦିବ୍ୟା ହ୍ୟାତ୍ମବିଭୂତୟଃ ।
ପ୍ରାଧାନ୍ୟତଃ କୁରୁଶ୍ରେଷ୍ଠ ନାସ୍ତ୍ୟନ୍ତୋ ବିସ୍ତରସ୍ୟ ମେ ॥ —ଗୀତା ୧୦/୧୯

### 'ବଡ଼ ଫୁଲ ଫୁଟିବାକୁ ଡେରି ହୁଏ' :

ପୂର୍ବେ କୁହାଯାଇଛି, ଠାକୁରଙ୍କ ଜୀବନରେ ଗୁରୁଭାବର ଧୀର ବିକାଶ ରାଣୀ ରାସମଣି ଓ ମଥୁରବାବୁଙ୍କର ଚକ୍ଷୁ ସମ୍ମୁଖରେ ହିଁ ହେଉଥିଲା । ଉଚ୍ଚାଙ୍ଗର ଭାବ ବିକାଶ ସମ୍ବନ୍ଧରେ ଠାକୁର କହୁଥିଲେ ''ବଡ଼ଫୁଲ ଫୁଟିବାକୁ ଡେରି ହୋଇଥାଏ, ମୂଲ୍ୟବାନ୍ ବୃକ୍ଷ ଅନେକ ଡେରିରେ ବଢ଼େ ।'' ଠାକୁରଙ୍କର ଜୀବନରେ ମଧ୍ୟ ଅଦୃଷ୍ଟପୂର୍ବ ଗୁରୁଭାବର ବିକାଶ ହେବାକୁ କିଛି କମ୍ ସମୟ ଓ ସାଧନା ଲାଗି ନାହିଁ; ଦ୍ୱାଦଶବର୍ଷବ୍ୟାପୀ ନିରନ୍ତର କଠୋର ସାଧନାର ଆବଶ୍ୟକ ହୋଇଥିଲା । ସେ ସାଧନାର ଯଥାସାଧ୍ୟ ପରିଚୟ ଦେବାର ଏହା ସ୍ଥାନ ନୁହେଁ । ଏଠାରେ ଚିତ୍ସୂର୍ଯ୍ୟର କିରଣମାଳାର ସମ୍ୟକ୍ ସମୁଦ୍ଭାସିତ ଗୁରୁଭାବରୂପକ ପୁଷ୍ପଟି ସହିତ ହିଁ ଆମର ବିଶେଷ ସମ୍ବନ୍ଧ; ସେହି କଥା ବିଶେଷ ଭାବରେ କୁହାଯିବ । ତେବେ ଏହି ଭାବ ବିକାଶର କଥା ପୂର୍ବପରି ଶେଷ ପର୍ଯ୍ୟନ୍ତ କହିବାକୁ ଯାଇ ପ୍ରସଙ୍ଗକ୍ରମେ କୌଣସି ନା କୌଣସି କଥା ଆସିବ । ଯେଉଁ ସମସ୍ତ ଭକ୍ତଙ୍କ ସହିତ ଠାକୁରଙ୍କର ଏହି ଭାବର ପୂର୍ବାବସ୍ଥା ସମୟର ସମ୍ବନ୍ଧ, ସେମାନଙ୍କର କଥା କିଛି ନା କିଛି ନିଶ୍ଚୟ ଆସିଯିବ ।

### ମଥୁରଙ୍କ ସହିତ ଠାକୁରଙ୍କର ଅଦ୍ଭୁତ ସମ୍ବନ୍ଧ ! ମଥୁର କିଭଳି ପ୍ରକୃତିର ଲୋକ ଥିଲେ :

ମଥୁରବାବୁଙ୍କ ସହିତ ଠାକୁରଙ୍କର ସମ୍ବନ୍ଧ ଏକ ଅଦ୍ଭୁତ ବିଷୟ ! ମଥୁରବାବୁ ଧନୀ କିନ୍ତୁ ଉଚ୍ଚପ୍ରକୃତିସମ୍ପନ୍ନ, ବିଷୟୀ ହେଲେ ମଧ୍ୟ ଭକ୍ତ, ଅହଂକାରୀ ହୋଇ ମଧ୍ୟ ବୁଦ୍ଧିମାନ, କ୍ରୋଧପରାୟଣ ହେଲେ ମଧ୍ୟ ଧୈର୍ଯ୍ୟଶୀଳ ଓ ଦୃଢ଼ପ୍ରତିଜ୍ଞ ଥିଲେ । ମଥୁରବାବୁ ଇଂରାଜୀ-ବିଦ୍ୟାରେ ଅଭିଜ୍ଞ ଓ ତାର୍କିକ, କିନ୍ତୁ କେହି କୌଣସି କଥା ବୁଝାଇଦେଲେ ତାହା ବୁଝି ମଧ୍ୟ ବୁଝିବେ ନାହିଁ—ଏପରି ପ୍ରକୃତିର ନ ଥିଲେ; ସେ ଥିଲେ ଈଶ୍ୱର ବିଶ୍ୱାସୀ ଓ ଭକ୍ତ, କିନ୍ତୁ ତାହା ହେଲେ ମଧ୍ୟ ଧର୍ମ ସମ୍ବନ୍ଧରେ ଯିଏ ଯାହା କହିବ ତାହା ଯେ ଆଖି ବୁଜି ବିନା ବିଚାରରେ ଗ୍ରହଣ କରିବେ, ତାହା ତାଙ୍କଠାରେ ନ ଥିଲା, ସିଏ ଠାକୁର ହୁଅନ୍ତୁ ବା ଗୁରୁ ହୁଅନ୍ତୁ ଅଥବା ଅନ୍ୟ ଯେ କେହି ହୁଅନ୍ତୁ । ସେ ଉଦାର-ପ୍ରକୃତି ଓ ସରଳ ଥିଲେ, କିନ୍ତୁ ତାହାବୋଲି ବିଷୟ ପ୍ରସଙ୍ଗରେ ବା ଯେକୌଣସି ବିଷୟରେ ସେ ବୋକାପରି ଠକିଯିବେ, ସେପରି ନ ଥିଲେ, ବରଂ ବିଷୟୀ ଜମିଦାରମାନେ ଯେଉଁ କୂଟବୁଦ୍ଧି ଓ ବେଳେବେଳେ ଅସଦୁପାୟ

ସାହାଯ୍ୟରେ ପ୍ରତିନିୟତ ବିଷୟବୃଦ୍ଧି କରିଥାଆନ୍ତି, ସେସବୁ ମଧ୍ୟ ତାଙ୍କଠାରେ ବେଳେବେଳେ ପ୍ରକାଶ ପାଉଥିଲା । ବାସ୍ତବିକ ପୁତ୍ରହୀନା ରାଣୀ ରାସମଣିଙ୍କର ଅନ୍ୟାନ୍ୟ ଜାମାତାମାନେ ବର୍ତ୍ତମାନ ଥିଲେ ମଧ୍ୟ ବିଷୟକର୍ମର ତତ୍ତ୍ୱାବଧାନ ଓ ସୁବନ୍ଦୋବସ୍ତରେ କନିଷ୍ଠ ମଥୁରବାବୁ ହିଁ ତାଙ୍କର ଦକ୍ଷିଣ-ହସ୍ତସ୍ୱରୂପ ଥିଲେ ଏବଂ ଶାଶୁ ଓ ଜ୍ୱାଇଁ ଉଭୟଙ୍କର ବୁଦ୍ଧି ଏକତ୍ରିତ ହେବାରୁ ହିଁ ରାଣୀରାସମଣିଙ୍କର ନାମ ସେତେବେଳେ ଏତେ ପ୍ରଖ୍ୟାତ ହୋଇଉଠିଥିଲା ।

**ଠାକୁରଙ୍କର ଗୁରୁଭାବ ବିକାଶରେ ରାଣୀ ରାସମଣି ଓ ମଥୁରବାବୁଙ୍କର ଅଜ୍ଞାତ ଭାବରେ ସହାୟତା । ବନ୍ଧୁ ବା ଶତ୍ରୁଭାବରେ ସମ୍ବନ୍ଧିତ ଯାବତୀୟ ଲୋକ ଅବତାରପୁରୁଷଙ୍କର ଶକ୍ତି ବିକାଶର ସହାୟତା କରିଥାଆନ୍ତି :**

ପାଠକମାନେ ହୁଏତ କହିବେ, ଏହି ଅନାବଶ୍ୟକ କଥାର ଏଠାରେ କ'ଣ ପ୍ରୟୋଜନ ? ଠାକୁରଙ୍କ କଥା କହୁଥିବା ବେଳେ ପୁଣି ମଥୁରବାବୁ କାହିଁକି ? କାରଣ ଖୋସାକୁ କାଟି ଭାବରୂପୀ ପ୍ରଜାପ୍ରତିଟି ଯେତେବେଳେ ବାହାରକୁ ଆସୁଥିଲା, ସେତେବେଳେ ମଥୁରବାବୁ ହିଁ ତାହାର ଭାବୀ ସୌନ୍ଦର୍ଯ୍ୟର ଆଭାସ କିଞ୍ଚିତ୍ ଲାଭ କରି ତାଙ୍କର ପ୍ରଧାନ-ରକ୍ଷକ ଓ ସହାୟସ୍ୱରୂପ ହୋଇଥିଲେ ! ରାଣୀ ରାସମଣି ଗୋଟିଏ ମହା ଶୁଦ୍ଧ ପବିତ୍ର ପ୍ରେରଣାରେ ଏହି ଅଦ୍ଭୁତ ଚରିତ୍ରର ବିକାଶ ଓ ପ୍ରସାରୋପଯୋଗୀ ସ୍ଥାନ ନିର୍ମାଣ କରିଥିଲେ, ଏବଂ ତାଙ୍କର ଜାମାତା ମଥୁରବାବୁ ସେପରି ଉଚ୍ଚ ପ୍ରେରଣାରେ ସେହି ଦେବଚରିତ୍ର-ବିକାଶ ସକାଶେ ଅନ୍ୟ ଯାହା ସବୁ ପ୍ରୟୋଜନ ହେଲା, ସେସମସ୍ତ ଯୋଗାଇ ଦେଇଥିଲେ । ଅବଶ୍ୟ ଏକଥା ଆମେ ଏତେଦିନ ପରେ ଧରିପାରିଛୁ; ସେମାନେ ଉଭୟ କିନ୍ତୁ ସେବିଷୟର ଆଭାସ ବେଳେବେଳେ କିଛି କିଛି ପାଇଲେ ମଧ୍ୟ ସେସମସ୍ତ କାର୍ଯ୍ୟ ଯେ କାହିଁକି କରୁଛନ୍ତି, ତାହା ହୃଦୟଙ୍ଗମ କରିବାକୁ ପରେ ମଧ୍ୟ ଯେ ସମ୍ପୂର୍ଣ୍ଣ ସକ୍ଷମ ହୋଇଥିଲେ, ତାହା ବୋଧ ହୁଏ ନାହିଁ । ଯୁଗେ ଯୁଗେ ସମସ୍ତ ମହାପୁରୁଷମାନଙ୍କର ଜୀବନ ଆଲୋଚନା କରିବାକୁ ଗଲେ ଏପରି ଦେଖିବାକୁ ମିଳିଥାଏ । ଦେଖାଯାଏ ଯେ, କୌଣସି ଏକ ଅଜ୍ଞାତ ଶକ୍ତି ଅଲକ୍ଷ୍ୟରେ ସେମାନଙ୍କର ସମସ୍ତ ବିଷୟର ପଥ ପରିଷ୍କାର କରି ଦେଉଛନ୍ତି, ସବୁ ସମୟରେ ସର୍ବାବସ୍ଥାରେ ସେମାନଙ୍କୁ ସର୍ବତୋଭାବରେ ରକ୍ଷା କରୁଛନ୍ତି, ଅନ୍ୟ ସମସ୍ତ ବ୍ୟକ୍ତିଙ୍କର ଶକ୍ତିକୁ ନିୟନ୍ତ୍ରିତ କରି ସେମାନଙ୍କ ଅଧୀନକୁ ଆଣିଦେଉଛନ୍ତି; ଅଥଚ ସେସମସ୍ତ ବ୍ୟକ୍ତି ଜାଣିପାରନ୍ତି ନାହିଁ ଯେ, ସେମାନେ ନିଜେ ସ୍ୱାଧୀନ ଭାବରେ, ପ୍ରେମରେ ବା ଏହି ସମସ୍ତ ଦେବଚରିତ୍ର ଉପରେ ବିଦ୍ୱେଷରେ ଯାହା କରୁଅଛନ୍ତି, ତାହା ସେମାନଙ୍କ ପାଇଁ ହିଁ — ସେମାନଙ୍କର କାର୍ଯ୍ୟର ସହାୟକ ହେବ ବୋଲି — ସେମାନଙ୍କର ଗନ୍ତବ୍ୟପଥରେ ବାଧା-ବିଘ୍ନଗୁଡ଼ିକ ଘୁଞ୍ଚାଇ ସେମାନଙ୍କର ଅନ୍ତରର ଶକ୍ତି ଉଦ୍ଦୀପିତ କରିବ ବୋଲି ! — ଏକଥା ମନୁଷ୍ୟ

ବହୁଦିନ ପରେ ବୁଝିପାରି ଆଶ୍ଚର୍ଯ୍ୟ ହୁଏ ! କୈକେୟୀଙ୍କର ଶ୍ରୀରାମଚନ୍ଦ୍ରଙ୍କୁ ବନକୁ ପଠାଇବାର ଫଳ ଦେଖ; ବସୁଦେବ ଓ ଦେବକୀଙ୍କୁ କାରାଗାରରେ ରଖି କଂସର ଆଜୀବନ ଚେଷ୍ଟାର ଶେଷଫଳ ଦେଖ; କାଳେ ସିଦ୍ଧାର୍ଥଙ୍କ କାଳେ ବୈରାଗ୍ୟର ଉଦୟ ହେବ ବୋଲି ରାଜା ଶୁଦ୍ଧୋଦନଙ୍କର ପ୍ରମୋଦ-କାନନ ନିର୍ମାଣ ଦେଖ; କ୍ରୂର କାପାଳିକ ବୌଦ୍ଧଗଣଙ୍କର ଆଚାର୍ଯ୍ୟ ଶଙ୍କରଙ୍କୁ ଅଭିଚାରାଦି ସାହାଯ୍ୟରେ ବିନଷ୍ଟ କରିବାର ଚେଷ୍ଟା ଦେଖ; ରାଜପୁରୁଷମାନଙ୍କ ସାହାଯ୍ୟରେ ଶ୍ରୀଚୈତନ୍ୟଙ୍କର ପ୍ରେମଧର୍ମ ପ୍ରଚାରର ବିଦ୍ୱେଷ ଓ ବିପକ୍ଷତା ଆଚରଣର ଫଳ ଦେଖ; ଆହୁରି ଦେଖ ମହାମହିମ ଈଶାଙ୍କୁ ମିଥ୍ୟା ଅପରାଧରେ ନିହତ କରିବାର ଫଳ !— 'ସର୍ବତ୍ର ହିଁ ଓଲଟା ବୁଝିଲୁ ରାମ'[୧] ହୋଇଗଲା— ! ଅଥଚ ମହାପରାକ୍ରାନ୍ତ ବୁଦ୍ଧିମାନ ବିପକ୍ଷ ଓ ସ୍ନେହପରବଶ ସ୍ୱପକ୍ଷକୁଳ କୁଟନୀତି ବା ବିଷୟ-ବୁଦ୍ଧି ସହାୟତାରେ ଚିରକାଳ ହିଁ ଅନ୍ୟପ୍ରକାର ଭାବ ଅନ୍ୟ ଉଦ୍ଦେଶ୍ୟରେ କାର୍ଯ୍ୟ କରିଅଛନ୍ତି ଏବଂ ଭବିଷ୍ୟତରେ ମଧ୍ୟ ଭାବିବେ ଓ କରୁଥିବେ । ତେବେ ଶ୍ରୀମଦ୍‌ଭାଗବତ ଆଦି ଗ୍ରନ୍ଥମାନଙ୍କରେ ଯେପରି ଲିପିବଦ୍ଧ ଅଛି—ଶତ୍ରୁ ଭାବରେ, ସେହି ଐଶୀ ଶକ୍ତିର ଉଦ୍ଦେଶ୍ୟ ଓ ଗତିବିଧି ବିଷୟରେ ସମ୍ପୂର୍ଣ୍ଣ ଅନଭିଜ୍ଞ ହୋଇ ରହିଯିବାକୁ ହୁଏ, ଏବଂ ଭକ୍ତ ଶ୍ରଦ୍ଧା-ଭକ୍ତିର ସହିତ ସେହି ଐଶ୍ୱୀଶକ୍ତିର ଅନୁଗାମୀ ହୋଇ ବେଳେବେଳେ ଏହାର କିଛିଟା ହୃଦୟଙ୍ଗମ କରି ସେହି ଜ୍ଞାନର ସହାୟରେ କ୍ରମେ କ୍ରମେ ବାସନାବର୍ଜିତ ହୋଇ ମୁକ୍ତି ଓ ଚିରଶାନ୍ତିର ଅଧିକାରୀ ହୋଇଥାଆନ୍ତି । ମଥୁରବାବୁଙ୍କର କ୍ରିୟାକଳାପ ମଧ୍ୟ ଶେଷୋକ୍ତ ଭାବରେ ହୋଇଥିଲା ।

---

୧. ନିମ୍ନଲିଖିତ ଗଳ୍ପଟିରୁ ପ୍ରଚଳିତ ଉକ୍ତିଟିର ଉତ୍ପତ୍ତି ହୋଇଛି । ଯଥା — ଜଣେ ବୈରାଗୀ ସାଧୁ ବହୁକାଳ ପର୍ଯ୍ୟନ୍ତ ତୀର୍ଥରୁ ତୀର୍ଥ ଭ୍ରମଣ କରି ବୁଲୁଥିଲେ । ସାଥିରେ ରଖିଥିବା— କମ୍ବଳ, କମଣ୍ଡଳୁ ପ୍ରଭୃତି ଆବଶ୍ୟକୀୟ ଦ୍ରବ୍ୟଗୁଡ଼ିକର ବୁଜୁଲିଟି ନିଜକୁ ବୋହିବାକୁ ପଡୁଥିଲା । ଦିନେ ସାଧୁଟିର ମନରେ ଆସିଲା, ଯଦି ଗୋଟିଏ ଘୋଡ଼ା ମିଳିଯାଆନ୍ତା, ତେବେ ଏବୁଜୁଲିଟିକୁ କଷ୍ଟକରି ମୋତେ ବୋହିବାକୁ ପଡ଼ନ୍ତା ନାହିଁ । ଏହା ଭାବି, 'ଗୋଟିଏ ଘୋଡ଼ା, ଦେଇ ଦିଅ ରାମ' କହି ଚିତକାର କରି ଘୋଡ଼ା-ଭିକ୍ଷା ଉଦ୍ଦେଶ୍ୟରେ ଘୁରିବାକୁ ଲାଗିଲେ । ସେତେବେଳେ ସେହି ସ୍ଥାନ ଦେଇ ରାଜାଙ୍କର ସୈନ୍ୟବାହିନୀ ଯାଉଥିଲେ । ରାସ୍ତାରେ ଗୋଟିଏ ଘୋଡ଼ିର ଛୁଆ ଜନ୍ମ ହେବାରୁ ଆରୋହୀ ଭାବିଲା, ''ସୈନ୍ୟବାହିନୀ ବର୍ତ୍ତମାନ ଅନ୍ୟସ୍ଥାନକୁ ପ୍ରସ୍ଥାନ କରିବେ, ଘୋଡ଼ିଟି ଚାଲିଯାଇପାରେ, କିନ୍ତୁ ସଦ୍ୟୋଜାତ ଛୁଆଟି କିପରି ନେଇଯିବି ?'' ବହୁ ଭାବିଚିନ୍ତି ଛୁଆଟିକୁ ବହନ କରିବା ପାଇଁ ଜଣେ ଲୋକର ସନ୍ଧାନରେ ବାହାରି ସେହି 'ଗୋଟିଏ ଘୋଡ଼ା, ଦେଇ ଦିଅ ରାମ' କହି ବୁଲୁଥିବା ସାଧୁଟି ସହିତ ଦେଖା ହେଲା ଏବଂ ସାଧୁଟିକୁ ବଳିଷ୍ଠ ଦେଖି କୌଣସି ବିଚାର ନ କରି ବଳପୂର୍ବକ ତାହା ଦ୍ୱାରା ହିଁ ଶାବକଟିକୁ ବହନ କରାଇବା ପାଇଁ ନେଇଗଲା । ସେତେବେଳେ ସାଧୁଟି ମହାବିପଦରେ ପଡ଼ି କହିବାକୁ ଲାଗିଲା— 'ଓଲଟା ବୁଝିଲୁ ରାମ !' କୁଆଡ଼େ ଘୋଡ଼ା ମୋ ପୁଟୁଳି ବହନ କରିବ, ତା' ନ ହୋଇ, ମୋତେ ଘୋଡ଼ାଛୁଆ ବୋହି ନେବାକୁ ହେଉଛି ।

## ସାଧାରଣ ମାନବ ଜୀବନରେ ମଧ୍ୟ ଏପରି ହୋଇଥାଏ । କାରଣ ଏହା ସହିତ ଅବତାରପୁରୁଷଙ୍କ ଜୀବନର ବିଶେଷ ସୌସାଦୃଶ୍ୟ ଅଛି :

ଅବତାର-ମହାପୁରୁଷମାନଙ୍କ ଜୀବନରେ ଯେ କେବଳ ଏହି ଦୈବୀଶକ୍ତିର ଖେଳ ଦେଖିବାକୁ ମିଳେ, ତାହା ନୁହେଁ । ତେବେ ସେମାନଙ୍କର ଜୀବନରେ ଏହାର ଉଜ୍ଜ୍ୱଳ ଖେଳ ସହଜରେ ଧରିପାରି ଆମେ ଆଶ୍ଚର୍ଯ୍ୟ ହେଉ—ଏହି ପର୍ଯ୍ୟନ୍ତ । ନତୁବା ନିଜ ନିଜର ଦୈନନ୍ଦିନ ଜୀବନର ଏବଂ ଜଗତର ବ୍ୟାବହାରିକ ଜୀବନର ଇତିହାସ ଆଲୋଚନା କଲେ ମଧ୍ୟ ଆମେ ଏବିଷୟରେ ଯତ୍ସାମାନ୍ୟ ପ୍ରକାଶ ଦେଖିବାକୁ ପାଉ । ମନୁଷ୍ୟ ଜୀବନର ବିଭିନ୍ନ ଅନୁଭବ ବା ମନୁଷ୍ୟ ଜୀବନର ବହୁ ଘଟଣା ତୁଳନାତ୍ମକ ଆଲୋଚନାରେ ଏହା ସ୍ପଷ୍ଟ ବୁଝାଯାଏ ଯେ, ମନୁଷ୍ୟ ଏହି ଦୈବୀ ଶକ୍ତିର ହସ୍ତରେ ସର୍ବକ୍ଷଣ ହିଁ କ୍ରୀଡ଼ାପୁତ୍ତଳିକା-ସ୍ୱରୂପ ରହିଅଛି । ଅବତାର-ମହାପୁରୁଷମାନଙ୍କର ଜୀବନ ସହିତ ସାଧାରଣ ମାନବ ଜୀବନର ସାଦୃଶ୍ୟ ରହିବା କିଛି ବିଚିତ୍ର କଥା ନୁହେଁ । କାରଣ ସେମାନଙ୍କର ଅଲୌକିକ ଜୀବନାବଳୀ ହିଁ ଇତରସାଧାରଣଙ୍କ ଜୀବନ-ଗଠନର ଛାଞ୍ଚ(type or model)-ସ୍ୱରୂପ । ସେମାନଙ୍କର ଜୀବନାଦର୍ଶରେ ହିଁ ସାଧାରଣ ମନୁଷ୍ୟ ନିଜର ଜୀବନ ଗଠନର ପ୍ରେରଣା ପାଇଅଛି ଓ ଚିରଦିନ ପାଇବ । ଦେଖନ୍ତୁ ନା, ନାନା ଜାତିର ନାନା ଭାବର ସମ୍ମିଳନଭୂମି ବିଶାଳ ଭାରତ-ଜୀବନରେ ରାମ, କୃଷ୍ଣ, ଚୈତନ୍ୟ ପ୍ରଭୃତି କେତୋଟି ମହାପୁରୁଷ କିପରି ଅଧିକାର କରି ବସିଅଛନ୍ତି ! ପୁଣି ଏସମସ୍ତ ମହାପୁରୁଷମାନଙ୍କର ଜୀବନାଦର୍ଶର ଏକତ୍ର ସମ୍ମିଳନରେ ଅଦୃଷ୍ଟପୂର୍ବ ନୂତନ ଭାବରେ ଗଠିତ ବର୍ତ୍ତମାନ ଯୁଗାବତାର ଶ୍ରୀରାମକୃଷ୍ଣଙ୍କର ଜୀବନାଦର୍ଶ କିପରି ଦ୍ରୁତପଦରେ ନିଜର ପ୍ରବାହ ବିସ୍ତାର କରି ଏହି ଅଳ୍ପକାଳ ମଧ୍ୟରେ ବର୍ତ୍ତମାନ ଭାରତ-ଭାରତୀଙ୍କର ଜୀବନ ଅଧିକାର କରି ବସିଅଛି ! ସମୟାନୁକ୍ରମେ ଏହା କେଉଁ ଭାବରେ କେତେଦୂର ଯାଇ ଛିଡ଼ାହେବ, ତାହା ଯଦି ତୁମର ସାଧ ଥାଏ, କୁହ; ହେ ପାଠକଗଣ, ଆମେ କିନ୍ତୁ ଏହା ବୁଝିବାକୁ ଓ କହିବାକୁ ସମ୍ପୂର୍ଣ୍ଣ ଅପାରଗ ।

## ମଥୁରବାବୁ ଭକ୍ତ ଥିଲେ କିନ୍ତୁ ନିର୍ବୋଧ ନ ଥିଲେ :

ଆଉ ଏକ କଥା—ମଥୁରବାବୁ ଠାକୁରଙ୍କୁ ଯେପରି ଅକପଟରେ, 'ସାଢ଼େ ଷୋହଳ ଅଣା' ଭକ୍ତି-ବିଶ୍ୱାସ କରୁଥିଲେ, ସେଥିରେ ଆମମାନଙ୍କ ପରି ସନ୍ଦେହୀ ମନ ପ୍ରଥମେ ଭାବିବ—'ସେ ଲୋକଟା ବୋକା ମର୍କଟସଦୃଶ ଥିଲା ବୋଧେ; ନ ହେଲେ ମନୁଷ୍ୟ କ'ଣ ମନୁଷ୍ୟକୁ ଏତେ ଭକ୍ତି ଓ ବିଶ୍ୱାସ କରିପାରେ ? ଆମେ ଯଦି ହୋଇଥାଆନ୍ତୁ ତେବେ ଥରେ ଦେଖି ନେଇଥାଆନ୍ତୁ—ଶ୍ରୀରାମକୃଷ୍ଣଦେବ କିପରି ନିଜର ଚରିତ୍ରବଳରେ ଏତେ ଭକ୍ତି-ବିଶ୍ୱାସର ଉଦୟ ଆମମାନଙ୍କ ପ୍ରାଣରେ

କରିପାରିଥାଆନ୍ତେ !' ସତେ ଯେପରି ପ୍ରାଣରେ ଭକ୍ତି-ବିଶ୍ୱାସର ଉଦୟ ହେବା ଏକ ନିନ୍ଦାର ବିଷୟ ! ସେଥିପାଇଁ ଠାକୁରଙ୍କ ନିକଟରୁ ମଥୁରବାବୁଙ୍କ ବିଷୟରେ ଆମେ ଯେତିକି ଶୁଣିଛୁ ଓ ବୁଝିଛୁ, ତାହା ଏଠାରେ ପାଠକଙ୍କୁ ବୁଝାଇବାର ଚେଷ୍ଟା କରିଅଛୁ ଯେ, ମଥୁରବାବୁ ସେପରି ସ୍ୱଭାବର ନ ଥିଲେ । ସେ ମଧ୍ୟ ଆମମାନଙ୍କ ଅପେକ୍ଷା କମ୍ ବୁଦ୍ଧିମାନ ବା ସନ୍ଦିଗ୍ଧମନା ନ ଥିଲେ । ସେ ମଧ୍ୟ ଠାକୁରଙ୍କର ଅଲୌକିକ ଚରିତ୍ର ଓ କାର୍ଯ୍ୟକଳାପରେ ସନ୍ଦେହବାନ ହୋଇ ତାଙ୍କୁ ପ୍ରଥମେ ପ୍ରଥମେ ପ୍ରତିପଦରେ କମ୍ ପରୀକ୍ଷା କରି ନାହାନ୍ତି । କିନ୍ତୁ କଲେ କ'ଣ ହେବ ? କେବେହେଲେ, କୌଣସି ଯୁଗରେ ମନୁଷ୍ୟ ଯାହା ଦେଖି ନାହିଁ, ବିଜ୍ଞାନନାଦିନୀ ପ୍ରେମାବର୍ତଶାଳିନୀ ମହା ଓଜସ୍ୱିନୀ ଠାକୁରଙ୍କର ଭାବ-ମନ୍ଦାକିନୀର ଗୁରୁଗମ୍ଭୀର ବେଗ ମଥୁରବାବୁଙ୍କର ସନ୍ଦେହ-ଐରାବତ କେତେକ୍ଷଣ ଆଉ ସହ୍ୟ କରିପାରିବ ? ଅଳ୍ପ ସମୟରେ ତାହା ସ୍ଖଳିତ, ମଥିତ, ଧ୍ୱସ୍ତ ଓ ବିପର୍ଯ୍ୟସ୍ତ ହୋଇ ଚିରକାଳ ପାଇଁ କେଉଁଆଡ଼େ ଭାସିଯାଇଥିଲା ! ବାସ୍ତବ କ୍ଷେତ୍ରରେ ସର୍ବତୋଭାବରେ ପରାଜିତ ମଥୁରବାବୁ ସେତେବେଳେ ଆଉ କ'ଣ କରିପାରିବେ ? ଅନନ୍ୟମନରେ ଠାକୁରଙ୍କର ଶ୍ରୀପଦରେ ଶରଣ ନେଇଥିଲେ । ଅତଏବ ମଥୁରବାବୁଙ୍କ କଥା କହିଲେ ଆମେ ଠାକୁରଙ୍କ ଗୁରୁଭାବର ହିଁ କୀର୍ତ୍ତନ କରୁଛୁ, ଏହା ବୁଝିବାକୁ ବିଳମ୍ବ ହେବ ନାହିଁ ।

## ଠାକୁରଙ୍କ ପ୍ରତି ମଥୁରବାବୁଙ୍କର ପ୍ରଥମ ଆକର୍ଷଣ କିପରି ହୋଇଥିଲା — ଏବଂ ଏହାର କ୍ରମପରିଣତି :

ଠାକୁରଙ୍କର ସରଳ ବାଳକଭାବ, ମଧୁର ପ୍ରକୃତି ଏବଂ ସୁନ୍ଦର ରୂପରେ ମଥୁରବାବୁ ପ୍ରଥମ ଦର୍ଶନରେ ହିଁ ତାଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ । ପରେ ସାଧନାର ପ୍ରଥମ ଅବସ୍ଥାରେ ଠାକୁରଙ୍କର ଯେଉଁ ସମୟରେ ବେଳେବେଳେ ଦିବ୍ୟଉନ୍ମାଦ ଅବସ୍ଥା ଆସି ଉପସ୍ଥିତ ହେବାକୁ ଲାଗିଲା, ଯେତେବେଳେ ସେ ଶ୍ରୀଶ୍ରୀଜଗଦମ୍ବାଙ୍କର ପୂଜାକରି ଆତ୍ମହରା ହୋଇ ଏବଂ ନିଜ ମଧ୍ୟରେ ତାଙ୍କର ଦର୍ଶନ ଲାଭ କରି ନିଜକୁ ମଧ୍ୟ ପୂଜା କରିବାକୁ ଲାଗିଲେ, ଯେତେବେଳେ ଅନୁରାଗର ପ୍ରବଳ ବେଗରେ ସେ ବୈଧୀ ଭକ୍ତିର ସୀମା ଉଲ୍ଲଘଂନ କରି ପ୍ରେମପୂର୍ଣ୍ଣ ନାନା ପ୍ରକାର ଅବୈଧ, ସାଧାରଣ ନୟନରେ ଅହେତୁକ ଆଚରଣ ଦୈନନ୍ଦିନ ଜୀବନରେ ସମ୍ପନ୍ନ କରି ଇତରସାଧାରଣଙ୍କ ନିନ୍ଦା ଓ ସନ୍ଦେହଭାଜନ ହେବାକୁ ଲାଗିଲେ, ସେତେବେଳେ ବିଷୟୀ ମଥୁରବାବୁଙ୍କର ତୀକ୍ଷ୍ଣବୁଦ୍ଧି ଓ ନ୍ୟାୟପରତା କହିଉଠିଲା, "ଯାହାଙ୍କୁ ପ୍ରଥମ ଦର୍ଶନରେ ସୁନ୍ଦର ସରଳପ୍ରକୃତିବିଶିଷ୍ଟ ବୋଲି ବୁଝିଅଛି, ସ୍ୱଚକ୍ଷୁରେ ନ ଦେଖି ତାଙ୍କ ବିରୁଦ୍ଧରେ କୌଣସି କଥାରେ ବିଶ୍ୱାସ କରିବି ନାହିଁ ।" ସେଥିପାଇଁ ମଥୁରବାବୁ ଗୋପନରେ କାଳୀମନ୍ଦିରକୁ ଆସି ଠାକୁରଙ୍କର କାର୍ଯ୍ୟକଳାପ ତନ୍ନ ତନ୍ନ କରି ଦେଖି ଏହିପରି ସିଦ୍ଧାନ୍ତରେ ଉପନୀତ ହେଲେ ଯେ,

''ଯୁବକ ଗଦାଧର ଅନୁରାଗ ଓ ସରଳତାର ମୂର୍ତ୍ତିମାନ ଜୀବନ୍ତ ପ୍ରତିମା; ଭକ୍ତି ଓ ବିଶ୍ୱାସର ଆତିଶଯ୍ୟରେ ହିଁ ସେ ଏପରି କର୍ମ କରୁଛନ୍ତି !'' ତେଣୁ ବୁଦ୍ଧିମାନ ବିଷୟୀ ମଥୁରବାବୁ ତାଙ୍କୁ ବୁଝାଇବାକୁ ଚେଷ୍ଟା କରି କହିଥିଲେ, ''ଯାହା ସହି ହେବ ତାହା କରିବା ଭଲ; ଭକ୍ତି-ବିଶ୍ୱାସ କରିବା ଭଲ କଥା, କିନ୍ତୁ ଏକାବେଳକେ ଆତ୍ମହରା ହୋଇପଡ଼ିଲେ କ'ଣ ଚଳିବ ? ଏଥିରେ ଲୋକମାନଙ୍କର ନିନ୍ଦାର ପାତ୍ର ହେବେ, ତାପରେ ଦଶଜଣ ଯାହା କୁହନ୍ତି ସେକଥା ନ ଶୁଣି ନିଜର ମନ ମୁତାବକ ଆଚରଣ ସବୁବେଳେ କରି ଚାଲିଲେ ବୁଦ୍ଧିଭ୍ରଷ୍ଟ ହୋଇ ପାଗଳ ହୋଇଯିବାର ସମ୍ଭାବନା ଅଛି ।'' କିନ୍ତୁ ଏପରି ସବୁକିଛି ବୁଝାଇଲେ ମଧ୍ୟ ମଥୁରବାବୁଙ୍କର ଅନ୍ତର୍ନିହିତ ସୁପ୍ତା ଭକ୍ତି ଠାକୁରଙ୍କର ସଂସର୍ଗଗୁଣରେ ଜାଗରିତା ହୋଇ କେବେ କେବେ କହି ଉଠୁଥିଲା, ''କିନ୍ତୁ ରାମପ୍ରସାଦ ପ୍ରଭୃତି ପୂର୍ବର ସାଧକମାନେ ମଧ୍ୟ ଭକ୍ତିରେ ଏପରି ପାଗଳ ସଦୃଶ ବ୍ୟବହାର କରିବା ଶୁଣାଯାଇଛି; ତେଣୁ ଶ୍ରୀଗଦାଧରଙ୍କର ଏପରି ଅବସ୍ଥା ଓ ଆଚରଣ ସେହିପରି ହୋଇପାରେ ।'' ଫଳରେ ମଥୁରବାବୁ ଠାକୁରଙ୍କ ଆଚରଣରେ ବାଧା ନ ଦେଇ ମନେ ମନେ ସଂକଳ୍ପ କଲେ କେତେଦୂର କ'ଣ ହେଉଛି ଦେଖି ଶୁଣି ପରେ ଯାହା ଯୁକ୍ତିଯୁକ୍ତ ବିବେଚିତ ହେବ ତାହା ହିଁ କରିବି । ବିଷୟୀ ପ୍ରଭୂଙ୍କ ଅଧୀନସ୍ଥ ସାମାନ୍ୟ କର୍ମଚାରୀ ଉପରେ ଏପରି ବ୍ୟବହାର କମ୍ ଧୈର୍ଯ୍ୟର ପରିଚାୟକ ନୁହେଁ ।

**ଭକ୍ତିର ସଂକ୍ରାମିକା ଶକ୍ତିରେ ମଥୁରବାବୁଙ୍କ ପରିବର୍ତ୍ତନ :**

ଭକ୍ତିର ଏକ ସଂକ୍ରାମିକା ଶକ୍ତି ଅଛି । ଶାରୀରିକ ବିକାର ସଦୃଶ ମାନସିକ ଭାବସମୂହ ମଧ୍ୟ ଜଣଙ୍କଠାରୁ ଅନ୍ୟ ଜଣଙ୍କୁ ସଂକ୍ରମଣ କରିବା ଆମେ ପ୍ରତିଦିନ ଦେଖିବାକୁ ପାଇଥାଉ । କାରଣ, ଏକ ହିଁ ପଦାର୍ଥର ବିକାରରେ ଏକ ହିଁ ନିୟମରେ ଯେ ସ୍ଥୂଳ ଓ ସୂକ୍ଷ୍ମ ସମସ୍ତ ଜଗତ ଗୁନ୍ଥା ହୋଇଅଛି, ଏହାକୁ ଆଜିକାଲି ବୈଦିକ ଋଷିମାନଙ୍କର ଅନୁଭୂତି ଦ୍ୱାରା ପ୍ରମାଣ କରିବାର ଆବଶ୍ୟକତା ନାହିଁ— ଜଡ଼ବିଜ୍ଞାନ ଏବିଷୟ ପ୍ରାୟ ପ୍ରମାଣିତ କରିଅଛି । ଅତଏବ ଜଣଙ୍କଠାରେ ଭକ୍ତିରୂପକ ମାନସିକ ଭାବ ଜାଗ୍ରତ ହେଲେ ଅନ୍ୟଠାରେ ନିହିତ ସୁପ୍ତଭାବକୁ ଯେ ଜାଗ୍ରତ କରିବ, ଏଥିରେ ବିଚିତ୍ର କ'ଣ ! ଏଥିପାଇଁ ଶାସ୍ତ୍ର ସାଧୁସଙ୍ଗକୁ ଧର୍ମଭାବ ଉଦ୍ଦୀପିତ କରିବାରେ ବିଶେଷ ସହାୟକ ବୋଲି ମତ ଦେଇଛି । ମଥୁରବାବୁଙ୍କ ଭାଗ୍ୟରେ ଠିକ୍ ଏହିପରି ହୋଇଥିଲା ବୋଲି ଅନୁମିତ ହୁଏ । ସେ ଠାକୁରଙ୍କର କ୍ରିୟାକଳାପ ଦିନପରେ ଦିନ ଯେତେ ଲକ୍ଷ୍ୟ କରିବାକୁ ଲାଗିଲେ, ତାଙ୍କ ଭିତରେ ଭକ୍ତିଭାବ ତାଙ୍କ ଅଜ୍ଞାତସାରରେ ବର୍ଦ୍ଧିତ ହେବାକୁ ଲାଗିଲା । ତାହାଙ୍କ ପରବର୍ତ୍ତୀ କାର୍ଯ୍ୟଗୁଡ଼ିକରେ ଆମେ ଏହାର ବେଶ ପରିଚୟ ପାଇଥାଉ । ତେବେ ବିଷୟୀ ମନରେ ଯେପରି ହୋଇଥାଏ— ବର୍ତ୍ତମାନ ଭକ୍ତି ବିଶ୍ୱାସର ଉଦୟ, ପୁଣି ପରକ୍ଷଣରେ ସନ୍ଦେହ— ଏପରି ବାରମ୍ବାର

ହୋଇ ବହୁତ ଦିନ ପର୍ଯ୍ୟନ୍ତ ତାଙ୍କର ଚିତ୍ତ ଆନ୍ଦୋଳିତ ହୋଇଥିଲା ଏବଂ ତାପରେ ହିଁ ମଥୁରବାବୁଙ୍କ ହୃଦୟରେ ଠାକୁରଙ୍କର ଆସନ ଦୃଢ଼ ଓ ଅବିଚଳିତ ହୋଇଥିଲା, ଏକଥା ସୁନିଶ୍ଚିତ । ସେଥିପାଇଁ ଦେଖିବାକୁ ମିଳେ, ଠାକୁରଙ୍କର ବ୍ୟାକୁଳ ଅନୁରାଗ ଓ ଆଚରଣ ଆଦି ପ୍ରଥମେ ପ୍ରଥମେ ମଥୁରବାବୁଙ୍କ ଚକ୍ଷୁରେ ଭକ୍ତିର ଅତିଶୟତା ବୋଧ ହେଲେ ମଧ୍ୟ, ଠାକୁରଙ୍କ ଜୀବନରେ ଦିନକୁ ଦିନ ଏସମସ୍ତ ଯେତେ ବଢ଼ିବାକୁ ଲାଗିଲା, ମଥୁରାନାଥଙ୍କ ମନରେ ସେତେ ସନ୍ଦେହ ହେବାକୁ ଲାଗିଲା ଯେ, ଏହାଙ୍କର ବୁଦ୍ଧିଭ୍ରଂଶ ହୋଇ ନାହିଁ ତ ? କିନ୍ତୁ ଏହି ସନ୍ଦେହରୁ ତାଙ୍କ ମନରେ ଦୟାର ହିଁ ଉଦୟ ହେଲା ଏବଂ ସୁଚିକିତ୍ସକଙ୍କ ସହାୟତାରେ ଠାକୁରଙ୍କ ଶାରୀରିକ ସ୍ୱାସ୍ଥ୍ୟର ଉନ୍ନତି ହୋଇ ଯେପରି ଏହି ସମସ୍ତ ମାନସିକ ବିକାର ପ୍ରଶମିତ ହୁଏ, ଏହି ଚିନ୍ତାରେ ମଥୁରବାବୁ ମନୋନିବେଶ କଲେ ।

### ଆଧୁନିକ ଭାବରେ ଶିକ୍ଷିତ ମଥୁରଙ୍କର ଠାକୁରଙ୍କ ସହିତ ତର୍କ–ବିଚାର । ପ୍ରାକୃତିକ ନିୟମର ପରିବର୍ତ୍ତନ ଈଶ୍ୱରଙ୍କ ଇଚ୍ଛାରେ ହୋଇଥାଏ । ନାଲି ମନ୍ଦାର ଗଛରେ ଧଳା ମନ୍ଦାର :

ଇଂରାଜୀରେ ମଥୁରବାବୁଙ୍କର ଜ୍ଞାନ କିଛି ମନ୍ଦ ନ ଥିଲା । ଇଂରାଜୀ ବିଦ୍ୟାର ସହାୟରେ ପାଶ୍ଚାତ୍ୟ ଚିନ୍ତାପ୍ରଣାଳୀ ଓ ଭାବସ୍ରୋତ ମନ ମଧ୍ୟରେ ପ୍ରବେଶ କରି "ମୁଁ ମଧ୍ୟ ଜଣେ ସାଧାରଣ ନୁହେଁ, ଅନ୍ୟମାନଙ୍କ ସହିତ ସମାନ ।" —ଏପରି ଏକ ସ୍ୱାଧୀନ ଭାବ ମନୁଷ୍ୟଙ୍କ ମନରେ ଆଣିଦିଏ, ମଥୁରବାବୁଙ୍କର ସେଭାବ ମଧ୍ୟ କମ୍ ନ ଥିଲା । ସେଥିପାଇଁ ଯୁକ୍ତିତର୍କ କରି ଠାକୁରଙ୍କୁ ଏପରି ଈଶ୍ୱର ଭକ୍ତିରେ ଏକାବେଳକେ ଆତ୍ମହରା ହେବା ପଥରୁ ନିରସ୍ତ କରିବାର ପ୍ରୟାସ ମଧ୍ୟ ଆମେମାନେ ମଥୁରବାବୁଙ୍କ ଭିତରେ ଦେଖିବାକୁ ପାଇଥାଉ । ଦୃଷ୍ଟାନ୍ତସ୍ୱରୂପ ଏଠାରେ ଠାକୁରେ ଓ ମଥୁରବାବୁଙ୍କର ଜାଗତିକ ବିଷୟରେ ଈଶ୍ୱରଙ୍କୁ ମଧ୍ୟ ସ୍ୱକୃତ ନିୟମ (Law)ରେ ବାଧ୍ୟହୋଇ ଚଳିବାକୁ ହୁଏ କି ନାହିଁ—ଏବିଷୟର କଥୋପକଥନର ଉଲ୍ଲେଖ କରାଯାଇପାରେ । ଠାକୁର କହୁଥିଲେ, "ମଥୁର କହିଥିଲେ, 'ଈଶ୍ୱରଙ୍କୁ ମଧ୍ୟ ଆଇନ ମାନି ଚଳିବାକୁ ହୁଏ । ସେ ଥରେ ଯେଉଁ ନିୟମ କରିଛନ୍ତି, ତାହାକୁ ରଦ୍ଦ କରିବାର କ୍ଷମତା ତାଙ୍କର ମଧ୍ୟ ନାହିଁ !' ମୁଁ କହିଲି, 'ଏହା ତୁମର କିପରି କଥା ? ଯାହାର ଆଇନ, ଇଚ୍ଛାକଲେ ତତ୍‌କ୍ଷଣାତ୍ ତାକୁ ସେ ରଦ୍ଦ କରିପାରେ ଏବଂ ତାହା ବଦଳରେ ଅନ୍ୟ ଏକ ଆଇନ ମଧ୍ୟ କରିପାରେ ।' ମାତ୍ର ଏକଥା ସେକୌଣସି ପ୍ରକାରେ ମାନିଲେ ନାହିଁ । କହିଲେ, 'ନାଲିଫୁଲ ଗଛରେ ନାଲିଫୁଲ ହିଁ ହୋଇଥାଏ, ଧଳାଫୁଲ କେବେ ହୁଏ ନାହିଁ; କାରଣ, ସେ ହିଁ ନିୟମ କରିଛନ୍ତି । କାହିଁ ନାଲିଫୁଲ ଗଛରେ ସେ ଧଳାଫୁଲ ଏବେ କରି ଦେଖାନ୍ତୁ ତ' ?' ମୁଁ କହିଲି, 'ସେ ଇଚ୍ଛା କଲେ ସବୁ କରିପାରିବେ, ଏହା ମଧ୍ୟ କରିପାରିବେ ।' ସେ କିନ୍ତୁ ମୋ କଥା ଗ୍ରହଣ କଲେ ନାହିଁ । ତା'ପରଦିନ

ଝାଉଁଗଛ ଆଡ଼କୁ ଶୌଚ କରିବାକୁ ଯାଇଛି; ଦେଖିଲି ଯେ ଗୋଟିଏ ନାଲିମନ୍ଦାର ଗଛରେ, ଗୋଟିଏ ଡାଳରେ ଦୁଇଟି ଫୁଲ —ଗୋଟିଏ ନାଲି ଏବଂ ଅନ୍ୟଟି ପୂରା ଧଳା, ଧଳାଫୁଲରେ ଟିକେ ହେଲେ ନାଲି ରଙ୍ଗର ଦାଗ ନାହିଁ । ଏହା ଦେଖି ଡାଳ ଖଣ୍ଡିକ ଭାଙ୍ଗି ଆଣି ମଥୁରଙ୍କ ସାମନାରେ ପକାଇ ଦେଇ କହିଲି, 'ହେଇ ଦେଖ ।' ସେତେବେଳେ ମଥୁର କହିଲେ, 'ହଁ ବାବା, ମୁଁ ହାର ମାନିଲି !' ଏଥିରୁ ସ୍ପଷ୍ଟ ହୁଏ ଯେ, ଶାରୀରିକ ବିକାର ଯୋଗୁଁ ଠାକୁରଙ୍କର ମାନସିକ ବିକାର ଉପସ୍ଥିତ ହୋଇ ସେହି ପ୍ରକାର ଭକ୍ତିର ଆତିଶଯ୍ୟରୂପେ ପ୍ରକାଶ ପାଉଅଛି, କେବେକେବେ ଏହି ବିଶ୍ୱାସରେ ମଥୁରବାବୁ ତାଙ୍କ ସହିତ ନାନା ବାଦାନୁବାଦ କରି ତାଙ୍କର ସେହି ଭାବର ପରିବର୍ତ୍ତନ ପାଇଁ ଚେଷ୍ଟା କରୁଥିଲେ ତାହା ଆମେ ବେଶ୍ ବୁଝିପାରୁଛୁ ।

### ଠାକୁରଙ୍କର ଅବସ୍ଥା ଦେଖି ବାଧ୍ୟ ହୋଇ ପ୍ରତିଦିନ ମଥୁରବାବୁଙ୍କ ଚିତ୍ତ ଆଲୋଡ଼ିତ ହେବା :

ଏହିପରି କେତେକାଂଶରେ କୌତୁହଳରେ ଓ କେତେକାଂଶରେ ଠାକୁରଙ୍କର ଭାବବିହ୍ୱଳ ଭାବ ଶାରୀରିକ ରୋଗ ବୋଲି ମନେକରି ଦୟାରେ ଏବଂ ବେଳେବେଳେ ଠାକୁରଙ୍କର ଏପରି ଅବସ୍ଥା ଈଶ୍ୱରଙ୍କଠାରେ ଭକ୍ତିର ଫଳ ବୋଲି ଭାବି ବିସ୍ମିତ ଓ ଭକ୍ତିପୂର୍ଣ୍ଣ ହୋଇ ବିଷୟୀ ମଥୁରବାବୁ ତାଙ୍କ ସହିତ କ୍ରମେ କ୍ରମେ ଦିନ ପରେ ଦିନେ ବିତାଇଲେ ଏବଂ ତାଙ୍କ ବିଷୟରେ ଅନେକ ଚିନ୍ତା ଓ ବିଚାର-ବିମର୍ଶ ମଧ୍ୟ ଯେ କରୁଥିଲେ, ଏହା ସ୍ପଷ୍ଟ ବୁଝାଯାଏ । ତେଣୁ ସେ ସ୍ଥିର ନିଶ୍ଚିନ୍ତ ରହିବେ କିପରି ? ଠାକୁର ଯେ ନବାନୁରାଗର ପ୍ରବଳ ପ୍ରବାହରେ ପ୍ରତିଦିନ ଗୋଟିଏ ପରେ ଗୋଟିଏ ନୂତନ ଘଟଣା କରୁଛନ୍ତି ! ଦିନେ ପୂଜା ଆସନରେ ବସି ନିଜ ମଧ୍ୟରେ ଶ୍ରୀଶ୍ରୀଜଗଦମ୍ବାଙ୍କର ଦର୍ଶନଲାଭ କରି ପୂଜାର ସାମଗ୍ରୀସକଳ ନିଜେ ବ୍ୟବହାର କରିଛନ୍ତି ତ, ଆଉ ଦିନେ ଦୁଇ ତିନି ଘଣ୍ଟା କାଳ ବସି ଶ୍ରୀଜଗନ୍ମାତାଙ୍କର ଆରତି କରି ମନ୍ଦିରର କର୍ମଚାରୀମାନଙ୍କୁ ବ୍ୟତିବ୍ୟସ୍ତ କରି ପକାଉଛନ୍ତି, ତା ପରଦିନ ଭଗବାନଲାଭ ହେଲା ନାହିଁ ବୋଲି ଭୂମିରେ ଗଡ଼ି ମୁହଁକୁ ଘଷି ଏପରି ବ୍ୟାକୁଳ କ୍ରନ୍ଦନ କରୁଛନ୍ତି ଯେ, ଚାରିଆଡୁ ଲୋକ ଦଉଡ଼ି ଆସି ଜମା ହେଉଛନ୍ତି ! ଏପରି ଗୋଟିଏ ଗୋଟିଏ ଦିନରେ ଗୋଟିଏ ଗୋଟିଏ ଘଟଣାର କେତେ କଥା ଆମେ ଠାକୁରଙ୍କ ନିକଟରୁ ଶୁଣିଅଛୁ !

### ଶିବମହିମ୍ନଃ ସ୍ତୋତ୍ର ପଢୁ ପଢୁ ଠାକୁରଙ୍କର ସମାଧି ଓ ମଥୁରବାବୁ :

ଦିନେ ଶିବମନ୍ଦିରରେ ପ୍ରବେଶ କରି ଠାକୁର ଶିବଙ୍କର 'ମହିମ୍ନଃସ୍ତୋତ୍ର' ପାଠ କରିବାକୁ ଲାଗିଲେ । ସ୍ତବପାଠ କରୁ କରୁ ଯେତେବେଳେ ନିମ୍ନଲିଖିତ ଶ୍ଳୋକଟି ଶେଷରେ ଆବୃତ୍ତି କରିବାକୁ ଲାଗିଲେ, ସେତେବେଳେ ଅପୂର୍ବ ଭାବରେ ଆତ୍ମହରା ହୋଇ ପଡ଼ିଲେ—

ଅସିତଗିରିସମଂ ସ୍ୟାତ୍ କଜ୍ଜଲଂ ସିନ୍ଧୁପାତ୍ରେ
ସୁରତରୁବରଶାଖା ଲେଖନୀ ପତ୍ରମୁର୍ବୀ ।।
ଲିଖତି ଯଦି ଗୃହୀତ୍ୱା ସାରଦା ସର୍ବକାଳଂ
ତଦପି ତବ ଗୁଣାନାମୀଶ ପାରଂ ନ ଯାତି ।। ୩୨

— ହେ ମହାଦେବ, ସମୁଦ୍ରର ଗଭୀରତା ସମ ପାତ୍ରରେ, ବିଶାଳ ହିମାଳୟ ପର୍ବତ ଶ୍ରେଣୀ ପରି ପୁଞ୍ଜ ପୁଞ୍ଜ କାଳି ରଖି, କୌଣସି ପ୍ରକାର ଅସମ୍ଭବ ପଦାର୍ଥର କାମନା କଲେ ମଧ୍ୟ ଯାହାର ତତ୍କ୍ଷଣାତ୍ ତାହା ସୃଷ୍ଟି ବା ରଚନା କରି ଯାଚକର ମନୋରଥ ପୂର୍ଣ୍ଣ କରିବାର କ୍ଷମତା ଅଛି — ସେହି କଳ୍ପତରୁ-ଶାଖା ଲେଖନୀ ହୋଇ ପୃଥିବୀ-ପୃଷ୍ଠ ଆକାରର ବିସ୍ତୃତ କାଗଜନେଇ, ସ୍ୱୟଂ ବାଗ୍‌ଦେବୀ ସରସ୍ୱତୀ ମଧ୍ୟ ଯଦି ତୁମର ଅନନ୍ତ ମହିମାର କଥା ଲେଖି ଶେଷ କରିବାକୁ ପ୍ରୟାସ କରନ୍ତି, ତା'ହେଲେ ମଧ୍ୟ କଦାପି ସେ ତାହା କରିପାରିବେ ନାହିଁ ।

ଶ୍ଳୋକଟି ପଢୁ ପଢୁ ଠାକୁର ଶିବଙ୍କର ମହିମା ହୃଦୟରେ ଜ୍ୱଳନ୍ତ ଅନୁଭବ କରି ସମ୍ପୂର୍ଣ୍ଣ ବିହ୍ୱଳ ହୋଇ ସ୍ତବ, ସ୍ତବର ସଂସ୍କୃତ, ପରକୁ ପର ଆବୃତ୍ତି କରିବା ପ୍ରଭୃତି ସମସ୍ତ କଥା ଭୁଲିଯାଇ ଚିତ୍କାର କରି କେବଳ ବାରମ୍ବାର କହିବାକୁ ଲାଗିଲେ, ''ହେ ମହାଦେବ ! ତୁମ ଗୁଣ କଥା ମୁଁ କିପରି କହିବି !'' ଏବଂ ତାଙ୍କ ଆଖିରୁ ଅବିରାମ ଅଶ୍ରୁଧାରା ପ୍ରବାହିତ ହୋଇ ତାଙ୍କର ବକ୍ଷସ୍ଥଳ, ବସ୍ତ୍ର ଓ ବସିଥିବା ଭୂମି ପ୍ଲାବିତ ହେଲା ! ସେହି କ୍ରନ୍ଦନର ରୋଳ, ପାଗଳ ପରି ଗଦ୍‌ଗଦ୍ ବାକ୍ୟ ଓ ଅଦୃଷ୍ଟପୂର୍ବ ଆଚରଣରେ ମନ୍ଦିରର ଭୃତ୍ୟ ଓ କର୍ମଚାରୀମାନେ ଚାରିଆଡୁ ଦଉଡ଼ି ଆସି ପହଞ୍ଚିଲେ; ଏବଂ ଠାକୁରଙ୍କୁ ଏପରି ଭାବାପନ୍ନ ଦେଖି ଆଶ୍ଚର୍ଯ୍ୟ ହୋଇ ଶେଷରେ କ'ଣ ହେବ ଦେଖିବାକୁ ଲାଗିଲେ, ଏବଂ କେହି କେହି 'ଏହା ଛୋଟ ଭଟ୍ଟାଚାର୍ଯ୍ୟଙ୍କ ପାଗଳାମି' ବୋଲି କହିବାକୁ ଲାଗିଲେ । ଜଣେ କହିଲେ ଆଜି କିଛି ଅତିରିକ୍ତ ଦେଖୁଛି; ପୁଣି କିଏ ବା କହିଲେ 'ଶେଷରେ ଶିବଙ୍କ ଉପରେ ଚଢ଼ିଯିବେ ନାହିଁ ତ ? ହାତଧରି ଟାଣି ଆଣିବା ଭଲ' ଇତ୍ୟାଦି ନାନା ପ୍ରକାର କଥା କୁହା କୁହି ହେଲେ ଏବଂ ଏହାଛଡ଼ା କେତେ ଯେ ରଙ୍ଗରସର କଥା ମଧ୍ୟ ହେବାକୁ ଲାଗିଲା, ସେକଥା କହିହେବ ନାହିଁ !

କିନ୍ତୁ ଠାକୁରଙ୍କର ବାହ୍ୟ ଜ୍ଞାନ ଆଦୌ ନାହିଁ । ଶିବମହିମା ଅନୁଭବରେ ତନ୍ମୟ ମନ ସେତେବେଳେ ବାହ୍ୟ ଜଗତ ଛାଡ଼ି ବହୁ ଉଚ୍ଚକୁ ଉଠିଯାଇଛି — ସେଠାରେ ଏଜଗତର ମଳିନ ଭାବରାଶି ଓ କଥାବାର୍ତ୍ତା ପହଞ୍ଚୁ ନାହିଁ । ତେଣୁ କିଏ କିପରି ଭାବୁଛି, କହୁଛି ବା ଥଟ୍ଟା କରୁଛି, ସେସମସ୍ତ ତାଙ୍କ କାନକୁ କିପରି ଯିବ ?

ମଥୁରବାବୁ ସେଦିନ ଥିଲେ; ସେ ମଧ୍ୟ ଏହି ଗୋଳମାଳ ଛୋଟ ଭଟ୍ଟାଚାର୍ଯ୍ୟ ମହାଶୟଙ୍କୁ ନେଇ ହେଉଛି ଶୁଣି ସେଠାରେ ଉପସ୍ଥିତ ହେଲେ । କର୍ମଚାରୀମାନେ ସସମ୍ଭ୍ରମରେ ପଥ ଛାଡ଼ି ଦେଲେ । ମଥୁରବାବୁ ଆସି ଠାକୁରଙ୍କ ଭାବବିହ୍ୱଳତା

ଦେଖି ମୁଗ୍ଧ ହୋଇଗଲେ ଏବଂ ଏହି ସମୟରେ କୌଣସି କର୍ମଚାରୀ ଠାକୁରଙ୍କୁ ଶିବଙ୍କ ନିକଟରୁ ବଳପୂର୍ବକ ନେଇ ଆସିବା କଥା କହିବାରୁ ବିଶେଷ ବିରକ୍ତ ହୋଇ କହିଲେ, ''ଯାହାର ଦୁଇଟା ମୁଣ୍ଡ ଅଛି, ସେ ଯେପରି ଏବେ ଭଟ୍ଟାଚାର୍ଯ୍ୟ ମହାଶୟଙ୍କୁ ସ୍ପର୍ଶ କରିବାକୁ ଯିବ !''[୧] କର୍ମଚାରୀମାନେ ଏପରି ପରିସ୍ଥିତିରେ ଭୀତ ହୋଇ ଆଉ କିଛି କହିବାକୁ ବା କରିବାକୁ ସାହସୀ ହେଲେ ନାହିଁ । ଅନେକ ସମୟ ପରେ ଠାକୁରଙ୍କର ବାହ୍ୟ ଜଗତର ହୋସ୍ ଆସିଲା ଏବଂ ମନ୍ଦିରର କର୍ମଚାରୀଙ୍କ ସହିତ ମଥୁରବାବୁଙ୍କୁ ମଧ୍ୟ ସେଠାରେ ଦଣ୍ଡାୟମାନ ଦେଖି ଛୋଟ ପିଲାପରି ଭୟଭୀତ ହୋଇ ତାଙ୍କୁ ପଚାରିଲେ, ''ମୁଁ ଅସଂଯତ ହୋଇ କିଛି କରିପକାଇଛି କି ?'' ମଥୁରବାବୁ ତାଙ୍କୁ ପ୍ରଣାମ କରି କହିଲେ, ''ନା ବାବା, ତୁମେ ସ୍ତବ ପାଠ କରୁଥିଲ; କାଳେ କେହି ନ ବୁଝି ତୁମକୁ ବିରକ୍ତ କରିବେ ସେଥିପାଇଁ ମୁଁ ଆସି ଏଠାରେ ଠିଆ ହୋଇଛି !''

## ଠାକୁରଙ୍କ ନିକଟରେ ଅନ୍ୟମାନଙ୍କର ସହଜରେ ଆଧ୍ୟାତ୍ମିକ ଉନ୍ନତି ଲାଭ ବିଷୟରେ ଦୃଷ୍ଟାନ୍ତ :

ଠାକୁରେ ଆମକୁ ଦିନେ ତାଙ୍କର ସାଧନକାଳର ଅବସ୍ଥା ସ୍ମରଣ କରି କହିଥିଲେ, ''ସେତେବେଳେ (ସାଧନସମୟରେ) ଯେଉଁମାନେ ଏଠାକୁ ଆସୁଥିଲେ, ଏଠାରେ ରହି ସେମାନଙ୍କର ଅତିଶୀଘ୍ର ଈଶ୍ୱର-ଉଦ୍ଦୀପନା ହେଉଥିଲା । ବରାହନଗରରୁ ଦୁଇଜଣ ଆସୁଥିଲେ — ସେମାନେ ଜାତିରେ କେଉଟ କି ତେଲି ହେବେ ବୋଧେ; ବେଶ୍ ଭଲ ଲୋକ; ଖୁବ୍ ଭକ୍ତି-ବିଶ୍ୱାସ କରୁଥିଲେ ଓ ପ୍ରାୟ ଆସୁଥିଲେ । ଦିନେ ପଞ୍ଚବଟୀରେ ତାଙ୍କ ସହିତ ବସିଛି — ସେତେବେଳେ ସେମାନଙ୍କ ମଧ୍ୟରୁ ଜଣକର ଗୋଟିଏ ଅବସ୍ଥା ହେଲା ! ଦେଖିଲି ଛାତିଟା ଲାଲ୍ ହୋଇଗଲା, ଚକ୍ଷୁ ମଧ୍ୟ ଲାଲ ହୋଇଗଲା, ଅଶ୍ରୁଧାରା ବୋହିଲା, କଥା କହିପାରୁ ନ ଥିଲା, ଠିଆ ହୋଇ ପାରୁ ନ ଥିଲା । ଦୁଇ ବୋତଲ ମଦ ଖାଇଥିଲେ ଯେପରି ହୋଇଥାଏ, ସେପରି ଅବସ୍ଥା ହୋଇଥିଲା ! କୌଣସି ପ୍ରକାରେ ସେ ଭାବ ଭାଙ୍ଗିଲା ନାହିଁ ! ସେତେବେଳେ ଡରିଯାଇ ମା'କୁ କହିଲି, 'ମା,' ଏହାକୁ କ'ଣ କଲୁ ? ଲୋକମାନେ କହିବେ ମୁଁ କିଛି କରିଦେଇଛି ! ତାଙ୍କର ବାପା ମା' ଘରେ ଅଛନ୍ତି; ତେଣୁ ତାକୁ ଘରକୁ ଫେରିବାକୁ ହେବ ।' ଲୋକଟିର ଛାତିରେ ହାତ ବୁଲାଉ ବୁଲାଉ ମା'କୁ ଏପରି କହିବାକୁ ଲାଗିଲି । ତେବେ ଯାଇ କିଛି ସମୟ ପରେ ଲୋକଟି ଥଣ୍ଡା ହୋଇ ଘରକୁ ଗଲା ।''

---

୧. କାରଣ ଠାକୁରଙ୍କୁ ସ୍ପର୍ଶ କଲେ ମଥୁରବାବୁ ତାର ମୁଣ୍ଡକାଟ କରିବେ — ଏହା ହିଁ ଉଦ୍ଦେଶ୍ୟ ।

## ମଥୁରବାବୁଙ୍କର ଠାକୁରଙ୍କୁ ଏକାଧାରରେ ଶିବ–ଶକ୍ତି ରୂପରେ ଦର୍ଶନ :

ଠାକୁରଙ୍କର ଜ୍ୱଳନ୍ତ ଜୀବନ ସଂସ୍ପର୍ଶରେ ମଥୁରବାବୁଙ୍କର ମଧ୍ୟ ଥରେ ଗୋଟିଏ ଅଦ୍ଭୁତ ଦର୍ଶନ ହୋଇଥିଲା, ଯାହାଫଳରେ ତାଙ୍କର ବିଶ୍ୱାସ–ଭକ୍ତି ସହସ୍ର ଗୁଣରେ ବର୍ଦ୍ଧିତ ହେଲା, ଏହି କଥା ଆମେ ଠାକୁରଙ୍କର ଶ୍ରୀମୁଖରୁ ଶୁଣିଅଛୁ । ସବୁ ସମୟରେ ନିଜ ଭାବରେ ବିଭୋର ଠାକୁରେ ଦିନେ ତାଙ୍କ ଘରର ଉତ୍ତର–ପୂର୍ବ କୋଣରେ ଯେଉଁ ଲମ୍ବା ବାରଣ୍ଡାଟି ପୂର୍ବ–ପଶ୍ଚିମରେ ବିସ୍ତୃତ ଅଛି, ସେଠାରେ ଆପଣା ମନରେ ପଦଚାରଣ କରୁଥିଲେ । ଠାକୁରବାଡ଼ି ଓ ପଞ୍ଚବଟିର ମଧ୍ୟ ସ୍ଥଳରେ ଯେଉଁ ଗୋଟିଏ ପୃଥକ୍ ଘର ଅଛି, ଯାହାକୁ ଏବେ ମଧ୍ୟ 'ବାବୁମାନଙ୍କର କୋଠି' ବୋଲି ମନ୍ଦିରର କର୍ମଚାରୀମାନେ କହିଥାଆନ୍ତି, ସେହି କୋଠିର ଏକ ପ୍ରକୋଷ୍ଠରେ ମଥୁରବାବୁ ଏକା ବସିଥିଲେ । ମଥୁରବାବୁ ଯେଉଁଠି ବସିଥିଲେ, ସେଠାରୁ ଠାକୁର ଯେଉଁଠି ବୁଲୁଥିଲେ ସେହି ସ୍ଥାନଟିର ବେଶି ବ୍ୟବଧାନ ନ ଥିବାରୁ ବେଶ୍ ଭଲଭାବରେ ଦେଖାଯାଉଥିଲା । ଅତଏବ ମଥୁରବାବୁ ବେଳେବେଳେ ଠାକୁରଙ୍କର ସେହିପରି ଗମ୍ଭୀର ଭାବରେ ବିଚରଣ ଲକ୍ଷ୍ୟ କରି ତାଙ୍କ ବିଷୟରେ ଚିନ୍ତା କରୁଥିଲେ, ପୁଣି କେବେକେବେ ବିଷୟ ସମ୍ବନ୍ଧୀୟ ନାନାକଥା ମନେମନେ ଭାବି ଭବିଷ୍ୟତ କାର୍ଯ୍ୟପ୍ରଣାଳୀ ସ୍ଥିର କରୁଥିଲେ । ମଥୁରବାବୁ ଯେ ବୈଠକଖାନାରେ ବସି ଠାକୁରଙ୍କୁ ମଝିରେ ମଝିରେ ଲକ୍ଷ୍ୟ କରୁଥିଲେ, ଠାକୁରଙ୍କୁ ସେବିଷୟରେ ଜଣା ନ ଥିଲା । ଜଣାଥିଲେ ବି ଆଉ କ'ଣ ହୋଇଥାନ୍ତା ?—ଦୁଇ ଜଣଙ୍କର ସାମାଜିକ, ସାଂସାରିକ ଓ ଅନ୍ୟ ସବୁପ୍ରକାର ଅବସ୍ଥାର ବ୍ୟବଧାନ ଏତେ ବେଶୀ ଯେ, ଜଣାଥିଲେ ମଧ୍ୟ କେହି କାହାପାଇଁ ବ୍ୟତିବ୍ୟସ୍ତ ହେବାର କାରଣ ନ ଥିଲା । ଏସ୍ଥଳରେ ବରଂ ଠାକୁର ହିଁ ଈଶ୍ୱରୀୟ ଭାବରେ ତନ୍ମୟ ତଥା ଅନ୍ୟମନା ନ ରହିଥିଲେ, ମଥୁରବାବୁଙ୍କ ଅବସ୍ଥିତିର ସଙ୍କେତ ପାଇ ସଙ୍କୁଚିତ ହୋଇ ସେସ୍ଥାନରୁ ଚାଲି ଯାଇଥାଆନ୍ତେ । କାରଣ ଧନୀ, ମାନୀ, ବିଦ୍ୟାବୁଦ୍ଧିସମ୍ପନ୍ନ ବାବୁ, ଯିଏ ମନ୍ଦିର ଓ ରାଣୀଙ୍କର ସମସ୍ତ ବିଷୟର ମାଲିକ କହିଲେ ଚଳେ ଏବଂ ତାଙ୍କର ସୁଦୃଷ୍ଟିରେ ପଡ଼ିଥିବାରୁ ଠାକୁର ଏପର୍ଯ୍ୟନ୍ତ ଏହି ସ୍ଥାନରୁ ବହିଷ୍କୃତ ହୋଇ ନାହାନ୍ତି, ତାଙ୍କର ସାମନାରେ ସାମାନ୍ୟ ନଗଣ୍ୟ ଦରିଦ୍ର ପୂଜକବ୍ରାହ୍ମଣ, ଯାହାକୁ ଲୋକେ ସେତେବେଳେ ନିର୍ବୋଧ, ଉନ୍ମାଦ, ଅନାଚାରୀ ବୋଲି ଜାଣିଥିଲେ ଓ ବିଦ୍ରୂପ କରିବାକୁ ପଛାଉ ନ ଥିଲେ, କିପରି ସେ ଭୀତ ତଥା ସଙ୍କୁଚିତ ନ ହୋଇ ରହିଥାନ୍ତେ ? କିନ୍ତୁ ଏଘଟଣାଟି ଅଭାବନୀୟ, ଅଚିନ୍ତନୀୟ ହୋଇ ଠିଆ ହେଲା—ମଥୁରବାବୁ ହିଁ ହଠାତ୍ ଅସ୍ତବ୍ୟସ୍ତ ହୋଇ ଦଉଡ଼ିଆସି ଠାକୁରଙ୍କୁ ଦଣ୍ଡବତ କରି ତାଙ୍କର ପଦଦ୍ୱୟକୁ ଜାବୁଡ଼ିଧରି କ୍ରନ୍ଦନ କରିବାକୁ ଲାଗିଲେ !

ଠାକୁର କହିଥିଲେ, ''ମୁଁ କହିଲି, ଆରେ ଏକ'ଣ କରୁଛ ? ତୁମେ ବାବୁ, ରାଣୀଙ୍କର ଜ୍ୱାଇଁ, ଲୋକେ ତୁମକୁ ଏଭାବରେ ଦେଖିଲେ କ'ଣ କହିବେ ? ସ୍ଥିର ହୁଅ, ଉଠ । ସେ କ'ଣ ମୋକଥା ଶୁଣୁଛନ୍ତି ! କିଛି କ୍ଷଣ ପରେ ଶାନ୍ତ ହୋଇ କହିଲେ—ଅଦ୍ଭୁତ ଦର୍ଶନ ହୋଇଥିଲା ! କହିଲେ—'ବାବା, ତୁମେ ଚାଲବୁଲ କରୁଥିଲ, ଏବଂ ମୁଁ ସ୍ପଷ୍ଟ ଦେଖୁଥିଲି ଯେ, ଯେତେବେଳେ ଏପଟେ ଆସୁଥିଲ, ତୁମେ ନୁହଁ, ଆମର ଏହି ମନ୍ଦିରର ମା ! ପୁଣି ଯେମିତି ପଛକୁ ଫେରି ସେପଟକୁ ଯାଉଥିଲ, ଦେଖେ ତ ଯେପରି ସାକ୍ଷାତ୍ ମହାଦେବ ! ପ୍ରଥମେ ଭାବିଲି ଏହା ଚକ୍ଷୁର ଭ୍ରମରୁ ହେଉଛି; ତେଣୁ ଆଖି ମଳି ମଳି ପୁଣି ଦେଖିଲି—ସେହି ସମାନ ରୂପ ! ଏହିପରି ଯେତେ ଥର କଲି ତାହା ହିଁ ଦେଖିଲି ।' ମଥୁରବାବୁ ଏହା କହୁଥିଲେ ଆଉ କାନ୍ଦୁଥିଲେ ! ମୁଁ କହିଲି, 'ମୁଁ ତ କିଛି ଜାଣେ ନାହିଁ, ବାବୁ'—କିନ୍ତୁ ସେ କ'ଣ ଶୁଣୁଛି ! ଭୟ ହେଲା, କାଳେ ଏକଥା କିଏ ଜାଣିପାରି ତାଙ୍କ ସ୍ତ୍ରୀଙ୍କୁ, ରାଣୀ ରାସମଣିଙ୍କୁ କହିଦେବେ । ସେମାନେ ବା କ'ଣ ଭାବିବେ—ହୁଏତ କହିବେ କିଛି ଗୁଣି ଟୁଣି କରିଛି ! ଅନେକ ପ୍ରକାର ବୁଝାଇ ସୁଝାଇ କହିବାରୁ ସେ ଥଣ୍ଡା ହେଲେ ! ମଥୁର କ'ଣ ଏମିତିରେ ଏତେଟା କରୁଥିଲା—ଭଲ ପାଉଥିଲା ? ମା' ତାଙ୍କୁ ଅନେକ ସମୟରେ ଅନେକ ଦେଖାଇ, ଶୁଣାଇ ଦେଇଥିଲେ । ମଥୁରଙ୍କର କୋଷ୍ଠିରେ ଲେଖାଥିଲା, ତାଙ୍କର ଇଷ୍ଟଙ୍କର ତାଙ୍କ ଉପରେ ଏତେ କୃପାଦୃଷ୍ଟି ରହିବ ଯେ, ଶରୀର ଧାରଣ କରି ତାଙ୍କ ପଛେ ପଛେ ରହିବେ ଓ ରକ୍ଷା କରିବେ ।''

### ଏହି ଦର୍ଶନର ଫଳ :

ଏହାପରଠାରୁ ମଥୁରଙ୍କର ବିଶ୍ୱାସ ବହୁଗୁଣରେ ବର୍ଦ୍ଧିତ ତଥା ଦୃଢ଼ ହେଲା । କାରଣ ଏଥିରୁ ହିଁ ତାଙ୍କୁ ପ୍ରଥମ ଆଭାସ ମିଳିଲା ଯେ, ପ୍ରଥମ ଦର୍ଶନରେ ହିଁ ଯାହାଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ, ଅନ୍ୟମାନେ କିଛି ନ ବୁଝି ନିନ୍ଦାକଲେ ମଧ୍ୟ ଯାହାଙ୍କ ମନୋଭାବ ଓ ଆଚରଣ ସେ ଅନେକ ସମୟରେ, ଧରି ପାରିଛନ୍ତି ଓ ବୁଝିପାରିଛନ୍ତି, ସେହି ଠାକୁର ବାସ୍ତବିରେ ସାମାନ୍ୟ ନୁହଁନ୍ତି; ଜଗଦମ୍ବା ତାଙ୍କ ପ୍ରତି କୃପା କରି ଠାକୁରଙ୍କ ଶରୀର ମଧ୍ୟରେ ସାକ୍ଷାତ୍ ବର୍ତ୍ତମାନ ରହିଛନ୍ତି । ଏହି ସମୟରୁ ତାଙ୍କର ମନେହେଲା, ମନ୍ଦିରର ପାଷାଣମୟୀ ହିଁ ଶରୀର ଧାରଣ କରି ତାଙ୍କର ଜନ୍ମପତ୍ରିକାର ବାଣୀ ସଦୃଶ ତାଙ୍କ ସାଥିରେ ରହୁଛନ୍ତି ! —ଏହା ପରଠାରୁ ମଥୁରବାବୁଙ୍କର ଠାକୁରଙ୍କ ସହିତ ଘନିଷ୍ଠତା ବିଶେଷ ରୂପରେ ବୃଦ୍ଧି ପାଇଲା ।

### ମଥୁରବାବୁଙ୍କ ମହାଭାଗ୍ୟ ସମ୍ବନ୍ଧରେ ଶାସ୍ତ୍ରପ୍ରମାଣ :

ମଥୁରବାବୁଙ୍କର ବାସ୍ତବିକ ମହାଭାଗ୍ୟ ଉଦୟ ହୋଇଥିଲା । ଶାସ୍ତ୍ର କହେ, ଯେତେଦିନ ଶରୀର ରହିବ ସେତେଦିନ ଭଲ-ମନ୍ଦ ଦୁଇ ପ୍ରକାର କର୍ମ ମନୁଷ୍ୟଙ୍କୁ କରିବାକୁ ହେବ—ସାଧାରଣ ମନୁଷ୍ୟଙ୍କ କଥା ଛାଡ଼ ! ମୁକ୍ତ ପୁରୁଷମାନଙ୍କର

ମଧ୍ୟ ଏପରି କରିବାକୁ ହୁଏ ! ସାଧାରଣ ମନୁଷ୍ୟ ନିଜେ ସ୍ୱକୃତ ସୁକୃତ-ଦୁଷ୍କୃତ ଫଳ ଭୋଗକରେ । କିନ୍ତୁ ମୁକ୍ତପୁରୁଷମାନଙ୍କର ଶରୀରକୃତ ପାପପୁଣ୍ୟ ଫଳ କିଏ ଭୋଗ କରେ ? ସେମାନେ ତ ନିଜେ ଆଉ ତାହା କରନ୍ତି ନାହିଁ ? କାରଣ ସୁଖ-ଦୁଃଖାଦି ଭୋଗ କରିବା ପାଇଁ ଯେଉଁ ଅଭିମାନ-ଅହଙ୍କାର ଦରକାର, ସେସବୁ ତ ସେମାନଙ୍କର ନ ଥାଏ ତେବେ ତାହା କିଏ ଭୋଗ କରିବ ? ପୁଣି କର୍ମଫଳ ତ ଅବଶ୍ୟମ୍ଭାବୀ ଏବଂ ମୁକ୍ତପୁରୁଷମାନଙ୍କର ଦେହ ଯେତେଦିନ ଜୀର୍ଣ୍ଣପତ୍ରସମ ପତିତ ନ ହୁଏ, ସେତେଦିନ ତ ଏହାଦ୍ୱାରା ଭଲ-ମନ୍ଦ କେତେଗୁଡ଼ିଏ କାର୍ଯ୍ୟ ହେବ ହିଁ ହେବ । ଶାସ୍ତ୍ର ଏବିଷୟରେ କହେ — ଯେଉଁ ସମସ୍ତ ବଦ୍ଧ ପୁରୁଷମାନେ ସେମାନଙ୍କର ସେବା କରନ୍ତି, ଭଲ ପାଆନ୍ତି, ସେମାନେ ହିଁ ମୁକ୍ତାତ୍ମାମାନଙ୍କର କୃତ ଶୁଭକର୍ମର ଏବଂ ଯେଉଁମାନେ ତାଙ୍କଠାରେ ଦ୍ୱେଷ କରିଥାଆନ୍ତି, ସେମାନେ ତାଙ୍କର ଶରୀର କୃତ ଅଶୁଭ କର୍ମର ଫଳଭୋଗ କରିଥାଆନ୍ତି ।[୧] ସାଧାରଣ ମୁକ୍ତପୁରୁଷମାନଙ୍କର ସେବା ଦ୍ୱାରା ଯଦି ଏପରି ଫଳ ଲାଭ ହୁଏ, ତେବେ ଈଶ୍ୱରାବତାରମାନଙ୍କର ଭକ୍ତିପ୍ରୀତିପୂର୍ଣ୍ଣ ସେବାରେ ଯେ କେତେଦୂର ଫଳ ତାହା କିଏ କହିପାରିବ ?

### ଠାକୁରଙ୍କର ଦିନକୁ ଦିନ ଗୁରୁଭାବର ଅଧିକତର ବିକାଶ ଓ ମଥୁରବାବୁଙ୍କର ତାଙ୍କୁ ପରୀକ୍ଷା କରି ଅନୁଭବ :

ଦିନ ପରେ ଦିନ ଯେତେ ଗଡ଼ି ଚାଲିଲା, ମଥୁରବାବୁ ମଧ୍ୟ ସେତେ ହିଁ ଠାକୁରଙ୍କର ଗୁରୁଭାବର ପରିଚୟ ସ୍ପଷ୍ଟରୁ ସ୍ପଷ୍ଟତର ପାଇବାରୁ ଠାକୁରଙ୍କୁ ଅବିଚଳ ଭକ୍ତି କରିବାକୁ ଲାଗିଲେ । ଇତିମଧ୍ୟରେ ଅନେକ ଘଟଣା ଘଟିଗଲା; ଯଥା — ଭଗବତ୍ ବିରହରେ ଠାକୁରଙ୍କର ଗୁରୁତର ଗାତ୍ରଦାହ ଏବଂ ତାହାର ଚିକିତ୍ସା; ବ୍ରାହ୍ମଣୀ ଭୈରବୀଙ୍କର ଦକ୍ଷିଣେଶ୍ୱରକୁ ଶୁଭାଗମନ ଓ ବୈଷ୍ଣବ ଗ୍ରନ୍ଥରୁ ପ୍ରମାଣ ଉଦ୍ଧୃତ କରି ମଥୁରବାବୁଙ୍କ ଦ୍ୱାରା ଆହୁତ ପଣ୍ଡିତମଣ୍ଡଳୀଙ୍କ ସମ୍ମୁଖରେ ଠାକୁରଙ୍କର ଅବତାରତ୍ୱ-ପ୍ରତିପାଦନ, ମହାବୈଦାନ୍ତିକ ଜ୍ଞାନୀ ତୋତାପୁରୀଙ୍କ ଆଗମନ ଓ ଠାକୁରଙ୍କର ସନ୍ନ୍ୟାସ ଗ୍ରହଣ, ଠାକୁରଙ୍କର ବୃଦ୍ଧା ମାତାଙ୍କର ଦକ୍ଷିଣେଶ୍ୱର ଆସି ବାସ କରିବା ଇତ୍ୟାଦି ଇତ୍ୟାଦି । କିନ୍ତୁ ପୂର୍ବୋକ୍ତ ଅଦ୍ଭୁତ ଦର୍ଶନ ଦିନଠାରୁ ମଥୁରାନାଥ ଠାକୁରଙ୍କ ଜୀବନର ଦୈନନ୍ଦିନ ଘଟଣାବଳୀ ସହିତ ହିଁ ବିଶେଷ ଭାବରେ ସମ୍ବନ୍ଧିତ ହୋଇ ଠାକୁରଙ୍କ ଚିକିତ୍ସା ପାଇଁ କଲିକତାର ସୁପ୍ରସିଦ୍ଧ କବିରାଜ ଗଙ୍ଗାପ୍ରସାଦ ସେନ୍ ଓ ଡାକ୍ତର ମହେନ୍ଦ୍ରଲାଲ ସରକାରଙ୍କୁ ଦେଖାଇବାର ବନ୍ଦୋବସ୍ତ କଲେ । ଠାକୁରଙ୍କର ଶ୍ରୀଶ୍ରୀଜଗଦମ୍ବାଙ୍କୁ, ପଶ୍ଚିମାଞ୍ଚଳ

---

୧. ବେଦାନ୍ତସୂତ୍ର, ୩ୟ ଅଧ୍ୟାୟ, ୩ୟ ପାଦ, ୨୬ ସୂତ୍ରର ଶଙ୍କରଭାଷ୍ୟରେ ଉଲ୍ଲେଖ ଅଛି —''ତଥା ଶାଟ୍ୟାୟନିନଃ ପଠନ୍ତି — 'ତସ୍ୟ ପୁତ୍ରା ଦାୟମୁପୟନ୍ତି ସୁହୃଦଃ ସାଧୁକୃତ୍ୟାଂ ଦ୍ୱିଷନ୍ତଃ ପାପକୃତ୍ୟାମ୍' ଇତି । ତଥୈବ କୋଷୀତକିନଃ — 'ତତ୍‌ସୁକୃତଦୁଷ୍କୃତେ ବିଧୁନୁତେ ତସ୍ୟ ପ୍ରିୟାଃ ଜ୍ଞାତୟଃ ସୁକୃତମୁପୟନ୍ତ୍ୟପ୍ରିୟା ଦୁଷ୍କୃତମ୍' ଇତି ।''

ପରବର୍ତ୍ତୀ ଭାଷ୍ୟରେ ମଧ୍ୟ ଏହି ବିଷୟରେ ଉଲ୍ଲେଖ ଅଛି ।

ସ୍ତ୍ରୀଲୋକମାନେ ଯେପରି ପାଉଁଜି ପ୍ରଭୃତି ଅଳଙ୍କାର ବ୍ୟବହାର କରୁଥିଲେ ସେପରି ପିନ୍ଧାଇବାର ଇଚ୍ଛା ହେବାରୁ ମଥୁରବାବୁ ଯଥାଶୀଘ୍ର ସେସମସ୍ତ ଗହଣା ଗଢ଼ାଇ ଦେଲେ ଏବଂ ଠାକୁର ବୈଷ୍ଣବ ତନ୍ତ୍ରୋକ୍ତ ସଖୀଭାବର ସାଧନକାଳରେ ସ୍ତ୍ରୀଲୋକମାନଙ୍କ ସଦୃଶ ବେଶଭୂଷା ହେବାକୁ ଇଚ୍ଛା କରିବାରୁ ମଥୁରାନାଥ ତତ୍କ୍ଷଣାତ୍ ଏକ 'ସେଟ୍' (Set) ଡାଇମଣ୍ଡ କଟା ଅଳଙ୍କାର, ବନାରସୀ ଶାଢ଼ୀ, ଓଢ଼ଣା ପ୍ରଭୃତି ଆଣିଦେଲେ । ପାନିହାଟି ଉତ୍ସବ ଦେଖିବାର ଇଚ୍ଛା ଠାକୁରଙ୍କର ହେବାରୁ ତାହା ଜାଣିପାରି ମଥୁର ତତ୍କ୍ଷଣାତ୍ ଯିବାର ବନ୍ଦୋବସ୍ତ କରିଦେଇ ହିଁ ନିଶ୍ଚିନ୍ତ ନ ରହି, କାଳେ ଭିଡ଼ ଯୋଗୁଁ ତାଙ୍କର କଷ୍ଟ ହେବ, ଏହା ଭାବି ନିଜେ ଗୁପ୍ତଭାବରେ ଦରୁଆନ୍‌କୁ ସଙ୍ଗରେ ନେଇ ଠାକୁରଙ୍କ ଶରୀର ରକ୍ଷା କରିବାକୁ ଯାଇଥିଲେ । ଏହିପରି ପ୍ରତ୍ୟେକ କାର୍ଯ୍ୟରେ ମଥୁରବାବୁଙ୍କର ଅଦ୍ଭୁତ ସେବାର କଥା ଯେପରି ଆମେ ଏକାଧିକ ବାର ଶୁଣିଛୁ, ସେପରି ଅନ୍ୟ ଦିଗରେ ନଷ୍ଟ ସ୍ୱଭାବା ସ୍ତ୍ରୀଲୋକମାନଙ୍କୁ ଲଗାଇ ଠାକୁରଙ୍କ ମନରେ ଅସତ୍ ଭାବର ଉଦୟ ହୁଏ କି ନାହିଁ ପରୀକ୍ଷା କରିବା କଥା; ଠାକୁରବାଡ଼ିର ଦେବୋତ୍ତର ସମ୍ପତ୍ତି ଠାକୁରଙ୍କ ନାମରେ ଲେଖିଦେବା ପ୍ରସ୍ତାବରେ ଠାକୁରଙ୍କର ଭାବାବସ୍ଥାରେ "କ'ଣ ! ମୋତେ ବିଷୟୀ କରିବାକୁ ଚାହୁଁ ?" —କହି ମଥୁରବାବୁଙ୍କ ଉପରେ ଅତ୍ୟନ୍ତ କ୍ରୋଧିତ ହୋଇ ତାଙ୍କୁ ବାଡ଼େଇବାକୁ ଯିବା କଥା; ଜମିଦାରୀ-ସଂକ୍ରାନ୍ତ ଦଙ୍ଗା-ହାଙ୍ଗାମାରେ ଲିପ୍ତ ହୋଇ ନରହତ୍ୟା ଅପରାଧରେ କୋର୍ଟରେ ବିଶେଷ ଭାବରେ ଦଣ୍ଡିତ ହେବା ଭୟରେ ଏହି ବିପଦରୁ ଉଦ୍ଧାର ନିମିତ୍ତ ଠାକୁରଙ୍କ ନିକଟରେ ସମସ୍ତ ଦୋଷ ସ୍ୱୀକାର କରି ତାଙ୍କର ଶରଣାପନ୍ନ ହୋଇ ମଥୁରବାବୁଙ୍କର ଏହି ବିପଦରୁ ଉଦ୍ଧାର ପାଇବା କଥା, ପ୍ରଭୃତି ଅନେକ ବିଷୟ ମଧ୍ୟ ଠାକୁରଙ୍କ ଶ୍ରୀମୁଖରୁ ଶୁଣିଅଛୁ । ଏସମସ୍ତ ଘଟଣାବଳୀରୁ ଆମେ ମଥୁରବାବୁଙ୍କର ମନରେ ଯେ ଠାକୁରଙ୍କ ପ୍ରତି କ୍ରମେ କ୍ରମେ ଭକ୍ତି ଦୃଢ଼ ଓ ଅଚଳ ହୋଇ ଆସୁଥିଲା ତା'ର ପରିଚୟ ପାଇଥାଉ । ଏପରି ନ ହୋଇ ଅନ୍ୟପ୍ରକାରରେ ହୋଇଥାଆନ୍ତା କିପରି ? ଠାକୁରଙ୍କର ଅଦ୍ଭୁତ ଅଲୌକିକ ଦେବଦୁର୍ଲ୍ଲଭ ସ୍ୱଭାବ ଯେପରି ଗୋଟିଏ ପଟେ ମଥୁରଙ୍କର ସମସ୍ତ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଦିନକୁ ଦିନ ଅଧିକତର ସମୁଜ୍ଜ୍ୱଳ ଭାବ ଧାରଣ କଲା, ଅନ୍ୟଦିଗରେ ସେପରି ଠାକୁରଙ୍କର ଅପାର ଅହେତୁକ ଭଲ ପାଇବା ମଥୁରବାବୁଙ୍କର ହୃଦୟ ଅଧିକାର କରି ବସିଲା । ମଥୁରବାବୁ ଦେଖିଲେ, ଲକ୍ଷ ଲକ୍ଷ ଟଙ୍କାର ସମ୍ପତ୍ତି ଦେଇ ମଧ୍ୟ ଏହାଙ୍କ ତ୍ୟାଗୀ ଭାବ ହଟାଇ ପାରିଲି ନାହିଁ, ସୁନ୍ଦରୀ ନାରୀମାନଙ୍କ ଦ୍ୱାରା ଏହାଙ୍କର ମନରେ ବିକାର ଭାବ ପହଞ୍ଚାଇପାରିଲି ନାହିଁ, ପାର୍ଥିବ ମାନ-ଯଶରେ ମଧ୍ୟ—କାରଣ ମନୁଷ୍ୟକୁ ମନୁଷ୍ୟ ଭଗବାନ ବୋଲି ପୂଜା କରିବା ଅପେକ୍ଷା ଅଧିକ ମାନ ଆଉ କ'ଣ ଦେଇପାରେ—ଏହାଙ୍କୁ କିଛିମାତ୍ର ଟଳାଇବାକୁ ବା ଅହଂକୃତ କରାଇ ପାରିଲି ନାହିଁ, କୌଣସି ପାର୍ଥିବ

ବିଷୟରେ ହିଁ ଏପ୍ରାର୍ଥୀ ନୁହନ୍ତି—ଅଥଚ ତାଙ୍କର ଚରିତ୍ରର ସମସ୍ତ ଦୁର୍ବଳତା କଥା ଜାଣି ମଧ୍ୟ ତାଙ୍କୁ ଘୃଣା କରୁ ନାହାନ୍ତି, ନିଜଠାରୁ ନିଜର ପରି ଭଲ ପାଉଛନ୍ତି, ବିପଦରୁ ଥରକୁ ଥର ଉଦ୍ଧାର କରୁଛନ୍ତି, କେଉଁଥିରେ ତାଙ୍କର ସର୍ବାଙ୍ଗୀଣ କଲ୍ୟାଣ ହେବ ସେହି ଚିନ୍ତା ହିଁ କରୁଛନ୍ତି ! —ଏହାର କାରଣ କ'ଣ ? ସେ ବୁଝିଲେ ଯେ ଇଏ ମନୁଷ୍ୟ ଶରୀରଧାରୀ ହେଲେ ମଧ୍ୟ 'ଯେଉଁ ଦେଶରେ ରଜନୀ ନାହିଁ', ସେ ରାଜ୍ୟର ଲୋକ । ଏହାଙ୍କର ତ୍ୟାଗ ଅଦ୍ଭୁତ, ସଂଯମ ଅଦ୍ଭୁତ, ଜ୍ଞାନ ଅଦ୍ଭୁତ, ଭକ୍ତି ଅଦ୍ଭୁତ, ସମସ୍ତ ପ୍ରକାର କର୍ମ ଅଦ୍ଭୁତ ଏବଂ ସର୍ବୋପରି ତାଙ୍କ ସଦୃଶ ଦୁର୍ବଳ ଅଥଚ ଅହଂକାରୀ ଜୀବ ଉପରେ ଏହାଙ୍କର କରୁଣା ଓ ଭଲ ପାଇବା ଅଦ୍ଭୁତ !

ଆଉ ଗୋଟିଏ କଥା ମଧ୍ୟ ମଥୁରବାବୁ ଏହା ସଙ୍ଗେ ସଙ୍ଗେ ପ୍ରାଣେ ପ୍ରାଣେ ଅନୁଭବ କଲେ—ଏ ଅଦ୍ଭୁତ ଚରିତ୍ରର ମାଧୁର୍ଯ୍ୟ ! ଏପରି ଅଲୌକିକ ଐଶୀ ଶକ୍ତିର ବିକାଶ ଏହାଙ୍କର ମଧ୍ୟ ଦେଇ ହେଲେ ମଧ୍ୟ, ଇଏ ନିଜେ ଯେଉଁ ବାଳକ, ସେହି ବାଳକ ! ଟିକିଏ ହେଲେ ଅହଂକାର ନାହିଁ—କି ଚମତ୍କାର କଥା ! ନିଜ ଭିତରେ ଯେ କୌଣସି ଭାବ ଉଠୁ ନା କାହିଁକି, ପାଞ୍ଚବର୍ଷର ଶିଶୁପରି ତାହା ଟିକିଏ ବି ଲୁଚାଇବା ନାହିଁ ! ଭିତରେ ବାହାରେ ନିରନ୍ତର ଗୋଟିଏ ଭାବ ! ଯାହା ମନରେ, ତାହା ଅକପଟରେ ମୁହଁରେ ଓ କାର୍ଯ୍ୟରେ ପ୍ରକାଶ—ଅଥଚ ଅନ୍ୟର ଯେଉଁଥିରେ କୌଣସି ପ୍ରକାର ହାନି ହୋଇପାରେ, ତାହା କେବେ କହନ୍ତି ନାହିଁ—ନିଜର ଶାରୀରିକ କଷ୍ଟ ହେଲେ ମଧ୍ୟ ତାହା କହନ୍ତି ନାହିଁ ! ଏହା କ'ଣ ମନୁଷ୍ୟ ପକ୍ଷରେ ସମ୍ଭବ ?

**ମଥୁରଙ୍କର ଭକ୍ତିବୃଦ୍ଧି ଦେଖି ହାଲଦାର ପୁରୋହିତଙ୍କର ଈର୍ଷା :**

ଠାକୁରଙ୍କ ପ୍ରତି ମଥୁରବାବୁଙ୍କର ଅବିଚଳିତ ଭକ୍ତି ଦେଖି କାଳୀଘାଟର ହାଲ୍‌ଦାର ପୁରୋହିତ ଈର୍ଷାରେ ଜଳୁଥିଲେ; ସେ ଭାବୁଥିଲେ ଯେ—'ଏଲୋକଟା ବାବୁଙ୍କୁ କିଛି ଗୁଣିତୁଣି କରି ଏପରି ବଶୀଭୂତ କରିଛି ।' ଭାବୁଥିଲେ,—ଏବେ କ'ଣ କରାଯିବ ? ଏହି ବାବୁଙ୍କୁ ହାତ କରିବାର ମୋର ଏତେ ଦିନର ଚେଷ୍ଟା ଏଲୋକଟା ପାଇଁ ସବୁ ପଣ୍ଡ ହୋଇଗଲା ! ପୁଣି ସରଳ ବାଳକର ଭାବ ଦେଖାଏ । ଯଦି ଏତେ ସରଳ ତେବେ 'ବଶୀକରଣ'ର କ୍ରିୟାଟା କହି ଦେଉ ନା ? ମୋର ଯେତେ ବିଦ୍ୟା, ସବୁ କିଛି ଖଟାଇ ବାବୁଙ୍କୁ ଟିକିଏ ବାଗକୁ ଆଣୁଥିଲି, ଏପରି ବେଳରେ ଏଆପଦ କେଉଁଠୁ ଆସିଲା ?'

ଏପଟେ ମଥୁରବାବୁଙ୍କର ଭକ୍ତିବିଶ୍ୱାସ ଯେତେ ବଢ଼ିବାକୁ ଲାଗିଲା, ସେତେ ସେ ଠାକୁରଙ୍କ ସହିତ ସଦାସର୍ବଦା କିପରି ରହିପାରିବେ, କିପରି ତାଙ୍କର ଆହୁରି ଅଧିକ ସେବା କରିପାରିବେ—ଏହି ସମସ୍ତ ଇଚ୍ଛା ବଳବତୀ ହେଲା । ସେଥିପାଇଁ ମଝିରେ ମଝିରେ ଠାକୁରଙ୍କୁ ଅନୁରୋଧ କରି କଲିକତାର ଜାନବଜାର ଘରେ ନିଜ

ପାଖରେ ଆଣି ରଖୁଥିଲେ; ଅପରାହ୍ଣରେ 'ବାବା, ଚାଲନ୍ତୁ ବୁଲିଯିବା' କହି ସାଙ୍ଗରେ ନେଇ 'ଗଡ଼େର ମାଠ' ପ୍ରଭୃତି କଲିକତାର ନାନାସ୍ଥାନରେ ବୁଲାଇ ଆଣୁଥିଲେ । 'ବାବାଙ୍କୁ କ'ଣ ଯେଉଁଥିରେ ସେଥିରେ ଖାଇବାକୁ ଦେବା ଚଳିବ ?'— ଏକଥା ଭାବି ମଥୁରବାବୁ ସୁନା ଓ ରୂପାର ଏକ ସେଟ୍ ବାସନ ନୂଆ କରି ଗଢ଼ାଇ ଆଣି ସେହି ପାତ୍ରରେ ଠାକୁରଙ୍କୁ ଅନ୍ନ-ପାନୀୟ ପରଶୁ ଥିଲେ; ଭଲ ଭଲ ବସ୍ତ୍ର ପିନ୍ଧାଇ ଦେଉଥିଲେ ଓ କହୁଥିଲେ— 'ବାବା, ତୁମେ ତ' ଏସବୁର (ବିଷୟର) ମାଲିକ, ମୁଁ ତୁମର ଦେୱାନ ଛଡ଼ା ତ' ଆଉ କିଛି ନୁହଁ; ଏହି ଦେଖନା, ତୁମେ ସୁନା ଥାଳିରେ ରୂପାର ଗିନା-ଗ୍ଲାସ ରେ ଖାଇବା ପରେ ଏସବୁ ଆଡ଼କୁ ନ ଦେଖି ପକାଇ ଚାଲିଗଲ, ଆଉ ମୁଁ ପୁଣି ତୁମେ ଖାଇବ ବୋଲି ସେସବୁ ଘଷି ମାଜି ସଜାଇ ରଖୁଛି, ଚୋରୀ ହେଲା କିନା ଦେଖୁଛି, ଭଙ୍ଗା ଫୁଟା ହୋଇଗଲା କି ନାହିଁ ସେ ଖବର ରଖୁଛି, ଏପରି କଥାରେ ବ୍ୟସ୍ତ ରହୁଛି ।'

**ବନାରସୀ ସାଲ୍‌ର ଦୁର୍ଦ୍ଦଶା :**

ଏହି ସମୟରେ ଏକ ଜୋଡ଼ା ବନାରସୀ ଶାଲ୍‌ର ଦୁର୍ଦ୍ଦଶାର କଥା ଆମେ ଠାକୁରଙ୍କ ଶ୍ରୀମୁଖରୁ ଶୁଣିଥିଲୁ । ମଥୁରବାବୁ ଏହାକୁ ଏକହଜାର ଟଙ୍କାରେ କିଣି ଏବଂ ଏପରି ଭଲ ଜିନିଷ କାହାକୁ ଦେବି ଭାବି, ନିଜ ହାତରେ ଠାକୁରଙ୍କ ଶ୍ରୀଅଙ୍ଗରେ ଘୋଡ଼ାଇ ଦେଇ ଅତ୍ୟନ୍ତ ଆନନ୍ଦ ଲାଭ କରିଥିଲେ । ହେଲେ, ସାଲଟି ପ୍ରକୃତରେ ବହୁ ମୁଲ୍ୟବାନ୍ ଥିଲା— କାରଣ ଏହାର ଦାମ୍ ସେସମୟର ଯେତେବେଳେ ଏତେ ଥିଲା, ସେତେବେଳେ ବୋଧହୁଏ ସେପରି ଜିନିଷ ଏବେ ଆଉ ଦେଖିବାକୁ ମିଳିବ ନାହିଁ । ଶାଲ୍‌ଖଣ୍ଡିକ ଗୁଡ଼ାଇ ହୋଇ ଠାକୁରେ ପ୍ରଥମେ ଛୋଟ ପିଲା ପରି ମହା ଆନନ୍ଦିତ ହୋଇ ଏଆଡ଼େ ସେଆଡ଼େ ବୁଲିବାକୁ ଲାଗିଲେ, ବାରମ୍ବାର ଏହା ନିଜେ ଦେଖିବାକୁ ଲାଗିଲେ ଏବଂ ଅନ୍ୟମାନଙ୍କୁ ଡାକି ତାହାକୁ ଦେଖାଇବାକୁ ଲାଗିଲେ ଏବଂ ମଥୁରବାବୁ ଏହାକୁ ଏତେ ଦାମ୍‌ରେ କିଣି ଦେଇଛନ୍ତି ଇତ୍ୟାଦି କହିବାକୁ ଲାଗିଲେ । କିନ୍ତୁ ପରକ୍ଷଣରେ ହିଁ ବାଳକ ପରି ଠାକୁରଙ୍କ ମନରେ ଅନ୍ୟଭାବ ଉଦୟ ହେଲା; ଭାବିଲେ—"ଏଥିରେ ଆଉ ଅଛି କ'ଣ ? କେତେଗୁଡ଼ିଏ ଛେଳିର ଲୋମ ନୁହେଁ ତ ଆଉ କ'ଣ ? ଯେଉଁ ପଞ୍ଚଭୂତର ବିକାରରେ ସମସ୍ତ ଜିନିଷ, ସେହି ପଞ୍ଚଭୂତରେ ହିଁ ଏହା ତିଆରି ହୋଇଛି; ଆଉ ଶୀତରୁ ନିବାରଣ— ତାହା ରେଜେଇ, କମ୍ବଳରେ ଯେପରି ହୁଏ, ଏଥିରେ ମଧ୍ୟ ସେହିପରି; ଅନ୍ୟସମସ୍ତ ଜିନିଷ ପରି ଏଥିରେ ମଧ୍ୟ ସଚ୍ଚିଦାନନ୍ଦ ଲାଭ ହୁଏ ନାହିଁ; ବରଂ ଦେହରେ ପକାଇଲେ ମନେହୁଏ ମୁଁ ଅନ୍ୟମାନଙ୍କଠାରୁ ବଡ଼, ପୁଣି ଅଭିମାନ ଅହଂକାର ବଢ଼ି ମନୁଷ୍ୟର ମନକୁ ଈଶ୍ୱରଙ୍କଠାରୁ ଦୂରକୁ ନେଇଯାଏ ! ଏଥିରେ ଏତେ ଦୋଷ !" ଏସବୁ କଥାଭାବି ଶାଲ୍‌ଟିକୁ ତଳେ ପକାଇ —ଏଥିରେ ସଚ୍ଚିଦାନନ୍ଦ ଲାଭ ହୁଏ ନାହିଁ କହି

ଥୁ ଥୁ କରି ଛେପ ପକାଇ ଭୂମିରେ ଘଷିବାକୁ ଲାଗିଲେ ଏବଂ ଶେଷରେ ନିଆଁଜାଳି ପୋଡ଼ିଦେବାକୁ ଉପକ୍ରମ କଲେ ! ଠିକ୍ ଏହି ସମୟରେ କିଏ ଜଣେ ଆସି ତାଙ୍କ ହାତରୁ ସେ ସାଲ୍‌ଟିକୁ ଉଦ୍ଧାର କଲେ ! ମଥୁରବାବୁ ସାଲ୍ ଖଣ୍ଡିକର ଏପରି ଦୁର୍ଦ୍ଦଶା ହୋଇଛି ବୋଲି ଶୁଣି କିଛିମାତ୍ର ଦୁଃଖିତ ହେଲେ ନାହିଁ । କହିଥିଲେ—'ବାବା ଠିକ୍ କରିଛନ୍ତି !'

## ଠାକୁରଙ୍କ ନିର୍ଲିପ୍ତତା :

ଉପରଲିଖିତ ଘଟଣାରୁ ବେଶ୍ ବୁଝାଯାଏ, ମଥୁରବାବୁ ଠାକୁରଙ୍କୁ ନାନା ଭୋଗ-ସୁଖ ଓ ଆରାମ ଭିତରେ ରଖିବାକୁ ଚେଷ୍ଟା କଲେ ମଧ୍ୟ ଠାକୁରଙ୍କର ମନ କେତେ ଉଚ୍ଚରେ, କେଉଁଠି ନିରନ୍ତର ରହୁଥିଲା ! ଯେଉଁଠାରେ ଥାଆନ୍ତୁନା କାହିଁକି, ତାଙ୍କ ମନ ସବୁସମୟରେ ନିଜ ଭାବରେ ବିଭୋର ରହୁଥିଲା ! ଅନ୍ୟସମସ୍ତଙ୍କ ମନ ଯେଉଁଠାରେ କେବଳ ଅନ୍ଧକାର ଉପରେ ଅନ୍ଧକାର ରାଶି ହିଁ ପୁଞ୍ଜୀକୃତ ଦେଖେ, ସେଠାରେ ତାଙ୍କ ମନ ଦେଖୁଥିଲା—ଆଲୋକ ଆଉ ଆଲୋକ— ଛାୟା ବିହୀନ ହ୍ରାସବୃଦ୍ଧିରହିତ ଆଲୋକ—ଯେଉଁ ଆଲୋକ ସମ୍ମୁଖରେ ଚନ୍ଦ୍ର-ସୂର୍ଯ୍ୟ-ତାରକାର ଉଜ୍ଜ୍ୱଳତା, ବିଦ୍ୟୁତ୍‌ର ଚମକ, ଅଗ୍ନିର ତ କଥା ହିଁ ନାହିଁ—ସମସ୍ତ ମିଞ୍ଜି ମିଞ୍ଜି, ପ୍ରାୟ ଅନ୍ଧକାର ସଦୃଶ ! ସେହି ଆଲୋକମୟ ରାଜ୍ୟରେ ହିଁ ତାଙ୍କ ମନର ନିରନ୍ତର ଅବସ୍ଥିତି ଥିଲା ଏବଂ ଏହି ହିଂସା-ଦ୍ୱେଷ କପଟତାପୂର୍ଣ୍ଣ କାମକ୍ରୋଧର ଚିର-ଆବାସ ଭୂମି ଏହି ରାଜ୍ୟକୁ, ଯେପରି ଦୁଇଦିନ ପାଇଁ କରୁଣାରେ ବୁଲିବାକୁ ଆସିଥିଲା, ଏହି ପର୍ଯ୍ୟନ୍ତ ! ଅତଏବ ମଥୁରବାବୁଙ୍କର ଭୋଗସୁଖ-ବିଳାସତାପୂର୍ଣ୍ଣ ଜାନବଜାରର ଘରେ ରହିଲେ ମଧ୍ୟ, ଯେଉଁ ଠାକୁରଙ୍କୁ ସେହି ଠାକୁର—ନିର୍ଲିପ୍ତ, ନିରହଙ୍କାର, ନିଜ ଭାବରେ ନିଜେ ନିଶିଦିନ ମଗ୍ନ !

## ହାଲଦାର ପୁରୋହିତଙ୍କର ଶେଷକଥା :

ଜାନବଜାର ଘରେ ସନ୍ଧ୍ୟା ପୂର୍ବରୁ ଠାକୁରେ ଦିନେ ଅର୍ଦ୍ଧବାହ୍ୟଦଶାରେ ପଡ଼ିଥାଆନ୍ତି, ପାଖରେ କେହି ନାହାନ୍ତି । ଠାକୁରଙ୍କର ସମାଧି ଭାଙ୍ଗିବାକୁ ଯାଉଛି; ବାହ୍ୟଜଗତର ଅଳ୍ପ ଅଳ୍ପ ହୋସ୍ ଆସୁଛି । ଏପରି ସମୟରେ ପୂର୍ବୋକ୍ତ ହାଲଦାର ପୁରୋହିତ ଆସି ଉପସ୍ଥିତ । ଏକୁଟିଆ ଠାକୁରଙ୍କର ଏପରି ଅବସ୍ଥା ଦେଖି ଭାବିଲେ ଏହା ହିଁ ଠିକ୍ ସମୟ । ନିକଟକୁ ଯାଇ ଏଆଡ଼େ ସେଆଡ଼େ ଚାହିଁ ଠାକୁରଙ୍କ ଶ୍ରୀଅଙ୍ଗ ଠେଲି ଠେଲି ବାରମ୍ବାର କହିବାକୁ ଲାଗିଲା—'ଆରେ ବ୍ରାହ୍ମଣ, କହନା—ବାବୁଟାକୁ କିପରି ହାତକଲୁ ? କିପରି କଲୁ କହନା ? ଢଙ୍ଗ କରି ଚୁପ ହୋଇରହିଲୁ ଯେ ? କହନା ? ବାରମ୍ବାର ଏପରି କହିଲେ ମଧ୍ୟ ଠାକୁର ଯେତେବେଳେ କିଛି କହିଲେ ନାହିଁ ବା କହିପାରିଲେ ନାହିଁ—କାରଣ ସେତେବେଳେ ସେ କଥା କହିବାର ଅବସ୍ଥାରେ ନ ଥିଲେ—ସେତେବେଳେ ସେ

କ୍ରୋଧିତ ହୋଇ 'ଯା ଶଳା ନ କହ' ବୋଲି କହି ଜୋର୍‌ରେ ପଦାଘାତ କରି ଅନ୍ୟଆଡ଼େ ଚାଲିଗଲା । ନିରଭିମାନ ଠାକୁର, ମଥୁରବାବୁ ଏକଥା ଜାଣିପାରିଲେ ରାଗିଯାଇ ବ୍ରାହ୍ମଣ ପୁରୋହିତ ଉପରେ ବିଶେଷ ଅତ୍ୟାଚାର କରିବେ, ଭାବି ଚୁପ୍ ରହିଲେ । ଅନନ୍ତର—କିଛିଦିନ ପରେ ଅନ୍ୟ ଅପରାଧରେ ମଥୁରବାବୁଙ୍କ କୋପରେ ପଡ଼ି ବ୍ରାହ୍ମଣ ବିତାଡ଼ିତ ହେବାପରେ ଦିନେ କଥା ପ୍ରସଙ୍ଗରେ ଠାକୁର ମଥୁରାନାଥଙ୍କୁ ଏହି କଥା କହିଥିଲେ । ଏହାଶୁଣି ମଥୁରବାବୁ କ୍ରୋଧରେ ଓ ଅତ୍ୟନ୍ତ ଦୁଃଖରେ କହିଲେ, ''ବାବା, ଏହି କଥା ମୁଁ ଆଗରୁ ଜାଣିଥିଲେ ସତରେ ସେ ବ୍ରାହ୍ମଣ ଜୀବିତ ରହି ନ ଥାନ୍ତା ।''

### ମଥୁରାନାଥ ଓ ତାଙ୍କର ପତ୍ନୀ ଜଗଦମ୍ବା ଦାସୀଙ୍କର ଠାକୁରଙ୍କ ଉପରେ ଭକ୍ତି ଓ ଠାକୁରଙ୍କର ଏହି ପରିବାର ସହିତ ବ୍ୟବହାର :

ଠାକୁରଙ୍କର ଗୁରୁଭାବରେ ଅପାର କରୁଣା କଥା ସସ୍ତ୍ରୀକ ମଥୁରବାବୁ ପ୍ରାଣେ ପ୍ରାଣେ ଯେ କେତେଦୂର ଅନୁଭବ କରପାରିଥିଲେ ଏବଂ ତାଙ୍କୁ ସାକ୍ଷାତ୍ ଦେବତା ଜ୍ଞାନରେ କେତେଦୂର ଆତ୍ମସମର୍ପଣ କରିଥିଲେ, ତାର ବିଶିଷ୍ଟ ପରିଚୟ ଆମେମାନେ ଏହି କଥାରୁ ପାଇଥାଉ ଯେ, ସେମାନେ ଠାକୁରଙ୍କ ନିକଟରେ ଉଭୟଙ୍କର କୌଣସି କଥା ଗୋପନ ରଖୁ ନ ଥିଲେ । ଉଭୟ ଜାଣିଥିଲେ ଓ କହୁଥିଲେ, ''ଠାକୁର ମଣିଷ ନୁହଁନ୍ତି; ଏହାଙ୍କ ପାଖରେ କଥା ଲୁଚାଇ କ'ଣ ହେବ ? ସମସ୍ତ କଥା ସେ ଜାଣି ପାରନ୍ତି, ପେଟ କଥା ମଧ୍ୟ ସବୁ ଜାଣିପାରନ୍ତି !'' ସେମାନେ ଉଭୟ ଏହିପରି ଖାଲି ଯେ କଥାରେ କହୁଥିଲେ, ତାହା ନୁହେଁ—କାର୍ଯ୍ୟତଃ ସମସ୍ତ ବିଷୟରେ ଠିକ୍ ଠିକ୍ ସେହିପରି କରୁଥିଲେ । ବାବାଙ୍କୁ ନେଇ ଏକାଠି ଆହାର-ବିହାର ଏବଂ ଏକ ଶଯ୍ୟାରେ କେତେଦିନ ଉଭୟ ଶୟନ ମଧ୍ୟ କରିଥିଲେ । ବାବା ସବୁ ସମୟରେ ସର୍ବାବସ୍ଥାରେ ଅନ୍ତଃପୁରକୁ ଅବାଧରେ ଯିବା ଆସିବା କରୁଥିଲେ । ସେଥିରେ କ'ଣ ହେଲା ? ସେ ଭିତରକୁ ନ ଗଲେ ବା କ'ଣ ହେଲା ? —ଘରର ସ୍ତ୍ରୀ ପୁରୁଷ ସମସ୍ତଙ୍କର ମନର ଭାବ ସେ ଜାଣନ୍ତି, ଏବଂ ଏହାର ପ୍ରମାଣ ସେମାନେ ଅନେକଥର ପାଇଛନ୍ତି । ଆଉ ମଧ୍ୟ ପୁରୁଷ ଓ ସ୍ତ୍ରୀ ଲୋକଙ୍କ ସହିତ ମିଶିବାରେ ଯାହା ପ୍ରଧାନ ଅନ୍ତରାୟ—ମାନସିକ ବିକାର, ସେସମ୍ବନ୍ଧରେ ବାବାଙ୍କୁ ଘରର କାନ୍ଥବାଡ଼ ବା ଅନ୍ୟ କୌଣସି ଅଚେତନ ପଦାର୍ଥ ବିଶେଷ କହିଲେ ଚଳେ ! ଘର ମଧ୍ୟରେ କୌଣସି ସ୍ତ୍ରୀଲୋକଙ୍କ ମନରେ ବାବାଙ୍କୁ ଦେଖି, ଅନ୍ୟ କୌଣସି ପୁରୁଷକୁ ଦେଖି ଯେପରି ସଙ୍କୋଚ ଓ ଲଜ୍ଜାର ଭାବ ଆସିଥାଏ ସେପରି ଆସୁ ନ ଥିଲା । ମନେ ହେଉଥିଲା ଯେପରି ସେ ତାଙ୍କରି ମଧ୍ୟରୁ ଜଣେ, ଅଥବା ପାଞ୍ଚବର୍ଷର ପିଲାଟିଏ ! ଅତଏବ ସଖୀ ଭାବରେ ଭାବିତ ଠାକୁର ସ୍ତ୍ରୀଜନୋଚିତ ବେଶଭୂଷା ପିନ୍ଧି, ଦୁର୍ଗାପୂଜା ସମୟରେ ଅନ୍ତଃପୁରର

ସ୍ତ୍ରୀଲୋକମାନଙ୍କ ସହିତ ବାହାରେ ଆସି ପ୍ରତିମାଙ୍କୁ ଚାମର-ବ୍ୟଜନ କରୁଥିଲେ, କେତେବେଳେ ବା କୌଣସି ଯୁବତୀର ସ୍ୱାମୀର ଆଗମନରେ ତାଙ୍କୁ ସଜାଇ ବେଶଭୂଷା ପିନ୍ଧାଇ ସ୍ୱାମୀଙ୍କ ସହିତ କିପରି ଭାବରେ କଥାବାର୍ତ୍ତା କରିବାକୁ ହୁଏ, ତାହା କାନେ କାନେ ଶିଖାଇ ଶୋଇବା ଘରେ ସ୍ୱାମୀଙ୍କ ପାଖରେ ବସାଇ ଦେଇ ଆସୁଥିଲେ — ଏପରି ଅନେକ କଥା ଠାକୁରଙ୍କର ଶ୍ରୀମୁଖରୁ ଆମେ ଜାଣି, ସେମାନଙ୍କର ଠାକୁରଙ୍କ ଉପରେ କିପରି ଏକ ଅପୂର୍ବ ଭାବ ରହୁଥିଲା ଭାବି ଆଶ୍ଚର୍ଯ୍ୟ ହେଉଥିଲୁ । ଠାକୁରଙ୍କର ଗୁରୁଭାବ ଯୋଗୁଁ ଏହି ସମସ୍ତ ସ୍ତ୍ରୀଲୋକମାନଙ୍କ ମନରେ ତାଙ୍କ ପ୍ରତି ଦେବତାଜ୍ଞାନ ଯେପରି ସୁଦୃଢ଼ ଭାବରେ ପ୍ରତିଷ୍ଠିତ ହୋଇଥିଲା, ସେପରି ପୁଣି ତାଙ୍କର ଅହେତୁକ ଭଲ ପାଇବାର ବିଶେଷ ପରିଚୟ ପାଇ ସେମାନେ ତାଙ୍କୁ କେତେଦୂର ନିଜର କରିନେବାକୁ ବାଧ୍ୟ ହୋଇଥିଲେ, କେତେଦୂର ନିଃସଙ୍କୋଚରେ ତାଙ୍କ ନିକଟରେ ଉଠାବସା ଓ ଅନ୍ୟ ସବୁ ବ୍ୟବହାର କରୁଥିଲେ, ସେସମସ୍ତ ଆମେ କଳ୍ପନାରେ ମଧ୍ୟ ଠିକ୍ ଭାବରେ ଆଣିପାରିବୁ ନାହିଁ !

### ଠାକୁରଙ୍କଠାରେ ବିପରୀତ ଭାବର ଏକତ୍ର ସମାବେଶ :

ଏକ ଦିଗରେ ଠାକୁରଙ୍କର ମଥୁରବାବୁଙ୍କ ଘରର ସ୍ତ୍ରୀଲୋକଙ୍କ ସହିତ ଯେପରି ଅଲୌକିକ କାମଗନ୍ଧରହିତ ସ୍ୱାର୍ଥଶୂନ୍ୟ ସଖୀସମ ଭଲ ପାଇବାର ପ୍ରକାଶ ହୋଇଥିଲା ଅନ୍ୟଦିଗରେ ସେହିପରି ବାହାରେ ପୁରୁଷମାନଙ୍କ ନିକଟରେ, ପଣ୍ଡିତଗଣଙ୍କ ମଧ୍ୟରେ ଦିବ୍ୟଜ୍ଞାନ ଓ ଅନୁପମ ବୁଦ୍ଧି ସହିତ ବ୍ୟବହାର ଇତ୍ୟାଦି ଦେଖିଲେ ମନରେ ପ୍ରଶ୍ନ ଉଠେ, ଏପରି ଅନେକ ବିପରୀତ ଭାବର ଏକତ୍ର ସମ୍ମିଳନ ତାଙ୍କଠାରେ କିପରି ହୋଇଥିଲା ? ଏହି ବହୁରୂପୀ ଠାକୁର କିଏ ?

### ଦକ୍ଷିଣେଶ୍ୱରରେ ଭଗବଦ୍‌ବିଗ୍ରହ ଭଗ୍ନ ହେବାରୁ ବିଧାନ ନେବା ପାଇଁ ପଣ୍ଡିତ ସଭାର ଆହ୍ୱାନ :

ଦକ୍ଷିଣେଶ୍ୱର ମନ୍ଦିରରେ ରାଧାଗୋବିନ୍ଦଙ୍କର ବିଗ୍ରହ ଦୁଇଟି ସେତେବେଳେ ପ୍ରତିଦିନ ସକାଳେ ପାଖର ଶୟନ ଘରୁ ମନ୍ଦିର ମଧ୍ୟରେ ଥିବା ସିଂହାସନକୁ ଆଣି ବିରାଜମାନ କରାଯାଉଥିଲା ଏବଂ ପୂଜା ଭୋଗ ଇତ୍ୟାଦି ପରେ ଦୁଇ ପ୍ରହରରେ ପୁନରାୟ ଶୟନ ମନ୍ଦିରକୁ ବିଶ୍ରାମ ପାଇଁ ନିଆ ହେଉଥିଲା । ପୁଣି ଅପରାହ୍ଣ ଚାରିଟା ପରେ ସେଠାରୁ ସିଂହାସନକୁ ଆଣି ପୁନରାୟ ସନ୍ଧ୍ୟାଆରତୀ, ଭୋଗରାଗ ଇତ୍ୟାଦି କରାହେଉଥିଲା ଏବଂ ରାତିରେ ଶୟନ କକ୍ଷରେ ରଖା ହେଉଥିଲା । ମନ୍ଦିରର ମାର୍ବଲର ଚଟାଣ ଉପରେ ଦିନେ ଜଳପଡ଼ି ପିଚ୍ଛିଳ ହୋଇଥିବାରୁ, ଠାକୁରଙ୍କୁ ନେଇଯିବା ସମୟରେ ପୂଜକ ବ୍ରାହ୍ମଣ ପଡ଼ିଯିବାରୁ ଗୋବିନ୍ଦଜୀଙ୍କର ମୂର୍ତ୍ତିର ଗୋଡ଼ ଭାଙ୍ଗିଗଲା ! ଏହି ଘଟଣାରେ ପୂରା ମନ୍ଦିରରେ ହୁଲୁସ୍ଥୁଲ ପଡ଼ିଗଲା । ପୂଜାରୀ ତ ନିଜେ ଆଘାତ ପାଇଲେ, ପୁଣି ଭୟରେ ଥରିବାକୁ ଲାଗିଲେ ! ବାବୁମାନଙ୍କ

ନିକଟରେ ଖବର ପହଞ୍ଚିଲା । କ'ଣ ହେବ ? ଭଙ୍ଗା ବିଗ୍ରହ ତ ପୂଜା କରାଯାଏ ନାହିଁ—ଏବେ ଉପାୟ କ'ଣ ? ରାଣୀ ରାସମଣି ଓ ମଥୁରବାବୁ ଏହାର ଉପାୟ ନିର୍ଦ୍ଧାରଣ ପାଇଁ ସହରର ସମସ୍ତ ଖ୍ୟାତନାମା ପଣ୍ଡିତମାନଙ୍କୁ ସମ୍ଭ୍ରମ-ସହିତ ଡାକି ଏକ ସଭାର ଆୟୋଜନ କରିବାକୁ ଚାହିଁଲେ । ମାତ୍ର ସେମାନେ କାର୍ଯ୍ୟବଶତଃ ଉପସ୍ଥିତ ହୋଇ ନ ପାରିବାରୁ ସେମାନଙ୍କର ମତାମତ ସଂଗୃହୀତ ହେବାକୁ ଲାଗିଲା । ଚାରିଆଡ଼େ ଧାଁଦୌଡ଼ ହେଲା ଏବଂ ପଣ୍ଡିତବର୍ଗଙ୍କର ସମ୍ମାନ ରକ୍ଷା ନିମିତ୍ତ ବିଦାୟବେଳେ ଅର୍ଥର ଶ୍ରାଦ୍ଧ ହେଲା ! ପଣ୍ଡିତମାନେ ପାଞ୍ଜି-ପୋଥି ଖୋଲି ବାରମ୍ବାର ବିଚାର କରି ଏହାର ବିଧାନ କଲେ ଯେ, 'ଭଗ୍ନ ମୂର୍ତ୍ତିଟିକୁ ଗଙ୍ଗାରେ ବିସର୍ଜନ କରି ତା ବଦଳରେ ଅନ୍ୟ ଏକ ନୂତନ ମୂର୍ତ୍ତି ସ୍ଥାପନା ହେଉ ।' କାରିଗରଙ୍କୁ ମୂର୍ତ୍ତି ଗଠନ ନିମନ୍ତେ ଆଦେଶ ଦିଆଗଲା ।

**ଠାକୁରଙ୍କର ମୀମାଂସା ଓ ଏବିଷୟର ଶେଷକଥା :**

ସଭାଭଙ୍ଗ ସମୟରେ ମଥୁରବାବୁ ରାଣୀମା'ଙ୍କୁ କହିଲେ, ''ଛୋଟ ଭଟ୍ଟାଚାର୍ଯ୍ୟ ମହାଶୟଙ୍କୁ ତ ଏବିଷୟରେ ପଚରା ହୋଇ ନାହିଁ ? ସେ କ'ଣ କହୁଛନ୍ତି ଜାଣିବା ଦରକାର''—ଏହା କହି ଠାକୁରଙ୍କର ଏବିଷୟରେ ମତାମତ ଜାଣିବାକୁ ଚାହିଁଲେ ! ଠାକୁର ଭାବମୁଖରେ କହିଲେ, ''ରାଣୀଙ୍କର ଜାମାତାମାନଙ୍କ ମଧ୍ୟରୁ ଯଦି କେହି ପଡ଼ି ଗୋଡ଼ ଭାଙ୍ଗିଥାନ୍ତେ, ତେବେ କ'ଣ ତାଙ୍କୁ ତ୍ୟାଗ କରି ଆଉ ଜଣଙ୍କୁ ଆଣି ତାଙ୍କ ଜାଗାରେ ବସା ହୋଇଥାନ୍ତା—ନା ତାଙ୍କର ଚିକିତ୍ସାର ବ୍ୟବସ୍ଥା କରାହୋଇଥାନ୍ତା ? ଏଠାରେ ମଧ ସେପରି କରାଯାଉ—ମୂର୍ତ୍ତିଟି ଜୋଡ଼ି ଯେପରି ପୂଜା ହେଉଛି ସେପରି ହେଉ । କାହିଁକି ମୂର୍ତ୍ତି ତ୍ୟାଗ କରିବାକୁ ହେବ ?'' ସମସ୍ତେ ଏପରି ସମାଧାନର କଥାଶୁଣି ହତବାକ୍ ! ସତେ ତ, ସେମାନଙ୍କର କାହାରି ମୁଣ୍ଡରେ ଏପରି ସହଜ ବୁଦ୍ଧିଟି ଆସି ନାହିଁ ? ମୂର୍ତ୍ତିଟି ଯଦି ଗୋବିନ୍ଦଜୀଙ୍କର ଦିବ୍ୟ ଆବିର୍ଭାବରେ ଜୀବନ୍ତ ବୋଲି ସ୍ୱୀକାର କରାଯାଏ, ତେବେ ସେ ଆବିର୍ଭାବ ତ ଭକ୍ତ ହୃଦୟର ଗଭୀର ଭକ୍ତି-ଭଲପାଇବା-ସାପେକ୍ଷ, ଭକ୍ତଙ୍କ ପ୍ରତି କୃପା ବା କରୁଣାରେ ସେ ହୃଦୟରେ ଭକ୍ତି-ଭଲପାଇବା ଥିଲେ ସେ ଆବିର୍ଭାବ ଭଗ୍ନ ମୂର୍ତ୍ତିରେ କାହିଁକି ନ ହେବ ? ମୂର୍ତ୍ତିଭଙ୍ଗର ଦୋଷାଦୋଷ ତ ସେ ଆବିର୍ଭାବକୁ ସ୍ପର୍ଶ କରିପାରେ ନାହିଁ ! ତାପରେ, ଯେଉଁ ମୂର୍ତ୍ତିରେ ଶ୍ରୀଭଗବାନଙ୍କର ଏତେଦିନ ପୂଜା କରି ଅନ୍ତରର ଭଲ ପାଇବା ଦେଇ ଆସିଅଛୁ, ଆଜି ତା'ର ଅଙ୍ଗହାନୀ ହେବାରୁ ଯଥାର୍ଥ ଭକ୍ତର ହୃଦୟରୁ କ'ଣ ଭଲ ପାଇବାର ହାନି ହୋଇପାରେ ? ଆହୁରି ମଧ ବୈଷ୍ଣବ ଆଚାର୍ଯ୍ୟଗଣ ଭକ୍ତଙ୍କୁ ଠାକୁରଙ୍କର ଆତ୍ମବତ୍ ସେବା କରିବାକୁ ହିଁ ଉପଦେଶ ଦେଇଥାନ୍ତି । ନିଜେ ଯେତେବେଳେ ଯେଉଁ ଅବସ୍ଥାରେ ଯାହା କରିବାକୁ ଭଲ ପାଅ, ଠାକୁରେ ମଧ ତାହା ହିଁ ଭଲ ପାଇବେ ଭାବି ସେହି ପ୍ରକାର କରିବାକୁ

କହନ୍ତି । ସେହି ଯୁକ୍ତି କାରଣରୁ ମଧ୍ୟ ମୂର୍ତ୍ତିଟିକୁ ତ୍ୟାଗ କରାଯାଇପାରିବ ନାହିଁ । ଅତଏବ ସ୍ମୃତିରେ ଯେ ଭଗ୍ନ ମୂର୍ତ୍ତିରେ ପୂଜା ହୋଇପାରିବ ନାହିଁ ବୋଲି ଯେଉଁ ବିଧାନ ଅଛି, ତାହା ନିଶ୍ଚୟ ପ୍ରେମହୀନ, ଭକ୍ତି ପଥରେ ଅଳ୍ପ ମାତ୍ର ଅଗ୍ରସର ହୋଇଥିବା ଭକ୍ତ ନିମିତ୍ତ । ଯାହା ହେଉ, ଅଭିମାନୀ ପଣ୍ଡିତବର୍ଗଙ୍କର ଠାକୁରଙ୍କର ମୀମାଂସା ସହିତ ମତଭେଦ ହେଲା; କେହି ମଧ୍ୟ ଦକ୍ଷିଣା ମିଳିବାରେ ତ୍ରୁଟି ହେବାର ସମ୍ଭାବନା ବୋଧକରି ନିଜର ମତଭେଦ ପ୍ରକାଶ କଲେ ନାହିଁ ! କିନ୍ତୁ ଯେଉଁମାନେ ପାଣ୍ଡିତ୍ୟର ସାହାଯ୍ୟରେ କିଛି ଯଥାର୍ଥ ଜ୍ଞାନ-ଭକ୍ତି ଲାଭ କରିବାକୁ ସମର୍ଥ ହୋଇଥିଲେ, ସେମାନେ ଠାକୁରଙ୍କର ଏହି ମୀମାଂସା ଶୁଣି ଧନ୍ୟ ଧନ୍ୟ କରିବାକୁ ଲାଗିଲେ । ପରେ ଠାକୁର ସ୍ୱହସ୍ତରେ ମୂର୍ତ୍ତିଟିକୁ ଜୋଡ଼ିଦେଲେ ଏବଂ ତାଙ୍କର ପୂଜା ପୂର୍ବବତ୍ ହେବାକୁ ଲାଗିଲା । କାରିଗର ଗୋଟିଏ ନୂତନ ମୂର୍ତ୍ତି ଗଢ଼ି ଆଣିଲେ, ତାହା ଗୋବିନ୍ଦଜୀଙ୍କ ମନ୍ଦିରର ଏକ ପାର୍ଶ୍ୱରେ ରଖାହେଲା, ଏହି ନୂତନ ମୂର୍ତ୍ତିଟିର ପ୍ରତିଷ୍ଠା କରାହେଲା ନାହିଁ । ରାଣୀ ରାସମଣି ଓ ମଥୁରବାବୁ ପରଲୋକ ଗମନ କଲାପରେ, ତାହାଙ୍କର ବଂଶଧରମାନଙ୍କ ମଧ୍ୟରୁ କେହି କେହି ବେଳେବେଳେ ଏହି ମୂର୍ତ୍ତିଟିର ପ୍ରତିଷ୍ଠା ପାଇଁ ଚେଷ୍ଟା କରିଥିଲେ, କିନ୍ତୁ କୌଣସି ନା କୌଣସି ସାଂସାରିକ ବିଘ୍ନ ସେହି ସମୟରେ ଉପସ୍ଥିତ ହେବାରୁ ଏକାର୍ଯ୍ୟ ସ୍ଥଗିତ କରିବାକୁ ବାଧ୍ୟ ହୋଇଥିଲେ । ଫଳରେ ଗୋବିନ୍ଦଜୀଙ୍କର ସେହି ନୂତନ ମୂର୍ତ୍ତିଟି ଏପର୍ଯ୍ୟନ୍ତ ସେହିପରି ଭାବରେ ରଖାଯାଇଅଛି ।

# ସପ୍ତମ ଅଧ୍ୟାୟ

## ଗୁରୁଭାବରେ ମଥୁରଙ୍କ ପ୍ରତି କୃପା

ଅହମାତ୍ମା ଗୁଡାକେଶ ସର୍ବଭୂତାଶୟସ୍ଥିତଃ ।
ଅହମାଦିଶ୍ଚ ମଧ୍ୟଂ ଚ ଭୂତାନାମନ୍ତ ଏବ ଚ ।। —ଗୀତା ୧୦-୨୦

### ଜାନବଜାରରେ ମଥୁରବାବୁଙ୍କ ଘରେ ଠାକୁରଙ୍କୁ ନେଇ ଦୁର୍ଗାପୂଜାର କଥା :

ଏବର୍ଷ ମଥୁରାନାଥଙ୍କର ଜାନବଜାର ଘରେ ଦୁର୍ଗାପୂଜାରେ ବିଶେଷ ଆନନ୍ଦ । କାରଣ, ଶ୍ରୀଶ୍ରୀଜଗଦମ୍ବାଙ୍କର ପୂଜା ସମୟରେ ପ୍ରତିବର୍ଷ ଆବାଳବୃଦ୍ଧ-ବନିତାଙ୍କର ଯେଉଁ ଅନିର୍ବଚନୀୟ ଆନନ୍ଦ, ତାହା ତ' ଥିଲା, ତା ଉପରେ 'ବାବା' ପୁଣି କେତେଦିନ ଧରି ମଥୁରବାବୁଙ୍କ ଘର ପବିତ୍ର କରି, ଏହି ଆନନ୍ଦକୁ ସହସ୍ର ଗୁଣରେ ବର୍ଦ୍ଧିତ କରିଥିଲେ । ଅତଏବ ଆନନ୍ଦର ପରିସୀମା ନ ଥିଲା । ମା'ଙ୍କ ନିକଟରେ ବାଳକ ଯେପରି ଆନନ୍ଦରେ ଅଧୀର ହୋଇ ନିର୍ଭୟରେ ଅଳି, ଅନୁରୋଧ ଓ ହେତୁ-ରହିତ ହାସ୍ୟ-ନୃତ୍ୟାଦିର ଚେଷ୍ଟା କରିଥାଏ, ସେହିପରି ନିରନ୍ତର ଭାବାବେଶରେ ପ୍ରତିମା ମଧ୍ୟରେ ସାକ୍ଷାତ୍ ଜଗଦମ୍ବାଙ୍କର ଆବିର୍ଭାବ ପ୍ରତ୍ୟକ୍ଷ କରି 'ବାବା'ଙ୍କର ସେହିପରି ଅପୂର୍ବ ଆଚରଣରେ, ପ୍ରତିମା ବାସ୍ତବିକ୍ ହିଁ ଜୀବନ୍ତ ଜ୍ୟୋତିର୍ମୟୀ ହୋଇ ଯେପରି ହସୁଥିଲେ ! ପୁଣି ଏହି ପ୍ରତିମାରେ ମା'ଙ୍କର ଆବେଶ ଓ ଠାକୁରଙ୍କର ଦେବଦୁର୍ଲ୍ଲଭ ଶରୀର-ମନରେ ମା'ଙ୍କର ଆବେଶ ଏକତ୍ର ସମ୍ମିଳିତ ହେବାରୁ ପୂଜା ସ୍ଥାନର ବାୟୁମଣ୍ଡଳ କିପରି ଏକ ଅନିର୍ବଚନୀୟ, ଅନିର୍ଦ୍ଦେଶ୍ୟ ସାତ୍ତ୍ୱିକ ଭାବ ପ୍ରକାଶରେ ପୂର୍ଣ୍ଣ ବୋଲି ଅତି ଜଡ଼ମନର ମଧ୍ୟ ଅନୁଭୂତି ହେଉଥିଲା ! ପୂଜାମଣ୍ଡପଟି ପବିତ୍ରତା ଓ ଆନନ୍ଦରେ ପରିପୂର୍ଣ୍ଣ ଓ ସମୁଜ୍ଜଳ ହୋଇଉଠିଥିଲା ! ଏବଂ ଘରର ସର୍ବତ୍ର ଯେପରି ସେହି ଅଦ୍ଭୁତ ପ୍ରକାଶରେ ଅପୂର୍ବ ଶ୍ରୀ ଧାରଣ କରିଥିଲା !

ଏପରି ହେବା ସ୍ୱାଭାବିକ କଥା । ଧନୀ ମଥୁରଙ୍କର ରାଜସିକ ଭକ୍ତି, ଘରଦ୍ୱାର ଓ ମା'ଙ୍କ ପ୍ରତିମାଙ୍କୁ ବିଚିତ୍ର ସୁନ୍ଦର ଭାବରେ ସଜାଇବାରେ, ପତ୍ର ପୁଷ୍ପ ଫଳ ମୂଳ ମିଷ୍ଟାନ୍ନାଦି ପୂଜାର ଦ୍ରବ୍ୟ ସମ୍ଭାରର ଅପର୍ଯ୍ୟାପ୍ତ ଆୟୋଜନରେ ଏବଂ ନହବତାଦି ବାଦ୍ୟଯନ୍ତ୍ରମାନଙ୍କର ବାହୁଲ୍ୟରେ ମନୋନିବେଶ କରି ବାହାରର କେଉଁଥିରେ ଯେପରି ତ୍ରୁଟି ରଖି ନାହିଁ; ସେହିପରି ଏହି ଅଦ୍ଭୁତ ଠାକୁରଙ୍କର ଅଲୌକିକ ଦେବଭାବ ବାହାରର ଏସମସ୍ତ ଜଡ଼ପଦାର୍ଥକୁ ସ୍ପର୍ଶ କରି ସେଗୁଡ଼ିକ ମଧ୍ୟରେ ସତରେ ଯେପରି ଏକ ପ୍ରାଣପ୍ରତିଷ୍ଠା କରି ଦେଇଥିଲା ! ଫଳରେ ତୁଷାରମଣ୍ଡିତ ହିମାଳୟବକ୍ଷରେ ଚିରଶ୍ୟାମଳ ଦେବଦାରୁ କୁଞ୍ଜର ଗମ୍ଭୀର ସୌନ୍ଦର୍ଯ୍ୟରେ ସାଧୁ-ତପସ୍ୱୀଙ୍କର ଗୈରିକ ବସନ ଯେ ଶାନ୍ତିମୟ ଶୋଭା ଆଣିଦିଏ, ସୁନ୍ଦରୀ ରମଣୀର କୋଳରେ

ସ୍ତନ୍ୟପାୟୀ ସୁନ୍ଦର ଶିଶୁ ଯେଉଁ କରୁଣାଲିପ୍ତ ସୌନ୍ଦର୍ଯ୍ୟ ବିସ୍ତାର କରେ, ସୁନ୍ଦର ମୁଖରେ ପବିତ୍ର ମନୋଭାବ ଯେଉଁ ଅପୂର୍ବ ପ୍ରକାଶ ଆଣି ଦିଏ, ମଥୁରବାବୁଙ୍କର ମହାଭାଗ୍ୟ ଉଦୟରେ ତାଙ୍କର ଭବନରେ ଆଜି ସେହି ସୌନ୍ଦର୍ଯ୍ୟର ବିଚିତ୍ର ସମାବେଶ ହୋଇଥିଲା ! ପୂଜା ସମ୍ବନ୍ଧୀୟ ନାନା କାର୍ଯ୍ୟର ସୁବନ୍ଦୋବସ୍ତରେ ବ୍ୟସ୍ତ ରହି ମଧ ମଥୁରବାବୁ ଓ ତାଙ୍କର ଗୃହିଣୀ ଯେ ସେହି ଭାବସୌନ୍ଦର୍ଯ୍ୟ ପ୍ରାଣଭରି ଅନୁଭବ କରି ଏକ ଅବ୍ୟକ୍ତ ଆନନ୍ଦରେ ପୂର୍ଣ୍ଣ ହେଉଥିଲେ, ତାହା କହିବାକୁ ହେବ ନାହିଁ ।

ଦିନର ପୂଜା ଶେଷ ହେଲା । ସେମାନେ ମଧ କୌଣସି ମତେ ଟିକିଏ ସମୟ କରି 'ବାବା'ଙ୍କର ଓ ଜଗନ୍ମାତାଙ୍କର ଶ୍ରୀଚରଣରେ ମହାଆନନ୍ଦରେ ପୁଷ୍ପାଞ୍ଜଳି ପ୍ରଦାନ କଲେ ।

## ଠାକୁରଙ୍କର ଭାବ-ସମାଧି ଓ ରୂପ :

ସନ୍ଧ୍ୟା ସମାଗତ । ଏଥର ଶ୍ରୀଶ୍ରୀଜଗନ୍ମାତାଙ୍କର ଆରତି ହେବ । 'ବାବା' ଏବେ ଗୃହ ମଧରେ ବିଚିତ୍ରଭାବରେ ଆବିଷ୍ଟ ହୋଇ ତାଙ୍କର ପୁରୁଷ-ଶରୀର କଥା ସମ୍ପୂର୍ଣ୍ଣ ଭୁଲିଯାଇଛନ୍ତି ! କଥାରେ, ଚେଷ୍ଟାରେ କେବଳ ପ୍ରକାଶ—ଯେପରି ସେ ଜନ୍ମେ-ଜନ୍ମେ ଯୁଗେ ଯୁଗେ ଶ୍ରୀଶ୍ରୀଜଗନ୍ମାତାଙ୍କର ଦାସୀ ବା ସଖୀ । ଜଗଦମ୍ବା ହିଁ ତାଙ୍କର ପ୍ରାଣ-ମନ, ସର୍ବସ୍ୱର ସର୍ବସ୍ୱ; ମା'ଙ୍କର ସେବା ନିମିତ୍ତ ହିଁ ତାଙ୍କର ଦେହ ଓ ଜୀବନଧାରଣ । ଠାକୁରଙ୍କ ମୁଖମଣ୍ଡଳ ଭାବରେ ପ୍ରେମରେ ସମୁଜ୍ଜ୍ୱଳ, ଅଧରରେ ମୃଦୁ ମୃଦୁ ହାସ୍ୟ, ଚକ୍ଷୁର ଚାହାଣୀ, ହସ୍ତ-ପଦ-ସଞ୍ଚାଳନ, ଅଙ୍ଗଭଙ୍ଗୀ ସବୁକିଛି ସ୍ତ୍ରୀଲୋକ ସଦୃଶ ! ମଥୁରବାବୁଙ୍କ ଦ୍ୱାରା ଦିଆଯାଇଥିବା ଗୋଟିଏ ରେଶମୀ ପାଟ ବସ୍ତ୍ର ସେ ସ୍ତ୍ରୀଲୋକଙ୍କ ପରି ଏଭଳି ଭାବରେ ପିନ୍ଧିଥିଲେ ଯେ, ତାଙ୍କୁ ଦେଖି ସେ ପୁରୁଷ ବୋଲି କହିବା କଠିନ ଥିଲା । ଠାକୁରଙ୍କ ରୂପ ସେତେବେଳେ ଯେମିତି ଫାଟି ପଡୁଛି—ଏକେ ତ' ସୁନ୍ଦର ରଙ୍ଗ ଥିଲା; ଭାବାବେଶରେ ସେହି ରଙ୍ଗ ଆହୁରି ଉଜ୍ଜ୍ୱଳ ହୋଇ ଉଠିଥିଲା, ଶରୀର ଦେଇ ଯେପରି ଏକ ଜ୍ୟୋତି ନିର୍ଗତ ହେଉଥିଲା ! ସେହି ରୂପ ଦର୍ଶନ କରି ଲୋକମାନେ ଚକ୍ଷୁଫେରାଇ ପାରୁ ନ ଥିଲେ, ଅବାକ୍ ହୋଇ ଚାହିଁ ରହିଥିଲେ ! ଶ୍ରୀଶ୍ରୀମା'ଙ୍କ ମୁଖରୁ ଶୁଣିଅଛୁ, ଠାକୁର ଶ୍ରୀଅଙ୍ଗରେ ଯେଉଁ ସୁବର୍ଣ୍ଣ-ଇଷ୍ଟ-କବଚ ଖଣ୍ଡିକ ସବୁବେଳେ ଧାରଣ କରୁଥିଲେ, ସେହି ସୁନାର ରଙ୍ଗ ଓ ଦେହର ରଙ୍ଗ ଯେପରି ମିଶା ମିଶି ହୋଇ ଏକ ହୋଇଯାଉଥିଲା ! ଠାକୁରଙ୍କର ନିଜ ମୁହଁରୁ ଶୁଣିଅଛୁ—"ସେତେବେଳେ ଏପରି ରୂପ ହୋଇଥିଲା ଯେ, ଲୋକମାନେ ଚାହିଁ ରହନ୍ତି; ଛାତି ମୁହଁ ସବୁ ସମୟରେ ଲାଲବର୍ଣ୍ଣ ହୋଇ ରହୁଥିଲା, ଏବଂ ଶରୀର ମଧରୁ ଯେପରି ଏକ ଜ୍ୟୋତି ନିର୍ଗତ ହେଉଥିଲା ! ଲୋକମାନେ ଅନାଇ ରହୁଥିଲେ ବୋଲି ଗୋଟିଏ ମୋଟା ଚାଦର ସବୁବେଳେ

ଘୋଡ଼ାଇ ହୋଇ ରହେ, ଓ ମା'କୁ କହେ, 'ମା' ତୋ'ର ବାହାରର ରୂପ ତୁ ନେ, ମୋତେ ଭିତରର ରୂପ ଦେ', ଦେହରେ ହାତ ବୁଲାଇ ବୁଲାଇ ଚାପୁଡ଼ା ମାରି କହୁଥିଲି, 'ଭିତରେ ପଶି ଯା, ଭିତରେ ପଶି ଯା'; ତେଣୁ କେତେଦିନ ପରେ ଦେହ ଉପରଟା ଏପରି ମଳିନ ହୋଇଗଲା ।''

## କାମାରପୁକୁରରେ ଠାକୁରଙ୍କର ରୂପ-ଗୁଣ ସମ୍ବନ୍ଧରେ ଲୋକଙ୍କ କଥା :

ରୂପ ବିଷୟରେ ଠାକୁରଙ୍କ ଜୀବନରେ ଅନ୍ୟ ଏକ ଘଟଣା ଏଠାରେ ମନେ ପଡୁଛି । ଏହି ସମୟରେ ପ୍ରତିବର୍ଷ ବର୍ଷାଋତୁରେ ଠାକୁର ତିନିଚାରିମାସ ନିଜର ଜନ୍ମଭୂମି କାମାରପୁକୁରରେ କଟାଉଥିଲେ । କାମାରପୁକୁରରେ ଥିବା ସମୟରେ ମଝିରେ ମଝିରେ ଶିଓଡ଼ ଗ୍ରାମରେ ଭଣଜା ହୃଦୟଙ୍କ ଘରକୁ ମଧ୍ୟ ଯାଉଥିଲେ । ଠାକୁରଙ୍କର ଶ୍ୱଶୁରଘର ଜୟରାମବାଟୀ ଗ୍ରାମ ଭିତର ଦେଇ ଶିଓଡ଼ ଯିବାର ପଥ । ସେଠାକାର ଲୋକମାନେ ମଧ୍ୟ ଅନୁରୋଧ କରି ଠାକୁରଙ୍କୁ ସେଠାରେ କିଛିଦିନ ରଖିଦେଉଥିଲେ । ଠାକୁରଙ୍କର ପରମ ଅନୁଗତ ଭକ୍ତ ଭଣଜା ହୃଦୟ ସେତେବେଳେ ସର୍ବଦା ଠାକୁରଙ୍କ ସହିତ ରହି ତାଙ୍କର ସମସ୍ତ ପ୍ରକାର ସେବା କରୁଥିଲେ ।

କାମାରପୁକୁରରେ ଥିବା ବେଳେ ଠାକୁରଙ୍କୁ ଦେଖିବାକୁ ଓ ତାଙ୍କ ମୁହଁରୁ ଦୁଇପଦ କଥା ଶୁଣିବା ପାଇଁ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ଗ୍ରାମର ସ୍ତ୍ରୀ-ପୁରୁଷମାନଙ୍କର ଭିଡ଼ ଲାଗିରହୁଥିଲା । ପ୍ରତ୍ୟୁଷରୁ ପ୍ରତିବେଶୀ ସ୍ତ୍ରୀଲୋକମାନେ ଘରର ସମସ୍ତ କାମସାରି ସ୍ନାନ କରି ପାଣି ଆଣିବା ପାଇଁ କଳସୀ କାଖରେ ଧରି ଆସି କଳସୀଗୁଡ଼ିକ ଠାକୁରଙ୍କ ଘର ନିକଟ ହାଲ୍‌ଦାର ପୋଖରୀ ଘାଟରେ ରଖି, ତାଙ୍କ ଘରେ ଆସି ବସୁଥିଲେ; ଏବଂ ଘରର ମହିଳାମାନଙ୍କ ଓ ଠାକୁରଙ୍କ ସହିତ କିଛି ସମୟ କଟାଇ ପରେ ସ୍ନାନ ପାଇଁ ଯାଉଥିଲେ । ଏପରି ପ୍ରତିଦିନ ହେଉଥିଲା । ଏହି ଅବସରରେ କେହି କେହି ରାତିରେ ଘରେ କୌଣସି ଭଲ ମନ୍ଦ ମିଷ୍ଟାନ୍ନ ଆଦି ତିଆରି ହୋଇଥିଲେ, ତାହାର ଅଗ୍ରଭାଗ ଆଣି ଠାକୁରଙ୍କୁ ଦେଇଯାଉଥିଲେ । ରଙ୍ଗରସପ୍ରିୟ ଠାକୁର ଏମାନେ ରାତି ପାହୁ ନ ପାହୁଣୁ ଆସି ଉପସ୍ଥିତ ହେବା ଦେଖି କେବେ କେବେ ଥଟ୍ଟା କରି କହୁଥିଲେ— ''ଶ୍ରୀବୃନ୍ଦାବନରେ ନାନାଭାବରେ ବିଭିନ୍ନ ସମୟରେ ଶ୍ରୀକୃଷ୍ଣଙ୍କ ସହିତ ଗୋପୀମାନଙ୍କର ମିଳନ ହେଉଥିଲା— ଜଳ ଆଣିବାକୁ ଯାଇ ଗୋଷ୍ଠ-ମିଳନ, ସନ୍ଧ୍ୟାବେଳେ ଶ୍ରୀକୃଷ୍ଣ ଯେତେବେଳେ ଗୋରୁ ଚରାଇ ଫେରୁଥିଲେ ସେତେବେଳେ ଗୋଧୂଳି-ମିଳନ, ତା'ପରେ ରାତିରେ ରାସ-ମିଳନ— ଏପରି ସବୁ ଅଛି । ତେଣୁ ଏହା ତୁମମାନଙ୍କର ସ୍ନାନ ସମୟର ମିଳନ ନା କ'ଣ ?'' ସେମାନେ ଠାକୁରଙ୍କ କଥାଶୁଣି ହସି ହସି ଗଡ଼ିଯାଉଥିଲେ ।

ମହିଳାମାନେ ଦିନରେ ରନ୍ଧନାଦି କରିବାକୁ ଚାଲିଯିବା ପରେ ସାହିର ପୁରୁଷମାନେ ଠାକୁରଙ୍କ ନିକଟକୁ ଆସି ଯାହାର ଯେତେ ସମୟ ଇଚ୍ଛା ବସି କଥାବାର୍ତ୍ତା ହେଉଥିଲେ । ଅପରାହ୍ଣରେ ପୁଣି ସ୍ତ୍ରୀଲୋକମାନେ ଆସୁଥିଲେ ଏବଂ ସନ୍ଧ୍ୟା ପରେ ରାତିରେ ପୁନରାୟ ପୁରୁଷମାନଙ୍କ ମଧ୍ୟରୁ କେହି କେହି ଆସି ଉପସ୍ଥିତ ହେଉଥିଲେ । ଦୂର ଦୂରାନ୍ତରରୁ ଯେଉଁ ସମସ୍ତ ସ୍ତ୍ରୀ-ପୁରୁଷମାନେ ଆସୁଥିଲେ, ସେମାନେ ପ୍ରାୟ ଅପରାହ୍ଣରେ ଆସି ସନ୍ଧ୍ୟା ପୂର୍ବରୁ ଫେରିଯାଉଥିଲେ । ଏହିପରି ସମସ୍ତ ଦିନ ରଥଯାତ୍ରା କିମ୍ୱା ଦୋଳଯାତ୍ରା ପରି ଭିଡ଼ ଲାଗି ରହୁଥିଲା ।

**ଠାକୁରଙ୍କର ରୂପ ବିଷୟରେ ଘଟଣା ଓ ତାଙ୍କର ଦୀନଭାବ :**

ଥରେ କାମାରପୁକୁରରୁ ଜୟରାମବାଟୀ ହୋଇ ଶିଓଡ଼ ଯିବାର ବନ୍ଦୋବସ୍ତ ହୋଇଥାଏ । ଅନବରତ ଭାବସମାଧିରେ ରହୁଥିବାରୁ ଠାକୁରଙ୍କର ଶ୍ରୀଅଙ୍ଗ ବାଳକ ବା ସ୍ତ୍ରୀଲୋକଙ୍କ ପରି ସୁକୋମଳ ହୋଇଯାଇଥିଲା । ଅଳ୍ପ ଦୂର ହେଲେ ମଧ୍ୟ ପାଲିଙ୍କି, ଗାଡ଼ି ବ୍ୟତୀତ କେଉଁଠାକୁ ଯାଇପାରୁ ନ ଥିଲେ । ସେଥିପାଇଁ ଜୟରାମବାଟୀ ହୋଇ ଶିଓଡ଼ ଯିବା ପାଇଁ ପାଲିଙ୍କି ଅଣାହୋଇଛି । ହୃଦୟ ତାଙ୍କ ସହିତ ଯିବା ପାଇଁ ପ୍ରସ୍ତୁତ । ଠାକୁର ଆହାରାନ୍ତେ ପାନ ଚୋବାଉ ଚୋବାଉ ନାଲିପାଟ ପିନ୍ଧି, ହାତରେ ସୁବର୍ଣ୍ଣ ଇଷ୍ଟ-କବଚ ଧାରଣ କରି ପାଲିଙ୍କିରେ ବସିବାକୁ ଆସିଲେ । ଦେଖିଲେ, ରାସ୍ତାରେ ପାଲିଙ୍କି ନିକଟରେ ଭିଡ଼ ଲାଗିଯାଇଛି; ଚାରିଆଡ଼େ ସ୍ତ୍ରୀ-ପୁରୁଷମାନେ ଠିଆ ହୋଇ ରହିଛନ୍ତି; ଦେଖି ଆଶ୍ଚର୍ଯ୍ୟ ହୋଇ ହୃଦୟକୁ ପଚାରିଲେ— ''ହୃଦୁ, ଏତେ ଭିଡ଼ କ'ଣ ପାଇଁ ରେ ?''

ହୃଦୟ—କ'ଣ ପାଇଁ ମାନେ ? ଏଇ ତୁମେ ଆଜି ସେଠାକୁ ଯିବ (ଲୋକମାନଙ୍କୁ ଦେଖାଇ) ଏମାନେ ତୁମକୁ କିଛିଦିନ ଦେଖିପାରିବେ ନାହିଁ, ତେଣୁ ସମସ୍ତେ ତୁମକୁ ଦେଖିବାକୁ ଆସିଛନ୍ତି ।

ଠାକୁର—ମୋତେ ତ ପ୍ରତିଦିନ ଦେଖୁଛନ୍ତି; ଆଜି ପୁଣି କ'ଣ ନୂଆ ଦେଖିବେ ?

ହୃଦୟ—ଏଇ ପାଟପିନ୍ଧି ସଜବାଜ ହୋଇ, ପାନଖାଇ ତମର ଓଠ ଦୁଇଟି ଲାଲ ଟୁକ୍‌ଟୁକ୍ ହେଲେ ଖୁବ୍ ସୁନ୍ଦର ଦେଖାଯାଏ; ତାହା ହିଁ ସମସ୍ତେ ଦେଖିବାକୁ ଆସିଛନ୍ତି, ଆଉ କ'ଣ ?

ତାଙ୍କର ସୁନ୍ଦର ରୂପରେ ସେମାନେ ଆକୃଷ୍ଟ, ଶୁଣି ହିଁ ଠାକୁରଙ୍କ ମନ ଏକ ଅପୂର୍ବ ଭାବରେ ପୂର୍ଣ୍ଣ ହେଲା । ଭାବିଲେ—ହାୟ ହାୟ ! ଏମାନେ ଏହି ଦୁଇଦିନର ବାହାର ରୂପ ନେଇ ହିଁ ବ୍ୟସ୍ତ, ଭିତରେ ଯିଏ ରହିଛନ୍ତି, ତାଙ୍କୁ କେହି ଦେଖିବାକୁ ଚାହୁଁ ନାହାନ୍ତି !

ରୂପରେ ବିତୃଷ୍ଣା ତାଙ୍କର ପୂର୍ବରୁ ଥିଲା; ଏହି ଘଟଣାରେ ତାହା ଆହୁରି ସହସ୍ରଗୁଣରେ ବର୍ଦ୍ଧିତ ହେଲା । କହିଲେ— ''କ'ଣ ? ଗୋଟେ ମଣିଷକୁ ଦେଖିବା ପାଇଁ ଲୋକେ ଏତେ ଭିଡ଼ କରିବେ ? ଯା, — ମୁଁ କେଉଁଠାକୁ ଯିବି ନାହିଁ । ଯେଉଁଠାକୁ ଯିବି, ସେଠାରେ ହିଁ ତ' ଲୋକମାନେ ଏହିପରି ଭିଡ଼ ଜମାଇବେ ?'' —ଏହା କହି ଘର ଭିତରେ ନିଜର କୋଠରୀକୁ ଯାଇ ଲୁଗାପଟା ସବୁ ଖୋଲି କ୍ଷୋଭ ଦୁଃଖରେ ଚୁପ୍ କରି ବସି ରହିଲେ । ଦୀନଭାବରେ ପୂର୍ଣ୍ଣ ଠାକୁର ସେଦିନ ଆଉ ଜୟରାମବାଟୀ ଓ ଶିଓଡ଼ ଗଲେ ନାହିଁ । ହୃଦୟ ଓ ଘରେ ସମସ୍ତେ ଯେତେ ପ୍ରକାର ବୁଝାଇଲେ ମଧ୍ୟ ସବୁ ନିଷ୍ଫଳ ହେଲା । ନିଜର ଶରୀର ଉପରେ ଏହି ଅଲୌକିକ ପୁରୁଷଙ୍କର ଯେ କି ତୁଚ୍ଛ, ହେୟ ବୁଦ୍ଧି ଥିଲା, ହେ ପାଠକ, ତାହା ଭାବି ଦେଖ ! ଆଉ ଭାବ ଆମମାନଙ୍କ କଥା, ଯିଏ ରୂପ ରୂପ କରି ପାଗଳ ! —କେତେ ଘଷା-ମଜା ଦର୍ପଣ-ପାନିଆ, କ୍ଷୁର, ଏସେନ୍ସ, ସାବୁନ, ପାଉଡର ଯୋଗାଡ଼ରେ ବ୍ୟସ୍ତ ! ପୁଣି ପାଶ୍ଚାତ୍ୟର ଅନୁକରଣରେ 'ହାଡ଼ମାଂସର-ଛାଞ୍ଚ'କୁ ଭ୍ରମବଶତଃ ନିତ୍ୟ ବୋଲି ଭାବି ସମ୍ପୂର୍ଣ୍ଣ ବିନାଶ ଆଡ଼କୁ ଅଗ୍ରସର ହେଉଛୁ ! ପରିଷ୍କାର-ପରିଚ୍ଛନ୍ନ ରହି ଶୁଦ୍ଧ ଓ ପବିତ୍ରଭାବରେ ପୂର୍ଣ୍ଣ ରହିବା ଏବଂ ପୂର୍ବୋକ୍ତ ପ୍ରକାରରେ ଜିନିଷ ବ୍ୟବହାର କରିବା—ଉଭୟ କ'ଣ ଏକା କଥା ? ଛାଡ଼ ଆମେ ଜାନବଜାରର ପୂର୍ବ କଥା ଆଲୋଚନା କରିବା ।

### ଠାକୁରଙ୍କର ସମାଧି ଭାଙ୍ଗିବାକୁ ଜଗଦମ୍ବା ଦାସୀଙ୍କ କୌଶଳ :

ଜଗଦମ୍ବାଙ୍କର ଆରତି ଆରମ୍ଭ ହେବ, କିନ୍ତୁ ଠାକୁରଙ୍କର ସେହି ଭାବ ଆଉ ଭାଙ୍ଗୁ ନାହିଁ ! ମଥୁରବାବୁଙ୍କ ପତ୍ନୀ ଶ୍ରୀମତୀ ଜଗଦମ୍ବା ଦାସୀ ଠାକୁରଙ୍କୁ କୌଣସି ପ୍ରକାରେ ପ୍ରକୃତିସ୍ଥ କରି ଘରର ସ୍ତ୍ରୀ ଲୋକମାନଙ୍କ ସହିତ ଆରତି ଦେଖିବାକୁ ଯିବେ ବୋଲି ମନେ କରିଥିଲେ, କିନ୍ତୁ ଠାକୁରଙ୍କର ଏହିପରି ଭାବାବେଶର ବିରାମ ହେଉ ନ ଥିବା ଦେଖି ଏବଂ ତାଙ୍କୁ ଏକୁଟିଆ ଛାଡ଼ିଯିବା ଯୁକ୍ତିସଙ୍ଗତ ନୁହେଁ ଭାବି କିଂକର୍ତ୍ତବ୍ୟବିମୂଢ଼ା ହେଲେ । ଭାବିଲେ—କ'ଣ କରିବି ? ମୁଁ ଯାହାକୁ ରଖି ଚାଲିଯିବି, ଥରେ ଆରତିର ଘଣ୍ଟା ବାଜିଉଠିଲେ ସେ ନିଶ୍ଚୟ ସେଠାକୁ ଅଣନିଶ୍ୱାସୀ ହୋଇ ଦଉଡ଼ିବେ । ପୁଣି 'ବାବା' ଏପରି ବିହ୍ୱଳ ହେଲେ ନିଜକୁ ନିଜେ ସମ୍ଭାଳି ପାରନ୍ତି ନାହିଁ । ଥରେ ତ ଏପରି ବାହ୍ୟଜ୍ଞାନଶୂନ୍ୟ ଅବସ୍ଥାରେ ଚୁଲିର ନିଆଁରେ ପଡ଼ି ଯାଇ ମଧ୍ୟ ହୋସ୍ ହୋଇ ନ ଥିଲା —ପରେ ସେ ଘାଆ ବହୁତ ଦିନ ପରେ ଅନେକ ଚିକିତ୍ସାରେ ଶୁଖିଥିଲା । ଏକୁଟିଆ ରଖି ଗଲେ, ଏପରି ଆନନ୍ଦର ଦିନରେ ଯଦି ସେପରି କିଛି ଗୋଟାଏ ବିଭ୍ରାଟ ହୁଏ—ସେତେବେଳେ ଉପାୟ କ'ଣ ହେବ ? ମୋର ପତିଦେବ କ'ଣ କହିବେ ? ଏପରି ନାନା ଚିନ୍ତା କରୁ କରୁ ହଠାତ୍ ତାଙ୍କ ମନରେ ଏକ ଉପାୟ ଆସି ଜୁଟିଲା । ଶୀଘ୍ର ଶୀଘ୍ର ନିଜର ବହୁମୂଲ୍ୟ ଗହଣାଗୁଡ଼ିକ

ବାହାର କରି ବାବାଙ୍କୁ ପିନ୍ଧାଉ ପିନ୍ଧାଉ ତାଙ୍କ କାନପାଖରେ ବାରମ୍ବାର କହିବାକୁ ଲାଗିଲେ, 'ବାବା, ଚାଲନ୍ତୁ; ମା'ଙ୍କର ପରା ଆରତି ହେବ, ମା'ଙ୍କୁ କ'ଣ ଚାମର କରିବେ ନାହିଁ ?'

### ଠାକୁରଙ୍କର ସମାଧିରୁ ସାଧାରଣ ଅବସ୍ଥାକୁ ଅବତରଣର ଉପାୟ ଶାସ୍ତ୍ରସମ୍ମତ :

ଭାବାବେଶରେ ଠାକୁର ଯେତେ ବାହ୍ୟଜ୍ଞାନ ଶୂନ୍ୟ ହୋଇ ଥାଆନ୍ତୁ ନା କାହିଁକି, ଯେଉଁ ମୂର୍ତ୍ତି ଓ ଭାବରେ ତାଙ୍କର ମନ ସମାଧିସ୍ଥ ହୋଇଅଛି, ତାହା ଛଡ଼ା ଅନ୍ୟ ସମସ୍ତ ବସ୍ତୁ, ବ୍ୟକ୍ତି ଓ ଭାବ-ସମ୍ବନ୍ଧରୁ ତାଙ୍କର ମନ ଯେତେ ଦୂରକୁ ଯାଉନା କାହିଁକି, ଏହା କିନ୍ତୁ ସବୁ ସମୟରେ ଦେଖାଯାଇଛି ଯେ, ସେହି ମୂର୍ତ୍ତିର ନାମ ବା ସେହି ମୂର୍ତ୍ତିର ଭାବର ଅନୁକୂଳ କଥା କେତେଥର ଠାକୁରଙ୍କ କାନପାଖରେ କହିଲେ, ତତ୍‌କ୍ଷଣାତ୍ ତାଙ୍କର ମନ ସେଥିରେ ଆକୃଷ୍ଟ ହେଉଥିଲା ଏବଂ ତାହାକୁ ଧରିବାକୁ ଓ ବୁଝିବାକୁ ସକ୍ଷମ ହେଉଥିଲା । ଏକାଗ୍ରଚିତ୍ତର ନିୟମ ଓ ଆଚରଣ ଯେ ସେହି ପ୍ରକାର ହୋଇଥାଏ, ତାହା ମହାମୁନି ପତଞ୍ଜଳି ପ୍ରଭୃତିଙ୍କର ଯୋଗଶାସ୍ତ୍ରରେ ସବିସ୍ତାର ବର୍ଣ୍ଣନା ନ ହେଲେ ମଧ୍ୟ ସାଧାରଣଭାବରେ ଲିପିବଦ୍ଧ ଅଛି । ଅତଏବ ଶାସ୍ତ୍ରଜ୍ଞ ପାଠକମାନଙ୍କର ଠାକୁରଙ୍କ ମନର ସେହି ପ୍ରକାର ଆଚରଣ କଥା ବୁଝିବାକୁ ବିଳମ୍ବ ହେବ ନାହିଁ । ଆଉ ବହୁ ପୁଣ୍ୟଫଳରେ ଯେଉଁମାନେ କିଛିମାତ୍ର ଚିତ୍ତର ଏକାଗ୍ରତା ଜୀବନରେ ଲାଭ ବା ଅନୁଭବ କରିଛନ୍ତି, ସେମାନେ ଆହୁରି ସହଜରେ ଏବିଷୟ ବୁଝିପାରିବେ । ଅତଏବ ଆମେ ପ୍ରକୃତ ଘଟଣାର ହିଁ ଅନୁସରଣ କରିବୁ ।

### ସଖୀଭାବରେ ଠାକୁର ଦୁର୍ଗାଦେବୀଙ୍କୁ ଚାମର କରିବା :

ମଥୁରବାବୁଙ୍କର ପତ୍ନୀଙ୍କ କଥା ଠାକୁରଙ୍କ କର୍ଣ୍ଣରେ ପ୍ରବେଶ କଲା । ସେ ସଙ୍ଗେ ସଙ୍ଗେ ଅନେକାଂଶରେ ପ୍ରକୃତିସ୍ଥ ହୋଇ ଅର୍ଦ୍ଧ-ବାହ୍ୟଦଶାରେ ଆନନ୍ଦରେ ଉତ୍‌ଫୁଲ୍ଲିତ ହୋଇ ତାଙ୍କ ସାଙ୍ଗରେ ଗଲେ । ସେମାନେ ପୂଜା-ମଣ୍ଡପରେ ପହଞ୍ଚିବାମାତ୍ରେ ଆରତି ଆରମ୍ଭ ହେଲା । ଠାକୁର ମଧ୍ୟ ସ୍ତ୍ରୀଗଣ ପରିବୃତା ହୋଇ ହସ୍ତରେ ଚାମର ନେଇ ପ୍ରତିମାଙ୍କୁ ବ୍ୟଜନ କରିବାକୁ ଲାଗିଲେ । ପୂଜା ପ୍ରାଙ୍ଗଣର ଗୋଟିଏ ପାଖରେ ସ୍ତ୍ରୀଲୋକମାନେ ଏବଂ ଅନ୍ୟ ପାଖରେ ମଥୁରବାବୁ-ପ୍ରମୁଖ ପୁରୁଷମାନେ ଠିଆହୋଇ ଶ୍ରୀଶ୍ରୀଜଗଦମ୍ବାଙ୍କର ଆରତି ଦେଖିବାକୁ ଲାଗିଲେ । ସହସା ମଥୁରବାବୁଙ୍କ ନୟନ ସ୍ତ୍ରୀ-ଲୋକମାନଙ୍କ ଆଡ଼େ ପଡ଼ିବା ମାତ୍ରେ ଦେଖିଲେ, ତାଙ୍କ ପତ୍ନୀଙ୍କ ପାର୍ଶ୍ୱରେ ବିଚିତ୍ରବସ୍ତ୍ରଭୂଷଣରେ ଅଦୃଷ୍ଟପୂର୍ବ ସୌନ୍ଦର୍ଯ୍ୟ ବିସ୍ତାର କରି କିଏ ଜଣେ ଠିଆ ହୋଇ ଚାମର କରୁଛନ୍ତି ! ବାରମ୍ବାର ଦେଖି ମଧ୍ୟ ଯେତେବେଳେ ସେ ବୁଝିପାରିଲେ ନାହିଁ ସେ କିଏ, ସେତେବେଳେ ଭାବିଲେ, ହୁଏତ ତାଙ୍କର

ପତ୍ନୀଙ୍କର ପରିଚିତା କୌଣସି ଉଚ୍ଚଘରର ଲୋକଙ୍କ ଗୃହିଣୀ ନିମନ୍ତ୍ରିତା ହୋଇ ଆସିଛନ୍ତି ।

ଆରତି ଶେଷ ହେଲା । ଅନ୍ତଃପୁରବାସିନୀମାନେ ଶ୍ରୀଶ୍ରୀଜଗଦମ୍ବାଙ୍କୁ ପ୍ରଣାମ କରି ସେମାନଙ୍କ ନିର୍ଦ୍ଦିଷ୍ଟ ସ୍ଥାନକୁ ଚାଲିଗଲେ ଓ ନିଜ ନିଜ କାର୍ଯ୍ୟରେ ଲାଗିଲେ । ଠାକୁର ମଧ୍ୟ ସେହିପରି ଅର୍ଦ୍ଧବାହ୍ୟ ଅବସ୍ଥାରେ ମଥୁରବାବୁଙ୍କ ପତ୍ନୀଙ୍କ ସହିତ ଭିତରକୁ ଗଲେ ଏବଂ କ୍ରମେ ସମ୍ପୂର୍ଣ୍ଣ ସାଧାରଣ ଭାବରେ ପ୍ରକୃତିସ୍ଥ ହୋଇ ଅଳଙ୍କାର ସମସ୍ତ ଖୋଲି ରଖି ବାହାରେ ପୁରୁଷମାନଙ୍କ ନିକଟରେ ଆସି ବସିଲେ, ଏବଂ ନାନାଦି ଧର୍ମପ୍ରସଙ୍ଗ ଉଠାଇ ଦୃଷ୍ଟାନ୍ତ ଦ୍ୱାରା ସମସ୍ତଙ୍କୁ ସରଳ ଭାବରେ ବୁଝାଇ ଚିତ୍ତହରଣ କରିବାକୁ ଲାଗିଲେ ।

**ମଥୁରବାବୁଙ୍କର ତାଙ୍କୁ ଏହି ଅବସ୍ଥାରେ ଚିହ୍ନି ନ ପାରି ପ୍ରଶ୍ନ କରିବା :**

କିଛି ସମୟ ପରେ ମଥୁରବାବୁ କୌଣସି କାମରେ ଘର ଭିତରକୁ ଯାଇ କଥା କଥାରେ ତାଙ୍କ ପତ୍ନୀଙ୍କୁ ପଚାରିଲେ, ''ଆରତି ସମୟରେ ତୁମ ପାଖରେ ଠିଆ ହୋଇ କିଏ ଚାମର କରୁଥିଲେ ?'' ମଥୁରବାବୁଙ୍କ ପତ୍ନୀ ସେଥିରେ ହସି କହିଲେ, ''ତୁମ କ'ଣ ଚିହ୍ନି ପାରିଲ ନାହିଁ ? ବାବା ଭାବାବସ୍ଥାରେ ସେହି ପ୍ରକାର ଚାମର କରୁଥିଲେ । ତାହା ହୋଇପାରେ, ସ୍ତ୍ରୀଲୋକଙ୍କ ପରି ଲୁଗାପଟା ପିନ୍ଧିଲେ ବାବାଙ୍କୁ ପୁରୁଷ ବୋଲି ମନେ ହୁଏ ନାହିଁ ।''ଏହା କହି ମଥୁରବାବୁଙ୍କୁ ସମସ୍ତ ଘଟଣା ଖୋଲି କହିଲେ । ମଥୁରବାବୁ ଏକାବେଳକେ ଆଶ୍ଚର୍ଯ୍ୟ ହୋଇ କହିଲେ, ''ସେଥିପାଇଁ କହେ—ସାମାନ୍ୟ ବିଷୟରେ ମଧ୍ୟ ଧରା ନ ଦେଲେ ବାବାଙ୍କୁ ଚିହ୍ନିବା କାହାର ସାଧ୍ୟ ? ଦେଖୁନ, ଚବିଶ ଘଣ୍ଟା ଦେଖି ଓ ଏକତ୍ର ରହି ମଧ୍ୟ ଆଜି ତାଙ୍କୁ ଚିହ୍ନିପାରିଲି ନାହିଁ ।

**ବିଜୟାଦଶମୀ :**

ସପ୍ତମୀ, ଅଷ୍ଟମୀ ଓ ନବମୀ ପରମ ଆନନ୍ଦରେ କଟିଯାଇଥିଲା । ଆଜି ବିଜୟା ଦଶମୀର ପ୍ରାତଃକାଳ । ପୁରୋହିତ ଶୀଘ୍ର ଶୀଘ୍ର ଶ୍ରୀଶ୍ରୀଜଗଦମ୍ବାଙ୍କର ସଂକ୍ଷିପ୍ତ ପୂଜା ସାରି ନେଉଥିଲେ, କାରଣ, ସମୟଭିତରେ ଦର୍ପଣ-ବିସର୍ଜନ କରିବାକୁ ହେବ । ସନ୍ଧ୍ୟାପରେ ପ୍ରତିମା ବିସର୍ଜନ ହେବ । ମଥୁରବାବୁଙ୍କର ଘରର ସମସ୍ତଙ୍କ ମନରେ ଯେପରି ଏକ ବିଷାଦର ଛାୟା—ସତେ ଯେମିତି ଘରେ କୌଣସି ଅବ୍ୟକ୍ତ ଅପରିସ୍ଫୁଟ ଅଭାବ ବୋଧ ହେଉଥିଲା । ଯେପରି, ଜଣେ ହୃଦୟର ଅତିପ୍ରିୟ ବସ୍ତୁ ବା ବ୍ୟକ୍ତିଙ୍କ ସହିତ ଅପରିହାର୍ଯ୍ୟ ଆସନ୍ନବିଚ୍ଛେଦର ଆଶଙ୍କା ଅନୁଭୂତ ହେଉଥିଲା ! ପୃଥିବୀର ଅତି ବିଶୁଦ୍ଧ ଆନନ୍ଦ ପଶ୍ଚାତରେ ମଧ୍ୟ ଏପରି ଏକ ବିଷାଦର ଛାୟା ସର୍ବଦା ସଂଲଗ୍ନ ରହିଛି । ଏହି ନିୟମର ବଶବର୍ତ୍ତୀ ହୋଇ ବୋଧହୁଏ ଅତି ମହାନ୍ ଈଶ୍ୱର-ପ୍ରେମୀଙ୍କର ଜୀବନରେ ମଧ୍ୟ ବେଳେ ବେଳେ ଅସହ୍ୟ ଈଶ୍ୱରବିରହର

ସନ୍ତାପ ଆସି ଉପସ୍ଥିତ ହୋଇଥାଏ । ଅନ୍ୟପକ୍ଷରେ ଆମମାନଙ୍କ ପରି କଠୋର ମାନବ-ହୃଦୟ ମଧ୍ୟ ବିଜୟାଦଶମୀ ଦିନରେ ପ୍ରତିମାବିସର୍ଜନ କରିବାକୁ ଯାଇ ଅଶ୍ରୁ ବର୍ଷଣ କରିଥାଏ ! ମଥୁରବାବୁଙ୍କ ପତ୍ନୀଙ୍କର କଥା ଛାଡ଼—ଆଜି ପ୍ରାତଃକାଳରୁ କାମ କରୁ କରୁ ପଣତ କାନିରେ ଅନେକଥର ନୟନାଶ୍ରୁ ପୋଛି ଚକ୍ଷୁ ପରିଷ୍କାର କରୁଥିଲେ ।

**ମଥୁରବାବୁଙ୍କର ଆନନ୍ଦରେ ସେହି ବିଷୟରେ ହୋସ ନ ରହିବା :**

ବାହାରେ ମଥୁରବାବୁଙ୍କର କିନ୍ତୁ ଆଜିକାର କଥା ଏଯାବତ୍ ମନେ ନ ଥିଲା । ତେଣୁ ସେ ପୂର୍ବପରି ଆନନ୍ଦରେ ଉତ୍‌ଫୁଲ୍ଲ ଥିଲେ ! ଶ୍ରୀଶ୍ରୀଜଗଦମ୍ବାଙ୍କୁ ଘରକୁ ଆଣି ଏବଂ ବାବାଙ୍କର ଅଲୌକିକ ସଙ୍ଗ ଓ ଅଚିନ୍ତ୍ୟ କୃପାବଳରେ ସେ ଆନନ୍ଦରେ ଆତ୍ମହରା ହୋଇ ନିଜ ଭିତରେ ନିଜେ ଭରପୁର ହୋଇରହିଥିଲେ । ବାହାରେ କ'ଣ ହେବ ନ ହେବ, ସେବିଷୟରେ କିଏ ଚିନ୍ତା କରୁଛି ? ସେ ଚିନ୍ତାର ଆବଶ୍ୟକ ବା କ'ଣ ? ମା'ଙ୍କୁ ଓ ବାବାଙ୍କୁ ନେଇ ଏପରି ହିଁ ଦିନ କଟିବ । ଏପରି ସମୟରେ ପୁରୋହିତଙ୍କଠାରୁ ଖବର ଆସିଲା—ଏଥର ମା'ଙ୍କର ବିସର୍ଜନ ହେବ, ତେଣୁ ବାବୁଙ୍କୁ ତଳକୁ ଆସି ମା'ଙ୍କୁ ପ୍ରଣାମ ବନ୍ଦନାଦି କରିଯିବାକୁ କୁହ ।

**ଦେବୀମୂର୍ତ୍ତି ବିସର୍ଜନ କରିବେ ନାହିଁ ବୋଲି ମଥୁରବାବୁଙ୍କ ସଂକଳ୍ପ :**

ଏକଥା ମଥୁରବାବୁ ପ୍ରଥମେ ବୁଝିପାରିଲେ ନାହିଁ । ପୁନର୍ବାର ପଚାରି ଯେତେବେଳେ ବୁଝିପାରିଲେ, ସେତେବେଳେ ତାଙ୍କର ହୋସ ହେଲା—ଆଜି ବିଜୟାଦଶମୀ ! ଏବଂ ଏହି ଜ୍ଞାନ ହେବା ସଙ୍ଗେ ସଙ୍ଗେ ହୃଦୟରେ ସେ ଏକ ବିଷମ ଆଘାତ ପାଇଲେ । ଅତ୍ୟନ୍ତ ଦୁଃଖରେ ଭାବିବାକୁ ଲାଗିଲେ, "ଆଜି ମା'ଙ୍କୁ ବିସର୍ଜନ ଦିଆଯିବ—କାହିଁକି ? ବାବା ଓ ମା'ଙ୍କ କୃପାରୁ ଆମର ତ କିଛି ଅଭାବ ନାହିଁ । ମନର ଆନନ୍ଦର ଯେଉଁ ଟିକକ ଅଭାବ ଥିଲା, ତାହା ତ ମା'ଙ୍କର ଶୁଭ ଆଗମନରେ ପୂର୍ଣ୍ଣ ହୋଇଅଛି । ତେଣୁ ପୁଣି କାହିଁକି ମା'ଙ୍କୁ ବିସର୍ଜନ ଦେଇ ବିଷାଦ ଡାକି ଆଣିବି ? ନା, ଏହି ଆନନ୍ଦର ହାଟ ମୁଁ ଭାଙ୍ଗିପାରିବି ନାହିଁ । ମା'ଙ୍କର ବିସର୍ଜନ, କଥା ମନରେ ଭାବିଲେ ପ୍ରାଣ କ'ଣ ହୋଇଯାଉଛି !" ଏପରି ନାନା କଥା ଭାବି ଅଶ୍ରୁବିସର୍ଜନ କରିବାକୁ ଲାଗିଲେ ।

ସେପାଖେ ସମୟ ଗଡ଼ିଯାଉଥିଲା । ପୁରୋହିତ ଜଣକ ପରେ ଜଣକୁ ତାଙ୍କ ପାଖକୁ ପଠାଉଥିଲେ ଯେ, ବାବୁ ଥରେ ଆସି ଏଠାରେ ଠିଆ ହୁଅନ୍ତୁ, ମା'ଙ୍କର ବିସର୍ଜନ ହେବ । ମଥୁର ଅତ୍ୟନ୍ତ ବିରକ୍ତ ହୋଇ କହିପଠାଇଲେ, "ମୁଁ ମାକୁ ବିସର୍ଜନ କରାଇ ଦେବି ନାହିଁ । ଯେପରି ପୂଜା ହେଉଅଛି, ସେହିପରି ପୂଜା ହେଉଥିବ । ମୋର ବିନା ଅନୁମତିରେ ଯଦି କେହି ବିସର୍ଜନ ଦିଏ ତେବେ ବିଷମ ପରିଣତି ହେବ—ରକ୍ତପାତ ପର୍ଯ୍ୟନ୍ତ ହୋଇପାରେ ।" ଏପରି କହି ମଥୁରବାବୁ

ଗମ୍ଭୀର ଭାବରେ ବସି ରହିଲେ । ଭୃତ୍ୟ ଜଣକ ବାବୁଙ୍କର ସେ ପ୍ରକାର ଭାବାନ୍ତର ଦେଖି ସଭୟରେ ଘୁଞ୍ଚିଗଲା ଏବଂ ପୂଜାସ୍ଥଳକୁ ଯାଇ ସମସ୍ତ କଥା ପୁରୋହିତ ମହାଶୟଙ୍କୁ ଜଣାଇଲା । ଏହା ଶୁଣି ସମସ୍ତେ ହତବାକ୍ ହେଲେ !

**ସମସ୍ତେ ବୁଝାଇଲେ ମଧ୍ୟ ମଥୁରଙ୍କର ଉତ୍ତର :**

ତା'ପରେ ସମସ୍ତେ ପରାମର୍ଶ କରି ମଥୁରବାବୁ ଘରେ ଯେଉଁମାନଙ୍କୁ ସମ୍ମାନ କରୁଥିଲେ, ସେମାନଙ୍କୁ ମଥୁରବାବୁଙ୍କ ନିକଟକୁ ବୁଝାଇବା ପାଇଁ ପଠାଇଲେ । ସେମାନେ ଯାଇ ଯେତେ ବୁଝାଇଲେ ମଧ୍ୟ ତାଙ୍କର ସେହି ଭାବାନ୍ତର ଦୂର କରିପାରିଲେ ନାହିଁ । ବାବୁ ସେମାନଙ୍କ କଥାରେ କର୍ଣ୍ଣପାତ ନ କରି କହିଲେ, ''କାହିଁକି ? ମୁଁ ମା'ଙ୍କର ପ୍ରତିଦିନ ପୂଜା କରିବି । ମା'ଙ୍କର କୃପାରୁ ମୋର ଯେତେବେଳେ ସେ କ୍ଷମତା ଅଛି ତେଣୁ ବିସର୍ଜନ କାହିଁକି ଦେବି ?'' ଫଳରେ ସେମାନେ ବିମର୍ଷ ହୋଇ ଫେରିଆସି ସିଦ୍ଧାନ୍ତ କଲେ—ବାବୁଙ୍କର ମୁଣ୍ଡ ଖରାପ ହୋଇଯାଇଛି ! କିନ୍ତୁ ସେହିପରି ସିଦ୍ଧାନ୍ତ କଲେ ମଧ୍ୟ ଉପାୟ କ'ଣ ? ଏକଜିଦିଆ ମଥୁରବାବୁଙ୍କୁ ଘରେ ସମସ୍ତେ ଭଲ ଭାବେ ଜାଣିଥିଲେ ! ସମସ୍ତେ ଜାଣନ୍ତି ଯେ, ରାଗିଗଲେ ତାଙ୍କର ହିତାହିତ ଜ୍ଞାନ ରହେ ନାହିଁ । ତେଣୁ ତାଙ୍କର ବିନା ଅନୁମତିରେ ଦେବୀଙ୍କୁ ବିସର୍ଜନ ଦେଇ କିଏ ତାଙ୍କର କୋପଦୃଷ୍ଟିରେ ପଡ଼ିବ ? ତେଣୁ ଏବିଷୟରେ କେହି ଅଗ୍ରସର ହେଲେ ନାହିଁ । ଗୃହିଣୀଙ୍କ ନିକଟରେ ଏସମ୍ବାଦ ଅତିରଞ୍ଜିତ ହୋଇ ପହଞ୍ଚିଲା; ସେ ଭୟରେ ଅଭିଭୂତା ହୋଇ ବୁଝାଇ କହିବାପାଇଁ ଠାକୁରଙ୍କୁ ଅନୁରୋଧ କଲେ; କାରଣ, 'ବାବା'ଙ୍କ ଭିନ୍ନ ସେମାନଙ୍କୁ ଏହି ବିପଦରୁ କିଏ ରକ୍ଷା କରିବ ?—ବାବୁଙ୍କର ଯଦି ବାସ୍ତବରେ ମୁଣ୍ଡ ଖରାପ ହୋଇଥାଏ !

**ଠାକୁର ମଥୁରବାବୁଙ୍କୁ ବୁଝାଇବା :**

ଠାକୁର ଯାଇ ଦେଖିଲେ, ମଥୁରଙ୍କର ମୁଖ ଗମ୍ଭୀର ତଥା ରକ୍ତବର୍ଣ୍ଣ, ଦୁଇଚକ୍ଷୁ ରକ୍ତବର୍ଣ୍ଣ, ଅତ୍ୟନ୍ତ ବ୍ୟାକୁଳ ହୋଇ ଘର ଭିତରେ ବୁଲୁଛନ୍ତି । ତାଙ୍କୁ ଦେଖି ମଥୁର ପାଖକୁ ଆସିଲେ ଏବଂ କହିଲେ, ''ବାବା, ଯିଏ ଯାହା କହୁ, ମୁଁ ବଞ୍ଚି ଥାଉ ଥାଉ ମା'ଙ୍କୁ ବିସର୍ଜନ ଦେଇପାରିବି ନାହିଁ । କହିଦେଇଛି, ପ୍ରତିଦିନ ନିତ୍ୟ ପୂଜା କରିବି । ମା'ଙ୍କୁ ଛାଡ଼ି ରହିବି କିପରି ?''

ଠାକୁର ତାଙ୍କର ଛାତିରେ ହାତ ବୁଲାଉ ବୁଲାଉ କହିଲେ, ''ଓଃ, ଏହି ତୁମର ଭୟ ? ମା'କୁ ଛାଡ଼ି ତୁମକୁ ରହିବାକୁ ହେବ କିଏ କହିଲା ? ଆଉ ବିସର୍ଜନ ଦେଲେ ମଧ୍ୟ ସେ କେଉଁଠାକୁ ଯିବେ ? ସନ୍ତାନକୁ ଛାଡ଼ି ମା' କ'ଣ କେବେ ରହିପାରେ ? ଏହି ତିନିଦିନ ଧରି ବାହାରେ ମଣ୍ଡପରେ ବସି ତୁମର ପୂଜା ଗ୍ରହଣ କରୁଥିଲେ, ଆଜିଠାରୁ ତୁମର ଆହୁରି ନିକଟରେ ରହି, ସର୍ବଦା ତୁମର ହୃଦୟରେ ଅବସ୍ଥାନ କରି ତୁମର ପୂଜା ଗ୍ରହଣ କରିବେ ।''

## ଠାକୁରଙ୍କ କଥା ଓ ସ୍ପର୍ଶର ଅଦ୍ଭୁତ ଶକ୍ତି :

କିପରି ଏକ ଅଦ୍ଭୁତ ମୋହିନୀ ଶକ୍ତି ଯେ ଠାକୁରଙ୍କର ସ୍ପର୍ଶ ଓ କଥାରେ ଥିଲା, ତାହା ବୁଝାଇବା କଷ୍ଟକର ! ଦେଖାଯାଇଛି, ଅନେକ ସମୟରେ ଲୋକମାନେ ଆସି ତାଙ୍କ ସହିତ କୌଣସି ବିଷୟରେ ବିରୁଦ୍ଧ ମତ ଅବଲମ୍ବନ କରି ଖୁବ୍ ତର୍କ କରୁଛନ୍ତି — ତାଙ୍କର ସିଦ୍ଧାନ୍ତ କୌଣସି ମତେ ଗ୍ରହଣ କରୁ ନାହାନ୍ତି, ଠାକୁର ସେତେବେଳେ କୌଶଳ କରି କୌଣସି ମତେ ତାଙ୍କ ଅଙ୍ଗ ସ୍ପର୍ଶ କରି ଦେଉଥିଲେ; ତତ୍କ୍ଷଣାତ୍ ସେହି ଲୋକର ମନର ସ୍ରୋତ ଯେପରି ବଦଳିଯାଉଥିଲା ଏବଂ ସେହି ଲୋକ ନିଜ ତର୍କ ଭୁଲି ଠାକୁରଙ୍କର ସିଦ୍ଧାନ୍ତ ସମ୍ପୂର୍ଣ୍ଣ ଭାବରେ ମାନି ଯାଉଥିଲେ ! ଏବିଷୟରେ ସେ ଆମମାନଙ୍କ ମଧ୍ୟରୁ କେତେଜଣଙ୍କୁ କହିଛନ୍ତି — ''କଥା କହି କହି ଏପରି ଛୁଇଁ ଦିଏ କାହିଁକି ଜାଣିଛ ? ଯେଉଁ ଶକ୍ତିରେ ସେମାନଙ୍କର ଏପରି ଜିଦ୍ ଥାଏ, ତା'ର ପ୍ରଭାବ କମିଯାଇ ଠିକ୍‌ଭାବରେ ସତ୍ୟଟାକୁ ଉପଲବ୍ଧି କରିପାରିବ ବୋଲି ।'' ଏହିପରି ସ୍ପର୍ଶମାତ୍ରେ ଅନ୍ୟର ଯଥାର୍ଥ ସତ୍ୟ ଉପଲବ୍ଧି କରିବାର ପଥରେ ଅନ୍ତରାୟସ୍ୱରୂପ ଦଣ୍ଡାୟମାନ ଶକ୍ତିସମୂହକୁ ନିଜ ଭିତରକୁ ଟାଣି ନେଇ ତା'ର ପ୍ରଭାବ କମାଇ ଦେଇ କିମ୍ବା ତାହା ଚିରଦିନ ପାଇଁ ଏକାଥରକେ ହରଣ କରିବା ସମ୍ବନ୍ଧରେ ଅନେକ ଦୃଷ୍ଟାନ୍ତ ଠାକୁରଙ୍କର ଜୀବନରେ ଦେଖିଅଛୁ ଓ ଶୁଣିଅଛୁ । ଦେଖିଛୁ, ଯେଉଁ ସବୁ କଥା ଅନ୍ୟର ମୁଖରୁ ବାହାରି କାହା ମନରେ କୌଣସି ପ୍ରକାର ଭାବର ଉଦୟ କଲା ନାହିଁ, ସେହି ସମସ୍ତ କଥା ପୁଣି ତାଙ୍କ ମୁଖନିଃସୃତ ହୋଇ ମାନବ ହୃଦୟରେ ଏପରି ଅଦମ୍ୟ ଆଘାତ କରିଛି ଯେ, ସେହିକ୍ଷଣରୁ ଶ୍ରୋତାର ଜୀବନର ଗତି ପରିବର୍ତ୍ତିତ ହୋଇଯାଇଛି ! ସେସମସ୍ତ ପାଠକଙ୍କୁ ସବିସ୍ତାର କହିବା ପାଇଁ ଅନ୍ୟ କୌଣସି ସମୟରେ ଚେଷ୍ଟା କରିବୁ । ବର୍ତ୍ତମାନ ମଥୁରବାବୁଙ୍କ କଥା କୁହାଯାଉ ।

## ମଥୁରବାବୁ କିପରି ପ୍ରକୃତିସ୍ଥ ହୋଇଥିଲେ :

ଠାକୁରଙ୍କ କଥାରେ ଓ ସ୍ପର୍ଶରେ ମଥୁରବାବୁ ଧୀରେ ଧୀରେ ପ୍ରକୃତିସ୍ଥ ହେଲେ । ତାଙ୍କର ଏପରି ପ୍ରକୃତିସ୍ଥ ହେବା ମୂଳରେ ଠାକୁରଙ୍କ ଇଚ୍ଛା ଏବଂ ସ୍ପର୍ଶରେ କୌଣସି ପ୍ରକାର ଦର୍ଶନ ହୋଇଥିଲା କି ନାହିଁ, ଆମକୁ ଜଣା ନାହିଁ । ତେବେ ମନେହୁଏ, ତାହା ହିଁ ସମ୍ଭବ । ମନେହୁଏ, ଶ୍ରୀଶ୍ରୀଜଗଦମ୍ବାଙ୍କର ମୂର୍ତ୍ତି ତାଙ୍କ ହୃଦୟକନ୍ଦର ଅପୂର୍ବ ଆଲୋକରେ ଉଜ୍ଜ୍ୱଳ କରି ବିଦ୍ୟମାନ ଦେଖିପାରି ହିଁ ତାଙ୍କର ଆନନ୍ଦ ଶତଗୁଣରେ ବର୍ଦ୍ଧିତ ହୋଇଉଠିଲା ଏବଂ ବାହାରର ପ୍ରତିମା ରକ୍ଷା କରିବାକୁ ମନରେ ଯେଉଁ ଝୁଙ୍କ ଉଠିଥିଲା, ତାହା କମିଗଲା । ଯଥାର୍ଥ ଗୁରୁ ଏହିପରି ଉଚ୍ଚତର ଲକ୍ଷ୍ୟର ଉଜ୍ଜ୍ୱଳପ୍ରଭା ପ୍ରତି ଶିଷ୍ୟର ଦୃଷ୍ଟି ଆକୃଷ୍ଟ କରିଦିଅନ୍ତି ।

ଫଳରେ ସେତେବେଳେ ନିମ୍ନସ୍ତରର ଭାବଦର୍ଶନାଦି ତାଙ୍କ ମନରୁ ଆପେ ଆପେ ଚାଲିଯାଏ ।

**ଠାକୁରଙ୍କୁ ପରୀକ୍ଷା କରିବାର ଫଳସ୍ୱରୂପ ମଥୁରବାବୁଙ୍କ ମନରେ ଅବିଚଳ ଭକ୍ତି-ବିଶ୍ୱାସ ଉଦୟ ହୋଇଥିଲା :**

ମଥୁରଙ୍କର ଭକ୍ତି ଓ ବିଶ୍ୱାସ ଆମମାନଙ୍କ ଆଖିରେ ଅଦ୍ଭୁତ ବୋଲି ପ୍ରତୀୟମାନ ହେଲେ ମଧ୍ୟ ଏହା ଯେ ଠାକୁରଙ୍କୁ ନାନାରୂପରେ ପରୀକ୍ଷା ଫଳରେ ହିଁ ହୋଇଥିଲା, ଏଥିରେ ସନ୍ଦେହ ନାହିଁ । ମଥୁରବାବୁ ଧନ ଦେଇ, ସୁନ୍ଦରୀ ରମଣୀ ଦେଇ, ନିଜର ଓ ଘରର ସମସ୍ତଙ୍କ ଉପରେ ଅକୁଣ୍ଠ ପ୍ରଭୁତ୍ୱ ଦେଇ, ଠାକୁରଙ୍କର ଆତ୍ମୀୟବର୍ଗ — ଯଥା, ହୃଦୟ ପ୍ରଭୃତିଙ୍କ ପାଇଁ ଅକାତରରେ ଅର୍ଥ ବ୍ୟୟ କରି, ସବୁ ପ୍ରକାରରେ ଠାକୁରଙ୍କୁ ପରୀକ୍ଷା କରି ଦେଖିଥିଲେ ଯେ, ଠାକୁର ଅନ୍ୟ ସାଧାରଣ ଲୋକମାନଙ୍କ ପରି ବାହାର କଥାରେ ଆଦୌ ଭୁଲନ୍ତି ନାହିଁ । ବାହ୍ୟିକ ଭାବ-ଭକ୍ତିର କପଟାବରଣ ତାଙ୍କର ସୂକ୍ଷ୍ମଦୃଷ୍ଟି ପାଖରେ ଲୁଚିରହିପାରେ ନାହିଁ ! ଆହୁରି ମଧ୍ୟ ନରହତ୍ୟାଦି ଦୁଷ୍କର୍ମ କରି ମଧ୍ୟ ମନ-ମୁହଁ ଏକକରି ଯଥାର୍ଥ ସରଳ ଭାବରେ ଯଦି କେହି ତାଙ୍କର ଶରଣ ଗ୍ରହଣ କରେ, ତେବେ ତା'ର 'ସାତଖୁନ୍ ମାଫ୍' କରି ତାକୁ ସାଦରେ ଗ୍ରହଣ କରିଥାଆନ୍ତି, ଦିନକୁ ଦିନ ଉଚ୍ଚ ଲକ୍ଷ୍ୟ ଚିହ୍ନିବାର ଓ ଧରିବାର ସାମର୍ଥ୍ୟ ଦିଅନ୍ତି ଏବଂ କୌଣସି ଏକ ବିଚିତ୍ର ଶକ୍ତି-ବଳରେ ତାଙ୍କ ପାଇଁ ଅସମ୍ଭବ ମଧ୍ୟ ସମ୍ଭବ ହୋଇଯାଏ !

**ମଥୁରଙ୍କର ଭାବସମାଧିଲାଭ କରିବାର ଇଚ୍ଛା :**

ଠାକୁରଙ୍କ ସହିତ ରହି ଏବଂ ଭାବସମାଧିରେ ତାଙ୍କର ଅସୀମ ଆନନ୍ଦ ଅନୁଭବ ଦେଖି ବିଷୟୀ ମଥୁରବାବୁଙ୍କର ମଧ୍ୟ ଏକ ସମୟରେ ଇଚ୍ଛା ହୋଇଥିଲା, ଏହା କ'ଣ ଥରେ ଦେଖିବେ ଓ ବୁଝିବେ । ମଥୁରବାବୁଙ୍କର ସେତେବେଳେ ହୃଦୟରେ ଦୃଢ଼ ଧାରଣା ହୋଇଥିଲା, 'ବାବା ଇଚ୍ଛା କରିବା ମାତ୍ରେ ଏସମସ୍ତ କରିଦେଇପାରନ୍ତି । କାରଣ, ଶିବ କୁହ, କାଳୀ କୁହ, ଭଗବାନ କୁହ, କୃଷ୍ଣ କୁହ, ରାମ କୁହ — ସବୁ ତ ସେ ନିଜେ ! — ତେବେ ଆଉ ଚିନ୍ତା କ'ଣ ! କୃପା କରି କାହାକୁ ନିଜର ଯେକୌଣସି ମୂର୍ତ୍ତି ଯେ ଦେଖାଇପାରିବେ, ଏଥିରେ ବିଚିତ୍ର କ'ଣ ଅଛି !' ବାସ୍ତବିରେ ଏହା କିଛି କମ୍ ଅଦ୍ଭୁତ କଥା ନୁହେଁ । ଠାକୁରଙ୍କ ଦର୍ଶନଲାଭ ପରେ ଯେଉଁମାନେ ତାଙ୍କ ସହିତ ଘନିଷ୍ଠଭାବରେ ମିଶିଛନ୍ତି, ସେମାନଙ୍କର ସମସ୍ତଙ୍କର ହିଁ କ୍ରମେ କ୍ରମେ ଏପରି ଧାରଣା ହେଉଥିଲା ! ସମସ୍ତେ ମନେ କରୁଥିଲେ, ଏହାଙ୍କର ଇଚ୍ଛାରେ ଅସମ୍ଭବ ସମ୍ଭବ ହୁଏ — ସେ ଇଚ୍ଛାମାତ୍ରେ ହିଁ ଧର୍ମଜଗତର ସମସ୍ତ ସତ୍ୟକୁ ଯେ କୌଣସି ଲୋକଙ୍କୁ ଉପଲବ୍ଧି କରାଇଦେଇପାରନ୍ତି । ଆଧ୍ୟାତ୍ମିକ ଶକ୍ତି ଓ ନିଜ ପୂତ ଚରିତ୍ର ବଳରେ ଜଣଙ୍କର ପ୍ରାଣରେ ମଧ୍ୟ ସେହି ପ୍ରକାର ଭାବ

ଉଦୟ କରାଇବା କଠିନ— ତା'ପୁଣି ଅନେକଙ୍କ ପ୍ରାଣରେ ! ଏହା କେବଳ ଅବତାରପୁରୁଷ ହିଁ କରିବାକୁ ସକ୍ଷମ ହୋଇଥାନ୍ତି । ସେମାନଙ୍କର ଅବତାରତ୍ୱର ବିଶିଷ୍ଟ ପ୍ରମାଣଗୁଡ଼ିକ ମଧ୍ୟରୁ ଏହା କିଛି କମ୍ ପ୍ରମାଣ ନୁହେଁ । ତା'ସହିତ ଏହି ମିଥ୍ୟା, ଶଠତା ଓ ପ୍ରତାରଣାର ରାଜ୍ୟରେ ସେମାନଙ୍କ ନାମରେ ଅନେକ ମିଥ୍ୟା ଲୁଆଚୋରି ଚାଲିବ ବୁଝି ହିଁ, ସେମାନେ ସମସ୍ତଙ୍କ ସମ୍ମୁଖରେ ଦମ୍ଭ ସହକାରେ କହିଦିଅନ୍ତି, ''ମୋର ଅଦର୍ଶନ ପରେ ଅନେକ ଭଣ୍ଡ 'ମୁଁ ଅବତାର, ମୁଁ ଦୁର୍ବଳ ଜୀବର ଶରଣ ଓ ମୁକ୍ତିଦାତା' କହି ତୁମ ସମ୍ମୁଖରେ ଉପସ୍ଥିତ ହେବେ; ସାବଧାନ, ସେମାନଙ୍କ କଥାରେ ଭୁଲିବ ନାହିଁ ।''[୧]

## ସେଥିପାଇଁ ଠାକୁରଙ୍କ ନିକଟରେ ପ୍ରାର୍ଥନା :

ମଥୁରଙ୍କ ମନରେ ଏପରି ଭାବର ଉଦୟ ହେବା ମାତ୍ରେ, ଠାକୁରଙ୍କୁ ଯାଇ ଧରିଲେ । ଠାକୁରଙ୍କୁ କହିଲେ, ''ବାବା, ମୋର ଯେଉଁଥିରେ ଭାବ ସମାଧି ହେବ, ତାହା ତୁମକୁ କରିଦେବାକୁ ହିଁ ହେବ ।'' ଏପରି କଥାରେ ଠାକୁର ଯେପରି ସବୁ ସମୟରେ କହନ୍ତି, ସେହିପରି ହିଁ କହିଥିଲେ, ଏହା ଆମେ ବେଶ୍ ବୁଝିପାରୁଛୁ । ଠାକୁର କହିଲେ, ''ଆରେ, ଯଥା ସମୟରେ ହେବ, ଯଥା ସମୟରେ ହେବ । ଗୋଟିଏ ମଞ୍ଜି ପଡ଼ିଲା ମାତ୍ରେ କ'ଣ ଗଛ ହୋଇଯାଏ ଓ ତା'ର ଫଳ ଖାଇବାକୁ ମିଳେ ? କାହିଁକି, ତୁ ତ ବେଶ୍ ଅଛୁ—ଏଦିଗ ସେଦିଗ ଦୁଇ ଦିଗ ଚାଲୁଛି । ଏସମସ୍ତ ହେଲେ ସେଦିଗରୁ (ସଂସାରରୁ) ମନ ଛାଡ଼ିଯିବ, ସେତେବେଳେ ତୋର ବିଷୟ-ସମ୍ପତ୍ତି କିଏ ରକ୍ଷା କରିବ ? ବାହାର ଲୋକ ସବୁ ଲୁଟିନେବେ । ସେତେବେଳେ କ'ଣ କରିବୁ ?''

## ଉଦ୍ଧବ ଓ ଗୋପୀମାନଙ୍କ ଦୃଷ୍ଟାନ୍ତରେ ଠାକୁର ତାଙ୍କୁ ବୁଝାଇବା :

ଏସବୁ କଥା ସେତେବେଳେ ଶୁଣେ କିଏ ? ମଥୁରବାବୁ ଏକଦମ୍ 'ନ ଛୋଡ଼ ବନ୍ଦା'—'ବାବା' ଭାବସମାଧି କରିଦେବାକୁ ହିଁ ହେବ । ଏପରି ବୁଝାଇବାରେ ଫଳ ନ ମିଳିବାରୁ ଠାକୁର ଆଉ ଏକ ଉପାୟ ଖୋଜିଲେ । କହିଲେ, ''ଆରେ, ଭକ୍ତମାନେ କ'ଣ ଦେଖିବାକୁ ଚାହାଁନ୍ତି ? ସେମାନେ କେବଳ ସେବା କରିବାକୁ ହିଁ ଚାହାନ୍ତି । ଦେଖିଲେ ଶୁଣିଲେ (ଈଶ୍ୱରଙ୍କର) ଐଶ୍ୱର୍ଯ୍ୟଜ୍ଞାନରେ ଭୟ ଆସେ, ଭଲ ପାଇବା ଢାଙ୍କି ହୋଇଯାଏ । ଶ୍ରୀକୃଷ୍ଣଙ୍କର ମଥୁରା ଗମନରେ ଗୋପୀମାନେ ବିରହରେ ଆକୁଳ ! ଶ୍ରୀକୃଷ୍ଣ ସେମାନଙ୍କ ଅବସ୍ଥା ଜାଣି ଉଦ୍ଧବଙ୍କୁ ସେମାନଙ୍କ ନିକଟକୁ ବୁଝାସୁଝା କରିବାକୁ ପଠାଇଲେ । ଉଦ୍ଧବ ଜ୍ଞାନୀ ଥିଲେ ତ' ! ବୃନ୍ଦାବନର କନ୍ଦାକଟା ଭାବ, ଖୁଆଇବା, ପିନ୍ଧାଇବା ଇତ୍ୟାଦି ଉଦ୍ଧବ ବୁଝିପାରୁ ନ ଥିଲେ । ଗୋପୀମାନଙ୍କର ଶୁଦ୍ଧ ଭଲ ପାଇବା ମାୟିକ ଓ ଛୋଟ ବୋଲି ଭାବୁଥିଲେ;

୧. ଈଶା— (Mathewe xxiv-11, 23, 24, 25, 26)

ତାଙ୍କର ମଧ ଦେଖି ଶୁଣି ଶିକ୍ଷା ହେବ ତାହା ମଧ ଗୋଟିଏ ଉଦ୍ଦେଶ୍ୟ ଥିଲା । ଉଦ୍ଧବ ବୃନ୍ଦାବନକୁ ଆସି ଗୋପୀମାନଙ୍କୁ ବୁଝାଇବାକୁ ଲାଗିଲେ — 'ତୁମେମାନେ ସବୁ କୃଷ୍ଣ, କୃଷ୍ଣ ବୋଲି ଏମିତି କାହିଁକି ହେଉଛ ? ଜାଣିଛ ତ, ସେ ଭଗବାନ, ସର୍ବତ୍ର ବିଦ୍ୟମାନ; ସେ ମଥୁରାରେ ଅଛନ୍ତି ଆଉ ବୃନ୍ଦାବନରେ ନାହାନ୍ତି, ଏହାତ ହୋଇପାରେ ନାହିଁ । ଏପରି ହା-ହୁତାଶ ନ ହୋଇ ଥରେ ଚକ୍ଷୁ ବୁଜି ଦେଖ, ଦେଖିବ, ତୁମମାନଙ୍କ ହୃଦୟ ମଧରେ ସେହି ନବଘନଶ୍ୟାମ ମୁରଲୀବଦନ ବନମାଳୀ ସର୍ବଦା ରହିଛନ୍ତି' — ଇତ୍ୟାଦି । ତାହାଶୁଣି ଗୋପୀମାନେ କହିଥିଲେ, 'ଉଦ୍ଧବ, ତୁମେ କୃଷ୍ଣଙ୍କର ସଖା, ଜ୍ଞାନୀ, ତାସତ୍ତ୍ୱେ ଏସବୁ କଥା କ'ଣ କହୁଛ ! ଆମେ କ'ଣ ଧ୍ୟାନୀ ନା ଜ୍ଞାନୀ, ନା ଋଷି-ମୁନିଙ୍କ ପରି ଜପ ତପ କରି ତାଙ୍କୁ ପାଇଛୁ ? ଆମେ ଯାହାଙ୍କୁ ସାକ୍ଷାତ୍ ସଜାଇଛୁ, ଖୁଆଇଛୁ, ପିନ୍ଧାଇଛୁ, ଧ୍ୟାନ କରି ତାଙ୍କୁ ପୁଣି ଏସବୁ କ'ଣ କରିବାକୁ ଯିବୁ ? ଆମେ ସେସବୁ କ'ଣ ଆଉ କରିପାରିବୁ ? ଯେଉଁ ମନ ଦେଇ ଧ୍ୟାନ-ଜପ କରିବୁ, ସେହି ମନ ଆମର ରହିଲେ ତ ତାହା ଦ୍ୱାରା ଏସବୁ କରିବୁ ! ସେହି ମନକୁ ବହୁଦିନରୁ କୃଷ୍ଣଙ୍କ ପାଦପଦ୍ମରେ ଅର୍ପଣ କରିଦେଇଛୁ ! ଆମମାନଙ୍କର ନିଜର କହିବାକୁ ଆମଠାରେ ଆଉ କ'ଣ ଅଛି ଯେ, ଯାହା ଦ୍ୱାରା ଅହଂ-ବୁଦ୍ଧି କରି ଜପ କରିବୁ ?' ଏହା ଶୁଣି ଉଦ୍ଧବ ହତବାକ୍ ! ସେତେବେଳେ ଉଦ୍ଧବ ଗୋପୀମାନଙ୍କର କୃଷ୍ଣଙ୍କ ପ୍ରତି ଭଲପାଇବା ଯେ କେତେ ଗଭୀର ଏବଂ କି ବସ୍ତୁ, ତାହା ବୁଝିପାରି ସେମାନଙ୍କୁ ତାଙ୍କ ଗୁରୁ ବୋଲି ପ୍ରଣାମ କରି ଚାଲିଆସିଲେ ! ଏଥିରୁ ବୁଝିନିଅ, ଠିକ୍ ଠିକ୍ ଭକ୍ତ କ'ଣ ତାଙ୍କୁ ଦେଖିବାକୁ ଚାହେଁ ? ତାଙ୍କର ସେବାରେ ହିଁ ତା'ର ପରମାନନ୍ଦ । ଏହାଠାରୁ ଅଧିକ — ଦେଖା, ଶୁଣା, ସେ ଚାହେଁ ନାହିଁ; ସେଥିରେ ତାର ଭାବର ହାନି ହୁଏ ।'' ଏଥିରେ ମଧ ଯେତେବେଳେ ମଥୁରବାବୁ ବୁଝିଲେ ନାହିଁ, ସେତେବେଳେ ଠାକୁର କହିଲେ, ''ମୁଁ ତ କିଛି ଜାଣେ ନାହିଁ, ବାବୁ ? ମା'କୁ କହିବି, ସେ ଯାହା କରିବେ ।''

## ମଥୁରବାବୁଙ୍କର ଭାବସମାଧି ହେବା ଓ ପ୍ରାର୍ଥନା :

ଏହାର କେତେଦିନ ପରେ ମଥୁରବାବୁଙ୍କର ଦିନେ ଭାବସମାଧି ହେଲା ! ଠାକୁର କହିଥିଲେ, ''ମୋତେ ଡକାଇ ପଠାଇଲା । ଯାଇ ଦେଖେ, ଯେପରି ସେ ସେହି ମଣିଷ ନୁହେଁ । ଆଖି ଲାଲ, ଜଳ ବୋହୁଛି; ଈଶ୍ୱରୀୟ କଥା କହୁ କହୁ କାନ୍ଦି ଭସାଇଦେଉଛି ! ପୁଣି ଛାତି ଥର ଥର ହୋଇ କମ୍ପୁଛି । ମୋତେ ଦେଖି ଏକାଥରକେ ପାଦ ଦୁଇଟାକୁ ଜାବୁଡ଼ି ଧରି କହିଲା, 'ବାବା ଭୁଲ୍ ହୋଇଛି ! ଆଜିକୁ ତିନିଦିନ ଧରି ଏହିପରି, ବିଷୟକର୍ମ ଆଡ଼େ ଚେଷ୍ଟା କଲେ ମଧ ମନ ଯାଉ ନାହିଁ ! ସବୁ ଆଡ଼େ ଖରାପ ହୋଇଗଲା । ତୁମର ଭାବ ତୁମେ ଫେରାଇ ନିଅ, ମୋର ଦରକାର ନାହିଁ ।' କହିଲି — 'କାହିଁକି ? ତୁ କହିଥିଲୁ ଯେ ଭାବ ହେଉ ?'

ସେତେବେଳେ ସେ କହିଲା, 'କହିଥିଲି, ଆନନ୍ଦ ତ'ଅଛି; କିନ୍ତୁ ହେଲେ କ'ଣ ହେବ, ଏପାଖରେ ତ ସବୁ ସରିଲା । ବାବା, ଏହା ତୁମର ଭାବ, ତୁମଠାରେ ଶୋଭାପାଏ । ମୋର ଏଥିରେ କାମ ନାହିଁ ! ଫେରାଇ ନିଅ ।' ତେଣୁ ମୁଁ ହସି ହସି କହିଲି, 'ତୋତେ ମୁଁ ଏକଥା ପ୍ରଥମରୁ ହିଁ କହିଛି ?' ସେ କହିଲା, 'ହଁ ବାବା, ମୁଁ ସେତେବେଳେ କ'ଣ ଏତେସବୁ ଜାଣିଥିଲି ଯେ, ଭୂତ ପରି ଆସି ମାଡ଼ି ବସିବ ? ଏବଂ ତା'ର ପ୍ରଭାବରେ ହିଁ ମୋତେ ଚବିଶ ଘଣ୍ଟା ରହିବାକୁ ହେବ ?—ଇଚ୍ଛା କଲେ ମଧ୍ୟ କିଛି କରିପାରିବି ନାହିଁ !' ସେତେବେଳେ ମୁଁ ପୁଣି ତାର ଛାତିରେ ହାତ ବୁଲାଇଦେଲି !''

### ତ୍ୟାଗୀ ନ ହେଲେ ଭାବସମାଧି ସ୍ଥାୟୀ ହୁଏ ନାହିଁ :

ବାସ୍ତବରେ ଭାବ ବା ସମାଧି ହେଲେ ହିଁ ସବୁକିଛି ହୋଇଯାଏ ନାହିଁ । ଏହାର ବେଗ ସହ୍ୟ କରିବାକୁ, ଏହାକୁ ଧରି ରଖିବାକୁ କେତେଜଣ ସମର୍ଥ ହେବେ ? କିଞ୍ଚିତ୍‌ମାତ୍ର ବାସନାର ପଶ୍ଚାତ୍‌ଟାଣ ରହିଲେ ଏହାକୁ ସମ୍ଭାଳିବା ଅସମ୍ଭବ । ଈଶ୍ୱରୀୟ ପଥର ପଥିକକୁ ଶାସ୍ତ୍ର ସେଥିପାଇଁ ପୂର୍ବରୁ ନିର୍ବାସନା ହେବାକୁ କହିଛନ୍ତି—**'ତ୍ୟାଗେନୈକେଽମୃତତ୍ୱମାନଶୁଃ'**—ଏକମାତ୍ର ତ୍ୟାଗବୈରାଗ୍ୟ ହିଁ ଅମୃତତ୍ୱ ଦେବାକୁ ସମର୍ଥ । କ୍ଷଣିକ ଭାବୋଚ୍ଛ୍ୱାସରେ ନିମ୍ନକୋଟିର ସମାଧି ହୋଇପାରେ କିନ୍ତୁ ଯାହାଙ୍କ ଭିତରେ ଧନ ହେଉ, ମାନ ହେଉ, ଇତ୍ୟାଦି ବାସନାସମୂହ ଭରି ରହିଛି, ସେପରି ଲୋକର ସେହି ଭାବ କେବେ ସ୍ଥାୟୀ ହୁଏ ନାହିଁ । ଆଚାର୍ଯ୍ୟ ଶଙ୍କର ଯେପରି କହିଛନ୍ତି—

> ଆପାତବୈରାଗ୍ୟବତୋ ମୁମୁକ୍ଷୁନ୍ ଭବାବ୍ଧିପାରଂ ପ୍ରତିୟାତୁମୁଦ୍ୟତାନ୍ ।
> ଆଶାଗ୍ରହୋ ମଜ୍ଜୟତେଽନ୍ତରାଳେ, ନିଗୃହ୍ୟ କଣ୍ଠେ ବିନିବର୍ତ୍ୟ ବେଗାତ୍ ॥
> —ବିବେକଚୂଡ଼ାମଣି, ୭୯

ଅର୍ଥାତ୍, ଯଥାର୍ଥ ବୈରାଗ୍ୟରୂପକ ସମ୍ବଳ ପ୍ରଥମେ ସଂଗ୍ରହ ନ କରି, ଭବସାଗରର ପରପାରିକୁ ଯିବାପାଇଁ ଯେଉଁମାନେ ଅଗ୍ରସର ହୁଅନ୍ତି, ବାସନାରୂପକ କୁମ୍ଭୀର ତାଙ୍କୁ ଘୋଷାଡ଼ି ଫେରାଇ ବଳପୂର୍ବକ ଅତଳଜଳରେ ବୁଡାଇ ଦିଏ ।

### ଏବିଷୟରେ ଦୃଷ୍ଟାନ୍ତ— କାଶୀପୁରର ବଗିଚାକୁ ଆସିଥିବା ଜନୈକ ଯୁବକର କଥା :

ବାସ୍ତବିକ, ଏପରି କେତେ ଦୃଷ୍ଟାନ୍ତ ଆମେ ଠାକୁରଙ୍କ ନିକଟରେ ଦେଖିଅଛୁ ! କାଶୀପୁରର ବଗିଚାରେ ଠାକୁର ସେତେବେଳେ ରହୁଥାଆନ୍ତି; ଦିନେ କେତେଜଣ ବୈଷ୍ଣବ ଭକ୍ତ ଜଣେ ଉନ୍ମନାଃ ଯୁବକଙ୍କୁ ସାଙ୍ଗରେ ଆଣି ପହଞ୍ଚିଲେ । ଏହା ପୂର୍ବରୁ ସେମାନେ କେବେ ଆସିବାର ଆମେ ଦେଖି ନାହୁଁ । ସେମାନଙ୍କର ଆସିବାର କାରଣ ହେଲା, ସାଙ୍ଗରେ ଥିବା ଯୁବକଟିକୁ ଥରେ ଠାକୁରଙ୍କୁ ଦେଖାଇବେ ଏବଂ

ତା'ର କେଉଁ ଆଧ୍ୟାତ୍ମିକ ଅବସ୍ଥା ହଠାତ୍ ଆସି ଉପସ୍ଥିତ ହୋଇଛି, ସେବିଷୟରେ ଠାକୁରଙ୍କ ମତାମତ ଜାଣିବେ । ଠାକୁରଙ୍କ ନିକଟକୁ ଏଖବର ପଠାଗଲା ।

ଆମେମାନେ ଯୁବକକୁ ଦେଖିଲୁ, ଛାତି ଓ ମୁହଁ ଲାଲ୍, ଦୀନଭାବରେ ସମସ୍ତଙ୍କ ପଦଧୂଳି ଗ୍ରହଣ କରୁଛି; ଭଗବାନଙ୍କ ନାମରେ ଘନ ଘନ କମ୍ପନ ଓ ପୁଲକ; ଏବଂ ଦୁଇଆଖିରୁ ଅବିଶ୍ରାନ୍ତ ଜଳଧାରା ନିର୍ଗତ ହୋଇ ଚକ୍ଷୁଦ୍ୱୟ ରକ୍ତିମ ଏବଂ କିଞ୍ଚିତ ସ୍ଫୀତ ମଧ୍ୟ ହୋଇଛି । ଦେଖିବାକୁ ଶ୍ୟାମବର୍ଣ୍ଣ, ନା ସ୍ଥୂଳ ନା କୃଶ, ମୁଖମଣ୍ଡଳ ଓ ଅଙ୍ଗପ୍ରତ୍ୟଙ୍ଗାଦି ସୁଶ୍ରୀ ଏବଂ ସୁଗଠିତ, ମସ୍ତକରେ ଶିଖା । ପରିଧାନରେ ଗୋଟିଏ ମଳିନ ଧଳାଧୋତି, ଦେହରେ ଉତ୍ତରୀୟ ନ ଥିଲା ବୋଲି ହିଁ ମନେହୁଏ; ପାଦରେ ଜୋତା ନାହିଁ; ଏବଂ ଶରୀର-ସଂସ୍କାର ବା ଶରୀର ରକ୍ଷା ବିଷୟରେ ସମ୍ପୂର୍ଣ୍ଣ ଉଦାସୀନ ! ଶୁଣିଲୁ ହରିସଂକୀର୍ତ୍ତନ କରୁ କରୁ ଦିନେ ହଠାତ୍ ଏହିପରି ଉତ୍ତେଜିତ ଅବସ୍ଥା ଉପସ୍ଥିତ ହୋଇଅଛି ଏବଂ ସେହି ଦିନଠାରୁ ଆହାର ଏକ ପ୍ରକାର ନାହିଁ କହିଲେ ଚଳେ, ନିଦ୍ରା ନାହିଁ ଏବଂ ଭଗବାନ ଲାଭ ହେଲା ନାହିଁ ବୋଲି ଦିବାରାତ୍ର କନ୍ଦାକଟା କରୁଛି ଓ ଭୂମିରେ ଗଡୁଛି ! କେତେଦିନ ହେଲା ଏପରି ହୋଇଅଛି ।

### ଆଧ୍ୟାତ୍ମିକ ଭାବର ଆତିଶଯ୍ୟରେ ଉପସ୍ଥିତ ବିକାରସମୂହ ଚିହ୍ନିବାରେ ଠାକୁରଙ୍କର ଶକ୍ତି । ଗୁରୁ ଯଥାର୍ଥ ହିଁ ଭବରୋଗ-ବୈଦ୍ୟ :

ଅତ୍ୟନ୍ତ ଆଧ୍ୟାତ୍ମିକ ଭାବସମୂହର ଆତିଶଯ୍ୟରେ ମାନବ ଶରୀରରେ ଯେଉଁ ସମସ୍ତ ବିକାର ଆସି ଉପସ୍ଥିତ ହୁଏ, ତାହା ଜାଣିବା ଓ ଚିହ୍ନିପାରିବା ଶକ୍ତି ଠାକୁରଙ୍କଠାରେ ଯେପରି ଦେଖିଛୁ, ଏପରି ଅନ୍ୟ କେଉଁଠାରେ ଦେଖି ନାହୁଁ ! ଗୁରୁଗୀତାଦିରେ ଶ୍ରୀଗୁରୁଙ୍କୁ 'ଭବରୋଗ-ବୈଦ୍ୟ' ଇତ୍ୟାଦି ଶବ୍ଦରେ ଅଭିହିତ କରାଯାଇଅଛି; ତାହା ମଧ୍ୟରେ ଯେ ଏତେ ଗୂଢ଼ ଅର୍ଥ ଅଛି, ତାହା ଠାକୁରଙ୍କର ପୁଣ୍ୟଦର୍ଶନଲାଭ ପୂର୍ବରୁ ଆଦୌ ବୁଝି ନାହୁଁ । ଶ୍ରୀଗୁରୁ ଯେ ବାସ୍ତବରେ ମାନସିକ ରୋଗର ବୈଦ୍ୟ, ଏବଂ ଭିନ୍ନ ଭିନ୍ନ ଆଧ୍ୟାତ୍ମିକଭାବରେ ମାନବ ମନରେ ଯେଉଁ ଯେଉଁ ବିକାର ଆସି ଉପସ୍ଥିତ ହୁଏ, ତାହା ଦେଖିବା ମାତ୍ରେ ଚିହ୍ନିପାରି, ଲକ୍ଷଣଗୁଡ଼ିକ ପରୀକ୍ଷା କରି ଅନୁକୂଳ ପ୍ରତୀତ ହେଲେ, ତାହା ଯେପରି ସାଧକର ମନରେ ସହଜ ହୋଇଯାଏ ଓ ତାହାକୁ ଉଚ୍ଚତର ଭାବସୋପାନରେ ଆରୋହଣ କରିବାର କ୍ଷମତା ଦିଏ, ତାହାର ଏପରି ବ୍ୟବସ୍ଥା କରିଦିଅନ୍ତି ଏବଂ ପ୍ରତିକୂଳ ବୁଝିଲେ ତାହା ଯେପରି ସାଧକର ଅନିଷ୍ଟ ସାଧନ ନ କରି ଧୀରେ ଧୀରେ ଅପନୀତ ହୋଇଯାଏ, ସେ ବିଷୟରେ ମଧ୍ୟ ବ୍ୟବସ୍ଥା କରନ୍ତି, ଏହି କଥା ପୂର୍ବରୁ ଆଦୌ ଜଣା ନ ଥିଲା । ଠାକୁରଙ୍କୁ ପ୍ରତିଦିନ ଏପରି କରିବା ଦେଖି ମନରେ ସେବିଷୟର ଦୃଢ଼ ଧାରଣା ହୋଇଅଛି । ଆମେ ଦେଖିଛୁ—ପୂଜ୍ୟପାଦ ସ୍ୱାମୀ ବିବେକାନନ୍ଦଙ୍କର ପ୍ରଥମ

ନିର୍ବିକଳ୍ପ ସମାଧିଲାଭ ହେଲା ପରେ ଠାକୁର ତାଙ୍କ ପାଇଁ ବ୍ୟବସ୍ଥା କରିଥିଲେ ଯେ, ''ତୁ ଏବେ କେତେଦିନ କାହା ହାତରେ ଖାଇବୁ ନାହିଁ, ନିଜେ ରୋଷେଇ କରି ଖାଇବୁ । ଏହି ଅବସ୍ଥାରେ ଖୁବ୍ ବେଶୀ ହେଲେ ନିଜର ମା'ଙ୍କ ହାତରୁ ଖାଇବା ଚଳିବ, ଅନ୍ୟ କାହା ହାତରୁ ଖାଇଲେ ହିଁ ଏଭାବ ନଷ୍ଟ ହୋଇଯାଏ ! ପରେ ଏହା ସହଜ ହୋଇଉଠିଲେ, ସେତେବେଳେ ଆଉ ଭୟ ନାହିଁ !'' ଗୋପାଳ ମା'ଙ୍କର ବାୟୁ ବୃଦ୍ଧିରେ ଶାରୀରିକ ଯନ୍ତ୍ରଣା ଦେଖି କହିଥିଲେ, ''ତାହା ତୋର ହରିଙ୍କର ଉଦ୍ଦୀପନ କରୁଥିବା ବାୟୁ, ତାହା ଗଲେ କ'ଣ ନେଇ ରହିବୁ ? ତାହା ରହିବା ଦରକାର; ତେବେ ଯେତେବେଳେ ବିଶେଷ କଷ୍ଟ ହେବ, ସେତେବେଳେ ଯାହା ହେଉ ପଛେ କିଛି ଖାଇବୁ ।'' ଜନୈକ ଭକ୍ତଙ୍କର ବାହ୍ୟିକ ଶୌଚରେ ଅତ୍ୟନ୍ତ ଅଭ୍ୟାସ ଓ ଅନୁରାଗ ପାଇଁ ଶରୀର ଭୁଲି ମନ ଏକାନ୍ତ ଭାବେ ଈଶ୍ୱରଙ୍କଠାରେ ତନ୍ମୟ ହେଉ ନାହିଁ ଦେଖି ଗୋପନରେ ବ୍ୟବସ୍ଥା କରିଥିଲେ, ''ଲୋକମାନେ ଯେଉଁଠାରେ ମଳ ମୂତ୍ର ତ୍ୟାଗ କରନ୍ତି, ସେଠାର ମାଟିରେ ତୁମେ ଦିନେ ଟୋପା ଲଗାଇ ଈଶ୍ୱରଙ୍କୁ ଡାକିବ ।'' ଜଣକର ସଂକୀର୍ତ୍ତନରେ ଉଦ୍ଦାମ ଶାରୀରିକ ବିକାର ତାହାର ଉନ୍ନତିର ପ୍ରତିକୂଳ ଦେଖି ତିରସ୍କାର କରିକହିଥିଲେ, ''ଶଳା, ମୋତେ ଭାବ ଦେଖାଇବାକୁ ଆସିଛି । ଯଥାର୍ଥ ଭାବହେଲେ କ'ଣ ଏପରି ହୁଏ ? ଡୁବି ଯାଏ; ସ୍ଥିର ହୋଇଯାଏ । ଏକ'ଣ ? ସ୍ଥିର ହୁଅ, ଶାନ୍ତ ହୋଇଯା' । (ଅନ୍ୟ ସମସ୍ତଙ୍କୁ ଲକ୍ଷ୍ୟ କରି) ଏସବୁ କିପରି ଭାବ ଜାଣିଛ ? ଯେପରି ଏକ ଛଟାଙ୍କି ଦୁଧ କଡ଼େଇରେ ରଖି ନିଆଁରେ ବସାଇ ଫୁଟାଉଛି; ମନେ ହେଉଛି, ସତେ ଯେପରି କେତେ କ୍ଷୀର, ପୂରା କଡ଼େଇ ଭର୍ତ୍ତି; ତା'ପରେ ଓହ୍ଲାଇ ଦେଖ ଟିକିଏ ବି ନାହିଁ, ଯେତିକି ଟିକିଏ କ୍ଷୀର ଥିଲା ତାହା କଡ଼େଇରେ ହିଁ ଲାଗିଯାଇଛି ।'' ଆଉ ଜଣକର ମନୋଭାବ ବୁଝି କହୁଛନ୍ତି, 'ଯାଃ ଶଳା, ଖାଇନେ, ପିନ୍ଧିନେ, ସବୁ କରିନେ, କିନ୍ତୁ କେଉଁଟା ଧର୍ମ କରୁଛୁ ବୋଲି କର ନାହିଁ' ଇତ୍ୟାଦି କେତେ ଲୋକଙ୍କର କେତେ କଥା ବା କହିବୁ !

### ସେହି ଯୁବକର ଅବସ୍ଥା ସମ୍ବନ୍ଧରେ ଠାକୁରଙ୍କ ମୀମାଂସା :

ସେହି ଯୁବକକୁ ଦେଖିବା ମାତ୍ରେ ଠାକୁର କହିଲେ, ''ମୁଁ ଯାହା ଦେଖୁଛି ଏହା ମଧୁରଭାବର[୧] ପୂର୍ବାଭାସ ! କିନ୍ତୁ ଏଅବସ୍ଥା ତା'ର ରହିବ ନାହିଁ, ରଖିପାରିବ ନାହିଁ । ଏହି ଅବସ୍ଥା ରଖିପାରିବା ବଡ଼ କଠିନ । ସ୍ତ୍ରୀଲୋକଙ୍କୁ ଛୁଇଁଲେ ହିଁ (କାମ

---

୧. ବୃନ୍ଦାବନରେ ଶ୍ରୀମତୀ ରାଧାରାଣୀଙ୍କର ଯେଉଁ ସର୍ବାଙ୍ଗସଂପୂର୍ଣ୍ଣ ଊନବିଂଶ ପ୍ରକାରର ଅଷ୍ଟସାତ୍ତ୍ୱିକ ଶାରୀରିକ ବିକାର ଶ୍ରୀକୃଷ୍ଣପ୍ରେମରେ ପ୍ରକାଶ ପାଉଥିଲା, ଯଥା — ହାସ୍ୟ, କ୍ରନ୍ଦନ, ଅଶ୍ରୁ, କମ୍ପ, ପୁଲକ, ସ୍ୱେଦ, ମୂର୍ଚ୍ଛା ଇତ୍ୟାଦି — ବୈଷ୍ଣବ-ଶାସ୍ତ୍ରରେ ଏହା ହିଁ ମଧୁରଭାବ ବୋଲି ନିର୍ଦ୍ଦିଷ୍ଟ ହୋଇଛି । ମଧୁରଭାବର ପରାକାଷ୍ଠାକୁ ହିଁ 'ମହାଭାବ' କୁହାଯାଏ । ଏହି ମହାଭାବରେ ହିଁ ଊନବିଂଶ ପ୍ରକାରର ଶାରୀରିକ ବିକାର ଈଶ୍ୱର ପ୍ରେମରେ ଆସି ଉପସ୍ଥିତ ହୁଏ । ଏହା ଜୀବ ପକ୍ଷରେ ସର୍ବାଙ୍ଗୀଣ ହେବା ଅସମ୍ଭବ ବୋଲି କଥିତ ଅଛି ।

ଭାବରେ) ଏଭାବ ଆଉ ରହିବ ନାହିଁ ! ସମ୍ପୂର୍ଣ୍ଣ ନଷ୍ଟ ହୋଇଯିବ ।'' ଯାହା ହେଉ, ଆଗନ୍ତୁକ ଭକ୍ତଗଣ ଠାକୁରଙ୍କ କଥାରେ ଯୁବକଟିର ଯେ ମୁଣ୍ଡ ଖରାପ ହୋଇ ନାହିଁ, ଏହା ଜାଣି ଅନେକାଂଶରେ ଆଶ୍ୱସ୍ତ ହୋଇ ଫେରିଗଲେ । ତା'ପରେ କିଛିଦିନ ପରେ ଖବର ମିଳିଲା—ଠାକୁର ଯାହା କହିଥିଲେ, ତାହା ହିଁ ହୋଇଅଛି—ଯୁବକଟିର କପାଳ ଫାଟିଛି ! ସଂକୀର୍ତ୍ତନର କ୍ଷଣିକ ଉତ୍ତେଜନାରେ ସେ ଭାଗ୍ୟବଳରେ ଯେତେ ଉପରକୁ ଉଠିଥିଲା, ହାୟ ହାୟ, ଭାବାବସାଦରେ ଦୁର୍ଭାଗ୍ୟରୁ ସେ ପୁଣି ସେତେ ତଳକୁ ଖସିଛି ! ପୂଜ୍ୟପାଦ ସ୍ୱାମୀ ବିବେକାନନ୍ଦ ସେହି ପ୍ରକାର ହେବାର ଭୟରେ ସର୍ବଦା ଜ୍ଞାନମିଶା ଭକ୍ତିର ପକ୍ଷପାତୀ ଥିଲେ ଏବଂ ସର୍ବଦା ସେହି ପ୍ରକାର ଭକ୍ତିର ଅନୁଷ୍ଠାନ କରିବାକୁ ଶିକ୍ଷା ଦେଉଥିଲେ ।

### ଠାକୁରେ ପିଲାଙ୍କ ପରି ମଥୁରବାବୁଙ୍କୁ ସବୁ ବିଷୟ ଖୋଲି କହିବା ଓ ମତାମତ ନେବା :

ମଥୁରଙ୍କର ଯେପରି 'ବାବା'ଙ୍କ ନିକଟରେ କୌଣସି ବିଷୟ ଗୋପନ ନ ଥିଲା, ସେହିପରି 'ବାବା'ଙ୍କର ମଧ୍ୟ ମଥୁରଙ୍କ ଉପରେ ଭାବସମାଧି ସମୟ ବ୍ୟତୀତ ଅନ୍ୟ ସବୁବେଳେ, ମାତା ନିକଟରେ ବାଳକ ଯେପରି, ସଖାଙ୍କ ନିକଟରେ ସଖା ଯେପରି, ଅକପଟରେ ସମସ୍ତ କଥା ଖୋଲି କହନ୍ତି, ପରାମର୍ଶ କରନ୍ତି, ମତାମତ ସାଦରେ ଗ୍ରହଣ କରନ୍ତି ଓ ଭଲ ପାଇବା ଉପରେ ନିର୍ଭର କରନ୍ତି, ସେପରି ଭାବ ଥିଲା । ପରାବିଦ୍ୟାର ସର୍ବୋଚ୍ଚ ସୋପାନରେ ଆରୋହଣ କଲେ ମାନବର ଅବସ୍ଥା ଯେଉଁ ଉନ୍ମାଦ, ପିଶାଚ ବା ବାଳକବତ୍ ସାଧାରଣ-ନୟନରେ ପ୍ରତୀତ ହୋଇଥାଏ, ଶାସ୍ତ୍ରର ଏବିଷୟ ଆମେ ପାଠକଙ୍କୁ ଆଗରୁ କହିଅଛୁ । କେବଳ ସେତିକି ନୁହେଁ, ଜଗତପୂଜ୍ୟ ଆଚାର୍ଯ୍ୟ ଶଙ୍କର ଏକଥା ମଧ୍ୟ ସ୍ପଷ୍ଟ ଲେଖିଛନ୍ତି ଯେ, ଏପରି ମାନବ, ଅତୁଳ ରାଜ-ବୈଭବ ଉପଭୋଗ କରନ୍ତି କିମ୍ବା କୌପୀନମାତ୍ର ସମ୍ବଳ ଓ ଭିକ୍ଷାନ୍ନରେ ଉଦରପୋଷଣ କରନ୍ତି; ଇତର ସାଧାରଣ ଲୋକେ ଯାହାକୁ ଅତି ସୁଖ ବା ଅତି ଦୁଃଖର ଅବସ୍ଥା ବୋଲି ଗଣ୍ୟ କରନ୍ତି, ତା'ମଧ୍ୟରେ ରହି ମଧ୍ୟ କୌଣସି ପ୍ରକାରେ ବିଚଳିତ ହୁଅନ୍ତି ନାହିଁ; ସର୍ବଦା ଆତ୍ମାନନ୍ଦରେ ନିଜ ଭିତରେ ନିଜେ ବିଭୋର ହୋଇ ରହିଥାଆନ୍ତି ।

କ୍ୱଚିନ୍ମୂଢ଼ୋ ବିଦ୍ୱାନ୍ କ୍ୱଚିଦପି ମହାରାଜବିଭବଃ
କ୍ୱଚିଦ୍ଭ୍ରାନ୍ତଃ ସୌମ୍ୟଃ କ୍ୱଚିଦଜଗରାଚାରକଲିତଃ ।
କ୍ୱଚିତ୍ ପାତ୍ରୀଭୂତଃ କ୍ୱଚିଦବମତଃ କ୍ୱାପ୍ୟବିଦିତ-
ଶ୍ଚରତ୍ୟେବଂ ପ୍ରାଜ୍ଞଃ ସତତପରମାନନ୍ଦସୁଖିତଃ ॥

—ବିବେକଚୂଡ଼ାମଣି, ୫୪୨

ଅର୍ଥାତ୍, 'ମୁକ୍ତ ବ୍ୟକ୍ତି କେତେବେଳେ ମୂଢ଼ ସଦୃଶ, କେତେବେଳେ ପଣ୍ଡିତ ସଦୃଶ, ପୁଣି କେତେବେଳେ ବା ରାଜାପରି ବିଭବଶାଳୀ ହୋଇ ବିଚରଣ କରନ୍ତି । ତାଙ୍କୁ କେତେବେଳେ ପାଗଳ ପରି, କେତେବେଳେ ଧୀର, ସ୍ଥିର, ବୁଦ୍ଧିମାନ ସଦୃଶ ବୋଧ ହୁଏ । ଆହୁରି ମଧ୍ୟ କେତେବେଳେ ତାହାଙ୍କୁ ନିତ୍ୟାବଶ୍ୟକୀୟ ଆହାର୍ଯ୍ୟ ପ୍ରଭୃତି ନିମିତ୍ତ ଯାଚନାରହିତ ହୋଇ ଅଜଗର ପରି ଅବସ୍ଥାନ କରିବାର ଦେଖାଯାଏ । ସେ କେଉଁଠାରେ ଅତ୍ୟନ୍ତ ସମ୍ମାନିତ ହୁଅନ୍ତି, ପୁଣି କେଉଁଠାରେ ଅପମାନିତ ହୋଇଥାଆନ୍ତି, ପୁଣି କେଉଁଠାରେ ଅପରିଚିତ ଭାବରେ ରହନ୍ତି । ଏହିପରି ସର୍ବାବସ୍ଥାରେ ସେ ପରମାନନ୍ଦରେ ବିଭୋର ଓ ଅବିଚଳିତ ରହିଥାଆନ୍ତି ।' ଜୀବନ୍ମୁକ୍ତ ପୁରୁଷମାନଙ୍କର ଯେତେବେଳେ ଏପରି ଅବସ୍ଥା, ସେତେବେଳେ ମହାମହିମ ଅବତାରପୁରୁଷମାନଙ୍କ ସେହି ପ୍ରକାର ସର୍ବାବସ୍ଥାରେ ଅବିଚଳିତ ରହିବା ଓ ବାଳକ ସଦୃଶ ବ୍ୟବହାର କରିବାରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ? ଅତଏବ ମଥୁରଙ୍କ ସହିତ ଠାକୁରଙ୍କର ଏପରି ଆଚରଣ କରିବାରେ କିଛି ବିଚିତ୍ର ନ ଥିଲା । କିନ୍ତୁ ମଥୁରଙ୍କର ତାଙ୍କ ସହିତ ଏପରି ଘନିଷ୍ଠ ସମ୍ବନ୍ଧରେ ଆବଦ୍ଧ ହୋଇ ଏତେଦିନ କଟାଇପାରିବା କିଛି କମ୍ ଭାଗ୍ୟର କଥା ନୁହେଁ !

**ମଥୁରଙ୍କର କଲ୍ୟାଣ ଦିଗରେ ଠାକୁରଙ୍କର କେତେଦୂର ଦୃଷ୍ଟି ଥିଲା :**

ଠାକୁରଙ୍କ ସହିତ ମଥୁରବାବୁଙ୍କ କି ଅଦ୍ଭୁତ ମଧୁର ସମ୍ପର୍କ ଥିଲା ! ସାଧନା ସମୟରେ ଓ ପରେ ମଧ୍ୟ କୌଣସି ଜିନିଷ ଦରକାର ହେଲେ, ମଥୁରଙ୍କୁ ତାହା କହୁଥିଲେ । ସମାଧି ସମୟରେ ବା ଅନ୍ୟ ସମୟରେ ଯାହାକିଛି ଦର୍ଶନ ଇତ୍ୟାଦି ଓ ଭାବ ଉପସ୍ଥିତ ହୁଏ, ସେବିଷୟ ମଥୁରବାବୁଙ୍କୁ କହନ୍ତି, ''ଏହା କାହିଁକି ହେଲା, କୁହତ ?'' ''ତାହା ତୁମ ମନରେ କ'ଣ ଭାବ, କୁହ ଦେଖି ?'' ଇତ୍ୟାଦି ପଚାରୁଥିଲେ । ତାଙ୍କ ପଇସାର ଯେପରି ସଦୁପଯୋଗ ହୁଏ, ଦେବସେବାର ପଇସାରେ ଯେପରି ଯଥାର୍ଥ ଦେବସେବା ହୋଇ ଅତିଥି, କାଙ୍ଗାଳ, ସାଧୁ-ସନ୍ଥ ପ୍ରଭୃତିଙ୍କର ସେବା ହୁଏ ଏବଂ ସେଥିରେ ପୁଣ୍ୟ ସଞ୍ଚୟ ହୋଇ ତାଙ୍କର କଲ୍ୟାଣ ହୁଏ, ସେବିଷୟରେ ଠାକୁରଙ୍କର ଲକ୍ଷ୍ୟ ରହୁଥିଲା—ଏହିପରି ସବୁ ବିଷୟରେ ଆମେ କେତେ କଥା ଯେ ଶୁଣିଅଛୁ । ପୁଣ୍ୟବତୀ ରାଣୀ ରାସମଣି ଓ ମଥୁରଙ୍କର ଶରୀର ଯିବାର ଅନେକ ପରେ ଯେତେବେଳେ ଆମେ ସମସ୍ତେ ଠାକୁରଙ୍କ ନିକଟକୁ ଯାଉଥିଲୁ, ସେତେବେଳେ ମଧ୍ୟ ଠାକୁରଙ୍କଠାରେ ଏହି ଭାବର ପରିଚୟ ଆମେ କେବେ କେବେ ପାଇଛୁ । ଗୋଟିଏ ଦୃଷ୍ଟାନ୍ତ ଦେଲେ ଭଲ ହେବ ।

## ଏବିଷୟର ଦୃଷ୍ଟାନ୍ତ—ଫଳହାରିଣୀ ପୂଜାର ପ୍ରସାଦ ଠାକୁର ମାଗି ନେବା :

ମଥୁରଙ୍କ ସମୟରୁ ବନ୍ଦୋବସ୍ତ ଥିଲା, ମା'କାଳୀ ଓ ରାଧାଗୋବିନ୍ଦଙ୍କର ଭୋଗରାଗ ପରେ ଏକ ବଡ଼ ପ୍ରସାଦୀ ଥାଳିରେ ଅନ୍ନ ବ୍ୟଞ୍ଜନ ଓ ଅନ୍ୟ ଏକ ଥାଳିରେ ଫଳମୂଳ-ମିଷ୍ଟାନ୍ନ ଆଦି ଠାକୁରଙ୍କ ଘରକୁ ପ୍ରତିଦିନ ଆସିବ ଓ ଠାକୁର ନିଜେ ଓ ତାଙ୍କ ନିକଟରେ ଯେଉଁମାନେ ଉପସ୍ଥିତ ଥିବେ ସେମାନେ ପ୍ରସାଦ ପାଇବେ । ଏହାଛଡ଼ା ବିଶେଷ ବିଶେଷ ପର୍ବଦିନମାନଙ୍କରେ ମା' କାଳୀ ଓ ରାଧାଗୋବିନ୍ଦଜୀଙ୍କର ଯେଉଁ ବିଶେଷ ଭୋଗ ଆଦି ଦିଆଯାଉଥିଲା ତାହାର ମଧ୍ୟ କିଛି ଅଂଶ ଠାକୁରଙ୍କ ନିକଟକୁ ଆସୁଥିଲା ।

ବର୍ଷାକାଳ । ଆଜି ଫଳହାରିଣୀ ପୂଜାଦିନ । ଏହି ଦିନ ମନ୍ଦିରରେ ବେଶ୍ ଏକ ଛୋଟଧରଣର ଆନନ୍ଦୋତ୍ସବ ହେଉଥିଲା । ଶ୍ରୀଶ୍ରୀଜଗନ୍ମାତା କାଳୀକାଙ୍କର ବିଶେଷ ପୂଜା କରି ନାନାପ୍ରକାର ଫଳମୂଳ ଭୋଗ ନିବେଦନ କରା ହେଉଥିଲା । ଆଜି ମଧ୍ୟ ସେହିପରି ହୋଇଥିଲା । ନହବତ ବାଜୁଥିଲା । ଠାକୁରଙ୍କ ନିକଟରେ ଆଜି ଯୋଗାନନ୍ଦ ସ୍ୱାମୀଜୀ ପ୍ରଭୃତି କେତେଜଣ ଭକ୍ତ ଉପସ୍ଥିତ ଥିଲେ ।

## ବିଶେଷ ବିଶେଷ ପର୍ବ ଦିନମାନଙ୍କରେ ଠାକୁରଙ୍କର ଭିନ୍ନ ଭିନ୍ନ ପ୍ରକାର ଭାବସମାଧିର ସ୍ୱଭାବତଃ ଉଦୟ :

ବିଶେଷ ବିଶେଷ ପର୍ବଦିନମାନଙ୍କରେ ଠାକୁରଙ୍କ ଶରୀର ଓ ମନରେ ବିଶେଷ ବିଶେଷ ଦେବଭାବ ପ୍ରକାଶିତ ହେଉଥିଲା । ବୈଷ୍ଣବମାନଙ୍କର ପର୍ବଦିନରେ ବୈଷ୍ଣବଭାବ ଓ ଶାକ୍ତମାନଙ୍କର ପର୍ବଦିନରେ ଶକ୍ତିସମ୍ବନ୍ଧୀୟ ଭାବସମୂହ ପ୍ରକାଶିତ ହେଉଥିଲା । ଯଥା, ଶ୍ରୀଶ୍ରୀଦୁର୍ଗାପୂଜା ସମୟରେ, ବିଶେଷତଃ ଏହି ପୂଜାର ସନ୍ଧି କ୍ଷଣରେ, ଅଥବା କାଳୀପୂଜାଦିକାଳରେ ଠାକୁର ଶ୍ରୀଶ୍ରୀଜଗଦମ୍ବାଙ୍କର ଭାବରେ ଆବିଷ୍ଟ, ନିଷ୍ପନ୍ଦ, ଓ ବେଳେବେଳେ ବରାଭୟକର ପର୍ଯ୍ୟନ୍ତ ହୋଇଯାଉଥିଲେ; ଜନ୍ମାଷ୍ଟମୀ ପ୍ରଭୃତି ପର୍ବଦିନମାନଙ୍କରେ ଶ୍ରୀକୃଷ୍ଣ ଓ ଶ୍ରୀମତୀଙ୍କର ଭାବରେ ଆରୂଢ଼ ହୋଇ କମ୍ପ-ପୁଲକାଦି ଅଷ୍ଟସାତ୍ତ୍ୱିକ ଲକ୍ଷଣ ତାଙ୍କ ଶରୀରରେ ଦେଖାଯାଉଥିଲା— ଏପରି ଭାବସବୁ ତାଙ୍କର ହେଉଥିଲା । ପୁଣି ସେହି ସେହି ଭାବାବେଶ ଏତେ ସହଜରେ ସ୍ୱାଭାବିକ ଭାବରେ ଆସି ଉପସ୍ଥିତ ହେଉଥିଲା ଯେ, ତାହା ଯେ କୌଣସି ବିଶେଷ ଚେଷ୍ଟାଫଳରେ ହେଉଛି, ଏକଥା ଆଦୌ ମନେ ହେଉ ନ ଥିଲା ! ବରଂ ଏପରି ଦେଖାଯାଇଛି, ସେହିପ୍ରକାର ପର୍ବଦିନମାନଙ୍କରେ ଠାକୁର ଆମମାନଙ୍କ ସହିତ ଅନ୍ୟ କଥାରେ ଖୁବ୍ ମଜ୍ଜିଯାଇଛନ୍ତି, ଈଶ୍ୱରଙ୍କର ଯେଉଁ ବିଶେଷ ଲୀଳା ସେହି ଦିନରେ ପ୍ରକାଶ ହୋଇଥିଲା, ସେକଥା ଭୁଲି ହିଁ ଯାଇଛନ୍ତି, ଏପରି ସମୟରେ ହଠାତ୍ ତାଙ୍କର ମନ ଏସମସ୍ତ ବାହାର ବିଷୟରୁ ଉଠିଯାଇ

ଏକାବେଳକେ ଈଶ୍ୱରଙ୍କ ସେହି ଭାବରେ ସମ୍ପୂର୍ଣ୍ଣ ତନ୍ମୟ ହୋଇପଡ଼ିଲା ! ଯେପରି କିଏ ଜୋର୍‌କରି ସେହି ଅବସ୍ଥା ନେଇ ଆସିଲା ! କଲିକତାର ଶାମପୁକୁରଠାରେ ଅବସ୍ଥାନକାଳରେ ଆମେ ସେହି ପ୍ରକାର ଦୃଷ୍ଟାନ୍ତ ଅନେକ ଦେଖିଅଛୁ । ଡାକ୍ତର ମହେନ୍ଦ୍ରଲାଲ ସରକାରପ୍ରମୁଖ ଘରଭର୍ତ୍ତି ଲୋକଙ୍କ ସହିତ କଥା କହୁ କହୁ ଶ୍ରୀଶ୍ରୀଦୁର୍ଗାପୂଜାର ସନ୍ଧିକ୍ଷଣରେ ହଠାତ୍ ଠାକୁରଙ୍କର ସେ ପ୍ରକାର ଭାବାବେଶ ହେଲା ! ଏହି ସମୟର ସେହି ହାସ୍ୟଚ୍ଛଟାରେ ବିକଶିତ ଜ୍ୟୋତିଃପୂର୍ଣ୍ଣ ତାଙ୍କର ମୁଖମଣ୍ଡଳ ଏବଂ ତାଙ୍କର ପୂର୍ବକ୍ଷଣର ଅସୁସ୍ଥତାଜନିତ କାଳିମାପ୍ରାପ୍ତ ମୁଖମଣ୍ଡଳ ଦେଖି କିଏ କହିବ ଯେ, ସେ ସେହି ଲୋକ—କିଏ କହିବ, ଏହାଙ୍କର କୌଣସ ଅସୁସ୍ଥତା ଅଛି !

ପୂର୍ବୋକ୍ତ ଫଳହାରିଣୀ ପୂଜା ଦିନରେ ମଧ୍ୟ ଠାକୁରଙ୍କ ଶରୀରମନରେ ବେଳେବେଳେ ଏପରି ଭାବାବେଶ ହେଉଥିଲା; କେତେବେଳେ ସେ ଆନନ୍ଦରେ ଉତ୍‌ଫୁଲ୍ଲ ହୋଇ ପାଞ୍ଚବର୍ଷର ବାଳକ ସଦୃଶ ଶିଶୁପରି ମା'ଙ୍କର ନାମ କୀର୍ତ୍ତନ କରି ଆନନ୍ଦରେ ନାଚୁଥିଲେ । ସମସ୍ତେ ମୁଗ୍ଧ ହୋଇ ସେହି ଅପୂର୍ବ ମୁଖଶ୍ରୀକୁ ଚାହିଁ ରହିଥିଲେ ଓ ସେହି ଅଦୃଷ୍ଟପୂର୍ବ ଦେବମାନବଙ୍କ ସଙ୍ଗଗୁଣରେ ମନରେ କେତେପ୍ରକାର ଅପୂର୍ବ ଦିବ୍ୟଭାବ ଅନୁଭବ କରୁଥିଲେ । ମା'ଙ୍କର ପୂଜା ସରିବା ବେଳକୁ ପ୍ରାୟ ରାତି ଶେଷ ହେଲା । ସାମାନ୍ୟ ବିଶ୍ରାମ କରୁ ନ କରୁଣୁ ରାତି ପାହି ସକାଳ ହେଲା ।

ଦିନ ୮ଟା ୯ଟାରେ ଠାକୁର ଦେଖିଲେ, ତାଙ୍କ ଘରକୁ ଯେଉଁ ପ୍ରସାଦ ଫଳମୂଳ ଇତ୍ୟାଦି ପଠାଇବାର ବନ୍ଦୋବସ୍ତ ଅଛି, ତାହା ସେପର୍ଯ୍ୟନ୍ତ ପହଞ୍ଚି ନାହିଁ । କାଳୀମନ୍ଦିରର ପୂଜାରୀ ଭ୍ରାତୁଷ୍ପୁତ୍ର ରାମଲାଲକୁ ଡାକି ଏହାର କାରଣ ପଚାରିବାରୁ ସେ କିଛି କହିପାରିଲେ ନାହିଁ; କହିଲେ—''ସମସ୍ତ ପ୍ରସାଦ ଦ୍ରବ୍ୟ ଦପ୍ତରଖାନାର ଖାଜାଞ୍ଚୀ ମହାଶୟଙ୍କ ନିକଟକୁ ଯଥାରୀତି ପଠାଯାଇଛି; ସେହିଠାରୁ ସମସ୍ତଙ୍କୁ, ଯାହାର ଯେପରି ପାଉଣା ବରାଦ ଅଛି, ତାହା ବଣ୍ଟାଯାଉଛି; କିନ୍ତୁ ଏଠାକୁ (ଠାକୁରଙ୍କ ପାଇଁ) ଏପର୍ଯ୍ୟନ୍ତ କାହିଁକି ଆସି ନାହିଁ, ସେକଥା କହିପାରିବି ନାହିଁ ।'' ରାମଲାଲଦାଦାଙ୍କ କଥାଶୁଣି ଠାକୁରେ ବ୍ୟସ୍ତ ତଥା ଚିନ୍ତିତ ହେଲେ । ''କାହିଁକି ଦପ୍ତରଖାନାରୁ ପ୍ରସାଦ ଆସିଲା ନାହିଁ ?''—କେବଳ ଏହି କଥା ଯାହାକୁ ତାହାକୁ ପଚାରୁଛନ୍ତି, ଏବଂ ଏବିଷୟ ଆଲୋଚନା କରୁଛନ୍ତି ! ଏହିପରି ଅଳ୍ପକ୍ଷଣ ଅପେକ୍ଷା କରି ଯେତେବେଳେ ଦେଖିଲେ—ସେବେ ମଧ୍ୟ ଆସିଲା ନାହିଁ, ସେତେବେଳେ ଚଟିଜୋତା ପିନ୍ଧି ନିଜେ ହିଁ ମନ୍ଦିର କର୍ମଚାରୀ (ଖାଜାଞ୍ଚୀ) ନିକଟରେ ଆସି ଉପସ୍ଥିତ ହେଲେ ! କହିଲେ, ''ଆହେ, ସେ ଘରର (ନିଜର କୋଠରୀ ଦେଖାଇ) ବରାଦ ପାଉଣା ଏପର୍ଯ୍ୟନ୍ତ ଦିଆ ହୋଇ ନାହିଁ କାହିଁକି ? ଭୁଲ୍ ହେଲା ନା କ'ଣ ? ସବୁଦିନର ମାମୁଲି ବନ୍ଦୋବସ୍ତ, ଏବେ ଭୁଲ୍‌ରେ ବନ୍ଦ ହେବ, ଅତ୍ୟନ୍ତ ଅନ୍ୟାୟ

କଥା !'' ଖାଜାଞ୍ଚୀ ମହାଶୟ କିଞ୍ଚିତ୍ ଅପ୍ରତିଭ ହୋଇ କହିଲେ, ''ଏପର୍ଯ୍ୟନ୍ତ ଆପଣଙ୍କ ନିକଟକୁ ପହଞ୍ଚି ନାହିଁ ? ବଡ଼ ଅନ୍ୟାୟ କଥା ! ମୁଁ ସଙ୍ଗେ ସଙ୍ଗେ ପଠାଇ ଦେଉଛି ।''

## ଠାକୁରଙ୍କର ଏପରି ପ୍ରସାଦ ମାଗିବାରେ ଯୋଗାନନ୍ଦ ସ୍ୱାମୀଙ୍କର ଚିନ୍ତା :

ସ୍ୱାମୀ ଯୋଗାନନ୍ଦ ସେତେବେଳେ ବାଳକ । ସତ୍‌କୁଳରେ ସମ୍ଭ୍ରାନ୍ତ ସାବର୍ଣ୍ଣ ଚୌଧୁରୀଙ୍କ ଘରେ ଜନ୍ମ, ଅତଏବ ମନରେ ଟିକେ ଅଭିମାନ ଥିଲା । ମନ୍ଦିରର ଖାଜାଞ୍ଚୀ, କର୍ମଚାରୀ, ପୂଜାରୀ ପ୍ରଭୃତିଙ୍କୁ ମଣିଷ ବୋଲି ହିଁ ମନେହେଉ ନ ଥିଲା । ତେବେ ଠାକୁରଙ୍କ ଭଲ ପାଇବାରେ ଓ ଅହେତୁକ କୃପାରେ ତାଙ୍କର ଶ୍ରୀପାଦପଦ୍ମରେ ମୁଣ୍ଡ ବିକ୍ରୟ କରିଛନ୍ତି; ଏବଂ ରାସମଣିଙ୍କ ବଗିଚାର ଅତି ନିକଟରେ ସେମାନଙ୍କ ଘର ବୋଲି କହିଲେ ଚଳେ । ତେଣୁ ଠାକୁରଙ୍କ ପାଖକୁ ପ୍ରତିଦିନ ଯିବା ଆସିବାର ବେଶ୍ ସୁବିଧା ଥିଲା । ପୁଣି ନ ଯିବେ କେମିତି ? ଠାକୁରଙ୍କର ଅଦ୍ଭୁତ ଆକର୍ଷଣ ଯେ ଜୋର୍ କରି ନିୟମିତ ସମୟରେ ଟାଣି ନେଇଯାଏ ! କିନ୍ତୁ ଠାକୁରଙ୍କୁ ମାନନ୍ତି ବୋଲି କ'ଣ ମନ୍ଦିରର ଲୋକଙ୍କ ସହିତ ପ୍ରୀତିପୂର୍ଣ୍ଣ ଆଳାପ ଚଳିବ ? ତେଣୁ 'ପ୍ରସାଦୀ ଫଳ-ମୂଳାଦି କାହିଁକି ଆସିଲା ନାହିଁ' ବୋଲି ଠାକୁର ବ୍ୟସ୍ତ ହେବାରୁ ସେ କହି ପକାଇଲେ — ''ନ ଆସିଲା ତ କ'ଣ ହେଲା ମହାଶୟ — କ'ଣ ଏପରି ଜିନିଷ ! ଆପଣଙ୍କ ପେଟରେ ତ' ଏସବୁ ଯାଏ ନାହିଁ, ସେ ସବୁର କିଛି ତ ଖାଆନ୍ତି ନାହିଁ — ତେଣୁ ନ ଆସିଲେ ନାହିଁ ?'' ଏଥିରେ ଠାକୁର ଯେତେବେଳେ ତାଙ୍କ କଥାରେ କର୍ଣ୍ଣପାତ ନ କରି ନିଜେ ଖାଜାଞ୍ଚୀକୁ ସେହି ବିଷୟର କାରଣ ପଚାରିବାକୁ ଗଲେ, ସେତେବେଳେ ଯୋଗେନ୍ ଭାବିଲେ, ''କି ଆଶ୍ଚର୍ଯ୍ୟ ! ଇଏ ଆଜି ସାମାନ୍ୟ ଫଳମୂଳ-ମିଷ୍ଟାନ୍ନ ପାଇଁ ଏତେ ବ୍ୟସ୍ତ କାହିଁକି ହେଉଛନ୍ତି ? ଯାହାଙ୍କୁ କୌଣସିଥିରେ ବିଚଳିତ ହେବାର ଦେଖି ନାହିଁ, ଆଜି ତାଙ୍କର ଏପରି ଭାବ କାହିଁକି ?' ଭାବିଚିନ୍ତି ବିଶେଷ କୌଣସି କାରଣ ଖୋଜି ନ ପାଇବାରୁ ଶେଷରେ ସିଦ୍ଧାନ୍ତ କଲେ, ''ବୁଝିଛି ! ଠାକୁର ହୁଅନ୍ତୁ, ବା ଯେତେ ବଡ଼ଲୋକ ହୁଅନ୍ତୁ, ଅଭ୍ୟାସ ଟାଣୁଛି ! ବଂଶାନୁକ୍ରମରେ ଚାଉଳ-କଦଳୀ ସିଧା ବାନ୍ଧିବା ପୂଜାରୀ ବ୍ରାହ୍ମଣଘରେ ଜନ୍ମିଛନ୍ତି, ସେ ବଂଶର ଗୁଣ ଟିକିଏ ତ' ରହିବ ହିଁ ରହିବ ? ତା'ଛଡ଼ା ଆଉ କ'ଣ ! ବଡ଼ ବଡ଼ କଥାରେ ବ୍ୟସ୍ତ ହୁଅନ୍ତି ନାହିଁ, କିନ୍ତୁ ଏହି ସାମାନ୍ୟ କଥାରେ ଏତେ ବ୍ୟସ୍ତ ହୋଇ ଉଠିଛନ୍ତି ! ପୁଣି ନିଜେ ଏସମସ୍ତ ଖାଇବେ ନାହିଁ, ନିଜର କୌଣସି ଦରକାରରେ ଲାଗିବ ନାହିଁ, ତଥାପି ତା'ପାଇଁ ଏତେ ଭାବନା କାହିଁକି ? ବଂଶାନୁଗତ ଅଭ୍ୟାସ ! ''

## ଠାକୁରଙ୍କର ଏପରି କରିବାର କାରଣ–ନିର୍ଦ୍ଦେଶ :

ଯୋଗେନ୍ ବା ସ୍ୱାମୀ ଯୋଗାନନ୍ଦ ମନରେ ଏହିପରି ଭାବୁଥିଲେ, ଏପରି ସମୟରେ ଠାକୁରେ ଫେରିଆସି ତାଙ୍କୁ ଲକ୍ଷ୍ୟକରି କହିବାକୁ ଲାଗିଲେ, ''କ'ଣ ଜାଣିଛୁ, ରାସମଣି ଦେବତାଙ୍କର ଭୋଗ ସାଧୁ–ସନ୍ଥ ଭକ୍ତଲୋକେ ପ୍ରସାଦ ପାଇବା ପାଇଁ ଏତେ ବିଷୟ ଦେଇଯାଇଛନ୍ତି । ଏଠାକୁ ଯେଉଁ ପ୍ରସାଦୀ ଦ୍ରବ୍ୟ ଆସେ, ସେସମସ୍ତ ଭକ୍ତମାନେ ହିଁ ପାଇଥାଆନ୍ତି; ଈଶ୍ୱରଙ୍କୁ ଜାଣିବେ ବୋଲି ଯେଉଁମାନେ ଏଠାକୁ ଆସନ୍ତି, ସେମାନେ ହିଁ ପାଇଥାଆନ୍ତି । ଏଥିରେ ରାସମଣିଙ୍କର ଯେଉଁଥି ପାଇଁ ଦେବା ତାହା ସାର୍ଥକ ହୁଏ । କିନ୍ତୁ ଏମାନେ (ମନ୍ଦିରର ବ୍ରାହ୍ମଣମାନେ) ଯାହା ସବୁ ନେଇଯାଆନ୍ତି, ତା'ର କ'ଣ ଏପରି ବ୍ୟବହାର ହୁଏ ? ଚାଉଳ ବିକି ପଇସା କରନ୍ତି ! କାହାର ମଧ ବେଶ୍ୟା ଅଛନ୍ତି; ଏସବୁ ନେଇ ସେମାନଙ୍କୁ ଖୁଆନ୍ତି, ଏସବୁ କରନ୍ତି ! ରାସମଣିଙ୍କ ଦାନ ଯେଉଥିପାଇଁ, ତା'ର କିଛିଟା ଅନ୍ତତଃ ସାର୍ଥକ ହେବ ବୋଲି ଏତେ ଝଗଡ଼ା କରୁଛି !'' ସ୍ୱାମୀ ଯୋଗନନ୍ଦ ଏହା ଶୁଣି ଅବାକ୍ ହେଲେ । ଠାକୁରଙ୍କ ଏହି କାର୍ଯରେ ମଧ ଏତେ ଗୂଢ଼ ଅର୍ଥ ଅଛି !

## ମଥୁରଙ୍କ ସହିତ ଠାକୁରଙ୍କର ଅଦ୍ଭୁତ ସମ୍ବନ୍ଧ :

ଏହିପରି ଆମେ ଦେଖିବାକୁ ପାଉ ଶ୍ରୀରାମକୃଷ୍ଣ ଦେବ ମଥୁରବାବୁଙ୍କ ସହିତ କିପରି ମଧୁର ସମ୍ପର୍କ ସ୍ଥାପନ କରିଥିଲେ ! ମଥୁରଙ୍କର ଭଲ ପାଇବା ଘନୀଭୂତ ହୋଇ ଶେଷରେ ଯେ 'ବାବା'– ଗତପ୍ରାଣ ହୋଇଥିଲା, ତାହା ଯେ ଠାକୁରଙ୍କର ଅହେତୁକ କୃପାର ଫଳ, ଏକଥା ବେଶ୍ ବୁଝି ହୁଏ । ତା'ପରେ ଠାକୁରଙ୍କର ବାଳକବତ୍ ଅବସ୍ଥା ମଥୁରଙ୍କୁ କମ୍ ଆକର୍ଷଣ କରି ନାହିଁ । ସାଂସାରିକ ସମସ୍ତ ବିଷୟରେ ଅନଭିଜ୍ଞ ବାଳକ ପ୍ରତି କାହାର ମନ ଆକୃଷ୍ଟ ନ ହୁଏ ? ନିକଟରେ ରହିଲେ—କ୍ରୀଡ଼ା–ମତ୍ତତାରେ କାଳେ ତାଙ୍କର କୌଣସି ଅନିଷ୍ଟ ହେବ ବୋଲି ଭୟଚକିତ ନୟନରେ ତାଙ୍କର ଅକାରଣ–ମଧୁର ଚେଷ୍ଟାଦି ଦେଖିବାକୁ ଓ ତାହାକୁ ରକ୍ଷା କରିବାକୁ କିଏ ବା ତ୍ରସ୍ତଭାବରେ ଅଗ୍ରସର ନ ହେବ ? ଆଉ ଠାକୁରଙ୍କର ବାଳସ୍ୱଭାବରେ ତ କୌଣସି କୃତ୍ରିମତା ବା ଛଳନା ଲେଶମାତ୍ର ନ ଥିଲା ! ଯେତେବେଳେ ସେ ସେହି ଭାବରେ ରହୁଥିଲେ ସେତେବେଳେ ତାଙ୍କୁ ଆତ୍ମରକ୍ଷାରେ ଅସମର୍ଥ ବାଳକ ବୋଲି ହିଁ ବୋଧ ହେଉଥିଲା ! ଅତଏବ ତେଜୀୟାନ, ବୁଦ୍ଧିମାନ ମଥୁରଙ୍କର ତାଙ୍କୁ ସକଳ ବିଷୟରେ ରକ୍ଷା କରିବା ପାଇଁ ଯେ ଏକ ଚେଷ୍ଟା ରହିବ, ସେଥିରେ ଆଉ ବିଚିତ୍ରତା କ'ଣ ? ଅତଏବ ଗୋଟିଏ ପଟରେ ମଥୁର ଯେପରି ଠାକୁରଙ୍କର ଦୈବୀଶକ୍ତି ଉପରେ ନିର୍ଭର କରୁଥିଲେ, ଅନ୍ୟପଟରେ ସେପରି ସେ 'ବାବା'ଙ୍କୁ ଅନଭିଜ୍ଞ ବାଳକ ମନେକରି ସର୍ବଦା ରକ୍ଷା କରିବାକୁ ପ୍ରସ୍ତୁତ ରହୁଥିଲେ । ସର୍ବଜ୍ଞ ଗୁରୁଭାବ ଓ ଅଳ୍ପଜ୍ଞ ବାଳକଭାବର 'ବାବା'ଙ୍କଠାରେ ଏପରି

ବିଚିତ୍ର ସମାବେଶ ଦେଖି, ମଥୁର ବୋଧହୁଏ ମନରେ ସ୍ଥିର କରିଥିଲେ ଯେ, ସାଂସାରିକ ସମସ୍ତ ବିଷୟରେ, ଏପରିକି ଦେହରକ୍ଷାଦି-ବିଷୟରେ ମଧ ତାଙ୍କୁ 'ବାବା'ଙ୍କୁ ରକ୍ଷା କରିବାକୁ ହେବ; ଏବଂ ମାନବ-ଚକ୍ଷୁ ଓ ଶକ୍ତିର ଅନ୍ତରାଳରେ ଅବସ୍ଥିତ ସୂକ୍ଷ୍ମ ପାରମାର୍ଥିକ ବିଷୟରେ 'ବାବା' ହିଁ ତାଙ୍କୁ ରକ୍ଷା କରିବେ । ଅତଏବ ଏକ ସମୟରେ ଦେବ ଓ ମାନବ, ସର୍ବଜ୍ଞ ଓ ଅଳ୍ପଜ୍ଞ, ମହାଜଟିଳ ବିପରୀତ ଭାବସମଷ୍ଟିର ଅପରୂପ ସମ୍ମିଳନଭୂମି ଏହି ଅଦ୍ଭୁତ 'ବାବା'ଙ୍କ ପ୍ରତି ମଥୁରଙ୍କର ଭଲ ପାଇବାଟା ମଧ ଯେ ଏକ ଜଟିଳଭାବ ଧାରଣ କରିଥିଲା, ଏକଥା ଆମେ ବେଶ୍ ବୁଝିପାରୁ । ଭାବମୁଖରେ ଅବସ୍ଥିତ ବରାଭୟକର 'ବାବା' ମଥୁରଙ୍କ ଉପାସ୍ୟ ହେଲେ ମଧ ବାଳକଭାବାବିଷ୍ଟ ସରଳତା ଓ ନିର୍ଭରର ଘନମୂର୍ତ୍ତି ସେହି 'ବାବା'ଙ୍କୁ ହିଁ ପୁଣି ବେଳେବେଳେ ମଥୁରବାବୁଙ୍କୁ ନାନାପ୍ରକାର କଥାରେ ଭୁଲାଇବାକୁ ଓ ବୁଝାଇବାକୁ ହେଉଥିଲା ! ବାବାଙ୍କ ଜିଜ୍ଞାସିତ ବିଷୟଗୁଡ଼ିକ ବୁଝାଇବାର ଉଦ୍ଭାବନୀ ଶକ୍ତି ମଧ ମଥୁରବାବୁଙ୍କ ଭଲପାଇବା ବେଶ୍ ଯୋଗାଉଥିଲା । ମଥୁରବାବୁଙ୍କ ସହିତ କଥା କହୁ କହୁ ହଠାତ୍ ବାହାରକୁ ଯାଇ 'ବାବା' ଦିନେ ଚିନ୍ତାରେ ମୁହଁ ଶୁଷ୍କକରି ଫେରିଆସି ମଥୁରଙ୍କୁ କହିଲେ, ''ମୋର ଏହା କଣ ହେଲା କହ ତ ? ଦେଖିଲି ପରିସ୍ରାର ଦ୍ୱାର ଦେଇ ଶରୀର ମଧରୁ ଯେପରି ଗୋଟିଏ ପୋକ ବାହାରିଗଲା ! ଶରୀର ମଧରେ ଏପରି କାହାର ତ ପୋକ ନ ଥାଏ । ମୋର ଏମିତି କ'ଣ ହେଲା ?''

### ମଥୁରଙ୍କର କାମକୀଟ କଥା କହି
### ବାଳକଭାବାପନ୍ନ ଠାକୁରଙ୍କୁ ବୁଝାଇବା :

ଏହାପୂର୍ବରୁ ଯେଉଁ 'ବାବା' ଗୂଢ଼ ଆଧାତ୍ମିକ ତତ୍ତ୍ୱସକଳକୁ ଅପୂର୍ବ ସରଳ ଭାବରେ ବୁଝାଇ ମୋହିତ ଓ ମୁଗ୍ଧ କରୁଥିଲେ, ସେହି 'ବାବା' ହିଁ ଏବେ ବାଳକ ପରି ଏପରି କଥା ନିଷ୍କାରଣ ଭାବି ଅସ୍ଥିର ! ମଥୁରଙ୍କ ଆଶ୍ୱାସବାକ୍ୟ ଏବଂ ବୁଦ୍ଧି ଉପରେ ନିର୍ଭର କରୁଛନ୍ତି ! ମଥୁର ଶୁଣି କହିଲେ, ''ସେ ତ' ଭଲ ହିଁ ହୋଇଛି ବାବା ! ସମସ୍ତଙ୍କ ଅଙ୍ଗରେ ହିଁ କାମକୀଟ ଅଛି । ତାହା ହିଁ ସେମାନଙ୍କ ମନରେ କୁଭାବନା ଆଣି କୁକାର୍ଯ୍ୟ କରାଏ । ମା'ଙ୍କ କୃପାରୁ ତୁମ ଅଙ୍ଗରୁ ସେହି କାମକୀଟ ବାହାରିଗଲା ! ଏଥିରେ ଏତେ ଚିନ୍ତା କାହିଁକି ?'' 'ବାବା' ଶୁଣି ବାଳକ ପରି ଆଶ୍ୱସ୍ତ ହୋଇ କହିଲେ, ''ଠିକ୍ କହିଛ; ଭାଗ୍ୟବଶତଃ ତୁମକୁ ଏହା କହିଲି, ପଚାରିଲି !'' ଏପରି କହି ବାଳକ ପରି ଅତ୍ୟନ୍ତ ଆନନ୍ଦ ପ୍ରକାଶ କରିବାକୁ ଲାଗିଲେ ।

### ମଥୁରବାବୁଙ୍କ ସହିତ ଠାକୁରଙ୍କର ଭକ୍ତମାନଙ୍କର ଆଗମନ କଥା :

କଥାରେ କଥାରେ ଦିନେ 'ବାବା' କହିଲେ, ''ଦେଖ, ମା' ମୋତେ ସବୁ ଦେଖାଇ ବୁଝାଇଦେଇଛନ୍ତି, ଏଠାର (ଠାକୁରଙ୍କର ନିଜର) ଅନେକ ଅନ୍ତରଙ୍ଗ ଅଛନ୍ତି; ସେମାନେ ସବୁ ଆସିବେ; ଏଠାରୁ ଈଶ୍ୱରୀୟ ବିଷୟ ଜାଣିବେ, ଶୁଣିବେ, ପ୍ରତ୍ୟକ୍ଷ କରିବେ; ପ୍ରେମଭକ୍ତି ଲାଭ କରିବେ; (ନିଜର ଶରୀର ଦେଖାଇ) ଏହି ଖୋଳଟା ଦେଇ ମା' ଅନେକ ଖେଳ ଖେଳିବେ, ଅନେକ ଲୋକଙ୍କର ଉପକାର କରିବେ, ସେଥିପାଇଁ ଏହି ଖୋଳଟାକୁ ଏପର୍ଯ୍ୟନ୍ତ ଭାଙ୍ଗି ଦେଇନାହାନ୍ତି, ରଖିଛନ୍ତି । ତମେ କ'ଣ କହୁଛ ? ଏହା କ'ଣ ମୋ ମଥାର ଭୁଲ, ନା ଠିକ୍ ଦେଖିଛି କୁହ ତ' ?''

ମଥୁର କହିଲେ, ''ମୁଣ୍ଡର ଭ୍ରମ କାହିଁକି ହେବ, 'ବାବା' ? ମା' ଯେତେବେଳେ ତୁମକୁ ଏପର୍ଯ୍ୟନ୍ତ କୌଣସି ଭୁଲ ଦେଖାଇ ନାହାନ୍ତି, ତେଣୁ ଏକଥା କାହିଁକି ବା ଭୁଲ୍ ହେବ ? ଏହା ମଧ ଠିକ୍ ହେବ; ଏବେ ମଧ ସେମାନେ ଏତେ ଡେରି କାହିଁକି କରୁଛନ୍ତି ? ସେମାନେ (ଅନ୍ତରଙ୍ଗ ଭକ୍ତମାନେ) ଶୀଘ୍ର ଆସନ୍ତୁ, ସେମାନଙ୍କୁ ନେଇ ଆନନ୍ଦ ହେବ ।''

'ବାବା' ମଧ ବୁଝିଗଲେ ଯେ ମା' ସେସବୁ ଠିକ୍ ଦେଖାଇଛନ୍ତି । କହିଲେ, ''କିଏ' ଜାଣେ ବାବୁ, କେବେ ସେମାନେ ସବୁ ଆସିବେ; ମା' ତ କହିଛନ୍ତି, ଦେଖାଇଛନ୍ତି, ତେଣୁ ମା'ର ଇଚ୍ଛାରେ ଯାହା ହୁଏ ହେବ ।''

### ଠାକୁରଙ୍କର ବାଳକଭାବର ଦୃଷ୍ଟାନ୍ତ—<br>ସୁନସୁନିଆ ଶାଗ ତୋଳିବା କଥା :

ରାଣୀ ରାସମଣିଙ୍କର ପୁତ୍ର ସନ୍ତାନ ନ ଥିଲା, ଚାରି କନ୍ୟା ଥିଲେ । ମଥୁରବାବୁ ସେମାନଙ୍କ ମଧ୍ୟରୁ ତୃତୀୟା ଓ କନିଷ୍ଠାଙ୍କୁ ପରେ ପରେ ବିବାହ କରିଥିଲେ । ଅବଶ୍ୟ ଜଣକର ମୃତ୍ୟୁ ହେବାରୁ ଅନ୍ୟଜଣକୁ ବିବାହ କରିଥିଲେ । ଝିଅମାନଙ୍କ ମଧ୍ୟରେ ବିଷୟ ନେଇ କୌଣସି ଗଣ୍ଡଗୋଳ ପରେ ନ ହେବା ପାଇଁ, ବୁଦ୍ଧିମତୀ ରାଣୀ ଜୀବିତାବସ୍ଥାରେ ପ୍ରତ୍ୟେକଙ୍କର ଭାଗ ନିର୍ଦ୍ଦିଷ୍ଟ କରି ଚିହ୍ନିତ କରି ଦେଇଥିଲେ । ସେହି ଭାବରେ ସମ୍ପତ୍ତିଭାଗ ହେବା ପରେ ଦିନେ ମଥୁରବାବୁଙ୍କର ସ୍ତ୍ରୀ ବା ସେଜୋଗୃହିଣୀ ଅନ୍ୟ ଭଉଣୀର ଭାଗରେ ପଡ଼ିଥିବା ପୋଖରୀରେ ସ୍ନାନ କରିବାକୁ ଯାଇ ଭଲ ସୁନସୁନିଆ ଶାଗ ସେଠାରେ ହୋଇଥିବା ଦେଖି କିଛି ତୋଳି ଆଣିଲେ । ତାଙ୍କର ଏହି କାର୍ଯ୍ୟ କେବଳ ଠାକୁର ଦେଖିପାରିଥିଲେ । ତାଙ୍କର ସେପରି କାର୍ଯ୍ୟ ଦେଖି ଠାକୁରଙ୍କ ମନରେ ନାନା କଥା ଉଠିବାକୁ ଲାଗିଲା ! କାହାକୁ ନ କହି ଏହିପରି ଅନ୍ୟର ଜିନିଷ 'ସେଜୋଗୃହିଣୀ' ନେଇଗଲେ, ଏହା ବଡ଼ ଅନ୍ୟାୟ । ନ ଜଣାଇ ଅନ୍ୟର ଜିନିଷ ନେଲେ ଯେ ଚୋରି କରାହୁଏ, ତାହା

ଭାବିଲେ ନାହିଁ । ଅନ୍ୟର ଜିନିଷରେ କାହିଁକି ଏତେ ଲୋଭ ? —ଇତ୍ୟାଦି, ଇତ୍ୟାଦି । ଏପରି ନାନା କଥା ଭାବୁଛନ୍ତି, ଏହି ସମୟରେ ରାଣୀଙ୍କର ଯେଉଁ ଝିଅଟିର ଭାଗରେ ସେହି ପୋଖରୀଟି ପଡ଼ିଥିଲା, ତାଙ୍କ ସହିତ ଦେଖା ହେଲା । ସଙ୍ଗେ ସଙ୍ଗେ ଠାକୁରେ ତା ନିକଟରେ ଏବିଷୟ ଆଦ୍ୟୋପାନ୍ତ କହିଲେ । ସେ ଶୁଣି ଏବଂ ସେଜୋଗୃହିଣୀ ଯେପରି କେତେ ଅନ୍ୟାୟ କରି ପକାଇଛି ବୋଲି ଠାକୁରଙ୍କର ସେହି ପ୍ରକାର ଗମ୍ଭୀର ଭାବ ଦେଖି ହାସ୍ୟ ସମ୍ବରଣ କରିପାରିଲେ ନାହିଁ । ଥଟ୍ଟା କରି କହିଲେ, 'ଠିକ୍ ତ ବାବା, ସେ ଖୁବ୍ ଅନ୍ୟାୟ କରିଛି ।' ଏତିକି ବେଳେ ସେଜୋଗୃହିଣୀ ମଧ୍ୟ ସେଠାରେ ପହଞ୍ଚିଲେ । ସେ ମଧ୍ୟ ଭଉଣୀଙ୍କର ହାସ୍ୟର କାରଣ ଶୁଣି ପରିହାସ କରି କହିଲେ, 'ବାବା, ଏକଥାଟା ମଧ୍ୟ କ'ଣ ତୁମେ କହିବା କଥା ? ସେ ଦେଖିଦେବ ବୋଲି ମୁଁ ଲୁଚାଇ ଶାଗ ତୋଳି ନେଲି, ଆଉ ତୁମେ ତାକୁ କହି ମୋତେ ଅପଦସ୍ଥ କଲ !' ଏହା କହି ଦୁଇ ଭଉଣୀ ମିଶି ହାସ୍ୟରୋଳ ଉଠାଇଲେ । ସେତେବେଳେ ଠାକୁର କହିଲେ, ''ତା, କ'ଣ ଜାଣେ ମା', ଯେତେବେଳେ ସମ୍ପତ୍ତି ଭାଗ ବଣ୍ଟା ହୋଇଗଲା, ସେତେବେଳେ ନ କହି ତାଙ୍କ ଜିନିଷ ନେବାଟା ଭଲ ନୁହେଁ; ତେଣୁ କହିଦେଲି, ସେ ଶୁଣି ଯାହା ବୁଝିବେ କରିବେ ।'' ରାଣୀଙ୍କର କନ୍ୟାମାନେ 'ବାବା'ଙ୍କର କଥାଶୁଣି ଆହୁରି ହସିବାକୁ ଲାଗିଲେ ଓ ଭାବିଲେ, ବାବାଙ୍କର କେତେ ସରଳ ଉଦାର ସ୍ୱଭାବ !

**ସାଂସାରିକ ବିପଦରେ ମଥୁରବାବୁ ଠାକୁରଙ୍କ ଶରଣାପନ୍ନ ହେବା :**

ଗୋଟିଏ ପାଖରେ 'ବାବା'ଙ୍କର ଏପରି ବାଳକଭାବ ! ଅନ୍ୟ ପକ୍ଷରେ ପୁଣି ଅନ୍ୟ ଜମିଦାରଙ୍କ ସହିତ ବିବାଦବେଳେ ମଥୁରଙ୍କର ହୁକୁମରେ ଗଣ୍ଡଗୋଳ ହୋଇ ଖୁନ୍ ହୋଇଯିବାରୁ, ବିପଦରେ ପଡ଼ି ମଥୁର ଆସି 'ବାବା'ଙ୍କୁ ଧରିଲେ, 'ବାବା, ରକ୍ଷା କର ।' 'ବାବା' ପ୍ରଥମେ ରାଗିଯାଇ ମଥୁରଙ୍କୁ ନାନା ଭର୍ତ୍ସନା କଲେ । କହିଲେ, ''ତୁ ଶଳା ପ୍ରତିଦିନ ଗୋଟେ ଗୋଟେ ହଙ୍ଗମା କରି କହିବୁ 'ରକ୍ଷା କର' ! ମୁଁ କ'ଣ କରିପାରିବି ରେ ଶଳା ? ଯା, ନିଜେ ବୁଝିବୁ ଯା; ମୁଁ କ'ଣ ଜାଣେ ?'' ତା'ପରେ ମଥୁରଙ୍କ ଅନୁରୋଧରେ କହିଲେ, ''ଯାଃ, ମା'ର ଇଚ୍ଛାରେ ଯାହା ହେବାର ହେବ ।'' ବାସ୍ତବିକ୍ ମଥୁରବାବୁଙ୍କର ସେହି ବିପଦ ଟଳିଗଲା ।

**କୃପଣ ମଥୁରଙ୍କର ଠାକୁରଙ୍କ ପାଇଁ ଅଜସ୍ର ଅର୍ଥବ୍ୟୟର ଦୃଷ୍ଟାନ୍ତ :**

ଠାକୁରଙ୍କର ଉଭୟ ଭାବର ପରିଚାୟକ ଏହିପରି କେତେ ଯେ ଦୃଷ୍ଟାନ୍ତ ଦିଆଯାଇପାରେ ! ଏସମସ୍ତ ଦେଖି ଶୁଣି ହିଁ ମଥୁରଙ୍କର ଦୃଢ଼ ଧାରଣା ହୋଇଥିଲା, ବହୁରୂପୀ 'ବାବା'ଙ୍କର କୃପାରେ ହିଁ ତାଙ୍କର ଯାହା କିଛି—ଧନ କୁହ, ମାନ କୁହ, ପ୍ରତାପ କୁହ, ଆଉ ଯାହା କିଛି କୁହ ସବୁ ହୋଇଛି । ସୁତରାଂ ବାବାଙ୍କୁ

ସାକ୍ଷାତ୍ ଈଶ୍ୱରଙ୍କ ଅବତାର ମାନି ରାଜସମ୍ମାନ ଦେବା ଓ ଅଚଳ ଭକ୍ତି-ବିଶ୍ୱାସ କରିବା ମଥୁରଙ୍କ ପକ୍ଷରେ କିଛି ବିଚିତ୍ର କଥା ହୋଇ ନ ଥିଲା । ବିଷୟୀ ଲୋକର ଭକ୍ତିର ଦୌଡ଼ ଭକ୍ତିଭାଜନଙ୍କ ପ୍ରତି ଅର୍ଥବ୍ୟୟରେ ହିଁ ବୁଝାଯାଏ । ତାପରେ ମଥୁରବାବୁ—ସୁଚତୁର ହିସାବରେ ବୁଦ୍ଧିମାନ ବିଷୟୀ ବ୍ୟକ୍ତି ସଚରାଚର ଯେପରି ହୋଇଥାଆନ୍ତି—ଟିକେ କୃପଣ ମଧ୍ୟ ଥିଲେ । କିନ୍ତୁ 'ବାବା'ଙ୍କ ପାଇଁ ମଥୁରଙ୍କର ଅକାତରରେ ଧନବ୍ୟୟ ଦେଖି ତାଙ୍କର ଭକ୍ତି-ବିଶ୍ୱାସ ଯେ ଆନ୍ତରିକ ଥିଲା, ତାହା ସ୍ପଷ୍ଟ ବୁଝାଯାଏ । 'ବାବା'ଙ୍କୁ ଯାତ୍ରା ଗୀତ ଶୁଣାଇବାକୁ ଉପଯୁକ୍ତ ସାଜସଜ୍ଜା ପିନ୍ଧାଇ ବସାଇ, ଗାୟକମାନଙ୍କୁ ପୁରସ୍କାର ଦେବା ପାଇଁ ମଥୁର ତାଙ୍କ ସାମନାରେ ଦଶ ଦଶ ଟଙ୍କାର ଥାକ କରି ଶହେରୁ ଅଧିକ ଟଙ୍କା ସଜାଇ ଦେଇଥିଲେ । 'ବାବା' ଯାତ୍ରା ଦେଖିବାକୁ ଯାଇ କୌଣସି ହୃଦୟସ୍ପର୍ଶୀ ଗୀତ ବା କଥାରେ ମୁଗ୍ଧ ଓ ଭାବାବିଷ୍ଟ ହୋଇଗଲେ, ସଙ୍ଗେ ସଙ୍ଗେ ହୁଏତ ସେସମସ୍ତ ଟଙ୍କା ହାତ ଦେଇ ଗାୟକ ଆଡ଼କୁ ଠେଲି ତାଙ୍କୁ ପୁରସ୍କାର ଦେଇଦେଲେ ! ମଥୁରବାବୁଙ୍କର ସେଥିରେ ବିରକ୍ତି ନାହିଁ ! 'ବାବାଙ୍କର ଯେପରି ଉଚ୍ଚ ମିଜାଜ, ସେପରି ତାଙ୍କ ମୁତାବକ ପୁରସ୍କାର ଦିଆହୋଇଛି', ବୋଲି ଆନନ୍ଦ ପ୍ରକାଶ କରିବାକୁ ଲାଗିଲେ । ପୁନର୍ବାର ସେହିପରି ଟଙ୍କା ସଜାଇ ଦେଲେ ! ଭାବମୁଖରେ ଅବସ୍ଥିତ 'ବାବା'—ଯିଏ 'ଟଙ୍କା ମାଟି, ମାଟି ଟଙ୍କା' କହି ଏକାନ୍ତ ଭାବରେ ଲୋଭଶୂନ୍ୟ ହୋଇଅଛନ୍ତି—ତାଙ୍କ ସମ୍ମୁଖରେ ତାହା ଆଉ କେତେ ସମୟ ରହିପାରେ ? ପୁଣି ହୁଏତ ଭାବତରଙ୍ଗର ଉନ୍ମାଦ-ବିହ୍ୱଳତାରେ ଆତ୍ମହରା ହୋଇ ସମସ୍ତ ଟଙ୍କା ଏକାଥରେ ଦେଇଦେଲେ ! ପରେ ପାଖରେ ଟଙ୍କା ନ ଥିବା ଦେଖି ନିଜର ଶାଲ୍ ଏବଂ ବହୁମୂଲ୍ୟ ପରିଧାନ ବସ୍ତ୍ର ପର୍ଯ୍ୟନ୍ତ ଦେହରୁ ଖୋଲି ଗାୟକଙ୍କୁ ଦେଇ ଭାବରେ ନିସ୍ପନ୍ଦ ସମାଧିସ୍ଥ ହୋଇ ରହିଲେ ! ମଥୁର ତାଙ୍କର ଟଙ୍କା ସାର୍ଥକ ହେଲା ଭାବି ଆନନ୍ଦରେ ବିଭୋର ହୋଇ 'ବାବା'ଙ୍କୁ ପଙ୍ଖା କରିବାକୁ ଲାଗିଲେ ।

### ଏହି ବିଷୟକ ଅନ୍ୟାନ୍ୟ ଦୃଷ୍ଟାନ୍ତ :

କୃପଣ ମଥୁରଙ୍କର ବାବାଙ୍କ ସମ୍ବନ୍ଧରେ ଏପରି ଉଦାରତାର ଅନେକ ଦୃଷ୍ଟାନ୍ତ ଦେଇହେବ । ମଥୁର 'ବାବା'ଙ୍କୁ ସାଙ୍ଗରେ ନେଇ କାଶୀ, ବୃନ୍ଦାବନ ଆଦି ତୀର୍ଥପର୍ଯ୍ୟଟନରେ ଯାଇ 'ବାବା'ଙ୍କ କଥାରେ କାଶୀରେ 'କଳ୍ପତରୁ' ହୋଇ ଦାନ କଲେ, ଆବଶ୍ୟକୀୟ ପଦାର୍ଥ ଯିଏ ଯାହା ମାଗିଲା, ତାହାକୁ ତାହା ହିଁ ଦେଲେ ! 'ବାବା'ଙ୍କୁ ସେସମୟରେ କିଛି ମାଗିବାକୁ ଅନୁରୋଧ କରିବାରୁ 'ବାବା' କୌଣସି ଜିନିଷର ଅଭାବ ଖୋଜି ପାଇଲେ ନାହିଁ ! କହିଲେ, ''ଗୋଟିଏ କମଣ୍ଡଳୁ ଦିଅ !'' ବାବାଙ୍କର ତ୍ୟାଗ ଦେଖି ମଥୁରଙ୍କର ଚକ୍ଷୁ ଅଶ୍ରୁପୂର୍ଣ୍ଣ ହୋଇଥିଲା ।

## ଠାକୁରଙ୍କ ଇଚ୍ଛାରେ ମଥୁରଙ୍କର ବୈଦ୍ୟନାଥରେ ଦରିଦ୍ର ସେବା :

ମଥୁରଙ୍କ ସହିତ କାଶୀ ବୃନ୍ଦାବନ ଆଦି ତୀର୍ଥଦର୍ଶନରେ ଯିବା ସମୟରେ ବୈଦ୍ୟନାଥ ନିକଟବର୍ତ୍ତୀ କୌଣସି ଗ୍ରାମ ଭିତର ଦେଇ ଯିବାବେଳେ ଗ୍ରାମବାସୀମାନଙ୍କର ଦୁଃଖ-ଦାରିଦ୍ର୍ୟ ଦେଖି 'ବାବା'ଙ୍କର ହୃଦୟ କରୁଣାରେ ପୂର୍ଣ୍ଣ ହେଲା । ମଥୁରଙ୍କୁ କହିଲେ, ''ତୁମେ ତ ମା'ଙ୍କର ଦେଓ୍ୱାନ; ଏମାନଙ୍କୁ ମୁଣ୍ଡରେ ଲଗାଇବା ପାଇଁ ତେଲ, ଗୋଟିଏ ଗୋଟିଏ ଲୁଗା ଦିଅ, ଓ ପେଟଭରି ଦିନକ ପାଇଁ ଭୋଜନ ଦିଅ ।'' ମଥୁର ଏକଥାରେ ପ୍ରଥମେ ଟିକେ ଆଗପଛ ହେଲେ । କହିଲେ, 'ବାବା, ତୀର୍ଥରେ ବହୁତ ଖର୍ଚ୍ଚ ହେବ, ପୁଣି ଦେଖୁଛି ଏଠାରେ ଅନେକ ଲୋକ, ତେଣୁ ଏମାନଙ୍କୁ ଏସବୁ ଦେଇ ଭୋଜନ କରାଇବାକୁ ହେଲେ ଅର୍ଥର ଅଭାବ ହୋଇପାରେ । ଏଅବସ୍ଥାରେ ଆପଣ କ'ଣ କହୁଛନ୍ତି ?' ସେକଥା କିଏ ଶୁଣୁଛି ? ବାବାଙ୍କର ସେତେବେଳେ ଗ୍ରାମବାସୀମାନଙ୍କର ଦୁଃଖ ଦେଖି ଆଖିରୁ ଅନବରତ ଅଶ୍ରୁ ବୋହିଯାଉଛି, ହୃଦୟରେ ଅପୂର୍ବ କରୁଣାର ଆବେଶ ହୋଇଅଛି । କହିଲେ, ''ଦୂର୍ ଶଳା, ତୋ'ର କାଶୀ ମୁଁ ଯିବି ନାହିଁ । ମୁଁ ଏମାନଙ୍କ ପାଖରେ ହିଁ ରହିବି; ଏମାନଙ୍କର କେହି ନାହାନ୍ତି, ଏମାନଙ୍କୁ ଛାଡ଼ି ଯିବି ନାହିଁ ।'' ଏହା କହି ବାଳକ ପରି ଜିଦ୍ କରି ସେହି ଦରିଦ୍ର ଲୋକମାନଙ୍କ ମଧ୍ୟରେ ଯାଇ ବସିରହିଲେ ! ତାଙ୍କର ସେପରି କରୁଣା ଦେଖି ମଥୁର କଲିକତାରୁ ଲୁଗାପଟା ମଗାଇ 'ବାବା'ଙ୍କ କଥା ଅନୁସାରେ ସମସ୍ତ କାର୍ଯ୍ୟ କଲେ । 'ବାବା' ମଧ୍ୟ ଗ୍ରାମବାସୀମାନଙ୍କର ଆନନ୍ଦ ଦେଖି ଆନନ୍ଦରେ ପରିପୂର୍ଣ୍ଣ ହୋଇ ସେମାନଙ୍କଠାରୁ ବିଦାୟ ଗ୍ରହଣ କରି ହସି ହସି ମଥୁରଙ୍କ ସହିତ କାଶୀ ଗମନ କଲେ । ଶୁଣିଛୁ, ମଥୁରଙ୍କ ସହିତ ରାଣାଘାଟ ନିକଟସ୍ଥ ତାଙ୍କର ଜମିଦାରିଭୁକ୍ତ କୌଣସି ଗ୍ରାମରେ ଅନ୍ୟ ଏକ ସମୟରେ ବୁଲିବାକୁ ଯାଇ, ସେଠାରେ ଗ୍ରାମବାସୀମାନଙ୍କର ଦୁର୍ଦ୍ଦଶା ଦେଖି ଠାକୁରଙ୍କ ହୃଦୟରେ ସେହି ପ୍ରକାର କରୁଣା ଆଉଥରେ ଉଦୟ ହୋଇଥିଲା ଏବଂ ମଥୁରଙ୍କ ଦ୍ୱାରା ଆଉଥରେ ସେହିପରି ଅନୁଷ୍ଠାନ କରାଇଥିଲେ ।

## ଠାକୁରଙ୍କ ସହିତ ମଥୁରବାବୁଙ୍କର ସମ୍ବନ୍ଧ ଦୈବନିର୍ଦ୍ଦିଷ୍ଟ; ଭୋଗବାସନା ଥିଲା ବୋଲି ମଥୁରବାବୁଙ୍କର ପୁନର୍ଜନ୍ମ ସମ୍ବନ୍ଧରେ ଠାକୁରଙ୍କର ଉକ୍ତି :

ଗୁରୁଭାବମୁଖରେ ଅବସ୍ଥିତ ଠାକୁରେ ଏହିପରି ମଧୁର ସମ୍ବନ୍ଧରେ ମଥୁରଙ୍କୁ ଚିରକାଳ ପାଇଁ ଆବଦ୍ଧ କରିଥିଲେ । ସାଧନକାଳରେ ଏକସମୟରେ ଠାକୁରଙ୍କ ମନରେ ଯେଉଁ ଅଦ୍ଭୁତ ଭାବର ସହସା ଉଦୟ ହୋଇ ତାହାଙ୍କୁ ଶ୍ରୀଶ୍ରୀଜଗଦମ୍ବାଙ୍କ ନିକଟରେ ପ୍ରାର୍ଥନା କରାଇଥିଲା, ''ମା, ମୋତେ ଶୁଷ୍କ ସାଧୁ କରିବୁ ନାହିଁ, ରସରେ ରଖିବୁ, ଆନନ୍ଦରେ ରଖିବୁ'' —ମଥୁରାନାଥଙ୍କ ସହିତ ଏହି ପ୍ରକାର ଅଦୃଷ୍ଟପୂର୍ବ ସମ୍ବନ୍ଧ ତାହାର ହିଁ ପରିଣତ ଫଳବିଶେଷ । କାରଣ, ସେହି ପ୍ରାର୍ଥନା ଫଳରେ ହିଁ

ଜଗନ୍ମାତା ଠାକୁରଙ୍କୁ ଦେଖାଇ ଦେଇଥିଲେ, ତାଙ୍କର ଦେହରକ୍ଷାଦି ପ୍ରୟୋଜନସିଦ୍ଧି ନିମିତ୍ତ ଚାରିଜଣ ରସଦଦାର ତାଙ୍କ ସହିତ ପ୍ରେରିତ ହୋଇଛନ୍ତି ଏବଂ ମଥୁରାନାଥ ହିଁ ସେମାନଙ୍କ ଭିତରେ ପ୍ରଥମ ଓ ଅଗ୍ରଣୀ । ଦୈବନିର୍ଦ୍ଦିଷ୍ଟ ସମ୍ବନ୍ଧ ନ ହେଲେ କ'ଣ ଏତେଦିନ ଏସମ୍ବନ୍ଧ ଏପରି ଅକ୍ଷୁଣ୍ଣ ଭାବରେ କଦାପି ରହିପାରିଥାଆନ୍ତା ? ହାୟ ପୃଥିବୀ, ଏପରି ବିଶୁଦ୍ଧ ମଧୁର ସମ୍ବନ୍ଧ ତୁମେ ଏତେ ଦିନ କେତେଟା ଦେଖିଅଛ ! ପୁଣି କହେ, ହାୟ ଭୋଗବାସନା, ନ ଜାଣେ ତୁମେ କିପରି ବଜ୍ରବନ୍ଧନରେ ମାନବ ମନକୁ ବାନ୍ଧିରଖିଛ ! ଏହି ଶୁଦ୍ଧ–ବୁଦ୍ଧ–ମୁକ୍ତ–ସ୍ୱଭାବ ଅହେତୁକ ଭଲପାଇବାର ଘନୀଭୂତ ପ୍ରତିମା ଏପରି ଅଦ୍ଭୁତ ଠାକୁରଙ୍କୁ ଦେଖି ଏବଂ ତାଙ୍କ ସହିତ ସମ୍ବନ୍ଧ ଜୋଡ଼ିବା ପରେ ମଧ୍ୟ ଆମ ମନ ତୁମକୁ ଛାଡ଼ି ମଧ୍ୟ ଛାଡ଼ିବାକୁ ଚାହୁଁ ନାହିଁ ! ଜନୈକ ବନ୍ଧୁ ଠାକୁରଙ୍କର ନିଜମୁଖରୁ ଦିନେ ମଥୁରାନାଥଙ୍କର ଅପୂର୍ବ କଥା ଶୁଣୁ ଶୁଣୁ ତାଙ୍କର ମହାଭାଗ୍ୟ କଥା ଭାବି ସ୍ତମ୍ଭିତ ଓ ବିଭୋର ହୋଇ ତାଙ୍କୁ ପଚାରିଥିଲେ, ''(ମୃତ୍ୟୁପରେ) ମଥୁରବାବୁଙ୍କର କ'ଣ ହେଲା, ମହାଶୟ ? ତାଙ୍କୁ ନିଶ୍ଚୟ ଆଉ ଜନ୍ମଗ୍ରହଣ କରିବାକୁ ହେବ ନାହିଁ !'' ଠାକୁର ଶୁଣି କହିଲେ, ''କେଉଁଠି ଗୋଟେ ରାଜା ହୋଇ ଜନ୍ମିଛି ଆଉ କ'ଣ ! ଭୋଗବାସନା ଥିଲା ।'' ଏହା କହି ଠାକୁର ଅନ୍ୟ କଥା ପକାଇଲେ ।

# ଅଷ୍ଟମ ଅଧ୍ୟାୟ

## ଗୁରୁଭାବରେ ନିଜ ଗୁରୁମାନଙ୍କ ସହିତ ସମ୍ବନ୍ଧ

ସର୍ବସ୍ୟ ଚାହଂ ହୃଦି ସନ୍ନିବିଷ୍ଟୋ
ମତ୍ତଃ ସ୍ମୃତିର୍ଜ୍ଞାନମପୋହନଂ ଚ ।
ବେଦୈଶ୍ଚ ସର୍ବୈରହମେବ ବେଦ୍ୟୋ
ବେଦାନ୍ତକୃଦ୍‌ବେଦବିଦେବ ଚାହମ୍ ।। —ଗୀତା, ୧୫/୧୫

### ଗୁରୁଭାବ ଅବତାରପୁରୁଷମାନଙ୍କର ନିଜସ୍ୱ ସମ୍ପତ୍ତି :

ପୂର୍ବରୁ କହିଛୁ, ଯିଏ ଗୁରୁ ହେବାକୁ ଜନ୍ମଗ୍ରହଣ କରିଥାନ୍ତି, ତାଙ୍କଠାରେ ବାଲ୍ୟକାଳରୁ ହିଁ ଏହି ଭାବର ଯଥେଷ୍ଟ ପରିଚୟ ମିଳିଥାଏ । ମହାପୁରୁଷ ଅବତାରମାନଙ୍କ କ୍ଷେତ୍ରରେ କଥା ହିଁ ନାହିଁ । ସେମାନଙ୍କ ମଧ୍ୟରେ ଯିଏ ଜନସମାଜରେ ଯେଉଁଭାବ-ପ୍ରତିଷ୍ଠା ନିମିତ୍ତ ଜନ୍ମଗ୍ରହଣ କରିଥାଆନ୍ତି, ବାଲ୍ୟକାଳରୁ ହିଁ ତାଙ୍କଠାରେ ସେହି ଭାବ ପ୍ରତିଷ୍ଠିତ ଥିବାର ଦେଖିବାକୁ ମିଳିଥାଏ ! ଶରୀର ଓ ଇନ୍ଦ୍ରିୟଗୁଡ଼ିକର ପରିପୂର୍ଣ୍ଣତା, ଦେଶକାଳାଦି ଅବସ୍ଥାସମୂହର ଅନୁକୂଳତା ପ୍ରଭୃତି କାରଣସମୂହ କ୍ରମେ କ୍ରମେ ଉପସ୍ଥିତ ହୋଇ ସେମାନଙ୍କ ଜୀବନରେ ସେହି ଭାବ ପୂର୍ଣ୍ଣ ପରିସ୍ଫୁଟ ହେବାରେ ସହାୟତା କରିପାରେ; କିନ୍ତୁ ଏସମସ୍ତ କାରଣ ହିଁ ଯେ ସେମାନଙ୍କ ମଧ୍ୟରେ ଏହି ଭାବର ଜନ୍ମ ଦେଇ ଏଜୀବନରେ ସେମାନଙ୍କୁ ଗୁରୁ କରି ତୋଳିଥାଏ, ତାହା ନୁହେଁ । ଦେଖାଯାଏ, ଏହା ଯେପରି ସେମାନଙ୍କର ନିଜସ୍ୱ ସମ୍ପତ୍ତି, ଯାହାକୁ ନେଇ ହିଁ ସେମାନେ ନିଜର ଜୀବନ ଆରମ୍ଭ କରିଅଛନ୍ତି, ଏବଂ ବର୍ତ୍ତମାନ ଜୀବନରେ ସେହି ଭାବୋତ୍ପତ୍ତିର କାରଣ ଅନୁସନ୍ଧାନ କଲେ ସହସ୍ର ଚେଷ୍ଟାରେ ମଧ୍ୟ ତାହା ଖୋଜି ମିଳେ ନାହିଁ ! ଠାକୁରଙ୍କ ଜୀବନରେ ଗୁରୁଭାବୋତ୍ପତ୍ତି ଅନୁସନ୍ଧାନ କରିବାକୁ ଗଲେ ମଧ୍ୟ ଠିକ୍ ସେହିପରି ଦେଖାଯାଏ । ବାଲ୍ୟ ସମୟ ଦେଖ, ଯୌବନରେ ଦେଖ, ସାଧନାକାଳରେ ଦେଖ, ସବୁ ସମୟରେ ହିଁ ସେହି ଭାବର ଅଳ୍ପାଧିକ ବିକାଶ ତାଙ୍କ ଜୀବନରେ ଦେଖି ଆଶ୍ଚର୍ଯ୍ୟ ହେବାକୁ ପଡ଼ିଥାଏ; ପୁଣି କିପରି ଏହି ଭାବର ପ୍ରଥମ ଆରମ୍ଭ ତାଙ୍କ ଜୀବନରେ ଉପସ୍ଥିତ ହେଲା, ଏକଥା ଭାବି-ଚିନ୍ତି କିଛି ସ୍ଥିର କରିହୁଏ ନାହିଁ । ବାଲ୍ୟଜୀବନ ବିଷୟ ଏଠାରେ ଉଲ୍ଲେଖ କରି ଗ୍ରନ୍ଥର କଳେବର ବୃଦ୍ଧି କରିବା ଆମର ଇଚ୍ଛା ନୁହେଁ । ତେବେ ଠାକୁରଙ୍କ ଯୌବନ ଏବଂ ସାଧନକାଳରେ, ଯେଉଁ ସମୟର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ମଥୁରବାବୁଙ୍କୁ ନେଇ କେତେ ପ୍ରକାର ଗୁରୁଭାବର ଲୀଳାର ବିକାଶ ହୋଇଥିଲା, ସେହି ସମୟର ଅନେକ କଥା ଏବେ ମଧ୍ୟ କହିବାକୁ ବାକି ଅଛି ଏବଂ ତାହା ହିଁ ଏବେ ପାଠକଙ୍କୁ ଉପହାର ଦେଲେ ମନ୍ଦ ହେବ ନାହିଁ ।

## ଠାକୁରଙ୍କର ଅନେକ ଗୁରୁଙ୍କ ନିକଟରୁ ଦୀକ୍ଷା ଗ୍ରହଣ :

ମନ୍ତ୍ରଦାତା ଗୁରୁ ଜଣେ ହେଲେ ମଧ୍ୟ ଉପଗୁରୁ ବା ଶିକ୍ଷାଗୁରୁ ଅନେକ କରାଯାଇପାରେ—ଏହି ବିଷୟଟି ଠାକୁର ଅନେକ ସମୟରେ ଆମମାନଙ୍କୁ ଶ୍ରୀମଦ୍‌ଭାଗବତରେ ଅବଧୂତ ଉପାଖ୍ୟାନ କଥା ଉଠାଇ ବୁଝାଇବାକୁ ପ୍ରୟାସ କରୁଥିଲେ । ଭାଗବତରେ ଲେଖାଅଛି, ସେହି ଅବଧୂତ କ୍ରମେ କ୍ରମେ ଚବିଶି ଜଣ ଉପଗୁରୁଙ୍କ ନିକଟରୁ ବିଶେଷ ବିଶେଷ ଶିକ୍ଷା ଲାଭ କରି ସିଦ୍ଧ ହୋଇଥିଲେ । ଠାକୁରଙ୍କ ଜୀବନରେ ମଧ୍ୟ ଆମେ ଏପରି ବିଶେଷ ବିଶେଷ ସାଧନୋପାୟ ଓ ସତ୍ୟୋପଲବ୍ଧି ନିମିତ୍ତ ବହୁ ଗୁରୁଗ୍ରହଣର ଅଭାବ ଦେଖୁ ନାହୁଁ । ତନ୍ମଧ୍ୟରେ ଭୈରବୀ ବ୍ରାହ୍ମଣୀ; ଲେଙ୍‌ଟା (ତୋତାପୁରୀ) ଓ ମୁସଲମାନ ଗୋବିନ୍ଦଙ୍କ ନାମ ହିଁ ଆମେ ଅନେକ ସମୟରେ ସେ କହିବାର ଶୁଣିଛୁ । ଅନ୍ୟାନ୍ୟ ହିନ୍ଦୁ ସମ୍ପ୍ରଦାୟର ସାଧନାର ଉପାୟସମୂହ ଅନ୍ୟ ଗୁରୁମାନଙ୍କଠାରୁ ଶିକ୍ଷା କରିଥିଲେ ମଧ୍ୟ ଠାକୁର ସେମାନଙ୍କର ନାମ ବିଶେଷ ଉଲ୍ଲେଖ କରୁ ନ ଥିଲେ । କେବଳ କହୁଥିଲେ ଯେ, ସେ ଅନ୍ୟାନ୍ୟ ଗୁରୁମାନଙ୍କ ନିକଟରୁ ଅନ୍ୟାନ୍ୟ ମତର ସାଧନା-ପ୍ରଣାଳୀ ଜାଣିନେଇ ତିନି ଦିନ ମାତ୍ର ସାଧନା କରି ସେସମସ୍ତ ମତରେ ସିଦ୍ଧିଲାଭ କରିଥିଲେ । ସେହି ସକଳ ଗୁରୁମାନଙ୍କର ନାମ ଠାକୁରଙ୍କର ମନେ ନ ଥିଲା, କିମ୍ବା ବିଶେଷ ଉଲ୍ଲେଖଯୋଗ୍ୟ ନୁହେଁ ବୋଲି ଠାକୁର ଉଲ୍ଲେଖ କରୁ ନ ଥିଲେ, ତାହା ଏବେ କହିବା କଠିନ । ତେବେ ଏତିକି ବୁଝାଯାଏ ଯେ, ସେମାନଙ୍କ ସହିତ ସମ୍ବନ୍ଧ ମଧ୍ୟ ଠାକୁରଙ୍କର ଅତି ଅଳ୍ପକାଳ ପାଇଁ ହୋଇଥିଲା । ତେଣୁ ସେମାନଙ୍କ କଥା ବିଶେଷ ଉଲ୍ଲେଖଯୋଗ୍ୟ ନୁହେଁ ।

## ଭୈରବୀ ବ୍ରାହ୍ମଣୀ :

ଠାକୁରଙ୍କର ଶିକ୍ଷାଗୁରୁମାନଙ୍କ ମଧ୍ୟରୁ ଭୈରବୀ ବ୍ରାହ୍ମଣୀ ତାଙ୍କ ସହିତ ବହୁ କାଳ ବାସ କରିଥିଲେ । କେତେଦିନ ତାହା ନିର୍ଦ୍ଦିଷ୍ଟ ଭାବରେ କହିବା କଠିନ, କାରଣ ଠାକୁରଙ୍କର ଶ୍ରୀଚରଣରେ ଆମେ ଆଶ୍ରୟ ନେବାର କିଛି କାଳ ପୂର୍ବରୁ ସେ ଦକ୍ଷିଣେଶ୍ୱର ପରିତ୍ୟାଗ କରି ଅନ୍ୟତ୍ର ଗମନ କରିଥିଲେ ଏବଂ ପୁନରାୟ ଆଉ ଫେରି ନ ଥିଲେ । ଏହାପରେ ଠାକୁର ତାଙ୍କର ସନ୍ଧାନ ଆଉ ଥରେ ମାତ୍ର ପାଇଥିଲେ; ସେତେବେଳେ ଏହି ଭୈରବୀ ବ୍ରାହ୍ମଣୀ କାଶୀଧାମରେ ବାସ କରୁଥିଲେ ।[୧]

## ବ୍ରାହ୍ମଣୀଙ୍କର ଠାକୁରଙ୍କୁ ସହାୟତା :

ବ୍ରାହ୍ମଣୀ ଭୈରବୀ ଯେ ବହୁକାଳ ଦକ୍ଷିଣେଶ୍ୱର-କାଳୀମନ୍ଦିରରେ ଏବଂ ଏହାର ନିକଟବର୍ତ୍ତୀ ଗଙ୍ଗାକୂଳରେ—ଯଥା, ଦେବମଣ୍ଡଳ ଘାଟ ପ୍ରଭୃତି ସ୍ଥାନରେ—

୧. ସାଧକଭାବ ଦ୍ୱାଦଶ ଅଧ୍ୟାୟ ।

ବାସ କରିଥିଲେ, ଏହି କଥା ଆମେ ଠାକୁରଙ୍କର ଶ୍ରୀମୁଖରୁ ଶୁଣିଛୁ । ଆହୁରି ମଧ୍ୟ ଶୁଣିଛୁ, ବ୍ରାହ୍ମଣୀ ଠାକୁରଙ୍କୁ ଚଉଷଠି ପ୍ରକାର ପ୍ରଧାନ ପ୍ରଧାନ ତନ୍ତ୍ରୋକ୍ତ ଯେତେ ସବୁ ସାଧନା-ପ୍ରଣାଳୀ, ସବୁ ହିଁ ଗୋଟି ଗୋଟି କରି କରାଇଥିଲେ । ଶୁଣିଛୁ, ବ୍ରାହ୍ମଣୀ ବୈଷ୍ଣବମତସମ୍ବନ୍ଧୀୟ ତନ୍ତ୍ରାଦିରେ ମଧ୍ୟ ସୁପଣ୍ଡିତା ଥିଲେ; ତେବେ ଠାକୁରଙ୍କର ସଖୀଭାବ ପ୍ରଭୃତିର ସାଧନକାଳରେ ମଧ୍ୟ କୌଣସି କୌଣସି ସ୍ଥଳରେ ସହାୟତା କରିଥିଲେ କି ନାହିଁ, ସେବିଷୟରେ କୌଣସି କଥା ସ୍ପଷ୍ଟ ଭାବରେ ଶୁଣି ନାହୁଁ ।[୧] ଶୁଣିଛୁ ଯେ, ଠାକୁରଙ୍କୁ ଏପରି ସାଧନା କାଳରେ ସହାୟତା କରିବା ସାରିବା ପରେ ମଧ୍ୟ ସେ ଆହୁରି କେତେବର୍ଷ ସମୁଦାୟ ପ୍ରାୟ ଛଅ ବର୍ଷରୁ କିଛି ଅଧିକ ସମୟ ଅତ୍ୟନ୍ତ ସମ୍ମାନର ସହିତ ଦକ୍ଷିଣେଶ୍ୱରରେ ବାସ କରିଥିଲେ । ଏହି ସମୟରେ ବେଳେବେଳେ ସେ ଠାକୁର ଏବଂ ତାଙ୍କର ଭଣଜା ହୃଦୟଙ୍କ ସହିତ ଠାକୁରଙ୍କ ଜନ୍ମଭୂମି କାମାରପୁକୁର ଯାଇ ତାଙ୍କର ଆତ୍ମୀୟଗଣଙ୍କ ସହିତ ବାସ କରିଥିଲେ । ଶ୍ରୀଶ୍ରୀମାତାଠାକୁରାଣୀ ଏହି ସମୟରୁ ବ୍ରାହ୍ମଣୀଙ୍କୁ ନିଜର ଶାଶୁମା' ପରି ସମ୍ମାନ ତଥା ମାତୃସମ୍ବୋଧନ କରୁଥିଲେ ।

**ବ୍ରାହ୍ମଣୀଙ୍କର ବୈଷ୍ଣବ ତନ୍ତ୍ରୋକ୍ତ ଭାବର ଅଭିଜ୍ଞତା :**

ବ୍ରାହ୍ମଣୀ ବୈଷ୍ଣବମାନଙ୍କର ସାଧନ-ପ୍ରଣାଳୀ ଅନୁସରଣ କରି ସଖ୍ୟ-ବାତ୍ସଲ୍ୟ ଇତ୍ୟାଦି ଭାବସମୂହର ରସ ମଧ୍ୟ କିଛି କିଛି ନିଜ ଜୀବନରେ ଅନୁଭବ କରିଥିଲେ । ଦକ୍ଷିଣେଶ୍ୱରର ଦେବମଣ୍ଡଳ ଘାଟରେ ଅବସ୍ଥାନ ବେଳେ ସେ ଠାକୁରଙ୍କ ପ୍ରତି ବାତ୍ସଲ୍ୟରସରେ ମୁଗ୍ଧ ହୋଇ ହାତରେ ଲହୁଣୀ ଧରି ନୟନାଶ୍ରୁରେ ବସନ ସିକ୍ତ କରୁ କରୁ 'ଗୋପାଳ' 'ଗୋପାଳ' ବୋଲି ଉଚ୍ଚସ୍ୱରରେ ଆହ୍ୱାନ କରୁଥିଲେ । ଆଉ, ଏପଟେ ଦକ୍ଷିଣେଶ୍ୱର ମନ୍ଦିରରେ ସହସା ଠାକୁରଙ୍କର ମନ ବ୍ରାହ୍ମଣୀଙ୍କୁ ଦେଖିବାପାଇଁ ବ୍ୟାକୁଳ ହୋଇ ଉଠୁଥିଲା । ଶୁଣିଛୁ, ସେତେବେଳେ ସେ ବାଳକ ଯେପରି ଜନନୀ ନିକଟରେ ଉପସ୍ଥିତ ହୁଏ, ସେହିପରି ଏକ ଦୌଡ଼ରେ ସେହି ଏକ ମାଇଲ ପଥ ଅତିକ୍ରମ କରି ତାଙ୍କ ନିକଟରେ ଉପସ୍ଥିତ ହେଉଥିଲେ ଏବଂ ନିକଟରେ ବସି ଲହୁଣୀ ଭୋଜନ କରୁଥିଲେ ! ଏହା ଛଡ଼ା ବ୍ରାହ୍ମଣୀ ମଧ୍ୟ ବେଳେବେଳେ କେଉଁଠାରୁ ଲାଲ ବନାରସୀ ପାଟ ଓ ନାନା ଅଳଙ୍କାର ପିନ୍ଧି ପଡ଼ାର ସ୍ତ୍ରୀଲୋକମାନଙ୍କ ସହିତ ନାନା ପ୍ରକାର ଖାଇବା ଜିନିଷ ଧରି ଗୀତ ଗାଉ ଗାଉ ଠାକୁରଙ୍କ ନିକଟକୁ ଦକ୍ଷିଣେଶ୍ୱର ଆସି ଠାକୁରଙ୍କୁ ଖୁଆଇ ଫେରିଯାଉଥିଲେ । ଠାକୁର କହୁଥିଲେ, ତାଙ୍କର ଆଲୁଳାୟିତ କେଶ ଓ ଭାବବିହ୍ୱଳ ଅବସ୍ଥା ଦେଖି ସେତେବେଳେ ତାଙ୍କୁ ଗୋପାଳ ବିରହରେ କାତର ନନ୍ଦରାଣୀ ଯଶୋଦା ବୋଲି ହିଁ ଲୋକଙ୍କର ମନେ ହେଉଥିଲା ।

---

୧. ସାଧକଭାବ, ଦ୍ୱାଦଶ ଅଧ୍ୟାୟ ।

**ବ୍ରାହ୍ମଣୀଙ୍କର ରୂପଗୁଣ ଦେଖି ମଥୁରବାବୁଙ୍କର ସନ୍ଦେହ :**

ବ୍ରାହ୍ମଣୀ ଗୁଣରେ ଯେପରି, ରୂପରେ ମଧ୍ୟ ସେପରି ଅସାମାନ୍ୟା ଥିଲେ । ଠାକୁରଙ୍କ ଶ୍ରୀମୁଖରୁ ଶୁଣିଛୁ, ମଥୁରବାବୁ ପ୍ରଥମେ ପ୍ରଥମେ ବ୍ରାହ୍ମଣୀଙ୍କ ରୂପଲାବଣ୍ୟଦର୍ଶନରେ ଏବଂ ତାଙ୍କର ଏକାକିନୀ ଅସହାୟ ଅବସ୍ଥାରେ ଯଥେଚ୍ଛ ଭ୍ରମଣ କରିବା ଶୁଣି ତାଙ୍କର ଚରିତ୍ର ପ୍ରତି ସନ୍ଦିହାନ ହୋଇଥିଲେ । ଦିନେ ବିଦ୍ରୂପ ଛଳରେ କହିଦେଲେ, ''ଭୈରବୀ, ତୁମର ଭୈରବ କେଉଁଠି ?'' ସେତେବେଳେ ବ୍ରାହ୍ମଣୀ ମା'କାଳୀଙ୍କ ଦର୍ଶନ ଆଦି ସାରି ମନ୍ଦିରରୁ ବାହାରକୁ ଆସୁଥିଲେ । ହଠାତ୍ ଏପରି ପ୍ରଶ୍ନରେ କୌଣସି ପ୍ରକାର ଅପ୍ରତିଭ ବା ରାଗାନ୍ୱିତା ନ ହୋଇ ସ୍ଥିରଭାବରେ ମଥୁରବାବୁଙ୍କୁ ପ୍ରଥମେ ନିରୀକ୍ଷଣ କଲେ, ପରେ ଶ୍ରୀଶ୍ରୀଜଗଦମ୍ବାଙ୍କର ପଦତଳେ ଶବରୂପରେ ପତିତ ମହାଦେବଙ୍କୁ ଅଙ୍ଗୁଳି ନିର୍ଦ୍ଦେଶ କରି ତାଙ୍କୁ ଦେଖାଇଦେଲେ । ସନ୍ଦିଗ୍ଧମନା ବିଷୟୀ ମଥୁର ଏତିକିରେ କ୍ଷାନ୍ତ ନ ହୋଇ କହିଲେ, ''ସେ ଭୈରବ ତ ଅଚଳ ।'' ବ୍ରାହ୍ମଣୀ ଧୀର ଓ ଗମ୍ଭୀର ସ୍ୱରରେ ଉତ୍ତର ଦେଲେ, ''ଯଦି ଅଚଳକୁ ସଚଳ କରି ନ ପାରିବି, ତାହେଲେ ଭୈରବୀ କାହିଁକି ହୋଇଛି ?'' ବ୍ରାହ୍ମଣୀଙ୍କର ଏପରି ଧୀର ଗମ୍ଭୀର ଭାବ ଓ ଉତ୍ତରରେ ମଥୁର ଲଜ୍ଜିତ ଓ ଅପ୍ରତିଭ ହୋଇ ନିର୍ବାକ୍ ହୋଇ ରହିଲେ । ପରେ ଦିନକୁ ଦିନ ବ୍ରାହ୍ମଣୀଙ୍କର ଉଚ୍ଚ ପ୍ରକୃତି ଓ ଅଶେଷ ଗୁଣର ପରିଚୟ ଯେତେ ପାଇବାକୁ ଲାଗିଲେ, ସେତେ ହିଁ ମଥୁରଙ୍କ ମନରେ ଆଉ ସେପ୍ରକାର ଖରାପ ସନ୍ଦେହ ରହିଲା ନାହିଁ ।

**ବ୍ରାହ୍ମଣୀଙ୍କର ପୂର୍ବ ପରିଚୟ :**

ଠାକୁରଙ୍କ ଶ୍ରୀମୁଖରୁ ଶୁଣିଛୁ, ବ୍ରାହ୍ମଣୀ ପୂର୍ବବଙ୍ଗର କୌଣସି ଏକ ସ୍ଥାନରେ ଜନ୍ମଗ୍ରହଣ କରିଥିଲେ ଏବଂ ତାଙ୍କୁ ଦେଖିଲେ ହିଁ ସେ କୌଣସି ସମ୍ଭ୍ରାନ୍ତ ବଂଶୀୟା 'ବଡ଼ ଘରର ମହିଳା' ବୋଲି ସମସ୍ତଙ୍କର ନିଃସଂଶୟ ଧାରଣା ହେଉଥିଲା । ପ୍ରକୃତରେ ସେ ତାହା ହିଁ ଥିଲେ । କିନ୍ତୁ କେଉଁ ଗ୍ରାମର ଏବଂ କାହା ଘର ପୁତ୍ରୀରୂପରେ ଆଲୋକିତ କରିଥିଲେ, ଗୃହିଣୀ ହୋଇ କାହା ଘର କେବେ ଉଜ୍ଜ୍ୱଳ କରିଥିଲେ କି ନାହିଁ, ଏବଂ ପ୍ରୌଢ଼ ବୟସରେ ଏପରି ସନ୍ନ୍ୟାସିନୀ ହୋଇ ଦେଶ-ବିଦେଶ ଭ୍ରମଣ କରିବାର ଓ ସଂସାରରେ ବୀତରାଗ ହେବାର କାରଣ କ'ଣ ଥିଲା, ସେସବୁ ଆମେ ଠାକୁରଙ୍କ ନିକଟରୁ କେବେ ହେଲେ ଶୁଣି ନାହୁଁ । ପୁଣି ଏତେ ଲେଖା-ପଢ଼ା ସେ କେଉଁଠୁ ଶିଖିଲେ ଏବଂ ସାଧନାରେ ତାଙ୍କର ଏତେ ଉନ୍ନତିଲାଭ କେଉଁଠାରେ, କେବେ କଲେ—ତାହା ମଧ୍ୟ ଆମମାନଙ୍କ ମଧ୍ୟରୁ କାହାକୁ କିଛି ଜଣା ନାହିଁ ।

**ବ୍ରାହ୍ମଣୀ ଉଚ୍ଚସ୍ତରର ସାଧିକା ଥିଲେ :**

ସାଧନାରେ ଯେ ବ୍ରାହ୍ମଣୀ ବିଶେଷ ଭାବରେ ଉନ୍ନତା ହୋଇଥିଲେ, ସେକଥା ଆଉ କହିବାକୁ ହେବ ନାହିଁ । ଦୈବକର୍ତ୍ତୃକ ଠାକୁରଙ୍କର ଗୁରୁରୂପରେ ମନୋନୀତ ହୋଇଥିବାରୁ ହିଁ ତାଙ୍କର ପରିଚୟ ବିଶେଷ ଭାବରେ ମିଳିଥାଏ । ପୁଣି ଯେତେବେଳେ ଠାକୁରଙ୍କ ଶ୍ରୀମୁଖରୁ ଆମେ ଜାଣିପାରିଛୁ ଯେ, ବ୍ରାହ୍ମଣୀ ତାଙ୍କ ନିକଟକୁ ଆସିବା ପୂର୍ବରୁ ହିଁ ଯୋଗବଳରେ ଜାଣିପାରିଥିଲେ ଯେ, ଜୀବଦ୍ଦଶାରେ ତାଙ୍କୁ ଠାକୁରପ୍ରମୁଖ ତିନିଜଣ ବ୍ୟକ୍ତିଙ୍କୁ ସାଧନାରେ ସହାୟତା କରିବାକୁ ହେବ ଏବଂ ଏହି ତିନିବ୍ୟକ୍ତିଙ୍କ ସହିତ ଭିନ୍ନ ଭିନ୍ନ ଦେଶ ଓ କାଳରେ ସାକ୍ଷାତ୍ ହେବାମାତ୍ରେ ବ୍ରାହ୍ମଣୀ ସେମାନଙ୍କୁ ଚିହ୍ନିପାରି ସହାୟତା କରିଥିଲେ, ତେଣୁ ଏବିଷୟରେ ଆଦୌ ସନ୍ଦେହ ରହେ ନାହିଁ ।

**ବ୍ରାହ୍ମଣୀଙ୍କର ଯୋଗଲବ୍ଧ ଦର୍ଶନ :**

ବ୍ରାହ୍ମଣୀ ଠାକୁରଙ୍କ ସହିତ ପ୍ରଥମ ସାକ୍ଷାତରେ ହିଁ ଚନ୍ଦ୍ର ଓ ଗିରିଜା କଥା ତାଙ୍କୁ କହିଥିଲେ । କହିଥିଲେ, ‘‘ବାବା, ସେମାନଙ୍କ ଦୁଇଜଣଙ୍କୁ ଏହା ପୂର୍ବରୁ ହିଁ ପାଇଛି; ଆଉ ତୁମକୁ ଅନେକ ଦିନଧରି ଖୋଜି ବୁଲୁଥିଲି, ଆଜି ପାଇଲି । ସେମାନଙ୍କ ସହିତ ପରେ ତୁମକୁ ଦେଖା କରାଇଦେବି ।’’ ବାସ୍ତବିକ ପରେ ସେହି ଦୁଇବ୍ୟକ୍ତିଙ୍କୁ ଦକ୍ଷିଣେଶ୍ୱରକୁ ଆଣି ବ୍ରାହ୍ମଣୀ ଠାକୁରଙ୍କ ସହିତ ଦେଖା କରାଇଦେଇଥିଲେ । ଠାକୁରଙ୍କର ଶ୍ରୀମୁଖରୁ ଶୁଣିଛୁ, ସେହି ଦୁଇଜଣ ମଧ୍ୟ ଉଚ୍ଚସ୍ତରର ସାଧକ ଥିଲେ । କିନ୍ତୁ ସାଧନା ପଥରେ ଅନେକ ଦୂର ଅଗ୍ରସର ହେଲେ ମଧ୍ୟ ଈଶ୍ୱରଙ୍କ ଦର୍ଶନଲାଭରେ ସିଦ୍ଧକାମ ହୋଇପାରି ନ ଥିଲେ । ବିଶେଷ ବିଶେଷ ଶକ୍ତି ବା ସିଦ୍ଧି ଲାଭ କରି ପଥଭ୍ରଷ୍ଟ ହୋଇଥିଲେ ।

**ବ୍ରାହ୍ମଣୀଙ୍କର ଶିଷ୍ୟ ଚନ୍ଦ୍ରଙ୍କର କଥା :**

ଠାକୁର କହୁଥିଲେ, ଚନ୍ଦ୍ର ଭାବୁକ ତଥା ଈଶ୍ୱର-ପ୍ରେମୀ ଥିଲେ । ତାଙ୍କର ‘ଗୁଟିକା-ସିଦ୍ଧି’ହୋଇଥିଲା । ମନ୍ତ୍ରପୂତ ଗୁଟିକାଟି ଅଙ୍ଗରେ ଧାରଣ କରି ସେ ସାଧାରଣ ନୟନର ଦୃଷ୍ଟି ବହିର୍ଭୂତ ଅଥବା ଅଦୃଶ୍ୟ ହୋଇପାରୁଥିଲେ ଏବଂ ସେହି ପ୍ରକାର ଅଦୃଶ୍ୟ ହୋଇ ସଯତ୍ନରେ ରକ୍ଷିତ ଦୁର୍ଗମ ସ୍ଥାନକୁ ମଧ୍ୟ ଗମନାଗମନ କରିପାରୁଥିଲେ । କିନ୍ତୁ ଈଶ୍ୱରଲାଭ ପୂର୍ବରୁ କ୍ଷୁଦ୍ର ମାନବ-ମନ ଏପରି ସିଦ୍ଧି ଲାଭ କଲେ ହିଁ ଯେ ଅହଂକୃତ ହୋଇଉଠେ, ଏବଂ ଅହଂକାରବୃଦ୍ଧି ହିଁ ଯେ ମାନବକୁ ବାସନା ଜାଲରେ ଜଡ଼ିତ କରି ଉଚ୍ଚ ଲକ୍ଷ୍ୟରେ ଅଗ୍ରସର ହେବାକୁ ଦିଏ ନାହିଁ ଏବଂ ପରିଶେଷରେ ତାହାର ପତନର କାରଣ ହୁଏ, ଏକଥା ଆଉ କହିବାକୁ ହେବ ନାହିଁ । ଅହଂକାରବୃଦ୍ଧିରେ ହିଁ ପାପବୃଦ୍ଧି ଏବଂ ଅହଂକାର ହ୍ରାସ ହେଲେ ପୁଣ୍ୟଲାଭ,

ଅହଂକାରବୃଦ୍ଧିରେ ହିଁ ଧର୍ମହାନି ଏବଂ ଅହଂକାରନାଶରେ ହିଁ ଧର୍ମଲାଭ, ସ୍ୱାର୍ଥପରତା ହିଁ ପାପ ଏବଂ ସ୍ୱାର୍ଥନାଶ ହିଁ ପୁଣ୍ୟ, ''ମୁଁ ମଲେ ଘୁଞ୍ଚଇ ଜଞ୍ଜାଳ''—ଏ କଥା ଠାକୁର ଆମକୁ ବାରମ୍ବାର କେତେ ପ୍ରକାରରେ ଯେ ବୁଝାଇଛନ୍ତି ! କହୁଥିଲେ, ''ଆରେ, ଅହଂକାରକୁ ହିଁ ଶାସ୍ତ୍ରରେ ଚିଦ୍-ଜଡ଼ଗ୍ରନ୍ଥି କୁହାହୋଇଛି; ଚିତ୍ ଅର୍ଥାତ୍ ଜ୍ଞାନ ସ୍ୱରୂପ ଆତ୍ମା; ଏବଂ ଜଡ଼ ଅର୍ଥାତ୍ ଦେହେନ୍ଦ୍ରିୟାଦି; ଏହି ଅହଂକାର ଉଭୟକୁ ଏକାଠି ବାନ୍ଧିରଖି ମାନବ ମନରେ 'ମୁଁ ଦେହ-ଇନ୍ଦ୍ରିୟ-ବୁଦ୍ଧ୍ୟାଦିବିଶିଷ୍ଟ ଜୀବ'—ଏହି ଭ୍ରମ ସୃଷ୍ଟି କରିଛି । ଏହି ବିଷମ ଗଣ୍ଠିଟିକୁ କାଟି ନ ପାରିଲେ ଅଗ୍ରସର ହୋଇପାରିବ ନାହିଁ । ଏହାକୁ ତ୍ୟାଗ କରିବାକୁ ହିଁ ହେବ ।

**ସିଦ୍ଧି ହିଁ ଯୋଗଭ୍ରଷ୍ଟକାରୀ :**

ମା' ମୋତେ ଦେଖାଇ ଦେଇଛି, ସିଦ୍ଧିଗୁଡ଼ିକ ବିଷ୍ଠାତୁଲ୍ୟ ହେୟ । ଏସବୁରେ ମନଦେବା ଠିକ୍ ନୁହେଁ । ସାଧନା କଲାବେଳେ ଏଗୁଡ଼ିକ ବେଳେବେଳେ ସ୍ୱୟଂ ଆସି ଉପସ୍ଥିତ ହୁଏ, କିନ୍ତୁ ଏସବୁରେ ଯେଉଁ ବ୍ୟକ୍ତି ମନ ଦିଏ, ସେ ସେଇଠି ହିଁ ଅଟକି ଯାଏ, ଆଉ ଭଗବାନଙ୍କ ଦିଗରେ ଅଗ୍ରସର ହୋଇପାରେ ନାହିଁ ।'' ସ୍ୱାମୀ ବିବେକାନନ୍ଦଙ୍କର ଧ୍ୟାନ ହିଁ ପ୍ରାଣସ୍ୱରୂପ ଥିଲା; ଖାଇବା, ଶୋଇବା, ବସିବା, ସବୁ ସମୟରେ ହିଁ ସେ ଈଶ୍ୱରଧ୍ୟାନରେ ମନ ରଖୁଥିଲେ; କିଛିଟା ମନ ସର୍ବଦା ଭିତରେ ଈଶ୍ୱରଙ୍କ ଚିନ୍ତାରେ ରଖୁଥିଲେ । ଠାକୁର କହୁଥିଲେ, ସେ 'ଧ୍ୟାନସିଦ୍ଧ'; ଧ୍ୟାନ କରୁ କରୁ ହଠାତ୍ ଦିନେ ତାଙ୍କର ଦୂରଦର୍ଶନ ଓ ଦୂରଶ୍ରବଣର (ବହୁତ ଦୂରରେ ଥିବା ଲୋକମାନେ କ'ଣ କରୁଛନ୍ତି, କ'ଣ କହୁଛନ୍ତି, ଇତ୍ୟାଦି ଦେଖିପାରିବା ଓ ଶୁଣିପାରିବା) କ୍ଷମତା ଆସି ଉପସ୍ଥିତ ହେଲା ! ଧ୍ୟାନ କରିବାକୁ ବସିଲେ, ଏବଂ ଧ୍ୟାନ ଜମିଲେ ହିଁ ତାଙ୍କର ମନ ଏପରି ଏକ ଭୂମିକୁ ଉଠୁଥିଲା, ଯେଉଁଠାରେ ସେ ଦେଖୁଥିଲେ ଅମୁକ ବ୍ୟକ୍ତି ଅମୁକ ଘରେ ବସି ଅମୁକ ପ୍ରସଙ୍ଗରେ କଥାବାର୍ତ୍ତା ହେଉଛନ୍ତି ! ଏପରି ଦେଖି ତାଙ୍କର ଇଚ୍ଛା ହେଉଥିଲା, ଯାହା ଦେଖିଲି ତାହା ସତ୍ୟ କି ମିଥ୍ୟା ଜାଣି ଆସେ । ସଙ୍ଗେ ସଙ୍ଗେ ଧ୍ୟାନ ଛାଡ଼ି ସେ ସେହି ସ୍ଥଳରେ ଆସି ଦେଖୁଥିଲେ, ଯାହା ଧ୍ୟାନରେ ଦେଖିଛନ୍ତି ସେସବୁ ସତ୍ୟ, ଟିକିଏ ହେଲେ ମିଥ୍ୟା ନୁହେଁ ! କେତେଦିନ ଏପରି ହେବା ପରେ, ଠାକୁରଙ୍କୁ ଏକଥା କହିବା ମାତ୍ରେ ଠାକୁର କହିଲେ, ''ଏସବୁ ଈଶ୍ୱରଲାଭ-ପଥରେ ଅନ୍ତରାୟ । ଏବେ ତୁ କିଛି ଦିନ ପାଇଁ ଧ୍ୟାନ କରିବୁ ନାହିଁ ।''

**ସିଦ୍ଧିଲାଭରେ ଚନ୍ଦ୍ରଙ୍କର ପତନ :**

ଗୁଟିକାସିଦ୍ଧି ପ୍ରାପ୍ତ ହୋଇ ଚନ୍ଦ୍ରଙ୍କର ଅହଂକାର ବଢ଼ିଗଲା । ଠାକୁରଙ୍କ ନିକଟରୁ ଶୁଣିଛୁ, ଚନ୍ଦ୍ରଙ୍କ ମନରେ କ୍ରମେ କାମ-କାଞ୍ଚନରେ ଆସକ୍ତି ବଢ଼ିଗଲା ଏବଂ ସେ ଜଣେ ସମ୍ଭ୍ରାନ୍ତ ଧନୀ ବ୍ୟକ୍ତିଙ୍କର କନ୍ୟା ପ୍ରତି ଆସକ୍ତ ହୋଇ ଏହି ସିଦ୍ଧି

ପ୍ରଭାବରେ ହିଁ ତାଙ୍କ ଘରକୁ ଯିବା ଆସିବା କରିବାକୁ ଲାଗିଲେ; ଏବଂ ଏହିପରି ଅହଂକାର ଓ ସ୍ୱାର୍ଥପରତା ଯୋଗୁଁ କିଛିଦିନ ପରେ ଯେଉଁ ସିଦ୍ଧିପ୍ରାପ୍ତ ହୋଇଥିଲେ ସେସବୁ ହରାଇ ନାନାଭାବରେ ଲାଞ୍ଛିତ ହେଲେ ।

## ବ୍ରାହ୍ମଣୀଙ୍କ ଶିଷ୍ୟ ଗିରିଜାଙ୍କର କଥା :

ଗିରିଜାଙ୍କର ମଧ୍ୟ ଅଦ୍ଭୁତ କ୍ଷମତା ବିଷୟ ଠାକୁର ଆମକୁ କହିଥିଲେ । ଠାକୁର କହିଥିଲେ, ଦିନେ ତାଙ୍କ ସହିତ ଗିରିଜା ଦକ୍ଷିଣେଶ୍ୱର କାଳୀମନ୍ଦିର ନିକଟସ୍ଥ ଶ୍ରୀଯୁକ୍ତ ଶମ୍ଭୁ ମଲ୍ଲିକଙ୍କ ବଗିଚାକୁ ବୁଲିବାକୁ ଯାଇଥିଲେ । ଶମ୍ଭୁ ମଲ୍ଲିକ ଠାକୁରଙ୍କୁ ଅତ୍ୟନ୍ତ ଭଲ ପାଉଥିଲେ ଓ ଠାକୁରଙ୍କର କୌଣସି ପ୍ରକାର ସେବା କରିପାରିଲେ ନିଜକୁ ଧନ୍ୟ ମନେ କରୁଥିଲେ । ଶମ୍ଭୁବାବୁ ଟ୨୫୦/- ଦେଇ କାଳୀମନ୍ଦିର ନିକଟରେ କିଛି ଜମି କିଣି ସେଠାରେ ଶ୍ରୀଶ୍ରୀମାତାଠାକୁରାଣୀଙ୍କ ପାଇଁ ଗୋଟିଏ ଘର କରିଦେଇଥିଲେ । ଶ୍ରୀଶ୍ରୀମାତାଠାକୁରାଣୀ କେବେ କେବେ ଗଙ୍ଗାସ୍ନାନ କରିବାକୁ ଓ ଠାକୁରଙ୍କୁ ଦେଖିବାକୁ ଆସିଲେ ସେହି ଘରେ ରହୁଥିଲେ । ଏହିଠାରେ ଥିବା ବେଳେ ସେ ଥରେ କଠିନ ନାଳରକ୍ତ ଝାଡ଼ାରେ ପୀଡ଼ିତା ହେବାରୁ ଶମ୍ଭୁବାବୁ ତାଙ୍କର ଚିକିତ୍ସା, ପଥ୍ୟାଦିର ବନ୍ଦୋବସ୍ତ କରିଥିଲେ । ଶମ୍ଭୁବାବୁଙ୍କର ଭକ୍ତିମତୀ ପତ୍ନୀ ମଧ୍ୟ ଠାକୁର ଏବଂ ଶ୍ରୀଶ୍ରୀମାତାଠାକୁରାଣୀଙ୍କୁ ଦେବତାଜ୍ଞାନରେ ପୂଜା କରୁଥିଲେ । ପ୍ରତି 'ଜୟ ମଙ୍ଗଳବାର'ରେ[୧] ଶମ୍ଭୁବାବୁଙ୍କ ପତ୍ନୀ ତାଙ୍କୁ ନିଜ ଘରକୁ ନେଇଯାଇ ଦେବୀଜ୍ଞାନରେ ପୂଜା କରୁଥିଲେ । ଏହାଛଡ଼ା ଶମ୍ଭୁବାବୁ ଠାକୁରଙ୍କର କଲିକତା ଯିବା ଆସିବାର ଗାଡ଼ିଭଡ଼ା ଓ ଖାଦ୍ୟ ଆଦି ଯେତେବେଳେ ଯାହା ପ୍ରୟୋଜନ ହେଉଥିଲା, ସେସମସ୍ତ ଯୋଗାଉଥିଲେ । ଅବଶ୍ୟ ମଥୁରବାବୁଙ୍କର ଶରୀରତ୍ୟାଗ ପରେ ହିଁ ଶମ୍ଭୁବାବୁ ଠାକୁରଙ୍କର ସେପରି ସେବାଧିକାର ପ୍ରାପ୍ତ ହୋଇଥିଲେ । ଶମ୍ଭୁଙ୍କୁ ଠାକୁର ତାଙ୍କର 'ଦ୍ୱିତୀୟ ରସଦଦାର' ବୋଲି ନିର୍ଦ୍ଦେଶ କରିଥିଲେ ଏବଂ ଅନେକ ସମୟରେ ତାଙ୍କ ବଗିଚାକୁ ବୁଲିବାକୁ ଯାଇ ତାଙ୍କ ସହିତ ଧର୍ମାଲୋଚନାରେ କେତେ ଘଣ୍ଟା କଟାଇ ଆସୁଥିଲେ ।

## ଗିରିଜାଙ୍କ ସିଦ୍ଧି :

ଗିରିଜାଙ୍କ ସହିତ ସେଦିନ ଶମ୍ଭୁବାବୁଙ୍କ ବଗିଚାକୁ ବୁଲିବାକୁ ଯାଇ କଥାବାର୍ତ୍ତାରେ ଅନେକ ସମୟ କଟିଗଲା । ଠାକୁର କହୁଥିଲେ, ''ଭକ୍ତମାନଙ୍କର ଗଞ୍ଜାଖୋରମାନଙ୍କ ପରି ସ୍ୱଭାବ ହୁଏ ! ଗଞ୍ଜାଖୋର ଗଞ୍ଜେଇରେ ଭରପୁର ଚିଲମରୁ ଗୋଟିଏ ଦମ୍ ଟାଣି ଅନ୍ୟ ଲୋକ ହାତରେ ଦେଇ ଧୂଆଁ ଛାଡୁଥାଏ— ସେପରି ଅନ୍ୟ ଗଞ୍ଜାଖୋର ହାତରେ ଚିଲମ ନ ଦେଲେ ଯେପରି ତା'ର ଏକୁଟିଆ

---

୧. ଜଗନ୍ମାତାଙ୍କ ପୂଜା ପାଇଁ ମଙ୍ଗଳବାର ଶୁଭ ମନାଯାଏ । ତେଣୁ ମଙ୍ଗଳବାରକୁ 'ଜୟ ମଙ୍ଗଳାବାର' ମଧ୍ୟ କୁହାଯାଏ ।

ନିଶା କରି ଆନନ୍ଦ ହୁଏ ନାହିଁ, ସେହିପରି ଭକ୍ତମାନେ ଏକାସାଙ୍ଗରେ ଜୁଟିଲେ, ଜଣେ ଈଶ୍ୱରୀୟ ପ୍ରସଙ୍ଗ ଭାବରେ ତନ୍ମୟ ହୋଇ କହେ ଓ ଆନନ୍ଦରେ ଚୁପ୍ ହୁଏ ଏବଂ ଅନ୍ୟ ଜଣଙ୍କୁ ଏପରି କଥା କହିବାକୁ ସୁଯୋଗ ଦିଏ ଓ ଶୁଣି ଆନନ୍ଦ ପାଏ ।'' ସେଦିନ ଶମ୍ଭୁବାବୁ, ଗିରିଜା ଓ ଠାକୁରଙ୍କର ଏକାଠି ବସି କଥା ହେବାରେ ବହୁତ ସମୟ କଟିଗଲେ ମଧ୍ୟ କେହି ଜାଣିପାରିଲେ ନାହିଁ । କ୍ରମେ ସନ୍ଧ୍ୟା ଗଡ଼ି ଏକ ପ୍ରହର ରାତି ହେଲା, ସେତେବେଳେ ଠାକୁରଙ୍କର ଫେରିବା ପାଇଁ ଚିନ୍ତା ହେଲା । ଶମ୍ଭୁବାବୁଙ୍କ ନିକଟରୁ ବିଦାୟ ନେଇ ଗିରିଜାଙ୍କ ସହିତ ଫେରିବା ରାସ୍ତାରେ କାଳୀମନ୍ଦିର ଅଭିମୁଖେ ଯିବାକୁ ଲାଗିଲେ । କିନ୍ତୁ ଅତ୍ୟନ୍ତ ଅନ୍ଧକାର । ରାସ୍ତାରେ କିଛି ଦେଖା ନ ଯିବାରୁ ପ୍ରତିପଦରେ ଝୁଣ୍ଟିଲେ ଓ ଦିଗ ଭୁଲ୍ ହେବାକୁ ଲାଗିଲା । ଐଶ୍ୱରୀୟ ପ୍ରସଙ୍ଗରେ ମଗ୍ନ ହୋଇଥିବାରୁ ରାତ୍ରିର ଭୀଷଣ ଅନ୍ଧକାର କଥା ଖିଆଲ ରହିଲା ନାହିଁ, ଫଳରେ ଶମ୍ଭୁବାବୁଙ୍କଠାରୁ ଗୋଟିଏ ଲଣ୍ଠନ ଆଣିବାକୁ ଭୁଲିଯାଇଥିଲେ—ଏବେ ଉପାୟ କ'ଣ ? କୌଣସି ପ୍ରକାରରେ ଗିରିଜାଙ୍କ ହାତଧରି ଅନ୍ଦାଜକରି ଚାଲିଲେ ମଧ୍ୟ ଅତ୍ୟନ୍ତ କଷ୍ଟ ହେବାକୁ ଲାଗିଲା । ତାଙ୍କର ଏପରି କଷ୍ଟ ଦେଖି ଗିରିଜା କହିଲେ, ''ଭାଇ, ଟିକେ ଠିଆ ହୁଅ, ମୁଁ ତୁମକୁ ଆଲୁଅ ଦେଖାଉଛି ।''—ଏକଥା କହି ପଛକୁ ଫେରି ଠିଆ ହେଲେ ଏବଂ ତାଙ୍କ ପୃଷ୍ଠଦେଶରୁ ଜ୍ୟୋତିର ଏକ ଲମ୍ବା କିରଣ ନିର୍ଗତ ହୋଇ ରାସ୍ତା ଆଲୋକିତ କଲା ! ଠାକୁର କହିଥିଲେ, ''ସେହି ଆଲୋକର କିରଣ କାଳୀମନ୍ଦିରର ଫାଟକ ପର୍ଯ୍ୟନ୍ତ ଲମ୍ବି ଯାଇଥିଲା ଏବଂ ମୁଁ ସେହି ଆଲୋକରେ ଚାଲିଆସିଥିଲି ।''

### ଠାକୁରଙ୍କର ଗୁରୁଭାବରେ ଚନ୍ଦ୍ର ଓ ଗିରିଜାଙ୍କର ସିଦ୍ଧି–ନାଶ ହେବା :

ଏକଥା କହି ଠାକୁର ପୁଣି ଈଷତ ହାସ୍ୟ କରି କହିଲେ, ''କିନ୍ତୁ ସେମାନଙ୍କର ଏପରି କ୍ଷମତା ବେଶୀ ଦିନ ରହିଲା ନାହିଁ ! ଏଠାରେ (ତାଙ୍କ ନିକଟରେ) କିଛି ଦିନ ରହିବା ପରେ ସେସବୁ ସିଦ୍ଧି ଚାଲିଗଲା !'' ଆମେ ଏପରି କାହିଁକି ହେଲା ବୋଲି ପଚାରିବାରୁ (ନିଜର ଶରୀରକୁ ଦେଖାଇ) ''ମା' ଏହା ଭିତରେ ସେମାନଙ୍କର କଲ୍ୟାଣ ପାଇଁ ସିଦ୍ଧି ବା ଶକ୍ତି ଆକର୍ଷଣ କରିନେଲେ ଏବଂ ଏପରି ହେବା ପରେ ସେମାନଙ୍କର ମନ ପୁଣି ସେସବୁ ଛାଡ଼ି ଈଶ୍ୱରାଭିମୁଖୀ ହୋଇଗଲା !''

### ସିଦ୍ଧି ଈଶ୍ୱରଲାଭର ଅନ୍ତରାୟ; ଏବିଷୟରେ ଠାକୁରଙ୍କର 'ପାଦରେ ଚାଲି ନଦୀ ପାର ହେବାର ଗଳ୍ପ' :

ଏକଥା କହି ଠାକୁର ପୁଣି କହିଲେ, ''ଏ ସବୁରେ କ'ଣ ଅଛି ? ଏସବୁ ସିଦ୍ଧିର ବନ୍ଧନରେ ପଡ଼ି ମନ ସଚ୍ଚିଦାନନ୍ଦଙ୍କଠାରୁ ଦୂରକୁ ଚାଲିଯାଏ । ଗୋଟିଏ ଗପ ଶୁଣ—ଜଣଙ୍କର ଦୁଇ ପୁତ୍ର ଥିଲେ, ବଡ଼ଟିର ଯୌବନରେ ବୈରାଗ୍ୟ ହେଲା ଓ ସେ ସଂସାରତ୍ୟାଗ କରି ସନ୍ନ୍ୟାସୀ ହେଲା । ଛୋଟ ଲେଖାପଢ଼ା ଶିଖି ଧାର୍ମିକ

ବିଦ୍ୱାନ ହୋଇ ବିବାହ କରି ସଂସାର-ଧର୍ମ କରିବାକୁ ଲାଗିଲା । ସନ୍ନ୍ୟାସୀମାନଙ୍କ ପାଇଁ ନିୟମ ଅଛି—ବାରବର୍ଷ ପରେ, ଇଚ୍ଛା ହେଲେ ଥରେ ଜନ୍ମଭୂମି ଦେଖିବାକୁ ଯାଇପାରିବେ । ସେହି ସନ୍ନ୍ୟାସୀ ମଧ ବାରବର୍ଷ ପରେ ଜନ୍ମଭୂମି ଦେଖିବାକୁ ଆସିଲେ ଏବଂ ସାନ ଭାଇର ଜମି, ଚାଷ-ବାସ, ଧନ-ଐଶ୍ୱର୍ଯ୍ୟ ଦେଖୁ ଦେଖୁ ତା'ର ଦୁଆର ସାମନାରେ ପହଞ୍ଚି ତା' ନାମ ଧରି ଡାକିବାକୁ ଲାଗିଲେ । ତାଙ୍କ ଡାକଶୁଣି ସାନ ଭାଇ ବାହାରକୁ ଆସି ଦେଖିଲା—ତା'ର ବଡ଼ ଭାଇ ଆସିଛନ୍ତି ! ଏତେ ବର୍ଷ ପରେ ବଡ଼ ଭାଇଙ୍କୁ ଦେଖି ତା'ର ଆନନ୍ଦର ସୀମା ରହିଲା ନାହିଁ; ବଡ଼ ଭାଇଙ୍କୁ ପ୍ରଣାମ କରି ଘରେ ବସାଇ ତାଙ୍କ ସେବା କରିବାକୁ ଲାଗିଲା । ଆହାରାନ୍ତେ ଦୁଇ ଭାଇଙ୍କ ମଧରେ ନାନାପ୍ରସଙ୍ଗରେ କଥା ହେବାକୁ ଲାଗିଲା । ଛୋଟ ଭାଇ ବଡ଼ ଭାଇଙ୍କୁ ପଚାରିଲା, 'ଭାଇ, ତୁମେ ଏହି ସଂସାରର ଭୋଗ-ସୁଖ ତ୍ୟାଗ କରି ଏତେ ଦିନ ସନ୍ନ୍ୟାସୀ ହୋଇ ଫେରିଲ, ଏଥିରେ କ'ଣ ଲାଭ ହେଲା କୁହ ।' ଏହା ଶୁଣି ବଡ଼ ଭାଇ କହିଲେ, 'ଦେଖିବୁ ? ତେବେ ଆ ମୋ ସାଙ୍ଗରେ ।'—ଏହା କହି ଛୋଟ ଭାଇକୁ ସାଙ୍ଗରେ ନେଇ ଘର ନିକଟରେ ଥିବା ନଦୀକୂଳରେ ପହଞ୍ଚିଲେ ଏବଂ କହିଲେ, 'ହେଇ ଦେଖ୍' । ଏହା କହି ନଦୀର ଜଳ ଉପର ଦେଇ ଚାଲି ଚାଲି ନଦୀର ଆର କୂଳକୁ ଚାଲିଗଲେ ଏବଂ ଯାଇ କହିଲେ 'ଦେଖିଲୁ ?' ଛୋଟ ଭାଇ ତତ୍‌କ୍ଷଣାତ୍ ପାଖରେ ଥିବା ନୌକାର ମାଝିକୁ ଅଧପଇସାଟିଏ ଦେଇ ନଦୀ ପାରହୋଇ ବଡ଼ଭାଇ ପାଖରେ ପହଞ୍ଚି କହିଲା, 'କ'ଣ ଦେଖିଲି ?' ବଡ଼ ଭାଇ କହିଲେ, 'କ'ଣ ହେଲା ? ଏଇ ଚାଲି ଚାଲି ନଦୀ ପାରି ହେଲି ?' ଏକଥାରେ ଛୋଟ ଭାଇ ହସିଦେଇ କହିଲା, 'ତୁମେ ମଧ ଦେଖିଲ—ମୁଁ ଅଧପଇସା ଦେଇ ଏହି ନଦୀ ପାର ହେଲି । ତୁମେ ବାରବର୍ଷ କାଳ ଏତେ କଷ୍ଟ କରି ଏତିକି ପାଇଛ ତ ? ମୁଁ ଯାହା ଅଧ ପଇସାରେ ବିନା କଷ୍ଟରେ କଲି, ତମେ ସେତିକି ହିଁ ପାଇଛ ? ଏହି ଯେଉଁ କ୍ଷମତା, ତା'ର ଦାମ ଅଧପଇସା ମାତ୍ର ।' ଛୋଟ ଭାଇର ସେହି କଥାରେ ବଡ଼ ଭାଇର ଚୈତନ୍ୟ ଉଦୟ ହେଲା ଏବଂ ସେ ଈଶ୍ୱରଲାଭ ଆଡ଼କୁ ମନ ଦେଲା ।

## ସିଦ୍ଧି ଯୋଗୁଁ ଅହଂକାର-ବୃଦ୍ଧି ବିଷୟରେ ଠାକୁରଙ୍କର 'ହାତୀ ମାରିବା-ବଞ୍ଚାଇବା' ଗଳ୍ପ :

ଏପରି କଥା ଛଳରେ ଠାକୁର ଆମକୁ ଅନେକ କଥା ବୁଝାଇଛନ୍ତି ଯେ, ଧର୍ମ ଜଗତରେ ଏହି ପ୍ରକାର କ୍ଷୁଦ୍ର କ୍ଷମତାଲାଭ ଅତି ତୁଚ୍ଛ, ହେୟ, ଏବଂ ଅକିଞ୍ଚିତ୍‌କର ପଦାର୍ଥ । ଠାକୁରଙ୍କର ଏପରି ଆଉ ଏକ ଗଳ୍ପ ଆମେ ଏଠାରେ ନ କହି ରହିପାରୁ ନାହୁଁ—''ଜଣେ ଯୋଗୀ ଯୋଗସାଧନାରେ ବାକ୍ ସିଦ୍ଧିଲାଭ କରିଥିଲେ । ଯାହାକୁ ଯାହା କହୁଥିଲେ ତାହା ତତ୍‌କ୍ଷଣାତ୍ ହୋଇଯାଉଥିଲା; ଏପରିକି କାହାକୁ

ଯଦି କହୁଥିଲେ 'ମର', ସେ ମରିଯାଉଥିଲା, ପୁଣି ଯଦି କହୁଥିଲେ 'ବଞ୍ଚିଯା', ସେ ବଞ୍ଚି ଉଠୁଥିଲା ! ଦିନେ ଏହି ଯୋଗୀ ରାସ୍ତାରେ ଯାଉ ଯାଉ ଜଣେ ଭକ୍ତସାଧୁଙ୍କୁ ଦେଖିବାକୁ ପାଇଲେ । ଦେଖିଲେ, ସେ ସର୍ବକ୍ଷଣ ଈଶ୍ୱରଙ୍କ ନାମ ଜପ ଓ ଧ୍ୟାନ କରୁଛନ୍ତି । ଶୁଣିଲେ, ସାଧୁଟି ଏହି ସ୍ଥାନରେ ଅନେକ ବର୍ଷ ଧରି ତପସ୍ୟାରତ । ତାହା ଦେଖି ଅହଂକାରୀ ଯୋଗୀ ଉକ୍ତ ସାଧୁଙ୍କ ନିକଟକୁ ଆସି କହିଲେ, 'ଆହେ ଏତେକାଳ ଧରି ତ 'ଭଗବାନ ଭଗବାନ' କରୁଛ, କିଛି ପାଇଛ କି ?' ଭକ୍ତସାଧୁ ଉତ୍ତର ଦେଲେ, 'ପାଇବି ଆଉ କ'ଣ ? ତାଙ୍କୁ (ଈଶ୍ୱରଙ୍କୁ) ପାଇବା ଛଡ଼ା ମୋର ତ ଅନ୍ୟ କୌଣସି କାମନା ନାହିଁ । ପୁଣି ତାଙ୍କୁ ପାଇବା ତାଙ୍କର କୃପା ନ ହେଲେ ହୁଏ ନାହିଁ । ତେଣୁ ପଡ଼ି ରହି ତାଙ୍କୁ ଡାକୁଛି, ଦୀନ-ହୀନ ବୋଲି ଯଦି କୌଣସି ଦିନ କୃପା କରନ୍ତି ।' ଯୋଗୀ ଜଣକ ସେ କଥା ଶୁଣି କହିଲେ, 'ଯଦି କିଛି ପାଇଲ ନାହିଁ, ତେବେ ଏପରି ବେକାର ପରିଶ୍ରମର ଆବଶ୍ୟକତା କ'ଣ ? ଯେଉଁଥିରେ କିଛି ମିଳିବ୍ ସେଥିପାଇଁ ଚେଷ୍ଟା କର ।' ଭକ୍ତସାଧୁଟି ଏକଥା ଶୁଣି ଚୁପ୍ ହୋଇ ରହିଲେ । ଟିକିଏ ପରେ କହିଲେ, 'ଆଚ୍ଛା ମହାଶୟ, ଆପଣ କ'ଣ ପାଇଛନ୍ତି— ଜାଣିପାରିବି କି ?' ଯୋଗୀ କହିଲେ, 'ଶୁଣିବ, ଠିକ୍ ଅଛି—ଏହି ଦେଖ ।' ଏହା କହି ନିକଟରେ ବୃକ୍ଷତଳେ ଗୋଟିଏ ହାତୀ ବନ୍ଧା ଥିଲା, ତାକୁ କହିଲେ, 'ହାତୀ, ତୁ ମରିଯା' ସଙ୍ଗେ ସଙ୍ଗେ ହାତୀଟା ମରିଗଲା ! ଯୋଗୀ ଅତି ଗର୍ବରେ କହିଲେ, 'ଦେଖିଲ ? ପୁଣି ଦେଖ ।' ଏକଥା କହି ମରିଯାଇଥିବା ହାତୀଟାକୁ କହିଲେ, 'ହାତୀ ତୁ ବଞ୍ଚିଉଠ୍ ।' ସଙ୍ଗେ ସଙ୍ଗେ ହାତୀ ବଞ୍ଚି ପୂର୍ବପରି ଝାଡ଼ିଝୁଡ଼ି ହୋଇ ଉଠି ଠିଆହେଲା ! ଯୋଗୀ କହିଲେ, 'କ'ଣ ହେ, ଦେଖିଲ ତ ?' ଭକ୍ତ ସାଧୁ ଏପର୍ଯ୍ୟନ୍ତ ନୀରବ ଥିଲେ; ଏବେ କହିଲେ, 'କ'ଣ ଆଉ ଦେଖିଲି କୁହନ୍ତୁ—ହାତୀଟା ମରିଗଲା ପୁଣି ବଞ୍ଚିଉଠିଲା, କିନ୍ତୁ କହିବେ କି, ହାତୀଟାର ଏପରି ମରିଯିବା ଓ ବଞ୍ଚିଉଠିବାରେ ଆପଣଙ୍କର କ'ଣ ଲାଭ ହେଲା ? ଆପଣ କ'ଣ ଏପରି ଶକ୍ତିଲାଭ କରି ବାରମ୍ବାର ଜନ୍ମ-ମୃତ୍ୟୁ ହାତରୁ ମୁକ୍ତି ପାଇଲେ ? ଜରା-ବ୍ୟାଧି କ'ଣ ଆପଣଙ୍କୁ ତ୍ୟାଗ କରିଛି ? ନା, ଆପଣଙ୍କର ଅଖଣ୍ଡ-ସଚ୍ଚିଦାନନ୍ଦସ୍ୱରୂପ ଦର୍ଶନ ହୋଇଛି ?' ଯୋଗୀ ଉକ୍ତ କଥାରେ ନିର୍ବାକ ହୋଇ ରହିଲେ ଏବଂ ତାଙ୍କର ଚୈତନ୍ୟ ଉଦୟ ହେଲା ।''

ଚନ୍ଦ୍ର[୧] ଓ ଗିରିଜା ଏପରି ଭୈରବୀ ବ୍ରାହ୍ମଣୀଙ୍କ ସାହାଯ୍ୟରେ ଈଶ୍ୱରଲାଭ ପଥରେ ଅନେକଦୂର ଅଗ୍ରସର ହୋଇଥିଲେ ମଧ୍ୟ ସିଦ୍ଧକାମ ହୋଇପାରି ନ

---

୧. ୧୮୯୯ ଖ୍ରୀଷ୍ଟାବ୍ଦର ଜୁନ୍ ମାସରେ ପୂଜ୍ୟପାଦ ସ୍ୱାମୀ ବିବେକାନନ୍ଦ ଦ୍ୱିତୀୟଥର ଇଂଲଣ୍ଡ ଓ ଆମେରିକା ଯାତ୍ରା କରିଥିଲେ । ଏହାର କିଛିଦିନ ପରେ ଦିନେ ହଠାତ୍ ଜଣେ ବ୍ୟକ୍ତି ବେଲୁଡ଼ ମଠରେ ଉପସ୍ଥିତ ହୋଇ ନିଜକୁ 'ଚନ୍ଦ୍ର' ବୋଲି ପରିଚୟ ଦେଇ ପ୍ରାୟ ଏକମାସ କାଳ ସେଠାରେ ବାସ କରିଥିଲେ । ପୂଜନୀୟ ସ୍ୱାମୀ ବ୍ରହ୍ମାନନ୍ଦ ସେତେବେଳେ ସର୍ବଦା ମଠରେ ରହୁଥିଲେ । ତାଙ୍କ ସହିତ ଉକ୍ତ ବ୍ୟକ୍ତିଙ୍କର ଗୋପନରେ ଅନେକ କଥାବାର୍ତ୍ତା ହେଉଥିଲା ।

ଥିଲେ । ଠାକୁରଙ୍କର ଜ୍ୱଳନ୍ତ ଦର୍ଶନଲାଭ କରି ଏବଂ ତାଙ୍କର ଦିବ୍ୟଶକ୍ତି ବଳରେ ଅହଂକାରର ମୂଳ ଏସମସ୍ତ ସିଦ୍ଧିର ନାଶ ହେବାରୁ ହିଁ ସେମାନଙ୍କର ସେହି ବିଷୟରେ ଚୈତନ୍ୟ ହେଲା ଏବଂ ପୁନରାୟ ଦ୍ୱିଗୁଣ ଉତ୍ସାହରେ ଈଶ୍ୱରୀୟ ପଥରେ ଅଗ୍ରସର ହେବାକୁ ଲାଗିଲେ ।

## ବ୍ରାହ୍ମଣୀଙ୍କର ନିର୍ବିକଳ୍ପ ଅଦ୍ୱୈତଭାବ ଲାଭ ହୋଇ ନ ଥିଲା; ଏହାର ପ୍ରମାଣ :

ଭୈରବୀ ବ୍ରାହ୍ମଣୀ ସ୍ୱୟଂ ସାଧନାରେ ଅନେକ ଦୂର ଅଗ୍ରସର ହୋଇଥିଲେ ମଧ୍ୟ ଅଖଣ୍ଡ ସଚ୍ଚିଦାନନ୍ଦଲାଭରେ ପୂର୍ଣ୍ଣତ୍ୱପ୍ରାପ୍ତ ହୋଇ ନ ଥିବାର ପରିଚୟ ଆମେ ପାଇଅଛୁ । ବେଦାନ୍ତର ଶେଷଭୂମି, ନିର୍ବିକଳ୍ପ ଅବସ୍ଥାର ଅଧିକାରୀ 'ଲେଙ୍ଗ୍‌ଟା' ତୋତାପୁରୀ ଯେତେବେଳେ ଭ୍ରମଣ କରୁ କରୁ ଦକ୍ଷିଣେଶ୍ୱର କାଳୀମନ୍ଦିରକୁ ପ୍ରଥମେ ଆଗମନ କଲେ, ସେତେବେଳେ ଠାକୁରଙ୍କର ବ୍ରାହ୍ମଣୀଙ୍କ ସହାୟତାରେ ତନ୍ତ୍ରୋକ୍ତ ସାଧନସମୂହରେ ସିଦ୍ଧିଲାଭ ହୋଇଯାଇଥିଲା । ତୋତାପୁରୀ ଠାକୁରଙ୍କୁ ଦେଖିବା ମାତ୍ରେ ହିଁ ବେଦାନ୍ତପଥର ଅତି ଉତ୍ତମ ଅଧିକାରୀ ବୋଲି ଚିହ୍ନିପାରି ତାଙ୍କୁ ସନ୍ନ୍ୟାସ–

---

ଶୁଣିଛୁ ସେହି ବ୍ୟକ୍ତି ବ୍ରହ୍ମାନନ୍ଦଜୀଙ୍କୁ ବାରମ୍ବାର ପଚାରୁଥିଲେ, ''ଆପଣ କଣ ଏଠାରେ କିଛି ଟେର ପାଆନ୍ତି ? ଅର୍ଥାତ୍ ଠାକୁରଙ୍କର ଜାଗ୍ରତ ସତ୍ତା କିଛି ଅନୁଭବ କରନ୍ତି ?''—ଇତ୍ୟାଦି ।

ସେ କହୁଥିଲେ, ଠାକୁର ତାଙ୍କ ସମ୍ବନ୍ଧରେ ଯାହା କିଛି କହିଥିଲେ ତାହା ସବୁଗୁଡ଼ିକ ହିଁ ସତ୍ୟ ହୋଇଛି । କେବଳ ମୃତ୍ୟୁ ପୂର୍ବରୁ ତାହାଙ୍କୁ ଦର୍ଶନ ଦେବାପାଇଁ ଯେଉଁ ପ୍ରତିଶ୍ରୁତି ଦେଇଛନ୍ତି ସେହି କଥାଟି ପ୍ରତ୍ୟକ୍ଷ କରିବାକୁ ତାଙ୍କର ଏବେ ମଧ୍ୟ ବାକି ଅଛି । ଲୋକଟି ମଠରେ ଠାକୁର ଘରକୁ ଯାଇ ପ୍ରତିଦିନ ଅନେକକ୍ଷଣ ଅତି ଭକ୍ତିର ସହିତ ଜପଧ୍ୟାନ କରୁଥିଲେ । ଏହି ସମୟରେ ତାଙ୍କ ଚକ୍ଷୁରୁ ପ୍ରେମାଶ୍ରୁ ମଧ୍ୟ ପଡୁଥିଲା । ଠାକୁରଙ୍କ ବିଷୟରେ କେହି କିଛି ପଚାରିଲେ ସେହି ବିଷୟରେ ସେ ଯାହା କିଛି ଜାଣିଥିଲେ ତାହା ଅତି ଆନନ୍ଦ ସହକାରେ କହୁଥିଲେ । ସେ ଅତି ଶାନ୍ତ ପ୍ରକୃତିର ଲୋକ ବୋଲି ଆମମାନଙ୍କର ବୋଧ ହୋଇଥିଲା । ଲୋକଟିକୁ ସବୁବେଳେ ଗୋଟିଏ ଜାଗାରେ ନିସ୍ତବ୍ଧଭାବରେ ବସିଥିବାର ଏବଂ ବେଳେବେଳେ ଚକ୍ଷୁ ମୁଦ୍ରିତ କରି ରହୁଥିବାର ଦେଖି, ଦିନେ ଜଣେ ଉପହାସ ଛଳରେ ତାହାଙ୍କୁ ପଚାରିଲେ, ''ମହାଶୟଙ୍କର କ'ଣ ଅଫିମ୍ ଖାଇବାର ଅଭ୍ୟାସ ଅଛି ?'' ଏହାର ଉତ୍ତରରେ ଅତି ବିନୀତ ଭାବରେ ସେ କହିଥିଲେ, ''ମୁଁ ଆପଣଙ୍କ ନିକଟରେ କଣ ଅପରାଧ କରିଛି ଯେ ଏପ୍ରକାର କଥା କହୁଛନ୍ତି ?''

ଠାକୁରଘରକୁ ଯାଇ ପ୍ରଥମେ ପ୍ରଣାମ କରିବା ସମୟରେ ସେ ଠାକୁରଙ୍କ ଶ୍ରୀମୂର୍ତ୍ତିଙ୍କୁ 'ବଡ଼ଭାଇ' ବୋଲି ସମ୍ବୋଧନ କରୁଥିଲେ ଏବଂ ଭାବ–ପ୍ରେମରେ ଆବିଷ୍ଟ ହୋଇ ଅଜସ୍ର ଅଶ୍ରୁ ବିସର୍ଜନ କରୁଥିଲେ । ତାହାଙ୍କୁ ଦେଖିଲେ ସାଧାରଣ ଲୋକ ବୋଲି ହିଁ ମନେ ହେଉଥିଲା । ଗୈରିକ କିମ୍ବା ତିଳକାଦିର ଆଡ଼ମ୍ବର ନ ଥିଲା । ପରିଧାନ ମଧ୍ୟରେ ଗୋଟିଏ ଧୋତି ଓ ଉତ୍ତରୀୟ ଏବଂ ହାତରେ ଛତା ଓ ଗୋଟିଏ ବ୍ୟାଗ ମାତ୍ର ଥିଲା । ବ୍ୟାଗ ଭିତରେ ଆଉ ଗୋଟିଏ ଧୋତି, ଗାମୁଛା ଓ ବୋଧହୁଏ ଗୋଟିଏ ପାଣି ପିଇବା ଲୋଟା ମଧ୍ୟ ଥିଲା । ସେ କହୁଥିଲେ, ସେ ସେହି ଭାବରେ ହିଁ ପ୍ରାୟତଃ ତୀର୍ଥରୁ ତୀର୍ଥକୁ ପର୍ଯ୍ୟଟନ କରନ୍ତି । ସ୍ୱାମୀ ବ୍ରହ୍ମାନନ୍ଦ ତାଙ୍କୁ ବିଶେଷ ଆଦର–ସମ୍ମାନ କରି ମଠରେ ହିଁ ଚିରକାଳ ବାସ କରିବା ପାଇଁ ଅନୁରୋଧ କରିଥିଲେ । ସେ ମଧ୍ୟ ସମ୍ମତ ହୋଇ କହିଥିଲେ, ''ଗ୍ରାମରେ ଜମିଗୁଡ଼ିକର ଗୋଟିଏ ବନ୍ଦୋବସ୍ତ କରିଦେଇ ଆସି ଏଠାରେ ରହିବି ।'' କିନ୍ତୁ ସେବେଠାରୁ ଆଉ ସେ ବ୍ୟକ୍ତି କେବେ ମଠକୁ ଆସି ନାହାନ୍ତି । ପୂର୍ବୋକ୍ତ ଚନ୍ଦ୍ର ବୋଧହୁଏ ସେ ହିଁ ଥିଲେ ।

ଦୀକ୍ଷା ପ୍ରଦାନ କରି ନିର୍ବିକଳ୍ପ ସମାଧିସାଧନ ବିଷୟରେ ଉପଦେଶ ଦେଇଥିଲେ, ସେତେବେଳେ ବ୍ରାହ୍ମଣୀ ଠାକୁରଙ୍କୁ ସେହି ବିଷୟରୁ ନିରସ୍ତ କରିବାକୁ ଅନେକ ଚେଷ୍ଟା କରିଥିଲେ । କହିଥିଲେ, "ବାବା, (ବ୍ରାହ୍ମଣୀ ଠାକୁରଙ୍କୁ ପୁତ୍ରଜ୍ଞାନରେ ସେପରି ସମ୍ବୋଧନ କରୁଥିଲେ) ତାଙ୍କ ପାଖକୁ ବେଶୀ ଯିବା-ଆସିବା ଓ ମିଳାମିଶା କର ନାହିଁ; ଏମାନଙ୍କର ସବୁ ଶୁଷ୍କପଥ । ଏହାଙ୍କ ସହିତ ମିଶିଲେ ତୁମର ଐଶ୍ୱରୀୟ ଭାବ-ପ୍ରେମ ସବୁ ନଷ୍ଟ ହୋଇଯିବ ।" ଏଥିରୁ ବେଶ୍ ଅନୁମାନ କରାଯାଏ ଯେ, ବିଦୁଷୀ ବ୍ରାହ୍ମଣୀ ଭଗବଦ୍‌ଭକ୍ତିରେ ଅସମାନ୍ୟା ହେଲେ ମଧ୍ୟ ଏକଥା ଜାଣି ନ ଥିଲେ ବା ସ୍ୱପ୍ନରେ ମଧ୍ୟ ଭାବି ନାହାନ୍ତି ଯେ, ବେଦାନ୍ତୋକ୍ତ ଯେଉଁ ନିର୍ବିକଳ୍ପ ଅବସ୍ଥାକୁ ସେ ଶୁଷ୍କମାର୍ଗ ବୋଲି ନିର୍ଦ୍ଦେଶ ଓ ଧାରଣା କରିଥିଲେ, ତାହା ହିଁ ଯଥାର୍ଥ ପରାଭକ୍ତିଲାଭର ପ୍ରଥମ ସୋପାନ—କେବଳ ଶୁଦ୍ଧ-ବୁଦ୍ଧ ଆତ୍ମାରାମ ପୁରୁଷମାନେ ହିଁ କେବଳ ଈଶ୍ୱରଙ୍କୁ ସମସ୍ତ ପ୍ରକାର ହେତୁଶୂନ୍ୟ ହୋଇ ଭକ୍ତି-ପ୍ରେମ କରିପାରନ୍ତି, ଏବଂ ଠାକୁର ଯେପରି କହୁଥିଲେ, 'ଶୁଦ୍ଧାଭକ୍ତି ଓ ଶୁଦ୍ଧଜ୍ଞାନ—ଉଭୟ ଏକ ପଦାର୍ଥ ।' ଆମର ଅନୁମାନ, ବ୍ରାହ୍ମଣୀ ଏକଥା ବୁଝି ନ ଥିଲେ ବୋଲି ଠାକୁର ମସ୍ତକ ମୁଣ୍ଡନ କରି ଗୈରିକ ବସ୍ତ୍ର ପରିଧାନପୂର୍ବକ ତୋତାପୁରୀ ସ୍ୱାମୀଙ୍କ ନିକଟରୁ ସନ୍ନ୍ୟାସଧର୍ମରେ ଦୀକ୍ଷା ଗ୍ରହଣ ପୂର୍ବକ ନିର୍ବିକଳ୍ପ ସମାଧି-ସାଧନ ସମୟରେ ନିଜର ଗର୍ଭଧାରିଣୀ ମାତାଙ୍କ ନିକଟରୁ ଯେପରି ଏହା ଗୋପନ ରଖିଥିଲେ, ଭୈରବୀ ବ୍ରାହ୍ମଣୀଙ୍କ ନିକଟରୁ ମଧ୍ୟ ସେପରି ସେହି ବିଷୟ ଗୋପନ ରଖିଥିଲେ । ଶୁଣିଛୁ, ଠାକୁରଙ୍କର ବୃଦ୍ଧା ମାତା ଏହି ସମୟରେ ଦକ୍ଷିଣେଶ୍ୱରର ଉତ୍ତର ଦିଗର ନହବତ ଘରର ଉପରେ ରହୁଥିଲେ ଏବଂ ଠାକୁର ଏହିଭାବରେ ବେଦାନ୍ତସାଧନ କାଳରେ ତିନିଦିନ ଘର ମଧ୍ୟରେ ଆବଦ୍ଧ ରହି ସମସ୍ତଙ୍କ ଚକ୍ଷୁର ଅନ୍ତରାଳରେ ଅବସ୍ଥାନ କରିଥିଲେ । କେବଳ ତୋତାପୁରୀଜୀ ଏହି ସମୟରେ ତାଙ୍କ ନିକଟକୁ ମଝିରେ ମଝିରେ ଯିବା ଆସିବା କରୁଥିଲେ । କହିବା ନିଷ୍ପ୍ରୟୋଜନ ଯେ ଠାକୁର ବ୍ରାହ୍ମଣୀଙ୍କ କଥାରେ କର୍ଣ୍ଣପାତ କରି ନ ଥିଲେ ।

### ତନ୍ତ୍ରୋକ୍ତ ପଶୁ, ବୀର ଓ ଦିବ୍ୟଭାବର ନିର୍ଣ୍ଣୟ :

ଠାକୁରଙ୍କ ନିକଟରୁ ଯେତିକି ଶୁଣିଛୁ, ସେଥିରୁ ଭୈରବୀ ବ୍ରାହ୍ମଣୀ ତନ୍ତ୍ରୋକ୍ତ ବୀରଭାବର ଉପାସିକା ଥିଲେ ବୋଲି ହିଁ ମନେହୁଏ । ତନ୍ତ୍ରରେ ପଶୁ, ବୀର ଓ ଦିବ୍ୟ ଏହି ତିନି ପ୍ରକାର ଭାବରେ ଈଶ୍ୱର ସାଧନାର ପଥ ନିର୍ଦ୍ଦିଷ୍ଟ ଅଛି । ପଶୁଭାବର ସାଧକଠାରେ କାମ-କ୍ରୋଧାଦି ଆଦି ପଶୁଭାବର ଆଧିକ୍ୟ ରହିଥାଏ; ସେଥିପାଇଁ ସେ ସମସ୍ତ ପ୍ରକାର ପ୍ରଲୋଭନର ବସ୍ତୁଠାରୁ ଦୂରରେ ରହିବେ ଏବଂ ବାହ୍ୟିକ ଶୌଚାଚାର ପ୍ରଭୃତି ପ୍ରତି ବିଶେଷ ଲକ୍ଷ୍ୟ ରଖି ଭଗବାନଙ୍କର ନାମ ଜପ, ପୁରଶ୍ଚରଣାଦିରେ ପ୍ରବୃତ୍ତ ରହିବେ । ବୀରଭାବର ସାଧକଙ୍କଠାରେ ପଶୁଭାବ

ଅପେକ୍ଷା ଈଶ୍ୱରାନୁରାଗ ପ୍ରବଳ ରହିଥାଏ । କାମ-କାଞ୍ଚନ, ରୂପ-ରସାଦିର ଆକର୍ଷଣ ତାଙ୍କ ଭିତରେ ଈଶ୍ୱରାନୁରାଗକୁ ହିଁ ପ୍ରବଳତର କରିଦିଏ । ସେଥିପାଇଁ ସେ କାମକାଞ୍ଚନାଦିର ପ୍ରଲୋଭନ ମଧ୍ୟରେ ବାସ କରି ସେଗୁଡ଼ିକର ଘାତ-ପ୍ରତିଘାତରେ ଅବିଚଳିତ ରହି ଈଶ୍ୱରଙ୍କଠାରେ ସମଗ୍ର ମନ-ପ୍ରାଣ ଅର୍ପଣ କରିବାକୁ ଚେଷ୍ଟା କରିବେ । ଦିବ୍ୟଭାବର ସାଧକ କେବଳ ଏପରି ବ୍ୟକ୍ତି ହୋଇପାରନ୍ତି, ଯାହାଙ୍କଠାରେ ଈଶ୍ୱରାନୁରାଗର ପ୍ରବଳ ପ୍ରବାହରେ କାମ-କ୍ରୋଧାଦି ସମ୍ପୂର୍ଣ୍ଣ ଭାବରେ ଚିରଦିନ ପାଇଁ ନଷ୍ଟ ହୋଇଯାଇଛି ଏବଂ ନିଶ୍ୱାସ-ପ୍ରଶ୍ୱାସ ପରି ଯାହାଙ୍କଠାରେ କ୍ଷମା-ଆର୍ଜବ-ଦୟା-ସନ୍ତୋଷ-ସତ୍ୟାଦି ସଦ୍‌ଗୁଣସମୂହର ଅନୁଷ୍ଠାନ ସ୍ୱାଭାବିକ ହୋଇଛି । ସାଧାରଣଭାବରେ ଏହି ତିନୋଟି ଭାବ ସମ୍ବନ୍ଧରେ ଏହା ହିଁ କୁହାଯାଇଥାଏ । ବେଦାନ୍ତୋକ୍ତ ଉତ୍ତମ ଅଧିକାରୀ ହିଁ ତନ୍ତ୍ରୋକ୍ତ ଦିବ୍ୟଭାବର ଭାବୁକ, ମଧ୍ୟମ ଅଧିକାରୀ ବୀରଭାବର ଏବଂ ଅଧମ ଅଧିକାରୀ ପଶୁଭାବର ସାଧକ ।

### ବୀରଭାବର ସାଧିକା 'ବ୍ରାହ୍ମଣୀ' ଦିବ୍ୟଭାବର ଅଧିକାରୀ ହେବାକୁ ସେତେବେଳେ ସମର୍ଥା ହୋଇ ନ ଥିଲେ :

ବୀରଭାବର ସାଧନରେ ଭୈରବୀ ବ୍ରାହ୍ମଣୀ ଉଚ୍ଚତମ ସାଧିକା ଥିଲେ ମଧ୍ୟ ଦିବ୍ୟଭାବର ଅଧିକାରିଣୀ ହୋଇପାରି ନ ଥିଲେ । ଠାକୁରଙ୍କର ଜ୍ୱଳନ୍ତ ଦୃଷ୍ଟାନ୍ତ ଦର୍ଶନ କରି ଏବଂ ତାଙ୍କର ସହାୟତା ଲାଭ କରି ହିଁ ବ୍ରାହ୍ମଣୀଙ୍କର କ୍ରମେ ଦିବ୍ୟଭାବର ବାସନା ଆସି ଉପସ୍ଥିତ ହୋଇଥିଲା । ବ୍ରାହ୍ମଣୀ ଦେଖିଲେ — ଗ୍ରହଣ କରିବା ଦୂରରେ ଥାଉ, ସିଦ୍ଧି ବା କାରଣର ନାମ ଶୁଣିବାମାତ୍ରେ ହିଁ ଠାକୁର ଜଗତ୍‌କାରଣ ଈଶ୍ୱରଙ୍କ ଭାବରେ ବିହ୍ୱଳ ହୋଇପଡୁଥିଲେ; ସତୀ ବା ନଟୀ ଯେକୌଣସି ସ୍ତ୍ରୀ- ମୂର୍ତ୍ତି ଦେଖିଲା ମାତ୍ରେ ହିଁ ତାଙ୍କ ମନରେ ଶ୍ରୀଶ୍ରୀଜଗଦମ୍ବାଙ୍କର ହ୍ଲାଦିନୀ ଓ ସନ୍ଧିନୀ ଶକ୍ତିର କଥା ଆସି ତାଙ୍କଠାରେ ସନ୍ତାନଭାବର ଉଦ୍ରେକ ହେଉଥିଲା ଏବଂ କାଞ୍ଚନାଦି ଧାତୁ ସଂସ୍ପର୍ଶରେ ସୁପ୍ତାବସ୍ଥାରେ ମଧ୍ୟ ତାଙ୍କ ହସ୍ତାଦି ଅଙ୍ଗ ସଙ୍କୁଚିତ ହୋଇଯାଉଥିଲା ! ଏପରି ଜ୍ୱଳନ୍ତ ପାବକ ନିକଟରେ ରହି କାହାର ଅବା ଈଶ୍ୱରାନୁରାଗ ପ୍ରଦୀପ୍ତ ହୋଇ ନ ଉଠିବ ? ଏପରି କିଏ ଅଛି, ଯିଏ ଏହି ଦୁଇଦିନର ବିଷୟ-ବୈଭବାଦି ପ୍ରତି ବୀତରାଗ ହୋଇ ଈଶ୍ୱରଙ୍କୁ ନିଜଠାରୁ ବଳି ନିଜର, ଚିରକାଳର ଆତ୍ମୀୟ ଭାବରେ ଧାରଣା ନ କରି ରହିପାରିବ ? ଏଥିପାଇଁ ବ୍ରାହ୍ମଣୀଙ୍କର ଜୀବନର ଅବଶିଷ୍ଟ କାଳ ତୀବ୍ର ତପସ୍ୟାରେ କଟାଇବା କଥା ଆମେ ଶୁଣିବାକୁ ପାଇଥାଉ ।

### ଏହି ବିଷୟରେ ପ୍ରମାଣ :

ଠାକୁର ଅନ୍ୟ କାହା ସହିତ ବେଶୀ ମିଳାମିଶା କଲେ ବା ଅନ୍ୟ କୌଣସି ଈଶ୍ୱର ସାଧକଙ୍କୁ ଭକ୍ତ ଅଧିକ ସମ୍ମାନ ପ୍ରଦର୍ଶନ କଲେ ବ୍ରାହ୍ମଣୀଙ୍କ ମନରେ

ହିଂସାଭାବର ଉଦୟ ହେଉଥିଲା, ଏକଥା ମଧ୍ୟ ଆମେ ଠାକୁରଙ୍କ ଶ୍ରୀମୁଖରୁ ଶୁଣିଛୁ । ଆଦରର ଶିଶୁଟି ବଡ଼ ହୋଇଯିବା ପରେ ଅନ୍ୟ କାହାକୁ ଭଲ ପାଇଲେ ବା ଆଦର ଯତ୍ନ କଲେ ତା'ର ଜେଜେମା ବା ଅନ୍ୟ ବୃଦ୍ଧା କୌଣସି ଆତ୍ମୀୟାଙ୍କର (ଯାହାଙ୍କ ନିକଟରେ ସେ ଏତେଦିନ ଲାଳିତ ପାଳିତ ହୋଇଆସିଛି) ମନରେ ଯେପରି ଈର୍ଷା, ଦୁଃଖ ଓ କଷ୍ଟ ହୁଏ, ବ୍ରାହ୍ମଣୀଙ୍କର ମଧ୍ୟ ଠାକୁରଙ୍କ ପ୍ରତି ଏଭାବ ଯେ ସେହି ପ୍ରକାରର ଏହା ଆମେ ବେଶ୍ ବୁଝିପାରୁ ! କିନ୍ତୁ ବ୍ରାହ୍ମଣୀଙ୍କ ପରି ଏତେ ଉଚ୍ଚସ୍ତରର ସାଧିକାଙ୍କ ମନରେ ସେପରି ହେବା ଉଚିତ୍ ନ ଥିଲା । ଯିଏ ଠାକୁରଙ୍କୁ ଖାଇବାକୁ, ଶୋଇବାକୁ, ବସିବାକୁ, ଦିବାରାତ୍ର ଚବିଶଘଣ୍ଟା ଏତେ ଦିନ ଧରି ସର୍ବାବସ୍ଥାରେ ସକଳ ଭାବରେ ଦେଖିବାର ସୁଯୋଗ ପାଇଥିଲେ, ତାଙ୍କର ଏପରି ହେବା ଉଚିତ୍ ନ ଥିଲା । ତାଙ୍କର ଜାଣିବା ଉଚିତ୍ ଥିଲା ଯେ, ଠାକୁରଙ୍କର ଭଲ ପାଇବା ଓ ଶ୍ରଦ୍ଧାକରିବା ଅନ୍ୟମାନଙ୍କ ପରି 'କ୍ଷଣିକ' ନ ଥିଲା । ତାଙ୍କର ଜାଣିବା ଉଚିତ ଥିଲା ଯେ, ଠାକୁର ତାଙ୍କ ଉପରେ ଯେଉଁ ଶ୍ରଦ୍ଧାଭକ୍ତି ଥରେ ଅର୍ପଣ କରିଛନ୍ତି, ତାହା ଚିରକାଳ ପାଇଁ ହିଁ ଅର୍ପିତ ହୋଇଥିଲା—ସେଥିରେ ଜୁଆର-ଭଟ୍ଟା ଉଠୁ ନ ଥିଲା । କିନ୍ତୁ ହାୟ, ମାୟିକ ଭଲପାଇବା ଓ ସ୍ତ୍ରୀଲୋକର ମନ—ତୁମେ ସର୍ବଦା ଭଲପାଇଥିବାର ପାତ୍ରକୁ ଚିରକାଳ ପାଇଁ ବାନ୍ଧି ନିଜସ୍ୱ କରି ରଖିବାକୁ ଚାହଁ ! ସାମାନ୍ୟ ସ୍ୱାଧୀନତା ମଧ୍ୟ ତାଙ୍କୁ ଦେବାକୁ ଇଚ୍ଛା କର ନାହିଁ । ମନେ କର ସ୍ୱାଧୀନତା ପାଇଲେ ତୁମର ଭଲପାଇବାର ପାତ୍ର ଆଉ ତୁମର ହୋଇରହିବେ ନାହିଁ, ଅନ୍ୟ କାହାକୁ ତୁମ ଅପେକ୍ଷା ଅଧିକ ଭଲ ପାଇବେ । ତୁମେମାନେ ବୁଝ ନାହିଁ—ଯେ, ତୁମମାନଙ୍କର ଅନ୍ତରର ଦୁର୍ବଳତା ହିଁ ତୁମମାନଙ୍କୁ ଏପରି କରିବାକୁ ଶିଖାଇ ଦିଏ । ତୁମେମାନେ ବୁଝ ନାହିଁ ଯେ, ଯେଉଁ ଭଲପାଇବା ଭଲପାଇବାର ପାତ୍ରକୁ ସ୍ୱାଧୀନତା ଦିଏ ନାହିଁ—ଯାହା ନିଜକୁ ସମ୍ପୂର୍ଣ୍ଣରୂପେ ଭୁଲି ଭଲପାଇବାର ପାତ୍ର ଯାହା ଚାହେଁ, ସେଥିରେ ହିଁ ଆନନ୍ଦ ଅନୁଭବ କରିବା ଜାଣେ ନାହିଁ ତାହା ପ୍ରାୟ ସ୍ୱଳ୍ପକାଳରେ ହିଁ ବିନଷ୍ଟ ହୋଇଯାଏ । ଅତଏବ ଯଦି ଯଥାର୍ଥରେ କାହାକୁ ପ୍ରାଣଦେଇ ଭଲପାଏ, ତେବେ ନିଶ୍ଚିନ୍ତ ରୁହ, ତୁମର ଭଲପାଇବାର ପାତ୍ର ତୁମର ହିଁ ରହିବ ଏବଂ ସେହି ଶୁଦ୍ଧ ସ୍ୱାର୍ଥସମ୍ପର୍କଶୂନ୍ୟ ଭଲପାଇବା କେବଳ ତୁମକୁ ନୁହେଁ, ତାହାଙ୍କୁ ମଧ୍ୟ ପରିଶେଷରେ ଈଶ୍ୱରଦର୍ଶନ ଏବଂ ସର୍ବବନ୍ଧନବିମୁକ୍ତି ପର୍ଯ୍ୟନ୍ତ କରାଇବ ।

### ଠାକୁରଙ୍କର କୃପାରେ ବ୍ରାହ୍ମଣୀଙ୍କର ନିଜ ଆଧ୍ୟାତ୍ମିକ ଅଭାବ-ବୋଧ ଓ ତପସ୍ୟା କରିବାକୁ ଯାତ୍ରା :

ବ୍ରାହ୍ମଣୀ ଉଚ୍ଚସ୍ତରର ପ୍ରେମିକ ସାଧିକା ହୋଇଥିଲେ ମଧ୍ୟ ପୂର୍ବୋକ୍ତ କଥାଟି ଯେ ବୁଝି ନ ଥିଲେ, ଅଥବା ବୁଝି ମଧ୍ୟ ଧାରଣା କରିବାକୁ ସମର୍ଥ ହୋଇ ନ ଥିଲେ,

ଏହା ନିତାନ୍ତ ଆଶ୍ଚର୍ଯ୍ୟର ବିଷୟ ବୋଲି ମନେ ହୁଏ । କିନ୍ତୁ ପ୍ରକୃତରେ ତାଙ୍କର ଏଧାରଣାର ଅଭାବ ଥିଲା; ଏବଂ ଭାଗ୍ୟକ୍ରମରେ ଶ୍ରୀଶ୍ରୀରାମକୃଷ୍ଣଦେବଙ୍କର ଗୁରୁପଦରେ ସ୍ଥାପିତ ହୋଇ 'ସେ ସମସ୍ତଙ୍କଠାରୁ ବଡ଼, ତାଙ୍କ କଥା ସମସ୍ତେ ସବୁବେଳେ ମାନି ଚଳିବେ, ନ ଚଳିଲେ ସେମାନଙ୍କର କଲ୍ୟାଣ ନାହିଁ'—ଏହି ପ୍ରକାର ଭାବସମୂହ ମଧ୍ୟ ତାଙ୍କଠାରେ ଧୀରେ ଧୀରେ ଆସିଯାଉଥିଲା । ଆମେ ଶୁଣିଛୁ, ଠାକୁର ଶ୍ରୀଶ୍ରୀମାତାଠାକୁରାଣୀଙ୍କୁ ଯେ କେବେକେବେ ଶିକ୍ଷା ପ୍ରଦାନ କରୁଥିବାରୁ, ସେଥିରେ ମଧ୍ୟ ସେ (ବ୍ରାହ୍ମଣୀ) ଈର୍ଷାନ୍ୱିତା ହେଉଥିଲେ । ଶୁଣିଛୁ ଶ୍ରୀଶ୍ରୀମାତାଠାକୁରାଣୀ ବ୍ରାହ୍ମଣୀଙ୍କର ଏପରି ଭାବପ୍ରକାଶରେ ସର୍ବଦା ଭୀତା, ସଙ୍କୁଚିତା ହୋଇ ରହୁଥିଲେ । ଯାହା ହେଉ, ଶେଷରେ ଠାକୁରଙ୍କ କୃପାରେ ବ୍ରାହ୍ମଣୀ ତାଙ୍କ ମନର ଏହି ଦୁର୍ବଳତା କଥା ସେ ବୁଝିପାରିଥିଲେ । ସେ ବୁଝିଥିଲେ ଯେ, ଏହି ଅବସ୍ଥାରେ ଠାକୁରଙ୍କ ନିକଟରୁ ଦୂରରେ ରହିଲେ ହିଁ ସେ ତାଙ୍କର ଏହି ମନୋଭାବ ଜୟ କରିବାକୁ ସମର୍ଥା ହେବେ; ଏବଂ ଠାକୁରଙ୍କ ପ୍ରତି ତାଙ୍କର ଏହି ପ୍ରକାର ଆକର୍ଷଣ ସୁନାର ଶିକୁଳିର ବନ୍ଧନସଦୃଶ; ତେଣୁ ତାହା ପରିତ୍ୟାଗ କରି ନିଜ ଅଭୀଷ୍ଟ ପଥରେ ଅଗ୍ରସର ହେବାକୁ ପଡ଼ିବ । ଆମେ ବେଶ୍ ବୁଝିପାରୁଛୁ ଯେ, ଏଥିପାଇଁ ବ୍ରାହ୍ମଣୀ ଶେଷରେ ଦକ୍ଷିଣେଶ୍ୱର ଓ ଠାକୁରଙ୍କ ସଙ୍ଗ ପରିତ୍ୟାଗ କରନ୍ତି ଏବଂ 'ରମତା ସାଧୁ, ବହ୍‌ତା ପାନି' କେବେ ମଳିନ ହୁଏ ନାହିଁ[୧] ଭାବି ଅସଙ୍ଗ ହୋଇ ବିଭିନ୍ନ ତୀର୍ଥ ପର୍ଯ୍ୟଟନ ଓ ତପସ୍ୟା କରି ଅବଶିଷ୍ଟ ଜୀବନ କଟାଇଥିଲେ । ଠାକୁରଙ୍କର ଗୁରୁଭାବର ସହାୟରେ ହିଁ ଯେ ବ୍ରାହ୍ମଣୀଙ୍କର ଏପରି ଚୈତନ୍ୟ ଉଦୟ ହୋଇଥିଲା, ଏହା ଆଉ କହିବାକୁ ହେବ ନାହିଁ ।

### ତୋତାପୁରୀଜୀଙ୍କ କଥା :

ତୋତାପୁରୀ ଲମ୍ବା-ଚଉଡ଼ା ସୁଦୀର୍ଘ ପୁରୁଷ ଥିଲେ । ଚାଳିଶ ବର୍ଷ ଧ୍ୟାନ-ଧାରଣା ଏବଂ ଅସଙ୍ଗ ଭାବରେ ବାସ କରିବା ଫଳରେ ନିର୍ବିକଳ୍ପ ସମାଧିରେ ସେ ନିଜର ମନକୁ ସ୍ଥିର ଓ ବୃତ୍ତିରହିତ କରିବାକୁ ସମର୍ଥ ହୋଇଥିଲେ । ତଥାପି ସେ ପ୍ରତିଦିନ ଧ୍ୟାନ ଏବଂ ସମାଧିରେ ଅନେକ ସମୟ ବିତାଉଥିଲେ । ସର୍ବଦା ବାଳକଙ୍କ ପରି ଉଲଙ୍ଗ ରହୁଥିଲେ ବୋଲି ତାଙ୍କୁ ଠାକୁର 'ଲେଙ୍ଗ୍‌ଟା' ନାମରେ ସମ୍ବୋଧନ କରୁଥିଲେ । ବିଶେଷତଃ ଗୁରୁଙ୍କର ନାମ ସର୍ବଦା ଗ୍ରହଣ କରନ୍ତି ନାହିଁ, କିମ୍ବା ନାମ ଧରି ଗୁରୁଙ୍କୁ ଡକାଯାଏ ନାହିଁ ବୋଲି ବୋଧହୁଏ ସେ ଏପରି ନାମ

---

୧. ସଂସାର ବିରାଗୀ ସାଧୁମାନଙ୍କର ପ୍ରଚଳିତ ଗୋଟିଏ ଉକ୍ତି । 'ରମତା'—ଅର୍ଥାତ୍ ନିରନ୍ତର ଯିଏ ଗୋଟିଏ ସ୍ଥାନରେ ନ ରହି ଭ୍ରମଣ କରି ବୁଲନ୍ତି, ଏହି ପ୍ରକାର ସାଧୁଙ୍କଠାରେ ଏବଂ ଯେଉଁ ଜଳରେ ପ୍ରବାହ ବା ନିରନ୍ତର ସ୍ରୋତ ବୋହୁଅଛି, ଏହି ପ୍ରକାର ଜଳରେ କେବେହେଲେ ମଳିନତା ରହେ ନାହିଁ । ନିତ୍ୟପର୍ଯ୍ୟଟନଶୀଳ ସାଧୁଙ୍କ ମନ କେବେହେଲେ କୌଣସି ବସ୍ତୁ ବା ବ୍ୟକ୍ତି ପ୍ରତି ଆସକ୍ତ ହୁଏ ନାହିଁ, ଏହା ହିଁ ତାତ୍ପର୍ଯ୍ୟ ।

ଦେଇଥିଲେ । ଠାକୁର କହୁଥିଲେ, 'ଲେଙ୍ଗ୍‌ଟା କେବେ ହେଲେ ଘର ଭିତରେ ରହୁ ନ ଥିଲେ ଏବଂ ନାଗାସମ୍ପ୍ରଦାୟଭୁକ୍ତ ଥିଲେ ବୋଲି ସର୍ବଦା ଅଗ୍ନିସେବା କରୁଥିଲେ ! ନାଗା-ସାଧୁମାନେ ଅଗ୍ନିକୁ ମହା ପବିତ୍ରଭାବରେ ଦର୍ଶନ କରନ୍ତି; ଏବଂ ସେଥିପାଇଁ ଯେଉଁଠାରେ ଯେତେବେଳେ ରହନ୍ତୁ ନା କାହିଁକି, କାଠ ସଂଗ୍ରହ କାରି ନିକଟରେ ଅଗ୍ନି ଜଳାଇ ରଖନ୍ତି । ଏହି ଅଗ୍ନିକୁ 'ଧୁନି' ବୋଲି କୁହାଯାଏ । ନାଗାସାଧୁମାନେ ସକାଳେ ଓ ସନ୍ଧ୍ୟା ସମୟରେ ଧୁନିକୁ ଆରତି କରିଥାଆନ୍ତି ଏବଂ ଭିକ୍ଷାଲବ୍ଧ ଆହାର ପ୍ରଥମେ ଧୁନିରୂପୀ ଅଗ୍ନିକୁ ନିବେଦନ କରି ପରେ ସ୍ୱୟଂ ଗ୍ରହଣ କରନ୍ତି । ଦକ୍ଷିଣେଶ୍ୱରରେ ଅବସ୍ଥାନ ସମୟରେ 'ଲେଙ୍ଗ୍‌ଟା' ସେଥିପାଇଁ ପଞ୍ଚବଟୀର ବୃକ୍ଷତଳେ ଆସନ ବିଛାଇ ଅବସ୍ଥାନ କରୁଥିଲେ ଏବଂ ପାର୍ଶ୍ୱରେ ଧୁନି ଜଳାଇ ରଖୁଥିଲେ । ଖରା ହେଉ, ବର୍ଷା ହେଉ 'ଲେଙ୍ଗ୍‌ଟା'ର ଧୁନି ସମଭାବରେ ଜଳୁଥିଲା । ଆହାର ଅଥବା ଶୟନ 'ଲେଙ୍ଗ୍‌ଟା' ଏହି ଧୁନି ପାର୍ଶ୍ୱରେ ହିଁ କରୁଥିଲେ । ଯେତେବେଳେ ଗଭୀର ରାତ୍ରିରେ ସମଗ୍ର ବାହ୍ୟଜଗତ ବିରାମଦାୟନୀ ନିଦ୍ରା କୋଳରେ ସମସ୍ତ ଚିନ୍ତା ଭୁଲି ମାତୃ-କ୍ରୋଡ଼ସ୍ଥିତ ଶିଶୁ ସଦୃଶ ସୁଖଶୟନ ଲାଭ କରୁଥିଲେ, ସେତେବେଳେ 'ଲେଙ୍ଗ୍‌ଟା' ଉଠି ଧୁନିକୁ ଅଧିକତର ଉଜ୍ଜ୍ୱଳ କରି, ଅଚଳ, ଅଟଳ ସୁମେରୁବତ୍, ଆସନରେ ଉପବିଷ୍ଟ ହୋଇ ନିବାତ-ନିଷ୍କମ୍ପ ପ୍ରଦୀପ ସଦୃଶ ସ୍ଥିର ମନକୁ ସମାଧିମଗ୍ନ କରୁଥିଲେ । ଦିନବେଳେ ମଧ୍ୟ 'ଲେଙ୍ଗ୍‌ଟା' ଅନେକ ସମୟ ଧ୍ୟାନ କରୁଥିଲେ । କିନ୍ତୁ ଲୋକମାନେ ଯେପରି ଜାଣି ନ ପାରିବେ ସେହିପରି ଭାବରେ କରୁଥିଲେ । ସେଥିପାଇଁ ପରିଧେୟ ଚଦର ଦ୍ୱାରା ଆପାଦମସ୍ତକ ଆବୃତ କରି ଧୁନି ପାର୍ଶ୍ୱରେ ଶବପରି ଲମ୍ବା ହୋଇ ପଡ଼ି ରହିବା ଅନେକ ସମୟରେ ଦେଖାଯାଉଥିଲା । ଲୋକମାନେ ମନେ କରୁଥିଲେ, ଲେଙ୍ଗ୍‌ଟା ନିଦ୍ରିତ ଅଛନ୍ତି ।

### ଠାକୁର ଓ ତୋତାପୁରୀଜୀଙ୍କ ମଧ୍ୟରେ ପରସ୍ପର ଭାବର ଆଦାନ-ପ୍ରଦାନର ବିଷୟ :

'ଲେଙ୍ଗ୍‌ଟା' ବା ପାଖରେ ଏକ ଜଳପାତ୍ର ବା 'ଲୋଟା', ଗୋଟିଏ ଖୁବ୍ ଲମ୍ବା ଚିମୁଟା ଏବଂ ଆସନ ପାଇଁ ଖଣ୍ଡିଏ ଚମଡ଼ା (ମୃଗଚର୍ମ) ମାତ୍ର ଥିଲା ଏବଂ ଏକ ମୋଟା ଚାଦରରେ ସର୍ବଦା ସ୍ୱୀୟ ଦେହ ଆବୃତ କରି ରଖୁଥିଲେ । ଲୋଟା ଓ ଚିମୁଟାଟି 'ଲେଙ୍ଗ୍‌ଟା' ନିତ୍ୟ ମାଜି ପରିଷ୍କାର ରଖୁଥିଲେ । 'ଲେଙ୍ଗ୍‌ଟା'ଙ୍କର ସେପରି ନିତ୍ୟ ଧ୍ୟାନାନୁଷ୍ଠାନ ଦେଖି ଠାକୁର ତାଙ୍କୁ ଦିନେ ପଚାରିଲେ, 'ତୁମର ତ ବ୍ରହ୍ମଲାଭ ହୋଇଛି, ସିଦ୍ଧ ହୋଇଛ, ତଥାପି କାହିଁକି ପ୍ରତିଦିନ ଧ୍ୟାନାଭ୍ୟାସ କର ?' ଲେଙ୍ଗ୍‌ଟା ଏହି ପ୍ରଶ୍ନରେ ଧୀର ଭାବରେ ଠାକୁରଙ୍କୁ ଅନାଇ ଅଙ୍ଗୁଳି ନିର୍ଦ୍ଦେଶ କରି ଲୋଟାକୁ ଦେଖାଇ କହିଲେ, 'କେମିତି ଚକ୍ ଚକ୍ ହେଉଛି ଦେଖୁଛ ? ଯଦି ପ୍ରତିଦିନ ନ ମାଜିବି ? — ମଳିନ ହୋଇଯିବ ନାହିଁ ? ମନ ମଧ୍ୟ ସେହିପରି ଜାଣିବ । ଧ୍ୟାନାଭ୍ୟାସ

କରି ମନକୁ ମଧ୍ୟ ଏପରି ନିତ୍ୟ ଘଷି-ମାଜି ନ ରଖିଲେ ମଳିନ ହୋଇଯିବ ।' ତୀକ୍ଷ୍ଣଦୃଷ୍ଟିସମ୍ପନ୍ନ ଠାକୁର ଗୁରୁଙ୍କର କଥା ମାନି ନେଇ କହିଲେ, ''କିନ୍ତୁ ଯଦି ଲୋଟାଟା ସୁନାରେ ତିଆରି ହୋଇଥାଏ ? ତେବେ ତ ପ୍ରତିଦିନ ନ ମାଜିଲେ ମଧ୍ୟ ମଇଳା ଧରିବ ନାହିଁ ।'' ଲେଙ୍ଗ୍‌ଟା ହସି ହସି ସ୍ୱୀକାର କଲେ, 'ତାହା ଠିକ୍ କଥା' । ନିତ୍ୟ ଧ୍ୟାନାଭ୍ୟାସର ଉପକାରିତା ସମ୍ବନ୍ଧରେ 'ଲେଙ୍ଗ୍‌ଟା'ଙ୍କ କଥାଗୁଡ଼ିକ ଠାକୁରଙ୍କର ଚିରକାଳ ମନେ ଥିଲା ଏବଂ ଅନେକଥର ସେ 'ଲେଙ୍ଗ୍‌ଟା'ଙ୍କର ନାମ ନେଇ ତାହା ଆମମାନଙ୍କୁ କହୁଥିଲେ । ପୁଣି ଆମମାନଙ୍କର ଧାରଣା — ଠାକୁରଙ୍କର 'ସୁନାର ଲୋଟା ମଇଳା ଧରେ ନାହିଁ,' କଥାଟି 'ଲେଙ୍ଗ୍‌ଟା'ଙ୍କ ମନରେ ମଧ୍ୟ ଚିରାଙ୍କିତ ରହିଯାଇଥିଲା । 'ଲେଙ୍ଗ୍‌ଟା' ବୁଝିଥିଲେ, ବାସ୍ତବରେ ଠାକୁରଙ୍କ ମନ ସୁନାର ଲୋଟା ପରି ଉଜ୍ଜ୍ୱଳ ! ଗୁରୁ-ଶିଷ୍ୟଙ୍କ ମଧ୍ୟରେ ଏହିପରି ଭାବର ଆଦାନ-ପ୍ରଦାନ ସେମାନଙ୍କ ଭିତରେ ପ୍ରଥମରୁ ହିଁ ଚାଲୁଥିଲା ।

**ବ୍ରହ୍ମଜ୍ଞ ପୁରୁଷଙ୍କ ନିର୍ଭୀକତା ଓ ବନ୍ଧନବିମୁକ୍ତି ସମ୍ବନ୍ଧରେ ଶାସ୍ତ୍ର :**

ବେଦାନ୍ତଶାସ୍ତ୍ରରେ ଅଛି, ବ୍ରହ୍ମଜ୍ଞାନ ହେଲେ ହିଁ ମନୁଷ୍ୟ ସମ୍ପୂର୍ଣ୍ଣ ଭୟଶୂନ୍ୟ ହୁଏ । ବାସ୍ତବିକ୍, ସମ୍ପୂର୍ଣ୍ଣ ଅଭୀଃ ହେବାର ତାହା ହିଁ ଏକମାତ୍ର ପଥ । ଯିଏ ଜାଣିପାରେ ଯେ, ସେ ସ୍ୱୟଂ ନିତ୍ୟ-ଶୁଦ୍ଧ-ବୁଦ୍ଧ-ସ୍ୱଭାବ, ଅଖଣ୍ଡ ସଚ୍ଚିଦାନନ୍ଦସ୍ୱରୂପ ସର୍ବବ୍ୟାପୀ ଅଜର-ଅମର ଆତ୍ମା, ତାଙ୍କ ମନରେ କାହାଦ୍ୱାରା ଭୟ ହେବ ? ଯିଏ, ଏକ ଭିନ୍ନ ଦ୍ୱିତୀୟ ବସ୍ତୁ ବା ବ୍ୟକ୍ତି ଜଗତରେ ନାହିଁ, ବୋଲି ସତକୁ ସତ ଦେଖିବାକୁ ପାଆନ୍ତି, ସର୍ବଦା ପ୍ରାଣେ ପ୍ରାଣେ ଅନୁଭବ କରନ୍ତି, ତାଙ୍କୁ କିପରି, ଭୟ ହେବ ? ଖାଇବା, ଶୋଇବା, ବସିବା, ନିଦ୍ରା-ଜାଗରଣରେ, ସର୍ବାବସ୍ଥାରେ, ସକଳ ସମୟରେ ସେ ଦେଖନ୍ତି — ସେ ଅଖଣ୍ଡ ସଚ୍ଚିଦାନନ୍ଦସ୍ୱରୂପ; ସମସ୍ତଙ୍କ ଭିତରେ, ସର୍ବତ୍ର, ସର୍ବଦା ସେ ପୂର୍ଣ୍ଣ ହୋଇରହିଛନ୍ତି; ତାଙ୍କର ଆହାର ନାହିଁ, ବିହାର ନାହିଁ, ନିଦ୍ରା ନାହିଁ, ଜାଗରଣ ନାହିଁ, ଅଭାବ ନାହିଁ, ଆଳସ୍ୟ ନାହିଁ, ଶୋକ ନାହିଁ, ହର୍ଷ ନାହିଁ, ଜନ୍ମ ନାହିଁ, ମୃତ୍ୟୁ ନାହିଁ, ଅତୀତ ନାହିଁ, ଭବିଷ୍ୟତ ନାହିଁ— ମାନବ ପଞ୍ଚେନ୍ଦ୍ରିୟ ଓ ମନ ବୁଦ୍ଧି ସାହାଯ୍ୟରେ ଯାହା କିଛି ଦେଖେ, ଶୁଣେ, ଚିନ୍ତା ବା କଳ୍ପନା କରେ, ସେସବୁ କିଛି ହିଁ ନାହିଁ । ଏହିପରି ଅନୁଭବକୁ ହିଁ ଶାସ୍ତ୍ର, 'ନେତି ନେତି'ର ବିରାମାବସ୍ଥା ବୋଲି ବର୍ଣ୍ଣନା କରିଅଛନ୍ତି ଏବଂ ଏହାପରେ ପୂର୍ଣ୍ଣସ୍ୱରୂପ ଆତ୍ମାର ଅବସ୍ଥାନ ଓ ପ୍ରତ୍ୟକ୍ଷଦର୍ଶନ କହିଛନ୍ତି । ଏହି ଆତ୍ମଦର୍ଶନ ସଦା-ସର୍ବଦା ହେବାର ନାମ ହିଁ 'ଜ୍ଞାନରେ ଅବସ୍ଥାନ', ଏବଂ ଏହି ପ୍ରକାର ଜ୍ଞାନରେ ଅବସ୍ଥାନ ହେଲେ ହିଁ ସର୍ବବନ୍ଧନବିମୁକ୍ତି ହୁଏ । ଠାକୁରେ କହୁଥିଲେ, ଏହିପ୍ରକାର ଜ୍ଞାନରେ ଅବସ୍ଥାନ ସମ୍ପୂର୍ଣ୍ଣରୂପରେ ହେଲେ ଜୀବର ଶରୀର ଏକୋଇଶ ଦିନ ମାତ୍ର ରହି ଶୁଷ୍କପତ୍ରସଦୃଶ ଝଡ଼ିଯାଏ ବା ନଷ୍ଟ ହୋଇଯାଏ ଏବଂ ଆଉ ସେ ଏହି ସଂସାର

ଭିତରେ ଅହଂଜ୍ଞାନ ନେଇ ଫେରିଆସେ ନାହିଁ । ଜୀବନ୍ମୁକ୍ତ ପୁରୁଷମାନଙ୍କର ମଝିରେ ମଝିରେ ସ୍ୱଳ୍ପକାଳ ନିମିତ୍ତ ଏହି ଜ୍ଞାନରେ ଅବସ୍ଥାନ ଓ ଆତ୍ମାର ଦର୍ଶନ ହେଉ ହେଉ ପରିଶେଷରେ ପୂର୍ଣ୍ଣ ଅବସ୍ଥାନ ଓ ଦର୍ଶନ ଆସି ଉପସ୍ଥିତ ହୁଏ । ଆଉ ନିତ୍ୟମୁକ୍ତ ଈଶ୍ୱରକୋଟି ପୁରୁଷ, ଯେଉଁମାନେ କୌଣସି ବିଶେଷ ସତ୍ୟର ପ୍ରତିଷ୍ଠା କରି ବହୁଜନଙ୍କର କଲ୍ୟାଣସାଧନ କରିବାକୁ ହିଁ ଜଗତରେ ଜନ୍ମଗ୍ରହଣ କରିଥାନ୍ତି, ସେମାନେ ମଧ୍ୟ ବାଲ୍ୟାବଧି ମଝିରେ ମଝିରେ ସ୍ୱଳ୍ପକାଳ ପାଇଁ ଏହି ଜ୍ଞାନରେ ଅବସ୍ଥାନ କରନ୍ତି ଏବଂ ଯେଉଁ କର୍ମ ପାଇଁ ଆସିଛନ୍ତି, ସେହି କର୍ମ ଶେଷ ହେଲେ ପରିଶେଷରେ ସମ୍ପୂର୍ଣ୍ଣରୂପରେ ଜ୍ଞାନସ୍ୱରୂପରେ ଅବସ୍ଥାନ କରନ୍ତି । ପୁଣି, ଯେଉଁମାନଙ୍କର ଅଲୌକିକ ଆଧ୍ୟାତ୍ମିକ ଶକ୍ତି ଦେଖି ଜଗତ ଏପର୍ଯ୍ୟନ୍ତ ଧାରଣା କରିପାରି ନାହିଁ ଯେ, ସେ ମାନବ-କଲ୍ୟାଣ ନିମିତ୍ତ ମୂର୍ତ୍ତି ପରିଗ୍ରହ କରି ଆସିଥିବା ସ୍ୱୟଂ ଈଶ୍ୱର ଅଥବା ଅତ୍ୟଦ୍ଭୂତ ଶକ୍ତିସମ୍ପନ୍ନ ମାନବ; ସେହି ଅବତାର ପୁରୁଷମାନେ ଏହି ପୂର୍ଣ୍ଣଜ୍ଞାନ ଅବସ୍ଥାରେ ବାଲ୍ୟକାଳରୁ ଇଚ୍ଛାମାତ୍ରେ ଉଠିବାକୁ, ଯେତେକାଳ ଇଚ୍ଛା ରହିବାକୁ ଏବଂ ପୁନରାୟ ନିଜ ଇଚ୍ଛାରେ ଲୋକ-କଲ୍ୟାଣ ନିମିତ୍ତ ଜନ୍ମ-ଜରା-ଶୋକ-ହର୍ଷାଦିର ମିଳନଭୂମି ସଂସାରକୁ ଆସିବାକୁ ସମର୍ଥ ଅଟନ୍ତି ।

### ତୋତାପୁରୀଙ୍କର ଉଚ୍ଚ ଅବସ୍ଥା :

ଠାକୁରଙ୍କର ଶିକ୍ଷାଗୁରୁ ଶ୍ରୀମତ୍ ତୋତାପୁରୀ ଚାଳିଶ ବର୍ଷ କଠୋର ସାଧନା ଫଳରେ ପୂର୍ବୋକ୍ତ ଜୀବନ୍ମୁକ୍ତ ଅବସ୍ଥା ଲାଭ କରିଥିଲେ ଏବଂ ସେଥିପାଇଁ ତାଙ୍କର ଆହାର, ବିହାର, ଶୟନ, ଉପବେଶନ ପ୍ରଭୃତି ସମସ୍ତ କାର୍ଯ୍ୟ ହିଁ ସାଧାରଣ ମନୁଷ୍ୟଙ୍କ ପରି ନ ଥିଲା । ନିତ୍ୟମୁକ୍ତ ବାୟୁସଦୃଶ ସେ ବାଧାଶୂନ୍ୟ ହୋଇ ଯତ୍ର ତତ୍ର ବିଚରଣ କରୁଥିଲେ; ବାୟୁ ପରି ହିଁ ତାଙ୍କୁ ସଂସାରର ଦୋଷ-ଗୁଣ କଦାପି ସ୍ପର୍ଶ କରିପାରୁ ନ ଥିଲା ଏବଂ ବାୟୁସଦୃଶ ହିଁ ସେ କେବେ ମଧ୍ୟ ଗୋଟିଏ ସ୍ଥାନରେ ଆବଦ୍ଧ ହୋଇ ରହିପାରୁ ନ ଥିଲେ । କାରଣ ଠାକୁରଙ୍କ ନିକଟରୁ ଶୁଣିଛୁ, ତୋତାଜୀ ତିନିଦିନରୁ ଅଧିକ କେଉଁଠାରେ ରହିପାରୁ ନ ଥିଲେ । ଠାକୁରଙ୍କର ଅଦ୍ଭୁତ ଆକର୍ଷଣରେ ତୋତାଜୀ ଦକ୍ଷିଣେଶ୍ୱରରେ ଏକାଦିକ୍ରମେ ଏଗାର ମାସକାଳ ଅବସ୍ଥାନ କରିବାକୁ ବାଧ୍ୟ ହୋଇଥିଲେ । ଠାକୁରଙ୍କର କି ଅଦ୍ଭୁତ ମୋହିନୀଶକ୍ତି ହିଁ ଥିଲା !

### ତୋତାଙ୍କର ନିର୍ଭୀକତା—ଭୈରବ ଦର୍ଶନ :

ତୋତାଙ୍କ ନିର୍ଭୀକତା ସମ୍ବନ୍ଧରେ ଠାକୁର ଆମକୁ ଅନେକ କଥା କହିଥିଲେ । ତା ମଧ୍ୟରେ ଗୋଟିଏ ଭୂତ ସମ୍ବନ୍ଧୀୟ ଘଟଣା ମଧ୍ୟ କହିଥିଲେ, ତାହା ହେଲା—ଗଭୀର ରାତ୍ରି କାଳରେ ତୋତା ଦିନେ ଧୁନି ପ୍ରଜ୍ୱଳିତ କରି ଧ୍ୟାନରେ ବସିବାର ଉପକ୍ରମ କରୁଛନ୍ତି; ଜଗତ ନୀରବ, ନିସ୍ତବ୍ଧ; ଝିଣ୍ଟିକା ଓ ବେଳେବେଳେ

ମନ୍ଦିର-ଚୂଡ଼ାରେ ଥିବା ପେଚକର ଗଭୀର ନିଃସ୍ୱନ ବ୍ୟତୀତ ଅନ୍ୟ କୌଣସି ଶବ୍ଦ ଶ୍ରୁତିଗୋଚର ହେଉ ନ ଥିଲା । ବାୟୁର ମଧ୍ୟ ସଞ୍ଚାର ନ ଥିଲା କହିଲେ ଚଳେ । ହଠାତ୍ ପଞ୍ଚବଟୀର ବୃକ୍ଷଶାଖାଗୁଡ଼ିକ ଆଲୋଡ଼ିତ ହେବାକୁ ଲାଗିଲା ଏବଂ ଦୀର୍ଘାକାର ମାନବାକୃତି ଏକ ପୁରୁଷ ବୃକ୍ଷ ଉପରୁ ନିମ୍ନକୁ ଓହ୍ଲାଇ ତୋତାଙ୍କ ଆଡ଼କୁ ସ୍ଥିର ଦୃଷ୍ଟିରେ ଦେଖୁ ଦେଖୁ ଧୀର ପଦବିକ୍ଷେପରେ ତୋତାଙ୍କର ଧୁନି ପାର୍ଶ୍ୱରେ ଆସି ବସିଲେ । 'ଲେଙ୍ଗ୍‌ଟା' ତାଙ୍କରି ପରି ଉଲଗ୍ନ ସେହି ପୁରୁଷପ୍ରବରକୁ ଦେଖି ଆଶ୍ଚର୍ଯ୍ୟ ହୋଇ ପଚାରିଲେ, 'ତୁମେ କିଏ ?' ପୁରୁଷ ଉତ୍ତରରେ କହିଲେ, 'ମୁଁ ଦେବଯୋନି, ଭୈରବ; ଏହି ଦେବସ୍ଥାନରକ୍ଷା ନିମିତ୍ତ ବୃକ୍ଷଉପରେ ଅବସ୍ଥାନ କରେ ।' 'ଲେଙ୍ଗ୍‌ଟା' କୌଣସି ପ୍ରକାରେ ଭୀତ ନ ହୋଇ କହିଲେ, 'ଉତ୍ତମ କଥା, ତୁମେ ଯାହା, ମୁଁ ମଧ୍ୟ ତାହା; ତୁମେ ବ୍ରହ୍ମଙ୍କର ଗୋଟିଏ ପ୍ରକାଶ, ମୁଁ ମଧ୍ୟ ତାହା; ଆସ, ବସ, ଧ୍ୟାନ କର ।' ପୁରୁଷ ହସି ବାୟୁରେ ଯେପରି ମିଳାଇ ଗଲେ ! 'ଲେଙ୍ଗ୍‌ଟା' ମଧ୍ୟ ଉକ୍ତ ଘଟଣାରେ କିଛିମାତ୍ର ବିଚଳିତ ନ ହୋଇ ଧ୍ୟାନରେ ମନୋନିବେଶ କଲେ । ପରଦିନ ସକାଳେ 'ଲେଙ୍ଗ୍‌ଟା' ଏହି ଘଟଣା ଠାକୁରଙ୍କୁ କହିଲେ । ଶୁଣି ଠାକୁର କହିଲେ, ''ହଁ, ସେ ଏଠାରେ ରହନ୍ତି; ମୁଁ ମଧ୍ୟ ତାଙ୍କର ଦର୍ଶନ ଅନେକ ଥର ପାଇଛି । ବେଳେବେଳେ କୌଣସି ଭବିଷ୍ୟତ ଘଟଣା ବିଷୟ ମଧ୍ୟ ସେ ମୋତେ କହିଦେଇଛନ୍ତି । କମ୍ପାନୀ, ବାରୁଦ କାରଖାନା( Powder Magazine) ପାଇଁ ପଞ୍ଚବଟୀର ସମସ୍ତ ଜମିକୁ ଥରେ ନେବା ପାଇଁ ଚେଷ୍ଟା କଲେ । ତାହା ଶୁଣି ମୋର ବହୁତ ଚିନ୍ତା ହୋଇଥିଲା ଯେ, ସଂସାରର କୋଳାହଳଠାରୁ ଦୂରରେ ନିର୍ଜ୍ଜନ ସ୍ଥାନଟିରେ ବସି ମାକୁ ଡାକେ, ତାହା ଆଉ ହେବ ନାହିଁ ! ମଥୁରବାବୁ ତ' ରାଣୀ ରାସମଣିଙ୍କ ତରଫରୁ କମ୍ପାନୀ ସହିତ ଖୁବ୍ ମକଦ୍ଦମା କଲେ, ଯେପରି କମ୍ପାନୀ ଜମି ନ ନିଏ ! ସେହି ସମୟରେ ଦିନେ ଉକ୍ତ ଭୈରବ ଗଛ ଉପରେ ବସିଥିବାର ଦେଖିଲି; ମୋତେ ସେ ସଙ୍କେତରେ କହିଥିଲେ, 'କମ୍ପାନୀ ଜାଗା ନେଇପାରିବ ନାହିଁ; ମକଦ୍ଦମାରେ ହାରିଯିବ । ବାସ୍ତବିକ୍ ତାହା ହିଁ ହେଲା !''

**ତୋତାପୁରୀଙ୍କ ଗୁରୁଙ୍କ କଥା :**

'ଲେଙ୍ଗ୍‌ଟା'ଙ୍କର ଜନ୍ମସ୍ଥାନ ପଶ୍ଚିମାଞ୍ଚଳରେ କେଉଁ ସ୍ଥାନରେ ଥିଲା, ସେସମ୍ବନ୍ଧରେ ଆମେ ଠାକୁରଙ୍କଠାରୁ କିଛି ଶୁଣି ନାହୁଁ । ହୁଏତ ଠାକୁର ତାଙ୍କୁ ଏବିଷୟରେ ପଚାରିବାର କୌଣସି ଆବଶ୍ୟକତା ମନେ କରି ନାହାନ୍ତି । ବିଶେଷତଃ, ପୂର୍ବ ନାମ-ଧାମ-ଗୋତ୍ର ଆଦି ବିଷୟରେ ପଚାରିଲେ ସନ୍ନ୍ୟାସୀମାନେ ଏହାର ଉଲ୍ଲେଖ କରନ୍ତି ନାହିଁ; କହନ୍ତି, 'ସନ୍ନ୍ୟାସୀଙ୍କୁ ଏସମସ୍ତ ବିଷୟରେ ପ୍ରଶ୍ନ କରିବା ଓ ସନ୍ନ୍ୟାସୀଙ୍କର ସେହି ବିଷୟର ଉତ୍ତର ଦେବା—ଉଭୟ ହିଁ ଶାସ୍ତ୍ର-ନିଷିଦ୍ଧ !' ବୋଧହୁଏ ସେଥିପାଇଁ ଠାକୁର ସେହି ପ୍ରଶ୍ନ 'ଲେଙ୍ଗ୍‌ଟା'ଙ୍କୁ କେବେ ପଚାରି ନ

ଥିଲେ । ତେବେ ବେଲୁଡ଼ ମଠସ୍ଥ ଠାକୁରଙ୍କ ସନ୍ନ୍ୟାସୀ ଶିଷ୍ୟମାନେ ଠାକୁରଙ୍କ ଦେହାନ୍ତ ପରେ ଭାରତର ଉତ୍ତର-ପଶ୍ଚିମାଞ୍ଚଳ ପରିଭ୍ରମଣ ସମୟରେ ପୁରାତନ ସନ୍ନ୍ୟାସୀ ପରମହଂସମାନଙ୍କ ନିକଟରୁ ପଚାରି ଜାଣିପାରିଥିଲେ ଯେ, ସମ୍ଭବତଃ ତୋତାପୁରୀଜୀ ପଞ୍ଜାବ ପ୍ରଦେଶ ନିକଟବର୍ତ୍ତୀ କୌଣସି ସ୍ଥାନର ଲୋକ ଥିଲେ । ତାଙ୍କର ଗୁରୁସ୍ଥାନ ବା ଗୁରୁଙ୍କ ଆବାସ କୁରୁକ୍ଷେତ୍ର ନିକଟସ୍ଥ ଲୁଧିୟାନା ନାମକ ସ୍ଥାନରେ ଥିଲା । ତାଙ୍କର ଗୁରୁ ମଧ୍ୟ ଜଣେ ବିଖ୍ୟାତ ଯୋଗୀ ପୁରୁଷ ଥିଲେ ଏବଂ ସେହି ସ୍ଥାନରେ ଏକ ମଠ ସ୍ଥାପନ କରିଥିଲେ । ଉକ୍ତ ମଠଟିକୁ ସେ ନିଜେ ସ୍ଥାପନ କରିଥିଲେ ବା ତାଙ୍କ ଗୁରୁଙ୍କର ଗୁରୁ କେହି ସ୍ଥାପନ କରିଥିଲେ, ସେବିଷୟରେ ସଠିକ୍ ତଥ୍ୟ ଜଣାଯାଇ ନାହିଁ । ତେବେ ଶ୍ରୀମତ୍ ତୋତାପୁରୀଙ୍କର ଗୁରୁ ଯେ ସେହି ମଠର ମହନ୍ତ ହୋଇଥିଲେ ଏବଂ ତାଙ୍କ ସମ୍ମାନରେ ଏବେ ମଧ୍ୟ ଏହି ସ୍ଥାନରେ ପ୍ରତିବର୍ଷ ଚତୁଷ୍ପାର୍ଶ୍ୱସ୍ଥ ଗ୍ରାମବାସୀମାନଙ୍କର ଗୋଟିଏ ମେଳା ବସିଥାଏ, ସେବିଷୟରେ ପ୍ରାଚୀନ ସାଧୁମାନେ ସେମାନଙ୍କୁ କହିଥିଲେ । ସେ ତମାଖୁ ସେବନ କରୁଥିଲେ ବୋଲି ଗ୍ରାମବାସୀମାନେ ମେଳା ସମୟରେ ତମାଖୁ ଆଣି ତାଙ୍କର ସମାଧିରେ ଉପହାର ଦେଇଥାଆନ୍ତି । ଗୁରୁଙ୍କ ଦେହାନ୍ତ ହେବାରୁ ଶ୍ରୀମତ୍ ତୋତାପୁରୀ ହିଁ ସେହି ମଠର ମହନ୍ତ ପଦରେ ପ୍ରତିଷ୍ଠିତ ହୋଇଥିଲେ ।

**ନିଜ ଗୁରୁଙ୍କର ମଠ ଓ ମଣ୍ଡଳୀ ସମ୍ବନ୍ଧରେ ତୋତାପୁରୀଙ୍କ କଥା :**

ଶ୍ରୀମତ୍ ତୋତାପୁରୀଙ୍କ ନିଜକଥାରୁ ମଧ୍ୟ ମନେହୁଏ ସେ ସନ୍ନ୍ୟାସୀମଣ୍ଡଳୀର ଅଧୀଶ୍ୱର ନିଜ ଗୁରୁଙ୍କ ନିକଟରୁ ବାଲ୍ୟକାଳରେ ହିଁ ବେଦାନ୍ତ-ଶାସ୍ତ୍ର ଉପଦେଶ ପ୍ରାପ୍ତ ହୋଇଥିଲେ ଏବଂ ବହୁକାଳ ତାଙ୍କ ଅଧୀନରେ ବାସ କରି ସ୍ୱାଧ୍ୟାୟରତ ଥିଲେ ଓ ସାଧନ-ରହସ୍ୟ ଅବଗତ ହୋଇଥିଲେ ! କାରଣ, ଠାକୁରଙ୍କୁ ସେ କହିଥିଲେ, ତାଙ୍କ ମଣ୍ଡଳୀରେ ସାତଶହ ସନ୍ନ୍ୟାସୀ ବାସ କରି ଗୁରୁଙ୍କ ଆଦେଶ ଅନୁସାରେ ବେଦାନ୍ତନିହିତ ସତ୍ୟସକଳ ଜୀବନରେ ଅନୁଭବ ନିମିତ୍ତ ଧ୍ୟାନାଦି ନିତ୍ୟ ଅନୁଷ୍ଠାନ କରୁଥିଲେ । ଉକ୍ତମଣ୍ଡଳୀରେ ଧ୍ୟାନ-ଶିକ୍ଷା ମଧ୍ୟ ଯେ ବଡ଼ ସୁନ୍ଦର ପ୍ରଣାଳୀରେ ଅନୁଷ୍ଠିତ ହେଉଥିଲା—ସେହି ବିଷୟରେ ମଧ୍ୟ 'ଲେଙ୍ଗ୍‌ଟା' ଠାକୁରଙ୍କୁ କିଛି କିଛି ଆଭାସ ଦେଇଥିଲେ । ଠାକୁର ସେକଥା ଅନେକ ସମୟରେ ଆମକୁ ଗଳ୍ପ ବା ଉପଦେଶ ଛଳରେ କହୁଥିଲେ । ଠାକୁର କହୁଥିଲେ, 'ଲେଙ୍ଗ୍‌ଟା' କହୁଥିଲେ, ସେମାନଙ୍କ ଦଳରେ ସାତଶହ ଲେଙ୍ଗ୍‌ଟା ଥିଲେ । ଯେଉଁମାନେ ଧ୍ୟାନ ଶିଖିବାକୁ ଆରମ୍ଭ କରନ୍ତି, ସେମାନଙ୍କୁ ଗଦି ଉପରେ ବସାଇ ଧ୍ୟାନ କରାଯାଉଥିଲା । କାରଣ, କଠିନ ଆସନରେ ବସି ଧ୍ୟାନ କଲେ ପାଦ ବ୍ୟଥା କରିବ; ଏହି କଷ୍ଟରେ ଅନଭ୍ୟସ୍ତ ମନ ଈଶ୍ୱରାଭିମୁଖୀ ନ ହୋଇ ଶରୀର ଉପରେ ଆସି ପଡ଼ିବ । ତା ପରେ ତାର ଧ୍ୟାନ ଯେତେ ଜମୁଥିଲା ସେତେ ହିଁ ତାହାକୁ କଠିନରୁ କଠିନତର

ଆସନରେ ବସି ଧ୍ୟାନ କରିବାକୁ କୁହାଯାଉଥିଲା । ଶେଷରେ କେବଳ ଚର୍ମାସନ ବା ଖାଲି ଭୂମି ଉପରେ ବସି ତାଙ୍କୁ ଧ୍ୟାନ କରିବାକୁ ହେଉଥିଲା । ଆହାର ଇତ୍ୟାଦି ସମସ୍ତ ବିଷୟରେ ମଧ୍ୟ ସେହି ପ୍ରକାର ନିୟମରେ ଅଭ୍ୟାସ କରାହେଉଥିଲା । ପରିଧାନରେ ମଧ୍ୟ ଶିଷ୍ୟମାନଙ୍କୁ ସମସ୍ତଙ୍କୁ କ୍ରମେ କ୍ରମେ ଉଲଗ୍ନ ହୋଇ ରହିବାକୁ ଅଭ୍ୟାସ କରା ହେଉଥିଲା । ଲଜ୍ଜା, ଭୟ, ଘୃଣା, ଜାତି, କୁଳ, ଶୀଳ, ମାନ ଇତ୍ୟାଦି ଅଷ୍ଟପାଶରେ ମାନବ ଜନ୍ମାବଧି ବଦ୍ଧ ରହିଛି ତ ? ଗୋଟି ଗୋଟି କରି ସେଗୁଡ଼ିକ ସବୁ ତ୍ୟାଗ କରିବାକୁ ଶିକ୍ଷା ଦିଆଯାଉଥିଲା । ଏହା ପରେ ଧ୍ୟାନାଦିରେ ମନ ପକ୍କା ହେଲେ ତାହାଙ୍କୁ ପ୍ରଥମେ ଅନ୍ୟାନ୍ୟ ସାଧୁମାନଙ୍କ ସହିତ, ତା ପରେ ଏକା ଏକା, ସବୁ ତୀର୍ଥ ଭ୍ରମଣ କରିବାକୁ ହେଉଥିଲା । ଲେଙ୍ଗ୍‌ଟାଙ୍କର ଏହିପରି ସବୁ ନିୟମ ଥିଲା ।'' 'ସେହି ମଣ୍ଡଳୀର ମହନ୍ତ-ନିର୍ବାଚନ ପ୍ରଥା ମଧ୍ୟ ଠାକୁର ପୁରୀଜୀଙ୍କ ନିକଟରୁ ଶୁଣିଥିଲେ । ପ୍ରସଙ୍ଗତଃ ସେସମ୍ବନ୍ଧରେ ଆମକୁ ଦିନେ ଏହିପରି କହିଥିଲେ, ''ଲେଙ୍ଗ୍‌ଟା ମଧ୍ୟରେ ଯାହାଙ୍କର ଠିକ୍ ଠିକ୍ ପରମହଂସ ଅବସ୍ଥା ହୋଇଛି ଦେଖାଯାଉଥିଲା, ଗାଦି ଖାଲି ହେଲେ ତାଙ୍କୁ ହିଁ ସମସ୍ତେ ମିଶି 'ମହନ୍ତ' କରି ସେହି ଗାଦିରେ ବସାଉଥିଲେ । ତା' ନ ହେଲେ ଅର୍ଥ, ମାନ, କ୍ଷମତା ହାତରେ ଆସିଲେ ସ୍ଥିର ରହିବେ କିପରି ? ମୁଣ୍ଡ ବିଗିଡ଼ି ଯିବ ଯେ ? ତେଣୁ ଯାହାର ମନରୁ କାଞ୍ଚନ ଠିକ୍ ଠିକ୍ ତ୍ୟାଗ ହୋଇଥିବାର ଦେଖୁଥିଲେ, ତାଙ୍କୁ ହିଁ ଗାଦିରେ ବସାଇ ଟଙ୍କା-ପଇସାର ଭାର ଦିଆଯାଉଥିଲା । କାରଣ, ସେ ହିଁ ଏସମସ୍ତ ଅର୍ଥ ଦେବତା ଓ ସାଧୁମାନଙ୍କ ସେବାରେ ଠିକ୍ ରୂପେ ବ୍ୟୟ କରିପାରିବେ ।''

## ତୋତାପୁରୀଙ୍କର ପୂର୍ବ ପରିଚୟ :

ତୋତାପୁରୀଙ୍କର ଏସମସ୍ତ କଥାରୁ ବେଶ୍ ବୁଝାଯାଏ, ସେ ବାଲ୍ୟକାଳରୁ ସଂସାରର ମାୟା-ମୋହ-ଈର୍ଷା-ଦ୍ୱେଷ ଇତ୍ୟାଦିଠାରୁ ଦୂରରେ ଯେପରି ଏକ ସ୍ୱର୍ଗୀୟ ରାଜ୍ୟରେ ଗୁରୁଙ୍କ ସ୍ନେହରେ ଲାଳିତ-ପାଳିତ ହୋଇଥିଲେ । ଉତ୍ତର ପଶ୍ଚିମାଞ୍ଚଳର ପ୍ରଥା ଅନୁଯାୟୀ, ଯେଉଁ ଦମ୍ପତିଙ୍କ ଯଥା ସମୟରେ ସନ୍ତାନ ହୁଏ ନାହିଁ, ସେମାନେ ଦେବସ୍ଥାନକୁ ଯାଇ କାମନା କରିଥାଆନ୍ତି ଯେ, ତାଙ୍କ ପ୍ରଣୟର ପ୍ରଥମ ଫଳସ୍ୱରୂପ ସନ୍ତାନକୁ ସନ୍ନ୍ୟାସୀ କରି ଈଶ୍ୱରଙ୍କ ସେବାରେ ଅର୍ପଣ କରିବେ ଏବଂ ବାସ୍ତବ କ୍ଷେତ୍ରରେ ମଧ୍ୟ ଏପରି ଅନୁଷ୍ଠାନ କରୁଥିଲେ । ପୁରୀଜୀ କ'ଣ ଏତାଦୃଶ ଭାବରେ ଗୁରୁଙ୍କ ନିକଟରେ ଅର୍ପିତ ହୋଇଥିଲେ ? କିଏ ସେକଥା କହିବ ! ତେବେ ତାଙ୍କର ପୂର୍ବାଶ୍ରମର ପିତା-ମାତା, ଭାଇ-ଭଉଣୀ ପ୍ରଭୃତିଙ୍କ କୌଣସି କଥା ଠାକୁରଙ୍କ ନିକଟରେ କେବେ ଉଲ୍ଲେଖ କରି ନ ଥିବାରୁ ତାହା ହିଁ ଅନୁମାନ କରାଯାଏ ।

**ତୋତାପୁରୀଙ୍କର ମନ :**

ପୂର୍ବକୃତ ପୁଣ୍ୟସଂସ୍କାର ଫଳରେ ତୋତାପୁରୀଜୀଙ୍କ ମନ ମଧ୍ୟ ସେପରି ସରଳ ବିଶ୍ୱାସୀ ତଥା ଶ୍ରଦ୍ଧାସମ୍ପନ୍ନ ଥିଲା । ଆଚାର୍ଯ୍ୟ ଶଙ୍କର କୃତ 'ବିବେକଚୂଡ଼ାମଣି' ଗ୍ରନ୍ଥର ପ୍ରାରମ୍ଭରେ ହିଁ କୁହାଯାଇଛି, 'ଜଗତରେ ମନୁଷ୍ୟତ୍ୱ, ଈଶ୍ୱର ଲାଭ ଇଚ୍ଛା ଏବଂ ସଦ୍‌ଗୁରୁଙ୍କ ଆଶ୍ରୟ—ଏହି ତିନୋଟି ବସ୍ତୁ ଏକତ୍ର ଲାଭ କରିବା ଅତ୍ୟନ୍ତ ଦୁର୍ଲ୍ଲଭ; ଈଶ୍ୱରଙ୍କର ଅନୁଗ୍ରହ ବ୍ୟତୀତ ହୁଏ ନାହିଁ ।' ତୋତାପୁରୀଜୀ କେବଳ ଯେ ଉକ୍ତ ତିନୋଟି ପଦାର୍ଥ ଭାଗ୍ୟବଳରେ ଏକତ୍ର ପାଇଥିଲେ ତାହା ନୁହେଁ, କିନ୍ତୁ ସେ ଏସମସ୍ତର ଯଥାଯଥ ବ୍ୟବହାରର ସୁଯୋଗ ପାଇ ମାନବ-ଜୀବନର ଚରମ ଉଦ୍ଦେଶ୍ୟ ମୁକ୍ତିଲାଭରେ ମଧ୍ୟ ସମର୍ଥ ହୋଇଥିଲେ । ତାଙ୍କର ଗୁରୁ ତାଙ୍କୁ ଯେପରି ଉପଦେଶ ଦେଉଥିଲେ, ତାଙ୍କର ମନ ମଧ୍ୟ ତାହା ଠିକ୍ ଭାବରେ ଧାରଣା କରି ସର୍ବଦା କାର୍ଯ୍ୟରେ ପରିଣତ କରୁଥିଲା । ମନର ଜୁଆଚୋରି ଭଣ୍ଡାମିରେ ତାଙ୍କୁ କେବେ ମଧ୍ୟ ବେଶି ଭୋଗିବାକୁ ପଡ଼ିଥିଲା ବୋଲି ମନେ ହୁଏ ନାହିଁ । ବୈଷ୍ଣବମାନଙ୍କର ମଧ୍ୟରେ ଗୋଟିଏ କଥା ଅଛି—

''ଗୁରୁ କୃଷ୍ଣ ବୈଷ୍ଣବ ତିନେର ଦୟା ହଲ ।
ଏକେର ଦୟା ବିନା ଜୀବ ଛାର ଖାର ଗେଲ ।''

ଅର୍ଥାତ୍, ଶ୍ରୀଗୁରୁଦେବ, ଶ୍ରୀକୃଷ୍ଣ ତଥା ବୈଷ୍ଣବ—ଏହି ତିନିଜଣଙ୍କର ଦୟା ହେଲା, କିନ୍ତୁ ଗୋଟିଏର ଦୟା ବିନା ଜୀବ ଛାରଖାର ହୋଇଗଲା ।—'ଏକେର' ଅର୍ଥାତ୍ ନିଜ ମନର ଦୟା ନ ହେବାରୁ ଜୀବ ବିନଷ୍ଟ ହେଲା । ତୋତାପୁରୀଙ୍କୁ ଏପରି ଦୁଷ୍ଟ ମନ ହାତରେ ପଡ଼ି କେବେ ଭୋଗିବାକୁ ହୋଇଥିଲା ବୋଲି ବୋଧହୁଏ ନାହିଁ । ତାଙ୍କର ସରଳ ମନ, ସରଳ ଭାବରେ ଈଶ୍ୱରଙ୍କଠାରେ ବିଶ୍ୱାସ ସ୍ଥାପନ କରି ଗୁରୁନିର୍ଦ୍ଦିଷ୍ଟ ଗନ୍ତବ୍ୟ ପଥରେ ଧୀରପଦରେ ଅଗ୍ରସର ହୋଇଥିଲା, ଯାଉ ଯାଉ ଥରେ ମଧ୍ୟ ପଛରେ ରହିଥିବା ସଂସାରର ପାପ-ପ୍ରଲୋଭନାଦି ଆଡ଼କୁ ଅତୃପ୍ତ ଲାଳସାର କଟାକ୍ଷପାତ କରି ନାହିଁ । ସୁତରାଂ ତୋତାପୁରୀଜୀ ନିଜର ପୁରୁଷକାର, ଉଦ୍ୟମ, ଆତ୍ମନିର୍ଭରତା ଓ ପ୍ରତ୍ୟୟକୁ ହିଁ ସର୍ବେସର୍ବା ବୋଲି ଜାଣିଥିଲେ । ମନ ବିଗିଡ଼ି ଗଲେ ସେହି ପୁରୁଷକାର ଯେ ପ୍ରବଳ ପ୍ରବାହର ସ୍ରୋତରେ ତୃଣଗୁଚ୍ଛସଦୃଶ କେଉଁଆଡ଼େ ଭାସିଯାଏ, ସେହି ଆତ୍ମନିର୍ଭର ଓ ଆତ୍ମପ୍ରତ୍ୟୟର ସ୍ଥଳରେ ଯେ ନିଜର କ୍ଷମତା ଉପରେ ଘୋର ଅବିଶ୍ୱାସ ଆସି ଜୀବକୁ ସାମାନ୍ୟ କୀଟ ଅପେକ୍ଷା ଦୁର୍ବଳ କରି ତୋଳିଥାଏ—ଏହା ତୋତାପୁରୀଜୀ ଜାଣି ନ ଥିଲେ । ଈଶ୍ୱରଙ୍କ କୃପାରୁ ବହିର୍ଜ୍ଜଗତର ସହସ୍ର ବିଷୟର ଅନୁକୂଳତା ନ ପାଇଲେ ଜୀବର ଶତ-ସହସ୍ର ଉଦ୍ୟମ ଯେ ଆଶାନୁରୂପ ଫଳ ନ ଦେଇ ବିପରୀତ ଫଳ ହିଁ ଦେଇଥାଏ ଏବଂ ତାକୁ ବନ୍ଧନ ଉପରେ ଆହୁରି ଘୋରତର ବନ୍ଧନ ଆଣିଦିଏ, ତୋତାପୁରୀଜୀ ନିଜ ଜୀବନକୁ ଦେଖି ଏକଥା କେବେ ସ୍ୱପ୍ନରେ ମଧ୍ୟ ଭାବି ନ ଥିଲେ । କାହିଁକି ବା

ଭାବିଥାନ୍ତେ ? ସେ ଯେତେବେଳେ ଯାହା ଧରିଛନ୍ତି—ଆଜନ୍ମ, ସେତେବେଳେ ହିଁ ତାହା କରିପାରିଛନ୍ତି, ଯେତେବେଳେ ହିଁ ଯାହା ମାନବର କଲ୍ୟାଣକର ବୋଲି ବୁଝିଛନ୍ତି, ସେତେବେଳେ ହିଁ ତାହା ହିଁ ନିଜ ଜୀବନରେ କାର୍ଯ୍ୟରେ ପରିଣତ କରିପାରିଛନ୍ତି । ଅତଏବ 'ମନ ବୁଝିଛି, ପ୍ରାଣ ବୁଝେ ନାହିଁ' ଏପରି ଏକ ଅବସ୍ଥା ଯେ ମାନବର ହୋଇପାରେ, 'ମନ ମୁଖ ଏକ' କରି ନ ପାରି ସେ ଯେ ଶତ ବୃଶ୍ଚିକର ଦଂଶନ ଜ୍ୱାଳା ଅନ୍ତର ମଧ୍ୟରେ ନିରନ୍ତର ଅନୁଭବ କରିପାରେ, ମନ ମଧ୍ୟରେ ସହସ୍ର ଜଣ କର୍ତ୍ତା ଏବଂ ଶରୀରର ପ୍ରତ୍ୟେକ ଇନ୍ଦ୍ରିୟଗୁଡ଼ିକ ନିଜ ନିଜ ପ୍ରାଧାନ୍ୟ ବିସ୍ତାର କରି କେହି କାହା କଥା ନ ମାନି ତାକୁ ଯେ ବ୍ୟତିବ୍ୟସ୍ତ କରି ହତାଶାର ଅନ୍ଧକାରରେ ପକାଇ ଘୋର ଯନ୍ତ୍ରଣା ଦେଇପାରେ—ଏବିଷୟ ତୋତାପୁରୀଜୀ କେବେ କଳ୍ପନାରେ ସୁଦ୍ଧା ଭାବିଥିଲେ କି ନାହିଁ ସନ୍ଦେହ । କିମ୍ବା ଜାଣିପାରିଲେ ମଧ୍ୟ ଶୁଣି ଶିଖିବା, ଦେଖି ଶିଖିବା ଓ ଚାପରେ ପଡ଼ି ଶିଖିବା ମଧ୍ୟରେ ଅନେକ ତଫାତ୍ । ଅତଏବ ତୋତାପୁରୀଜୀଙ୍କ ମନରେ ଅବସ୍ଥିତ ମାନବର ସେହିପ୍ରକାର ଛବିରେ ଏବଂ ଯିଏ ସେହି ପ୍ରକାରରେ ବାସ୍ତବିକ ନିରନ୍ତର ଭୋଗୁଅଛି, ତାହାର ମନର ଛବିରେ ଆକାଶ-ପାତାଳ ପ୍ରଭେଦ ଥିଲା । ତୋତାପୁରୀଜୀ ସେଥିପାଇଁ ପରମେଶ୍ୱରଙ୍କ ଶକ୍ତି ଅନାଦି-ଅବିଦ୍ୟା ମାୟାର ପ୍ରଚଣ୍ଡ ପ୍ରଭାବ ବିଷୟରେ ସମ୍ପୂର୍ଣ୍ଣ ଅଜ୍ଞ ହିଁ ଥିଲେ । ଏଥିପାଇଁ ଦୁର୍ବଳ ମାନବ ମନର କାର୍ଯ୍ୟକଳାପ ପ୍ରତି ସେ କଠୋର ଦ୍ୱେଷ-ଦୃଷ୍ଟି ବ୍ୟତୀତ କେବେ ହେଲେ କରୁଣାର ସହିତ ଦେଖିବାକୁ ସମର୍ଥ ହୋଇଥିଲେ କି ନାହିଁ ସନ୍ଦେହ । ଠାକୁରଙ୍କର ଗୁରୁଭାବ ସମ୍ପର୍କରେ ଆସି ହିଁ ତାଙ୍କର ଏହି ଅଭାବ ଅପସରି ଯାଇଥିଲା ଏବଂ ସେ ପରିଶେଷରେ ମାୟାର ଶକ୍ତିକୁ ମାନି ବ୍ରହ୍ମ ଓ ବ୍ରହ୍ମଶକ୍ତି ଅଭେଦ ଜାଣି ଭକ୍ତିପୂର୍ଣ୍ଣ ହୃଦୟରେ ଅବନତ ମସ୍ତକରେ ଦକ୍ଷିଣେଶ୍ୱର-କାଳୀମନ୍ଦିରରୁ ବିଦାୟଗ୍ରହଣ କରିବାକୁ ବାଧ୍ୟ ହୋଇଥିଲେ । ଆମେ ଏବିଷୟ କହିବାକୁ ଆରମ୍ଭ କରିବୁ ।

### ତୋତାପୁରୀଙ୍କର ଭକ୍ତିମାର୍ଗରେ ଅନଭିଜ୍ଞତା :

ବ୍ରାହ୍ମଣୀ ଭୈରବୀ ଠାକୁରଙ୍କୁ ଯେପରି କହିଥିଲେ, ଆକୁମାର ବ୍ରହ୍ମଚାରୀ କଠୋର ଯତି ତୋତାଙ୍କର ବାସ୍ତବିକ ଭଗବଦ୍‌ଭକ୍ତି ମାର୍ଗକୁ ଗୋଟିଏ କିମ୍ଭୂତକିମାକାର ପଥ ବୋଲି ଧାରଣା ଥିଲା । ଭକ୍ତି-ଭଲ ପାଇବା ଯେ, ମନୁଷ୍ୟକୁ ସ୍ନେହର ପାତ୍ର ଈଶ୍ୱରଙ୍କ ନିମିତ୍ତ ସଂସାରର ସମସ୍ତ ବିଷୟ, ଏପରିକି ଆତ୍ମତୃପ୍ତି ପର୍ଯ୍ୟନ୍ତ ଧୀରେ ଧୀରେ ତ୍ୟାଗ କରିବାକୁ ଶିଖାଇ ଶେଷରେ ଈଶ୍ୱର-ଦର୍ଶନ କରାଇଥାଏ ଏବଂ ଯଥାର୍ଥ ଭକ୍ତସାଧକ ଯେ ଭକ୍ତିର ଚରମ ପରିଣତିରେ ଶୁଦ୍ଧ ଅଦ୍ୱୈତଜ୍ଞାନର ମଧ୍ୟ ଅଧିକାରୀ ହୋଇଥାଏ, ତେଣୁ ତାହାର ସେହି ସାଧନାରେ ସହାୟକ ଜପ-କୀର୍ତ୍ତନ-ଭଜନ ଇତ୍ୟାଦି ଯେ ଉପେକ୍ଷାର ବିଷୟ ନୁହେଁ—ଏହା

ତୋତାଜୀ ବୁଝୁ ନ ଥିଲେ । ଏକଥା ନ ବୁଝି ତୋତାଜୀ ଭକ୍ତର ଭାବବିହ୍ୱଳ ଚେଷ୍ଟାଗୁଡ଼ିକୁ ବେଳେବେଳେ ବିଦ୍ରୂପ କରିବା ପାଇଁ ପଛାଉ ନ ଥିଲେ । ଅବଶ୍ୟ ଏସମସ୍ତ କଥାରେ ପାଠକ ଯେପରି ନ ବୁଝନ୍ତି ଯେ, ତୋତାପୁରୀଜୀ ଏକ ପ୍ରକାର ନାସ୍ତିକ ଥିଲେ ବା ତାଙ୍କର ଈଶ୍ୱରାନୁରାଗ ନ ଥିଲା । ଶମ-ଦମାଦି-ସାଧନ-ସମ୍ପତ୍ତିସମ୍ପନ୍ନ ଶାନ୍ତ-ସ୍ୱଭାବ ତୋତାପୁରୀଜୀ ସ୍ୱୟଂ ଶାନ୍ତିଭକ୍ତିଭାବର ପଥିକ ଥିଲେ ଏବଂ ଅନ୍ୟମାନଙ୍କଠାରେ ସେହି ଭାବର ଈଶ୍ୱରଭକ୍ତି ହିଁ ବୁଝିପାରୁଥିଲେ । କିନ୍ତୁ କଳ୍ପନା ସାହାୟରେ ଜଗତକର୍ତ୍ତା ମହାନ୍ ଈଶ୍ୱରଙ୍କୁ ନିଜର ସଖା, ପୁତ୍ର, ସ୍ତ୍ରୀ ବା ସ୍ୱାମୀ ଭାବରେ ଭଜନା କରି ମଧ୍ୟ ସାଧକ ଯେ ତାଙ୍କ ଆଡ଼କୁ ଦ୍ରୁତପଦରେ ଅଗ୍ରସର ହୋଇପାରେ, ଏକଥା ପୁରୀଜୀଙ୍କ ମୁଣ୍ଡରେ କେବେ ପଶି ନାହିଁ । ସେହି ପ୍ରକାର ଭକ୍ତଙ୍କର ନିଜ ଭାବପ୍ରଣୋଦିତ ଈଶ୍ୱରଙ୍କ ପ୍ରତି ଅଳି-ଅର୍ଦ୍ଦଳି, ତାଙ୍କୁ ନେଇ ବିରହ, ବ୍ୟାକୁଳତା, ଅଭିମାନ, ଅହଂକାର ଏବଂ ଭାବର ପ୍ରବଳ ଉଚ୍ଛ୍ୱାସରେ ଉଦ୍ଦାମ ହାସ୍ୟ-କ୍ରନ୍ଦନ-ନୃତ୍ୟାଦି ଚେଷ୍ଟାକୁ ସେ ପାଗଳର ଖିଆଲ ବା ପ୍ରଳାପ ମଧ୍ୟରେ ହିଁ ଗଣ୍ୟ କରୁଥିଲେ; ଏବଂ ସେଥିରେ ସେହିପ୍ରକାର ଅଧିକାରୀ ସାଧକର ଆଶୁ ଅଭୀଷ୍ଟ ଫଳଲାଭ ହୋଇପାରେ, ସେ ଏକଥା କଳ୍ପନାରେ ମଧ୍ୟ ଆଣିପାରୁ ନ ଥିଲେ । ସୁତରାଂ ବ୍ରହ୍ମଶକ୍ତି ଜଗଦମ୍ବିକାଙ୍କୁ ହୃଦୟର ସହିତ ଭକ୍ତି କରିବା ଏବଂ ଭକ୍ତିପଥରେ ସେ ପ୍ରକାର ଚେଷ୍ଟା ଆଦିର କଥା ନେଇ ପୁରୀଜୀଙ୍କ ସହିତ ଠାକୁରଙ୍କର ଅନେକ ସମୟରେ କଥା କଟାକଟି ହେଉଥିଲା ।

### ଏବିଷୟରେ ପ୍ରମାଣ—'କ୍ୟୋଁ ରୋଟି ଠୋକ୍‌ତେ ହୋ' :

ଠାକୁର ବାଲ୍ୟକାଳରୁ ସକାଳ ସନ୍ଧ୍ୟାରେ କରତାଳି ଦେଉ ଦେଉ ଏବଂ ବେଳେ ବେଳେ ଭାବରେ ନୃତ୍ୟ କରୁ କରୁ 'ହରିବୋଲ ହରିବୋଲ', 'ହରି ଗୁରୁ, ଗୁରୁ ହରି', ହରି ପ୍ରାଣମୋର ଗୋବିନ୍ଦ ମମ ଜୀବନ','ମନକୃଷ୍ଣ—ପ୍ରାଣ କୃଷ୍ଣ—ଜ୍ଞାନ କୃଷ୍ଣ—ଧ୍ୟାନ କୃଷ୍ଣ—ବୋଧ କୃଷ୍ଣ—ବୁଦ୍ଧି କୃଷ୍ଣ', 'ଜଗତ ତୁମେ—ଜଗତ ତୁମଠାରେ', 'ମୁଁ ଯନ୍ତ୍ର, ତୁମେ ଯନ୍ତ୍ରୀ', ଇତ୍ୟାଦି ଉଚ୍ଚସ୍ୱରରେ ବାରମ୍ବାର କିଛି ସମୟ କହୁଥିଲେ । ବେଦାନ୍ତଜ୍ଞାନରେ ଅଦ୍ୱୈତଭାବରେ ନିର୍ବିକଳ୍ପ ସମାଧିଲାଭ ପରେ ମଧ୍ୟ ପ୍ରତ୍ୟେକ ଦିନ ସେହିପରି କରୁଥିଲେ । ଦିନେ ପଞ୍ଚବଟୀରେ ପୁରୀଜୀଙ୍କ ନିକଟରେ ଅପରାହ୍ଣରେ ବସି ନାନା ଧର୍ମକଥା ହେଉ ହେଉ ସନ୍ଧ୍ୟା ଉପସ୍ଥିତ ହେଲା । ସନ୍ଧ୍ୟା ସମାଗତ ଦେଖି ଠାକୁରେ ବାର୍ତ୍ତାଳାପ ବନ୍ଦ କରି, କରତାଳି ଦେଇ ସେହି ପ୍ରକାରରେ ଭଗବାନଙ୍କର ସ୍ମରଣ-ମନନ କରିବାକୁ ଲାଗିଲେ । ତାଙ୍କୁ ଏପରି କରିବା ଦେଖି ପୁରୀଜୀ ଆଶ୍ଚର୍ଯ୍ୟ ହୋଇ ଭାବିବାକୁ ଲାଗିଲେ—ଯିଏ ବେଦାନ୍ତ ପଥର ଏତେ ଉତ୍ତମ ଅଧିକାରୀ, ଯିଏ ତିନିଦିନରେ ହିଁ ନିର୍ବିକଳ୍ପ ସମାଧି ଲାଭ କଲେ, ସେ ପୁଣି ହୀନ ଅଧିକାରୀସଦୃଶ ଏପରି ଅନୁଷ୍ଠାନ କରୁଛନ୍ତି

କାହିଁକି ? ପ୍ରକାଶ୍ୟରେ ବିଦ୍ରୂପ କରି କହି ପକାଇଲେ, 'ଆରେ, ରୋଟି ଠୋକ୍‌ତେ ହୋ ?'—ଅର୍ଥାତ୍, ଉତ୍ତର-ପଶ୍ଚିମାଞ୍ଚଳରେ ସ୍ତ୍ରୀ ଓ ପୁରୁଷମାନେ ଅନେକ ସମୟରେ ବେଲଣା ପେଡ଼ି ଓ ବେଲଣା କାଠିର ସାହାଯ୍ୟ ନ ନେଇ ହାତର ଦୁଇ ପାପୁଲିରେ ଅଟା ଗୋଲାକୁ ବାଡ଼େଇ ବାଡ଼େଇ ରୋଟି କରିଥାଆନ୍ତି, ସେପରି କାହିଁକି କରୁଛ ? ଠାକୁର ଶୁଣି ହସି କହିଲେ—"ଦୂର ଶଳା ! ମୁଁ ଈଶ୍ୱରଙ୍କର ନାମ କରୁଛି, ଆଉ ତୁମେ କହୁଛ, ମୁଁ ରୁଟି କରୁଛି !" ପୁରୀଜୀ ମଧ୍ୟ ଠାକୁରଙ୍କର ପିଲାଳିଆ ଢଙ୍ଗର କଥାରେ ହସିବାକୁ ଲାଗିଲେ ଏବଂ ବୁଝିଲେ ଯେ, ଠାକୁର ସେପରି କରିବା ଅର୍ଥଶୂନ୍ୟ ନୁହେଁ; ତାହା ଭିତରେ ଏପରି କିଛି ଗୂଢ଼ଭାବ ଅଛି, ଯାହା ତାଙ୍କର ରୁଚିକର ନୁହେଁ ବୋଲି ସେ ଧରିବାକୁ ବା ବୁଝିପାରୁ ନାହାନ୍ତି । ତେଣୁ ସେଥିରେ ପ୍ରତିବାଦ ନ କରିବା ହିଁ ଭଲ ।

**ତୋତାପୁରୀଙ୍କ କ୍ରୋଧତ୍ୟାଗର କଥା :**

ଅନ୍ୟ ଗୋଟିଏ ଦିନ ସନ୍ଧ୍ୟାପରେ ଠାକୁର ପୁରୀଜୀଙ୍କର ଧୁନି ପାଖରେ ବସିଛନ୍ତି । ଈଶ୍ୱରପ୍ରସଙ୍ଗରେ ଉଭୟଙ୍କର ମନ ଖୁବ୍ ଉପରକୁ ଉଠି ଅଦ୍ୱୈତଜ୍ଞାନରେ ପ୍ରାୟ ତନ୍ମୟତ୍ୱ ଅନୁଭବ କରୁଥିଲେ । ପାଖରେ ଧକ୍ ଧକ୍ କରି ଜଳି ଜଳି ଧୁନିର ଅଗ୍ନିମଧ୍ୟସ୍ଥ ଆତ୍ମା ସତେ ଯେପରି ସେମାନଙ୍କ ଆତ୍ମା ସହିତ ଏକତ୍ୱାନୁଭବ କରି ଆନନ୍ଦରେ ଶତ ଜିହ୍ୱା ବିସ୍ତାର କରି ହସୁଅଛି ! ଏପରି ସମୟରେ ବଗିଚାର ଚାକରମାନଙ୍କ ମଧ୍ୟରୁ ଜଣଙ୍କର ତମାଖୁ ସେବନ କରିବାକୁ ବିଶେଷ ଇଚ୍ଛା ହେବାରୁ, ଚିଲମରେ ତମାଖୁ ଭରି ନିଆଁ ପାଇଁ ସେଠାରେ ପହଞ୍ଚିଲା ଏବଂ ଧୁନି କାଠ ଟାଣି ନିଆଁ ନେବାକୁ ଲାଗିଲା । ପୁରୀଜୀ ଠାକୁରଙ୍କ ସହିତ ବାକ୍ୟାଳାପରେ ଓ ଅନ୍ତରରେ ଅଦ୍ୱୈତ ବ୍ରହ୍ମାନନ୍ଦ ଅନୁଭବରେ ମଗ୍ନ ଥିବାରୁ, ସେ ଲୋକର ଆଗମନ ଓ ଧୁନିରୁ ଅଗ୍ନି ନେଉଥିବା ବିଷୟ ଏପର୍ଯ୍ୟନ୍ତ ଜାଣିପାରି ନାହାନ୍ତି । ହଠାତ୍ ସେପଟେ ଦୃଷ୍ଟି ପଡ଼ିବାରୁ ଅତ୍ୟନ୍ତ ବିରକ୍ତ ଓ କ୍ରୁଦ୍ଧ ହୋଇ ତାକୁ ଗାଳିଗୁଲଜ କରିବାକୁ ଲାଗିଲେ ! ଏପରି କି ଚିମୁଟା ଉଠାଇ ତାହାକୁ ବାଡ଼େଇବା ପାଇଁ ଭୟ ମଧ୍ୟ ଦେଖାଇବାକୁ ଲାଗିଲେ ! କାରଣ, ପୂର୍ବରୁ କୁହାଯାଇଛି, ନାଗାସାଧୁମାନେ ଧୁନିରୂପୀ ଅଗ୍ନିକୁ ପୂଜା ଓ ବିଶେଷ ସମ୍ମାନ ପ୍ରଦର୍ଶନ କରିଥାଆନ୍ତି !

ଠାକୁର ପୁରୀଜୀଙ୍କର ଏପରି ବ୍ୟବହାରରେ ଅର୍ଦ୍ଧବାହ୍ୟଦଶାରେ ହାସ୍ୟରୋଳ କରି ତାହାଙ୍କୁ କହିଉଠିଲେ, "ଦୂର୍ ଶଳା, ଦୂର୍ ଶଳା !" ଏକଥା ବାରମ୍ବାର କହି ହସି ହସି ଗଡ଼ିଯାଉଥାନ୍ତି ! ତୋତାଜୀ ଠାକୁରଙ୍କର ସେପରି ଭାବ ଦେଖି ଆଶ୍ଚର୍ଯ୍ୟ ହୋଇ କହିଲେ, "ତୁମେ ଏପରି କାହିଁକି କରୁଛ ? ଲୋକଟାର କେତେ ଅନ୍ୟାୟ ଦେଖୁଛ ?" ଠାକୁର ହସି ହସି କହିଲେ, "ତା' ଅବଶ୍ୟ, କିନ୍ତୁ ତାସହିତ ତୁମର ବ୍ରହ୍ମଜ୍ଞାନର ଦୌଡ଼ ମଧ୍ୟ ଦେଖୁଛି ! ଏହି ମୁହଁରେ କହୁଥିଲ—ବ୍ରହ୍ମ

ବ୍ୟତୀତ ଦ୍ୱିତୀୟ ସତ୍ତା ନାହିଁ, ଜଗତରେ ସମସ୍ତ ବସ୍ତୁ ଓ ବ୍ୟକ୍ତି ତାଙ୍କରି ପ୍ରକାଶ, ପୁଣି ପରକ୍ଷଣରେ ଏସମସ୍ତ କଥା ଭୁଲି ମନୁଷ୍ୟକୁ ମାରିବାକୁ ଉଦ୍ୟତ ହେଉଛ ! ସେଥିପାଇଁ ହସୁଛି ଯେ, ମାୟାର କି ପ୍ରଭାବ !'' ତୋତା ଏହି କଥା ଶୁଣି ଗମ୍ଭୀର ହୋଇ କିଛି କ୍ଷଣ ଚୁପ୍ କରି ରହିଲେ, ପରେ ଠାକୁରଙ୍କୁ ସମ୍ବୋଧନ କରି କହିଲେ, ''ଠିକ୍ କହିଛ, କିନ୍ତୁ କ୍ରୋଧ ଯୋଗୁଁ ସବୁ ଭୁଲିଯାଇଥିଲି ! କ୍ରୋଧ ବଡ଼ ଖରାପ ଜିନିଷ ! ଆଜିଠାରୁ ଆଉ କ୍ରୋଧ କରିବି ନାହିଁ, କ୍ରୋଧ ପରିତ୍ୟାଗ କଲି ।'' ବାସ୍ତବିକ୍ ତୋତାପୁରୀଜୀଙ୍କୁ ସେହିଦିନଠାରୁ ଆଉ କ୍ରୁଦ୍ଧ ହେବା ଦେଖାଯାଇ ନ ଥିଲା !

### ମାୟା କୃପା କରି ରାସ୍ତା ନ ଛାଡ଼ିଲେ ମାନବର ଈଶ୍ୱରଲାଭ ହୁଏ ନାହିଁ :

ଠାକୁର କହୁଥିଲେ, ''ପଞ୍ଚଭୁତେର ଫାନ୍ଦେ, ବ୍ରହ୍ମ ପଡ଼େ କାନ୍ଦେ—ଚକ୍ଷୁ ମୁଦ୍ରିତ କରି ତୁମେ 'କଣ୍ଟା ନାହିଁ, ଖୁଞ୍ଚା ନାହିଁ,' ଏପରି ଯେତେ ମନକୁ ବୁଝାଅ ନା କାହିଁକି, କଣ୍ଟାରେ ହାତ ବାଜିଲେ ଫଟ୍ କରି ବିନ୍ଧି ଉହୁ ଉହୁ କରି ଉଠିବ । ସେପରି, ଯେତେ ହିଁ ମନକୁ ବୁଝାଅ ନା କାହିଁକି—ତୁମର ଜନ୍ମ ନାହିଁ, ମୃତ୍ୟୁ ନାହିଁ, ପାପ ନାହିଁ, ଶୋକ ନାହିଁ, ଦୁଃଖ ନାହିଁ, କ୍ଷୁଧା ନାହିଁ, ତୃଷ୍ଣା ନାହିଁ । ତୁମେ ଜନ୍ମ-ଜରାରହିତ ନିର୍ବିକାର ସଚ୍ଚିଦାନନ୍ଦସ୍ୱରୂପ ଆତ୍ମା—କିନ୍ତୁ ଯେତେବେଳେ ଶରୀରରେ ଅସୁସ୍ଥତା ଆସିଲା, ମନ ଯାଇ ସଂସାରର ରୂପ-ରସାଦି ପ୍ରଲୋଭନର ସାମନାରେ ପଡ଼ିଲା, କାମକାଞ୍ଚନର ଆପାତସୁଖରେ ଭୁଲି କୌଣସି ଏକ କୁକାର୍ଯ୍ୟ କରିପକାଇଲା, ସଙ୍ଗେ ସଙ୍ଗେ ମୋହ, ଯନ୍ତ୍ରଣା, ଦୁଃଖ ସବୁ ଉପସ୍ଥିତ ହୋଇ ସମସ୍ତ ଆଚାର-ବିଚାର ଭୁଲାଇ ଏକାଥରକେ ତୁମକୁ ବ୍ୟତିବ୍ୟସ୍ତ କରି ପକାଇବ ! ସେଥିପାଇଁ ଈଶ୍ୱରଙ୍କ କୃପା ନ ହେଲେ, ମାୟା ପଥ ନ ଛାଡ଼ିଲେ, କାହାର ମଧ୍ୟ ଆତ୍ମଜ୍ଞାନଲାଭ ଓ ଦୁଃଖର ନିବୃତ୍ତି ହୁଏ ନାହିଁ ଜାଣିବ । ଦୁର୍ଗା-ସପ୍ତଶତୀରେ ଅଛି ଶୁଣି ନାହଁ ?—'ସୈଷା ପ୍ରସନ୍ନା ବରଦା ନୃଣାଂ ଭବତି ମୁକ୍ତୟେ'—ଅର୍ଥାତ୍ ମା' କୃପା କରି ରାସ୍ତା ନ ଛାଡ଼ିଲେ କିଛି ହିଁ ହେବାର ଜୁ ନାହିଁ ।''

### ଏହି ବିଷୟରେ ଦୃଷ୍ଟାନ୍ତ—ରାମ, ସୀତା ଓ ଲକ୍ଷ୍ମଣଙ୍କର ବନପର୍ଯ୍ୟଟନ କଥା :

''ରାମ, ସୀତା ଓ ଲକ୍ଷ୍ମଣ ବନସ୍ତରେ ଯାଉଛନ୍ତି । ବନପଥ ଏତେ ସରୁ ଯେ, ଜଣକରୁ ଅଧିକ ଯାଇପାରିବେ ନାହିଁ । ରାମ ହସ୍ତରେ ଧନୁଧରି ଆଗରେ ଚାଲୁଛନ୍ତି; ସୀତା ତାଙ୍କ ପଛରେ ଚାଲୁଛନ୍ତି; ଏବଂ ଲକ୍ଷ୍ମଣ ସୀତାଙ୍କ ପଛରେ ଧନୁର୍ବାଣ ଧରି ଯାଉଛନ୍ତି । ଲକ୍ଷ୍ମଣଙ୍କର ରାମଙ୍କଠାରେ ଏପରି ଭକ୍ତି-ଭଲ ପାଇବା ଥିଲା ଯେ, ସର୍ବଦା ନବଘନଶ୍ୟାମ ରାମରୂପ ଦେଖିବା ପାଇଁ ଇଚ୍ଛା କରୁଥିଲେ;

କିନ୍ତୁ ସୀତା ମଝିରେ ରହିଛନ୍ତି, ତେଣୁ ଚାଲୁ ଚାଲୁ ରାମଚନ୍ଦ୍ରଙ୍କୁ ଦେଖି ନ ପାରି ବ୍ୟାକୁଳ ହୋଇପଡ଼ିଲେ । ବୁଦ୍ଧିମତୀ ସୀତା ଏକଥା ବୁଝିପାରି, ତାଙ୍କ ଦୁଃଖରେ କାତର ହୋଇ ଚାଲୁ ଚାଲୁ ଥରେ କଡ଼େଇ ଠିଆ ହୋଇ କହିଲେ, 'ହେଇ ଦେଖ ।' ତେବେ ଯାଇ ଲକ୍ଷ୍ମଣ ପ୍ରାଣଭରି ଥରେ ତାଙ୍କର ଇଷ୍ଟମୂର୍ତ୍ତି ରାମରୂପ ଦେଖି ପାରିଲେ ! ସେହିପରି ଜୀବ ଓ ଈଶ୍ୱରଙ୍କର ମଝିରେ ଏହି ମାୟାରୂପିଣୀ ସୀତା ରହିଛନ୍ତି । ସେ ଜୀବରୂପୀ ଲକ୍ଷ୍ମଣଙ୍କ ଦୁଃଖରେ ବ୍ୟଥିତ ହୋଇ ପଥ ଛାଡ଼ି କଡ଼େଇ ଠିଆ ନ ହେଲେ ଜୀବ ତାଙ୍କୁ ଦେଖିବାକୁ ପାଏ ନାହିଁ । ତେଣୁ ସେ କୃପା କଲେ, ହିଁ ଜୀବର ରାମରୂପୀ ନାରାୟଣଙ୍କର ଦର୍ଶନ ହୋଇଥାଏ ଓ ସେ ସମସ୍ତ ଯନ୍ତ୍ରଣା ହାତରୁ ରକ୍ଷାପାଏ । ନ ହେଲେ, ହଜାରେ ବିଚାର-ଆଚାର କର ନା କାହିଁକି, କିଛି ହେବ ନାହିଁ । କଥାରେ ଅଛି ଗୋଟିଏ ଜୁଆଣୀର ଦାନା ଶହେଟି ଭାତ ହଜମ କରାଏ, କିନ୍ତୁ ଯେତେବେଳେ ପେଟ ଖରାପ ହୁଏ, ସେତେବେଳେ ଶହେ ଜୁଆଣିର ଦାନା ମଧ୍ୟ ଗୋଟିଏ ଭାତକୁ ହଜମ କରାଇପାରେ ନାହିଁ—ସେହିପରି ଜାଣିବ ।''

### ଜଗଦମ୍ବାଙ୍କର କୃପାରେ ତାଙ୍କର ଉଚ୍ଚ ଅବସ୍ଥା— ତୋତା ସେକଥା ବୁଝି ନ ଥିଲେ :

ତୋତାପୁରୀଜୀ ଜଗଦମ୍ବାଙ୍କର ଆଜନ୍ମ କୃପାପାତ୍ର । ସେ ସତ୍‌ସଂସ୍କାର, ସରଳ ମନ, ଯୋଗୀ ମହାପୁରୁଷମାନଙ୍କ ସଙ୍ଗ, ବଳିଷ୍ଠ ଦୃଢ଼ ଶରୀର, ବାଲ୍ୟକାଳରୁ ହିଁ ଲାଭ କରିଥିଲେ । ଭଗବତୀ ମାୟା ତାଙ୍କୁ କେତେବେଳେ ହେଲେ ତାଙ୍କର କରାଳ, ବିଭୀଷିକାମୟୀ, ମୃତ୍ୟୁର ଛାୟା ସଦୃଶ ସର୍ବଗ୍ରାସୀ ମୂର୍ତ୍ତି ଦେଖାଇ ନାହାନ୍ତି— ତାଙ୍କର ଅବିଦ୍ୟାରୂପିଣୀ ମୋହିନୀ ମୂର୍ତ୍ତିର ଫାଶରେ କେବେ ପକାଇ ନାହାନ୍ତି—ତେଣୁ ଗୋସାଇଁଜୀଙ୍କ ନିକଟରେ ପୁରୁଷକାର ଓ ଚେଷ୍ଟା ସାହାଯ୍ୟରେ ଅଗ୍ରସର ହୋଇ ନିର୍ବିକଳ୍ପ ସମାଧିଲାଭ, ଈଶ୍ୱରଦର୍ଶନ, ଆତ୍ମଜ୍ଞାନ ସବୁ ସହଜ କଥା ଥିଲା । ସେପଥରେ ଅଗ୍ରସର ହେବାର ଯେତେକିଛି ବାଧା-ବିଘ୍ନ, ମା' ଯେ ସେସମସ୍ତ ନିଜ ହାତରେ ଘୁଞ୍ଚାଇ ଦେଇ ତାଙ୍କ ପାଇଁ ବାଟ ଛାଡ଼ି ଦେଇଥିଲେ— ଏକଥା ସେ କିପରି ବୁଝିବେ ? ଏତେ ଦିନରେ ସେବିଷୟ ପୁରୀ ତୋତାଜୀଙ୍କୁ ବୁଝାଇବାକୁ ଜଗଦମ୍ବାଙ୍କର ଇଚ୍ଛା ହେଲା । ଏତେ ଦିନରେ ସେ ମନର ସେପରି ଭ୍ରମ ବୁଝିବାର ସୁଯୋଗ ପାଇଲେ ।

### ତୋତାପୁରୀଙ୍କର ଅସୁସ୍ଥତା :

ପୁରୀ ମହାଶୟଙ୍କର ଶରୀର ଭାରତର ପଶ୍ଚିମାଞ୍ଚଳର ଥିଲା; ରୋଗ, ଅଜୀର୍ଣ୍ଣ, ଶରୀରର ଅସୁସ୍ଥତା କାହାକୁ କହନ୍ତି ତାହା କେବେ ସେ ଜାଣି ନ ଥିଲେ । ଯାହା ଖାଉଥିଲେ, ତାହା ହିଁ ହଜମ ହେଉଥିଲା; ଯେଉଁଠାରେ ପଡ଼ି ରହୁଥିଲେ, ସୁନିଦ୍ରାର ଅଭାବ ହେଉ ନ ଥିଲା । ଆଉ ଈଶ୍ୱର-ଜ୍ଞାନ ଓ ଦର୍ଶନରେ ମନର

ଉଲ୍ଲାସ ଓ ଶାନ୍ତି ଶତମୁଖରେ ଅବିରାମଧାରାରେ ମନରେ ପ୍ରବାହିତ ରହୁଥିଲା । କିନ୍ତୁ ବଙ୍ଗପ୍ରଦେଶର ଜଳ, ବାଷ୍ପକଣିକାପୂରିତ ଗୁରୁଭାର ଉତ୍ତପ୍ତ ବାୟୁରେ, ଠାକୁରଙ୍କ ଶ୍ରଦ୍ଧା-ଭଲପାଇବାରେ ମୋହିତ ହୋଇ କେଇମାସ ବାସ କରୁ ନ କରୁଣୁ ତାଙ୍କର ସୁଦୃଢ଼ ଶରୀରରେ ରୋଗ ପ୍ରବେଶ କଲା । ପୁରୀଜୀ କଠିନ ରକ୍ତ ଆମାଶୟ-ରୋଗରେ ଆକ୍ରାନ୍ତ ହେଲେ । ଦିନ ରାତି ପେଟ ଯନ୍ତ୍ରଣାରେ ତାଙ୍କର ଧୀର, ସ୍ଥିର, ସମାଧିସ୍ଥ ମନ ମଧ୍ୟ ଅନେକ ସମୟରେ ବ୍ରହ୍ମଭାବରୁ ବିଚ୍ୟୁତ ହୋଇ ଶରୀର ଆଡ଼କୁ ଆସିବାକୁ ଲାଗିଲା ! 'ପଞ୍ଚଭୂତର ଫାନ୍ଦରେ' ବ୍ରହ୍ମ ପଡ଼ିଛନ୍ତି, ଏବେ ସର୍ବେଶ୍ୱରୀ ଜଗଦମ୍ବାଙ୍କର କୃପାବ୍ୟତୀତ ଆଉ ଉପାୟ କ'ଣ ?

**ତୋତାଙ୍କର ନିଜ ମନର ସଙ୍କେତ ଅଗ୍ରାହ୍ୟ କରିବା :**

ଅସୁସ୍ଥ ହେବାର କିଛିଦିନ ପୂର୍ବରୁ ତାଙ୍କର ସତର୍କ ବ୍ରହ୍ମନିଷ୍ଠ ମନ ତାଙ୍କୁ ଜଣାଇଦେଇଥିଲା ଯେ, ଏଠାରେ ଶରୀର ଭଲ ରହୁ ନାହିଁ, ତେଣୁ ଆଉ ଏଠାରେ ରହିବା ଯୁକ୍ତିଯୁକ୍ତ ନୁହେଁ । କିନ୍ତୁ ଠାକୁରଙ୍କର ଅଦ୍ଭୁତ ସଙ୍ଗ ତ୍ୟାଗ କରି ଶରୀରର ମାୟାରେ ସେ ଚାଲିଯିବେ ? 'ଶରୀର—ହାଡ଼-ମାଂସର ପିଞ୍ଜରା'— ରସରକ୍ତପୂର୍ଣ୍ଣ, କୃମିସଙ୍କୁଳ, ଦୁଇଦିନ ମାତ୍ର ସ୍ଥାୟୀ ଦେହ—ଯାହାର ଅସ୍ତିତ୍ୱ ହିଁ ବେଦାନ୍ତ ଶାସ୍ତ୍ରରେ ଭ୍ରମ ବୋଲି ନିର୍ଦ୍ଦିଷ୍ଟ ହୋଇଅଛି, ତାହା ପ୍ରତି ମମତାଦୃଷ୍ଟି କରି ସେ କ'ଣ ଅଶେଷ-ଆନନ୍ଦ-ପ୍ରସୂ ଏହି ଦେବ-ମାନବଙ୍କ ସଙ୍ଗ ସହସା ତ୍ୟାଗ କରି ଚାଲିଯିବେ ? ଯେଉଁଠିକି ଯିବେ ସେଠାରେ ମଧ୍ୟ ଶରୀରର ରୋଗାଦି ହୋଇପାରେ ? ଏବଂ ରୋଗାଦି ହେଲେ ମଧ୍ୟ ତାଙ୍କର ଭୟ କ'ଣ ? ଶରୀର ହିଁ ଭୋଗିବ, କୃଶ ହେବ, ବେଶୀ ହେଲେ ବିନଷ୍ଟ ହେବ—ସେଥିରେ ତାଙ୍କର କ'ଣ ଯାଏ ଆସେ ? ସେ ତ ପ୍ରତ୍ୟକ୍ଷ ଜାଣିଛନ୍ତି, ଦେଖିଛନ୍ତି—ସେ ଅସଙ୍ଗ ନିର୍ବିକାର ଆତ୍ମା, ଶରୀର ସହିତ ତାଙ୍କର କୌଣସି ସମ୍ବନ୍ଧ ହିଁ ନାହିଁ—ତେଣୁ ଭୟ କାହିଁକି ? ଏହି ପ୍ରକାର ନାନା କଥା ଭାବି ପୁରୀଜୀ ମନକୁ ବ୍ୟସ୍ତ ହେବାକୁ ଦେଲେ ନାହିଁ ।

**ତୋତାଙ୍କର ଠାକୁରଙ୍କ ନିକଟରୁ ବିଦାୟ ନ ନେଇପାରିବା ଓ ରୋଗର ବୃଦ୍ଧି :**

କ୍ରମେ ରୋଗର ଯେତେବେଳେ ସୂତ୍ରପାତ ଏବଂ ଯନ୍ତ୍ରଣା ହେବାକୁ ଆରମ୍ଭ କଲା, ସେତେବେଳେ ପୁରୁଜୀଙ୍କ ସ୍ଥାନତ୍ୟାଗର ଇଚ୍ଛା ମଝିରେ ମଝିରେ ପ୍ରବଳତର ହେବାକୁ ଲାଗିଲା । ଠାକୁରଙ୍କ ନିକଟରୁ ବିଦାୟ ନେବେ ବୋଲି ଭାବି ବେଳେବେଳେ ତାଙ୍କ ନିକଟରେ ଉପସ୍ଥିତ ହେଉଥିଲେ, କିନ୍ତୁ ଅନ୍ୟ ସତ୍‌ପ୍ରସଙ୍ଗରେ ମଜ୍ଜି ସେକଥା କହିବାକୁ ଭୁଲିଗଲେ । ଯଦିଓ ବିଦାୟ ନେବା କଥା ମନେପଡ଼ିଲା, ସେତେବେଳେ କିଏ ଯେପରି ଭିତରୁ ତାଙ୍କର ସେହି ସମୟ ପାଇଁ ବାକ୍‌ରୁଦ୍ଧ କରିଦେଉଥିଲା, କହିବାକୁ ବାଧା ଆସିବାରୁ ପୁରୀଜୀ ଭାବିଲେ, 'ଆଜି ଥାଉ, କାଲି କହିବି' ।

ଏହିପରି ଭାବି ଭାବି ସ୍ୱାମୀଜୀ ଠାକୁରଙ୍କ ସହିତ ବେଦାନ୍ତ ସମ୍ବନ୍ଧୀୟ ଆଲୋଚନା କରି ପୁନର୍ବାର ପଞ୍ଚବଟୀତଳେ ଆସନକୁ ଫେରି ଆସିଲେ । ଏମିତି କିଛିଦିନ କଟିଲା, ସ୍ୱାମୀଜୀଙ୍କର ଶରୀର ମଧ୍ୟ ଅଧିକ ଦୁର୍ବଳ ହେଲା ଓ କ୍ରମେ ରୋଗ କଠିନ ହୋଇ ଉଠିଲା । ଠାକୁର ତୋତାଜୀଙ୍କର ଶରୀର ଦିନକୁ ଦିନ ଶୁଷ୍କ ହେବା ଦେଖି ବିଶେଷ ପଥ୍ୟ ଓ ସାମାନ୍ୟ ଔଷଧ ଆଦି ସେବନର ବ୍ୟବସ୍ଥା ଇତିପୂର୍ବରୁ ହିଁ କରିଥିଲେ, କିନ୍ତୁ ଏଥିରେ ଫଳ ନ ହୋଇ ରୋଗ ବଢ଼ିବାକୁ ଲାଗିଲା । ଠାକୁରେ ମଧ୍ୟ ମଥୁରବାବୁଙ୍କୁ କହି ତାଙ୍କର ଆରୋଗ୍ୟ ପାଇଁ ଔଷଧ ପଥ୍ୟ ଆଦିର ବିଶେଷ ବନ୍ଦୋବସ୍ତ କରି ତାଙ୍କୁ ଯଥାସାଧ୍ୟ ସେବା-ଯତ୍ନ କରିବାକୁ ଲାଗିଲେ । କିନ୍ତୁ ତଥାପି ପୁରୀଜୀ ଶରୀରରେ ହିଁ ବିଶେଷ ଯନ୍ତ୍ରଣା ଅନୁଭବ କରୁଥିଲେ, କିନ୍ତୁ ଚିରନିୟନ୍ତ୍ରିତ ମନକୁ ଇଚ୍ଛାମାତ୍ରେ ହିଁ ସମାଧି ମଗ୍ନ କରି ଦେହର ସମସ୍ତ ଯନ୍ତ୍ରଣା କଥା ସମ୍ପୂର୍ଣ୍ଣ ଭୁଲି ଶାନ୍ତିଲାଭ କରୁଥିଲେ ।

### ମନକୁ ଆୟତ୍ତ କରି ନ ପାରି ତୋତାଙ୍କର ଗଙ୍ଗାରେ ଶରୀର ବିସର୍ଜନ କରିବାକୁ ଯିବା ଓ ବିଶ୍ୱରୂପିଣୀ ଜଗଦମ୍ବାଙ୍କର ଦର୍ଶନ :

ସେଦିନ ରାତ୍ରିରେ ପେଟର ଯନ୍ତ୍ରଣା ବିଶେଷ ବୃଦ୍ଧି ହୋଇଥିଲା, ରୋଗଯନ୍ତ୍ରଣାରେ ତୋତାଜୀ ସ୍ଥିର ହୋଇ ଶୋଇପାରୁ ନ ଥିଲେ । ଟିକିଏ ଶୋଇବାକୁ ଚେଷ୍ଟାକରି ପୁଣି ଉଠି ବସୁଥିଲେ । ଠିକ୍ ଭାବେ ବସିବା ମଧ୍ୟ କଷ୍ଟ ହେବାରୁ ଭାବିଲେ, ମନକୁ ଧ୍ୟାନମଗ୍ନ କରି ରଖିବେ, ଶରୀରର ଯାହା ହେବାର ହେଉ । ମନକୁ ଶରୀରରୁ ଗୋଟାଇ ଟାଣି ଆଣି ସ୍ଥିର କରୁ ନ କରୁଣୁ ପେଟର ଯନ୍ତ୍ରଣାରେ ମନ ସେଆଡ଼େ ଧାବିତ ହେଲା । ପୁଣି ଚେଷ୍ଟା କଲେ, ପୁଣି ତଦ୍ରୂପ ହେଲା । ଯେଉଁଠାରେ ଶରୀର ଭୁଲ ହୋଇଯାଏ, ସେହି ସମାଧି ଭୂମିକୁ ମନ ଉଠୁ ନ ଉଠୁଣୁ ଯନ୍ତ୍ରଣାରେ ପୁଣି ନିମ୍ନଗାମୀ ହେଉଥିଲା । ଯେତେଥର ଚେଷ୍ଟା କଲେ, ସେତେଥର ହିଁ ଚେଷ୍ଟା ବିଫଳ ହେଲା ! ଏଥିରେ ସ୍ୱାମୀଜୀ ନିଜର ଶରୀର ଉପରେ ଅତ୍ୟନ୍ତ ବିରକ୍ତ ହେଲେ । ଭାବିଲେ, ଏହି ହାଡ଼ମାଂସର ପିଞ୍ଜରାଟାର ଜ୍ୱାଳାରେ ମନ ମଧ୍ୟ ଆଜି ମୋ ବଶରେ ରହୁ ନାହିଁ । ଯାହା ହେଉଛି ହେଉ, ଜାଣିଛି ତ ଶରୀରଟା କୌଣସି ପ୍ରକାରରେ ମୁଁ ନୁହେଁ, ତେଣୁ ଏହି ପଚା ଶରୀରଟା ସହିତ ରହି କାହିଁକି ଯନ୍ତ୍ରଣା ଅନୁଭବ କରିବି ? ଏହାକୁ ଆଉ ରଖି ଲାଭ କ'ଣ ? ଏହି ଗଭୀର ରାତ୍ରି କାଳରେ ଏହାକୁ ଗଙ୍ଗାରେ ବିସର୍ଜନ ଦେଇ ଏବେ ହିଁ ସମସ୍ତ ଯନ୍ତ୍ରଣାର ଅବସାନ କରିଦେବି । ଏହା ଭାବି 'ଲେଙ୍ଗ୍‌ଟା' ବିଶେଷ ଯତ୍ନରେ ମନକୁ ବ୍ରହ୍ମଚିନ୍ତାରେ ସ୍ଥିର ରଖି ଧୀରେ ଧୀରେ ଜଳରେ ଅବତରଣ କଲେ ଏବଂ କ୍ରମେ କ୍ରମେ ଗଭୀର ଜଳରେ ଅଗ୍ରସର ହେବାକୁ ଲାଗିଲେ । କିନ୍ତୁ ସୁଗଭୀର ଭାଗୀରଥି ଆଜି କ'ଣ ସତରେ ଶୁଖିଯାଇଛନ୍ତି ? ଅଥବା ତୋତା ତାଙ୍କର ମନ ଭିତରର

ଛବିର ବହିଃପ୍ରକାଶରେ ଏପରି ଦେଖୁଛନ୍ତି ? କିଏ କହିବ ? ତୋତାଜୀ ପ୍ରାୟ ଆର କୂଳକୁ ଚାଲିଗଲେ, ତଥାପି ବୁଡ଼ିଯିବା ପାଇଁ ଜଳ ପାଇଲେ ନାହିଁ ! କ୍ରମେ ଯେତେବେଳେ ରାତ୍ରିର ଅନ୍ଧକାରରେ ଅନ୍ୟ କୂଳର ବୃକ୍ଷ ଓ ଘର ସକଳ ଛାୟା ପରି ନୟନଗୋଚର ହେବାକୁ ଲାଗିଲା, ତୋତାଜୀ ଆଶ୍ଚର୍ଯ୍ୟ ହୋଇ ଭାବିଲେ, 'ଏ କ'ଣ ଦୈବୀ ମାୟା ! ବୁଡ଼ିମରିବା ପାଇଁ ପର୍ଯ୍ୟାପ୍ତ ଜଳ ମଧ୍ୟ ଆଜି ଗଙ୍ଗାରେ ନାହିଁ ! ଏ ଈଶ୍ୱରଙ୍କର କି ଅପୂର୍ବ ଲୀଳା !' ଏହି ସମୟରେ କିଏ ଯେମିତି ତାଙ୍କ ଭିତରୁ ତାହାଙ୍କ ବୁଦ୍ଧିର ଆବରଣ ଟାଣି ନେଲା ! ତୋତାଙ୍କର ମନ ଉଜ୍ଜ୍ୱଳ ଆଲୋକରେ ଝଲସି ଯାଇ ଦେଖିଲା—ମା, ମା, ବିଶ୍ୱଜନନୀ ମା, ଅଚିନ୍ତ୍ୟ ଶକ୍ତିରୂପିଣୀ ମା; ଜଳରେ ମା, ସ୍ଥଳରେ ମା; ଶରୀର ମା, ମନ ମା; ଯନ୍ତ୍ରଣା ମା, ସୁସ୍ଥତା ମା; ଜ୍ଞାନ ମା, ଅଜ୍ଞାନ ମା; ଜୀବନ ମା, ମୃତ୍ୟୁ ମା; ଯାହା କିଛି ଦେଖୁଛି, ଶୁଣୁଛି, ଭାବୁଛି, କଳ୍ପନା କରୁଅଛି—ସବୁ ମା ! ସେ ହଁ କୁ ନା ଏବଂ ନା କୁ ହଁ କରୁଛନ୍ତି ! ଶରୀର ଭିତରେ ଯେତେକ୍ଷଣ, ସେତେକ୍ଷଣ ସେ ଇଚ୍ଛା ନ କଲେ ତାଙ୍କର ପ୍ରଭାବରୁ ମୁକ୍ତ ହେବା କାହାରି ସାଧ୍ୟ ନାହିଁ—ମରିବାର ମଧ୍ୟ କାହାର ସାମର୍ଥ୍ୟ ନାହିଁ ! ପୁଣି ଶରୀର-ମନ-ବୁଦ୍ଧିର ଉର୍ଦ୍ଧ୍ୱରେ ମଧ୍ୟ ସେହି ମା—ତୁରୀୟା, ନିର୍ଗୁଣା ମା ! ଏତେଦିନ ଧରି ଯାହାଙ୍କୁ ବ୍ରହ୍ମ ବୋଲି ଉପାସନା କରି ତୋତାଜୀ ପ୍ରାଣର ଭକ୍ତି-ଭଲ ପାଇବା ଦେଇ ଆସିଛନ୍ତି, ସେହି ମା ! ଶିବ-ଶକ୍ତି ଏକାଧାରରେ ହରଗୌରୀ-ମୂର୍ତ୍ତିରେ ଅବସ୍ଥିତ—ବ୍ରହ୍ମ ଓ ବ୍ରହ୍ମଶକ୍ତି ଅଭେଦ !

**ତୋତାଙ୍କର ପୂର୍ବ ସଂକଳ୍ପ ତ୍ୟାଗ :**

ଗଭୀର ନିଶୀଥରେ ତୋତାପୁରୀ ଭକ୍ତିପୂରିତ ଚିତ୍ତରେ ଜଗଦମ୍ବାଙ୍କର ଅଚିନ୍ତ୍ୟ ଅବ୍ୟକ୍ତ ବିରାଟ ରୂପର ଦର୍ଶନ କରୁ କରୁ ଗମ୍ଭୀର ସ୍ୱରରେ ମା' ମା' ଶବ୍ଦ କରି ଚତୁର୍ଦ୍ଦିଗ ମୁଖରିତ କରି ତୋଳିଲେ ଏବଂ ନିଜକୁ ତାଙ୍କର ପାଦ-ତଳେ ସମ୍ପୂର୍ଣ୍ଣରୂପେ ସମର୍ପଣ କରି ପୁନରାୟ ଯେପରି ଆସିଥିଲେ, ସେପରି ଜଳ ମଧ୍ୟ ଦେଇ ଫେରିଗଲେ ! ଶରୀରରେ ଯନ୍ତ୍ରଣା ହେଲେ ମଧ୍ୟ ଏବେ ଆଉ ତାର ଅନୁଭବ ନାହିଁ । ପ୍ରାଣ ସମାଧି-ସ୍ମୃତିର ଅପୂର୍ବ ଉଲ୍ଲାସରେ ଉଲ୍ଲସିତ ! ଧୀରେ ଧୀରେ ସ୍ୱାମୀଜୀ ପଞ୍ଚବଟୀତଳେ ଧୁନି ପାଖରେ ଆସି ବସି ସମସ୍ତ ରାତ୍ରି ଜଗଦମ୍ବାଙ୍କର ନାମ ଓ ଧ୍ୟାନରେ କଟାଇଲେ !

**ଅସୁସ୍ଥତାରେ ତୋତାଙ୍କର ଜ୍ଞାନ—ବ୍ରହ୍ମ ଓ ବ୍ରହ୍ମଶକ୍ତି ଏକ :**

ସକାଳ ହେବା ମାତ୍ରେ ଠାକୁର ତୋତାଜୀଙ୍କର ଶାରୀରିକ କୁଶଳ-ସମ୍ବାଦ ଜାଣିବାକୁ ଆସି ଦେଖିଲେ, ସେ ଯେପରି ପୂର୍ବର ମଣିଷ ନୁହଁନ୍ତି ! ମୁଖମଣ୍ଡଳ ଆନନ୍ଦରେ ଉତ୍‌ଫୁଲ୍ଲ, ହାସ୍ୟପ୍ରସ୍ଫୁଟିତ ଅଧର, ଶରୀରରେ ଯେପରି କୌଣସି ରୋଗ ହିଁ ନାହିଁ ! ତୋତାଜୀ ଠାକୁରଙ୍କୁ ପାଖରେ ବସିବାକୁ ଇଙ୍ଗିତ କରି ଧୀରେ

ଧୀରେ ରାତ୍ରିର ସମସ୍ତ ଘଟଣା କହିଲେ । କହିଲେ, ରୋଗ ହିଁ ମୋର ବନ୍ଧୁର କାର୍ଯ୍ୟ କରିଅଛି, ଗତକାଲି ଜଗଦମ୍ବାଙ୍କର ଦର୍ଶନ ପାଇଛି ଏବଂ ତାଙ୍କରି କୃପାରେ ରୋଗମୁକ୍ତ ମଧ୍ୟ ହୋଇଛି । ଏତେଦିନ ମୁଁ କେଡ଼େ ଅଜ୍ଞ ଥିଲି ! ଯାହାହେଉ, ତୁମର ମା'ଙ୍କୁ ଏବେ କହି ମୋତେ ଏହି ସ୍ଥାନରୁ ବିଦାୟ ଦିଅ । ମୁଁ ଏବେ ବୁଝିଲି, ସେ ହିଁ ମୋତେ ଏହି ଶିକ୍ଷା ଦେବାପାଇଁ ଏତେ ଦିନ ଭୁଲାଇ ଏଠାରେ ଆବଦ୍ଧ କରି ରଖିଛନ୍ତି । ନତୁବା ମୁଁ ଏଠାରୁ ଅନେକ ଦିନ ପୂର୍ବରୁ ଚାଲିଯିବି ବୋଲି ଭାବିଥିଲି, ବିଦାୟ ନେବା ପାଇଁ ତୁମ ନିକଟକୁ ବାରମ୍ବାର ଯାଇଛି, କିନ୍ତୁ କିଏ ଯେପରି ପ୍ରତିଥର ହିଁ ବିଦାୟ କଥା କହିବାକୁ ଦେଇ ନାହିଁ ! ଅନ୍ୟ ପ୍ରସଙ୍ଗରେ ଭୁଲାଇ, ଘୁରାଇ ଫେରାଇ ରଖିଅଛି ! ଠାକୁର ଶୁଣି ହସି ହସି କହିଲେ, ''ମାକୁ ଯେ ପ୍ରଥମେ ମାନୁ ନ ଥିଲ, ମୋ ସାଙ୍ଗରେ ଯେ ଶକ୍ତି ମିଥ୍ୟା, 'ଝୁଟ୍' ବୋଲି ତର୍କ କରୁଥିଲ ? ଏବେ ଦେଖିଲ, ଚକ୍ଷୁ–କର୍ଣ୍ଣର ବିବାଦ ଘୁଞ୍ଚିଗଲା । ମୋତେ ସେ ପୂର୍ବରୁ ହିଁ ବୁଝାଇଛନ୍ତି, 'ବ୍ରହ୍ମ ଓ ଶକ୍ତି ଅଭେଦ, ଅଗ୍ନି ଓ ତାର ଦାହିକା ଶକ୍ତି ଯେପରି ପୃଥକ ନୁହେଁ, ସେହିପରି' !''

### ତୋତାପୁରୀଙ୍କର ଜଗଦମ୍ବାଙ୍କୁ ମାନିବା ଓ ବିଦାୟଗ୍ରହଣ :

ଅନନ୍ତର ପ୍ରଭାତୀ ସୁରରେ ନହବତ–ଧ୍ୱନି ହେଉଛି ଶୁଣି ଶିବ–ରାମ ସଦୃଶ ଗୁରୁଶିଷ୍ୟ–ସମ୍ବନ୍ଧରେ ଆବଦ୍ଧ ଉଭୟ ମହାପୁରୁଷ ଉଠି ଜଗଦମ୍ବାଙ୍କର ମନ୍ଦିରକୁ ଦର୍ଶନ କରିବାକୁ ଗଲେ ଏବଂ ଶ୍ରୀମୂର୍ତ୍ତିଙ୍କ ସମ୍ମୁଖରେ ପ୍ରଣତ ହେଲେ । ଉଭୟେ ହିଁ ପ୍ରାଣେ ପ୍ରାଣେ ବୁଝିଲେ, ମା' ଏଥର ତୋତାଙ୍କୁ ଏଠାରୁ ଯିବାକୁ ପ୍ରସନ୍ନ ମନରେ ଅନୁମତି ଦେଇଛନ୍ତି । ଏଘଟଣାର କେତେ ଦିନ ପରେ ହିଁ ତୋତାଜୀ ଠାକୁରଙ୍କ ନିକଟରୁ ବିଦାୟ ଗ୍ରହଣ କରି ଦକ୍ଷିଣେଶ୍ୱର ମନ୍ଦିର ପରିତ୍ୟାଗ କରି ପଶ୍ଚିମକୁ ଯାତ୍ରା କଲେ । ଦକ୍ଷିଣେଶ୍ୱର ମନ୍ଦିରର ଏହା ହିଁ ତାଙ୍କର ପ୍ରଥମ ଓ ଶେଷ ଦର୍ଶନ—କାରଣ ଏହା ପରେ ପୁରୀଜୀ ଆଉ କେବେ ଦକ୍ଷିଣେଶ୍ୱର ପ୍ରତ୍ୟାବର୍ତ୍ତନ କରି ନାହାନ୍ତି ।

### ତୋତାପୁରୀଙ୍କର 'କିମିଆ' ବିଦ୍ୟାର ଅଭିଜ୍ଞତା :

ଆଉ ଗୋଟିଏ କଥା କହିଲେ ହିଁ ଆମେ ଠାକୁରଙ୍କ ନିକଟରୁ ତୋତାଜୀଙ୍କ ସମ୍ବନ୍ଧରେ ଯେତେ କଥା ଶୁଣିଛୁ, ତାହା ସବୁ ପ୍ରାୟ ପାଠକଙ୍କୁ କୁହା ହୋଇଯିବ । ତୋତାପୁରୀଜୀ 'କିମିଆ' (ଇନ୍ଦ୍ରଜାଲ) ବିଦ୍ୟାରେ ବିଶ୍ୱାସ କରୁଥିଲେ । କେବଳ ଯେ ସେ ବିଶ୍ୱାସ କରୁଥିଲେ ତାହା ନୁହଁ; ସେ ଠାକୁରଙ୍କୁ କହିଥିଲେ ସେ ଏହି ବିଦ୍ୟାବଳରେ ତାମ୍ର ଆଦି ଧାତୁକୁ ଅନେକଥର ସ୍ୱର୍ଣ୍ଣରେ ପରିଣତ କରିବାକୁ ସମର୍ଥ ହୋଇଥିଲେ । ତୋତା କହୁଥିଲେ, ତାଙ୍କ ମଣ୍ଡଳୀର ପ୍ରାଚୀନ ପରମହଂସମାନେ ଉକ୍ତ ବିଦ୍ୟା ଅବଗତ ଥିଲେ ଏବଂ ଗୁରୁପରମ୍ପରାରେ ସେ ଏହା ପାଇଛନ୍ତି । ଆହୁରି କହୁଥିଲେ, 'ଏହି ବିଦ୍ୟା ପ୍ରଭାବରେ ନିଜର ସ୍ୱାର୍ଥସାଧନ ଅଥବା

ଭୋଗବିଳାସ କରିବାକୁ ଏକାନ୍ତ ନିଷେଧ ଅଛି, ସେଥିରେ ଗୁରୁଙ୍କର ଅଭିଶାପ ଅଛି । ତେବେ ମଣ୍ଡଳୀରେ ଅନେକ ସାଧୁ ଥାଆନ୍ତି, ସେମାନଙ୍କୁ ନେଇ ବେଳେ ବେଳେ ମଣ୍ଡଳୀଶ୍ୱରଙ୍କୁ ତୀର୍ଥରୁ ତୀର୍ଥାନ୍ତରକୁ ଗମନାଗମନ କରିବାକୁ ହୋଇଥାଏ ଏବଂ ସେସମସ୍ତଙ୍କ ପାଇଁ ଆହାରାଦିର ବନ୍ଦୋବସ୍ତ କରିବାକୁ ପଡ଼ିଥାଏ । ଗୁରୁଙ୍କର ଆଦେଶ — ସେହି ସମୟରେ ଅର୍ଥର ଅନଟନ ହେଲେ ଉକ୍ତ ବିଦ୍ୟା ପ୍ରୟୋଗ କରି ସେମାନଙ୍କର ସେବାର ବନ୍ଦୋବସ୍ତ କରି ପାର ।'

**ଉପସଂହାର :**

ଏହିପରି ଠାକୁରଙ୍କର ଗୁରୁଭାବସହାୟରେ ଭୈରବୀ ବ୍ରାହ୍ମଣୀ ଓ ବ୍ରହ୍ମଜ୍ଞ ତୋତାପୁରୀ ନିଜ ନିଜ ଗନ୍ତବ୍ୟ ପଥରେ ପୂର୍ଣ୍ଣତାପ୍ରାପ୍ତ ହୋଇ ଧନ୍ୟ ହୋଇଥିଲେ । ଠାକୁରଙ୍କର ଅନ୍ୟାନ୍ୟ ଶିକ୍ଷାଗୁରୁମାନେ ମଧ୍ୟ ଯେ ତାଙ୍କର ସହାୟରେ ଏହିପ୍ରକାର ଆଧ୍ୟାତ୍ମିକ ଉଦାରତା ଲାଭ କରିଥିଲେ, ସେବିଷୟ ମଧ୍ୟ ଆମେ ଏଥିରୁ ବେଶ୍ ଅନୁମାନ କରିପାରୁ ।

**ଓମ୍ ଇତି —**
**ଶ୍ରୀରାମକୃଷ୍ଣଲୀଳାପ୍ରସଙ୍ଗ —**
**ଗୁରୁଭାବପର୍ବର ପୂର୍ବାର୍ଦ୍ଧ ସମ୍ପୂର୍ଣ୍ଣ ।**
**॥ ଓଁ ॥**

# ପରିଶିଷ୍ଟ

## ପୁସ୍ତକସ୍ଥ ଘଟଣାବଳୀର ସମୟ-ନିରୂପକ ତାଲିକା

| ବଙ୍ଗଳା ସନ୍ | ଖ୍ରୀଷ୍ଟାବ୍ଦ | ଘଟଣା |
|---|---|---|
| ୧୧୮୧ | ୧୭୭୫ | ଶ୍ରୀଯୁକ୍ତ କ୍ଷୁଦିରାମଙ୍କର ଜନ୍ମ |
| ୧୧୯୭ | ୧୭୯୧ | ଶ୍ରୀମତୀ ଚନ୍ଦ୍ରାଦେବୀଙ୍କର ଜନ୍ମ |
| ୧୨୦୫ | ୧୭୯୯ | ଶ୍ରୀମତୀ ଚନ୍ଦ୍ରାଦେବୀଙ୍କ ସହିତ ଶ୍ରୀଯୁକ୍ତ କ୍ଷୁଦିରାମଙ୍କର ବିବାହ —କ୍ଷୁଦିରାମଙ୍କର ବୟସ ୨୪ ବର୍ଷ ଏବଂ ଚନ୍ଦ୍ରାଦେବୀଙ୍କର ୮ବର୍ଷ ବୟସ ଥିଲା । ୧୮୭୬ ଖ୍ରୀଷ୍ଟାବ୍ଦରେ ୮୫ ବର୍ଷ ବୟସରେ ଚନ୍ଦ୍ରାଦେବୀଙ୍କର ଦେହାନ୍ତ । |
| ୧୨୧୧ | ୧୮୦୫ | ଶ୍ରୀଯୁକ୍ତ ରାମକୁମାରଙ୍କର ଜନ୍ମ । ଠାକୁରଙ୍କ ଅପେକ୍ଷା ୩୧ ବର୍ଷ ବଡ଼ । |
| ୧୨୧୬ | ୧୮୧୦ | ଶ୍ରୀମତୀ କାତ୍ୟାୟନୀଙ୍କ ଜନ୍ମ । |
| ୧୨୨୦ | ୧୮୧୪ | ଶ୍ରୀଯୁକ୍ତ କ୍ଷୁଦିରାମଙ୍କର କାମରପୁକୁର ଆସି ବାସ କରିବା । ସେତେବେଳେ କ୍ଷୁଦିରାମଙ୍କର ବୟସ ଅଣଚାଳିଶ ବର୍ଷ । |
| ୧୨୨୬ | ୧୮୨୦ | ରାମକୁମାର ଓ କାତ୍ୟାୟନୀଙ୍କର ବିବାହ |
| ୧୨୩୦ | ୧୮୨୪ | ଶ୍ରୀଯୁକ୍ତ କ୍ଷୁଦିରାମଙ୍କର ରାମେଶ୍ୱର ଯାତ୍ରା । |
| ୧୨୩୨ | ୧୮୨୬ | ଶ୍ରୀଯୁକ୍ତ ରାମେଶ୍ୱରଙ୍କ ଜନ୍ମ । ଅତଏବ ସେ ଠାକୁରଙ୍କ ଅପେକ୍ଷା ୧୦ ବର୍ଷ ବଡ଼ । |
| ୧୨୪୦ | ୧୮୩୪ | ୨୪ ବର୍ଷ ବୟସରେ କାତ୍ୟାୟନୀର ଶରୀରରେ ଭୂତାବେଶ । |
| ୧୨୪୧ | ୧୮୩୫ | ଶ୍ରୀଯୁକ୍ତ କ୍ଷୁଦିରାମଙ୍କର ଗୟାଦର୍ଶନ । ସେତେବେଳେ ତାଙ୍କର ବୟସ ୬୦ ବର୍ଷ ହୋଇଥିଲା । |
| ୧୨୪୨ | ୧୮୩୬ | ଫାଲ୍‌ଗୁନ ୬, ବୁଧବାର, ଫେବୃଆରୀ ୧୭ ତାରିଖ ବ୍ରାହ୍ମମୁହୂର୍ତ୍ତରେ ଶ୍ରୀଶ୍ରୀରାମକୃଷ୍ଣଦେବଙ୍କର ଜନ୍ମ । |
| ୧୨୪୫ | ୧୮୩୯ | ସର୍ବମଙ୍ଗଳାଙ୍କ ଜନ୍ମ । |
| ୧୨୪୯ | ୧୮୪୩ | ଶ୍ରୀଯୁକ୍ତ କ୍ଷୁଦିରାମଙ୍କର ଦେହତ୍ୟାଗ, ୬୮ ବର୍ଷ ବୟସରେ । ସେତେବେଳେ ଠାକୁରଙ୍କର ବୟସ ୭ ବର୍ଷ । |
| ୧୨୫୪ | ୧୮୪୮ | ରାମେଶ୍ୱର ଓ ସର୍ବମଙ୍ଗଳାଙ୍କ ବିବାହ । |
| ୧୨୫୫ | ୧୮୪୯ | ଶ୍ରୀଯୁକ୍ତ ରାମକୁମାରଙ୍କ ପୁତ୍ର ଅକ୍ଷୟର ଜନ୍ମପରେ ୩୬ ବର୍ଷ ବୟସରେ ତତ୍ ପତ୍ନୀଙ୍କ ମୃତ୍ୟୁ । ସେତେବେଳେ ରାମକୁମାରଙ୍କର ବୟସ ୪୪ ବର୍ଷ । |
| ୧୨୫୬ | ୧୮୫୦ | ଶ୍ରୀଯୁକ୍ତ ରାମକୁମାର କଲିକତାରେ ଟୋଲ୍ ଖୋଲିବା । |

| ବଙ୍ଗଳା ସନ୍ | ଖ୍ରୀଷ୍ଟାବ୍ଦ | ଘଟଣା |
|---|---|---|
| ୧୨୫୯ | ୧୮୫୨ – ୧୮୫୩ | ଠାକୁରଙ୍କର କଲିକତା ଆଗମନ ଓ ଝାମାପୁକୁର ଚତୁଷ୍ପାଠୀରେ ବାସ । (ଠାକୁରଙ୍କର ବୟସ ୧୬ ବର୍ଷ ପୂର୍ଣ୍ଣ ହୋଇ କେତେ ମାସ ହୋଇଥାଏ) । |
| ୧୨୬୦ | ୧୮୫୩– ୧୮୫୪ | ଚତୁଷ୍ପାଠୀରେ ବାସ, ପାଠ ଓ ପୂଜା କରିବା । |
| ୧୨୬୧ | ୧୮୫୪– ୧୮୫୫ | ଚତୁଷ୍ପାଠୀରେ ରହିବା, ପାଠ ପଢ଼ିବା ଏବଂ ପୂଜା କରିବା । |
| ୧୨୬୨ | ୧୮୫୫– ୧୮୫୬ | ଜ୍ୟେଷ୍ଠ ମାସ ୧୮ ଦିନ ଦକ୍ଷିଣେଶ୍ୱର କାଳୀମନ୍ଦିର ପ୍ରତିଷ୍ଠା । ଠାକୁର କାଳୀମନ୍ଦିରରେ ବେଶକାରୀ ପଦରେ ଓ ହୃଦୟ ସାହାଯ୍ୟକାରୀ ପଦରେ ନିଯୁକ୍ତ; ବିଷ୍ଣୁଙ୍କର ବିଗ୍ରହ ଭଗ୍ନ ହେବା । ଠାକୁରଙ୍କର ବିଷ୍ଣୁଘରର ପୂଜକର ପଦଗ୍ରହଣ; ଅଗଷ୍ଟ ୨୯ ତାରିଖରେ ରାଣୀ ରାସମଣିଙ୍କର ଦେବସେବା ନିମିତ୍ତ ଜମିଦାରୀ କିଣିବା; କେନାରାମ ଭଟ୍ଟାଚାର୍ଯ୍ୟଙ୍କ ନିକଟରୁ ଠାକୁରଙ୍କର ଦୀକ୍ଷାଗ୍ରହଣ; ଠାକୁରଙ୍କର କାଳୀପୂଜକର ଏବଂ ରାମକୁମାରଙ୍କର ବିଷ୍ଣୁପୂଜକର ପଦ ଗ୍ରହଣ । |
| ୧୨୬୩ | ୧୮୫୬– ୧୮୫୭ | ହୃଦୟଙ୍କର ବିଷ୍ଣୁପୂଜକର ପଦ ଗ୍ରହଣ; ରାମକୁମାରଙ୍କର ମୃତ୍ୟୁ (୫୨ ବର୍ଷ ବୟସରେ); ଠାକୁରଙ୍କର ପାପପୁରୁଷ ଦଗ୍ଧ ହେବା ଏବଂ ଗାତ୍ରଦାହ; ଠାକୁରଙ୍କର ପ୍ରଥମଥର ଦେବୋନ୍ମତ୍ତଭାବ ଓ ଦର୍ଶନ; ଭୁକୈଳାସର ବୈଦ୍ୟଙ୍କଠାରୁ ଔଷଧସେବନ । |
| ୧୨୬୪ | ୧୮୫୭– ୧୮୫୮ | ଠାକୁରଙ୍କର ରାଗାନୁଗା ପୂଜା ଦେଖି ମଥୁରଙ୍କର ଆଶ୍ଚର୍ଯ୍ୟ ହେବା; ଠାକୁରଙ୍କ ରାଣୀରାସମଣିଙ୍କୁ ଦଣ୍ଡଦାନ; ହଳଧାରୀଙ୍କର ପୂଜକ ରୂପରେ ନିଯୁକ୍ତ ହେବା ଓ ତାଙ୍କର ଠାକୁରଙ୍କୁ ଅଭିଶାପ । |
| ୧୨୬୫ | ୧୮୫୮– ୧୮୫୯ | ଆଶ୍ୱିନ ବା କାର୍ତ୍ତିକ ମାସରେ ଠାକୁରଙ୍କର କାମାରପୁକୁର ଗମନ; ଏବଂ ସେଠାରେ ତାଙ୍କ ଦେହରୁ ଚଣ୍ଡ ଛଡ଼ାଇବା । |
| ୧୨୬୬ | ୧୮୫୯– ୧୮୬୦ | ବୈଶାଖ ମାସରେ ଠାକୁରଙ୍କର ବିବାହ । |
| ୧୨୬୭ | ୧୮୬୦– ୧୮୬୧ | ଠାକୁରଙ୍କର ଦ୍ୱିତୀୟ ଥର ଜୟରାମବାଟୀ ଯିବା; ଏବଂ ପରେ କଲିକତାକୁ ଫେରିବା; ମଥୁରଙ୍କର ଶିବ ଏବଂ କାଳୀ ରୂପରେ ଠାକୁରଙ୍କୁ ଦର୍ଶନ; ଠାକୁରଙ୍କର ଦ୍ୱିତୀୟଥର ଦେବୋନ୍ମତ୍ତତା ଓ କବିରାଜ ଗଙ୍ଗାପ୍ରସାଦଙ୍କର ଚିକିତ୍ସା; ୧୮୬୧, ଫେବୃୟାରୀ ୧୮ ତାରିଖରେ ରାଣୀ ରାସମଣିଙ୍କର ଦେବୋତ୍ତର ଦଲିଲରେ ଦସ୍ତଖତ କରିବା ଓ ତାପର ଦିନ ମୃତ୍ୟୁ ହେବା; ଠାକୁରଙ୍କର ଜନନୀଙ୍କର ବୁଢା ଶିବଙ୍କଠାରେ ହତ୍ୟାଦେବା; ବ୍ରାହ୍ମଣୀ ଭୈରବୀଙ୍କର ଆଗମନ ଓ ଠାକୁରଙ୍କର ତନ୍ତ୍ର ସାଧନା ଆରମ୍ଭ । |

| ବଙ୍ଗଳା ସନ୍ | ଖ୍ରୀଷ୍ଟାବ୍ଦ | ଘଟଣା |
|---|---|---|
| ୧୨୬୯ | ୧୮୬୨-୧୮୬୩ | ଠାକୁରଙ୍କର ତନ୍ତ୍ର ସାଧନା ସମ୍ପୂର୍ଣ୍ଣ ହେବା । |
| ୧୨୭୦ | ୧୮୬୩-୧୮୬୪ | ପଦ୍ମଲୋଚନ ପଣ୍ଡିତଙ୍କ ସହିତ ଦେଖା; ମଥୁରଙ୍କର ଅନ୍ନମେରୁ-ଅନୁଷ୍ଠାନ; ଠାକୁରଙ୍କ ଜନନୀଙ୍କର ଗଙ୍ଗାବାସ କରିବାକୁ ଆଗମନ; ଜଟାଧାରୀଙ୍କର ଆଗମନ, ଠାକୁରଙ୍କର ବାତ୍ସଲ୍ୟ ଏବଂ ମଧୁରଭାବ ସାଧନା । |
| ୧୨୭୧ | ୧୮୬୪-୧୮୬୫ | ତୋତାପୁରୀଙ୍କର ଆଗମନ ଓ ଠାକୁରଙ୍କର ସନ୍ନ୍ୟାସ ଗ୍ରହଣ । |
| ୧୨୭୨ | ୧୮୬୫-୧୮୬୬ | ହଲଧାରୀଙ୍କର କାର୍ଯ୍ୟରୁ ଅବସରଗ୍ରହଣ ଓ ଅକ୍ଷୟର ପୂଜକର ପଦଗ୍ରହଣ; ଶ୍ରୀମତ୍ ତୋତାପୁରୀଙ୍କର ଦକ୍ଷିଣେଶ୍ୱରରୁ ଚାଲିଯିବା । |
| ୧୨୭୩ | ୧୮୬୬-୧୮୬୭ | ଠାକୁରଙ୍କର ଛଅମାସ କାଳ ଅଦ୍ୱୈତ ଭୂମିରେ ଅବସ୍ଥାନ ସମ୍ପୂର୍ଣ୍ଣ ହେବା; ଶ୍ରୀମତୀ ଜଗଦମ୍ବା ଦାସୀଙ୍କର କଠିନପୀଡ଼ା ଆରୋଗ୍ୟ କରିବା; ପରେ ଠାକୁରଙ୍କର ଶାରୀରିକ ପୀଡା ଓ ଇସ୍‌ଲାମ ଧର୍ମସାଧନା । |
| ୧୨୭୪ | ୧୮୬୭-୧୮୬୮ | ବ୍ରାହ୍ମଣୀ ଏବଂ ହୃଦୟଙ୍କ ସହିତ ଠାକୁରଙ୍କର କାମାରପୁକୁର ଗମନ; ଶ୍ରୀଶ୍ରୀମା'ଙ୍କର କାମାରପୁକୁର ଆଗମନ; ମାର୍ଗଶୀର ମାସରେ ଠାକୁରଙ୍କର କଲିକତା ପ୍ରତ୍ୟାଗମନ ଓ ମାଘମାସରେ ତୀର୍ଥଯାତ୍ରା । |
| ୧୨୭୫ | ୧୮୬୮-୧୮୬୯ | ଜ୍ୟେଷ୍ଠ ମାସରେ ଠାକୁରଙ୍କର ତୀର୍ଥରୁ ପ୍ରତ୍ୟାଗମନ; ହୃଦୟଙ୍କର ପ୍ରଥମ ସ୍ତ୍ରୀର ମୃତ୍ୟୁ ଏବଂ ଦୁର୍ଗାପୂଜା ଉତ୍ସବ ଏବଂ ଦ୍ୱିତୀୟ ବିବାହ । |
| ୧୨୭୬ | ୧୮୬୯-୧୮୭୦ | ଅକ୍ଷୟର ବିବାହ ଓ ମୃତ୍ୟୁ । |
| ୧୨୭୭ | ୧୮୭୦-୧୮୭୧ | ଠାକୁରଙ୍କର ମଥୁରଙ୍କ ଘରକୁ ଏବଂ ଗୁରୁଗୃହକୁ ଗମନ; କଲୁଟୋଲାରେ ଶ୍ରୀଶ୍ରୀଚୈତନ୍ୟଦେବଙ୍କ ଆସନ ଗ୍ରହଣ; ପରେ କାଲ୍‌ନା, ନବଦ୍ୱୀପ ଓ ଭଗବାନଦାସ ବାବାଜୀଙ୍କୁ ଦର୍ଶନ । |
| ୧୨୭୮ | ୧୮୭୧-୧୮୭୨ | ଜୁଲାଇ ମାସ ୧୬ ତାରିଖରେ ମଥୁରଙ୍କର ମୃତ୍ୟୁ; ଫାଲଗୁନ ମାସ ରାତି ନଅଟାରେ ଶ୍ରୀଶ୍ରୀମା'ଙ୍କର ଦକ୍ଷିଣେଶ୍ୱରକୁ ପ୍ରଥମ ଆଗମନ । |
| ୧୨୭୯ | ୧୮୭୨-୧୮୭୩ | ଶ୍ରୀଶ୍ରୀମା'ଙ୍କର ଦକ୍ଷିଣେଶ୍ୱରରେ ଅବସ୍ଥାନ । |
| ୧୨୮୦ | ୧୮୭୩-୧୮୭୪ | ଜ୍ୟେଷ୍ଠ ମାସରେ ଠାକୁରଙ୍କର ଷୋଡ଼ଶୀ ପୂଜା; ଶ୍ରୀଶ୍ରୀମା'ଙ୍କର ଗୌରୀ ପଣ୍ଡିତଙ୍କୁ ଦର୍ଶନ ଓ ଅନ୍ଦାଜ ଆଶ୍ୱିନରେ (୧୮୭୩, ସେପ୍ଟେମ୍ବର) କାମାରପୁକୁରକୁ ପ୍ରତ୍ୟାଗମନ; ମାର୍ଗଶୀର ମାସରେ ରାମେଶ୍ୱରଙ୍କର ମୃତ୍ୟୁ । |

| ବଙ୍ଗଳା ସନ୍ | ଖ୍ରୀଷ୍ଟାବ୍ଦ | ଘଟଣା |
|---|---|---|
| ୧୨୮୧ | ୧୮୭୪–୧୮୭୫ | (ଅନ୍ଦାଜ ୧୮୭୫ ଏପ୍ରିଲ୍) ଶ୍ରୀଶ୍ରୀମା'ଙ୍କର ଦ୍ୱିତୀୟଥର ଦକ୍ଷିଣେଶ୍ୱର ଆସିବା; ଶମ୍ଭୁମଲ୍ଲିକଙ୍କର ଘର ତୋଳିଦେବା; ଚାଣକେରେ ଅନ୍ନପୂର୍ଣ୍ଣା ଦେବୀଙ୍କ ମନ୍ଦିର ପ୍ରତିଷ୍ଠା; ଠାକୁରଙ୍କର ଶ୍ରୀଯୁକ୍ତ କେଶବ ଚନ୍ଦ୍ର ସେନଙ୍କୁ ପ୍ରଥମଥର ଦେଖା କରିବା । |
| ୧୨୮୨ | ୧୮୭୫–୧୮୭୬ | (ଅନ୍ଦାଜ ୧୮୭୫ ନଭେମ୍ବର) ପୀଡିତା ହୋଇ ଶ୍ରୀଶ୍ରୀମା'ଙ୍କର ପିତ୍ରାଳୟ ଯିବା; ଠାକୁରଙ୍କ ଜନନୀଙ୍କର ମୃତ୍ୟୁ । |
| ୧୨୮୩ | ୧୮୭୬–୧୮୭୭ | କେଶବଙ୍କ ସହିତ ଠାକୁରଙ୍କର ଘନିଷ୍ଠ ସମ୍ବନ୍ଧ । |
| ୧୨୮୪ | ୧୮୭୭–୧୮୭୮ | କେଶବଙ୍କ ସହିତ ଠାକୁରଙ୍କର ଘନିଷ୍ଠ ସମ୍ବନ୍ଧ (ଅନ୍ଦାଜ ୧୮୭୭, ନଭେମ୍ବର) ଶ୍ରୀଶ୍ରୀମା'ଙ୍କର ଦକ୍ଷିଣେଶ୍ୱର ଆଗମନ । |
| ୧୨୮୫ | ୧୮୭୮–୧୮୭୯ | ଠାକୁରଙ୍କର ଚିହ୍ନିତ ଭକ୍ତମାନଙ୍କର ଆଗମନ ଆରମ୍ଭ । |
| ୧୨୮୭ | ୧୮୮୦–୧୮୮୧ | ଶ୍ରୀଶ୍ରୀମା'ଙ୍କର ପୁନର୍ବାର ଦକ୍ଷିଣେଶ୍ୱର ଆଗମନ ଏବଂ ହୃଦୟଙ୍କର କଟୁ କଥାରେ ପୁନର୍ବାର ସେହି ଦିନ ହିଁ ଚାଲିଯିବା; ଶ୍ରୀମତୀ ଜଗଦମ୍ବା ଦାସୀଙ୍କର ମୃତ୍ୟୁ । |
| ୧୨୮୮ | ୧୮୮୧–୧୮୮୨ | ହୃଦୟଙ୍କର ପଦଚ୍ୟୁତି ଓ ଦକ୍ଷିଣେଶ୍ୱରରୁ ଅନ୍ୟତ୍ର ଗମନ; ସ୍ୱାମୀ ବିବେକାନନ୍ଦଙ୍କର ଠାକୁରଙ୍କ ନିକଟକୁ ଆଗମନ । |
| ୧୨୯୦ | ୧୮୮୪ | ଶ୍ରୀଯୁକ୍ତ କେଶବଚନ୍ଦ୍ର ସେନ୍‌ଙ୍କ ଦେହାନ୍ତ । |

ଶ୍ରୀରାମକୃଷ୍ଣଙ୍କ ଜୀବନୀ ଗୋଟିଏ ଅସାଧାରଣ ଆଲୋକ-ବର୍ତ୍ତିକା, ଯାହାର ତୀବ୍ର ରଶ୍ମି ସମ୍ପାତରେ ଲୋକମାନେ ହିନ୍ଦୁଧର୍ମର ସମଗ୍ର ରୂପ ଓ ଦିଗ ବୁଝିପାରିବେ । ଶାସ୍ତ୍ରରେ ଯେଉଁସବୁ ଜ୍ଞାନ କେବଳ ମତବାଦ ଆକାରରେ ରହିଛି, ସେ ତାହାର ମୂର୍ତ୍ତିମନ୍ତ ଦୃଷ୍ଟାନ୍ତ । ଋଷି ଓ ଅବତାରମାନେ ବାସ୍ତବିକ ଯାହା ଶିକ୍ଷା ଦେବାକୁ ଚାହିଁଥିଲେ, ସେ ନିଜ ଜୀବନ ଦ୍ୱାରା ତାହା ଦେଖାଇ ଦେଇଯାଇଛନ୍ତି । ଶାସ୍ତ୍ରଗୁଡ଼ିକ ମତବାଦ ମାତ୍ର—ସେ ଥିଲେ ତାହାର ପ୍ରତ୍ୟକ୍ଷ ଅନୁଭୂତି । ଏହି ବ୍ୟକ୍ତି ଏକାବନ ବର୍ଷବ୍ୟାପୀ ଗୋଟିଏ ଜୀବନରେ ପାଞ୍ଚ ହଜାର ବର୍ଷର ଜାତୀୟ ଆଧ୍ୟାତ୍ମିକ ଜୀବନଯାପନ କରିଥିଲେ ଏବଂ ଭବିଷ୍ୟତ ପାଇଁ ଶିକ୍ଷାପ୍ରଦ ଆଦର୍ଶରୂପେ ନିଜକୁ ଗଢ଼ିଥିଲେ ।

—ସ୍ୱାମୀ ବିବେକାନନ୍ଦ




RAMAKRISHNA MATH
BHUBANESWAR - 2




SRI RAMAKRISHNA
LILAPRASANGA (Vol. - I)

114711

Subsidized Price
(Per Set) : ₹. 100.00

ISBN 81-936053-3-0 (Set)
ISBN 81-936053-1-4 (Vol. - I)